৺ ରାଜା କୃଷ୍ଣସିଂହଙ୍କ କୃତ

# ମହାଭାରତ

## ବିରାଟ ପର୍ବ

—ঃ*ঃ—

ନାରାୟଣଂ ନମସ୍କୃତ୍ୟ ନରଂଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟମୁଦୀରୟେତ୍ ॥
ଭୀଷ୍ମଦ୍ରୋଣତଟା ଜୟଦ୍ରଥଜଳା ଗାନ୍ଧାରନୀଳୋତ୍ପଳା ।
ଶଲ୍ୟଗ୍ରାହବତୀ କୃପେଣ ବହନୀ କର୍ଣ୍ଣେନ ବେଳାକୁଳା ॥
ଅଶ୍ୱତ୍ଥାମାବିକର୍ଣ୍ଣଘୋରମକରା ଦୁର୍ଯ୍ୟୋଧନା ବର୍ତ୍ତିନୀ ।
ସୋତ୍ତୀର୍ଣ୍ଣା ଖଳୁ ପାଣ୍ଡବୈଃ କୁରୁନଦୀ କୈବର୍ତ୍ତକଃ କେଶବଃ ॥



### ମଙ୍ଗଳାଚରଣ

ଜୟ କୃଷ୍ଣ ମୁକୁନ୍ଦ ମାଧବ ମୁରାରି
ଜୟ ଗୋପୀଗୋପାଳ-କୁଳରକ୍ଷାକାରୀ ।
ଜୟ ମନ୍ଦରାଦ୍ରିଧର ନରହରି
ଜୟ ଶ୍ରୀରାଧା ଚନ୍ଦ୍ର-ମୁଖୀଙ୍କ ବିହାରି ।
ଜୟ କଂସକେଶୀ ମଲ୍ଲ-ପ୍ରାଣହାରି
ଜୟ ଶାଲ୍ୱ-ଶିଶୁପାଳାଦିଙ୍କ ବଇରି ।
ଜୟ ଖର-ଦୂଷଣ ରାବଣ ସଂହାରି
ଜୟ ତିନିଭୁବନ ପାତକ-ନିସ୍ତାରି ।
ଜୟ ଦୁଷ୍ଟହିରଣ୍ୟ-କଶିପୁବିଦାରି
ଜୟ ଦିତିପୁତ୍ର-ଦାନବ ନିବାରି
ଜୟ ସୂର୍ଯ୍ୟତନୟା-ନିକଟ ସଂଚାରି
ଜୟ ଦାହହେମଜଡ଼ିତ-ବାସଧାରୀ ।
ଜୟ ଘନଶ୍ୟାମଳ-ବରନଆ ହରି
ଜୟ ବନମଧ୍ୟଅନଳ-ନିଗାରି ।
ଜୟ ଭକ୍ତଜନତାରଣ ଶଙ୍କରି
ଜୟ ମତ୍ତମାଆତଙ୍ଗଦର୍ପଅପହାରି ।
ପ୍ରଳୟକାଳଜଳବାଳକ-ମୁକୁନ୍ଦ
ଏ ସଂସାରସର୍ଜନା-ବୃକ୍ଷର ତୁମ୍ଭେ କନ୍ଦ ।
ସ୍ୱର୍ଗପୁରୁ ଆସି କରଣ ସୁରବୃନ୍ଦ
ସେବୁଛନ୍ତି ନିତି ତୁମ୍ଭର ପାଦଦ୍ୱନ୍ଦ୍ୱ ।
ହେ ଲକ୍ଷ୍ମୀଦେବୀଙ୍କର ହୃଦୟ-ଆନନ୍ଦ
ବୋଲୁଅଛ ଜଗତେ ପରମ ଆନନ୍ଦ ।
ଇନ୍ଦୁ-କ୍ଷୀରସାଗର-କୁମୁଦ ହୀର ବୃନ୍ଦ
ଜଣା ଶଙ୍ଖତୁଲେ ବିହ୍ୱଳ ଅରବିନ୍ଦ ।
ହେ ଚଉଦଭୁବନ ଲୋକଙ୍କର ସ୍କନ୍ଧ
ତୁମ୍ଭଙ୍କୁ ଦେଖି ସୁଖୀ ହୁଅନ୍ତି ପିତା ନନ୍ଦ ।
ମୋ ମାନସଭୃଙ୍ଗ ତ ଅଟଇ ଅତି ମନ୍ଦ
ପିଇବ କେହ୍ନେ ତୁମ୍ଭ ପାଦବ୍ଜ ମକରନ୍ଦ ।
ଏ ସଂସାର ପଣ୍ଡିତଜନଙ୍କେ ଅନିନ୍ଦ୍ୟ
ଭାରତ-ଜଳ ହ୍ରଦ-ଗିରିରୁ ନିସ୍ୟନ୍ଦ ।
ଇରୂପରେ ମୋହର ହୋଇବ ଗୋବିନ୍ଦ
ଏଥିକି ସାହା ହୁଅ ହୋଇଣ ସ୍ୱଚ୍ଛନ୍ଦ ।
ଆଦି ସଭା ବନପର୍ବକୁ ଗୀତ କଲି
ବିରାଟପର୍ବ ପାଇଁ ବସିଅଛି ଭାଳି ।
ଆଜନ୍ମରୁ ମୁଁ ତ ନୁହଇ ବୁଦ୍ଧି ଶାଳୀ
ମୋତେ ବୁଦ୍ଧି ଦେଇଣ ଆହେ ବନମାଳି ।
କରିଅ ତୁମ୍ଭ ଦାସଜନଙ୍କର ଦାସ
ବିରାଟପର୍ବ କର ମୋ ମୁଖେ ପ୍ରକାଶ ।
ତୁମ୍ଭର ଦୟା ବିନା ଏ ମହାଭାରତ
ସିନ୍ଧୁକୁ ତରିବାକୁ ଅଛି କେ କହତ ।
ମହିମା-ବାତେ ଭେଳା-ବୋଇତକୁ ମୋର
ଉଡ଼ାଇ ନେଇ ପ୍ରଭୁ ଆରପାରି କର ।
ଜନ୍ମେଜୟ ବୋଇଲେ ଆହେ ଦ୍ୱିଜଈଶ
କହିଲ ତ ପାଣ୍ଡବଙ୍କର ବନବାସ ।

କି ରୂପରେ ବିରାଟନଗରରେ ସେ ଯାଇ
ରହିଲେ ଦ୍ରୌପଦୀଙ୍କି ଘେନି ପାଞ୍ଚ ଭାଇ ।
ଦୁର୍ଯ୍ୟୋଧନାଦିରେ ଯେ ନୋହିଲ କରି ଜ୍ଞାତ
ଏ କଥା ମୋର ଆଗେ ପ୍ରକାଶ କର ତ
ବଇଶମ୍ପାୟନ ଯେ ବୋଇଲେ ନୃପଙ୍କୁ
କହିବା ଯେବେ ତାହା ପୁଚ୍ଛୁଛ ଆମ୍ଭଙ୍କୁ ।
ଧର୍ମଙ୍କଠାରୁ ବର ପାଇ ଯୁଧିଷ୍ଠିର
ଅରଣି ଯାଗପାତ୍ର ଦେଇ ଦ୍ୱିଜବର ।
ଭୀମ ଅର୍ଜ୍ଜୁନାଦି ଭାଇଙ୍କର ସଙ୍ଗତେ
କଥା ହୋଇଲେ ବସି ରାଜନ ଏକାନ୍ତେ ।

— ୦ —

## ଅଜ୍ଞାତବାସର ମନ୍ତ୍ରଣା

ବାରବରଷ ତ କଲୁଇଁ ବନେ ବାସ
ତ୍ରୟୋଦଶ ବରଷ ହୋଇଛି ପ୍ରବେଶ ।
କେଉଁଠାରେ ଯାଇଁ ଲୁଚିବା ଆମ୍ଭେମାନେ
କହ ତୁମ୍ଭେମାନେ ବିଚାରି ଏହା ମନେ ।
ଅରଜୁନ ବୋଇଲେ ରହିବାକୁ ସ୍ଥାନ
କହିବି ତୁମ୍ଭ ଆଗେ ଶୁଣ ହେ ରାଜନ ।
ପଞ୍ଚାଳ ଚେଦି ମତ୍ସ୍ୟ ମଲ୍ଲ ପଟଚର
ସୁରସେନ ଦଶାର୍ଣ୍ଣ ଶାଳ୍ୱ ଯୁଗନ୍ଧର ।
ନବରାଷ୍ଟ୍ର ସୁରାଷ୍ଟ୍ର କୁନ୍ତିରାଷ୍ଟ୍ର ଦେଶ
ରହିଛି କେଡ଼ି କୁରୁଦେଶ ଚଉପାଶ ।
ଏଥିରୁ ଯେଉଁ ଦେଶେ ରହିବାକୁ ମନ
ପାଇବ ଭଲ ଯେ କହିବା ଆମ୍ଭେ ସ୍ଥାନ ।
ଯୁଧିଷ୍ଠିର ବୋଇଲେ କହିଲ ଆଚ୍ଛା ଭାଇ
ଧର୍ମଙ୍କ ବୋଲ ଆମ୍ଭେ ଲଙ୍ଘିବା କାହିଁ ।
ମତ୍ସ୍ୟଦେଶେ ବିରାଟ ହୋଇକର ରାଜା
ଶୁଣୁଥାଇ ଧର୍ମରେ ପାଳୁଛନ୍ତି ପ୍ରଜା
ବୟସରେ ପୁଣି ସେ ଅଟନ୍ତି ତ ବୃଦ୍ଧ
ଅନ୍ୟାୟରେ କାହାକୁ ନୁହନ୍ତି ସେ କ୍ରୁଦ୍ଧ
ତାହାଙ୍କ ନଗରେ ରହିବା ଆମ୍ଭେ ଯେବେ
ମନକୁ ପାଉଅଛି ସେ ରଖିପାରିବେ ।
ଶୁଣିଛ ତ ଧର୍ମଙ୍କ କହିବା ବଚନ
ତା କିରୂପେ ଛାଡ଼ିବା ଆମ୍ଭେ ହୋଇ ଜନ ।
କି କର୍ମ କରି ଆମ୍ଭେ ରହିଲେ ତହିଁରେ
ନ ଯିବା ଜଣା ଏହା କହ ମୋ ଆଗରେ ।

ଅର୍ଜ୍ଜୁନ ବୋଇଲେ ତୁମ୍ଭେ ତ ଆମ୍ଭ ରାଜା
ଧର୍ମ ସତ୍ୟ ଦୁଇରେ ବୁଡ଼ାଇଛ ମଜ୍ଜା ।
କେଉଁ କର୍ମ କରିଣ ବିରାଟ ନଗରେ
ରହିବ ତୁମ୍ଭେ ଆଗ କହ ମୋ ଆଗରେ ।
ଦୁଃଖକୁ ତ ତୁମ୍ଭେ ଦେହରେ ନାହିଁ ସହି
କି ରୂପରେ ରହିବ ପରବଶ ହୋଇ ।
ଯୁଧିଷ୍ଠିର ବୋଇଲେ ବିରାଟ ରାଜନ
ପାଶେ ମୁଁ ଯେଉଁରୂପେ ରହିବି ତା ଶୁଣ ।
କଙ୍କ ନାମରେ ଦ୍ୱିଜ ବୋଲାଇଣ ମୁହିଁ
ସଭାରେ ବସିବି ବିରାଟ ପ୍ରିୟ କହି ।
ଏ ବାହାରେ ପଶା ମୁଁ ଖେଳାଇ ତାହାଙ୍କୁ
ହସାଇ ହରିନେବି ସୁଖରେ ଧନକୁ ।
ବିରାଟ ତୁମ୍ଭେ କିଏ ବୋଲି ପଚାରିଲେ
କହିବି ଯାହା ତାହା ଶୁଣ ତୁମ୍ଭେ ଭଲେ ।
ଯୁଧିଷ୍ଠିରଙ୍କର ଅଟଇ ପ୍ରାଣସଖା
କଙ୍କପଣ୍ଡା ମୋ ନାମ ଦ୍ୱିଜ ଜାତି ଶିଖା ।
କଙ୍କ ପଦେ କପଟ ଦ୍ୱିଜ ଅର୍ଥ ହେଲା
ଏଣୁ ମିଥ୍ୟା କହିବା ଦୋଷଟି ଘୁଚିଲା ।
ଭୀମ କେଉଁରୂପେ ରହିବେ ତାଙ୍କ ଘରେ
ପଚାରି କଲା ତାଙ୍କୁ କହନ୍ତି ସେ ଥରେ ।
ଭୀମ ବୋଇଲେ ମୁଁ ରାନ୍ଧି ତ ପାରଇ
ବିରାଟ ରାନ୍ଧୁଣିଆ ହୋଇବି ମୁଁ ଯାଇ ।
ମୋ ରାନ୍ଧଣା ଖାଇଣ ବିରାଟ ରାଜନ
ମୋତେ ରାନ୍ଧୁଣିଆରେ କରିବ ପୂଜନ ।
ବଡ଼ ବଡ଼ କାଠମାନଙ୍କ ଗଣ୍ଡି ମୋଡ଼ି
ବିଧା ମାରିଣ ତାକୁ ଦେବି ମୁହିଁ ଫାଡ଼ି ।
ତହିଁରେ ଚୁଲ୍ଲୀ ଜାଳି ମୁଁ କାଠୁଆଙ୍କର
ବରତନ ମଧ୍ୟ କରିବଇଁ ମୋହର ।
ତାହା ବାରବାର କରି ମୋ ପେଟଗ୍ରାସ
ଯେତେକ ହେବ ତାହା କରିବି ନରେଶ ।
ବିରାଟ ହୋଇଅଛି ମତ୍ସ୍ୟଦେଶ ରାଜା
ତା ପାଇଁ ଯେ ମାଛ ମାଉଁସ ହେବ ଭଜା ।
ତହିଁରୁ ଅଧେ ମଧ୍ୟ ଦେବାଇ ଖାଇବି
ଭୂଣ୍ଡେ ପେଲି ଗଣ୍ଡିକ ମୋଟ କରିଥିବି ।
ଆସିବ ତ ବିରାଟ ଯୋଗାଣକୁ ପଣା
ତାହା ମୁଁ ପିଇବି ନ କରି ପେଟ ଊଣା ।

ହାତୀ ଘୋଡ଼ା ବାଘ ଯେ ମାଲ ସେ ଦେଶକୁ
ଆସିଲେ ଯୁଝିବାକୁ କହିବ ନୃପଙ୍କୁ ।
କହୁଛୁ ତାହାଙ୍କର ନ ନେବ ଜୀବନ
ବଳଦେବ ବଳରେ ବଳକୁ ଦଳନ ।
ଅନୁସରଣରେ ବିରାଟ ମନ ନେବ
ଜାଳ ଜାଣି ଘୃତ ରନ୍ଧଣ ପରଷିବ ।
ସେ ମୋତେ ଡାକିବାବେଳେ ମୁଁ ବୋଲିଆଜ୍ଞା
ନ କରିବ ତାହାଙ୍କ ବଚନ ଅବଜ୍ଞା ।
ପଚ୍ଚରିଲେ କହିବ ଯୁଧିଷ୍ଠିରଙ୍କର
ଅଟେ ହେ ରାଜନ ମୁଁ ମାଲ ସୁପକାର ।
ଏହା ଶୁଣି କରି ବୋଇଲେ ଯୁଧିଷ୍ଠିର
ଅର୍ଜୁନ କି ରୂପେ ଲୁଚିବଟି ମୋର ।
ଯାହାଙ୍କ ବାହୁ ଦୁହେଁ କରିକରୁଁ ବଳ
ପୁଣି ହୋଇଅଛନ୍ତି ଜ୍ୟାଘାତେ ସେ ଦଳ ।
ମହାବଳ ମହାବିକ୍ରମ ତାହାଙ୍କର
ତାହାଙ୍କ ତୁଲେ ସମ ନୁହନ୍ତି ସୁରେଶ୍ୱର ।
ଦେଖିଥାଇ କୃଷ୍ଣଙ୍କ ସହାୟେ ଇନ୍ଦ୍ରଙ୍କୁ
ଜିଣି ଦେଲେ ଖାଣ୍ଡବବନ ପାବକଙ୍କୁ ।
ଏକା ନିଃଶ୍ୱାସକରେ ତିନିଲୋକ ଯାକ
ସଂହାରି ପାରଇଟି ତାହାଙ୍କ ଶାୟକ ।
ବାସୁକିଙ୍କ ଜିଣି ତାହାଙ୍କ ଭଉଣୀକି
ଆଣିଲେ କାମଗନ୍ଧ ନାଶିବା ପାଇଁକି ।
ପ୍ରଳୟ ସୂର୍ଯ୍ୟ ଅଗ୍ନି ପରାୟେ ତ ତେଜ
ପୂରିଥାଇ କଥା କହିବା ବେଳେ ଓଜ ।
ତାପଙ୍କରେ ସୂର୍ଯ୍ୟ ଦ୍ୱିପଦେ ଦ୍ୱିଜବର
ସର୍ପଙ୍କରେ ବାସୁକି ତେଜେ ବୈଶ୍ୱାନର ।
ଆୟୁଧରେ ବଜ୍ର ଚତୁଷ୍ପଦରେ ଧେନୁ
ହ୍ରଦଙ୍କେ ସମୁଦ୍ର ବୃଷ୍ଟିରେ ସ୍ତନୟିତ୍ନୁ ।
ହଂସେ ଧାର୍ତ୍ତରାଷ୍ଟ୍ର ହସ୍ତୀରେ ଐରାବତ
ସୁହୃଦରେ ଭାରଯା ପ୍ରିୟଙ୍କରେ ସୁତ ।
ପର୍ବତେ ହିମବନ୍ତ ଋଷିଙ୍କରେ କୁତ୍ସ
ଗ୍ରହଙ୍କରେ ଚନ୍ଦ୍ର ଦେବସ୍ଥାନେ ମେରୁ ।
ପକ୍ଷୀଙ୍କରେ ଗରୁଡ଼ ବଳରେ ପବନ
ଯେଉଁ ରୂପେ ବଡ଼ ସେରୂପେ ଅର୍ଜୁନ ।
ସବୁ ଧନୁଧାରୀମାନଙ୍କର ମଧ୍ୟରେ
ଅସତ୍ୟ କହୁନାହିଁ ଜାଣ ମୁଁ ସଧରେ ।

କୃଷ୍ଣଙ୍କର ସମାନ ଯାହାଙ୍କର କୀର୍ତ୍ତି
ଖ୍ୟାତ ଯେ ହୋଇଅଛି ଜାଣ ବସୁମତି ।
ଗାଣ୍ଡୀବଧନୁଙ୍କର ଗୁଣଗରଜନ
ଶୁଣିଲେ ଫାଟିଯାଏ ଯୁଦ୍ଧ କଳ ସ୍ଥାନ ।
ପାଞ୍ଚବରଷଟି ଇନ୍ଦ୍ରଙ୍କର ଭବନେ
ରହି ଦିବ୍ୟଅସ୍ତ୍ର ଶିଖିଲେ ତୋଷମନେ ।
ଏ ବାହାରେ ନୃତ୍ୟ ଗୀତରେ ବିଶାରଦ
ଗାଇଲେ ସେହୁ ଗୀତ କରେ କର୍ଣ୍ଣ ମୋଦ ।
ସେ ଲୁଚିବ କିରୂପେ ବସି ମୁଁ ଭାବୁଛି
ମୋ ନେତ୍ରେ ଏଥିକି ଉପାୟ ନ ଦିଶୁଛି ।
ସୋଡ଼ଷ ଫାଳକରେ ମନ୍ତ୍ରପରବତ
କହ ସେ କେଉଁଠାରେ ହୋଇଛି ଗୁପତ ।
ଅଗ୍ନିକି କୁଣ୍ଠାଗୁଡ଼କରେ ଘୋଡ଼ାଇଲେ
ସେ ନିଜ ପରକାଶ ନୁହେ ଆହେ ଭଲେ ।
ଅର୍ଜୁନ ବୋଇଲେ ନପୁଂସକ ହୋଇ
ହୋଇବି ସ୍ତ୍ରୀବେଶ ମୁହିଁ ନରସାଇଁ ।
ଗୁଣକଣ ମୋହର ନୋହିବାକୁ ଦେଖା
ଲଗାଇବି ରଜନ ଦୁଇ ହାତେ ଶଙ୍ଖା ।
କୁଣ୍ଡଳ ଯୋଡ଼ିଏ ମୋ ଗଣ୍ଡ ଦୋହଲାଇ
ଭଣ୍ଡାଇବି ମୁହିଁ ବିରାଟ ନରସାଇଁ ।
ଲେଟି କରି ବେକ ତଳକୁ ବାନ୍ଧି ଜୁଡ଼ା
କରିଥିବି ତହିଁରେ କିଆପତ୍ରୀ ଭିଡ଼ା ।
ଇଟଲା ଫୁଲ ତହିଁ ଆଡ଼ କରି ଦେଇ
କହୁଥିବି ତା ବେକ ତଳରେ ଗଡ଼ାଇ ।
ଗୀତ ବାଦ୍ୟ ନାଟେ ବିରାଟପୁରସ୍ତ୍ରୀ
ମାନଙ୍କରେ ନେବି ଯେ ମୁହିଁ ମନ ହରି ।
ମୋହଠାରୁ ସଙ୍ଗୀତ ଯେ ଶିଖି ଆସିବ
ତାହାକୁ ଶିଖାଇବି ମୁହିଁ କହି ଭାବ ।
ପଚ୍ଚରିବେ ଯେବେ ବିରାଟ ନରମଣି
କହିବି ଦ୍ରୌପଦୀଙ୍କର ଅଟେ ମୁଁ ନାଚୁଣୀ ।
ମୋହର ନିଜ ନାମ ଅଟେ ବୃହନ୍ନଳା
ମତେ ଅଗୋଚର ନାହିଁଟି ନୃତ୍ୟକଳା ।
ଏଣୁ ସକାଶୁଁ ମୋତେ ବିରାଟ ନ ଚିହ୍ନି
ମୋ ବଚନ ମାନି ରହିବ ହୋଇ ତୁନି ।
ଯୁଧିଷ୍ଠିର ବୋଇଲେ ନକୁଳ କିରୂପେ
ରହିବ ତୁମ୍ଭେ ବିରାଟଙ୍କର ସମୀପେ ।

ନକୁଳ ବୋଇଲେ ମୁଁ ଘୁଡ଼ଦେଇ କ୍ରୀଡ଼ା
ବିରାଟଙ୍କର ଘରେ ହୋଇବ ପରିଡ଼ା ।
ଅଶ୍ୱଗ୍ରନ୍ଥ ଜାଣିବାରୁ ମୁହିଁ ଗ୍ରନ୍ଥିକ
ନାମ ମୋର କହିବ ହେ ନରନାୟକ ।
ଅଶ୍ୱଚିକିତ୍ସାରେ କୁଶଳ ମୁଁ ଅଟଇ
ଏଣୁ ତାହାଙ୍କ ଅଶ୍ୱ ପାଳିବଇଁ ମୁହିଁ ।
ମୁଁ ପାଳନ୍ତେ ତାଙ୍କର ଘୋଡ଼ାରୁ ଗୋଟିଏ
ନୋହିବେ ଦୁଷ୍ଟ ଆହେ ଯୁଧିଷ୍ଠିର ରାୟେ ।
ବିରାଟ ନଗରରେ ଏ ସକାଶୁଁ ଜନ
ମାନଙ୍କୁ ଜଣା ନୋହି ହୋଇବ ଆଛନ୍ନ ।
ଯୁଧିଷ୍ଠିର ବୋଇଲେ ସହଦେବ ଭାଇ
ତୁ କିରୂପେ ରହିବୁ ନ କହୁ କିମ୍ପାଇଁ ।
ସହଦେବ ବୋଇଲେ ହୋଇ ତନ୍ତୀପାଳ
ବିରାଟର ରାଜ୍ୟ ପାଳିବି ଗାଈକୁଳ ।
ଦୁଧ ଦହି ଛେନା ଯେ ବିଶେ ବିରାଟକୁ
ଦେଇକରି ତା ମନ ଆଣିବି ମୋଠାକୁ ।
ଗାଈଙ୍କର ଲକ୍ଷଣ ସବୁ ମୁଁ ଜାଣଇ
ଏ ଯେଣୁ ମୋ ପରି ଗଉଡ଼େ ହେବେ ନାହିଁ
ମୋହଠାରେ ଯେ ଗାଈଶାସ୍ତ୍ରଯାକ ଅଛି
ଅଜଣା ହୋଇ ମୋର ନାହିଁ ତହିଁ କିଛି ।
ଯେଉଁ ବୃଷଭଙ୍କର ମୂତକୁ ଶୁଙ୍ଘିଲେ
ବନ୍ଧ୍ୟାସ୍ତ୍ରି ଯାଟି ପୁତ୍ର ପ୍ରସବଇ ଭଲେ ।
ତାହା ମଧ୍ୟ ଜାଣିଅଛି ମୋହର ମନ
ମୋହ କଥାରେ ତୁମ୍ଭେ ନୃପ ହେ ବିମନ ।
ବିରାଟକୁ ଯେଣୁ ବିରାଟ ଦେଶଯାକ
ବସିଲେ ଭାଳ ଚୂପ ନୋହି ମୋ ବିବେକ ।
ଯୁଧିଷ୍ଠିର ବୋଇଲେ ଦ୍ରୁପଦ-କୁମାରୀ
କି ରୂପରେ ଲୁଚିବୁ କହ ତ ବିଚାରି ।
ତୁ ଅଟୁ ରାଜପୁତ୍ରୀ ତମାଳବରନା
ପାଇ ତ ଅଛୁ ପିଲା ଦିନରୁ ଲାଳନା ।
ଦାସୀସେବାରୁ ତ ଗୋଟିଏ ତୁ ନ ଜାଣୁ
ବସନ ବେଶ ଏତା ଦେହକୁ ଗରୁ ମଣୁ ।
ତୋର କେଉଁ ରୂପେ ବିରାଟରାଜ୍ୟ ଜନ
ସରିବ ଏହା ମୋତେ କହ କନା ଧନ ।
ପୁଣି ତ ତୁ ପାଳନ୍ତୁ ପତିବ୍ରତ ଭରେ
ସେ ଧର୍ମ ରହିବ କି ପରବଶ ହେଲେ ।

ଦରଶନ କଲେ ଯେ ତୋ ସୁନ୍ଦର ଅଙ୍ଗ
ନପୁଂସକୁ ଲୋକର ହୋଇବ ଅନଙ୍ଗ ।
ଦ୍ରୌପଦୀ ବୋଇଲେ ମୁଁ ସୈରିନ୍ଧ୍ରୀ ବୋଲାଇ
ରହିବି ତାଙ୍କ ଘରେ ବେଶକାରୀ ହୋଇ ।
ବିରାଟ ଭାରିଯାର ଆଚରି ମୁଁ ବେଶ
ତହିଁରେ କରିଦେବି ତାଙ୍କ ମନ ତୋଷ ।
ଯେଉଁ ଲୋକ ସିଂହାସୀ ହୋଇ ରହିଥାଏ
ତାହାକୁ ତ କେହି ନ ଚିହ୍ନନ୍ତି ହେ ରାୟେ ।
ଏରୂପେ ତ ସବୁରି ଘରରେ ହେଉଛି
ଏଥିକି କିଛି ନ ଭାଳ ହେ କୁନ୍ତିବହ୍ନି ।
ବିରାଟ ପଚାରିଲେ କହିବି ତାହାଙ୍କୁ
କୃଷ୍ଣାଙ୍କ ବେଶକାରୀ ଆସିଛି ଏଠାକୁ ।
ବିରାଟଙ୍କ ଭାରିଯା ସୁଦେଷ୍ଣା ସୁନ୍ଦରୀ
ହେ ନରବର ସେ ହେବେ ମୋ ରକ୍ଷାକାରୀ
ଯୁଧିଷ୍ଠିର ବୋଇଲେ କହିଲୁ ଯା ତୁମ୍ଭେ
ଏକଥା ଭଲକରି ଘେନିଲୁଁ ଯେ ଆମ୍ଭେ ।
ଯେଉଁରୂପେ ଶତ୍ରୁରେ ନୋହିବ ଲକ୍ଷିତ
ତହିଁକି ଜାଗିଥିବ ପ୍ରତିବନ୍ଧ୍ୟମତ ।
ଏହା କହି ପ୍ରିୟାକୁ ଅପ୍ରିୟମନ ହୋଇ
ଧୌମ୍ୟଙ୍କର ମୁଖକୁ କହିଲେ ଅନାଇଁ ।
ଯାଗଅଗ୍ନି ଘେନି ଦ୍ରୁପଦ ନିବେଶନେ
ରହିବା ହେଉ ଯାଇଁ ଆପଣ ତୋଷମନେ ।
ଇନ୍ଦ୍ରସେନ ଆଦି ଯେତେ ମୋ ଲୋକେ ଛନ୍ତି
ଯାଆନ୍ତୁ ତୁଚ୍ଛା ରଥ ଘେନି ଦ୍ୱାରାବତୀ ।
ପଚାରିଲେ ଲୋକେ ବୋଲିବ ତୁମ୍ଭେ ସର୍ବେ
ଜାଣିତ ନାହୁଁ କାହିଁ ଗଲେ ସେ ପାଣ୍ଡବେ ।
ଧୌମ୍ୟ ବୋଇଲେ ଆହେ ଶୁଣ ଯୁଧିଷ୍ଠିର
ସବୁକଥାମାନଙ୍କେ ତୁମ୍ଭେ ତ ଚତୁର ।
ଭାଇଙ୍କର ତୁଲେ ଦ୍ରୌପଦୀଙ୍କର ରକ୍ଷା
କରିଥିବ କହିବାକୁ ଯେ ତୁମ୍ଭ କକ୍ଷା ।
ତୁମ୍ଭଙ୍କୁ କହିବାକୁ କଥା କିଛି ନାହିଁ
କେବଳ କହୁଥାଇଁ ଆତ୍ମ ପ୍ରୀତି ପାଇଁ ।
ରାଜାଙ୍କୁ ଯେଉରୂପେ କରନ୍ତି ଲୋକେ ସେବା
ସେମାନ ଶୁଣ ବସି ବତାଇ କହିବା ।
ପରବଶ ହୋଇଣ ରହିବା କଥାକୁ
ବଳ ଆଉ ନ ଦେଖି ସଂସାରେ ବ୍ୟଥାକୁ ।

ତୁମ୍ଭେ ତ ରାଜପୁତ୍ର ରାଜନୀତି କର
ଜନ୍ମୁ ଆଜଯାଏ ଦେଇଛ ବନ ସାର ।
ଏବେ ତ ହେଉଅଛ ପରର ଆୟତ୍ତ
ଏଣୁ ତା କହିବାର ଆମ୍ଭର ଉଚିତ ।
ଆହେ ଯୁଧିଷ୍ଠିର ପୁରୁଷ ରୂପ ଧରି
ଅଗ୍ନିପରି ଜାଣ ଯେ ଅଟେ ଦଣ୍ଡଧାରୀ ।
ପ୍ରାଣୀମାନଙ୍କର ସେ କରତା ଗୋପତା
ଏହା ବାହାରେ ମଧ୍ୟ ଅଟଇ ବିଧାତା ।
ଏହି ସକାଶରୁ ଟି ରାଜା ଆଜ୍ଞା ହେବ
ଯେବେ ତେବେ ଯାଇଣ ଲୋକଟି ଭେଟିବ ।
ରାଜା ଯେବେ କହିବ ଗୁପ୍ତ କରି କଥା
ତେବେ ତାକୁ ବିଶ୍ୱାସ ନ ଯିବ ସର୍ବଥା ।
ଯେଉଁ ଆସନରେ ବସିଲେ ଲୋକେ ନିନ୍ଦା
ନ କରିବେ ତହିଁ ବସିବ ନୋହି ଧନ୍ଦା ।
ରାଜାର ପ୍ରିୟ ହୋଇ ଗାରିମା ଦେଖାଇ
ରାଜାର ହାତୀ ଘୋଡ଼ା କଲେ ଯେ ଚଢ଼ଇ ।
ତାହାର ଟି କେବେ ନୁହଇ ପଉରୁଷ
ବିଚାରିଲେ ଯୁଧିଷ୍ଠିର ଟି ବଡ଼ ନାଶ ।
ଶଙ୍କା ହେବା ସ୍ଥାନେ ନ ଯିବ କଦାଚିତ
ପଚାରିଲେ ରାଜା କହିବ ଟି ଉଦନ୍ତ ।
ମିଥ୍ୟାକଥାକୁ କେବେ ରାଜାର ଆଗରେ
ନ କହିବ ଲୋକ ବସିଣ ସଭାଗରେ ।
ଅନ୍ତଃପୁର ଯିବା ଲୋକଙ୍କ କୁଳେ ପ୍ରୀତି
ହେଲେ ଉପୁଜଇଟି ତହିଁରୁ ବିପତ୍ତି ।
ରାଜା ଯାହାଠାରେ କରିଣ ଥିବ ଦୁଃଖ
ତାହାକୁ ଦେଖି ମଧ୍ୟ ହୋଇବ ବିମୁଖ ।
ଅଳପ କଥା ହେଲେ ରାଜାକୁ ନ କହି
ନ କରିବ ଲୋକଟି ଜାଣ କହୁଥାଇ ।
ଏରୂପେ ରାଜାକୁ ଜଗି ଯେ ଚାଲିଥାଏ
ତାହାକୁ କେବେ କ୍ରୋଧ ନ କରିବ ରାୟେ ।
ରାଜାର ଭଲ ମନ୍ଦ ଦେଖିବ ଟି ଯେବେ
ଅନ୍ଧ ହେଲାପରି ରହିବ ଜାଣ ତେବେ ।
ପୁଅ ଭାଇ ମର୍ଯ୍ୟାଦା କଲେ ଅତିକ୍ରମ
କରଇ ଟି କ୍ରୋଧ ଶୁଣିଲେ ନରୋତ୍ତମ ।
ଅଗ୍ନିଦେବତାରୁ ଅଧିକ କରି ମାନ
ରାଜା ଆଗେ ବସିଥିବ ହୋଇଣ ତୁନି ।
ରାଜାଠାରେ ଅସାବଧାନ ହେଲେ ନର
ମରଣଟି ମୂଳ ଯେ ହୁଅଇ ତାହାର ।
ଗର୍ବ କ୍ରୋଧ ଦୁହିଙ୍କି ମନୁ ଦେଇ ଛାଡ଼ି
କହିବ ରାଜାଙ୍କୁ ବିନୟଜଳେ ବୁଡ଼ି ।
ସବୁବେଳେ ରାଜାରେ କହୁଥିବ ପ୍ରିୟ
ଲୁଚାଇଥିବ ତା'ର ଯେ ହେବ ଅପ୍ରିୟ ।
ପ୍ରିୟ ଅପେକ୍ଷାରେ ଯେ ହିତକୁ ବିଚାରି
କହୁଥିବ ରାଜାକୁ କା'ରେ ନ ପଚାରି ।
ପଡ଼ିଲେ ରାଜକାର୍ଯ୍ୟ ନୋହି ପ୍ରତିକୂଳ
ଜାଣିବା ଲୋକେ ତହିଁ ହୋଇନ୍ତି ଅନୁକୂଳ ।
ରାଜା ସୁଖ କଲେ ସେବାରେ ତା'ର ଉଣା
କେବେ ନ କରିବ ଟି ହୋଇ ବୁଦ୍ଧିବଣା ।
ରାଜାର ଶତ୍ରୁ ସଙ୍ଗେ ବସଇ ଟି ଯେବେ
ମହା ଶଙ୍କା ତହିଁରୁ ଉପୁଜଇ ତେବେ ।
ରାଜା ବାମ ଦକ୍ଷିଣେ ବସି ଭଲଯାକ
ପଛପଟେ ବସନ୍ତି ରକ୍ଷାକାରୀ ଲୋକ ।
ରାଜାର ଆଗେ କେବେ ନ ବସିବ ଯାଇ
ତହିଁରୁ ଅନ୍ୟାୟ ଟି ହୋଇ କଥା ନାହିଁ ।
ରାଜା ମିଛ କହିଲେ ମନେ ରଖିଥିବ
ଆନ ଲୋକଠାରେ ପ୍ରକାଶ ନ କରିବ ।
ଶୂର ବୋଲି ନଶ ଫୁଲାଇ ରାଜା ଆଗେ
କଥା ନ କହିବ ବସିଣ କେବେ ରାଗେ ।
ରାଜା ଦେବା ସମ୍ପତ୍ତି ପାଇଁ ରାଜା ହିତ
କଥାକୁ ନ ଛାଡ଼ିବ ଯେ ହେବ ପଣ୍ଡିତ ।
ରାଜା ପ୍ରସନ୍ନରେ ନୋହିବା କଥା ହୁଏ
ରାଜା ଅପ୍ରସନ୍ନରେ ଭେଟେ ଯମରାୟେ ।
ସଭାରେ ବସିଥାଇ ଗୁହ୍ୟହାକେ ବାତ
ଛାଡ଼ିଲେ ମହାଲଜ୍ଜା ହୁଏ ଉପଗତ ।
ସେହିରୂପେ ଖଙ୍କାର ପକାଇ ନ ଯିବ
ଯେବେ ପକାଇବ ତା କେହି ନ ଜାଣିବ ।
ହସ କଥା ହେଲେ କରିବ ମନ୍ଦହାସ
ଦୂର କରିଦେଇ ମନରୁ ଅଟ୍ଟହାସ ।
ଲାଭ ହାନି ଯେବେ ହୋଇବ ରାଜାଠାରୁ
ତେବେ ଦୁଃଖ ହରଷ ଛାଡ଼ିଥିବ ଦୂରୁ ।
ରାଜା କୁଳେ ପୂର୍ବେ ଥାଏ ଯେ ଅନୁସରି
ସେହି ଟି ହୁଏ ସବୁଦିନେ ସୁଖକାରୀ ।

ରଜା ଦଣ୍ଡ ଦେଇ ବା ମନ୍ତ୍ରୀ ହେବା ଜନ
ଯେବେ ଘରେ ରହଇ ହୋଇଣ ମଉନ ।
ତେବେ ତାକୁ ବଳେ ଆଣିଣ ସେହି ରଜା
ସମ୍ପତ୍ତି ଦେଇଣ ଆଦରେ କରେ ପୂଜା ।
ରଜା ଗୁଣ ସବୁବେଳେ ଯେ ଗାଉଥାଏ
ତା'ଠାରେ ରଜା ସ୍ନେହ କରେ ଅତିଶୟେ ।
ଯେଉଁ ମନ୍ତ୍ରୀ ରଜାଙ୍କୁ ବଳଆଇ କାର୍ଯ୍ୟ
କରଇ ତାହାର ଟି ହୁଅଇ ଅକାର୍ଯ୍ୟ ।
ରଜା ଗୋଟିଭୁ ଡାକଲେ ଯେବେ ଦଶୋଟି
ଆସିଲେ ହୁଲୁଥାଏ ତହୁଁ ସେ ସୁଖଟି ।
ରଜସେବା ଛଡ଼ିଲେ ପାଶୋର ପ୍ରିୟାସୁଖ
ଯେ ଯାଏ ତାହାର କରଇ ରଜା ସୁଖ ।
ଆପଣା ବେଶ ପରି ସେବକତ ବେଶ
ଦେଖିଲେଟି ରଜା କରଇ ବଡ଼ ରୋଷ ।
ରଜକାର୍ଯ୍ୟେ ଥାଇ ଯେ ରଜଦ୍ରବ୍ୟ ଖାଏ
ଶାକୋଳ ଲଗି ଜାଣ ତାର ଗୋଡଯାଏ ।
ରଜା ଦେଇଥିବାର ଭୂଷଣ ବସନ
ତା ସୁଖ ପାଇ କରୁଥିବ ପରିଧାନ ।
ଏରୂପେ ଅଜ୍ଞାତବାସକୁ ଯୁଧିଷ୍ଠିର
ଆଚରିଲେ ପାଇବ ଦୁଃଖସିନ୍ଧୁପାର ।
ଯୁଧିଷ୍ଠିର ବୋଇଲେ ଧୌମ୍ୟ ମହାମନା
ଏ ଶିକ୍ଷା କେ ଦଅନ୍ତା ମୋରେ ତୁମ୍ଭ ବିନା
ଏହି ଦୁଃଖରୁ ଆମ୍ଭେ ହୋଇବାକୁ ପାର
ଯେ ଉଚିତ ହେବ ତା କର ତୁ ବିଚାର ।
ଧୌମ୍ୟ ପାଣ୍ଡବଙ୍କ ଯିବାରୁ ଶୁଭକର୍ମ
ଆଚରିଲେ ଯେରୂପେ ଶୁଣ ନୃପୋତ୍ତମ ।
ଅଗ୍ନିରେ ମନ୍ତ୍ର ପଢ଼ି ଘିଅ ନଇଡ଼ିଲେ
ଜଣା ନ ଯିବାକୁ ଆଶିଷ ତାଙ୍କୁ କଲେ ।
ପାଣ୍ଡୁସୁତେ ଯେ ଅଗ୍ନି ଭୂଲରେ ଦ୍ୱିଜଙ୍କୁ
ପ୍ରଦକ୍ଷିଣ କରିଣ ନମିଲେ ପାଦକୁ ।
ତଦନ୍ତେ ଦ୍ରୌପଦୀଦେବୀଙ୍କି ଆଗେ କରି
ବାହାରିଲେ ପାଣ୍ଡବେ କରେ ଶସ୍ତ୍ର ଧରି ।
ପାଣ୍ଡୁସୁତେ ଯିବା ଅନ୍ତରେ ଧୌମ୍ୟଋଷି
ଦ୍ରୁପଦଙ୍କ ପୁରେ ରହିଲେ ସୁଖେ ଆସି ।
ପାଣ୍ଡବଙ୍କ ଅଗ୍ନିହୋତ୍ର ତ ନେଇଥିଲେ
ଦ୍ରୁପଦ ଅଗ୍ନିହୋତ୍ର ଘରେ ତା ରଖିଲେ ।

ଇନ୍ଦ୍ରସେନ ଆଦି ରଥ ଘେନିଣ ଏକା
ରହିଲେ ବାସ କରି ଯାଇ ଟି ଦ୍ୱାରକା ।
ଏ ଉତ୍ତରେ ସବିତାସୁତା ଦକ୍ଷିଣର
ତୀରେ ଯାଇଣ ପ୍ରବେଶ ହେଲେ ପାଞ୍ଚଭାଇ ।
ଦେଖିଲେ ସେ ଯମୁନା ଜଳ ଅତି କଳା
ଫୁଟିଣଛନ୍ତି ତହିଁ ପୁଣ୍ଡରୀକ ଭେଳା ।
ପବନ ଘାତେ ତହୁଁ ତରଙ୍ଗ ବାହାରି
ତୁରଙ୍ଗନୃତ୍ୟ ପରି ନିଏ ମନ ହରି ।
ଚଞ୍ଚଳାକୁ ଅବା ସେ ଚଞ୍ଚଳ ଉପମା
ଦିଅନ୍ତାଇ ନ ଥିଲେ ତାହାର କାଳିମା ।
ତା ଦେଖି ପାଣ୍ଡୁସୁତେ କଥାବାର୍ତ୍ତା ହେଲେ
ଏଥିରେ ସ୍ତ୍ରୀଶଙ୍କା ହେଉଛି ବୋଇଲେ ।
ପଦ୍ମ-ମୁଖ ଶିଉଳୀ କାଳେ ହୋଇ ଶୋଭ
କରୁଅଛି ନେତ୍ରେ ବେଣିଙ୍କୁ ଅତି ଲୋଭ ।
ସଫରୀ ନୟନକୁ ଖେଳାଏ ରଙ୍ଗରେ
ନ ଥିଲେ ହେଲେ କେହି ଏହାର ସଙ୍ଗରେ
ଭୁଜ ଦୁଇଗୋଟି ଅଟଇ ଯେ କଲ୍ଲୋଳ
ହେଉଅଛି ଭଲ ଭଙ୍ଗିରେ ଅତି ଲୋଳ ।
ଚକ୍ରବାକ ସ୍ତନ ପୁଳିନ ଯେ ଜଘନ
ଆବର୍ତ୍ତିଟି ଜାଣ ଏ ସ୍ତ୍ରୀର ନାଭିସ୍ଥାନ ।
ଫେନ ଶ୍ୱେତବସ୍ତ୍ରକୁ ଅଛି ତ ପରିହରି
ଇଙ୍ଗକରିଁ ଧାଡ଼ି ନେଉଛି ମନ ହରି !
ଦରଫୁଟା କୁମୁଦ ବ୍ୟାଜରେ କି ହାସ
କରିଣ ନିଜ ଗଣ୍ଡଦେଶରେ ପ୍ରକାଶ ।
ମହୋଦଧି ପତିର ସଙ୍ଗୀତ ସୁରତ
ଇଚ୍ଛା କରି ଦେଖ ହେ ଗମୁଛି ଝଟତ ।
ଏରୂପେ ବିଚାର ବୋଇଲେ ଚାଲ ଚାଲ
ବିଳମ୍ବ କରିବା ନୁହଇ ଆମ୍ଭ ଭଲ ।
ବେଗେ ଗଲେ ସିନା ବିରାଟର ଦେଶକୁ
ତହିଁ ନାଶ କରିବା ଅଜ୍ଞାତ ବାସକୁ ।
ଏ କଥାରେ କି କାର୍ଯ୍ୟ ଅଛି ଏତେବେଳେ
ବୁଡ଼ିଥାଇ ଆମ୍ଭେ ତ ଶୋକ ନଦୀଜଳେ ।
ଏଥିଅନନ୍ତରେ ପାଣ୍ଡବ ପାଞ୍ଚ ଭାଇ ।
ଦେଖିଲେ ବନଗିରି ଶୋଭା ତୋଷ ବହି ।
ସେ ଗିରି ଶିଖରରେ ଫୁଟିଛନ୍ତି ଫୁଲ
ଶୋଭି ରହିଛନ୍ତି ତହିଁକ ଭୃଙ୍ଗକୁଳ ।

ମକରନ୍ଦ ପିଇ ହୋଇ ପରାଗ ବୋଳ
ପାଉଛନ୍ତି ଅତି ଉଚ୍ଚରେ ସେ ବୋବାଳ ।
ଏହା ଦେଖି ବୋଇଲେ ଦ୍ରୁପଦ ରାଜାବର୍ଣ୍ଣି
ଦେଖ ଭୃଙ୍ଗ ଫୁଟିଲା ଫୁଲରେ ବସିଛି ।
ଯୁଧିଷ୍ଠିର ବୋଇଲେ ତା ନାମ ମଧୁପ
ଏଣୁ ଜାଣ ତାହାର ଜ୍ଞାନପଦ ଲୋପ ।
ଦ୍ରୁପଦଙ୍କର ଝିଅ ଏହା ଶୁଣିକରି
ବୋଇଲେ ଏ ସତ ପାଣ୍ଡବ ଦଣ୍ଡଧାରୀ ।
ପାଣ୍ଡବେ ସେ ବନର ମୃଗଙ୍କର ପ୍ରାଣ
ନେଇଲେ ବଧକରି ମାରଣଗଣ ।
ଅଗ୍ନି ଜାଳି ତାହା ପୋଡ଼ିଣ ସବୁ ଭାଇ
ଖାଇ ବୋଲବୋଲ ହୋଇଲେ ଯିବାପାଇଁ ।
ପଞ୍ଚାଳ ସୁରସେନ ଦଶାର୍ଣ୍ଣ ଦେଶକୁ
ଅତିକ୍ରମି ଗଲେ ସେ ବିରାଟ ଦେଶକୁ ।
ଦ୍ରୌପଦୀ ବୋଇଲେ ରାଜନ ମହାଭାଗ
ଦେଖ ଏଠାରୁ ଅଛି ଗୋଟିଏ ଟି ମାର୍ଗ ।
ଏଣୁ ମୁଁ ଜାଣୁଅଛି ଏଠାରୁ ବିରାଟ
ନୃପଙ୍କ ରାଜଧାନୀ ଅଟଇ ନିକଟ ।
ଏବେ ତ ହୋଇଲାଣି ପରବେଶ ରାତି ।
ଦିଶୁ ତ ନାହିଁ ବାଟ ନୟନକୁ ଅତି ।
ମୋ ଦେହରେ ଆସିତ ଘୋଟିଲାଣି ଶ୍ରମ
ଆଜକ ଏହିଠାରେ ରହ ନୃପୋତ୍ତମ ।
ଯୁଧିଷ୍ଠିର ବୋଇଲେ ଅର୍ଜ୍ଜୁନ ମହାବଳ
ଦ୍ରୌପଦୀ ଚାଲିବାରେ ହେଲେଣି ବିକଳ ।
ଏହାଙ୍କୁ ଯେବେ ତୁମ୍ଭେ ବହି ନେବ ବୀର
ତେବେ ଯିବା ବିରାଟପୁରକୁ ସତ୍ୱର ।
ଅର୍ଜ୍ଜୁନ ଯୁଧିଷ୍ଠିର ବଚନ ମାନିଲେ
ଦ୍ରୌପଦୀଙ୍କି ପିଠିରେ ବସାଇ ଚାଲିଲେ ।
ବିରାଟ ନଗର ନିକଟେ ଦ୍ରୌପଦୀଙ୍କି
ବୋଇଲେ ଚାଲ ଏବେ ଛାଡ଼ ମୋ ପିଠିକି ।
ଦ୍ରୌପଦୀ ତାହା ଶୁଣି ଲାଜ ଲାଜ ପାଇ
ଛୁଡ଼ାଦେଲେ ଅର୍ଜ୍ଜୁନ ପିଠି ଗୁଡ଼ାଦେଇ ।
ଏଥୁ ଅନନ୍ତରେ ବୋଇଲେ ଯୁଧିଷ୍ଠିର
ଶୁଣ ଭାଇମାନେ ମୋ କହିବା ଉତ୍ତର ।
ଆୟୁଧ ଧରି ଯେବେ ଯିବା ନଗରକୁ
ଚିହ୍ନାଯିବା ଆମ୍ଭେଟି କହୁଛି ତୁମ୍ଭଙ୍କୁ ।
ସୁନାରେ ତ ଗାଣ୍ଡୀବ ଧନୁପୃଷ୍ଠ ମଣ୍ଡା
ପୁଣି ତ ସେ ବଳରେ ଅଟଇ ଶଉଣ୍ଡା ।
ତାହା ଦେଖି ଆମ୍ଭଙ୍କୁ କେ ଭିଖାରୀଜନ
ବୋଲିବ କହ ଆହେ ପାଉଛି କି ମନ ।
ଜଣା ଯେବେ ପଡ଼ିଯିବାଟି ମହାବନେ
ପୁଣି ଆଉ ଥରେ ବୁଲିବା ଆମ୍ଭେମାନେ ।
ଅର୍ଜ୍ଜୁନ ବୋଇଲେ ଏଠାରୁ ଶ୍ମଶାନ
ଭୂମି ଦିଶୁଅଛି ହୋଇଣ ବିଜନ ।
ଶମୀ ଗଛଟିଏ ଶ୍ମଶାନ ମଧ୍ୟେ ଅଛି
ସେ ପୁଣି ଡାଳମଧ୍ୟେ ବିସ୍ତାର ହୋଇଛି ।
ଆୟୁଧମାନଙ୍କୁ ଆମ୍ଭର ସେ ବୃକ୍ଷରେ
ରଖି ଯିବା ବିରାଟପୁରକୁ ସୁଖରେ ।
ଏହା ଶୁଣି ବୋଇଲେ ରାଜା ଯୁଧିଷ୍ଠିର
ମୋ ମନକୁ ପାଇଲା ତୁମ୍ଭ କହିବାର ।
ଏ ଅସ୍ତ୍ରେ ଦେବଦୈତ୍ୟ ମାନୁଷ ଉରଗ
ମରନ୍ତି ଥିଲା ତାହାଙ୍କର ବଳଭାଗ ।
ଯେଉଁ ଗାଣ୍ଡୀବୁଟି ତାହାଙ୍କର ତୁଳଟି
ମଧ୍ୟରୁ ଅର୍ଜ୍ଜୁନ କାଢ଼ିଲେ ଗୁଣଟି ।
କୁରୁକ୍ଷେତ୍ରେ ରକ୍ଷାକାରୀ ସେ ଯେଉଁ ଧନୁ
ତା ଗୁଣକୁ କାଢିଲେ ଧର୍ମଙ୍କର ସୁନୁ ।
ସଇନ୍ଧବ ଆଦି ଯେତେକ ଶତ୍ରୁକୁଳ
ଯେଉଁ ଧନୁଘୋଷରେ ହୁଅନ୍ତି ଆକୁଳ ।
ପର୍ବତ ଫାଟିବା ପରାୟେ ଯେ ଶବଦ
କରି କର୍ଣ୍ଣ ବେଧ କରାଏ ଯେ ସ୍ତବଧ ।
ସେ ଧନୁର ଗୁଣଟି ଭୀମ ମହାମନା
କାଢିଲେ ନିଜ ହସ୍ତେ କହିଣ ବିମନା ।
ପଶ୍ଚିମଦିଗ ନୃପମାନ ଜିଣି ଧନୁ
ଗୁଣରୁ କାଢ଼ି ଦେଲେ ମାଦ୍ରୀ ଜ୍ୟେଷ୍ଠସୁନୁ ।
ଦକ୍ଷିଣଦିଗଜଣା ଧନୁରୁ ସେରୂପେ
ଗୁଣକୁ କାଢ଼ିଦେଲେ ସହଦେବ ଆପେ ।
ନକୁଳ ଶମୀଗଛ ଉପରେ ଚଢ଼ିଲେ
ଧନୁ ଖଣ୍ଡା ଆଦି ତହିଁରେ ଯେ ରଖିଲେ ।
ମୋଡ଼ା ନ ପଡ଼ିବାକୁ ଗୁଣା ମୁଦଆକୁ
ଖଞ୍ଜିଲେ ନକୁଳ ଏ ଡାଳ ସେ ଡାଳକୁ ।
ପୁଣି ସେ ପାଣ୍ଡୁସୁତେ ମଡ଼ାଟିଏ ଆଣି
ସେ ଗଛର ମଧ୍ୟରେ ବାନ୍ଧିଦେଲେ ଟାଣି ।

ମନେ କଲେ ଏ ମତ୍ତାଗନ୍ଧ ଖାଇ ଲୋକ
ପଳାଇବେ ଦୂରରୁ ବୁଜିଦେଇ ନାକ ।
ଏହିକାଳେ ସେଠାକୁ ଗଜଡ଼େ ଆସିଲେ
ତାହାଙ୍କୁ ଦେଖିକରି ପାଣ୍ଡବେ ଭାଷିଲେ ।
ଶୁଣ ହେ ଗୋପାଳେ ଏ ଆମ୍ଭ ମାତା କୁନ୍ତୀ
ମରିବାରୁ ବାନ୍ଧିଲୁଁ ଗଛରେ ନ ପୋଡ଼ି ।
ଆମ୍ଭ କୁଳଧର୍ମରେ ଅଛି ଏହିରୂପେ
ଏ ସକାଶୁଁ ମାତାକୁ ବାନ୍ଧିଲୁ ପାଦପେ ।
ଏହା କହି ଜୟନ୍ତ ଜୟ ଜୟସେନ
ଜୟବଳ ବିଜୟ ଏରୂପେ ଅଭିଧାନ ।
ବହିଣ ସେଠାରୁ ବିରାଟ ନଗରକୁ
ବାହାରିଲେ ପଦଣ୍ଡ ପକାଇ ଆଗକୁ ।
ବିରାଟଙ୍କ ନଗର ବାହାରେ ରହିଲେ
ଯୁଧିଷ୍ଠିର ଭାଇଙ୍କ କୂଳରେ ଭାଳିଲେ ।
ଜଗତର ଜନନୀ ଦୁର୍ଗତିତାରିଣୀ
ମହାମହିମନ ମହିଷବିନାଶିନୀ ।
ଦୁର୍ଗାଙ୍କର ପାଦରେ କରି ନମସ୍କାର
କଲେ ବିନୟରେ ସ୍ତୁତିକ ଯୁଧିଷ୍ଠିର ।
ହେ ଅମ୍ବୁଜପତ୍ରାକ୍ଷୀ ପଶୁପତି ପ୍ରିୟେ
ହେ ନାରାୟଣି ଦେବାର୍ଚ୍ଚିତେ ମହାମାୟେ ।
ଦୈତ୍ୟଦାନବଘ୍ନି ଶଇଳରାଜସୁତେ
ହେ ବିନ୍ଧ୍ୟନିବାସିନି ସର୍ବାୟୁଧଯୁତେ ।
ସର୍ବଜ୍ଞେ ସରବଗେ ଅଜିତେ ବିନୟେ
ଭଦ୍ରକାଳୀ ଭଦ୍ରେ ଚଣ୍ଡିକେ ନନ୍ଦପ୍ରିୟେ ।
କୈଟଭେଶ୍ୱର କୃଷ୍ଣେ ରୁଦ୍ରାଣି ଗାୟତ୍ରି
ଜାତବେଦସି ବିଶ୍ୱପୂଜିତେ ସାବିତ୍ରି ।
ଶଙ୍କର ଅର୍ଦ୍ଧଶରୀରସ୍ଥେ ଯଶସ୍କରି
ସ୍କନ୍ଦପଦ୍ମାସୁତାନନେ ବାଗୀଶ୍ୱରି ।
ମେନକାସୁତେ ମହାଶାର୍ଦ୍ଦୂଳବାହିନ
କଂସାସୁରଭୟଙ୍କରି ମହେନ୍ଦ୍ରାଣି ।
ପଦ୍ମକିଞ୍ଜଳକବର୍ଣ୍ଣାଭେ କାଳରାତ୍ରୀ
ନାରିଷ୍ଣାମ୍ଭଜେ ସନ୍ଧ୍ୟେ ମହାରାତ୍ରୀ ।
ମହିଷାସୁର ଦେହ ଭେଦ ଶରଯୁତେ
ଶୁଭାନନେ ବ୍ରହ୍ମାଣି ତ୍ରୈଲୋକ୍ୟ ବିଖ୍ୟାତେ ।
ମହାସିଂହରଥାରୁଢେ ଦୁଃଖପ୍ରଦେ
ଭକ୍ତବତ୍ସଳେ ଶିବେ ପ୍ରଚଣ୍ଡେ ସୁଖଦେ ।

ପାତାଳରେ ବାସୁକି ଆଦି ନାଗମାନେ
ତୁମ୍ଭଙ୍କୁ ସେବା କରୁଛନ୍ତି ତୋଷମନେ ।
ଚନ୍ଦ୍ରବଂଶ ଯେ ସୂର୍ଯ୍ୟବଂଶୋଦ୍ଭବ ରାଜା
କରୁଛନ୍ତି ନିତି ତୁମ୍ଭର ପାଦପୂଜା ।
ସ୍ୱର୍ଗପୁରେ ଅମର ଗନ୍ଧର୍ବ ବିଦ୍ୟାଧର
ଅପସରାଗଣ ବସୁ ଆଦିତ୍ୟ କିନ୍ନର ।
ସାଧ୍ୟ ଯକ୍ଷ ଅଶ୍ୱିନୀକୁମାର ପୁଲସ୍ତ୍ୟ
ବାଳଖିଲ୍ୟ ଭୃଗୁ କଶ୍ୟପ ଯେ ଅଗସ୍ତ୍ୟ ।
ପୁଲହ ଅତ୍ରି ପିତୃ ବରୁଣ ଦିଗପାଳ
ଋଭୁ ଗ୍ରହ ନକ୍ଷତ୍ର ସିଦ୍ଧି ଲୋକପାଳ ।
ଏମାନଙ୍କୁ ଘେନିଣ ଶଚୀଦେବୀପତି
ତୁମ୍ଭ ପାଦରେ କରୁଅଛନ୍ତି ଭକତି ।
ତିନିଲୋକଯାକ ତୁମ୍ଭେ ଟି ଧରିଅଛ
ସବୁଙ୍କର ପାଳନା ସଂହାର କରୁଛ
ତୁମ୍ଭ ବିନା ବ୍ରହ୍ମାଣ୍ଡେ କା'ର ନାହିଁ ଚେଷ୍ଟା
ତୁମ୍ଭେ ଟି ଏକା ସତ୍ୟଧର୍ମ ତପନିଷ୍ଠା ।
ଭାଇ ଭାରିଯାଙ୍କୁ ଘେନିଣ ମୁଁ ବିପତ୍ତି
ସମୁଦ୍ରରେ ପଡ଼ି ଯେ ଭାସୁଅଛୁ ନିତି ।
ଏଥିରୁ ହେ ଦୁର୍ଗତିତାରିଣି ତୁମ୍ଭ ଦୟା
ଭେଳା ହୋଇଣ ପାରି କରୁ ଗୁଢ଼ ମାୟା ।
ତୁମ୍ଭର ପ୍ରସନ୍ନରେ ବାରଟି ବରଷ
ବନ ମଧ୍ୟେ ଭ୍ରମିଣ କଲୁ ମୁହିଁ ଶେଷ ।
ଏବେ ଆସି ଅଜ୍ଞାତ ବରଷ-ଆଶୀବିଷ
ଘୋଟିଅଛି ମୋତେ ଯେ କରିବାକୁ ଗ୍ରାସ ।
ମହିମା ଗାରୁଡ଼ୀ ପ୍ରକାଶି ଏ ସର୍ପ
ସନ୍ତାପକୁ ଏବେ ଟି କରିଦିଅ ଲୋପ
ମୋର ରୂପ ଦୃଶ୍ୟକୁ ନୋହିବାକୁ ଦୃଶ୍ୟ
ବିରାଟପୁରେ ମାୟା ଅନ୍ଧାର ପ୍ରକାଶ ।
ପ୍ରସନ୍ନ ହୋଇ ମୋତେ ଦର୍ଶନ ଦିଅ ତୁମ୍ଭେ
ନୋହିଲେ ବିପତ୍ତିରୁ ତରିନାହୁଁ ଆମ୍ଭେ ।
ଏପରିରେ ସ୍ତୁତି କରନ୍ତେ ଯୁଧିଷ୍ଠିର
ଶୁଭିଲା ଆକାଶରୁ ଦୁର୍ଗାଙ୍କ ଉତ୍ତର ।
ଆହେ ଯୁଧିଷ୍ଠିର ତୁମ୍ଭର ଏ ଭକତି
ଦେଖିକରି ଆନନ୍ଦ ହେଲା ମୋର ମତି ।
ଏ ଦୁଃଖ-ଅନଳକୁ ହୋଇ ମୁଁ ପର୍ଜନ୍ୟ
କରିଣ ଦେବି ନାଶ ପାଣ୍ଡବ ରାଜନ ।

ମୋହ ସକାଶୁଁ ତୁମ୍ଭେ ବିରାଟର ପୁରେ
ନ ଯିବ ଜଣା ଭାଇ ଭାରିଯା ସଙ୍ଗରେ ।
ଅଯତ୍ନ କଲେ ହେଲେ ଏ ବରଷ ଯାକ
ସୁଖେ ଯିବ ଜାଣ ହେ ପାଣ୍ଡବ ନାୟକ ।
ତଦନ୍ତେ ତୁମ୍ଭେ କୁରୁମାନଙ୍କୁ ସଂହାରି
ଜାଣ ହସ୍ତିନାରେ ହୋଇବ ଦଣ୍ଡଧାରୀ ।
ଅବସରେ ଗୁପ୍ତରେ ତୁମ୍ଭଙ୍କୁ ମୁହିଁ ରକ୍ଷା
କରିବି କହୁଅଛି ଜାଣ କରି କକ୍ଷା ।
ଏହିରୂପେ କହି ଦେବୀ ମଉନେ ରହିଲେ
ଯୁଧିଷ୍ଠିର ରାଜା ତା ଶୁଣି ସୁଖି ହେଲେ ।
ଆହେ ଜନ୍ମେଜୟ ଏ ସ୍ତୋତ୍ର ଯେ ପଢ଼ଇ
ସମସ୍ତ ବିପତ୍ତିରୁ ଅଚିରେ ତରଇ ।
ବନ୍ଧୁ ସୁତ ଭାରିଯା ତୁଅଇ ତାହାର
ଅନ୍ତେ ଦୁର୍ଗାଲୋକେ କରଇ ଯାଇ ଘର ।
ଏଥି ବାହାରେ ଶ୍ରେୟ ଜୟ ଯଶଲାଭ
ହୋଇଥାଏ ତାକୁ ଟି ସର୍ବଦା ସୁଲଭ ।

—*—

## ପଞ୍ଚପାଣ୍ଡବଙ୍କର ବିରାଟ ସଭାରେ ପ୍ରବେଶ

ଏଥିଅନନ୍ତରେ ରାଜନ ଯୁଧିଷ୍ଠିର
ଲୁଗାଟିକେ ଯତ୍ନରେ ବାନ୍ଧି ପଶାସାରି ।
କାଖେ ଯାକ ବିରାଟ ସମୀପକୁ ଆଗ
ବାହାରି ହେଲେ ଯୁଧିଷ୍ଠିର ମହାଭାଗ ।
କୁରୁବଂଶ କୁମୁଦ ଆନନ୍ଦ ଚନ୍ଦ୍ରମା
ତାହାଙ୍କୁ ଜନ୍ମେଜୟ ଦେଇ ଏ ଉପମା ।
ଅମର ପରି ଦେହଚର୍ମେ ତେଜ ଦିଶେ
ଶୁକଳ ବସ୍ତ୍ର ପିନ୍ଧିଛନ୍ତି କଟିଦେଶେ ।
ଘନ ସେ ରବି ଭସ୍ମେ ଅନଳ ପରାୟେ
ଆବୃତ୍ତ ହୋଇଛି କପଟେ ତାଙ୍କ କାୟେ ।
ବିରାଟଙ୍କର ସଭା ମଧ୍ୟରେ ବଡ଼ୋଜା
ପ୍ରାୟେ ଛିଡ଼ାହେଲେ ପାଣ୍ଡବକୁଳରାଜା ।
ସଭାଲୋକ ମୁଖକୁ ଅନାଇ ବିରାଟ
ବୋଇଲେ ଦେଖ କାହୁଁ ଆସିଲେ ଏ ଭାଟ
ଏହାଙ୍କ ତେଜକୁ ତ ନୁହଁଇ ମୁଁ ସହି
କରୁଛି ଡ଼ାକିବା ହେ ଦ୍ୱିଜ ବୋଲିକରି ।
ରାଜଲକ୍ଷଣରେ ପୂରିଛି ଯାଙ୍କ ଦେହ
ହାତୀ ଘୋଡ଼ା ସଙ୍ଗେ ନାହିଁ କମ୍ପା କହ ।
ଦ୍ୱିଜ ହୋଇଥିଲେ ଜ ସଭା ସରଣୀରେ
ମତ୍ତହସ୍ତୀ ପରି ଏ ପଶନ୍ତେ ସରସରେ ।
ଏକାଳେ ଯୁଧିଷ୍ଠିର ବିରାଟ କଲ୍ୟାଣ
ବାଞ୍ଛିକରି କହିଲେ ଶୁଣ ନରବଣ ।
ସର୍ବସ୍ୱ ମୋର ବାଟୁଁ ଖଣ୍ଡ ପିଟିନେଲେ
ତୁମ୍ଭଠାକୁ ଆସିଛି ରହିବାକୁ ଭଲେ ।
ରାଜା ବିନା ଆନକୁ ଅନୁସରି ନରେ
ଭଲ ହୋଇ ନ ପାରନ୍ତି ଏ ସଂସାରରେ ।
ତୁମ୍ଭେ ତ ରାଜସିଂହ ମୋ ଦୁଃଖ-କଣ୍ଟକ
ଉଦ୍ଧାରି ପାରିବାକୁ ସମର୍ଥ ନୁହଁକ ।
ବିରାଟ ତାହା ଶୁଣି ଆନନ୍ଦରେ ଦେହ
ମୋଟ କରି ବୋଇଲେ କିଏ ତୁମ୍ଭେ କହ ।
ଯୁଧିଷ୍ଠିର ବୋଇଲେ ନାମ ମୋର କଙ୍କ
ପାଞ୍ଚଣ ଥାଏ ଦୁଃଖ ଘେନ ମୁଁ ଆତଙ୍କ ।
ଯୁଧିଷ୍ଠିର ରାଜସଭାରେ ବସିଥାଏଁ
ରସାଇବାକୁ ତାଙ୍କୁ ପଶାକୁ ଖେଳାଏଁ ।
ଗୋତ୍ର ଯେବେ ପୁଚ୍ଛିବ ବୈୟାଘ୍ରପଦ୍ୟଗୋଷ୍ଠୀ
ଜାତି ଦ୍ୱିଜ ଗ୍ରହଣ କରିଛି ସାବର୍ଣ୍ଣୀ ।
ବିରାଟ ବୋଇଲେ ମୁଁ ଖେଳ ତ ପାଇଲି
ଆଜ୍ଞା ହେଲା ତୁମ୍ଭଙ୍କୁ ରଖିବଇଁ ମୁହିଁ ।
ମାଗିବ ଯେବେ ରାଜ୍ୟ ଦେବ ଅଧିକାରି
ଦୁଃଖ ଛାଡ଼ି କଥାକୁ ନ କରି ବିଚାରି ।
ଯୁଧିଷ୍ଠିର ବୋଇଲେ ମାଗୁଛି ତୁମ୍ଭଙ୍କୁ
ମୋ ତୁଲେ ନ ଆସିବେ ମାତେ ଖେଳିବାକୁ
ବିରାଟ ବୋଇଲେ ହେ ସଭାଲୋକ ଶୁଣ
କଙ୍କଠାରେ ଆଚରିବ ଯେ ଅବଗୁଣ ।
ଦ୍ୱିଜ ବୋଇଲେ ତାକୁ ଖେଦଦାଇ ଦେବ
ଆନକୁ ମୁଣ୍ଡକାଟି ଶୂଳି ଦିଆଇବ ।
ନ କହି କଙ୍କ ମୋତେ ମୋ ଘରକୁ ଯିବେ
ଏହାଙ୍କୁ ନିଷେଧ କେ କରିବା ନୋହିବେ ।
ଏହା କହି ବୋଇଲେ ହେ କଙ୍କ ଭୂଦେବ
ଯେ ଯାହା ମାଗିବ ତାକୁ ଦିଆଇବ ।
ଯୁଧିଷ୍ଠିର ତା ଶୁଣି ଆନନ୍ଦ ହୋଇଲେ
ବୋଲୁତ ଲା ରାଜା କରିବ ତା ବୋଇଲେ

କଳା ପୀତ ପସ୍ତ ଲୋହିତ ପଶାସାରେ
ସଭାମଧ୍ୟେ ଖେଳଲେ ବିରାଟ ସଙ୍ଗରେ ।
ଏରୂପେ ପାଣ୍ଡୁଙ୍କର ପ୍ରଥମ ତନୟ
ବିରାଟଙ୍କ ପାଶେ ରହିଲେ ଜନ୍ମେଜୟ ।
ଏ ଅନ୍ତେ ଭୀମ ଗଲେ ବିରାଟନଗରେ .
ଖାପଡାଖାଇ ଖଣ୍ଡା ଖଣ୍ଡେ ଧରି କରେ ।
ତଟୁ ପିଠାପାଣ୍ଡଆ ଦୁହେଁ ଛନ୍ଦି କାଖେ
ଛୁଡା ହେଲେ ଯାଇଁ ବିରାଟରାଜା ପାଖେ ।
ଶିଦ୍ଧଣଛନ୍ଦ ଯେଉଁ ବସନ ଖଣ୍ଡିକ
ବନ୍ଧୁଅଛି କ୍ୟୋଷ୍ଟରେ ସେ କଳାହାଣ୍ଡିକ ।
ତେବେ ହେଲେ ତାଙ୍କର ନ ଭାଜିଲା କ୍ୟୋଷ୍ଟ
ମତ୍ତସିଂହ ପରି ଦିଶିଲା ଛୁଡ଼ା ଭାନ୍ତ ।
ବିରାଟ ଦେଖି ଭୀମସେନର ରୂପକୁ
ପଠାଇ ଆପଣାର ସେବକ ଲୋକଙ୍କୁ ।
ବୋଇଲେ ବେଗେ ଯାଇ ବୁଝ ଏ ପୁରୁଷ
କେଉଁଠାରୁ ଆସିଛି କାହିଁକି ମୋ ପାଶ ।
ଇନ୍ଦ୍ର ଯମ କୁବେର ବରୁଣଙ୍କ ଶୋଭା
ପରାୟେ ଦିଶୁଛି ତ ଏହା ଦେହ ପ୍ରଭା ।
ନୃପଶ୍ରେଷ୍ଠ ବିରାଟ ବଚନ ମସ୍ତକେ
ଘେନି ବାହାରିଲେ ସେଠାରୁ ସେ ସେବକେ ।
ଭୀମଙ୍କ ପାଶେ ଯାଇ ବୋଇଲେ ତାହାଙ୍କୁ
କେଉଁଠାରୁ ଆସିବା ହୋଇଲା ଏଠାକୁ ।
ଆମ୍ଭ ନରପତି ଦେଖିଣ ତୁମ୍ଭ ମୂର୍ତ୍ତି
ପଡ଼ିଅଛନ୍ତି ଆଶ୍ଚର୍ଯ୍ୟ କରି ମତି ।
ଭୀମ ବୋଇଲେ ମୁଁ ତୁମ୍ଭଙ୍କୁ କି କହିବି
ସ୍ଥଳ ସବୁ ରାଜା ଛାମୁରେ ଜଣାଇବି ।
ଏହା ଶୁଣି ସେ ଲୋକେ ଆସ ବୋଲି ତାଙ୍କୁ
ଭେଟାଇଲେ ନୃପଶେଖର ବିରାଟଙ୍କୁ ।
ଭୀମ ବୋଇଲେ ହେ ରାଜନ ମୋର ନାମ
ବଲ୍ଲଭ ଅଟେ ମୁଁ ଜାତିରେ ଦ୍ୱିଜୋତ୍ତମ ।
ରନ୍ଧନରେ ମୋ ପରି ଜଣେ ଆଉ ନାହିଁ
ବୋଲିବ ଯେଉଁ ପିଠା କରିବି ତା ମୁହିଁ ।
ବିରାଟ ବୋଇଲେ ହେ ସୁଆର ବ୍ରାହ୍ମଣ
ପରାଏ ଦିଶୁନାହିଁ ନେତ୍ରକୁ ଆପଣ ।
ଭୀମ ବୋଇଲେ ମୁହିଁ ଯୁଧିଷ୍ଠିରଙ୍କର
ସୂପକାର ବ୍ୟଞ୍ଜନ ଜାଣଇ ଅପାର ।
ଏ ବାହାରେ ତ ମଲ୍ଲଯୁଦ୍ଧ ମୁଁ ଜାଣଇଁ
କଷାବର ପରି ଦେଖ ମୋ ବାହୁ ଦୁଇ ।
ଗଜ ସିଂହ ମହିଷ ବାଘଭାଲୁ ମାନ
ଦଳି ଦେଇପାରେ ମୁଁ ଏମାନଙ୍କ ବଳ ।
ତୁମ୍ଭର ଶୁଣିକରି ଉତ୍ତମ କୀର୍ତ୍ତି
ଆସିଅଛି ରହିବା ଇଚ୍ଛା କରି ମତି ।
ବିରାଟ ବୋଇଲେ ହେ କହିଲ ଯା ମୋତେ
ସତ କରିଣ ତାହା ଦେଖିଲି ମୁଁ ଚିତ୍ତେ ।
ଭାତ ବରତନ ଦେଇଣ ତୁମ୍ଭ କରେ
କରାଇବି ନିଯୁକ୍ତ ଯେ ଗାଣଖଦାରେ ।
ଏହା କହି ସୁଆରମାନଙ୍କ ଅଧିକାରୀ
ବଲ୍ଲଭଙ୍କୁ କଲେ ବିରାଟ ଦଣ୍ଡଧାରୀ ।
ଏଥିଅନ୍ତେ ଯେ ଭୀମ ଭୀମପରାକ୍ରମ
ବୋଇଲେ ହେଲା ସତ୍ୟେ ମୋ ଭାଗ୍ୟ ଉତ୍ତମ
ଏବେ ଯାଉଅଛି ମୁଁ ତୁମ୍ଭର ଖଦାକୁ
ବୁଝ ମୋହର ସ୍ୱାଦ୍ଧ ଜାଣିବା କଥାକୁ ।
ଏହିରୂପରେ ଭୀମ କରନ୍ତେ ଉପାୟ
ନୋହିଲା ଜଣା ଆହେ ଜାଣ ଜନ୍ମେଜୟ ।
ଏଥିଅନ୍ତେ ଦ୍ରୌପଦୀ ସିଂହାସ୍ତ୍ରବେଶ ହେଲେ
ଫିଟି ତ ଥିଲା ବାଳ ତା କାଖେ ଯାକଲେ ।
କଳା ଲୁଗା ଖଣ୍ଡିଏ କରି ପରିଧାନ
ଚେତେବେଳେ ଗତିରେ ମୋହିଲେ ନେତ୍ରମନ ।
ତାଙ୍କୁ ଦେଖି ବିରାଟ ପୁରବାସୀ ନରେ
ଧାଇଁଲେ ତାଙ୍କ ପଛେ ଦେଖିବା ଇଚ୍ଛାରେ ।
ପଚାରନ୍ତେ କାହୁଁ ଗୋ ଆସିଲ ସୁନ୍ଦରୀ
ଦେଖା ତ ନାହିଁ ନାରୀ ଏଥି ତୁମ୍ଭ ପରି ।
ଦ୍ରୌପଦୀ ବୋଇଲେ ମୁଁ ଅଟଇ ସିଂହାସୀ
ଆସିଅଛି ଏଠାକୁ ସେବା ଇଚ୍ଛା କରି ।
ତାହା ଶୁଣି ଲୋକେ ବୋଇଲେ ମିଛକଥା
କହିଲ ତ ଦୂର କରିଣ ଲୋକ ବ୍ୟଥା ।
ସେହି ସମୟରେ ସୁଦେଷ୍ଣା ଝରକାରେ
ବସିଥିଲେ କୃଷ୍ଣାଙ୍କୁ ଦେଖିଲେ ନେତ୍ରରେ ।
ଡକାଇ ଘେନିଯାଇ ପୁଚ୍ଛିଲେ କୃଷ୍ଣାଙ୍କୁ
କେଉଁଠାରୁ ଆସିବା ହୋଇଛି ଏଠାକୁ ।
ଦ୍ରୌପଦୀ ବୋଇଲେ ମୁଁ ସୈରନ୍ଧ୍ରୀ ଅଟଇ
ଆସିଅଛି ତୁମ୍ଭଠାକୁ ଗୋ ସେବାପାଇଁ ।

ସୁଦେଷ୍ଣା ବୋଇଲେ ହେ ତୁମ୍ଭ ପରି ନାରୀ
ସୈରନ୍ଧ୍ରୀ ସେବା କରି ରହିବ କପରି ।
ତୁମ୍ଭର ତ ଗୋଡ଼ର ଗଣ୍ଠି ନ ଦିଶନ୍ତି
ଜଙ୍ଘ ଦୁହେଁ ଚିକ୍କଣ ହୋଇଛନ୍ତି ଅତି ।
ନାଭିସ୍ୱର ସତ୍ୱ ଯେ ଅଟଇ ଗମ୍ଭୀର
ଚାଲିବାର ଭଙ୍ଗୀ ଅଟଇ ମଧ ଧୀର ।
ନିତମ୍ବ କକ୍ଷଯୁଗ ବକ୍ଷ ଦୁଇ କୁଚ
ତୁମ୍ଭର ତ ହୋଇ ଅଛଇ ଅତି ଉଚ ।
ଦୁଇ କର ଦୁଇ ଚରଣ ଯେ ଅଧର
ହୋଇଛି ଅତ୍ୟନ୍ତ ରଙ୍ଗ ଏ ପାଞ୍ଚଙ୍କର ।
ହଂସର ପରି ଗଦଗଦରେ ବଚନ
ବାହାରୁଛି କହିବା ବେଳେ ଅବଚ୍ଛିନ୍ନ ।
ପୁଣି ତ ତୁମ୍ଭେ ହୋଇଅଛ ହେ ଯୁବତୀ
ଦେଖିବା ଜନଙ୍କର ହରୁଅଛ ମତି ।
ପାଚିଥିବା ରସାଳ ପରାୟେ ମାଂସଳ
ଦେହ ଲୁଚାଇଅଛି ଯେ ଶିରା ବିଶାଳ ।
ପୁଣି ଚନ୍ଦ୍ର ସଦୃଶ ହୋଇଛି ଆନନ
ଧିକ୍କାରୁଛି ପଦ୍ମପତ୍ରକୁ ତୋ ନୟନ ।
ନୀଳୋତ୍ପଳ ପରି ବାସୁଛି ଦେହ ଗୋଟି
ନୋହିବ ତିହିଁକି ସୁବାସ ଦ୍ରବ୍ୟ ଯୋଟି ।
ତୁମ୍ଭ ରୂପ ମାଧୁରୀ ନାରାୟଣପ୍ରିୟା
ହୋଇବେ ମୁଁ କହୁଛି ଛାଡ଼ କରି ମାୟା ।
ଦେବୀ ଯକ୍ଷୀ ଗନ୍ଧର୍ବୀ ଦାନବୀ ବିଦ୍ୟାଧରୀ
ମାଳିନୀ ପୁଣ୍ଡରୀକା ଭୁଜଙ୍ଗୀ କିନ୍ନରୀ ।
ଅପସରା-ନଗରଦେବତା ଇନ୍ଦ୍ରାଣୀ
ରୋହିଣୀ ଅଳଂବୁଷା ଉର୍ବଶୀ ବାରୁଣୀ ।
ଏମାନଙ୍କେ କିମ୍ବା ସେ ଅଟ ନାରୀବର
ସତ୍ୟକରି ମୋତେ କହ ତ ଏଥର ।
ଦ୍ରୌପଦୀ ବୋଇଲେ ମୁଁ ନୁହେଁ ଦେବନାରୀ
କହୁଛି ମୁଁ ସତ ଅଟଇ ଗୋ ସହାରୀ ।
ଦେହରେ ଯେତେ ମୋର କହିଲ ଲକ୍ଷଣ
ସେ ହେଲ ରାଜସ୍ତ୍ରିରୀ ପୂଜ୍ୟ ମୁହିଁ ଜାଣ ।
କେଶ କରିବାରେ ମୋହର ପରି ଜଣେ
ନ ଥିବ ଦେଖି କେବେ ନୟନେ ଆପଣେ ।
ଗୁନ୍ଥିଥିବ ଯେବେ ମୁଁ ସେବତୀମାନଆ
ତା ଦେଖିଲେ କମ୍ପଇ ଜନଙ୍କର ହିଆ ।
ମୋ ଘୋରା ଚନ୍ଦନ ହୋଇବ ଯେବେ ବୋଳ
ଗ୍ରୀଷ୍ମ ସମୟେ ବାତ ନ ବସିବ ଜ୍ୱାଳ ।
ବାନ୍ଧିଥିବ ମୁହିଁ ସଜାଡ଼ି ଯେଉଁ ଜୁଡ଼ା
ତା ଦେଖିଲେ ଯୁବାଙ୍କ ହେବ ଘରବୁଡ଼ା ।
ସତ୍ୟଭାମା ଦ୍ରୌପଦୀ ଦୁହିଁଙ୍କ ସେବାରେ
ପୂର୍ବେ ମୁଁ ରହିଥିଲି ରଜନୀ ଦିବାରେ ।
ମୋର ବେଶ ଦେଖି ହୋଇ ସେ ଅତି ସୁଖୀ
ଦେଉଥାଆନ୍ତି ବରତନକୁ ନ ଲେଖି ।
ଦ୍ରୌପଦୀ ଦେଇଥିଲେ ମାଳିନୀ ନାଁ ମୋତେ
ଡାକାଇ ଆଣୁଥାନ୍ତି ନ ଦେଖିଲେ ନେତେ ।
ସୁଦେଷ୍ଣା ବୋଇଲେ ହେ ଅଧିକାରୀ ହୋଇ
ସିଂହାରୀମାନଙ୍କେ ମୋ ଘରେ ଥାଅ ରହି ।
କହୁଅଛି ଏକା ମୁଁ ଗୋଟିକ ପାଳିବ
ମୋ ପତି ବିରାଟଙ୍କୁ କେବେ ନ ଚାହିଁବ ।
ତୁମ୍ଭଙ୍କୁ ତ ଦେଖି ସ୍ତ୍ରିରୀଏ ହେବେ ବାଇ
ପୁରୁଷର ଧଇର୍ଯ୍ୟ ରହିବ ଟି କାହିଁ ।
ଦେଖୁଛ ତ ଆଗେ ଅଛନ୍ତି ଯେତେ ଲତା
ତୁମ୍ଭଙ୍କୁ ଦେଖି ଲଇଁଗଲେଣି ବନିତା ।
ମୋର ସୁଭାଗ୍ୟ ପତିଠାରୁ ନ ଯିବାକୁ
ଏତେରୂପେ ବଢ଼ାଇ କହୁଛି ତୁମ୍ଭଙ୍କୁ ।
ଯେଉଁ ରୂପରେ ଲୋକ ସ୍ୱଇଚ୍ଛାରେ ବିଷ
ଖାଇକରି ଲୋଡ଼ଇ ଆପଣାର ନାଶ ।
ସେହିରୂପେ ତୁମ୍ଭଙ୍କୁ ରଖି ମୁହିଁ ଘରେ
ଜାଣୁଛି ପଡ଼ିବି ଦୁଃସହ ସଙ୍କଟରେ ।
କୃଷ୍ଣା ବୋଇଲେ ମୋ ଗନ୍ଧର୍ବ ପାଞ୍ଚ ପତି
ମୋହ ଛାଇକି ଜଗି ଅଛନ୍ତି ସେ ନିତି ।
ବ୍ରହ୍ମା ରୁଦ୍ର ଇନ୍ଦ୍ର ଯେ ବରୁଣ କୁବେର
ଏମାନଙ୍କେ ଅଦୃଶ୍ୟ ଅଟେ ମୋ ଶରୀର ।
ମନୁଷ୍ୟ ହୋଇ ମୋତେ ଧର୍ଷିବାକୁ କେହି
ଏ ମହୀମଣ୍ଡଳେ ପୁରୁଷ ତ ନାହିଁ ।
ମୁହିଁ ଯାହାକୁ ଆଶ୍ରେ କରିଣ ରହଇ
ତାହାର ମୁଁ ପାଳଚ ସେବା ନ କରଇ ।
କାଳରେ ଯା'ର ବୁଦ୍ଧି ହୁଅଇ ଟି ବଣା
ସେ ପୁରୁଷ ମୋତେ କରଇ ଧରଷଣା ।
ମୋହର ତ ଗନ୍ଧର୍ବ ପତିଏ ଅତି ଦୁଷ୍ଟ
ମୋତେ ଯେ ମନେ କରେ କରନ୍ତି ସେ ନଷ୍ଟ

ମୁଁ ଯେଉଁଠାରେ ଥାଏ ସେ ସେଠାରେ ଥାନ୍ତି
ଜନ ନୟନଙ୍କୁ ତ ଗୋଚର ନୁହନ୍ତି ।
ସୁଦେଷ୍ଣା ବୋଇଲେ ସୈରନ୍ଧ୍ରୀ ଦାସୀବର୍ତ୍ତି
ଏହି କଥା ମୋହର ଲୋଡ଼ା ହେଉଅଛି ।
କାହିଁପାଇଁ ତୁମ୍ଭେ ଘଷିବ ମୋର ଗୋଡ଼
ପାଳିବି ଏ ଅଟନ୍ତି ତୁମ୍ଭଠାରୁ ବଡ଼ ।
ଏରୂପେ ଦ୍ରୌପଦୀ କହିଣ ସୁଦେଷ୍ଣାଙ୍କୁ
ରହିଲେ ତାଙ୍କ ଘରେ ଲୁଚାଇ ରୂପକୁ ।
ଏ ଅନ୍ତେ ମାଦ୍ରିଦେବୀଙ୍କର ସାନବର୍ତ୍ତି
ତଳଣାଟିଏ ପିନ୍ଧି ହେଲେ କାଛକୁଛି ।
ବଇଂଶୀ ସିଂହା ଅଣ୍ଟା ପଟକେ ଖୋଷିଲେ
ପଚରଚାଳରକ ମୁଣ୍ଡରେ ଲହିଲେ ।
ତହିଁପରେ ମୟୂରବରହ କାହାଳ
ବେଳେ ସହଦେବ ସୁନ୍ଦର ହେବ ଭଲ ।
କରେ ବେତ ଧରିଣ କଠାଉ ଗୋଡ଼ରେ
ମଂଡ଼ ବାହାର ହେଲେ ସେ ଧଡ଼ପଡ଼ରେ
ବିରାଟ ଦୁଆର ସମୀପେ ଟାଣଗୋଠେ
ସହଦେବ ଛିଡ଼ା ହୋଇଲେ ଆସି ହୁଷ୍ଟେ ।
ବିରାଟ ଦେଖି ସହଦେବ ସ୍ୱରୂପକୁ
ଭାବିଲେ ଦେବତା କି ଆସିଲେ ଏଠାକୁ ।
ଏହିସମୟରେ ସେଠାରୁ ସହଦେବ
ଆସିଣ ଭେଟିଲେ ବିରାଟ ନରଦେବ ।
ବିରାଟ ଦେଖି ଯେ ବୋଇଲେ କାହୁଁ ତୁମ୍ଭେ
ଆସିଛ ସତ କରି କହ ପୁଛୁ ଆମ୍ଭେ ।
ସହଦେବ ବୋଇଲେ ଜାତିରେ ମୁଁ ବୈଶ୍ୟ
ପାଣ୍ଡୁସୁତାଙ୍କର ଯେ ଅଟଇ ବିଶ୍ୱାସ ।
ଗଉଡ ହୋଇ ଗାଈପାଳ ମୁଁ ରଖଇ
ଦହି ଦୁଧ ଘିଅ ଯୋଗାଣ ଯେ ଦିଅଇ ।
ସେ ତ ରାଜ୍ୟ ଛାଡ଼ିଣ ଆସିଲେ ବନକୁ
ଏଣୁକରି ମୁହିଁ ଆସିଲି ତୁମ୍ଭଠାକୁ ।
ଗଉଡ଼ ବୃତ୍ତି ବିନା ଆନ ବୃତ୍ତି କରି
ଖାଇବାକୁ ଉପାୟ ନାହିଁ ତ ମୋହର
ତୁମ୍ଭର ତ ଗାଈଗୁଡ଼ାଏ ରହିଅଛି
କହ ଏହା ମୁହିଁ ପାଳିବି ନୃପବର୍ତ୍ତି ।
ବିରାଟ ବୋଇଲେ ହେ ତପବର୍ତ୍ତୀ ତେଜ
କହି ମିଛକଥା କହିଲ କଥା ଆଜ ।

କେଉଁଦେଶେ ତୁମ୍ଭେ ହୋଇ କରି ରାଜା
ଲୋକମାନଙ୍କରେ ତ ପାଉଥିଲ ପୂଜା ।
ମୋହଠାକୁ ତୁମ୍ଭେ ଆସିଛ କାହିଁପାଇଁ
କି ଦେଲେ ମୁଁ ତୁମ୍ଭେ ରହିବ ତୋଷ ହୋଇ
ଏମାନଙ୍କୁ ବିଶେଷି ମୋ ଆଗେ କହିଲେ
ତେବେ ମୁହିଁ ତୁମ୍ଭଙ୍କୁ ରଖିବଇଁ ଭଲେ ।
ସହଦେବ ବୋଇଲେ ପାଣ୍ଡବ ମହୀପାଳ ।
ତାହାଙ୍କର ମୁହିଁଟି ଅଟଇ ଗୋପାଳ ।
ମୋ ନାମ ଜଗତେ ବୋଲାଏ ତନ୍ତିପାଳ
ଗାଈଙ୍କ ଚିକିତ୍ସାରେ ଅଟେ ମୁଁ କୁଶଳ ।
ଲକ୍ଷଣ କୋଣ ମଧ୍ୟେ ଯେତେ ଗାଈଛନ୍ତି
ତାହାଙ୍କର ସଂଖ୍ୟା ମୁଁ ଜାଣଇ ନୃପତି ।
ମୋର ଜାଣିବାପଣ ଦେଖି ଯୁଧିଷ୍ଠିର
ଧନରତ୍ନ ମୋତେ ଯେ ଦିଅନ୍ତି ଅପାର ।
ମୁଁ ଯେଉଁ ଗାଈଗୋଷ୍ଠ କରଇ ପାଳନା
ସେ ଗୋଷ୍ଠରେ ବ୍ୟାଧି ନ ପଶେ ମହାମନା
ଯେଉଁ ବୃଷଭର ମୂତ୍ରକୁ ବନ୍ଧ୍ୟାଗାଈ
ଶୁଙ୍ଘିଲେ ଧୂବଗୋଟି ଦିଏ ଉପୁଜାଇ ।
ସେ ବୃଷଭକୁ ଟି ମୁଁ ଦେଖିଲେ ଜାଣଇ ।
ଏଥିରେ ନୃପତି ସନ୍ଦେହ କିଛି ନାହିଁ ।
ବିରାଟ ବୋଇଲେ ମୋ ଗୋଷ୍ଠ ଗାଈପାଳେ
ଅଧିକାରୀ ହୁଅ ହେ ତୁମ୍ଭେ ଟି କାଳଙ୍କେ ।
ଭାତ ବେତନ ଯେ ଇଚ୍ଛା ହେଉଥିବ
ମୋହଠାରୁ ତାହା ଘେନିଣ ଯାଉଥିବ ।
ଆହେ ଜନ୍ମେଜୟ ଗୋପାଳ ରୂପ ବହି
ରହିଲେ ସହଦେବ କା'ରେ ଜଣା ନୋହି ।
ଏ ଅନ୍ତେ ଅର୍ଜୁନ ନାରୀବେଶ ହୋଇ
ଦେଲେ କର୍ଣ୍ଣଦେଶରେ କୁଣ୍ଡଳ ଲଗାଇ ।
ଲୋଟଣି କରି ବେକତଳେ ବାନ୍ଧି ଜୁଡ଼ା
ତହିଁ କଲେ ଇଟାଫୁଲଗଭା ଖଡ଼ା ।
ଶଙ୍ଖା ଦୁଇ ବାହୁ ସେ ଦୁଇ ହାତେ ନାଇ
କନାଶାଢ଼ୀ ଖଣ୍ଡେ ପିନ୍ଧିଲେ ଗୁଡ଼ାଇ ।
ବଳା ଦୁଇପଟ ସେ ଦୁଇପାଦେ ଖଞ୍ଜି
ଅଙ୍ଗୁଳିରେ ଦେଲେ ଗଣ୍ଡାଏ ମୁଦ ମାଜି ।
ଯିବାବେଳେ ଅର୍ଜୁନ ସେ ମୁଦ ଝମକ
ନିଛନ୍ଦା କାମରାଜ ବିଜୟଟମକ ।

ଲମ୍ବିତ ପଡ଼ିଥିଲା ନାକଚଣା ପଟେ
ସୂର୍ଯ୍ୟ କିରଣେ ସେହୁ ତେଜରେ ଚହଟେ ।
ଏ ବେଶେ ଅର୍ଜ୍ଜୁନ ବିରାଟ ସଭାତଳେ
ଛିଡ଼ା ହୋଇଲେ ହାସ ଧରି ଗଣ୍ଡସ୍ଥଳେ ।
ବିରାଟ ଦେଖିକରି ଅର୍ଜ୍ଜୁନଙ୍କ ବେଶ
ବୋଇଲେ କାହୁଁଟି ଆସିଲା ଏ ପୁରୁଷ ।
ଲୋକେ ବୋଇଲେ ଆହେ ନୃପତି ଏହାଙ୍କୁ
ନ ଜାଣୁ ତ ଆମ୍ଭେ କହିବୁ କି ତୁମ୍ଭଙ୍କୁ ।
ବିରାଟ ବୋଇଲେ ହେ କାହିଁକି ପୁରୁଷ
ଏଠାକୁ ଆସିଅଛ ଧରି ଷଣ୍ଢବେଶ ।
କବଚ ଖଡ଼୍‌ଗ ଧନୁଧାରୀ ଲୋକପରି
ଦିଶୁଅଛ ତ ନେତ୍ର ବେନିଙ୍କି ଆମ୍ଭରି ।
ଏଣୁକରି ନପୁଂସକ ବୋଲିଣ ତୁମ୍ଭେ
ବୋଲି ତ ନ ପାରିବୁ ବଚନରେ ଆମ୍ଭେ ।
ରଥ ଚଢ଼ିଣ ଥରେ ଧୂଆଁଅ ଦାଣ୍ଡରେ
ଦିବ୍ୟ ଦିବ୍ୟକାଣ୍ଡ ବସାଇ କୋଦଣ୍ଡରେ ।
ଏ ଗୁଣ ବିନା ଆନ ଗୁଣେ ତୁମ୍ଭ ଦେହ
ନୁହେ ଯୋଗ୍ୟ ମୋତେ କରାଅ ଜଣା ମୋହ
ଅର୍ଜ୍ଜୁନ ବୋଇଲେ ମୁଁ ଅଟେ ନପୁଂସକ
ଗୀତ ବାଦ୍ୟ ନୃତ୍ୟରେ ଅଟଇ ଅଧିକ ।
ରଥ ଘୋଡ଼ା ଯେ କାଣ୍ଡ ଧନୁ ଖଣ୍ଡା ବିଦ୍ୟା
ଜାଣ ଗୋ ବୋଲୁଛ ଆମ୍ଭର ଏ କି ବିଦ୍ୟା
ହେ ନୃପବର ତୁମ୍ଭର ଝିଅ ଉତ୍ତରାଙ୍କୁ
ମୋତେ ଦିଅ ନୃତ୍ୟ ମୁଁ ଶିଖାଇବି ତାଙ୍କୁ ।
ଏବାହାରେ ମୋହର ନାମ ବୃହନ୍ନଳା
ମୋପରି ନାହିଁ ଜାଣିବାକୁ ନୃତ୍ୟକଳା ।
ବିରାଟ ବୋଇଲେ ମୋ ଝିଅ ଉତ୍ତରାକୁ
ଦେଉଅଛୁ ନୃତ୍ୟ ଶିଖାଅ ଟି ତାହାକୁ ।
ପୃଥ୍ୱୀ ଜିଣିବାକୁ ଜାଣୁଛୁ ସମରଥ
ହେବ ତୁମ୍ଭରେ କିଏ କଥା ପୁରୁଷାର୍ଥ ।
ଏହା ବୋଲି ସେ ଅର୍ଜ୍ଜୁନଙ୍କୁ ନଚାଇଲେ
ତାଙ୍କ ନୃତ୍ୟ ଦେଖିଣ ଅତି ସୁଖୀହେଲେ ।
ପୁଣି ବୁଝାଇଲେ ସେ ନପୁଂସକ ଗୁଣ
ଏଣୁ ଶଙ୍କା ହୃଦୟୁଁ ଛାଡ଼ି ସେ ନରରାଣ ।
ଝିଅ ଉତ୍ତରାକୁ ତାହାଙ୍କୁ ସମର୍ପିଲେ
ଏହାଙ୍କଠାରୁ ନୃତ୍ୟ ଶିଖ ତୁ ବୋଇଲେ ।

ବୃହନ୍ନଳା ସେଦିନୁ ବିରାଟ ଝିଅକୁ
ଶିଖାଇଲେ ଯେ ଗୀତ ନର୍ତ୍ତନ ବିଦ୍ୟାକୁ ।
ଆହେ ଜନ୍ମେଜୟ ଏରୂପେ ଅର୍ଜ୍ଜୁନ
ରହି ତାଙ୍କ ରୂପକୁ କଲେ ସେ ଆଚ୍ଛନ୍ନ ।
ଏଥିଅନ୍ତେ ନକୁଳ ବିରାଟ ପୁରକୁ
ଆସିଲେ ଧରିକରି ପରିଡ଼ା ବେଶକୁ
ବିରାଟଙ୍କ ବାଜଶାଳରେ ସେ ପଶିଲେ
ସବୁ ଘୋଡ଼ାମାନଙ୍କ ଲକ୍ଷଣ ଲକ୍ଷିଲେ ।
ଏହି ସମୟରେ ବିରାଟ ନୃପବର
ଦେଖିଲେ ନକୁଳ ଘୋଡ଼ାକୁ ଲକ୍ଷିବାର ।
ବୋଇଲେ କାହୁଁ ଆସି ଦେଖୁଛି ଘୋଡାଙ୍କୁ
ଜାଣଇ କି ପୁଚ୍ଛ ଘୋଡ଼ାଙ୍କ ଲକ୍ଷଣକୁ ।
ମୋହଠାକୁ ବେଗେ ତାହାକୁ ଘେନଆସ
ବୁଝିବା କାହିଁପାଇଁ ଆସିଛି ମୋ ଦେଶ ।
ଏହା ଶୁଣି ଲୋକେ ନକୁଳଠାକୁ ଗଲେ
ରାଜା ଡାକୁଛନ୍ତି ବୋଲିଣ ସେ କହିଲେ ।
ସେ ବୋଇଲେ ମୁହିଁ ଆସିଛି ତାଙ୍କଠାକୁ
ଗ୍ଭଲି ଯିବା ଯେବେ ସେ କଲେଣି ଆଜ୍ଞାକୁ ।
ତାହଙ୍କୁ ସେ ଲୋକେ ଆଣିଲେ ତୋଷବହି
ଭେଟାଇଲେ ନେଇ ବିରାଟ ନରସାଇଁ ।
ନକୁଳ ବିରାଟେ ଦେଖିବାକ୍ଷଣି ବାଣୀ
ଭଣିଲେ ତୁମ୍ଭଠାକୁ ଆସିଛି ନୃମଣି ।
ଘୋଡ଼ାଙ୍କର ଲକ୍ଷଣ ସବୁ ମୁଁ ଜାଣଇଁ
କରିବି ଆଜ୍ଞା ଯେବେ ରହି ବୁଝିବଇଁ ।
ବିରାଟ ବୋଇଲେ ଦେଲି ମୋ ଘୋଡ଼ାକୁଳ
ସତକରି କହ ତୁମ୍ଭେ କାହାର ବାଳ ।
ନକୁଳ ବୋଇଲେ ମୁଁ ଯୁଧିଷ୍ଠିରଙ୍କର
ଅଶ୍ୱ ଅଧିକାରୀ ଗ୍ରନ୍ଥିକ ନାମ ମୋର ।
ପାଳନା କରନ୍ତେ ମୁଁ ଦେଖି ଶାସ୍ତ୍ରବିଧି
ଘୋଡ଼ାମାନଙ୍କର ନୁହଇ ଅଣୁ ଆଧି ।
ଯେତେକ ଘୋଡ଼ାଙ୍କୁ ମୁଁ ଚଢ଼ଇ ରାଜନ
ସମସ୍ତେ ଗୁଣେ ସେ ହୁଅନ୍ତି ପରିପୂର୍ଣ୍ଣ ।
ଡ଼ିଆଁ ଯୋଡ଼ କାଛୁଆ ଭଙ୍ଗିକି ଜାଣନ୍ତି
ଯୁଦ୍ଧକାଳେ କେବେ କାତର ସେ ନୁହନ୍ତି
ବିରାଟ ବୋଇଲେ ମୋ ଘୋଡ଼ାରେ ପରୀକ୍ଷା
ହୋଇକରି ଘୋଡ଼ାଙ୍କୁ କର ତୁମ୍ଭେ ରକ୍ଷା

କନ୍ଦର୍ପ ପରି ଦିଶୁଅଛୁ ତୁମ୍ଭ ରୂପ
ଏ ବେଶ ଏ କର୍ମକୁ ନୁହ ଅନୁରୂପ ।
ରାଜକୁଳେ ଜନମ ହୋଇଥିବ ତୁମ୍ଭେ
ତୁମ୍ଭ ଦେହ ଲକ୍ଷଣୁ ଜାଣୁଅଛୁ ଆମ୍ଭେ ।
ଯୁଧିଷ୍ଠିର ରାଜା ଅଟନ୍ତି କେଉଁଠେ ବାଇ
ତୁମ୍ଭଙ୍କୁ ଛାଡ଼ି ବନେ ରହିଲେ କମାଇଁ ।
ଆହେ ଜନମେଜୟ ଏ ରୂପେ ମାଦ୍ରୀଙ୍କ
ଜ୍ୟେଷ୍ଠପୁଅ ଲୁଚିଲେ ବୋଲଇ ଯାଜ୍ଞିକ ।
ପାଞ୍ଚଭାଇ ଦ୍ରୌପଦୀ ଛଅ ଛଅ କଥା
କହି ନାନା ଜାତି ଛପିଲେ ଛାଡ଼ି ବ୍ୟଥା ।
ଜନ୍ମେଜୟ ବୋଇଲେ ବଇଶମ୍ପାୟନ
ଏ ଅନ୍ତେ ପାଣ୍ଡୁସୁତେ କଲେ କି ବିଧାନ ।
ଏହା ମୋର ଆଗେ କହ ତ ଭଲକରି
ଶୁଣିବାକୁ ଇଚ୍ଛା ହେଉଛି ଯେ ମୋହର ।
ବଇଶମ୍ପାୟନ ବୋଇଲେ ମତ୍ସ୍ୟପୁରେ
ପାଣ୍ଡବେ ଯାହା କଲେ ଶୁଣ ତାହା ଧୀରେ
କୃଷ୍ଣବନ୍ଧୁ ଧର୍ମ ଦୁହିଁଙ୍କ ବର ପାଇ
ଥିବାରୁ ପାଣ୍ଡୁସୁତେ ଜଣାଗଲେ ନାହିଁ ।
ଯୁଧିଷ୍ଠିର ଅକ୍ଷହୃଦୟେ ତ ନିପୁଣ
ଅକ୍ଷେ ମୋହିନେଲେ ବିରାଟ ରାଜାମାନ ।
ବିରାଟ ତ ଖେଳରେ ଧନକୁ ହାରନ୍ତି
ତା ନେଇ ଯୁଧିଷ୍ଠିର ଭାଇଙ୍କି ଦିଅନ୍ତି ।
ଭାଇମାନେ ତାହା କରିଣ କାରବାର
ରାନ୍ଧିବାଢ଼ି ଖାଇଣ ତୋଷନ୍ତି ଉଦର ।
ଭୀମ ତ ବିରାଟର ସୁଆର ହୋଇଥିଲେ
ମାଛ ପିଠା ଅନ୍ନ ଫଠାଇ ସେ ଖାଇଲେ ।
ବାଙ୍କି ଯେତେ ବଳଇ ତା ଯୁଧିଷ୍ଠିରଙ୍କୁ
ଦାନ କରି ଦିଅନ୍ତି ଗଣି ବିରାଟକୁ ।
ଅର୍ଜୁନ ନୃତ୍ୟରେ ବହୁତ ଶାଢ଼ୀ ପାଇ
ସ୍ତ୍ରୀଭାଇମାନଙ୍କୁ ବିକନ୍ତି ତା ନେଇ ।
ସହଦେବ ଯେ ଦହି ଦୁଧ ଛେନା ଘିଅ
ବିକନ୍ତି ନିତି ସେ ଭାଇଙ୍କି ବହି ପ୍ରିୟ ।
ନକୁଳ ଯେତେ ଦ୍ରବ୍ୟ ପାନ୍ତି ଅନୁଗ୍ରହ
ଦିଅନ୍ତି ତ ଭାଇମାନଙ୍କୁ ବହି ସ୍ନେହ ।
ତାହା ଦେଖିକରି ଦ୍ରୌପଦୀ ଚନ୍ଦ୍ରମୁଖୀ
ମନେ ମନେ ହେଉଥାନ୍ତି ସେ ଅତି ଦୁଃଖୀ ।
ପୁନର୍ଜନ୍ମ ହୋଇଲା ପରାୟେ ପାଣ୍ଡବେ
ଦୁଃଖ ସହି ରହିଲେ ଏରୂପେ ଟି ସର୍ବେ ।
ଲୁଚିକରି ଦ୍ରୌପଦୀଙ୍କି ସେ ଦେଖୁଥାନ୍ତି
ନିତି ତାଙ୍କ ଭଲ ମନ୍ଦକୁ ବୁଝୁଥାନ୍ତି ।

— * —

## ଭୀମଙ୍କର ମଲ୍ଲଯୁଦ୍ଧ

ଏ ଅନ୍ତେ କେତେଦିନ ଅନ୍ତେ ବ୍ରହ୍ମୋତ୍ସବ
କାଳ ଜାଣି କଲେ ବିରାଟ ନରଦେବ ।
ମାଲମାନେ ଶୁଣି ସେ ବ୍ରହ୍ମ ଉତ୍ସବକୁ
ଆସିଲେ ସବୁ ଦେଶୁ ବିରାଟ ଦେଶକୁ ।
ସେ ମଲ୍ଲମାନେ ଯେ ଅଟନ୍ତି ବଳଶାଳୀ
ମୋଡ଼ିବା ଘାତେ ବାହୁ ହୋଇଅଛି ବଳୀ ।
ମହୁଡ଼ି ମରିବାରେ ବେକରୁ ପିଠି ଯାଏ
ଫଳ ରହିଅଛି ଆବୁର ପରାୟେ ।
ସେମାନଙ୍କ ଦେହ ତ ଅଟଇ ବିଶାଳ
ଛତାପେଡ଼ି ନନ୍ଦଇ ଛାତିର ବିଶାଳ ।
ବିରାଟ ତାଙ୍କୁ ଦେଖି ଅତି ସୁଖୀ ହେଲେ
ମାଉଁସମିଶା ଘିଅଅନ୍ନ ଦିଆଇଲେ ।
ସେ ମଲ୍ଲମାନଙ୍କୁ ତ ଘୋଟିଅଛି କାଳ
ଖାଇଲେ ସେ ଡିଆଇଁ ଯେ କଳକୁ କଳ ।
ପାଣି ପିଇ ଅଣ୍ଟାକୁ ଆଣ୍ଟରେ ଭିଡ଼ିଲେ
ଟିକଏ ରହିକରି ନିଃଶ୍ୱାସ ଛାଡ଼ିଲେ ।
ତଦନ୍ତେ ବୋଇଲେ ରାଜନ ତୁମ୍ଭଠାକୁ
ଆସିଅଛୁଁ ଡକାଅ ତୁମ୍ଭର ମଲ୍ଲକୁ ।
ତୁମ୍ଭ ମଲ୍ଲ ତୁଲେ ଆମ୍ଭର ଗଡ଼ାଗଡ଼ି
ସୁଖେ ବସି ଦେଖ ହେ ନୟନ ପିଛୁଡ଼ି ।
ଏହାଶୁଣି ବିରାଟ ନୃପଙ୍କ ମଲ୍ଲପଲ
ରହିଲେ ମୁଣ୍ଡ ପୋତି ଛାଡ଼ି ଉତପୁଲ୍ଲ ।
ବିରାଟ ତାହା ଜାଣି ଡକାଇ ବଲ୍ଲଭକୁ
ବୋଇଲେ ଯୁଝ ତୁମ୍ଭେ ଏ ମଲ୍ଲମାନଙ୍କୁ ।
ବଲ୍ଲଭ ବୋଇଲେ ମୁଁ ଅଟଇ ବ୍ରାହ୍ମଣ
ବଜ୍ରପରି ମଲ୍ଲମାନଙ୍କ ବାହୁ ଟାଣ ।
ତାହା ସହିବାକୁ ମୋହର ଦେହ କାହିଁ
ସମରଥ ହେବ ବିରାଟ ନରସାଇଁ ।
ବିରାଟ ବୋଇଲେ ପୂର୍ବରେ କହିଥିଲ
ମଲ୍ଲବିଦ୍ୟାରେ ମୁଁ ଅଟଇ ଅତି ଭଲ ।

ଏବେ ଉମ୍ପା ମଲ୍ଲମାନଙ୍କୁ ନେହେ ଦେଖି
ଜିରି ରହିଅଛ ମନରେ ହୋଇ ଦୁଃଖୀ ।
ବଲ୍ଲଭ ବୋଇଲେ ହେ ବୋଲୁଅଛ ଯେବେ
ପାରୁଁ ନପାରୁଁ ବା ଯୁଝିବୁଁ ଆମ୍ଭେ ତେବେ ।
ଆହେ ଜନ୍ମେଜୟ ଏରୂପେ ବିରାଟଙ୍କୁ
କହି ଆଣ୍ଠେ ଅଣ୍ଟାରେ ବାନ୍ଧିଲେ ଲୁଗାକୁ ।
ବାମବାହୁ ଉପରେ ମାଇଲେ କରପୋଡ଼
ସେ ଶବଦ ବଜ୍ରଧ୍ୱନିକି ହେଲା ବଡ଼ ।
ତା ଶୁଣି ବିରାଟ ବୋଇଲେ ଅମାନୁଷ
କର୍ମ ଦେଖିଲଇଁ କି ଭଲା ଏ ମନୁଷ୍ୟ ।
ଜୀମୂତ ନାମେ ମଲ୍ଲ ମଲ୍ଲଙ୍କେ ବଳୀୟାର
ଆଗ ତାକୁ ଡାକିଲେ ଭୀମସେନ ବୀର
ତୁମ୍ଭେ ଆମ୍ଭେ ଦୁହେଁ କରିବା ମଲ୍ଲଯୁଦ୍ଧ
ବିରାଟ ନୃପତି ତ କରିଛନ୍ତି ସଧ ।
ତାହା ଶୁଣି ମଲ୍ଲ ବୋଇଲା ହୋଇ ବାଇ
ଡାକିଲୁ ଯେବେ ଆସ ଯୁଝିବା ହେ ଭାଇ ।
ଷାଠିଏ ବରଷିଆ ହାତୀ ଯେଉଁ ରୂପେ
ଯୁଝନ୍ତି ସେ ଦୁହେଁ ଯୁଝିଲେ ସେହି ରୂପେ ।
ଅନ୍ୟୋନ୍ୟରେ ଦୁହେଁ ଜୟକୁ ଇଚ୍ଛା କରି
ହୋଇଲେ ସେ ମୁଣ୍ଡକୁ ମୁଣ୍ଡ ମରାମରି ।
ସେ ଘାତରୁ ଧୂମ ଜ୍ୱଲରେ ଯେ ବହୁତ
ଜାତବେଦକଣା ହୋଇଲା ଉପଜାତ ।
ସେ ଦୁହେଁ ହସ୍ତ ମୁଠା କରିଣ ଅସ୍ତ୍ରକୁ
ମରାମରି ହୋଇଲେ ଦେଖାଇ ଗାଲକୁ ।
ଜାନୁରେ ଜାନୁ ବାହୁ ଦେହେ ଛନ୍ଦି ଦେଲେ
ଭିଡ଼ାଭିଡ଼ି ହୋଇ ମହୀରେ ସେ ଗଡ଼ିଲେ ।
ସେହି ସକାଶୁ ଉଡ଼ିକରି ଧୂଳମାଳୀ
ରହିଲା ମାଡ଼ିକରି ସୂର୍ଯ୍ୟଙ୍କ ମଣ୍ଡଳୀ ।
ପୁଣି ଫିଙ୍ଗାଫିଙ୍ଗି ଅନ୍ୟୋନ୍ୟରେ ସେ ହେଲେ
ଝିଙ୍କାଝିଙ୍କି ହୋଇଣ ଯୁଦ୍ଧ ଆରମ୍ଭିଲେ ।
ସୁଗ୍ରୀବ ବାଳି ପରି ସେ ଦୁହିଁଙ୍କ ରଣ
ସେ କାଳେ ଶୋଭା ହେଲେ ଜନ୍ମେଜୟ ଜାଣ
ଏ ଅନ୍ତେ ଭୀମ ମଲ୍ଲ ଦୁଇ ବାହୁ ଧରି
ବୁଲାଇଲେ ବେଗରେ ଚହାକାର କରି ।
ପୁଣି ତାକୁ ଭୂମି ଉପରେ କଚାଡ଼ିଲେ
ମାଡ଼ିବସି ପେଟ ବୁକୁକୁ ଦଳିଦେଲେ ।

ଏ ସକାଶୁ ମଲ୍ଲର ଦୁଇ ଆଖି ଫାଟି
ବାହାରି ଗଲା ଦେହୁଁ ଲକ୍ଷିତ ପ୍ରାଣୁଟି ।
ତା ସଙ୍ଗେ ଥିବା ମଲ୍ଲେ ତାହା ଦେଖି ଡରି
ବଲ୍ଲଭ ଭୂଜେ ଯୁଦ୍ଧ କଲେ ରାଗ ଧରି ।
ବଲ୍ଲଭ ସେ ମଲ୍ଲଙ୍କ ଘେନିଣ ପରାଣ
ଭେଟିଲେ ଯାଇଁ କରି ମତ୍ସ୍ୟନରରାଣ ।
ବିରାଟ ତାହା ଦେଖି ବହୁ ପ୍ରଶଂସିଲେ
ବସ୍ତ୍ର ରତ୍ନ ଦେଇ ତାହାଙ୍କୁ ତୋଷିଲେ ।
ଏ ଅନ୍ତରେ ବିରାଟ ବଲ୍ଲଭଙ୍କୁ ଘେନି
ଭିତରକୁ ଗଲେ ଗ୍ରହିଣ ସେ ଆସ୍ଥାନ ।
ବାଘ ସିଂହ ଭାଲୁ ବରାହ ଅଣାଇଲେ
ବଲ୍ଲଭଙ୍କୁ ତାଙ୍କ ସଙ୍ଗତେ ଯୁଝାଇଲେ ।
ସ୍ତ୍ରୀମାନଙ୍କର ଠାରୁ ଯେ ରତ୍ନ ଧନ
ହିଆଇଁ ବଲ୍ଲଭର ତୋଷକଲେ ମନ ।
ଅର୍ଜୁନ ଯେ ବୃହନ୍ନଳା ହୋଇଥିଲେ
ସେ କାଳେ ସେ ଆସିଣ ନୃତ୍ୟ ଦେଖାଇଲେ
ତାହାଙ୍କୁ ଧନ ରତ୍ନ ବସ୍ତ୍ର ଦେଇ ଦାନ
ବହୁତ ପ୍ରଶଂସିଲେ ବିରାଟରାଜନ ।
ନକୁଳ ସେହିରୂପେ ଚଢ଼ିଣ ଘୋଡ଼ାକୁ
ଦେଖାଇଲେ ସମ୍ଭାଦ ଥିବାର ଗୁଣକୁ ।
ବିରାଟ ତାହ ଦେଖି ବୋଲି ଆଚ୍ଛା ଆଚ୍ଛା
ବସ୍ତ୍ର ରତ୍ନ ଦେଲେ ଯେ କରିଣ ଅବସ୍ଥା ।
ସହଦେବଙ୍କର ସେ ଗାଈରକ୍ଷା ଦେଖି
ଧନବସ୍ତ୍ରଦେଲେ ତାହାଙ୍କୁ କି ନ ଲେଖି ।
ବିରାଟଙ୍କ ନଗରେ ଏହିରୂପେ କର୍ମ
ଆଚରି ପାଣ୍ଡୁସୁତେ ଲୁଚିଲେ ମାନ ଧର୍ମ ।
କ୍ରମଶରେ ଦଶମାସ ହୋଇଲା ଶେଷ
ଦ୍ରୌପଦୀ ସୁଦେଷ୍ଣାଙ୍କ ସେବାରେ ମାନସ ।
କପଟରେ ବଳାଇ ମହାଦୁଃଖ ପାଇ
ରହିଲେ ଶରୀରକୁ କ୍ଷୀଣ କରି ଦେଇ ।

—*—

## ଦ୍ରୌପଦୀଙ୍କ ସହିତ କୀଚକର ସାକ୍ଷାତ ଓ ମିଳନବାଞ୍ଛା

ଦିନେ ସେ ସୁଦେଷ୍ଣାଙ୍କ ଘରେ ବୁଲୁଥିଲେ
ଦଇବରେ କୀଚକଆଗରେ ପଡ଼ିଲେ ।

କୀଚକ ତାହାଙ୍କର ମୁଖଚନ୍ଦ୍ର ଦେଖି
ଫିଛାଡ଼ ନ ପାରିଲା ତା'ର ଦୁଇ ଆଖି ।
ତା ମନ-ମୀନୁଟିକ ଦ୍ରୌପଦୀ କୁଚ-କୁମ୍ଭ
ଶୋଭା-ଜଳେ ରଖିଲା ଛାଡ଼ିକରି ଦମ୍ଭ ।
କୀଚକର ଦେହ-ତୃଣକୁ ସେ ମଦନ
ବହନ ବିସ୍ତରି କରିବ ଦହନ ।
ତାହା ଜାଣି ପାରଣ ଧଇର୍ଯ୍ୟ ନ ରହି
କୀଚକର ଦେହରୁ ଗଲା ଆଡ଼ ହୋଇ ।
ଏହିରୂପେ କୃଷ୍ଣାଙ୍କଠାରେ ରଖି ତୃଷ୍ଣା
ହେବାରୁ ଗଲା ଯହିଁ ଥିଲେ ସେ ସୁଦେଷ୍ଣା ।
କହିଲା ହସିକରି ତୁମ୍ଭ ଘରେ ନାରୀ
ଗୋଟିଏ କେଉଁଠୁ ରହିଛି ଆସିକରି ।
ତା ସୁନ୍ଦରପଣକୁ ରମ୍ଭା ତିଳୋତ୍ତମା
ମୋ ମନକୁ ପାଉଛି ନୋହିବେ ଉପମା ।
କାହା ଝିଅ କାହା ଭାରିଯା ସେ ରମଣୀ
ସତ କରି ମୋଆଗରେ କହ ତୁମ୍ଭେ ବାଣୀ ।
ମନମଥ-ମନମଥିନୀ ସେହି ନାରୀ
ମୋ ମନ ମନ୍ଥିବା ବଡ଼ କି ବୋଲପାରି ।
ତୁମ୍ଭ ଘରେ ଦାସୀ ସେବାରେ ସିନା ଅଛି
ଏଣୁ ଦିଅ ମୋତେ ତୁମ୍ଭଙ୍କୁ ମୁଁ ମାଗୁଛି ।
ମୋ ଘରରେ ତାକୁ ଦେଇଣ ଅଧିକାର
ଏ କାମ ସନ୍ତାପକୁ କରିବି ମୁଁ ଦୂର ।
ମୋ ଘରେ ସ୍ତ୍ରୀରତ୍ନ ବିନା ସବୁ ରତ୍ନ
ରଖିଛି ମୁଁ ସୁଦେଷ୍ଣା କରି ଅତି ଯତ୍ନ ।
ଏବେ ଏ ସ୍ତ୍ରୀରତ୍ନ ନେଲେ ଇନ୍ଦ୍ରଭୂତ
ସ୍ଥିର କରି ମଣିବ ଜାଣ ମୋର ମତି ।
ଏରୂପେ ସୁଦେଷ୍ଣାଙ୍କୁ କହିଣ କୀଚକ
କାଳ ବଶେ ହରାଇ ଆପଣା ବିବେକ
ସିଂହୀଠାକୁ ବିଲୁଆ ଗଲା ପ୍ରାୟେ ହୋଇ
ଗଲା ଯହିଁ ଥିଲେ ଦ୍ରୌପଦୀ ଚନ୍ଦ୍ରମୁହାଁ ।
ବୋଇଲା କେଉଁଠାରୁ ଆସି ରମାବର
ବିରାଟ ଅନ୍ତଃପୁରେ କରିଅଛୁ ଘର ।
ନବଘନ ତମାଳ ଇନ୍ଦ୍ରନୀଳମଣି
ଶୋଭାକୁ ତୋର ରୂପ ଅଛି ଜିଣି ।
ତୋ ତନୁ ତ ଶିରୀଷ ଲବଣୀ ପରାୟେ
କୋମଳତା ହରିଅଛି ଯେ ଅତିଶୟେ ।
ତୋ ମୁଖକୁ ହାରିଣ ଶଶାଙ୍କ ନିର୍ମଳ
ଗୃହ ଛାଡ଼ିଣ ବହିଛନ୍ତି କି ଆକୁଳ ।
ତୋହର ନେତ୍ରଯୁଗ ଦେଖି କି କମଳ
ଡରି କରି ଜଳ କି ପଶି ସେ କମଳ ।
ତୋର ନେତ୍ରେ ପଲକ ସ୍ବଭୁସି କରୁସି
ହୋଇ ଦେଉଅଛି ମୋ ଧୈର୍ଯ୍ୟକୁ କତୁରି ।
ତୋର ଭୂରୁବେନକ ଉପମା ତ ନାହିଁ
କାମ ଧନୁ ବୋଲିବ ଜାଣୁ ଜାଣୁ କେହି ।
ତିଳଫୁଲ ଧିକାରୁଛି ତୋ ନାସାପୁଡ଼ା
କରିଦେଇ ଯୁବା ଜନଙ୍କୁ ଘରବୁଡ଼ା ।
ତୋ ଅଧର ବନ୍ଧୂକମଧୁ ଯେ ପିଇଛି
ସ୍ବର୍ଗରେ ବାସ ତା'ର କେଉଁ ଲୋଡ଼ା ଅଛି ।
ଇନ୍ଦୁଖଣ୍ଡ ପରାୟେ ତୋର ଗଣ୍ଡଖଣ୍ଡ
ଯେ ଚୁମ୍ବ ଦେଇଥିବ ଧନ୍ୟ ତାର ତୁଣ୍ଡ ।
ତୋର ବାହୁବେନ ତ ନୀଳୋତ୍ପଳ ମାଳା
ଲମ୍ବାଇଛି ଯେତୁ ଟି ଧନ୍ୟ ତା'ର ଗଳା ।
ତୋ ଦେହ-ଶୋଭା ଯେବେ ଦେଖିବ ଅନଙ୍ଗ
ଛାଡ଼ିଣ ଦେବ ରତିଠାରୁ ରତିରଙ୍ଗ ।
ତୋହର କୁଚ ଶମ୍ଭୁ ସେବା ଯେ କରିଛି
କାମଭସ୍ମ ତାହାର ହୃଦୟୁ ଛାଡ଼ିଛି ।
ଯାହାର ଦେହେ ତୋର ଜଡ଼ିଥିବ ତନୁ
କିସ କରିପାରିବ ତାହାର ଅତନୁ ।
ତୋହର କଟି ସିଂହ ଡମରୁ ବିସର୍ଗ
ଶୋଭାଧନ ଲୁଟି ଆଣିଛୁ କରି ରାଗ ।
ବିହରି ସିନ୍ଧୁ ତରିବାକୁ ତୋଜାନୁ ଭେଳା ।
ଯାରେ ଆଶ୍ରେ ହୋଇଥିବ ସେ ଧନ୍ୟ ବାଳା
ମୋ ମତରେ ମୁହିଁ ତ ହେଲିନ ତୋ ଦାସୀ
ମୋହରଠାରୁ ଶେଷ ଛାଡ଼ରେ ସୁକେଶି ।
ତୋ ବଚନ-ଜଳ ମୋ ଉପରେ ବରଷ
କାମ-ଅନଳକୁ ମୋହର ବେଗେ ନାଶ ।
ତୋର ଭୂରୁ-ଧନୁରେ ଯୋଖି ନେତ୍ର-ବାଣ
ବିନ୍ଧ ଯେବେ ଅଛି ମୋହର ଅବଗୁଣ ।
ହାସ-ଖଡ଼ଗକୁ ପ୍ରକାଶି ତୁ କୋପରେ
ପ୍ରହାର କର ଆଣି ମୋହର ଉପରେ ।
କରଜ-କୁନ୍ତେ ପେଟଅନ୍ତ ମୋର କାଢ଼ି
ପକାଅ ନ ବସ ମାନକୁ ମନେ ବାଢ଼ି ।

ଏରୂପେ ନୋହିଲେ ବାନ୍ଧ ତୋ ବାହୁପାଶେ
ସୁମନା ସୁମନରେ ରଖ ତୋର ପାଶେ ।
ମୋ ପରି ପୁରୁଷକୁ ତୋହ ପରି ନାରୀ
ଖୋଜି ଦେଲା ଜାଣିକରି କି ଗୁଣଧାରୀ ।
ତୁ ଏବେ ଲଜ୍ଜାଇ ନ କହୁ ମୋତେ କଥା
କହ ମୋ କଥାକୁ କି ପାଉଅଛୁ ବ୍ୟଥା ।
ସୁଦେଷ୍ଣାଠାରେ ଅଛୁ ଦାସୀ ସେବା କରି
ମୋ ସଙ୍ଗେ ପଡ଼ ଦେବୁ ତା ମନୁ ପାଶୋରି
ମୋହ ପୁରରେ ମୋତେ ସ୍ନେହି ପ୍ରାଣଧନ
ଶୋଇକରି ବଞ୍ଚିବୁ ସୁଖେ ସ୍ୱଚ୍ଛ ଦିନ ।
ଯେତେ ମୋ ସମ୍ବନ୍ଧରେ ଅଛନ୍ତି ନାରୀ
ତୋହର ସେ ଜାଣ ହୋଇବେ ପରିଚାରୀ ।
ତୋହର ମନକୁ ଯେଉଁ ବସ୍ତ୍ର ଅଳଙ୍କାର
ଆସିବ ତା ଦେଉଥିବି ମୁଁ ନାରୀବର ।
ବର ବରନା ମୋହଠାରେ ତୁ ବିମନା
ନୋହିକରି କହୁଛି ଥରେ ମୋତେ ଅନା ।
ଏ ବୟସ ତୋର ପୁରୁଷ ବିନା ନାରୀ
ଦେଖୁ ଦେଖୁ ଦେଖ ଗୋ ଯାଉଛି ସରି ।
ଦ୍ରୌପଦୀ ବୋଇଲେ ମୁଁ ଅଟଇ ସୈରନ୍ଧ୍ରୀ
ମୋତେ ଦେଖି ଲଜ୍ଜାଇ କାମେ ହୁଅ ଲୁବ୍ଧ ।
ମୋ ପ୍ରତି ତୁମ୍ଭର ନାରୀଏ ଶତ ଗୁଣ
ହୋଇଛନ୍ତି କାମ କଳାରେ ନିପୁଣ ।
ତାଙ୍କ ସଙ୍ଗ-ବିଳାସ-ଜଳକୁ ହେ ସିଞ୍ଚି
ଦଗ୍ଧ କାମ ଅନଳ ସନ୍ତାପକୁ ମୁଞ୍ଚି ।
ପର ଦାରଠାରେ କରଇ ଯେହୁ ମନ
ନରକଟି ତାହାର ହୁଅଇଟି ସ୍ଥାନ ।
ମୁହିଁ ତ ପରନାରୀ ହୋଇଛି ସିଂହାରୀ
ମୋତେ ଆଉ ନ କହ ବଚନ ଏପରି ।
ଉତ୍ତମ ଲୋକମାନେ ପରସ୍ତ୍ରୀ ସଙ୍ଗ ।
ଛାଡ଼ନ୍ତି ଦେହେଁ ଜାତ ହୋଇଲେ ଅନଙ୍ଗ ।
କୀଚକ ଦ୍ରୌପଦୀ କଥାରେ ଅବୋଧ
ହୋଇଲା ଅସୁଖିକି ଯେସନେ ଔଷଧ ।
ବୋଇଲା ଗୋ ବରରମ୍ଭୋରୁ ସୁବଦନା
ମୋତେ କିମ୍ପା ଏରୂପେ କରୁଛୁ ତୁ ମନା ।
ମୋହପରି ଗୁଡ଼ ସୁନ୍ଦର ପୁରୁଷକୁ
କହ ତ ଆଉ ପ୍ରତି କରିବୁ କାହାକୁ ।

ମୋର ବାହୁବଳକୁ ପାଇଣ ବିରାଟ
ଦେଖ ପାଳୁଅଛି ସୁଖେ ଏ ମତ୍ସ୍ୟରାଷ୍ଟ୍ର ।
ଏହି ରାଜ୍ୟରେ ମୁହିଁ କରିବଟି ଯାହା
ଅନ୍ୟଥା କରିବାକୁ କେହି ନାହିଁ ତାହା ।
ତୋର ନାହିଁ କରିବା କଥା କି ରହିବ ।
ଯାହା ମୁଁ ମନେ କରିଅଛି ତାହା ହେବ ।
ଅଇଁଠା ପୋଛିବାରେ କିମ୍ପା ଅଛୁ ମାତି
ଗୋବରଗନ୍ଧେ ତୋତେ ମାଡ଼ୁ ନାହିଁ ବାନ୍ତି
ମୋ ସଙ୍ଗେ ବିହରିଲେ କର୍ପୂର ଚନ୍ଦନ
ନିତି ବୋଳ ହେବ ତୋହର ଅପଘନ ।
ଦ୍ରୌପଦୀ ବୋଇଲେ କୀଚକ ହେଲ ବାଇ
ତୁମ୍ଭ ସମ୍ପତ୍ତିକି ମୋ ମତି କି ଭୁଲାଇ ।
ମୋର ତ ଗନ୍ଧର୍ବେ ପାଞ୍ଚୋଟି ପତି ଛନ୍ତି
ମନ କଲେ ଦେଇ ପାରନ୍ତି ସବୁ ଭୂତି ।
ତୁମ୍ଭ ଦେହେ କାଳଦେବତା ତ ଘୋଟିଛି
ଏଣୁ ଅଣଆସୂତ୍ରେ କଥା ବାହାରୁଛି ।
ଜାଣି ଜାଣି ଇଚ୍ଛାରେ ଖାଇକରି ବିଷ
ପଛରେ ବୋଲିବ କି କରମର ଦୋଷ ।
ବେଙ୍କେ ତୁମ୍ଭ ବାନ୍ଧି ସମୁଦ୍ର ପାରି ହୋଇ
ଯିବି ବୋଲି ସାହସ କରୁଛ କିମ୍ପାଇଁ ।
ମୋ ଅପ୍ରିୟ ହୋଇ ପାରିଲେ ତନପୁରେ ।
ଗନ୍ଧର୍ବେ ମାରିଦେବେଟି ଖୋଜ ନିରନ୍ତରେ ।
ପବନ ଦେବତାଙ୍କୁ ପାଉଅଛୁ ପାଶ ।
ଧରିବାକୁ ଇଚ୍ଛା କରୁଛୁ ଓଷଧିଶ ।
କୀଚକ ଏହା ଶୁଣି ବୋଇଲାରେ ନାରୀ
ଆଜ ତୋର ଗାରିମା ଦେବି ତୁଚ୍ଛ କରି
ତୋହ ଗୁରୁ ପାମରି ଅଟ ଅତି ଦୁଷ୍ଟ
ଏହି ସ୍ନେହ କଥାରେ କରୁଅଛୁ ଆଣ୍ଟ ।
ଏହା କହି ସେଠାବରୁ ବାହୁଡ଼ି ଆସିଲା
ଭଗିନୀ ସୁଦେଷ୍ଣାର ଆଗରେ ବସିଲା ।
ସୈରନ୍ଧ୍ରୀ ଯେଉଁରୂପେ ହୋଇବ ମୋହର
ସେରୂପେ ସୁଦେଷ୍ଣା ବେଗର ଏବେ କର ।
ସୁଦେଷ୍ଣା ତାହା ପୁଣି ନିଜ ହିତ ଭାବି
ବୋଇଲେ ଯାଅ ମୁହିଁ ତାହାକୁ କହିବି ।
କେବଳ କହୁଥାଇ ତୋ ଘରେ ଉତ୍ସବ
କରାଇ ବଢାଇବୁ ଦଣ୍ଡତ ଆସିବ ।

ମୋ ବୋଲେ ସୈରନ୍ଧ୍ରୀ ତ ଯିବେ ତାହା ଆଣି
ଗଲେ ଟାଣି ନେବୁ ଧରି ତାହାର ଯେ ପାଣି
ଏ ବଚନ ଚନ୍ଦ୍ରମା ହୋଇ ଉଦେ ହେଲା
କୀଚକର ହୃଦ କୁମୁଦ ପ୍ରକାଶିଲା ।
ସେହିକ୍ଷଣି ଘରକୁ ଯାଇଣ କୀଚକ
କରାଇଲା ଉତ୍ସବ ସାମଗ୍ରୀଯାକ ।
ଫୁଲବୁଡ଼ାଖିଆ ଯେ ମଦଘଟ ଶଏ
ବଢ଼ାଇଲା ସୈରନ୍ଧ୍ରୀ ଆସିବା ଉପାୟେ ।
ଛେଳି ମେଣ୍ଢା ମୃଗ ମାଉଁସ ଅଣାଇଲା
ତହିଁ ସାରୁ ଆଳୁ ପକାଇ ଘଣ୍ଟାଇଲା ।
କେତେକ ମାଉଁସକୁ ଭତରେ ମିଶାଇ
ଦଆଇଲା ହିଙ୍ଗୁ ମରିଚ ଗୋଳଆଇ ।
ସରପିଠା ଭୂଲରେ ଷୀରହାଣ୍ଡିମାନ
କରାଇଲା ମଧ୍ୟ ହୋଇଣ ତୋଷମନ ।
ସେ ଷୀର ହାଣ୍ଡିରେ କର୍ପୂର ଖଣ୍ଡ ଦୁଇ
ମହୁଡ଼ି ଦଆଇଲା ସ୍ୱାଦୁ ହେବାପାଇଁ ।
ଏହା ଶୁଣି ସୁଦେଷ୍ଣା ଡାକ ସୈରନ୍ଧ୍ରୀକି
ବୋଇଲେ ଶୁଣ ମୋର କହିବା ବାଣୀକି ।
ହୋଇଅଛୁ ତ ମୁହିଁ ତୃଷାରେ ଆରତ
କୀଚକ ଘରୁ ମଦ୍ୟ ଆଣ ହେ ତୁରିତ ।
ତା ପିଇଲେ ମୁହିଁ ତୃଷାକୁ କରି ନାଶ
ଶୋଇବି ମୁଁ ଶେଯେ ବିଚ୍ଛାଇ ଫୁଲବାସ ।
ସୈରନ୍ଧ୍ରୀ ବୋଇଲେ ସେ ନିର୍ଲଜ ଘରକୁ
ଯାଇ ନ ପାରିବି ମୁଁ କହୁଛି ତୁମ୍ଭଙ୍କୁ ।
କୀଚକ ତ ମୋତେ ଦେଖିଣ କାମେ ବାଇ
ହୋଇଅଛି ମୁହିଁ ସେଠାକୁ ଯିବି କାହିଁ ।
ତୁମ୍ଭଙ୍କୁ ପୂର୍ବୁ ମୁଁ ନିଷେଧ କରିଅଛି
ଦାସୀସେବା କମ୍ପାଇଁ ବୋଲିବା ହେଉଛି ।
ତୁମ୍ଭର ତ ବହୁତ ଛନ୍ତି ପରିଚାରୀ
ବୋଲି ଆଣିବେ ସେ ତା ଘରୁ ଯାଇକରି ।
ସୁଦେଷ୍ଣା ବୋଇଲେ ନ କହ ଏ କଥାକୁ
କୀଚକ କମ୍ପା କଥା କହିବ ତୁମ୍ଭଙ୍କୁ ।
ମୁଁ ତ ତା'ର ଭଗିନୀ ମୋତେ ଲଜ୍ଜି କରି
ତୁମ୍ଭଙ୍କୁ କି ଭୋଗ କରିବ ବଳେ ଧରି ।
ଏହା କହି ସୁବର୍ଣ୍ଣ ପାତ୍ରଟିଏ ଦେଲେ
ଯାଅ ଗୋ ବୋଲିଣ ସୈରନ୍ଧ୍ରୀକି ବୋଇଲେ

ସୁଦେଷ୍ଣା ଠାରେ ସୈରନ୍ଧ୍ରୀ ତ ରହିଥିଲେ
ଏଣୁ ତାଙ୍କ ବଚନ ଲଙ୍ଘି ନ ପାରିଲେ ।
ସୁବର୍ଣ୍ଣପାତ୍ରଟିକି କାଖରେ ଯାକଲେ
ରକ୍ଷାକର ବୋଲି କୃଷ୍ଣଙ୍କୁ ସୁମରିଲେ ।
ବୋଇଲେ ମୁହିଁ ଯେବେ ଅଟେ ପତିବ୍ରତା
ମୋତେ ପାରି କରିବ ସବିତା ଦେବତା ।
ଏହା ବୋଲି ସୂର୍ଯ୍ୟଙ୍କୁ ଟିକିଏ ଚାହିଁଲେ
ମନ୍ଦ ମନ୍ଦ ହୋଇ ପହଣ୍ଡ ପକାଇଲେ ।
ସୂର୍ଯ୍ୟ ତାହା ଜାଣି ରାକ୍ଷସଟିଏ ଡାକି
ବୋଇଲେ ରଖ ତୁ ଦ୍ରୁପଦ ନନ୍ଦନୀକି ।
ରାକ୍ଷସ ସେହିକ୍ଷଣି ମର୍ତ୍ତ୍ୟକୁ ଆସିଲା
ଅନ୍ତରହିତ ହୋଇ କୃଷ୍ଣାଙ୍କୁ ଜଗିଲା ।
କୀଚକ ଦ୍ରୌପଦୀର ଆସିବାର ଦେଖି
ଉଠିଲା ସେ ଆନନ୍ଦେ ଆସନ ଉପେକ୍ଷି ।
ବୋଇଲା ଆଗୋ କାମକେଳିକଳାଜାଣ
ଆସିଲୁ ଟିକି ବାଟେ ନୋହିକରି ବଣା ।
ମୋ ଘରେ ବସି ଆଗ ହୁଅ ଦିବ୍ୟବେଶ
ପଛେ ଧରି ଶୋଇବୁ ଆଗୋ ନାରୀଈଶ ।
ଏ ମଳିନବାସ ତୋ ଶୋଭାର ମ୍ଳାନକୁ
କରୁଅଛି ପକାଇ ଦିଅ ତୁ ଏହାକୁ ।
ମୁଁ ଦେବା ସରୁ ଝୀନଶାଢ଼ୀକି ପହରି
ମାତା ମୋ ସଙ୍ଗେ ଦିବ୍ୟ ଅଳଙ୍କାର ଭରି ।
ଦ୍ରୌପଦୀ ବୋଇଲେ ସୁଦେଷ୍ଣା ତୁମ୍ଭଠାକୁ
ପେଷିଅଛନ୍ତି ମୋତେ ମଦିରା ନେବାକୁ ।
ମଦିରା ଦେଲେ ମୁହିଁ ନେଇ ଦେବି ତାଙ୍କୁ
ବସିଛନ୍ତି ତୃଷାରେ ବହି ସେ ଆର୍ତ୍ତିକୁ ।
କୀଚକ ବୋଇଲା ତୁ ଏ ଛାର କଥାକୁ
ଯାଇ କରିଣ କେତେ ଆସିବୁ ମୋଠାକୁ ।
ମୋହର ଲୋକ ଜଣେ ମଦିରାକୁ ନେଇ
ଏକ୍ଷଣି ଆସିବ ବାହୁଡ଼ି ପ୍ରାଣସହି ।
ଏହିରୂପେ କୀଚକ କହନ୍ତେ ବଚନ
ଅନଙ୍ଗ କଲା ଫୁଲଶରକୁ ମୋଚନ ।
ସେହି ସକାଶରୁ ସେ ସୈରନ୍ଧ୍ରୀ ବଚନ
ନ ଜାଣି ଇଚ୍ଛା କଲା ସୁରତି ରଚନ ।
ସୈରନ୍ଧ୍ରୀଙ୍କ ଦକ୍ଷିଣ ପାଣି କରେ ଧରି
ଟାଣିଲା ଏକାନ୍ତ ସ୍ଥାନକୁ ଧୀରି କରି ।

ସୈରନ୍ଧ୍ରୀ ସେହିକାଳେ କରି ଗୁପ୍ତି ଦେଲେ
ଚିତ ହୋଇ କୀଚକ ପଡ଼ିଲା ସେ ତଳେ ।
ଏହା କରି ସାରଣ ଦ୍ରୁପଦକୁମାରୀ
ଗଲେ ଯହିଁ ଥିଲେ ପାଣ୍ଡବଦଣ୍ଡଧାରୀ ।
କୀଚକ ସେକ୍ଷଣି ଉଠିଛି ସୁସ୍ଥ ହୋଇ
କାହିଁ ଯିବୁ ବୋଲି ଧଇଲା ବାଳ ଧାଇଁ ।
ଯୁଧିଷ୍ଠିର ରାଜା ନୟନେ ଦେଖୁଥିଲେ
ତଳରେ ଦ୍ରୌପଦୀଙ୍କି ପକାଇ ସେ ଭଲେ ।
ଗୋଡ଼ଟେକଗୋଇଠାଗୋଟାକେତେଦେହେ
ପ୍ରହାରିଲା କୀଚକ ତାଙ୍କୁ ବଡ଼ କୋହେ ।
ସୂର୍ଯ୍ୟ ଦ୍ରୌପଦୀଙ୍କ ରକ୍ଷାକୁ ରାକ୍ଷସକୁ
ପଠିଆଇ ଥିଲେ ସେକାଳେ କୀଚକକୁ ।
ଅଦୃଶ୍ୟ ହୋଇ ବାତ ପରି ଗତି କଲା
କୀଚକକୁ ଉଡ଼ାଇ ତହିଁ ଘେନିଗଲା ।
ସେ ସକାଶୁଁ କୀଚକ ହୋଇଣ ଅଜ୍ଞାନ
ଖଣ୍ଡେଦୂରରେ ଯାଇଁ ପଡ଼ିଲା ବହନ ।
ଭୀମ ତ ଯୁଧିଷ୍ଠିର ପାଖେ ବସିଥିଲେ
ତା ଦେଖି ଭ୍ରୂଲତାକୁ କପାଳେ ଖୋଷିଲେ
ଦନ୍ତେ ଦନ୍ତ ଘେବାଇ କଲେ କଟ କଟ
କ୍ରୋଧ ହୃଦେ ଧରି ଦେହକୁ କଲେ ମୋଟ ।
ମନ କଲେ ପଲକେ ମୁଁ ଜଣା ପଡ଼ିବି
ଏକ୍ଷଣି କୀଚକକୁ ଯମ ପାଶେ ଦେବି ।
ଯୁଧିଷ୍ଠିର ଭୀମଙ୍କ ଏ ଚିତ୍ତ ଜାଣିଲେ
ଅଙ୍ଗୁଷ୍ଠିରେ ତାଙ୍କ ଅଙ୍ଗୁଷ୍ଠି ମାଡିଦେଲେ ।
ସେ ଅଙ୍ଗୁଷ୍ଠି ଚିପା ହୁଅନ୍ତେ ଗାରଡ଼ିଆ
ଭୀମ-ସର୍ପ ନଉଳ ଗଲେ ନୋହି ଠିଆ ।
ଏଥୁଅନନ୍ତରେ ସେ ସୈରନ୍ଧ୍ରୀ ଉଠିଲେ
ବିରାଟଙ୍କ ସଭାତଳରେ ଛିଡ଼ା ହେଲେ ।
ମନରେ ତ ପୂରିଅଛି ସେ ମହାରାଗ
ଏଣୁ ତାଙ୍କ ଚକ୍ଷୁ ହୋଇଛି ଅତି ରାଗ ।
ଏ ବାହାରେ ମଧ୍ୟ ଲୋତକ ବହୁ ଅଛି
କହିଲେ ଏ ବଚନ ସୈରନ୍ଧ୍ରୀ ତା ପୋଛି ।
ଯାର ଭୟରେ ଶତ୍ରୁ ନ ଶୋଏ ରାତ୍ରରେ
ସୂତପୁତ୍ର ମାଇଲା ତା ଭାର୍ଯ୍ୟା ଗାତ୍ରରେ ।
ଯାହାର ସତ୍ୟ ଧର୍ମ ପୂରିଛି ଜଗତ
ତା ଭାର୍ଯ୍ୟା ଦେହେ ଆସି ହେଲା ପାଦାଘାତ

ଯାହାର ଧନୁଘୋଷ ଶୁଭେ ବଜ୍ର ସରି
ତା ଭାରିଯା ହେଲା ଅନାଥ ଲୋକ ପରି ।
ଯାହା ବଳକୁ ଚିହ୍ନି ମାନନ୍ତି ତିନି ଲୋକ
ତାହା ଭାରିଯା ବସି କରୁଅଛି ଶୋକ ।
ଯାହାର ଶତ୍ରୁ ରହି ଛଆଳ ଦେଶରେ
ନ ପାରେ ତା ପତ୍ନୀ ବୁଡ଼ିଲା ହାସ ମାରେ ।
ଯାହାର ପାଦତଳେ ଶତ୍ରୁଏ ଶରଣ
ପଶନ୍ତି ତା ଭାରିଯା ହେଲା ଅଶରଣ ।
ଏଡ଼େ ବଳିୟାର ହୋଇ ସେ ଭାରିଯାରି
ଅପମାନ ଦେଖି ନ କଲେ ପ୍ରତିକାର ।
ଜାଣୁଛି ଧର୍ମରେ ସେ ହୋଇଛନ୍ତି ବନ୍ଧା
ସୂତପୁତ୍ର ଘୁରଚି କେତେକର ଫନ୍ଦା ।
ନୋହିଲେ ଅବା ପୂର୍ବପରି ବଳ ଓଜ
ନ ଥିବାରୁ ରହିଲେ ପାଇକରି ଲାଜ ।
ବିରାଟ ସହିଣ କୀଚକ କୁବେଭାର
ବୋଲାଉଛନ୍ତି ମତ୍ସ୍ୟଦେଶେ ଦଣ୍ଡଧର ।
ଯେଉଁ ରାଜା ନଦିଏ ଦଣ୍ଡ ଦୋଷୀ କାୟେ
ଧର୍ମହୀନ ତାହାକୁ ବୋଲନ୍ତି ସର୍ବେ ।
ବିରାଟଙ୍କ ସଭାରେ ଛନ୍ତି ଯେତେ ଲୋକ
ଜାଣିଲି ତାଙ୍କଭୂଲେ ଏ ତ ଅବିବେକ ।
ଏଡ଼େ ମହାରାଜା ସଭାରେ ଏ ଦୁର୍ଭାଗ୍ୟ
ଭୋଗକୁ ମୋର ଦେହ ଆସି ହେଲା ଯୋଗ ।
କହିଲେହେଁ ମୁହିଁ ଯେ ଉଚିତ କଥାକୁ
ନ କହି ପୋଛୁଛନ୍ତି ବୃଥାରେ ମଥାକୁ ।
ବିରାଟ ବୋଇଲେ ଗୋ ସୈରନ୍ଧ୍ରୀ ଲୁଚାଇ
ନ ଭଅ ନନ୍ଦାଟି ମୁଁ କିଛି ଜାଣିନାହିଁ ।
କୀଚକର ତୋହର କାହିଁକି ଅପ୍ରୀତି
ହୋଇଲା ଆଗୋ ନବକାମିନୀ ଯୁବତୀ ।
ବିରାଟଙ୍କ ସଭାରେ ଯେତେ ବସିଥିଲେ
ଆଚ୍ଛା କହୁଛନ୍ତି ସେ ସୈରନ୍ଧ୍ରୀ ବୋଇଲେ
ପୁଣି କୁହାକୁହି ସେ ହେଲେ ପରସ୍ପରେ
ଏହା ପରି ନ ଥିବ ନାରୀ ସଂସାରେ
ଯେଉଁ ପୁରୁଷଟି ଏହାଙ୍କର କରକୁ
ଧରିଛି ଭାଗ୍ୟବନ୍ତେ ଲେଖିବା ତାହାକୁ ।
ଏହି ସମୟରେ କ୍ରୋଧରେ ଯୁଧିଷ୍ଠିର
କପାଳକୁ କରି ଝାଳରେ ଜରଜର ।

ବୋଇଲେ ସୈରନ୍ଧ୍ରୀ ତୁ ଏଠାରେ ନରହ
ଯାଅ ସୁଦେଷ୍ଣାଙ୍କ ପୁରକୁ ବେଗ ହୋଇ ।
ଭର୍ତ୍ତାଠାରେ ତୋର ଭକତି ଯେବେ ଅଛି
ଏ ଦୁଃଖକୁ ତ୍ୟଜ ଗୋ ମନରୁ ମୁଁ କହୁଛି ।
ତୋ ପତି ଗନ୍ଧର୍ବଙ୍କ କ୍ରୋଧ କାଳ ଏହି
ହୋଇନାହିଁଟି ଆଗୋ ଜାଣ ଚନ୍ଦ୍ରମୁଖୀ ।
ଯେବେଟି ହୋଇଥାନ୍ତା କାଳ ପତି ବଳ
ନ କରି ଦେଖନ୍ତେ କି ତୋହର ବିକଳ ।
ତୁଚ୍ଛା ବସି ସକାଇ କାନ୍ଦୁଅଛୁ କେତେ
ତୋ ପତିଏ ତାହା ବୁଝନ୍ତି ସିନା ସ୍ୱତେ ।
ରାଜା ତ ଖେଳୁଛନ୍ତି ଆମ୍ଭ ସଙ୍ଗେ ପଶା
ତା ନ ଭଙ୍ଗ ଆଜ୍ଞରେ ବସି ତୁ ସଦୃଶା ।
ଦ୍ରୌପଦୀ ବୋଇଲେ ହେ କଙ୍କଭଣ୍ଡା ଶୁଣ
ମୋ ଆଗଙ୍କ ବେଳେ ଏମନ୍ତ ନ ବଖାଣ ।
ଦୟାକର ମୋ ପତି ଗନ୍ଧର୍ବେ ଅଛନ୍ତି
ମନେ କଲେ ସାରି ଯେ ଦେବେ ମର୍ତ୍ତ୍ୟ-ଭୂତ
ଆହେ ଜନମେଜୟ ଯୁଧିଷ୍ଠିର ତୁଳେ
ଦ୍ରୌପଦୀ ଏରୂପେ ଟିକଏ କଥା ହେଲେ ।
ମୁଣ୍ଡ ଢାନ ଆଉଁଶି ସୁଦେଷ୍ଣା ଘରକୁ
ବାହାରଲେ ପୋଛୁଣ ନୟନ-ନୀରକୁ ।
ଉଦେ ଥିବା ଶଶି ମଣ୍ଡଳ ପରାୟେ
ସେକାଳେ କୃଷ୍ଣାମୁଖ ଦିଶିଲା ହେ ରାୟେ ।
ସୁଦେଷ୍ଣା ବୋଇଲେ ଗୋ ସୈରନ୍ଧ୍ରୀ କିମ୍ପାଇଁ
ତଳାପାଡ଼ୁ ଅଛୁ ଯେ ଅତି ଦୁଃଖୀ ହୋଇ ।
ସୈରନ୍ଧ୍ରୀ ବୋଇଲେ ହେ ସୁରପାଇ ମୋତେ
ପେଷିଲେ ତ କୀଚକ ଘରକୁ ତୁରିତେ ।
ତୁମ ବୋଲ ଲଙ୍ଘି ନ ପାରି ମୁଁ ତ ଗଲି
ଦେଖ ତା ପାଦ ଘାତ ପିଠିରେ ବହିଲି ।
ସୁଦେଷ୍ଣା ବୋଇଲେ ସୈରନ୍ଧ୍ରୀ କାମ-ବାଇ
କୀଚକ ହେଲା ଯେବେ ଦେବି ମୁଁ ମରାଇ ।
ହେ ନାରୀଗଣଙ୍କର ମସ୍ତକର ଶିଖ
ଆଉ ଏଥି ପାଇଁ ନ କର କିଛି ଦୁଃଖ ।
ସୈରନ୍ଧ୍ରୀ ବୋଇଲେ ନ ମାର ତାକୁ ତୁମ୍ଭେ
ତା ଇଚ୍ଛାରେ ମଲାଣି ଜାଣିଲୁଣି ଆମ୍ଭେ ।

—*—

## ଭୀମର ବଧ ମନ୍ତ୍ରଣା

ଏଥୁଅନ୍ତେ ସୈରନ୍ଧ୍ରୀ ଥିବାର ଘରକୁ
ଯାଇ ପାଲଟିଲେ ପିନ୍ଧିବା ବସନକୁ ।
କୀଚକର ନାଶ ସେ ହୃଦରେ ବିଚାରି
ଭାବନା କଲେ ବସି କଥା ନ ଉଚ୍ଚାରି ।
ମନେ କଲେ ଭୀମ ତ ଅତ୍ୟନ୍ତ ସମର୍ଥ
ସେ ଯେ କୀଚକକୁ ପେଷିବେ ଯମପଥ ।
ରଜନୀ ଅର୍ଦ୍ଧକାଳେ ନିର୍ଜନ ବେଳକୁ
ଜାଣି ଗଲେ ଦ୍ରୌପଦୀ ଭୀମଙ୍କ ଘରକୁ ।
ଭୀମ ଶୋଇଛନ୍ତି ସେ ଘରରେ ଏକାନ୍ତେ
ସିଂହ ପରି ନିଃଶ୍ୱାସ ଗୁଞ୍ଜଣ ନିରତେ ।
ଭୀମଙ୍କର ଦେହଶୋଭାରେ ସେ ଘରଟି
ନିର୍ଭଣ ଅଛି ଅତିଶୟରେ ତେଜୁଟି ।
ଯେ ରୂପେ ରାଜହଂସୀ ଯାଏ ହଂସଠାକୁ
ସେହିରୂପେ ସେ ଗଲେ ଭୀମସେନଠାକୁ ।
ଋତୁମତୀ ଗାଈ ବୃଷଭ ପାଖେ ଉଭା
ହେବା ପରି ଦିଶିଲେ ଭୀମ ପାଖେ ଶୋଭା ।
ସିଂହୀ ସିଂହ ହସ୍ତିନୀ ହସ୍ତୀଠାକୁ ଗଲା
ଶୋଭାକୁ ଦ୍ରୌପଦୀଙ୍କ ଯିବାର ଭଙ୍ଗିଲା ।
ଏଥୁଅନନ୍ତରେ ଦୁଇ ବାହୁକୁ ଲମ୍ବାଇ
କୃଷ୍ଣା ଉଠାଇଲେ ଭୀମକୁ କୁଣ୍ଢାଇ ।
ଭୀମ ହେମତରୁରେ ତମାଳଲତା ପରି
ନୟନକୁ ଦିଶିଲେ ସେକାଳେ ସେ ନାରୀ ।
ଶ୍ରୀହରିଙ୍କି ଲକ୍ଷ୍ମୀ ଯେ ସାବିତ୍ରୀ ବ୍ରହ୍ମାଙ୍କୁ
ଶିବଙ୍କୁ କାତ୍ୟାୟନୀ ଶଚୀ ବାସବଙ୍କୁ ।
ଗୁହଙ୍କୁ ଷଷ୍ଠୀ ପରି ଭୀମଙ୍କୁ ଦ୍ରୌପଦୀ
ଉଠାଇଲେ ହୃଦରେ ଦୁଃଖକୁ ସମ୍ପାଦି ।
ବୋଇଲେ ଆହେ ଭୀମ କାହିଁ ମଲାପରି
ହେବାରୁ ତୁମ୍ଭେ ଆସି ହେଲ ଏତେସରି ।
ଭୀମ ସେହି ସମୟେ ପାଇ କରି ଚେତା
ଦେଖିଲେ ପାଖେ ଛନ୍ତି ଦ୍ରୁପଦ ଦୁହିତା ।
ଭୀମ ବୋଇଲେ ଆଗୋ କାହିଁକି ରାତିରେ
ଆସିଲ ତାହା କହ ମୋହର ନିକଟରେ ।
ତୁମ୍ଭର ତ ବଦନ ଯାଇଅଛି ଶୁଖି ।
କାହିଁକି ପ୍ରାଣସଖି ହେଉଅଛୁ ଦୁଃଖୀ ।

ତୋହଠାରୁ ଆଗ ଶୁଣିଲେ ସେ କଥାକୁ
ପଛେ ସିନା ମୂର୍ତ୍ତି କରିବ ଉପାୟକୁ ।
ତୋ ମନକଥା ଏବେ ମୋ ଆଗରେ କହ
ବେଗେ ଯାଅ ଏଠାରୁ ଆଗୋ ଚନ୍ଦ୍ରମୂର୍ତ୍ତି ।
ଯେବେ ପୁରଲୋକ ଜାଣିବେ ଏ କଥାକୁ
ମହା ଅକୀର୍ତ୍ତି ଟି ସେହୁ ଦେବେ ଆମ୍ଭଙ୍କୁ ।
ତା'ପରେ ବୋଲିବେ ବିରାଟ ଅନ୍ତଃପୁର
ନାଶ ଆଣି ହରିଲ ବଲ୍ଲଭ ପାମର ।
ଦ୍ରୌପଦୀ ବୋଇଲେ ହେ ଯୁଧିଷ୍ଠିର ପରି
ପତି ଥିଲେ ସେ ଦୁଃଖେ ନ ପାଏ କି ନାରୀ ।
ପୂର୍ବରୁ ତ ସବୁ ହେ ଜାଣିଛ ମୋ ଦୁଃଖ
କିସ କହିବ ହେ ତୁମ୍ଭଙ୍କୁ ନରଶିଖ ।
ସଭାରେ ପ୍ରାତିକାମୀ ଆଣି ଯେତେବେଳେ
ଛୁଡ଼ା କଲା ସେ ଶୋକଅଗ୍ନି ହୃଦେ ଜଳେ ।
ଦ୍ଵିତୀୟ ଥର ମୋତେ ନେଲା ଜୟଦ୍ରଥ
ସେ ଦୁଃଖ ତ ଗୋଡ଼ାଇଅଛି ମୋର ସାଥ ।
ଏବେ କୀଚକକୁ ଲାଗିଛି କାମଧାଡ଼
ମୋତେ ହରି ଲୋଡ଼ୁଛି ଜଗି ଦିନ ରାଡ଼ ।
ଯୁଧିଷ୍ଠିର ବିରାଟ ଆଗରେ କୀଚକ
ପ୍ରହାରି ପାଦ ମୋତେ କଲା ମୋର ଶୋକ
କୀଚକ ସକାଶୁଁ ଗଲା ମୋ କୁଳକ୍ରୀଡ଼ା
ହେ ଭୀମ ମରିବ କହୁଛି ପାଇ ପୀଡ଼ା ।
ଯୁଧିଷ୍ଠିରଙ୍କର ଯେ ପଶା ଖେଳରସ
ସକାଶୁ ହୋଇଲ ମୁଁ ଆସି ପରବେଶ ।
ଯୁଧିଷ୍ଠିର ବିନା ପଶାରେ ରାଜ୍ୟ ଧନ
ଦେଇ ବନେ ରହିବ ଶୁଣିଛୁ କି କାନ ।
ଆମ୍ଭ ଘରେ ଯେତେକ ଧନ ଥିଲା ରହି
ତାହା ଦେଇ ଯେବେ ଖେଳନ୍ତେ ପଶା ସେହି
ସହସ୍ରେ ବରଷରେ ନୁହନ୍ତା ସେ ଶେଷ
ତାହିଁପାଇଁ ହୁଅନ୍ତା ମୋର ଏଡ଼େ ନାଶ ।
ଜୁଆରେ ରାଜ୍ୟଶିରୀ ସମ୍ପତ୍ତି ହରାଇ
ଏବେ ରହିଅଛନ୍ତି ଅତି ମୂକ ହୋଇ ।
ଛାଡ଼ି କରିଣ ଇନ୍ଦ୍ରପ୍ରସ୍ଥ ମହୀ ସୁଖ
ଦେଖ ଜୁଆକଣା ଦ୍ରବ୍ୟକୁ କଲେ ଭେଖ ।
ଇନ୍ଦ୍ରପ୍ରସ୍ଥେ ଶଏ ସହସ୍ର ରଜା ମାନ
ରହିଥାନ୍ତି ଯାଙ୍କୁ ସେ ଛନ୍ତି ଟେକା ଘେନ ।

ଲକ୍ଷେ ଦାସ ଯାହାର ମହାନ ସେ ମାତ
ନମ୍ରକତ ହୋଇଣ ଲୋକଙ୍କୁ ଭୁଞ୍ଜାନ୍ତି ।
ଯେ ଦ୍ଵିଜଙ୍କ ମନ ତୋଷନ୍ତି ନିସ୍ତ ଦେଇ
ସେ ଏବେ ରହିଅଛନ୍ତି ପରଘରେ ଖାଇ ।
ସାୟଂ ପ୍ରାତଃ କାଳେ ଯାହାଙ୍କୁ ଭାଟେ ସ୍ତୁତି
କରନ୍ତି କରୁଛନ୍ତି ବିରାଟେ ବିନତି ।
ଯେ ଅଠାଅଶୀସହସ୍ର ଦ୍ଵିଜଙ୍କୁ ଭୋଜନ
ଦେଇ କରିଣ ନିତ ତୋଷୁଥାନ୍ତି ମନ ।
ଏ ବାହାରେ ଟି ଦଶ ସହସ୍ର ଯତିଙ୍କି
ଖାଇବାକୁ ଦିଅନ୍ତି ଆହାର ପାଣିକି ।
ଅନ୍ଧ ବୃଦ୍ଧ ଶ୍ରେଷ୍ଠା କେମ୍ପାଙ୍କୁ ଦେଇ ଅନ୍ନ
ଥିଲେ ଯେ ସେ ଆସି ହୋଇଲେ ପରଜନ ।
କାଳ ବଶରେ ଦେଖ ବିରାଟ ସଭାରେ
ଖେଳୁଅଛନ୍ତି ପଶା ପଦାର୍ଥ ଲୋଭରେ ।
ନୃପଙ୍କଠାରୁ ଯେ ଘେନିବାର କର
ଛାଡ଼ିଣ ବିରାଟକୁ ପ୍ରସାରିଲେ କର ।
ସୂର୍ଯ୍ୟ ପରି ଶତ୍ରୁଙ୍କ ବଢ଼ାଇ ସନ୍ତାପ
ବିରାଟଙ୍କ ସଭାରେ ରହିଲେ ସେ ନୃପ ।
ପୂର୍ବେ ଯୁଧିଷ୍ଠିରଙ୍କୁ ସଭା ଲୋକମାନେ
ମନ ଧରିଣ କହୁଥାନ୍ତି ଅବଚ୍ଛିନ୍ନେ ।
ସେ ଏବେ ବିରାଟର ସଭାମଧ୍ୟେ ବସି
ତା ମନକୁ ବର୍ଣ୍ଣି କହନ୍ତି ହସି ହସି ।
ଯୁଧିଷ୍ଠିର ରାଜା ତ ନରଶିଖ ଶିଖ
ତାହାଙ୍କର ଦେଖିଣ ଏରୂପରେ ଦୁଃଖ ।
କାହାର ହୃଦପୂର୍ତି ନୋହିବ ବିଦାରି
କହ ତ ଭୀମସେନ ମୋ ଆଗେ ବିଚାରି ।
ଏହିରୂପେ ବହୁତ ଦୁଃଖ ଜଳେ ମୂର୍ଚ୍ଛି
ପଡ଼ୁଛି ଭୀମ ମତେ ନ ସ୍ପର୍ଶି କମ୍ପାଇଁ ।
ପୁଣି ତୁମ୍ଭର ପରି ଲୋକ ରାନ୍ଧି ଭାତ
ବିରତନ ଖାଇଣ ତୋଷୁଅଛି ଚିତ୍ତ ।
ଏହା ଦେଖି ପଥର ପରି ହେଲା ଚିତ୍ତ
ଫାଟି ନ ଯିବ କହେ କହ ମହାମତ ।
ବିରାଟ ଯେତେବେଳେ ଯା କରୁଛି ଆଜ୍ଞା
ତାହା କରୁଛ ତୁମ୍ଭେ ନ କରି ଅବଜ୍ଞା ।
ପାକ ସିଦ୍ଧ କରିଣ ବିରାଟ ପାଶକୁ
ଯାଇଣ ବୋଲ ବଜେ ହେଉ ଯୋଗାଣକୁ ।

ଏହା ଦେଖି ମୋହର ଏ ଫାଟୁଛି ଆଖି
ନ ଯାଉଛି କିମ୍ପା ହେ ପୃଚ୍ଛି ହୋଇ ଦୁଃଖୀ ।
ଯେବେଠି ତୁମ୍ଭେ ଯେଖା ଅନ୍ତଃପୁରେ ହାଣି
ଭୁଲେ ମୋର ହୃଦ ତା ଦେଖି ହୁଏ ମଚ୍ଛି ।
ବିରାଟସ୍ତ୍ରୀମାନେ ପାଲଟା ବାସକୁ ।
ବସନ୍ତ ଶାଢ଼ୀ କର ମୁଣ୍ଡେ ବାନ୍ଧିବାକୁ ।
ତାହାକୁ ନ ସହି ସେ ଭୀମ ମୁଣ୍ଡ ପୋଡ଼
ଯାଉଁ ତ ଥାଏ ତନ୍ଦ୍ରା ଅନଳରେ ପଡ଼ ।
ସୁଦେଷ୍ଣା ଜାଣିପାରି ବୋଲନ୍ତି ତାଙ୍କ ଦାସୀ
ମାନଙ୍କର ମୁଖକୁ ଅନାଇ ହସି ହସି ।
ସୈରିନ୍ଧ୍ରୀ ଏହି ବଲ୍ଲଭର ହାଣି ଯୁଦ୍ଧ
ଦେଖିକରି କମ୍ପାଇ ହେଉଅଛି ବୋଧ ।
ଏହି ସକାଶରୁ ତରକୁଅଛି ମୁହିଁ
ବଲ୍ଲଭ ସଙ୍ଗେ ପ୍ରୀତି କଲ କି ଲୁଚିଇ ।
ସ୍ତ୍ରୀମାନଙ୍କର ତ ସ୍ୱାନ୍ତଟି ଦୁର୍ଜ୍ଞେୟ
ଏଣୁ ବଲ୍ଲଭକୁ ଏ କରିଥିବ ପ୍ରିୟ ।
ଏମାନ ମୁଁ ଶୁଣିଣ ତାହାଙ୍କୁ ଭଣ୍ଡାଇ
ଏ ପାପକଥା ଜାଣ ମୋର ଦେହେ ନାହିଁ ।
ବ୍ରହ୍ମବଧ କଥାକୁ କରଦେଇ ପଛ
ବ୍ରାହ୍ମଣକୁ ହାଣି ସଙ୍ଗରେ ଯୁଝାଉଛ ।
ଏହି ସକାଶୁ ସିନା ମୁହିଁ ଦୁଃଖି ହୋଇ
ଧର୍ମକୁ ଛାଡ଼ିକରି ବିକଳ ହୁଅଇ ।
ଏରୂପେ ମୁଁ ତାହାଙ୍କୁ କହଇଟି ଯେବେ
ନ ଯାଆନ୍ତି ମୋତେଟି ପରତେ ସେ କେବେ
ତୁମ୍ଭର ଏତେ ଦୁଃଖ ହେଲାଠାରେ ମୁଖ
ଶୁଣିବାର କସ ହେ ଭୀମସେନ ଦେଖ ।
ଯେଉଁ ଅର୍ଜୁନ ଯେ ଏକାଦଶ ରୁଦ୍ର
ସମାନ ତେଜ ବହି ଅରକଲେ ଭଦ୍ର ।
ଦେବ ଯକ୍ଷ ଗନ୍ଧର୍ବ ଉରଗ ମନୁଷ୍ୟ ।
ଏମାନଙ୍କ ବଳ ବଳରେ କଲେ ଧ୍ୱଂସ ।
ଭୀଷ୍ମ ଦ୍ରୋଣ କର୍ଣ୍ଣକୁ ନ ମାନନ୍ତି ଯେହି
ସେ ଏବେ ରହିଛନ୍ତି ନପୁଂସକ ହୋଇ ।
ଅର୍ଜୁନ ଉର୍ବଶୀଙ୍କ ନୋହିବାରୁ ବଶ
ସେ ଯେଣ ସହୁଛନ୍ତି ସ୍ତ୍ରୀଙ୍କର ହାସ ।
ଖାଣ୍ଡବ ବନ ଦହି ଜିଣିଲେ ଇନ୍ଦ୍ରଙ୍କୁ
ଦେଇଛନ୍ତି ଲୁଚିଇ ଏବେ ବିକ୍ରମକୁ ।
ଶତ୍ରୁମାନଙ୍କର ସେ ଅଟନ୍ତି ନିର୍ଭୟ
ଦେଖି ଧରିଛନ୍ତି ସେ ଜଣାଯିବା ଭୟ ।
କଣ୍ଠ କରମର୍ଦ୍ଦନ ଯେଉଁ ବାହୁ ଦୁଇ
ତହିଁ ବସିଛନ୍ତି ସେ ଶଙ୍ଖା ଦୁଇବାହି ।
ତିନିଲୋକ କମ୍ପେ ଯା ଧନୁଘୋଷ ଶୁଣି
ହୋଇଛନ୍ତି ଏବେ ସେ ବିରାଟ ଗାୟେଣୀ ।
ଯେ ମୁଣ୍ଡେ କିରୀଟ ବଢ଼ାଉଥାଏ ଜ୍ୟୋତି ।
ସେ ମୁଣ୍ଡରେ ବେଣୀ ହେଉଛି ଏବେ ନିତ ।
ତାଙ୍କର କର୍ଣ୍ଣ ସବୁ ମନ୍ତ୍ରଙ୍କ ଗ୍ରାହକ
ହୋଇ ରହିଛି ସେହୁ କୁଣ୍ଡଳ ଯୋଡ଼ିକ ।
ସହସ୍ରେ ରାଜାଙ୍କର ବଳ ଜଳ-ବେଳା
ହୋଇଥିଲେ ହେଲେ ଆସି ସେ ବୃହନ୍ନଳା ।
ଯାହାଙ୍କ ରଥଘୋଷ ଶୁଣିଲେ ପର୍ବତ
ବନ ତୁଲରେ ମହୀ କମ୍ପଇ ତୁରିତ ।
ସେ ଉତ୍ତରକନ୍ୟା ସେବାକୁ କର ତଷ୍ଟ
ଇଚ୍ଛା କରଚନ୍ତି ବିପତ୍ତି ଜଳ ପାର ।
ଯାହାଙ୍କ ଜନ୍ମ ମାତ୍ରକରେ କୁନ୍ତୀ ଦୁଃଖ
ନାଶ ଗଲା ସେ ଏବେ ନ ପାଇଲେ ସୁଖ ।
ଅର୍ଜୁନଙ୍କର ଦେଖି ବୃହନଳା ବେଶ ।
ସଢ଼ ତ ଯାଉଅଛି ମୋ ହୃଦୟ ଦେଶ ।
ଅର୍ଜୁନ ଯେତେବେଳେ ବିରାଟ ଆଖିରେ ।
ନଚାଅନ୍ତି କନ୍ୟାମାନଙ୍କୁ ସଭାଗରେ ।
ତେତେବେଳେ ମୋ ମନେ ଦୁଃଖ ହୁଏ ଯାହା
କହି ନ ପାରିବି ହେ ଭୀମସେନ ତାହା ।
କୁନ୍ତୀ ଯେବେ ଜାଣିବେ ଅର୍ଜୁନଙ୍କ ଦୁଃଖ
ପାଡ଼ିବେ ଉଚେ ଡକା ହୋଇଣ ବିରେଖ ।
ସହଦେବ ଗଉଡ଼ ବେଶେ ବହି ଘର
ଆସୁଥିଲାବେଳେ ହୁଅଇ ଶୋକ ମୋର ।
ତାହାଙ୍କର ପୂର୍ବ ସୁଖକୁ ମୁଁ ଚିତୋଇ
ରଜନୀ ଦିବସରେ ଶୁଅଇଟି ନାହିଁ ।
କେଉଁ ଦୁଷ୍କୃତ ସେ ପୂର୍ବରେ କରିଥିଲେ
ଏହା ତ ମୋତେ ଜଣା ହୋଇନାହିଁ ଭଲେ
ବିରାଟଠାକୁ ଯାଇ ଯେବେ ଗାଈ କଥା
କହୁଥାନ୍ତି ମୋର ଶୁଣି ତା ହୁଏ ବ୍ୟଥା ।
ସହଦେବଙ୍କର ସେ ସୁସ୍ୱଭାବବୃତ୍ତି
ଦେଖି କରିଣ ସୁଖୀ ହେଉଥାନ୍ତି କୁନ୍ତୀ ।

ଯେତେବେଳେ ବନକୁ ଆସିଲୁଁ ଆମ୍ଭେ
ଶାଶୁ ମୋତେ କହିଲେ ଶୁଣିଛ ତ ତୁମ୍ଭେ ।
ଏ ପୁଅଟି ମୋହର ଅଟେ ଅତି ସାନ
ଏହାରିଠାରେ କରିଥିବୁ ଟି ଲାଳନ ।
ଏବେ ସେ ସହଦେବ ବସ୍ତ୍ର ଗୁଳ ପାଡ଼ି
ଶୋଇଛନ୍ତି ଗଉଡ଼ ପ୍ରାୟେ ମୁଖ ମାଡ଼ି ।
କାଳବଶେ ନକୁଳ ବନ୍ଧା ହୋଇ କରି
ହୋଇଛନ୍ତି ବିରାଟ ଅଶ୍ୱ ରକ୍ଷାକାରୀ ।
ଗୁଡ଼ିଦେଇ କରିଣ ମାନସରୁ ବ୍ରୀଡ଼ା
ବିରାଟଙ୍କୁ ଦେଖାଉଥାନ୍ତି ଆଣି ଘୋଡ଼ା ।
ଏହିରୂପେ ସହସ୍ର ସଂଖ୍ୟାରେ ଦୁଃଖକୁ
ଆଣିଲେ ଯୁଧିଷ୍ଠିର ସକାଶୁଁ ଦେହକୁ ।
ପାଞ୍ଚୋଟି ପତି ଥିବାଠାରେ ମୋର ଜନ
ନ ସରିଲା କେତେ ମୋ କର୍ମ ହୀନମାନ ।
ଛଆଳପତି ଆଉ କୀଚକ ହୋଇକରି
କାହାରଛି ଆଉ କରିବ କି ଗୁହାରି ।
ଯୁଧିଷ୍ଠିରଙ୍କର ସକାଶୁଁ ସୁଦେଷ୍ଣାକୁ
ସେବା କରିଣ ସଜାଡ଼ିଲି ତା ଗଣ୍ଡକୁ ।
ଏ ଦୁଃଖ ତ ନ ଥିବ ସବୁଦିନେ ମୋର
ଥରେ ଥରେ ଏହା ଭାବ ମୁଁ ବୃକୋଦର ।
ଏ ଆଖିର ଲୋତକ ସେ ଆଖିରେ ମାରି
ଦିଅଇ ସବୁ ଦୁଃଖ କଥା ଦୂର କରି ।
ଶଗଡ଼ଚକ ପରି କାଳ ତ ବୁଲୁଛି
ଏଥିରେ କହିବାକୁ କିସ କଥା ଅଛି ।
ଜୟ ପରାଜୟକୁ ବିଧାତା କାରଣ
ଭାଳିବାର ଲୋକର ଚିନ୍ତା ଅକାରଣ ।
ଦେଖି କରିଣ ଲୋକଙ୍କର ଦୁଃଖ ସୁଖ
ମୂର୍ଖ ପରି କିମ୍ପା ମୁଁ ହୋଇବି ବିମୁଖ ।
ଦୁଃଖ ବିନାରେ ସୁଖ କେବେହେଁ ନୁହଇ
ଏହା ଶୁଣିଅଛୁ ପିତାଙ୍କ ଘରେ ଥାଇ ।
ଆହେ ଭୀମ ଏତେ ତ କହିଲି ତୁମ୍ଭଙ୍କୁ
ତୁମ୍ଭେ ମୋତେ କିଛି ନ ଦେଲ ଉତ୍ତରକୁ ।
ତହିଁପାଇଁକି ମୁହିଁ କହୁଅଛି ଯାହା
ବସି ଥରେ ଭଲ କରିଣ ଶୁଣ ତାହା ।
ରାଜାଝିଅ ରାଜାଘରଜାୟା ହୋଇ କରି
ମୋହର ପରି ଅଭାଗିନୀ ନାହିଁ ନାରୀ ।

ପୁଣି ଭାଇ ପୁଅ ଗୃହସ୍ଥ ଭାବେ ଥିବ
ମୋ ପରି କେ ଅନାଥ ହୋଇଣ ବୁଲିବ ।
ପୂର୍ବେ ବା କିଛି ମୁଁ ଦୁଷ୍କୃତ କରିଥିଲି
ନୋହିଲେ କିମ୍ପା ଏତେ ଦୁଃଖକୁ ପାଇଲି ।
ଏବେ ଭୀମ ମୋହର ଦେଖ ଥରେ ଦେହ
କହୁ କହୁ ତୁମ୍ଭଙ୍କୁ ହେଉଅଛି ମୋହ ।
ବନରେ ଥିବା ଦିନେ ଏରୂପରେ ମୁହିଁ
ତୁମ୍ଭର ପ୍ରସାଦରେ ଦୁଃଖ ପାଇ ନାହିଁ ।
ସହସ୍ର ସଂଖ୍ୟା ଦାସୀମାନଙ୍କେ ଅଧିକାରି
ଦେଇ ଏବେ ଦାସୀ କଲ ହେ କୁଶଧରି ।
ଭୀମ ଅର୍ଜୁନଙ୍କ ପରି ଥାଉ ପତି
ମୋ ସଙ୍ଗେ ଗୋଡ଼ାଇଛି ଯାହା ଏ ବିପତ୍ତି ।
ଏଣୁକରି ମୁହିଁଟି ମଣୁଛି ଦଇବ
ଇଚ୍ଛା ରଜ୍ଜୁ ବାନ୍ଧିଛି ସକଳ ମାନବ ।
ପୂର୍ବେ ମୋ ଆଗେ ପଛେ ଦାସୀ ଥାନ୍ତି ବହୁ
ସୁଦେଷ୍ଣା ପଛେ ଏବେ ଗୋଡ଼ାଇଛି ମୁହିଁ ।
ସୁଦେଷ୍ଣା ପାଇଁ ମୁଁ ମାଳଆ ଗୁନ୍ଥି ଗୁନ୍ଥି
ଅଙ୍ଗୁଳିମାନଙ୍କେ ମୋ ପଡ଼ିଲାଣି ଗଣ୍ଠି ।
ଚନ୍ଦନ ବାଟିବାରେ ଦୁଇ ପାଣିଯାକ
ପଥରରୁ ଆଣ୍ଠ ହୋଇଅଛି ଅଧିକ ।
ବିରାଟ ଯେତେବେଳେ ଆସନ୍ତି ଘରକୁ
ପଳାଏ ମୁଁ ଭୟେ ସେଠାରୁ ଆନଠାକୁ ।
ଦିନଟିକ ଗଲେ ଯେ ଯୁଗଟିଏ ସରି
ମଣୁଥାଏ ମୁହିଁଟି କପାଳ ସୁମରି ।
ଏହା କହିଣ ଗଣ୍ଡମଣ୍ଡଳେ କଜ୍ଜ୍ୱଳ
ମଣ୍ଡିଲେ ସେ ବହନ୍ତେ ନୟନରୁ ଜଳ ।
ସେହିକାଳ ଶୋଭାକୁ ଚନ୍ଦ୍ର ନେଲେ ହେଉ
ବସିଲା ଆକାଶେ ଗୁଣ୍ଟିକ ଡେଉରି କରି ।
ଆହେ ଜନମେଜୟ ଏରୂପେ ଦ୍ରୌପଦୀ
ଭୋଗ ହୋଇଥିବାର ଦୁଃଖକୁ ସମ୍ପାଦି ।
ବୋଇଲେ ହେ ଭୀମ ତୁମ୍ଭଙ୍କୁ କି ବୋଲିବି
କହୁଅଛି କୀଚକ ଘେନ ମୁଁ ମରିବି ।
ଭୀମ ମଧ୍ୟ ତାଙ୍କ ଦୁଃଖରେ ଦୁଃଖୀ ହେଲେ
ଦ୍ରୌପଦୀଙ୍କର କର ଧରିଣ କାନ୍ଦିଲେ ।
ବୋଇଲେ ତୋର ଦୁଃଖଦେଖି ଗୋ ସୁମନା
ବୋଲୁଛି ମୋ ବଳକୁ ଧିକ ହେଉ କନା ।

ଅର୍ଜୁନର ଗାଣ୍ଡୀବଧନୁଧର ବାହା
ଥିବା କ ହେଲା ସେ ନୋହିଲା ଯେବେ ସାହା
ଯୁଧିଷ୍ଠିର ରାଜାଙ୍କ ଆଜ୍ଞା ଶିରେ ଧରି
ତୁମ୍ଭ ଦୁଃଖ ଦେଖି ରହିଛୁ ସହି କରି ।
ଏହିକ୍ଷଣି ଯାଇଣ କୀଚକର ମୁଣ୍ଡ
ମୋଡ଼ିଣ ପକାଇ ମଣ୍ଡିବ ରାଜଦଣ୍ଡ ।
ଯେତେବେଳେ କୀଚକ ମାଇଲା ତୁମ୍ଭଙ୍କୁ
ତାହା ଦେଖି ହୃଦରେ ଧରି ମୁଁ କ୍ରୋଧକୁ ।
ମାରିବାକୁ ତାକୁ ଉଠିବା ବେଳେ ମୁହିଁ
ଯୁଧିଷ୍ଠିର ରାଜା ତା ସହି କଲେ ନାହିଁ ।
ନୋହିଲେ କମ୍ପା ତୁମ୍ଭେ କାଢ଼ କରି ମୋତେ
କହୁଥାନ୍ତ ଧିକ୍କାର କରି ରାଷ୍ଟା ଏତେ ।
ଦୁର୍ଯ୍ୟୋଧନ କର୍ଣ୍ଣ ଯେ ଦୁଃଶାସନ ପ୍ରାଣ
ନେଇଥିଲେ ମୁଁ କମ୍ପା ହୁଅନ୍ତା ଏ ଜାଣ ।
ଏବେ ମୋ ବୋଲେ ତୁମ୍ଭେ ଧର୍ମେ ବୁଦ୍ଧି କରି
ଦିଅ ମାନସରୁ ଗୋ କ୍ରୋଧ ଛାଡ଼ି ନାରୀ ।
ତୁମ୍ଭର ଏ କଥା ଶୁଣିଲେ ଯୁଧିଷ୍ଠିର
କରିବେ ଟି ଦେହରୁ ପ୍ରାଣ ଅପହାର ।
ତାହାଙ୍କର ପଶ୍ଚିମ ଅବସ୍ଥା ହୋଇଲେ
ଆମ୍ଭେମାନେ ଯମଙ୍କ ପାଶେ ଯିବୁ ଭଲେ ।
ଶୁଣିଥାଇ ପତିବ୍ରତା ଯେତେକ ନାରୀ
ଅତି ଶ୍ରେଷ୍ଠା ପତିକି ଥାନ୍ତି ଭକ୍ତି କରି ।
ଚ୍ୟବନଙ୍କୁ ସୁକନ୍ୟା ସେବିଲେ ଯେ ରୂପେ
ଶୁଣିଛ ତ ଋଷି ମୁଖରୁ ବସି ଆପେ ।
ସୀତା ଯେତେ କଷ୍ଟେ ରହିଲେ ପତିବ୍ରତ
ତହୁଁ ଏ ଦୁଃଖ ବଡ଼ ହେଲା କି କହ ତ ।
ରାଜା ଝିଅ ହୋଇଣ ଲୋପାମୁଦ୍ରା ନାରୀ
ଅଗସ୍ତ୍ୟଙ୍କ ସେବା କଲେ ଟି ଦାସୀ ପରି ।
ତୁମ୍ଭେ ତ ପତିବ୍ରତା ଗୁଣକୁ ପାଳିଛ
ପତି ଦୁଃଖେ ହେବା ଦୁଃଖକୁ ତ ଭୁଞ୍ଜୁଛ ।
ବାକି ଅଛି ପକ୍ଷ କାଳ ଯିନା ରହିଛୁ
ଗଲେ ତ ଆମ୍ଭେ ଦେବା ଦୁଃଖକୁ ମୁଛୁଛୁ
ଏଥିପାଇଁ କେତେ ଗୋ ଦ୍ରୁପଦନନ୍ଦନା
ଅହର୍ନିଶ ବସିଣ କରୁଅଛ ଚିନ୍ତା ।
ଦ୍ରୌପଦୀ ବୋଇଲେ ରାଜାଙ୍କୁ ନନ୍ଦନାହିଁ
କୀଚକ ସକାଶୁଁ କାନ୍ଦିଲ ଯିନା ମୁହିଁ ।

ଏଥିକି ଉଚିତ ଯେ ତାହା ବିଚାରି
ସ୍ୱାମୀ ମୋ ପ୍ରିୟ ପାଇଁ କରି ତା ବିସ୍ତାରି ।
ମୋ ରୂପକୁ ଦେଖିଣ ସୁଦେଷ୍ଣା ସୁମୁଖୀ
ନିତି ଦୁଃଖେ ଭୁଞ୍ଜୁଣଥାନ୍ତି ବୁଜି ଆଖି ।
ବିରାଟ ଯେବେ ନେତ୍ରେ ଦେଖିବେ ଏହାକୁ
ଛଡ଼ାଇ ନେଇ ଯିବେ ମୋ ସଉଭାଗ୍ୟକୁ ।
ସୁଦେଷ୍ଣାଙ୍କ ସେ ଚିତ୍ତ ଜାଣିଲା କୀଚକ
ମାଗିଲା ତାଙ୍କୁ ମୋତେ ହରାଇ ବିବେକ ।
ତାହା ଶୁଣି ମୁହିଁ ବୋଇଲି କୀଚକକୁ
ନାଶଯିବୁ ମୋଠାରେ ନ ବଳା ମନକୁ ।
ମୋରପତି ପାଞ୍ଚଟା ଗନ୍ଧର୍ବେ ଅଛନ୍ତି
ବଡ଼ୋଜା ପରି ତାଙ୍କ ତେଜ ଓଜ କାନ୍ତି ।
କୀଚକ ଶୁଣିଣ ବୋଇଲା ମୋତେ ହସି
ଗନ୍ଧର୍ବଙ୍କୁ ମୁହିଁ ନ ଡରେ ସ୍ୱଚ୍ଛକେଶି ।
ସହସ୍ର ସଂଖ୍ୟା ଯେବେ ଗନ୍ଧର୍ବେ ହେବେ ଗୋଟି
ନ ପାରିବେ ବଙ୍କା କରିଣ ମୋ ରୁମଟି ।
ପାଞ୍ଚୋଟି ଗନ୍ଧର୍ବେ ଯେବେ ତୋହର ପ୍ରିୟ
ତାହାଙ୍କୁ ମୋର ଲବେ ହେଉଛୁ କି ଭୟ ।
ତାହାଙ୍କୁ ମୁଁ ପୁଣି ବୋଇଲେ ଛାଡ଼ି ଶଙ୍କା
ମାରିବେଟି ମୋ ପତିମାନେ ରଣରଙ୍କା ।
ମୁଁ ଯେବେ ତାଙ୍କୁ ଥରେ ଅଙ୍ଗୁଳି ଦେଖାଇ
ଠାରିଦେବି ଯାଇ ଭେଟିବୁ ଜନ୍ମସାଇଁ ।
କୀଚକ ଏହା ଶୁଣି ହୋଇ ହସ ହସ
କି ବୋଲୁ ନାରୀ ବୋଲି ଟେକିଲା ଦୁଇ ଭୁଜ
ସୁଦେଷ୍ଣା କୀଚକକୁ ମୋତେ ଦେବାପାଇଁ
ତା ଘରକୁ ପେଷିଲେ ମଦିରା ଅଣାଇ ।
ମୁହିଁ ତ ହୋଇ ଥିଲି ତାହାଙ୍କର ଦାସୀ
ଏଣୁକରି ନାହିଁ ନ ପାରିଲି ଟି ଭାଷି ।
ସ୍ୱସ୍ୱରୂପ ମୋତେ ଦେଖିଣ ତା'ର ଘରେ
କହିଲା ଧୃଷ୍ଟ କରି ବହୁତ ପ୍ରକାରେ ।
ବଳେ ମୋର ପାଣିକି ପାଣିରେ ଓଟାରି
ନେବାବେଳେ ତାକୁ ମୁଁ ଦେଲି ପୁଟିକରି ।
ଆସିଲି ବିରାଟ ଶରଣ ପଶିବାକୁ
ତେବେ ଟି ଧାଇଁ ସେ ଧଇଲା ମୋ ବାଳକୁ ।
ଝିଙ୍କି ଝିଙ୍କି କରି ପକାଇ ମୋତେ ତଳେ
ଗୋଇଠା ମାଇଲା ସେ ମୋର ଦେକତଳେ

ସେ ଘାତରେ ମୋହର ପିଠିଖଞ୍ଜା ହାଡ଼
ଭାଜିଗଲା ପରି ଶୁଭିଲା ମଡ ମଡ଼ ।
ଏତେବେଳେ ଦେଖ ହେ ଧେନ ସେହି ବ୍ୟର୍ଥ
କୁଣ୍ଠ ଭଲ ହୋଇ ବାହାରୁନାହିଁ କଥା ।
ଯୁଧିଷ୍ଠିର ମଧ୍ୟ ବିରାଟ ପାଖେ ଥିଲେ
ମୋ ମାଡ଼ଖିଆ ଦେଖି ଦୁଃଖେ ତୁନି ହେଲେ
କୀଚକ ତ ପରର ଧନ ପରନାରୀ
ହରିବା କଥା ମନେ ମଣେ ଭଲ କରି ।
ମୋତେ ଯେବେ ଦେଖିବ ପୁଣି ଆଉଥରେ
କାମେ ବାଇ ହୋଇ ଲାଗିବ ମୋ ସାଥିରେ
ଏଥର ମରିବ ମୁଁ ଜାଣ ଭୀମସେନ
ପଥର ନୁହଇ ତ ମୋହର ଜୀବନ ।
ମୋର ନିମେଷକ ଯେ ହେଲାନ ଅସରି
ସମସ୍ତ ସରୁ ସରୁ ତୁମ୍ଭମାନଙ୍କର ।
କହୁଅଛି ସରମ ଛାଡିକରି ମୁହିଁ
ସରମ ଦେହେ ଦୁଃଖ ସହିବି ମୁଁ କେହି ।
ଭାର୍ଯ୍ୟାକୁ ରଖିଥିଲେ ଉପୁଜଇ ପ୍ରଜା
ପ୍ରଜାବନ୍ତ ଲୋକକୁ ପୂଜନ୍ତି ବଡ଼ୋଜା ।
ଆପଣାକୁ ଜାତ କରିବା ସକାଶରୁ
ବୋଲାଏ ଜାୟା ପାଣିଗୃହୀତ ଯେ ସ୍ତ୍ରୀରୁ ।
କ୍ଷତ୍ରିୟର ଶତ୍ରୁକୁ ମାରିବାରୁ ଧର୍ମ
ଅଧିକ ଅଛି ବୋଲି ଶୁଣିନାହିଁ କାନ ।
ଜଟାସୁର ଜୟଦ୍ରଥଙ୍କଠାରୁ ମୋତେ
ରଖିଛ ତ ଏବେ ରଖ ହେ ମହାମତେ ।
ଯେଉଁ ରୂପେ ତୁମ୍ଭକୁ ଛେଚ ପଥରରେ
ସେରୂପେ ଛେଚ ମୁଷ୍ଟି କୀଚକ ପୃଷ୍ଠରେ ।
କାଲି ପ୍ରଭାତକୁ କୀଚକ ଥିଲେ ଜୀଇ
ଦେଖିବ ବିଷ ଖାଇ ଶୋଇବଇଁ ମୁହିଁ ।
ଏ ବୋଲି ଦ୍ରୁପଦନନ୍ଦନା ସୁବଦନା
ପାଡ଼ିଲେ ଡକା ଉଚେ ହୋଇଣ ବିମନା ।
ଭୀମ ସେହି କାଳେ ଓଠାରି ଦ୍ରୌପଦୀଙ୍କି
ପୋଟାଳି ବୋଇଲେ ଗୋ କାନ୍ଦୁଛ କାହିଁକି
ନିଜ ଦୁଇ ପାଣିରେ ଦ୍ରୌପଦୀ ନେତ୍ର ପାଣି
ପୋଛି ଭୀମ ପୁଣି କହିଲେ ଏହୁ ବାଣୀ ।
କୀଚକ ପରାଣକୁ ଜାଣ ଚନ୍ଦ୍ରମୁହିଁ
ତୋ ପାଇଁ ଯମପାଶେ ବସାଇବି ନେଇ ।
ସକାଳୁ ତା ସଙ୍ଗେ ସଙ୍କେତ ତୁମ୍ଭେ କର
ରାତରେ ମରଣ ମୁଁ କରିବି ତାହାର ।
ଦ୍ରୌପଦୀ ବୋଇଲେ କରିବି କି ସଙ୍କେତ
ତାହାକୁ ଆହେ ଭୀମ ତା ମୋତେ କହତ ।
ଭୀମ ବୋଇଲେ ହେ ନାଚବାପାଇଁ ଘର
ବିରାଟ ତ ତୋଳାଇ ଅଛନ୍ତି ଅପାର ।
ଦିବସେ କନ୍ୟାଏ ସେ ଘରେ ନାଚୁଥାନ୍ତି
ରଜନୀ ପ୍ରବେଶରେ ଛାଡ଼ିକରି ଯାନ୍ତି ।
ସେ ଘରେ ସବୁବେଳେ ପଡ଼ିଥାଏ ଶେଯ
ତହିଁ ଶୋଇଥିବି ହୋଇ ମୁଁ ମଲ୍ଲସଜ ।
କୀଚକ ଏକା ହୋଇଗଲେ ସେହିଠାକୁ
ଦେଖାଇବ ତାକୁ ପୁରୁବ ପୁରୁଷକୁ ।
କହିଥିବ ତାକୁଟି ଦ୍ରୁପଦ ଦୁହିତା
ଏକା ହୋଇକରି ଯିବାକୁ ମୋର କଥା ।
ଏଥିକି ଯେ ଉପାୟ ତହିଁରେ ଚତୁରୀ
ତୁମ୍ଭେ ତ ତୁମ୍ଭଙ୍କୁ କହିବ କି ବିସ୍ତର ।
ଭୀମଙ୍କ ମୁଖୁଁ ଶୁଣି ଏରୂପେ ଉତ୍ତର
ଆନନ୍ଦରେ ଫୁଲାଇ ଦେଇଣ ଶରୀର ।
ତୁମ୍ଭ ପାଣିଗୋସାଇଁ ମାଆ ବେଗେ ଗଲେ
ସୁଦେଷ୍ଣାଙ୍କ ସଦନେ ଯାଇଣ ରହିଲେ ।

—*—

## କୀଚକ ବଧ

ଏହିକାଳେ ରାତ୍ର ହୋଇଲା ଅବଶେଷ ।
କାକେ ଡକାଡ଼କି ହୋଇଲେ ଲଭି ତୋଷ
ପଡ଼ିଥିବା ଅଇଁଠା ଭାତ ଥଣ୍ଟେ ଖୁଣ୍ଟି
ପେଟକୁ ତୋଷ କଲେ ତାହାଦେଇ ଚୂଣ୍ଟି ।
ଉଲ୍ଲୁକ କୋଳାହଳ ହୋଇଲା ଦୁର୍ବଳ
ବେଳକୁ ବେଳ ଦିନ ହୁଅନ୍ତେ ପ୍ରବଳ ।
ଦିଶିଲା ପୂର୍ବଦିଗ-ନାରୀ ଏହି କାଳେ
ରବି ବ୍ୟାଜେ ସିନ୍ଦୂର ଟିକା ଧରି ଭାଲେ ।
ଭଲ ଭଲ ଲୋକେ ତା ଦେଖି ନିଦ୍ରା ଛାଡ଼ି
ଗଲେ ଯେ ଦାଣ୍ଡକୁ ପାଛୋଡ଼ା ହୋଇଯୋଡ଼ି
ପାଇଲା ସତ ଜାଣି କୀଚକ ବେଗରେ
ଦ୍ରୌପଦୀ ପାଶେ ଗଲା ମଦନ କାତରେ ।
କହିଲା କାଲି ତୋତେ ଦେଲି ଯେଉଁ ଦଶା
ମନେ ତ ତୋର ଥିବ ଆରେ ମୃଗଦୃଶା ।

ଧାଇଁ ଯେ ଗଲ ସଖି ବିରାଟଙ୍କଠାରୁ
ଜାଣିଲୁ ତ ତାଙ୍କର ମଜାର ଆଣ୍ଟରୁ ।
କେବଳ ନାମମାତ୍ର ବୋଲନ୍ତି ସେ ରାଜା
ମୁହିଁ ସିନା ପାଉଛି ଏ ରାଜ୍ୟରେ ପୂଜା ।
ମୁଁ ଯାହାକୁ ଯାହା କରିବି ପ୍ରାଣସହି
ତା ନାହିଁ କରିବାକୁ ସାମର୍ଥ୍ୟ ତା କାହିଁ ।
ଏବେ ତୁ ମୋତେ ଯେବେ ହୋଇବୁ ସୁମୁଖି
ପାସୋରି ଦେବି ତୋର ଦେହ କାମଦୁଃଖ ।
ଦ୍ରୌପଦୀ ବୋଇଲେ ହେ କାଳଠାରୁ ମୁହିଁ
ଜାଣିଲି ଏ ରାଜ୍ୟରେ ତୁମ୍ଭେ ଏକା ସାଇଁ ।
ମୋହଠାରେ ଯେବେ ଟି ବଳାଇଲ ମନ
ସ୍ତିରି ହୋଇ ତା କେତେ କରିବି ମୁଁ ଆନ ।
ମୋହର ଗନ୍ଧର୍ବ ପାଞ୍ଚୋଟି ପତି ଛନ୍ତି
ବଳ ବିକ୍ରମରେ ସେ ଜଗତେ ବିଖ୍ୟାତି ।
ଜାଣିବେ ସେ ଯେବେ କରିବେ ମୋତେନାଶ
ଏହି ସକାଶରୁ ଡରୁଛି ମୋ ମାନସ ।
ଏକା ହୋଇ ଯେବେ ଆସିବ ମୋହଠାକୁ
ତେବେ ମୁଁ ଦେବି ଯେ ତୁମ୍ଭଙ୍କୁ ସୁରତକୁ ।
କୀଚକ ବୋଇଲାକ ବୋଲୁଅଛୁ ଯାହା
ନାହିଁକରି ତାହା କି ପାରିବି ସୁଦେହା ।
ତୋ ବଚନ ମାନିଣ ଏକା ହୋଇ ମୁହିଁ
ଆସିବି ତୋ ପାଶକୁ ସନ୍ଦେହ ତ ନାହିଁ ।
ଦ୍ରୌପଦୀ ବୋଇଲେ ନର୍ତ୍ତନଗୃହ ଅଛି
ରାତ୍ର ହୋଇଲେ ଲୋକେ ଯାଆନ୍ତି ମୁରୁଛି ।
ସେହିଠାକୁ ଆପଣ ଲୁଚିଯିବା ହେବ
କାହିଁପାଇଁ କାହାକୁ ଏ ଜଣା ହୋଇବ ।
ମାଗୁଅଛି ତୁମ୍ଭଙ୍କୁ ହିନେ ବେଗକରି
ନ ଛାଡ଼ିବ ଫୁଲକୁ ଭୃଙ୍ଗ କଲାପରି ।
ଜାଣୁଛ ତ ଦରଶିଆ ଯେ ହେଲେ ଲୋକ
ଭୋକ ରହିବାରୁ ତା ମଣଇ ଅଧିକ ।
ଏହିରୂପେ ଦ୍ରୌପଦୀ ଦ୍ରୁପଦ କୁମାରୀ
ହସିଦେଲେ ନୟନ ଢାଳି ବଙ୍କିକରି ।
ସେହିକାଳେ ଦୁର୍ଦ୍ଦଣ୍ଡ କୁସୁମକୋଦଣ୍ଡ
ଛାଇଦେଲା କାଣ୍ଡରେ କୀଚକର ପିଣ୍ଡ ।
ଦ୍ରୌପଦୀଠାରେ ମନ ନୟନ ନିବେଶି
କୀଚକ ସ୍ବପୁରେ ପ୍ରବେଶ ହେଲା ଆସି ।

ଦ୍ରୌପଦୀଙ୍କ ଦେହେ ତ ପୂରିଥିଲା ରାଗ
ସେ ଦିନ ଷୋଳଦଣ୍ଡ ହେଲା ଷୋଳଯୁଗ ।
ମନରେ କରୁଥାନ୍ତି କେତେବେଳେ ରାତି
ହେବ ଯେ କୀଚକ ବସିବ ଯମ-କତି ।
କୀଚକ ଦ୍ରୌପଦୀ କହିବା ଭଙ୍ଗୀ ଶୁଣି
ଭାବଇ କେତେବେଳେ ହୋଇବ ରଜନୀ ।
ଘଡ଼ିକ ଘଡ଼ି ସେ ବାହାରି ଅଗଣାକୁ
ଚାହୁଁଥାଏ ଦିନମଣିଙ୍କର ଶେଷକୁ ।
ଛାଇ ମାପିକରିଣ ଘଡ଼ିକ ବୁଝଇ
କି କହିବା କାଳରେ ପଡ଼ିଛି ସେ ଯାଇ ।
ପୁଣି ସେ ବୋଲଇ ହେ ସବିତାଦେବତା
ବୋଲାଅ ତ ତୁମ୍ଭେଟି ଜଗତ କରତା ।
ମୋ ଆରତ ହେନଣ ବେଗେ କର ଗତି
କରୁଅଛି ତୁମ୍ଭ ପଦରେ ମୁଁ ଭକତି ।
ତା ଶୁଣି ମୃତ୍ୟୁଦେବତା ହସ ହସ
ହୋଇ ମୋଡ଼ୁଥାଏ ତାହା ପଛରେ ନିଶ ।
ଏ ସମୟରେ ପଶ୍ଚିମ ଅଞ୍ଚଳ ମସ୍ତକ
ଛୁଇଁଲେ ଯାଇକରି ଦିନଙ୍କ ନାୟକ ।
କ୍ରମରେ କିରଣକୁ କ୍ଷୀଣ କରିଦେଲେ
ମ୍ଲାନଦଶା ଲଭି ସେ ତହିଁ ଲୀନ ହେଲେ ।
ସେ ଦିଗନାରୀ ପାଟବସ୍ତ୍ରକୁ ପହରି
କୋଳେ ଧରି ନେଲା କି ତାହା ଜାଣିପାରି ।
କ୍ରମଶରେ ଅନ୍ଧକାର ଅକୂପାର ଘୋଟି
ବୁଡ଼ାଇ ଦେଲା ଆସି ଆଲୋକ କୋଳାଟି ।
ଏହା ଦେଖିକରି କୀଚକ ଲଭି ତୋଷ
ବୋଳଣ ହେଲା ଅଙ୍ଗରାଗ ଅଙ୍ଗଦେଶ ।
ନାନା ଜାତିର ଅଳଙ୍କାରମାନ ଭରି
ଦେଖିଲା ସ୍ବରୂପ ଦର୍ପଣ କରେ ଧରି ।
ଦୀପଟି ଲିଭିଯିବା ବେଳରେ ଜଳିଲା
ଶୋଭାପରି କୀଚକ ତେଜ ପ୍ରକାଶିଲା ।
ବୋଇଲା କେତେ ଭାଗ୍ୟ କଲା ମୋର ଅଙ୍ଗ
କରିବ ଭୋଗ ଏ ସୈରନ୍ଧ୍ରୀଦେହ ସଙ୍ଗ ।
ଦ୍ରୌପଦୀ କୀଚକ ଆସିବା କାଳ ଜାଣି
ଭୀମ ଆଗରେ ଯାଇ କହିଲେ ଏ ବାଣୀ ।
ଏହିକ୍ଷଣି କୀଚକ ନାଚିବା ସ୍ଥାନକୁ
ଆସିବ ଲୁଚି ମୋତେ ଭୋଗ କରିବାକୁ ।

ତୁମ୍ଭେ ଆଗହୋଇ ସେ ସ୍ଥାନେ ଭୀମସେନ
ଉହ ଲୁଚିକରି ସେ ହୋଇଛନ୍ତି ନର୍ତ୍ତନ ।
କୀଚକର ଯେବଣ ହେଲାରେ ଜୀବନ
ଆସି ମୋ ଅଶ୍ରୁ କର କରରେ ମାର୍ଜନ ।
ଭୀମ ବୋଇଲା ଗୋ ତୁମ୍ଭର କଥାପଦ ।
ଚନ୍ଦ୍ର ହୋଇ ତୋଷୁଛି ମୋ ହୃଦ-କୁମୁଦ
କାହାକୁ ହିଁ ମୁହିଁ ଏହି କଥାରେ ଲେଉଡ଼ା ।
କହୁନାହିଁ ଛଡ଼ାଇବାକୁ ତୁମ୍ଭ ପୀଡ଼ା ।
ସତ୍ୟକରି କହୁଛି ତୋତେ ଚନ୍ଦ୍ରମୁହିଁ
ଏବେ କୀଚକକୁ ବଧାଇ ଦେବି ମୁହିଁ ।
ତା ପାଇଁ ଯେବେ ତା'ର ଭାଇଏ ଯୁଝିବେ
ସେହି ମଧ୍ୟ ମୋ ହାତେ ମରିବେଟି ତେବେ ।
ଏହା ଟି ଯେବେ ଜଣା ପଡ଼ିବ ଗୋ ସଖି
ତେବେ ମୁଁ ତହିପାଇଁ ନୋହିବିକରି ଦୁଃଖୀ ।
ସୁଯୋଧନ ରଜାର ଯେବନକରି ପ୍ରାଣ
ହୋଇବ ହସ୍ତିନାରେ ମୁହିଁ ନରରାଣ ।
ଯୁଧିଷ୍ଠିର ସତ୍ୟରେ ଦେଇଣ ମାନସ
ହୋଇଥାନ୍ତି ପଞ୍ଚକେ ବିରାଟର ଦାସ ।
ଦ୍ରୌପଦୀ ବୋଇଲେ ହେ ଗ୍ରଢ଼ିବ ସତ୍ୟକୁ ।
କହୁଛି ନ କରିବ ଏରୂପେ କ୍ରୋଧକୁ ।
ଏକା କୀଚକ ତ ନ ମରିଲେ ମୋର ଦୁଃଖ
ଯାଉଅଛି ଜାଣ ହେ ଭୀମ ନରଶିଖ ।
ଭୀମ ବୋଇଲେ ଆହେ ଦ୍ରୁପଦଙ୍କ ବହି
ଯାହା ଟି କହୁଅଛ ଏହା ମୁଁ ମାନୁଛି ।
ଅଦୃଶ୍ୟ ହୋଇକରି କୀଚକର ପ୍ରାଣ
ଏ ରାତ୍ରିଭିତରେ ନେବି ମୁଁ କରି ରଣ ।
ଦ୍ରୌପଦୀ ବୋଇଲେ ହେ ଏହାକେତେକର
ମନ କଲେ ତୁମ୍ଭେ ମେରୁକୁ ଚୂରିପାର ।
ଏରୂପେ ଦ୍ରୌପଦୀ ପ୍ରିୟାକୁ ପ୍ରିୟ କହି
କହିକରି ଯୁଧିଷ୍ଠିରଙ୍କ ସାନଭାଇ ।
ମୃଗଟିକୁ ସିଂହ ଜଗିଲା ପରି ହୋଇ ।
ଶୋଇଲେ ସେହୁ ନୃତ୍ୟଘରେ ଶେଯେ ଯାଇ
କୀଚକ ବାରିକରି ନର୍ତ୍ତନ ସମୟ
ଆନନ୍ଦରେ ଫୁଲାଇ ଦେଇଣ ହୃଦୟ ।
କାହାକୁ ହିଁ ସଙ୍ଗତରେ ସେ ନ ଆଣିଲା
ଏକା ନୃତ୍ୟ ଆଗାର ଭିତରେ ପଶିଲା ।

ସେ ଘରୁଟିଯାକ ତ ହୋଇଛନ୍ତି ଅନ୍ଧାର
ଏଣୁ କିଛି ନ ଜାଣିଲା ସେହୁ ପାମର ।
ମୃତ୍ୟୁପରି ଭୀମ ଶେଯରେ ଶୋଇଲେ
ତାଙ୍କୁ ଯାଇ କୀଚକ ପୋଟାଳିଲା ଭଲେ ।
ବୋଇଲା ଆଗୋ ସଖି ସୁକୁନ୍ଦରଦନା ।
ଅନାଇଁ ଥରେ ମୋତେ କଥା କହ କନା
ତୋ ହାସ ସୁଧାରସ ମୋ ଅଙ୍ଗେ ବରଷି
ଦେଉ କନା ଅନଙ୍ଗ ସନ୍ତାପ ମୋର ନାଶି ।
ତୋ ଅଧର ବନ୍ଧୁକ-ମଧୁ ମୁଖେ ପାନ
ନ କରାଇ କମ୍ପା ଗୋ ହେଉଛୁ ମଉନ ।
ତୋର ପାଦ ବେନି ମୋ କଟିଦେଶେଛନ୍ଦ
ଉଡ଼ କୁଚ ଦୁହିଁକ ମୋ ହୃଦରେ ଗନ୍ଧ ।
କରାଇ ତୋ ଝୁଣ୍ଟିଆ ପାହୁଡ଼ ଝମକ
ଥିଆଅ ମଦନର ହୃଦରେ ଚମକ ।
ଆରେ ନବ ଅବଳା ବାଳା ପ୍ରେମଶୀଳ
ମୋ ଉରତରେ ମାତ୍ର କୁ କର କଟି ତଳା ।
ତୋର ଜାନୁ ରମ୍ଭାଭେଳାକୁ ମୋତେଦେଇ
ମଦନସିନ୍ଧୁ ପାରି କର କର ପ୍ରାଣ ସହି
ତୋ ପାଇଁ ରଖାଇଛି ବହୁତ ମୁଁ ଧନ ।
ଯେତେ ଇଚ୍ଛା ତେତେ ନିଅରେ ପ୍ରାଣଧନ
ଗନ୍ଧର୍ବ ପତିଙ୍କ ଡ଼ରୁ ଡ଼ରୁ କାହିଁପାଇ
ମୋ ବଳ ଅଧକୁ ସେ ପାରିବେ ତ ନାହିଁ
ସହସ୍ର ଦାସୀ ଯେନ ରତ୍ନ ଅଳଙ୍କାର
ଯତନ କରି ମଣ୍ଡ ତୋହର ଶରୀର ।
ମୋ ନାରୀ ନକ୍ଷତ୍ରଙ୍କ ମଧ୍ୟେ ଶଶୀ ପରି ।
ବସିବୁ ଯେବେ କୁରୁଶୋଭିନୀ ସୁନ୍ଦରୀ ।
ତେବେ ମୋ ନୟନ ଚକୋର ଦୁଃଖଦଶା ।
ଯିବ ସତ କହୁଛି ଆରେ ମଦାଳସା ।
ସୁନ୍ଦରରେ ମୁହିଁ ଯେ ସୁନ୍ଦରୀରେ ତୁହି ।
ଭଲ ତୋତେ ମୋତେ ଖଞ୍ଜିଲା ଆଣି ବିହି
ଭୀମ ବୋଇଲେ ଆହେ ନାଗର ରତନ ।
ଭଲ କହୁଅଛ ଭଙ୍ଗୀରେ ତ ବଚନ ।
ମୋ ପରି ନବୀନା ନୟନେ ଆଜଯାଏ ।
ଭୋଗ କରି ନ ଥିବ ଜାଣେ ତୁମ୍ଭ କାୟେ
ତୁମ୍ଭେ ତ ବୋଲଉଅଛ ଜଗତେ ଚତୁର
ଜାଣିବ ଆଜ ରତି ଚାତୁରୀ ମୋହର ।

ଏହା କହିଣ ଭୀମ ଶେଯରୁ ଉଠିଲେ
ହସି ହସି ପୁଣି ଟି ତାହାକୁ ଭାଷିଲେ ।
ଆଜ ବନ୍ଧ ରତିଭଙ୍ଗୀରେ ତୋର କାଳ
ଝିଙ୍କିବ ମୁଁ ଆସିଛୁ ଜାଣ ତୋର କାଳ ।
ତୋହ ଲଗିମା ଏହା ଦେଖି ଡ଼କାପାଡ଼
ବସିବ ସାହସକୁ ଦେହୁ ଦେଇ ଗୁଡ଼ ।
ତୁ ପାପୀ ମଲେ ସୈରନ୍ଧ୍ରୀଙ୍କ ପତିମାନେ
ସୁଖରେ ବହରିବେ ଏବଷ୍ଟ ଭୁବନେ ।
ଅହେ ଜନ୍ମେଜୟ ଏହି ରୂପରେ କହି
ଆଗ ବାଳ ଧଇଲେ ଭୀମ କୋପ ବହି ।
କୀଚକ ତ ଅଟଇ ମହାବଳୀୟାର
ମୁଣ୍ଡ ଘୁଞ୍ଚି ବାଳ ଛଡ଼ାଇ ନେଲା ତା'ର ।
ଭୀମଙ୍କୁ ଦୁଇ ହାତେ ପୋଟାଳ ପକାଇ
ବାହୁ ଯୁଦ୍ଧ କଲା ସେ ମଧ କୋପବହି ।
ଯେରୂପରେ ହାତୁଣୀ ପାଇଁ ହାତୀ ଦୁହେଁ
ବନରେ ଯୁଦ୍ଧ କରୁଥାନ୍ତି ଅତି କୋହେ ।
ସେହିରୂପେ ସେ ନରସିଂହ ଦୁଇଜଣ
ଯୁଦ୍ଧକଲେ ଦେଖାଇ ନିଜ ଦେହ ଟାଣ ।
ପାଞ୍ଚୋଟା ମୁଣ୍ଡ ଥିବା ସର୍ପପରି ହୋଇ
ପୁଣି ଯୁଦ୍ଧ କଲେ ସେ ଦୁହେଁ କ୍ରୋଧବହି ।
ସଢ଼ଏ ଯାଏ ହୋଇ ଦୁହେଁ ଭିଡ଼ାଭିଡ଼
ଯୁଦ୍ଧ କଲେ ହୋଇଣ କାମୁଡ଼ାକାମୁଡ଼ ।
ନଖମାନଙ୍କରେ ସେ ହୋଇ ଛିଣ୍ଡାଛିଣ୍ଡି
ଗରଜିଲେ ଯେସନେ ମେଘ କଳାହାଣ୍ଡି ।
କୀଚକ ବାହାପଟ ମାରନ୍ତେ ଟି ହୃଦେ
ପଛକୁ ନ ଟଳିଲେ ଭୀମସେନ ପଦେ ।
ଉଭୟର ଦୁର୍ଲ୍ଲଭ ବଳସ୍ୱ ସୁଲଭ
ହେବାରୁ ଯୁଦ୍ଧ କଲେ ଯେସନେ ବୃଷଭ ।
ଦୁହିଙ୍କ ଭୁଜଘାତେ ଶବଦ ଶୁଭିଲା
ଅନଳେ ଫୁଟୁଥିବା ପାଉଁଶ ନିଭିଲା ।
ଭୀମ ତା'ର କଟିଦେଶକୁ ଦୁଇ ହାତେ
ଭିଡ଼ିକରି ଝିଙ୍କିଲେ ଅତି କୋପଚିତ୍ତେ ।
ସେ କାଳେ ଭୀମ ବଳ ପବନ ହୋଇଲା
କୀଚକ ମହାମହୀରୁହ କମ୍ପାଇଲା ।
ସେ ଘାତରେ କୀଚକ କରି ଘୋର ରଡ଼ି
ମନେ କଲା ଦେବ ମୁଁ ପରାଣକୁ ଛାଡ଼ି ।

ସୈରନ୍ଧ୍ରୀ ଏହା ବଳ ପୂର୍ବରୁ ତ ମୋତେ
କହୁଥିଲା ଯେ ମୂର୍ଖ ନ ଗଲି ପରତେ ।
ସେହି ସକାଶରୁ ମୋର ଏ କଷ୍ଟ ଦଶା
ପରବେଶ ହେଲା ପାଇଲି ଲୋକହସା ।
ଏବେ ଏହା ମୃକ୍ତୁଁ ସିଦ୍ଧ ମୁଁ କେଉଁରୂପେ
ନ ମରିବ ଗନ୍ଧର୍ବ ଯୁଦ୍ଧେ ମୋର କୋପେ ।
ଏରୂପେ ଚିନ୍ତିସେ କୀଚକ ମହାବଳୀ
ଚତୁରଣ ପୁଣି ହୋଇଲା ଧୈର୍ଯ୍ୟଶାଳୀ ।
ଜାନୁରେ ଭୀମଜାନୁ ଦୁହିଁକି ମାଇଲା
ଭୀମଙ୍କୁ ଚଟ କରି ସେହୁ ପକାଇଲା ।
ଭୀମ ଯେ ସେହିକ୍ଷଣି ଦେଖାଇଣ ବେଗ
ବସିଲେ ଉଠି ମନେ କରି ଅତି ରାଗ ।
କୀଚକକୁ ଧରି ହୋଇଲେ ଗଡ଼ାଗଡ଼ି
ତା ମୁଣ୍ଡକୁ ଏହାଙ୍କ ମୁଣ୍ଡ ଆଣ୍ଟେ କୋଡ଼ ।
ଦେଲେ ମୁଥ ଭୀମ କୀଚକ ବକ୍ଷସ୍ଥଳେ
ତେବେ ହେଲେ ଯୁଦ୍ଧ କଲା ସେ ଅବକଳେ
ପଛକୁ ପାଦ ତାର ପଦେ ନ ଘୁଞ୍ଚଇ
ରହିଲା ଭୀମ ଆଗେ ଗୁମ୍ଭ ତେଡ଼ି ଦେଇ ।
ଭୀମ ତ ମହାବଳୀ ମଧ୍ୟେ ବଳୀୟାର
ବଳରେ ତା'ର ଗର୍ବ କରିଦେଇ ଚୂର ।
ବକ୍ଷସ୍ଥଳେ ପକାଇ ତାକୁ ଭୀମ ବଳୀ
ଉଣ୍ଡିବା ଘାତେ ଦେଲେ ତା ପ୍ରାଣକୁ ଦଳି ।
ପୁଣି କରେ ତାହାର ବାଳକୁ ଧଇଲେ
ସେ ଘର ଖୁରପଟଯାକରେ ବୁଲିଲେ ।
କୀଚକର ଶ୍ରମକୁ ଜାଣି ବୃକୋଦର
ଚିପିଦେଲେ ସେ ଶଙ୍ଖ ନଳୀକୁ ତାହାର ।
ସେ ସକାଶୁ କୀଚକ ଅଜ୍ଞାନ ହୋଇଲା
ଭଙ୍ଗାଭେଣ୍ଡି ପରି ଟି ରଡ଼ିଟାଏ କଲା ।
ଭୀମ ଦୁଇଆଣ୍ଠୁ ତାହା ଅଣ୍ଟାରେ ଦେଇ
ବେକୁଟିକି ଦେହେଲେ ତା ପିଠିରେ ଲଗାଇ ।
ସେହି ଘାତରେ ମେରୁହାଡ଼ ଉଡ଼ଭଡ଼
ଶବଦ କରି ହୋଇଗଲା ଦୁଇ ଗଡ଼ ।
ତା'ର ଦୁଇ ଗୋଡ଼କୁ ଧରି ଭୀମ ବଳେ
ବୁଲାଇଲେ ଯେ ବେଢ଼ାବେଢ଼ି କୋପବଳେ
ବୋଇଲେ ଅରେ ପାପୀ ଆଜ ତୋତେ ନାଶି
ମୋ ଭାଇ ଭାରିଯାର ମନ ଦେବି ତୋଷି ।

ଆହେ ଜନ୍ମେଜୟ ଏରୂପେ ଭୀମସେନ ।
କଣ୍ଠ ତାକୁ ମସ୍ତଦେଶରେ ଦେଇ ସ୍ଥାନ
ନିଜ ଉରୁପୃଷ୍ଠକୁ କାମୋଡ଼ ଦନ୍ତରେ
ଦଳିଲେ ପେଟଠାରୁ ବୁଲୁଯାଏ ଥରେ ।
ପାଦ ହସ୍ତ ଶିର ତାହାର ଲୋପ୍ତ କରି
କୀଚକକୁ ରଖିଲେ ମାଂସ ଟେକା କରି ।
ଅଗ୍ନି ଜାଳି କୃଷ୍ଣାକୁ ଦେଖାଇଲେ ତାହା
ବୋଇଲେ ଏବେ କୋପ ଗଲା କି ସୁଦେହା
ଏହା କହିଣ ଭୀମ କୀଚକ ଶବକୁ ।
ମାଇଲେ ଗୋଡ଼ ଟେକି ବହିଣ କୋହକୁ ।
ଏଥିଅନନ୍ତରେ ସେ ଭୀମ ମହାମନା
ବୋଇଲେ ଜାଣିଥାଅ ଦ୍ରୁପଦନନ୍ଦନା ।
ତୋତେ ମନ କରିବା ଲୋକର ଏ ଦଶା
ହୋଇକରି ହୋଇବ ଯମପୁରେ ବସା ।
ଆହେ ଜନ୍ମେଜୟ କୀଚକ ପ୍ରାଣ ହରି
ତରତର ହୋଇଣ ବଳର ବଇରି ।
ହାଣ୍ଡିଶାଳ ଭିତରେ ଶୋଇବାର ସ୍ଥାନେ
ଗଡ଼ିଲେ ଶୋଇ ଆଣି ବୃକ ତୋଷମନେ ।
ଏ ଅନ୍ତରେ ଦ୍ରୌପଦୀ ଡ଼ାକିଣ ଲୋକଙ୍କୁ ।
ବୋଇଲେ ମଲା ଏବେ ଦେଖ କୀଚକକୁ ।
ମୋତେ ପର କାଲି ସେ ମାରିଥିଲା ମାଡ଼
ଆଜ ମୋର ପତି ଏ ଭାଙ୍ଗିଲେ ତା ହାଡ଼ ।
କହୁ ତ ଥିଲି ମୁହିଁ ଗନ୍ଧର୍ବେ ମୋ ପତି
ଯେ ମୋତେ ମତି କରେ ହୁଅନ୍ତ ବିପତ୍ତି ।
ତାହା ଶୁଣିଣ ଲୋକେ ଲଗାଇଣ ତୁଳା
କୀଚକକୁ ଆସିଣ କଲେ ସେ ଶଙ୍ଖୋଳା ।
ପାଣି ପାଦ ମୁଣ୍ଡ ତ ହୋଇଛି ଅଦୃଶ୍ୟ
ଦେଖିଲେ କୀଚକର ମାତ୍ର ବୁକୁ ଦେଶ ।
ବୋଲାବୋଲି ହେଲେ ସେମାନେ ପରସ୍ପରେ
ଗନ୍ଧର୍ବ-ରମଣୀକି ଅଟେ ଏ ରୂପରେ ।
ଆଜଯାଏ ଯେତେକ ଗୁଡ଼ିଲେଣି ଗାତ୍ର
କାହା ଶବ ଏପରି ଦେଖିନାହିଁ ନେତ୍ର ।
ସେହି କାଳେ କୀଚକ ବନ୍ଧୁମାନେ ଆସି
କାନ୍ଦିଲେ କୀଚକ ଶବକୁ ବେଢ଼ି ବସି ।
ସ୍ଥଳକୂର୍ମ ପରି ହୋଇଛି ଶବ ବୋଲି
ପୋଡ଼ିବାକୁ କାଢ଼ିଲେ ଦାଣ୍ଡକୁ ତା ଭାଳି ।

କୀଚକର ପାଞ୍ଚଊଣର ଶଏ ଭାଇ
ଥିଲେ ଭାଇ-ମୃତ୍ୟୁ ଦେଖି ସେ କ୍ରୋଧ ବହି ।
ବୋଇଲେ ସୈରିନ୍ଧ୍ରୀକି କୀଚକ ଚିତାରେ
ପୋଡ଼ିଦେବା ଚାଲ ହେ ଆମ୍ଭେ ଅଚିନ୍ତାରେ
କୀଚକ ତ ଏହାକୁ ମନ କରି ମଲା
ତାହାଠାରୁ ରତିରସ ତ ନ ପାଇଲା ।
ମଲେ ତାହା ସଙ୍ଗେ ଏହାକୁ କୋଳେ ଧରି
ସୁଖେ ସେ କୀଚକ ଭୁଞ୍ଜିବ ସ୍ୱର୍ଗଶିରୀ ।
ବିରାଟ ବୋଇଲେ ତା ଶୁଣି ଏହିରୂପେ
କର ଯେବେ ମଲା କୀଚକ ତା'ର ତାପେ ।
କୀଚକ ଭାଇମାନେ ରଜାର ବଚନ
ଶୁଣିବାକ୍ଷଣି ଧରି ସୈରିନ୍ଧ୍ରୀ ବସନ ।
ବୋଇଲେ ତୋ ପତି ମାଇଲେ କୀଚକକୁ
ତୁ ଆସିବୁ ଏବେ କୀଚକ ସାଥିକୁ ।
ସୈରିନ୍ଧ୍ରୀ ତାହା ଶୁଣି ବଦନ ଶୁଖାଇ
ଭାବିଲେ କି ଉପାୟ ଆଚରିବି ମୁହିଁ ।
କୀଚକ ଶବେ ବାନ୍ଧି ଦ୍ରୁପଦ ଝିଅକୁ
ବହିଲେ ସେ ନେଇଗଲେ ଶ୍ମଶାନସ୍ଥାନକୁ ।
ଦ୍ରୌପଦୀ ବୋଇଲେ ହେ ଜୟ ଜୟଦ୍ବଳ ।
ଜୟନ୍ତ ଜୟତ୍ସେନ ବିଜୟ ମହାବଳ ।
ମୋହର ଏ ବିପତ୍ତି କାଳରେ ଗୁପତ
କରିବାର ଶରୀର ନୁହଇ ଉଚିତ ।
ତୁମ୍ଭେ ପରି ଗନ୍ଧର୍ବପତି ଥିବାଠାରେ
ଅନାଥ ପରି ଦେଖ ମରୁଛି ଏଠାରେ ।
ଭୀମ ତାହା ଶୁଣି ଶେଯକୁ ଛାଡ଼ିଦେଇ
ବୋଇଲେ ସୈରିନ୍ଧ୍ରୀ ନିର୍ଭୟେ ଥାଅ ରହି ।
ଏହା ବୋଲି ହାଣ୍ଡିରୁ କଳା ବୋଳିହେଲେ
କଳାକନା ଗୁଡ଼ାଏ ମୁଣ୍ଡରେ ବାନ୍ଧିଲେ ।
ମୁଖରେ ସେ କଳା ପାଉଁଶ ଦେଇ ମାଖି
ଘୂରିଲେ ରଙ୍ଗ କରି ଚରିଟି ହି ଆଖି ।
ଚରିଟାଏ ମାରିଣ ପାଚେରି ଡେଇଁଲେ
ପ୍ରିୟା ଦ୍ରୌପଦୀଙ୍କ ହିତକୁ ବିଚାରିଲେ ।
ମହାତାଳବୃକ୍ଷଟାଏ ଯେ କରେ ଧରି
ଧାଇଁଲେ କୀଚକ ଚିତାକୁ ବେଗ କରି ।
ସେ ଗଛଟା ଗଣ୍ଡିକି ଦଶଜଣଙ୍କୁ
ପାଇବ ଏକାବେଳକରେ ହେଲେ ଛିଣ୍ଡ ।

କୀଚକ ଭାଇଏ ଭୀମଙ୍କ ରୂପ ହେର
ପଳାଇଲେ ଶ୍ମଶାନଭୂମି ଗୁଡ଼କର ।
ଭୀମ ସେକାଳେ ଭୀମ ପରାକ୍ରମ କଲେ
ସବୁ କୀଚକର ବୃକ୍ଷରେ ଜୀବ ନେଲେ ।
ବୋଇଲେ ଆଗୋ କୃଷ୍ଣା ମନୁ ଭୟ ତୃଷ୍ଣା
ଘୁଡ଼ଣ ସେବାକର ଯାଇଣ ସୁଦେଷ୍ଣା ।
ଶଏପାଞ୍ଚ ଭାଇଙ୍କ ଭୁଲେ ଯେ କୀଚକ
ଏରୂପେ ଭୀମ କୋପେ ପେଷି ଯମଲୋକ ।
ଗାଧୋଇ କରିଣ ଗନ୍ଧବା ଘରେ ପଶି
ଶୋଇଲେ କଟୀଦେଶେ ମାରକର ଘୃଷି ।
ସେ ଦେଶରେ ଯେତେକ ନରନାରୀ ଥିଲେ
ଗନ୍ଧର୍ବ ମାରୁଣୀକ ଦେଖି ସେ ଡରିଲେ ।
ବୋଇଲେ ଯେ ହୋଇବ କାଳପାଶେ ବନ୍ଧା
ସେ ଏକା କରିବଟି ଗନ୍ଧର୍ବଙ୍କ ନନ୍ଦା ।
କୀଚକ ଯେ ପାଞ୍ଚଉତ୍ତର ଶଏ ଭାଇ
ମରିବାର ଦେଖିଣ ଲୋକେ ଭୟ ହୋଇ ।
ବିରାଟଙ୍କୁ ବୋଇଲେ ଆଜ ତୁମ୍ଭ ଶଳା-
ମାନଙ୍କୁ ପ୍ରେତରାଜ ବାନ୍ଧି ଘେନଗଲା ।
ବିରାଟ ବୋଇଲେ ହେ ସେ କାହିଁକି ମଲେ
ଏହା ମୋତେ ବିସ୍ତାର କହନ୍ତୁ ଲୋକେ ଭଲେ ।
ସେ କହିଲେ କୀଚକ ଭାଇଏ ତୁମ୍ଭ ବୋଲେ
ସୈରନ୍ଧ୍ରୀକି କୀଚକ ଶବେ ବାନ୍ଧିନେଲେ ।
କୀଚକକୁ ଶ୍ମଶାନଭୂମିରେ ଥୁଆଇ ।
ଚିତା କରି ବସିଲେ ତା'ର ଦାହ ପାଇଁ ।
ସେ କାଳେ ସୈରନ୍ଧ୍ରୀ କରନ୍ତେ ମନେ ଚିନ୍ତା
ଆସି ପାଇଗଲା ଗନ୍ଧର୍ବ ବଳବନ୍ତା ।
ତାଳଗଛଟାଏ ସେ ଧରି କରି କରେ
ମାଇଲା କୀଚକ ଭାଇଙ୍କି ନିଃଶଙ୍କରେ ।
ସୈରନ୍ଧ୍ରୀ ଥିଲେ ଜାଣୁଅଛୁ ତୁମ୍ଭ ପୁର
ରଖିବାକୁ ନାହିଁଟି ସାମର୍ଥ୍ୟ କାହାର ।
ଏଥିକ ଯେ ଉଚିତ ବିସ୍ତର ବିସ୍ତର
ଆଚରଣ ବେଗେ କର ହେ ଦଣ୍ଡଧାରୀ ।
ବିରାଟ ବୋଇଲେ ହେ କୀଚକ ନାଆଁରେ
ପୋଡ଼ିଦିଅ ତାଙ୍କ ଭାଇଙ୍କି ନନ୍ଦ'ସ୍ପୁରେ ।
ମରିବା ଲୋକକୁ ଶୋଚନା କରିବାର
ଉଚିତ ନୁହଇ ପଣ୍ଡିତମାନଙ୍କର ।

ଏହା ଶୁଣିଣ ଲୋକେ ସେଠାରୁ ଚଳିଲେ
କୀଚକ ନାଆଁରେ ତା ଭାଇଙ୍କି ପୋଡ଼ିଲେ ।
ଗୋବର ଲଗାଇଣ ନଦୀରେ ଗାଧୋଇ
ଶଏଥର ଆସିଲେ ଗୃହେ ଶୁଦ୍ଧ ହୋଇ ।
ବିରାଟ ସୁଦେଷ୍ଣାଙ୍କ ସମୀପକୁ ଗଲେ
ସୈରନ୍ଧ୍ରୀଙ୍କି ଦେଖାଇଦିଅ ତୁ କହିଲେ ।
ମୁଁ ଯେବେ ଯାଇକରି ବୋଲିବି ତାହାକୁ
ଗନ୍ଧର୍ବେ ଆସି ଏବା ନେବେ ମୋ ପ୍ରାଣକୁ ।
ମାଇଲା ଯେ କୀଚକ ପରାଏ ମାନବ ।
ମୋତେ ମାରିବାକୁ ତାକୁ କଷ୍ଟ ହେବ ।
ଏହାକହି ବିରାଟ ଆସିଲେ ସଭାକୁ
ମନରେ ଅତିଶୟ ଧରିଣ ଦୁଃଖକୁ ।
କୃଷ୍ଣା ମୁକ୍ତ ହୋଇ ଟି ଭୀମଙ୍କ ବଳରେ ।
ଶିରସ୍ନାନ କଲେ ସେ ପଶିଣ ଜଳରେ ।
ଶୁଖିଲା ବସନକୁ କରି ପରିଧାନ
ସୁଦେଷ୍ଣା ସଦନକୁ କରନ୍ତେ ଗମନ ।
କେତେ ଲୋକ ତାହାଙ୍କୁ ଦେଖି ପଳାଇଲେ
କେତେଲୋକ ଦେଖିଣ ଆଖି ବୁଜିଦେଲେ ।
କେତେଲୋକ ବୋଇଲେ ଏହାକୁ ବଚନ
କହିଲେ ଗନ୍ଧର୍ବେ ଟି ଘେନିବେ ଜୀବନ ।
ଦ୍ରୌପଦୀ ଆସୁ ଆସୁ ଭୀମଙ୍କୁ ଦେଖିଲେ
ବିରାଟ ଖନ୍ଦାଘରେ ଛିଡ଼ା ହୋଇଥିଲେ ।
ହସିଣ ବୋଇଲେ ଯେ କଲା ମୋତେ ରକ୍ଷା
ତାହାକୁ ନମସ୍କାର କରୁଅଛି ମୁହିଁ ।
ଭୀମ ବୋଇଲେ ଆଗୋ ସୈରନ୍ଧ୍ରୀ ଗନ୍ଧର୍ବେ
ମନକଲେ ଏ ରାଜ୍ୟକୁ ନାଶିଦେବେ ।
ତୁମ୍ଭଙ୍କୁ ରଖିବାର ତାହାଙ୍କୁ ଅଧିକ
ନୁହଇ ଜାଣ ସ୍ତ୍ରୀକୁଳଙ୍କ ନାୟକ ।
ସେଠାରୁ ଯାଇ ଖଣ୍ଡେଦୂରର ଅନ୍ତରେ
ଅର୍ଜୁନଙ୍କୁ ଦେଖିଲେ ଦ୍ରୌପଦୀ ନେତ୍ରରେ ।
ମାଦଳଟାଏ ଅଣ୍ଟାଦେଶେ ବାନ୍ଧିକରି
ବଜାଇ ନାଚୁଛନ୍ତି ଉତ୍କଟ ଉଚ୍ଚାର ।
ଉତ୍ତର ଆଦି କନ୍ୟା ଯେତେ ନାଚୁଥିଲେ
ଦ୍ରୌପଦୀଙ୍କି ଦେଖି ଏ ବଚନ କହିଲେ ।
ଭଲ ହେଲା ମରାଇ ବିରାଟ ଶଳାଙ୍କୁ
ଆସିଲୁ ସୈରନ୍ଧ୍ରୀ ନାଶ କରି ଶୋକକୁ ।

ବୃହନ୍ନଳା ମାଦଳବଜା ଛାଡ଼ିକରି
ବୋଇଲେ ଶୁଣ ଆଗୋ ସୈରନ୍ଧ୍ରୀ ସୁନ୍ଦରୀ
କି ରୂପରେ ଗନ୍ଧର୍ବେ ବିରାଟ ଶଳାଙ୍କୁ
ମାଇଲେ ତାହା ଥରେ କହ ତ ଆମ୍ଭଙ୍କୁ ।
ସୈରନ୍ଧ୍ରୀ ବୋଇଲେ କି ପୃଚ୍ଛ ବୃହନ୍ନଳା
ତୁମ୍ଭର ତ ହୋଇଛି ମନୋହର କଳା ।
ଗୀତ ଗାଇ ମାଦଳ ବାଦ୍ୟକୁ ବଜାଇ
ପେଟ ପୋଷ ହେ କନ୍ୟାମାନଙ୍କୁ ନଚାଇ ।
ହୋଇଛ ତୁମ୍ଭେ ତ ମନୁଜ ନପୁଂସକ
ମୋହଠାରେ ଅଛି ବା କି କାର୍ଯ୍ୟ ଅଧିକ ।
ପୁଣି ତ ମୋହପରି ନୁହ ତୁମ୍ଭେ ଦୁଃଖୀ
ନେଉଅଛ ତ ହାତ ବରତନ ଲେଖି ।
ଅରଜୁନ ବୋଇଲେ ବୃହନ୍ନଳା ଦୁଃଖ
କହିଲେ ନ ସରିବ ହୋଇବ ଅଲେଖ ।
ମୋ ହୃଦୟ ତୁମ୍ଭଙ୍କୁ ଗୋଚର ତ ନାହିଁ
ଏଣୁ ଏହିରୂପେ କହୁଛ ଗୃହମୁହିଁ ।
ଆହେ ଜନ୍ମେଜୟ ରାଜନ ମହାମନା
ଏରୂପେ କଥାବାର୍ତ୍ତା ଦ୍ରୁପଦନନ୍ଦନା ।
ଭୀମ ଅରଜୁନଙ୍କ ସଙ୍ଗତରେ ହୋଇ
ଗଲେ ଯହିଁ ଥିଲେ ବିରାଟ ଭାର୍ଯ୍ୟା ରହି ।
ସୁଦେଷ୍ଣା ସେହିକ୍ଷଣି ବୋଇଲେ ତାହାଙ୍କୁ
ମୋ ଘରୁ ଯାଅ ମନ ହେଉଛି ଯେଠାକୁ ।
ମୋହର ଶତଅଛଅଉତ୍ତର ଭାଇଙ୍କି
ମରାଇଲ ଡାକ ତ ତୁମ୍ଭର ପତିଙ୍କି ।
ବାକୀ ରହିଅଛନ୍ତି ବିରାଟ ଜୀବନେ
ଥିଲେ ନେବ ତାହାଙ୍କୁ ଯମଙ୍କ ସଦନେ ।
ତୁମ୍ଭଙ୍କୁ ରଖି ମୁଁ ପାଇଲି ସବୁ କାର୍ଯ୍ୟ
ଯାଅ ଏବେ ମହତ୍ତ୍ୱ ରଖିକରି ଆଜ ।
ସୈରନ୍ଧ୍ରୀ ବୋଇଲେ ହେ ସୁଦେଷ୍ଣା ସୁମୁଖି
ତୁମ୍ଭ ଘରେ ରହିଥିଲି ମୁଁ ହୋଇ ସୁଖୀ ।
କୀଚକ ମୋତେ ଲଙ୍ଘିବାରୁ ମୋ ପତିଏ
ମାଇଲେ ସିନା ତାଙ୍କୁ କ୍ରୋଧ କରି କାୟେ
ବିରାଟନୃପତି ତ ନୁହନ୍ତି ତା ପରି
ତାହାଙ୍କ ପାଇ କାହିଁକି ଡରୁଛ ଗୋ ନାରୀ ।
ଦିନ ଗୋଟିକେତେ ମାହକ ରଖ ଘରେ
ତହିଁ ଉତ୍ତାରୁ ମୁହିଁ ଯିବି ସ୍ୱଇଚ୍ଛାରେ ।

ଏଥିଅନ୍ତେ ଗନ୍ଧର୍ବେ କୃତକାର୍ଯ୍ୟ ହୋଇ
ତୋଷିବେ ବିରାଟେ ସମରେ ଦେଖାଦେଇ
ତା ଶୁଣି ସୁଦେଷ୍ଣା ବୋଇଲେ ତୁମ୍ଭେଯେବେ
ବୋଲୁଅଛ ଯେ ଦିନାକେତେ ଥାଅ ତେବେ
ପରଦେଶ ଲୋକେ କୀଚକର ମରଣ
ଶୁଣିକରି କଲେ ଏ ବଚନ ବଖାଣ ।
ଆଜି ହେଲା ପାପୀ କୀଚକ ନାଶ ଗଲା
ମତ୍ସ୍ୟଦେଶୁଁ ପରସ୍ତ୍ରୀ ହରଣ ଘୁଞ୍ଚିଲା ।

—*—

## ପାଣ୍ଡବଙ୍କ ସନ୍ଧାନ ନ ପାଇ ଦୁର୍ଯ୍ୟୋଧନାଦିଙ୍କର ବିଚାର

ଦୁର୍ଯ୍ୟୋଧନ ବୋଇଲେ ଚରମାନେ ଆସି
ଖୋଜି ଖୋଜି ପାଣ୍ଡୁପୁତ୍ରଙ୍କୁ ଅହର୍ନିଶି ।
ନ ଦେଖିଣ ଅତ୍ୟନ୍ତ ହାଲିଆ ହୋଇଲେ
ସେହିକାଳେ ହସ୍ତିନାପୁରକୁ ସେ ଗଲେ ।
ଦେଖିଲେ ଭୀଷ୍ମ ଦ୍ରୋଣ କର୍ଣ୍ଣ ସାରଦ୍ୱତ
ସଙ୍ଗତରେ ଯେଉଁ ସେ ଧୃତରାଷ୍ଟ୍ର ସୁତ ।
ସଭା କରି ଯେ କୁରୁ ରାଜଧାନୀ ମାଡ଼ି
ବସିଅଛି ହୃଦୟରୁ ଭୟକୁ ଛାଡ଼ି
କହିଲେ ଆହେ ନୃପବର କୁରୁଶିଖ
ଖୋଜିଲୁଁ ପାଣ୍ଡବଙ୍କୁ ବହୁ ପାଇ ଦୁଃଖ ।
ବନ ଗିରି ଲତା ଯେ ନଦୀ ପରବେଶ
ବୁଲିବାରେ ଦେଖ ହୋଇଛି ଗୋଡ଼ ପ୍ରାସ ।
ପାଣ୍ଡବମାନେ କେଉଁଠାରେ ରହିଛନ୍ତି
ତାହାଙ୍କୁ ଦେଖି ନ ପାରିଲୁଁ ହେ ନୃପତି
ଏହି ସକାଶରୁ କି ଜାଣୁଛୁ ସେମାନେ
ନାହାନ୍ତି ରହି ଆହେ ରାଜନ ଜୀବନେ ।
ଏ ମଧ୍ୟରେ ଯେତେକ ସ୍ଥାନ ରହିଅଛି
ଆମ୍ଭର ନେତ୍ର ସେଠାରେ ତ ବାଜିଛି ।
ଦ୍ୱାରକାରେ ମାତ୍ରକ ପାଣ୍ଡବଙ୍କ ଲୋକେ
ବସିଛନ୍ତି ଚିନ୍ତା-ଅନଳେ ଜଳି ଶୋକେ ।
ପାଣ୍ଡବେ ତୁମ୍ଭରେ ଦୋରେହା ହୋଇକରି
ନଷ୍ଟେ ମଲେ ସୁମରି ଇନ୍ଦ୍ରପ୍ରସ୍ଥ ଶିରୀ ।
ପ୍ରିୟ କଥା ଗୋଟିଏ ଜାଣିଛୁ ତୁମ୍ଭର
କହିବୁ ତାହା ବସି ଶୁଣ ନରବର ।

ଯାଚକଙ୍କୁ ଭାଇଙ୍କ ଭୁଲରେ ଗନ୍ଧର୍ବେ
ମାଇଲେ ତା ଦେଖି ଆସିଛୁ ଆମ୍ଭେ ସର୍ବେ
ଏଥିକି ଯେ ଉଚିତ ହୋଇବ ରାଜନ
ତାହା କର ବିଚାରି ଯେତେ ମନ୍ତ୍ରୀଜନ ।
ଦୁର୍ଯ୍ୟୋଧନ ଶୁଣିଣ ଚରଙ୍କ ବଚନ
ଦୁଇଘଡ଼ିଯାଏ ସେ ହୋଇଣ ମଉନ ।
ସଭାସଦମାନଙ୍କୁ ଅନାଇ କହିଲେ
ପାଣ୍ଡୁସୁତମାନେ ଯେ ଜଣା ତ ନ ଗଲେ ।
ଏବେ ଆଉ ଥରେଟି ଯାଇଣ ଏ ଚରେ
ଖୋଜନ୍ତୁ ପାଣ୍ଡବଙ୍କୁ ସମସ୍ତ ଦେଶରେ ।
ତ୍ରୟୋଦଶ ବରଷ ଶେଷକାଳ ଆସି
ପରବେଶ ହେଲାଣି ଦିନ ଗଣ ବସି ।
ଅଜ୍ଞାତବାସ ରହୁ ମୁଖରୁ ପାଣ୍ଡବେ
ସୂର୍ଯ୍ୟ ପରି କଞ୍ଚଣ ଆସିବେଟି ସର୍ବେ ।
କୁରୁ ଆଶୀବିଷମାନଙ୍କର ଯେ ହିଂସା-
କମ୍ପାଇବେ ବଉଗି ଶର ଗାରଡ଼ସ୍ଥା ।
ଯେବେ ଆମ୍ଭେ ଏକାଳେ ଜାଣିବା ତାହାଙ୍କୁ
ପୁଣି ସେ ଆଉ ଥରେ ଯିବେ ତପ ବନକୁ ।
ଏ ଭଳିରେ ଆୟୁଷ ତାଙ୍କର ଯିବ ସରି
ବସି ଭୁଞ୍ଜୁଥିବି ମୁଁ ହସ୍ତିନାର ଶିରୀ ।
କର୍ଣ୍ଣ କହିଲେ ହେ କହୁଛ ତୁମ୍ଭେ ଯାହା
ମୋର ମନକୁ ମଧ୍ୟ ପାଉଅଛି ତାହା ।
ଆଉ ଥରେ ଲୋକେ ଏ ଯାଆନ୍ତୁ ବନକୁ
ଖୋଜ କରି ଆସନ୍ତୁ ପାଣ୍ଡବମାନଙ୍କୁ ।
ଗିରି ଦୁର୍ଗ ଗୁହା ଯେ ନଦୀ ଦେଶମାନ
ଆଶ୍ରମ ତୀର୍ଥ ଗ୍ରାମ ନଗର ନିର୍ଜନ ।
ସ୍ଥାନମାନଙ୍କେ ମଧ୍ୟ ବୁଲି ବୁଲି ଚରେ
ଖୋଜନ୍ତୁ ଅଳସକୁ ନ ଧରି ମନରେ ।
ଦୁଃଶାସନ ବୋଇଲେ ବିଶ୍ବାସୀ ଚରଙ୍କୁ
କହୁଅଛୁ ବରତ ତାଙ୍କୁ ଖୋଜିବାକୁ ।
ଆନ ଚରେ ପାଣ୍ଡବମାନଙ୍କଠାରୁ ଧନ
ପାଇଲେ ଆମ୍ଭଙ୍କୁ ଟି କରିବେ ବଞ୍ଚନ ।
ଆମ୍ଭେ ତ ଖୋଜିବାର ହୋଇଲୁ ବରଷେ
ନ ଜାଣିଲୁଇଁ କାହିଁ ଛନ୍ତି ପାଣ୍ଡୁଶିଷ୍ୟେ ।
ଏହି ସକାଶରୁ ଟି ଜାଣୁଅଛୁ ମୁହିଁ
ବାଘ ସିଂହ ଅଥବା ଦେଇଥିବେ ଖାଇ ।

ଦ୍ରୋଣ ବୋଇଲେ ଆହେ ଦୁଃଶାସନ ବାଇ
ହେଲ ପରି ତୁମ୍ଭେ କହୁଚ କାହିଁପାଇଁ ।
ବଳବନ୍ତ ସତ୍ୟବନ୍ତ ଯେ ବିଦ୍ୟାବନ୍ତ
ଧରମବନ୍ତ ମହାରାଜନୀତିମନ୍ତ ।
ଏମାନଙ୍କେ ନିପୁଣ ଯୁଧିଷ୍ଠିର ରାଣ
କାହିଁପାଇଁ ତାଙ୍କର ହୋଇବ ମରଣ ।
ତାଙ୍କ ଅନୁଗତ ତାଙ୍କର ଚାରିଭାଇ
ହୋଇଥାନ୍ତି ଧର୍ମରେ ନିତ ମତି ଦେଇ ।
କାଳକୁ ଚାହିଁକରି ଲୁଚି ସେ ଅଛନ୍ତି
କାଳରେ ତୁମ୍ଭଙ୍କୁ ପେଷିବେ ଯମକତି ।
ପାରିବ ଯେବେ ଟି ସମ୍ବାଦ ପାଣ୍ଡବଙ୍କୁ ।
ପଠିଆଅ ଆଉ ଥରେ ହେ ବନସ୍ତକୁ ।
ଏରୂପେ କହି ଦ୍ରୋଣ ହୁଅନ୍ତେ ମଉନ
ତଦନ୍ତେ ଭୀଷ୍ମ ହସି କହିଲେ ବଚନ ।
ଦ୍ରୋଣ ଯାହା କହିଲେ କଥା ସେହିରୂପେ
ନିକଟେ ଦୁର୍ଯ୍ୟୋଧନ ବୁଡ଼ିବ ସନ୍ତାପେ ।
ପାଣ୍ଡୁସୁତମାନଙ୍କୁ ଶଚିଦେବୀଈଶ
ବଜ୍ରକୁ ଧରି କରି ନ ପାରନ୍ତି ନାଶ ।
ସବୁ ଲକ୍ଷଣରେ ତ ପାଣ୍ଡବେ ସମ୍ପନ୍ନ
ମନ କଲେ ଜିଣି ପାରନ୍ତି ଏ ଭୁବନ ।
ସତ୍ୟବ୍ରତ ଅତ୍ୟନ୍ତ ଧର୍ମପରାୟଣ
ଏଣୁ ତାଙ୍କ ସାହା ହୋଇଲେ ନାରାୟଣ ।
ରୁକ୍ମିଣୀ ଦେବୀଙ୍କର ହୃଦୟବିହାରୀ
ନଟବର ବେଶ ମୁରଲୀବାଦ୍ୟକାରୀ ।
ଜଗତଜନବନ୍ଧୁ ଗୋପୀଙ୍କ ଜୀବନ
କାଳିୟ କଂସ କେଶୀ ଗରବଖଣ୍ଡନ ।
ମଲ୍ଲବିନାଶନ ମୁରାରି ନରହରି
ପାଣ୍ଡବଙ୍କ ଶ୍ରେୟ ତ ଛନ୍ତି ଇଚ୍ଛା କରି ।
ତୁମ୍ଭ ଚାରି ବଳେ ଯେ ତାହାଙ୍କର ବଧ
ହେବ ବୋଲି ଯେ ମାରିବେ ଟି ବିବାଧ ।
ପୁଣି ତ ସେହିମାନେ ଆପଣା ଧର୍ମରେ
ରକ୍ଷା କରିଛନ୍ତି ଦେହକୁ ନିରନ୍ତରେ ।
ଯୁଧିଷ୍ଠିର ରଜାଙ୍କର ଯେଉଁଠି ମୀତ
ଥାଉ କରିବାର ନ ଜାଣେ ଆନ ମତି ।
ତୁମ୍ଭେ ତ ମୋର ନାତି ସେହି ମୋର ନାତି
ଦୁହିଙ୍କଠାରେ ମୋ ସ୍ନେହ ଏକା ରୀତି ।

ଏମନ୍ତ ହେଲେ ତୁମ୍ଭ ତାଙ୍କ ଗୁଣ ଦୋଷ
ଯା ଜାଣିକରି ଶୁଣ ତା କହିବା ନରେଶ ।
ଯୁଧିଷ୍ଠିର ରାଜା ଯେ ମାତ ପର ରହି
ଥିଲେ ହେଲେଟି ଉଚ ବୋଲି ଜାଣସେହି ।
ଯେଉଁ ଦେଶରେ ସେହି କରିଥିବେ ଘର
ବ୍ୟାଧି ଶତ୍ରୁ ପୀଡ଼ା ହୋଇଣ ଥିବ ଦୂର ।
ଦାନଧର୍ମେ ସେ ଦେଶ ଲୋକ ମନଦେଇ
ହରୁଥିବେ ଧନ ସେ ଅତି ତୋଷ ବହି ।
କାହାର କାହାଠାରେ ନ ଥିବ ଅସୂୟା
ଛାଡ଼ଦେଇଥିବେ ଯେ ହୃଦୟରୁ ମାୟା ।
ବ୍ରାହ୍ମଣମାନେ ବେଦ ପଢ଼ି କରି ଯାଗ
କରି ଦେଉଥିବେ ଦେବଙ୍କୁ ବଳଭୋଗ ।
କାଳ ଜାଣିଣ ମେଘ ଜଳ କରି ବୃଷ୍ଟି
ପାଳୁଥିବ ଯେ ସେହି ଦେଶ ପ୍ରଜାସୃଷ୍ଟି
ଗନ୍ଧ ତୁଲେ ସହିତ ହୋଇ ମନ୍ଦ ବାତ
ଉଲ୍ଲାସ କରୁଥିବ ସବୁଙ୍କର ଚିତ୍ତ ।
ଗାଈମାନେ ହୋଇଣ ଥିବେ କ୍ଷୀରବନ୍ତ
ପୂରିଥିବ ଜଳରେ ପୋଖରୀ ସହିତ ।
ସବୁରି ସବୁଠାରେ ବଳଥିବ ପ୍ରୀତି
ସେବୁଥିବେ ପନ୍ତିଙ୍କି ଧର୍ମରେ ଯୁବତୀ ।
ଦେବତା ଅତିଥି ପୂଜାରେ ଅବକାଶ
ନ ଥିବ ସେ ଦେଶରେ ଯେତେ ଲୋକବାସ
ଶୁଭକଥାକୁ କରିବାରେ ଧନ ସରି
ଯାଉଥିବ ଅଶୁଭ ନୋହିବ କାହାରି ।
ମିଥ୍ୟାକଥା କେହି ନ ଧରୁଥିବ ତୁଣ୍ଡେ
ସୁବ୍ୟବସାୟ କରୁଥିବ ପ୍ରତିଦଣ୍ଡେ ।
ତାହାଙ୍କୁ ଜାଣିବାକୁ ତୁମ୍ଭର ଶକତି
କେବେ ହେବ ନାହିଁ ହେ କୁରୁକୁଳପତି ।
ସତ୍ୟ ଧୃତି ଦକ୍ଷ ଆର୍ଜ୍ଜବ ଶକ୍ତି ଶିରୀ
ଅନୃଶଂସ୍ୟ କ୍ଷମାକୁ ଯେମନ୍ତ ଦାସୀ ।
ଯାହାଠାରେ କରିଅଛନ୍ତି ନିତ୍ୟେ ଘର
ଅମଙ୍ଗଳ କେହି ହେ ହେବଟି ତାହାର ।
ଏବେଯେଉଁ କଥାରେ ରହିବ ଜୀବନ
ସେ କଥାକୁ ବିଚ୍ଛର କର ଦୁର୍ଯୋଧନ ।
କୃପାଚାର୍ଯ୍ୟ ବୋଇଲେ କହିଲେ ଭୀଷ୍ମ ଯାହା
ମୋର ମନକୁ ମଧ୍ୟ ପାଉଅଛି ତାହା ।

ପାଣ୍ଡବଙ୍କ ଗତ ତ ଅଟଇ ଦୁର୍ଜ୍ଜେୟ
ଏଣୁ ତା ଜାଣିବାକୁ ଅଛି କା ହୃଦୟ ।
ବର୍ତ୍ତମାନ ଯେଉଁ କଥାଟି ହିତ ହୋଇ
ପାରିବ ତାହା କରି ଆହେ ନରସାଇଁ ।
ଅଳପ ଶତ୍ରୁକୁ ନ ଲଙ୍ଘନ୍ତି ନରେ
ପାଣ୍ଡବଙ୍କୁ ଲଙ୍ଘିବ କେ ଅଛି ମହୀରେ ।
ଏବେ ତୁମ୍ଭ ସୈନ୍ୟ ତାହାଙ୍କୁ ଯୋଡ଼ିବାକୁ
କେ ଅଛି ବାହାର ତା କର ବାହାରକୁ ।
ମହାଘୋର ବିପତ୍ତି ଅଜ୍ଞାତବାସ ବହି
ମୁଖରୁ ରହିପଶି ପାଣ୍ଡବେ ମହାବାହୁ ।
ବାହାର ତୁମ୍ଭ ସୈନ୍ୟ କରେ ଧନୁ ଧରି
ଶର କରଣରେ ଯେ ଦେବ ଦାହ କରି ।
ହୋଇବାକୁ ୨ସ ଶର କରିବ ଆଚ୍ଛନ୍ନ
ସରଜନା ତୁମ୍ଭେ ଟି କର ସୈନ୍ୟଘନ ।
ଅଯତ୍ନ ହୋଇ ବସିବା ଏ କାଳ ନୋହେ
ମ ବୁଢ଼ ଦୁର୍ଯ୍ୟୋଧନ ବୁଝଇ ତୁମ୍ଭେମୋହେ
ତୁମ୍ଭ ସୈନ୍ୟ ପର ଆପଣା କେତେଲୋକ
ଅଛନ୍ତି ତାହା କର ବିବେକା ବିବେକ ।
ଧନ ଧାନ୍ୟ ଦେଇଣ ଲୋକଙ୍କ ମନକୁ
ରସାଇ ଥାଅ ଆଗୁଁ କହୁଛୁଁ ତୁମ୍ଭଙ୍କୁ ।

— ❋ —

## ଗୋଧନ ହରଣ ମନ୍ତ୍ରଣା ଓ ମତ୍ସ୍ୟଦେଶ ଯାତ୍ରା

ଏଥିଅନ୍ତେ ତ୍ରିଗର୍ତ୍ତରାଜନ ସୁଶର୍ମା
କହିଲେ ସଭା ମଧ୍ୟେ କରିଣ ଗାରିମା
ପାପୀ କୀଚକର ବଳରେ ଦଳ ହୋଇ
ମୋହପରି ଲୋକ ପଳାଇ ଆସିଲଇଁ ।
ଏବେ ସେ ପାପକୁ ଗନ୍ଧର୍ବେ କଲେ ଲୋପ
ଏଣୁ ଛାଡ଼ିଲା ମୋହ ମନରୁ ସନ୍ତାପ ।
ବିରାଟ ନିରୁତ୍ସାହ ହୋଇକରି ଏକା
ବସିଥିବେ ଶତ୍ରୁତ୍ରାହ ହୋଇକରି ଶଙ୍କା
ବିରାଟ ସଙ୍ଗେ ଯୁଦ୍ଧିବାକୁ ମୋର ମନ
ହୋଇଅଛି ଟି ଆହେ ଜାଣ ଦୁର୍ଯ୍ୟୋଧନ ।
ଯେବେ ତୁମ୍ଭମାନଙ୍କ ମନକୁ ପାଇଛି
ତତକାଳେ କରିବା କାଳ ହୋଇଅଛି ।

ବିରାଟକୁ ଯୁଦ୍ଧରେ କରିଣ ସଂହାର
କରିଦେବା ତାଙ୍କର ରାଜ୍ୟକୁ ଆମ୍ଭର ।
ଧନମାନ୍ୟ ଗାଈ ତ ତାହାର ବହୁତ
ଅଛନ୍ତି ତା ହରି ତୋଷିବା ଆମ୍ଭ ଚିତ୍ତ ।
ଏହା ତ ଯେବେ ଆମ୍ଭେ କରିବାଟି ବଳେ
ଶତ୍ରୁ ଏ ଭରିଣ ଖଟିବେ ପାଦତଳେ ।
କର୍ଣ୍ଣ ବୋଇଲେ ହେ ଏ କଥା ମୋ ମନକୁ
ପାଉଛି ଚାଲ ଯିବା ବିରାଟ ଦେଶକୁ ।
ଦୁଇ ଭାଗ କରିଣ ସେନାକୁ ବାଣ୍ଟିବା
ସୁଶର୍ମାକୁ ଆଗରେ ପଠାଇ ଦେବା ।
ସୁଶର୍ମା ଆଗେ ଯାଇଁ କରୁଥିବ ଗୋଳ
ପଛେ ଯାଇ ଆମ୍ଭେ ଆଣିବା ଗାଈକୁଳ ।
ଭୀଷ୍ମ ଦ୍ରୋଣ ଯେ କୃପ ଆଦି ଋଥି ଛନ୍ତି
ଏଙ୍କୁ ଥରେ ପଚ୍ଛର ଏହା ନରପତି ।
ଏମାନଙ୍କୁ ନ ଘେନି ଆମ୍ଭେ ପରଦେଶ
ମାରିଗଲେ କଥାଟା ହଶିବ ସାହସ ।
ପାଣ୍ଡୁସୁତମାନଙ୍କୁ ଭଲୁଛ କମ୍ପାଇଁ
ସେ ତ ଲୁଚିଅଛନ୍ତି ହୀନବଳ ହୋଇ ।
ଦୁର୍ଯ୍ୟୋଧନ ଶୁଣିଣ କର୍ଣ୍ଣର ବଚନ
ଆନନ୍ଦରେ ଫୁଲାଇ ଦେଇ ଅପଘନ ।
ବୋଇଲେ ଦୁଃଶାସନ ପଚ୍ଛର ତାହାଙ୍କୁ
ତିଆର କରାଅ ଯାଇ ମୋର ସଇନଙ୍କୁ ।
ସୁଶର୍ମା ତ୍ରିବର୍ଗକୁ ଘେନି ମତ୍ସ୍ୟ ଦେଶ
ଯାଇଣ ଯୁଦ୍ଧ ଆଗ କରନ୍ତୁ ପ୍ରକାଶ ।
ତାଙ୍କ ପଛରେ ଆମ୍ଭେ ଯାଇ ମତ୍ସ୍ୟରାଷ୍ଟ୍ରେ
ଗାଈ ଗୋଷ୍ଠ ଅଡ଼ାଇ ଆଣିବା ହେ ହୃଷ୍ଟେ ।
ସୁଶର୍ମା ତାହା ଶୁଣି ସାଞ୍ଜୁ ଅଙ୍ଗେ ଭରି
ବସିଲେ ଯାଇ ନିଜ ରଥେ ଧନୁ ଧରି ।
ତ୍ରିଗର୍ତ୍ତମାନଙ୍କୁ ସେ ସଙ୍ଗତେ ଘେନଲେ
ବିରାଟଙ୍କ ଦେଶରେ ପ୍ରବେଶ ହୋଇଲେ ।
ଆରଦିନ ସେ ଦୁର୍ଯ୍ୟୋଧନ ନରବର
ଘେନି କୁରୁରଥୀଙ୍କ ଲଗାଇ ଗହଳ ।
ବିରାଟଙ୍କ ଦେଶରେ ଗାଈ ଆଣିବାକୁ
ବାହାରିଲା ହୃଦରେ ଧରି ପ୍ରମୋଦକୁ ।
ଆହେ ଜନମେଜୟ ଅଜ୍ଞାତବାସ ଶେଷ
ଦୁର୍ଯ୍ୟୋଧନଙ୍କ ଯିବା ସମୟକୁ ଶେଷ ।
କରି ପାଣ୍ଡୁସୁତେ ମାନସେ ତୋଷ ଧରି
ଯିବାକୁ ହସ୍ତିନାକୁ ମନେ ଥିଲେ କରି ।

***

## ପୂର୍ବ ଗୋଗ୍ରହ

ସେହିକାଳେ ବିରାଟ ସଭାରେ ଉଗର
କହିଲା ବିରାଟଙ୍କୁ କରି ନମସ୍କାର ।
ଆହେ ମତ୍ସ୍ୟକୁଳର କୁମୁଦ ଚନ୍ଦ୍ରମା
ବଇରି ବନାଶନ ପ୍ରତାପ ଗାରିମା ।
ଶୁଣ ମୋହଠାରୁ କର୍ଣ୍ଣ ବେନ ଡେରି
କହିବି ମୁଁ ଯାହା ତୁମ୍ଭଙ୍କୁ ଦଣ୍ଡଧାରୀ ।
ସୁଶର୍ମା ନୃପ ସର୍ବେ ପାଇ ପରାଭବ
ହସ୍ତିନାରେ ଯାଇ ସେ କରିଥିଲା ଠାବ ।
ଏବେ ସଙ୍ଗତରେ ସଇନ ସଖା ଧରି
ଆସିଛି ତୁମ୍ଭ ଗାଈ ନେବା ଇଚ୍ଛା କରି ।
ଯେବେ ତୁମ୍ଭେ ତାହାକୁ ନ କରିବ ରକ୍ଷା
ଗାଈ ତୁଲେ ଅଡ଼ାଇ ଘେନିଯିବ ବତ୍ସା ।
ଏହା ଶୁଣି ବୋଇଲେ ବିରାଟ ନରେଶ
ତିଆରି କର ମୋର ରଥ ଗଜ ଅଶ୍ୱ ।
ଏ ବାହାରେ ପଦାତିମାନେ କୋଟି କୋଟି
ବାହାରନ୍ତୁ ଧରିଣ ଯୁଦ୍ଧିବା ବେଶଟି ।
ତାହା ଶୁଣି ଯେତେ ସଭାରେ ବସିଥିଲେ
ଘରକୁ ଯାଇ ଅଙ୍ଗେ ସାଞ୍ଜୁ ପହରିଲେ ।
ମୁଣ୍ଡରେ ଟୋପିମାନ ଦେଇକରି ଖୋଷି
ସଭାରେ ଛିଡ଼ାହେଲେ ଯେତେ ଗିରିରାଶି ।
ପାଇକେ ତାହା ଶୁଣି ଧରି ଫରୀ ଖଣ୍ଡା
ବାହାରିଲେ ଦାଣ୍ଡକୁ ହୋଇ ଗଣ୍ଡା ଗଣ୍ଡା ।
ପାଣି ଆଣି ଦାଣ୍ଡରେ ଯିବାର ନାରୀଙ୍କ
ବୋଇଲେ ଏତେବେଳେ ବାହାର କାହିଁକି ।
ଆମ୍ଭେ କରିଅଛୁ ଯୁଦ୍ଧକୁ ଅନୁକୂଳ
ଦେଖିବୁ କେଡ଼େ ତୁଚ୍ଛା ମାଟିଆ ମଣ୍ଡଳ ।
ବିରାଟଙ୍କ ଭାଇ ଶତାନିକ ଯାଇ
ଲୁହା ସାଞ୍ଜୁ ଦେହରେ ଆସିଲେ ଲଗାଇ ।
ସେ ସାଞ୍ଜୁ ଉପରେ ହୋଇଛି ସୁନାଘୋଟ
ଏଣୁ ଦିଶୁଅଛି ସେ ହୋଇ ଝଟ ଝଟ ।
ଶତାନିକ ସାନଭାଇ ଲୁହା ସାଞ୍ଜୁ
ଭରିଲେ ସେହି ଦିଶୁଥିଲା ଅତି ମଞ୍ଜୁ ।

ଏହା ଦେଖି ବିରାଟ ମନେ ହୋଇ ତୋଷି
ଲଗାଇଲେ ସାଞ୍ଜୁକୁ ଗନ୍ଧାଙ୍ଗରେ ପଶି ।
ସେହି ସାଞ୍ଜୁରେ ଶତସୂର୍ଯ୍ୟ ଶତଚନ୍ଦ୍ର
ଉଦିଥିଲେ ଅନ୍ତଶସ୍ତ୍ରରେ ହୋଇ ସାନ୍ଦ୍ର ।
ମୁଣ୍ଡରେ ପୁଣି ସୁନା ଟୋପର ଭରିଲେ
ସୂର୍ଯ୍ୟୋଦୟ ଗିରିଶୋଭାକୁ ସେ ନିନ୍ଦିଲେ ।
ଖଣ୍ଡାକୁ ଉପରକୁ ଦେଇଣ ଉଡ଼ାଇଁ
ବାହାରିଲେ ଦାଣ୍ଡକୁ ଛାତିକି ଫୁଲାଇ ।
ସୂର୍ଯ୍ୟଦତ୍ତ ସୂର୍ଯ୍ୟଙ୍କ ପରିପ୍ରେ କବଚ
ଭରିଲେ ଅଙ୍ଗେ ଜିଇବାକୁ କରି ପାଞ୍ଚ ।
ଶଙ୍ଖ ଶଙ୍ଖୁକର ଲୁହାର କବଚକୁ
କହିଣ ବାହାରିଲେ ସଗରେ ଯୁଦ୍ଧକୁ ।
ଏ ବାହାରେ ଥିଲେଟି ଯେତେ ମହାରଥେ
ଏରୂପ ସଜେ ସେ ଗମିଲେ ତାଙ୍କ ସାଥେ ।
ରଥମାନଙ୍କରେ ଟି ଯୋଚକର ଘୋଡ଼ା
ରଥୀକୁଳଯାକ ରଥରେ ହେଲେ ଛୁଡ଼ା ।
ଶତାନିକ ମୁଖକୁ ବିରାଟ ଅନାଇ
ବୋଇଲେ କଥାଟି ପାସୋରଥାଉଁ ଭାଇ ।
ବଲ୍ଲଭକଙ୍କ ତନ୍ତିପାଳକ ଗ୍ରନ୍ଥିକ
ଏମାନେ ଯୁଝିବାରେ ଅତ୍ୟନ୍ତ ଅଧିକ ।
ତାହାଙ୍କୁ ରଥ ଧ୍ୱଜ ଖଡ଼ଗ ଧନୁ ତୂଣ
ଦେଇକରି ବେଗେ ମୋହ ଆଗକୁ ଆଣ ।
ଏ ବାହାରେ କବଚ ଦେବ ଅତି ଆଣ୍ଟ
କାଣ୍ଡମୁନ ଯେରୂପେ ନ ପାଇବ ବାଟ ।
ଏହା ଯେଉଁକ୍ଷଣି କହିଲେ ଦଣ୍ଡଧାସ୍ତ
ସଜାଡ଼ି ଶତାନିକ ରଥଗୋଟି ବୀର ।
ଧନୁତୂଣେ କବଚ ସହିତେ ତାହାଙ୍କୁ
ଢଆଇ ଅଣାଇଲେ ବିରାଟ ଆଗକୁ ।
ପାଣ୍ଡବେ ତାଙ୍କ ଦେବା ଯୁଦ୍ଧସଜ ବହି
ବାହାରିଲେ ଯୁଦ୍ଧକୁ ରଥକୁ ଆରୋହି ।
ଷାଠିଏ ବରଷୀୟ ଯେତେକ ହାତୀ ଥିଲେ
ସଜ ହୋଇ କରି ଯୁଦ୍ଧକୁ ବାହାରିଲେ ।
ଯେ ରୂପରେ ଗିରି ଆସଇ ଚାଲିକରି
ସେରୂପେ ଲୋକେ ତାହା ମଣିଲେନେହେର
ଆସହସ୍ରଠ ରଥ ଷାଠିଏ ସହସ୍ର
ଘୋଡ଼ା ବାହାରିଲେ ପଦାତି ହୋଇ ମିଶ୍ର ।

ତହିଁ ଦେଖି ରଥ ପତାକା ଉଡ଼ା ବୋଲି
ଲୋକେ ବୋଇଲେ ଏ ସୂର୍ଯ୍ୟଙ୍କୁ ଢଏ ପେଲି
ବେଳ ତିନି ପ୍ରହର ସରିକି ବିରାଟ
ଥାଟ ଯାଇଁ ତ୍ରିଗର୍ତ୍ତ ସଙ୍ଗେ କଲେ ଯୋଟ ।
ଅନ୍ୟୋନ୍ୟେ ଦୁଇ ସେନା ହୋଇମିଶାମିଶି
ପ୍ରହାରିଲେ ଟେକ ପଟଶ ଗଦା ଅସି ।
ଧାଇଁ ଜନ୍ତାଜନ୍ତ ହୋଇଣ ମତ୍ତହାତୀ
ଯୁଦ୍ଧରେ ପାଇକଙ୍କୁ ପକାଇଲେ ମନ୍ଥି ।
ଏ ସକାଶରୁ ପେଟ ଫାଟି ଅନ୍ତମେଞ୍ଚା
ତଳେ ପଡ଼ି ଗଡ଼ି ନଢଲା ମାଟିସଞ୍ଚା ।
ଦେବାସୁର ଯୁଦ୍ଧେ ସେ ଯୁଦ୍ଧ ପଟାନ୍ତର
ଦେଲେ ଉଦିଥିଲେ ତହିଁଟି ଯେତେ ନର ।
ହାଣ ମାର ଶବ୍ଦ ସବୁରି ମୁଖେ ଏକା
ସେ କାଳେ ଶୁଭି ଲକ କର୍ଣ୍ଣକୁ ତାଟକା ।
ଲହଡ଼ା ଧୂଳି ସୈନ୍ୟ-ସମୁଦ୍ରୁ ଜାତ ହୋଇ
ଆକାଶ କୋଲାଟିକି ଘୋଡ଼ାଇଲା ଯାଇ ।
ପକ୍ଷୀମାନେ ଯାହାଟି କରୁଥିଲେ ଗତି
ତାହା ଦେଖିକରି ଯେ ରହିଲେ ନିବର୍ତ୍ତି ।
ସୂର୍ଯ୍ୟଙ୍କର ମଣ୍ଡଳ ଦିଶିଲା ମଳିନ
ସେ ରେଣୁ ପଡ଼ିବାରେ ହୋଇଣ ଆଚ୍ଛନ୍ନ ।
ଦୁଇ ସୈନ୍ୟଯାକର ଫରିକାର ଭେଣ୍ଡା
ହଣାହଣି ହୋଇଲେ କରେ ଟେକ ଖଣ୍ଡା ।
ଗୋଡ଼କୁ ଉଞ୍ଚାଇ କେ ମୁଣ୍ଡକୁ ହାଣିଲେ
କାଲରୁ ଆଡ଼ୁଛୁ ବୋଲି କେ ଆଡ଼ ଦେଲେ
ପ୍ରାସଘାତେଟି କେତେ ଲୋକ ପାଇ ପ୍ରାସ
ପଳାନ୍ତି ଆଗକୁ ନ ଚାଲି ଧାଇଁ ତ୍ରାସ ।
ପଟଶ ବାଜି କରି ପିଠି ଯାନ୍ତେ ଫାଟି ।
କେତେ ଧୂଳି ଖାଇଲେ ମେଲିଦେଇ ଦାଟି ।
ତୋମର ବାଜିଣ ଅମର ସଦନରେ
ପୂରିଲେ ଯାଇଁକରି ଯୁଦ୍ଧେ ମରି ନରେ ।
ଏହିରୂପେ ଢଡ଼ଏ ସଙ୍କୁଳ ସମର
ବଢ଼ିଲା ମତ୍ସ୍ୟ ତ୍ରିଗର୍ତ୍ତ ଦୁହିଁଙ୍କର ।
କାଣ୍ଡମାନ ଯେ ବାଜିବାରେ ଗଣ୍ଡିମୁଣ୍ଡ
ଛିଡ଼ିବାରେ ପୂରିଲା ରଣଭୂମି ଦାଣ୍ଡ ।
ରଥୀ ଯୁଦ୍ଧକଲେ ରଥୀଙ୍କି ଡାକ ହାକ
ସେରୂପେ ସିପାଇ ଯୁଝିଲେ ସିପାଇଙ୍କି ।

ସେ ଯୁଦ୍ଧେ ଦୁଇ ସୈନ୍ୟ ହୋଇ ଘନସଣି
ବରଷନ୍ତେ ରକତ-ଜଳ ହୋଇ ଶ୍ରେଣୀ ।
ସେ ରକ୍ତେ ଭୂମିରେ ବହିଲା ନଦୀଟାଏ
ପୁଟା ପଙ୍କ ଘାତେ ଗନ୍ଧାଇ ଅତିଶୟେ ।
ଶତାନୀକ ଯେ ବିଶାଳାକ୍ଷ ଦୁଇ ଭାଇ
ଶାୟକ-ଅନଳେ ପାଞ୍ଚଶ ଲୋକ ଦହି ।
ତ୍ରିଗର୍ତ୍ତରାଜା ସୈନ୍ୟ ସମୁଦ୍ରେ ପଶିଲେ
କେବଳ ଧନୁଶର ଭେଳା ଧରିଥିଲେ ।
କ୍ଷଣି ସେ ଦୁହେଁ ଧନୁ ରଥେ ଥୋଇଦେଇ
ଭଲରେ ବାହୁଯୁଦ୍ଧ କଲେ କ୍ରୋଧବହି ।
ତାହାର ବାଳ ଧରି ମାଇଲେ ଭୂପୋଡ଼
କାହାର ଉପରକୁ କଲେ ମୁଠି ମାଡ଼ ।
ଏହା ଦେଖିଣ ସୂର୍ଯ୍ୟଦତ୍ତ ମଦିରାକ୍ଷ ।
ସେ ଦୁହେଁ ବିରାଟସେନାର ଅତି ମୁଖ୍ୟ ।
ବିଶାଳାକ୍ଷ ଶତାନୀକ ପଛରେ ଥାଇ
ଦେଲେକ ତ୍ରିଗର୍ତ୍ତର ସୈନ୍ୟକୁ ବଢାଇ ।
ବିରାଟ ପାଞ୍ଚଶତ ରଥୀ ମାରି ରଣେ
ସୁଶର୍ମାଠାକୁ ଯୁଝିଗଲେ ସେ ଆପଣେ ।
ଅନ୍ୟାନ୍ୟରେ ଦୁହେଁ ବୃଷଭ ପରି ଗର୍ଜି
ଶାୟକ-ମୂନ ଶିଳେ ସରଜିଲେ ଆଜି ।
ଧନୁରୁ ଅନୁକ୍ଷଣେ ବର୍ଷି ଶରଧାରା
ପୂରାଇଲେ ଦଶଦିଗର ଭୂଲେ ଧରା ।
ବିରାଟ ତା ନ ସହି କ୍ରୋଧ କରି କାୟେ
ବିନ୍ଧିଲେ ସୁଶର୍ମାର ଘୋଡ଼ାଙ୍କୁ କୋଡ଼ିଏ ।
ସୁଶର୍ମାକୁ ମଧ୍ୟ ବିନ୍ଧିଣ ଦଶକାଣ୍ଡ
କମ୍ପାଇଣ ଆପଣା କରର କୋଦଣ୍ଡ ।
ସୁଶର୍ମା ତ ଅଟନ୍ତି କ୍ଷତ୍ରିୟସିଂହାଣ
ସେହି ମଧ୍ୟ ନ ଛାଡ଼ି ତାଙ୍କୁ କଲେ ରଣ ।
ପଳକ ମାତ୍ରକେ ପଚିଶକାଣ୍ଡ ବିନ୍ଧି
ବିରାଟଙ୍କର ଦେହଧାକ ଦେଲେ ରୁନ୍ଧି ।
ଦୁହିଁଙ୍କ ରଥଘାତେ ଉଡ଼ିଲା ତ ଧୂଳି
କେହି କାହାକୁ ଚହ୍ନି ନପାରିଲେ କଳି ।
ସେ ବେଳ ସେହି ଦୁଇକୂଳର ସଇନ
ରହିଗଲେ ନ ଯୁଝି ବୁଜିଣ ନୟନ ।
ଏହି କାଳେ ସୂର୍ଯ୍ୟ ଲଭନ୍ତେ ଅସ୍ତଦଶା
ପ୍ରବେଶ ହେଲା ସେ ସୈନ୍ୟର କାଳନିଶା ।

କଳନା କରି ନ ପାରିଣ ନିଜ ପର
ଆପଣା ଆପଣାରେ ବହିଲେ ସମର ।
କ୍ରମରେ ଆସିକରି ନକ୍ଷତ୍ରଙ୍କ ପନ୍ତି
ଗଗନ-ଅଙ୍ଗଣରେ ଦିଶନ୍ତେ ଝଟନ୍ତି ।
ପର ଆପଣାକୁ ଦୁଇ ସଇନ୍ୟ ନରେ
ଚହ୍ନି ଯୁଦ୍ଧକଲେ ସେ ବେଳ ନିଃଶଙ୍କରେ ।
ସୁଶର୍ମା ସୁଧର୍ମାକୁ ସଙ୍ଗତରେ ଧରି
ବିରାଟକୁ ଯୁଝିଲେ ଗୁଣକୁ ଓଟାରି ।
କ୍ରୋଧ ଅନଳରେ ଜଳି ସେ ଦୁଇଭାଇ
ଗଦା ଧରି ଧାଇଁଲେ ରଥରୁ ଓହ୍ଲାଇ ।
ସେ ଦୁହେଁ ଦୁଇ ଗଦା ପିଟି ଏକାବେଳେ
ବିରାଟପାଶ ରଥ ସାରଥି ମାଇଲେ ।
ଏଥିଅନନ୍ତରେ ଘୋଡ଼ାଙ୍କୁ ଗଦାବାଡ଼ି
ପିଟନ୍ତେ ପଡ଼ିଲେ ସେ ଜିଭ ହାତେ କାଢ଼ି ।
ବିରାଟ ତ ସେ ବେଳ ବିରଥୀ ହୋଇଲେ
କିଛି ବଳ ତାଙ୍କୁ ଦେଖାଇ ନ ପାରିଲେ ।
ବଳେ ସେ ବିରାଟଙ୍କ ବାଳକୁ ଓଟାରି
ଘେନିଗଲେ ଝିଙ୍କିଣ କାଳଦେବ ପରି ।
ରଥେ ରଖି ବେକ ଗୋଡ଼କୁ ଏକାଠାରେ
ବାନ୍ଧିକରି ସେ ବିଧା କୋଡ଼ିଲେ ପିଠିରେ ।
ବୋଇଲେ ରେ ବାଇ କୀଚକ ବଳେ ସିନା
ଆମ୍ଭଙ୍କୁ ତୁଚ୍ଛ କହିଥିଲୁ ଯେତେ ଅନା ।
ତୋହର ତ ବଳ ଅଟଇ ଏତେକରି
ଏବେ ତୋ ରାଜ୍ୟ ହେଲା ସୁଖରେ ଆମ୍ଭରି ।
ବିରାଟଙ୍କ ଧରାପଡ଼ିବା ଜାଣି ଲୋକେ ।
ପଳାଇଲେ ପଛକୁ କାନ୍ଦି ସକସକେ ।
କଙ୍କପଣ୍ଡା ଦେଖି କହିଲେ ବଲ୍ଲଭଙ୍କୁ
ଦେଖ ଦେଖ ବଲ୍ଲଭ ବିରାଟ ନୃପଙ୍କୁ ।
ତୁମ୍ଭ ପରି ବଳୀ ତ ବିରାଟ ଘରକରି
ହୋଇଅଛି ତ୍ରିଗର୍ତ୍ତ କରୁଅଛି କିଙ୍କର ।
ତାହାଙ୍କୁ ଏତେବେଳେ କଲେ ପ୍ରତିକାର
ପାଇବ ଧନ ରତ୍ନ ବସନ ଅପାର ।
ଭୀମ ବୋଇଲେ ଆହେ ଦେଖ କଙ୍କପଣ୍ଡା
ଯୁଦ୍ଧେ ଯୋଦ୍ଧା ମୁଣ୍ଡ ମୋଡ଼ ମୁଁ ଗଣ୍ଡା ଗଣ୍ଡା
ତ୍ରିଗର୍ତ୍ତ ନୃପତିର ଦଳକୁ ମୁଁ ଦଳ
ଆଣୁଛି ନୃପଙ୍କୁ ନ ବସ କିଛି ଭଳ ।

ଗର୍ଜି କ ଚନ୍ଦ୍ରପାଳ ଏଙ୍କୁ ଯେନ ତୁମ୍ଭେ ।
ଆସ ହେ ଯୁଦ୍ଧକର ଯାଉଅଛୁ ଆମ୍ଭେ ।
ଦେଖ ଆଗରେ ବଡ଼ ଗଛୁଟାଏ ଅଛି
ଏହାକୁ ଉପାଡ଼ ମୁଁ ଯୁଝିବ ବୋଲୁଛି ।
ଯୁଧିଷ୍ଠିର ବୋଇଲେ ଉପାଡ଼ିଲେ ବୃକ୍ଷ
ଭୀମ ବୋଲି ହୋଇବ ସବୁର ପ୍ରତ୍ୟକ୍ଷ ।
ଏ ସ୍ଥାନେ ତ ବହୁତ ଆୟୁଧ ପଡ଼ିଛି
ଯେ ମନ ପାଇବ ତାହା ନିଅ ମୁଁ ବୋଲୁଛି
ଏରୂପେ କହି ଭୀମ ସଙ୍ଗେ ଯୁଧିଷ୍ଠିର
ଭାଇଙ୍କି ଯେନ ଧୂଆଁଇଲେ ରଥବର ।
ଧାଆନ୍ତେ ଯୁଧିଷ୍ଠିର ହୋଇ ରଣରଙ୍କା
ମତ୍ସ୍ୟ ସୈନ୍ୟ ଗୁଡ଼ିଲେ ତ୍ରିଗର୍ତ୍ତଠୁ ଶଙ୍କା ।
ପାଲଟି କୁହା କୁହି ହେଲେ ପରସ୍ପରେ ।
ଦେଖ କଙ୍କପଣ୍ଡା ତ୍ରିଗର୍ତ୍ତ ସଙ୍ଗତରେ ।
ବିରାଟଙ୍କ ପାଇଁ ସମର କରିବାକୁ
ବାହାରିଛନ୍ତି ଗୁଡ଼ ହୃଦସ୍ଥ ଭୟକୁ ।
ଏହାଙ୍କ ମୁଖେ ଯେବେ ଏତେବେଳେ ଯମ
ପଡ଼ିବ ତାକୁ ମାରି ହେବେ ଏ ପୂର୍ଣ୍ଣକାମ ।
କେତେବେଳେ ଅବା ଅଟଇ ତ୍ରିଗର୍ତ୍ତର
ତାକୁ ମାରି ଆଣିବେ ଏବେ ମତ୍ସ୍ୟେଶ୍ୱର ।
ଏବେ ଯୁଧିଷ୍ଠିର ବରଗି ମାରଗଣ
ସହସ୍ରେ ଲୋକଙ୍କର ଯେନଲେ ପରାଣ ।
ସହସ୍ର ସାତ ଲୋକ ଭୀମସେନ ବେଗେ
ପକାଇଲେ ନେଇଣ ଯମଙ୍କର ଭାଗେ ।
ନକୁଳ ସହଦେବ ସାତସ ତିନଶ
ମାରି କରି କରରେ ଆଉଁସିଲେ ନଶ ।
ଏ ଅନନ୍ତରେ ଯୁଧିଷ୍ଠିର ମହାରଥ
ସୁଶର୍ମା ରଥ ପାଶେ ନେଇ କଲେ ରଥ ।
ସୁଶର୍ମାର ଗଣ୍ଡି ମଧ୍ୟକୁ ସେ ଦେଖାଇ
ବିନ୍ଧିଲେ ମୁନ ଥିବା କାଣ୍ଡକୁ ଲଗାଇ
ସୁଶର୍ମା ସେ ସକାଶୁଁ ଚଳ ଅନ୍ତରେ
ବିନ୍ଧିଲେ ନବକାଣ୍ଡ ଯୁଧିଷ୍ଠିର ପିଣ୍ଡେ
ଗୁରିକାଣ୍ଡରେ ଯୁଧିଷ୍ଠିରଙ୍କ ଘୋଡ଼ାକୁ
ପୀଡ଼ା ଦେଲେ ଦେଖାଇ ହସ୍ତ ଲାଘବକୁ ।
ଭୀମ ତାହା ଦେଖି ନ ଲଭି କିଛି ବାସ
ସୁଶର୍ମାର ଘୋଡ଼ାମାନଙ୍କୁକଲେ ନାଶ

ତା ପୃଷ୍ଠ ରଥୀବର ପ୍ରାଣନେଇ ହେଲେ
ସାରଥିକ କାଣ୍ଡକେ ଗୋଡ଼ାଇଲେ ତଳେ ।
ଏକାଳେ ବିରାଟଙ୍କ ଭାଇ ମଦିରାକ୍ଷ
ତ୍ରିଗର୍ତ୍ତର ସୈନ୍ୟକୁ କଲେ ଶରଲକ୍ଷ୍ୟ ।
ବିରାଟ ଦେଇ ବନ୍ଧା ଦଉଡ଼ି ଛିଣ୍ଡାଇ
ଗଦା ଧରିଣ ତଳେ ଛିଡ଼ା ହେଲେ ଯାଇ ।
ସିଂହ ଦେଖି କରିଣ ମଦଗଳା ଦନ୍ତୀ
ଗଡ଼ କଲ ପରି ବିରାଟ କଲେ ଗଣ୍ଡ ।
ସୁଶର୍ମା ତ ବିରଥ ହୋଇ ରହିଥିଲେ
ତା ଦେଖି ରଥ ଗୁଡ଼ିକରି ପଳାଇଲେ ।
ଭୀମ ବୋଇଲେ ଆହେ ରହ ରହ ଭାଇ
ପଳାଇ ପଶିବାକୁ ସ୍ଥାନ ଅଛୁ କାହିଁ ।
ମନେ ମନେ ତୁମ୍ଭେ ହୋଇଣ ହନ୍ତକାରୁ
ଆସିଛ ପର ନିଅ ଗାଈ ଆମ୍ଭଠାରୁ ।
ଏହା ଶୁଣିକରି ସୁଶର୍ମା ମହାରଥ
ପାଲଟିଲେ ଭୀମକୁ ଟେକ କରି ମୁଖ ।
ତାହା ଦେଖି ଭୀମ ରଥରୁ ସେହିକାଳେ ।
ଓହ୍ଲାଇ ତା ବାଳ ଧଇଲେ କରତଳେ ।
ଯେରୂପେ ସିଂହ କ୍ଷୁଦ୍ର ମୃଗକୁ ଧରଇ
ସେ ରୂପେ ଧରି ବାଳ ଝିଙ୍କିଲେ ନଠାଇ ।
ସେହି ସକାଶରୁଟି ସୁଶର୍ମା ଅଜ୍ଞାନ ।
ହୋଇଣ ମହୀତଳେ କରନ୍ତେ ଶୟନ ।
ଭୀମ ତା ମୁଣ୍ଡରେ ଗୋଇଠା ଗୋଟାକେତେ
ମାଇଲେ ସେହିକାଳେ ଅତି କୋପଚିତ୍ତେ ।
ପୁଣି ତା ଗାଲକୁ ଦେଖାଇ ମୁଥ ମାଡ଼
କରନ୍ତେ ମୁହଁହାଡ ହେଲା ଭଡ଼ ଭଡ଼ ।
ତ୍ରିଗର୍ତ୍ତ ପାଖେ ଯେତେ ସେନା ରହିଥିଲେ
ତ୍ରିଗର୍ତ୍ତ ଭୟଦଶା ଦେଖି ପଳାଇଲେ ।
ପାଣ୍ଡୁସୁତମାନେ ଯେ ବିରାଟକୁ ଧରି
ରହିଲେ ଭୀମ ଚାରିପଟେ ବେଢ଼ିକରି ।
ଭୀମ ବୋଇଲେ ମୁହିଁ କଙ୍କପଣ୍ଡା ଯେନ
ତ୍ରିଗର୍ତ୍ତର ପ୍ରାଣକୁ ପାରୁନାହିଁ ଯେନ
ମୁଁ ମାଇଲା ବେଳକୁ ଏହାକୁ ବିରାଟ
ଦେଖ ମୋତେ ଚାହିଁ ଅଛନ୍ତି ମଟମଟ ।
ଏହା କହି ତାହାକୁ ବାନ୍ଧି ଯତ୍ନକରି ।
ସ୍ୱରଥେ ବସିଲେ ତ୍ରିଗର୍ତ୍ତ ବାଳ ଧରି ।

ଯୁଧିଷ୍ଠିର ତା ଦେଖି ବୋଇଲେ ବଲ୍ଲଭ
ନ କର ଆଉ ଦେହବଳଙ୍କୁ ପଲ୍ଲବ ।
ତ୍ରିଗର୍ତ୍ତ ଏବେ ତ ହେଲଣି ମଲ୍ଲପର
ଦଅ ଏବେ ଛାଡ଼ି ମୋ ବୋଲେ ଦୟାକରି ।
ଭୀମ ବୋଇଲେ ଯେ ତ୍ରିଗର୍ତ୍ତ ଜୀବ ଆଶ
ଥିଲେ ତୁଣ୍ଡେ ବୋଲୁ ମୁହିଁ ତୁମ୍ଭର ଦାସ
ନ ବୋଲିଲେ ତା ଜୀବ ଏହିକ୍ଷଣି ମୁହିଁ
ଯମଙ୍କର କରରେ ସମର୍ପିବି ନେଇ ।
ଯୁଧିଷ୍ଠିର ବୋଇଲେ ବିରାଟଙ୍କ ଦାସ
ହେଲଣି ଏହାର ନ କର ପ୍ରାଣନାଶ ।
ଯେବେ ମୁଁ ବଲ୍ଲଭ ଅଟେ ତୁମ୍ଭ ମାନ୍ୟ
ତେବେ ମୋହର ଘେନ କହିବା ବଚନ
ସୁଶର୍ମାକୁ ବୋଇଲେ ପୁଣି ଯୁଧିଷ୍ଠିର
ଏରୂପେ ନ କରିବ ମରିବା ବସ୍ତର ।
କଲେ ଆଉଥରେ ବିରାଟଙ୍କର କୋପେ
ବସିବା ଯାଇକରି ଯମଙ୍କ ସମୀପେ ।
ସୁଶର୍ମା ତାହା ଶୁଣି ମୁଣ୍ଡ ଦେଇ ପୋତ
ବୋଇଲେ ମୋ ମୁଖେ ମୁଁ ଅର୍ଜିଛି ବିପତ୍ତି
ଯୁଧିଷ୍ଠିରଙ୍କର ବଚନେ ଭୀମସେନ
ଫିଟାଇ ଦେଲେ ସୁଶର୍ମାଙ୍କ ବନ୍ଧନ ।
ସୁଶର୍ମା ବିରାଟଙ୍କ ପାଦତଳେ ବନ୍ଦ
ବାହାରିବେ କୁରୁଦେଶକୁ କାନ୍ଦ କାନ୍ଦ ।
କଙ୍କ ତନ୍ତିପାଳ ଯେ ଗ୍ରନ୍ଥିକ ବଲ୍ଲଭ
ପରାକ୍ରମ ଦେଖିଣ ମତ୍ସ୍ୟ ନରଦେବ ।
ବୋଇଲେ ଦେବତାଏ ମନୁଷ୍ୟ ଦେହ ବହି
ମୋ ପାଶରେ ଅଛନ୍ତି ମୋର ହିତ ପାଇଁ ।
ଏ ନ ଥିଲେ ଆଜ ମୁଁ ମତ୍ସ୍ୟଦେଶେ ପ୍ରଜା
ପାଇ ତ ନ ପାରନ୍ତି ରଖିଲେ ବଡ଼ୋଜା ।
ଆଜଠାରୁ ମୋ ରାଜ୍ୟ ଅଛି ଯେତେ ଧନ
ଏହି ସବୁଙ୍କଠାରେ କଲି ମୁଁ ଅଧୀନ ।
ଯାହା କହୁଥିବେ ତାହା ମୋହର ନାହିଁ
ତୁଣ୍ଡେ ବୋଲିବାକୁ ସାମର୍ଥ୍ୟ ଅଛି କାହିଁ ।
ଯୁଧିଷ୍ଠିର ଆଦି ପାଣ୍ଡବେ ଯେତେ ଥିଲେ
କରଯୋଡ଼ି ବିରାଟ ସମ୍ମୁଖରେ କହିଲେ ।
ଏରୂପେ କିମ୍ପା ତୁମ୍ଭେ ବୋଲୁଛ ନରେଶ
ଆମ୍ଭେ ତ ଅଟୁଁ ତୁମ୍ଭ ସେବା କଲା ଦାସ ।

ବିରାଟ ବୋଇଲେ ତୁମ୍ଭର ଗୁଣ ଦେଖି
ହେଉଅଛୁ ମୁହିଁଟି ଅତିଶୟେ ସୁଖି ।
ଏବେ ମୁଁ ତୁମ୍ଭଙ୍କୁ ମୋ ଦେଶେ ରାଜାକରି
ରହିବ ଜାଣ ତୁମ୍ଭ ଆଜ୍ଞା ଅନୁସରି ।
ଗାଈ ରତ୍ନ ଧନ ଯେ ବସ୍ତ୍ର ଅଳଙ୍କାର
ଦେବି ବୋଇଲେ ଏହା କ ପଦାର୍ଥ ଛାର ।
ସହସ୍ରେ ବରଷ ମୁଁ ଦାସପରି ସେବା
କଲେ ଏ ଋଣ କେତେ ଶୁଝାଇବି ଅବା ।
କଙ୍କପଣ୍ଡା ବୋଇଲେ ପାଇଲି ମୁଁ ସବୁ
ତୁମ୍ଭେ ତ ଅଟ ଅନ୍ନଦାତା ଆମ୍ଭ ବାବୁ ।
ଦୂତକୁ ପଠାଇଁ ନଗରେ ଉତ୍ସବ
କରାଅ ବିଳମ୍ବ ହେ ନ କର ନୃଦେବ ।
ବିରାଟ ସେହିକ୍ଷଣି ଦୂତକୁ ଡ଼କାଇ
ବୋଇଲେ ଯାଅ ମୋ ପୁରକୁ ବେଗହୋଇ
ପୁଅମାନେ ମୋହର ଆସିବେ ବାଟକୁ
ସଙ୍ଗତରେ ଘେନିଣ ଗଣିକା ମାନଙ୍କୁ ।
ମୋ ନଗରବାସୀଙ୍କ ଦ୍ୱାରମାନଙ୍କରେ
ତୋରଣ ବନ୍ଧା ହୋଇଥିବଟି ଯତ୍ନରେ ।
ଦାଣ୍ଡଯାକେ ପଡ଼ିଣ ଚନ୍ଦନର ଛଡ଼ା
ବନ୍ଧା ହୋଇଥିବ ଯେ ସେବତୀ ପାଖୁଡ଼ା ।
ଏହା ଶୁଣିଣ ଦୂତେ ନମସ୍କାର କରି
ଗଲେ ବିରାଟଙ୍କ ଆଜ୍ଞାକୁ ଶିରେ ଧରି ।
କହିଲେ ସେ ନଗରବାସୀଙ୍କ ଆଗରେ
ଆସୁଛନ୍ତି ବିରାଟ ଅତି ସରାଗରେ ।
ତ୍ରିଗର୍ତ୍ତଠାରୁ ପାଇ ଜୟଶିରୀ
ଛଡ଼ାଇଲେ ଯୁଦ୍ଧେ ସେ ଅଭିମାନ ହରି ।
ଏହିଠାରେ ପୂର୍ବଗୋଗ୍ରହ ସମାପତ
ହୋଇଲା କହେ କୃଷ୍ଣସିଂହ ନରପତ ।

—*—

## ଉତ୍ତର ଗୋଗ୍ରହ

ଦୁର୍ଯ୍ୟୋଧନ ଆଗେ ବରଗି ତ୍ରିଗର୍ତ୍ତଙ୍କୁ
ପଛେ ତ ବାହାରିଲେ ବିରାଟ ଦେଶକୁ ।
ତ୍ରିଗର୍ତ୍ତ ହାରିବାର ଏ ସକାଶୁଁ ଜଣା
ନୋହିଲା ତାଙ୍କ ତାଙ୍କ ହୋଇ ଓରବଣା ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଯେ କୃପ ଅଶ୍ୱତ୍ଥାମା
ଏମାନେ କ୍ଷତ୍ରିୟମାନଙ୍କେ ନିରୁପମା ।

ଏହାଙ୍କର ବଳ ପାଇଣ ସୁଯୋଧନ
ଅଡ଼ାଇ ଅଣାଇଲେ ବିରାଟ ଗୋଧନ ।
ଷାଠିଏ ସହସ୍ର ଲେଖାରେ ସବୁ ଗାଈ
ଜାଣ ଜନ୍ମେଜୟ ନୃପତି କହୁଥାଇ ।
ସେ ଗାଈ ରକ୍ଷାକାରୀ ଯେତେକ ଗଉଡ଼
ପୁଣି ତାହାଙ୍କୁ ସେହୁ ମରାଇଲେ ମାଡ଼ ।
ସେ ଗଉଡ଼ମାନଙ୍କେ ଅଟେ ଯେ ପଳାଇ
ସେହିକ୍ଷଣି ସେ ରଥ ଗୋଟିଏ ଆରୋହି ।
ବିରାଟଙ୍କର ସିଂହଦ୍ୱାରେ ରଥ ନେଇ
ରଖାଇ ବାହାରନ୍ତି ବାର୍ତ୍ତା ତାଙ୍କୁ କହି ।
ବିରାଟଙ୍କର ସୁତ ଉତ୍ତରଙ୍କୁ ଦେଖି
କହିଲ ସେ ବଚନ ହୋଇ ଅତିଦୁଃଖୀ ।
ତୁମ୍ଭ ଗାଈ ଷାଠିଏ ସହସ୍ର ଦୁର୍ଯ୍ୟୋଧନ
ଅଡ଼ାଇ ନେଉଛନ୍ତି ଘେନିଣ ସଇନ ।
ରଜା ତ ଯାଇଛନ୍ତି ବିଗର୍ତ୍ତଙ୍କୁ ମାରି
ସେ ଥିଲେ ଏହା ତାଙ୍କୁ କରନ୍ତୁ ଗୁହାରି ।
ତୁମ୍ଭେ ତ ଅଟ ବୀରମାନଙ୍କେ ବଳସ୍ମାର
ପୁଣି ତ ପାଳୁଅଛ ଏ ମତ୍ସ୍ୟନଗର ।
ଏହି ସକାଶରୁ ଯେ କରେ ଧନୁ ବହି
କୁରୁଙ୍କୁ ଶରାଗ୍ନିରେ ଦହି ଆଣ ଗାଈ ।
ସବୁ ଶସ୍ତ୍ର ଅସ୍ତ୍ରେ ନିପୁଣ ତୁମ୍ଭମନ
କ୍ଷଣ ମାତ୍ରକରେ ଜିଣିବ ଦୁର୍ଯ୍ୟୋଧନ ।
ବାପେ ତ ବୋଲୁଥାନ୍ତି ଉତ୍ତମ ମୋ ପରି
ପାରିଲ ଶତ୍ରୁ ଜନମାନଙ୍କୁ ସଂହାରି ।
ଏବେ ସେ କଥା ସତ୍ୟ କରି ବଳବନ୍ତ
କର ବିରାଟଙ୍କ ହୃଦୟେ ତୋଷ ଜାତ ।
ଗଣ୍ଡିସାନ କାଣ୍ଡମାନଙ୍କୁ ଯେ ପ୍ରହାରି
ଦିଅ ସବୁ କୁରୁଙ୍କ ଗାରିମାକୁ ସାରି ।
ଯେ ରୂପରେ କେଶରୀ ମନ୍ଥେ ଗଜକୁଳ
ସେହିରୂପେ କର ହେ କୁରୁଙ୍କୁ ଆକୁଳ ।
ଧନୁ-ବାଣାଦଣ୍ଡରେ ଗୁଣ-ଗୁଣା ଖଞ୍ଜି
ବଜାଇ ଶତ୍ରୁ ମଧ୍ୟେ ଦିଅ ମନ ରଞ୍ଜି ।
ବିରାଟ ମଧ୍ୟେ ଏହା ଶୁଣିବେଟି ଯେବେ
ମହାସୁଖ ତୁମ୍ଭଙ୍କୁ ପାଇବେ ହେ ତେବେ ।
ରଥରେ ହେମମାଳା କରିଣ ଶୋଭିତ
ଯୋତ୍ରଅ ନେଇ ଘୋଡ଼ାମାନଙ୍କୁ ତୁରିତ ।
ଧନୁରେ ସନ୍ଧି ରୁକ୍ମପୁଂଖ ଶରରାଜି
ତର୍ଜ୍ଜି ବସି ବଜାଅ ଶତ୍ରୁଙ୍କୁ ତା ଗର୍ଜି ।
ଦୁଷ୍ଟିଚନ୍ଦ୍ରମାରେ ହେ ମଣ୍ଡିତ ଜଗତ
ତୋଷ ଆଣିଣ ପୁରଜନଙ୍କର ଚିତ୍ତ ।
ପାଣ୍ଡବମାନଙ୍କର ପାର୍ଥ ଧନା ଗତି
ନ ଥିବା ପରି ତୁମ୍ଭେ ଅଟ ମହାମତି ।
ଉତ୍ତରକୁମାର ତ ସ୍ତ୍ରୀମାନଙ୍କର ମେଳେ
ବସିଥିଲେ ଶୁଣି କହିଲେ ଗର୍ଜି ଗଳେ ।
ମୋ ପରି ରଥୀଙ୍କ ସାରଥି ଏଥି ନାହିଁ
ଥିଲେ ଦୁର୍ଯ୍ୟୋଧନ ଯାଆନ୍ତା ଆଜ କାହିଁ ।
ଯେବେ ମୋତେ କହୁଛ ଯିବାକୁ ଯୁଦ୍ଧକୁ
ମୋ ରଥ ବାହିବ କେ ଆଣ ହେ ତାହାକୁ ।
ପୂର୍ବେ ମୁଁ ଅଠାଇଶ ଦିନ ଯାଏ ଯୁଦ୍ଧ
କରନ୍ତେ ମୋ ସାରଥି ହେଲା ଯୁଦ୍ଧେ ବଧ ।
ଆହା ଦଇବରେ ହୋଇଛୁ ବାମ ମୋତେ
କୁରୁ ଏ ଗାଈ ଘେନ ଯାଆନ୍ତେ କି ସତେ ।
ଦୁର୍ଯ୍ୟୋଧନ କୃପ ସେ ଦ୍ରୋଣ ଦ୍ରୌଣି କର୍ଣ୍ଣ
ଭୀଷ୍ମ ଦୁଃଶାସନ ଯେ ଶକୁନି ବିକର୍ଣ୍ଣ ।
ଏମାନଙ୍କର ଧନୁକୁ କାଣ୍ଡରେ ମୁଁ କାଟି
ଆଣନ୍ତି କ୍ଷଣକେ ମୋ ଗାଈ କରି ଗୋଟି ।
ବଜ୍ର ଧରି ଯୁଝିଲେ ମୋ ଆଗରେ ଇନ୍ଦ୍ର
କଦାଚିତ ଅରଜି ନ ପାରନ୍ତି ଛିଦ୍ର ।
ଆଜ ମୋତେ ଦେଖନ୍ତୁ ପାର୍ଥ କରି କୁରୁ
ମାନେ ଯୁଦ୍ଧଁ ପଳାନ୍ତେ ହୋଇ ଅତି ଭୀରୁ ।
ଏହା ଶୁଣି ଦ୍ରୌପଦୀ ଅଳପ ହସିଲେ ।
ମୁଖେ ବାସ ଦେଇ ତା ପାଶକୁ ଗଲେ ।
ବୋଇଲେ ଶୁଣ ଆହେ ବିରାଟର ବାଳା
ଅର୍ଜୁନ ରଥ ବାହୁଥିଲା ବୃହନ୍ନଳା ।
ଏ ବାହାରେ ତାଙ୍କଠାରୁ ଅସ୍ତ୍ର ଶସ୍ତ୍ର
ଶିଖିଛି ନାଶିବାକୁ ଶତ୍ରୁକୁଳ ଗାତ୍ର ।
ଏହାକୁ ସାରଥିଟି କରିଣ ଅର୍ଜୁନ
ଖାଣ୍ଡବ ଦହନ ଜିଣିଲେ ମଘବାନ ।
ତୁମ୍ଭ ସାନ ଭଗିନୀ ଉତ୍ତରା ତାହାକୁ
ବୋଇଲେ ବାହି ଯିବେ ସେ ତୁମ୍ଭ ରଥକୁ ।
ତୁମ୍ଭ ଅନୁରୂପକୁ ଅଟନ୍ତି ସାରଥି
ଜାଣେ ଶତ୍ରୁବଳପାରିବ ଏଣୁ ମତି ।

ଉତ୍ତର ଶୁଣି ଉତ୍ତରଙ୍କୁ ଏ ଉତ୍ତର
ଦେଲ କହ ଯାଇ ଗୁରୁଙ୍କୁ ତୁମ୍ଭର ।
ଗାଈ ଘେନ ଯାଉଛନ୍ତି ତ କୁରୁଏ
ପାରିଲେ ଘୋଡ଼ା ବାହି ତୋଷୁ ମୋତେସିଏ
ଧନବସ୍ତ୍ର ରତନ ଅଳଙ୍କାର ଦେବ
ଏ ବାହାରେ ବିରାଟଠାରୁ ବିଆଇବ ।
ଉତ୍ତରା ତାହା ଶୁଣି ବୃହନଳାଠାରୁ
ବାହାରିଲେକ ନାଟ ଶିଖିବା ଘରକୁ ।
ତାଙ୍କ ଯିବା ଗତିକ ହଂସ ଗଜରାଜ
ଦେଖି କରିଣ ଭଙ୍ଗିଦେଲେ ନିଜ ଓଜ ।
ଚଳିବାବେଳେ ତାଙ୍କ ପାଦତଳ କୁଞ୍ଚ
ଅଙ୍ଗୁଳି ବାଜି କରେ ନିନ୍ଦା ପଦ୍ମସଞ୍ଚ ।
କୁଣ୍ଡଳ ବେନି ଗଣ୍ଡମଣ୍ଡଳେ ଦୋହଲି
ବଢ଼ାଇଲେ ଅତିଶୟରେ କୁତୁବେଲ ।
ଅମୃତକୁ ଯେ ଧରିଥିବା ପରି ଇନ୍ଦୁ
ଚାଲିବା ଶ୍ରମେ ଦିଶେ ମୁଖେ ଝାଳବିନ୍ଦୁ ।
ନାସାର ଦୁଇପୁଟେ ରହି ଝାଳ ସାଞ୍ଚି
ତିଳଫୁଲ ମକରନ୍ଦକୁ କଲା ମାତ ।
ତାହାଦେଖି ଅର୍ଜୁନ ବୋଇଲେ ତାହାଙ୍କୁ
କାହିଁପାଇଁକି ମା ଗୋ ଆସିଲୁ ଏଠାକୁ ।
ତୋ ମୁଖ ତ ଆଜ ଦିଶୁଛି ଅପ୍ରଛନ୍ନ
ତାହା କହିଣ ମୋର ତୋଷ କର ମନ ।
ଉତ୍ତରା ବୋଇଲେ ହେ କି କହିବି ମୁହିଁ
ବିପତ୍ତିରେ ବିପତ୍ତି ଖଞ୍ଜୁଅଛି ବିହି ।
ତ୍ରିଗର୍ତ୍ତେ ତ ମାରିଣ ଯାଇଛନ୍ତି ବାବୁ
କୁରୁଏ ଆସି ଗାଈଯାକ ନେଲେ ସବୁ ।
ମାମୁଁ କୀଚକକୁ ଯେ ଗନ୍ଧର୍ବେ ମାଇଲେ
କିସ ଦୁଃଖ ମତେ ପଡ଼ିର ଏତେବେଳେ ।
ମୋ ଭାଇ ଯିବାକୁ ସାରଥି କେହି ନାହିଁ
କିରୂପେ ଯୁଦ୍ଧକୁ ସେ ଯିବେ ଏକା ଧାଇଁ ।
ତୁମ୍ଭେ ତ ରଥ ବାହି ଜାଣ ବୋଲି ମୁହିଁ
ସୈରନ୍ଧ୍ରୀଠାରୁ ଶୁଣି ଆସିଅଛି ଧାଇଁ ।
ଯେବେକିଁ ସାରଥି ନୋହିବେ ବୃହନ୍ନଳା
ତେବେ ମୁହିଁ ମରିବି ଦଉଡ଼ି ଦେଇ ଗଳା ।
ଅର୍ଜୁନ ବୋଇଲେ ମାଏ ଥିର କଥାକୁ
ନ ଭାଳ କରିବି ମୁଁ ତୁମ୍ଭ ବଚନକୁ ।

ଏହାଶୁଣି ଉତ୍ତରା ହୋଇଣ ଆନନ୍ଦ
ମୁଖେ କଲେ ପ୍ରସନ୍ନ ଯେହ୍ନେ ପୂର୍ଣ୍ଣଚନ୍ଦ୍ର ।
ଉତ୍ତରାଙ୍କଠାରୁ ଆସନ୍ତେ ବୃହନ୍ନଳା
ତାଙ୍କପଛେ ଗୋଡ଼ାଇଲେ ସେ ନବବାଳା
ବୃହନ୍ନଳାର ଗୋଡ଼ ପାହୁଡ଼ ବାଗୁଡ଼
ଚାଲିବା ଘାତେ କଲା ରଣଝଣ ରଡ ।
ଫର ଫର ହୋଇ ପଣତ ଉଡ଼ କରି
ଦାଣ୍ଡର ଧଳଯାକ ଦେଲା ଦୂର କରି ।
ତାହାକୁ ଜାଣିପାରି କରି ବୃହନ୍ନଳା
ଗଳେ ଦେଇ ପଣତ ହୃଦେ କଲେ ମାଳା ।
ଉତ୍ତର ବୋଇଲେ ଗୋ ବୃହନ୍ନଳା ଆସ
ସାରଥି ହୋଇ ମୋର ରଥପରେ ବସ ।
କୁରୁଏ ମୋର ଗାଈ ନିଅନ୍ତି ଅଡ଼ାଇ
ସାରଥି ନ ଥିବାରୁ ଯାଇପାରୁ ନାହିଁ ।
ଯେବେ ତୁମ୍ଭେ ମୋହର ବାହିନେବ ରଥ
କ୍ଷଣେ ତାଙ୍କୁ ନେଇ ଦେବି ମୁଁ ଯମପଥ ।
ବୃହନ୍ନଳା ବୋଇଲେ କିସ ଗୋ ବୋଲୁଛ
ନାଚୁଣିଟାକୁ କମ୍ପା ଯୁଦ୍ଧକୁ ଡାକୁଛ ।
ରଥକୁ କେଉଁ ରୂପେ ବାହୁଥାନ୍ତି ଲୋକ
ସ୍ୱପନେ ସେ ତ ହୋଇନାହିଁ ମୋ ଆଲୋକ
ଯୁବତୀ ପରିୟେ ତ ଅଟେ ମୋର ଗତି
ନାଟ ନାଚିବା ମୁଁ କରିଛି ଏଣୁ ବୃତ୍ତି ।
ଯୁଝ ବୋଇଲେ ତ ନ ଯୁଝେ ମୋର ମନ
ବୁଝାଇ ଶୁଝାଇବି ନୃତ୍ୟ ବିରଚନ ।
ଉତ୍ତର ଏହା ଶୁଣି ବୋଇଲେ ଏରୂପେ
ନ ବୋଲ ସୈରନ୍ଧ୍ରୀ କହିଲେ ଏହା ଆପେ
ପୂର୍ବେ ତୁମ୍ଭେ ପାଣ୍ଡୁସୁତଙ୍କ ପାଖେ ଥାଇ
ଅର୍ଜୁନଙ୍କ ରଥକୁ ନେଉଥାଅ ବାହି ।
ସେଠାରୁ କି ଏଠାରେ ବିରଚନ ଉଣା
ହୋଇଥିଲେ ତା ନିଅ ନାହିଁ ତ ମୋ ଜଣା
ବୃହନ୍ନଳା ବୋଇଲେ ପ୍ରଭୁ ହୋଇ ତୁମ୍ଭେ
ଆଗ୍ରହ କଲେ କେତେ କରିବୁ ନାହିଁ ଆମ୍ଭେ
ଯେବେ ବୋଲୁଅଛ ନେବି ମୁଁ ରଥ ବାହି
ଭଲ ମନ୍ଦ ହେଲେ ମୋହର ଦୋଷ ନାହିଁ
ଉତ୍ତର ଏହା ଶୁଣି ଦେଲେ କବଚକୁ
ଲଗାଇ କରି ତାଙ୍କ ଘୋଡ଼ା ବାହିବାକୁ ।

ବୃହନ୍ନଳା ସେକ୍ଷଣି କବଚ ଧଇଲେ
ମୁଣ୍ଡଆଡ଼ୁ ଗୋଡ଼ଯାଏ ଯେ ଲମ୍ବାଇଲେ ।
ତାହା ଦେଖି କୁମାରୀମାନେ ଦେଲେ ହସି
ବସନକୁ ଅଧର ଦେଶରେ ନବେଶି ।
ଉତ୍ତର ବୋଲେ ଏ ନୋହିଲା ବୃହନ୍ନଳା
ମରବଟି ସାଞ୍ଜୁ ଧଇଲେ ଭିଡ଼ ଗଲା ।
ଆହେ ଜନମେଜୟ ଏ ରୂପରେ କହି
ଦେଲେ ବୃହନ୍ନଳାକୁ କବଚ ଲଗାଇ ।
ସୁନାର ସିଂହଧ୍ୱଜଟାଏ ରଥଶିଖେ
ଉତ୍ତର ଆପେ ନେଇ ରଖିଲେ ଯେ ସୁଖେ ।
ଧନୁ କାଣ୍ଡେ ଅସି ସେ ରଥରେ ବହୁତ
କାନ୍ଧେ ମୁଣ୍ଡେ ବନ୍ଧିଣ ରଖିଲେ ତୁରିତ ।
ତଦନ୍ତେ ଯେ ରଥବରରେ ବସିଲେ
ଧନୁଧରି ଗୁଣ ମାଜି ତା ଟଙ୍କାରିଲେ ।
ସେକାଳେ ଉତ୍ତର ବୋଇଲେ ବୃହନ୍ନଳା
କହୁଛି କଥାଟିଏ ନ କରିବ ହେଳା ।
ଯେତେବେଳେ ଭଇ ମାରିବେ ଭୀଷ୍ମ ଦ୍ରୋଣ
ଛଡ଼ାଇ ଦେବ ତେତେବେଳେଟି ଆପଣ ।
ରଥିମାନଙ୍କର ଯେ ନାନାଜାତି ପାଗ
ପଡ଼ି ତ ଥିବ କୋଟି କୋଟି ମହାଭାଗ ।
ତା ଆଣିଲେ ଆମ୍ଭେ ପିନ୍ଧାଇ କୁଣ୍ଢାଇଙ୍କି
ଖେଳିବୁ କୌତୁକ ଆଣିଣ ମସ୍ତକ ।
ବୃହନ୍ନଳା ବୋଇଲେ ଉତ୍ତର କୁରୁଙ୍କୁ
ମାଇପେ ପାଗ ଆଣି ଦେବି ମୁଁ ତୁମ୍ଭଙ୍କୁ ।
ଏହା କହି ରଥ ବାହିଲେ ବୃହନ୍ନଳା
ଯୁଝିବାକୁ ଉତ୍ତର ମନ କରି ଦେଲା ।
ତା ଦେଖି ଦ୍ୱିଜେ ସ୍ତ୍ରୀମାନଙ୍କ ସଙ୍ଗରେ
ଉତ୍ତରଙ୍କ ମଙ୍ଗଳ ବାଞ୍ଛା କଲେ ଚିତ୍ତେ ।
ଉତ୍ତର ବୋଇଲେ କୁରୁଙ୍କଠାରୁ ବେଗି
ବାହା ରଥ ଯୁଦ୍ଧେ ହୋଇଛି ଅନୁରାଗୀ ।
ଅର୍ଜୁନ ତା ଶୁଣି ବାହିଲେ ବେଗେ ରଥ
ଦେଖାଇ ତାହାଙ୍କ ଅଳପ ସାମରଥ ।
ଏଣୁଟି ଘୋଡ଼ାଏ ପବନ ପରି ଗତି
କରି ଯୁଦ୍ଧସ୍ଥାନକୁ ଧାଇଁଲେ ଝଟତି ।
ଦେଖିଲେ କୁରୁଙ୍କର ସଇନ ସାଗର
ପତାକା ଫେନରେ ସେ ହୋଇଛି ସୁନ୍ଦର ।

ସେ ସାଗରେ ଗଜ ନ ଅଟେ ମୁଖଧ୍ୱନ
ମଣ୍ଡୁଛି ତହିଁରେ ଶତ୍ରୁଙ୍କ କର୍ଣ୍ଣବେନ ।
ମଗର ପରି ତହିଁ ଗଦା ଶକ୍ତିଶୂଳ
ହେଉଅଛନ୍ତି ଶୋଭା-ମୀରରେ ଚଞ୍ଚଳ ।
ଖଣ୍ଡାଟି ଧଣ୍ଡ୍ରସାପ ପରାଏ ଚହଟି
ଥୋଇଅଛି ଶତ୍ରୁଙ୍କ ବୁକୁରେ ଦକୁଟି ।
ହାତିକୂଳ ଅଶ୍ୱର ଉଟଙ୍କ ବେକଯାକ
ଟେକିଛନ୍ତି ଯାହା କ ଜଗିଛନ୍ତି ବକ ।
କୁମ୍ଭୀ-କାତି-ମୀନମାନଙ୍କୁ ଖାଇବାକୁ
ଏକଥା ବିନା ଆନ ନ ଆସେ ମନକୁ ।
କଚ୍ଛପର ଶୋଭାକୁ ନନ୍ଦ ସୁନାମୁଣ୍ଡା
ଢାଲ ତହିଁ ଦିଶୁଅଛନ୍ତି ଗଣ୍ଡା ଗଣ୍ଡା ।
ଭୀଷ୍ମ ଦ୍ରୋଣ ଯେ ଦ୍ରୋଣି କର୍ଣ୍ଣ ସାରଦ୍ୱତ
ମାନଙ୍କେ ସେ ସାଗର ହୋଇଛି ରକ୍ଷିତ ।
ତାହା ଦେଖି ଉତ୍ତର ବଦନ ଶୁଖାଇ
କହିଲା ବୃହନ୍ନଳା ମୁଖକୁ ଅନାଇ ।
କୁରୁ ତୁଲେ ଯୁଦ୍ଧ କରିବା ମନୋରଥ
ଭାଜିଲା ବୃହନ୍ନଳା ନୋହେ ମୁଁ ସମର୍ଥ ।
ସୈନ୍ୟ ଦେଖି ମୋହର ଆତମାଟି ଶୁଖି
ଟଳି କେହ୍ନ ଧୈର୍ଯ୍ୟ ପାରିବ କହ ରଖି ।
ଏ ସୈନ୍ୟରେ ଯେତେ ଅଛନ୍ତି ହାତିଘୋଡ଼ା
ଚକଟି ପକାଇବେ ମଲେ ମୋର ମଡ଼ା ।
ଏ ସକାଶୁଁ ମୋର ମାଉଁଶ ଦଳ ହୋଇ
ଭୂମିରେ ଯିବ ପୋଡ଼ା ହେବାକୁ ନ ଥାଇ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଅଟନ୍ତି ରଥୀଶିଖ
ତାହାଙ୍କୁ ଦେଖି ପ୍ରେମ ଫୁଲୁଛି ମୋ ଦେଖ ।
ଦୁର୍ଯ୍ୟୋଧନ ରଜା-ଅନଳମୁଖେ ଯାଇଁ
ପତଙ୍ଗ ପରି ହୋଇ ପଡ଼ିବ ଟି ମୁହିଁ ।
ଏମାନଙ୍କର ରୂପ ଦେଖି ପାଞ୍ଚୁ ପାଞ୍ଚୁ
ଦେଖ ପାଟିଦେଇ ବାହାରୁଅଛି କାଚୁ ।
ମୋହ ତୁଲେ ତ ସୈନ୍ୟ ସଖା କେହିନାହିଁ
ପୁଣି ଯୁଦ୍ଧଭଙ୍ଗି ତ ମୁହିଁ ନ ଜାଣଇ ।
ଏଣୁ ମୋ ମନ ହେଉନାହିଁ ଯୁଝିବାକୁ
ବାହୁଡାଅ ହେ ବେଗେ ରଥ ମୋ ଘରକୁ ।
ମହାଏ ତୋରାଣି ପିଇଲେ ଦେହ ଶାନ୍ତ
ନାଶିବ ଶୋଷରେ ମୁଁ ହେଲିଣି ଆରତ ।

ତାକୁ ପଛରେ ମୋର ସୈନ୍ୟ ଘେନ ସଙ୍ଗେ
ଏମାନଙ୍କୁ ଆସି ମାରନ୍ତୁ ରଣରଙ୍ଗେ ।
ମୋ ହାତରେ ଏ କଥା ନୁହଇ ସର୍ବଥା
ଶ୍ରମକୁ ନ କର ହେ ବୃହନ୍ନଳା ବୃଥା ।
ବୃହନ୍ନଳା ବୋଲେ ନ ଦେଖି ଶତ୍ରୁବଳ
କାହିଁପାଇଁ ଭୟରେ ହେଉଛ ଆକୁଳ ।
ତୁମ୍ଭେ ଆଣିଅଛ ବୁହାଇ ରଥ ମୋତେ
ମୁଁତ ଛାଡ଼ୁ ନାହିଁ ତୁମ୍ଭଙ୍କୁ କଦାଚତେ ।
କୌରବମାନଙ୍କ ଆଗକୁ ତୁମ୍ଭ ରଥ
ବାହୁଡ଼ା ନେବ ରଥ ଥିଲେ ସାମରଥ ।
ସ୍ତ୍ରୀଙ୍କ ଆଗରେ ତ କରିଛ ପ୍ରତିଜ୍ଞା
ଏବେ ସେ ପ୍ରତିଜ୍ଞାକୁ କରୁଛ ଅବଜ୍ଞା ।
ଗାଈଙ୍କୁ ନ ଘେନି ଘରକୁ ଯେବେ ଯିବ
ଇଚ୍ଛା ସୁଖେ ଉପହାସକୁ ଅରଜିବ ।
ମୁଁ ତ ଆସିଅଛି ସୈରନ୍ଧ୍ରୀ ବୋଲ ପାଇ
ନ ମାଇଲେ କୁରୁଙ୍କୁ ଫେରି ଯିବି ନାହିଁ ।
ଉତ୍ତର ବୋଇଲେ ହେ ଯାଉ ପଛେ ଗାଈ
ମରିବାକୁ ଯିବି କି କୁରୁଙ୍କ ଠାକୁ ଧାଇଁ ।
ସ୍ତ୍ରୀମାନେ ହସିଲେ ନାହିଁ ମୋର ଲାଜ
ଉପଇବ ତାହାଙ୍କୁ କହିଣ ମୁଁ ଓଜ ।
ଜୀଇଣ ଥିଲେ ସବୁ ସୁଖ ଭୁଞ୍ଜେ ଦେହୀ
ଯେ ମରଇ ଯାଏଟି ସେ ପାଉଁଶ ହୋଇ ।
ବୃହନ୍ନଳା ବୋଇଲେ କ୍ଷତ୍ରିକୁଳେ ଜାତ
ହୋଇ କେ ହୋଇନାହିଁ ଏରୂପେ ନିଷତ ।
ପଳାଇବା ପ୍ରତ କି କ୍ଷତ୍ରିମାନଙ୍କର ।
ଶ୍ରେୟ ଅଟଇଟି ଯୁଦ୍ଧରେ ମରିବାର ।
ଉତ୍ତର ଏହା ଶୁଣି କମ୍ପାଇଣ କାୟେ
ପଳାଇଲା ଡେଇଁ ରଥରୁ ମହାଭୟେ ।
ବୃହନ୍ନଳା ତା ଦେଖି ତା ରଥରୁ ଡେଇଁ
ଧାଇଁଲେ ତାକୁ ଧରିବାକୁ ସେ ଗୋଡ଼ାଇ ।
ଧାଇଁବା ବେଗେ ବେଣୀଝୁମ୍ପା ପୃଷ୍ଠଦେଶ
ନାଚ ଫଣୀଫଣାକୁ ନିନ୍ଦିଲା ଅତି ସେ ।
କାନ୍ଧୁ ଖସି ପଡ଼ ପଣନ୍ତ ଘୋଷାରିଲା
ଉଡ଼ି ଫରଫର ଶବଦ ଜାତ କଲା ।
ତାହା ଦେଖିଣ କୁରୁସେନା ହସିହସି
ବୁଡ଼ିଗଲେ ଆନନ୍ଦ-ଜଳ ମଧ୍ୟେ ପଶି ।

କେ ବୋଇଲେ ପୁରୁଷ କେ ବୋଇଲେ ସ୍ତ୍ରୀ
କେହୁ ବୋଇଲେ ହୁଲ କଥାକୁ ବାହାର ।
ଦେଖ କରିଅଛି ସେ କେଡ଼େ ସାହସକୁ
ଧାଇଁଛି ପଳାଇବା ଲୋକ ଧରିବାକୁ ।
କେ ବୋଇଲେ ଅର୍ଜୁନ ପରି ତ ଦିଶୁଛି
ନପୁଂସକ ରୂପ ଏ କପାଇଁ ଧରିଛି ।
ଅର୍ଜୁନଙ୍କର ସ୍ଥୂଳ ଚଳଣ ଯେତେକ
ଦେଖ ଏହା ଦେହରେ ଅଛି ତ ତେତେକ ।
ଅର୍ଜୁନ ବିନା ଏକା ରଥ ଗୋଟିକରେ
କେ ଆସିବ କୁରୁସେନାକୁ ନିଃଶଙ୍କରେ ।
ପଳାଉଅଛି ଯେ ଟି ସୁତ ବିରାଟର
ଗୋଡ଼ାଉଅଛି ଯେ ଟି ସେ ଅର୍ଜୁନ ବୀର ।
ଅର୍ଜୁନଙ୍କୁ ନ ଚିହ୍ନି ସଙ୍ଗତରେ ଧରି
ଆସିଲା ଆମ୍ଭଠାକୁ ଯୁଦ୍ଧ ଇଚ୍ଛା କରି ।
ଆମ୍ଭର ଦେଖିକରି ରଥଧ୍ୱଜଗଣ
ମଲଚ ବୋଲି କରି ପଳାଉଛି ଜାଣ ।
ଅର୍ଜୁନ ତ ବୀରଗଣଙ୍କ ଶିରୋମଣି
କରିବେ ଯୁଦ୍ଧ ନିଶ୍ଚେ ତାକୁ ଧରିଆଣି
ଆଜ ତାଙ୍କର କାଣ୍ଡମୂନ ଯାହା ପିଣ୍ଡେ
ବାଜିବ ସେ ବସିବ ଯାଇ ଯମଦାଣ୍ଡେ ।
ଏରୂପେ କୁରୁମାନେ କୁହାକୁହି ହୋଇ
ରହିଲେ ଅର୍ଜୁନଙ୍କ ଗତିକି ଅନାଇ ।
ଅର୍ଜୁନ ଶତପଦ ପରେ ଉତ୍ତରକୁ
ଧରି ପକାଇଲେ ଦେଖାଇ ବିକ୍ରମକୁ ।
ସେ ଘେନି ଉତ୍ତର କୁମାର ଧରି ଶଙ୍କା ।
ଛାଡ଼ିଦିଅ ବୋଲି ପାଡ଼ିଲେ ଉଚେ ଡକା ।
ବୋଇଲେ ଗୋ ବୃହନ୍ନଳେ ତୁ ଯୁଦ୍ଧେ ମରି
ଗଲେ ବର୍ତ୍ତିଅଛୁ ଯିବୁ ବୋଲି ଡରି ।
ମୁହିଁ ତ ରାଜକୁଳେ ହୋଇଅଛି ଜାତ
ତୋପରି ଜୀବ କେହ୍ନି ଛାଡ଼ିବ କହ ତ ।
ଯେତେକ ଧନ ରତ୍ନ ଇଚ୍ଛା ଅଛି ତୋର
ଘେନ ଯା ପଛକେ ନ କର ହରବର ।
ଏ ପରି ଦେହ ଯେବେ ତୋ ବୋଲେ ଛାଡ଼ିବ
ସତେ କି ଆଉ ରାଜକୁଳେ ଜନମିବ ।
ଅରଜୁନ ତା ଶୁଣି ହୋଇ ହସ ହସ
ବୋଇଲେ ଏବେ ଟି ସାରଥି ହୋଇ ବସ ।

ଦେଖ ମୋହର ଦୁଇ ବାହୁଙ୍କର ଠାଣ
କୁରୁଙ୍କର ସଙ୍ଗରେ କରିବି ମୁଁ ରଣ ।
କ୍ଷତ୍ରିୟ କୁଳେ ଜନ୍ମ ପାଇ ମରଣକୁ
ଡ଼ରୁଅଛୁ କମ୍ପାଇଁ ଛାଡ଼ିଣ ଲଜ୍ଜାକୁ ।
ଯନ୍ତ୍ର କରି ଯନ୍ତା ହୋଇ ତୁ ମୋର ରଥେ
ଥାଅ କୁରୁମାନଙ୍କୁ ମାରୁଛି ମୁଁ ମୁଥେ ।
ଏରୂପେ କହି ତା ବାଳକୁ କରେ ଧରି
ଲେଉଟିଲେ ଯେ ଅରଜୁନ ସିଂହପରି ।
ଉତ୍ତର ରଥବର ଉପରେ ବସିଲେ
କିଛି ଭୟ ନ ପାଅ ବୋଲିଣ ଭାଷିଲେ
ଶମିଗଛ ପାଖକୁ ବୋଲି ରଥ ବାହି
ନେଲେକ ଅରଜୁନ ଅତି ଉଗ୍ର ହୋଇ
ଭୀଷ୍ମ ଦ୍ରୋଣ ଆଦି ଯେତେକ ରଥୀ ଥିଲେ
ଅର୍ଜ୍ଜୁନ ବୋଲି ଜାଣି ସମସ୍ତେ ଡ଼ରିଲେ
ସେହିକାଳରେ ଜାତ ହେଲା ଉତପାତ
କୁରୁ ସେନାଯାକ ତ ହୋଇବାକୁ ହତ ।
ପ୍ରତି କୁଳ ହୋଇ ବହିଣ ଆସେ ବାତ
ଧୂଳିରେ ଘୋଡ଼ାଇଲା ସବୁଙ୍କର ନେତ୍ର ।
ରୁଧିର କୁଳେ ମେଘେ ଖପର ବର୍ଷିଲେ
ଧରଣିର କୁଳେ ଧରଣୀ କମ୍ପିଲେ ।
ବଳାକାରେ ଖାପରୁ ଖଣ୍ଡାଏ ବାହାରି
ଦେଲେ ସୈନ୍ୟଜନଙ୍କ ଜନମାନ ଡରି ।
ଘୋଡ଼ା ହାଥୀ ତ ମଳ ମୂତ୍ରକୁ ଉତ୍ସର୍ଗି
ପଳାଇଲେ ପଛକୁ ମୁଖକରି ବେଗି ।
ସୂର୍ଯ୍ୟମଣ୍ଡଳକୁ ଯେ ବୃହିଣ ବାଲୁଆ
ବୋବାଇଲେ ଆସେ ହୋଇଣ ହୁଆହୁଆ ।
ଏହା ଦେଖିଣ କାଳଜ୍ଞତା ଦ୍ରୋଣଦ୍ୱିଜ
ବୋଇଲେ କରେ ଧନୁ ଧରି କର ସଜ ।
କୁରୁମାନଙ୍କର ନାଶକୁ ଉପସ୍ଥିତ
ହୋଇଲାଟି ଆସିଏ ମହା ଉତପାତ ।
ବ୍ୟୂହକରିଣ ସେନା ରଥୀଏ ପାଳନା
କରନ୍ତୁ ଗାଈକୁଳେ ନୋହିଣ ବିମନା ।
ଅର୍ଜ୍ଜୁନ ଆସୁଛି ଜାଣୁଛି ମୁଁ ଯୁଦ୍ଧକୁ
କେହି ଆମ୍ଭେ ସରି ନୋହିବଟି ତାହାକୁ ।
ବନପୁର ଲୋକେ ହୋଇବ ଯେବେ ଗୋଟି
ତେବେ ଯୁଦ୍ଧ ନ କଲେ ନ ଯିବ କଷଟୀ ।

ଦୁର୍ଯ୍ୟୋଧନ ତାଙ୍କୁ ଦେଇଛି ପରାଭବ
ଆଜ ଯୁଦ୍ଧେ ବ୍ୟଥା କରିବ ଅନୁଭବ ।
ପୁଣି ତ ଇନ୍ଦ୍ରଠାରୁ ଅସ୍ତ୍ର ସେ ପାଇଛି
ତାକୁ ଜିଣିବ ଆଜ ଉପ୍ରୋଧ ମୁରୁଛି ।
ମହାଦେବଙ୍କୁ ଯେ ତୋଷିଲା କରି ଯୁଦ୍ଧ
ତାକୁ କି ଶ୍ରମ ହେବ କୁରୁକୁଳ ବଧ ।
କର୍ଣ୍ଣ ବୋଇଲେ ଆହେ ଦୁର୍ଯ୍ୟୋଧନ କେତ
ଥାଇଣ ପାଣ୍ଡବଙ୍କୁ ଟେକୁଥାଅ ନିତ ।
ଦୁର୍ଯ୍ୟୋଧନଙ୍କ ଷୋଳକଳାର କଳାକୁ
ନ ଆସେ ଅର୍ଜ୍ଜୁନ ଉପମା କରିବାକୁ ।
ଦୁର୍ଯ୍ୟୋଧନ ବୋଇଲେ ପାର୍ଥ ଯେବେ ଏହି
ଭଲ ହେଲା ତ ଆହେ ଅଙ୍ଗନରସାଇଁ ।
ଅଜ୍ଞାତବାସ ତାଙ୍କ ହୋଇ ନାହିଁ ଶେଷ
ପୁଣି ବାରବର୍ଷ କରିବେ ବନବାସ ।
ଅର୍ଜ୍ଜୁନରୁ ଯେତେକଟି ଆନ ହୋଇଥିବ
ତେବେ ଆମ୍ଭ ହାତେ ଏକ୍ଷଣି ପ୍ରାଣ ଦେବ ।
ଏହା ଶୁଣିଣ ଭୀଷ୍ମ ଦ୍ରୋଣ ଅଶ୍ୱତ୍ଥାମା
କୃପ ଆଦି ଟେକିଲେ ଅର୍ଜ୍ଜୁନ ମହିମା ।
ଅରଜୁନ ରଥକୁ ବାହି ଏହିକାଳେ
ରଖିଦେଲେ ନେଇଣ ଶମିଗଛତଳେ ।
ଉତ୍ତରକୁ ବୋଇଲେ ଶମିଗଛେ ଉଠ
ରଥରେ ବସି କମ୍ପା କରୁଅଛ ମଠ ।
ଧନୁମାନେ ଏଥିରେ ଥୁଆ ହୋଇଛନ୍ତି
ବେଗେ ସେ ଧନୁ ଆଣିଦିଅ ମୋର ହାତ ।
ତୁମ୍ଭର ତ ଧନୁଟି ଅଟଇ ଦୁର୍ବଳ
ଏଥିରେ ମରି ନକି ଯିବ ହାଣିକୁଳ ।
ଏ ଗଛରେ ପାଣ୍ଡବ ପାଞ୍ଚଙ୍କର ଧନୁ
କବଚ ଶର କୁଳେ ଅଛି ରାଜସୁନୁ
ଅର୍ଜ୍ଜୁନଙ୍କ ଧନୁ ଗାଣ୍ଡିବ ଏଥି ଅଛି
ଲକ୍ଷେ ଧନୁ ବଳ ସେ ଧନୁଟି ବହୁଛି ।
ତାଳଗଛ ତାହାକୁ ଉଚେ ହେବ ମାତ
ଅର୍ଜ୍ଜୁନ ବିନା ନାହିଁ ଧରିବାକୁ ମଞ୍ଚ ।
ସବୁ ଆୟୁଧରେ ପ୍ରଧାନ ସେ ଅଟଇ
ପିଠିଯାକ ହୋଇଛି କୁନ୍ଦା ସୁନା ଗୁଇ ।
ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ବରୁଣଙ୍କର କାଣ୍ଡ
ବାଜିଲେ ସେ ଧନୁରେ ହୁଅନ୍ତି ଦୁଇଖଣ୍ଡ ।

ଉତ୍ତର ବୋଇଲେ ହେ ଶୁଣ ବୃହନ୍ନଳେ
ଶୁଣିଛୁ ସବୁରି ମୁଖରୁ ପୂର୍ବକାଳେ ।
ମଡ଼ାଟାଏ ବନ୍ଧା ହୋଇ ଏ ବୃକ୍ଷରେ
ଶୁଖି ରହିଥିଲା ତାହା କାକର ଖରାରେ ।
ରାଜପୁତ୍ର ହୋଇଣ କି ରୂପରେ ମୁହିଁ
ମଡାଥିବା ବୃକ୍ଷରେ ଚଢ଼ିବିଟି ଯାଇଁ ।
ଛୁଇଁଲେ ଶବ ମୋର ଦେହ ତ ଅଶୁଦ୍ଧ
ହେବ ମୋତେ ଛୁଇଁ କରିବ କେହ୍ନେ ଯୁଦ୍ଧ
ବୃହନ୍ନଳା ବୋଇଲେ ନରଦେବପୁତ୍ର
ଛୁଚ୍ଛା କମ୍ପା ଭୟରେ କମ୍ପାଉଛ ଗାତ୍ର ।
କେଉଁକାଳେ ଏ ଗଛ ବନ୍ଧିଥିଲା ଶବ
ଏଥିପାଇଁକି କମ୍ପା ଏବେ ଦୋଷ ହେବ ।
ତୁମ୍ଭର ଅନ୍ନଖାଇ ତୁମ୍ଭଙ୍କୁ ଅଧର୍ମ
କାହିଁକି ହରାଇବି ମୁହିଁ ଛାଡ଼ି ଧର୍ମ ।
ବୃହନ୍ନଳାଠାରୁ ଏହି ବଚନ ଶୁଣି
ବିରାଟଙ୍କ ପୁତ୍ର ଉତ୍ତରକୁ ଜେନାମଣି ।
ଶମିଗଛର ଉପରି ଚଢ଼ିଗଲେ
ସେ ଗଛଡାଳଶିଖ ଧରିଣ ବସିଲେ ।
ବୃହନ୍ନଳା ବୋଇଲେ କାଟି ବଉଡ଼କ
ଆଣ ଧନୁ ବିଳମ୍ବ କରୁଛ କାହିଁକି ।
ଉତ୍ତର ବୋଲେ ବୃହନ୍ନଳା ବନ୍ଧା ରଜ
କାଟି ଦେଇକରି ଦେଖିଲେ ଧନୁ ମଞ୍ଜୁ ।
କାଞ୍ଚଗୁଡ଼ଥିବା ପାଞ୍ଚୋଟି ସୁନାନାଗ
ପ୍ରାୟେ ଦିଶୁଛୁ ସେ ଧନୁଙ୍କ ପୃଷ୍ଠଭାଗ ।
ମଧ୍ୟାହ୍ନସୂର୍ଯ୍ୟ ପରି ଦିଶେ ତେଜରାଶି
ତା ନ ସହି ଉତ୍ତର ଦେଲେ ଆଖି ବୁଜି ।
ବୋଇଲେ ଯହିଁ ଅଛୁ ସ୍ୱର୍ଣ୍ଣ ବିନ୍ଦୁମାଳା
ଏ ଧନୁ କାହାର ହେ କହ ବୃହନ୍ନଳା ।
ଯା ପିଠିରେ ପଡ଼ିଛୁ ସୁନାର ଧାରଣା
ଏ କାହା ଧନୁ ସତ କହ ନୋହି ବଣା ।
ଷାଠିଏ ସୁନା ଇନ୍ଦ୍ରଗୋପକ ଅଛନ୍ତି
ଏ କାହାଧନୁ ମୋତେ କହି ତୋଷ ମତି ।
ସୁବର୍ଣ୍ଣ ସୂର୍ଯ୍ୟ ଯାହା ପୃଷ୍ଠରେ ଲଗିଛୁ
ଏ କାହା ଧନୁ କହ ନାହିଁଆକୁଳବହ୍ନି ।
ସୁବର୍ଣ୍ଣର ସଲଭେ ହୋଇଛି ସୁଲଭ
ଏ କାହା ଧନ କହ ସୂର୍ଯ୍ୟଙ୍କ ସନ୍ନିଭ ।

ସୁବର୍ଣ୍ଣପୁଂଖ ଶରେ ସୁବର୍ଣ୍ଣତୂଣରେ
ଅଛନ୍ତି ଏ କାହାର କହ ମୋ ଆଗରେ ।
ବିପାଠ ସୁପୁଙ୍ଖଶରେ ହୋଇ ଯୁତ
କାହା ତୂଣ ରହିଛି କହ ମୋ ଅଗ୍ରତ ।
ପାଞ୍ଚୋଟା ବାଘ ଲେଖା ବରାହକର୍ଣ୍ଣେ ଯୁତ
ହୋଇଛି ଏ ତୂଣୀର କାହାର କହତ ।
ସାତଶ କାଣ୍ଡ ଥାଇ କାହାର ତୂଣିର ।
ଥୁଆ ହୋଇଛି କହ ତାହା ତାପ୍ରସ୍ଥିର ।
ଶୁକପକ୍ଷୀଲଗା ଶରମାନଙ୍କୁ ବହି
କହ କାହା ତୂଣ ଏ ନିଏ ମନ ମୋହି ।
ବାଘଚମ ଛୁଆଁ ଏ ସୁନାମୁଠି ଲଗା
କହ କାହା ଖଣ୍ଡା ଏ ରହିଛି ଅଲଗା ।
ସୁନାମୁଠି ଥାଇଟି ଶହ ଖାପୁଟିରେ
ରହିଛି କା'ର ଖଣ୍ଡା କହ ମୋ ଆଗରେ
ଗାଈଛାଲଖାପ ହୋଇଣ କାର ଖଣ୍ଡା
ରହିଛି କହ ମତେ ବୃହନ୍ନଳା ଭେଣ୍ଡା ।
ସିଂହଛାଲ ଖାପେ ରହିଛି କା ଖଣ୍ଡାଟି
କହ ତ ଛାଡ଼ି କରି ହୃଦରୁ ମାୟାଟି ।
ସୁନାଖାପେ ଅଗ୍ନି ପରାୟେ ତେଜ ବହି
କହ କାହାର ଏହି ଖଣ୍ଡାଟି ଦିଶଇ ।
ବୃହନ୍ନଳା ବୋଇଲେ ଆଗ ଯା ଦେଖିଲ
ଗାଣ୍ଡିବ ଧନୁ ସେଟି ଅଟେ ଅତି ଭଲ ।
ସେହି ଧନୁ ଧରି ଟି ଅରଜୁନ ରଣେ
ମହାବୀର ମାନଙ୍କୁ ଜିଣିଲେ ମାର୍ଗଣେ ।
ଏ ଧନୁକୁ ସହସ୍ର ବର୍ଷ କୁଶଧାରୀ
ଉତ୍ତର କରପୁଟେ ଥିଲେ ଜାଣ ଧରି ।
ତଦନ୍ତେ ପାଞ୍ଚ ବରଷ ପ୍ରଜାପତି
ଧରି ସେହି ଧନୁ ରହିଲେ ବହି ପ୍ରୀତି ।
ଇନ୍ଦ୍ର ମଧ୍ୟ ପଞ୍ଚାଶବରଷ ଧଇଲେ ।
ଚନ୍ଦ୍ରଙ୍କୁ ପାଞ୍ଚଶତ ବର୍ଷଯାଏ ଦେଲେ ।
ତଦଅନ୍ତେ ବରୁଣ ବର୍ଷ ଶତେ ରହି
ଏ ଧନୁକୁ ଯତ୍ନରେ ଘରେ ଥିଲେ ଥୋଇ ।
ତାଙ୍କଠାରୁ ଆଣି ବରଷ ପଞ୍ଚଷଠି
ଧରିବାର ହେଲା ଅର୍ଜ୍ଜୁନ କର ମୁଠି ।
ଦେବତାମାନଙ୍କରେ ହୋଇଛି ପୂଜିତ
ପରବଳ ଗରବ କ୍ଷଣେକରେ ଚ୍ୟୁତ ।

ଇନ୍ଦ୍ରଗୋପବରନ ଧନୁ ଯୁଧିଷ୍ଠିର
କହନ୍ତି ସୁନା ମୁଣ୍ଡା ଧନୁ ଭୀମଙ୍କର ।
ସୁନାସୂର୍ଯ୍ୟ ଥିବା ଧନୁଟି ନକୁଳଙ୍କ
ଯୁଦ୍ଧେତହିଁ ଶତ୍ରୁକୁ ହଣନ୍ତି ଆତଙ୍କ ।
ଯହିଁରେ ଲଗିଅଛି ସୁନାର ସଲଭ
ସହଦେବ ଧନୁ ସେ ଅଟଇ ଦୁର୍ଲ୍ଲଭ ।
ଖୁର ପତ୍ର ଦାଢ଼ ଯେତେକ ଅଛି ଶର
ଜାଣ ହେ ଉତ୍ତର ଅଟେ ସେ ଅର୍ଜ୍ଜୁନର ।
ଚନ୍ଦ୍ରଖଣ୍ଡ ପରି ମୋଟୁଆ କାଣ୍ଡ ଯେତେ
ଅଛନ୍ତି ଭୀମଙ୍କର ବୋଲି ଘେନ ଚିତ୍ତେ ।
ହରିଦ୍ରାବର୍ଣ୍ଣ ଯେତେ ଶର ହସ୍ତଅଛି
ବହନ୍ତି ଟି ତାହା କୁନ୍ତୀଙ୍କ ସାନବସ୍ତି ।
ବାଘଚ୍ଛଲ ଛୁଆଁ ଖଣ୍ଡାଟି ଭୀମଙ୍କର
ଚିତଖାପ ଖଣ୍ଡା ବହନ୍ତି ଯୁଧିଷ୍ଠିର ।
ସିଂହଚ୍ଛଲ ଖାପେ ରହିଛି ଯେଉଁ ଖଣ୍ଡା
ଅଣ୍ଟାରେ ପିନ୍ଧିଛନ୍ତି ତା ନକୁଳ ଭେଣ୍ଡା ।
ଗାଈଚ୍ଛଲ ଖଣ୍ଡାଟି ସହଦେବ ଧରି
ଥାଆନ୍ତି ସବୁବେଳେ ବଡ଼ ଶ୍ରଦ୍ଧାକରି ।
ଉତ୍ତର ବୋଇଲେ ହେ ବୃହନ୍ନଳା ମୋତେ
କହୁଛ ଯାହା ତାହା ଘେନୁଛି ମୁଁ ଚିତ୍ତେ ।
ପାଣ୍ଡବଙ୍କ ଆୟୁଧମାନ ତ ଏମାନେ
କହ ପାଣ୍ଡୁସୁତେ ଅଛନ୍ତି କେଉଁ ସ୍ଥାନେ ।
ଦ୍ରୌପଦୀ ପାଣ୍ଡବମାନଙ୍କ ମନୋହାରୀ
ସେ କାହିଁ ରହିଛନ୍ତି କହ ସତ କରି ।
ବୃହନ୍ନଳା ବୋଇଲେ ଅଟେ ମୁଁ ଅର୍ଜ୍ଜୁନ
ଯେ କଙ୍କପଣ୍ଡା ସେ ପାଣ୍ଡୁକୁଳ ମଣ୍ଡନ ।
ବଲ୍ଲଭ ଭୀମସେନ ଗ୍ରନ୍ଥିକ ନକୁଳ
ତନ୍ତ୍ରୀପାଳ ଯେ ସହଦେବ ମହାବଳ ।
ଦ୍ରୌପଦୀ ସଇରନ୍ଧ୍ରୀ ବୋଲାଉ ଅଛନ୍ତି
ଦେଇ ତୁମ୍ଭ ମାମୁଁଙ୍କୁ ମରଣ ବିପତ୍ତି ।
ଉତ୍ତର ବୋଇଲେ ଅର୍ଜ୍ଜୁନ ଯେବେ ତୁମ୍ଭେ
କହ ତାଙ୍କର ଦଶ ନାମ ପୁଛୁଁ ଆମ୍ଭେ ।
ଅର୍ଜ୍ଜୁନ ବୋଇଲେ ଉତ୍ତରକୁମାର
କହିବା ଦଶ ନାମ ଶୁଣ ହେ ଆମ୍ଭର ।
ଅର୍ଜ୍ଜୁନ ଫାଲ୍‌ଗୁନୀ କିରୀଟୀ ବିଜୟ
କୃଷ୍ଣ ଜିଷ୍ଣୁ ଶ୍ୱେତବାହନ ଧନଞ୍ଜୟ ।
ବିଭତ୍ସ ସବ୍ୟସାଚୀ ଏ ଦଶଟି ନାମ
ବହନ୍ତି ଟି ଅର୍ଜ୍ଜୁନ ବୀରଙ୍କ ଉତ୍ତମ ।
ଉତ୍ତର ବୋଇଲେ ହେ ଏମାନଙ୍କ ଅର୍ଥ
ବୁଝାଅ ମୋତେ ଯେବେ ଅଟ ତୁମ୍ଭେ ପାର୍ଥ ।
ଅର୍ଜ୍ଜୁନ ବୋଇଲେ ଆଣିଲି ଜିଣି ଧନ
ଯେଣୁ ଧନଞ୍ଜୟ ନାମ ମୋ ତେଣୁ ଜାଣ ।
ଶତ୍ରୁକୁ ନ ଜିଣିଲେ ଆସଇ ତ ନାହିଁ
ଏଣୁ ବିଜୟ ବୋଲି ନାମ ଅଛି ବହି ।
ଶୁକଳ ଘୁରଘୋଡ଼ା ଯୋଖି ମୋ ରଥରେ
ଏଣୁ ଶ୍ୱେତବାହନ ବୋଲନ୍ତି ଯେ ନରେ ।
ପୂର୍ବଫାଲ୍‌ଗୁନୀ ମୋ ଜନମ ନକ୍ଷତ୍ର
ଏଣୁ ଫାଲ୍‌ଗୁନୀ ନାମ ମୋର ବିଦିତ ।
ବନ୍ଧାହୁଏ ମୋର ମୁଣ୍ଡରେ କିରୀଟିଟି
ଏଣୁ ବୋଲାଉଅଛି ମୋ ନାମ କିରୀଟୀ ।
ବିଭତ୍ସୁ କର୍ମ ମୁଁ ତ ନ କରେ ଶତ୍ରୁଙ୍କୁ
ଏଣୁ ଦେଲେ ବିଭତ୍ସୁ ନାମଟି ଆମ୍ଭଙ୍କୁ ।
ଦୁଇହାତେ ସମାନ ପାରଇ ମୁଁ ବିନ୍ଧି
ଏଣୁ ସବ୍ୟଶାଚୀ ନାମ ମୋ ପ୍ରସିଦ୍ଧି ।
ବରନରେ କୃଷ୍ଣ ମୁଁ କର୍ମରେ ବିଶଦ
ଏଣୁ ମୋର ନାମଟି ଅର୍ଜ୍ଜୁନ ପଦ ।
ଇନ୍ଦ୍ରଙ୍କର ପୁଅ ଇନ୍ଦ୍ରଙ୍କ ସମବଳ
ହେବାରୁ ଜିଷ୍ଣୁ ମୋତେ ବୋଲନ୍ତି ସକଳ ।
ଦେଖୁଛ ତ କଳା ହୋଇଛି ମୋର ଗାତ୍ର
ଏଣୁ କୃଷ୍ଣ ବୋଲି ବୋଲନ୍ତି ମୋତେ ତାତ ।
ଉତ୍ତର ତା ଶୁଣି ବୋଇଲେ ଧନଞ୍ଜୟ
ମୋ ନାମ ଭୂମିଞ୍ଜୟ କର ମୋତେ ପ୍ରିୟ ।
ନ ଜାଣି ଅପ୍ରାଧ କରିଛୁଁ ଯେତେ ଆମ୍ଭେ
କ୍ଷମା କର କରୁଣାସିନ୍ଧୁ ଅଟ ତୁମ୍ଭେ ।
ଏହା କହି ଅର୍ଜ୍ଜୁନ ପାଦପଦ୍ମ ଦେଶେ
ଉତ୍ତର ନମସ୍କାର କଲେ ଅତି ତୋଷେ
ପୁଣି ବୋଇଲେ ଆହେ ବୀରଙ୍କ ମଣ୍ଡନ
ଏ ରଥଟି ଯହିଁ ଯିବାକୁ ହେବ ମନ ।
ତହିଁକି ମୁଁ ବାହିବି ପାଇ ତୁମ୍ଭ ବାହା
ଦୁର୍ବିଙ୍କର ସାହା ହେ ଜାଣ ବୀର ନାହା ।
ଅର୍ଜ୍ଜୁନ ବୋଇଲେ ତୁମ୍ଭକୁ ପ୍ରୀତି ହେଲ ।
ଆଉ ଏବେ ନ ବସ ତୁମ୍ଭେ କିଛି ଭଲ ।

ତୁମ୍ଭ ଶତ୍ରୁକୁଳ ବଳର ମୂର୍ଚ୍ଛି ହାଳ
ହୋଇବ ସୁଖେ ଦେଖ ମତ୍ସ୍ୟନୃପବାଳ ।
ଧନୁ ତୂଣ ଶର ଖଣ୍ଡା ଯେ ଯେତେ ଅଛନ୍ତି
ଘେନ ଆସ ବାବୁ ତା ବେଗେ ମୋର କତି
ଅର୍ଜ୍ଜୁନ କହିବା ବଚନେ ପାଇ ବୋଧ
ଉତ୍ତର ସେ ଗଛରୁ ଆଣିଲେ ଆୟୁଧ ।
ଅରଜୁନ ବୋଇଲେ ମୋ ରଥେ ସାରଥ୍ୟ
ଉତ୍ତର କର ଛାଡ଼ି ହୃଦରୁ ଭୟପଥ ।
ମୋ ରଥେ ଥିଲେ ଘରେ ଥିଲାପରି ମନେ
କହୁଛି ଘେନଥାଅ ହୃଦେ ଅବଛିନ୍ନେ ।
ମୋ କାଣ୍ଡକୁ କଳକ ଶତ୍ରୁଙ୍କର କାଣ୍ଡ
ଛୁଇଁ ନକ ପାରିବ ଆସି ତୁମ୍ଭ ପିଣ୍ଡ ।
ଉତ୍ତର ବୋଇଲେ ହେ ଯୁଦ୍ଧକୁ ମୋ ଡ଼ର
ହେଉ ନାହିଁ ତୁମ୍ଭଙ୍କୁ ପାଇବାରୁ ବୀର ।
କେବଳ କଥାଟିଏ କରୁଅଛି ଚିନ୍ତା
ଏହା ମୋତେ ଫିଟାଇ କହ ବଳବନ୍ତା ।
କି ଦୁରିତ କରି ହୋଇଲ ନପୁଂସକ
ତୁମ୍ଭେ ତ ଅଟ ସବୁମତରେ ବିବେକ ।
ଅର୍ଜ୍ଜୁନ ବୋଇଲେ ଭାଇଙ୍କ ସତ୍ୟପାଇଁ
ରହିଥିଲଟି ବ୍ରହ୍ମଚର୍ଯ୍ୟ କରି ମୁହିଁ ।
ଏବେ ତ ଶେଷ ହେଲା ତାଙ୍କର ବରତ
ମୋହର ପ୍ରକାଶିଲା ଆସି ପୁରୁଷତ୍ୱ ।
ଉତ୍ତର ବୋଇଲେ ତରକୁଥିଲ ଯାହା
ସତ ହେଲା ସେତ ହେ ସୁଭଦ୍ରାଙ୍କ ନାହା ।
ସାରଥ୍ୟ ଗୁଣ ମୋହ ଦେହରେ ତ ଅଛି
କହ ଯେବେ ଘୋଡ଼ା ବାହିବ କୁନ୍ତିବଶି ।
ଶ୍ରୀକୃଷ୍ଣ ଦାରୁକ ଇନ୍ଦ୍ରଙ୍କ ମାତଳି
ରଥ ବାହିବାରେ ନ ଯିବେ ମୋତେ ବଳି ।
ସୁଗ୍ରୀବ ସୈନ୍ୟ-ମେଘପୁଷ୍ପ ବଳାହକ
କୃଷ୍ଣଙ୍କ ସମାନ ଏ ତୁରଘୋଡ଼ାଯାକ
ଏ ରଥ ମଧ୍ୟ ତୁଚ୍ଛ ନୁହଇ ମୋହର
ତୁମ୍ଭେ ଏକା ଏଥିକି ଅଟ ଧନୁର୍ଦ୍ଧର ।
ଏହା ଶୁଣି ଛାଡ଼ିଲେ ପାର୍ଥ ସ୍ତ୍ରୀବେଶ
ଛଟେଣି ଦୁଇକରେ ବାନ୍ଧିଲେ କରି ତୋଷ ।
ପୂର୍ବକୁ ମୁହଁ କରି ଆଗମନ କଲେ
ସବୁ ଅସ୍ତ୍ରମାନଙ୍କୁ ମନେ ସୁମରିଲେ ।

ଏହିକାଳେ ଅସ୍ତ୍ରେ ଆସିଣ ଅର୍ଜ୍ଜୁନଙ୍କୁ
ବୋଇଲେ କାହିଁପାଇଁ ଡ଼ାକିଲ ଆମ୍ଭଙ୍କୁ ।
କେଉଁ କାର୍ଯ୍ୟ ତୁମ୍ଭର ପଡ଼ିଅଛି ବୀର
କହିଲେ ତା କରିବୁଁ ବିଳମ୍ବ ନକର ।
ଅର୍ଜ୍ଜୁନ ସେ ଅସ୍ତ୍ରକୁ ହାତେ ଛୁଇଁଦେଇ
କହିଲେ ଯୁଦ୍ଧକୁ ତ ଯାଉଅଛି ମୁହିଁ ।
ଯେତେବେଳେ ଯାକୁ କରିବି ସୁମରଣା
ଆସିବ ମୋ ପାଶକୁ ନୋହି ଉଭରଣା ।
ଏହା କହି ସାରିଣ ଗାଣ୍ଡୀବ ଧନୁରେ
ଗୁଣ ଦେଇ ଅର୍ଜ୍ଜୁନ ଆମଞ୍ଚିଲେ ଥରେ ।
ସେ ସକାଶୁଁ ଅର୍ଜ୍ଜୁନ କହୁଣୀର ହାଡ଼
ଫୁଟି ଯାଇ ଶବଦ କଲା ଭଡ଼ଭଡ଼ ।
ପୁଣି ଯେ ଅରଜୁନ ଗୁଣକୁ ଟଙ୍କାରି
ଦିଅନ୍ତେ ଗରଜିଲା ଧନୁ ବଜ୍ରପରି ।
ନିର୍ଘାତ ଭୁଲେ ଉଲକା ପଡ଼ିଲା ବହୁତ
ଗିରିଶୃଙ୍ଗମାନ ହୋଇଲା ମହୀଗତ ।
ମହୀଦେବୀ ମଧ୍ୟ ସେ ଶବଦ ନ ସହି
କମ୍ପି ଗଲେଟି ଅତିଶୟେ ଆର୍ତ୍ତି ହୋଇ ।
କୁରୁମାନେ ଅର୍ଜ୍ଜୁନ ଗୁଣର ଶବଦ
ଶୁଣିଣ ଛାଡ଼ିଦେଲେ ହୃଦର ପ୍ରମୋଦ ।
ବୋଇଲେ ମେଘ ବିନା ଗୋଟିଏ ଛଡ଼କ
ମାଇଲେ କାହିଁ ଦେଖ ଶଚୀଙ୍କ ନାୟକ ।
ଉତ୍ତର ଅର୍ଜ୍ଜୁନ ମୁଖକୁ ଚାହିଁ ଚାହିଁ
ବଳେ କରିଦେଇ ବୁକୁକୁ ଦାଉ ଦାଉ ।
ବୋଇଲେ ତୁମ୍ଭେ ଏକା ରଥୁଁ ଟିକେ ଯାଇ
ମହାରଥି କୁଳକୁ ସଂହାରିବ କେହି ।
ଅର୍ଜ୍ଜୁନ ବୋଇଲେ ଉତ୍ତର କି ଡରୁଛ
ମୋ ବଳ ସରି କେହି ନାହାନ୍ତି ବସ୍ତୁର ।
ଗନ୍ଧର୍ବଙ୍କୁ ମୁହିଁ ଜିଣିଲି ଯୁଦ୍ଧେ ଏକା
ଛାଡ଼ି ଦେଇ କରଣ ହୃଦୟରୁ ଶଙ୍କା ।
ନିବାତ କବଚକୁ ମାରେ ଯେତେବେଳେ
ନ ଥିଲା ମୋ ପୃଷ୍ଠରକ୍ଷକ ତେତେବେଳେ ।
ଖାଣ୍ଡବ ବନ ପୋଡ଼ି ଇନ୍ଦ୍ରଙ୍କୁ ଜିଣିଲି
କାହାକୁ ତ ସଙ୍ଗତରେ ନେଇ ମୁଁ ନଥିଲି ।
ପାଞ୍ଚାଳୀ ସ୍ୱୟମ୍ବରେ ଦେଖିଛ ତ ତୁମ୍ଭେ
ଜିଣି ସମସ୍ତଙ୍କୁ ଆଣିଲୁ ତାଙ୍କୁ ଆମ୍ଭେ ।

ଦ୍ରୋଣ କୃଷ୍ଟ କୁଳରେ ବୃଦ୍ଧ ଆଦି ଦେବେ
ଅସ୍ତ୍ର ଦେଇଛନ୍ତି ତୋଷରେ ମୋତେ ସର୍ବେ ।
ଏ କୁରୁକୁଳ କି ଅଣ୍ଟିବେ ମୋ ବଳକୁ
ଦେଖି ଦେଖାଇବି ହେ ଏହାଙ୍କୁ କାଳକୁ ।
ବେଗେ ମୋହର ରଥ ଦଅ ତୁମ୍ଭେ ବାହ
ସୁଯୋଧନ ସମ୍ପତ୍ତି ଦେବି ମୁଁ ବଢ଼ାଇ ।
ଏହା କହି ଶମିକି କରି ପ୍ରଦକ୍ଷିଣ
ଭାଇମାନଙ୍କର ଯେ ଆୟୁଧ ଧରିଣ ।
ସିଂହଧ୍ୱଜ ଟେକି ସେ ଗଛମୂଳେ ଥୋଇ
ଉତ୍ତରକୁ ସାରଥି ରଥେ ଗଲେ ନେଇ ।
ଦଇବୀ ମାୟାକୁ ସେ ରଥେ ଯୁକ୍ତ କଲେ
ନିଜ ଧ୍ୱଜ ବାନରବରଙ୍କୁ ଧ୍ୟାଇଲେ ।
ଅଗ୍ନିଙ୍କ ପ୍ରସନ୍ନେ ଚିନ୍ତିବା ମାତ୍ରକରେ
ବାନର ଧ୍ୱଜ ହୋଇ ବସିଲା ରଥରେ ।
ସେ ରଥ ଧ୍ୱଜ ପତାକାରେ ହୋଇ ଯୁତ
ମୋହିଲା ଅର୍ଜୁନଙ୍କ ମନ ଦୁଇନେତ୍ର ।
ଅର୍ଜୁନ ସେ ରଥକୁ ପ୍ରଦକ୍ଷିଣ କରି
ଚଢ଼ିଲେ ସେକ୍ଷଣି ପର୍ବତେ ସିଂହ ପରି ।
ଶତ୍ରୁମାନଙ୍କର ଯେ ବଳ ମର୍ଦ୍ଦିବାକୁ
ଫୁଙ୍କିଲେ ଧରି ଦେବେ ଦେବାର ଶଙ୍ଖକୁ ।
ସେ ରଥ ଚାରିଘୋଡ଼ା ପବନ ପରାୟେ
କରୁଥିଲେ ଗତି ଉତ୍ତର କାଢ଼ଯାଏ ।
ଅର୍ଜୁନଙ୍କର ଶଙ୍ଖଶବଦକୁ ଡରି
ପଡ଼ିଲେ ଶୋଇ ଚାରି ଆଣ୍ଠୁମାଡ଼ି କରି ।
ଉତ୍ତର ମଧ୍ୟ ସେହି ଶଙ୍ଖରଡ଼ି ଠାଣେ
ଧରି ଘୋଡ଼ା ଜଳୁଆଳି ଝୁମିଗଲେ କ୍ଷଣେ ।
ତା ଦେଖି ଅରଜୁନ ଅଶ୍ୱରଜ୍ଜୁ ଧରି
ଉଠାଇ ବଚନ କହିଲେ ଧୀରେ କରି ।
ରଥୀ ହୋଇ ସାରଥିକର୍ମ କଲାଠାରେ
ପଡ଼ିଲ ତ ଯାଇଣ ଭୟରେ କୁଠାରେ ।
ମୂର୍ଚ୍ଛିତ କହୁଅଛୁ ଥିଲେ ମୋହଠାରେ
ନ ପଡ଼ିବ ଯୁଦ୍ଧରେ ମରଣ-ଅଠାରେ ।
ନୃପସୁତ ହୋଇଣ ଶଙ୍ଖ ଶବ୍ଦ ଭେରୀ
ଆଜି ଯାଏ ଶୁଣା ନାହିଁକି ହେ ତୁମ୍ଭର ।
ଶଙ୍ଖକୁ ଥରେ ବଜାଇଲି ମୁଁ କଷ୍ଟରେ
ଏଥିକି ଝାମଗଲ ଡରି ତୁମ୍ଭ ଚିତ୍ତେ ।

ଚାରି ଶଙ୍ଖଶବଦକୁ ତ ଏହି ଦଶା
ହେଲେ ଶତ୍ରୁମୁଖେ ପାଇବା କିନା ହସା ।
ବଜ୍ର ପରି ନିଷ୍ଠୁର ଖରଷ୍ଟ ଦ୍ରୋଣ କାଣ୍ଡ
ଗର୍ଜି ଧାଇଁଥିବେ ଆକାଶେ ହୋଇ ଝୁଣ୍ଡ ।
ତା ନ ବାଜୁ ଦେହରେ ଡରିଲେ ପିଣ୍ଡ
କାହିଁକି ଆସୁଥିଲ ଧରି ଧନୁକାଣ୍ଡ ।
ଉତ୍ତର ବୋଇଲେ ହେ ବନ୍ଧୁ ଶଙ୍ଖସ୍ୱନ
ଶୁଣୁଅଛୁ ମୋହର କର୍ଣ୍ଣ ଫାଲଗୁନ ।
ଏହା ବାହାରେ ଘୋଡ଼ା ହାତୀ ଗରଜନ
ଆମ୍ଭ ଘରପାଖରେ କରିଥାଏ ସ୍ଥାନ ।
ତୁମ୍ଭ ଶଙ୍ଖଶବଦ ଦେବଙ୍କୁ ଦୁର୍ଲ୍ଲଭ
ଏଣୁ ହୋଇଲା ମୋତେ ମୋହରହି ଲାଭ ।
ତୁମ୍ଭର ଧ୍ୱଜପରି କାହା ରଥେ ମୂର୍ତ୍ତି
ଧ୍ୱଜ ଥିବାର ତ ଆଖିରେ ଦେଖିନାହିଁ ।
ତୁମ୍ଭ ଧନୁଘୋଷ ଇନ୍ଦ୍ରଙ୍କ ବଜ୍ରଘୋଷ
ସମ ହେବା ପରି ପାଉଛି ମୋ ମାନସ ।
ଦେବତା ହେଲେ ତା ଶୁଣିଲେ ମୋହ ଯାଇ
ରହନ୍ତା ମୁଁ ତ ବଞ୍ଚିଅଛି ନରଦେହୀ ।
ମୋଠାରେ ଏ କଥା ଅଟେ କି ଚମତ୍କାର
ଜାଣ ଆହେ ଟି ଅରଜୁନ ବୀରବର ।
ଏହା ଶୁଣି ପାର୍ଥ ବୋଇଲେ ରଥ ବାହ
ଦମ୍ଭ କରିଣ ଦେଇଥାଅ ନିଜ ଦେହ ।
ଉତ୍ତର ତାଙ୍କ ବୋଲେ ବାହନ୍ତେ ରଥକୁ
ପୁଣି ଅରଜୁନ ଯେ କହିଲେ ତାହାଙ୍କୁ ।
ଭଲ କରି ବଉଡ଼ି ଧରିଥାଅ ଟିକି
ଦେଉଛି ଆଉ ଥରେ ଶଙ୍ଖକୁ ମୁଁ ଫୁଙ୍କି ।
ଉତ୍ତର ବୋଇଲେ ମୁଁ ଧୈର୍ଯ୍ୟ ହେଉ ହେଉ
ମୋହଗଲେ ଦୋଷ ନଦେବ ମୋତେ ଆଉ
ଅର୍ଜୁନ ତାହା ଶୁଣି ଉପରକୁ ମୁଖ
ଟେକ ଆଣ୍ଠେ ଫୁଙ୍କିଲେ ଦୁଇ ହାତେ ଶଙ୍ଖ
ଗାଣ୍ଡିବ ଧନୁଙ୍କର ଗୁଣକୁ ଓଟାରି
ମାଜି ଦେଲେ ତାହାକୁ ଦେଲେ ସେ ଟଙ୍କାର ।
ସେ ସକାଶୁ ମହାଶବଦ ହୋଇ ଜାତ
ପୂରିଲା ଅନ୍ତରୀକ୍ଷ ଗହନ ପର୍ବତ ।
ପୃଥିବୀଦେବୀ ଆଉ ଥରେ ଗଲେ ଥରି
ଅର୍ଜୁନ ରଥ ନେମିଘୋଷ ଭୟ କରି ।

ଉତ୍ତର କମ୍ପାଇଣ ଦେଇ ନଜ ବପୁ
ପଡ଼ଲେ ରଥେ ଥୋଇ ହୋଇଣ ଘୁନଆ ।
ଅର୍ଜ୍ଜୁନ ତାଙ୍କୁ ପୁଣି ଆଶ୍ୱାସନା କଲେ
ତୁଚ୍ଛା କେତେ ଉତ୍ତର ଡ଼ରୁଛ ବୋଇଲେ ।
ଦ୍ରୋଣ ସେହିକାଳେବୋଇଲେ କେହିମୋହେ
ନ ପଡ଼ ଅର୍ଜ୍ଜୁନ ବଜାଏ ଶଙ୍ଖ କୋହେ ।
ଆନ ଲୋକରଠାରେ ନ ସମ୍ଭବେ ଏହା
ତା ବିନା କେ ଆସିବ ହୋଇଣ ଅସାହା ।
ରଥନେମି ଯେ ଧନୁଘୋଷଟି ତାହାର
ନୋହିଲେ କମ୍ପା କମ୍ପୁ ଥାନ୍ତେ ବନଗିର ।
ନ ଯୁଝୁଁତ ଆମ୍ଭ ହୃଦୟେ ଭୟ ଜାତ
ହେଉଛୁ କି କରିବା ବିଚାର କର ତ ।
ତୁଚ୍ଛା ତ ଦିଶୁଛି ନେହକୁ ମହାରଙ୍ଗ
ଜାଣେ କରିବ ଏ କୁରୁଙ୍କ ଦେହ ସଙ୍ଗ ।
ଅସ୍ତ୍ରମାନଙ୍କର ସୂର୍ଯ୍ୟଙ୍କ ତୁଲେ ତେଜ
ହୀନ ଦିଶୁଅଛି ଭଜୁଛି ତୁଚ୍ଛା ଓଜ ।
ଧ୍ୱଜମାନଙ୍କରେ ଯେ କୁଆମାନେ ବସି
ହୁଅନ୍ତି କୋମୋଡ଼ାକାମୋଡ଼ ହୋଇରୋଷୀ
ବିଲୁଆ ସେନା ମଧ୍ୟେ ପାଡ଼ୁଛନ୍ତି ଡ଼କା
ଥୁଆଇ କର୍ଣ୍ଣ ବେନି କୁହରେ ତାଟକା
ମନରୁ ଛାଡ଼ ଦେଇ କରି କଲି କାମ
ସବୁରି ଦେହେ ହୋଇଅଛି ରୋମୋଦ୍‌ଗମ
କ୍ଷତ୍ରିୟଙ୍କ ନାଶ ପାଇଁ ଏ ଉତପାତ
ମୋ ମତରେ ଆସି ହୋଇଲା ନିଶ୍ଚେ ଜାତ
କେହୁଁ କ୍ଷତ୍ରିୟ ବା ମରନ୍ତୁ ନ ମରନ୍ତୁ
ଆମ୍ଭମାନଙ୍କର ଅଟେ ଏ ମୃତ୍ୟୁ ହେତୁ ।
ଉଲ୍କା ପଡ଼ିବାରେ ହାତୀ ଘୋଡ଼ାଙ୍କର
ଅବଚ୍ଛିନ୍ନେ ଚମକ ପଡ଼ୁଛି ଶରୀର ।
ଆଜ ଅରଜୁନର ତୀକ୍ଷଣ କାଣ୍ଡମାନ
ଦେବ ଆମ୍ଭ ପିଣ୍ଡକୁ ବିଲୁଆ ଭୋଜନ ।
ଦୁର୍ଯ୍ୟୋଧନର ଜାତ ହୋଇଲାନ ବାଇ
କହିଲେ ଭଲ ତାକୁ ବୁଝିବ ସେ କେହି ।
ଅରଜୁନ କାଣ୍ଡ ଆସିଲେ ତା ପିଣ୍ଡକୁ
ଆଉ କି ଦେଖିବ ସେ ହସ୍ତିନା ଦାଣ୍ଡକୁ ।
ଗାଈଙ୍କି ପଠିଆଇଁ ହସ୍ତିନାକୁ ଦେଉ
କହ ଦୁର୍ଯ୍ୟୋଧନ ଯୁଦ୍ଧକୁ ସଜ ହେଉ ।

ପଳାଇ ଯେବେ ଯିବା ହେବ ମହାଲଜ
କେ ଜାଣୁ ଜାଣୁ ଏହା ବୋଲିବ ରେ ଆଜ
ଏହା ଶୁଣିଣ ଭୀଷ୍ମ ଦ୍ରୋଣ ସାରଦ୍ୱତ
ଏନଙ୍କି ଅନାଇଣ ଧୃତରାଷ୍ଟ୍ର ସୁତ ।
ଦୁର୍ଯ୍ୟୋଧନ ବୋଇଲେ ଗୁରୁ ଯା କହନ୍ତି
ଏହାକୁ ଶୁଣି ହସୁଅଛି ମୋର ମତି ।
ଜୁଆଖେଳା ବେଳେ ତ ବଡ ବଡ ଲୋକ
ବସ ତ ଶୁଣୁଅଛ ଆମ୍ଭ ହୁଡ଼ଯାକ ।
ଅଜ୍ଞାତବାସଟି ତ ପୂର୍ଣ୍ଣ ହୋଇ ନାହିଁ
ଅର୍ଜ୍ଜୁନ ଆସିଛି ଯୁଦ୍ଧକୁ କମ୍ପା ଧାଇଁ ।
ଯେବେ ଯୁଧିଷ୍ଠିର ଅଟନ୍ତି ସତ୍ୟଶୀଳ
ତେବେ ରହିବାର ବନରେ ହେଲା ମୂଳ ।
ଆହେ ଭୀଷ୍ମ ମୋହର ହୁଡ଼ କା ହେଉଛି
ବୁଝ ତେରବର୍ଷ ସରିଛି କି ରହିଛି ।
ଆମ୍ଭସେନା ଯାକରେ ପ୍ରୌଢ ଅଟ ତୁମ୍ଭେ
ତୁମ୍ଭ ବିନା କାହାକୁ ପୁଚ୍ଛିବୁ ହେ ଆମ୍ଭେ ।
ଆହେ ଦ୍ରୋଣ ତୁମ୍ଭେ କୁରୁଙ୍କ ଗୁରୁହୋଇ
ଅରଜୁନଙ୍କୁ ଡ଼ରୁଅଛ କାହିଁପାଇଁ ।
ତ୍ରିଗର୍ତ୍ତମାନେ ମତ୍ସ୍ୟ ନୃପତି ଭୟରେ
ପଳାଇ ରହିଥିଲେ ଆମ୍ଭର ଦେଶରେ ।
ଏହାଙ୍କ ହିତ ପାଇଁ ସିନା ଏ ଦେଶକୁ ।
ଆସିଲଇଁ ଯେ ଗାଈମାନଙ୍କୁ ନେବାକୁ ।
ସୁଶର୍ମା ତ ତ୍ରିଗର୍ତ୍ତଙ୍କୁ ସଙ୍ଗତେ ଘେନ
ଆସି ବେଢ଼ିଥିବେ ବିରାଟରାଜଧାନୀ ।
ନୋହିଲେ କାହାର ସେ ବିରାଟକୁ ଗଲେ
ଏହା ଅମ୍ଭେ ଜାଣି ନ ଥାଇଁ କଛେ ଭଲେ ।
ଏବେ ସେ ମତ୍ସ୍ୟଦେଶୁ ରଥୀ ଜଣେ ଆସି
ଅଛ ଯୁଝିବାକୁ ଭଜୁଛ କମ୍ପା ବସି ।
ନୋହିଲେ ବା ଅର୍ଜ୍ଜୁନ ଧରି ବିରାଟଙ୍କୁ
ଆସିଛି ହୃଦେ ମୋଟ କରିଣ ରାଗକୁ ।
ଆମ୍ଭେ ତ କରିଥାଇଁ ପୂର୍ବକାଳୁ ଇଚ୍ଛା
ଯୁଦ୍ଧ କଲେ ମାରିବା ପାଣ୍ଡୁଙ୍କର ବତ୍ସା ।
ଆଛା ହେଲା ଅର୍ଜ୍ଜୁନ ଏକା ହୋଇ ଯେବେ
ଆସିଲେ ଯୁଦ୍ଧେ ଆମ୍ଭ ହାତେ ପ୍ରାଣଦେବେ
ବିରାଟ ଯେବେ ହୋଇଥିବେ କାଣ୍ଡ ଆଣି
ଆମ୍ଭର ପାଇଲେ ସେ ନ ପାଇଲେ ବାଟ ।

ଭୀଷ୍ମ ଦ୍ରୋଣ ବିକର୍ଣ୍ଣ ଦ୍ରୌଣି ସାରହତ
କରନ୍ତୁ ଏବେ ଧନୁମାନଙ୍କୁ ଉଦ୍ୟତ ।
ଯୁଦ୍ଧରେ ମଲେ ସ୍ୱର୍ଗ କ୍ଷତ୍ରିୟଙ୍କ ହୋଏ
ଏହା ଜାଣି କମ୍ପା ତ୍ୟଜୁଛନ୍ତି କାୟେ ।
ଇନ୍ଦ୍ର ପରି ଲୋକ କରିବ ଯେବେ ଆଜ
ଆମ୍ଭ ସଙ୍ଗେ ଯମ ପୋଛିବ ତା'ର ପାଞ୍ଜି ।
ଆହେ କୁରୁମାନେ ଗୁରୁଙ୍କୁ ନ ଡରି
ଯୁଝିବା ଉଦ୍ୟମକୁ କର ନ ବିସ୍ମରି ।
ଅର୍ଜୁନଙ୍କଠାରେ ତ ବଳନ୍ତି ସେନେହ
ଏଣୁ ଗୁରୁ ତୁମ୍ଭଙ୍କୁ କରୁଛନ୍ତି ମୋହ ।
ଯେବେ ଅରଜୁନରେ ନଥାନ୍ତା ତାଙ୍କ ପ୍ରୀତି
ତେବେ ଆମ୍ଭଙ୍କୁ କି କରନ୍ତେ ଏ ଉକତି ।
ଆମ୍ଭର ଯୋଦ୍ଧମାନେ ହେବାରୁ ଯୁଦ୍ଧକାଳ
ଗରଜୁଛନ୍ତି ସିନା ହୋଇ ଅବିକଳ ।
ତର୍କିକ ଦେଖୁଛ ତ ଭରଦ୍ୱାଜ ବାଳ
ପ୍ରଶଂସୁଛନ୍ତି କେତେ ଅରଜୁନଙ୍କ ବଳ ।
ବରଷା କରି ଯେବେ ବହଇଟି ବାତ
ଦ୍ରୋଣ ବିନା ଏହା କେ ବୋଲିବ ଉତ୍ପାତ
ଏହି ସକାଶରୁ ମୁଁ କହୁଛି ତୁମ୍ଭଙ୍କୁ
ଗୁରୁଙ୍କୁ ନ ପୁଚ୍ଛିବ ଯୁଦ୍ଧର କଥାକୁ ।
ସମରେ କଥା ପଡ଼ିଥିଲେ ଗୁରୁ କୋପ
କରି କହିବାକୁ ଆସନ୍ତି ଘଟାଟୋପ ।
ଏ ତ କଥାବାର୍ତ୍ତାର କାଳ ହୋଇନାହିଁ
ଦ୍ରୋଣେ ପୁଚ୍ଛିବାକୁ ନ ଯାଅ କେହି ଧାଇଁ
ତାଙ୍କୁ ପଠିଆଇ ସେନାର ପାଳନା
କରନ୍ତୁ ଯେତେ ମୋର ଛନ୍ତି ମହାବନା ।
କର୍ଣ୍ଣ ବୋଇଲେ ଆହେ ଦୁର୍ଯ୍ୟୋଧନ ଶୁଣ
ତୁମ୍ଭର ସେନାଯାକ ଡରୁଛନ୍ତି ଜାଣ ।
ବେଳା ଯେଉଁରୂପେ ରଖିଛି ସମୁଦ୍ରକୁ
ସେରୂପେ ରଖିବି ଯୁଦ୍ଧେ ମୁଁ ଅରଜୁନଙ୍କୁ ।
ମୋ କୋଦଣ୍ଡ କାଣ୍ଡ ଅଟନ୍ତି ଆଶୀବିଷ
ଅରଜୁନର ପିଣ୍ଡକୁ କରନ୍ତୁ ଆଜ ଗ୍ରାସ ।
ଅରଜୁନ-ଅଗ୍ନିକି ମୋ ଶର ପବନ
ନାଶ କରିବାର ଦେଖିବେ ସବୁଜନ ।
ଆସିଛି ତ ଅରଜୁନ ଯୁଦ୍ଧଭିକ୍ଷା ପାଇଁ
ନେଉ ମୋ ଶର ଦଉ କାନ୍ଧେ ମୁଣ୍ଡେ ବହି ।

ଅରଜୁନଙ୍କୁ ସର୍ବେ ବୋଲନ୍ତି ଧନୁର୍ଦ୍ଧର
ଆଜ ତାର ମୋହର ଦେଖନ୍ତୁ ସମର ।
ମୋ ଧନୁ ଘରରୁ ବାହାରି ଶରଧାର
ଧୋଆଇ ଦେଇ ଅରଜୁନ ଶିର ତୋର ।
ପୂର୍ବରୁ ତ ପ୍ରତିଜ୍ଞା କରିଛି ବହୁତ
କରିବାକୁ ଯୁଦ୍ଧରେ ଅର୍ଜ୍ଜୁନଙ୍କୁ ହତ ।
ଆଜ ତେବେ ଦଇବେ ପଡ଼ିଲା ମୋ ଭାଗେ
ପେଷିବି ଯୁଦ୍ଧରେ ମୁଁ ଯମପୁରେ ବେଗେ ।
ଇନ୍ଦ୍ରବଜ୍ର ପରି ମୋହର କାଣ୍ଡେ ଖଣ୍ଡେ
ବାହାରିବେ ଗର୍ଜ୍ଜି ଦେଖିବ ଯୁଦ୍ଧଦାଣ୍ଡେ ।
ଯେରୂପେ ଦେହ ହୋଏ ଲାଗି ଦରପୋଡ଼ା
ସେରୂପେ ଅରଜୁନଙ୍କୁ ଦେବି ଶିରେ ପୀଡ଼ା
ଅରଜୁନ ତୃଣକୁ ମୋ ଶର-ଅନଳରେ
ପୋଡ଼ିଣ ପକାଇବି ଦେଖିବ ହେଳାରେ ।
ପରଶୁରାମ ଦେବା ଅସ୍ତ୍ର ମୁଁ ବିନ୍ଧିଲେ
ଇନ୍ଦ୍ରଙ୍କର ଗରବ ଭାଙ୍ଗିପାରେ ଭଲେ ।
ମୋହର ଭାଲାକାଣ୍ଡେ ମୁଣ୍ଡକୁ ଛିଣ୍ଡାଇ
ପାର୍ଥ ରଥଧ୍ୱଜବାନର ଗଡ଼ୁ ମହୀ ।
ଆଜଠି ଦୁର୍ଯ୍ୟୋଧନ ହୋଇଣ ସନ୍ତୋଷ
ପାଳନ୍ତୁ ସୁଖେ ବସିଣ ହସ୍ତିନା ଦେଶ ।
କୁରୁରଥୀମାନେ ଫୁଲାଇଦେଇ ଗଣ୍ଡି
ଦେଖନ୍ତୁ ଅରଜୁନର ମୋର ଯୁଦ୍ଧ ଖଣ୍ଡି ।
କୃପ ବୋଇଲେ ଆହେ ଅଧିରଥସୁତ
କହୁଛ ଏତେ ଗର୍ବ ବହି କମ୍ପା ଚିତ୍ତ ।
କ୍ଷତ୍ରିୟକୁଳେ ଜାତ ହୋଇଥାନ୍ତ ଯେବେ
କଲେ ଅବା ଗରବ ମାନନ୍ତା ଟି ତେବେ ।
ବୁଦ୍ଧି ମଧ୍ୟ ତୁମ୍ଭର ଅଟଇ ଚଞ୍ଚଳ
ଏଣୁ ଟି କହୁଅଛ ଆପଣାର ବଳ ।
ନୀତିଶାସ୍ତ୍ରେ ଅଛି ବହିଲେ ଲୋକ ମୋହ
ଆଗ ଯାଇ କରିଣ କରଇ କଳହ ।
ସାମଦାନ ଭେଦରୁ ବଳିବ ଯେ କଥା
ତେବେ ଯୁଦ୍ଧ କରିବ ଛାଡ଼ି ହୃଦ ବ୍ୟଥା ।
ଦେଶ କାଳ ଜାଣିବ ଯୁଦ୍ଧ ଯେ କରଇ
କହୁଥାଇ ବିଜୟ ଅବଶ୍ୟ ଲଭଇ ।
କାଳକୁ ବୁଝିକରି କର ହେ ବିସ୍ତର
ଏରୂପେ ଯୁଝିବାର ଅଟେ ଅବସର ।

ଧର୍ମକୁ ଜଗି ସାମରଥ୍ୟ ଦେଖାଇଲେ
ଧର୍ମ ତା'ର ସାମର୍ଥ୍ୟ ବଢ଼ାଏଟି ଭଲେ ।
ଏକା ଅରଜୁନ ଯେ ତିନଲୋକ ଯାକ
ଗୋଟିଏ ହେଲେ ମାରବ ବନ୍ଧ ସେ ଶାସ୍ତ୍ରକ
ଏକା ହୋଇ ଖାଣ୍ଡବ ବନକୁ ପୋଡ଼ିଲେ
ମସବାଦ ଦେବମାନଙ୍କୁ ଘଉଡ଼ିଲେ ।
ଏକା ରଥକରେ କୃଷ୍ଣଙ୍କ ଭଗିନୀକ
ଆଣିଲେ ଦ୍ୱାରକାରୁ ବିବାହ ପାଇଁକ ।
କିରାତରୂପୀ ଶିବଙ୍କର ସଙ୍ଗେ ଯୁଝି
ଶିଖିଲେ ଅସ୍ତ୍ର ତାହାଙ୍କର ବଳ ବୁଝି ।
ଜୟଦ୍ରଥ ସେ ଦ୍ରୌପଦୀଙ୍କି ଘେନିଗଲା
ପରାଭବ ପାଇ ଯୁଦ୍ଧରୁ ପଳାଇଲା ।
ଦେବଙ୍କ ଅସ୍ତ୍ରଯାକ ସ୍ୱର୍ଗପୁରେ ଥାଇ
ଶିକ୍ଷା କରିଛନ୍ତି ଶତ୍ରୁଙ୍କ ହତପାଇଁ ।
ଚିତ୍ରସେନ ଗନ୍ଧର୍ବଙ୍କୁ ସେ ଜିଣି ରଣେ
ଆଣିଲେ ଦୁର୍ଯ୍ୟୋଧନ ରାଜାଙ୍କୁ ଆପଣେ ।
ନିବାତକବଚଙ୍କ ଭୁଲେ କରି ଆଜ
ପୁରାଇଲେ ଯମଙ୍କ ହାତେ ତାଙ୍କ ପାଞ୍ଜି ।
କାଳକେୟମାନେ ଅତ୍ୟନ୍ତ ସାମରଥ
ତାହାଙ୍କୁ ବସାଇଲେ ଜଗୁନାଥ ସାଥ ।
ରାଜାମାନଙ୍କର ସେ ଗରବ ଗଞ୍ଜିଲେ
ଧନ ଆଣିଣ ମିତ୍ରମାନଙ୍କୁ ରଞ୍ଜିଲେ ।
ଅରଜୁନଟି ଏହିରୂପେ ଏକା ହୋଇ
ବହୁତ କର୍ମ କରିଛନ୍ତି ଶୁଣି ଥାଇ ।
ତୁମ୍ଭେ କହ କାହାକୁ ଏକା ହୋଇ ରଣେ
ଜିଣିଅଛଟି ତାହା ଶୁଣୁ ଆମ୍ଭେମାନେ ।
ପଛେ ଅରଜୁନଙ୍କୁ କରିବ ଯାଇଁ ଯୁଦ୍ଧ
ଦୁର୍ଯ୍ୟୋଧନଙ୍କର ବଢାଇବାକୁ ସାଧ ।
ବୃଦ୍ଧ ହୋଇଣ ଥିବା ଆଶୀବିଷମୁଖେ
ହାତକୁ ନ ପୁରାଅ ପଡ଼ିବଟି ଦୁଃଖେ ।
ମରିବା କଥା କିମ୍ପା କରୁଅଛ ଚିନ୍ତା
କହ ତ ମୋତେ ହାତ ଲାଗିଲା କି ପିତା ।
କଡ଼ଆର ନ ଥାଇ ଘୋଡ଼ା ଚଢ଼ି କରି
ଧାଇଁବାକୁ କିମ୍ପା ଅଛ ଇଚ୍ଛା କରି ।
ଜଳୁଥିବା ଅଗ୍ନିରେ କରିଣ ସାହସ
କିମ୍ପାଇଁ ଖୋଜୁଛ ଦେବାକୁ ଦେହ ଝାସ ।

ପଥର ବାନ୍ଧିଣ ସମୁଦ୍ର ତରିବାକୁ
ବଳାଉଅଛ ବସି ତୁଚ୍ଛା ସାହସକୁ ।
ମୃଗ ହୋଇଣ ସିଂହ ସଙ୍ଗତେ ଲଢ଼ାଇ
କରିବାକୁ କିମ୍ପା ହେ କରୁଛ ବଡ଼ାଇ ।
ବନବାସ ଦୁଃଖକୁ ମନରେ ଚିତାଇ
ଆମ୍ଭଙ୍କୁ ମାରିବେ ଓପ୍ରଧ ଗୁଡ଼ିଦେଇ ।
ଭସ୍ମାଛନ୍ନ ଅନଳ ପରାଏ ଅରଜୁନ
ରହିଛି ଯୁଝିଗଲେ ନେବ ଜୀବନ ।
ଘେନ କରିଣ ଆମ୍ଭେ ସୈନ୍ୟ ସଖା ସାଥୀ
ଯୁଝିବା ଅରଜୁନଙ୍କ ଆଜ ଷଡରଥୀ ।
ଏକା ହୋଇ ଯାହା ବୋଲୁଛ ଯୁଝିବାକୁ
ଏ କଥା କେବେ ନ ପାଉଛି ମୋ ମନକୁ ।
ଦ୍ରୋଣ ଦୁର୍ଯ୍ୟୋଧନ ରାଜନ ତୁମ୍ଭେ ଆମ୍ଭେ
ଭୀଷ୍ମ ଅଶ୍ୱତ୍ଥାମା ଏ ଷଡରଥି ଦମ୍ଭେ ।
ରହି ଯୁଦ୍ଧ କରିବାକୁ ଅରଜୁନଙ୍କୁ
କଷ୍ଟ ହେବା ପରି ଆସୁଛି ମୋ ମନକୁ ।
ଯେରୂପେ ସୁର ଅସୁରଙ୍କ ହୁଏ ଯୁଦ୍ଧ
ସେହିରୂପେଟି ଆମ୍ଭେ ଯୁଝିବା ବହିକୋଧ ।
ଅଶ୍ୱତ୍ଥାମା ବୋଲେ ହେଲ କି କର୍ଣ୍ଣ ବାଇ
ରାଜା ଆଗେ ଗୁଡ଼େ କହୁଛ କାହିଁପାଇଁ ।
ସେ ତ ତୁମ୍ଭ କଥାକୁ ହୋଇଣ ସରଞ୍ଜ
ଶୁଣୁଅଛି ତୁମ୍ଭେ କହୁଛ ତେଣୁ ଭାଷି ।
ଯୁଦ୍ଧରେ ଜିଣି କରି ବୀର ଅର୍ଜୁନଙ୍କୁ
ଗାଈ ତ ନେଇଯାଇ ନାହଁ ହସ୍ତିନାକୁ ।
ଯୁଦ୍ଧରେ ତ କିଛି ହେ ପାଇନାହଁ ଯଶ
ଦୁଇ ହାତେ କେତେ ମୋଡ଼ୁ ଯେ ଅଛ ନିଶ
ମୁଣ୍ଡ କାଟିବାରେ ରକତସଞ୍ଚା ପଡ଼ି
ଦେହଲୁଗା ତୁମ୍ଭର ଯାଇନାହିଁ ବୁଡ଼ି ।
କେଉଁ ଲୋକ ଯୁଦ୍ଧରେ କରିଥାଏ ଯଶ
ସେରୂପେ ବହିଲେ ପାଏ ଉପହାସ ।
ଦେଖ ହେ ସୂର୍ଯ୍ୟଦେବ କାହାକୁ ନ କହି
ପ୍ରକାଶ କରୁଛନ୍ତି ଗିରି ବନ ମହୀ ।
ଅଗ୍ନି ସେହିରୂପରେ ଥାଇଣ ଆଚ୍ଛନ୍ନେ
ଯେ ଲଗାଇ ତାହାକୁ ଦହନ୍ତି ବହନେ ।
ମହୀ ଦେଖ ଲୋକମାନଙ୍କୁ ଧରିଛନ୍ତି
ମୁଁ ଏହା କଲି ବୋଲି କେବେ କି କହନ୍ତି ।

ଚାରି ବର୍ଣ୍ଣଯାକରେ ଯା'ର ଯେଉଁ କର୍ମ
ତାହା କି ଶୁଣ ଆହେ କର୍ଣ୍ଣ ନରବର ।
ବ୍ରାହ୍ମଣ ବେଦ ପଢ଼ି ଯାଗକୁ କରିବ
ଏହା ବାହାରେ ମଧ୍ୟ ଯାଗ କରାଇବ ।
କ୍ଷତ୍ରିୟ ଯେବେ ବଳେ ଅର୍ଜିବ ଧନ
ତେବେ ଯାଗ କରି ଦ୍ୱିଜଙ୍କୁ ଦେବ ଦାନ ।
ବୈଶ୍ୟର ବିତ୍ତ ହେଲେ ବ୍ରାହ୍ମଣଙ୍କୁ ଦେବ
ଏହା ବାହାରେ ମଧ୍ୟ ଯାଗକୁ କରିବ ।
ଶୂଦ୍ର ତିନିବର୍ଣ୍ଣଯାକଙ୍କୁ ସେବା କରି
ତରିବ, ଆନ ଗତି ନାହିଁଟି ତାହାରି ।
ଆଜଯାଏ କ୍ଷତ୍ରିୟକୁଳେ ଜାତ ହୋଇ
ଜୁଆରେ ରାଜ୍ୟ ନେଇ କରିବ ବଡ଼ାଇ ।
ଏହା ତ ଆମ୍ଭମାନଙ୍କର ନାହିଁ ଶୁଣା
ଏରୂପେ କରୁଛ କାହିଁକି ବୁଦ୍ଧି ବଣା ।
କେଉଁଠାରେ ଯେ ଶୁଣା ନାହିଁ ତ କାହାରି ।
ଜୁଆ ବିତ୍ତ ହିତ ମଣିବ ଦଣ୍ଡଧାରୀ ।
ଦୁଇଥର ଯେ ଯୁଦ୍ଧ କରି ପାଣ୍ଡବଙ୍କୁ
ଜିଣିଛ କି ହେ ରାଜ୍ୟ କହ ତ ଆମ୍ଭଙ୍କୁ
ଦ୍ରୌପଦୀଙ୍କି ଟି ଏକା ଲୁଗାକରେ ବଳେ
ନେଇଥିଲ କହ କି ଥରେ ଏତେବେଳେ ।
ଧର୍ମପାଶେ ପାଣ୍ଡବେ ହୋଇବାରୁ ବନ୍ଧା
ତୁମ୍ଭ କଥା ଠାଣିକୁ କରିଅଛ ଫନ୍ଦା ।
ଦ୍ରୌପଦୀ ତୁମ୍ଭ ନାଶ ବୃକ୍ଷରଟି ମୂଳ
ସେ ଘେନ ନିକଟରେ ହୋଇବ ନିର୍ମୂଳ ।
ସାମର୍ଥ୍ୟକୁ ବର୍ଣ୍ଣିଣ କରୁଥିଲେ କଥା
ନିନ୍ଦାକୁ ନ ପାଏଟି ସେ ଲୋକେ ସର୍ବଥା ।
ଦ୍ରୌପଦୀଙ୍କର କ୍ଳେଶ ସହି କି ପାଣ୍ଡବେ
ରହିବେ ବୋଲି କରି ଜାଣୁଅଛ ସର୍ବେ ।
ଏବେ ଯୁଦ୍ଧ କଲେ ଦେଖିବ ଧନଞ୍ଜୟ
ତୁମ୍ଭଙ୍କୁ ମାରି ରଣେ ପାଇବ ବିଜୟ ।
ମୁଁ କହୁଛି ତାଙ୍କୁ ନ କହି କିଛି କଥା
ପୋତି ରହ ହେ ମହାରଥୀମାନେ ମଥା ।
ଦେବ ଯକ୍ଷ ଗନ୍ଧର୍ବ ଉରଗ ଅସୁର
ମରିବେ ଅର୍ଜ୍ଜୁନଙ୍କୁ କଲେଟି ସମର ।
ରହିଥିବ ଯାହାକୁ କାଳଦେବ ଘୋଟି
ସେ ଯିବ ଏକା ଅର୍ଜ୍ଜୁନକୁ ଯୁଦ୍ଧେ ଯୋଡି ।

ବିଷ୍ଣୁ ଇନ୍ଦ୍ର ସମାନ ଯାହାର ଟି ବଳ
ଜାଣୁ ଜାଣୁ ତାହାକୁ କରିବ କେ ଗୋଳ ।
ଦଇବର ଦଇବ ମନୁଷ୍ୟେ ମନୁଷ୍ୟ
ଅସ୍ତ୍ର ଅର୍ଜ୍ଜୁନଙ୍କୁ ହୋଇଅଛି ପ୍ରକାଶ ।
ମୋହଠାରୁ ଅଧିକ ଦ୍ରୋଣଙ୍କର ପ୍ରିୟ
ପାଣ୍ଡୁନୃପଙ୍କର ଯେ ମଧ୍ୟମ ତନୟ ।
ଏହି ସକାଶରୁ ତୁମ୍ଭର ପଣ ଗୁଡ଼
କହିଲେ ଦ୍ରୋଣଗୁରୁ ଯେ ଧରମ ଧାଡ଼ ।
ଯେ ରୂପେ ଜୁଆ ଖେଳ ଅର୍ଜିଛ ଅନର୍ଥ
ସେ ରୂପେ ଯୁଝି ଏବେ ଅର୍ଜ ପୁରୁଷାର୍ଥ ।
ଶକୁନି ତ ଅଟନ୍ତି କ୍ଷତ୍ରିୟର ସୂତ
ଆଜ ସହିବେ ସେ ଗାଣ୍ଡୀବ ଶରଘାତ ।
ଗାଣ୍ଡୀବ ତ ପକାଉଥିବ ବାଣଦାନ
ତା ଜାଣିଲେ ହେବ ଶକୁନି ଜୀବ ଧନ୍ୟ ।
ଗିରି ପରି ଯା ଦେହ ହୋଇଥିବ ଆଡ଼
ହେଲେ ସେ ଶର ଦେବକ୍ଷଣେ ତାକୁ ଫୋଡ଼
ଯମମୁଖୁ ପଛେ ଆସିବ ଜୀଇ ଲୋକ
ନ ଜୀଇବ ବାଜିଲେ ଅର୍ଜ୍ଜୁନ ଶାୟକ ।
ଦ୍ରୋଣ ପଛେ ଅର୍ଜ୍ଜୁନ ସଙ୍ଗତେ ଯୁଝନ୍ତୁ
ହୋଇ ତ ଛନ୍ତି ବୁଢ଼ା ପାଆନ୍ତୁ ସେ ମୃତ୍ୟୁ ।
ମୁଁ ତୁଚ୍ଛା ନ ପାରିଣି ସାହାସକୁ କଲେ
ଯମପୁରେ ସିନା ବସିବ ଯାଇଁ ଭଲେ ।
ବିରାଟ ଯେବେ ଆସୁଛନ୍ତି ରଥ ଚଢ଼ି
ମୁଁ ଯୁଝିବି ତାହାଙ୍କୁ ଶରବାଡ଼ ବେଢ଼ି ।
ଭୀଷ୍ମ ବୋଇଲେ ଆହେ ଦ୍ରୋଣ ଦ୍ରୌଣି କୃପ
ଯାହା କହିଲେ ମୋ ପ୍ରୀତି କଲେ ଅମାପ ।
କର୍ଣ୍ଣ ଯେ ଯୁଦ୍ଧପାଇଁ କରୁଛି ଗାରିମା
ଜାଣି ନାହିଁ ପରା ଏ ଅର୍ଜ୍ଜୁନ ମହିମା ।
ଯେହୁ ଜାଣିବା ଲୋକହୋଇବ ଗୁରୁଙ୍କୁ
ନ କହିବ ସେ ଅଧିକ୍ଷେପରେ ଭାଷାକୁ ।
ଦେଶ କାଳ ଜାଣିଣ ଯୁଦ୍ଧ ଯେ କରଇ
ପରାଜୟ ହେଲେ ଅଟଇ ଜୟ ସେହି ।
ପ୍ରଳୟସୂର୍ଯ୍ୟ ପରି ଅର୍ଜ୍ଜୁନର ଜ୍ୟୋତି
ରହିବ କେହୁ ସହି କହ ତ ସେ ତାତି ।
ଏବେ ମୁଁ ଯେଉଁ କଥା କହିବି ବଚନେ
ଶୁଣ ସବୁ ଜନେ ତା ବସି ସାବଧାନେ ।

କର୍ଣ୍ଣ ଯା କହିଲେ ସେ କ୍ଷତ୍ରିୟ ଗାରିମା
ତହିଁ କ୍ରୋଧ କଲା ହୁଅନ୍ତି ଅଶ୍ୱତ୍ଥାମା ।
ଅର୍ଜୁନ ତ ଆସି ଅଛନ୍ତି ଯୁଝିବାକୁ
ଏତେବେଳେ ଦେଖିବା କି କର୍ଣ୍ଣ କଥାକୁ ।
ଏଣୁ ମୋ ବୋଲ ଘେନ ଦ୍ରୋଣଙ୍କ କୁମର
କହନ୍ତୁ ସ୍ନେହକରି କର୍ଣ୍ଣଙ୍କୁ ଉତ୍ତର ।
ଦ୍ରୋଣ କୃପ ମଧ୍ୟ ନ ଘେନ ଦୁଃଖମନେ
ରହନ୍ତୁ ସୈନ୍ୟଘେନ ଯୁଦ୍ଧକୁ ସାବଧାନେ ।
ସେ ତିନିଙ୍କଠାରେ ତ ସବୁ ଅସ୍ତ୍ର ବିଦ୍ୟା
ଦେଖୁଥାଇ ପୂରିଣ ରହିଛି ସର୍ବଦା ।
ସେ ତିନିଙ୍କ ବିନା ବ୍ରାହ୍ମଣ କ୍ଷତ୍ରିୟର
ତେଜକୁ ବହି ନ ପାରଇ ଆନ ନର ।
ବ୍ରହ୍ମାସ୍ତ୍ରର ପ୍ରୟୋଗ ସଂହାର ତାହାଙ୍କୁ
ଗୋଚର ତ ଅଛି କି ଅଛି ବୋଲିବାକୁ ।
ଯୁଦ୍ଧକୁ ତ ଅର୍ଜୁନ ଆସୁଅଛି ଧାଇଁ
ଦ୍ରୋଣି କଲା ରହୁଛନ୍ତି ଭିନ ହୋଇ ।
ଘରେ ଘରେ ଯେବେ କରିବା ଆମ୍ଭେ ଗୋଳ
ପରର ସଙ୍ଗେ କରି ପାରିବ କି ଖେଳ ।
ଅଶ୍ୱତ୍ଥାମା ବୋଇଲେ ମୋର ଋଷିବର
କାଳ ହୋଇନାହିଁ ହେ ଭୀଷ୍ମ ରଥୀବର ।
ଗୁରୁ ତ ବୃଦ୍ଧ ହୋଇ ଟେକିଲେ ପାର୍ଥକୁ
ଏଥିକି କଲା କର୍ଣ୍ଣ ବହିଲ ଆମ୍ଭକୁ ।
ଶାସ୍ତ୍ର ଲେଖିଅଛି ଯେ ଗୁରୁ ଶତ୍ରୁ ଦୋଷ
ଗୁଣ ଥିଲେ ତାହାକୁ କରିବ ପ୍ରକାଶ ।
ଦ୍ରୋଣଙ୍କୁ ତ କ୍ଷମା କରଅ ତୁମ୍ଭେ ଯାଇ
ଯାଉଛି ଯୁଝିବାକୁ ପାର୍ଥକୁ ମୁଁ ଧାଇଁ ।
ଦୁର୍ଯ୍ୟୋଧନ ଶୁଣିଣ ଅଶ୍ୱତ୍ଥାମା ବାଣୀ
କହିଲେ ଦ୍ରୋଣ ଆଗେ କରିଣ ଦଣ୍ଡିମା ।
ତୁମ୍ଭେ ଗୁରୁ କ୍ରୋଧ ଘେନିଲେ ଗୁରୁ ତତ୍ତ୍ୱେ
ମରିବୁ ଆମ୍ଭେ ଜାଣ ଅର୍ଜୁନର ହସ୍ତେ ।
ଦ୍ରୋଣ ବୋଇଲେ ମୁହିଁ ଭୀଷ୍ମଙ୍କ ବଚନେ
ରହିଲଣି ମହାଶାନ୍ତିକ ଭଜି ମନେ ।
ଆହେ ଦୁର୍ଯ୍ୟୋଧନ ହୋଇଣ ସୁମନ
ରାଜ୍ୟ ଦିଅ ନୋହିଲେ କର ଆୟୋଜନ ।
ପାଣ୍ଡବଙ୍କୁ ରାଇଜ ଯାଚଦେଲେ ତୁମ୍ଭେ
ଇହଲୋକେ ପ୍ରଶଂସା ହେବ ଜାଣୁ ଆମ୍ଭେ ।

ନ ଦେଇ ଯୁଦ୍ଧକରି ଲଭିଲେ ମରଣ
ସ୍ୱର୍ଗଲୋକେ ପୂଜାକରିବେ ଶଚୀରଣ ।
ବୁଢ଼ାଟାଏ ହୋଇଣ ଥିବାରୁ ବତାଇ
କହୁଥାଇଁ ତୁମ୍ଭଙ୍କୁ ଭଲମନ୍ଦ ଦୁଇ ।
ଦୁର୍ଯ୍ୟୋଧନ ବୋଇଲେ ଯାଉ ପଛେ ପ୍ରାଣ
ଅରଜୁନ ସଙ୍ଗେ କରିବି ଆଜ ରଣ ।
ରାଜ୍ୟ ତାଙ୍କୁ ଦେଇ ନତମସ୍ତକ ହୋଇ
ଗୋଡ଼ ଧରି କହିବି ଏ ବୃତ୍ତି ମୋ ନାହିଁ ।
ଭୀଷ୍ମ ବୋଇଲେ ହେ ଏରୂପେ ଯେବେମନ
କରୁଛ କୁରୁକୁଳ କଳଙ୍କ ରାଜନ ।
ତେବେ କହୁଥାଇଁ ବଳକୁ ଚାରିଭାଗ
କରି ଅରଜୁନଙ୍କୁ ଯୁଝିବ ବହି ରାଗ ।
ଘାଇ ଘେନିଣ ତୁମ୍ଭେ ଯାଅ ହସ୍ତିନାକୁ
ଆମ୍ଭେ ଥାଇ ମରଣ ଦେବୁକି ତୁମ୍ଭଙ୍କୁ ।
ଶୁଣି ତୁମ୍ଭ ନାଶ ପୁତ୍ରର ଧୃତରାଷ୍ଟ୍ର
ମୋହଠାରେ ମନ ତ ନ କରିବେ ହୃଷ୍ଟ ।
ତୁମ୍ଭେ ମୋର ନାତି ପାଣ୍ଡବେ ମୋର ନାତି
ଏଣୁ ଦୁଇଠାରେ ସମାନମୋର ପ୍ରୀତି ।
ତୁମ୍ଭର ଅନ୍ନ ଖାଇ ପୋଷୁଛି ପିଣ୍ଡକୁ
କି ରୂପେ ନ ଯୁଝିବୁଁ ଆମ୍ଭେ ଅରଜୁନଙ୍କୁ ।
ମୋହ ପରା ଲୋକଟି ମରଣକୁ ଡରି
କେହି ଯୁଦ୍ଧ ନ କରି ରହିବ ଓହରି ।
ପାଚ ତ ଗଲଣି ମୋ ଦେହଯାକ ବାଳ
ଅରଜୁନ ସଙ୍ଗେ ଯୁଝି ପୂରାଇବି କାଳ ।
ଇନ୍ଦ୍ର ଯେ ମୋହଠାରେ କରି ମହାବୁଦ୍ଧି
ପୂଜିବେ ଜାଣି ମୋର ଯୁଦ୍ଧେ ନାଶବିଧି ।
ଭୀଷ୍ମ କଥା ଶୁଣି ଦୁର୍ଯ୍ୟୋଧନ ହସି
ବୋଇଲେ ଆହେ ପିତାମହ ବୃଦ୍ଧ ରୋଷୀ ।
ଜାଣୁ ନ ଜାଣୁ ବା ବୁଦ୍ଧି ଏଥିରୂପେ
ପ୍ରବର୍ତ୍ତିଛି ମରିବ ଯୁଦ୍ଧେ ପାର୍ଥ କୋପେ ।
ତୋର ଭଲକୁ ବାବୁ କହୁ-ସିନା ଥିଲି
ଯୁଝିବୁ ଯେବେ ମୁହିଁ ଯୁଝିବ ନ ଭଲ ।
ଆହେ କୁରୁମାନେ ଶୁଣ ମୋହର ଭାଷା
ଅର୍ଜୁନ ତ କରିଛି ଦୁର୍ଯ୍ୟୋଧନେ ରିଷା ।
ଆଜ ତାହାର କାଣ୍ଡମୁନରୁ ଏହାଙ୍କୁ
ରଖିବାକୁ କର ସମସ୍ତେ ଯତନକୁ ।

ପୁଚ୍ଛ ଯେ ଥିଲେ ଭୀଷ୍ମ ତୁମ୍ଭଙ୍କୁ ଧୃତରାଷ୍ଟ୍ର
ସୁତ ଦୁର୍ଯ୍ୟୋଧନ ଯେ ହୋଇକରି ହୃଷ୍ଟ ।
ଅଜ୍ଞାତବାସ ସରିଛି କି ବାକି ଅଛି
କହ ଏବେ ବତାଇ ତାହାଙ୍କୁ ବୋଲୁଛି ।
ଭୀଷ୍ମ ବୋଇଲେ ହେ ମୁହୂର୍ତ୍ତ ଦିନ ପକ୍ଷ
ମାସ ଋତୁ ଅୟନ ସମ୍ବତ୍ସର ମୁଖ୍ୟ ।
ଏରୂପେ କାଳଚକ୍ର ପ୍ରବର୍ତ୍ତିଛି ନିତ
ଗଣକେ ଏହା ଜାଣି ଦିନକୁ ଗଣନ୍ତି ।
ଦ୍ୱାଦଶ ବରଷରେ ଚାରିଗୋଟି ମାସ
ହେଉଅଛି ସବୁର ମତେ ଅଧିମାସ ।
ଏହିରୂପେ ଲେଖାରେ ତେରଟି ବରଷ
ମୋ ମତରେ ଆସିଛି ହୋଇଲାଣି ଶେଷ ।
ଅଜ୍ଞାତବାସ ସାରି ଅର୍ଜ୍ଜୁନ ବୀର
ଆସୁଛି କରିବାକୁ ଆମ୍ଭଙ୍କ ସମର ।
ପାଣ୍ଡବେ ତ ଧର୍ମରେ ଦେଇଥାନ୍ତି ମତି
ପୁଣି ତ ଯୁଧିଷ୍ଠିର ତହିଁ ନରପତି ।
ଏଥିରେ କହିପାରିବାକୁ କା ଶକତି
ବୋଲି କଲେ ବୋଲି ପାଣ୍ଡୁସୁତେ ଅମାତି ।
ସତ୍ୟ ପାଇଁ ପ୍ରାଣ ତ ଛାଡ଼ିବେ ସେମାନେ
ଅସତ୍ୟ ବୋଲିଣ ଘେନିବା କେହି ମନେ ।
ଯେଉଁ କାଳରେ ଯାହା କରିବାକୁ ଯୋଗ୍ୟ
ତା ନିଶ୍ଚେ କରନ୍ତି ପାଣ୍ଡବ ମହାଭାଗ ।
ଇନ୍ଦ୍ର ତ ବଜ୍ର ଧରିଥିଲେ ବଳଯାଇ
ଯେ ଉଚିତ ତା କରି ଯିବେ ପାଞ୍ଚଭାଇ ।
ବିଜୟଟାରୁ ଜୟ ହେବ ଦୁର୍ଯ୍ୟୋଧନ
ବୋଲିବାକୁ କାହାର ଆସିବ ବଚନ ।
କେବଳ କ୍ଷତ୍ରିୟ ବୃତ୍ତିକି ଆଶ୍ରେ କରି
ଥାଇଣ କି ରୂପରେ ଯିବାଟି ଓହରି ।
ଦେଖ ଦୁଇ କାଣ୍ଡ ପଡ଼ିଲା ମୋ ପାଦରେ
ଦୁଇ କାଣ୍ଡ ଗଲା ଲାଗି ମୋର କାନରେ ।
ଏଣୁ ଜାଣୁଅଛି କରିଣ ନମସ୍କାର
ଆସିଲୁ ବୋଲିଟି କହିଲେ କରି ଧୀର ।
କେତେ କାଳ ଆମ୍ଭର ଫୁଟିଗଲା ଆଖି
ଅର୍ଜ୍ଜୁନଙ୍କୁ ଦେଖି ହୋଇଲା ଆଜ ସୁଖୀ ।
କବଚ କଷଟକୁ ବନ୍ଧି ଧନୁ ଧରି
ବାହାରିଛି ସିଂହ ପରାୟେ ଗର୍ଜ୍ଜ କରି ।

ଆହା କେଡ଼େ ସୁନ୍ଦର ଅର୍ଜ୍ଜୁନର ରୂପ
କନ୍ଦର୍ପର ଦର୍ପକୁ କରୁଅଛି ଲୋପ ।
ଏକାଳେ ଅର୍ଜ୍ଜୁନ ବୋଇଲେ ଉତ୍ତରକୁ
ବାହ ଯେ ଘୋଡ଼ା କୁରୁସେନାଙ୍କ ପାଶକୁ ।
ସୁଯୋଧନ ଆଜ କିରୂପେ ରଥ ଚଢ଼ି
ଆସିବ ଯୁଦ୍ଧି ମୋର ଆଗକୁ ଆଗ ବଢ଼ି ।
ତା ଦେଖିବାକୁ ମୋର ହେଉଅଛି ମନ
ନକର ବିଳମ୍ବ ହେ ବିରାଟ ନନ୍ଦନ ।
ମାଇଲେ ସୁଯୋଧନ ନୃପକୁ ଉତ୍ତର
କୁରୁ ସେନାଯାକ ଯେ ହୋଇଲେ ଶଙ୍କର ।
ଏହି ସକାଶରୁଟି ଛାଡ଼ ସବୁ କଥା
ଏହି କଥାଟି କରିବାର ମୋର କଥା ।
ଭୀଷ୍ମ ଦ୍ରୋଣ କୃପ ଯେ କର୍ଣ୍ଣ ଆଦି ରଥୀ
ଦେଖ ରହିଛନ୍ତି ଯୁଦ୍ଧକୁ ହୋଇ ବ୍ୟଥୀ ।
ଏମାନଙ୍କୁ ରଖାଇ ଏକା ସୁଯୋଧନ
ଘେନାଇ ସଙ୍ଗତରେ ତୁମ୍ଭର ଗୋଧନ ।
ଗଲା କି ରାଜା ହସ୍ତିପୁରକୁ ବାହାରି
ବାହା ମୋ ରଥ ତାହାଠାକୁ ବେଗକରି ।
କି ଯଶ ହେବ ମୋ ଏହାଙ୍କୁ ନାଶକରେ
ମୂଳ ଗାଈକୁଳ କୁରୁଏ ଘେନଗଲେ ।
ଅର୍ଜ୍ଜୁନ ଉତ୍ତର ଉତ୍ତର କର୍ଣ୍ଣେ ଶୁଣି
ଭଲ ହୋଇଣ ରଥ ବାହିଲେ ସେହିକ୍ଷଣି ।
ଦୁର୍ଯ୍ୟୋଧନ ରାଜା ତ ଗାଈ ନେଉଥିଲେ
ତାଙ୍କ ପଛେ ଉତ୍ତର ପାର୍ଥ ରଥ କଲେ ।
ଦ୍ରୋଣ ଅର୍ଜ୍ଜୁନଙ୍କର ଅଭିପ୍ରାୟ ଜାଣି
ବୋଇଲେ ଏକ୍ଷଣି ମରିବ କୁରୁମଣି ।
ଏବେ ମୁଁ ଗାଈ ଘେନ ଯାଉଛି ଘରକୁ
ମାରି ହାତ ସୁଖରେ ତୁମ୍ଭେ ଅର୍ଜ୍ଜୁନଙ୍କୁ ।
ତୁମ୍ଭଙ୍କୁ ବଳଆଇ ଶତଦେବାପାଇଁ
ବଜ୍ର ଧରିଥିବେ ମନକୁ ପାଉନାହିଁ ।
ପରଶୁରାମଙ୍କର ଭାଙ୍ଗିଛି ଗରବ
ଅର୍ଜ୍ଜୁନ ଅବା କେତେ କରିଟି ମାନବ ।
ଏହା କହିଣ ଗାଈମାନଙ୍କୁ ଅଡ଼ାଇ
ବାହାରିଲେ ତହୁଁ ଘରକୁ ଭୟ ହୋଇ ।
ଭୀଷ୍ମ ସେକାଳେ ସୈନ୍ୟ ବ୍ୟୂହ କରାଇଲେ
ଦ୍ରୋଣଙ୍କ ସେ ବ୍ୟୂହ ମଧ୍ୟରେ ରଖାଇଲେ ।

ସେ ବ୍ୟୂହ ଦୁଇ ପାଖେ କୃପ ଅଶ୍ୱତ୍ଥାମା
ରହିଲେ ଧନୁ ଧରି କରଣ ଗାରମା ।
ବ୍ୟୂହ ଆଗରେ କର୍ଣ୍ଣ କର୍ଣ୍ଣକୁଣ୍ଡଳକୁ
ଚହଟାଇ ରହିଲେ ବହିଣ ସାଞ୍ଜୁକୁ ।
ଆପଣେ ରଥ ଚଢ଼ି ଭୀଷ୍ମ ମହାରଥୀ
ବ୍ୟୂହ ପୃଷ୍ଠଭାଗ ଦେଶରେ ହେଲେ ସାଥୀ ।
ଅର୍ଜ୍ଜୁନ କୁରୁ-ମୃଗମାନଙ୍କୁ ସେହି କାଳେ
ପଡ଼ିଲେ ଝାମ୍ପି ସିଂହ ପ୍ରାୟେ ଆସି ହେଳେ ।
ତାହା ଦେଖିଣ କୁରୁ-ମୃଗେ ହୋଇ ଗୋଟି
ମଲୁଁ ବୋଲି କରି ଭାଜିଲେ ଗୁଟିପିଟି ।
ଅର୍ଜ୍ଜୁନଙ୍କ ରଥ ଗାଣ୍ଡୀବ ଧନୁଘୋଷ
ଶୁଣି ତ ପୂର୍ବୁ ଛାଡ଼ିଥିଲେ ସେ ସାହସ ।
ଦ୍ରୋଣ ବୋଇଲେ ଆହେ କହୁ ଯା ଥିଲଇଁ
ଏବେ ଆସି ତାହା ସାକ୍ଷାତେ ଦେଖିଲଇଁ ।
ଦୂରେ ତ ଦିଶୁଛି ଅର୍ଜ୍ଜୁନର ଧ୍ୱଜ
ପଳାଇଲେଣି ଲୋକେ ଛାଡ଼ିକରି ଓଜ ।
ରବ ଭଣି ତେଜ ବହିଣ କାଣ୍ଡରାଜ
ଯେତେବେଳେ ଆସିବେ ପାର୍ଥର ଗରଜ ।
ଯେତେବେଳରେ ଯୁଝିବାକୁ ଏ ସେନାରେ
ଦେଖୁନାହିଁ ନର ଗୋଟିଏ ନୟନରେ ।
ଏହି କାଳେ ଅର୍ଜ୍ଜୁନ ଓଟାରି ଗାଣ୍ଡୀବେ
ଗୁରୁଙ୍କୁ ଦୁଇ କାଣ୍ଡ ବନ୍ଧିଲେ ଯେ ଭାବେ ।
ସେ କାଣ୍ଡଙ୍କର ଭାବ ଦ୍ରୋଣ ଗୁରୁ ଦେଖି
କହିଲେ ସେ ପୁଣି କୁରୁଙ୍କୁ ହୋଇ ସୁଖୀ ।
ଦେଖୁଛ ତ ପାର୍ଥ ନ ଯୁଝି ଆମ୍ଭ ସଙ୍ଗେ
ଧୂଆଉଛି ରଥ ଆଗକୁ ଅତି ବେଗେ ।
ଦୁର୍ଯୋଧନ ରାଜା ମଲେ ଯେ ଧୃତରାଷ୍ଟ୍ର
ଆମ୍ଭଙ୍କୁ ପୋଷିବାର ହେଲା ସବୁ ଭ୍ରଷ୍ଟ ।
ଚାଲ ଏବେ ଆମ୍ଭେଟି ବ୍ୟୂହ ଛାଡ଼ି କରି
ଯୁଝିବା ଅର୍ଜ୍ଜୁନଙ୍କୁ ଧନୁଙ୍କୁ ଉଭାରି ।

—*—

## କୁରୁସେନା ସହିତ ଅର୍ଜ୍ଜୁନଙ୍କ ଯୁଦ୍ଧ

ଦ୍ରୋଣଙ୍କ ବୋଲି କୁରୁସେନାଏ ଘେନିଲେ
ବ୍ୟୂହ ଛାଡ଼ିଣ ଅର୍ଜ୍ଜୁନଙ୍କୁ ଆଗୁଳିଲେ ।
ଅର୍ଜ୍ଜୁନ କୁରୁସେନାମାନଙ୍କ ଦେହକୁ ।
ବନ୍ଧିଲେ ଓଟାରିଣ ଗାଣ୍ଡୀବଧନୁକୁ ।
ସେ କାଣ୍ଡେ ଖଣ୍ଡେ ଶୂନ୍ୟଦାଣ୍ଡରେ ଗମିଲେ
ତେଜରେ ରବିଙ୍କର କରକୁ ଗଞ୍ଜିଲେ ।
କୁରୁସେନାଯାକରେ ହାତେ ଗୋଡ଼େ ବାଜି
ନିକଳିଲେ କେତେ ରହିଲେ କେତେ ମଜ୍ଜି ।
ଅର୍ଜ୍ଜୁନ ତା ଦେଖି ହୃଦରେ ଧରି ସୁଖ
ଆଣି କରି ମୁଖେ ଫୁଙ୍କିଲେ ଧରି ଶଙ୍ଖ ।
ଗାଣ୍ଡୀବ ଗରଜନ ଭୁଲେ ଶଙ୍ଖ ରଡ଼ି
ମିଶନ୍ତେ ଜଣିଲା ପ୍ରଳୟ ଘଡଘଡ଼ି ।
ମହୀ ମହିଳା ତା ନ ସହି ଥରଥର
ହୋଇ ମନେକଲେ ମୁଁ ମରିବି ଏଥର ।
ଏହା କରି ସାରି ଅର୍ଜ୍ଜୁନ ମହାରଥ ।
ଦୁର୍ଯୋଧନ ପଛରେ ଲଗାଇଲେ ରଥ ।
କୁରୁଏ ଅର୍ଜ୍ଜୁନର ଶରେ ଗଣ୍ଡିହାଣି
ଫୁଟାଇଥିଲେ ହେଲେ ଧାଇଁଲେ ଦଗଣ୍ଡି ।
ବୋଇଲେ ଆରେ ବାବୁ ଦୁର୍ଯୋଧନପଦ ।
ଲଭଇ ଅର୍ଜ୍ଜୁନ ଲଭିବ ପ୍ରମୋଦ ।
ଆମ୍ଭେମାନେ ଅନ୍ନକୁ ଖାଇ ଏତେବେଳେ
ଡରିଲେ କି ହେବ ଯୁଝିବା ଚାଲ ବଳେ ।
ଗାଈଙ୍କି ଯେଉଁମାନେ ଘେନି ଯାଉଥିଲେ ।
ଅର୍ଜ୍ଜୁନଙ୍କୁ ଡରି ତ ଛାଡ଼ି ପଳାଇଲେ ।
ଏଣୁ ସବୁ ଗାଈ ହୋଇଣ ଏକ ଗୋଟି
ଆଶ୍ରେ କଲେ ଆସିଣ ପୂରୁବ ସ୍ଥାନଟି ।
ପାର୍ଥ ଉତ୍ତରକୁ ବୋଇଲେ ସୁଯୋଧନ
ରଜାର ପଛେ ମୁହିଁ ଘେନିବି ଜୀବନ ।
ବାହା ଏବେ ମୋ ରଥ କର୍ଣ୍ଣରଥ ଠାକୁ
ଦେଖାଇ କରି ମୋର ଶରବଇଠାକୁ ।
ବଇଠାଇବି ତାଙ୍କୁ ଯମଙ୍କ ପୁରତେ
ତାଠାରେ ଥାଏ କ୍ରୋଧ ମୋହର ନିରତେ
ସେ ମୋତେ କହଇ କଥାରେ ଗାଳୁ କହି
ଦେବି ତାକୁ ଶର ଶାଳୁକୁ ପହରାଇ ।
ଉତ୍ତର ବୋଇଲେ ସେ ଯେବେ ଏଡ଼େ ଖଣ୍ଡ
ଆଗ ଭଙ୍ଗ ଯୁଦ୍ଧେ କର୍ଣ୍ଣର ମଜା ଆଣ୍ଡ ।
ଶତ୍ରୁନ୍ତପ ସଂଗ୍ରାମଜିତ ଚିତ୍ରସେନ
ଜାଣିଲେ କରିବେ କର୍ଣ୍ଣଙ୍କୁ ଆଯୋଧନ ।
ସେ ଶୁଣନ୍ତେ ଅର୍ଜ୍ଜୁନ ବଳକୁ ନ କଳ
ଧାଇଁଲେ ପାର୍ଥସଙ୍ଗେ କରିବାକୁ କଳ ।

ଅର୍ଜ୍ଜୁନ ଗାଣ୍ଡୀବଙ୍କ ଶରଙ୍କ ଆହାର
ପାକ ପାଇଁ ତାଙ୍କ ରଥକୁ କଲେ ଜାଳ ।
ବିକର୍ଣ୍ଣ ତାହା ଦେଖି ପଢ଼ି ମନ୍ତ୍ରପାଠ
ଅର୍ଜ୍ଜୁନଙ୍କୁ ବିନ୍ଧିଲେ ବାଛିଣ ବିପାଠ ।
ଅର୍ଜ୍ଜୁନ ତା ନ ସହି କମ୍ପାଇ କୋଦଣ୍ଡ
ବିକର୍ଣ୍ଣ ଧନୁର୍ଗୁଣ କଲେ ଦୁଇଖଣ୍ଡ ।
ବିକର୍ଣ୍ଣ ଦେଖି କରି ନିଜ ଧନୁ ଛିଡ଼ା
ପଳାଇଲେ ଡେଇଁ ରଥରୁ ନୋହି ଛିଡ଼ା ।
ଶତ୍ରୁନ୍ତପ ଅର୍ଜ୍ଜୁନ ପ୍ରତାପକୁ ଲୋପ
କରିବାକୁ ବିନ୍ଧିଲେ କମ୍ପାଇଣ କୃପ ।
ସେ କାଣ୍ଡେ ଅରଜୁନ କବଚେ ହାବୋଡ଼
ପଡ଼ିଲେ ମହୀଦେଶେ ହୋଇ ଦୁଇ ଗଡ଼ ।
ଅରଜୁନ ତା ଦେଖି ବୋଇଲେ ଏ ପାପ
କି କଲି ଏକୁ ଯେ ମାରିବା କହି କୋପ ।
ଏତେ ଭଲ ଚଉରେ ଗାଣ୍ଡୀବଧନୁଧାରୀ
ତାହାର ସାରଥିର ପ୍ରାଣ ନେଲେ ହରି ।
ଭଲ୍ଲକାଣ୍ଡେ ଶତ୍ରୁନ୍ତପର ଭଲ କରି
କାଟିଲେ ବୈକୁଣ୍ଠିକ ଧ୍ୱଜକୁ ନ ଧରି ।
ଅର୍ଜ୍ଜୁନ ଶରତପାତ କାଟେ କୁରୁସୈନ୍ୟ
ଘନ ଉଡ଼ିଲେ ହୋଇକରି ଛିନ୍ନ ଛିନ୍ନ ।
ତଦଅନ୍ତରେ ବାଣ ବିନ୍ଧିଲା କଷଟି
କର୍ଣ୍ଣ ଭାଇ କୁଣ୍ଡଳଧର ମୁଣ୍ଡ କାଟି ।
କର୍ଣ୍ଣ ରଥ ପାଶରେ କରି ରଥ ଯୋଟି
ବୋଇଲେ ଯୁଝ ହେ ମୋ ସଙ୍ଗେ ସୁତବେଟି
କହ ଯେଉଁ ରୂପେ ସଭାରେ ସଠାବଠା
ସେରୂପେ ନୁହଇଟି ଆଜର କଥାଟା ।
ଖାଇ ପିଇ ଗଣ୍ଡିତ କରିଅଛ ମୋଟା
କର କର ମୋ ଅଙ୍ଗେ ଧନୁ ଶରଫଟା ।
ଦେଖୁଅଛ ତ ଆମ୍ଭେ ବୁଲି ବୁଲି ଲଟା
କରିଣ ଦେହଅଛୁ ଦେହଟିକ କୁଟା ।
ଆମ୍ଭର ଏହି ଦଶା ଦେଖି ମନଫଟା
ନ କରି ଯୁଦ୍ଧ କର ନିଅ ହେ ଯଶୁଟା ।
ଏବେ କରି ନ ପାରିଲେ ଏହି କଥାଟା
ଜାଣିବ ବୋଲିବାର ହୋଇଲା ବୃଥାଟା ।
ଶତ୍ରୁ ହୋଇ ମୂର୍ଦ୍ଧା ତ ରହିଛୁ ଆଗରେ
ମୋତେ ଏବେ ଶରକୁ ପ୍ରହାର ବେଗରେ ।
ନୋହିଲେ ପଡ଼ିକରି ମୋ ମୁଖଭାଗରେ
ବସ ଯାଇ ସୁଖରେ ଯମଙ୍କ ଆଗରେ ।
କର୍ଣ୍ଣ ତ ମହାରଥୀମାନଙ୍କେ ଦୁର୍ଲ୍ଲଭ
ଗରଜିଲେ ତା ଶୁଣି ଯେସନେ ବୃଷଭ ।
ବୋଇଲେ ଶୁଣ ଆହେ ପାଣ୍ଡବ ଅର୍ଜ୍ଜୁନ
ଦେଖାଇ ବଳ କର ମୋତେ ତରଜନ ।
କ୍ଷତ୍ରିୟଲୋକେ କେବେ ଏରୂପେ ବଚନ
ନ କହନ୍ତି କହିଲେ ହେଲେ ପରସୈନ୍ୟ ।
ତୁମ୍ଭେ ତ କ୍ଷତ୍ରିୟଙ୍କ କୁଳେ ଜାତ ହୋଇ
ଅଛ କିଛୁ ନ କରି କହୁଛ କିମ୍ପାଇ ।
ଆହେ ଅରଜୁନ ଯେ ବୀର ମହାରଥ
ଦେଖାଅ ବଳ ଯେବେ ଅଛି ସାମରଥ ।
ଏହି ରୂପେ କହିଣ କର୍ଣ୍ଣ ଚାପ ଧରି
ଗୁଣକୁ କର୍ଣ୍ଣଯାଏ ଆଣିଲେ ଓଟାରି ।
ଅର୍ଜ୍ଜୁନର ବାଛିଣ ହୃଦରେ ମରଣ
ବିନ୍ଧିଲେ ବାଛିକରି ବାରଟି ମାର୍ଗଣ ।
ଉତ୍ତରର ଦୁଇଟି କରକୁ ଭେଷାଇ
ବିନ୍ଧିଲେ ପୁଣି ଶରାସନେ ଶର ଥୋଇ ।
ତା ଦେଖି ଅର୍ଜ୍ଜୁନ ଗରୁଡ଼ ପକ୍ଷୀଗଣ
ଧାଇଁଲେ କର୍ଣ୍ଣ ସର୍ପ କରିବାକୁ ଗ୍ରାସ ।
କୁରୁଏ ତାହା ଦେଖି ହେଲେ କୁହାକୁହି
ଦେଖି ଅରଜୁନ ଧାଇଁଛି କ୍ରୋଧ ବହି ।
ଏହିକ୍ଷଣି ଯେ କର୍ଣ୍ଣ ଅନଳ ଶାନ୍ତକି
ବରଷିବ ଅର୍ଜ୍ଜୁନ ଶାୟକ ପାଣିକି ।
କେ ବୋଇଲେ କର୍ଣ୍ଣ ତ ଅଟେ ବଳୟାର
ଏ ନିର୍ଜନ କଥାକୁ କିମ୍ପାଇ ବିଚାର ।
ଏହି ସମୟରେ ଗଣ୍ଡୀବକରବାସୀ
ଛାଡ଼ିଦେଲେ କର୍ଣ୍ଣଙ୍କୁ ବିନ୍ଧି ଶରରାଶି ।
ନିଜ ରଥ ଅଶ୍ୱ କର୍ଣ୍ଣଙ୍କୁ ହେଲେ ବଣା
ଯେଣୁ ତା ପାଶ୍ୱୁ ସୂର୍ଯ୍ୟକର ହେଲେ ଊଣା ।
ଭୀଷ୍ମ ଦ୍ରୋଣ ଦେଖି ବୋଇଲେ ନରେଖ
ମଲା ସୂତପୁତ୍ରଟି ହୋଇଣ ନରେଖ ।
ଅର୍ଜ୍ଜୁନ ବଳ କର୍ଣ୍ଣ ବୁଝି ତା ନ ସହି
ବିନ୍ଧିଲେ ବେଗି ରୂପେ ଧାପେକୋପେ ସେହି
କୁରୁମାନେ ଥିଲେ ତ ଆଖିର୍କି ତରଟି
ତାହା ଦେଖି ଘୁଞ୍ଚିଲେ ପିଛଡ଼ା ହଉଟି ।

ଅର୍ଜୁନ ତା ଦେଖି ଅଳପ ହସିହସି
କର୍ଣ୍ଣହୃଦ ତୂଣୀରେ ସ୍ଥାପି ଶରରାଶି ।
କର୍ଣ୍ଣ ମଧ୍ୟ ଅର୍ଜୁନ ଉପରକୁ ବେଗ
ଧନୁରେ ଯୋଖିକରି ବିନ୍ଧିଲେ ଅମାପ ।
କର୍ଣ୍ଣ ଅର୍ଜୁନ ଦୁହେଁ ତ ସାମରଥ
ଯୁଦ୍ଧକଲେ ମିଶାଇ ସେ ରଥକୁ ରଥ ।
କର୍ଣ୍ଣ ଯେ ଦ୍ୱରକାଣ୍ଡ ଅର୍ଜୁନ ଘୋଡ଼ାକୁ
ବନ୍ଧଣ ତିନକାଣ୍ଡ ବିନ୍ଧିଲେ ଧ୍ୱଜକୁ ।
ସାରଥିକି ମଧ୍ୟ ସେ ବିନ୍ଧି ତିନକାଣ୍ଡ
ଗରଜ ପୁରାଇଲେ ଯୁଦ୍ଧଭୂମି ଦାଣ୍ଡ ।
ଏହା ଦେଖି ଅର୍ଜୁନ-ସିଂହ ରଥ ଗୁହା
ମଧ୍ୟରେ ଛୁଡ଼ା ହେଲେ ବଢ଼ାଇ ଉତ୍ସାହା ।
ଗାଣ୍ଡୀବମାରଗଣ ନଖରେ ତାଙ୍କର
ବିଦାରିଲେ ଶର କଣ୍ଟକ କର୍ଣ୍ଣଙ୍କର ।
ଏ ବାହାରେ ପାର୍ଥ ଧନୁରୁ କୋଟି କୋଟି
ବାହାରିଲେ ଶରେ ଆକାଶ ହୋଇ ଗୋଟି ।
କର୍ଣ୍ଣଙ୍କ ବାହୁ ଉର ମସ୍ତକ ଲଲାଟ
ଏମାନଙ୍କେ ଯାଇଁ ବାଜନ୍ତେ ଫଟପାଟ ।
କର୍ଣ୍ଣ ସେ ଶରଘାତେ ହୋଇ ଛଟପଟ
ପଳାଇଲେ ଯୁଦ୍ଧରୁ ଦେଇ ପିଠିପଟ ।
ତା ଦେଖି ଦୁର୍ଯ୍ୟୋଧନ ଆଦି ରଥିକୁଳ
ଅର୍ଜୁନକୁଲେ ଆସି ଆରମ୍ଭିଲେ ଗୋଳ ।
କୁରୁସୈନ୍ୟେ ସମୁଦ୍ର ଅର୍ଜୁନଶର-ବେଳ
ପାଇବା କ୍ଷଣି ବଢ଼ିବାର କଲେ ହେଳା ।
ପୁଣି ଅର୍ଜୁନ କରଣ ଦିବ୍ୟ ଅସ୍ତ୍ର
ଯୁଇ ଦେଲେ ତହିଁରେ କୁରୁଙ୍କର ଗାଝ ।
ରଥଧ୍ୱଜ ହାତୀ ଓଷ୍ଟ୍ର ଯେ ନର ଅଶ୍ୱ
ଯେତେକି ସେ ସୈନ୍ୟ ତେତେକଦେହେବାସ
ଦ ଅଙ୍ଗୁଳ ଛଡ଼ା ନ ରଖି ଶରରାଜ
ଅର୍ଜୁନର ରହିଲେ ଲଞ୍ଜ ହୋଇ ମଜ୍ଜି ।
ପ୍ରଳୟଅଗ୍ନିପରି ତେଜେ ଅର୍ଜୁନ
ଜଳ ବୁଡ଼ାଇଲେ ସେ ସବୁରି ନୟନ ।
ଫୁଟିଥିବା ଶିମିଳି ବୃକ୍ଷ ପରି ବଳ
ସେ କାଳେ ଦେହ କରି ହୋଇଲେ ଆକୁଳ ।
ପତାକାକୁଳ ପାର୍ଥ ଶର ଲାଗି ଛୁଡ଼
ପବନରେ ରହିଲେ ଆକାଶେ ନ ପଡ଼ ।

ରଥ ଘୋଡ଼ାଙ୍କର ଛିଣ୍ଡନ୍ତେ ବେକଯୁଗ
ପଳାଇଲେ ରଥେ ପକାଇ ମସ୍ତଭାଗ ।
କର୍ଣ୍ଣ କୁମ୍ଭ ଦନ୍ତ ଯେ ଓଷ୍ଟ୍ର ହାତୀକୁଳ
ଛିଣ୍ଡାଇଣ ପଡ଼ିଲେ ହୋଇଣ ବିକଳ ।
ପଥରେ ଗଡ଼ିଯିବା ପରି ତଳେ ଗଡ଼
ଘୁଡ଼ିଲେ ଅହର୍ନିଶି ଯେହ୍ନେ କାଳ ରଡ଼ ।
ବାଣର ଗରଜନ ଅର୍ଜୁନଙ୍କ ଧନୁ
ଶବଦ କମ୍ପାଇଲା ବୀରଙ୍କର ତନୁ ।
ପାର୍ଥ ଶର ପକ୍ଷୀ ଆକାଶଯାକ ମାଡ଼ି
ରହନ୍ତେ ସୂର୍ଯ୍ୟଙ୍କର ମସ୍ତୀଗଲେ ଘୁଡ଼ି ।
ପାର୍ଥ କୋଟିଶର ଆକାଶେ ହୋଇ ଗୋଟି ।
ନନ୍ଦା କଲେ କାଳ ଦେବରି ମେଲ୍ଲ ପାଟି ।
ସୂର୍ଯ୍ୟ ଅର୍ଜୁନଙ୍କର କର-ଶରଙ୍କର
କର ଦେଖି କପାଳେ ମାରି କରି କର ।
ବୋଇଲେ ଆଜ ମୋର ପୁଅଟି କଷ୍ଟୀ
ସଙ୍ଗତେ ଯୋଟିଲେ ଯମଙ୍କୁ ଯିବ ଭେଟି ।
କେତେ ତିଆରିଲି କବଚକୁଣ୍ଡଳକୁ
ନ ଦେବୁ ବୋଲି ଇନ୍ଦ୍ରଦେବତା ହାତକୁ ।
ତେବେହେଁ ମୋ ବୋଲ ନ କରିଦାତାପଣେ
ତାହା ଦେଲା ମରଣ ଲୋଡ଼ିଣ ଆପଣେ ।
ସେକାଳେ କୁରୁରଥିମାନେ ଗୋଟି ହୋଇ ।
ଯୁଝି ପାର୍ଥଶରେ ରହିଲେ ମନ୍ଥା ପାଇ ।
ଉତ୍ତର ବାହୁବା ଲାଘବେ ଅର୍ଜୁନଙ୍କ
ରଥ କଲା ଗତିରେ ଭସ୍ମ ପବନଙ୍କ ।
କୁରୁ ସୈନ୍ୟ ଦଧିହାଣ୍ଡିରୁ ଜୟଶିରୀ
ଲବଣୀ ଘେନିଯିବା ମନରେ ବିଚାରି ।
ଗାଣ୍ଡିବ ଧନୁଶର ମନ୍ଥନ ଦଣ୍ଡରେ
ମନ୍ଥି ପକାଇଲେ ସେ ତାହା ଦଣ୍ଡକରେ ।
ସବୁ ଶବଦକୁ ଅର୍ଜୁନଙ୍କ ଘୁଟେଣୀ
ଶବ୍ଦୁଟା ଗଲା ଅତିଶୟରେ ଜଣି ।
ସବ୍ୟ ଦକ୍ଷିଣରେ ବିନ୍ଧିଲେ ଅର୍ଜୁନ
ନ ବସେଇ ଶାୟକ କରନ୍ତେ ମୋଚନ ।
ଅଲାତଚକ୍ର ଗାଣ୍ଡୀବ ଧନୁବର
ହେଲା ସବୁ ଶତ୍ରୁଙ୍କ ନେତ୍ରକୁ ଗୋଚର ।
ବିନ୍ଧିଲେ କେଉଁ କାଣ୍ଡ ଧନୁରେ ସେ ଯୋଟି
ସେ କାଣ୍ଡରୁ ଗୋଟିଏ ନ ପଡ଼ିଲା ଫିଟି ।

ରଥି ହାତୀ ସିପାହୀ ପାଇକ ଗଣ୍ଡି ହାଣ୍ଡି
କେବଳ ଗଳବାରେ ହେଲା ସେ ଦରଣ୍ଡି ।
ଅର୍ଜୁନରଥ ଯେଉଁଆଡ଼େ ଧାଇଁଯାଏ
ସେ ଆଡ଼ର ଲୋକେ ପଳାନ୍ତି ଅତି ଭୟେ ।
କୁରୁଏ ମନେ କଲେ ଅର୍ଜୁନଙ୍କ ଦାପ
ଇନ୍ଦ୍ର ମାରୁଛନ୍ତି ଆମ୍ଭଙ୍କୁ କରି କୋପ ।
ନୋହିଲେ ଅର୍ଜୁନ ଏରୂପେ ଅସ୍ତ୍ର କରି
ମାରିବାର ସେ ଦେଖା ନାହିଁ ତ ଆମ୍ଭର ।
ନୋହିଲେ ଅର୍ଜୁନ ରୂପେ ଆସି କାଳ
ପୂରାଉଇଛୁ ଆମ୍ଭମାନଙ୍କର କାଳ ।
ଏହିରୂପେ ବିଚାରି ଅର୍ଜୁନଙ୍କ ଭୟେ
ଶୀଘ୍ର କରଣ ଦେଲେ ଯେ ଯାହାର କାୟେ ।
ଅର୍ଜୁନ ଧନୁ-ମେଘରୁ ଶରବୃଷ୍ଟି
ହୁଅନ୍ତେ ହେଲା ପୂର୍ଣ୍ଣ ରକ୍ତଜଳେ ସୃଷ୍ଟି ।
ତା ଦେଖି ସୂର୍ଯ୍ୟଦେବ କରକୁ ଲୋହିତ
କରିଦେଲେ ହେବାକୁ ଋଷିସ୍ତୁଙ୍କ ହିତ ।
ଖୁରମ୍ପର ତେତ୍ରଶ କାଣ୍ଡ ଗୁଣେ ଯୋଚି
ଘୋଡ଼ାଇଲେ ଆଗ ଦ୍ରୋଣଙ୍କୁ ସେ କଶଶୀ ।
ପଛେ ଦୁଃସହକୁ ବିନ୍ଧଣ ଦଶକାଣ୍ଡ
ଯିବା ଘାତେ ମଣିଣ ହେଲେ ଯୁଦ୍ଧ ଦାଣ୍ଡ ।
ଅଶ୍ୱତ୍ଥମାଙ୍କର ସେ ଆଣ୍ଠପଣ ଜାଣି
ବିନ୍ଧିଲେ ଆଠକାଣ୍ଡ ଆଣ୍ଠ କରି ଟାଣି ।
ଦୁଃଶାସନ ଉପରେ ବିନ୍ଧଣ ଦ୍ୱାଦଶ
କୃପେ ତିନକାଣ୍ଡ ବିନ୍ଧିଲେ ବହି ରୋଷ ।
ଦେଖି କରି ସେ ଭୀଷ୍ମ ପିତାମହ ଦେହ
ଷାଠିଏଟା କାଣ୍ଡ ବିନ୍ଧିଲେ ବହି କୋହ ।
ଦୁର୍ଯ୍ୟୋଧନ ରାଜାଙ୍କୁ ପ୍ରାଣହର କାଣ୍ଡ
ଶଏ ବିନ୍ଧ ପୂରାଇ ଦେଲେ ତାଙ୍କ ପିଣ୍ଡ ।
ଆକର୍ଣ୍ଣ କର୍ଣ୍ଣ କର୍ଣ୍ଣମୂଳ ଶର ବାଛି
ବିନ୍ଧିଲେ ଅରଜୁନ ଉତ୍ପ୍ରୋଧ ମୂରୁଛି ।
କର୍ଣ୍ଣ କର୍ଣ୍ଣମୂଳେ ବାଜନ୍ତେ ଶରଧାଡ଼
ପଳାଇଲେ ଦେଖିଣ କର୍ଣ୍ଣେ ସେନା ଗୁଡ଼ ।
ଉତ୍ତର ବୋଇଲେ ଅର୍ଜୁନ ମହାମନା
ଦେଖ ପଳାଇ ଗଲେ କର୍ଣ୍ଣଙ୍କର ସେନା ।
ଏବେ ତୁମ୍ଭେ ବୋଲିବ ମୋତେ ଯେଉଁଠାକୁ
ସେହିଠାକୁ ବାହିବ ତୁମ୍ଭର ରଥକୁ ।

ଅର୍ଜୁନ ବୋଇଲେ ହେ ବିରାଟନନ୍ଦନ
ଶୁଣ ଭଲ କରି ମୋ କହିବା ବଚନ ।
ଯେଉଁ ରଥେ ନୀଳ ପତାକା ଦିଶୁଛନ୍ତି
ସେହିଟି ଆମ୍ଭ ଗୁରୁ କୃପ ବୋଲାଅନ୍ତି ।
ଏହାଙ୍କୁ ଆଜ ମୂର୍ଖି ମୋର ଅସ୍ତ୍ର ବଳ
ଦେଖାଇବ ଧନୁକୁ କରଣ ମଣ୍ଡଳ ।
ସୁନାର କମଣ୍ଡଳୁ ଯେଉଁ ରଥେ ଅଛି
ସେହି ଦ୍ରୋଣଗୁରୁ ଭରଦ୍ୱାଜ ବଂଶି ।
ଏହାଙ୍କ ରଥକୁ ମୋ ରଥ ପ୍ରଦକ୍ଷିଣ
କରାଅ ସେହୁ ପୂଜ୍ୟ ଆମ୍ଭର ଟି ଜାଣ ।
ଯେବେ ମୋତେ ଆଗ କରିବେ ସେ ସମର
ତେବେ ତାଙ୍କୁ ପଛେ ବିନ୍ଧିବ ମୁହିଁ ଶର ।
ଦ୍ରୋଣଙ୍କ ନିକଟରେ ଦେଖ ରଥ ଚଢ଼ି
ଅଶ୍ୱତ୍ଥାମା ଛନ୍ତି ଯୁଦ୍ଧକୁ ଆଗବଢ଼ି ।
ସେ ମୋହର ପୂଜ୍ୟ ଅଟନ୍ତି ସବୁଦିନେ
ନ ମାରିବି ତାଙ୍କୁ ଜାଣ ମୁଁ କାଣ୍ଡମୁନେ ।
ଯାହା ଧ୍ୱଜେ ସୁନା ହାଣ୍ଡିଟିଏ ରହିଛି
ସେହିଟି ସୁଯୋଧନ ଧୃତରାଷ୍ଟ୍ରବଂଶି ।
ବହୁ ରଥ ସେଠାକୁ ତା ସଙ୍ଗେ କରି ଆଛି
ଟୋପାଇବ ତ ପାଞ୍ଚି ଯମଦ୍ୱାରେ ଆଜ ।
ଯା ରଥରେ ଧ୍ୱଜ ହୋଇଛି ନାଗକକ୍ଷା
ସେହିଟି କର୍ଣ୍ଣ ମୋର ସଙ୍ଗତେ ତା କକ୍ଷା ।
ଟହକରି ଏହା ଆଗରେ ରଥ ବାହି
ନେଉଥିବ ଜାଣ ତୁମ୍ଭଙ୍କୁ କହୁଥାଇ ।
ଯାହାଙ୍କର ରଥରେ ସୁନା ପାଞ୍ଚତର
ଧ୍ୱଜ ହୋଇ ରହିଅଛି ଦିଶୁଅଛି ତୋର ।
ଶୁକଳ ଛତଟାଏ ଟେକା ହୋଇଅଛି
ଜାଣ ସେହି ଭୀଷ୍ମ ଶାନ୍ତନୁ ନୃପବଂଶି ।
କୁରୁ ପାଣ୍ଡବଙ୍କ ଅଟନ୍ତି ପିତାମହ
ସବୁବେଳେ ମୋହଠାରେ କରିଥାନ୍ତି ସ୍ନେହ ।
ଏହାଙ୍କ ସକାଶରୁ ଆମ୍ଭ ବାପେ ରଜା
ହୋଇ ହସ୍ତିନାରେ ପାଳିଲେ ସୁଖେ ପ୍ରଜା ।
ଏହି ପର୍ଣ୍ଣଗ୍ରାମ ଗରବ ଛନ୍ତି ଗର୍ଜ୍ଜି
ଯାଙ୍କ ସଙ୍ଗେ ଯେବେ କରିବା ଆମ୍ଭେ ଆଜ ।
ପବନରେ ଘୋଡ଼ାଙ୍କୁ ବାହୁଥିବୁ ବାବୁ
ମୋ କହିବା କଥାଟି ପାଶୋରି ନ ଦେବୁ

ଅର୍ଜୁନଙ୍କ ଉତ୍ତର ଉତ୍ତର ଶୁଣିଲେ
ସମ୍ମତ କରି କୃପ ପାଶେ ରଥ ନେଲେ ।
ସେକାଳରେ କୁରୁସେନାରୁ ହୋଇ ଗୋଟି
ମେଘ ପରି ରହିଲେ ଚଉଦିଗେ ଘୋଟି ।
ତା ଦେଖି ସିପାଇ ଘୋଡ଼ାଙ୍କୁ ଧୂଆଇଲେ
ଅର୍ଜୁନଙ୍କ ସ୍ୱରପଟରେ ସେ ରହିଲେ ।
ମାହୁନ୍ତଙ୍କ ଆଙ୍କୁଶଘାତ ପାଇକରି
ଅର୍ଜୁନେ ବେଢ଼ିଲେ ମାରିବା ଇଚ୍ଛା କରି ।
ଇନ୍ଦ୍ର ଅରଜୁନଙ୍କ ଯୁଦ୍ଧ ପରାକ୍ରମ
ଦେଖିବାକୁ ଆସିଲେ ଛାଡ଼ି ସୁରଗ୍ରାମ ।
ଦେବ ଯକ୍ଷ ଗନ୍ଧର୍ବ ଉରଗ ସଙ୍ଗତରେ
ଆସିବାରୁ ଆକାଶ ପୂରିଲା ନିରନ୍ତରେ ।
କୃପ ଅର୍ଜୁନଙ୍କର ଦିବ୍ୟ ଅସ୍ତ୍ରଯୁଦ୍ଧ
ହେବ ଆଜ ଦେଖିବା ବୋଲି କଲେ ସଧ ।
ଇନ୍ଦ୍ରଙ୍କର ବିମାନ ମଣିରେ ଜ୍ୱଳିତ
ହେବାରୁ ସୂର୍ଯ୍ୟ କିରଣ କଲା ଯେ ଲୁପତ ।
ସେ ବିମାନ ବେଷ୍ଟିଣ ଦେବତା ଗନ୍ଧର୍ବେ
ବେଢ଼ି କରି ଇନ୍ଦ୍ରଙ୍କୁ ବସିଛନ୍ତି ସର୍ବେ ।
ଦେବ ଯକ୍ଷ ଉରଗ ରାକ୍ଷସମାନେ ଗୋଟି
ହେଲେ ସେଠାରେ ଚଢ଼ି ଯେଝା ବିମାନଟି
ବସୁମନା ଅଷ୍ଟକ ପ୍ରତର୍ଦ୍ଦନ ମନୁ
ଯଯାତି ଶିବି ଗୟ କ୍ଷୁପ ରଘୁ ଭାନୁ ।
ନହୁଷ ଅନୁତାକ୍ଷ ସଗର ମାନ୍ଧାତା
ନିମି ଆଦି ଯେତେ ନୃପତି ସ୍ୱରଗତା ।
ଇନ୍ଦ୍ରଙ୍କ ବିମାନରେ ବସି ପାର୍ଥ ଯୁଦ୍ଧ
ଦେଖିଲେ ହୃଦୟରେ ବହି ଅତି ସଧ ।
ଈଶ ଅଗ୍ନି ସୋମ ବରୁଣ ଯେ ବିଧାତା
କୁବେର ଅଲମ୍ବୁଷ ଉଗ୍ରସେନ ଧାତା
କୁମ୍ଭୁରୁ ଯମ ଆଦି ବିମାନକୁ ଚଢ଼ି
ଆସିଲେ ଦେଖି ଅର୍ଜୁନଙ୍କ ଯୁଦ୍ଧପ୍ରୌଢ଼ି ।
ଦେବର୍ଷି ରାଜର୍ଷି ଆଦି ଯେତେ ଥିଲେ
ଘୋରାଦି ଯୁଦ୍ଧ ଦେଖି ଅତି ସୁଖି ହେଲେ ।
ସେ ଦେବତାମାନଙ୍କ ଦେହେ ଫୁଲଗନ୍ଧ
ପାଇଣ ମର୍ତ୍ତ୍ୟକୁଳ ହୋଇଗଲେ ଅନ୍ଧ ।
କେଉଁଠାରେ ବାସୁଛି ବୋଲି ମନେ ଘେନି
ବାହାରିଲେ ଅଳି ଅବଳପକ୍ଷ ଘେନି ।
ସେକାଳେ ଦେବତାଙ୍କ ବଚନ ନୟନ
ମର୍ତ୍ତ୍ୟଲୋକମାନଙ୍କର କରିଲା ଦରଶନ ।
ଅର୍ଜୁନଙ୍କର ବୀର ଶୂରପଣ ଦେଖି
ଫୁଲାଇଲେ ଦେହକୁ ସେ ସହସ୍ରଆଖି ।
ଏ ଅନ୍ତେ ଅରଜୁନ ବୋଇଲେ ଉତ୍ତର
ଦକ୍ଷିଣପଟେ କରି ମୋ ରଥ କୃପଙ୍କର ।
ଅର୍ଜୁନ ଉତ୍ତର ଉତ୍ତରେ ଭରା ହେଲେ
କୃପଙ୍କର ଦକ୍ଷିଣପଟେ ରଥ କଲେ ।
କେତେବେଳେ କୁରୁମାନଙ୍କ ସ୍ୱରପଟେ
ବୁଲାଇଲେ ରଥଘୋଡ଼ାଙ୍କୁ ପିଟି ଛାଟେ ।
ଏହିରୂପରେ ରଥ କଡ଼ରେ ଉତର
ମୋହ ଜାତ କରାଇ ଦେଇ କୁରୁଙ୍କର ।
କୃପଙ୍କଠାରୁ ଭୟ ଦୂର କରି ଦେଲେ
ତାଙ୍କ ଆଗେ ଅର୍ଜୁନ ରଥକୁ ରଖିଲେ ।



## କୃପାଚାର୍ଯ୍ୟଙ୍କ ସହିତ ଅର୍ଜୁନଙ୍କର ଯୁଦ୍ଧ

ଅରଜୁନ ଆପଣା ନାମକୁ ଉଚ୍ଚାରି
ବଜାଇଲେ ଶଙ୍ଖ ସେ କଚ୍ଛୁ ନ ବିଚାରି ।
ପର୍ବତ ଫାଟିଲା ପରାୟେ ଶଙ୍ଖଧ୍ୱନି
ସ୍ତବଧ କଲା ଯାଇ କୁରୁ କର୍ଣ୍ଣବେନି ।
କୁରୁମାନେ ବୋଇଲେ ଧନ୍ୟ ଏ ଶଙ୍ଖଟି
ଅର୍ଜୁନ ଫୁଙ୍କିବାରେ ଯେ ନ ଯାଏ ଫାଟି
ପାର୍ଥ ଶଙ୍ଖଶବ୍ଦ ନ ସହି ଗୁରୁ କୃପ
ଫୁଙ୍କିଲେ ନିଜ ଶଙ୍ଖ ମନେଧରି କୋପ ।
ଏହା କରି ସାରିଣ ଧନୁକୁ ଟଙ୍କାରି
ବିନ୍ଧିଲେ ମାରଗଣ ଦଶ ବାଛି କରି ।
ଅରଜୁନ ଯେ ମର୍ମଭେଦ କାଣ୍ଡମାନ
ଉଗ୍ରୋଧ ଛାଡ଼ିକରି ବିନ୍ଧିଲେ ବଦନ ।
ଅର୍ଜୁନ ବାଣେ କୃପ ଗଣ୍ଡିଟିକ ଧାଇଁ
ଥିଲେ ତା କୃପ କାଟି ପକାଇଲେ ମହୀ ।
ଅର୍ଜୁନ ନ ସହି ଆଶ୍ଚର୍ଯ୍ୟ ଯୁଦ୍ଧ କରି
ଛାଇଦେଲେ କୃପଙ୍କୁ ବହୁ ଶର ମାରି ।
କୃପ ତାହା ନ ସହି ଦଶଶତ କାଣ୍ଡ
ବିନ୍ଧିଲେ ଅର୍ଜୁନଙ୍କୁ ଟଙ୍କାରି କୋଦଣ୍ଡ ।
ସନ୍ନତପର୍ବ କାଣ୍ଡ ଉନ୍ନତବଳକୁ
ଦେଖାଇଣ ଅର୍ଜୁନ ବିନ୍ଧିଲେ ତାହାଙ୍କୁ ।

ଏ ବାହାରେ କୃପ ଘୋଡ଼ାଙ୍କୁ ଚାରିକାଣ୍ଡ
ବିନ୍ଧିଲେ ଦେଖାଇ ପାଣ୍ଡବ ହସ୍ତକାଣ୍ଡ ।
ସେ ଯେନ କୃପାଙ୍କ ଘୋଡ଼ାଏ ଗୋଡ଼ ଯୋଡ଼ି
ଡେଇଁବାରେ କୃପ ପଡ଼ିଲେ ମୁହଁ ମାଡ଼ି ।
ଅର୍ଜ୍ଜୁନ କୃପଙ୍କର ଏ ଦଶାକୁ ଦେଖି
ଦିଲେ ଅଶ୍ରୁପୂର୍ଣ୍ଣ କଲେ ଦୁଇ ଆଖି ।
କୃପ ତଦଅନ୍ତେ ରଥରେ ହୋଇ ସୁସ୍ଥ
ବିନ୍ଧିଲେ ଶର ମାନ କ୍ଷତ୍ରିୟ ବ୍ୟବସ୍ଥା ।
ଅର୍ଜ୍ଜୁନ ଭଲ ଭଲ କାଣ୍ଡକୁ ବିନ୍ଧି
କୃପଙ୍କ ଧନୁହତା ଦୁଇ ଦେଲେ ଛେଦି ।
ଦେହକୁ ନ ବିନ୍ଧିଣ ବିକଳେ କିରୀଟି
କୃପଙ୍କ କବଚକୁ ପକାଇଲେ କାଟି ।
କୃପଙ୍କର ଦେହୁଁ ଯାଆନ୍ତେ ସାଞ୍ଜୁ ଫୁଟି
କାତିଛଡ଼ା ସର୍ପ ଭଳି ହୋଇଲେ ଯୋଟି
କୃପ ଆଉ ଧନୁ ଗୋଟାଏ ଧରି କରେ
ଟେକନ୍ତେ ଅର୍ଜ୍ଜୁନ କାଟିଲେ ଶାୟକରେ ।
କୃପ ଧରୁ ଧରୁ ବୃହଦ୍ରଥର ଧନୁ
କାଟି ପକାଇଲେ ସେ ଇନ୍ଦ୍ରଙ୍କର ସୁନୁ ।
ଅତ୍ୟନ୍ତ ତ ସେ କୃପ ମହାଶକ୍ତିମନ୍ତ
ନ ଛାଡ଼ି ଯୁଦ୍ଧଶକ୍ତି ନେଲେ ଟେକି ହସ୍ତ ।
ଅର୍ଜ୍ଜୁନ କୃପଙ୍କର ଶକ୍ତିକି ଦେଖିଲେ
ଦଶକାଣ୍ଡ ପେଷି ଣ ଦଶଖଣ୍ଡ କଲେ ।
କୃପ ଏବେ ଛିଦ୍ରରେ କରେ ଧନୁ ଧରି
ବିନ୍ଧିଲେ ଦଶକାଣ୍ଡ ପାର୍ଥେ ଲକ୍ଷ କରି ।
ପାଣିହଥା ପଥର ଦକ୍ଷ ଚତୁର୍ଦ୍ଦଶ
କାଣ୍ଡ ବାଛି ବିନ୍ଧିଲେ ଅର୍ଜ୍ଜୁନ ଯେ ଶେଷ ।
ଏ ବାହାରେ ବିନ୍ଧିଣ ଗୋଟିଏ ଶାୟକ
କାଟିଲେ ଅର୍ଜ୍ଜୁନ ଜୁଆଳୀ ଯୋଡ଼ିକ ।
ଚାରିଗୋଟି କାଣ୍ଡରେ ଘୋଡ଼ାଙ୍କର ପ୍ରାଣ
ଭେଟାଇଲେ ନେଇ ସେ ଜନ୍ତୁଙ୍କର ସ୍ଥାଣ ।
କାଣ୍ଡରେ ସାରଥି ମୁଣ୍ଡଟିକି କାଟି
ଅଧର ଅଧିକରେ ହସିଲେ କିରୀଟି ।
ଦୁଇକାଣ୍ଡେ ରଥର ଅଖକୁ କାଟିଲେ
ଭଲ୍ଲକାଣ୍ଡେ ଧ୍ୱଜ ଭୂମିରେ ପକାଇଲେ ।
ଏରୂପେ କରିସାରି ପରସ୍ପର ଗଞ୍ଜା
ଅରଜୁନ ଆନନ୍ଦ ଧରି କରି ମଜ୍ଜା ।

ବଜ୍ରପରି ନିଷ୍ଠୁର କାଣ୍ଡଟିଏ ଯୋଖି
ବିନ୍ଧିଲେ କୃପଙ୍କର ହୃଦକୁ ସଲକ୍ଷି ।
ରଥରୁ ଡେଇଁପଡ଼ି କୁରୁକୁଳ ଗୁରୁ
ଫିଙ୍ଗିଲେ କୃପ ଗଦା ଗୋଟାଏ ହସ୍ତକାରୁ ।
ଅର୍ଜ୍ଜୁନ କୃପଙ୍କର ଗଦା ଦେଖି ହସି
ବହୁତ କାଣ୍ଡ ପେଷି ପକାଇଲେ ନାଶି ।
କୃପଙ୍କ ବିରଥ କୁରୁଏ ଜାଣି ପାରି
ପଟପାଟେ ବିନ୍ଧିଲେ ପାର୍ଥେ ବେଢ଼ିକରି ।
ବିରାଟ ପୁତ୍ର ତାଙ୍କ ବାମପଟେ ଘୋଡ଼ା
ରଖି ବିନ୍ଧାଇଲା ପାର୍ଥକୁ ଶରବିଡ଼ା ।
ସେ ଘାତରେ କୁରୁଏ ଦେହକୁ ସମ୍ଭାଳି
ପଳାଇଲେ କୃପଙ୍କୁ ଯେନଣ ନ ଘାଳି ।
ଶିକାର ପଳାଇବା ଦଶା ଦେଖି ଦ୍ରୋଣ
ଧାଇଁଲେ ଯୁଝିବାକୁ ପାର୍ଥକୁ କରି ଟାଣ ।
ଗୁରୁଙ୍କର ଗୁରୁ ଟାଣକୁ ସବ୍ୟସାଚି
ଦେଖିକରି ଆଗ ସେ ନାରିଚ ନ ମୁଞ୍ଚି ।
ବୋଇଲେ ଉତ୍ତରକୁ ଦ୍ରୋଣଙ୍କ ସେନାକୁ
ବାହା ବାବୁ ମୋ ରଥ ଦେଖାଇ ବେଗକୁ ।
ଦ୍ରୋଣ ଅସ୍ତ୍ରଶସ୍ତ୍ରରେ ଅତ୍ୟନ୍ତ ପଣ୍ଡିତ
ଚାରି ବେଦ କରି ଅଛନ୍ତି ସେ ବିଦିତ ।
କ୍ଷମା ଦମ ଆନୃଶଂସ୍ୟ ଯେ ଅରଜବ
ସତ୍ୟ ତାହାଙ୍କଠାରେ କରିଅଛି ଠାବ ।
ଏ ବାହାରେ ଅଛି ମର୍ତ୍ତ୍ୟରେ ଯେତେ ଗୁଣ
ଦ୍ରୋଣଙ୍କୁ ଅଗୋଚର ନୁହଁଇ ସେ ଜାଣ ।
ବୃଦ୍ଧି ହୋଇଲେ ଯୁବା ପରାୟେ ସେ ସ୍ୱାନ୍ତ
ଦେଖାଇ ଯୁଦ୍ଧରେ କରନ୍ତି ବେଗେ ଗତି ।
ଉତ୍ତର ଅର୍ଜ୍ଜୁନଙ୍କୁ ଉତ୍ତର ନ ଦେଇ
ଦ୍ରୋଣଙ୍କ ରଥେ ରଥ ମିଶାଇଲେ ନେଇ ।

## ଦ୍ରୋଣଙ୍କ ସହିତ ଅର୍ଜ୍ଜୁନଙ୍କର ଯୁଦ୍ଧ

ସେ କାଳେ ଦ୍ରୋଣ ଅର୍ଜ୍ଜୁନ ଧରି ଶଙ୍ଖ
ଫୁଙ୍କିଲେ ଆଣ୍ଟେକରି ମନେ ଧରି ସୁଖ ।
ସେ ଦୁହିଁଙ୍କ ଶଙ୍ଖ ଶବଦେ କୁରୁସେନା
କି ଯୁଝିବା ବୋଲି ସେ ହୋଇଲେ ବିମନା ।
ଅର୍ଜ୍ଜୁନ ଦ୍ରୋଣଙ୍କ ରଥରେ ଉଠିଲେ
ତାଙ୍କ ଦୁଇପାଦ ଧରିଣ ସେ ଲୋଟିଲେ ।

ଦ୍ରୋଣ ତାହା ଦେଖିଣ କ୍ଷଣି ଆଇ ତାଙ୍କୁ
ଲଗାଇଲେ ତାଙ୍କ ହୃଦୟେ ହୃଦକୁ ।
ଅରଜୁନ ବୋଇଲେ ସାରି ବନବାସ
ଅଜ୍ଞାତ ବରଷକୁ କଲୁ ଆମ୍ଭେ ଶେଷ ।
ଏବେ ଆସିଅଛୁ ବୈରାଟ ଗାଈପାଇଁ
ଏଥିକି ମୋତେ କ୍ରୋଧ ନୁହ ହେ ଗୋସାଇ
ଆପଣ ଆଗେ ମୋତେ ବିନ୍ଧିଲେଟି କାଣ୍ଡ
ପଛେ ମୁହିଁ ବିନ୍ଧିବି ଧରିଣ କୋଦଣ୍ଡ ।
ଏହା କହି ଅର୍ଜ୍ଜୁନ ରଥରୁ ବାହାରି
ଆସନ୍ତେ ଦ୍ରୋଣଗୁରୁ ଧନୁକୁ ଉଟାରି ।
ତଇଲପିଆ କାଣ୍ଡ ବାଛିଣ ପଚାଶି
ଅର୍ଜ୍ଜୁନଙ୍କ ହୃଦକୁ ବିନ୍ଧିଲେ ଉଦ୍ଦେଶି ।
ସେ କାଣ୍ଡେ ଆସୁ ଆସୁ ଖଣ୍ଡେ ଅରଜୁନ
ଶର ପେଷି କାଟି କରିଲେ ଛିନ୍ନଭିନ୍ନ ।
ଦ୍ରୋଣ ହସ୍ତବେଗ ଦେଖାଇ ଅସ୍ତ୍ର ଦଶ
ଅର୍ଜ୍ଜୁନଙ୍କୁ ବିନ୍ଧିଲେ ହୃଦେ କହି ରୋଷ ।
ଏ ବାହାରେ ତୀକ୍ଷ୍ଣ ମାରଗଣଗଣ
ବିନ୍ଧିଲେ ନେବାକୁ ଅର୍ଜ୍ଜୁନ ଯୋଦ୍ଧାପ୍ରାଣ ।
ସେ ମାର୍ଗଣ ଗଗନ-ଅଙ୍ଗଣେ ଚହଟି
ଆସନ୍ତେ ଅରଜୁନ ପକାଇଲେ କାଟି ।
ଏହି ରୂପେ ଦୁହିଙ୍କ ସମାନ ହୋଇଣ
ଘଡ଼ିଏ ଯାଏ ହେଲା ଜନ୍ମେଜୟ ରଣ ।
ସେ ଦୁହେଁ ତ ଦିବ୍ୟ ଅସ୍ତ୍ରରେ ପଣ୍ଡିତ
ଶରରେ କଲେ ମହୀ ଆକାଶ ମଣ୍ଡିତ ।
ତାହା ଦେଖି କୁରୁସେନା ଏ ତୋଷ କହି
ବୋଇଲେ ଏ ଦୁହିଙ୍କ ପରି ନାହିଁ କେହି ।
ଏହାଙ୍କୁ ଏକା ଏ ଅତ୍ୟନ୍ତ ପଟାନ୍ତର
ଦେଖ ବିଶୁନାହିଁଟି ଯୁଦ୍ଧରେ ଅନ୍ତର ।
କ୍ଷତ୍ରୀ ବିଦ୍ୟାଠାରୁ ନସ୍ତୁର ବିଦ୍ୟା କାହିଁ
ଏଥି ଗୁରୁ ଶିଷ୍ୟ ଯୁଝନ୍ତି କ୍ରୋଧ ବହି ।
ଅର୍ଜ୍ଜୁନ ବିନା ଆନ ଗୁରୁଙ୍କୁ ଯୋଝିବାକୁ
ଆସୁନାହିଁ ବଚନ ଅଛୁ ବୋଲିବାକୁ ।
ସେକାଳେ ଗୁରୁ-ଶିଷ୍ୟ ହୋଇ ମିଶାମିଶି
ହେଲେ ଶରମୂନ ଦେହରେ କଷାକଷି ।
ସେ ଶରରୁ ହୋଇଛୁ କେତେ ଶିଳାସଷା
କେତେକ ହୋଇଅଛି ଶାଣରେ ଲେସା ।

ଏହି ସକାଶୁଁ ସୂର୍ଯ୍ୟ ଅଗ୍ନି ପରି ତେଜ
ବହି ବଢ଼ାଇଲେ ସେ ଦୁହିଁଙ୍କର ଓଜ ।
ଦ୍ରୋଣ ଯେ ଅର୍ଜ୍ଜୁନଙ୍କୁ ଦେଖାଇ ବେଗକୁ
ବିନ୍ଧିଲେ ମାରଗଣ ଉଟାରି ଧନୁକୁ ।
ସେହିରୂପେ ଅର୍ଜ୍ଜୁନ ଗାଣ୍ଡୀବ ଉଟାରି
ବିନ୍ଧିଲେ ଗିରିଭେଦା ଶର ଯୋଖିକରି ।
ତାହା ଅରଜୁନ ହାତରୁ ବେଗେ ଫୁଟି
ପ୍ରଳୟ ଅଗ୍ନିପରି ଆକାଶରେ ଘୋଟି ।
ଦ୍ରୋଣଙ୍କର ବିନ୍ଧିବା ମାର୍ଗଣ ଯେ କୋଟି
ଧାଇଁଥିଲେ ଯୁଦ୍ଧକୁ ତାକୁ ଦେଲେ କାଟି ।
ସେ କାଳେ ଅରଜୁନ ଅସ୍ତ୍ରକୁ ଦେଖାଇ
ବିନ୍ଧିଲେ ଖରପଟେ ଦ୍ରୋଣେ ରଥେ ଥାଇ ।
ଯେହୁରୂପେ ବାଦାରେ ଆବୃତ୍ତ ହୋଏ ସୂର୍ଯ୍ୟ
ସେ ରୂପରେ ଯେ ଶରେ ହୋଇଲେ ଆଶ୍ଚର୍ଯ୍ୟ
ଅଗ୍ନି ଲଗିଥିବା ପର୍ବତର ପରାୟେ
ଜଳିଲେ ଦ୍ରୋଣ ତେଜେ ସେ ଶରଙ୍କର ଘାଏ
ଅର୍ଜ୍ଜୁନ ଶରେ ଦ୍ରୋଣ ହୁଅନ୍ତେ ପରାସ୍ତ
ବିନ୍ଧିଲେ ବାଛି କରି ମନ୍ତ୍ରୀ ଦିବ୍ୟଅସ୍ତ୍ର
ସେ ଅସ୍ତ୍ରେ ଠୋଠୋ ହୋଇ ଗୁଣବାହାରିଲେ
ଅର୍ଜ୍ଜୁନଙ୍କ ଅସ୍ତ୍ରକୁ କାଟି ନ ପାରିଲେ ।
ଅନ୍ୟୋନ୍ୟରେ ହୋଇବାଟରେଭେଟାଭେଟି
ଗମିଲେ ବିଦ୍ୟୁତପରି ଆକାଶେ ଚହଟି ।
ଦ୍ରୋଣ ଯେତେ ଅସ୍ତ୍ର ପ୍ରୟୋଗ କଲେ ରାଗେ
ପୁଙ୍ଖକୁ ମୂନ ଲାଗି ଗମିଲେ ସେ ବେଗେ ।
ତେଣୁ ଏକା ଗୋଟିଏ କାଣ୍ଡପରି ତାହା ।
ମଣି କରି କୁରୁଏ ଧଇଲେ ଉତ୍ସାହା
ଅର୍ଜ୍ଜୁନ ଦ୍ରୋଣଙ୍କର ଶର ଉଲୁକାକୁ
ଦେଖି କରି ପୁଣି ପାଇଲେ ସେ ଭୟକୁ ।
ଦ୍ରୋଣ ଅର୍ଜ୍ଜୁନଙ୍କ ଦେହକୁ ମଣି ସର
ହଂସ ପରି ଆପଣ ପଶିଲେ ସେ ଶର ।
ଦ୍ରୋଣ ଅରଜୁନ ହୋଇଣ ମତ୍ତହସ୍ତୀ
ଯୁଝନ୍ତେ ଶର ବିଷାଣକୁ ଦୁହେଁ ପାତି
ତାହାଙ୍କ ଘର୍ଷଣରୁ ଅଗ୍ନି ହୋଇ ଜାତ
ବଢ଼ିଲା ନକ୍ଷତ୍ରଙ୍କ ଶୋଭାକୁ ବଢ଼ୁତ ।
ସେ ଦୁହେଁ ଯୁଦ୍ଧରେ ଅତ୍ୟନ୍ତ ମହାମନା
ପୁଣି ଦିବ୍ୟ ଅସ୍ତ୍ର କଲେ ସରଜନା ।

ଅର୍ଜ୍ଜୁନ କାଣ୍ଡରେ ଦ୍ରୋଣଙ୍କ କାଣ୍ଡ ଛିଡ଼
ପଡ଼ିଲେ ଆଜ ଶତ୍ରୁ ମଧ୍ୟରେ ଅଜାଡ଼ ।
ଦ୍ରୋଣ ତାହା ନ ସହି ବିନ୍ଧି ଉଗ୍ର କାଣ୍ଡ
ସ୍ମରିଣ ଦେଲେ ତ୍ରିପୁରାକାନ୍ତ ଯିବା ଦାଣ୍ଡ ।
ସେ ଅସ୍ତ୍ର ହେନ ଅର୍ଜ୍ଜୁନ ଅସ୍ତ୍ରପନ୍ତ
ଶାନ୍ତ ହୋଇ ରହିଲେ ପାଇଣ ବିପତ୍ତି ।
ଆଗ୍ନେୟ ବାୟବ୍ୟ ଅଇନ୍ଦ୍ର ଯେ ବାରୁଣ
ଅସ୍ତ୍ରେ ପୁଣି ଅର୍ଜ୍ଜୁନ କଲେ ନିବାରଣ ।
ଅର୍ଜ୍ଜୁନର ଶର ଶବଦେ ଦ୍ରୋଣ ଙ୍କର
ଶର ଶବଦୁଟି ଛପିଲା ନିରନ୍ତର ।
ଦ୍ରୋଣ ଯତ୍ନ କରି କସଠୀର କାଣ୍ଡଟି
କାଟୁ କାଟୁ ଦଶଦିଗରେ ସେତୁ ହୋଟି ।
ହାତୀ ଘୋଡ଼ା ସିପାଇ ପାଇକଙ୍କ ମୁଣ୍ଡ
ଛିଣ୍ଡାଇ ପକାଇଣ ଦେଲା ରଣଦାଣ୍ଡ ।
ନ ପାଇଲା ବଳ ଗୁରୁ ଯେଣୁ ବୁଢ଼ାଠା
କି କରିବେ ସେ ବଳ ପଡ଼ିଲା କଥାଠା ।
ବୀରଙ୍କର କାଟି କୁଣ୍ଡଳ ଭୁଲେ ମୁଣ୍ଡ
ମଣ୍ଡିଲେ ମୁଖପଦ୍ମେ ପାର୍ଥ ରଣଦାଣ୍ଡ ।
ହେଗି ହେଗପରି ସେ ଭେଣ୍ଡାମାନଙ୍କର
କାହୁ ଗଣ୍ଡା ଗଣ୍ଡା ଛିଡ଼ିଣ ନିରନ୍ତର ।
ଗଡ଼ିଲେ ମହୀଦେଶେ ଛଟପଟ ହୋଇ
ରକତ-ବିଷ କ୍ଷତ ମୁଖଦେଶେ ବହି ।
ଦ୍ରୋଣଗୁରୁ ବୁଢ଼ା ଦେଖିଣ ଯୁଦ୍ଧପ୍ରୌଢ଼ି
ଅର୍ଜ୍ଜୁନ ପ୍ରଶଂସା ବସିଲେ ମୁଖେ କାଢ଼ି ।
ଦେଖାଇ ନିଜ ଓଜ ସଜ କରି ଧନୁ
ଧରି କରେ ବିନ୍ଧିଲେ ଭରଦ୍ୱାଜା ସୂନୁ ।
ସେହି କାଳେ ଶୁଭିଲା ଅଶରୀର ଗୀର
ଦ୍ରୋଣ ବିନା କରିବ ପାର୍ଥେ କେ ସମର ।
ତୁମ୍ଭ ଦୁହିଁଙ୍କର ଯୁଦ୍ଧକୁ ଆନ ଯୁଦ୍ଧ
କରିଣ ନ ପାରିବେ ସମଷ୍ଟି ବିବୁଧ ।
ଦେବଦାନବ ମର୍ତ୍ତ୍ୟ ଉରଗ ଗନ୍ଧର୍ବ
ଏ॰ ଙ୍କର ତୁମ୍ଭେ ହେ ଭାଙ୍ଗିବାର ଗର୍ବ ।
ଅର୍ଜ୍ଜୁନ ତ ବହୁତ ବାଣ ଦେଲେ ବିନ୍ଧି
ସେ ଘାତରେ ଦ୍ରୋଣଗୁରୁ ହୋଇଣ ରୁନ୍ଧି ।
ମନେ କଲେ ପାର୍ଥକୁ ହୋଇ ବଳସ୍ମାର
ନୋହିବ ଏ ସଂସାର ଆଉ ଧନୁର୍ଦ୍ଧର ।
ଦ୍ରୋଣ ଅନ୍ତ କରିବାକୁଟି ନିରନ୍ତର
ବିନ୍ଧିଲେ ପାର୍ଥ ପଢ଼ି ଉତ୍ତମ ମନ୍ତ୍ର ।
ଅର୍ଜ୍ଜୁନର ହସ୍ତରୁ ବାଣଗଣ ଫୁଟି
ବାହାରିଲେ ଅନ୍ତକ ପରି ମେଲି ପାଟି ।
ଦେହେ ଦେହ ହୋଇ ସେ ଶର ଲଗା ଲଗି
ଯୋଜନ ଗୁଣିଯାଏ ରହିଲେଟି ଲାଗି ।
ଛିଦ୍ର ହୋଇ ତହିଁରେ କିଛି ନ ରହିଲା
ଏଣୁଟି ସମୀରଣ ଗଳି ନ ପାରିଲା ।
କସ କହିବି ହେ ତୁମ୍ଭଙ୍କୁ ଆଉ ଖଳ
ପ୍ରାଣ ଥିବା ଜନ୍ତୁ କି ପାରିବେ ତା ଗଳି ।
ଅର୍ଜ୍ଜୁନଙ୍କର ଶରସନ୍ଧାନ ଆଦାନ
ସେ କାଳରେ ନ ଦେଖିଲା କାହାରି ନୟନ ।
ଦ୍ରୋଣଙ୍କର ରଥକୁ ଅସ୍ତ୍ର କୋଟି କୋଟି
ଗାଣ୍ଡୀବୁଁ ବାହାରି ରହିଲେ ଆସି ଘୋଟି ।
ଏହା ଦେଖି କ୍ରୁଦ୍ଧ ହୋଇଣ ତାଠକା
ମଲେ ଗୁରୁ ବୋଲି ପାଡ଼ିଲେ ଉଚ୍ଚେ ଡକା ।
ଇନ୍ଦ୍ର ତାହା ଦେଖି କରିଣ ଆସ୍ଥା ଆସ୍ଥା
ବୋଇଲେ ଭଲ ଆଜ ମୋ ଅର୍ଜ୍ଜୁନବତ୍ସା ।

—*—

## ଅଶ୍ୱତ୍ଥାମା ସହିତ ଅର୍ଜ୍ଜୁନଙ୍କ ଯୁଦ୍ଧ

ଅଶ୍ୱତ୍ଥାମା ଦେଖି ବାପଙ୍କ ଏ ଦଶାଟି
ଦେଲେ ଅର୍ଜ୍ଜୁନଙ୍କୁ ଆଣିଣ ରଥ ଗୋଟି ।
ବସ୍ତୁର କଲେ ଆମ୍ଭେ ଅର୍ଜ୍ଜୁନ ସଙ୍ଗତେ
କରିବା ସିନା ଯୁଦ୍ଧ ଜିଣିବା କିଞ୍ଚିତେ
ପୁଣି ଅର୍ଜ୍ଜୁନ ସେ କରି କୋପଦୃଷ୍ଟି
ସରଜିଲେ ସେ ଅଶ୍ୱତ୍ଥାମା କାଣ୍ଡବୃଷ୍ଟି ।
ପାଆନ୍ତୁ ଦ୍ରୋଣ ହବ ଅରଜୁନ ଶାର
କଲେ ଅଶ୍ୱତ୍ଥାମା ସଙ୍ଗରେ ସମର ।
ଦ୍ରୋଣ ଅର୍ଜ୍ଜୁନଙ୍କ ଶରରେ ପୀଡ଼ା ପାଇ
ଥିଲେ ଏହି ଛିଦ୍ରରେ ଗଲେ ସେ ପଳାଇ
ଅର୍ଜ୍ଜୁନ ଅଶ୍ୱତ୍ଥାମା ଅନ୍ୟୋନ୍ୟରେ ଯୁଦ୍ଧ
ଆରମ୍ଭିଲେ ମାନସେ ଧରି ଅତି କ୍ରୋଧେ ।
ସେ ଦୁହିଁଙ୍କର ଶର ଜାଲରେ ଆବୃତ
ଧୂଅନ୍ଧେ ନ ଦିଶିଲେ ତ୍ରିପୁରାଦେବୀ କାନ୍ତ ।
ଆକାଶରେ ପକ୍ଷୀଏ ନ କରିଣ ଗତି
ସେ ଯୁଦ୍ଧକୁ ଦେଖିଣ ରହିଲେ ନିବର୍ତ୍ତି ।

ଅର୍ଜ୍ଜୁନଙ୍କର କାଣ୍ଡ ଅଶ୍ୱତ୍ଥାମା ଘୋଡ଼ା
ମାନଙ୍କ ଅଙ୍ଗେ ବାଜ ସରଜଲେ ପୀଡ଼ା ।
ଅଶ୍ୱତ୍ଥାମା ଅର୍ଜ୍ଜୁନ ଛିଦ୍ର ଅନୁସରି
କାଟିଲେ କ୍ଷୁରକାଣ୍ଡେ ଗୁଣ ଧନୁ ଧରି ।
ତା ଦେଖି ଧୃଷ୍ଟ କର୍ଣ୍ଣ କୃପ ହୋଇ ତୋଷ
ପ୍ରଶଂସିଲେ ଟି ଦ୍ରୋଣ ସୁତଙ୍କୁ ବିଶେଷ
ଅଶ୍ୱତ୍ଥାମା ରଥକୁ ଆଗକୁ ବୁହାଇ
ଅର୍ଜ୍ଜୁନ ବୁକୁକୁ ବିନ୍ଧିଲେ ଶେଷ ବହି ।
ଅରଜୁନ ତାହା ଦେଖି କରି ହସିଦେଲେ
ଧନୁରେ ଗୁଣ ଯୋଡି ଶାୟକ ମୁଞ୍ଚିଲେ ।
ଦୁହିଁଙ୍କର ଯୁଦ୍ଧକୁ ଦେଖିଣ ସମାନ
କୁରୁମାନେ ରହିଲେ ଛାଡ଼ି ଆୟୋଜନ ।
ସେ ଦୁହେଁ କେତେବେଳେ ସନ୍ଧିଲେ ବିନ୍ଧିଲେ
କୁରୁସେନାମାନେ ତା ଜାଣି ନ ପାରିଲେ ।
ଅଶ୍ୱତ୍ଥାମାଙ୍କର ତୁଣୀରୁ କାଣ୍ଡଯାକ
ସରନ୍ତେ ଅର୍ଜ୍ଜୁନ ହସିଲେ ଅଧିକ ।
ଏହିକାଳେ କର୍ଣ୍ଣ ଯେ କର୍ଣ୍ଣଯାଏ ଗୁଣ
ଓଟାରି ପାର୍ଥଙ୍କୁ ବିନ୍ଧିଲେ ବାଣଗଣ ।
କର୍ଣ୍ଣଙ୍କୁ ଦେଖିଣ ଅର୍ଜ୍ଜୁନ କୋପ ବହି
ବୋଇଲେ ଏହା ଗର୍ବ ତେବେ ଭାଜନାହିଁ ।
ଏବେ ଏହା ମାଇପ ହାତୁଁ ଖଣ୍ଡୁବାହି
ଭଞ୍ଜାଇବି ଆଜ ମୁଁ ଗଳେ ଯହିଁ ତହିଁ ।
ଏତେ କାଳେ କୁରୁ ଏ ଅଶ୍ୱତ୍ଥାମାଙ୍କର
କରକାଣ୍ଡଯାକ ସାଉଁଟି ତରି ତରି ।
ହୋଇ ତାଙ୍କ ତୂଣୀ ଭିତରେ ପୁରାଇଲେ
ଅର୍ଜ୍ଜୁନଙ୍କୁ ଆଜ ଯୁଝ ଆହେ ବୋଇଲେ ।

—*—

## କର୍ଣ୍ଣ ସହିତ ଅରଜୁନଙ୍କ ଯୁଦ୍ଧ

ଅର୍ଜ୍ଜୁନ ଅଶ୍ୱତ୍ଥାମାଙ୍କୁ ଛାଡ଼ିଦେଇ
କର୍ଣ୍ଣ ପରେ ବିପାଠ ବିନ୍ଧିଲେ ନଠାଇ ।
ବୋଇଲେ ଆହେ ବିକର୍ଣ୍ଣ କହୁଥାଅ ଠାଣ
ଦେଖାଅ ବଳ ମୋତେ ବିନ୍ଧ ମାରଗଣ ।
ଥରେ ତ ପଳାଇଲ ମୋ ଆଗରୁ ଭଜ
ଏବେ ଆସିଅଛ କି କହ ପୋଛି ଲାଜ ।
ବିସ୍ମରିଛ ମନେ ମୁଁ ପେଷି ମାରଗଣ
ଭଙ୍ଗିଦେବି ତୁମ୍ଭର ଯୁଦ୍ଧ ମଜ୍ଜା ଠାଣ ।
କହୁଥାଅ ପୂର୍ବେ କୁରୁଙ୍କୁ ଯେଉଁ ରୂପେ
ଏବେ ତାହା କର୍ଣ୍ଣ ଦେଖାଅ ମୋତେ ଆପେ
ଦ୍ରୌପଦୀଙ୍କର ଦୁଃଖ ଦେଖି କରି ହସି
ସୁଖ ଜଳରେ ପରା ଯାଉଥିଲ ଭାସି ।
ଆଜ ମୋର କାଣ୍ଡକୁ ଦେକ ଯେବେ ନାଶି
ତେବେ ସିନା ହେବ ଜଗତେ ପରଶଂସି ।
ନୋହିଲେ ବୋଲିବେଟି ନ ଜାଣିବା ପଣ
ଆଚରି କର୍ଣ୍ଣ ଲୋଡ଼ି ଆଣିଲ ମରଣ ।
ମୋହର କ୍ରୋଧ ବିଷଧର ଆଶୀବିଷ
ମୁଖେ ପଡ଼ିଲନି ତ ଛାଡ଼ ଜୀବ ଆଶ ।
କର୍ଣ୍ଣ ବୋଇଲେ ଆହେ ବୋଲୁଅଛ ଯାହା
ଦେଖାଅ ତାହା ହୋଇଛ ତ ଧନୁବାହା ।
ବଳକୁ ପ୍ରତି ତୁମ୍ଭ ବଚନ ଅଧିକ
ମଣୁଛନ୍ତି ଶୁଣିଟି ଯୁଦ୍ଧେ ଥିବା ଲୋକ ।
ଯେବେ ତୁମ୍ଭ ଦେହରେ ପରାକ୍ରମ ଅଛି
ନ କହି କରି ତାହା କର ମୁଁ ବୋଲୁଛି ।
ମୋ ବାଣେ ଘାଇ ନ ଥିବାରୁ ଅଙ୍ଗସୀମା
ତୁମ୍ଭର କହୁଅଛ ବସି ଏ ଗାରିମା ।
ଇନ୍ଦ୍ର ଯେବେ ଯୁଝିବେ କରେ ବଜ୍ର ଧରି
ତେବେ ମୋ ବାଳ ବଙ୍କା ନ ପାରନ୍ତି କରି ।
ବାଙ୍କଟଙ୍କେ ଗୁଳୁଛନ୍ତି ତ ତୁମ୍ଭ କାଣ୍ଡେ
ତହିଁକି ନକ ଭସ୍ମ ଧରିବି ମୁଁ ପିଣ୍ଡେ ।
ଅର୍ଜ୍ଜୁନ ବୋଇଲେ ଦେଖୁ ତ ଥିଲ ତୁମ୍ଭେ
ତୁମ୍ଭ ଭାଇ ମୁଣ୍ଡ କାଟିଲୁ ଶରେ ଆମ୍ଭେ ।
ଏ ବାହାରେ ତୁମ୍ଭଙ୍କୁ ଦେଲି ଶର ପୀଡ଼ା
ପଳାଇଲ ଯୁଦ୍ଧରୁ ଛାଡ଼ି ଦେଇ ବ୍ରୀଡ଼ା ।
ଯେବେ ସେ କଥା ଏବେ ତୁମ୍ଭ ମନେ ନାହିଁ
ଚତୋଅ ତା ଗାଣ୍ଡିବ ଶର ଦେହେ ବହି ।
ଏହା କହି କର୍ଣ୍ଣ କବଚ ଭେଦିବାକୁ
ବାଛି ଶର ବିନ୍ଧିଲେ ଦେଖାଅ ହୃଦକୁ ।
କର୍ଣ୍ଣ ଅର୍ଜ୍ଜୁନଙ୍କ ଶରକୁ ହୃଦେ ବହି
ଉଆଇଲେ ସେ ଶରବୃଷ୍ଟି କ୍ରୁଦ୍ଧ ହୋଇ ।
ଅର୍ଜ୍ଜୁନଙ୍କର ଧ୍ୱଜ ଘୋଡ଼ାଙ୍କ ପିଣ୍ଡକୁ
ଲଗାଇ କରି ମଧ୍ୟ ବିନ୍ଧିଲେ କାଣ୍ଡକୁ ।
ଅର୍ଜ୍ଜୁନ ତା ନ ସହି ବିନ୍ଧି ମାରଗଣ
କାଟିଲେ କର୍ଣ୍ଣଙ୍କ ବିନ୍ଧିବା ବାଣଗଣ ।

କର୍ଣ୍ଣଙ୍କୁ ଆଉ ଶର କଡ଼ାଇ ନ ଦେଲେ
କାଟୁଁ କାଟୁଁ ଶରେ ତା କାଟି ପକାଇଲେ
କର୍ଣ୍ଣଙ୍କର ଧନୁକୁ ପକାଇଣ କାଟି
ବୋଇଲେ ରହିଥାଅ ହେ ସୁତବେଟାଟି ।
ତାହା ଶୁଣି କର୍ଣ୍ଣ ଫିଙ୍ଗିଲେ ଶକ୍ତି ଟେକ
ଅର୍ଜ୍ଜୁନ କଲେ ତାହା ବାଣେ ଟିକ ଟିକ ।
କର୍ଣ୍ଣଙ୍କୁ ଯେତେ କୁରୁ ଜଗି ରହିଥିଲେ
ଅର୍ଜ୍ଜୁନ ଶର ସଙ୍ଗ ଅଙ୍ଗକୁ ସେ କଲେ ।
ଏଥୁ ଅନ୍ତେ ପାର୍ଥ କର୍ଣ୍ଣଙ୍କୁ ଘୋଡ଼ା ଚାରି
ଶାୟକ ନାୟକରେ ପକାଇଲେ ମାରି ।
ଜ୍ୱଳନ ପରି ଜ୍ୟୋତି ଶର ସବ୍ୟସାଚୀ
ଧନୁରେ ଯୋଚି କର୍ଣ୍ଣ ହୃଦ ଦେଲେ ମୁଞ୍ଚି ।
ସେ ଶର ନମୁଚି ବଇରି ବଜ୍ର ପରି
ବାହାରିଲେ ଯୁଦ୍ଧ ଦାଣ୍ଡରେ ଗର୍ଜ୍ଜି କରି ।
କର୍ଣ୍ଣଙ୍କର ହୃଦୟ ସାଞ୍ଜୁକୁ ଫୁଟିଲା
ପିଠିରେ ନିକଳି ମହୀରେ ଖେଦି ଗଲା ।
କର୍ଣ୍ଣ ସେ ଘାତେ ଇଷି ବୋଲି ଘୁଡି ଧରି
ପଳାଇଲେ ଉତ୍ତର ଆଡେ ମୁହଁ କରି ।
ଏହା କରି ସାରି ଅର୍ଜ୍ଜୁନ ମହାବୀର
ଉତ୍ତରକୁ ଚାହିଁଣ କହିଲେ ଉତ୍ତର ।
ଯେଉଁଠାରେ ଭୀଷ୍ମ ଅଛନ୍ତି ସେନା ଘେନ
ସେହିଠାକୁ ମୋ ରଥ ବାହା ଏହିକ୍ଷଣି ।
ଉତ୍ତର ବୋଇଲେ ସେଠାକୁ ତୁମ୍ଭ ଘୋଡ଼ା
ବାହି ନ ପାରିବି ହୋଇ ମୁଁ ରଥେ ଛିଡା
ମୋ ଦେହରେ ଦେଖ ବାଜିଛି ଶରବିଡା
ଏ ସକାଶୁଁ ପାଉଅଛି ମୁଁ ଅତିପୀଡ଼ା ।
ଏହିରୂପେ ଆଉ ଘଡ଼ିଏ ତୁମ୍ଭେ ଯୁଦ୍ଧ
କଲେ ଛାଡ଼ି ଦେବି ମୁଁ ପରାଣକୁ ସଧ ।
ତୁମ୍ଭର ଦିବ୍ୟ ଅସ୍ତ୍ର ତେଜକୁ ନ ସହି
ମୋହର ମୁହଁ ଦେଖି ହେଉଛି ବୁଲାଇ ।
ମନୁଷ୍ୟମାନଙ୍କର ଅନ୍ତସୁଟାଗନ୍ଧ
ମୋର ନାକପୁଡ଼ାକୁ ଦହୁଅଛି ରୁନ୍ଧ ।
ଏହି ସକାଶୁଁ ମୋତେ ମାଡ଼ି ଅଛି ଦାନ୍ତ
ପୁଣି ତ ପଡ଼ୁଅଛି ଦେହୁ ଖସି ତାନ୍ତ ।
ମୋ ଦେହରେ ଏରୂପେ ଯୁଦ୍ଧ ଶୁଣିବାର
କରି ମୁଁ ନାହିଁ ଆହେ ଅରଜୁନ ବୀର ।
ହାତୀ ଘୋଡା ସେ ଧନୁ ଶଙ୍ଖଙ୍କ ଶବଦେ
ନ ଶୁଭୁଛି ମୋର କାନକୁ କଥା ପଦେ ।
ଗୁଣରେ କାଣ୍ଡ ସନ୍ଧି ବନ୍ଧିବାର ମୁହିଁ
ତୁମ୍ଭ ହସ୍ତ ବେଗେ ନୟନେ ଦେଖିନାହିଁ ।
ଏତେ ବେଳଯାଏ ଥିବାରୁ ଦେହେ ଜ୍ଞାନ
ନାହିଁ କରୁଥିଲି କି ବାହିବାକୁ ଯାନ ।
ଅର୍ଜ୍ଜୁନ ବୋଇଲେ ହେ ନେଇ କରି ଯଶ
ତୁଚ୍ଛା ବସି କମ୍ପା ତା କରୁଅଛ ନାଶ ।
ଧୈର୍ଯ୍ୟ ଧରି ଏବେ ଟିକଏ ରଥ ବାହି
ନେଲେ ମୁଁ ଶତ୍ରୁକୁଳଯାକ ଦେବି ଦହି ।
ଆଗ ଭୀଷ୍ମଙ୍କର କାଟିଣ ଧନୁର୍ଗୁଣ
ପଛେ ତାଙ୍କ ଗଣ୍ଡି ପୋଡ଼ିବି ବିନ୍ଧି ବାଣ ।
ଗାଣ୍ଡିବ ଧନୁ କେଉଁ ହାତେ ମୁଁ ବିନ୍ଧିବି
ତାହା ଟି ଶତ୍ରୁମାନେ ନ ପାରିବେ ଭାବି ।
ଶତ୍ରୁମାନଙ୍କର ଯେ ରକତରେ ନଦୀ
ବହିଯିବ ଦେଖ ଏ ମହୀଦେଶ ଭେଦି ।
ପାଣି ପାଦ ବାହୁ ଶାଖାଏ ସୈନ୍ୟବୃକ୍ଷ
ଛିଣ୍ଡାଇବି ଶରେ ଦେଖିବେ ଲୋକମୁଖ୍ୟ ।
କୁରୁସେନାମାନଙ୍କୁ ମାରନ୍ତେ ଚହଟି
ଦେଖିବ ସବୁଆଡ଼େ ଯିବ ବାଟ ଫିଟି ।
କାଳକେୟ ପୌଲମମାନେ ମହାବଳୀ
ଏହାଙ୍କର ଗର୍ବ ମୁଁ ଅଛି ଦଳେ ଦଳି ।
ଏ କୁରୁମାନେ କେତେକର ଟି ଅଟନ୍ତି
ଏଥିକି କେତେ ଚିନ୍ତା ଧରି ବସି ମତି ।
ଇନ୍ଦ୍ର ମୋତେ ଦେଇଛନ୍ତି ମୁଢ଼ଦୃଷ୍ଟି
ଶୀଘ୍ର ହସ୍ତ ଦେଇ ଅଛନ୍ତି ପରମେଷ୍ଠୀ ।
ପ୍ରଜାପତି ଦେଇ ଅଛନ୍ତି ବିନ୍ଧିବାର
ଶିଖାଇ ଭଲ କରି ଶୁଣ ହେ ଉତ୍ତର ।
ନିବାତ କବଚକୁ ମାରିଛି ମୁଁ ବାଣେ
ନର କେହି ମୋତେ ପାରିବ ଯୋଟି ରଣେ
ସଇନ-ତୃଣ ରଥ-ପର୍ବତେ-ବହୁତ
ନର ହସ୍ତୀମାନେ ତ ହୋଇଛନ୍ତି ସ୍ଥିତ ।
ତାହାକୁ ମୋ ଶାୟକ-ସିଂହକୁ ପ୍ରହାରି
ଦେଖିବ ପଳାଇବ ବଳକୁ ବିଦାରି ।
ପାର୍ଥ ଏ ବଚନ ଶ୍ରାବଣମାତ୍ର ହେଲା
ଉତ୍ତରର ଉତ୍ସାହ ଘନ ବଢ଼ାଇଲା ।

ଏ ସକାଶୁଁ ଉତ୍ତର ଭୀଷ୍ମ ପାଖେ ରଥ
ଲଗାଇ ବୋଇଲେ ହେ ଯୁଦ୍ଧ କର ପାର୍ଥ ।

—*—

## ଭୀଷ୍ମଙ୍କ ସହିତ ଅର୍ଜ୍ଜୁନଙ୍କର ଯୁଦ୍ଧ

ଭୀଷ୍ମ ଅର୍ଜ୍ଜୁନଙ୍କର ଆସିବାର ଦେଖି
ବିନ୍ଧିଲେ ତୀକ୍ଷ୍ଣକାଣ୍ଡ ନୋହି ଅତି ଦୁଃଖୀ ।
ଅରଜୁନ ଭୀଷ୍ମଙ୍କ ରଥେ ରଥ ଯୋଡି
ପକାଇଲେ କାଟିଣ ତାହାଙ୍କ ଧ୍ୱଜଟି ।
ଦୁଃଶାସନ ବିକର୍ଣ୍ଣ ଦୁଃସହ ବିବିଂଶତି
ଏମାନେ ନ ସହିଣ ଭୀଷ୍ମଙ୍କ ବିପତ୍ତି ।
ଅର୍ଜ୍ଜୁନଙ୍କୁ ବେଢ଼ି ଶାୟକ ସରଜନ
କଲେ ମୁଖକୁ ମେଲି କରି ଗରଜନ ।
ଦୁଃଶାସନ ଉତ୍ତର ଦେହେ କାଣ୍ଡ ବିନ୍ଧି
ଅର୍ଜ୍ଜୁନ ବକ୍ଷରେ ବିନ୍ଧିଲେ କାଣ୍ଡ ସନ୍ଧି ।
ଅରଜୁନ କାଣ୍ଡରେ ଦୁଃଶାସନ ଧନୁ
କାଟି ପକାଇଲେ ଶରରେ ତା'ର ତନୁ ।
ଦୁଃଶାସନର ତ ନାହିଁଟି କଛି ବ୍ରୀଡ଼ା
ଛକାଇଲା ପଛକୁ କାଢ଼ି କରି ଭଡ଼ା ।
ବିକର୍ଣ୍ଣ କାଣ୍ଡ ଦେଖି ଅର୍ଜ୍ଜୁନ କୋଦଣ୍ଡ
କାଣ୍ଡେ ତା ଲଲାଟେ ହୋଇଲେ ଯାଇ ଗୁଣ୍ଡ
ଏ ସକାଶୁ ବିକର୍ଣ୍ଣ ରଥେ ପଡ଼ି ମରି
ରହିଲା ଭୁନ ହୋଇ ଅଦୃଷ୍ଟ ସୁମରି ।
ଦୁଃସହ ବିଂଶତ ବିନ୍ଧିଲେ ଯେ କାଣ୍ଡ
ଅରଜୁନ ତା ଶରେ କଲେ ଦୁଇ ଖଣ୍ଡ ।
ସେ ଦୁହିଙ୍କ ଗଣ୍ଡିକ ଦିକାଣ୍ଡ ବଜାଇ
ଘୋଡ଼ାକୁ ଦେଲେ ଯମପୁରେ ପଠିଆଇ ।
ଏ ସକାଶୁଁ ସେ ଦୁହେଁ ବସି ଆନ ରଥେ
ପଳାଇଲେ ପଥକୁ ଛାଡ଼ିଣ ଅପଥେ ।
ଏ ଅନନ୍ତରେ କୁରୁ ମହାରଥୀ କୁଳ
ଅର୍ଜ୍ଜୁନ ସଙ୍ଗତରେ ଆରମ୍ଭିଲେ ରୋଳ ।
ଅର୍ଜ୍ଜୁନ ମହାରଥୀକୁଳ-ଗିରି ଦେଖି
ଶାୟକ-ଘନେ ଘୋଡ଼ାଇଲେ ହୋଇ ସୁଖୀ
ଭେରୀ ଶଙ୍ଖ ହାତୀଙ୍କ ବୃଂହିତ ଶବଦ
ଶୁଭିବାରେ କର୍ଣ୍ଣକୁ ନ ଶୁଣିଲା ପଦ ।
ମଧ୍ୟାହ୍ନ ସୂର୍ଯ୍ୟପରି ପାର୍ଥ ତେଜେ ଜଳ
ଦେଲେ ଶର ଜରଣେ ଶତ୍ରୁ ସୈନ୍ୟ ଦଳ ।
ତେବେ ରଥୀ ହାତୀ ପାଇକେ କାଣ୍ଡ ଘାତେ
ମହୀକି ଶେଯ କରି ଶୋଇଲେ ଭୂରିତେ ।
ତମ୍ବା ଲୁହା ସୁନା କବଚେ ଶର ଛାଡ଼ି
ତଳରେ ପଡ଼ି କଲେ ଝଣ ଝଣ ରଡ଼ି ।
ଗାଣ୍ଡୀବଧନୁଙ୍କ ନ ସହି ଗରଜନ
ପଳାଇଗଲେ ଦୁର୍ଯ୍ୟୋଧନ ରାଜା ସୈନ୍ୟ ।
ଅର୍ଜ୍ଜୁନ କାଣ୍ଡେ ମୁଣ୍ଡ ଛେଦା ଗଣ୍ଡି ପଡ଼ି
ନନ୍ଦାକଲେ ହାଣି ଥୋଇବା ମୁଣ୍ଡାଗଡ଼ି ।
ହାତୀ ଘୋଡ଼ା ଓଠ ପାଇକଙ୍କର ଶବେ
ଛିଦ୍ର ଯେ ନ ରହିଲ ରଣଭୂମେ ଲବେ ।
ତେଣୁ ମଡ଼ାକାଠ ଭସାଇ ରକ୍ତନଦୀ
ବହିଲା କୁରୁସୈନ୍ୟ-ଗିରି ମଧ୍ୟ ଭେଦି ।
ବୀରଙ୍କର ଫିଟିବା ବାଳଟି ଶିଉଳୀ
ହୋଇ ସେ ନଦୀ ପାଣିଯାକେ ଗଲା ମେଲି ।
ଟେକି କରିଣ ମହାସୁଖେ ପାଗ ଫେଣା
ନାଗକୁଳ ଶାନ୍ତ ରମିଲେ ନୋହି ବଣା ।
କୁମ୍ଭୀରଙ୍କର ପରି ହୋଇଣ ଚଞ୍ଚଳ
ଭାସିଲେ ସେ ନଦୀ ମଧ୍ୟରେ ଗଦାକୁଳ ।
ବଡାଉ-ଆବର୍ତ୍ତେ ବୁଲୁରେ ଦାଉ ଦାଉ
ଦେଖିବା ଲୋକଙ୍କ ଥୋଇଲା ବୁହୁଁ ବୁହୁଁ ।
ଢ଼ାଲ କଚ୍ଛପରେ ଯେ ହୋଇକରି ମଣ୍ଡି
ବହିଲା ସବୁ ବେଗେ ହୋଇଣ ଦଗଣ୍ଡି ।
ସେ ନଦୀର ଭୁଠପଥର ପରି ହାତୀ
ଦିଶିଲେ ଦିତଟେ ହୁଅନ୍ତେ ପ୍ରାଣ ମଛି ।
ରଥ-ନାବୁଟିକ ତ ଖଣ୍ଡାର ଝଲକ
ଅଖାଲ ହୋଇ କଲା ଶୋଭାରେ ଅଧିକ ।
ରଥୀଙ୍କର ଶଙ୍ଖମାନେ ହୋଇଣ ଗୋଡ଼ି
ରହିଲେ ସେ ରକତନଦୀ ମଧ୍ୟେ ବୁଡ଼ି ।
ଏରୂପେ ନଦୀ କରି ଅରଜୁନ ବୀର
କରାଇଲେ ପାନ ବାଲୁଆ ଶାଗୁଣାର ।
ଗାଣ୍ଡୀବ ଧନୁ ଭେଳା ଧରି ସେହି ଏକା
ବିହରିଲେ ତହିଁରେ ନୋହିଣ ଚାଟକା ।
ଆଉ ଯେତେ ତକୁରୁ ରଥୀଏ ଜାଇଥିଲେ
ଆଖି ଦୁଇ ତରଟି ଦେଇ ତା ଦେଖିଲେ ।
ଦୁର୍ଯ୍ୟୋଧନ କର୍ଣ୍ଣ ଯେ ବିବିଂଶତି ଦ୍ରୋଣ
କୃପ ଅଶ୍ୱତ୍ଥାମା ଓଟାରି ଧନୁର୍ଗୁଣ ।

ଅର୍ଜ୍ଜୁନଙ୍କୁ ଯୁଝିବା ମନ କରି ରାଗେ
ଶରମାନ ଧନୁରୁ ବରଷିଲେ ବେଗେ ।
ଅରଜୁନ ତାଙ୍କ ଆଗରେ ରଥ କରି
ଏହି ମଧ୍ୟେ ବିନ୍ଧିଲେ ଧନୁକୁ ଟଙ୍କାରି ।
କୃପ ଦ୍ରୋଣ କର୍ଣ୍ଣ ମନରେ ଧରି କୋହ
ଶାୟକରେ ଘାଇଣ ଦେଲେ ପାର୍ଥ ଦେହ ।
କହି ଦେବେ ପାର୍ଥ ସେ ଶର-କିରଣକୁ
ତେଜରେ ରବି ପରି ବଶିଲେ ଦୂରକୁ ।
ଇନ୍ଦ୍ରଙ୍କ ଅସ୍ତ୍ରକୁ ଅର୍ଜ୍ଜୁନ ହସି ହସି
ଗାଣ୍ଡୀବରେ ସରଜିଲେଟି ହୋଇ ରୋଷୀ ।
ସେ ଅସ୍ତ୍ର ଯିବା ଘାତେ କମ୍ପାଇ ନୃଦେହ
ଦ୍ରୋଣଆଦି ରଥିଙ୍କି କରାଇଣ ମୋହ ।
ପାର୍ଥକର ମେଘେ ଗାଣ୍ଡୀବଧନୁ-ବିଜୁ
ଚହଟି ବଣିଲା ନେତ୍ରକୁ ଅତି ମଞ୍ଜୁ ।
ତା ଟଙ୍କାର ଗର୍ଜ୍ଜନେ ଶାୟକ ତଡ଼ିକ
ପ୍ରହାର କଲା ଶତ୍ରୁ ସୈନ୍ୟ ବୃକ୍ଷଯାକ ।
ତାହା ଦେଖି କୁରୁସେନାଏ ମେଲି ପାଟି
ବୋଇଲେ ଆଜ ନିଶ୍ଚେ ଯିବା ଯମ ଭେଟି ।
ସେହି କାଳେ ଆସି ଟେକାଇ ଶ୍ୱେତଛତ୍ର
ଅର୍ଜ୍ଜୁନଙ୍କୁ ଯୁଝିଲେ ଶାନ୍ତନୁଙ୍କ ପୁତ୍ର ।
ପୁଣି ଭୀଷ୍ମ ଶଙ୍ଖଟି ମୁଖଦେଶେ ଧରି
ବଜାଇଲେ ଅତିଶୟରେ ଆଣ୍ଠେ କରି ।
ଦୁର୍ଯ୍ୟୋଧନ ଶୁଣି ଫୁଲାଇ ଦେଇ ଛାତି
ବୋଇଲା ନିଶ୍ଚେ ମଲା ସୁଭଦ୍ରାଙ୍କ ପତି ।
ନୋହିଲେ କମ୍ପା ଭୀଷ୍ମ ରଥୀକୁଳ ରାଣ
ବଜାଅନ୍ତେ ଶଙ୍ଖଟି କରି ଏଡ଼େ ଟାଣ ।
ଭୀଷ୍ମ ଅର୍ଜ୍ଜୁନଙ୍କର ଧ୍ୱଜକୁ ଉଦ୍ଦେଶି
ଆଠୋଟି କାଣ୍ଡ ବାଛି ବିନ୍ଧିଲେ ହସି ହସି ।
ସେ କାଣ୍ଡ ଅର୍ଜ୍ଜୁନଙ୍କ ଧ୍ୱଜ ବାନରକୁ
ପୀଡ଼ା ଦେଲେ ଦେଖାଇ ଆପଣା ବଳକୁ ।
ଅର୍ଜ୍ଜୁନ ଭଲ କରି ବିନ୍ଧି ଭଲକାଣ୍ଡେ
ଭୀଷ୍ମଙ୍କ ଛତ୍ର ଛେଦି ପକାଇଲେ ଖଣ୍ଡେ ।
ଧ୍ୱଜକୁ କାଣ୍ଡକରେ କାଟିଣ ବେଗାଇ
ମହୀଦେଶେ କରିଡ଼ ଶୋଇ ଦେଲେ ନେଇ ।
ଇନ୍ଦୁପାର୍ଶ୍ୱି ସାରଥିଙ୍କର ହରି ପ୍ରାଣ
ବିନ୍ଧିଲେ ପିତାମହ ଭୀଷ୍ମେ ପୁଣି ବାଣ ।

ଭୀଷ୍ମ ଦିବ୍ୟ ଅସ୍ତ୍ରଟି ଧନୁରେ ସରଜି
ଅରଜୁନ ସଙ୍ଗରେ ଯୁଝିଲେ ଗରଜି ।
ଯେ ରୂପେ ପୂର୍ବେ ବଳି ଇନ୍ଦ୍ର କଲେ ରଣ
ସେ ରୂପେ ସେ ଯୁଝିଲେ ଦୁହେଁ ଅତି ଟାଣ ।
ଭୀଷ୍ମ ଅରଜୁନ କାଣ୍ଡକୁ କାଣ୍ଡ ବାଜି
ଜାତ କରାଇଲେ ଯେ ଅଗ୍ନିକଣା ରାଜି ।
ଅଲ୍ଲକଟନ୍ତ ପଛି ଗାଣ୍ଡୀବ ଧନୁବର
ସବୁରି ନୟନକୁ ହୋଇଲା ଗୋଚର ।
ଭୀଷ୍ମ ତାହା ଦେଖି ସରଜି ଶରଧାର
ଚୌଦିଗ ଆକାଶ ଅଙ୍ଗଣ କଲେ ତୋର ।
ଆସୁଥିଲେ କୋଟି କରାଟି ଶରକୋଟି
ଭୀଷ୍ମଙ୍କ ଶର ଯାଇ ପକାଇଲେ କାଟି ।
କୁରୁମାନେ ଦେଖି ବୋଇଲେ ଭୀଷ୍ମ ରଥୀ
ଭଲ ପକାଇଲେ ଅର୍ଜ୍ଜୁନ ବଳ ମଥି ।
କୃଷ୍ଣ ଭୀଷ୍ମ ଦ୍ରୋଣଙ୍କ ବିନା ଅର୍ଜ୍ଜୁନଙ୍କୁ
ଯୁଝିବାକୁ କେହିଟି ନାହିଁ ଗଣନାକୁ ।
ଯେକାଳେ ଭୀଷ୍ମ ଅରଜୁନ ଅସ୍ତ୍ରଘାତେ
ବୁଜାଇଲେ ସବୁରି ନେତ୍ରକୁ ଭୁରତେ ।
ପ୍ରଜାପତ୍ୟ ବାୟବ୍ୟ ବାରୁଣ ଆଗ୍ନେୟ
କୌବେର ଐନ୍ଦ୍ର ଯାମ୍ୟ ଆଦି ଅସ୍ତ୍ରଚୟ ।
ଅନ୍ୟୋନ୍ୟରେ ପ୍ରହାର କରି ଦୁଇ ବୀରେ
ଯୁଦ୍ଧ କଲେ ବିଜୟ ପାଇବା ଇଚ୍ଛାରେ ।
ତିନିଲୋକ ତାହା ଦେଖିଣ ପ୍ରଶଂସିଲେ
ସାଧୁ ଭୀଷ୍ମ ସାଧୁ ଅର୍ଜ୍ଜୁନ ସେ ବୋଇଲେ ।
ତୁମ୍ଭ ବିନା ଆନ ମନୁଷ୍ୟ ଏ ଅସ୍ତ୍ରଙ୍କୁ
ଥାଉ କରିବା ତାହା କଷ୍ଟ ଜାଣିବାକୁ ।
ଏହିରୂପେ ସେ ଦୁହେଁ ଅସ୍ତ୍ରଯୁଦ୍ଧ ସାରି
ପୁଣି ହେଲେ ଦେହକୁ କାଣ୍ଡ ମରାମରି ।
ଅର୍ଜ୍ଜୁନ ତା ନ ସହି ବିନ୍ଧି କ୍ଷୁରକାଣ୍ଡ
କାଟି ପକାଇଲେଟି ଭୀଷ୍ମଙ୍କ କୋଦଣ୍ଡ ।
ନିମିଷ ମାତ୍ରକରେ ଭୀଷ୍ମ ଆନ ଧନୁ
ଧରିଣ କମ୍ପାଇଲେ ଅର୍ଜ୍ଜୁନଙ୍କ ତନୁ ।
ଅର୍ଜ୍ଜୁନ ତା ଦେଖି ପଥର ଲେସାକାଣ୍ଡ
ଲକ୍ଷ କଲେ ଯୋଖି ସେ ଭୀଷ୍ମଙ୍କର ପିଣ୍ଡ ।
ଦୁହେଁ ତ ଦିବ୍ୟାସ୍ତ୍ରରେ ଅଟନ୍ତି ପଣ୍ଡିତ
ଏଣୁ ଊଣା ଅଧିକ ନ କଳିଲା ନେତ୍ର ।

*

ଅର୍ଜ୍ଜୁନ ଯେ ରୂପେ ବିନ୍ଧିଲେ କାଣ୍ଡକୋଟି
ଭୀଷ୍ମ ସେହିରୂପେ ବିନ୍ଧିଲେ ତାହାକୁଟି ।
କେତେ ବେଳେ ଭୀଷ୍ମ ବଳନ୍ତ ଅର୍ଜ୍ଜୁନଙ୍କୁ
କେତେବେଳେ ଅର୍ଜ୍ଜୁନ ବଳନ୍ତ ଭୀଷ୍ମଙ୍କୁ ।
ଅର୍ଜ୍ଜୁନ ଭୀଷ୍ମଙ୍କର ରଥ ରକ୍ଷା ଲୋକ
ଯାକଙ୍କୁ ଦେଖାଇଲେ ନେଇ ଯମଲୋକ ।
ଗାଣ୍ଡୀବର ମଧ୍ୟରୁ ଲାଗି ବାଣରାଜି
ବାହାରନ୍ତେ ଆକାଶମାର୍ଗରେ ଗରଜି ।
ହଂସପଂକ୍ତି ପ୍ରାୟେ ଆକାଶ ସରସୀରେ
ବିହାର କଲେ ଯାଇଁ ଅତି ସରସରେ ।
ଅର୍ଜ୍ଜୁନଙ୍କର ଦିବ୍ୟଅସ୍ତ୍ରଯୁଦ୍ଧ ଦେଖି
ଚିତ୍ରସେନ ଗନ୍ଧର୍ବ ହୋଇ ଅତିସୁଖୀ ।
ଇନ୍ଦ୍ରଙ୍କର ଆଗରେ କଲେ ଜଣାମଣା
ଆନନ୍ଦରେ ଦେହ ବୁଣ୍ଡିକି କରି ବଣା ।
ଦେଖ ଅରଜୁନ ବିନ୍ଧିଲେଣି ତ କେତେ
ପରତେ ହେଉଛି ଗୋଟିଏ ପରି ନେହେ ।
ଅରଜୁନଙ୍କ ଚରିବା ଅସ୍ତ୍ରରୁ ମନୁଷ୍ୟ
ଜାତ ହୋଇ କେ ଅବା ନ ପାଇବ ହାସ ।
ଆମ୍ଭମାନଙ୍କର ତ ଉପୁଜୁଛି ଭୟେ
କି କହିବ ଆଉ ଅଧିକ ଦେବରାୟେ ।
ପ୍ରଳୟ ଅଗ୍ନି ପରି ଅର୍ଜ୍ଜୁନଙ୍କ ତେଜ
ଦିଶିଣ ବୁଜାଉଛି ନୟନ ସରୋଜ ।
ଭୀଷ୍ମ ଅରଜୁନଙ୍କ ପରାୟେ ମହାବଳୀ
ହୋଇବାରୁ ସିନା ଆରମ୍ଭୁଛନ୍ତି କଳି ।
ଏ ଦୁହିଁକି ଦୁହେଁ ଅଟନ୍ତି ପଟାନ୍ତର
ସବୁ ଅସ୍ତ୍ର ଜାଣିଛନ୍ତି ହୃଦ ଏହାଙ୍କର ।
ଚିତ୍ରସେନ ମୁଖୁଁ ଶୁଣି ଏ ବଚନକୁ
ପ୍ରଶଂସି ମଘବା ଭୀଷ୍ମ ଅର୍ଜ୍ଜୁନଙ୍କୁ ।
ଦୁହିଙ୍କର ମୁଣ୍ଡ ଉପରେ ପୁଷ୍ପ ଧୂପ
ବରଷା କରି ପୂଜା କଲେ ସେ ଅମାପ ।
ଭୀଷ୍ମ ଅର୍ଜ୍ଜୁନଙ୍କର ବାମପାଖେ ଆସି
ମାରଗଣ ବିନ୍ଧିଲେ ହୋଇ ତାହା ରୋଷୀ ।
ଅର୍ଜ୍ଜୁନ ତାହା ଦେଖି ହସି ହସି ରାଗେ
ଧନୁ ଭୁଲେ ସେ ଶର କାଟି ଅତି ବେଗେ ।
ଭୀଷ୍ମଙ୍କ ହୃଦୟେ ଦେଖାଇ ଦଶବାଣ
ବିନ୍ଧିଲେ ଗମିଲା ସେ ଶବ୍ଦ କରି ଟାଣ ।

ଭୀଷ୍ମ ଯତ୍ନ କରି ଯୁଝିତ ଥିଲେ ଗର୍ବେ
ସେ ବାଣେ ହୃଦେ ବାଜିଲେ ଯାଇଁ ସର୍ବେ ।
ଏ ଛଡ଼ା ଅର୍ଜ୍ଜୁନ କୋଦଣ୍ଡେ ଆଉ କାଣ୍ଡେ
ସନ୍ଧିକରି ବିନ୍ଧିଲେ ହୃଦୟକୁ ଚଣ୍ଡେ ।
ସେ କାଣ୍ଡ ବଜ୍ର ପରି ଭୀଷ୍ମ ହୃଦଗିରି
ନକଲଲା ହାଡ଼-ବୃକ୍ଷକୁ ଭଙ୍ଗ କରି ।
ସେହି ସକାଶୁଁ ଭୀଷ୍ମ ରଥର କବର
ଧରି ଝୁମି ରହିଲେ ନ କରି ସମର ।
ପାରଥି ତାହା ଜାଣି ରଥ ଲେଉଟାଇ
ବହିଲା ଅର୍ଜ୍ଜୁନଙ୍କ ଯୋଟା ଛୁଡ଼ ଦେଇ ।

—୦—

## ଦୁର୍ଯ୍ୟୋଧନ ସହିତ ଅର୍ଜ୍ଜୁନଙ୍କ ଯୁଦ୍ଧ

ଦୁର୍ଯ୍ୟୋଧନ ମରଣ ଚିନ୍ତି ଅରଜୁନ
ପାଇ ଧନୁ ଧରିଣ ଧାଇଁଲେ ବହନ ।
କାନରି ପରିଯନ୍ତେ କାଣ୍ଡଟିଏ ଟାଣି
ପାର୍ଥ-କପାଳକୁ ବିନ୍ଧିଲେ ସେହିକ୍ଷଣି ।
ସେ କାଣ୍ଡଟି ଆଣ୍ଟରେ ଅର୍ଜ୍ଜୁନ କପାଳେ
ରହିଲା ବୁଡ଼ି କରି ଦୁର୍ଯ୍ୟୋଧନବଳେ ।
ଗଇରିକଧାରରେ ଶୋଭା ଗିରି ପରି
ଅର୍ଜ୍ଜୁନ ଦିଶିଲେ ରକ୍ତଧାର ଧରି ।
ସେ ସକାଶୁଁ ମାନସେ ହୋଇ ଅତିରୋଷ
ବିନ୍ଧିଲେ ଅର୍ଜ୍ଜୁନ ଶର-ଆଶୀବିଷ ।
ସେ ଶରେ ଦୁର୍ଯ୍ୟୋଧନ ଜାଣି ମୂନ-ବିଷେ
ସେନ ସିବାପାଇଁ ଧାଇଁଲେ ରଣ ଦେଶେ ।
ଏହିରୂପେ ଖ୍ରିଏ ଯାଏ ମନେ ବଧ
ଅନ୍ୟୋଽନ୍ୟରେ ବିସ୍ମିର ଦୁହେଁ କଲେ ଯୁଦ୍ଧ
ବିକର୍ଣ୍ଣ ହାତୀ ଗଢି ସ୍ଥିର ରଥ ସେନ
ବିନ୍ଧିଲେ ଅର୍ଜ୍ଜୁନଙ୍କୁ ଆସି ବାଣଶ୍ରେଣୀ ।
ଅର୍ଜ୍ଜୁନ ବିକର୍ଣ୍ଣର କଣ୍ଠ ଦେଖି ରାଗେ
ଶାୟକ ସିଂହନଖେ ବିଦାରିଲେ ବେଗେ ।
ସେ କଣ୍ଠ ଗିରିବର ରକ୍ତଧାର-ଗେରୁ
ମଣ୍ଡି ହୋଇ ଘୂର୍ଣ୍ଣିଲା ପଛକୁ ଯୁଦ୍ଧରୁ ।
ପ୍ରିୟ ପ୍ରାଣୁଟିକ ସେ ଦେଇଣ ମରୁଛି
ପଡ଼ିଲା ଦେଖୁଥିଲେ ଧୃତରାଷ୍ଟ୍ର ବଳି ।
ବିକର୍ଣ୍ଣ ବିବଂଶତି ରଥ ଚଢି ମୁଷ୍ଟି
ଧନୁ ମଧ୍ୟେ ରହି ସର୍ଜିଲେ ଶରବୃଷ୍ଟି ।

ଅର୍ଜୁନ ସେ କଥାକୁ ନ କରି ଗଣନା
ପୁଣି କାଣ୍ଡେ ତାହାଙ୍କୁ କଲେ ସେ ବିମନା ।
ଦୁର୍ଯ୍ୟୋଧନର ବୁକୁ ମଧ୍ୟକୁ ଦେଖାଇ
ବିନ୍ଧିଲେ ଅରଜୁନ ଶାୟକ ଲଗାଇ ।
ଦୁର୍ଯ୍ୟୋଧନ ସେ କାଣ୍ଡେ ପାର୍ଥ ଆଗେଛୁଡ଼ା
ହେବାରୁ ପୃଷ୍ଠ ଦେଇ କଲା ମୁହଁ ମୋଡ଼ା ।
ଏହା କରି ସାରଣ ବୀର ଅରଜୁନ
ରଥୀ ହାତୀଙ୍କର ଟି ଘେନିଲେ ଜୀବନ ।
ଅର୍ଜୁନର ଚୁଲ ବିନ୍ଧିଲେ ସ୍ୱରପଟେ
ଏଣୁ କାଣ୍ଡେ କାଟିଲେ ତାଙ୍କ ପଖା ପଟେ ।
କପୁଡ଼ ହୋଇ ସେନାଏ ପଟ ପାଟେ
ମହୀ ମଧ୍ୟେ ପଡ଼ି ଗଡ଼ିଲେ ଛଟପଟେ ।
ଅରଜୁନ ବୋଇଲେ ହସ୍ତିନା ନାୟକ
ହୋଇ ପଳାଉଛୁ ତ ତୁମ୍ଭ ପରି ଲୋକ ।
ଶକୁନି ମାମୁଁ ସଙ୍ଗେ ଘେନି ମୋ ପାଶକୁ
ଆସ ହେ ଧାଇଁ ଶାରି-ପଶା ଖେଳିବାକୁ ।
ଯୁଧିଷ୍ଠିର ରାଜା ତ ପେଷିଲେ ଆମ୍ଭଙ୍କୁ
ତୁମ୍ଭର ପଶାଖେଳ ଗାଲୁ ଭାଙ୍ଗିବାକୁ ।
ଶାରି-ପଶା ଖେଳ ଜିଣିଲେ ସିନା ରାଜ୍ୟ
ଭୋଗ କରି ହେବ ହେ ଜନଙ୍କରେ ପୂଜ୍ୟ ।
ଦୁର୍ଯ୍ୟୋଧନ ନାମକୁ ପଛକୁ ପକାଇ
ଯିବାର ଉଚିତ କି ଆମ୍ଭଙ୍କୁ ଡ଼କାଇ ।
ବୀରମାନଙ୍କର ଯେ ଯୁଦ୍ଧରେ ମରଣ
ଶାସ୍ତ୍ର ଲେଖିଅଛି ତା ଅଟଇ କାରଣ ।
ଏହା ଜାଣି ପାରି ସେ ମରଣକୁ ଡ଼ରି
ପଳାଉଛ ମାରିବି ମୁଁ ଅବା କି କରି ।
ଗଲେ ହସ୍ତିନାକୁ ଲୋକଙ୍କ ପରିହାସ
ନରକରେ ଯାଇ କରିବ ସିନା ବାସ ।
କରି ମୋ ଆଗକୁ ପହଣ୍ଡ଼ଟିଏ କାଟି
ବସ ଯାଇ ସୁଖରେ ସ୍ୱର୍ଗପୁର ମାଡ଼ି ।
ଅର୍ଜୁନ ବଚନ ଅଙ୍କୁଶ ଦୁର୍ଯ୍ୟୋଧନ
କରି କର୍ଣ୍ଣଦେଶେ କରନ୍ତେ ଯାଇଁ ସ୍ଥାନ ।
ସେହିକ୍ଷଣି ନିଜ ରଥକୁ ପାଲଟାଇ
ଅର୍ଜୁନର ରଥକୁ ଯୋଟାଇଲେ ନେଇ ।
ତାହା ଦେଖିଣ ଦୁର୍ଯ୍ୟୋଧନଙ୍କ ଉତ୍ତର
ପାଶ ଜଗି ରହିଲେ ସୁତଙ୍କ କୁମର ।
ଭୀଷ୍ମ ମହାରଥୀ ରଥକୁ ବୁହାଇଲେ
ଦୁର୍ଯ୍ୟୋଧନ ପଶ୍ଚିମଭାଗରେ ରହିଲେ ।
ଦ୍ରୋଣ ଦ୍ରୌଣି କୃପ ବିକର୍ଣ୍ଣ ବିବିଂଶତି
ଧାଇଁ ଆସି ରହିଲେ ଦୁର୍ଯ୍ୟୋଧନ କତି ।
ସର୍ବେ ଦିବ୍ୟଅସ୍ତ୍ରେ ଦେଖାଇ ବିକ୍ରମକୁ
ଘୋଡ଼ାଭୁଲେ ଘୋଡାଇ ଦେଲେ ଅର୍ଜୁନଙ୍କୁ
ଅର୍ଜୁନ ଅସ୍ତ୍ରେ ସେମାନଙ୍କ ଅସ୍ତ୍ର ବାରି
ଧିକ୍କରିଲେ ସଭିଙ୍କି ଦେବି ଏବେ ମାରି ।
ଜୀଇଥିଲେ ଏମାନେ ହୋଇ ଏକତୁଣ୍ଡ
ଯୁଝିଥିବେ ସିନା ନ ଛାଡ଼ି ଯୁଦ୍ଧଦାଣ୍ଡ ।

– * –

## ଅର୍ଜୁନଙ୍କର ସମ୍ମୋହନ ଅସ୍ତ୍ର ପ୍ରୟୋଗ

ଆହେ ଜନମେଜୟ ସୁଭଦ୍ରାଙ୍କ ନାହା
ଏରୂପେ ଭାବିଣ ଗାଣ୍ଡୀବଧନୁ ବାହା ।
ବାହାର କରିଲେ ସମ୍ମୋହନ ଅସ୍ତ୍ର
ମୋହ କରାଇବାକୁ କୁରୁଙ୍କର ଗାତ୍ର ।
ସେହି ଅସ୍ତ୍ରଟି ଦିଗ ବିଦିଗରେ ଘୋଟି
ଧାଇଁଲେ ଅନ୍ତକର ନିଦ୍ର ମେଲି ପାଟି ।
ସେହି ସମୟରେ ଯେ ଅରଜୁନ ଶଙ୍ଖ
ଧରି କରି ଫୁଙ୍କିଲେ ଭରି ଚହୁଁ ମୁଖ ।
ଗାଣ୍ଡୀବ ଧନୁଘୋଷ ବିଜୟ ଶଙ୍ଖରଡ଼ି
ସମ୍ମୋହନ ଅସ୍ତ୍ରାଘାତରୁ ଧନୁ ଛାଡ଼ି ।
କର୍ଣ୍ଣ ଆଦି ଯେତେକ କୁରୁଭେଣ୍ଡା ଥିଲେ
ଜ୍ଞାନକୁ ହାରି ଦଣ୍ଡା ହୋଇଣ ଶୋଇଲେ ।
ଏହା ଦେଖି କରିଣ ଅରଜୁନ ବୀର
ଉତ୍ତରକୁ ବୋଇଲେ ଉତ୍ତରୀ ଉତ୍ତର ।
ସୁମରଣ ସବୁ ରଥୀଙ୍କ ପାଗ ଆଣ
ବୁଲି ଯାଇ ଭେଟିବା ବିରାଟ ନୃପବଣ ।
କର୍ଣ୍ଣ ଦ୍ରୋଣ ଦ୍ରୌଣି ଯେ କୃପ ସୁଯୋଧନ
ଆଦିଏ ହାରିଛନ୍ତି ମୋ ଅସ୍ତ୍ରରେ ଜ୍ଞାନ ।
କେବଳ ଭୀଷ୍ମଙ୍କର ଦେହେ ଚେତା ଅଛି
ତାଙ୍କ ପଡ଼ିଥିବା ଭଙ୍ଗିରୁ ମୁଁ ଜାଣୁଛି ।
ତାଙ୍କଠାକୁ ନ ଯାଇ ସବୁଠାକୁ ଯାଇ
ପାଗକୁ ଘେନି ଆସ ଭୟ ଛାଡ଼ି ଦେଇ ।

ଉତ୍ତର ତାହା ଶୁଣି ତେଜିଣ ରଥରୁ
ଆଣିଲେ ପାଗ କୁରୁ ରଥିଙ୍କ ମୁଣ୍ଡରୁ ।
ଅର୍ଜୁନଙ୍କୁ ଦେଖାଇ ଥୋଇଣ ରଥରେ
ବସିଲେ ସୁଖ ଧରି ହୃଦୟ ପଥରେ ।
ସ୍ବଳ୍ପ ଯିବା ବୋଲଣ ଅର୍ଜୁନଙ୍କୁ ବୋଲି
ବୁହାଇଲେ ରଥ ଘୋଡ଼ାଙ୍କୁ ଘୁଞ୍ଚେ ପେଲି ।
ଭୀଷ୍ମ ତାହାଦେଖି ଗୋଡ଼ାଇ ଅର୍ଜୁନଙ୍କୁ
ବିନ୍ଧିଲେ କାଣ୍ଡମାନ ଲଗାଇ ଦେହକୁ ।
ଅରଜୁନ ତା ଦେଖି ରଥ ବାହୁଡ଼ାଇ
ଭୀଷ୍ମଙ୍କ ସ୍ବରଘୋଡ଼ା ଜୀବନ ବଡ଼ାଇ ।
ଭୀଷ୍ମଙ୍କର ପାଖକୁ ବଜାଇଣ କାଣ୍ଡ
ବିନ୍ଧିଲେ ଅରଜୁନ କମ୍ପାଇ କୋଦଣ୍ଡ ।
ଏ ବାହାରେ ଭୀଷ୍ମଙ୍କ ସାରଥିଙ୍କ ଛନ୍ଧ
ଦେଲେ ହେ ଅରଜୁନ ବାଣଗଣ ବିନ୍ଧ ।
କୁରୁସେନା ବାହାରେ ରଖାଇଣ ରଥ
ନଗରି ଦୁଇପଟେ ପକାଇଲେ ହାତ ।
ଏହି ସମୟେ ଦୁର୍ଯ୍ୟୋଧନ ଚେତା ପାଇ
ଭୀଷ୍ମଙ୍କୁ ଏ କଥା କହିଲେ ଧାଇଁଯାଇ ।
ତୁମ୍ଭର ପର ରଥି ରହିଛ ଜୀବନେ
ଅର୍ଜୁନ ଯାଉଅଛି ବିରାଟଭୁବନେ ।
ଭୀଷ୍ମ ହସି କରି ବୋଇଲେ ଦୁର୍ଯ୍ୟୋଧନ
ମରିବାକୁ ବହ୍ଵଳ ହେଉଛି କି ମନ ।
ଧନୁଶର ପକାଇ ରଥ କରି ଶେଯ
ଶୋଇଥିବା ଲୋକକୁ ଛାଡ଼ ମହାରାଜ ।
ଏରୂପେ କହୁଛ ଆସି ଯା ଆମ୍ଭଠାକୁ
ଏଥିରୁ ଶକ୍ତି ଆମ୍ଭେ ପାଇଲୁ ତୁମ୍ଭଙ୍କୁ ।
ଅରଜୁନର ମନ ଅଧରମ କଥା
ପୂର୍ବରୁ ଯେଣୁ ଛାଡ଼ିଅଛି ସେହି ବ୍ୟଥା ।
ଏ ସକାଶୁ ମୋହଗଲେ କୁରୁସୈନ୍ୟ
ନ ନେଲେ ଶାସ୍ତ୍ରକ ବନ୍ଧ ସେ ଜୀବନ ।
ଛଦ୍ମଲୋକଭୂତ ମିଳିଲେ ପାଣ୍ଡବଙ୍କୁ
ଜାଣିଥାଅଛି ନ ଛାଡ଼ିବେ ସେ ଧର୍ମକୁ ।
ଏବେ ତୁମ୍ଭେ ଘେନି ସଇନ ସଖାଗଣ
ହସ୍ତିନାକୁ ଯାଅ ହେ ଲଗାଇ ଗହଣ ।
ପାଣ୍ଡବେ ତୁମ୍ଭ ସଙ୍ଗେ ଯୁଝିବା ଯାଏ ବାବୁ
ରଖିଥାଅ ଜୀବନ ଯତ୍ନ କରି ସବୁ ।

ଦୁର୍ଯ୍ୟୋଧନ ଭୀଷ୍ମଙ୍କ ବଚନକୁ ଶୁଣି
ନିଶ୍ବାସକୁ ପକାଇ ହୋଇଲେ ସେ ତୁନି ।
ସଇନକୁ ସଙ୍ଗତେ ଘେନି ହୋଇ ସଂସ୍ଥା
ବାହାରିଲେ ପୁରକୁ ହୃଦେ ଧରି ବ୍ୟଥା ।
ଅର୍ଜୁନ ତାହା ଦେଖି ଭୀଷ୍ମ ଦ୍ରୋଣ ଦ୍ରୌଣି
କୃପଙ୍କୁ ଶରେ ପୂଜା କଲେ ଧନୁ ଟାଣି ।
ଦୁର୍ଯ୍ୟୋଧନ ମୁକୁଟ ଗୋଟିକ କାଣ୍ଡକେ
ପକାଇଲେ କାଟିଣ ମହୀରେ ଦଣ୍ଡକେ ।
ଦେବଦତ୍ତ ଶଙ୍ଖ ଦୁଇ ହାତରେ ଭିଡ଼ି
ଆନନ୍ଦେ ମୁଖେ ଭରି କଲେଅ ତା ରଡ଼ି ।
ଘୋଡ଼ାଙ୍କୁ ଲେଉଟାଇ ବିରାଟ ପୁରକୁ
ବୁହାଇଲେ ପୁଣି ସେ ଆପଣା ରଥକୁ ।
ଦେବେ ଅର୍ଜୁନଙ୍କ ଯୁଦ୍ଧକୁ ପ୍ରଶଂସି
ମର୍ତ୍ତ୍ୟ ଛାଡ଼ି ହୋଇଲେ ସ୍ବର୍ଗପୁରବାସୀ ।
ଏଠାରେ ଉତ୍ତର ଗୋଗ୍ରହ ସମାପତ
ହୋଇଲା କହେ କୃଷ୍ଣ ସିଂହ ନରପତି ।

—*—

## ଅର୍ଜୁନଙ୍କର ପୂର୍ବ ବେଶ ଧରି ବିରାଟପୁରକୁ ଗମନ

ଏଥିଅନନ୍ତରେ ଅର୍ଜୁନ ବୀରବର
ଯୁଦ୍ଧର ଜୟଲକ୍ଷ୍ମୀ କରି ଆପଣାର ।
ପରମାନଙ୍କର ହୃଦୟ ଶଶଙ୍କାରେ
ବକଳ-କଳଙ୍କକୁ ରଖି ନିଃଶଙ୍କରେ ।
ମରଣଶଙ୍କା-ବାତ ବନେ ପ୍ରବର୍ତ୍ତାଇ
କୁରୁସୈନ୍ୟ-ଶୁଖିଲପତ୍ରକୁ ଉଡ଼ାଇ ।
ଦୁର୍ଯ୍ୟୋଧନ ଦେହ ଗିରିରେ ଶର ବଜ୍ର
ପ୍ରହାରରେ ଭାଙ୍ଗି ଦେଇ ତାହାର ତେଜ ।
ଶତ୍ରୁ ଜଳଧିରୂପ ମଧ୍ୟରେ ବୁଡ଼ାଇ
ନେବା ଗାଈମାନଙ୍କୁ ଆଣିଣ ଛଡ଼ାଇ ।
ଉତ୍ତରକୁ ଘେନି ସଙ୍ଗତେ ଅରଜୁନ
କରାଇଲେ ମନ୍ଦ ଘୋଡ଼ାଙ୍କର ଗମନ ।
ଏକାଳେ ଯୁଦ୍ଧୁ ପଳାଇବା କୁରୁଲୋକେ
ପଡ଼ିଲେ ଅର୍ଜୁନର ପାଦଧରି ଥୋକେ ।
ମୁଣ୍ଡରୁ ବାଳସାକ ଯାଇଅଛି ଫିଟି
ପଶିଅଛି ଦେହରେ ଚଟକା ଝାଳୁଟି ।

ବୋଇଲେ ଅର୍ଜ୍ଜୁନ ହେ ପ୍ରଭୁ ଅଟ ତୁମ୍ଭେ
କ୍ଷମା କରୁଥିବଟି ଦୋଷ କଲେ ଆମ୍ଭେ ।
ଏବେ କେଉଁ କଥାକୁ କରିବୁଁ ତୁମ୍ଭର
ଆହେ ବୀରବର ଅର୍ଜ୍ଜୁନ ଆଜ୍ଞା କର ।
ଅର୍ଜ୍ଜୁନ ବୋଇଲେ ହେ ଉତ୍ତରୁଛ କମାଇଁ
ତୁମ୍ଭ ପ୍ରାଣ ମୁଁ ନକର ଯେମନ୍ତ ବୁଝାଇ ।
ସୁଯୋଧନ ଲୋକ ହେଲେ କି ଆମ୍ଭ ଲୋକ
ନୁହ କି ତୁମ୍ଭେ ଏବେ ଛାଡ଼ ମନୁ ଶୋକ ।
ଏହା ଶୁଣି କୁରୁ ଯୋଦ୍ଧାଏ ହୋଇ ତୋଷୀ
ଅର୍ଜ୍ଜୁନଙ୍କ ମଙ୍ଗଳ ବାଞ୍ଛା କଲେ ହସି ।
ବୋଇଲେ ଆମ୍ଭ ପର ପାଖେ ଥିଲେ ରଥି
ଇନ୍ଦ୍ରଙ୍କର ବଳକୁ ପାରୁଁ ଆମ୍ଭେ ମନ୍ତି ।
ଦୁର୍ଯ୍ୟୋଧନ ବୀରୁ କର୍ଣ୍ଣଙ୍କୁ ସଙ୍ଗେ ଘେନ
ପ୍ରତି ଯୁଦ୍ଧେ କରୁଛୁ ଆମ୍ଭ ତେଜ ହାନ ।
ଜାଣିଛ ତ ଘୋଷଯାତ୍ରାରେ ଆହେ ପାର୍ଥ
ତୁମ୍ଭେ ନ ରଖିଲେ ସେ ହୁଅନ୍ତା ଅନାଥ ।
ଏବେ ସେହିରୂପେ ହୃଦୟା ଦୟା ଧରି
ଦେଲେ ତାହାଙ୍କୁ ଛାଡ଼ ଯୁଦ୍ଧରେ ନ ମାରି ।
ଖେଳରେ ତୁମ୍ଭ ରାଜ୍ୟ ନେଇ କରି ଠାଣ
ଯାହା ସେ କରୁଥାନ୍ତି ନ ଜାଣିବାପଣ ।
ଅର୍ଜ୍ଜୁନ ବୋଇଲେ ନ କହ ଆଉ ମୋତେ
ହସ୍ତିନାକୁ ବାହୁଡ଼ ଯାଅ ହେ ସମସ୍ତେ ।
ମୁଁ ଯାଉଅଛି ଏବେ ବିରାଟ ରାଜ୍ୟକୁ
ଯିବ ତ ମୁଁ ନିକଟେ କୁରୁଙ୍କ ଦେଶକୁ ।
ତହିଁ ତୁମ୍ଭେମାନେ କରି ଶଙ୍ଖମନା
ଛଡ଼ାଇବ ହୃଦରେ ଯେ ଥିବ ବେଦନା ।
ଏହା ଶୁଣି ଯାଉଛୁଁ ବୋଲି ସେ ଭାଷିଲେ
ଦୁର୍ଯ୍ୟୋଧନ ରାଜାଙ୍କ ସୈନ୍ୟରେ ମିଶିଲେ ।
କୁରୁମାନେ ଯିବା ଉତ୍ତାରୁ ଅର୍ଜ୍ଜୁନ
ଉତ୍ତରଙ୍କୁ ଚାହିଁ କହିଲେ ଏ ବଚନ ।
ମୋ ଭାଇମାନେ ଲୁଚିଛନ୍ତି ତୁମ୍ଭ ଦେଶେ
ମୁଁ କେଉଁରୂପେ ଜାଣ ଯିବ ଏହିଦେଶେ ।
ଏବେ ମୁଁ ବାବୁ ବୃହନ୍ନଳା ରୂପ ଧରି
ବାହୁଛି ଯେ ରଥସାରଥି ହୋଇକରି
ତୁମ୍ଭେ ରଥି ହୋଇଣ ଏ ରଥରେ ବସ
ଥରେ ଥରେ ହାତରେ ନଣକୁ ଆକର୍ଷ ।
ପଠାଇଲେ ଲୋକଙ୍କୁ କହିବ କୁରୁଙ୍କୁ
ଜିଣି କରି ଆଣିଲି ବଳେ ମୁଁ ଗୋରୁଙ୍କୁ ।
ଉତ୍ତର ବୋଇଲେ ହେ ଏହା କର୍ମା ମତେ
କହିବା ହେଉଛ ଅର୍ଜ୍ଜୁନ ମହାମତେ ।
ମୋର ବଳରେ ଏହା ନ ପାରିବ କହି
ବୋଲୁଛ ଯେବେ ରଥି ହେଉଅଛି ମୁହିଁ ।
ସେହିକାଳେ ଉତ୍ତର ଅର୍ଜ୍ଜୁନ ବୋଲରେ
କରିଲେ ରଥ ଶମୀଗଛର ମୂଳରେ ।
ବାନରଧ୍ୱଜ ସେହିକ୍ଷଣି ଅନ୍ତର୍ଦ୍ଧାନ
ହେଲି ଅର୍ଜ୍ଜୁନଙ୍କ ସଇନ୍ତେ ଆସ୍ତୋଧନ ।
ଉତ୍ତରର ସିଂହଧ୍ୱଜଟିକ ଆଣି
ସେ ରଥରେ ଅର୍ଜ୍ଜୁନ ରଖିଦେଲେ ପୁଣି ।
ଏହାଙ୍କର ଆୟୁଧ ଉତ୍ତର ହାତରେ
ପୂର୍ବ ପରି ରଖାଇ ଦେଲେ ସେ ବୃକ୍ଷରେ ।
ଶଙ୍ଖା ଦୁଇମୁଠିକ ଦୁଇ ହାତେ ଥାଇ
ବାଳକୁ ବେଣୀ କରି ତା ଦେଲେ ଲମ୍ବାଇ ।
ହୃଦୟ ମଧ୍ୟେ ଭିଡ଼ କାଞ୍ଚୁଲି ଦଉଡ଼ି
ରଙ୍ଗଧଡ଼ି ଶାଢ଼ୀକି ପିନ୍ଧିଲେ ସଜାଡ଼ି ।
ଫରଫର କରି ଉଡ଼ାଇଣ ପଣତ
ବୋଇଲେ ବସ ରଥେ ଉତ୍ତର ସାମନ୍ତ ।
ଉତ୍ତର ତାହା ଦେଖି ଆନନ୍ଦରେ ମଜ୍ଜି
ବୋଇଲେ ଯେ ସାମନ୍ତ ଜଣା ଯିବ ଆଜି ।
ଏହା କହି ରଥ ଉପରେ ସେ ବସିଲେ
ଧନୁ ଝିଙ୍କି ନଣ ଦୁହିଁଙ୍କି ଆଉଁଶିଲେ ।
ଅର୍ଜ୍ଜୁନ ବୋଇଲେ ହେ ତୁମ୍ଭର ବିଜୟ
ବିରାଟପୁରେ ଲୋକେ କରନ୍ତୁ ଉଦୟ ।
ତୁମ୍ଭେ ଅବା ବୋଲିବ ପାଖେ ଲୋକ ନାହିଁ
ଗଉଡ଼ଙ୍କୁ ବୋଲି ଯାଆନ୍ତୁ ବାର୍ତ୍ତା କହି ।
ଉତ୍ତର ବୋଇଲେ ଗଉଡ଼େ ନଗରକୁ
ଯାଇଁ କରି କହ ମୋ ବିଜୟ ବାପାଙ୍କୁ ।
ନେଉଥିଲି ଗାଈ ସେ ଦୁର୍ଯ୍ୟୋଧନ ଭଣ୍ଡି
କହିବ ପଳାଇଲି ନ ସହି ମୋ କାଣ୍ଡି ।

--୦—

## ବିରାଟଙ୍କ ଗୃହେ ଆଗମନ

ଏହି ସମୟରେ ବିରାଟ ହୃଷ୍ଟ ହୋଇ
ଗାଈ ବଳଦଂକୁ ସେ ପୃଷ୍ଠରେ ଚଳାଇ ।

ଛନ୍ତି କ ତନ୍ତ୍ରପାଳ ବଲ୍ଲଭ କଙ୍କପଣ୍ଡା
ଏମାନଙ୍କ ବଳେ ବିରାଟ ବୁଢା ଭେଣ୍ଡା ।
ପରସ୍ପେ ଗଞ୍ଜ କରି ରଥକୁ ବୁହାଇ
ଆପଣା ନଗରେ ପ୍ରବେଶ ହେଲେ ଯାଇଁ ।
ପୁରଜନେ ବାଟୁ ପାଛୋଟି ତାଙ୍କୁ ନେଲେ
ସଭାକୁ ମଣ୍ଡାଇ ନୃପଙ୍କୁ ବସାଇଲେ ।
ହୃଦସ୍ଥରୁ ଘୁଞ୍ଚଣ ଦେଇ ମହାବ୍ୟଥା
ହସି ହସି ଲୋକେ ହୋଇଲେ ବସି କଥା ।
ବ୍ରାହ୍ମଣମାନେ ଯୁଦ୍ଧେ ବିରାଟଙ୍କ ପ୍ରୌଢ଼ି
ବେଦପାଠ ଛାଡ଼ି ବର୍ଣ୍ଣିଲେ ମୁଖେ ବାଛି ।
ବିରାଟ ବୋଇଲେ ହେ କଙ୍କପଣ୍ଡା ଧର୍ମେ
ଜିଣିଲୁଁ ସିନା ଆମ୍ଭେ ଏଥର ସଂଗ୍ରାମେ ।
ନୋହିଲେ ତ୍ରିଗର୍ତ୍ତର ମୁଖରେ ମୋ ପ୍ରାଣ
ଘେନ ଯାଇଥାନ୍ତା ସାଥିରେ ଜନ୍ତୁଗଣ ।
ଏଥିପାଇଁ କି କେତେ କରୁଛ ପ୍ରଶଂସା
ଛାଡ଼ି କରିଣ ଦ୍ୱିଜେ ବେଦଶାସ୍ତ୍ର ଭାଷା ।
ଏବେ ଓଳଗି ଆମ୍ଭେ ହେଉଛୁ ତୁମ୍ଭଙ୍କୁ
ବେଗେ ଯିବା ହେଉ ଯେ ଯାହାର ଘରକୁ ।
ଏହା ଶୁଣି ବ୍ରାହ୍ମଣେ ବାଞ୍ଛିଣ କଲ୍ୟାଣ
ବୋଇଲେ ଯାଉଛୁଁ ଘରକୁ ନରଗଣ ।
ଏଥୁ ଅନନ୍ତରେ ବିରାଟ ଉତ୍ତରକୁ
ବାହାରିଲେ ମେଲାଣି ଦେଇଣ ଲୋକଙ୍କୁ ।
ମୃଦୁସ୍ଥଳି ଆଗରେ ପହଣ୍ଡ ମଣାଇ
ସୁଦେଷ୍ଣାଙ୍କ ଘରେ ପ୍ରବେଶ କଲା ନେଇ ।
ସେହିଠାରେ ଦିବ୍ୟ ଆସନ ଗୋଟିକରେ
ବସିଣ ବିରାଟ ନୃପତି ସୁମନରେ ।
ବେହେରକୁ ବୋଇଲେ ଉତ୍ତର ଦିଶୁନାହିଁ
ସେ କାହିଁ ଯାଇଛି କ ଦିଅ ତାହା କହି ।
ବେହେର ବୋଇଲା ହେ ମତ୍ସ୍ୟଦେଶେଶ୍ୱର
ଶୁଣ ସାବଧାନେ ମୋ କହିବା ଉତ୍ତର ।
ତୁମ୍ଭେ ଯେ ଗଲ ତେଣେ ତ୍ରିଗର୍ତ୍ତକୁ ମାରି
ଏଣେ ଟି ଦୁର୍ଯ୍ୟୋଧନ ଗାଈ ନେଲା ହରି ।
ଉତ୍ତର ଗୋପାଳଙ୍କ ମୁଖୁଁ ଏ ଉତ୍ତର
ଶୁଣି ରଥ ଚଢ଼ିଣ ହୋଇଲେ ବାହାର ।
ନାଟୁଆ ଘରୁ ବୃହନ୍ନଳାକୁ ଅଣାଇ
ସାରଥି କରି ରଥେ ବସାଇଲେ ନେଇ ।

ଏକା ହୋଇ କୁରୁ ସେନାଙ୍କୁ ଯୁଝିବାକୁ
ଗଲେ ଅବଲମ୍ବନ କରିଣ କୋଦଣ୍ଡକୁ ।
ଉତ୍ତରଙ୍କ ବାରତା ଏତେବେଳଯାଏ
ପାଇନାହୁଁ କିସ କରିବୁ କହ ସମ୍ପେ ।
ବିରାଟ ତା ଶୁଣି ମଣୋହି ନ ବଢ଼ାଇ
ବାହାରକୁ ଧାଇଁ ଆସିଲେ ଭୟ ହୋଇ ।
ସଭା କରି ବସି ଡ଼କାଇ ସେ ମନ୍ତ୍ରୀଙ୍କି
ବୋଇଲେ ଉତ୍ତର ଯିବାର ଶୁଣିଲ କି ।
ଏକା ହୋଇ କୁରୁସଇନ ମାରିବାକୁ
ଯାଇଅଛି ଏ ଶିକ୍ଷା ଦେଲା କେ ତାହାକୁ ।
ପୁଣି ବୃହନ୍ନଳା ସାରଥି କରି ରଥେ
ବସାଇଛି ମରିବ ଯେ ବାଳକେ ମୁଥେ ।
ଆମ୍ଭେ ତ୍ରିଗର୍ତ୍ତକୁ ବଲ୍ଲଭ ବଳେ ଜିଣି
କହୁଥାଇଁ ସଭା ମଧ୍ୟରେ କଥା ଟାଣି ।
ଏକା ହୋଇ ଯାଇଅଛି ତ ମୋ କୁମର
ଜାଣୁଛି କୁରୁଏ ଘେନବେ ପ୍ରାଣ ତା'ର ।
ମୋ ଲୋକରେ ଅଛତ ଲୋକ ଯେ ଅଛନ୍ତି
ଯାଆନ୍ତୁ ଏବେ ଧାଇଁ ଉତ୍ତରଙ୍କ କତି ।
ମୋ ସୈନ୍ୟ ପର୍ବତକୁ ପାଇଲେ ଉତ୍ତର
କୁରୁବଳ ବାତକୁ କରିବେ ନିବାର ।
ଏହାଶୁଣି ପାଇକ ଲୋକେ ସଜ ବାନ୍ଧି
ଫରି ଖଣ୍ଡା ଧରି ଧାଇଁଲେ ଭୟ ହୋଇ ।
ଆଣିବାକୁ ଗୋଳ କରି ସେ ଗାଈକୁଳ
ସିପାଇଏ ଘୋଡ଼ା ଫିଙ୍ଗିଲେ ପଲ ପଲ ।
ମାହୁନ୍ତେ ଗଇରକେ ହାଣ୍ଡି ଅଙ୍ଗ ମଣ୍ଡି
ଯୁଦ୍ଧକୁ ବାହାରିଲେ ହୋଇଣ ଦରଣ୍ଡି ।
ରଥୀମାନେ ରଥ ତିଆରି କରୁ କରୁ
ସାରଥିଙ୍କ ବୋଇଲେ ମନ୍ଥର କେତେ କରୁ ।
ଏରୂପେ ବିରାଟ ଆଜ୍ଞାରେ ଚତୁରଙ୍ଗ
ଚଳିଗଲେ କରିବାକୁ ଟି ରଣ ରଙ୍ଗ ।
ସଭାରେ ତହିଁ କଙ୍କପଣ୍ଡା ବସିଥିଲେ
ବିରାଟଙ୍କ ଆତଙ୍କ ଜାଣିଣ ହସିଲେ ।
ବୋଇଲେ ଆହେ ମତ୍ସ୍ୟ ଦେଶର ଅଧୀପ
ଉତ୍ତରପାଇଁ କିମ୍ପା କରୁଛ ସନ୍ତାପ ।
ବୃହନ୍ନଳା ରଥେ ତ ହୋଇଛି ସାରଥି
ଏହିକ୍ଷଣି ଆସିବେ କୁରୁବଳ ମନ୍ଥି ।

ଘେନ କରିବାକୁ ଯା ଗଲେ ସୈନ୍ୟକୁଳ
ଏଥିକି ମନେ ହେଉଅଛୁ ମୁଁ ବିକଳ ।
ତ୍ରିଗର୍ତ୍ତ ସଙ୍ଗେ ଯୁଝିବାରେ ହୋଇ ଶ୍ରାନ୍ତ
ଅସ୍ତ୍ର କରିପାରୁ ନାହାଁନ୍ତି କରଗତ ।
ତୁମ୍ଭେ ତ ତାହାଙ୍କର ନୃପତି ବୋଲାଇ
ବୋଲୁଅଛ କେହ୍ନେ କରନ୍ତେ ନାହିଁ ସେହି ।
ଏହି କାଳେ ଦୂତେ କହିଲେ ବିରାଟଙ୍କୁ
ଆସୁଅଛନ୍ତି ପୁଅ ଜିଣିଣ କୁରୁଙ୍କୁ ।
ଦେହରେ ତାହାଙ୍କର କାଣ୍ଡରୁ ଗୋଟିଏ
କୁରୁଙ୍କଠାରୁ ବାଜି ନାହିଁ ଜାଣ ରାୟେ ।
ବାହୁଡ଼ିଲେ ତୁମ୍ଭ ଯେତେ ଗାଈପଲ
ସବୁ ଘେନି ଆସିଛନ୍ତି ଉତ୍ତର ମହାମଲ୍ଲ ।
କଙ୍କପଣ୍ଡା ବୋଇଲେ କହୁଥିଲି ଯାହା
ଶୁଣିଲ ତ ଏବେ ହେ ତାହା ନରନାହା ।
ଭୀଷ୍ମ ଦ୍ରୋଣ ଆଦି ଯେ ରଥୀ ନଗରରେ
ପୂରି ଥାଏ କୁରୁ ସାଗର ନିରନ୍ତରେ ।
ବୃହନ୍ନଳା ବୋଇତ ଆରୋହୀ ତୁମ୍ଭ ସୁତ
ପାଇଲାଟି ଜାଣ ସେ ସାଗରର ପ୍ରାନ୍ତ ।
ବିରାଟ ଉତ୍ତରଙ୍କ ବିଜୟକୁ ଶୁଣି
ଦେଲେ ଦୂତମାନଙ୍କୁ ଧନ ବସ୍ତ୍ର ଆଣି ।
ଲୋକ ପଠାଇ ମଣ୍ଡାଇ ନଗରକୁ
ପୋତାଇଲେ ଦୁଆରେ କଦଳୀ ଗଛକୁ ।
ଏହା କରି ସାରି ବୋଇଲେ ଲୋକେ ଯାଅ
ମୋର ନଗରଯାକ ଥାଇଣ ମଣ୍ଡାଅ ।
ଆମ୍ଭ ରାଜ୍ୟ ଦେବତା ଅଛନ୍ତି ଯେତେ
ପୁଷ୍ପ ଉପହାରରେ ପୂଜାଅ ତୁରିତେ ।
ଗଣିକାଏ ବେଶ ହୋଇଣ ବାସକୁଞ୍ଜ
ପିନ୍ଧି କରି ଯାଆନ୍ତୁ ଆସିବାକୁ ନାଚ ।
ହାତୀପରେ ବସାଇ ଗୋଟିଏ ଲୋକଙ୍କୁ
ବୁଲାଇଣ କୁହାଅ ନଗର ଲୋକଙ୍କୁ ।
ମୋର ଉତ୍ତର ବଳ ଉତ୍ତର ପବନ
ଘେନିଣ ଧନୁ ଘନ ପ୍ରକାଶି ବହନ ।
ଶସ୍ତ୍ରକ-ଜଳ ବୃଷ୍ଟି କୁରୁଙ୍କର ହିୟା
କିଆରରେ କରନ୍ତେ ହୋଇଣ ନିର୍ଦ୍ଦୟା ।
ଭୟ ବୀଜ ଯେ ପଡ଼ି ହୋଇଣ ଅଙ୍କୁର
ପଳାଇବା-ପଲ୍ଲବେ ହୋନ୍ତେ ମନୋହର ।
ଅଯଶ-ଫଳ ଜାତ ଶୀଘ୍ର ସେ ପାଇଲେ
କୀରତି-ଶସ୍ୟ ଘେନି ଉତ୍ତର ଆସିଲେ ।
ଉତ୍ତରା ସଙ୍ଗତରେ ଧରିଣ କନ୍ୟାକୁ
ଯାଆନ୍ତୁ ପାଛୋଟି ବାଟକୁ ଉତ୍ତରଙ୍କୁ ।
ଦଇବେ ତାହାଙ୍କର ଗୁରୁ ବୃହନ୍ନଳା
ସାରଥି ହୋଇଣ କୁରୁଙ୍କୁ ଦେଲା ଦଳା ।
ଏହାଙ୍କର ତାଙ୍କୁ ମର୍ଯ୍ୟାଦା କରିବାର
ଉଚିତ ତ ଅଟଇ ଦାଣ୍ଡର ବେଭର ।
ଏହା ଶୁଣି ଲୋକେ ସେହି ରୂପେ କରାଇ
ଭେରୀ ବୀଣା ପଟହ ବଇଁଶୀ ବଜାଇ ।
ମାଗଧ ଗଣିକାଙ୍କୁ ସଙ୍ଗତେ ଘେନିଲେ
ଉତ୍ତରକୁମାରେ ପାଛୋଟି ବାହାରିଲେ ।

—*—

## ବିରାଟଙ୍କର ଯୁଧିଷ୍ଠିରଙ୍କ ସହିତ ପଶାଖେଳ

ଏଥୁ ଅନନ୍ତରେ ବିରାଟ ନରମଣି
ହୃଦୟରେ ମହାମୋଦ ଥିଲେ ସେ ଘେନି ।
ସୈରନ୍ଧ୍ରୀକି ବୋଇଲେ ପଶାସାର ଆଣ
କଙ୍କପଣ୍ଡା ତୁଲେ ଖେଳିବି ମୁଁ ଆପଣ ।
ତା ଶୁଣି ତାହାଙ୍କୁ ବୋଇଲେ କଙ୍କପଣ୍ଡା
ଆନନ୍ଦକାଳେ ନ ଖେଳିବ ଇଡ଼ି ଗଣ୍ଡା ।
ଯେବେ ବୋଲୁଅଛ ଖେଳିବାକୁ ଟି ତୁମ୍ଭେ
ଲୋକ ଯେ ହୋଇ ନାହିଁ କରିବୁ କି ଆମ୍ଭେ
ଧରମଶାସ୍ତ୍ର ଜାଣିଥାନ୍ତି ଯେଉଁମାନେ
ପ୍ରଭୁ ପ୍ରିୟକଥା କରନ୍ତି ଅବଛିନ୍ନେ ।
ପ୍ରଭୁର ଯେଉଁ କଥା ହୁଅଇ ଅପ୍ରିୟ
ତାହାକୁ ନ କରନ୍ତି କେବେ ସେ ହୃଦୟ ।
ବିରାଟ ବୋଇଲେ କି ବୋଲ କଙ୍କପଣ୍ଡା
ଖେଳକୁ ଡରୁଅଛ ହୋଇ କରି ଭେଣ୍ଡା ।
ବୁଢ଼ା ହୋଇବାଠାରେ ଖେଳିବାକୁ ମନ
ମୋର ଯା ହେଉଛି କହିବ କି ବଚନ ।
କଙ୍କ ବୋଇଲେ ହେ ଯୁଧିଷ୍ଠିର ରାଜା
ଜୁଆ ଖେଳ କରି ଛାଡ଼ିଲେ ରାଜ୍ୟପ୍ରଜା ।
ବନରେ ଅହର୍ନିଶ ରହି ଦୁଃଖେ ପଡ଼ି
ଖାଇଲେ ନିତି ଫଳମୂଳ ଖୋଜି ଲୋଡ଼ି ।

ଏହା ଜାଣି ମୁଁ କହୁଅଛୁ ନରବର
ପଶା ଖେଳିବାର ଯେ ନୁହଇ ବେଳର ।
ତେବେ ହେଲେ ବିରାଟ ଖେଳୁ ନ ଛାଡ଼ନ୍ତି
ପକାଇଲେ ପଶାକାଠି ସେ ଧରି ହାତ ।
ବୋଇଲେ ଯେଉଁରୂପେ ପଡ଼ୁଛି ମୋ ଦାନ
ସେ ରୂପେ ଜିଣିଲା ଉତ୍ତର କୁରୁସୈନ୍ୟ ।
କଙ୍କପଣ୍ଡା ବୋଇଲେ ସାରଥୀ ବୃହନ୍ନଳା
ଥିବାରେ ଏକଥା ବଡ଼ କି ନୃପବଳା ।
ବିରାଟ ଏହାଶୁଣି ଅତି କ୍ରୁଦ୍ଧ ହୋଇ
ବୋଇଲେ କଙ୍କପଣ୍ଡା ହୋଇଲୁ କି ବାଇ ।
କାହାକୁ କାହା ନ ଜାଣିଣ ତୁଚ୍ଛା ତୁଣ୍ଡେ
ବୋଲି ଦେଉଅଛୁ ନ ଧରି ଭୟ ପିଣ୍ଡେ ।
ବୃହନ୍ନଳା ତ ଅଟଇ ଯେ ନପୁଂସକ
କିରୂପେ ସେ କରିବ କୁରୁଙ୍କୁ ଅନକ ।
କୁରୁସୈନ୍ୟ ରଖି ଅଛନ୍ତି ଭୀଷ୍ମରଥୀ
ଏଥି ବାହାରେ କୃପ ଦ୍ରୋଣ ଯେ ଅଧିରଥି ।
ଏହାଙ୍କର ମୁଖେ ପଡ଼ିବ ଯେବେ ଯମ
ଦେଖି ନ ପାରିବ ସେ ଆଜ ଯାଇଁ ଗ୍ରାମ ।
ବରଷେ ହେଲା ତୁମ୍ଭେ ଅଛ ସେବା କରି
ଏଣୁ ଦୋଷ କ୍ଷମା କଲି ମୁଁ ତା ବିସ୍ମରି ।
କଙ୍କପଣ୍ଡା ବୋଇଲେ ଭୀଷ୍ମ ଦ୍ରୋଣ କର୍ଣ୍ଣ
ଅଶ୍ୱତ୍ଥାମା ଆଦି ରଥୀରେ ପରିପୂର୍ଣ୍ଣ ।
ହୋଇ ଯେଉଁ କୁରୁସୈନ୍ୟ ଥାଏ ରହି
ତା ଜାଣି ପାରିବା ଇନ୍ଦ୍ରଙ୍କ ଶକ୍ତି ନାହିଁ ।
ବୃହନ୍ନଳା ନ ଥିଲେ ତୁମ୍ଭର କୁମର
କୁରୁଙ୍କହାରି ଦେଖନ୍ତା ସେ ଯମଘର ।
ବୃହନ୍ନଳା ସଙ୍ଗତେ ଯୁଝିଲେ ତିନିଲୋକ
ପଳାଇବେ ନୟନେ ଭରିଣ ଲୋତକ ।
ବିରାଟ ବୋଇଲେ ହେ କଙ୍କ ତୁମ୍ଭେ ଖଣ୍ଡି
ନୋହିଲେ କମ୍ପା ଗୁଣ୍ଡ ନାହିଁ କଥା ଆଣ୍ଡି ।
ଆଜ ତୁମ୍ଭ ଗରବ ଭାଙ୍ଗି ଦେବି ମୁହିଁ
ଏହା ବୋଲି କାଠି ଖୁନ୍ଦିଲେ ମୁଖେ ନେଇ
କଙ୍କପଣ୍ଡା ନାକେ ବିରାଟ କାଠି ଘାତ
ହୋଇଲା କ୍ଷଣି ରକ୍ତ ବୋହିଲା ବହୁତ ।
ତହିଁକି ସଇରନ୍ଧ୍ରୀ ସୁନାପାତ୍ର ପାତି
ସେ ରକତଯାକ ଯେ ଧଇଲେ ଝଟତି ।

ବିରାଟ ବୋଇଲେ ହେ କି ଦେଖିଲୁଁ ଆମ୍ଭେ
କାଙ୍କପଣ୍ଡା ରକତ ଧରି କମ୍ପା ତୁମ୍ଭେ ।
ଏ ତୁମ୍ଭର ପୂରୁବେ ଅଟେ କି ଭରତା
କହ ମୋତେ ବତାଇ ସୈରିନ୍ଧ୍ରୀ ବନିତା ।
ସୈରିନ୍ଧ୍ରୀ ବୋଇଲେ ହେ କଙ୍କପଣ୍ଡା ରକ୍ତ
ଯେବେ ନରପତି ହୁଅନ୍ତା ମହୀଗତ ।
ତେବେ ତୁମ୍ଭ ରାଜ୍ୟରେ ହୋ'ନ୍ତା ଅନାବୃଷ୍ଟି
ସେ ସବାଙ୍କୁ ମରିଯାଆନ୍ତେ ପ୍ରଜାସୃଷ୍ଟି ।
ଏ ସମୟେ ଉତ୍ତର ମିଳିଲେ ନଗରେ
ଗୋଡ଼ାଉଛନ୍ତି ହାତୀ ଘୋଡ଼ାଏ ସଙ୍ଗରେ ।
ଗଣିକାଏ ନାଟ କରନ୍ତି ନାନାରଙ୍ଗେ
ଭାଟେ ଭଟ ଭଟ ଯେ ହେଉଛନ୍ତି ଆଗେ ।
ଦୁଆରୀ ତା ଦେଖି ବୋଇଲା ନୃପବର
ବୃହନ୍ନଳା ତୁଲରେ ଆସିଲେ ଉତ୍ତର ।
ବିରାଟ ତା ଶୁଣି ବୋଇଲେ ଦୁଆରୀକି
ନ କହୁ କିଛି ଆଣ ଦୁହେଁ ବେଗେ ଡାକି ।
କଙ୍କପଣ୍ଡା କହିଲେ ଯାଇଁ ଦୁଆରୀକି
ଉତ୍ତର ଏକାକୀ ଆସନ୍ତୁ ଏଠାଇଁକି ।
ବୃହନ୍ନଳା ଯେବେ ଆସିବେ ତା ସଙ୍ଗତେ
ତେବେ ନବାରିବ ମୋ କଟନେ ତୁରତେ ।
ଦୁଆରୀ ଏହା ଶୁଣି ବୋଇଲା ତାହାଙ୍କୁ
ଏଥିର କି କାରଣ କହ ତ ଆମ୍ଭଙ୍କୁ ।
କଙ୍କପଣ୍ଡା ବୋଇଲେ ବୃହନ୍ନଳା ବ୍ରତ
କରିଛି ମୋ ଶରୀରକୁ କରିବ ସେ ହତ ।
ନ ଜାଣି ବିରାଟ ମାଇଲେ ମାଡ଼ ମୋତେ
ଅନ୍ନଖାଇ ଏହା ମୁଁ କରିବି କେମନ୍ତେ ।
ତିନିଲୋକ ଯାକ କ୍ଷଣେକେ ବୃହନ୍ନଳା
ଛିଣ୍ଡାଇ ପାରଇଟି ଶାୟକରେ ଗଳା ।
ଏହାଶୁଣି ଦୁଆରୀ ବେଗେ ହୋଇ ଗଲା
ଉତ୍ତରକୁ ଆଣି ନୃପଙ୍କୁ ଭେଟାଇଲା ।
କଙ୍କପଣ୍ଡା ନବାରିବାର ବୃହନ୍ନଳା
ଶୁଣି ନ ଆସିଲେ ସେ ପରୀକ୍ଷିତ କଳା ।
ଉତ୍ତର ବାପାଙ୍କର ପାଦ ଧରି ବନ୍ଦି
ହୋଇଲେ ଆଗେ ଛିଡ଼ା କରି ଦୁଇ ଛନ୍ଦି ।
ଦେଖିଲେ ଯୁଧିଷ୍ଠିର ନାକରୁ ରକତ—
ଧାରି ଲାଗି ରହିଛି ହୋଇଣ ବ୍ୟକତ ।

ନୟନ କମଳରେ ଲୋତକ ସମ୍ପାତ
ଛାଡ଼ା ହୋଇଅଛନ୍ତି ଆଗରେ ଦ୍ରୌପଦୀ ।
ଉତ୍ତର ତା ନ ସହି ଶୁଖାଇ ଆସ୍ୟକୁ
କହିଲେ ବ୍ରହ୍ମଣ ବାପାଙ୍କୁ ଉତ୍ତରକୁ ।
ଏଡ଼େ ପାପ କଥା କରିଲ ଯେ ଏ ଦେଶେ
ଜାଣୁଛ ବସିବ ସେ ଯାଇ ଯମ ପାଶେ ।
କଙ୍କପଣ୍ଡା ନାକରେ କରିଣ ଆଘାତ
ରଖିବାକୁ ପ୍ରାଣ କେ ଅଛି ବଳବନ୍ତ ।
ସାକ୍ଷାତେ ଇନ୍ଦ୍ର ବଜ୍ର ଧରିଣ ତାହାକୁ
ପାଳିଲେ ହେଁ ଯିବ ଅନ୍ତକ ନଗରକୁ ।
ବିରାଟ ବୋଇଲେ ରେ ବାବୁ କଙ୍କପଣ୍ଡା
ଖଣ୍ଡପଣ ମୋହଠାରେ କଲ ଗଣ୍ଡା ଗଣ୍ଡା ।
ପୁଣି ତୋ ବଳ ନିନ୍ଦା କରି ବୃହନ୍ନଳା
ବଳ ସମ୍ପାଦିଲ ମୋ ଆଗେ ମେଲି ଗଳା ।
ଏ ସକାଶୁଁ କ୍ରୋଧରେ ମୁଁ ଉତ୍ତର ବେଟା
କଲି ପଶାକାଠିରେ ଏହା ନାକ ଫଟା ।
ଉତ୍ତର ବୋଇଲେ ହେ କେଡ଼େ କର୍ମ ତାତ
କଲ ଭଲ ମନ୍ଦରେ ନ ଦେଇଣ ଚିତ୍ତ ।
ବ୍ରାହ୍ମଣ ନାକେ ପଶାକାଠି ମାରି କରି
ବୋଲାଇବ ବିଶ୍ୱରେ କି ଦଣ୍ଡଧାରୀ ।
ବ୍ରାହ୍ମଣ ହୋଇ କ୍ରୋଧ କଥା ପଦକରେ
ପୋଡ଼ିଦେଇ ପାରଇ ମହୀ କ୍ଷଣକରେ ।
କଲଣି ତ କଙ୍କପଣ୍ଡାଙ୍କ ଠାରେ ଦୋଷ
ଗୋଡ଼ ଧରି ଏବେ ତାହାଙ୍କ ମନ ତୋଷ ।
କଙ୍କପଣ୍ଡା ବିନା ଏ ତ୍ରିଭୁବନରେ
ପରିତ୍ରାଣ ନାହିଁ କେ ତୁମ୍ଭ ଜୀବନରେ ।
ପୁଅର ଏ ବଚନ ଶୁଣିଣ ବିରାଟ
ଭୟ ହେନ ଗୁଡ଼ଣ ଦେଇ କଥା ଆଣ୍ଟ ।
କୁରୁକୁଳ-କୁମୁଦ-ଚନ୍ଦ୍ରମାକୁ ଯାଇ
କହିଲେ ବିନୟରେ ଧରି ପାଦ ଦୁଇ ।
କ୍ରୋଧରେ ଅପରାଧ କଲି ତ ତୁମ୍ଭଙ୍କୁ
ସେ ଦୋଷ କ୍ଷମା ହେଉ ହେ ଦ୍ୱିଜ ଆମ୍ଭଙ୍କୁ
ବରଷେ ହେଲା ଆସି ରହିଲ ମୋ ପାଶେ
ଶତ ବରତନ ମୁଁ ଦେଇଛି ବିଶେଷେ ।
ଏ ଗୁଣ ମୋହର ସୁମରି ଦ୍ୱିଜବର
ଥରେ ବୋଲ ଏ ଦୋଷ ଛାଡ଼ିଲି ତୁମ୍ଭର ।

ଯୁଧିଷ୍ଠିର ବୋଇଲେ ଡରି ମୋ କୋପକୁ
କହୁଛ ସିନା ଯେହ୍ନ ହୃଦେ ସନ୍ତାପକୁ ।
ମୁଁ ତ ତୁମ୍ଭଠାରେ ରହିଛି ହୋଇ ଦାସ
ମୋର କ୍ଷମା ହୋଇବ ତୁମ୍ଭଠାରେ ଶେଷ ।
ଯେବେ ତୁମ୍ଭେ ମୋତେ ମାରିଲ ପଶାକାଠି
ତେବେ ମୁଁ ନ ଟଳି ତୁମ୍ଭର ପାଖୁଁ ଉଠି ।
ଏବେ ଯାହିଁ ଏ ଦୁଃଖ କହିବି କାହାକୁ
ପ୍ରଭୁ ତୁମ୍ଭେ ଆଜ ବୋଲିବା କି ତୁମ୍ଭଙ୍କୁ ।
ତୁମ୍ଭ ହିତପାଇଁକି ଦେଖୁଛ ରକତ
ସୈରିନ୍ଧ୍ରୀ ପାତ୍ରେ ଧରି ନ କଲେ ଭୂଗତ ।
ଯେବେ ପଡ଼ି ଥାଆନ୍ତା ମହୀରେ ଟୋପାଏ
ଏତେବେଳ ଯାଏ କି ଜୀଇଥାନ୍ତେ ରାଏ ।
ତୁମ୍ଭେ ତ ଅଟ ମୋର ସବୁବେଳେ ବନ୍ଦା
ମୋର ଅଦୃଷ୍ଟକୁ ମୁଁ କରୁଅଛି ନିନ୍ଦା ।
ଏହା କହି ରକତ ସଞ୍ଚା ଦେଲେ ଲୁପି
ହୃଦରେ ଯୁଧିଷ୍ଠିର ନୋହି କିଛି କୋପୀ ।
ଏ ସମୟରେ ଆସିଲେ ବୃହନ୍ନଳା
ବାଜୁଅଛି ଯେ କଟି ଦେଶରେ ମେଖଳା ।
ବିରାଟ କଙ୍କଙ୍କର ପାଦେ ନମସ୍କାର
କଲେ ଆଦରରେ ସେ ଯୋଡ଼ି ବେନିକର ।
ବିରାଟ ବୃହନ୍ନଳା ମୁଖକୁ ଅନାଇ
ପୁଅ ଯୁଦ୍ଧ ଆଣ୍ଟ କହିଲେ ତୋଷ ବହି ।
ବୋଇଲେ ବୃହନ୍ନଳା ମୋର ପୁଅ ରଥୀ
ଅନୁରୂପରେ ତୁମ୍ଭେ ମିଳିଲ ସାରଥି ।
ଏ ରୂପେ ନୋହିଲେ କି କୁରୁସୈନ୍ୟ-ସିନ୍ଧୁ
ତୁରନ୍ତ ଭୀଷ୍ମ ଦ୍ରୋଣ ଶର ବିନ୍ଦୁ ବିନ୍ଦୁ ।
ସହସ୍ରସଂଖ୍ୟା କାଣ୍ଡ ବିନ୍ଧିଲେ କର୍ଣ୍ଣ ଲକ୍ଷେ
ବାଜେ କହ କେହି ଯୁଝିଲ ତାଙ୍କ ମୁଖେ ।
ପ୍ରଳୟ ଅଗ୍ନି ପରି ଭୀଷ୍ମଙ୍କର ତେଜ
ସବୁବେଳରେ ପୁଣ ଥାଏ ବଳ ଓଜ ।
ପର୍ଶୁରାମ ବଳ ଯେ ସର୍ବ କ୍ଷତ୍ର-ରଣେ
ଜିଣିଲ କହ ତାଙ୍କୁ କେଉଁ ମାରଗଣେ ।
ଦ୍ରୋଣ ତ ବୃଷ୍ଣି ପାଣ୍ଡୁ କୁରୁଙ୍କର ଗୁରୁ
ବଳରେ ତ ଅଟନ୍ତି ଅତି ହନ୍ତକାରୁ ।
ତାହାଙ୍କୁ କେଉଁ ଶରମାନ ତୁମ୍ଭେ ବିନ୍ଧି
କହ ଯୁଦ୍ଧମାର୍ଗ କିରୂପେ ଦେଲ ଛନ୍ଦି ।

ଅଶ୍ୱତ୍ଥାମା ରହି ତ ଥିଲେ ରଣସୀମା
ନ କରି କହ ତାଙ୍କ ଭାଙ୍ଗିଲ ଗାରିମା ।
କୃପଙ୍କୁ ଯୁଦ୍ଧରେ ତ ନ ଜିଣନ୍ତି କେହି
କହ ତାଙ୍କ ସଙ୍ଗେ ଯୁଝିଲ ତୁମ୍ଭେ କେହି ।
ଦୁର୍ଯ୍ୟୋଧନ କାଣ୍ଡ ଫୁଟାଏ ଗଣ୍ଡି ହାଣ୍ଡି
କହ କି ପ୍ରକାରେ ଆସିଲ ତାଙ୍କୁ ଭଣ୍ଡି
ଯୁଦ୍ଧରେ କୁରୁଙ୍କର ଗରବକୁ ଭାଙ୍ଗି
ହୋଇକରି ସେ ଜୟଲକ୍ଷ୍ମୀଙ୍କର ସଙ୍ଗୀ ।
ଯା ଆସିଲ ଘେନମୋ ଗାଈଟିମାନଙ୍କୁ
ଏ ବଡ଼ ଭାଗ୍ୟତ ଆସୁଛି ମୋ ମନକୁ ।
ଉତ୍ତର ବୋଇଲେ ହେ ତାତ ହେଲେ ବାଇ
ତା ବୃହନ୍ନଳାକୁ ପଚ୍ଚର ନ ଯୋଗାଇ ।
କୁରୁଙ୍କୁ ଜିଣି ଗାଈ ଆଣିବାର ମୋର
ହାତରେ ନୁହଇ ହେ ଜାଣ ନରବର ।
ତୁମ୍ଭେ ଏବା ବୋଲିବ ଜିଣିଲା କିଏ ସେ
ଜାଣ ସେ ପଳାଇଲେ ତୁମ୍ଭ ଧର୍ମବଶେ ।
ଦେବତା ପରି ମହା ତେଜକୁ ପ୍ରକାଶି
ପୁରୁଷ ଜଣେ ଦେଲା ତାଙ୍କ ସୈନ୍ୟ ନାଶି ।
ତା ହାତରେ ସେ ଧରିଥିଲା ଯେଉଁ ଧନୁ
ତା ଘୋଷ ଶୁଣିଣ କମ୍ପିଲା ମୋର ତନୁ ।
ତୁମ୍ଭ ବୁଦ୍ଧି ଧର୍ମେ ଥିବାରୁ ନରନାହା
ଧର୍ମ ଟି ସେ ରୂପେ ତୁମ୍ଭଙ୍କୁ ହେଲେ ସାହା ।
ଏ ନୋହିଲେ ମୋର ଘେନି କି କୁରୁକୁଳ
ବଳ କି ପଳାଅନ୍ତେ ହୋଇଣ ଦୁର୍ବଳ ।
ତୁମ୍ଭେ ତା କଥାରେ ବସି କି ଥାନ୍ତ ବାଡ଼ି
ଏତେ ବେଳଯାଏ ଯା ଶୋକରେ ନ ପଡ଼ି ।
ଭୀଷ୍ମ ଦ୍ରୋଣ ଦ୍ରୌଣି ଯେ କୃପା ଦୁର୍ଯ୍ୟୋଧନ
ଆଦି ରଥୀମାନେ କରନ୍ତେ ଆୟୋଧନ ।
ସେ ପୁରୁଷ ଧନୁ ବାହାରି ଶର କୋଟି
ଗୁଳିଣ ଦେଲା ତାହମାନଙ୍କ ଦେହଟି ।
ଦୁର୍ଯ୍ୟୋଧନ ତା ଦେଖି ପଳାଅନ୍ତେ ଭୟେ
ଡାକିଲେ ସେହୁ ରହ ରହ ବୋଲି ରାୟେ ।
ମୋ ଶରକୁ ଡରି ହସ୍ତିନାପୁରେ ଯାଣ
ଥିଲେ ଯାଅ ମୋତେ କହି ହେ ନରଗଣ ।
ନୋହିଲେ ପଡ଼ିଣ ଆଜ ମୋ ଶରମୁଖେ
ବସ ଯାଇଁ ଶଚୀପତିଙ୍କ ପାଖେ ସୁଖେ ।

ସେ ପୁରୁଷଙ୍କ ମୁଖୁଁ ଏ ବଚନ ଶୁଣି
ଦୁର୍ଯ୍ୟୋଧନ ପୁଣି ଛନ୍ଦିଲେ ଶର ଟାଣି ।
ସେ ଘାତରୁ ମୋହ ନଦରେ ହୋଇବ୍ୟଥା
କୁହାଇ ନ ଦେଲା ସେ ମୋତେ ପଦେ କଥା
ସେ ଦେବପୁତ୍ର ଶର ପତନ ଯେ ପାଇ
କୁରୁ ସୈନ୍ୟବଳ ସମ୍ପତ୍ତି ହେଲା ଦହି ।
ଏ ସକାଶୁଁ ସମସ୍ତ କୁରୁ ମହୀଦେଶେ
ଧନୁ ଛାଡ଼ି ଶୋଇଲେ ମୋହ ନିଦ୍ରାବଶେ ।
ଏ ରୂପେ ଷଡ଼ରଥି ହାରିଙ୍କି ଦେବପୁତ୍ର
ଶାୟକ ସିଂହ ପେଷି ବିଦାରନ୍ତେ ଗାତ୍ର ।
ଯୁଦ୍ଧରେ କୁରୁମାତ୍ର ହୋଇ ନ ରହିଲେ
କେ ମଲେ କେ ବନମଧ୍ୟକୁ ପଳାଇଲେ ।
ବିରାଟ ବୋଇଲେ ଜିଣିଲେ ଯେ କୁରୁଙ୍କୁ
ସେ କାହିଁ ଛନ୍ତି ବାବୁ କହ ତ ଆମ୍ଭଙ୍କୁ ।
ଉତ୍ତର ବୋଇଲେ ସେ ଅନ୍ତର୍ଦ୍ଧାନେ ଗଲେ ।
ତାହାଙ୍କୁ ମୁଁ ଚିହ୍ନି ପାରିନାହିଁ ଭଲେ ।
କାଲି ପରି ଭିତରେ ରାଜନ ତୁମ୍ଭଙ୍କୁ
ଦେଖାଦେବେ ଆସି ସେ ଧରି ସ୍ୱରୂପକୁ ।
ବସ୍ତ୍ର ପକା ହେଲେ ଭୂଷି ଅତି ବାଞ୍ଛା
ଏଣୁ ଘେନ ନ ପାରିଲେ ସେ ପୁଅ ବଞ୍ଚା ।
ପୁଣି ବୃହନ୍ନଳାକୁ ହସିଣ ବୋଇଲେ
ଯାଅ ଉତ୍ତରକୁ ନଚାଅ ଏବେ ଭଲେ ।
ଶାଢ଼ୀ ସରଳ ତ ପାଇଛ ଆମ୍ଭଠାରୁ
ନ ଅଣ୍ଟିଲେ ନେଇଥିବ ଯେ ଗନ୍ତାଘରୁ ।
ବୃହନ୍ନଳା ନମିଣ ବିରାଟ ପଦରେ
ଗଲେ ନଚାଇବା ଘରକୁ ତର ତରେ ।
ଉତ୍ତରକୁ ବୋଇଲେ ରଥୀଙ୍କର ପାଗ
ନିଅ ଆଗ ସୁମୁଖି ବହିଣ ସରଗ ।
ଉତ୍ତର ତ ଶାୟକ ପ୍ରହାରି କୁରୁଙ୍କୁ
ଦେଖାଇଲେ ନେଇ ଯମଙ୍କ ନଗରକୁ ।
ବିରାଟ ମହୀପତି ଏହା ଶୁଣି କରି
ମୋଦ ଜଳେ ବୁଡ଼ିଲେ ମନେ ସ୍ନେହ ଧରି
ତୁମ୍ଭେ ଏବେ ମୋତେ ବଧାଇ ଆଣିଦିଅ
ଶୁଣିଲ ତ ଯୁଦ୍ଧରେ ଭାଇଙ୍କ ବିଜୟ ।
ଉତ୍ତର ତା ଶୁଣି ଅଳପ ହସିଦେଇ
କୁରୁଙ୍କ ପାଗକୁ ରଖିଲେ ଘରେ ନେଇ ।

କୁଣ୍ଢାଇମାନଙ୍କୁ ପିନ୍ଧାଇ ସେ ବସନ
ଖେଳିଲେ କରି ନିଜ ମାନସ ପ୍ରସନ୍ନ ।

-- ୦ --

## ଅଜ୍ଞାତବାସ ମୋଚନ ଓ ବିରାଟ ସିଂହାସନରେ ଯୁଧିଷ୍ଠିର ରାଜାହୋଇ ବସି ପରିଚୟ ପ୍ରଦାନ

ଏହି କାଳେ ଡ଼କାଇ ପାର୍ଥ ଉତ୍ତରଙ୍କୁ
ବୋଇଲେ କି ରୂପରେ ତୁମ୍ଭର ବାପଙ୍କୁ ।
ଆମ୍ଭେମାନେ ଯାଇଣ ଦେଖା ଦେବୁ ବାବୁ
ଯେ ହିଣୁଛି ଏହା କହ ତ ଭାବ ସବୁ ।
ଉତ୍ତର ବୋଇଲେ ହେ ମୋ ବାବୁ ସଭାରେ
କାଲି ବସ ମୁଣ୍ଡକୁ ମଣ୍ଡିଣ ଗଭରେ ।
ତୁମ୍ଭର ହେଲାଣି ଅଜ୍ଞାତବାସ ଶେଷ
କରିବାକୁ ଏଥିରେ କଥା ଅଛି କିସ ।
ଉତ୍ତରଙ୍କ ମୁଖରୁ ଶୁଣି ଏ ବଚନ
ଏହିରୂପେ କରିବା ବୋଇଲେ ଅର୍ଜ୍ଜୁନ ।
ସକାଳୁ ଉଠି ଚାରି ଭାଇଙ୍କି ଘେନିଲେ
ପୋଖରୀରେ ପଶିଣ ସ୍ନାହାନ ସାରିଲେ ।
ପିତୃଦେବତାଙ୍କୁ ଦେଇଣ ଜଳଦାନ
ତଦନ୍ତେ ପିନ୍ଧିଲେ ସ୍ୱର୍ଣ୍ଣୀନ ବସନ ।
କର୍ଣ୍ଣରେ ବାଛିକରି ଉତ୍ତମ କୁଣ୍ଡଳ
ଭରନ୍ତେ ମଣ୍ଡିଲା ସେ ବଦନମଣ୍ଡଳ ।
ମସ୍ତକରେ ବାନ୍ଧନ୍ତେ ରତନ ମୁକୁଟ
ରତନ ଶୋଭାକୁ ନିନ୍ଦିଲା ଝଟ ଝଟ ।
ବେକରେ ନାନାଜାତି ମାଳା ଲଗାଇଲେ
ଏ ବାହାରେ ହୀରାପଦକ ଲମ୍ବାଇଲେ ।
କଟିରେ ପରିଞ୍ଚ ଖଡ଼୍ଗ କି ନେଇ
ବାହାରିଲେ ବାହାମାନଙ୍କୁ ଚହଟାଇ ।
ଅଙ୍ଗୁଳିମାନଙ୍କେ ମୁଦ୍ରିକାଗଣ ଥିଲେ ।
ତାରକାଙ୍କ ଶୋଭା ଜ୍ୟୋତିକ ସେ ମଣ୍ଟିଲେ
ଆହେ ଜନ୍ମେଜୟ ଏ ରୂପେ ବେଶ ହୋଇ
ଆଗରେ ଯୁଧିଷ୍ଠିର ରାଜାଙ୍କୁ ଚଳାଇ ।
କ୍ରମରେ ଚାରିଭାଇ ହୋଇ ଆଗ ପଛ
ଗଡ଼ରେ ଜଣିଲେ ବୃଷଭ ସିଂହ ସ୍ୱଚ୍ଛ ।
ଅନ୍ତଃପୁରେ ଥିଲେ ବିରାଟ ନରରାଣ
ସେକାଳେ ସଭାକୁ ଗଲେ ସେ ପାଞ୍ଚ ଜଣ ।

ବିରାଟ ପାଇଁ ଯେ ଆସନ ଥିଲା ପଡ଼ି
ତା ମାଡ଼ି ବସିଲେ ପାଣ୍ଡବେ ନିଶ ମୋଡ଼ି ।
ଏହି ସମୟରେ ବିରାଟ ନରଈଶ
ସଭା ମଧ୍ୟେ ଆସି ହୋଇଲେ ପରବେଶ ।
ଦେଖି ବୃହନ୍ନଳା ଗ୍ରନ୍ଥିକ ତନ୍ତ୍ରିପାଳ
ବଲ୍ଲଭଙ୍କୁ କଙ୍କପଣ୍ଡା କରି ଯେ ମେଳ
ନିଜର ଆସନରେ ବସିଛନ୍ତି ମାଡ଼ି
ଉପରକୁ ଟେକ ଯେ ଦେଇ ନିଶ ମୋଡ଼ି ।
ତା ନ ସହି ବିରାଟ ଟଗଇ ଅପଘନ
କ୍ରୋଧାନଳେ ବୁଡ଼ାଇ ଦେଇ ଦେହ ଜ୍ଞାନ ।
ବୋଇଲେ କଙ୍କପଣ୍ଡା ମୋହର ଦାସ ହୋଇ
ମୋ ଆସନେ ବସୁ କହ କି ବଳ ପାଇ ।
ଅର୍ଜୁନ ବୋଇଲେ କି ବଳ ବିରାଟ
ସତେ ତୁମ୍ଭେ ଘରେ କି କରୁଥିଲ ନାଟ ।
କଙ୍କ ତିନଲୋକେ ଅଟନ୍ତି ଅଧିକାରୀ
ଥାଆନ୍ତି ତାଙ୍କୁ ସେବି ନୃପେ ତୁମ୍ଭପରି ।
ତପ ଧର୍ମ ଯଶ ଯେ ପରାକ୍ରମ ଦାନ
ସତ୍ୟ କ୍ଷମା ଆର୍ଜବ ଧୈର୍ଯ୍ୟର ଏ ସ୍ଥାନ ।
ଦେବ ଯକ୍ଷ ଗନ୍ଧର୍ବ ଉରଗମାନୁଷ
ଏମାନଙ୍କେ ଏ ତ ଅଟନ୍ତି ଦୁଧରସ ।
ଏହାଙ୍କୁ ଜାଣିବାକୁ ଏ ମହୀରେ କେହି
ମନୁଷ୍ୟ ହୋଇଅଛି ମୋତେ ଦିଶୁ ନାହିଁ ।
ପାଣ୍ଡବମାନଙ୍କରେ ଅଟନ୍ତି ଏ ରାଜା
ଜାଣ ଏହାଙ୍କରି ସବୁଲୋକ ପ୍ରଜା ।
କୁରୁମାନଙ୍କରେ ତ ଶ୍ରେଷ୍ଠ ଏ ଅଟନ୍ତି
ଯୁଧିଷ୍ଠିର ବୋଲିଣ ଏହାକୁ ବୋଲନ୍ତି ।
ସୂର୍ଯ୍ୟପରି ଦୁର୍ହୃଦ କୁମୁଦ ମର୍ଦ୍ଦନ୍ତି
ସୁହୃଦ-ନଳିନ ଆନନ୍ଦ ସମ୍ପାଦନ୍ତି ।
ଏ ଯେତେବେଳେ ଇନ୍ଦ୍ରପ୍ରସ୍ଥେ ଥିଲେ ବସି
ଏହାଙ୍କୁ ସେବୁଥାନ୍ତି ମର୍ତ୍ତ୍ୟଲୋକ-ବାସୀ
ଯିବାବେଳେ ସଙ୍ଗତେ ଥାନ୍ତି ଯେତେ ଲୋକ
କହିବାକୁ ନାହିଁ ତା ମୋହର ବିବେକ ।
ରଥ ଗଜ ଅଶ୍ୱ ଯେ କେତେ ଥାନ୍ତି କଳ
କହିବ ଯେ ବସିବ ଦିନୁଟିଏ ହାଳ ।
ସହସ୍ର ଆଠ ଭାଟ ସକାଳୁ ଏହାଙ୍କୁ
ଉଠାଉଥାନ୍ତି କହି ସୂକ୍ତ ବଚନକୁ ।

ସବୁ ରାଜାମାନେ ଏହାଙ୍କୁ ଦେଇ କର
ବସିଥାନ୍ତି ରାଜ୍ୟରେ ହୋଇ ନରବର ।
ସହସ୍ର ଆଠାଅଶୀ ଦ୍ୱିଜଙ୍କୁ ଏ ନିତ
ଭୋଜନ ଦେଇ କରି କରାନ୍ତି ଭୂପତି ।
ଶ୍ରେଷ୍ଠା କେମ୍ପା ଜଣା ରୋଗୀଙ୍କି ଏହୁ ଅନ୍ନ
ଖୁଆଇଲେ ଯାଇ ସେ କରନ୍ତି ଭୋଜନ ।
ଏହାଙ୍କର ସମ୍ପତ୍ତି ସୁଯୋଧନ ଦେଖି
କର୍ଣ୍ଣ ସଙ୍ଗେ ଜଳୁଥାଏଟି ହୋଇ ଦୁଃଖୀ ।
ଏ ତାହାରେ ଏହାଙ୍କର ଯେତେକ ଗୁଣ
ବଦନ ଗୋଟିକରେ ହେବ କି ବଖାଣ ।
ତୁମ୍ଭ ରାଜଆସନେ ଆସି ବସିବାକୁ
ଅଯୋଗ୍ୟ ହେଲେ କିମ୍ପା କହ ତ ଆମ୍ଭଙ୍କୁ ।
ବିରାଟ ବୋଇଲେ ଏ ଯେବେ ଯୁଧିଷ୍ଠିର
ଭାଇମାନେ ଅଛନ୍ତି କାହିଁ ଏହାଙ୍କର ।
ଦ୍ରୁପଦଙ୍କ ଝିଅ ଦ୍ରୌପଦୀ ନବ ବାଳା
କାହିଁ ଗଲେ ମୋତେ କହ ତ ବୃହନ୍ନଳା ।
ଅର୍ଜ୍ଜୁନ ବୋଇଲେ ବିରାଟ ରାଜନ
ଯାହା ହାତରେ ମଲେ କବଅ ରନ୍ଧନ ।
ସେହି ଜାଣ ଭୀମ ବଲ୍ଲଭ ନାମ ବହି
ତୁମ୍ଭ ଘରେ ଗୁପତ ହୋଇ ଥିଲେ ରହି ।
ଗନ୍ଧମାର୍ଦ୍ଦନରେ ସେ ମାରି ମଣିଭଦ୍ର
ଆଉ ଯକ୍ଷମାନଙ୍କୁ ଅଭଞ୍ଜଲେ ଭଦ୍ର ।
ତୁମ୍ଭେ ତାହାଙ୍କୁ ବାବ ମାଲକୁ ଯୁଝାଇ
ଦେଖିଛ ତ ବଳ ନୟନେ ନରସାଇଁ ।
କୀଚକକୁ ତୁମ୍ଭ ମାରିବା ସମୟରେ
ଗନ୍ଧର୍ବ ବୋଲାଇଲେ ସବୁରି ମୁଖରେ ।
ମାଦ୍ରୀପୁତ୍ର ନକୁଳ ଏହା ଛୁଡ଼ ବ୍ରୀଡ଼ା
ହୋଇଥିଲେ ତୁମ୍ଭର ଘୋଡ଼ାଙ୍କ ପରିଡ଼ା ।
ସହଦେବ ଧରିଣ ଗଉଡ଼ ରୂପକୁ
ପାଳୁଥିଲେ ତୁମ୍ଭର ଗାଈଟିମାନଙ୍କୁ ।
ସୈରନ୍ଧ୍ରୀ ତୁମ୍ଭ ଘରେ ବୋଲାଇ ଯେ ଥିଲେ
ସେହିଟି ଦ୍ରୁପଦଙ୍କ ଝିଅ ଜାଣ ଭଲେ ।
ଭୀମଙ୍କ ଅନୁଜ ମୋ ନାମ ଅର୍ଜ୍ଜୁନ
ଜାଣି ତ ଥିବ ମୋତେ ବିରାଟ ରାଜନ ।
ତୁମ୍ଭର ଘରେ ରହି ସୁଖାଗ୍ନି ପାଇଲୁଁ
ଅଜ୍ଞାତବାସ ଦୁଃଖ-ଋଣକୁ ଦହିଲୁଁ ।

ଏକାଳେ ଉତ୍ତର ବିରାଟ ପଛେ ଥାଇଁ
ପାଣ୍ଡୁସୁତମାନଙ୍କୁ କହିଲେ ଚିହ୍ନାଇ ।
ଶୁଦ୍ଧ ଜମ୍ବୁନଦର ପରାଏ ଗଉର
ରବିକର ପରାଏ ସେତ ତେଜସ୍କର ।
ନାଶା ଅଗ୍ର ଅଳପ ହୋଇଅଛି ଲମ୍ବ
ମୁଖ ନନ୍ଦୁଅଛି ଜାଣିଥିବା ତାମ୍ର ।
ପୃଥୁ ଦୀର୍ଘ ଦୁଇ ପୁଟକୁ ବହି ନେତ୍ର
ଦିଶୁଛି ଶୋଭାରେ ଫୁଟିଲା ଶତପତ୍ର ।
ସେହିଟି ଜାଣ କୁରୁକୁଳ-କୀର୍ତ୍ତିକାରୀ
ବୋଲାଉଛନ୍ତି ଯୁଧିଷ୍ଠିର ଦଣ୍ଡଧାରୀ ।
ଉନ୍ମତ୍ତ ହୋଇଥିବା ହସ୍ତୀର ଗମନ
ଜଣା ସୁନା ପରାଏ ଦିଶୁଛି ବରନ ।
ମୁଖ ଯେ ଦିଶୁଅଛି ଅତ୍ୟନ୍ତ ବିଶାଳ
ବାହୁ ଦୁହେଁ ଅତ୍ୟନ୍ତ ଅଟନ୍ତି ବିଶାଳ ।
ଅନ୍ୟୋନ୍ୟରେ ତ ହେଉଅଛ ଚହୁଁ ଚହୁଁ
ଭୀମ ବୋଲି ରାଜନ ତାହାଙ୍କୁଟି କହି ।
ବାଣ ଯୁଥଗତ ପ୍ରାଏ ଉପମେୟ
ହୋଇ ଧରିଛନ୍ତି ଶ୍ୟାମତା ନିଜକାୟ ।
ସିଂହ ପରି ଉଚ ହୋଇଣ ଦୁଇଅଂଶ
ନୟନ ମଧ୍ୟ ପଦ୍ମ ପତ୍ରର ସଦୃଶ ।
ସେହିଟି ଅର୍ଜ୍ଜୁନ ତିନିଲୋକଜିତା
ମାନନ୍ତିଟି ତାଙ୍କ ବଳକୁ ଦେବତା ।
ଯେ ଦୁହେଁ ବସିଛନ୍ତି ଧରି କାମମୂର୍ତ୍ତି
ନକୁଳ ସହଦେବ ସେହିଟି ବୋଲନ୍ତି ।
ନବଘନ ତମାଳ ନୀଳ ଉତ୍ପଳ
ଶୋଭାକୁ ଯାହା ଦେହ କରୁଛି ଦୁର୍ବଳ ।
ସେହି ମହୀସାଇଁ ଦ୍ରୁପଦ ଝିଅ ହୋଇ
ସୁଦେଷ୍ଣା ଘରେ ଥିଲେ ସୈରନ୍ଧ୍ରୀ ବୋଲାଇ
ପୁଣି ଅର୍ଜ୍ଜୁନଙ୍କର ପରାକ୍ରମ ଯାକ
ଯା ଦେଖିଥିଲେ ତା କହିଲେ ଗୁଡ଼ି ଦକ ।
ଏଣୁ ଟି ଏକା ରଥ ଗୋଟିକରେ ଯାଇଁ
କୁରୁସୈନ୍ୟଙ୍କୁ ଶାୟକରେ ଦେଲେ ଦହି ।
ଭୀଷ୍ମ ଦ୍ରୋଣ ଦ୍ରୌଣି ଯେ କୃପ ଅଶ୍ୱତ୍ଥାମା
କର୍ଣ୍ଣ ଆଦିଙ୍କର ଯେ ଭାଙ୍ଗିଲେ ଗାରିମା ।
ତୁମ୍ଭ ଗାଈମାନଙ୍କୁ ଆଣିଲେ ଛଡ଼ାଇ
ମହୀ ମଧ୍ୟରେ ବଳ କୀର୍ତ୍ତି ରଖାଇ ।

ଏହାଙ୍କର ଶଙ୍ଖ ଶବଦ ଶୁଣି କାନ
ବଧିର ହେଲା ମୋର ଜାଣ ହେ ରାଜନ ।
ବିରାଟ ବୋଇଲେ ହେ ଉତ୍ତର ଆଜଯାଏ
ମୁଁ ତ ଜାଣି ନାହିଁ ଏ ପାଣ୍ଡୁଙ୍କର ପୋଏ ।
ତୁମ୍ଭେ ମୋ ପୁତ୍ର ହୋଇ ଜାଣିଲ ଏହାଙ୍କୁ
ଏହା ମୁଁ ଭାଗ୍ୟକର ଆଣୁଛି ମନକୁ ।
ଏବେ ଏହାଙ୍କୁ ମୁଁ ପ୍ରସନ୍ନ କରାଇବି
ବିଚାରୁଛି ପୁତ୍ର ବିଚାର କହ ଭାବି ।
ଏ ବାହାରେ ତୋହର ଭଗ୍ନୀ ଉତ୍ତରାକୁ
ଦେବି ବୋଲି ମଧ୍ୟ ଭାବୁଛି ଅର୍ଜୁନଙ୍କୁ ।
ଉତ୍ତର ବୋଇଲେ ଯା କହିବା ହୋଇଲା
ମୋତେ ମଧ୍ୟ ଭଲ ହୋଇ ସେ ଯୋଗାଇଲା
ବିରାଟ ବୋଇଲେ ତ୍ରିଗର୍ତ୍ତ ମୋତେ ବାନ୍ଧି
ନେଉଥିଲା ଭୀମ ଆସିଲେ ତାହାକୁ ଛନ୍ଦି ।
ନୋହିଲେ ବାବୁ ମୋତେ ଏ ମତ୍ସ୍ୟନଗରେ
ଦେଖିଥାନ୍ତୁ କି ଅରେ ତୋ ନେତ୍ରଯୁଗରେ ।
ଆସ ଏବେ ଯେ ଯୁଧିଷ୍ଠିରେ ଆମ୍ଭେ ବୋଧି
କରିବା ପୂଜା ଯେଉଁ ରୂପେ ଶାସ୍ତ୍ରବିଧି
ଏ ରୂପେ ବାବୁ ପୋଏ ବିଚାର ଛୁଣ୍ଡାଇ
ଆନନ୍ଦ ଖଣ୍ଡା ହୃଦ-ହସ୍ତରେ ଉଠାଇଁ ।
ଯୁଧିଷ୍ଠିରଙ୍କୁ କହିଲେ ସେ ପ୍ରୀତି ଭାବେ
ଅପରାଧ ଯା ଅର୍ଜିଛି କ୍ଷମା କର ଏବେ ।
ଆଜଠୁଁ ଆମ୍ଭ ରାଜ୍ୟ ତୁମ୍ଭ ଅଧିକାର
ହୋଇଲା ଆମ୍ଭେ ହେଲୁଁ ତୁମ୍ଭର କଙ୍କର ।
ଯା ବୋଲୁଥିବ ହେ ପାଣ୍ଡବକୁଳ ଯଶା
ତାହା କରୁଥିବୁ ନ ଲଙ୍ଘି ତୁମ୍ଭ ଭାଷା ।
ଏ ବାହାରେ ପାଣ୍ଡବମାନଙ୍କୁ ଅନାଇଁ
ବୋଇଲେ ବଡ଼ ଭାଗ୍ୟ କରିଥିଲି ମୁହିଁ ।
ନୋହିଲେ କମ୍ପା ତୁମ୍ଭେମାନେ ମୋ ନୟନ
ଯୁଗଳକୁ ଆସିଣ ଦେଲ ଦରଶନ ।
ଏହା କହିସାରି ଯେ ବିରାଟ ରାଜନ
ଜଣେ ଜଣେ କରିଣ କଲେ ଆଲିଙ୍ଗନ ।
ପୁଣି ଯୁଧିଷ୍ଠିରଙ୍କୁ କହିଲେ ବିରାଟ
ଶୁଣ ଆହେ ପାଣ୍ଡୁନୃପଙ୍କ ଜ୍ୟେଷ୍ଠସୁଟ ।
ଯାହା ବାରବାର ବରଷ ବନବାସ
ମା ଦେଶରେ ଅଜ୍ଞାତବାସ କଲେ ଶେଷ ।
ମୁହିଁ ତୁମ୍ଭଙ୍କୁ ପୁଣି ନୟନେ ଦେଖିଲି
ଏଥିରୁ ସତ୍ୟ ଭାଗ୍ୟ ହେବ ମୋ ଜାଣିଲି ।
ମୋ ଝିଅ ଉତ୍ତରାକୁ ଦେବି ଅର୍ଜୁନଙ୍କୁ
ସମ୍ମତ କରିବା ହେଉ ଏ କଥାକୁ ।
ଏହା ଶୁଣିଣ ଯୁଧିଷ୍ଠିର ନରସାଇଁ
ଅରଜୁନଙ୍କୁ ଦେଲେ ବହରେ ଅନାଇଁ ।
ଯୁଧିଷ୍ଠିରଙ୍କର ଚାହିଁବା ମାତ୍ରକରେ
ଅରଜୁନ କହିଲେ ବିରାଟ ଆଗରେ ।
ତୁମ୍ଭ ଝିଅକୁ ମୋହ ପୁତ୍ର ପାଇଁ ରାଜେ
ଦେନବ ବିଅ ମୋତେ ସନ୍ତୁଷ୍ଟ ହୃଦୟେ ।
ତୁମ୍ଭେ ଯେ ଆମ୍ଭ ସମ୍ବନ୍ଧକୁ ଅନୁରୂପ
ଏଥିରେ କିଛି ଚିନ୍ତା ନ କର ହେ ନୃପ ।
ବିରାଟ ବୋଇଲେ ହେ ପାର୍ଥ କାହିଁପାଇଁ
କହ ମୋ ଝିଅକୁ ନେବାକୁ କଲ ନାହିଁ ।
ମୁହିଁ ତ ଯାଚିକରି ଦେଉଛି ତୁମ୍ଭଙ୍କୁ
ତୁମ୍ଭେ କମ୍ପା ଦେଉଛ ତୁମ୍ଭର ପୁତ୍ରକୁ ।
ଅର୍ଜୁନ ବୋଇଲେ ଥାଇଁ ମୁଁ ତୁମ୍ଭ ଘରେ
ନଚାଉଥିଲି ଉତ୍ତରାଙ୍କୁ ନିରନ୍ତରେ ।
ଉତ୍ତରା ମୋହଠାରେ ଗୁଡ଼ଦେଇ ଲଜ୍ଜା
ଗୁରୁ କରି ମାନ ଯେ କରୁଥାନ୍ତି ପୂଜା ।
ଏବେ ତାଙ୍କ ଶ୍ୱଶୁରପଣେ ହୋଇ ଲୋଭ
ଆହେ ନରବର ହୋଇବି ମୁହିଁ ବଶ ।
ତେବେ ତୁମ୍ଭେ ବୋଲିବ ଥିବାରୁ ତ ପ୍ରୀତି
ଅର୍ଜୁନ ବଶ ହେଲେ ଉତ୍ତରା ଯୁବତୀ ।
ଦାଣ୍ଡଲୋକେ ମଧ୍ୟ ଏହି କଥାକୁ ଶଙ୍କା
କରିବେ ଯେତେବେଳେ ବସିବେଟି ଏକା ।
ଏଣୁ ସକାଶରୁ ପୁତ୍ରକୁ ବରା କଲେ
ମୋତେ ପରଶଂସା କରିବେ ଲୋକେ ଭଲେ ।
ମୋ ପୁତ୍ର ଅଭିମନ୍ୟୁ ନୁହନ୍ତି ତ ସାନ
ଯାହାଙ୍କର ମାମୁଁ ହେ ଶ୍ରୀକୃଷ୍ଣ ରାଜନ ।
ବାଳକ ବୟସେ ସମସ୍ତ ଅସ୍ତ୍ର ଶିଖି
ନ ମାନନ୍ତି ବୀରମାନଙ୍କୁ ସେହୁ ଦେଖି ।
ଉତ୍ତରାପତି ହେବାକୁ ସେ ଅନୁରୂପ
ଆହେ ମତ୍ସ୍ୟଦେଶ ଅଧିପ ଗୁଡ଼ ତାପ ।
ବିରାଟ ବୋଇଲେ ହେ ରାଜା ଯୁଧିଷ୍ଠିର
ତୁମ୍ଭର ଭଲ କଥା ମନକୁ ମୋହର ।

ଯାଉଅଛୁ ବୋଇଲେ ମଣ୍ଡାଇ ମୁଁ ସଭା
କରାଇବ କୁମର ପୁତୁରାକୁ ବିଭା ।
ଯୁଧିଷ୍ଠିର ଶୁଣିଣ ବିରାଟ ବଚନ
ସନମତ କରି ସେ ହୋଇଲେ ମଗନ ।
ଯୁଧିଷ୍ଠିରଙ୍କର ସେ ସମ୍ମତିକ ପାଇ
ଉତ୍ତରକୁ ବିରାଟ ନୃପତି ଡକାଇ ।
ବୋଇଲେ ତୁମ୍ଭେ ଏବେ ଦ୍ୱାରକାକୁ ଯିବ
ପାଣ୍ଡବଙ୍କ ବାରତା କୃଷ୍ଣଙ୍କୁ କହିବ ।
ଏ ବାହାରେ ଏହାଙ୍କ ବଳ ପଉରୁଷ
ଯା ଦେଖିଛ ତା ମଧ୍ୟ କରିବ ପ୍ରକାଶ ।
ଏହା ଶୁଣିଣ ଉତ୍ତର ଦ୍ୱାରକାକୁ ଗଲେ
କୃଷ୍ଣଙ୍କ ଆଗେ ସବୁ ଜଣାମଣା କଲେ ।
କୃଷ୍ଣ ତାହା ଶୁଣିଣ ସନ୍ତୋଷ ଲଭିଲେ
ଧନ ରତ୍ନ ବସ୍ତ୍ର ବହୁତ ତାଙ୍କୁ ଦେଲେ ।

*—

## ଉତ୍ତରା ସହିତ ଅଭିମନ୍ୟୁର ବିବାହ

ଏଥୁ ଅନନ୍ତରେ ପାଣ୍ଡବ ପାଞ୍ଚ ଭାଇ
ସଙ୍ଗତରେ ଘେନି ଦ୍ରୌପଦୀ ଚନ୍ଦ୍ରମୁହାଁ ।
ମତ୍ସ୍ୟଦେଶ ଅଧିପ ଉପପ୍ଲବଗଡେ
ରହିଲେ ଘର କରି ସଜାଡ଼ି ନବୋଢ଼େ ।
ପାଣ୍ଡବେ ଉପପ୍ଲବେ ରହିବାର ଶୁଣି
ଆସିଲେ କାଶିରାଜା ଶୈବ୍ୟ ନରମଣି ।
ସେ ଦୁହେଁ ଅତ୍ୟନ୍ତ ପାଣ୍ଡବେ ସ୍ନେହମନା
ଆଣିଥିଲେ ଯେ ଦୁଇ ଅକ୍ଷୌହିଣୀ ସେନା ।
ଦ୍ରୁପଦ ସଙ୍ଗେ ଘେନି ସେନା ଅକ୍ଷୌହିଣୀ ।
ଆସିଲେ ପାଣ୍ଡବଙ୍କ ସମ୍ବନ୍ଧକୁ ଜାଣି
ଧୃଷ୍ଟଦ୍ୟୁମ୍ନ ଘେନି ସଙ୍ଗତେ ଭଣଜାଙ୍କୁ
ଆସିଲେ ମଧ୍ୟ ଧାଇଁ ପାଣ୍ଡବଙ୍କ ଠାକୁ ।
ଦ୍ରୁପଦଙ୍କ କୁମରମାନେ ଆସିଥିଲେ
ତା ଦେଖିଣ ପାଣ୍ଡୁଙ୍କର ସୁତେତୋଷୀହେଲେ
ପୁଣି ଯେ ତାହାଙ୍କର ଅତ୍ୟନ୍ତ ସେ ଶଳା
ଭିଡ଼ାଭିଡ଼ ହେଲେ ଲଗାଇ ହୃଦଗଳ ।
ବିରାଟ ଦେଖିକରି ନୃପତି ମାନଙ୍କୁ
ବସା ସଞ୍ଜା ଦେଇଣ ପୂଜିଲେ ତାହାଙ୍କୁ ।
ଏହି କାଳେ ପୁରୁଷମାନଙ୍କ ଉତ୍ତମ
ଆସିଲେ ସେହିଠାକୁ କୃଷ୍ଣ ବଳରାମ ।

ସାତ୍ୟକି କୃତବର୍ମା ନିଶଠ ଅକ୍ରୂର
ଅନ ଧୃଷ୍ଟି ଶାମ୍ବ ଅନ୍ଧକ ବୃଷ୍ଣି ବୀର ।
ଏମାନେ ଯେଝା ଯାନମାନଙ୍କୁ ଆରୋହି
ବାହାରିଲେ ମତ୍ସ୍ୟ ଦେଶକୁ ତ୍ୱରା ହୋଇ ।
ଅଭିମନ୍ୟୁ ସୁଭଦ୍ରା ଦୁହିଁଙ୍କ ଘେନିଲେ
ଇନ୍ଦ୍ରସେନ ଆଦି ସାରଥି ବାହାରିଲେ ।
ଅୟୁତ ଦଶ ଅଶ୍ୱ ସସ୍ର ଦଶ ହାତୀ
ଅରବୁଦେ ରଥ ସେ ନିଖର୍ବେ ପଦାତି ।
ଦ୍ୱାରକାରୁ ଆସିଲେ ଏତେ ଚତୁରଙ୍ଗ
ପାଣ୍ଡବେ ଦେଖିବା ମୋଦକୁ କରି ରଙ୍ଗ ।
ସୁଭଦ୍ରା ପୁତ୍ର ଘେନି ପାର୍ଥ ପାଦେ ବନ୍ଦି
ଛିଡ଼ା ହେଲେ ଆଗରେ ଉଚ୍ଚସ୍ୱରେ କାନ୍ଦି
ଅରଜୁନ ତାହାଙ୍କୁ ସମ୍ଭାବନା କରି
ବୋଇଲେ ନ କାନ୍ଦ ଗୋ ତୁଚ୍ଛା ଶୋକଧରି
ତୁମ୍ଭ ପୁଅଂକର ହୋଇଛି ବିଭା କାଳ
ଏତେବେଳରେ କିମ୍ପା ହେଉଛ ବିକଳ ।
ରାମକୃଷ୍ଣ ଦୁହେଁଟି କୁଳମର୍ଯ୍ୟାଦାରେ
ପୂଜା କରି ପାଣ୍ଡବମାନଙ୍କୁ ଆଦରେ ।
ଧନରତ୍ନ ବାସ ଯେ ଦାସଦାସୀମାନ
ତାହାଙ୍କ ଦେଇ କରି ହେଲେ ତୋଷମନ ।
ଏହି କାଳେ ବିରାଟ ଆପଣା ନଗରେ
ଉତ୍ସବ କରାଇଲେ ଅତ୍ୟନ୍ତ ସ୍ନେହରେ ।
ଅନ୍ତଃପୁର ମଧ୍ୟରେ କରାଇ ମଣ୍ଡପ
ତହିଁ ବନ୍ଧାଇଲେ ଅମୂଲ୍ୟ ଚନ୍ଦ୍ରତପ ।
ବିଭାର ଉଚିତ ସାମଗ୍ରୀ ଭିଆଇଲେ
ଡକାଇଣ ମୃଦୁସୁଲକ୍ଷୀକ ଆଜ୍ଞା ଦେଲେ ।
ମୋ ଝିଅ ଉତ୍ତରାକୁ କୋମଳ ସ୍ନାହାନ
କରାଇ ଆଜ ରାତି କରାଅ ମଣ୍ଡନ ।
କାଲି ପ୍ରଭାତରେ ଯେ ହୋଇବେ ସେ ବିଭା
ସଜାଡ଼ିଥିବ ଭଲ କରି ତାଙ୍କ ଗଭା ।
ଏହା ଶୁଣି ମୃଦୁସୁଲକ୍ଷୀଏ ତହିଁ ଗଲେ
ଉତ୍ତରାଙ୍କର ମୁଖ ଚୁମ୍ବି ଜଣାଇଲେ ।
କାଲି ହେବ ତୁମ୍ଭର ବିବାହ ଉତ୍ସବ
ଆମ୍ଭମାନଙ୍କର ନୟନ ତା ଦେଖିବ ।
ସେ ବଚନ ଚନ୍ଦ୍ର ହୋଇଣ ପ୍ରକାଶିଲା
ଉତ୍ତରାଙ୍କ ହୃଦ-କୁମୁଦ ଉଲ୍ଲାସିଲା ।

ଏଥୁଅନ୍ତେ ରଜନୀ ଶେଷେ ସଖୀମାନେ
ହଳଦୀ ଘିଅ ଲେପି ଉତ୍ତରା ଅପଘନେ ।
ସାତଘରରୁ ଯେଉଁ ପାଣି ଆଣିଥିଲେ
ସୁବର୍ଣ୍ଣ କୁମ୍ଭେ ଭରି ସ୍ନାନ କରାଇଲେ ।
ତଦଅନ୍ତେ ଆଳ ହୁଅନ୍ତେ ହୁଳହୁଳ
କାମ କର୍ଣ୍ଣେ ଶୁଣି ବସିଲା ମନେ ଭଳ ।
ଉତ୍ତରାଙ୍କ ଦେହରେ ଜଳର ସ୍ପରଶ
ହୁଅନ୍ତେ ତ ତନ୍ତ୍ରଗଲା ଝୀନବାସ ।
କାଚଭଜ ଫୁଟିଣ ସୁବର୍ଣ୍ଣ ପ୍ରତିମା
ଉପମାକୁ ସେ ଦେହ ଦିଶିଲା ସୁଶମା
କେଶରୁ ଜଳବିନ୍ଦୁ ଟୋପି ଟୋପି ଥାଇଁ
ସବୁରି ଦେହେ ଶଙ୍କା ଦେଲା ଉପୁଜାଇ ।
ଏଣୁ ଲୋକେ ବୋଇଲେ ଚନ୍ଦ୍ର ଖାଇରାହୁ
ସୁଧା ବୋଳଦେବା ବିନ୍ଦୁ ଏ ଅବା ନୋହୁ ।
ଏହିରୂପେ ଅନେକ ପ୍ରକାରେ ଭାବନା
କରିଣ ସଖୀମାନେ ହୋଇଣ ସୁମନା ।
ସୂକ୍ଷ୍ମୀନ ବସନରେ ଗୁପି କେଶ ତେହ
ପିନ୍ଧାଇଲେ ପାଟଶାଢ଼ୀକୁ କରି ସ୍ନେହ ।
କନକ ରଥେ ମଣ୍ଡା ରଙ୍ଗ ଯବନିକା
ପ୍ରଭାକୁ ସେହି ଶୋଭା ଦିଶିଲା ଅଧିକା ।
ଆଗ ପଟେ ଇନ୍ଦ୍ରି ପଡ଼ନ୍ତେ ଶାଢ଼ୀ କୁଞ୍ଚା
ନଦିଲା କାମଦାହ ନିଆଁ ଶିଖା ସଞ୍ଚା ।
ବସନ ପିନ୍ଧା ସାରି ସମସ୍ତ ସଖିଏ
ବସାଇଲେ ପାରିଣ ଆସନ ଗୋଟିଏ ।
କୁନ୍ତଳ ଦେଇ କରି ଉତ୍ତରା ବାଳକୁ
ରଙ୍ଗ ଭଣ୍ଡୀ ଦେଇଣ ବାନ୍ଧିଲେ ଜୁଡ଼ାକୁ ।
ସିତ ପୀତ ନୀଳ ଲୋହିତ ଫୁଲେ ଗନ୍ଧ
ହୁଅନ୍ତେ କଲା ନୀଳ ଲୋହିତ ମନେ ଲୋଭ ।
ନୋହିବ ତାହା ଦେଖି ନରକେ ମୋହିତ
ହେଉନାହିଁ ବଚନେ ଯା ଶୋଭା କହି ତ ।
ମୁଣ୍ଡରୁ ପାଦଯାଏ ଅଳଙ୍କାର ଖଞ୍ଜି
ଗଲେ ସମସ୍ତ ସଖୀମାନେ ସୁଖେ ମଜ୍ଜି ।
ସେହିକାଳେ ଭେରୀ ପଟହ ବୀଣା ଶଙ୍ଖ
ବାଜି ବଜାଇଲା ମଦନ ବାଦ୍ୟ ଦୁଃଖ ।
ଏହି ସମୟରେ ରାଜନ ଯୁଧିଷ୍ଠିର
ଘେନ ସଙ୍ଗତରେ ପାଞ୍ଚାଳ ଧୃଷ୍ଟି ବୀର ।
ସୁଭଦ୍ରାକୁମରକୁ କରି ବରବେଶ
ଆସି ପ୍ରବେଶିଲେ ବିରାଟପୁର ପାଶ ।
ବିରାଟ ଏହା ଶୁଣି ବାଟକୁ ଆସିଲେ
ବରି ଅରଜୁନ ସୁତକୁ ଘେନଗଲେ ।
ପାଣ୍ଡବମାନେ ପଛେ ଗହଣ ଲଗାଇ
ବିରାଟଙ୍କ ବିଭାମଣ୍ଡପେ ହେଲେ ଯାଇଁ ।
ବେଦୀ ମଧ୍ୟରେ ପଡ଼ିଥିଲା ତ ଆସନ
ତହିଁପରେ ବସିଲେ ହୋଇ ତୋଷମନ ।
ଅରଜୁନସୁତକୁ ଆଗେ ବସାଇଲେ
ବିବାହକୁ ଉଚିତ କର୍ମ କରାଇଲେ ।
ବିବାହମଣ୍ଡପକୁ ବିରାଟ କୁମାରୀ
ଆସିଲେ କରେ ଧରି ଲବଣ ଚଉଁରୀ ।
ପାଟବସ୍ତ୍ର ବାଡ଼ରି ଉହାଡ଼ରେ ଥାଇ
ଅଭିମନ୍ୟୁ ଉପରେ ଦେଲେ ତା ପକାଇ ।
ଅଳପ ବୁହିଁଦେଇ ଯିବାରୁ ଛଟକେ
କାମଖଣ୍ଡା ଧଇଲା କରରୁ ଘୂଟକେ ।
ବିରାଟ ଆଜ୍ଞ ଥରେ ଅଣାଇ କନ୍ୟାକୁ
ସମର୍ପି ଦେଲେ ନେଇ ବୀର ଅର୍ଜ୍ଜୁନଙ୍କୁ ।
ଅରଜୁନ ତା ପ୍ରତିଗ୍ରହ ପୁଅପାଇଁ
କରି ସେକ୍ଷଣି ଦେଲେ ବିବାହ ବଢ଼ାଇ ।
ବିରାଟ ସେକାଳେ ଦେଲେ ଯା ଯଉତୁକ
କହିବ ତାହା ଶୁଣ ହସ୍ତିନା ନାୟକ ।
ସହସ୍ର ସାତ ଘୋଡ଼ା ଶତ ଦୁଇ ହାତୀ
ଏହା ବାହାରେ ଦେଲେ ସହସ୍ର ଯୁବତୀ ।
ପାଣ୍ଡୁସୁତମାନଙ୍କୁ ସମର୍ପି ହୋଇଲେ
ଧନରତ୍ନ ଭଣ୍ଡାର ଦେଶ ସମର୍ପିଲେ ।
ପାଣ୍ଡୁସୁତେ ସାରିଣ ଅଭିମନ୍ୟୁ ବିଭା
ତେଜରେ ନିନ୍ଦାକଲେ ଆଦିତ୍ୟଙ୍କ ପ୍ରଭା ।
କୃଷ୍ଣ ଯେତେକ ଧନ ବସ୍ତ୍ର ଦେଇଥିଲେ
ପାଣ୍ଡବେ ତା ଦ୍ୱିଜଙ୍କୁ ସେହିକାଳେ ଦେଲେ
ଶୀତଳଗୁଣ୍ଡି ଅନ୍ତେ ପାଣ୍ଡବେ ଭୋଜନକୁ
ସାରିଲେ ଘେନ ସଙ୍ଗେ ଧୃଷ୍ଟି ପାଞ୍ଚାଳଙ୍କୁ ।
ବରକନ୍ୟା ଦୁହିଁଙ୍କି ଯାନରେ ବସାଇ
ଆସିଲେ ଉପପ୍ଲବେ ଗହଣ ଲଗାଇ ।
ଅଭିମନ୍ୟୁ ଉତ୍ତରା କାମସିନ୍ଧୁ ପାରି
ପାଇଲେ ଉପପ୍ଲବ ପ୍ଲବ ପାଇ କରି ।

ପାଣ୍ଡବେ ରହିବା ସକାଶୁଁ ଉପପ୍ଲବ
ଜନେ କଲେ ହୃଦରେ ଆନନ୍ଦ ସମ୍ଭବ ।
ଏହିଠାରେ ବିରାଟ ପର୍ବ ସୂର୍ଯ୍ୟ ପରି
ପରବେଶ ହୋଇଲେ ଶେଷ ଅସ୍ତଗିରି ।
ଏ କାଳକୁ ପାଣ୍ଡବଙ୍କର ସଚରିତ
ଗଣିବାରେ ଶକାବ୍ଦ ହୋଇଅଛି ଶେଷ ।
ଶ୍ରୀରାମଚନ୍ଦ୍ର ସିଂହ ରଜାଙ୍କର ନାତି
ମାଳାଦ୍ରି ସିଂହଙ୍କର ଅଟେ ମୁଁ ସନ୍ତତି
ଧରାକୋଟ ରାଜ୍ୟରେ ହୋଇ କରି ରାଜା
ଅଧର୍ମ କଥାରେ ବୁଡ଼ାଇ ଦେଲି ମଜ୍ଜା ।
ଦିନେ ହରିନାମକୁ ବସି ନ ଶୁଣିଲି
ଅସାଧୁ ମାର୍ଗେ ପଡ଼ି ଦିନକୁ ହରିଲି ।
ଧନ-ଚନ୍ଦ୍ର ଦେଖିଣ ମୋ ହୃଦ କୁମୁଦ
କରାଇଲି ଯେ ଅନ୍ତରସ୍ଥରେ ପ୍ରମୋଦ ।
ପରଜନମାନଙ୍କ ଅପବାଦ କଥା
ଅହର୍ନିଶି ବସି ବାଟିଲି କରି ପୋଥା ।
ଭଲ ମନ୍ଦ ଦୁଇଟି କଥା ନ ଜାଣିଲି
ମୁଁ ବଡ଼ ବୋଲି ସବୁଜନେ ଡ଼ରାଇଲି ।
ଦଇବରେ ତ ପିଇଅଛି ରାଜ୍ୟ ମଦ
ଏଣୁ ସବୁବେଳେ ହୋଇଅଛି ଉନ୍ମାଦ ।
ହେ ପ୍ରଭୁନବମାତଙ୍ଗେର ପୀତବାସ
ମୁଁ ତ ମହାପାପୀ ନୁହଇ ତୁମ୍ଭ ଦାସ ।
କିରୂପେ ତୁମ୍ଭ ପାଦପଦ୍ମ ମୋ ମାନସ
ଭୃଙ୍ଗଟି ମହାପ୍ରଭୁ କରିବ ନିବାସ
ଏଥିକି ଜ୍ଞାନ-ଚନ୍ଦ୍ର ହୃଦରେ ପ୍ରକାଶ
କରି କରି ଅଜ୍ଞାନ-ତମକୁ ବିନାଶ ।
ଏହେ ଦୀନଜନଙ୍କ ତାରଣ ଶୌରି
ନବଘନକୃଷ୍ଣ ଯମୁନା ତଟଚାରି ।
ଗୋପଅଙ୍ଗନା କାମକେଳି କଳାକାରୀ
ଗୋବର୍ଦ୍ଧନ ମନ୍ଦର ଗିରିବରଧାରୀ ।
ଗୋପୀଜନ ହୃଦୟ କୁମୁଦ-ବିହାରି
ସୁନ୍ଦର ବରନଆ ମୁରାରି ନରହରି ।
ତୁମ୍ଭର ମହିମାକୁ ଜାଣିବାକୁ ମନ
କଳାଉଅଛି ଯାହା ବସି ପ୍ରତିଦିନ ।
ଏଥିରୁ ଉପହାସ ହୋଇ ଭଗବାନ
କଥା ଥିବ ବିଶ୍ଣୁନାହିଁ ତ୍ରିଭୁବନ ।
ମୋ ମତରେ କୃତାର୍ଥ କରିବାକୁ ପ୍ରାଣ
କେବଳ ଗାଉଅଛି ତୁମ୍ଭ ଗୁଣଗୁଣ ।
ଏଥିକି ଉଚିତ ହରିଶ ଚକ୍ରଧର
ଦୟାକରି ମୋହର ହୃଦରେ ପ୍ରସ୍ଥିର ।
ମୋ ମତରେ ହେଲନି ମୁଁ ତୁମ୍ଭ କିଙ୍କର
ଛାଡ଼ିଲେ ମୋତେ ହେବ ତୁମ୍ଭଙ୍କୁ ଅସୁନ୍ଦର ।
ତୁମ୍ଭଙ୍କୁ ତ ସେବା କରନ୍ତି ସବୁ ସୁର
ତୁମ୍ଭଙ୍କୁ ସେବିବାକୁ କିସ ମୋହ ଛାର ।
ଯେବେ ହେବ ତୁମ୍ଭର ହୃଦୟରେ ଦୟା
ତେବେ ଛାଡ଼ି ଦେବି ଏ ସଂସାରର ମାୟା ।
ତୁମ୍ଭ ପରିଚର୍ଯ୍ୟାରେ ଶୀର୍ଣ୍ଣ କରି କାୟା
ସବୁବେଳେ ଭାବିବି ତୁମ୍ଭ ରୂପ ଛାୟା ।
ମୋର ପାପ ତୃଣବନକୁ ହୋଇ ନିଆଁ
ଜଳାଅ ହେ ପ୍ରଭୁ ମୋ ଆଗେ ହୋଇ ଠିଆ ।
ଶତଦଳପତ୍ର ନୟନ ଭବଦୁଃଖ
ବିନାଶନ ଆଗେ ଅରକ୍ଷଣର ରକ୍ଷ ।
ମୋହଠାରେ ଥରେଟି ହୋଇଣ ସୁମୁଖ
କିଞ୍ଚିତମାତ୍ର ମୋତେ ଚାହିଁ ପଦ୍ମମୁଖ ।
ଯେଉଁ ପାଦସେବାକୁ ସରି ନୁହେଁ ମୁଖ
ରଖ କୃଷ୍ଣସିଂହେ ସେ ପାଦଭକ୍ତ ପାଖ ।

ଓଁ ତତ୍ ସତ୍



ସୁକାନ୍ତ ପ୍ରିଣ୍ଟର୍ସ, ମାନସିଂହ ପାଟଣା, କଟକ-୮

ରାଜା କୃଷ୍ଣ ସିଂହଙ୍କ କୃତ

# ମହାଭାରତ

## ଉଦ୍‌ଯୋଗ ପର୍ବ

(ନୂତନ ମୁଦ୍ରଣ)

ପ୍ରକାଶକ ଓ ପ୍ରାପ୍ତିସ୍ଥାନ :




**ଧର୍ମଗ୍ରନ୍ଥ ଷ୍ଟୋର**

ପ୍ରତିଷ୍ଠାତା : ୰ ବିଦ୍ୟାଧର ସାହୁ

ପ୍ରୋ : ମହିମାପ୍ରସାଦ ସାହୁ

ଅଲିଶା ବଜାର, କଟକ- ୭୫୩ ୦୦୨

ଫୋନ୍ ନଂ- (୦୬୭୧) ୨୫୦୮୨୯୬

# ଉଦ୍‌ଯୋଗ ପର୍ବ

## ସୂଚୀପତ୍ର

# ମହାଭାରତ

## ଉଦ୍‌ଯୋଗପର୍ବ

ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟମୁଦୀରୟେତ୍ ।
ଭୀଷ୍ମଦ୍ରୋଣତଟା ଜୟଦ୍ରଥଜଳା ଗାନ୍ଧାରନୀଳୋତ୍ପଳା
ଶଲ୍ୟଗ୍ରାହବତୀ କୃପେଣ ବିହଗା କର୍ଣ୍ଣେନ ବେଳାକୁଳା ।
ଅଶ୍ୱତ୍ଥାମାବିକର୍ଣ୍ଣଘୋରମକରା ଦୁର୍ଯ୍ୟୋଧନାବର୍ତ୍ତିନୀ ।
ସୋତ୍ତୀର୍ଣ୍ଣା ଖଳୁ ପାଣ୍ଡବୈଃ କୁରୁନଦୀ କୈବର୍ତ୍ତକଃ କେଶବଃ ।।

ଜୟ ଜୟ ଜଗନ୍ନାଥ ଶଙ୍ଖ-ଚକ୍ର ହାତ
ସିନ୍ଧୁସୁତାଙ୍କର ତୁମ୍ଭେ ଅଟ ପ୍ରାଣନାଥ ।
କରିବାକୁ ପାତକିମାନଙ୍କୁ କୃତାର୍ଥ
କରିଛ ବିଜେ ଶ୍ରୀ ପୁରୁଷୋତ୍ତମ ତୀର୍ଥ ।
ତୁମ୍ଭ ପାଦପଦ୍ମରେ କୃଷ୍ଣସିଂହ ମାଥ
ଲୋଟାଅ ଦେଇ ତୁମ୍ଭ ଭକ୍ତଜନ ସାଥ ।
ଆଦି ସଭା ବନ ଯେ ବିରାଟ ପର୍ବକୁ
ଗୀତ ମୁଁ କଲି ପାଇ ତୁମ୍ଭର ସାହାକୁ ।
ଏବେଟି ଉଦ୍‌ଯୋଗ ପରବକୁ ଗୀତ
କରିବି ବୋଲି ବିଚାରୁଛି ମୋର ଚିତ୍ତ ।
ମୋହର ତ କିଛିହିଁ ଶାସ୍ତ୍ରପଢ଼ା ନାହିଁ
କି ରୂପେ ଏ ପର୍ବ କରିବି ନିର୍ବା ମୁହିଁ ।
ଯେବେ କୃପା କଟାକ୍ଷେ ମୋତେ ଭଗବାନ
ଚାହିଁବ ତେବେ ଅବା ହେବ ମୋର ଜ୍ଞାନ ।
ପରାଶରସୁତଙ୍କ ବାକ୍ୟ-ସରୁଁ ଜାତ
ହୋଇଅଛି ଯେଉଁ ଭାରତ ଶତପତ୍ର ।
ହରିକଥା ସୂର୍ଯ୍ୟରେ ହୋଇ ବିକଶିତ
ଗୀତାର୍ଥ-ଗନ୍ଧରେ ହୋଇଛି ସୁବାସିତ ।
ନାନାଦି ଉପାଖ୍ୟାନ-କେଶରରେ ଯୁତ
ହେବାରୁ ମୋହୁଛି ସଜ୍ଜନ-ଭୃଙ୍ଗଚିତ୍ତ ।
ତତ୍‌କ୍ଷଣେ ସେ ପଦ୍ମ ବାସନା ଚହଟି
ହୋଇବାରୁ ରହିଛି ପୂରି ତିନି ସୃଷ୍ଟି ।
ମୋ ମାନସ-ଭ୍ରମର ପାତକ-ତମୁଟି
ପାଇ ଅନ୍ଧ କରିଛି ନୟନ ଦିଓଟି ।
କିରୂପରେପାରିବି ସେପଦ୍ମକୁ ଭେଟି
ଏହି ଚିନ୍ତା ମୋର ଦିବସ ରଜନୀଟି ।



### କୃଷ୍ଣଙ୍କ ସହିତ ଯୁଦ୍ଧମନ୍ତ୍ରଣା ଓ ଦୁର୍ଯ୍ୟୋଧନଙ୍କ ନିକଟକୁ ଦୂତ ପ୍ରେରଣ

ବଇଶମ୍ପାୟନ ବୋଇଲେ ଜନ୍ମେଜୟ
ଏ ଅନ୍ତେ ଯା ହେଲା କହିବା ମନଦିଅ ।
ଅଭିମନ୍ୟୁ ବିବାହ ସାରି ପାଞ୍ଚ ଭାଇ
ଉପପ୍ଲବଗଡରେ ଚାରିଦିନ ରହି ।
ପୁଣି ବିରାଟଙ୍କୁ ଦେଖିବା ଇଚ୍ଛା କଲେ
ଯୁଧିଷ୍ଠିର ବିରାଟପୁରେ ବାହାରିଲେ ।
ଏହି ସମୟରେ ପାଣ୍ଡବ ପାଞ୍ଚଭାଇ
ପରବେଶ ହେଲେ ସେହିସଭାରେ ଯାଇ ।
ଆଗ ହୋଇ ବିରାଟ ନୃପତିଙ୍କ କତି
ବସିଥିଲେ ରେବତୀପତି ଶିରୀପତି ।

ଦ୍ରୁପଦ ମଧ୍ୟ ପୁତ୍ରମାନଙ୍କର ତୁଲେ
ବିରାଟଙ୍କ ସଭା ମଧ୍ୟରେ ବସିଥିଲେ ।
ଦ୍ରୁପଦଙ୍କୁ ଲାଗିଣ ପ୍ରଦ୍ୟୁମ୍ନ ସାତ୍ୟକି
ଦୁହେଁତ ବସିଥିଲେ ଫୁଲାଇ ଛାତିକି ।
ଯୁଧିଷ୍ଠିର ଥିଲେ ବିରାଟଙ୍କର ପାଶେ
ଘେନି ଋରିଭାଇ ଆପଣା ପୃଷ୍ଠଦେଶେ ।
ଅଭିମନ୍ୟୁ ଦ୍ରୌପଦୀ ସୁତ ସଙ୍ଗେ ଧରି
ବସିଲେ ସ୍ୱପିତୃମାନଙ୍କୁ ଅନୁସରି ।
ବାକି କୃଷ୍ଣସୁତେ କୃଷ୍ଣଙ୍କୁ ଅନୁଗତ
ହୋଇଣ ବସିଲେ ଆନନ୍ଦ ଧରି ଚିତ୍ତ ।
ବିରାଟ-କୁମର ଉତ୍ତର ଶ୍ୱେତ ଦୁଇ
ବସିଥିଲେ ସଭାରେ ପିତୃ ଆଜ୍ଞା ପାଇ ।
ସମସ୍ତେ ତ ଅସ୍ତ୍ର ଯେ ଶସ୍ତ୍ରରେ ପଣ୍ଡିତ
ସବୁ ଶାସ୍ତ୍ର କରିଅଛନ୍ତି ହୃଦଗତ ।
ଯାଗ ଆଦି ପୁଣ୍ୟ କଥାର ଅନଳରେ
ଦହିଛନ୍ତି ପାତକ ତୃଣକୁ ହେଳାରେ ।
ଅଙ୍ଗରାଗ ସଙ୍ଗେ ଅଙ୍ଗରେ ଅଳଙ୍କାର
ଲଗାଇବାରୁ ହୋଇଛନ୍ତି ମନୋହର ।
ସହଜରେ ତ ଯୁବା ବୟସ ହୋଇଛି
ଅତନୁତନୁ ପରି ପ୍ରଭା ବିରାଜୁଛି ।
ନୃପତି-ନକ୍ଷତ୍ରରେ ସେ ସଭା-ଗଗନ
କୃଷ୍ଣ-ଚନ୍ଦ୍ର ଘେନି ଦିଶିଲା ପରସନ୍ନ ।
ଏକାଳେ ପାଣ୍ଡବଙ୍କ ବିଷୟେ କେ କଥା
ନ କହି ଋହିଁଲେ କୃଷ୍ଣଙ୍କୁ ଟେକି ମଥା ।
କୃଷ୍ଣ ତାହା ଜାଣିଣ କହିଲେ ରାଜାଙ୍କୁ
ଜାଣିଅଛ ତ ପଶାଖେଳରେ ରାଜ୍ୟକୁ ।
ହାରିଣ ଯୁଧିଷ୍ଠିର ବାରଟି ବରଷ
ବନବାସ, ଅଜ୍ଞାତ ବର୍ଷ କରି ଶେଷ ।
ବିରାଟଙ୍କ ସଭାରେ ଆସି ବସିଛନ୍ତି
ଘେନିବାକୁ ନିଜ ବଳରେ ଭାବି ଭୂତି ।
ସୁଯୋଧନ ଯେ ଯୁଧିଷ୍ଠିର ରାଜାଙ୍କର
ଅଟନ୍ତି ତ ବଡ ବାପଙ୍କର କୁମର ।
ନ ଜାଣି ଅପରାଧ ଅର୍ଜିଲା ସେ ଯେବେ
ଏନିକି ତହିଁକି ଅଧର୍ମ ଆଚରିବେ ।
ଏବେ ଦୁଇ କୁଳର ରହିବ ମହତ୍ତ୍ୱ
ଏଥିକି ଯେ ବିଋର ଭାବ ଦେଇ ଚିତ୍ତ ।
ଯୁଧିଷ୍ଠିର ରାଜା ତ ପାଇଲେ ବିପଦ
ନ ଇଚ୍ଛନ୍ତି ମନରେ ଅଧର୍ମ ସମ୍ପଦ ।
ଧୃତରାଷ୍ଟ୍ରପୁଏ ତ କପଟ ଆଚରି
ନେଲେ ପାଣ୍ଡବଙ୍କ ସମ୍ପଦ ଲୁଟିକରି ।
ଯେବେ ଏ ତାଙ୍କରେ ହୁଅନ୍ତେ କୋପମନ
ତେବେ ସେ କରିଥାନ୍ତେ ଯମପୁରେ ସ୍ଥାନ ।
ପାଣ୍ଡବଙ୍କ ହୃଦେ ତ ଧର୍ମ ରହିଛନ୍ତି
ଏଣୁ ଭାଇ ବାତ୍ସଲ୍ୟ ମୂର୍ଚ୍ଛି ନ ପାରନ୍ତି ।
ଯେଉଁ ଧନ ପିତୃକ୍ରମରେ ଏହାଙ୍କର
ହୋଇଛି ତାହା ଲୋଡୁଛନ୍ତି ନୃପବର ।
କୁରୁଏ ପାଣ୍ଡବଙ୍କୁ ବାଳକ ବୟସରେ
ନାନାଜାତି ପାଞ୍ଚିଲେ ମାରିବା ଇଚ୍ଛାରେ ।
ସେ ତ ସବୁ ହୋଇଛି ତୁମ୍ଭଙ୍କୁ ଗୋଚର
ଅଧିକ ହେବ ସିନା ମୋର କହିବାର ।
କୁରୁ ପାଣ୍ଡବଙ୍କର ଅଭିପ୍ରାୟ ଜାଣି
ଯେ ଉଚିତ ତାହା କହ ହେ ନୃପଶ୍ରେଣୀ ।
ପାଣ୍ଡବମାନଙ୍କ ସରିଲା ସମୟ ତ
ଏ ପାଳି କୁରୁଏ ହୋଇବେ ବିନାଶିତ ।
ପାଣ୍ଡୁ ସୁତଙ୍କର ସଙ୍ଗତରେ କୁରୁଏ
ଯୁଦ୍ଧ କଲେ ବସିବେ ଜାଣ ଯମକ୍ଷୟେ ।
ତୁମ୍ଭେ ଅବା ବୋଲିବ ଏ ପାଞ୍ଚୋଟି ଭାଇ
କିରୂପେ କୁରୁଙ୍କୁ ମାରିବେ ଏକା ଯାଇ ।
ଭାବିଲେ ପାଣ୍ଡବଙ୍କ ସୁହୃଦ ବହୁତ
ଅଛନ୍ତି ଯୁଦ୍ଧ ହେଲେ ହେବେ ଉପଗତ ।
ଦୁର୍ଯ୍ୟୋଧନ ରାଜ୍ୟଟି ଦେବେ କି ନ ଦେବେ
ଜଣା ଯାଇନାହିଁ କହିବା କିସ ଏବେ ।
ଦୂତଟିଏ ପେଷ ହେ ହସ୍ତିନା ରାଜ୍ୟକୁ
କହିବାକୁ ପାଣ୍ଡବମାନଙ୍କ ବାର୍ତ୍ତାକୁ ।
ଜାଣିଲେ ଦୁର୍ଯ୍ୟୋଧନ ଭଲ ମନ୍ଦ କଥା
ଆଚରି ଆମ୍ଭେ ତାହା ବା କରିବା ପୋଥା ।
ଏହାଶୁଣି ପ୍ରଳମ୍ବ ଅସୁର ବଇରୀ
କହିଲେ ସଭା ମଧ୍ୟେ ବଚନ ଉଚ୍ଚାରି ।
ଶୁଣିଲ ତ କୃଷ୍ଣ କହିଲେ ଯେଉଁ ରୂପେ
ଏହି ଏକା ଉଚିତ କହୁଛି ମୁଁ ଆପେ ।
ଦୁର୍ଯ୍ୟୋଧନ ଏବେ ଅଧେକ ରାଜ୍ୟ ଦେଇ
ପାଣ୍ଡବଙ୍କୁ, ଘରେ ଥାଉ ସୁଖରେ ରହି ।

ନୋହିଲେ ପାଣ୍ଡୁସୁତେ କରି ମହାରଣ
ଦୂର୍ଯ୍ୟୋଧନ ରାଜାର ଘେନିବେ ପରାଣ ।
ଯେ ଲୋକ ଯାଉଛି ହସ୍ତିନାନଗରକୁ
କହିଥାଅ ଏହା ତ ବତାଇ ତାହାକୁ ।
ଭୀଷ୍ମ ଦ୍ରୋଣ ଦ୍ରୌଣୀ କୃପ ଯେ ଦୁର୍ଯ୍ୟୋଧନ
ବିଦୁର କର୍ଣ୍ଣ ସଉବଳ ଦୁଃଶାସନ ।
ଏ ବାହାରେ ଧୃତରାଷ୍ଟ୍ରଙ୍କୁ ଯେ ବସାଇ
କହିବ ଏହା ତାଙ୍କୁ ବିନୟେ ରସାଇ ।
ଯୁଧିଷ୍ଠିର ରାଜା ରାଇଜରୁ ଅଧେକ
ମାଗୁଛି ତୁମ୍ଭଙ୍କୁ ହୋଇଟି ଲକସ୍ତକ ।
ଏ ରୂପରେ କହିଲା ଉତ୍ତାରୁ ସେ ଯେବେ
ନ ଦେବେ ରାଜ୍ୟଟି ପାଣ୍ଡବେ କି କରିବେ ।
ଅଦୃଷ୍ଟ ସୁମରି ପାଣ୍ଡୁଙ୍କ ପଞ୍ଚଶିଷ୍ୟ ।
ବନ ମଧ୍ୟେ ରହନ୍ତୁ ସଜାଡିଣ ବାସ ।
ଯୁଧିଷ୍ଠିର ରାଜା ଖେଳି ତ ନ ଜାଣନ୍ତି
କିମ୍ପାଇଁ ଖେଳକୁ ଶରଧା କରିଥାନ୍ତି ।
ଏଥିକି ଅନୁରୂପ ଫଳିଅଛି ଫଳ
ରହନ୍ତୁ ତୁନି ହୋଇ ମାନିଣ କପାଳ ।
ଶକୁନି ଅନାୟାସେ ପକାଇ କାଠଟି
ପାଣ୍ଡବଙ୍କର ଧନଯାକ କଲା ଲୁଟି ।
ଏଥିକି କୁରୁଙ୍କୁ ଯୁଝିଲେ ଆମ୍ଭେମାନେ
ଶୁଣିଲେ ନିନ୍ଦାଟି କରିବେ ସବୁ ଜନେ ।
ଏହାଶୁଣି ସାତ୍ୟକି ଚକ୍ଷୁ କରି ରଙ୍ଗ
କହିଲେ ହୃଦୟେ କ୍ରୋଧକୁ କରି ସଙ୍ଗ ।
ବୋଇଲେ ହେ ରାମ ତୁମ୍ଭଙ୍କୁ ଅନୁରୂପ
କଥା ତ କହିଲ ବସାଇ ସବୁ ନୃପ ।
କାପୁରୁଷ ଶୂର ହୋଇ ତ ଲୋକେ ଛନ୍ତି
ତହିଁକି ଅନୁରୂପ ଯୁକ୍ତି କରୁଥାନ୍ତି ।
ଏକା ମାତା ପିତାରୁ ହୋନ୍ତି ଯେତେ ଜାତ ।
ନୁହନ୍ତି ତ ସମସ୍ତେଏକା ବଳବନ୍ତ ।
ଦେଖୁଥାଇଁ ଏକା ଗଛଟି ଅଧଡାଳେ
ଫଳେ, ଆର ଅଧକ ରହଇ ନିଷ୍ଫଳେ ।
ତୁମ୍ଭଠାରେ ଏ କଥା ଘେନୁ ନାହିଁ ଦୋଷ
ଶୁଣିବା ଲୋକକୁ ମୋ ହେଉଅଛି ରୋଷ ।
ତୁମ୍ଭର ବିନା ଯୁଧିଷ୍ଠିରଙ୍କ ଅନ୍ୟାୟ
କହିବାକୁ ନାହିଁଟି କାହାରି ହୃଦୟ ।

କୁରୁଏ ପାଣ୍ଡବଙ୍କୁ ଘରେ ଡାକି ଆଣି
କପଟ ଖେଳେ ନେଲେ ଜିଣି ଧନଶ୍ରେଣୀ ।
ପାଣ୍ଡବଙ୍କ ଘରେ କୁରୁଏ ଯାଇ ଆପେ
ଜିଣିଥିଲେ କିପାଇଁ ପଡନ୍ତାଇଁ ତାପେ ।
ତେର ବରଷ ତ ଅବଧି ଥିଲେ କରି
ତହିଁରୁ ହେଲେଣି ପାଣ୍ଡବମାନେ ପାରି ।
କାହିଁ ପାଇଁ ତାହାଙ୍କୁ ହେବେ ଲକସ୍ତକ
କହୁଛ ପୁଣି ଏହା ତୁମ୍ଭ ପରା ଲୋକ ।
ପରଧନ ଇଚ୍ଛା କରନ୍ତି ଯେବେ ଚିତ୍ତ
ତେବେ ଏ ଶତ୍ରୁକୁ ମାଗିବା ଅନୁଚିତ ।
ପାଣ୍ଡୁସୁତେ ଧନୁ ଧଇଲେ କ୍ରୋଧ ବହି
ଇନ୍ଦ୍ରଦେବତାଙ୍କୁ ପାରନ୍ତିଟି ଘୁଞ୍ଚାଇ ।
କୁରୁମାନେ ଅବା ଅଟନ୍ତି କେତେକର
କାହିଁ ପାଇଁ କରିବେ ଏ ତାଙ୍କୁ ନଜର ।
ଶୁଣିଛୁଁ ଭୀଷ୍ମ ଦ୍ରୋଣ ପାଣ୍ଡବଙ୍କୁ ରାଜ୍ୟ
ଦିଅ ବୋଲି ନିତି କହନ୍ତି କରି ଓଜ ।
ତେବେହେଲେ ତ ଦୁର୍ଯ୍ୟୋଧନ ଦୁଷ୍ଟମତି
କଦାଚିତେ କରୁନାହିଁଟି ସନମତି ।
ଏହା ଜାଣିଣ ମୁହିଁ କହୁଛି ତୁମ୍ଭଙ୍କୁ
ଶୁଣ ମୋର ବଚନ ଦେଇଣ ମନକୁ ।
ଦୁର୍ଯ୍ୟୋଧନ ରାଜାର ଦେହ ଶାଣେ ନେଇ
ଦିଆଇବି ସାଆଣ ମୁଁ ବାଣ ବସାଇ ।
ନୋହିଲେ ଯୁଧିଷ୍ଠିର ରାଜା ଗୋଡତଳେ
ପଡିବ ନାହିଁ ଦୁର୍ଯ୍ୟୋଧନ ତତକାଳେ ।
ଏଥିରୁ ଯେବେ ବଳି ପଡିବଟି କଥା
ତେବେ ଛେଦି ପକାଇବି ମୁଁ ତାର ମଥା ।
ନକୁଳ ସହଦେବ ଭୀମ ଅରଜୁନ
ଅଭିମନ୍ୟୁ ଶାମ୍ବ ଗଦ ଯେ ପ୍ରଦ୍ୟୁମନ ।
ଧୃଷ୍ଟଦ୍ୟୁମ୍ନ ଦ୍ରଉପଦୀଙ୍କ ପଞ୍ଚପୁତ୍ର
କୃଷ୍ଣ ଆଦି ଏରୂପେ ଛନ୍ତି ଯେତେ ମିତ୍ର ।
ମୋ ତୁଲରେ ଏମାନେ ଥିଲେ ଧନୁ ଧରି
କହ ତ କୁରୁମାନେ ଜିଣିବେ କି କରି ।
କର୍ଣ୍ଣଙ୍କର କର୍ଣ୍ଣମୂଳକୁ ଶର ମାରି
ଖୋଳିବି ଆଗ ମୁହିଁ ରାଗ ମନେଧରି ।
ଅଧର୍ମୀ ଶତ୍ରୁଙ୍କର ପରାଣକୁ ନେଲେ
ଜାଣ ତହୁଁ ଧରମ ବଢ଼ଇଟି ଭଲେ ।

ଶତ୍ରୁଙ୍କୁ ଲକଷ୍ଟକ ହୋଇ ଯେ ଜୀଅଇଁ
ତାହାର ଜୀବନରୁ କିଛି କାର୍ଯ୍ୟ ନାହିଁ
ଏବେ ଦୂତ ଥରେ ଆସିବା ଯାଏ ବୁଝି ।
ରହିଅଛି ନ ଯାଇ କୁରୁଙ୍କୁ ମୁଁ ଯୁଝି ।
କୁରୁ ତୁଳାକୁଢ଼େ ମୋ ଶର ଦାବାନଳ
ଲାଗିଲେ ଜାଳିଦେବ ହୋଇଣ ପ୍ରବଳ ।
ଏଥିପାଇଁ କେତେ ଛାଡିବ ବିବେକ ତା
ଯୁଧିଷ୍ଠିର ବସିଚି କରୁଥିବେ ଚିନ୍ତା ।
ଦ୍ରୁପଦ ବୋଇଲେ ପାଣ୍ଡବେ ନ ଯୁଝିଲେ
ଦୁର୍ଯ୍ୟୋଧନ ରାଜ୍ୟକୁ ଦେବନାହିଁ ଭଲେ।
ଧୃତରାଷ୍ଟ୍ର ବୁଢ଼ା ଅଟନ୍ତି ସୁତପ୍ରିୟ
ଏ ଘେନି ପାଣ୍ଡବଙ୍କୁ ହୋଇବେ ନିର୍ଦ୍ଦୟ ।
ଭୀଷ୍ମ ଦ୍ରୋଣ ଦ୍ରୋଣି ଯେ କୃପ ଧନପାଇଁ
ଦୂର୍ଯ୍ୟୋଧନ ବାକ୍ୟେ ବୋଲନ୍ତି ହଇ ହଇ।
କର୍ଣ୍ଣ ଶକୁନି ତ ଅଟନ୍ତି ଅତି ମୂର୍ଖ ।
କହିବେ ନ ଭାବିଣ ଭାବି ହେବା ଦୁଃଖ ।
ଆମ୍ଭଠାରୁ ଦୂତ ତାହାଙ୍କଠାକୁ ଯାଉ
ଧର୍ମରେ ଜିଣିବାକୁ ଆମ୍ଭ କଥା ଥାଉ ।
ଯେବେ ଦୂତ ବଚନେ ନ ଦେବେ ସେ ରାଜ୍ୟ
ତେବେ ଆମ୍ଭେ ଯୁଝିବା ଅଙ୍ଗେ ଭରି ସଜ ।
ଦୁର୍ଯ୍ୟୋଧନ ନୃପେ କହିଲେ ମୃଦୁ କରି
ଘେନିବାକୁ ଜ୍ଞାନଟି ଅଛି କିତାହାରି।
ମୋର ମତରେ କଲେ ଦୁର୍ଯ୍ୟୋଧନ ବଧ
ହେଲେ ତ ଛାଡିବେ କୁରୁଏ ରାଜ୍ୟ ସଧ ।
ଏବେ ମୋ ବୋଲ କରି ଡକାଅ ମିତ୍ରଙ୍କୁ
ତିଆର କରାଅ ଯେ ସାମଗ୍ରୀ ଯୁଦ୍ଧକୁ ।
ଶଲ୍ୟ ଧୃଷ୍ଟକେତୁ କେକୟ ଜୟସେନ
ଏମାନଙ୍କୁ ତ ଦୂତେ ଆଣନ୍ତୁ ବହନ ।
ଦୁର୍ଯ୍ୟୋଧନ ଆଗ ଡକାଇ ତାଙ୍କୁ ନେଲେ
ପଛେ ତୁନି ହେବା ନ ପାଇ କାର୍ଯ୍ୟ ଭଲେ।
ଏ ସକାଶୁଁ ଆଗରୁ ଆଣିବା ଡକାଇ
ତୁନି ହୋଇ ରହିବ ଦୁର୍ଯ୍ୟୋଧନ ବାଇ ।
ଆହୁକ ମଲ୍ଲ ଉଗ୍ର ହାର୍ଦ୍ଦିକ୍ୟ ଭଗଦତ୍ତ
ବୃହନ୍ତ ସେନାବିନ୍ଦୁ ବାହ୍ଲିକ ପାପଜିତ ।
ମୁଞ୍ଜକେଶ ଚୈଦ୍ୟାଧିପତି ରୋଚମାନ
ପୌରବ ପ୍ରବିନ୍ଧ୍ୟ ସୁପାର୍ଶ୍ୱ ମଣିମାନ
ଚିତ୍ରବର୍ମା ସୁବାହୁ ପଲ୍ଲବ ପଞ୍ଚନଦ
କାମ୍ବୋଜ ସୁବାସ୍ତୁକ ଜାନକୀ ଦରଦ ।
ପାଂଶୁରାଷ୍ଟ୍ରାଧିପ ସୁଶର୍ମା ଗୃହସେନ
କାଶ୍ୟ ତ୍ରାଥପୁତ୍ର ନିଷାଦ ଶ୍ରେଣୀମାନ।
ଓଡ୍ର ଯେ କଣ୍ଠଧାର ପାର୍ବତୀୟ ଶକ
ସୁରାରି କର୍ଣ୍ଣବେଷ୍ଟ ମାର୍ଜାର କନ୍ୟକ ।
ବସୁମାନ ସମୁଦ୍ରସେନ ବୃହଦ୍ବଳ
ନବୀନ ବାହୁତ୍ରଥ ବୀରଧନ୍ୱା ନୀଳ ।
ନିଚକ୍ର ବାୟବେଗ ସୁଚକ୍ର ଦେବକ
ଉଦ୍ଭବ ପୂର୍ବପାଳୀ କୁମାର କ୍ଷମକ ।
ଜନମେଜୟ ରୁକ୍ମ ଆଷାଢ଼ ଶ୍ରୁତାୟୁ ।
ଶଲ୍ୟପୁତ୍ର ଦନ୍ତବକ୍ର ଯେ ଦୃଢ଼ାୟୁ ।
ଏମାନଙ୍କୁ ଘେନିଣ ଆମ୍ଭେ କଲେକ ରଣ
ଭାଙ୍ଗିଦେବା କ୍ଷଣକେ ଦୁର୍ଯ୍ୟୋଧନ ଟାଣ ।
ମୋହର ଯେହୁ ପୁରୋହିତ ହୋଇଛନ୍ତି
ସମସ୍ତ କଥାରେ ସେ ପଣ୍ଡିତ ଅଟନ୍ତି ।
ତାହାଙ୍କୁ ପଠିଆଇ ଧୃତରାଷ୍ଟ୍ର ପାଶ
ତାଙ୍କ କଥା ବୁଝି କରିବା ପଛେ ରୋଷ ।
ଭୀଷ୍ମ ଧୃତରାଷ୍ଟ୍ର ଦ୍ରୋଣ ଯେ ଦୁର୍ଯ୍ୟୋଧନ
ଏମାନଙ୍କୁ ଯେରୂପେ କହିଲେ ବଚନ ।
ସବୁ ନୃପେ ଆଇଣ କହିଥାଏ ଏବେ
ପଛରେ ମୋତେ ଦୋଷ ଦେବାକୁ ନୋହିବେ
ଶ୍ରୀକୃଷ୍ଣ ବୋଇଲେ କହିଲ ଯା ଦ୍ରୁପଦ ।
ଏହା ଶୁଣି ସନ୍ତୋଷ ହେଲା ମୋର ହୃଦ ।
ପାଣ୍ଡୁ ସୁତଙ୍କର ପରମବନ୍ଧୁ ତୁମ୍ଭେ
ଏଥିରେ କିସ ଆଉ ପ୍ରଶଂସିବୁ ଆମ୍ଭେ ।
ଆମ୍ଭମାନଙ୍କର ତ ଥିଲା ଯେଉଁ ମତ
ଆପଣଙ୍କର ଏବେ ହେଲା ସେ ସମ୍ମତ ।
ଏହା ଶୁଣି ସନ୍ତୋଷ ବଢୁଅଛି ଯାହା
କହି ନ ପାରିବି ହେ ତା ମୁଁ ନରନାହା ।
କୁରୁ ପାଣ୍ଡୁ ଦୁଇରେ ଅଛି ତ ସମ୍ବନ୍ଧ
କିରୂପେ ଜାଣିଟି କରିବା ଆମ୍ଭେ ଭେଦ।
ଯୁଧିଷ୍ଠିର ଅଭିମନ୍ୟୁଙ୍କର ବିଭାକୁ
ଆଣିଥିଲେ ଡକାଇ ସିନା ସେ ଆମ୍ଭଙ୍କୁ ।
ଏବେ ଚଳ ଆମ୍ଭେଯେ ଯାହା ଘରେ ଯିବା
ଏଠାରେ ଥିଲେ ଜାଣ ନିନ୍ଦା ଅରଜିବା ।

ଆମ୍ଭେମାନେ ତୁମ୍ଭର ଅଟୁ ପୁତ୍ରପରି
ଯା ବୋଲିବ ତାହା କରିବୁଁ ନ ବିଚାରି ।
ଧୃତରାଷ୍ଟ୍ରରାଜା ତ ସମ୍ବନ୍ଧୀ ତୁମ୍ଭର
ମଇତ୍ର ଅଟ ତୁମ୍ଭେ ଦ୍ରୋଣ କୃପଙ୍କର ।
ଏଣୁ ତୁମ୍ଭେ ବ୍ରାହ୍ମଣ ପାଣ୍ଡବଙ୍କ ପାଇଁ
ଦୂତ ହୋଇଯାନ୍ତୁ ପଞ୍ଚାଳ ନରସାଇଁ ।
ଦୁର୍ଯ୍ୟୋଧନ ରାଜା ନ ଛାଡିଲେ ଧରମ
କାହିଁପାଇଁ ପାଣ୍ଡବେ କରିବେ ଅଧର୍ମ ।
ଯେବେ ଦୁର୍ଯ୍ୟୋଧନ ମୋହରେ ବୁଦ୍ଧି ବଣା
କରି ପାଣ୍ଡଙ୍କ ପାଞ୍ଚିବ ମନେ ଊଣା ।
ତେବେ ସବୁ ନୃପେ ଡକାଇ ଯୁଧିଷ୍ଠିର
ପଛରେ ପଠାଇଲେ ଆମ୍ଭଠାକୁ ଘର ।
ଏକା ଅରଜୁନ ଧଇଲେ ଗାଣ୍ଡିବକୁ
ଦେଖାଇବ ସେ କୁରୁମାନଙ୍କୁ ପିତୃଙ୍କୁ ।
ଆମ୍ଭଯାଏ କଥାଟା ରହିବା ପରାୟେ
ଲାଗୁନାହିଁ ମୋତେ ଦ୍ରୂପଦ ନରରାୟେ ।
ଏରୂପେ ଶୁଣି କୃଷ୍ଣ ମୁଖରୁ ଉତ୍ତର
ଆନନ୍ଦ ହୋଇଣ ବିରାଟ ନୃପବର ।
ଶ୍ରୀକୃଷ୍ଣଙ୍କୁ ବହୁତ ପରଶଂସା କଲେ
ଯାଅ ହେ ବୋଲି ଦ୍ୱାରକାକୁ ସେ ବୋଇଲେ
ସେକ୍ଷଣି ରଥ ଚଢ଼ି କମଳଇକ୍ଷଣ
ଦ୍ୱାରକାକୁ ଆସିଲେ ଲଗାଇ ଗହଣ ।
ଏଥୁ ଅନନ୍ତରେ ପାଣ୍ଡବଦଣ୍ଡଧାରୀ
ଭିଆଇଲେ ଯୁଦ୍ଧରେ ଯେତେ ସାମଗିରୀ ।
ବିରାଟ ଦ୍ରୂପଦ ସେ ସମୟେ ରାଜାଙ୍କୁ
ଅଣାଇବା ପାଇଁକି ପେଷିଲେ ଦୂତଙ୍କୁ ।
ବିରାଟ ଦ୍ରୂପଦଙ୍କ ବଚନକୁ ମାନି
ରାଜାମାନେ ଆସିଲେ ସୈନ୍ୟ ସଙ୍ଗେ ଘେନି ।
ଧୃତରାଷ୍ଟ୍ରଙ୍କର ପୁତ୍ର ଦୁର୍ଯ୍ୟୋଧନ
ଏହା ଶୁଣିଣ ଅଣାଇଲେ ରାଜଜନ ।
କୁରୁ ପାଣ୍ଡବଙ୍କର ପାଇଁ ସେନାଗୋଟି --
ହେବାରେ ପୂରିଗଲା କୁରୁ-ମତ୍ସ୍ୟସୃଷ୍ଟି ।
ପର୍ବତ ତୁଲେ ମହୀ ହୋଇ ଥରହର
ମନେ କଲେ ପଡିବି ତଳରେ ଏଥର ।
ଦ୍ରୂପଦ ନିଜ ପୁରୋହିତଙ୍କୁ ଡକାଇ
ବୋଇଲେ ହେ ଯାଅ ହସ୍ତିନା ବେଗ ହୋଇ

ଧୃତରାଷ୍ଟ୍ରରାଜାଙ୍କୁ କହି ସାମ ଦଣ୍ଡ
କାର୍ଯ୍ୟ କରି ଆସି ତୋଷ ଆମ୍ଭ ପିଣ୍ଡ ।
ପଞ୍ଚମହାଭୂତରେ ପ୍ରାଣୀମାନେ ଶ୍ରେଷ୍ଠ
ପ୍ରାଣୀଙ୍କଠାରେ ବୁଦ୍ଧିଜୀବୀଏ ଗରିଷ୍ଠ ।
ବୁଦ୍ଧିଜୀବୀଙ୍କ ମଧ୍ୟେ ନରମାନେ ବର
ନରଙ୍କରେ ପୁଣି ଅଧିକ ଭୂମିସୁର ।
ଭୂମିସୁରମାନଙ୍କେ ଶାସ୍ତ୍ର ଯେ ଜାଣଇ
ତାହାକୁଟି ଅଧିକ ବୋଲିକରି କହି ।
ପଣ୍ଡିତମାନଙ୍କେ ନିଶ୍ଚୟ ବୁଦ୍ଧି ଯାର
ତା ତୁଲେ ନ ଯୁଝନ୍ତି ବିଜ୍ଞ ଯେତେ ନର ।
ନିଶ୍ଚିତ ବୁଦ୍ଧିକିଟି ଶାସ୍ତ୍ରଉକ୍ତ କଥା
ଯେ କରୁଛି ସଭିଙ୍କି ବଡ ତା ବ୍ୟବସ୍ଥା ।
ଶାସ୍ତ୍ରଉକ୍ତ କଥା କରିବା ଲୋକଙ୍କରେ
ବ୍ରହ୍ମଜ୍ଞାନୀମାନେଟି ବଡ ପ୍ରତ୍ୟେକରେ ।
ଆପଣ ତ ନିଶ୍ଚିତ ବୁଦ୍ଧିରେ ପ୍ରଧାନ
ପୁଣି ତ ଦିବ୍ୟକୁଳେ ପାଇଛ ଜନମ ।
ଶୁକ୍ର ବୃହସ୍ପତି ସମାନ ବୁଦ୍ଧିମନ୍ତ
ଏଣୁ ସକଳ କଥା ହୋଇଛି ବିଦିତ ।
ଧୃତରାଷ୍ଟ୍ର ରାଜା ଅଟନ୍ତି ମହାପାପୀ
ପୁତ୍ର ସ୍ନେହେ ହୁଅନ୍ତି ପୁତୁରାଙ୍କୁ କୋପୀ ।
ଶକୁନି ଦୁଃଶାସନ କର୍ଣ୍ଣଙ୍କ ମନ୍ତ୍ରଣା
କରିଛି ଧୃତରାଷ୍ଟ୍ର ନୃପ ବୁଦ୍ଧି ବଣା
କପଟ ପଶା ଖେଳେ ନେଇଛନ୍ତି ରାଜ୍ୟ
ଏବେ ଦେବେ ତା ବୋଲି ବୋଲିବ କେ ଆଜ
ତୁମ୍ଭେ ବା ବୋଲିବ କୁରୁଏ ରାଇଜକୁ
ନ ଦେବେ ତ ଜାଣିଛୁ କି କହିବି ତାଙ୍କୁ ।
ତହିଁକି କହୁଛୁ ତୁମ୍ଭଙ୍କୁ ଆମ୍ଭେ ଯାହା
ତା ଶୁଣି ଆମ୍ଭଠାରୁ ଦ୍ୱିଜକୁଳ ନାହା ।
ଧର୍ମଯୁକ୍ତ ବଚନ କହି ଯୋଦ୍ଧାକୁଳ
ମନକୁ ତାଙ୍କଠାରୁ କରାଅ ଆବିଳ ।
ତୁମ୍ଭ ବାଣୀ-ଘନକୁ ପୂରୁବ ପବନ
ବିଦୂର ହୋଇ ବଢ଼ାଇବେ ତା ବହନ ।
ଭୀଷ୍ମ ଦ୍ରୋଣ ଯେ କୃପ-ଗିରିକି ଘୋଡାଇ
ଦିଅ ସେହି ଘନରେ କହୁଅଛି ମୁହିଁ ।
ଏହି ସକାଶରୁଟି ଦୁର୍ଯ୍ୟୋଧନ ଦୁଃଖୀ
ହୋଇ ନିତି ବସିବ ବିସ୍ମୟକୁ ଯୋଖି ।

ଏ ଛିଦ୍ର ପାଇଣ ପାଣ୍ଡବ ରାଜକୁଳ
ସମୀପରେ ଆଣି କରିବେ ପୁଣି ଠୁଳ ।
ଆହେ ଦ୍ୱିଜବର ତୁମ୍ଭେ ତ ଦୂତ ହୋଇ
ଏତକ ଶ୍ରେୟ କର ହସ୍ତିନାକୁ ଯାଇ ।
ଦଇବେ ଧୃତରାଷ୍ଟ୍ର ତୁମ୍ଭର ବଚନ
ଘେନିବେ ଏମାନଙ୍କ ଅଛି ପ୍ରୟୋଜନ ।
ତୁମ୍ଭର ତ କା'ଠାରେ ନାହିଁ ପ୍ରାଣଭୟ
ଯେଣୁ ତୁମ୍ଭେ ହୋଇଛ ବ୍ରାହ୍ମଣ ତନୟ ।
ଶାସ୍ତ୍ର ଲେଖିଅଛି ଦୂତ ଯେ କରେ ବଧ
ନରକେ ପଡିବାର ହୁଏ ତା ପ୍ରସିଦ୍ଧ ।
ଆଜ ପୁଷ୍ୟାନକ୍ଷତ୍ର ବିଜୟ ମୁହୂର୍ତ୍ତ
ହୋଇଛି ଜାଣ ହେ ନ କରି ବିଳମ୍ବିତ ।
ଏରୂପେ କହନ୍ତେ ଦ୍ରୁପଦ ନରନାହା
ବାହାରିଲେ ସେ ଦ୍ୱିଜ ଦୋହଲାଇ ବାହା ।
ଦ୍ରୁପଦ ପୁରୋହିତ ହସ୍ତିନାପୁରକୁ ।
ଦୂତ ହୋଇ ଯାଆନ୍ତେ ହଲାଇ ବାହାକୁ ।
ତାହା ଦେଖିଣ ଯୁଧିଷ୍ଠିର ମହୀପାଳ
ନୃପେ ଆଣିବାକୁ ପେଷିଲେ ଚରକୁଳ ।
ଏ ଅନନ୍ତରେ ଚାହିଁ ଅର୍ଜୁନ ମୁଖକୁ
ବୋଇଲେ ଯାଅ ବାବୁ ଦ୍ୱାରକାପୁରକୁ ।
କୃଷ୍ଣଙ୍କୁ ଆଣଇ ମୋ ଆଗରେ ଛିଡା କର
ନୋହିଲେ କଷ୍ଟ ହେବ କୁରୁ ମାରିବାର
ଜ୍ୟେଷ୍ଠଭାଇ ବାକ୍ୟେ ଅର୍ଜୁନ ନିଶ ମୋଡି
ଆଣିବି କୃଷ୍ଣ ବୋଲି ଗଲେ ରଥ ଚଢ଼ି ।



## ଯୁଦ୍ଧରେ ସାହାଯ୍ୟ କରିବା ନିମିତ୍ତ ଅର୍ଜୁନ ଓ ଦୁର୍ଯ୍ୟୋଧନଙ୍କର କୃଷ୍ଣଙ୍କ ନିକଟକୁ ଗମନ

କୃଷ୍ଣଙ୍କର ଯିବାର ଜାଣି ଦୁର୍ଯ୍ୟୋଧନ
ଦ୍ୱାରକାପୁରେ ଏକା କଲା ସେ ଗମନ ।
କୃଷ୍ଣ ଶୋଇଥିବା ମନ୍ଦିରେ ଧୃତରାଷ୍ଟ୍ର-
ସୁତ ପରବେଶ ହୋଇଲା ହୋଇ ହୃଷ୍ଟ ।
ଦେଖିଲା ଶ୍ରୀକୃଷ୍ଣ ଅଛନ୍ତି ନିଦ୍ରା ଯାଇ
ମଥାପାଖ ଆସନେ ବସିଲା ସେ ଯାଇ ।
ଏହି ସମୟରେଟି ଅର୍ଜୁନ ଦ୍ୱାରରେ
ବେଶ ହେଲେ ଶ୍ରୀକୃଷ୍ଣଙ୍କ ଅନ୍ତଃପୁରେ ।

ଶ୍ରୀକୃଷ୍ଣଙ୍କ ଶୋଇବା ସମୟକୁ ଜାଣି
ସେ ଶୟନସ୍ଥାନେ ଗଲେ ବୀରମଣି ।
ଦେଖିଲେ ଦୁର୍ଯ୍ୟୋଧନ ଅଛି ମଥାଭାଗେ
ତରାଟିଣ ତାହାକୁ ଚାହିଁଦେଇ ରାଗେ ।
କୃଷ୍ଣଙ୍କର ପାଦ ବେନିକି କରେ ଧରି
ବସିଲେ ଅରଜୁନ ପରିଜନ ପରି ।
ଅର୍ଜୁନଙ୍କ ଆସିବା ଜାଣି ଜନାର୍ଦ୍ଦନ
ଆନନ୍ଦରେ ଫୁଲାଇ ଦେଇ ଅପଘନ ।
ଦୁଇ ପାଣଇ ଆଖିରେ ଦେଇ ମରଦିଲେ
ଅଳସୁଆଟାଏ ଭାଙ୍ଗି ଉଠିଣ ବସିଲେ ।
ଦେଖିଲେ ପାଦତଳେ ଅଛନ୍ତି ଅର୍ଜୁନ
ହସି ହସି ଏହା ପୁଚ୍ଛିଲେ ଭଗବାନ ।
କେତେବେଳ ହେଲା ଆସିଲ ଏହିଠାକୁ
ମୁଁ ଜାଣିନାହିଁ ଯାଇଥିଲି ତ ନିଦ୍ରାକୁ ।
ଏହାକହି ପଛକୁ କରି ମୁହଁ ଛଟା
ଚାହିଁଦେଲେ ବସିଛି ଧୃତରାଷ୍ଟ୍ରବେଟା ।
ବୋଇଲେ କେବେ ଆସିଲ ହେ ଦୁର୍ଯ୍ୟୋଧନ
ବସିଅଛ କିମ୍ପାଇ ନ କହି ବଚନ ।
ଦୁର୍ଯ୍ୟୋଧନ ବୋଇଲେ କୁରୁ ପାଣ୍ଡୁ ଦୁଇ
କରିବୁଁ ଏବେ କୃଷ୍ଣ ଯୁଦ୍ଧ ପୃଥ୍ୱୀ ପାଇଁ ।
ତୁମ୍ଭେ ତ ଆମ୍ଭ ଦୁହିଁଙ୍କର ଅଟ ବନ୍ଧୁ
ଯେ ଉଚିତ ତା କର ଅଟ ଅତି ସାଧୁ ।
ଆଗ ହୋଇ ମୁହିଁ ଆସିଛି ତୁମ୍ଭଠାକୁ
ପଛରେ ଅରଜୁନ ଆସିଲେ ଏଠାକୁ ।
ଏହା ଭାବି ଯାହା ତ ହୋଇବ ଧରମ
ତାହା ଆଚରଣ କର ହେ ନରୋତ୍ତମ ।
ଭକ୍ତଜନବନ୍ଧୁ ଯଶୋଦା ଦେବୀ ସୁତ
ନବନୀତ ଚୋର ରାଧିକା ପ୍ରାଣକାନ୍ତ ।
ପଦ୍ମପତ୍ରେକ୍ଷଣ ମୁରାରି ମଧୁହାରୀ
ଶ୍ରୀ ବୃନ୍ଦାବନଚନ୍ଦ୍ର ଗୋପକେଳିକାରୀ ।
କଦମ୍ବବିନୋଦିଆ ରାହାସନାଟୁଆ
କେକୀପୁଚ୍ଛଚୂଳା କାଳିଆ ବରନୀୟା ।
ଯୋଗୀଜନହୃଦୟକମଳ-ବିହାରୀ
କହିଲେ ଏହା ଦୁର୍ଯ୍ୟୋଧନେ ହସିକରି ।
ଆପଣ ତ ଆଗରେ ଆସିବାର ମୋତେ
ଗୋଚର ହୋଇନାହିଁ ଆହେ ମହାମତେ ।

ମୁହିଁ ତ ଶୋଇଥିଲି ହୋଇ ଅଶତକ
ଉଠିଲାକ୍ଷଣି ଆଗ ପଡିଲା ମୋ ନେତ୍ର ।
ଅର୍ଜୁନଙ୍କ ମୁଖରେ ଆହେ କୁରୁସାଇଁ
ପଛେ ସିନା ତୁମ୍ଭଙ୍କୁ ଦେଖିଲି ମୁଁ ଅନାଇଁ ।
ତୁମ୍ଭେ ତ କହୁଛ ପୂର୍ବୁଁ ମୁଁ ଆସିଅଛି
ଧର୍ମକୁ ତ ମୁହିଁ ନ ପାରଇ ମୁରୁଛି ।
ଏ ସକାଶୁଁ ଦୁହିଁଙ୍କି ହୋଇବି ମୁଁ ସାହା
ଛାଡ ମନୁ ତାପ ହସ୍ତିନା ନରନାହା ।
ଶାସ୍ତ୍ର ଲେଖିଅଛି କନିଷ୍ଠ ଜ୍ୟେଷ୍ଠ ଦୁଇ
ମାଗିଲେ ଆଗ ଦେବ ସାନେ ତୋଷ ବହି ।
ଅର୍ଜୁନ ତ ଅଟନ୍ତି ତୁମ୍ଭଙ୍କୁ କନିଷ୍ଠ
ଏହାଙ୍କ କାର୍ଯ୍ୟ ଆଗ କରିବି ମୁଁ ପୁଷ୍ଟ ।
ଏହା କହି ଦୁର୍ଯ୍ୟୋଧନଙ୍କୁ ଭଗବାନ
ବୋଇଲେ ଶୁଣ ଆହେ କୁନ୍ତୀଙ୍କ ନନ୍ଦନ ।
ମୋ ସମାନେ ଅର୍ବୁଦେ ନାରାୟଣ ବଳ
ଅଛନ୍ତି ଜିଣି ପାରନ୍ତି ସେ ଆଖଣ୍ଡଳ ।
ମୁଁ ଏକା ହୋଇ ରଥପରେ ବସିଥିବି
ସବୁ ଅସ୍ତ୍ରଶସ୍ତ୍ର କରରେ ନ ଧରିବି ।
ଏଦୁଇ କଥାରୁ ଯହିଁକି ତୁମ୍ଭ ମନ
ହୋଇଛି ତାହା ଘେନି ଯାଅ ହେ ଅର୍ଜୁନ ।
ଅରଜୁନ ବୋଇଲେ ଆହେ ନରହରି
ରହ ଆମ୍ଭ ପଟରେ ଶସ୍ତ୍ର ଛାଡି କରି ।
ଦୁର୍ଯ୍ୟୋଧନ ଅର୍ବୁଦେ ନାରାୟଣ ବଳ
ପାଇକରି କଲେ ଦେହକୁ ଉତଫୁଲ ।
ମନରେ କଲେ କୃଷ୍ଣ ଯୁଦ୍ଧକୁ ନକରି
ବସିଥିଲେ କି କାର୍ଯ୍ୟ ହୋଇବ ଆମ୍ଭରି ।
ଏଥୁ ଅନନ୍ତରେ ଦୁର୍ଯ୍ୟୋଧନ ତୋଷ ବହି
ଗଲେକ ବଳଦେବ ଯହିଁ ଥିଲେ ରହି ।
ଶ୍ରୀକୃଷ୍ଣ ଯେତେ ରୂପେ କଲେ ଅଙ୍ଗୀକାର
ସେମାନେ କଲେ ରାମ ଛାମୁରେ ଗୋଚର ।
ବଳଦେବ ବୋଇଲେ ଆହେ ଦୁର୍ଯ୍ୟୋଧନ
ଯେ ଥାଏ ଯୋଗ ତା ହୁଅଇ ନୋହି ଆନ ।
ତୁମ୍ଭପାଇଁ ବିରାଟ ନଗରେ କୃଷ୍ଣଙ୍କୁ
ବହୁତ କହିଲି ମୁଁ ଦେଖାଇ ଧର୍ମଙ୍କୁ ।
ମୋର କହିବା କଥା ନ ଘେନି କେଶବ
ଏବେ ଆସି କଲେ ସେ ତୁମ୍ଭର ଅଭାବ ।
କୃଷ୍ଣଙ୍କ ବିନା କ୍ଷଣେ ରହି ନ ପାରଇ
ସେ ଯାହା କରୁଥାନ୍ତି ମୋର ମତ ସେହି ।
ପଣ୍ଡୁ ସୁତଙ୍କର ତୁମ୍ଭର ହେଲେ ଗୋଳ
ପକ୍ଷ ଧରି ରହିବାକୁ ମୋର ନାହିଁ ବଳ ।
ତୁମ୍ଭେତ ଭରତଙ୍କ ବଂଶରେ ଜନ୍ମିଛ
ଜୟ ଇଚ୍ଛା କରିଣ ଯୁଦ୍ଧ କର ସ୍ୱଚ୍ଛ ।
ଏହା ଶୁଣିଣ ଦୁର୍ଯ୍ୟୋଧନ ତୋଷ ହୋଇ
ରେବତୀରମଣଙ୍କୁ ପୋଟାଳି ପକାଇ ।
କହିଲେ କୃଷ୍ଣ ନ୍ୟସ୍ତଶସ୍ତ୍ର ତ ହୋଇଲେ
ଅରଜୁନ ଏବେ ମରିବ ଯୁଦ୍ଧେ ଭଲେ ।
ବଳଦେବଙ୍କଠାରୁ ହୋଇଣ ମେଲାଣି
କୃତବର୍ମା ଘରକୁ ଗଲେ କୁରୁମଣି
କୃତବର୍ମା କୃଷ୍ଣ ସମ୍ମତେ ଅକ୍ଷୌହିଣି
ସେନା ଦୁର୍ଯ୍ୟୋଧନ ନୃପକୁ ଦେଲେ ଆଣି ।
ତଦଅନ୍ତେ ଆପଣେ ଆରୋହିଣ ରଥ
ବୋଇଲେ ମୁଁ ଯିବି ହସ୍ତିନା ତୁମ୍ଭ ସାଥ ।
ଦୁର୍ଯ୍ୟୋଧନ ରାଜା ତା ଶୁଣି ତୋଷ ହେଲେ
ସେନା ସଙ୍ଗେ କୃତବର୍ମାଙ୍କୁ ଘେନିଗଲେ ।
ପରବେଶ ହୋଇ ହସ୍ତିନା ଭୁବନରେ
'ମଲେଟି ପାଣ୍ଡୁ ସୁତେ' ଭାବିଲେ ମନରେ ।
ଦୁର୍ଯ୍ୟୋଧନ ଯିବା ଉତ୍ତାରୁ ଅର୍ଜୁନଙ୍କୁ
ପଚାରିଲେ ଶ୍ରୀକୃଷ୍ଣ ମନ ଜାଣିବାକୁ ।
ମୁହିଁ ତ ନ ଯୁଝିବି କେଉଁ ବିଚାରରେ
ଲୋଡିତ ମୋତେ କହ ତାହା ମୋ ଆଗରେ
ଅରଜୁନ ବୋଇଲେ ପଚାରିଲ ଯେବେ
କହିବି ହେ ଗୋବିନ୍ଦ ଶୁଣ ତାହା ତେବେ ।
ଏକା ହୋ କୁରୁଙ୍କୁ ତୁମ୍ଭେ ମାରିପାର
ନୋହିଲେ କରିପାରେ ମୁଁ ତାଙ୍କୁ ସଂହାର ।
ଆପଣଙ୍କ କୀର୍ତ୍ତି ହୋଇଛି ବିଖ୍ୟାତ
ଜାଣନ୍ତି ତିନିଲୋକ ଦୈତ୍ୟ ଦଇବତ ।
ମୋହର ତ କୀରତି ତୁମ୍ଭପରି ଖ୍ୟାତ
ହୋଇନାହିଁ ଦେବକୀନନ୍ଦନ ଜଗତ ।
ଏ ସକାଶୁଁ ବରିଲି ତୁମ୍ଭଙ୍କୁ ସାରଥି
କରି ମୋ ରଥେ ଦେବି କୁରୁକୁଳ ମନ୍ଥି ।
ତୁମ୍ଭେ ଯୁଦ୍ଧ କଲେ ମୋହର ପଉରୁଷ
ନ ଦିଶନ୍ତା କିଛି ଜଗତେ ପୀତବାସ ।

ପାର୍ଥ ବାଣୀ ଶୁଣି ବଢ଼ନ୍ତେ ତୋଷ-ସିନ୍ଧୁ
ବୁଡିଗଲେ ତହିଁ ଜଗତଜନବନ୍ଧୁ ।
ବୋଇଲେ ଆହେ ପାର୍ଥ ସାରଥି ମୁଁ ହେବି
ତୁମ୍ଭବଳେ କୁରୁ ମଉ୍ଛାଇ ପକାଇବି ।
ଏ ଅନ୍ତରେ ଅର୍ଜ୍ଜୁନ ଘେନିଣ କୃଷ୍ଣଙ୍କୁ
ଭେଟିଲେ ଯୁଧିଷ୍ଠିର ନୃପତିବରଙ୍କୁ ।
ଯୁଧିଷ୍ଠିର କୃଷ୍ଣଙ୍କ ନ ଯୁଝିବା ଶୁଣି
କିଛି ଦୁଃଖ ମନେ ନ କରି ବୀରମଣି ।
ବୋଇଲେ ସାହା ହୋଇଥାନ୍ତୁ କୃଷ୍ଣ ପାଶେ
କୁରୁମାନେ ବସିଲେ ଯାଇ ଯମପାଶେ ।



## ପାଣ୍ଡବଙ୍କ ନିକଟକୁ ସୈନ୍ୟସହ ଶଲ୍ୟଙ୍କ ଗମନ

ଶଲ୍ୟ ଦୂତଙ୍କଠାରୁ ପାଇଣ ବାରତା
ଆରୋହି ରଥବର ସେ ମହାବଳବନ୍ତା ।
ସୈନ୍ୟଙ୍କ ସଙ୍ଗେ ପୁତ୍ରମାନଙ୍କୁ ଘେନିଲେ
ପାଣ୍ଡବଙ୍କୁ ସାହା ହେବାକୁ ବାହାରିଲେ ।
ଶଲ୍ୟ ଯେଉଁଠାରେ ରହନ୍ତି ସେ ବାଟରେ
ଛ କୋଶ ଯାଏ ସୈନ୍ୟ ପଡନ୍ତି ସେଠାରେ ।
ଶଲ୍ୟଙ୍କର ସେନା ଯେତେ ସେନାପତି
ସମସ୍ତେ ମହାଶୂର ପରାକ୍ରମ ଅତି ।
ଯେତେବେଳେ ବାହାରନ୍ତି ଶଲ୍ୟଙ୍କ ଥାଟ
ତେତେବେଳେ କମ୍ପଇ ଗିରିବନ ବାଟ ।
ଦୁର୍ଯ୍ୟୋଧନ ଶଲ୍ୟଙ୍କ ଆସିବାର ଜାଣି ।
ଦିଆଇଲେ ତାହାଙ୍କୁ ବସା ସଞ୍ଚା ପାଣି ।
ଯେଉଁଠାରେ ଶଲ୍ୟ ବସାଟି କରୁଥାନ୍ତି
ସେଠାରେ ଚରଚ୍ଚ କରନ୍ତି କୁରୁପତି ।
ଶଲ୍ୟ ଯାହା ଇଚ୍ଛାକରନ୍ତି ଖାଇବାକୁ
ଦୁର୍ଯ୍ୟୋଧନଙ୍କ ଲୋକେ ଦିଅନ୍ତି ତାହାଙ୍କୁ ।
ତାଙ୍କ ସୈନ୍ୟଯାକକୁ ଭକ୍ଷ୍ୟ ଭୋଜ୍ୟ ପେୟ
ଦେଇଣ କୁରୁଲୋକ ହରିଲେ ହୃଦୟ ।
ସେ ଚର୍ଚ୍ଚା ଯୁଧିଷ୍ଠିର ନୃପଙ୍କର ମଣି
ହୋଇଲେ ପରିତୋଷ ମଦ୍ରନୃପମଣି ।
ଏସକାଶୁଁ ଶଲ୍ୟ ହୋଇଣ ଅତି ସୁଖୀ
ଘେନିଲେ ସେ ଚରଚ୍ଚ ବୁଜି ଦୁଇ ଆଖି ।
ପରିକରଲୋକେ ବୋଇଲେ ଯୁଧିଷ୍ଠିର
ବହୁଚର୍ଚ୍ଚା କରି ତୋଷିଲେ ମନ ମୋର ।
ତାହାଙ୍କର ଲୋକମାନଙ୍କୁ ଯେ ଡକାଇ
ଦିଅଅ ଶାଢୀ ଖଡୁ ମୋହଠାରୁ ନେଇ ।
ଦୁର୍ଯ୍ୟୋଧନ ଲୋକେ ତାହା ଯହୁଁ ଶୁଣିଲେ
ହୃଷ୍ଟ ହୋଇ ଦୁର୍ଯ୍ୟୋଧନଙ୍କୁ ସେ କହିଲେ ।
ଦୁର୍ଯ୍ୟୋଧନ ଜାଣିଣ ଶଲ୍ୟଙ୍କର ମନ
ଆନନ୍ଦରେ ଫୁଲାଇ ଦେଇ ଅପଘନ ।
ଶଲ୍ୟଙ୍କୁ ଏକୁଟିଆ ହୋଇ ଦେଖାଦେଲେ
ମୁଁ ତୁମ୍ଭର ଅଧୀନ ବୋଲିଣ କହିଲେ ।
ଶଲ୍ୟ ତାହା ଶୁଣିଣ ହୋଇଲେ ସନ୍ତୋଷ
ବୋଇଲେ ବର ମାଗ ଯେ ଇଚ୍ଛା ନରେଶ ।
ଦୁର୍ଯ୍ୟୋଧନ ବୋଇଲେ ମୋ ସେନାରେ ତୁମ୍ଭେ
ସେନାପତି ହୋଇବ ମାଗୁଅଛୁଁ ଆମ୍ଭେ ।
ଶଲ୍ୟ ବୋଇଲେ ମୁଁ ହେବି ସେନାପତି
ଆଉ କି ଇଚ୍ଛା ଥିଲେ ମାଗ କୁରୁପତି ।
ଦୁର୍ଯ୍ୟୋଧନ ବୋଇଲେ ମୋର ଏହି କଥା
କଲେ ସବୁ ହୋଇଲା ଶଲ୍ୟ ମହାରଥା ।
ଶଲ୍ୟ ବୋଇଲେ ହେ ଘରକୁ ତୁମ୍ଭେ ଯାଅ
ଯାଉଅଛି ଦେଖି ମୁଁ ଯୁଧିଷ୍ଠିର ପୁଅ ।
ତୁମ୍ଭ କାର୍ଯ୍ୟ କରିବି ସନ୍ଦେହ ଯେ ନାହିଁ
କେବଳ ତ ଥରେ ଆସିବି ତାଙ୍କୁ ଚାହିଁ
ମୋହର ସେ ଅଟନ୍ତି ସୋଦର ଭଣଜା
ନ ଗଲେ ଥରେ ହେବ ମୋତେ ବଡ଼ ଲଜ୍ଜା ।
ଦୁର୍ଯ୍ୟୋଧନ ବୋଇଲେ ପାଣ୍ଡବଙ୍କୁ ଦେଖି
ଆସ ଆହେ ରାଜନ ହୋଇ ଅତି ସୁଖୀ ।
କହୁଅଛି ମୋତେ ଦେଇଛି ଯେଉଁ ବର
ପାସୋରିବ ନାହିଁ ତା ମନୁ ନରବର ।
ଶଲ୍ୟ ବୋଇଲେ ଆହେ ଏ ପାପକଥାକୁ
କାହିଁକି ଦୁର୍ଯ୍ୟୋଧନ ଆଣୁଛ ମନକୁ ।
ଆମ୍ଭେମାନେ ତୁଣ୍ଡରେ ବୋଲିଥାଉଁ ଯାହା ।
ଅନ୍ୟଥା ନୁହଇଟି କେବେ ଜାଣ ତାହା ।
ଏହା କହିଣ ଶଲ୍ୟ ମେଲାଣି ହୋଇଲେ
ଯୁଧିଷ୍ଠିର ଥିବା ସ୍ଥାନକୁ ବାହାରିଲେ ।
ଦେଖିଲେ ପାଣ୍ଡୁ ସୁତେ ସୈନ୍ୟ କରି ବାଡ଼
ଆବୁରି ରହିଛନ୍ତି ଉପପ୍ଲବଗଡ଼ ।

ପାଣ୍ଡୁସୁତେ ଶଲ୍ୟଙ୍କୁ ଦେଖି ତୋଷ ବହି
ପୂଜା କରିଲେ ପାଦ୍ୟ ଅର୍ଘ୍ୟ ଗାଈ ଦେଇ ।
ତଦଅନ୍ତେ ଦିବ୍ୟ ଆସନେ ବସାଇଲେ
କୁଶଳ ପୁଚ୍ଛା ପୁଚ୍ଛି ଶଲ୍ୟ ସଙ୍ଗେ ହେଲେ
ଶଲ୍ୟ ଯୁଧିଷ୍ଠିରଙ୍କୁ କରି ଆଲିଙ୍ଗନ
ମସ୍ତକକୁ ସୁଙ୍ଘିଲେ ଦେଇଣ ଚୁମ୍ବନ ।
ଶଲ୍ୟ ବୋଇଲେ ଆହେ ବାରଟି ବରଷ
ବନବାସ, ଅଜ୍ଞାତ ବର୍ଷ କଲ ଶେଷ ।
ଏହା ଦେଖି ତୋଷ ହେଉଛି ଯା ମାନସ
କହି ତା ନ ପାରିବେ ସସ୍ରମୁଖେ ଶେଷ ।
ସୁଖ ହେବା କାଳ ତୁମ୍ଭର ହୋଇନାହିଁ
କିସ ଆଉ ବାବୁ ପଚାରିବି ମୁହିଁ ।
ଯେବେ କୁରୁମାନଙ୍କୁ କରିବ ସଂହାର
ତେବେଟି ସବୁ ସୁଖ ହୋଇବ ତୁମ୍ଭର ।
ଶରୀର ଥିଲେ ସୁଖ ଦୁଃଖ ଲାଗିଅଛି
ଏଥେଁ କିଛି ଦୁଃଖ ନ କରି କୁନ୍ତିବହି ।
ତୁମ୍ଭର ଗୁଣ ଦେଖି କରି ଦୋଷ ଛାଡି
ଆମ୍ଭେ ଜାଣୁଅଛୁ ରହିଛ ଶୋକେ ପଡି ।
କ୍ଷମା ଦମ ସତ୍ୟ ଅହିଂସା ତୁମ୍ଭଠାରେ
ଘର କରି ରହିଅଛନ୍ତି ନିରନ୍ତରେ ।
ମୃଦୁତା ବ୍ରହ୍ମଣ୍ୟତା ଦାତୃତା ଋଜୁତା
ପାଇଛି ଯୁଧିଷ୍ଠିର ତୁମ୍ଭ ଅଧୀନତା ।
ଏହି ବଳରେ ତୁମ୍ଭେ କଷ୍ଟ ପାରିହେଲ
ନିକଟରେ ଏବେ ହୋଇବ ମହୀପାଳ ।
ତୁମ୍ଭଙ୍କୁ ଯା ଭାଇଙ୍କ ତୁଲେ ଆଜି ମୁହିଁ
ଦେଖିଲି ଏଥୁ ମୋର ଭାଗ୍ୟ ଆଉ ନାହିଁ ।
ଏହା କହି କହିଲେ ଦୁର୍ଯ୍ୟୋଧନ କଥା
ଶଲ୍ୟ ମହାରଥା ଛାଡିଣ ହୃଦବ୍ୟଥା ।
ଦୁର୍ଯ୍ୟୋଧନର ରାଜନ କରି କୂଟପଞ୍ଝା
ବାଟରେ ମୋତେ କଲା ବହୁତ ଚରଚ୍ଚ ।
ମୁଁ ତାହା ଚରଚ୍ଚରେ ଅତି ବଶ ହେଲି
ତା ସୈନ୍ୟେ ସେନାପତି ହୋଇବି ବୋଇଲି
ଯୁଧିଷ୍ଠିର ବୋଇଲେ ଦୁଯୋଧନଙ୍କର
ସେନାପାଳ ଯେବେ ହୋଇବ ନରବର।
ତେବେ ଏକା ଗୋଟିଏ କଥା ମୋହପାଇଁ
ଅକର୍ତ୍ତବ୍ୟ ହେଲେ ତା କରିବ ନୃପସାଇଁ ।

କର୍ଣ୍ଣ ଅର୍ଜ୍ଜୁନଙ୍କର ଦୁଇଥର ଯୁଦ୍ଧ
ଯେଉଁ କାଳେ ହୋଇବ ବହି ତୁମ୍ଭେ ସଧ ।
କର୍ଣ୍ଣରଥେ ସାରଥି ହୋଇ ତେଜ ହାନି
କଲେ ଅରଜୁନ ଯିବ ତା ଜୀବ ଘେନି ।
ଶଲ୍ୟ ବୋଇଲେ ମୁହିଁ କର୍ଣ୍ଣର ସାରଥି
ତୁମ୍ଭ ବୋଲେ ହେବି କହୁଛି ନୋହି ରଥୀ ।
ଯୁଦ୍ଧକାଳେ ତାହାକୁ ହୋଇ ପ୍ରତିକୂଳ
ପୂରାଇବି ଅର୍ଜ୍ଜୁନ ହାତେ ତାର କାଳ।
ଏ ବାହାରେ ଆଉ ଯେତେକ ତୁମ୍ଭ ପ୍ରିୟ
ମୋର ହାତରେ ହେବ କରିବି ଉଦୟ
ଯେତେକ ଦୁଃଖ ଖେଳ ସକାଶରୁ ବାବୁ
ପାଇଛ ତାହା ଏବେ ନାଶ କର ସବୁ ।
କର୍ଣ୍ଣ ଦୁର୍ଯ୍ୟୋଧନ ଯେ ଶକୁନିର ପ୍ରାଣ
ଘେନିଯାଅ ପେଷି ତୀକ୍ଷ୍ଣ ମାରଗଣ ।
କାଳରଜ୍ଜୁରେ ତ ସମସ୍ତେ ପଡିଥାଉଁ
କାଳକୁ ବଳିବାକୁ କାର ବଳ ନାହିଁ ।
କାଳ ଯେତେବେଳରେ ହୁଅଇ ସୁମୁଖ
ବସିବାଠାରେଟି ପ୍ରବେଶ ହୁଏ ସୁଖ ।
ମନୁଷ୍ୟର ଦୁଃଖ ଅଟଇ କି ଆଶ୍ଚର୍ଯ୍ୟ
ଜାଣିଛି ଦୁଃଖ ପାଇଛନ୍ତି ଦେବରାଜ।
ଯୁଧିଷ୍ଠିର ବୋଇଲେ ଶଚୀଙ୍କର ନାହା
କିରୂପେ ଦୁଃଖ ହେ ପାଇଲେ କହ ତାହା ।
ଶଲ୍ୟ ବୋଇଲେ ତା କହିବି ତୁମ୍ଭ ଆଗେ
ଶୁଣ ଭାଇମାନଙ୍କୁ ଘେନିଣ ସରାଗେ ।
ଇନ୍ଦ୍ରଙ୍କ ନାଶ ପାଇଁ ତ୍ୱଷ୍ଟା ପ୍ରଜାପତି
ଆପଣେ ପୁତ୍ରଟିଏ କଲେ ଉତପତ୍ତି ।
ସେ ପୁତ୍ରର ପ୍ରକାଶ ହୋଇ ତିନିମୁଣ୍ଡ
ଜିଣି ପକାଇଲା, ସେ ଚନ୍ଦ୍ରାଗ୍ନି ମାର୍ତ୍ତଣ୍ଡ ।
ସେ ତିନି ମୁଣ୍ଡ ତିନି ତୁଣ୍ଡେ ତିନି କଥା
ଆଚରିଲା ଶୁଣ ତା ନୃପ ମହାରଥା ।
ସୁଖକେ ମଦ ପିଇ ମୁଖେ ବେଦ ପଢା
କରି ମୁଖ ଗୋଟିକେ କଲା ଜନପୀଡା ।
ପୁଣି ଧର୍ମରେ ରତ ହୋଇଣ ଶରୀର
କୃଶ କରି ଆରମ୍ଭ କଲଶ ତପ ଘୋର ।
ସେ ତ୍ରିଶିରା ତପସ୍ୟା ଦେଖି ଶଚୀପତି
ମାନସରେ ଚିନ୍ତାଟି କଲେ ବସି ଅତି ।

ମନେ କଲେ କେହି ତ୍ରିଶିରା ଛାଡ଼ି ତପ
କରି ସ୍ତୀରୀଭୋଗ କରିବ ଜ୍ଞାନ ଲୋପ ।
ନୋହିଲେ ଏହା ଦେହ ତପସ୍ୟାରେ ବଢି
ରହିବ ସିନା ତିନି ଲୋକଯାକ ମାଡି ।
ଏହା ଭାବିଣ ଇନ୍ଦ୍ର ଅପସରୀକୁଳ
ଡକାଇଣ କହଲେ ହୋଇଣ ଆକୁଳ ।
ତୁମ୍ଭେମାନେ ମୋର ଏ ଦେହ ହିତପାଇଁ
ତ୍ରିଶିରା ତପ ଭାଙ୍ଗିଦିଅ ବେଗେ ଯାଇ ।
ଅପସରାମାନେ ବୋଇଲେ ଶଚୀବର
ଏହି ଛାର କଥାକୁ ଚିନ୍ତା କିମ୍ପା କର ।
ଆମ୍ଭେ କାମେ ମନ ଲୋଭାଇ ତ୍ରିଶିରାର
ଭାଙ୍ଗି ଦେଉଅଛୁଁ ତପସ୍ୟାକୁ ତାହାର ।
ଏରୂପେ ଇନ୍ଦ୍ର ଆଗେ କହି ଅପସରୀ
ମାନେ ବାହରିଲେ ଇନ୍ଦ୍ରଙ୍କୁ ନମିକରି ।
ତ୍ରିଶିରାର ତପସ୍ୟା ସ୍ଥାନରେ ମିଳିଲେ
କକ୍ଷ ଯେ କୁଚମୂଳ ଦେଖାଇ ନାଚିଲେ ।
ମଧୁରରେ ଗୀତକୁ କରିଣ ଆଳାପ
ବଢାଇଲେ କନ୍ଦର୍ପ ନୃପତି ପ୍ରତାପ ।
ତ୍ରିଶିରା ତ ତପସ୍ୟା ରସେ ଥିଲେ ମଜ୍ଜି
ଏମନ୍ତ ହେଲେ ରହିଲେ ସେ ଆଖି ବୁଜି ।
ତାହା ଦେଖି କରି ସେ ଅପସରାମାନେ
ଲାଜ ପାଇ ଗଲେ ଇନ୍ଦ୍ରଙ୍କ ସନ୍ନିଧାନେ ।
ବୋଇଲେ ଶୁଣ ଆହେ ଦେବଙ୍କର ରାଜ
ନାଚିଲୁ ଆମ୍ଭେମାନେ ବହି ଅଙ୍ଗେ ସଜ ।
ତେବେହେଁ ତ୍ରି ଶିରାର ନ ଭାଜିଲା ଧୈର୍ଯ୍ୟ
ଭେଦି ନ ପାରିଲା ତହିଁଲେ ମନସିଜ ।
ଇନ୍ଦ୍ର ଅପ୍ସରାଙ୍କ ମୁଖରୁ ଏହା ଶୁଣି
ତା ମରଣ ଚିତ୍ତେ ଭାବନା କରି ପୁଣି ।
ବୋଇଲେ ଶତ୍ରୁ ଯେବେ ହୁଏ ବଳମୂଳ
କରିଦିଏ ଶତ୍ରୁ କୁଳକୁ ସେ ନିର୍ମୂଳ ।
ବଜ୍ର ଫିଙ୍ଗି ଏହାର ଘେନିବି ପରାଣ
ନୋହିଲେ ହୋଇ ନାହିଁ ସୁରକୁଳରାଣ ।
ଏରୂପେ ଯୁଧିଷ୍ଠିର ବିଷର ଛିଣ୍ଡାଇ
ଫିଙ୍ଗିଲେ କରେ ବଜ୍ର ଟେକି ସଚୀସାଇଁ ।
ଇନ୍ଦ୍ରଙ୍କ ହାତୁ ବଜ୍ର ଫିଟି ସେହି କାଳେ
ପକାଇଦେଲା ତ୍ରିଶିରାକୁ ବଳେ ତଳେ ।
ତଳେ ପଡି ରହିବାଠାରେ ସେ ତ୍ରିଶିରା
ତେଜ ନିନ୍ଦା କଲା ପ୍ରଳୟ ବୈଶ୍ୱାନର ।
ଇନ୍ଦ୍ର ସେ ସକାଶରୁ ହୋଇ ଅତି ଦୁଃଖୀ
ତ୍ରିଶିରା ଅଙ୍ଗେ ନେତ୍ର ନ ପାରିଲେ ରଖି ।
ତାହାର ତିନିମୁଣ୍ଡ ମେରୁଶୃଙ୍ଗଖଣ୍ଡ
ନିନ୍ଦା କରି ଜଳିଲେ ଯେହ୍ନେ ମାରତଣ୍ଡ ।
ଏକାଳେ ବଦ୍ଧକିଏ ପର୍ଶୁ କରେ ବହି
ପାଇଗଲେ ତ୍ରିଶିରା ସମୀପରେ ଯାଇଁ ।
ଇନ୍ଦ୍ର ସେ ବର୍ଦ୍ଧକିଙ୍କି ବୋଇଲେ କ୍ରୋଧରେ
ତ୍ରିଶିରା ତିନିମୁଣ୍ଡ କାଟି ପରଶୁରେ ।
ସୂତ୍ରଧାର ବୋଇଲେ ପରଶୁରେ ମୁହିଁ
ତ୍ରିଶିରା ମୁଣ୍ଡ କାଟି ପାରିବଇ ନାହିଁ ।
ଏହାର ତ କନ୍ଧ ଅଟଇ ଅତି ବଡ଼
ମୋ ପରଶୁ କରି ନ ପାରେ ଦୁଇଗଡ ।
ଇନ୍ଦ୍ର ବୋଇଲେ ହେ ନପାଅ ଭୟ କିଛି
ଏ ପରଶୁଟି ବଜ୍ର ହେଉ ମୁଁ ବୋଲୁଛି ।
ସୂତ୍ରଧାର ବୋଇଲେ କିଏ ଅଟ ତୁମ୍ଭେ
ପାପ କର୍ମ କରୁଛ କହ ପୁଛୁ ଆମ୍ଭେ ।
ଇନ୍ଦ୍ର ବୋଇଲେ ମୁହିଁ ଶଚୀଦେବୀ ବର
ମୋତେ ସବୁ ଦେବେ କରନ୍ତି ନମସ୍କାର ।
ସୂତ୍ରଧାର ବୋଇଲେ ହାଣିଲେ ଏହାକୁ
ଜାଣ ବ୍ରହ୍ମହତ୍ୟା କରିଣ ସୁରଲୋକେ
ରାଜା ହୋଇ ବସିକି ପାରିବ ନିଃଶଙ୍କେ ।
ଇନ୍ଦ୍ର ବୋଇଲେ ମୁଁ ଏ ଦ୍ୱିଜ ପ୍ରାଣ ନେବି
ଯାଗ ଦାନ କରି ଏ ପାପ ଛଡ଼ାଇବି ।
ଏହା ସକାଶୁ ମୁଁ ପାଉଛି ଉଦବେଗ
ବେଗେ ଏହା ଶିରକୁ କର ଦୁଇଭାଗ ।
ତୁମ୍ଭଙ୍କୁ ଯାଗେ ପଶୁଶିର ଅନୁଗ୍ରହ
କରିବି ଏହା ମଲେ ବହି ମନେ ସ୍ନେହ ।
ଆହେ ଯୁଧିଷ୍ଠିର ଏରୂପେ ଇନ୍ଦ୍ର ବାଣୀ
ଶୁଣି ସୁତ୍ରଧାର ଚଢାଇ ଶିରୋମଣି ।
ତ୍ରିଶିରାର ବେକକୁ ପ୍ରହାରି ପରଶୁ
ଘେନିଗଲେ ତାର ଦେହରେ ଥିବା ଆସୁ ।
ତ୍ରିଶିରା ତିନିମୁଣ୍ଡ ହୁଅନ୍ତେ ଛେଦନ
ତ୍ରିବିଧ ପକ୍ଷୀ ତହୁଁ ହେଲେ ଉତପନ୍ନ ।

ଯେଉଁ ମୁଖେ ବେଦ ପଢଇ ସେ ବାପୁଡ଼ା
ତହିଁରୁ ବାହରିଲେ କପିଞ୍ଜଳଭିଡା ।
ଯେଉଁ ମୁଖେ ସବୁରି ପାଞ୍ଚୁଥିଲା ନାଶ
ତହୁଁ ଜାତ ହେଲା ତିତିରପକ୍ଷୀବଂଶ ।
ଯେଉଁ ମୁଖରେ ମଦ ଦେଉଥିଲା ପିଇ
ବାହାରିଲେ ଚଟିଆ ସେ ମୁଖୁଁ ଧାଡି ହୋଇ ।
ଇନ୍ଦ୍ର ତା ନାଶ ଦେଖି ହୋଇଣ ସନ୍ତୋଷ
ସ୍ୱର୍ଗେ ଗଲେ ବର୍ଦ୍ଧକି ଗଲା ନିଜ ବାସ ।
ତ୍ୱଷ୍ଟା ପ୍ରଜାପତି ପୁତ୍ରର ହତ ଶୁଣି
କ୍ରୋଧ ହୋଇ କରି ସେ କହିଲେ ଏ ବାଣୀ ।
ତପସ୍ୟା କରୁଥିଲା ମୋ ପୁତ୍ର ତ୍ରିଶିର
ତାକୁ ତୁଚ୍ଛା ଯାଇଁ ମାଇଲେ ଶଚୀବର ।
ଏଣୁ ତ ଇନ୍ଦ୍ରଙ୍କର ନାଶପାଇଁ ମୁହିଁ
ଆଉ ଥରେ ପୁତ୍ର ଗୋଟିଏ କରିବଇଁ ।
ଲୋକମାନେ ମୋହର ତପସ୍ୟା ବଳକୁ
ଜାଣନ୍ତୁ ଦେଖି କରି ଇନ୍ଦ୍ରଙ୍କ ନାଶକୁ ।
ଏହା କହିଣ ତ୍ୱଷ୍ଟା ପ୍ରଜାପତି ରୋଷେ
ନିଉଡିଲେ ଘିଅ ଅଗ୍ନିଙ୍କ ମୁଖଦେଶେ ।
ପ୍ରଳୟ ଅଗ୍ନି ପରି ହୋଇଣ ଦୀପିତ
ସେ ହୋମରୁ ହୋଇଲା ବୃତ୍ରାସୁର ଜାତ ।
ତ୍ୱଷ୍ଟା ପ୍ରଜାପତି ପୁତ୍ରଙ୍କ ମୁଖ ଚାହିଁ
ବୋଇଲେ ବାବୁ ନିତି କାଣ୍ଡେ ବଢ଼ ତୁହି ।
ମୋ ବଇରୀ ଇନ୍ଦ୍ର ତାହାଙ୍କୁ କର ନାଶ
ତେବେ ପ୍ରକାଶିବ ତ୍ରିଦିବେ ମୋର ଯଶ ।
ଏହା ଶୁଣିଣ ବୃତ୍ରାସୁର ନିଶ ମୋଡି ।
ଗଲା ଇନ୍ଦ୍ରଦେବଙ୍କ ପୁରକୁ ଦଉଡି
ଇନ୍ଦ୍ରଙ୍କର ସଙ୍ଗରେ କଲା ଘୋର ରଣ
ଗରଜନେ ପୂରାଇ ଦେଇଣ ଗଗନ ।
ତଦଅନ୍ତେ ଇନ୍ଦ୍ରଙ୍କୁ ଧରି ଦୁଇକରେ
ଗିଳିଦେଲା ତାହାଙ୍କୁ ଅଲଭ୍ୟେ ମୁଖରେ ।
ଇନ୍ଦ୍ରଙ୍କର ଅସ୍ତଦଶାକୁ ଦେବେ ଦେଖି
ସରଜିଲେ ହାଇଟି ହୋଇ ଅତି ଦୁଃଖୀ ।
ସେ ହୋଇ ବୃତ୍ରାସୁର ଦେଶଯାକେ ଘୋଟି
ମେଲାଇଲା ବଳାତ୍କାରେ ତାହାର ପାଟି ।
ସେ ସକାଶରୁ ଇନ୍ଦ୍ର ସାଙ୍କୁଡାଇ ଅଙ୍ଗ
ତା ମୁଖୁଁ ବାହାରି ରଚିଲେ ରଣରଙ୍ଗ ।

ଦେବତା ଏ ଇନ୍ଦ୍ର ବାହରିବାର ଦେଖି
ଫୁଲାଇଲେ ଅଙ୍ଗମାନଙ୍କୁ ହୋଇ ସୁଖୀ ।
ବୃତ୍ରାସୁର ବଢିବା ଦେଖି ସୁରରାଣ
ପଳାଇଲା ତା ସଙ୍ଗେ ନ କରି ଆଉ ରଣ ।
ଇନ୍ଦ୍ରଙ୍କ ପଳାଇବା ଦେଖି ଦେବଚୟ
ବିଚାରି ବୃତାସୁର ମରିବା ଉପାୟ ।
ଇନ୍ଦ୍ରକୁ ଘେନିଣ ମନ୍ଦିର ଶିଖେ ବସି
ବିଷ୍ଣୁଙ୍କ ପାଦେ ଦେଲେ ମାନସ ନିବେଶି ।
ଇନ୍ଦ୍ର ସେହି କାଳରେ କହିଲେ ଦେବଙ୍କୁ
ମାରିବାକୁ ସମର୍ଥ ନୁହେ ମୁଁ ବୃତ୍ରକୁ ।
ନିତି ତ ବଢୁଅଛି ବୃତାସୁର ଦେହ
ତା ଦେଖିଲେ ହେଉଛି ମୋର ମହାମୋହ ।
ତୁମ୍ଭମାନଙ୍କୁ ମୁଁ ତା ମୁଖ ଉଖିବାକୁ
ପାଉନାହିଁ ବଳ କି କହିବି ତୁମ୍ଭଙ୍କୁ ।
ଚାଲ ଏବେ ଆମ୍ଭେ ବିଷ୍ଣୁଙ୍କ ପାଶେ ଯିବା
ଯେ ହିତ ହେବ ତାଙ୍କୁ ଘେନିଣ ଭାଳିବା ।
ଏହା ଯେଉଁକ୍ଷଣି କହିଲେ ଶଚୀବର ।
ଦେବେ ପୂଜା କଲେ ଇନ୍ଦ୍ରଙ୍କର ପୟର ।
ଦେବେ ଘେନି ଇନ୍ଦ୍ର ବିଷ୍ଣୁଙ୍କ ପାଶେଗଲେ
ରକ୍ଷା କର ହେ ପ୍ରଭୁ ବୋଲିଣ ନମିଲେ ।
ପୂର୍ବେ ତୁମ୍ଭେ ହିରଣ୍ୟକଶିପୁଙ୍କୁ ମାରି ।
ଦେଲ ଇନ୍ଦ୍ରଦେବଙ୍କୁ ଯାଚି ସ୍ୱର୍ଗପୁରୀ ।
ବଳିଙ୍କର ବଳକୁ ଜାଣିଣ ବାମନ
ରୂପେ ଦେଲେ ତାଙ୍କୁ ପାତାଳପୁରେ ସ୍ଥାନ ।
ତିନିପୁର ଯାକେ ବ୍ୟାପିଛି ତୁମ୍ଭ କୀର୍ତ୍ତି
ତୁମ୍ଭବଳେ ବ୍ରହ୍ମା ଜଗତ ସରଜନ୍ତି ।
ତୁମ୍ଭ ମହିମାର ଲେଶକୁ ଶେଷଦେବ
କହିବି ବୋଇଲେ ସେ ଅସର ହୋଇବ ।
ଆମ୍ଭମାନଙ୍କର ତ ବୁଦ୍ଧି ଅବା କେତେ
କିସ ଜଣାଇବୁ ଛାମୁରେ ଲକ୍ଷ୍ମୀପତେ ।
ବୃତ୍ରାସୁର ଭୟରେ ଛାଡି ସ୍ୱର୍ଗପୁର
ଆଶ୍ରୟ କଲୁଁ ଆସି ତୁମ୍ଭର ପୟର ।
ଏଥିକି ଯେ ଉଚିତ ହେବ ଜନାର୍ଦ୍ଦନ
କର ହେ ତାହା ଅବିଳମ୍ବରେ ବିଧାନ ।
ଏହା ଶୁଣିଣ ବିଷ୍ଣୁ ହସ ହସ ହୋଇ ।
ବୋଇଲେ ବସ ଦେବେ ଚିନ୍ତା ଛାଡି ଦେଇ ।

ବୃତ୍ରାସୁର ମାରିବା ଉପାୟ ତୁମ୍ଭଙ୍କୁ
ଦେବା ତାହା କରି ମାର ସେ ଅସୁରକୁ ।
ତା ତୁଲରେ ପ୍ରୀତି କରି ତା ଜୀବନକୁ
ଦିଅାଅ ନେଇ ଯମନଗରେ ଠାବକୁ ।
ମୁଁ ମଧ ଇନ୍ଦ୍ରଙ୍କର ବଜ୍ରରେ ରହିବି
ବୃତ୍ରଅସୁରର ପରାଣକୁ ଘେନିବି ।
ଏହା ଶୁଣିଣ ଦେବେ ନମି ବିଷ୍ଣୁପାଦେ
ବାହାରିଲେ ସେଠାରୁ ଅତ୍ୟନ୍ତ ପ୍ରମୋଦେ ।
ବୃତ୍ରାସୁର ସମୀପେ ହୋଇ ପରବେଶ
ଦେଖିଲେ ତେଜେ ଜଳୁଛି ତା ଅଙ୍ଗଦେଶ ।
ଦେବଙ୍କ ସଙ୍ଗେ ଦେବଋଷିଏ ତ ଥିଲେ
ବୃତ୍ର ଅସୁରକୁ ଏ ବଚନ କହିଲେ ।
ଆମ୍ଭ ସଙ୍ଗେ ଯୁଝି ନ ଜାଣି ମହାଲଜ୍ଜା
ଇଚ୍ଛାସୁଖେ ଲୋଡିଣ ଆଣିଲେ ବିଡୋଜା ।
ଆମ୍ଭେ ଯେବେ ଯାଇଣ ଯୁଝିବ ତାହାଙ୍କୁ
ଜିଣି ନ ପାରିବ ପାଉଛି ମୋ ମନକୁ ।
ତୁମ୍ଭ ଦୁହିଁଙ୍କର ହୋଇବାରୁ ବିମୁଖ
ହେଉଅଛି କେବଳ ପ୍ରଜାଙ୍କର ଦୁଃଖ ।
ଇନ୍ଦ୍ରଙ୍କର ତୁମ୍ଭର ହେବ ଯେବେ ପ୍ରୀତି
ତେବେ ହେବ ଆମ୍ଭମାନଙ୍କର ନୃପତି ।
ଋଷିମାନଙ୍କର ବଚନ ଶୁଣି ବୃତ୍ରାସୁର
ଶୁଣି ତୋଷେ ତାହାଙ୍କୁ କଲା ନମସ୍କାର ।
ବୋଇଲା ତୁମ୍ଭେ ଯା କହୁଛ ମୋତେ ବସି
ଶୁଣିଲି ଯା କହିବି ଶୁଣ ସବୁ ଋଷି ।
ଇନ୍ଦ୍ରଙ୍କର ମୋର ପୀରତି ହେବା ପରି
ମୋ ମନକୁ ପାଉ ନାହିଁ ଆହେ ତପଋରୀ ।
ସେତ ନ ସହିବେ ମୋହର କିଛି କଥା
ମୁଁ ମଧ ସେହି ଘେନି ପାଉଥିବି ବ୍ୟଥା ।
ଏ ସକାଶୁଁ ତାଙ୍କର ଆମର ସମର
ହେଉଥିବାର ସିନା ଅଟଇ ବିଋର ।
ଋଷିମାନେ ବୋଇଲେ ଆହେ ବୃତ୍ରାସୁର
ସାଧୁ ଲୋକଙ୍କର ତ ଉତ୍ତମ ବେଭାର ।
ସାଧୁଙ୍କ ସଙ୍ଗରେ ଯେ କରଇଟି ମୈତ୍ରୀ
ତାକୁ ସରି ନୁହନ୍ତି ବେଦ ପଢ଼ା ଯତି ।
ଇନ୍ଦ୍ର ଦେବତା ତ ସାଧୁମାନଙ୍କେ ସାର
ତାଙ୍କ ତୁଲେ ପ୍ରୀତି କର ହେ ବୃତ୍ରାସୁର ।

ବୃତାସୁର ବୋଇଲେ ବୋଲୁଅଛ ଯାହା
ନାହିଁ କରି ପାରିବି ମୁହିଁ ନିକି ତାହା
ମୁଁ ଯା ବୋଲିବି ତା କରିବି ଯେବେ ତୁମ୍ଭେ
ତେବେ ଇନ୍ଦ୍ରତୁଲେ କରିବୁଁ ସଖ୍ୟ ଆମ୍ଭେ ।
ରଜନୀ ଦିବସରେ ଶସ୍ତ୍ର ଅସ୍ତ୍ରଙ୍କରେ
ନ ମରିବି କେବେ ମୁଁ ଇନ୍ଦ୍ରଙ୍କ ହସ୍ତରେ ।
ଏ ବାହାରେ ଶୁଷ୍କ ଆର୍ଦ୍ର ଯେ କାଷ୍ଠ ଗ୍ରାବ
ଏମାନଙ୍କେ ମୋର ନୋହିବ ପରାଭବ ।
ଋଷିମାନେ ବୋଲେ ଏହି ଛାରକଥା
ପାଇଁକି କିପାଁ ତୁମ୍ଭେ ପାଉଅଛ ବ୍ୟଥା ।
ଏବେ ଆମ୍ଭ ବଚନେ ଏମାନଙ୍କେ ଦେବେ
ନ ପାରନ୍ତୁ ଆମ୍ଭର ନାଶ କରି ଲବେ ।
ଏହା ଶୁଣି ବୃତ୍ର ବୋଇଲେ ଆହେ ଭାଇ
ଇନ୍ଦ୍ରଦେବ ଆସୁ ମୋ ପାଶେ ଶ୍ରଦ୍ଧା ବହି ।
ତୁମ୍ଭ ତୁଲେ ମୋହର ଆଜୁଁ ହେଲା ସଖ୍ୟ
ଛାଡିଦିଅ ମନୁଁ ଯେ ଥିବ ଯୁଦ୍ଧଦୁଃଖ ।
ଶତ୍ରୁ ତାହା ଶୁଣିଣ ବୋଇଲେ କିପାଇଁ
ଦୁଃଖ କରିବି ହେ ଅସୁରକୁଳସାଇଁ ।
ଧାତା ଲେଖିଥିଲା ହୋଇବାକୁ ରଣ
ତେଣୁଟି ବିନ୍ଧା ବିନ୍ଧି ହୋଇଲାଇଁ ବାଣ ।
ଆହେ ଯୁଧିଷ୍ଠିର ଏ ରୂପେ ବୃତ୍ର ତୁଲେ
ଶଚୀଦେବୀର ରମଣ ପ୍ରୀତି କଲେ ।
ତାହାର ମରଣକୁ ଭାଳୁଥାନ୍ତି ନିତି
କାହା ଆଗେ ତାହା ପ୍ରକାଶ ନ କରନ୍ତି ।
ଦିନେ ବୃତ୍ରାସୁର ସମୁଦ୍ରଙ୍କର ତୀରେ
ଯାଉଥିଲା ପଡ଼ିଲା ଇନ୍ଦ୍ରଙ୍କ ନେତ୍ରରେ ।
ସେ ସମୟରେ ପଶ୍ଚିମଗିରି ଭାନୁ ଅସ୍ତ
ଛୁଇଁ ହେଲେ ଛାୟାଦେବୀଙ୍କର କାନ୍ତ ।
ଭାବିଲେ ଇନ୍ଦ୍ର ରାତି ଦିନ ଏ ନୁହଇ
ଦି ଆଡୁ ବାହାର ଏ କାଳ ଅଛି ହୋଇ ।
ବୃତ୍ରାସୁର ମୋହର ଅଟେ ବଡ ରିପୁ
ଏହାକୁ ମାରିବି ଦେଖାଇ ମହାବପୁ ।
ଏ ଜୀଇଥିଲାଯାକ ଶଚୀ କୋଳେ ଧଣି
ବସିଥିବେ ସ୍ୱର୍ଗରେ ମୋର ମଲାପରି ।
ଏରୂପେ ବିଋରି ମନରେ ପୁରନ୍ଦର
କଲେକ ସୁମରଣା ଶଙ୍ଖଚକ୍ରଧର ।

ବିଷ୍ଣୁଙ୍କୁ ସୁମରିବା କ୍ଷଣି ଗିରି ପରି
ଫେନ ପାଶେ ଲାଗିଲା ଦେଖିଲେ ବଜ୍ରଧାରୀ
ଇନ୍ଦ୍ର ମନେ କଲେ ଶୁଖିଲା ଓଦା ଦୁଇ
କଥାରେ ଏ ଫେନ ବାହାର ଅଛି ହୋଇ ।
ଶସ୍ତ୍ର ଅସ୍ତ୍ର ଶିଳା ଦାରୁ ତ ହୁଏ ନୋହେ
ଏହିଥିରେ ମାରିବି ବୃତ୍ରକୁ ମୁଁ କୋହେ।
ଏରୂପେ ମନେକରି ଇନ୍ଦ୍ର ଦଇବତ
କଲେ ସେ ମହାଫେନ ଗୋଟା କର ଶତ ।
ବିଷ୍ଣୁତା ଜାଣି-ପାରି ବୃତ୍ର ବଧ ପାଇଁ
ରହିଲେ ସେ ଫେନେ ମାୟାରେ ବୃତ୍ରହୋଇ
ଇନ୍ଦ୍ର ହାତୁଁ ଫିଟି ସେ ଫେନ ବୃତ୍ର ମୁଣ୍ଡ
ଦେଶରେ ବାଜି କରି କଲା ଦୁଇଖଣ୍ଡ ।
ବୃତ୍ରାସୁର ବଧ ଦେଖିଣ ଦେବତାଏ
ଋଷିତୁଲେ ବସିଲେ ଫୁଲାଇଣ କାୟେ ।
ଦଶଟି ଦିଗ ଯାକ ଛାଡ଼ିଣ ଆବିଳ
ସବୁରି ନୟନକୁ ଦିଶିଲା ନିର୍ମଳ ।
ସେକାଳରେ ଗୋଟି ହୋଇଣ ତିନି ସୃଷ୍ଟି ।
ବାଢିଲେ ସୁଖେ ବସି ଇନ୍ଦ୍ରଙ୍କର ପୁଷ୍ଟି ।
ଇନ୍ଦ୍ର ଦେବତାଙ୍କୁ ସଙ୍ଗତରେ ଘେନିଲେ
ବିଧିରେ ନାରାୟଣଦେବେ ଆରାଧିଲେ ।
ପୂର୍ବରୁ ତ ତ୍ରିଶିରା ବଧ ହୋଇ କୃତ୍ୟା
ଗୋଡାଇଲା ପୁଣି ହୋଇଲା ମିତ୍ରହତ୍ୟା
ଏହି ସକାଶୁଁ ଇନ୍ଦ୍ର ହୋଇ ଅତି ଶୀର୍ଣ୍ଣ
ଦେହକୁ କଲେ ଜଳ ଭିତରେ ଆଚ୍ଛନ୍ନ ।
ବ୍ରହ୍ମହତ୍ୟା ଭୟରେ ଶଚୀଙ୍କ ନାୟକ
ଲୁଚିବା ଦେଖିଣ ସଡ଼ିଲେ ତିନିଲୋକ ।
ନଦୀମାନଙ୍କର ପ୍ରବାହ ହେଲା ଊଣା
ପ୍ରାଣୀମାନଙ୍କର ବୁଦ୍ଧି ହୋଇଗଲା ବଣା ।
ମହୀ ଲୋକଯାକେ ହୁଅନ୍ତେ ଅନାବୃଷ୍ଟି
କେତେ ନାଶ ହେଲା ସେ ଘେନି ପ୍ରଜାସୃଷ୍ଟି ।
ଦେବତାଏ ତା ଦେଖି ଘେନି ଋଷିଗଣ
ଭାବିଲେ କାହିଁଗଲେ ଶଚୀଙ୍କ ରମଣ ।
ତାଙ୍କ ବିନା ଏବେ କାହାକୁ କରି ରାଜା
ପାଇବା କହ ଆମ୍ଭେମାନେ ନିତି ପୂଜା ।
ଆହେ ଯୁଧିଷ୍ଠିର ଏହିରୂପେ ବିଚାରି
ଦେବଙ୍କ ତୁଲେ ଋଷିମାନେ ଅପସରି ।
ବୋଇଲେ ଆମ୍ଭ ହାତେ ନୋହିବ ଇନ୍ଦ୍ରପରି
ବେଭାର କରିବାର ବସି ସ୍ୱର୍ଗପୁରୀ ।
ପୁଣି ଋଷି ଦେବେ କରିଣ ଏକ ମନ୍ତ୍ରା
ବୋଇଲେ ନହୁଷେ କରିବା ଆମ୍ଭେ ରାଜା ।
ନହୁଷ ତ ତପସ୍ୱୀ ଧାର୍ମିକ ଯଶସ୍ୱୀ
ଏ ବାହାରେ ମଧ ସେ ଅଟନ୍ତି ତେଜସ୍ୱୀ ।
ଏହା ଭାବିଣ ଦେବେ ଋଷିଏ ଉଠିଲେ
ନହୁଷ ନୃପତିଙ୍କି ଯାଇଣ କହିଲେ ।
ଇନ୍ଦ୍ରତ ବ୍ରହ୍ମହତ୍ୟା କରିପାଇ ଲଜ୍ଜା
ପଳାଇଲେ ଏବେ ହୁଅ ହେ ତୁମ୍ଭେ ରାଜା ।
ନହୁଷ ବୋଇଲେ ମୋ ଶକତି ତ ନାହିଁ
କିରୂପେ ପାଳିବି ତୁମ୍ଭଙ୍କୁ ବୋଲିବଇଁ ।
ରାଜା ଯେବେ ହୁଅଇ ଅତି ବଳବାନ
ତେବେ ସିନା ବଶ କରଇ ଶତ୍ରୁଜନ ।
ଇନ୍ଦ୍ରଙ୍କ ପରି ବଳ ନାହିଁ ତ ମୋ ଦେହେ
ଜାଣୁ ଜାଣୁ କେହିଁ ପଡ଼ିବି ଏତେ ମୋହେ ।
ଋଷିମାନେ ବୋଇଲେ ହେ ନହୁଷ ରାଜା
ଆମ୍ଭ ତପୋବଳରେ ପାଅ ତୁମ୍ଭେ ପୂଜା ।
ନୋହିଲେ ଆମ୍ଭେମାନେ ପରସ୍ପରେ ଡରି
ଆଣିଛୁ ସ୍ୱଇଚ୍ଛାରେ ନାଶ ଲୋଡି କରି ।
ଦେବ ଦୈତ୍ୟ ଦାନବ ଉରଗ ଋଷି ଯକ୍ଷ ।
ଚାରଣ ସିଦ୍ଧ ଭୂତ ପିଶାଚ ନର ରକ୍ଷ ।
ଏ ଆଦି ପ୍ରାଣୀଙ୍କର ଆମ୍ଭର ବୋଲରେ
ତେଜ ହରି ଆଣ ଦେଖିବା ମାତ୍ରକରେ ।
କେବଳ କହୁଥାଇଁ ସୁଖମାର୍ଗେ ପଡ଼ି
ନ ଦେବଟି ମାନସରୁ ଧର୍ମକୁ ଛାଡ଼ି ।
ଦେବତା ଋଷିଙ୍କ ପାଳନା ତୁମ୍ଭେ କଲେ
ସୁରରାଜ୍ୟରେ ବସି ଅଭିଷେକ ହେଲେ ।
ପାଇ ଇନ୍ଦ୍ର ସମ୍ପତ୍ତି ହୋଇଣ ଅଜ୍ଞାନୀ
ବିହରିଲେ ନନ୍ଦବନେ ସ୍ତିରୀ ଘେନି ।
କଇଳାସ ମନ୍ଦିର ସହ ହିମାଳୟ
ମହେନ୍ଦ୍ର ମେରୁ ଶ୍ୱେତପର୍ବତ ମଳୟ ।
ସମୁଦ୍ରଦ୍ୱୀପ ନଦୀତୀର ଦେବୋଦ୍ୟାନ
ଏମାନଙ୍କେ ନହୁଷ ହୋଇ ତୋଷମନ ।
ଅପସାରୀମାନଙ୍କ ସଙ୍ଗତେ ବିହରି
ଦେଲେ ଧର୍ମନୀତିଯାକକୁ ସେ ପାସୋରି ।

ଅପସରାମାନେ କରିଣ ନୃତ୍ୟ ଗୀତ
ହରି ଘେନିଗଲେ ନହୁଷନୃପ ଚିତ୍ତ ।
କାମ ତା ଜାଣିପାରି ହୋଇକରି ବାଦୀ
ନହୁଷଙ୍କ ହୃଦୟ ଦେଲା ଶରେ ଭେଦି ।
ଏ ସକାଶୁଁ ସବୁବେଳରେ ତାଙ୍କ ମନ
ଯୁବତୀ ରତି ବିନା ନ ଜାଣିଲା ଆନ ।
ଷଡରତୁ ନହୁଷ ସୁଖ ହୋଇବାକୁ
ନ ଛାଡିଲେ କେବେ ସେ ଲବେ ସମୀପକୁ ।
ମନ୍ଦ ଶୀତ ସୁଗନ୍ଧ ତୁଲରେ ପବନ
ଫୁଲାଏ ବହିଣ ନହୁଷ ଅପଘନ ।
ଏରୂପେ ନହୁଷ କରିବାବେଳେ କ୍ରୀଡା
ଦେଖିଲେ ସେ ଶଚୀଙ୍କି ହୋଇଛନ୍ତି ଛିଡା
ନହୁଷ ଶଚୀ ବୋଲି ତାଙ୍କୁ ଜାଣିପାରି
କହିଲେ ଏ ବଚନ ଦେବେ ଡାକି କରି ।
କାହିଁପାଇଁକି ଶଚୀ ମୋହର ପାଶକୁ
କହ ଆସୁନାହାନ୍ତି ସେବା କରିବାକୁ ।
ଏବେ ମୁଁ ବୋଲୁଅଛି ଯାଇ ଦେବଶ୍ରେଣୀ ।
ଶଚୀଙ୍କି ବେଗେ ମୋର କୋଳେ ଦିଅ ଆଣି
ତା ଅଧର-ମଧୁ ଯେବେ ମୁଁ ନା ଖାଇଛି
ଇନ୍ଦ୍ର ପଦେ ମୋହର କେଉଁ କାର୍ଯ୍ୟ ଅଛି ।
ନହୁଷ ବୋଲେ ଦେବେ ଶଚୀପାଶେ ଗଲେ
ନହୁଷ ବୋଲିବାର ଶଚୀଙ୍କି କହିଲେ ।
ଦେବତାଙ୍କ ମୁଖରୁ ନହୁଷ ବଚନ
ଶୁଣିଣ ଶଚୀଦେବୀ ହୋଇଣ ମଉନ ।
ବୃହସ୍ପତିଙ୍କ ପାଦରେ କଲେ ସେ ଭକତି
କରି ବୋଇଲେ ଆହେ ରଖ ମହାମତି ।
ପୂର୍ବେ ତ ବୋଲୁଥାଅ ମୋତେ ପତିବ୍ରତା
ଏବେ ତ ଭାଙ୍ଗୁ ଅଛି ମୋର ସେ ବ୍ୟବସ୍ଥା ।
ତୁମ୍ଭର ବଚନକୁ ତୁମ୍ଭେ ସତ୍ୟକର
କହିବାରେ ଅଧିକ ସିନା ଯେ ମୋହର ।
ଯାହାକୁ ତୁମ୍ଭେ ମହରଷି ବୋଲି ଯାହା
ଆନ କରି ନ ପାରନ୍ତି ତା କୁଶବାହା ।
ମୋ କର୍ମ ଅବଳକୁ ତୁମ୍ଭର ବଚନ
ଆନ ହେଉଅଛି ଏବେ ତା ତପୋଧନ ।
ବୃହସ୍ପତି ବୋଇଲେ କହ ଶଚୀ ଯାହା
ମୁଁ କି କଥା କରି ଘେନିବି ମନେ ତାହା ।
ଯେବେ ମୁଁ ହୋଇଥିବି ସବୁ ବେଦ ବେତ୍ତା
ତେବେ ଜାଣ ତୁମ୍ଭେ ହୋଇବ ପତିବ୍ରତା ।
ନିକଟରେ ଇନ୍ଦ୍ରଙ୍କୁ କରିବ ଦର୍ଶନ ।
ନହୁଷ ଭୟେ ତୁଚ୍ଛା ନୁହ ଗୋ ବିମନ ।
ବୃହସ୍ପତିଙ୍କର ପାଶରେ ନହୁଷଙ୍କ
ଖଚୁଆ ଯେ ଥିଲେ ଶୁଣି ଏ କଥାଯାକ ।
ନହୁଷଙ୍କ ଆଗରେ କଲେ ଜିଣା ମଣା
ତାହା ଶୁଣି ନହୁଷ ହେଲେ କ୍ରୋଧେ ବଣା ।
ନହୁଷଙ୍କର କ୍ରୋଧ ଦେବତାଏ ଜାଣି
ନହୁଷଙ୍କୁ ଆସି କହିଲେ ଏହି ବାଣୀ ।
ତିନିଲୋକର ପ୍ରଭୁ ବୋଇଲେ ଅବୋଧ
ହୋଇଣ କିମ୍ପା ତୁମ୍ଭେ ହେଉଅଛ କ୍ରୋଧ ।
ଯେବେ ତୁମ୍ଭେ କ୍ରୋଧ ଏରୂପେ ଆଉକ୍ଷଣେ
ହେବ ତେବେ ଆମ୍ଭେ ପଶିବୁ ଯାଇ ବଣେ ।
ସାଧୁ ଲୋକମାନେ ତ ନ କରିନ୍ତି କୋପ
ଯେଣୁ ତା ଘେନି ଦେହୁ ଜ୍ଞାନ ହୁଏ ଲୋପ ।
ଦେବରାଜା ହୋଇଣ ପରସ୍ତ୍ରୀ ଧର୍ଷଣ
କଥାରେ କିମ୍ପା ବସି କରୁଅଛ ମନ ।
କାମ ତ ନେଇଥିଲା ନହୁଷଙ୍କ ମନ
ଏ ଘେନି ନ ଘେନି ସେ ଦେବଙ୍କ ବଚନ ।
ବୋଇଲେ ଇନ୍ଦ୍ର ତ ହରିଲେ ଅହଲ୍ୟାଙ୍କୁ
ତେବେ କହିଥିଲ କି ତିଆରି ତାହାଙ୍କୁ ।
ଏହିରୂପେ ଅନେକ ପାପକଥାମାନ
କରିଅଛନ୍ତି ଥାଇ ଇନ୍ଦ୍ର ସ୍ୱର୍ଗ ସ୍ଥାନ ।
ତେତେବେଳେ ତାହାଙ୍କୁ କହିବା ନୋହିଲେ
ଏବେ କିମ୍ପା କହିଆସିଛ କହ ଭଲେ ।
ଯେବେ ଶଚୀ ନ ଆସିବେ ମୋହରଠାକୁ
କି ଲୋଡା ଅଛି ମୋ ତୁମ୍ଭଙ୍କୁ ପାଳିବାକୁ ।
ଦେବତାଏ ବୋଇଲେ ଶଚୀ ଦେବୁ ଆଣି
ଦିଅ କ୍ରୋଧ ହୃଦରୁ ଛାଡି ସୁରମଣି ।
ଏରୂପେ ଯୁଧିଷ୍ଠିର ନହୁଷଙ୍କୁ କହି
ବୃହସ୍ପତି ପାଶକୁ ବେଗେ ଗଲେ ଧାଇଁ ।
ବୋଇଲେ ଆହେ ବୃହସ୍ପତି ଇନ୍ଦ୍ରଭୂତି
ଶଚୀ ଘେନି ଛାଡିବେ ନହୁଷ ନୃପତି ।
ତୁମ୍ଭେ କିମ୍ପା ଶଚୀଙ୍କି ଆଗ୍ରହରେ ଘରେ
ରଖିଅଛ କହ ତା ଆମ୍ଭର ଆଗରେ ।

ନହୁଷ ତ ଏବେ ହେଲେଣି ଆମ୍ଭ ପତି
ଶଚୀ କିମ୍ପା ତାଙ୍କ କତିକି ନ ଯାଆନ୍ତି ।
ନହୁଷଙ୍କ କ୍ରୋଧ ହେବାର ନୁହେ ଦୋଷ
ଏବେ ଶଚୀ ସମସ୍ତେ ଯିବା ନାଶ ।
ଘେନି ଆସ ଶଚୀଙ୍କି ନହୁଷଙ୍କୁ ଦେବା
ସୁଖେ ଯାଇ ଯେ ଯାହା ଘରରେ ବସିବା ।
ଶଚୀ ଦେବୀଙ୍କର ମୁଖରୁ ଏହା ଶୁଣି
ବୃହସ୍ପତି ଆଗେ କହିଲେ କାନ୍ଦି ପୁଣି ।
ନହୁଷ ଭୟେ ପଶିଅଛି ମୁଁ ଶରଣ
ରକ୍ଷାକର ମୋତେ ହେ ଋଷିକୁଳରାଣ ।
ତାଠାରେ ମୋହର ହୁଅନ୍ତା ଯେବେ ମତି
ଏତେବେଳେ ଯାଏ କି ଥାନ୍ତା ନୋହି ପ୍ରୀତି ।
ବୃହସ୍ପତି ବୋଇଲେ ଶୁଣ ଆଗୋ ଶଚୀ
ଶରଣାଗତକୁ ମୁଁ ନ ପାରଇ ମୁଞ୍ଚି ।
ସକଳ ଧର୍ମ ମୋତେ ହେବାରୁ ଗୋଚର
କେବେଟି ଅକାର୍ଯ୍ୟ ମୁଁ ନ କରେ ବିଚାର ।
ଏହା କହି ଶଚୀଙ୍କି କହିଲେ ଦେବଙ୍କୁ
କରିବି ନାହିଁ ଜାଣ ନହୁଷ ପ୍ରିୟକୁ ।
ଶରଣାପନ୍ନ ଲୋକେ ବିଷୟେ କୁଶଧର
ଯାହା କହିଛନ୍ତି ତା ଶୁଣ ସବୁ ସରୁ ।
ଯେଉଁ ଲୋକ ଶରଣାପନ୍ନ ନ ରଖଇ
ତା ରକ୍ଷକ ଲୋକରେ ଜାଣ କେ ନୁହଇ ।
ତାହାର ହବ୍ୟ ଦେବେ ନ କରନ୍ତି ପାନ
ଅଳପକାଳେ ହୁଏ ନରକେ ପତନ ।
ପୁଣି ତାହାର ପୁଅ ଲଭଇମରଣ
ପିତୃ ଏ ତାର ଜଳ ନ କରନ୍ତି ପାନ ।
ଏହା ଜାଣୁ ଜାଣୁ ମୋହର ପରା ଲୋକ
ଶଚୀଙ୍କି ଦେବି କେହିଁ କହ ଦେବଯାକ ।
ଶଚୀଙ୍କର ମୋହର ହିତ ଯେଉଁ ବ୍ୟଥା
ତା ମୋର ବୋଲେ କର ଛାଡି ହୃଦବ୍ୟଥା ।
ଏହା ଶୁଣି ବୃହସ୍ପତିଙ୍କ ସବୁ ଦେବେ
ବୋଇଲେ କହ ଭଲ ଯେ ହୋଇବ ଏବେ ।
ବୃହସ୍ପତି ବୋଇଲେ ନହୁଷଠାକୁ ଶଚୀ
ଯାଇଣ କଥାରେ କରନ୍ତୁ ବଞ୍ଚାବଞ୍ଚି ।
ଏଥି ଉତ୍ତାରେ ତ ଯିବଟି କାଳ ଗଡି
ବସିବେ ଆସି ଇନ୍ଦ୍ର ସ୍ୱର୍ଗପୁର ମାଡ଼ି ।

ଶଚୀଙ୍କରଠାରେ ନହୁଷଙ୍କର ରୋଷ
ମନ ଭାଜିଯାଉ ହୋଇ ସେ ଥାନ୍ତୁ ତୋଷ ।
ବୃହସ୍ପତିଙ୍କର ଶୁଣିଣ ଏ ବଚନ
ଦେବେ ବୋଇଲେ ଯା କହୁଛ ପାଏ ମନ ।
ବଞ୍ଚାବଞ୍ଚି କରିଲେ ନହୁଷଙ୍କୁ ଶଚୀ
ରହିବେ ଜାଣୁଥାଇଁ ରୋଷକୁ ସେ ମୁଞ୍ଚି
ଏଥିଅନ୍ତେ ଦେବେ ଶଚୀଙ୍କ ପାଶେ ଗଲେ
ଆଗୋ ମାତ ରଖ ଆମ୍ଭଙ୍କୁ ଯେ ବୋଇଲେ ।
ବୃହସ୍ପତି କହିବା ପ୍ରାୟେ ନହୁଷଙ୍କୁ
ବଞ୍ଚାଅ ଦେଖାଇଣ କଥାର ରସକୁ ।
ତୁମ୍ଭର ରତି ଇଚ୍ଛା କରିଣ ନହୁଷ
ଜାଣୁଅଛୁଁ ଆମ୍ଭେ ହୋଇବେ ସେହୁ ନାଶ ।
ଦେବଙ୍କ ମତ ଜାଣି ମତ୍ତଗଜଗତି
ଗଲେ ଯହିଁ ଥିଲେ ସେ ନହୁଷ ନୃପତି ।
ନହୁଷ ଶଚୀଙ୍କର ଦେଖିକରି ରୂପ
ବୁଜି ଆଖି ଘେନିଲେ ପାଇ କାମ ତାପ ।
ଏଥିଅନ୍ତେ ନହୁଷ କହିଲେ ଶଚୀଙ୍କି
ନ ଆସିଥିଲୁ କିମ୍ପା ମୋହର କ୍ରତିକି ।
ମୁଁ ତ ଇନ୍ଦ୍ର ହୋଇ ବସିଛି ସ୍ୱର୍ଗପୁରେ
ମୋତେ କିପାଇଁ ଦେଲୁ ମଦନ ତାପରେ ।
ତୋ ପତି ଇନ୍ଦ୍ର ଯେବେ ଆସିବ ମୋଠାକୁ
କିସ କରିପାରିବ ଏବେ ସେ ଆମ୍ଭଙ୍କୁ ।
ମୋହଠାରୁ ଏବେ ପାଇଣ ରତିସୁଖ
ଛାଡ଼ ଆଗୋ ଶଚୀ ମଦନରାଜଦୁଃଖ
ଏହା ଶୁଣିଣ ଶଚୀ ହୁଅନ୍ତେ କାତର
ପ୍ରତିଅଙ୍ଗ ନିନ୍ଦିଲା ଅଶ୍ୱତ୍ଥପତର ।
ମନେ ମନେ ବ୍ରହ୍ମାଙ୍କୁ ନମସ୍କାର କରି
ନହୁଷେ କହିଲେ ବଚନ ଧୀର କରି ।
ମରିଛନ୍ତି ଲୁଚି କି ଛନ୍ତି ପୁରନ୍ଦର
ତା ବୁଝିଲା ଉତ୍ତାରୁ ହେବି ମୁଁ ତୁମ୍ଭର ।
ତା ଶୁଣି ନହୁଷ ବୋଇଲେ ହଉ ହଉ
ତୁମ୍ଭର ସେ ଗୁରସ୍ତରଠାରୁ ଭୟ ଯାଉ ।
ନହୁଷଠାରୁ ଶଚୀ ହୋଇଣ ମେଲାଣି
ଆସିଲେ ବୃହସ୍ପତି ଘରେ ସେହିକ୍ଷଣି ।
ଗୁରୁଙ୍କ ସହ ଶୁଣି ଶଚୀଦେବୀ କଥା
ଇନ୍ଦ୍ରଙ୍କ ଲାଗି କଲେ ଦେବତାଏ ଚିନ୍ତା ।

ପରିଶେଷେ ସକଳେ ବ୍ୟାକୁଳ ମନରେ
ମିଳିଲେ ମହାଭାଗ ବିଷ୍ଣୁଙ୍କ ଆଗରେ ।
କହିଲେ ବ୍ରହ୍ମହତ୍ୟା କରି ସୁରପତି
ପଳାଇଗଲେ ଛାଡ଼ି ସ୍ୱର୍ଗପୁର ଭୂତି ।
ତୁମ୍ଭେ ତିନି ଲୋକର ହରତା କରତା
ତୁମ୍ଭଙ୍କୁ ଆଶ୍ରେ କରି ବ୍ରହ୍ମା ବେଦବେତ୍ତା ।
ସବୁପ୍ରାଣୀଙ୍କୁ ସେ କରନ୍ତି ସରଜନ
ଏଣୁଟି ତୁମ୍ଭେ ସବୁ କଥାର କାରଣ ।
ଇନ୍ଦ୍ର ଯେଉଁ ରୂପରେ ହୋଇବେ ମୁକତ
ସେରୂପେ ଆମ୍ଭ ଆଗେ କହ ଲକ୍ଷ୍ମୀକାନ୍ତ ।
ଏହା ଶୁଣି ଜଗତ-ପାବନ ମୁରାରୀ
ବୋଇଲେ ଶୁଣ ଦେବେ ମନ ଦେଇ କରି ।
ମୋତେ ଉଦ୍ଦେଶିଣ କରିଲେ ଅଶ୍ୱମେଧ
ଯିବଟି ଇନ୍ଦ୍ରଙ୍କର ଦୋଷ ବ୍ରହ୍ମବଧ ।
ପୂର୍ବପରି ପାଇ କରି ସେ ସ୍ୱର୍ଗଶିରୀ
କରିବେ ତୁମ୍ଭ ରକ୍ଷା ଧର୍ମକୁ ବିଚାରି ।
ନହୁଷ ସ୍ୱ ଇଚ୍ଛାରେ ଲୋଡ଼ିଲେଣି ନାଶ
ଏଥି ବୋଲିବାକୁ କାହାର ନାହିଁ ଦୋଷ ।
ଅଳପ କାଳ ମାତ୍ର ଥାଅ ଦୁଃଖ ସହି
ନହୁଷଙ୍କ ନାଶ ଦେଖିବ ତୋଷ ବହି ।
ବିଷ୍ଣୁଙ୍କର ମୁଖରୁ ଶୁଣି ଏ ବଚନ
ବିଷ୍ଣୁଙ୍କ ପାଦ ଦେଶେ କରିଣ ବନ୍ଦନ ।
ସବୁ ଦେବତାଏ ଆନନ୍ଦ-ରସେ ମଜ୍ଜି
ବାହାରିଲେକ ଇନ୍ଦ୍ର ଦେବତାଙ୍କୁ ଖୋଜି ।
ଇନ୍ଦ୍ର ଦେବତାଙ୍କର ଜାଣିପାରି ମନ
ଦେବଙ୍କୁ ଆସିକରି ଦେଲେ ଦରଶନ ।
ଦେବେ ବ୍ରହ୍ମହତ୍ୟା ଦୋଷଟି ଯିବାପାଇଁ
ଇନ୍ଦ୍ରଙ୍କ ଯାଗ କରାଇଲେ ତୋଷ ବହି ।
ଇନ୍ଦ୍ର ବ୍ରହ୍ମହତ୍ୟାକୁ ପାଞ୍ଚଭାଗ କଲେ
ଭାଗେକ ସ୍ତିରୀଙ୍କର ରଜରେ ରଖିଲେ ।
ଭାଗେ ନେଇ ରଖିଲେ ବୃକ୍ଷଙ୍କରଠାରେ
ଭାଗେ ନେଇ ରଖିଲେ ପତିତ ଭୂମିରେ ।
ଭାଗେ ନେଇ ରଖିଲେ ନଦୀଙ୍କର ଫେନେ
ଭାଗେ ନେଇ ରଖିଲେ କନ୍ଦର ଗହନେ ।
ଏରୂପେ କରି ସାରି ସୁରଙ୍କ ଈଶ୍ୱର
ବାହରିଲେ ଦେବଙ୍କୁ ଘେନି ସ୍ୱର୍ଗପୁର ।

ନହୁଷ ନରପତି ତେଜକୁ ନିରେଖି
ପଳାଇଲେ ଇନ୍ଦ୍ର ହୋଇଣ ଅତି ଦୁଃଖୀ ।
ଇନ୍ଦ୍ରଙ୍କ ପଳାଇବା ଦେଖି କରି ଶଚୀ
କାନ୍ଦିଲେ ନୟନୁଁ ଲୋତକଧାରା ମୁଞ୍ଚି ।
ବୋଇଲେ ଆହା ପ୍ରାଣନାଥ ସୁରନାଥ
ହୋଇଥିଲ ଗଲ ତ ହୋଇଣ ଅନାଥ ।
ଛାଡି କରି ମୁହିଁ ଏବେ ତୁମ୍ଭର ସାଥ
ଜୀଇଁଛି ଯାହା ମୋର ଜୀବନଟି ବ୍ୟର୍ଥ ।
ତୁମ୍ଭ ସେବା ସିନା ମୋହର ପୁରୁଷାର୍ଥ
ଏବେ ଏହା ନ କଲା ମୋର ଦୁଇ ହାତ ।
କେତେ କାଳ ବସି ବିଚାରି ଘରିମାଥ
ଲେଖିଥିଲା ମୋର କର୍ମରେ ଦୁଃଖପଥ ।
ଦେଖି ମୋର ନୟନ ଯୁଗଳରେ ପାଥ
କିପାଁ ପୁଛୁ ନାହିଁ ବଢାଇ ଦେଇ ହାତ ।
ମୁହିଁ ତ ତୁମ୍ଭଠାରେ ହୋଇ କାହିଁ ଦୋଷୀ
ମୋହଠାରେ କିପାଁଇ ହୁଅ ଏଡ଼େ ରୋଷି ।
କୃପାକଟାକ୍ଷରେ ଥରେକ ମୋତେ ହସି
ଚାହିଁ ଦେଇ ଦିଅ କି ନା ମୋ ମନ ତୋଷି ।
ସବୁବେଳରେ ହୋଇ ମୋ ନୟନବାସୀ
କଥା କହୁନାହିଁ କାହିଁକି ପାଶେ ବସି ।
ତୁମ୍ଭ ଅଙ୍ଗ ସଙ୍ଗରେ ହୋଇ ମୁଁ ଲାଳସୀ
ସାରୁଅଛି ଦେଖ ଦୁଃଖରେ ଦିନ ନିଶି ।
ଏରୂପେ ଅନେକ ପ୍ରକାରେ ଶଚୀବାଳା
କାନ୍ଦି ହୃଦେ ଲୋତକଧାରା କଲେ ମାଳା ।
ବୋଇଲେ ଦାନବ୍ରତ ତପ ମୋର ଭେଳା
ହୋଇ ପାରି କରିବ ଏ ଦୁଃଖ ଜଳଜାଳା ।
ଆଗୋ କାଳରାତ୍ରି ତୁମ୍ଭଙ୍କୁ ନମସ୍କାର ।
କରୁଛି ମୋତେ ଦିଅ ମୋହର ଯେ ବର ।
ଡାକିଲେ ପୁଣି ସତୀତ୍ୱରେ ନିଷ୍ଠା ରଖି
ସନ୍ଦେହ ନିର୍ଣ୍ଣୟିକା ଦଇବବାଣୀକି ।
ସେକ୍ଷଣି ଉପଶ୍ରୁତି ଧରିଣ ମୁରତି
ପାଇଗଲେ ଆସି ଶଚୀଦେବୀଙ୍କ କତି ।
ଶଚୀ ଉପଶ୍ରୁତିକି ଦେଖି ପଚାରିଲେ
କିଏ ସେ ତୁମ୍ଭେ କାହୁଁ ଆସିବା ହୋଇଲେ ।
ସେ ଦେବୀ ବୋଇଲେ ମୋ ନାମ ଉପଶ୍ରୁତି
ତୋ ସତ୍ୟ ପ୍ରଭାବେ ହେଲା ମୋ ଉପସ୍ଥିତି ।

ଆସ ଏବେ ମୋ ସଙ୍ଗେ ଇନ୍ଦ୍ର ଦେଖାଇବି
ତୁମ୍ଭର ମନୋରଥ ପୂର୍ଣ୍ଣ କରାଇବି ।
ଏହା ଶୁଣିଣ ଦେବ ସ୍ତିରୀକୁଳଈଶ
ଉପଶ୍ରୁତି ସଙ୍ଗତେ ଗଲେ ବହି ତୋଷ ।
ଉପଶ୍ରୁତି ଶଚୀଙ୍କି ସଙ୍ଗତେ ଘେନିଲେ
ଆଗ ଦେବ ଅରଣ୍ୟଯାକକୁ ଲଘିଲେ ।
ପଛେ ନାନାଜାତି ପର୍ବତ ଅତିକ୍ରମି
ହେଲେ ସେ ଶଚୀ ଘେନି ହିମାଳୟଗାମୀ ।
ହିମାଳୟଙ୍କର ଉତ୍ତର ପଟ ବଟେ
ମିଳିଲେ ସେ ଲବଣ ସମୁଦ୍ରର ତଟେ ।
ସେ ସମୁଦ୍ର ମଧ୍ୟରେ ଥିଲା ଦ୍ୱୀପଟାଏ
ତହିଁକି ବୋଲି ଗଲେ ସେ ଦୁହେଁ ଏକାଏ ।
ସେ ଦ୍ୱୀପର ମଧ୍ୟେ ଯୋଜନ ଶତେ ଦୀର୍ଘ
ପ୍ରତିରେ ସର ଅଛି ବହି ପଦ୍ମ ସଘ ।
ସେ ସର ପଦ୍ମଯାକ ପାଞ୍ଚବର୍ଣ୍ଣ ହୋଇ
ଦେଉଛନ୍ତି ଭୃଙ୍ଗଙ୍କ ମନକୁ ଲୋଭାଇ ।
ସେ ପଦ୍ମରୁ ପଦ୍ମ ଗୋଟିକ ମୃଣାଳରେ
ପଶିଲେ ଶଚୀ ଉପଶ୍ରୁତିଙ୍କ ତୁଲରେ ।
ସେ ମୃଣାଳରନ୍ଧ୍ରରେ ବସିଛନ୍ତି ଇନ୍ଦ୍ର
ଦେଖିଣ ଶଚୀ ଦେବୀ ହୋଇଲେ ଆନନ୍ଦ ।
ବୋଇଲେ ଆହେ ପ୍ରାଣନାଥ ମୋତେ ଛାଡି
କାହିଁକି ଏଥି ଅଛ ଏତେ ଦୁଃଖେ ପଡ଼ି ।
ଇନ୍ଦ୍ର ବୋଇଲେ ଆହେ ଶଚୀ ମୋରଠାକୁ
ଆସିଲ କି କାର୍ଯ୍ୟକୁ କହ ତ ଆମ୍ଭଙ୍କୁ ।
ଶଚୀ ବୋଇଲେ ମୁଁ ନହୁଷ ଘେନି ଭୀତି
ପାଇ ତୁମ୍ଭଠାକୁ ଆସିଛି ସୁରପତି ।
ତିନିଲୋକରେ ଇନ୍ଦ୍ର ହୋଇ ସେ ନହୁଷ
ଏବେ ମୋ ରତିଭୋଗ କରିଛି ମାନସ ।
ଯେବେଟି ମତେ ତୁମ୍ଭେ ନ କରିବ ରକ୍ଷା
ତେବେ ଯିବ ଭାଜି ମୋ ପତିବ୍ରତା କକ୍ଷା ।
ନହୁଷକୁ ବଜ୍ରରେ କରିଣ ସଂହାର
ମୋ ତୁଳେ ବସି ସୁଖେ ସ୍ୱର୍ଗରେ ବିହର ।
ଏହାଶୁଣି ଇନ୍ଦ୍ର ବୋଇଲେ ଆହେ ଶଚୀ
ତୁମ୍ଭଙ୍କୁ ତା କଥା ଗୋଚର ନାହିଁ କିଛି ।
ଏଣୁ କରି ଏରୂପେ କହୁଛ ବଚନ
ଏବେ ମୁଁ କହିବି ଯା ଶୁଣ ଦେଇ ମନ ।

ଋଷିଙ୍କ ବଳରେ ନହୁଷ ବଳିଆର
ହୋଇଛି ମୋ ହାତେ ସେ ନୋହିବ ସଂହାର
ତହିଁକି ଯାହା ଏବେ କହିବି ଉପାୟ
ତାହା ତୁମ୍ଭେ କଲେ ମୁଁ ହୋଇବି ବିଜୟ ।
ତୁମ୍ଭେ ଯେ ତାହାଠାକୁ ଏକାନ୍ତରେ ଯାଇ
ଦେଖା ଦେଇ ଦେବ ତା ମନକୁ ଭୁଲାଇ ।
ସେ ଯେତେବେଳେ ହେବ ଆସକତ ମନ
ତେତେବେଳେ ତାକୁ କହିବି ଏ ବଚନ ।
ଋଷିଏ ତୁମ୍ଭ ଯାନ ବହିବେ ଯେ କାଳେ
ସେହି କାଳେ ଯାଇ ବସିବି ତୁମ୍ଭ କୋଳେ ।
ସେପାପୀ ତ ପାପବୁଦ୍ଧିରେ ପଡ଼ିଅଛି
ଜାଣୁଛିଏ ଏ ପାପ କରିବ ଧର୍ମ ମୂର୍ଛି ।
ଏରୂପେ ଦେବରାଜଠାରୁ ଶିକ୍ଷା ପାଇ
ସନମତ କରିଣ ଶଚୀ ଚନ୍ଦ୍ର ମୁହିଁ ।
ସେହିକ୍ଷଣି ସ୍ୱର୍ଗପୁରକୁ ସେ ଆସିଲେ
ବେଶ ହୋଇ ନହୁଷଠାକୁ ବାହାରିଲେ ।
ନହୁଷ ଦେଖିକରି ଶଚୀଙ୍କ ବଦନ
ହସିକରି କହିଲେ ତାଙ୍କୁ ଏ ବଚନ ।
ପୂର୍ବରୁ ତ ତୁମ୍ଭଙ୍କୁ ଭଜିଅଛି ମୁହିଁ
ତା ଜାଣି ମତେ ଭଜି ଆସିଲୁ କି ତୁହି
ତୋ ବଚନୁ ବାହାର ହୋଇବି ମୁଁ ନାହିଁ
ବୋଲୁଥିବୁ ଯାହା ଗୋ କରୁଥିବି ସହି ।
ବସନା ପାନ ଭାଙ୍ଗି ଦେଇ ତୋ ସେବାରେ
ଥିବି ଆରେ ବନ୍ଧୁ ମୁଁ ରଜନୀ ଦିବାରେ ।
ତୋ ଗରୁ ଚିକୁର ଫୁଲରେ ବେଶ କରି
ଦରପଣ ଦେଖାଉଥିବି ଆଗେ ଧରି ।
ତୋ ଅଙ୍ଗରେ ଚନ୍ଦନ କରିଣ ଲେପନ
କରାଇବି କରି ବେନିକି ମୋର ଧନ୍ୟ ।
ତୋ ଅଧର ବନ୍ଧୁକ ମଧୁକୁ ମୁଁ ପିଇ
ଅମୃତକୁ ସଖି ଗୋ ମୁଁ ଛୁଇଁବି ନାହିଁ ।
ତୋ ଇନ୍ଦୁ ଖଣ୍ଡଗଣ୍ଡେ ଚୁମ୍ବନ ମୁଁ ମଣ୍ଡି
ଦେବି କାମଗୁଣର ଟଙ୍କାରକୁ ଖଣ୍ଡି ।
ତୋ ବାହୁ-ଚମ୍ପାମାଳୀ ମୋ ଗଳାରେ ମାଳା
ହୋଇଥିବ ଅବିଚ୍ଛିନ୍ନରେ ନବବାଳା ।
ତୋର ଜାନୁଭେଳା ଦୁହିଁଙ୍କି ପାଇ କରି
ତରିବି ମଦନ ରାଜନ ସିନ୍ଧୁ ବାରି ।

ଆଉ ତୁ ମୋଠାରେ ନ କର ବନ୍ଧୁ ହେଳା
ଖେଳାଇ ମୋ ଉପରେ ପକା ବେନି ଡୋଳା
ମୁହିଁତ ଜାଣିବାରେ ହୋଇ ନାହିଁ ଦୋଷୀ
ମୋତେ କିମ୍ପା ଚାହୁଁ ନାହୁଁ ତୁ ବାରେ ହସି
ଶଚୀ ବୋଇଲେ ଆହ କାଳ ପରାପତି
ହେଲାଣି ହୋଇବାକୁ ତୁମ୍ଭେ ମୋର ପତି ।
ମୋର ମନରେ ଯାହା ଅଛି ତାହା ଏବେ
କରି ମୋତେ କୋଳରେ ଧରି ବସ ଭାବେ ।
ମୋ ପତି ଇନ୍ଦ୍ର ହାତୀ ଘୋଡା ରଥ ଚଢି
ଦେଖାଉଥାନ୍ତି ମୋ ପାଶକୁ ଆସି ପୌଢି ।
ତୁମ୍ଭେ ଏବେଟି ଯେଉଁ ବାହନ କରିବ
ବ୍ରହ୍ମା ବିଷ୍ଣୁ ରୁଦ୍ରଙ୍କର ସେହୁ ନୋହିବ ।
ନହୁଷ ତା ଶୁଣି ବୋଇଲେ କି ବାହନ
କରିବି ତା ମୋତେ କହ ହେ ପ୍ରାଣଧନ ।
ଶଚୀ ବୋଇଲେ ଆହେ ଯାନୁଟିକେ ବସି
ମୋଠାକୁ ଆସିବ ତା ବାହିଥିବେ ଋଷି ।
ତେବେ ତୁମ୍ଭ ସଙ୍ଗେ ସୁରତି ରଥେ ରସି
ଯେ ଅଛି କାମଦୁଃଖ ତା ଦେବି ବିନାଶି ।
ଏହା ଶୁଣି ନହୁଷ ମହାସୁଖ ପାଇ
ବୋଇଲେ ଏ ବାହନ କରିବି ତ ମୁହିଁ ।
ମୋ ବିନା ମୁନିଙ୍କି ସ୍ୱର୍ଗରେ ଦେବଗଣ
ବୁହାଇ ନ ପାରନ୍ତି କଦାଚିତେ ଯାନ ।
ମୁଁ ଯେତେବେଳେ କ୍ରୋଧ ହୁଅଇ ଗୋ ସଖି
ପଳାନ୍ତି ଦେବ ଯକ୍ଷ ରକ୍ଷ ମୋତେ ଦେଖି ।
ଯାହାକୁ ମୁହିଁ ଥରେ ଅନାୟାସେ ଚାହେଁ
ତାକୁ ଛାଡି ତା ତେଜ ମୋର ଦେହେ ରହେ
ଦେଖି ଏହିକ୍ଷଣି ଋଷିଏ ହୋଇ ଗୋଟି
ବହି ଘେନିଯିବେ ତୋ ପାଶେ ମୋ ଯାନୁଟି ।
ଏହା କହି ନହୁଷ ଋଷିଙ୍କି ଡକାଇଲେ
ମୋ ଯାନ ଆଜ ତୁମ୍ଭେ ବୋହିବ ବୋଇଲେ
ଋଷିମାନେ ଏହା ଶୁଣିଣ ମଥା ପୋତି
ଭାବିଲେ ବାଇ ହେଲା ଆମ୍ଭର ନୃପତି ।
ନ କଲେ ଏହିକ୍ଷଣି ମରାଇଣ ମାଡ଼
ଭାଙ୍ଗି ପକାଇବ ପିଠିର ମେରୁହାଡ଼ ।
ଏ ନର ରେଡ଼ିପୋକୁ କରି ଆମ୍ଭେ ପୂଜା
କଲାଇଁ ତ ସ୍ୱର୍ଗ ପୁରରେ ଆଣି ରାଜା ।

ଏ କଥା ଜାଣି ବିହି ପୂର୍ବରୁ କପାଳେ
ଲେଖିଥିଲା ଯାହା ଫଳିଲା ଏତେକାଳେ ।
ଆହେ ଯୁଧିଷ୍ଠିର ଏରୂପେ ଋଷିକୁଳ
ହୋଇ କରି ହୃଦୟ ଭିତରେ ଆକୁଳ ।
ବୋଇଲେ ଯେବେ ଯାନ ବୁହାଇବ ତୁମ୍ଭେ
ନାହିଁ କରି ତାହା ପାରିବୁଁ କି ହେ ଆମ୍ଭେ ।
ନହୁଷ ବୋଇଲେ ହେ ନ ଭାଳ ମନରେ
ମର୍ଯ୍ୟାଦା ଅମର୍ଯ୍ୟାଦା ସବୁ କରିପାରେ ।
ମୋ ଯାନ ବହି ଆଜି କଲେ ମୋତେ ପ୍ରିୟ
କାଲି ତୁମ୍ଭ ପାଦ ବହିବ ମୋ ହୃଦୟ ।
ନହୁଷଠାରୁ ଯେ ହୋଇଣ ମେଲାଣି
କହିଲେ ବୃହସ୍ପତିଙ୍କ ଆଗେ ଇନ୍ଦ୍ରାଣୀ ।
ନହୁଷଙ୍କଠାରେ କରିବା ସମୟ
ଶେଷ ତ ହୋଇଲାଣି ଖୋଜାଅ ମୋ ପ୍ରିୟ ।
ବୃହସ୍ପତି ବୋଇଲେ ନ ପାଅ ଶଚୀ ତ୍ରାସ
ହୋଇଲାଣି ନିକଟ ନହୁଷଙ୍କ ନାଶ ।
ଋଷିମାନେ ନହୁଷ ଯାନ ଯେତେବେଳେ
ବହିବେ ତେତେବେଳେ ପଡ଼ିବ ସେ ତଳେ ।
ନହୁଷ ମରିବାକୁ ଯାଗ ମୁଁ କରୁଛି
ଏ କଥା ହେଲା ବୋଲି ଜାଣ କାମଲାକ୍ଷୀ ।
ଏହା କହି ଖଇର କାଠେ ଅଗ୍ନି ଜାଳି
ଶ୍ରୁବେ ଭରି ଘିଅ ଏଢ଼ିଲେ ମନ୍ତ୍ର ଭାଳି ।
ଜୀବଙ୍କ ମନ୍ତ୍ରବଳେ ଅଗିନିଦେବତା
ଦେଖାଦେଲେ ହୋଇଣ ସାକ୍ଷାତ ବନିତା ।
ସେକ୍ଷଣି ସେହି ଅଗ୍ନି ଅନ୍ତର୍ଦ୍ଧାନ ହୋଇ
ଖୋଜିଲେ ତିନିଲୋକ ଯାକ ଶଚୀ ସାଇଁ ।
ନ ଦେଖି କାହିଁ ଇନ୍ଦ୍ର ଦେବତାଙ୍କ ରୂପ
କହିଲେ ଯେ ବୃହସ୍ପତିଙ୍କି ବହି ତାପ ।
ଜଳକୁ ଛାଡି ତିନିଲୋକରେ ଖୋଜିଲି
ଇନ୍ଦ୍ରଙ୍କର ବର୍ଣ୍ଣ କି ଚିହ୍ନ ନ ଜାଣିଲି ।
ତୁମ୍ଭଙ୍କୁ ତ ଗୋଚର ହୋଇଅଛି ଜଳ
କ୍ଷଣକେ ନାଶ କରିପାରେ ମୋର ବଳ ।
ଜଳରୁ ତ ମୁହିଁ ହୋଇଅଛଇଁ ଜାତ
ଏଣୁ ଜଳ କରି ପାରଇ ମୋତେ ହତ ।
ବୃହସ୍ପତି ଅଗ୍ନିଙ୍କ ମୁଖୁଁ ଏହା ଶୁଣି
ବିନୟରେ ସ୍ତୁତି କରିଲେ ତାଙ୍କୁ ପୁଣି ।

ତୁମ୍ଭେ ତ ସବୁ ପ୍ରାଣୀମାନଙ୍କର ମୁଖ
ତୁମ୍ଭ ଘେନି ଦେବେ ପାଆନ୍ତି ଭାଗ ସୁଖ।
ସବୁ ପ୍ରାଣୀଙ୍କର ହୃଦରେ ଅଛ ରହି
ଭଲ ମନ୍ଦ କଥାଟି ବୁଝିବାର ପାଇଁ।
ସ୍ମାର୍ତ୍ତାଗ୍ନି ରୂପେ ତୁମ୍ଭେ ବୋଲାଉଛ ଏକ
ସନମତ ହୋଇଛି ଏସବୁ ଋଷିଙ୍କ ।
ଗାର୍ହପତ୍ୟ ଆହବନୀୟ ଦାକ୍ଷିଣ୍ୟାଗ୍ନି
ସକାଶୁଁ ତୁମ୍ଭଙ୍କୁ ବୋଲନ୍ତି ଘୃତପାଗ୍ନି।
ତୁମ୍ଭେ ଯେବେ ଛାଡ଼ି ଦେବ ଏହି ଜଗତ
କ୍ଷଣକରେ ହୋଇଯିବ ସେ ଅସ୍ତବ୍ୟସ୍ତ ।
ଭାରିଯାକୁ ଘେନିଣ ଦ୍ୱିଜେ ତୁମ୍ଭ ପାଦେ
ବେଦ ନିତି ପଢ଼ି ନମନ୍ତି ସେ ବିପଦେ ।
ହବ୍ୟ ତୁମ୍ଭେ ହବ୍ୟ ବହିବା ଲୋକ ତୁମ୍ଭେ
ତୁମ୍ଭଙ୍କୁ ସ୍ତୁତି କରି ପାରିବୁଁ କି ଆମ୍ଭେ ।
ତିନିଲୋକଯାକଙ୍କୁ ସରଜନା କରି
କାଳରେ ପୁଣି ତୁମ୍ଭେ ଦିଅ ଗ୍ରାସ କରି ।
ତୁମ୍ଭଠାରୁ ମେଘ ଯେ ହୋଇ କରି ଜାତ
ବିଜୁଳି ଜ୍ୟୋତିରେ ସେ ହୁଅନ୍ତି ସହିତ ।
ଜଳକୁ ତ ତୁମ୍ଭେ ଶୁଖାଇ ଦେଇପାର
କହ ତ କିପାଇଁ ଜଳକୁ ଏଡ଼େ ଡର
ଯେତେବେଳେ ତୁମ୍ଭେ ପଶିବ ଜଳେ ଯାଇଁ
ମନ୍ତ୍ରବଳେ ତୁମ୍ଭଙ୍କୁ ବଢ଼ାଇବି ମୁହିଁ।
ଅଗ୍ନି ବୋଇଲେ ଆହେ ଯେବେ ବୃହସ୍ପତି
ବୋଲଛ ତେବେ ଆଣି ହେବି ଶଚୀପତି ।
ଏହା କହି ଅଗ୍ନି ଇନ୍ଦ୍ରଙ୍କ ଥିବା ସରେ
ପଶିଲେ ଯାଇଁ କରି ଅତ୍ୟନ୍ତ ତୋଷରେ।
ପଦ୍ମ ମୃଣାଳରେ ଇନ୍ଦ୍ର ଯେ ଥିଲେ ରହି
ଦେଖି ନୟନରେ ସେ ସ୍ୱାହାଦେବୀସାଇଁ ।
ବୃହସ୍ପତି ଆଗରେ କହିଲେ ତା ଆସି
ବୃହସ୍ପତି ସେକ୍ଷଣି ଦେବେ ସଙ୍ଗେ ଧରି
ଗଲେ ଯହିଁ ଥିଲେ ସେ ନମୁଚି ବଇରୀ ।
ଇନ୍ଦ୍ରଙ୍କର ପୂର୍ବ କରମ ଗୁଣି ମନେ
ସ୍ତୁତି ଆରମ୍ଭିଲେ ଯେ ତାହାଙ୍କୁ ବଚନେ ।
ଶମ୍ବର ବଳ ଜୟ ନମୁଚିର ପ୍ରାଣ
ନେଇଅଛ ତୁମ୍ଭେ କିଞ୍ଚିତେ କରି ରଣ ।
କାହିଁକି ନହୁଷର ନାଶକୁ ନ ପାଞ୍ଚି
ରହିଛି ପଦ୍ମନାଳ ମଧ୍ୟେ ହୋଇ ଲୋଚି।
ଏବେ ସ୍ୱରୂପକୁ ବଢ଼ାଇ ଆମ୍ଭ ଆଗେ
ଛିଡ଼ା ହୁଅ ହେ ଦେବରାଜ ଆସି ବେଗେ।
ଋଷିଙ୍କର ତୁଲରେ ଏକାଦଶ ରୁଦ୍ର
ଦେଖ ଆସିଛନ୍ତି ବିଚାରି ତୁମ୍ଭ ଭଦ୍ର।
ସବୁ ପ୍ରାଣୀମାନଙ୍କେ ଅଟ ତୁମ୍ଭେ ବର
ତୁମ୍ଭ ପାଳନାରେ ରହିଛି ଏ ସଂସାର।
ଏବେ ସବୁ ଦେବତାମାନଙ୍କ ପାଳନା
ଆସି ସ୍ୱର୍ଗେ ବସି କର ହେ ମହାମନା।
ଏରୂପେ ଯହୁଁ ସ୍ତୁତି କଲେ ବୃହସ୍ପତି
କହିଲେ ଇନ୍ଦ୍ରଦେବ ଫୁଲାଇଣ ଛାତି ।
ଇନ୍ଦ୍ର ବୋଇଲେ ତ୍ରିଶିରା ବୃତ୍ରାସୁର
ଏ ଦୁହିଁଙ୍କି ମୁହିଁତ କଲିନି ସଂହାର।
କାହିଁ ପାଇଁ ଗୁରୁ ଆସିଛ ମୋହଠାକୁ
ଦେବଙ୍କୁ ଘେନି ସଙ୍ଗେ କହ ତା ଆମ୍ଭଙ୍କୁ।
ବୃହସ୍ପତି ବୋଇଲେ ନହୁଷ ତୁମ୍ଭ ପଦ
ପାଇକରି ରଚିଲେ ଆମ୍ଭର ବିପଦ ।
ଇନ୍ଦ୍ର ବୋଇଲେ ହେ ନହୁଷ କେଉଁ ତପ
କରି ଇନ୍ଦ୍ର ହେଲେ ସ୍ୱର୍ଗରେ ଛାଡ଼ି ତାପ।
ଏହା ତୁମ୍ଭଠାରୁ ଶୁଣିଲେ ଭଲକରି
ଯେ ଉଚିତ ହେବ ତା କହିବା ବିଚାରି ।
ବୃହସ୍ପତି ବୋଇଲେ ସ୍ୱର୍ଗପୁର ଛାଡ଼ି
ତୁମ୍ଭେ ଆସିକରି ରହିଲ ଜଳେ ବୁଡ଼ି
ନହୁଷଙ୍କୁ ଦେବଋଷିଏ ଦେଇ ତେଜ
ବସାଇଲେ ତୁମ୍ଭ ଆସନେ କରି ରାଜ ।
ନହୁଷ ଯାହାକୁଟି ଦିଅଇ ଅନାଇ
ତା ତେଜ ତା ଦେହେ ସେକ୍ଷଣି ରହେ ଯାଇଁ
ଏବେ ସେ ପାପୀ ପାପବୁଦ୍ଧି ଆଚରିଛି
ମୋହର ଯାନ ବହ ଋଷିଙ୍କି ବୋଲୁଛି ।
ଏତେବେଳେ ପ୍ରଭୁ ତ ହୋଇଛି ଆମ୍ଭର
କେବଳ ସୁମରୁଛୁଁ କର୍ମ ଯେ ଯାହାର ।
ଏକାଳେ ଯମ ଅଗ୍ନି କୁବେର ବରୁଣ
ସୋମ ସେହିଠାକୁ କରିଲେ ଆଗମନ ।
ବୋଇଲେ ହେ ଇନ୍ଦ୍ର ଦେଖିଲୁଁ ଯା ତୁମ୍ଭଙ୍କୁ
ଯା ହେଉଛି ତୋଷ ନ ଆସେ କହିବାକୁ ।

ଇନ୍ଦ୍ର ବୋଇଲେ ହେ ନହୁଷ ଥିବାଠାରେ
କହ କିମ୍ବା ଏ ସ୍ନେହ ହୋଇଲା ଆମ୍ଭରେ ।
ଦେବେ ବୋଇଲେ ନହୁଷ ମୁଖ ଋହିଁ
ତେ ଦେହରେ ରଖି ନ ପାରିଲୁଁ କେହି ।
ତୁମ୍ଭେ ଯେବେ ତାହାଙ୍କୁ କରିବ ସଂହାର
ତେବେଟି ଜାଣ ସୁଖ ହୋଇବ ଆମ୍ଭର ।
ଇନ୍ଦ୍ର ବୋଇଲେ ଆହେ ଦେବେ ଯାଅ ସୁଖେ
ଜାଣ ନାଶ ଗଲା ନହୁଷ ଆମ୍ଭ ଦୁଃଖେ ।
ଅଗ୍ନି ବୋଇଲେ ଆହେ ଇନ୍ଦ୍ର ମହାଭାଗ
ତୁମ୍ଭ ସାହା ହେବି ଦେବ କି ଯାଗ ଭାଗ ।
ଇନ୍ଦ୍ର ବୋଇଲେ ଆହେ ମୋ ଭାଗକୁ ବାଣ୍ଟି
ମୋ ସାହା ହେଲେ ଅଗ୍ନି ନିଷ୍ଟେ ଖାଇବଟି ।
ଏହା କହି ଅଗ୍ନିଙ୍କି ସେ ପାକଶାସନ
ଦେବଙ୍କୁ ଦେଲେ ଯେଝା ଅଧିକାର ମାନ ।
ଏ ଅନ୍ତରେ ଇନ୍ଦ୍ର ବୋଇଲେ ଦେବତାଙ୍କୁ
କହ କେଉଁରୂପେ ମାରିବା ନହୁଷଙ୍କୁ ।
ସେହିକାଳେ ସେଠାରେ ଅଗସ୍ତି ମହର୍ଷି
ଦେବତାଙ୍କ ଦୃଶ୍ୟରେ ଦୃଶ୍ୟ ହେଲେ ଆସି ।
ଅଗସ୍ତିଙ୍କି ଦେଖିଣ ଦେବେ ହୋଇ ତୋଷ
ବୋଇଲେ ଆହେ ମହାଋଷି ବସ ବସ ।
ଅଗସ୍ତି ଆଗ ଇନ୍ଦ୍ରେ ଅରଚନା କଲେ
ପଛେ ଯାଇଁ ଦେବଙ୍କ ପାଖରେ ବସିଲେ ।
ବୋଇଲେ ଶୁଣ ଆହେ ଇନ୍ଦ୍ର ମହାଭାଗ
ଆମ୍ଭମାନଙ୍କର ତ ପ୍ରକାଶିଲା ଭାଗ୍ୟ ।
ତ୍ରିଶିରା ବୃତ୍ରାସୁର ଜୀବନକୁ ହରି
ଏବେ ଯା ବସିଛ ଦେବଙ୍କୁ ସଙ୍ଗେ ଧରି ।
ଏହାଦେଖି କରିଣ ଆରମ୍ଭ ମାନସ
ହେଉଅଛିଟି ପୁରନ୍ଦର ବଡ ତୋଷ ।
ତୁମ୍ଭେ ତ ଲୁଚିଥିଲ ସୂକ୍ଷ୍ମରୂପ ଧରି
ଏବେ ଯେ ଦିଶିଲ ନେତ୍ରକୁ ଗିରି ପରି ।
ଏଥୁଁ ଆଉ ଆମ୍ଭମାନଙ୍କ ପୁରୁଷାର୍ଥ
ଅଛି ବୋଲି ବୋଇଲେ କଥା ହେବ ବ୍ୟର୍ଥ
ପୁଣି ତୁମ୍ଭର ଶତ୍ରୁ ନହୁଷ ନୃପତି
ଇନ୍ଦ୍ରତ ହୋଇଥିଲେ ପାଇଲେ ବିପତ୍ତି ।
ଏହି ମଧ୍ୟ ତୁମ୍ଭ ଭାଗ୍ୟକୁ ଅନୁରୂପ
ଏକାବେଳକରେ ହେଲା ହେ ଇନ୍ଦ୍ର ନୃପ ।

ଇନ୍ଦ୍ର ବୋଇଲେ ଆହ ଯେତେବେଳୁଁ ତୁମ୍ଭେ
ଦେଖାଦେଲ ସମସ୍ତ ପାଇଲୁନି ଆମ୍ଭେ ।
କିରୂପେ ନହୁଷ ସ୍ୱର୍ଗ ପୁରୁଁ ଭ୍ରଷ୍ଟ
ହୋଇ ମର୍ତ୍ତ୍ୟପୁରେ ପଡ଼ିଲା ପାଇ କଷ୍ଟ ।
ଏହା ମୋର ଆଗରେ କହ ଋଷିଗଣ
ହୋଇବ ମୋ ମାନସ ଅତ୍ୟନ୍ତ ପ୍ରସନ୍ନ ।
ଅଗସ୍ତି ବୋଇଲେ ହେ ଶୁଣ ଶଚୀପତି
ଯେରୂପରେ ନହୁଷ ପାଇଲେ ବିପତ୍ତି ।
ନହୁଷ ତ ହୋଇଲେ ଅତି ପାପକର୍ମା
ବୁହାଇଲେ ଯାନ ଡକାଇ ବେଦବର୍ମା ।
ସେହୁ ତ ହୋଇଥିଲେ ସ୍ୱର୍ଗପୁରେ ସାଇଁ
ଏଣୁ ଋଷିମାନେ ଯେ ଗଲେ ଯାନ ବହି ।
ସେ ସକାଶୁ ଋଷିଙ୍କ ଜାତ ହେଲା ଶ୍ରମ
ତେବେହେଲେ ବହିଲେ ସୁମରି ସେ କର୍ମ ।
ପୁଣି ନହୁଷର ବଦନକୁ ଅନାଇଁ ।
ପଋରିଲେଟି କଥା ଭାଙ୍ଗିକି ରଖାଇ ।
ବ୍ରହ୍ମା ଗାଇ ପ୍ରୋକ୍ଷଣ ପାଇଁ ଯେଉଁ ମନ୍ତ୍ର
କରିଛନ୍ତି ମାନ କି ନ ମାନ କହ ସତ ।
ନହୁଷ ବୋଇଲେ ମୁଁ ସେ ମନ୍ତ୍ର ଛାରକୁ ।
କଦାଚିତରେ ନ ଆଣଇଁ ନଜରକୁ ।
ଋଷିମାନେ ବୋଇଲେ ଛାଡ଼ ଧର୍ମ କଥା ।
ଜାଣୁଛୁଁ ତୁମ୍ଭେ ଏକା ଅଧରମପୋଥା ।
ମୁଁ ତ ତା ବସିବାର ଯାନ ଥିଲି ବହି
ତା ଶୁଣି ମୋ ମୁଣ୍ଡେ ମାଇଲା ଗୋଡ଼ ନେଇ ।
ମୋ ମୁଣ୍ଡରେ ଗୋଡ ବାଜିବାକ୍ଷଣି ତାର
ତେଜ ଶିରୀ ଦୁହେଁଟି ହୋଇଗଲେ ଦୂର ।
ଯେ ରୂପରେ ପାଦରେ ହତ ହେଲେ ନାଗ
ଦେହକୁ ମୋଟ କରେ ହୃଦେ ଧରି ରାଗ ।
ସେରୂପେ ସେକାଳେ ହୋଇ ମୁଁ ସରୁସାଇଁ
କହିଲି ନହୁଷର ମୁଖକୁ ଅନାଇଁ ।
ବେଦଶାସ୍ତ୍ର ପାଠ ଯେ ମନ୍ତ୍ର କରି ଲୋପ
ହୋଇଲୁ ଅବିଚ୍ଛିନ୍ନେ କାମରେ ଲୋଲୁପ ।
ପୁଣି ଋଷିମାନଙ୍କୁ ଯାନ ବୁହାଇଲୁ
ଧର୍ମ ଅଧରମ କଥାକୁ ନ ଜାଣିଲୁଁ ।
ପଋରିଲେ ପାଠକୁ ରାଗ କରି ବଡ଼
କଲୁ ମୋହର ମୁଣ୍ଡେ ତୁ ଗୋଇଠାମାଡ ।

ଏହି ସକାଶରୁଟି କ୍ଷୀଣପୁଣ୍ୟ ହୋଇ
ମହୀରେ ପଡ଼ ଅଜଗର ରୂପ ବହି ।
ସହସ୍ର ଦଶବରଷରେ ମୁକ୍ତ ହେବୁ
ମର୍ତ୍ତ୍ୟ ଛାଡ଼ି ସ୍ୱର୍ଗରେ ଆସିଣ ରହିବୁ ।
ଏହା ମୁହିଁ ବୋଲିବାକ୍ଷଣି ପୁରନ୍ଦର
ନହୁଷ ଧରି ଅଜଗରର ଶରୀର ।
ଉପରକୁ ତାର ଲାଙ୍ଗୁଡ଼ ଟେକି ଦେଇ
ପଡ଼ିଲା ଆକାଶରୁ ମହୀତଳେ ଯାଇ ।
ଏବେ ହୋଇଣ ଆମ୍ଭମାନଙ୍କର ଈଶ
ସ୍ୱର୍ଗପୁରରେ ଇନ୍ଦ୍ର ଯାଇ ସୁଖେ ବସ ।
ଅଗସ୍ତିଙ୍କ କହିବା କଥା ଶେଷ ଜାଣି
ଆସିଲେ ପିତୃ ପକ୍ଷ ରକ୍ଷ ଆଦି ଶ୍ରେଣୀ ।
ଇନ୍ଦ୍ରଙ୍କର ଦେଖିଣ ଉଦୟ ସମୟ
ସମସ୍ତେ ଆନନ୍ଦରେ ଫୁଲାଇ ହୃଦୟ ।
ବୋଇଲେ ଆହେ ଶଚୀଦେବୀ ପ୍ରାଣନାହା
ପଡିଲାନି ତଳରେ ନହୁଷ ଦୋରେହା ।
ଇନ୍ଦ୍ର ତାହା ଶୁଣି ବସିଲେ ତତପରେ
ଶ୍ୱେତବର୍ଣ୍ଣ ଐରାବତର ଉପରେ ।
ଦେବ ଅପସରା ଗନ୍ଧର୍ବ ଘେନି ତୁଲେ
ପୁରନ୍ଦର ସ୍ୱର୍ଗ ପୁରରେ ମିଳିଗଲେ ।
ଶଚୀଙ୍କି କୋଳେ ଧରି ସଭା କରି ବସି
ଦେଲେ ଦେବରଷିମାନଙ୍କ ମନ ତୋଷି ।
ସେକାଳେ ଇନ୍ଦ୍ର ପାଶେ ଅଙ୍ଗିରା ଋଷି ଆସି
ଅଥର୍ବ ବେଦମନ୍ତ୍ରେ ସ୍ତୁତି କଲେ ବସି ।
ଇନ୍ଦ୍ରଦେବ ଅଥର୍ବମନ୍ତ୍ରେ ହୋଇ ତୋଷ
ବୋଇଲେ ମନ୍ତ୍ରନାମ ହେଉ ଆଙ୍ଗୀରସ ।
ଆହେ ବୃହସ୍ପତିଙ୍କ ବାପ ଯାଗଭାଗ
ଆଜୁଁ ମୋର ବୋଲରେ ପାଅ ତୁମ୍ଭେ ଆଗ ।
ଅଙ୍ଗିରା ଇନ୍ଦ୍ରଠାରୁ ହୋଇଲେ ମେଲାଣି
ଘରେ ବାହୁଡ଼ିଲେ ଫୁଲାଇ ରୋମଶ୍ରେଣୀ ।
ଜାଣ ହେ ଯୁଧିଷ୍ଠିର ଦେବଙ୍କର ଶିଖ
ଏ ରୂପେ ଭାର୍ଯ୍ୟା ତୁଲେ ପାଇଛନ୍ତି ଦୁଃଖ ।
ତୁମ୍ଭେ ତ ଦୁଃଖ ପାଇ ଭାଇ ଭାର୍ଯ୍ୟା ତୁଲେ
ଏବେ ଯାଇ ରାଜ୍ୟରେ ବସିବ ହେ ଭଲେ ।
ନହୁଷ ଦୁଷ୍ଟପଣ ସକାଶୁଁ ଭୂତଳେ
ଅଜଗର ହୋଇଣ ପଡ଼ି ରହିଥିଲେ ।
ଏହିରୂପରେ ଜାଣ କର୍ଣ୍ଣ ଦୁର୍ଯୋଧନ
ଦୁଃଶାସନ ଆଦି ତ ପାଇବେ ନିଧନ ।
ଯେଉଁ ରାଜା ଶତ୍ରୁରୁ ଭୟ ପାଇଥାଏ
ଇନ୍ଦ୍ରଙ୍କ ବିଜୟ ଶୁଣିଲେ ଜୟ ପାଏ ।
କାଳ ଜାଣି ଏକଥା ପୋଥା ତୁମ୍ଭ ଆଗେ
କହିଲିଟି ଭଣଜା ଶୁଣ ହେ ସରାଗେ ।
ପୁଣି ଏ ଚରିତର ଅଛି ଆଉ ଗୁଣ
ଯେ ଶୁଣନ୍ତି ତାଙ୍କୁ ପୂଜନ୍ତି ସୁରଗଣ ।
ଅପୁତ୍ର ଲୋକର ହୁଅଇ ପୁତ୍ର ପୌତ୍ର
କୁଳକୁ ମଧ ତାର କରଇ ପବିତ୍ର ।
ଦୀର୍ଘାୟୁଷ ହୋଇଣ ମହୀରେ ରହଇ
ବ୍ୟାଧି ପୀଡାଯାକ ସେ ଦେହରୁ ଛଡ଼ାଇ ।
ଯୁଧିଷ୍ଠିର ଏହା ଶୁଣିଣ ହସ ହସ
ହୋଇକରି କହିଲ ମାମୁଁ ହେଲି ତୋଷ ।
ଆପଣ କର୍ଣ୍ଣଙ୍କ ସାରଥି ହୋଇକରି
ଅର୍ଜୁନ ହାତେ ବେଗେ ନିଅ ଜୀବ ହରି ।
ଶଲ୍ୟ ବୋଇଲେ ହେ କହୁଛ ଯା ଭଣଜା
ଏ କଥା କରିବି ମୁଁ ଛାଡ଼ି ଜାଣ ଲଜ୍ଜା ।
ଏହା କହି ଭଣଜାମାନଙ୍କୁ ପୋଟାଳି
ବାହରିଲେ ସେଠାରୁ ଶଲ୍ୟ ମହାବଳୀ ।
ଦୁର୍ଯୋଧନ ପାଶରେ ହୋଇ ପରବେଶ
ମୋଡ଼ିଲେ ଟେକିଣ ହାତରେ ଦୁଇ ନିଶ ।
ଏଠାରେ ଇନ୍ଦ୍ରଙ୍କ ବିଜୟ ସମାପତି ।
ହୋଇଲା କହେ କୃଷ୍ଣସିଂହ ନରପତି ।



## ଧୃତରାଷ୍ଟ୍ରଙ୍କ ସଭାରେ ପାଣ୍ଡବ ଦୂତଙ୍କ ପ୍ରବେଶ ଓ ସନ୍ଧିର ପ୍ରସ୍ତାବ

ଏ ଅନ୍ତେ କୁରୁ ପାଣ୍ଡବଙ୍କ ଆଜ୍ଞା ମାନି
ଆସିଲେ ସବୁଆଡୁ ବହୁତ ସଇନି ।
ଯୁଯୁଧାନ ଘେନି ସଙ୍ଗତେ ମହାବଳ
ଭେଟିଲେ ଆସି ଯୁଧିଷ୍ଠିର ମହୀପାଳ ।
ସେମାନଙ୍କ କରେ ମୂଷଳ ଗଦା ଶକ୍ତି
ପରିଘ ଖଡ୍‌ଗ ଧନୁ ବିରାଜୁ ଅଛନ୍ତି ।
ସାତ୍ୟକି ସୈନ୍ୟ ମେଘ ଅସ୍ତ୍ରପନ୍ତି ବିଜୁ
ପରାୟେ ନୟନକୁ ଦିଶୁଛନ୍ତି ମଞ୍ଜୁ ।

ଯଥା ନଦୀ ପାଶେ ସମୁଦ୍ର ତୋଷମ୍ନେ
ସେ ରୂପେ ସେ ରହିଲେ ଯୁଧିଷ୍ଠିର ସୈନ୍ୟେ ।
ଧୃଷ୍ଟକେତୁ ଜୟସେନ ଦୁଇଟି ନୃପେ
ଦୁଇ ଅକ୍ଷୌହିଣୀ ସେନା ଘେନିଣ ଆପେ ।
ଯୁଧିଷ୍ଠିରଙ୍କ ପାଦ ବେନିରେ ବନ୍ଦନ
କଲେ ସେ କରିବାକୁ କୁରୁଙ୍କୁ ମର୍ଦ୍ଦନ ।
ପାଣ୍ଡ୍ୟରାଜା ସାଗର ଦ୍ୱୀପବାସୀ ସୈନ୍ୟ
ଘେନି ଯୁଧିଷ୍ଠିରଙ୍କୁ କଲେ ଦରଶନ ।
ଦ୍ରୁପଦ ତ ଯୁଧିଷ୍ଠିରଙ୍କୁ ପାଶେ ଥିଲେ
ତାଙ୍କ ସେନାଯାକ ସେଠାକୁ ଅଣାଇଲେ ।
ଯେତେ ଥିଲେ ମତ୍ସ୍ୟ ପାର୍ବତୀୟ ଥାଟ
ସଙ୍ଗତରେ ଘେନିଣ ନୃପତି ବିରାଟ ।
ଯୁଧିଷ୍ଠିର ରାଜାଙ୍କ ହିତକୁ ବିଚାରି
ରହିଲେ ସେବା କରି ପରିଚର ପରି ।
ଏରୂପେ ଯୁଧିଷ୍ଠିର ସାତ ଅକ୍ଷୌହିଣୀ
ସେନା କଲେ ହେ ଜନ୍ମେଜୟ ନରମଣି ।
ଭଗଦତ୍ତ ଘେନିଣ ଅକ୍ଷୌହିଣୀ ସେନା
ଭେଟିଲେ ଆସି ଦୁର୍ଯ୍ୟୋଧନ ମହାମନା ।
ଭୁରିଶ୍ରବା ଯେ ଶଲ୍ୟରାଜ ଅକ୍ଷୌହିଣୀ
ସେନା ଘେନି ଗଲେ ହସ୍ତିନା ରାଜଧାନୀ ।
କୃତବର୍ମା ଆଗୁଁ ଗୋଟିଏ ଅକ୍ଷୌହିଣୀ
ସେନା ଆଣିଥିଲେ ଶୁଣିଛ ନୃପମଣି ।
ଜୟଦ୍ରଥ ଘେନିଣ ଅକ୍ଷୌହିଣୀ ସେନା
ଭେଟିଲେ ସେହୁ ଆସି ଦୁଃଶିଳାଙ୍କ ନନା ।
ସୁଦକ୍ଷିଣେ, ଯବନ-ଅକ୍ଷୌହିଣୀ ତୁଲେ
ଘେନି ଦୁର୍ଯ୍ୟୋଧନ ନୃପଙ୍କୁ ଦେଖାଦେଲେ ।
ନୀଳ ଅବନ୍ତୀୟ ଯେ ଅକ୍ଷୌହିଣୀ ଦୁଇ
ସେନା ଘେନି ଆସିଲେ ହସ୍ତିନାକୁ ଧାଇଁ ।
କେକୟ ଜନପଦେ ଥିବା ପାଞ୍ଚରାଯେ
ଆସିଲେ ସଙ୍ଗେ ଘେନି ସେନା କ୍ଷଉଣିଏ ।
ଏ ବାହାରେ ମାଗଧ ତିନି ଅକ୍ଷୌହିଣୀ
ସଇନ ଅଣାଇଲେ କୁରୁନରମଣି ।
ଏ ରୂପରେ ଗାଏ ପଦକୁ ଏକାକଶ
ସେନା ହେଲେ କୁରୁଙ୍କ ପରୀକ୍ଷିତ ଶିଷ୍ୟ ।
ସେ ଏଗାର ଅକ୍ଷୌହିଣୀରେ ଯେ ପ୍ରଧାନ
ତାଙ୍କ ପାଇଁ ହସ୍ତିନା ହୋଇଲା ସଂକୀର୍ଣ୍ଣ ।

କାକି ଲୋକେ ପଞ୍ଚନଦ ଗଙ୍ଗାକୂଳ
ରୋହିତକ ଅରଣ୍ୟ ଯେ କୁରୁଜଙ୍ଗଲ ।
ଅହିଛତ୍ର ମରୁଭୂମି କାଳକୁଟୀସ୍ଥାନ
ଯମୁନାପର୍ବତ ବରଣା ବାଟଧାନ ।
ଏ ଯାକରେ ସେନାମାନେ ତ ରହିବାରେ
ନ ପଡ଼ିଲା ସୋରିଷ ଫିଙ୍ଗିଲେ ମହୀରେ ।
ଦ୍ରୁପଦ ପୁରୋହିତ ଏହି ସମୟରେ
ପରବେଶ ହୋଇଲେ ହସ୍ତିନା ପୁରରେ ।
ଭୀଷ୍ମ ବିଦୁରଙ୍କୁ କରିଣ ସଙ୍ଗଳନା
ଦେଖିଲେ ଯାଇଁ ଧୃତରାଷ୍ଟ୍ର ମହାମନା ।
ଦ୍ରୁପଦ ପୁରୋହିତ ଆସିବାର ଶୁଣି
ନମିଲେ ତାଙ୍କୁ ଧୃତରାଷ୍ଟ୍ର ନରମଣି ।
ଆସନଟିଏ ତାଙ୍କୁ ଦେଇ ବସାଇଲେ
ମନ୍ଦବୁଦ୍ଧି ଅନ୍ଧରଜା ଯେ ତୁନି ହେଲେ ।
ଦ୍ରୁପଦ ପୁରୋହିତ ଚହିଁଣ ସଭାକୁ
ବୋଇଲେ ଶୁଣ ମୋର କହିବା ଗୀରକୁ ।
ତୁମ୍ଭେ ତ ରାଜଧର୍ମ ଜାଣ ମୁଁ ଜାଣିଛି
ତୁମ୍ଭଠାରୁ ଶୁଣିବା ପାଇଁ ତା କହୁଛି ।
ଧୃତରାଷ୍ଟ୍ର ପାଣ୍ଡୁତ ଏକା ବାବୁ ସୁତ
ହେବାରୁ ତ ଖାଇଲ ବାଣ୍ଟି ରାଜ୍ୟବିତ୍ତ ।
ଦଇବରେ ପାଣ୍ଡୁ ପାଆନ୍ତେ ପରଲୋକ
ଧୃତରାଷ୍ଟ୍ର ଖାଇଲେ କୁରୁଦେଶଯାକ ।
ପାଣ୍ଡୁସୁତ ଯୁଧିଷ୍ଠିଙ୍କୁ ବହି ରାଗ
ନାଶ ତାଙ୍କୁ ପାଞ୍ଚିଲେ ନ ଦେଇଣ ଭାଗ ।
ପାଣ୍ଡୁସୁତେ ଧର୍ମରେ ଉଦିତ ହୁଅନ୍ତେ
ଭୟକରି ଧୃତରାଷ୍ଟ୍ର ନୃପତି ଚିତ୍ତେ ।
ପାଣ୍ଡବଙ୍କୁ ପାଞ୍ଚାଳ ଦେଶରୁ ଅଣାଇ
ଅଧେ ରାଜ୍ୟ ଦେଲେ ସମସ୍ତେ ଜାଣିଥାଇଁ ।
ପାଣ୍ଡବେ ସେ ଅଧକୁ କଲେ ଦୁଇଗୁଣ
ଏହା ଜାଣିଣ ଧୃତରାଷ୍ଟ୍ର ନରରାଣ
କପଟ ପାଞ୍ଚିଣ ଡକାଇ ଅଣାଇଲେ
ଶକୁନି ସଙ୍ଗେ ଖେଳାଇଣ ହରାଇଲେ ।
ପାଣ୍ଡବେ ସେହିଖେଳେ ତେରଟି ବରଷ
ସମୟ କରିଥିଲେ ତାହା କଲେ ଶେଷ ।
ଏବେ ତୁମ୍ଭର ସଙ୍ଗେ ପ୍ରୀତି ଇଚ୍ଛା କରି
ମାଗୁଅଛନ୍ତି ଭାଗ ଦିଅ ହେ ତାଙ୍କରି ।

ଧୃତରାଷ୍ଟ୍ରରାଜାଙ୍କୁ ହୋଇ ଏକ ଚିତ୍ତ
କହି ଏହା ଏବେ କରାଅ ସନମତ ।
କୁରୁଙ୍କ ତୁଲରେ ପାଣ୍ଡୁଙ୍କ ସବୁ ବସ୍ତା
ଲବେ କରି ନାହାନ୍ତି ମନେ ଯୁଦ୍ଧ ଇଚ୍ଛା ।
ପ୍ରାଣୀଙ୍କର ହିତରେ ରତ ଯୁଧିଷ୍ଠିର
କାହିଁକି ପ୍ରାଣୀଙ୍କି ସେ କରିବେ ସଂହାର ।
ତୁମ୍ଭେମାନେ ଅବା ବୋଲିବ ଯେ କୁରୁଙ୍କୁ
ଜିଣି କରି କି ରୂପେ ସେ ନେବେ ରାଜ୍ୟକୁ ।
ଏଥିକି କହୁଥାଇଁ ଶୁଣ ଦେଇ ମନ
ମନେ କଲେ ଏକା ଜିଣିବ ଅରଜନ ।
ପୁଣି ତ ପାଣ୍ଡୁସୁତେ ସାତ ଅକ୍ଷୌହିଣୀ
ରହିଅଛନ୍ତି ସେନା ସଙ୍ଗତରେ ଘେନି ।
ଭୀମଙ୍କର ବୁଦ୍ଧି ତ ଅଟେ ଯୁଦ୍ଧେ ନିଦା
ଧରି ଗଦା କରିବେ ତୁମ୍ଭ ସୈନ୍ୟ ପଦା ।
ସାତ୍ୟକିଙ୍କି ଆଦି ଅନେକ ମହାରଥ
ଅଛନ୍ତି ସବୁ ବିଦ୍ୟାମାନଙ୍କେ ସମର୍ଥ ।
ନକୁଳ ସହଦେବ ବଳ ଦେଖି କରି
ପଳାଇବ ଇନ୍ଦ୍ରଙ୍କ ପରି ଲୋକ ଡରି ।
ସମସ୍ତ ବୀରଙ୍କର ମସ୍ତକ-ମଣ୍ଡନ
ଅଛନ୍ତି ସାହା ହୋଇ କୃଷ୍ଣ ଭଗବାନ ।
ଅର୍ଜ୍ଜୁନ ବିକ୍ରମ କୃଷ୍ଣଙ୍କ ବିଚାରକୁ
ଜାଣିଛି ଯେ ଯାଇ କି ଯୁଝିବ ତାହାଙ୍କୁ ।
ମରଣକୁ ଇଚ୍ଛାରେ ଲୋଡ଼ାଇ ଅଣାଇ
ନ ଦିଅ କୁଳ କାଳ-ସମୁଦ୍ରେ ବୁଡ଼ାଇ ।
ପାଣ୍ଡବଙ୍କୁ ଭାଗ ଦେଇଣ ଧର୍ମ ଭେଳା
ପାଇ କରି ପାଅ ସେହି ଜଳର ବେଳା ।
ଶୁଣି ଦ୍ରୁପଦଙ୍କର ପୁରୋହିତ ବାଣୀ
କହିଲେ ତାଙ୍କୁ ଏକା ଭୀଷ୍ମ ରଥିମଣି
ପାଣ୍ଡୁସୁତମାନେ ହେବାରୁ ସାହାବନ୍ତ
ଶୁଣି ଜାତ ହେଉଛି ଆମ୍ଭର ଉସତ ।
ପାଣ୍ଡୁନୃପଙ୍କର ତ ପାଞ୍ଚୋଟି କୁମର
ବନବାସ ଦୁଃଖଯାକକୁ କରି ଦୂର ।
ଯାହା କୁରୁମାନଙ୍କ ସଙ୍ଗତେ ପୀରତି
କରିବା ଇଚ୍ଛନ୍ତି ସେ ଏହା ଭାଗ୍ୟ ଅତି ।
ଯେତେ ଏ ସଭାରେ କହିଲେ ଦ୍ୱିଜରାଯେ
ବିଚାରିଲେ ଅନ୍ୟାୟ ନୁହେ ସେ ଅଣୁଏ ।
କେବଳ ତ ତୁମ୍ଭେ ଅଟ ଯେ ଦ୍ୱିଜଜାତି
ଏ ବଳରୁ ବଚନ ତୀକ୍ଷ୍ଣ ଶୁଭନ୍ତି ।
ପାଣ୍ଡୁସୁତମାନଙ୍କର ତ ପିତୃଧନ
ନ ଦେବେ ଧୃତରାଷ୍ଟ୍ର ବୋଲେ କେ ବଚନ ।
ଯାହାର ବଜ୍ରପରି ହୋଇଥିବ ପିଣ୍ଡ
ସେ ସହି ନ ପାରିବ ଅର୍ଜ୍ଜୁନଙ୍କ କାଣ୍ଡ ।
ଏହା ଜାଣି ଅର୍ଜ୍ଜୁନ ଆଶୀବିଷ ମୁଖେ
ହାତ ନେଇ ପୂରାଇବ କେ ଇଚ୍ଛା ସୁଖେ ।
ମୋ ମତରେ ଇନ୍ଦ୍ର ତୁଲରେ ତିନି ଲୋକ
କ୍ଷଣକେ ଜିଣିପାରେ ସୁଭଦ୍ରା ନାୟକ ।
ଭୀଷ୍ମଙ୍କ ଆକ୍ଷେପ ବଚନ ଶୁଣି କର୍ଣ୍ଣ
ଚାହିଁ ଦୁର୍ଯ୍ୟୋଧନ କହିଲେ ଏ ବଚନ ।
ହେ କୁରୁ ବୃଦ୍ଧ ଭୀଷ୍ମ କହୁଅଛ ଯାହା
ରକ୍ତ ଥିବା ଲୋକ ସହି କି ପାରେ ଏହା ।
ଯୁଧିଷ୍ଠି ଖେଳେ ଯା ସମୟ କରିଥିଲେ
ଶୁଣିବା ହେଉଛି ଆପଣମାନେ ଭଲେ ।
ବଳ ପାଇଁ ସତ୍ୟକୁ ନ ପାଳି କିଞ୍ଚିତେ
ଆମ୍ଭଙ୍କୁ ତ ଦୁର୍ବଳ ମଣି କରି ଚିତ୍ତେ ।
ଦ୍ୱିଜଟାଏ ବରଗି ଗର୍ବିତ ବଚନ
କୁହାଉଛନ୍ତି ତା ଶୁଣିବ କେହି କାନ ।
ଭୟରେ ଦୁର୍ଯ୍ୟୋଧନ ସୂଚିଅଗ୍ରେ ଭୂମି
ଦେବାର ନୁହନ୍ତି ସେ ଅଟନ୍ତି ତ ମାନୀ ।
ଲକସ୍ତକ ହୋଇ ମାଗିଲେ ଶତ୍ରୁଜନ
ପ୍ରାଣ କରି ପାରନ୍ତି ଦୁର୍ଯ୍ୟୋଧନ ଦାନ ।
ପାଣ୍ଡୁସୁତମାନେ ସମୟ ଶେଷ ଯାଏ
ବନରେ ରହିଥାନ୍ତୁ ଶୀର୍ଣ୍ଣ କରି କାୟେ ।
ବୋଲୁଛ କରା ଯୁଧିଷ୍ଠିରଙ୍କୁ ଧାର୍ମିକ
ଶୁଣ ଏବେ ତାଙ୍କ ଅଧର୍ମକଥାଯାକ ।
କାଳହେଲେ ବଳାତ୍କାରରେ କୁରୁପତି
ଯାଚିକରି ଦେବେ ତାଙ୍କର ପିତୃଭୂତି ।
ଯେବେ ପାଣ୍ଡୁସୁତେ ଧର୍ମକୁ ଲଙ୍ଘି କରି
ଯୁଝିବେ ଦୁର୍ଯ୍ୟୋଧନ ପକାଇବେ ମାରି ।
ଏଥିରେ କିଛି ଆହେ ନାହିଁଟି ସନ୍ଦେହ
ମହାବଳ ବହିଛି ଦୁର୍ଯ୍ୟୋଧନ ଦେହ ।
ଭୀଷ୍ମ ବୋଇଲେ ହେ କହୁଛ କର୍ଣ୍ଣ ଯାହା
ମିଛ ବୋଲି ପାରିବୁଁ ଆମ୍ଭେ ନିକି ଏହା ।

କେବଳ କହୁଛି ଛ ରଥୀଯାକ ହୋଇ
ଅର୍ଜୁନକୁ ଏବେ ତ ଯୁଦ୍ଧେ ହାରିଲାଇଁ ।
ଏକଥା କିମ୍ପା ତୁମ୍ଭମନରୁ ପାସୋର
ହୋଇଲା ପାର୍ଥଶର ବ୍ୟଥା କରି ଦୂର ।
ଏହି କଥା ମୁହିଁ ମଣୁଛି ଚମତ୍କାର
ଅଧିକ କହିବାକୁ ଅଛି କି ଉତ୍ତର
ଯେବେ ତ ଦ୍ୱିଜଙ୍କର କହିବା କଥାଟି
ନ କରିବ ତେବେ ଖାଇବା ଧୂଳିମାଟି ।
ଧୃତରାଷ୍ଟ୍ର ତା ଶୁଣି ପ୍ରଶଂସି ଭୀଷ୍ମଙ୍କୁ
କର୍ଣ୍ଣେ ଗାଳିଦେଇ କହିଲେ ଏ ବଚନକୁ ।
ବୋଇଲେ ଭୀଷ୍ମ ଯାହା କହନ୍ତି ବଚନେ
ଭାଙ୍ଗିଛି କର୍ଣ୍ଣ ତା କ୍ଷତ୍ରିୟ ଅଭିମାନେ ।
ବିଚାରିଲେ ସେ କଥା ଅଟେ ଆମ୍ଭ ହିତ
ସହି ନ ପାରିବା ଅର୍ଜୁନ ଶରଘାତ ।
ପାଣ୍ଡବଙ୍କଠାକୁ ସଞ୍ଜୟଙ୍କୁ ତ ମୁହିଁ
ବରଗୁଛି ତାଙ୍କୁ କରନ୍ତୁ ଶାନ୍ତି ଯାଇଁ ।
ଏହା କହିଣ ମନ୍ଦବୁଦ୍ଧି ଅନ୍ଧରାଜା
ଦ୍ରୁପଦଙ୍କ ପୁରୋହିତଙ୍କୁ କରି ପୂଜା ।
ବୋଇଲେ ଗୋସାଇଁ ହେ ଯାଅ ତୁମ୍ଭେ ଏବେ
ତୁମ୍ଭ ସଙ୍ଗେ ସଙ୍ଗେ ସଞ୍ଜୟ ମଧ ଯିବେ ।
ଏହା ଶୁଣିକରି ଦ୍ରୁପଦ ପୁରୋହିତ
ଗଲେ ଯହିଁ ଥିଲେ ପାଣ୍ଡୁଙ୍କ ପାଞ୍ଚସୁତ ।
ଦ୍ରୁପଦ ପୁରୋହିତ ଯିବା ହେଲା ଶେଷ
କହଇ କୃଷ୍ଣସିଂହ ଧରାକୋଟ ଈଶ ।



## ଧୃତରାଷ୍ଟ୍ରଙ୍କ ମନ୍ତ୍ରଣାରେ ସଞ୍ଜୟ ପାଣ୍ଡବଙ୍କୁ ଯୁଦ୍ଧରୁ ନିବାର୍ତ୍ତଇବାକୁ ଗଲେ

ଏଥୁଅନନ୍ତରେ ଧୃତରାଷ୍ଟ୍ର ନରମଣି
ସଞ୍ଜୟ ମୁଖ ଚାହିଁ କହିଲେ ଏ ବାଣୀ ।
ତୁମ୍ଭେ ଉପପ୍ଲବକୁ ଯାଇ ଯୁଧିଷ୍ଠିର
ରାଜାଙ୍କୁ କହ ଏବେ ମୋ ସଙ୍ଖୋଳିବାର ।
ଏ ବାହାରେ ପୁଣି କହିବ ପାଣ୍ଡବଙ୍କୁ
ବଳି କେହି ନ ପାରଇଟି ବିଧାତାକୁ ।
ବିଧାତା ଲେଖିବାରୁ ଆହେ ନରଶିଖ
ମାନେ ହେଲା ଜାଣ ତୁମ୍ଭର ଏହି ଦୁଃଖ ।
ପାଣ୍ଡବଙ୍କଠାରୁ ଶୁଣିଣ ମିଥ୍ୟା କଥା
ସ୍ୱପନରେ ଦିନେ ମୁଁ ପାଇ ନାହିଁ ବ୍ୟଥା ।
ପାଣ୍ଡବେ ବାହୁବଳେ ଏହି ମହୀ ଜିଣି
ମୋତେ ତାହା ଭୋଗ କରାଇଲେଟି ଆଣି ।
ଧର୍ମ ପ୍ରେମ କାମରେ ସେମାନେ ଅଧର୍ମ
କଥା ହେଲେ ମନରେ ପାନ୍ତି ବଡ ଶ୍ରମ ।
ତାହା ଜାଣି ପାରିଣ ଅଧରମ ଡରି
ନ ପାରିଲା ତାଙ୍କ ଦେହରେ ଘର କରି ।
ଶୀତ ଖରା କ୍ରୋଧ ନିଦ୍ରା ଯେ କ୍ଷୁଧା ତୃଷା
ହରଷ ପରମାଦ ଆଳସ୍ୟ ବରଷା ।
ଏଥିରେ ନ ପଡ଼ି ପାଣ୍ଡବେ ଧର୍ମ ଜଳେ
ଭାସୁଥାନ୍ତି ଅହର୍ନିଶିରେ ସୁଖଭୋଳେ ।
ପାଇଲେ ହେଲେ ଦୁଃଖ ଦେଖି ବ୍ରାହ୍ମଣଙ୍କୁ
ନ ଖୁଆଇଲେ ନ ଖାଆନ୍ତି ସେ ଅନ୍ନକୁ ।
କର୍ଣ୍ଣ ଦୁର୍ଯ୍ୟୋଧନ ଯେ ଦୁଃଶାସନ ବିନା
ତାହାଙ୍କୁ ମୋ ବଂଶେ କେ ନୁହଇ ବିମନା ।
କର୍ଣ୍ଣ ଦୁର୍ଯ୍ୟୋଧନ ତ ହୋଇବାକୁ ବଧ
ଅବିଚ୍ଛିନ୍ନେ କରାଉଛନ୍ତି ତାଙ୍କୁ କ୍ରୋଧ ।
ବିଲୁଆ ହୋଇକରି କର୍ଣ୍ଣ ଦୁର୍ଯ୍ୟୋଧନ
ପାଣ୍ଡବ ସିଂହ ଭାଗ କରିବାକୁ ମନ ।
ଯାହାଙ୍କୁ ସାହା ହୋଇଛନ୍ତି ଲକ୍ଷ୍ମୀନାହା
କିସ କରି ନ ପାରଇ ହେ ତାଙ୍କ ବାହା ।
ଏକା ଅରଜୁନ ପାରଇ ମହୀ ଜିଣି
ପୁଣି ତ ସାହା ହୋଇଛନ୍ତି ଚକ୍ରପାଣି ।
ସେ ଦୁହେଁ ମନେ କଲେ ତ୍ରୈଲୋକ୍ୟ
ଆମ୍ଭେ କେ ହିଁ ଯୋଟିବା ତାହାଙ୍କୁ ସଂଗ୍ରାମେ
ଦେଖିଛତ ଅର୍ଜୁନ ହୋଇ ଧନୁଷ୍ପାଣି
ଆଣିଲେ ଧନ ଯେ ଉତ୍ତରଙ୍କୁରୁ ଜିଣି ।
ଯୁଦ୍ଧରେ ଦଳି ଆଖଣ୍ଡଳଙ୍କ ବଳକୁ
ଖୁଆଇଲେ ଖାଣ୍ଡବ ଅଗ୍ନି ଦେବତାଙ୍କୁ ।
ଅୟୁତେ ନାଗ ପ୍ରାଣ ବହେ ଭୀମସେନ
ଧଇଲେ ଗଦା ପିଟି ଦେବ ମୋର ସୈନ୍ୟ ।
ମାଦ୍ରୀସୁତେ ଅର୍ଜୁନଠାରୁ ଶିକ୍ଷା କରି
ଅଛନ୍ତି ବିଦ୍ୟା ଶତ୍ରୁ ପାରନ୍ତି ସଂହାରି ।
ଧୃଷ୍ଟଦ୍ୟୁମନ ତ ପାଣ୍ଡବମାନଙ୍କର
ହୋଇଛନ୍ତି ତାଙ୍କୁ କେ କରିବ ସମର ।

ଦ୍ରୁପଦ ବିରାଟ ତ ସୈନ୍ୟଙ୍କର ତୁଲେ
ରହିଛନ୍ତି ଆସିବେ ପାଣ୍ଡବଙ୍କ ଭଲେ ।
କେକୟମାନେ ପୂର୍ବେ ଆମ୍ଭ ପକ୍ଷେ ଥିଲେ
ଏବେ ପାଣ୍ଡବଙ୍କୁ ଆଶ୍ରିଲେଣି ସେ ଭଲେ ।
ଏ ବାହାରେ ଅନେକ ଦେଶ ରାଜଗଣ
ପାଣ୍ଡବଙ୍କ ପାଇଁ ଲୋଡ଼ନ୍ତି ଛାଡ଼ି ପ୍ରାଣ ।
ମ୍ଲେଚ୍ଛ ପାର୍ବତୀୟ ହୋଇଣ ଏକମନ
ତାଙ୍କ ପାଶେ ଛନ୍ତି ନେବାକୁ ଆମ୍ଭ ପ୍ରାଣ ।
ପାଣ୍ଡ୍ୟରାଜା ପାଣ୍ଡବଙ୍କର ପାଶେ ଛନ୍ତି
ବିଡୋଜାଙ୍କୁ ମଧ୍ୟ ଜିଣି ସେହୁ ପାରନ୍ତି ।
ଭୀଷ୍ମ ଦ୍ରୋଣ କୃପ କୃଷ୍ଣ ଯେ ଅରଜୁନ
ଅସ୍ତ୍ରଯାକ ଶିଖିଅଛ ଯାହାର ମନ ।
ମଧୁକୁଳୋଦ୍ଭବ ମାଧବ ଯେ ସାତ୍ୟକି
ଆମ୍ଭଙ୍କୁ ମାରିବାକୁ ଛନ୍ତି ନିଶ ଟେକି ।
ଚେଦିଦେଶ କଷରୂଦେଶ ନୃପଗଣ
ପାଣ୍ଡବଙ୍କ ପାଇଁ କରିବେ ବୋଲି ରଣ
ଅହିଅଛନ୍ତି ଧନୁର୍ବାଣ ଭାରସୁହା
ସହି ପାରିବେ କେ ଆମ୍ଭର ଯୁଦ୍ଧେ ତାହା ।
ଦେଖିଛ ତ କୃଷ୍ଣଙ୍କ ଚକ୍ରଘାତ ପାଇ
ଶିଶୁପାଳ ମରିଲା ଛଟପଟ ହୋଇ ।
କୃଷ୍ଣଙ୍କ ସମର୍ଥପଣ ମୋ ହୃଦସାର୍ଥ
ହେବାରୁ ବୋଲୁଛି ମରିବେ ପୁତ୍ରେ ବ୍ୟର୍ଥ ।
କୃଷ୍ଣ ଯେ ଅରଜୁନ ଏକା ରଥେ ଆସି
ଯୁଝିବେ ବୋଲି ଶୁଣି ଡରୁଛି ମୁଁ ବସି ।
ମୋ ପୁଅ ଯେବେ ଯିବ ସେ ଦୁହିଁଙ୍କି ଯୁଝି
କ୍ଷଣକରେ ମରି ଗଡ଼ିବ ରଣମଝି ।
ମୋ ମତେ କୃଷ୍ଣାର୍ଜୁନ ଇନ୍ଦ୍ର ସନାତନ
ପ୍ରାୟେ ଏ ମହୀରେ ଅଟନ୍ତି ବଳବାନ ।
ଯୁଧିଷ୍ଠିର ଯେବେଟି ହୋଇଥାନ୍ତେ କ୍ରୋଧ
ଏତେବେଳଯାଏ ଥାନ୍ତେ କି ନୋହି ବଧ ।
ମୋହର ପୁଏ କୁରୁମାନଙ୍କ ସଙ୍ଗତେ
ଜାଣ ଆହେ ସଞ୍ଜୟ ମନ୍ତ୍ରି ମହାମତେ ।
ଯୁଧିଷ୍ଠିର ଧର୍ମବଳରେ ପାଇ ବୃଦ୍ଧି
କ୍ଷଣକରେ କରି ପାରନ୍ତି କଥା ସିଦ୍ଧି ।
ତୁମ୍ଭେ ଏବେ ଯାଇଣ ଯୁଧିଷ୍ଠିର ନୃପ
ମାନସରେ ପ୍ରୀତକୁ ବଢ଼ାଅ ଅମାପ ।
ଶ୍ରୀକୃଷ୍ଣଙ୍କୁ ମଧ୍ୟ କହିବ ପ୍ରୀତି କରି
ସେ ଶାନ୍ତ ହେଲେ ଶ୍ରେୟ ବଢ଼ିବ ଆମ୍ଭରି ।
କୃଷ୍ଣଙ୍କୁ କଥାରୁ ବାହାର ଯୁଧିଷ୍ଠିର
କେବେ ନୁହନ୍ତି ହେ ସଞ୍ଜୟ ମନ୍ତ୍ରୀବର ।
ଏ ବାହାରେ ସାତ୍ୟକି ବିରାଟ ସଞ୍ଜୟ
ଧୃଷ୍ଟଦ୍ୟୁମ୍ନ ପାଣ୍ଡବ ପଞ୍ଚ ଦ୍ରୌପଦେୟ ।
ଏମାନଙ୍କ କୁଶଳ ପଚାରି ସଞ୍ଜୟ
ହରିବଟି କଥାର ଭଙ୍ଗିରେ ହୃଦୟ ।
ତୁମ୍ଭେତ ସବୁ କଥାମାନଙ୍କେ ଚତୁର
କିସ ଶିଖାଇବି ମୁଁ ତୁମ୍ଭଙ୍କୁ ବିଚାର ।
ଯେରୂପେ ଯୁଧିଷ୍ଠିର ନୋହିବେ ପ୍ରତିକୂଳ
ସେ ରୂପେ କରିବ ଦେଖାଇ ବାକ୍ୟବଳ ।
ସଞ୍ଜୟ ଧୃତରାଷ୍ଟ୍ର ନୃପଙ୍କ ବଚନେ
ଆରୋହି ଗଲେ ରଥବରକୁ ବହନେ ।
ଉପପ୍ଲବ ଗଡ଼ରେ ହୋଇ ପରବେଶ
ନମିଲେ ଯୁଧିଷ୍ଠିରଙ୍କର ପାଦ ଦେଶ ।
ବୋଇଲେ ତୁମ୍ଭଙ୍କୁ ମୁଁ ଭାଇଙ୍କର ତୁଲେ
ଆଜ ଯା ଦେଖିଲି ମୋର ଏ ଭାଗ୍ୟ ଭଲେ ।
ଧୃତରାଷ୍ଟ୍ର ରାଜା ତୁମ୍ଭର ଅନାମୟୁ
ପଚରାଇ ଅଛନ୍ତି ହୋଇଣ ସଦୟ ।
ଭୀମ ଅରଜୁନ ନକୁଳ ସହଦେବ
ଅଛନ୍ତିଟି ଭଲେ କହ ହେ ନରଦେବ ।
ତୁମ୍ଭ ମନୋହାରୀ ଦ୍ରୁପଦ ରାଜଜେମା
ନ ପାଉଛନ୍ତିଟିକି କହ ଦୁଃଖସୀମା ।
ଯୁଧିଷ୍ଠିର ବୋଇଲେ ଶୁଣ ହେ ସଞ୍ଜୟ
ତୁମ୍ଭଙ୍କୁ ଦେଖି ହେଲା ସନ୍ତୋଷ ହୃଦୟ ।
ତୁମ୍ଭଙ୍କୁ ଦେଖି ତୁମ୍ଭ କୁଶଳ ଜାଣୁଛିଁ
ଆମ୍ଭ କୁଶଳ ନ ଦେଖୁଛ ସୁତବଂଶି ।
କହ ଆମ୍ଭ ବଡ଼ ବାପାଙ୍କର କୁଶଳ
ପାଳୁଅଛନ୍ତି ଟିକି ହସ୍ତିନା ମଣ୍ଡଳ ।
କୁରୁକୁଳବୃଦ୍ଧ ବାହ୍ଲିକ ସୋମଦତ୍ତ
ଭୁରିଶ୍ରବା ଯେ ଶଲ୍ୟ କର୍ଣ୍ଣ ଦ୍ରୋଣସୁତ ।
ଯୁସୁତ୍ସୁ ଦୁର୍ଯ୍ୟୋଧନ ଦୁଃଶାସନ ଆଦି
ଯେତେକ ଧୃତରାଷ୍ଟ୍ର ସୁତେ ମୋ ବିବାଦୀ ।
ଭୀଷ୍ମ ଦ୍ରୋଣ କୃପଙ୍କ ତୁଲେ ତାହାଙ୍କର
କୁଶଳ କହ ହେ ସଞ୍ଜୟ ମନ୍ତ୍ରୀବର ।

ଏ ବାହାରେ ବିଦୁର ଛନ୍ତିକି ଭଲରେ
ତାହା ମଧ ମୋତେ କହିବା ହେଉ ଥରେ ।
ହସ୍ତିନାରେ ଯେ ବାଳବୃଦ୍ଧ ସ୍ତିରୀଜନ
ଯେତେକ କରିଛନ୍ତି ପିତୃକ୍ରମେ ସ୍ଥାନ।
ସେମାନଙ୍କ କୁଶଳୁ ବଚନେ ଉଚ୍ଚାରି
ଦିଅ ମନ ତୋଷି ସଞ୍ଜୟ ନ ବିଚାରି ।
ଆମ୍ଭମାନଙ୍କର ଯେତେକ ମାତୃଗଣ
ଅଛନ୍ତି ତାଙ୍କ ଶ୍ରେୟ କର ହେ ବଖାଣ ।
ଧୃତରାଷ୍ଟ୍ର ପୂର୍ବ ପରାଯେ ବ୍ରାହ୍ମଣଙ୍କୁ
କରନ୍ତିଟିକି ସମ୍ଭାବନାରେ ପୂଜାକୁ ।
ଯେଉଁ ଭୂମିଯାକ ଦ୍ୱିଜଙ୍କୁ ଥିଲି ଦେଇ
ତାହାଙ୍କଠାରୁ ନାହାନ୍ତି ଟିକି ନେଇ ।
ବ୍ରାହ୍ମଣ ଦୋଷ କଲେ ଧୃତରାଷ୍ଟ୍ର ରାଜା
ସହି ତାହା କରୁଅଛନ୍ତିଟିକି ପୂଜା ।
ସବୁ ବର୍ଣ୍ଣଙ୍କରେ ବ୍ରାହ୍ମଣ ବର୍ଣ୍ଣ ପୌଢ଼ି
ତାଙ୍କୁ ଧୃତରାଷ୍ଟ୍ର ନାହାନ୍ତିଟିକି ଛାଡ଼ି।
ଧୃତରାଷ୍ଟ୍ରରାଜା ତ ସେବକଜନଙ୍କୁ
ଦେଉଅଛନ୍ତିଟିକି ଲେଖି ବର୍ତ୍ତନକୁ ।
ସୁହୃଦମାନେ ଧୃତରାଷ୍ଟ୍ରେ ମିଛ କହି
ନେଉ ନାହାନ୍ତି ତ ଧନକୁ ସେ ଜଟାଇ ।
କୁରୁମାନେ ଆମ୍ଭର କଥାରେ ଅବଧି
ଧୃତରାଷ୍ଟ୍ର ନୃପେ କହନ୍ତିଟିକି ବୋଧି।
ଦ୍ରୋଣ ଭୀଷ୍ମ ଯେ କୃପ ଆମ୍ଭଠାରେ ସ୍ନେହ
ବହି କହୁଅଛନ୍ତିଟିକି ତାଙ୍କୁ କହ ।
କୁରୁଏ ଛାଡ଼ି ସୁଯୋଧନର ପ୍ରତିକି
ପାଣ୍ଡବଙ୍କ ରାଜ୍ୟ ଏ ବୋଲି କହନ୍ତି କି।
ଆସିଲେ ଶତ୍ରୁବଳ ଅର୍ଜ୍ଜୁନର ଦଳ
ଭାବନ୍ତିଟିକି ଧୃତରାଷ୍ଟ୍ର ମହୀପାଳ ।
ଅର୍ଜ୍ଜୁନର ସମାନ ଯୋଦ୍ଧା ଆଜଯାଏ
ନୟନେ ଦେଖି ନାହିଁ ମୁହିଁ କେଉଁଠାଏ
ଅର୍ଜ୍ଜୁନର ହାତରୁ କାଣ୍ଡମାନ ଫିଟି
ଦିଶୁଥାନ୍ତି ନେତ୍ରେ ଯେସନେ ବାଡ଼ି ଗୋଟି ।
ତା ସହିତ ରହିବାକୁ ଏ ତିନି ବ୍ରହ୍ମାଣ୍ଡ
ମଧ୍ୟରେ ଲାଗୁନାହିଁ ଥିଲା ପରି ପିଣ୍ଡ ।
ଯେଉଁ ଭୀମ-ହସ୍ତି ଗଦା-ଦନ୍ତର ବଳେ
ମର୍ଦ୍ଦିଥିଲେ ଶତ୍ରୁ-କମଳକୁଳ ହେଳେ ।

ତାହାଙ୍କୁ କରୁଛନ୍ତିଟି ସୁମରଣା
କୁରୁମାନେ ତୁମ୍ଭର ବୁଦ୍ଧି ନୋହି ବଣା ।
କଳିଙ୍ଗମାନଙ୍କୁ ଯେ ଜିଣିଲେ ଅକ୍ଲେଶେ
ସେ ସହଦେବ ପଡ଼ନ୍ତିଟିକି ମାନସେ ।
ପୁଣି ଦୁଇହାତେ ପାରନ୍ତି ଶର ବିନ୍ଧି
ତହିଁରେ ପକାନ୍ତି ଶତ୍ରୁସୈନ୍ୟ ରୁନ୍ଧି ।
ପଶ୍ଚିମ ଦିଗଜିଣା ସେ ନକୁଳଭାଇ
କୁରୁଙ୍କର ମନରେ ସେ ଅଛି କି ନାହିଁ ।
ସୁଯୋଧନ ହଇତବନକୁ ସମ୍ପତ୍ତି
ଦେଖାଇ ଯାଇଥିଲେ ପାଇଲେ ବିପତ୍ତି ।
ଭୀମ ଅରଜୁନଙ୍କ ବଳରେ ତହିଁରୁ
ତରିଲେ ତାହା ଏବେଗଲା କି ମନରୁ ।
ଏକଥା-ଚନ୍ଦ୍ର ବାଣୀ-ଗଗନ ଉଦୟ
କରି ତୋଷି ମୋ ହୃଦ-କୁମୁଦ ସଞ୍ଜୟ ।
ସଞ୍ଜୟ ବୋଇଲେ ହେ ଶୁଣ ଯୁଧିଷ୍ଠିର
ଭଲ ହୋଇଅଛି ସମସ୍ତ କୁରୁଙ୍କର ।
ଦୁର୍ଯ୍ୟୋଧନଙ୍କଠାରେ ଭଲ ମନ୍ଦ ଦୁଇ
ଲୋକେ ଜାଣ ଯୁଧିଷ୍ଠିର ଅଛନ୍ତି ରହି ।
କେବଳ ବ୍ରାହ୍ମଣେ ଦେବାର ସେ ଜାଣନ୍ତି
ନ ଦେବା ପଦ ତାଙ୍କ ହୃଦୁଁ ଛାଡିଛନ୍ତି ।
ତୁମ୍ଭଠାରେ ଅଭାବ ହେବାରୁ ତାଙ୍କର
କେବଳ ହେଉଛନ୍ତି ନିନ୍ଦାଭାଗଘର ।
ମିତ୍ରଠାରେ ଅମିତ୍ର ଗୁଣ କରିବାରେ
ଧୃତରାଷ୍ଟ୍ର ରାଜା ପଡ଼ିବେ ନରକରେ ।
ବ୍ରାହ୍ମଣମାନେ ନିତି କହୁଥାନ୍ତି ବସି
ମିତ୍ରଦ୍ରୋହୀଠାରୁ ନାହିଁଟି ବଡ଼ ଦୋଷୀ ।
ପଡ଼ିଲେ ଯୁଦ୍ଧ କଥା ତୁମ୍ଭେ ପାଞ୍ଚଭାଇ
କୁରୁମାନଙ୍କର ମୁଖରେ ଥାଅ ରହି ।
ଏବେ ମୁହିଁ ମନେ କରୁଅଛି ରାଜନ
ପ୍ରାଣୀମାନେ ସମସ୍ତେ ଦଇବ ଅଧୀନ ।
ତୁମ୍ଭ ପରା ଲୋକ ଯା ଖେଳି ବସି ପଶା
ପାଇଲେ ବନ ମଧ୍ୟେ ରହି ଦୁଃଖଦଶା ।
ଏଥିରୁ କେଉଁ କଥା ଅଛି ଚମତ୍କାର
କିସ ମୁଁ କହିବି ତୁମ୍ଭଙ୍କୁ ନରବର ।
କରୁ ସୃଞ୍ଜୟାଦିଙ୍କୁ ଦେଖାଇ ଶାସ୍ତ୍ରବିଧି
ତୁମ୍ଭେ ଯେ ଏକା ଶିଖାଇବ ଭଲ ବୁଦ୍ଧି ।

ଧୃତରାଷ୍ଟ୍ର ରାଜା କହିଅଛନ୍ତି ଯାହା
ଶୁଣ ଭଲ କରି ବସି ତା ନରନାହା ।
ଯୁଧିଷ୍ଠିର ବୋଇଲେ ସମସ୍ତେ ବସିଛୁଁ
କି କହିଛନ୍ତି ତାହା କହ ପଚାରୁଛୁଁ ।
ସଞ୍ଜୟ ବୋଇଲେ ଶୁଣ ଦେବକୀ ନନ୍ଦନ
ପାଣ୍ଡବେ ବିରାଟ ଦ୍ରୁପଦ ଧୃଷ୍ଟଦ୍ୟୁମ୍ନ ।
ବସିଛ ତ ତାଙ୍କୁ ଘେନି ସଭାସ୍ଥାନେ
ଶୁଣ ମୋ କହିବା ବଚନ ସାବଧାନେ ।
ଧୃତରାଷ୍ଟ୍ର ନୃପତି ରଥରେ ବସାଇ
ପଠିଆଇ ଅଛନ୍ତି ମୋତେ ପ୍ରୀତି ପାଇଁ ।
ସେ ଯାହା କହିଛନ୍ତି ଘେନିଲେ ପାଣ୍ଡବେ
କୁରୁମାନେ ନିଶ୍ଚିନ୍ତେ ଘରରେ ରହିବେ ।
ପାଣ୍ଡୁ ସୁତମାନେ ତ ଧର୍ମରେ ନିପୁଣ
ବସିଲେ ବାଛି କିଛି ନାହିଁ ଅବିଗୁଣ ।
କୁଳରେ ଜାତ ହୋଇ ପାଣ୍ଡବେ କଳହ
କି କରି କରିବେଟି ହୃଦେ ବହି ମୋହ ।
ଅକ୍ରୂର ବୋଲାଇଣ କ୍ରୂରକର୍ମ ଆପେ
କଲେ ନ ପଡ଼ିବେ କି ଯାଇଁ ଚିନ୍ତାତାପେ ।
ଦାତା ହୋଇ ରାଜ୍ୟ ମାଗିବେ ଯେବେ ଯାଇ
ଏଥିରୁ ଊଣା ହୋଇ ଆଉ କଥା ନାହିଁ ।
ଲଜ୍ଜାବନ୍ତ ହୋଇଣ ନିର୍ଲ୍ଲଜ କଥାକୁ
କହିବେ କେହି ଭୀଷ୍ମ ଦ୍ରୋଣ ନିଷ୍ଠୁରକୁ ।
କର୍ମରତ ନିଶ୍ଚୟ ଜାଣନ୍ତି ଏମାନେ
କିରୂପେ ଏ ଯୁଝିବେ ବହୁତ ସଇନେ ।
ଏହା ଜାଣିଣ ପରହିତେ କେତେ କଥା
ଛାଡ଼ିଛନ୍ତି ପୂର୍ବୁଁ ପାଣ୍ଡବ ମହାରଥା ।
ଜୟଦ୍ରଥ ତ ଦ୍ରୌପଦୀଙ୍କି ଘେନିଗଲା
ତେବେହେଲେ ତାଠାରେ ତାଙ୍କ ଦୟା ହେଲା
ସେହି ସକାଶରୁ ମୋ ମନକୁ ପାଉଛି
ବନେ ପଛେ ରହନ୍ତୁ ପାଣ୍ଡୁ ପାଞ୍ଚବହି ।
ରାଜରଷି ପରି ଧରମକୁ ଆଚରି
ତଥାପି ନୁହନ୍ତିଟି ଜ୍ଞାତି-ବଧକାରୀ ।
କଳାକୁ ସିନା କଳା କରଇ ସଂହାର
ଶୁକଳରେ ସିନା ଦିଶଇ ତାର ତାର ।
ଯୁଦ୍ଧ କରି ଯେବେଟି ଜ୍ଞାତିଙ୍କି ମାରିବେ
ଘରେ ଥିଲେ ନରକେ ଥିଲା ପରି ହେବେ ।
ନୋହିଲେ ତାଙ୍କ ହାତେ ହୋଇଲେ ସଂହାର
ଧର୍ମ କର୍ମ ସବୁ ସରିବ ଏହାଙ୍କର ।
ଜ୍ଞାତିଙ୍କି ଯେଉଁମାନେ କରନ୍ତି ପାଳନା
ତାହାଙ୍କ ଜୀବନ ବୋଲାଏ ଧନ୍ୟ ସିନା ।
ସାତ୍ୟକି ଧୃଷ୍ଟଦ୍ୟୁମ୍ନ ଦ୍ରୁପଦ ବିରାଟ
କୃଷ୍ଣ ଆଗ କରି ଜଗିବେ ଯେଉଁ ଥାଟ ।
ସାକ୍ଷାତେ ବଜ୍ର ଧରି ନମୁଚି ବଇରୀ
ନ ପାରିବେ ସେ ଥାଟ ଜନେ ବାଧା କରି ।
ଭୀଷ୍ମ ଦ୍ରୋଣ କୃପ କର୍ଣ୍ଣ ଯେଉଁ ସଇନ୍ୟ
ରଖିଥିବେ ସେ ମଧ ନୋହିବେ ନିଧନ ।
ଏହି ସକାଶରୁଟି କୁରୁ ପାଣ୍ଡବଙ୍କ
ଯୁଦ୍ଧ ହେବ ବୋଇଲେ ହେଉଛି ଆତଙ୍କ ।
କାହାରି ତ ପରାଜୟ ହୋଇବ ନାହିଁ
ପ୍ରଳୟ କାଳ ବା ବିହିଲା ଆଣି ବିହି ।
ଏହା ଜାଣି କୃଷ୍ଣେ ପ୍ରାର୍ଥନା ନମସ୍କାର
କରୁଛି କରାନ୍ତୁ ପାଣ୍ଡବ କୁରୁଙ୍କର ।
ପୀରତିକି ମତିରେ ଅତି ତୋଷ ହୋଇ
ନୋହିଲେ ଏ ସଂସାରେ ଭଲ ଗତି ନାହିଁ ।
କୃଷ୍ଣ ଅରଜୁନ ଅଟନ୍ତି ଜାଣିବାର
ଏ କିମ୍ବା ଛାଡ଼ିବେ ଏ ଧରମ ବେଭାର ।
ଭୀଷ୍ମ ଧୃତରାଷ୍ଟ୍ର ଏ ବିଚାରି ଛିଣ୍ଡାଇ
ପେଷିଛନ୍ତି ଏଠାକୁ ଆସିଅଛି ମୁହିଁ ।
କୃଷ୍ଣ ତୁଲେ ଏହା ପାଣ୍ଡବେ ଅଙ୍ଗୀକାର
କଲେ ସବୁ ଭଲେ ହୋଇବ କୁରୁଙ୍କର ।
ଯୁଧିଷ୍ଠିର ବୋଇଲେ ତୁଛାଇ ସଞ୍ଜୟ
ଡରୁଅଛି ସିନା ହେ ତୁମ୍ଭର ହୃଦୟ ।
ଆମ୍ଭେ ବୋଲୁନାହୁଁ ତୁମ୍ଭଙ୍କୁ ଯୁଝିବାକୁ
ତୁମ୍ଭେ କିମ୍ବା ବୋଲି ଆମ୍ଭଙ୍କୁ ଯୁଝିବାକୁ ।
ଆଶ୍ରମରେ ଯେବେ ଲଭିବ ଲୋକ କାର୍ଯ୍ୟ
ଶ୍ରମ କରି କିମ୍ପାଇଁ ଦେଖାଇବ ଓଜ ।
ଉତ୍ତମଲୋକେ ଯୁଦ୍ଧ ଇଚ୍ଛା ନ କରନ୍ତି
ଦଇବେ ପଡିଲେ ତା ଦେବେ ନ ଛାଡନ୍ତି ।
ଆମ୍ଭେମାନେ ଧର୍ମ-ରଜ୍ଜୁରେ ବନ୍ଧା ହୋଇ
ଥିବାରୁ ଚଳୁଥାଉଁ ଧର୍ମକୁ ଅନାଇଁ ।
ଇନ୍ଦ୍ରିୟମାନଙ୍କୁ ଯେ ଦୁଃଖରେ ନିଗ୍ରହ
କରଇ ସେ ଲଭଇ ସୁଖ ସମୂହ ।

କାମନାବନ୍ତ ଲୋକେ ପାଉଥିଲେ ସୁଖ
ବେଳକୁ ବେଳ ଲୋଭ ବଢେ ଛାଡି ଦୁଃଖ ।
ପାଣ୍ଡୁଙ୍କ ପୁଅଙ୍କ ବଳରେ ଧୃତରାଷ୍ଟ୍ର
ଶତ୍ରୁ ପୀଡ଼ା ଛାଡ଼ି ଭୁଞ୍ଜନ୍ତି ସୁଖେ ରାଷ୍ଟ୍ର ।
ଉଣା ଲୋକ ବିଗ୍ରହ ଯେବେ କରିଯାଏ
ତାହାକୁ ଆସି ଘେନିଯାନ୍ତି ଯମ ରାଏ ।
ଗୀତ ବାଦ୍ୟ ସଙ୍ଗୀତ କଥାରେ ନିର୍ଦ୍ଧନ
ଲୋକ କେବେଟି ଦେଇ ନ ପାରଇ ମନ ।
ବସ୍ତ୍ର ଅଳଙ୍କାର କର୍ପୂର ଯେ ଚନ୍ଦନ
ଭୋଗ ନ କରଇ ଅଭାଗ୍ୟବନ୍ତ ଜନ ।
ଏବେ ଏ ଭୋଗ ଛାଡି ହୋଇବାକୁ ପ୍ରଜା
ମନ ଥିଲେ ଯୁଝିବେ ଧୃତରାଷ୍ଟ୍ର ରାଜା ।
ବିଷମରେ ଥାଇ ମଙ୍ଗଳ ପାଞ୍ଚିବାର
କହ କି ବିଚାର ଏ ବଡ଼ ବାପାଙ୍କର
ଗ୍ରୀଷମକାଳେ ବନେ ଅଗ୍ନିକି ପକାଇ
ଭାଳିଲେ ପଛେ ତହିଁ କାରଣ କି ଥାଇ ।
ସେ ରୂପେ ତୁମ୍ଭ ନୃପ ପୁତ୍ରରେ ଲୋଲୁପ
ହୋଇ କିମ୍ପା କରୁଅଛନ୍ତି ଅନୁତାପ ।
ବିଦୂର ପରା ଲୋକ କହିବା ବାଟ ଛାଡି
ଚାଲିଲେ ଧୃତରାଷ୍ଟ୍ର ଅବାଟକୁ ମାଡି ।
ଅନୁକ୍ଷଣେ ଅଟେ ଆପଣା ମନ କାମୀ
ନ ପାରି ବଳେ ତୁଚ୍ଛା ହେଉଥାଏ ତମୀ ।
ଧର୍ମ ଅର୍ଥ ଦୁଇଟି କଥାରୁ ବାହାର
ହୋଇ କହୁଥାଏ ଦୁର୍ଭାଷା ନିରନ୍ତର ।
କ୍ରୋଧୀ ଲୋକଙ୍କର ତୁଲରେ ସଙ୍ଗ ହୋଇ
ଦେଇଥାଏ ନିଜର ଜ୍ଞାନକୁ ବୁଡ଼ାଇ ।
ନୋହିବା କଥା ମନେ ହେବା ପରିକରି
ଭାସୁଥାଏ ପାଇଣ ସୁଖ-ସିନ୍ଧୁ ବାରି ।
ଦୁଷ୍ଟ କଥା ପଡ଼ିଲେ ହୁଏ ଅତି ହୃଷ୍ଟ
ଏରୂପେ ପୁତ୍ରପ୍ରିୟ ଭାବି ଧୃତରାଷ୍ଟ୍ର ।
ଅଧରମ ବିଚାର କରି ମନେ ପୁଷ୍ଟ
କଲେ ଆମ୍ଭମାନଙ୍କ ସଙ୍ଗତେ କପଟ ।
ଖେଳବଳରେ ଶୁକ୍ରନୀତିକି ବିଦୂର
କହିଲେ ତାହା ଶୁଣି ଅମ୍ବିକା କୁମର ।
ତୁନି ହେବା ଦିନରୁ ଜାଣୁଅଛି ମୁହିଁ
କୁରୁଙ୍କ କ୍ଷୟ ଆସି ସରଛିଲା ବିହି ।
କୁରୁ ଯେବେ ସେବିଥାନ୍ତେ ବିଦୁର ବୁଦ୍ଧି
ହେଉଥାନ୍ତା ଧର୍ମେ ବେଳକୁ ବେଳ ବୃଦ୍ଧି ।
ଦୁଃଶାସନ ଶକୁନି କର୍ଣ୍ଣେ ଘେନି ରାୟେ
ଭାବିବାରୁ ଜାଣିଲୁଁ ନିଶ୍ଚେ ହେବ କ୍ଷୟେ ।
ଆମ୍ଭ ପଦାର୍ଥକୁ ସେ କପଟରେ ନେଇ
ମନେ କରିଛନ୍ତି ହେଲାଇଁ ନରସାଇଁ
ଏହି ସକାଶରୁ ଫଳିବ ଯେଉଁ ଫଳ
ଦେଖିବ ଧୃତରାଷ୍ଟ୍ର ହୋଇବେ ନିର୍ମୂଳ ।
ବିଦୁର ପାଖେ ଥାଇ କହୁଥିଲେ ଧର୍ମ
ଖେଉଦି ଦେଲେ ତାଙ୍କୁ ଛାଡ଼ିଦେଇ ଶର୍ମ ।
କର୍ଣ୍ଣ ଯେ ଅର୍ଜୁନେ କରିବେ ବୋଲି ଯୁଦ୍ଧ
ଆହେ ମନ୍ତ୍ରୀ ସଞ୍ଜୟ କରିଛନ୍ତି ସଧ ।
ତୁମ୍ଭେ ତ ଜାଣିଛ ତା ବଳ ଯେତେକର
କି କରି କରିବ ସେ ପାର୍ଥକୁ ସମର ।
ଦୁର୍ଯ୍ୟୋଧନ କର୍ଣ୍ଣର କଥା ରସେ ଭୁଲି
ମଲେ ବୋଲି ପାଣ୍ଡବେ ନ ଜାଣନ୍ତି ଚାଲି ।
ଜାଣି ତ ନାହୁଁ କଉଣସି କାଳେ ଆମ୍ଭେ
କର୍ଣ୍ଣ ଘେନି ରକ୍ଷା ହୋଇଛ ବୋଲି ତୁମ୍ଭେ ।
ସମ୍ମତ ହୋଇଛି ଏ ତିନିଲୋକଙ୍କର
ଅର୍ଜୁନ ପରି କେ ନୋହିବ ଧନୁର୍ଦ୍ଧର ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ତ ଜାଣିଛନ୍ତି ଏହା
ଦୁର୍ଯ୍ୟୋଧନ କିମ୍ପାଇଁ ମୋଡୁ ଅଛି ବାହା ।
ଅର୍ଜୁନ ଜୀଇଁଥିଲେ ଆମ୍ଭ ଧନ ନେଇ
ଖାଇ ନିକି ପାରିବ ଦୁର୍ଯ୍ୟୋଧନ ବାଇ ।
ଗାଣ୍ଡୀବ ଧନୁଘୋଷ କୁରୁଙ୍କର କାନେ
ନ ପଡ଼ିବାଯାଏ ଅଛନ୍ତି ସେ ଜୀବନେ ।
ଭୀମ ଯୁଦ୍ଧେ ହୋଇ ନ ଥିବାଯାଏ କ୍ରୋଧ
ଥାଆନ୍ତୁ କୁରୁମାନେ ପ୍ରାଣେ କରି ସଧ ।
ନକୁଳ ସହଦେବ ହାତେ ଥିଲେ ଖଣ୍ଡା ।
ଦେଖିବା କେ ଯୁଝିବ ତୁମ୍ଭ କୁରୁଭେଣ୍ଡା ।
ଯେବେ କୁରୁମାନେ ଆମ୍ଭଙ୍କୁ ଦେବେ ଭାବ
ତେବେ ଜାଣ ଛାଡ଼ିଦେବି ମୁଁ ଯୁଦ୍ଧେ ରାଗ ।
ନୋହିଲେ ଦୁର୍ଯ୍ୟୋଧନ ରକତ ଘୃତକୁ
ଦେବିଟି ଯୁଦ୍ଧଭୂମି- ଅଗ୍ନି ଦେବତାଙ୍କୁ ।
ସଞ୍ଜୟ ବୋଇଲେ ଜୀବନ ସବୁଦିନେ
ନ ଥାଏ ତ ଜନମାନଙ୍କ ଅପଘନେ ।

ଅଧରମ କଥା କରି ମନରେ ବୃଦ୍ଧି
ନ ବୁଡାଅ ଅକୀର୍ତ୍ତି ଜଳେ ଧର୍ମବୁଦ୍ଧି ।
କୌରବେ ଯେବେ ନ ଦେବେ ତୁମ୍ଭଙ୍କୁ ରାଜ୍ୟ
ତେବେ ଯାଅ ଭିକ୍ଷା ମାଗି ହେ ଧର୍ମରାଜ ।
ଯୁଦ୍ଧ ଆରମ୍ଭିବି ବୋଲ ଯା କ୍ରୋଧ ବହି
ବୟସ ଗଳିଲେ ଏ କିଛି ଗଣ୍ଡୁ ନାହିଁ ।
ବୁଦ୍ଧିମନ୍ତ ଲୋକେ ଛାଡ଼ନ୍ତି ଯେବେ କାମ
ତେବେ ସେ ବଳେଟି ହୁଅନ୍ତି ପୂର୍ଣ୍ଣକାମ ।
ଦ୍ରବ୍ୟରେ ତୃଷ୍ଣା କଲେ ଧର୍ମ ହୁଏ ଲୋପ
ପାପଟି ଘୋଟି ରହେ ବଢିଅ ଅମାପ ।
ଧର୍ମ ଇଚ୍ଛା କଲା ଲୋକଟି ମହାମତେ
ପୂଜା ପାଉଅଛି ହେ ରାଜନ ଜଗତେ ।
କାମକୁ ଅନୁସରି ଯେଉଁ ଲୋକ ଅର୍ଥ
ଇଚ୍ଛଇ ତାକୁ ଘେନି ଯାନ୍ତି ଜନ୍ତୁନାଥ ।
ଧର୍ମ କଲା ଲୋକକୁ ମାନି ଶଚୀପତି
ସ୍ୱର୍ଗ ଲୋକେ ବସାଇ ଆଦର କରନ୍ତି ।
ଧର୍ମହୀନ ଯେବେଟି ଆଚରଇ ଚିତ୍ତ
ତେବେ ହେଲେ ଜାଣ ନିକଟେ ହୋଏ ଅସ୍ତ ।
ତୁମ୍ଭେମାନେ ବେଦକୁ ପଢି ଯାଗ କରି
ଦେଇଛ ତ ପାତକ ଦେହରୁ ନିବାରି ।
ଏବେ ଏ ସୁକୃତକୁ ଜ୍ଞାତିଠାରେ କୋପ
ବଢାଇ କିପାଁ ବୃଥା କରୁଅଛ ଲୋପ ।
ଯେଉଁ ଲୋକ ସୁଖରେ ପଡ଼ି ଧର୍ମ ଛାଡେ
ସେହିଟି ଯାଇ ଦୁଃଖେ ନରକରେ ପଡ଼େ ।
ଦେହଟି ନାଶ ହେଲେ ପୁଣ୍ୟ ପାପକର୍ମ
ନାଶ ନୋହେ ଦେହ ହେଲେ ସେ ହୁଏ କର୍ମ ।
ଅମାବାସ୍ୟାଦିନ ଦ୍ୱିଜଙ୍କୁ ଅନ୍ନ ଦେଇ
ଉତ୍ତମ କର୍ମ ଅରଜିଛି ପାଞ୍ଚଭାଇ ।
ଯେତିକି କର୍ମ କରିଥିବ ଇହଲୋକ
ତେତିକି କରମ ଭୁଞ୍ଜିବ ପରଲୋକ ।
କ୍ରୋଧ ହୋଇ ଏବେ ନ ହୁଡ଼ ତ ରାଜନ
ମୋହର କହିବାର ଯେତେକ ବଚନ
ଯେବେଟି ତୁମ୍ଭେ ପାପ କରମ କରିବ
ବହୁତ ସୁକୃତେ ଜାଣ ତା ଛଡ଼ାଇବ ।
ପ୍ରଥମୁ ଯେବେ ତୁମ୍ଭେ ପାପକର୍ମା ହୋଇ
ଜନମିଥାନ୍ତ ଦୁଃଖ ସହନ୍ତ କିପାଇଁ ।

କପଟଖେଳେ ନେଲେ କୁରୁ ହରି ରାଜ୍ୟ
ରହିଲ କିପାଁ ସହି ନ ଭରି ଅଙ୍ଗେ ସଜ ।
କୃଷ୍ଣ ତୁଳେ ପାଞ୍ଚାଳେ ତୁମ୍ଭ ସାହା ହୋଇ
ଥିଲେ ସେ ଯୁଝନ୍ତେ ତ ଆସି ତୁମ୍ଭ ପାଇଁ ।
ଏ ବାହାରେ ଅନେକ ରାଜା ତ ତୁମ୍ଭର
ଶ୍ରେୟଟି ବାଞ୍ଛିଥିଲେ ବସି ନିରନ୍ତର ।
କେଉଁ କଥା ତୁମ୍ଭରେ ନୁହନ୍ତାଟି ସାଧ
କହ ତ କିପାଇଁ ନ କଲ ତେବେ ଯୁଦ୍ଧ ।
ଏବେ ବୋଲୁଅଛ କୁରୁଙ୍କୁ ଯୁଝିବାକୁ
ଏକଥା କିଛି ପାଉନାହିଁ ମୋ ମନକୁ ।
କୁରୁଏ ତ ଆସି ହେଲେଣି ବଦ୍ଧମୂଳ
ନାଶ କରବାକୁଟି ହୋଇବ ଅକଳ ।
ଯୁଦ୍ଧରେ ଜୟ ପରାଜୟ ଆଜଯାଏ
ନିଶ୍ଚୟ କାହାକୁ ଗୋଚର ଅଛି ରାୟେ ।
ତୁମ୍ଭର କୁରୁଙ୍କର ହେବ ଯେବେ ରଣ
ଯେ ହେଲେ ତ ଯାଇ ଭେଟିବ ଯମରାଣ
ପ୍ରଜା ନାଶ କରିବ କର୍ମ ଦଣ୍ଡଧାରୀ
ହେଲେ ଭଲ ହେଲା କି କହ ତ ବିଚାରି ।
ବ୍ୟାଧି ବିନା କ୍ରୋଧ ଦେହରେ ଜାତ ହୋଇ
ମୁଣ୍ଡକୁ ଆଗ ଥରେ ଦିଅଇ ବୁଲାଇ ।
ଏହା ଜାଣି ସାଧୁଏ କ୍ରୋଧକୁ ପକାଇ
ଥାଆନ୍ତି ଋଷିମାନଙ୍କର ବ୍ରତ ବହି ।
ପାପେ ଅନୁବନ୍ଧ କ୍ରୋଧ ଯେ କରେ ଲୋଡା
ସମସ୍ତେଟି ତାକୁ କହନ୍ତି ଘରବୁଡା ।
କ୍ଷମାଠାରୁ ଅଧିକ ହୋଇ ଗୁଣ ନାହିଁ
କ୍ଷମା ଛାଡି ଦିଅନ୍ତି ନିର୍ଗୁଣ ଯେ ଦେହୀ ।
ଦ୍ରୋଣ ଅଶ୍ୱତ୍ଥାମା ବିକର୍ଣ୍ଣ ଭୀଷ୍ମ କର୍ଣ୍ଣ
ଭୂରିଶ୍ରବା ଶଲ୍ୟ ଯେ କୃପ ଦୁର୍ଯ୍ୟୋଧନ ।
ବିବଂଶତି ଆଦି ଯେତେକ ମହାରଥି
ମାଇଲେ ନିତି ଦୁଃଖେ ଦେଉଥିବ ମନ୍ତି ।
ମାରି ଜ୍ଞାତିକୁଳ ପାଇଲେ ସାଗରାନ୍ତ
ପୃଥ୍ୱୀ ତୁମ୍ଭେର ସୁଖ କି ହେବ କହ ତ ।
ସୁଖ ଦୁଃଖପ୍ରିୟ ଅପ୍ରିୟ ତ ଜାଣୁଛ
ତୁମ୍ଭଙ୍କୁ କହିବି କିସ ହେ କୁନ୍ତିବତ୍ସ ।
ଯେ ଲୋକମାନଙ୍କୁ ପୋଷିବା ଇଚ୍ଛାକରି
ବସିଛ ଜ୍ଞାତିଙ୍କ ନେବାକୁ ପ୍ରାଣ ହରି ।

ସେ ଲୋକମାନଙ୍କୁ ଦେଇଣ ଧୃତରାଷ୍ଟ୍ର
ନୃପେ ତୁମ୍ଭେ ଯାଅ ବନକୁ ହୋଇ ହୃଷ୍ଟ ।
ଯୁଧିଷ୍ଠିର ବୋଇଲେ କର୍ମରେ ଧର୍ମ ବଡ଼
ଏଣୁ ଧର୍ମ ନୁହଇ କଦାଚିତେ ଛାଡ଼ ।
ମୁଁ ଯା କହୁଅଛି ତା ଶୁଣ ଦେଇ ମଜ୍ଜା
ପଛେ ନିନ୍ଦା କର ସଞ୍ଜୟ ମନ୍ତ୍ରୀରାଜା ।
ବିପତ୍ତିକାଳେ ଲୋକ କଲେ ତ ଅଧର୍ମ
ତାହାକୁ କେବେ ଛାଡ଼ି ନ ପାରଇ ଧର୍ମ ।
ଶାସ୍ତ୍ର ଲେଖିଅଛି ଯାଗରେ ପଶୁ ମୋଡ଼ି
ଖାଇବାକୁ ଅଗ୍ନିକୁଣ୍ଡର ମଧ୍ୟେ ପୋଡ଼ି ।
ବିଚାରିଲେ ଏକଥା ଅଟଇ ଅଧର୍ମ
ନ ଘେନି ଏହା ଲୋକେ କରନ୍ତି ସେ କର୍ମ
ଆମ୍ଭେ ଯେବେ କରିବୁଁ ଜ୍ଞାତିକି ସଂହାର
ଯାଗ କଲା ପରି ସେ ହୋଇବ ଆମ୍ଭର
ନିତ୍ୟକର୍ମ ହୋମେ କେବଳ ଧର୍ମ କଥା
କଉଣସି କାଳରେ ନୁହଇ ଅନ୍ୟଥା ।
ପଣ୍ଡିତଙ୍କ ବିନା ଏ କଥା କାହାରିକୁ
ଗୋଚର ନୁହଇ ସଞ୍ଜଇ ଜାଣିବାକୁ ।
ସମ୍ପତ୍ତିରେ ପ୍ରାଣୀକି ନ କରିବ ହିଂସା
ଜାଣିଛ ତ ସଞ୍ଜୟ ଏ ବେଦର ଭାଷା ।
ସେ ବେଦ ଲେଖୁଛି କୁଟୁମ୍ବ ପୋଷିବାକୁ
ବିପଦେ କରିବ ଅନ୍ୟାୟ ଆଚରକୁ ।
ଏହା ଜାଣି ବିପତ୍ତି-ଜଳ ତରିବାକୁ
ଲୋଡ଼ ଛୁଁ ଜ୍ଞାତିଙ୍କର ବିନାଶ-ଭେଳାକୁ ।
ଯାହାର ଯେ ବୃତ୍ତି ତା ଯେବେ ଲୋପ ହୁଏ
ପାପବୃତ୍ତି କରି ତା ରଖିବ ନିଶ୍ଚୟେ ।
ସୁଖୀ ଲୋକଟି ନ ଛାଡ଼ିବ ଧରମକୁ
ଦୁଃଖୀ ଲୋକ କଲେ ଅଧରମ କଥାକୁ ।
ସୁଖକାଳେ ଅଧିକ ଦାନ ବ୍ରତ କରି
ସେ ବଳେ ଦିଏ ସେ ଅଧର୍ମ ଦୂର କରି ।
ସମ୍ପତ୍ତିରେ ଅଧର୍ମ କରି ପ୍ରାୟଶ୍ଚିତ୍ତ
ଯେ କରୁଛି ତାର ନୁହଇ କିଛି ହିତ ।
ବିପତ୍ତି-ଅଧର୍ମକୁ ନାଶିବାକୁ ଜନ
ସମ୍ପତ୍ତିରେ କରିବ ବିତ୍ତକୁ ମୋଚନ ।
ସୁକର୍ମେ ଥାଇ କରି ବିକର୍ମକୁ କଲେ
ନିନ୍ଦାକୁ ସେହୁ ଯୋଗ୍ୟ ହୁଅଇଟି ଭଲେ ।

ସାଧୁ ଅସାଧୁକୁ କରଇ ଯେବେ ନାଶ
ତେବେ ତାର ତହିଁରେ ନାହିଁ ହତ୍ୟାଦୋଷ ।
ବାବୁ ଅକାକ୍ରମରେ ଅର୍ଜିଛନ୍ତି ରାଜ୍ୟ
ଆମ୍ଭେ ତା କେହି ଛାଡ଼ି ପାରିବୁଁଟି ଆଜ ।
ତିନିଲୋକ ସମ୍ପତ୍ତି ହେଲେ ଅଧର୍ମରେ
ଇଚ୍ଛା ନ କରଇଟି ସଞ୍ଜୟ ମନରେ ।
ଧର୍ମ ବ୍ରତ ବେଦ ଯେ ସାମଦାନ ଦଣ୍ଡ
ଏମାନଙ୍କେ ନିପୁଣ ଶ୍ରୀକୃଷ୍ଣଙ୍କ ପିଣ୍ଡ ।
ସେ ତ ବସିଅଛନ୍ତି ତୁମ୍ଭ ଆମ୍ଭ ପାଶେ
ମୋ କଥା ନ ହେଲା କି କହନ୍ତୁ ସେ ଭାଷେ ।
ଯଦୁମାନେ କୃଷ୍ଣଙ୍କଠାରୁ ଶିକ୍ଷା ପାଇ
ଦେଉଅଛନ୍ତି ସିନା ଶତ୍ରୁକୁଳ ଦହି ।
କୃଷ୍ଣଙ୍କୁ ବଳରେ ଯଦୁଙ୍କ ନାରରାଣ
ହୋଇଅଛନ୍ତି ଧର୍ମ କଥାରେ ପରାୟଣ ।
କୃଷ୍ଣଙ୍କୁ ସେବି ବଭ୍ରୁ କାଶୀନରପତି
ପାଇଲେ ମନେ କରିଥିବାର ସମ୍ପତ୍ତି ।
ଏଣୁ ମୁଁ ଜାଣୁଅଛି କର୍ମର ନିଶ୍ଚୟ
ଜାଣନ୍ତି କହନ୍ତୁ ଏ ଛାଡ଼ିଣ ସଂଶୟ ।
ଏହା ଶୁଣିଣ କୃଷ୍ଣ ବୋଇଲେ ସଞ୍ଜୟ
କହିବା ଯା ଶୁଣ ଦେଇଣ ହୃଦୟ ।
ପାଣ୍ଡବ କୁରୁଙ୍କ ହିତ ମୁଁ ନିରନ୍ତରେ
ବିଚାରୁଥାଏ ଏକା ମୋହର ଅନ୍ତରେ ।
ପାଣ୍ଡୁ ଯେ କୁରୁଙ୍କର ହୋଇଣ ହିତୈଷୀ
କହୁଛି ଆସିବାବେଳରୁ କଥା ବସି ।
ଯା ଘରେ ଦୁର୍ଯ୍ୟୋଧନ ପୁଅ ଅଛି ରହି
କେଉଁ କଳି ଅବା ତା ଘରେ ହେବ ନାହିଁ ।
ଯୁଧିଷ୍ଠିର ଯେତେକ କହିଲେ ବଚନ
କେତେକ ଘେନିବାକୁ ନ ପାଇଲା ମନ ।
ଯୁଧିଷ୍ଠି କୁଟୁମ୍ବ ପୋଷିବା ଇଚ୍ଛା କରି
ବାହାରୁଛନ୍ତି ଏବେ ଜ୍ଞାତିଙ୍କି ସଂହାରି ।
ତୁମ୍ଭେ ତାଙ୍କୁ ବସି କରୁଛ ପ୍ରବୋଧନା
ବିଚାରିଲେ ସକଳ ଅସାରହିଁ ସିନା ।
ସିଦ୍ଧି ବିଷୟରେ ଠ ନାନାଜାତି ମତ
ସମ୍ପାଦି କହିଛନ୍ତି ସକଳ ପଣ୍ଡିତ ।
କିଏ ବା ବୋଲନ୍ତି କର୍ମରୁ ହୁଏ ସିଦ୍ଧି
କେଉଁମାନେ ବୋଲନ୍ତି ଜ୍ଞାନଟି ପ୍ରସିଦ୍ଧି ।

ଯେଉଁ ବିଦ୍ୟାମାନେଟି ପଢ଼ାନ୍ତି କରମ
କରିବାର ତାହାହିଁ ଅଟଇ ଧରମ ।
ତୃଷାର୍ତ୍ତ ଲୋକ ଜଳ ପାନ କଲେ ସିନା
ତୃଷା ଶାନ୍ତି ହୁଏ ସଞ୍ଜୟ ମହାମନା ।
କର୍ମ ନ କରି ଯେହୁ ଜ୍ଞାନପକ୍ଷ ଭଲ
ବୋଲଇ ଜାଣ ସେହି ଲୋକଟି ଦୁର୍ବଳ ।
କର୍ମ ସକାଶରୁ ଯେ ହେଉଛି ପବନ
ସ୍ଥାବର ଜଙ୍ଗମରେ କରିଅଛି ସ୍ଥାନ ।
କରମର ବଳରେ ଛାୟାଦେବୀ ପତି ।
ପ୍ରକାଶ କରନ୍ତି ଜଗତେ ଦିନ ରାତି ।
ଚନ୍ଦ୍ର ମଧ୍ୟ କର୍ମବଳରେ ମାସ ପକ୍ଷ
ଜାତ କରୁଛନ୍ତି ମହୀରେ ଲକ୍ଷ ଲକ୍ଷ ।
କର୍ମବଳେ ଅଗ୍ନି ପ୍ରାଣୀଙ୍କ ଦେହେ ଥାଇ
ଦେଉଛନ୍ତି ଯେ ଯା ଖାଉଛି ତାହା ଦହି ।
କର୍ମବଳରେ ପୃଥ୍ୱୀ ବହିଛନ୍ତି ଭାର
ଦେଖୁଥାଇଁ ଆଖିରେ ବସି ସବୁ ନର ।
କର୍ମବଳେ ନଦୀଏ ପ୍ରାଣୀଙ୍କ ତୃପ୍ତି ପାଇଁ
ବହି ଯାଉଅଛନ୍ତି ଦୁଇକୂଳ ଖାଇ ।
କର୍ମବଳରେ ଇନ୍ଦ୍ର କରୁଛନ୍ତି ବୃଷ୍ଟି
ପାଳନା କରିବାକୁ ପୃଥ୍ୱୀ ପ୍ରଜାସୃଷ୍ଟି ।
କର୍ମବଳେ ଇନ୍ଦ୍ର ଦେବତାଙ୍କର ରାଜା
ହୋଇ କରି ପାଆନ୍ତି ତ୍ରିଜଗତେ ପୂଜା ।
ବୃହସ୍ପତି କର୍ମରେ ଦେବଗୁରୁ ହୋଇ
ଦେବଙ୍କ ମୁଣ୍ଡେ ପାଦ ଦିଅନ୍ତି ଲଗାଇ ।
କର୍ମବଳରେ ରୁଦ୍ର ଆଦିତ୍ୟ ନକ୍ଷତ୍ର
ବାସବ ବିଶ୍ୱଦେବ କୁବେର ମରୁତ ।
ଗନ୍ଧର୍ବ ଯକ୍ଷ ଶାଜା ଅପସରା
ପ୍ରକାଶି ଅଛନ୍ତିଟି ଯେ ଯାହାର ତୋରା ।
କରମ ବଳରେ ଋଷିଏ ପୂଜା ପାଇ
ରହିଛନ୍ତି ମହୀରେ ଚିରଜୀବୀ ହୋଇ ।
ତୁମ୍ଭେ ତ କର୍ମମାନ ଜାଣିଣ ଯୁଦ୍ଧକୁ
କହୁଛ କିମ୍ବା ନିନ୍ଦା କରି ବଚନକୁ ।
ବଳ ଥାଉଁ ଥାଉଁ ଛାଡ଼ ବୋଲିଣ ମହୀ
ପାଣ୍ଡବଙ୍କୁ ଏହା କହିବି କେହିଁ ମୁହିଁ ।
କ୍ଷତ୍ରିୟ କୁଳରେ ତ ହୋଇଛନ୍ତି ଜାତ
ଦଇବରେ ଯେବେ ହୋଇବେ ଯୁଦ୍ଧେ ମୃତ ।
ତେବେ ଏହାଙ୍କର ନୋହିବ କେଉଁ ଗତି
କହ ମୋତେ ଆହେ ସଞ୍ଜୟ ମହାମତି ।
ଚଉରି ବର୍ଣ୍ଣଙ୍କର କରମ ଆଗ ଶୁଣ
ପଛେ ନିନ୍ଦା ସ୍ତୁତିର ବଚନ ବଖାଣ ।
ବ୍ରାହ୍ମଣ ବେଦ ପଢି ଯାଗକୁ ବରିବ
ଏ ବାହାରେ ଯାଗ କରାଇ ପଢ଼ାଇବ ।
ପ୍ରତିଗ୍ରହ କରି ଲୋକଙ୍କୁ ଦେବ ଦାନ
ଏ ନୋହିଲେ ପାପରୁ ନୋହେ ଯେ ମୋଚନ
କ୍ଷତ୍ରିୟ ପ୍ରଜା ପାଳି ଦ୍ୱିଜେ ଦେବ ଦାନ
ଯାଗ କରି ବେଦ କରିବ ଅଧ୍ୟୟନ ।
ଯେଉଁମାନେ ଅଟନ୍ତ ବୈଶ୍ୟର ନନ୍ଦନ
କରିବେ ଅଧ୍ୟୟନ ପଶୁଙ୍କ ପାଳନ ।
ଏ ବାହାରେ ସେ କୃଷି ବାଣିଜ୍ୟ କରିବେ
ଯୁଗ ଆଦି ଧରମ କର୍ମ ଆଚରିବେ ।
ଶୁଦ୍ର ତିନିବର୍ଣ୍ଣ ପାଦରେ ଆଶ୍ରେ କରି
କେବଳ ନେଉଥିବ ରାତ୍ରି ଦିନ ହରି ।
ଚଉରି ବର୍ଣ୍ଣଙ୍କରେ ହୋଇବେ ଯେହୁ ରାଜା
ସେ ଧର୍ମ ବିଷୟରେ ଦେଇଥିବେ ମଜ୍ଜା ।
ଧରିକୁ ଜାଣିବାରେ ଯୁଧିଷ୍ଠିର ପରି
ରଜା ତ ଆଜଯାଏ ନାହିଁ ନେତ୍ରେ ହେରି ।
ଯେଉଁ ରାଜା ପର ଭୂମିରେ ଲୋଭ କରେ
ଯୁଦ୍ଧ ଗୋଡ଼ାଇଟି ଥାଏ ତାର ସଙ୍ଗରେ ।
ଶତ୍ରୁ ବଧ ପାଇଁ ଇନ୍ଦ୍ରାଦି ଦେବତାଏ
ବହିଥାନ୍ତି ଶସ୍ତ୍ର ଅସ୍ତ୍ରକୁ ତାଙ୍କ କାୟେ ।
ଚୋର ଲୋକେ ବଳ ଯେ କଳକୁ ସମ୍ପାଦି ।
ଅରଜନ୍ତି ଧନକୁ ହୋଇ ନିର୍ବିବାଦୀ ।
ଏ ଗୁଣ ଧୃତରାଷ୍ଟ୍ର ପୁଅଠାରେ ନାହିଁ
ବୋଲିକରି ସଞ୍ଜୟ ପାରିବକି କହି ।
ପାଣ୍ଡବମାନଙ୍କର ପଇତୃକ ଭାଗ ।
ହିରଛି ସେ ଏ କେହି ଛାଡ଼ବେଟି ଭାଗ
ସେ ସକାଶୁ ଯୁଧିଷ୍ଠିରଙ୍କୁ ଯୁଦ୍ଧ କରି
ବୋଲୁଛୁଁ ମରିବାର ବିଚର ଆମ୍ଭରି ।
ତୁମ୍ଭେ ଏବେ ମୋହର କହିବା ବଚନ
କହ ଯାଇ କୁରୁରାଜାଙ୍କ ସନ୍ନିଧାନ ।
ଦୁର୍ଯ୍ୟୋଧନ ବୋଲରେ ନୃପେ ହେଲେ ଗୋଟି
କହୁଛ ଯାହା ସେ ଯମଙ୍କୁ ଯିବେ ଭେଟି ।

ଦ୍ରୌପଦୀ ଦଣ୍ଡ ବୃକ୍ଷ ପାଣ୍ଡବ ହୃଦଭାଗ
ଭୂମିକି ପାଇ କ୍ରୋଧ ଜଳରେ ସରାଗ ।
ହୋଇକରି ବଢ଼ି ଅଛଇ କୁରୁକୁଳ
ନିର୍ମୂଳ କରିବ ଫଳିବ ଯେବେ ଫଳ ।
ଭୀଷ୍ମ ଦ୍ରୋଣ ବୁଢ଼ା ଯୋଡ଼ାଏ ଥାଇ କରି
ତୁନି ହେଲେ ଦୁର୍ଯ୍ୟୋଧନଙ୍କୁ ନ ଡିଆରି ।
ବିଧାତା ଆଣିକରି ଲେଖିଲାଣି ନାଶ
ଏତେବେଳେ ଆଉ ଭାବିଲେ ହେବ କିସ ।
ଦୁଃଶାସନ ସଭାରେ ଦ୍ରୌପଦୀଙ୍କି ଛିଡ଼ା
ଯେତେବେଳେ କଲା ଛାଡ଼ିଦେଇଣ ବ୍ରୀଡ଼ା
ତେତେବେଳେ ବିଦୁର ବିନା ତାଙ୍କ ପାଇଁ
ପଦେ କେ ନ କହିଲା ଧର୍ମ ପକ୍ଷ ହୋଇ ।
ଦୁର୍ଯ୍ୟୋଧନଠାରୁ ସମସ୍ତେ ଲାଞ୍ଚ ଖାଇ
ସେକାଳେ ତା ଦେଖି ରହିଲେ ତୁନି ହୋଇ
ଏବେ ତୁମ୍ଭେ ମରିବା କାଳ ଦେଖି ଆହା
ବୋଲିଣ ସିନା ବସି କହୁଅଛ ଏହା ।
କର୍ଣ୍ଣ ଦ୍ରୌପଦୀଙ୍କି ବୋଲିବାର ବଚନ
ଶର ହୋଇ ଭେଦିଛି ପାର୍ଥ ଅପଘନ ।
ଆଜଯାଏ ମଧ୍ୟ ରହିଛି ତାହା ଭେଦି
ବହୁଛ ବସି କେତେ ବୃଥା କଥା ବାଗି ।
ପାଣ୍ଡବଙ୍କୁ ଗାଳିଦେଇଣ ଦୁଃଶାସନ
ପିନ୍ଧାଇଲା ଆଣି ସେ ଅଜିନ ବସନ ।
ଶକୁନିର ଧିକାର ବଚନ-ପବନ
ଜାଳୁଛି ପାଣ୍ଡବଙ୍କ କୋପ-ହୁତାଶନ ।
ଏହା ଜାଣି ତୁମ୍ଭେ ଏଠାରେ ବାଇପରି
ତୁଚ୍ଛା ଶ୍ରମ ନ ପାଅ ବଚନ ଉଚ୍ଚାରି ।
ମୁହିଁ ମଧ୍ୟ ଥରେ କରି ଅଛଇଁ ଇଚ୍ଛା
ଦେଖିଯିବି ଯେ ବୋଲି ଅମ୍ବିକାଙ୍କର ବଚ୍ଛା
କୁରୁ ପାଣ୍ଡୁଙ୍କର କରାଇ ଦେଲେ ପ୍ରୀତି
ଜାଣୁଅଛି ମୁହିଁ ପାଇବି ବଡ଼ କୀର୍ତ୍ତି ।
ମୋ ବଚନ ଯେବେ ଘେନିବି କୁରୁରାଜା
ତେବେ ତାଙ୍କଠାରୁ ଘେନିବି ମୁହିଁ ପୂଜା ।
ମୋ ବଚନ ନ କଲେ ଭୀମ ଅରଜୁନ
ଶରେ ଆଙ୍କୁ ହାରିଲେ ଜାଣ ସେ ଜୀବନ ।
ସୁଯୋଧନ ଖେଳେ ବୋଲିବା ବଚନଙ୍କୁ
ଗଦାରେ ଭୀମ ସୁମରାଇବେ ତାହାଙ୍କୁ ।

ପାଣ୍ଡୁସୁତେ ଆଉ ଧୃତରାଷ୍ଟ୍ରଙ୍କ ସୁତେ
ବାଘବନ ପରି ମୁଁ ମଣୁଅଛି ଚିତ୍ତେ ।
ବାଘଙ୍କୁ ବନ ବିନା ନାହିଁ ପରିତ୍ରାଣ
ସେହିରୂପେ ବାଘ ବନର ଅଟେ ଜାଣ ।
କୁରୁ ଏ ତ ଅଟନ୍ତି ଲତାର ସଦୃଶ
ପାଣ୍ଡବ ମହାଦ୍ରୁମ ଛାଡ଼ି ଯିବେ ନାଶ ।
ପାଣ୍ଡୁସୁତେ ଧୃତରାଷ୍ଟ୍ରଙ୍କ ଭଲ ମନ୍ଦ
କଥାରେ ଅଛନ୍ତି ଭାବନ୍ତୁ ବସି ଅନ୍ଧ ।
ଧୃତରାଷ୍ଟ୍ର ଯେଉଁ କଥାଟି କରାଇବେ
ଜାଣ ତାହା ସଞ୍ଜୟ ପାଣ୍ଡବେ କରିବେ ।
ସଞ୍ଜୟ ବୋଇଲେ ହେ ନୃପ ଯୁଧିଷ୍ଠିର
ଅପ୍ରିୟ ତ କରିନାହିଁ ମୁହିଁ ତୁମ୍ଭର ।
ମୋହଠାରୁ ଏବେଟି ଛାଡ଼ିଦେଇ ଦୁଃଖ
ମେଲାଣି ଦିଅ ଯିବି ଘରେ ନରଶିଖ ।
ଏହା କହି ସଞ୍ଜୟ କୃଷ୍ଣଙ୍କୁ ଅନାଇଁ
ବୋଇଲେ ଆଜ୍ଞା ଦିଅ ଯାଉଅଛି ମୁହିଁ ।
ଯୁଧିଷ୍ଠିର ବୋଇଲେ ଯାଅ ହେ ସଞ୍ଜୟ
ଆମ୍ଭଠାରେ କିଛି ନ ଘେନିବ ଅପ୍ରିୟ ।
ଜାଣିବାରେ ତୁମ୍ଭ ପରି ତ ଅଟ ତୁମ୍ଭେ
ତୁମ୍ଭଙ୍କୁ ଆଉ କିସ ପ୍ରଶଂସିବୁ ଆମ୍ଭେ ।
ନ କହିବ ସୁଯୋଧନଙ୍କୁ କରି ରୁଟୁ
ଜପୁଥିବ କଥାଟି ହୋଇବାକୁ କଟୁ ।
ଧର୍ମଅର୍ଥଯୁତ ହୋଇଣ ପ୍ରତିଦିନ
ବାହାରୁଥାଏ ତୁମ୍ଭ ତୁଣ୍ଡରୁ ବଚନ ।
ଅର୍ଜ୍ଜୁନରୁ ତୁମ୍ଭରଠାରୁ ପ୍ରିୟ ହୋଇ
ଖୋଜିଲେ ଏ ମହୀରେ କେହି ଦିଶୁନାହିଁ ।
ସେ କଥା ଘେନିକରି ଉଚିତ ଯେ କଥା
କରିବଟି ନ କରି ଧର୍ମ ଅନ୍ୟ କଥା ।
ଦ୍ୱିଜବୃଦ୍ଧମାନଙ୍କୁ ଭିକ୍ଷୁକ ତୁଲରେ
କହିବ ନମସ୍କାର ମୋର ସରାଗରେ ।
ଧୃତରାଷ୍ଟ୍ର ରାଜାଙ୍କ ଯେତେ ପୁରୋହିତ
ତାହାଙ୍କୁ କହିବ ମୁଁ ହେଉଛି ପ୍ରଣତ ।
କୁରୁରାଜ୍ୟେ ଯେତକ ବଣିଜାରୁ ଛନ୍ତି
ତାଙ୍କୁ ସଙ୍ଖୋଳୁଛି କହିବ ମହାମତି ।
ଦ୍ରୋଣ ଦ୍ରୋଣି ଯେ କୃପ ତିନିଙ୍କି ମୋହର
କହିବ ପ୍ରଣାମ ସଞ୍ଜୟ ମନ୍ତ୍ରୀବର ।

ଭୀଷ୍ମଙ୍କର ପାଖକୁ ଯାଇ ତତକାଳେ
କହିବ ସଞ୍ଜୟ ପଡୁଛି ପାଦତଳେ ।
ବଡ଼ବାବୁ ଧୃତରାଷ୍ଟ୍ରଙ୍କୁ ତ ମୋହର
ପୁନଃପୁନଃ କରି କହିବ ନମସ୍କାର।
ଧୃତରାଷ୍ଟ୍ରଙ୍କର ପୁତ୍ରଙ୍କୁ ଯେ ବସାଇ
କହିବ ସଙ୍ଖୋଳୁଛି ବୋଲି ନରସାଇଁ।
ବୈଶ୍ୟପୁତ୍ର ଯୁଯୁତ୍ସୁଙ୍କୁ ମୋର ସଙ୍ଖୋଳା ।
କହିବ ସଞ୍ଜୟ ନ କରି କିଛି ହେଳା ।
ଶକୁନି ମାମୁଙ୍କୁ କହିବ ପଶାଖେଳ
ଅବଧି ସାରିଲେନି ପାଣ୍ଡୁ-ପଞ୍ଚବାଳ ।
ବାହ୍ଲିକ ସୋମଦତ୍ତ ଦୁହିଁଙ୍କୁ ନମସ୍କାର
କହିଣ ସଙ୍ଖୋଳିବା ଭୁରିଶ୍ରବା ବୀର ।
କୁରୁରେ ଯେ ତହିଁ କି ଯୋଗ୍ୟ ହେ ସଞ୍ଜୟ
ତାହାଙ୍କୁ ତାହା କହି ତୋଷିବ ହୃଦୟ ।
ବଶାତି ଶାଲ୍ୱକ ପ୍ରାଚ୍ୟ ଅମ୍ବଷ୍ଠ କେକୟ
ତ୍ରିଗର୍ତ୍ତ ଦାକ୍ଷିଣାତ୍ୟ ଉଦିଚ୍ୟ ପର୍ବତୀୟ ।
ପ୍ରତୀଚ୍ୟ ଆବନ୍ତ୍ୟାଦି ନୃପେ ଛନ୍ତି ଆସି
ଏହାଙ୍କୁ ମୋ ସଙ୍ଖୋଳା କହିବଟି ବସି ।
ହାତୀ ଘୋଡା ଚଢ଼ା ତୁଲରେ ପାଇକଙ୍କୁ
କହିବଟି ସଙ୍ଖୋଳା ବୋଲୁଛୁ ତୁମ୍ଭଙ୍କୁ ।
ଧୃତରାଷ୍ଟ୍ର ନୃପଙ୍କ ଯେତେକ ଦୁଆରୀ
ଆୟ ବ୍ୟୟ ଭଣ୍ଡାରେ ଯେତେ ଅଧିକାରୀ ।
ଯେତେ ରହିଛନ୍ତି ପାଖରେ ମନ୍ତ୍ରୀ ହୋଇ
ତାହାଙ୍କୁ ମୋ ସଙ୍ଖୋଳା କହିବଟି ଯାଇ ।
ଜିଣିବେ ପାଣ୍ଡବଙ୍କୁ ଯେ ଏକ ରଥରେ
ବୋଲନ୍ତି ସଙ୍ଖୋଳିବ ସେ କର୍ଣ୍ଣଙ୍କୁ ଥରେ ।
ବିଦୁରଙ୍କୁ ମୋହର ସଙ୍ଖୋଳାକୁ କହି
କହିବ ସୁଖେ ଛନ୍ତ ପାଣ୍ଡବ ପାଞ୍ଚଭାଇ ।
ଯେତେକ ମାତୃ ବର୍ଗ ଅଛନ୍ତି ଆମ୍ଭର
ତାଙ୍କୁ ତୁମ୍ଭେ ମଧ କହିବ ନମସ୍କାର ।
ଧୃତରାଷ୍ଟ୍ରଙ୍କର ଅଛନ୍ତି ଯେତେ ଦାସୀ
ତାଙ୍କୁ ସଙ୍ଖୋଳୁଛି କରିବ ହୋଇ ତୋଷୀ ।
ବଧୂମାନଙ୍କୁ ମୋ ସଙ୍ଖୋଳା କହି କରି
କହିବ ମୁଁ କହୁଛି ବୋଲିଣ ତିଆରି ।
ଝିଅଙ୍କୁ ସଙ୍ଖୋଳିଣ ନିକଟରେ ବର
ପ୍ରାପ୍ତ ହେବ ବୋଲି କହିବ ମନ୍ତ୍ରୀବର ।

ହସ୍ତିନାରେ ଯେତେ ଅଛନ୍ତି ବାରନାରୀ
ତାଙ୍କୁ କହିବଟି ସଙ୍ଖୋଳା ଡାକି କରି ।
ଛୋଟା କେମ୍ପା କୁଜା କାଲା ଯେ ବୁଢ଼ା ଅନ୍ଧ
ବାମନ ଜଡ଼ ଯାର ନାହିଁ କଥା ବୋଧ ।
ଏମାନଙ୍କୁ ମୋହର ସଙ୍ଖୋଳନା କହି
କହିବ ପୋଷିବେ ସେ ହେଲେ ନରସାଇଁ ।
ଧୃତରାଷ୍ଟ୍ର ରାଜାଙ୍କୁ କହିବ ମୁଁ ଦ୍ୱିଜଙ୍କୁ
ଦେବାର କରୁଛନ୍ତିଟିକି ପାଳନାକୁ ।
ଦୂତେ ତ ହସ୍ତିନାରୁ ହୋଇଥିବେ ଗୋଟି
ତାହାଙ୍କୁ କିହବଟି ମୋର ସଙ୍ଖୋଳାଟି ।
ସୁଯୋଧନଙ୍କର ଅଛି ଯେ ଯୋଦ୍ଧାଗଣ
ମୋର ଯୁଝିବାକୁ ଅଛନ୍ତି ଧର୍ମ ଜାଣ ।
ସୁଯୋଧନ ରାଜାଙ୍କୁ କହିବ ମନୋରଥ
କରୁଛ ଯେତେକ ନିକଟେ ହେବ ବ୍ୟର୍ଥ ।
ପାଣ୍ଡବଙ୍କୁ ଇନ୍ଦ୍ରପ୍ରସ୍ଥ ପୁରଟି ଦିଅ
ନୋହିଲେ ଖଣ୍ଡାବାନ୍ଧି ଯୁଦ୍ଧ ପାଇଁ ରହ ।
ବାଳକ ବୃଦ୍ଧ ଯୁବା ସାଧୁ ବା ଅସାଧୁ
କେହି ତରି ନାହାନ୍ତି ବିଧି ମାୟା-ସିନ୍ଧୁ।
ବିଧାତା ପଣ୍ଡିତକୁ କରୁଅଛି ମୂର୍ଖ
ମୂର୍ଖଙ୍କୁ କରୁଅଛି ପଣ୍ଡିତଙ୍କ ଶିଖ ।
ଯାଉଛ ତ କହିବ ମୋ ବଡ଼ ବାପାଙ୍କୁ
ତୁମ୍ଭ ଆର୍ଶୀବାଦରୁ ପାଣ୍ଡବେ ଦୁଃଖକୁ ।
ପଛକୁ ପକାଇଣ ମହାସୁଖ ପାଇ
ଉପପ୍ଲବ୍ୟ ଗଡ଼େ ଅଛନ୍ତି ପାଞ୍ଚଭାଇ ।
ବାଳକ ଦିନେ ତାଙ୍କୁ କରିଣ ଲାଳନା
ଦେଇଥିଲ ରାଜ୍ୟ ଅଧେ ହେ ମହାମନା ।
ଏବେ ତୁଛା ତାଙ୍କ ତୁଲରେ ନୁହ ବାଦୀ
ରଖ ହେ ଆଣି ତୁମ୍ଭ ପାଖରେ ସମ୍ପାଦି ।
ଏକାରେ ଜଣେ ପୃଥ୍ୱୀ ଖାଇ ତ ଅମର
ହୋଇ ନାହିଁ କାହିଁହେ ହସ୍ତିନା ଈଶ୍ୱର ।
ଏହିରୂପରେ ଧୃତରାଷ୍ଟ୍ରଙ୍କୁ ବତାଇ
କହିଟି ଦେବ କାମ କ୍ରୋଧକୁ ଛଡ଼ାଇ ।
ପିତାମହ ଭୀଷ୍ମଙ୍କୁ କରି ନମସ୍କାର
କହିବ ଏବେ ତୁମ୍ଭ କୁଳ ରକ୍ଷାକର ।
ପୂର୍ବରେ ତୁମ୍ଭ ଘେନି ବୃଦ୍ଧି ହେଲା କୁଳ
ଏବେ ତୁମ୍ଭେ ଥାଉଁ ହେଉଛି ସେ ନିର୍ମୂଳ ।

ଏଥିକି ଯେ ଉଚିତ ଧର୍ମ ତାହା କର
ନ କଲ ସରିଲାଟି କୁରୁଙ୍କ ସଂସାର ।
ବିଦୁରଙ୍କୁ କହିବ ଜିଇଁଛ ହୋଇ ବୃଦ୍ଧ
ହେଉଛି ଆସି କୁରୁ ପାଣ୍ଡବଙ୍କ ଯୁଦ୍ଧ ।
ପାଣ୍ଡବ କୁରୁଙ୍କର ହିତକାମୀ ହୋଇ
କହନ୍ତୁ କଥା ଅନ୍ଧରାଜାଙ୍କୁ ବୁଝାଇ ।
ସୁଯୋଧନରାଜାଙ୍କୁ କହିବ ବତାଇ
ନ କରୁ ଆମ୍ଭ ସଙ୍ଗେ ଯୁଦ୍ଧ ହୋଇ ବାଇ ।
ପୂର୍ବରେ ଭାଇବାତ୍ସଲ୍ୟରେ ତାର ଦୋଷ
ବହୁତ କ୍ଷମା କଲୁ ନକରି ତା ନାଶ ।
ଦୁଃଶାସନ ତୁମ୍ଭ ବୋଲରେ ବାଳ ଧରି
ଘେନିଗଲା ଦ୍ରୁପଦରାଜାଙ୍କ କୁମାରୀ ।
ଏ ବାହାରେ ଆମ୍ଭଙ୍କୁ ପିନ୍ଧାଇ ଅଜିନ
ଖେଉଦିଲା କହିଣ ନିଷ୍ଠୁର ବଚନ ।
ଏମାନେ ସବୁ ପାଣ୍ଡବଙ୍କ ଅପଘନ
ସହିଲା ନୋହୁ ବୋଲି କୁଳ ବିନାଶନ ।
ଏବେ ଧନ ଲୋଭକୁ ଛାଡ଼ିଣ ପୀରତି
କର ହେ କହିବ ସଞ୍ଜୟ ମହାମତି ।
ବାରଣାବନ୍ତ ଇନ୍ଦ୍ରପ୍ରସ୍ଥ କୁଶସ୍ଥଳୀ
ମାକନ୍ଦୀ ବୃକସ୍ଥଳ ଗ୍ରାମକୁ ନ ଭାଳି ।
ଆମ୍ଭଙ୍କୁ ଦେଇକରି ସୁଯୋଧନ ରାଜ
ବସିଣ ଭୋଗନ୍ତୁ ହସ୍ତନା ନାମ ରାଜ୍ୟ ।
ଏତେକ ଦେଲେ ତାଙ୍କ ଆମ୍ଭର ପୀରତି ।
ହୋଇବ କିମ୍ବା ଆଉ ପଡ଼ିବ ବିପତ୍ତି ।
କୁରୁ ପାଞ୍ଚାଳଙ୍କର ନୋହିବ ବିନାଶ
ଭାଜି ଯିବ ଯମଙ୍କ ହୃଦର ଉଲ୍ଲାସ ।
ତୁମ୍ଭେ ଅବା ବୋଲିବ ଡରିକରି ମୁହିଁ
କହୁଛି ସୁଯୋଧନ ନୃପେ ପ୍ରୀତି ପାଇଁ ।
ଯେଉଁ କଥା ସୁଯୋଧନର ସନମତ
ହେବ ମୁଁ ତା କରିବି ନୋହିଣ ନିସ୍ତ ।
ଏହା ଶୁଣି ସଞ୍ଜୟ ହୋଇଲେ ମେଲାଣି
ବୋଇଲେ କହିବି ଏରୂପେ ନରମଣି ।
କୁରୁପାଣ୍ଡୁ ସୁତଙ୍କୁ ଯାହା କୁଶବାହା
ଲେଖିଥିବ ନୃପ ହେବ ହେ ଜାଣ ତାହା ।



## ଧୃତରାଷ୍ଟ୍ରଙ୍କୁ ବିଦୁରଙ୍କ ଉପଦେଶ

ଆହେ ଜନମେଜୟ ଏ ରୂପରେ କହି
ସଞ୍ଜୟ ମନ୍ତ୍ରୀବର ରଥକୁ ଆରୋହି ।
ହସ୍ତିନା ସିଂହଦ୍ୱାରେ ହେଲେ ପରବେଶ
ରଥବରୁ ଓହ୍ଲାଇଲେ ମନ୍ତ୍ରୀ ବରଈଶ ।
ଦୁଆରିକୀ ବୋଇଲେ ରାଜାଙ୍କୁ ଜଣାଅ
ରହିଛନ୍ତି ଦ୍ୱାରେ ଗାବଲଗଣ ପୁଅ ।
ପୁଣିଟି ପାଣ୍ଡବଙ୍କଠାରୁ ବାର୍ତ୍ତା ଘେନି
ଆସିଛନ୍ତି ସେହୁ କହିବେ କରି ତୁନି ।
ଅନ୍ତଃପୁରରେ ନିଦ୍ରା ଯାଇଥିବ ଯେବେ
ଉଠାଇ ନ କହିବୁ ଏହା ତାଙ୍କୁ କେବେ ।
ଏହା ଶୁଣି ଦୁଆରୀ ହୋଇ ଅତି ହୃଷ୍ଟ
ଚପଳେ ଗଲା ଯହିଁ ଥିଲେ ଧୃତରାଷ୍ଟ୍ର ।
କହିଲା ପାଣ୍ଡବଙ୍କ ବାର୍ତ୍ତା ଘେନିକରି
ଦ୍ୱାରେ ରହିଛନ୍ତି ସଞ୍ଜୟ ଦଣ୍ଡଧାରୀ ।
ଧୃତରାଷ୍ଟ୍ର ବୋଇଲେ ସଞ୍ଜୟକୁ ମୋର
ଅସମୟ ଅଛି କି କଲୁ ତୁ ଗୋଚର ।
ସେକ୍ଷଣି ଦୁଆରୀ ସଞ୍ଜୟ ପାଶେ ଯାଇ ।
ଭେଟାଇଲା ଯେ ଧୃତରାଷ୍ଟ୍ର ନରସାଇଁ ।
ସଞ୍ଜୟ ଧୃତରାଷ୍ଟ୍ରଙ୍କର ଧରି ପାଦ
ନମିଲେ ଉଚ୍ଚାରିଣ ନିଜ ନାମ ପଦ ।
କହିଲେ ଯୁଧିଷ୍ଠିର କରି ନମସ୍କାର
ସଙ୍ଖୋଳିଛନ୍ତି ତୁମ୍ଭଙ୍କୁ ହେ ନରବର ।
ଏ ବାହାରେ ତୁମର ପୁତ୍ର ନାତି ଲୋକ
ମାନଙ୍କୁ କହିଛନ୍ତି ସଙ୍ଖୋଳା ଅନେକ ।
ଧୃତରାଷ୍ଟ୍ର ବୋଇଲେ ପାଣ୍ଡୁଙ୍କ କୁମରେ
ରହିଛନ୍ତି ସୁଖେ କି କହ ମୋ ଆଗରେ ।
ସଞ୍ଜୟ ବୋଇଲେ ହେ ଯୁଧିଷ୍ଠିର ରାଜା
ଭାଇଙ୍କ ତୁଲେ ଛନ୍ତି ମୋଦ କରି ମଜା ।
ତୁମ୍ଭର ଯେ ରୂପେ ପ୍ରୀତିରେ ଅଛି ମନ
ତାହାଙ୍କ ସେହିରୂପେ ଜାଣ ହେ ରାଜନ ।
ଯୁଧିଷ୍ଠିରଙ୍କର ତ ଧରମର ବୃଦ୍ଧି
ହେବାରୁ ଅଧରମ ହେଉନାହିଁ ବୃଦ୍ଧି ।
ତ୍ରିଲୋକ ଜିଣିବା ସାମର୍ଥ୍ୟ ପାଣ୍ଡବଙ୍କ
ଥିଲେ ଯେ ଅଧରମ ପାଇଁ ସେ ଆତଙ୍କ ।

ପାଞ୍ଚଖଣ୍ଡ ଗ୍ରାମ ତୁମ୍ଭଙ୍କୁ ମାଗିଛନ୍ତି
ଦେଲେ ଆସି ରହିବେ ସେବି ତୁମ୍ଭ କତି ।
ତୁମ୍ଭ ତାଙ୍କର ରୀତି ମୁଁ ନୟନେ ହେରି
ବିଚାରୁଛି ଦଇବ ବଡ଼ ବୋଲି କରି ।
ତୁମର ରଖିଣ ସିନା ସେ ଓଜ ତେଜ
ଅଜାତଶତ୍ରୁ ମାଗୁଛନ୍ତି ଅଧେ ରାଜ୍ୟ ।
କାତିଛଡା ସର୍ପ ପରାଏ ଯୁଧିଷ୍ଠିର
ହୋଇଛନ୍ତି ନିଷ୍ପାପ ବିଶୁଦ୍ଧ ଶରୀର ।
ଆହେ ନୃପ ତୁମ୍ଭର କଥା ଭଲ ପରି
ମୋତେ ଲାଗୁନାହିଁ ହେ ଜାଣି ଶୁଣି କରି ।
ଇହଲୋକରେ ନିନ୍ଦା ପରଲୋକେ ନାଶ
ଅରଜୁ ଅଛ ବସି କରିଣ ସାହସ ।
ପାଣ୍ଡବଙ୍କୁ ଛାଡ଼ିବାରୁ ତୁମ୍ଭର ଧନ
ନିକଟରେ ନାଶ ହେବ ଆହେ ରାଜନ ।
ତୁମ୍ଭଙ୍କୁ ଲୋକେ ବସି କରୁଛନ୍ତି ନିନ୍ଦା
ତେବେ ନ ଛାଡୁଛ କପଟ ଧନ ଫନ୍ଦା ।
ହୀନବୀର୍ଯ୍ୟ ଲୋକ ଯେ ବିପତ୍ତି ତରିଛି
ବୋଲିବାର ଥାଉ କାନ ତ ନ ଶୁଣିଛି ।
ଯେଉଁ ଲୋକ କୁଳରେ ହୋଇକରି ଜାତ
ଧରମ କଥାଟିରେ ଦେଇଥିବ ଚିତ୍ତ ।
ସେ ଏକା ବିପତ୍ତି-ବାରିକି ସେହି ବଳେ
ତରିଯାଏ ସିନା ହେ ନୃପବର ହେଳେ ।
ଧରମ ଜାଣିଥିବା ଲୋକର ନୃଶଂସ
କର୍ମ କଥା କେବେ ନ କରେ ହୃଦେ ବାସ ।
ତୁମ୍ଭ ମନ୍ତ୍ରୀମାନେ ପାପରେ ମେଲି ଗଳ
କୁଳକ୍ଷୟ ହେବାକୁ ଲୋଡ଼ିଲେଣି କାଳ ।
ପାଣ୍ଡବେ ଯେବେ ତୁମ୍ଭ ପାପେ ଥାନ୍ତେ ମଜ୍ଜି
ତେବେ ଯମ ତୁମ୍ଭର ପୋଛିଥାନ୍ତେ ପାଞ୍ଜି ।
ଦେବତା ଏ ତୁମ୍ଭ ନାଶ ହେବା ପାଇଁ
ଶିଖାଇଲେ ଅସ୍ତ୍ର ପାର୍ଥଙ୍କୁ ସ୍ୱର୍ଗେ ନେଇ ।
ବଳିରାଜା ଦେଖ କାଳରେ ବଶ ହୋଇ
ରହିଲେ ଘର କରି ପାତାଳରେ ଯାଇ ।
ଏବେ ହେ ନରଈଶ କାଳକୁ ଅନାଇଁ
ବିଚାର କର କିସ କହିବି ବୁଝାଇ ।
ଜ୍ଞାନେନ୍ଦ୍ରିୟମାନଙ୍କୁ କରିଛି ଯେ ସଂଯତ
ଦୁଃଖ ତା ଦେହରେ ନ ପାରେ ହୋଇ ସ୍ଥିତ
ଜନମ ହେଲା ବାଳକକୁ ବିହି ଯାହା
ଆହାର ଦେଇଥାଏ ବଢ଼ି ଖାଏ ତାହା ।
ତାହା ବଳରେ ନିକି ପାରଇ ସେ ବଢି
ଏଣୁ ମୁଁ ଭାବେ ସବୁ ଦୈବ କଳା ପ୍ରୌଢ଼ି ।
ସୁଖ ଦୁଃଖ ସ୍ତୁତି ଯେ ନିନ୍ଦା ଦଇବର
ଆୟତ୍ତରେ ଭୋଗ କରୁଅଛନ୍ତି ନର ।
ତା ଜାଣି ନ ପାରିଛନ୍ତି ନିନ୍ଦା ବନ୍ଦା
କରନ୍ତି ଏଣୁ ଦୋଷ ଗୁଣ ଦୁଇ ଫନ୍ଦା ।
ଆହେ ନରବର କୁରୁଙ୍କର ଆତଙ୍କ
ତୁମ୍ଭେ କରି ହେବଟି କୁଳକୁ କଳଙ୍କ ।
ପାପୀ ଦୁର୍ଯ୍ୟୋଧନର ବଶ ହୋଇକରି
ଖେଳଜିଣା ବିତ୍ତ ମଣିଲ ହିତ ପରି ।
ତହିଁରୁ ଯେଉଁ ଫଳ ପାଇବ ନୃବର
ଜାଣିବ ନେତ୍ରନୀର ହୋଇବ ଅସର ।
ପରଲୋକ ବଳରେ ନିଜ ଲୋକ ନାଶ
କରିବାରୁ ଜାଣ ରହିବ ନାହିଁ ବଂଶ ।
ଆଜି ମୁଁ ବଡ଼ ଶ୍ରାନ୍ତ ହୋଇଛି ନୃସାଇଁ
ଆଜ୍ଞାଦେଲେ ଗୃହରେ ଶୋଇବି ମୁଁ ଯାଇ ।
କାଲି ସକାଳରେ ସଭାରେ ମୁଁ କୁରୁଙ୍କୁ
କହିବି ପାଣ୍ଡବଙ୍କ କହିବା କଥାକୁ ।
ଧୃତରାଷ୍ଟ୍ର ବୋଇଲେ ଘରେ ଆଜି ଯାଅ
କାଲି ଯା କହିବ ଶୁଣିବେ ସବୁ ପୁଅ ।
ଏହାଶୁଣି ସଞ୍ଜୟ ନମସ୍କାର କଲେ
ଘରକୁ ଯାଇ ଭାତ ଭୁଞ୍ଜିଣ ଶୋଇଲେ ।
ଧୃତରାଷ୍ଟ୍ର ନୃପତି ଦ୍ୱାରିକୀ ଡକାଇ
ବୋଇଲେ ବିଦୁରଙ୍କୁ ଡାକିଆଣ ଯାଇ ।
ଦୁଆରୀ ସେକ୍ଷଣି କହିଲା ବିଦୁରଙ୍କୁ
ଲୋଡୁଛନ୍ତି ରାଜା ତୁମ୍ଭଙ୍କୁ ଦେଖିବାକୁ ।
ବିଦୁର ତାହା ଶୁଣି ଆସିଣ ସତ୍ୱରେ
ଛିଡ଼ା ହେଲେ ଧୃତରାଷ୍ଟ୍ରଙ୍କର ଦୁଆରେ ।
ଦୁଆରିକୀ ବୋଇଲେ ମୋର ଆସିବାର
ରାଜାଙ୍କ ଛାମୁରେ ତୁ କରଯା ଗୋଚର ।
ଏହା ଶୁଣି ଦୁଆରୀ ନୃପ ପାଶେ ଗଲା
ବିଦୁର ଦ୍ୱାରେ ଆସିଛନ୍ତି ଜଣାଇଲା ।
ଧୃତରାଷ୍ଟ୍ର ବୋଇଲେ ବିଦୁର ଦୁଆରେ
କିମ୍ପା ରହିଅଛନ୍ତି ଆସନ୍ତୁ ବେଗରେ ।

କାଳ ଅକାଳ ଯେ ବିଦୁର ଆସିବାକୁ
ମୋହର ନାହିଁ ତୁଚ୍ଛା ନ କହ ଆମ୍ଭଙ୍କୁ ।
ଦୁଆରୀ ନୃପବାଣୀ ଶୁଣି ବିଦୁରଙ୍କୁ
ବୋଲେ ତୁମ୍ଭ ଘେନି ପାଇଲି ପ୍ରାଭବଙ୍କୁ ।
ବିଳମ୍ବ ନ କରିଣ ନୃପ ପାଶେ ଯାଇ
ବସ ଆହେ ବିଦୁର ମନେ ତୋଷ କହି ।
ଏହା ଶୁଣି ବିଦୁର ନୃପ ପାଶେ ଗଲେ
ମୁହିଁ ବିଦୁର ବୋଲି ନମସ୍କାର କଲେ ।
କାହିଁପାଇଁ ମୋତେ ଡାକୁଛ ନରମଣି
କହିଲେ ତାହା ମୁହିଁ କରିବି ଏକ୍ଷଣି ।
ଧୃତରାଷ୍ଟ୍ର ବୋଇଲେ ସଞ୍ଜୟ ପାଣ୍ଡବଙ୍କ
ବାରତା କହି ବଢ଼ାଇଲେ ମୋ ଆତଙ୍କ ।
ଏ ବାହାରେ ମଧ୍ୟ ବହୁତ ନିନ୍ଦା କଲେ
ପୁଣି କାଲି ଆସିଣ କହିବି ବୋଇଲେ ।
ଯୁଧିଷ୍ଠିର କହିବା କଥା ସବୁ ମୋତେ
ଗୋଚର ତ ନାହିଁ ବିଦୁର ମହାମତେ ।
ଏ ସକାଶୁ ଆଖିରୁ ଛାଡ଼ିଗଲା ନିଦ
ହୃଦୟରେ କିମ୍ପାଇ ହୋଇବ ପ୍ରମୋଦ ।
ତୁମ୍ଭେ ତ ଧର୍ମ ଅର୍ଥ କଥାରେ ଚତୁର
କହ ମୋତେ ଆଶ୍ୱସ୍ତ ହୋଇବା ବିଚାର ।
ବିଦୁର ବୋଇଲେ ହେ କହୁଅଛ ଯାହା
ତହିଁକି ଯା କହିବି ଶୁଣ ଏବେ ତାହା ।
ବଳୀୟାର ଲୋକ ତୁଳରେ ଗୋଳ କଲେ
ନିଦ ନ ମାଡ଼ଇ ରାଜନ ଜାଣ ଭଲେ ।
ବ୍ୟାଧି ଘେନି ଦୁର୍ବଳ ହେଲେ ଦୁଇ ଆଖି
ଅବିଚ୍ଛିନ୍ନରେ ଥାଏ ନିଦ୍ରାକୁ ଉପେକ୍ଷି ।
ଅଡାଏ ଭିଆଇଲେ କରଇ ଭୋଜନ
ସେ ଘେନି ବସିଥାଏ ଚିଆଇଁ ନୟନ ।
ଯେଉଁ ଲୋକର ଆହେ ଦ୍ରବ୍ୟ ହଜିଥାଏ
ନିଦ୍ରାଯୋଗ୍ୟ କେବେ ସେ ନୁହଇଟି ରାୟେ
ଚୋରାଇବା ବୃତ୍ତି ଯା ହୃଦେ କରେ ବସା
ବୁଲିବାରେ ନୟନ ନୁହେ ତାର କଷା ।
କାମୁକ ଲୋକେ କାମିନୀଙ୍କ ସଙ୍ଗେ ମାତି
ନ ଜାଣଇଁ ପାହି ଯିବାର ସେହୁ ରାତି ।
ତୁମ୍ଭେ ତ କରିଅଛ ଜଗତବିଜୟୀ
ପାଣ୍ଡବଙ୍କୁ ଜିଣିବା ଇଚ୍ଛା ନରସାଇଁ ।

ଧର୍ମରୁ ତ ବୁଦ୍ଧିକୁ କରିଦେଲେ ବଣା
ଏଣୁ ତୁମ୍ଭ ବଳଟି ହୋଇଗଲା ଊଣା
ଭୀଷ୍ମ ଦ୍ରୋଣ ତୁମ୍ଭର ହୋଇଣ ସହାୟ
ଭାବୁଛନ୍ତି ପାଣ୍ଡବମାନଙ୍କର ଜୟ ।
କପଟେ ପରଧନ ଆପଣାର କରି
ବୋଲାଉଛ ମହୀମଣ୍ଡଳେ ଦଣ୍ଡଧାରୀ ।
ପରରାଜ୍ୟ କାମୁକ ହୋଇଣ ସନ୍ତତ ।
ଦିନକୁ ହରୁଛ ଅମ୍ବିକାଦେବୀ ସୁତ ।
ଏତେ ଦୋଷ ଗୋଡ଼ାଇଛନ୍ତି ତୁମ୍ଭ ସଙ୍ଗେ
ନିଦ୍ରା କାହିଁ ପ୍ରବେଶ ହେବ ତୁମ୍ଭ ଅଙ୍ଗେ ।
ମନ୍ଦ ଛାଡିଣ ଭଲ କଥା ଯେ କରଇ
ପଣ୍ଡିତ ବୋଲି ତାକୁ ରାଜନଟି କହି ।
କ୍ରୋଧ ହର୍ଷ ଗର୍ବ ଲଜ୍ଜାରୁ ଯେଉଁମାନେ
ନିବର୍ତ୍ତ ଥାନ୍ତି ତାଙ୍କୁ ପ୍ରଶଂସନ୍ତି ଜନେ ।
ଯାହାର ବିଚାରକୁ ନ ଜାଣନ୍ତି କେହି
ତାହାକୁଟି ଜାଣିବାର ହେ ବୋଲି କହି ।
ପୁଣ୍ୟକଥା କଷ୍ଟ ପାଇଣ କରି ଭ୍ରଷ୍ଟ ।
ନ କରେ ଯେ ତାକୁଟି ବୋଲି ନରଶ୍ରେଷ୍ଠ ।
ଯାହାର ବୁଦ୍ଧି ଧର୍ମ ଅର୍ଥେ ଥାଏ ରହି
ତାହାର ନିନ୍ଦାଭାଗ କେବେହେଁ ନୁହଇ ।
ଜାଣିବା ଲୋକମାନେ ଯଥାଶକ୍ତି କଥା
କରୁଥାନ୍ତି ମାନିଣ ଧରମ ବ୍ୟବସ୍ଥା ।
ଅଳପକେ ବୁଝଇ ବହୁ ଯେ ଶୁଣଇ
ପଣ୍ଡିତ ବୋଲିକରି ନୃପ ତାଙ୍କୁ କହି ।
ଦୁଃଖ ପାଇଲା ଯହୁଁ ନ ପାରନ୍ତି ମୋହ ।
ଧର୍ମ ଛାଡି ନ ପାରଇଟି ତାଙ୍କ ଦେହ ।
ଯେ ଯାହା ଆରମ୍ଭେ ତା ଯେବେ କରେ ଶେଷ
ଭାଗ୍ୟବନ୍ତରେ ସେହୁ ହୁଅଇ ପ୍ରକାଶ ।
ସମ୍ପତ୍ତି ଇଚ୍ଛା କରି ସୂର୍ଯ୍ୟଙ୍କୁ ପୂଜଇ ।
କହିଲେ ହିତ ତା ଘେନଇ ମନ ଦେଇ ।
ଏପରି ଯେଉଁ ଲୋକ ଅଛିଟି ରାଜନ ।
ନରଙ୍କରେ ଦେବତା ପରି ସେହୁ ଜାଣ ।
ଟେକାଟେକି କରିଲେ ନ ଫୁଲଇ ଫୁଲି ।
ଅନାଦର କଲେଟି ନ ବସଇ ଭାଲି ।
ସବୁ ଲୋକଙ୍କର ଉପାୟ ତତ୍ତ୍ୱ ଜାଣେ ।
ନିଶ୍ଚୟ କରି କଥା କହଇ ବଚନେ ।

ତରିକି କରି ସବୁ ବିଷୟ ଜାଣଇ
କଥାକୁ ଅନୁରୂପ ଉତ୍ତର ଦିଅଇ ।
ଦେଖିବାକ୍ଷଣି ପୋଥି ପାରେ କରି ଅର୍ଥ
ଏରୂପ ଲୋକକୁ ନ ଛାଡ଼େ ପୁରୁଷାର୍ଥ ।
ଯାର ବୁଦ୍ଧି ଶାସ୍ତ୍ରକୁ ଅନୁଗତ ହୁଏ
ତାହାକୁ ଭଲ ବୋଲି ବୋଲନ୍ତି ସଭିଏ ।
ଦରିଦ୍ର ହୋଇ ଭୋଗ କରୁଥିବ ଇଚ୍ଛା
ବସିଥିବ ଅବିଚ୍ଛିନ୍ନରେ ଘରେ ତୁଚ୍ଛା ।
ଆପଣା ଦ୍ରବ୍ୟ ନାଶ କରି ପର ଦ୍ରବ୍ୟ
ନୟନରେ ଦେଖି ବଢାଉଥାଏ ଲୋଭ ।
ମିତ୍ରଲୋକଙ୍କଠାରେ ମିଥ୍ୟା କହି
ନୋହିବା କଥାଟିରେ ଥାଏ ମନ ଦେଇ ।
ହେବ ଯାହା ତହିଁରେ କରଇ ଆଳସ୍ୟ
ବଳୀୟାର ଲୋକଠାରେ କରଇ ଦୋଷ ।
ଶତ୍ରୁଙ୍କୁ ଘେନି ସଙ୍ଗେ ବିଚ୍ଛର କରଇ
ନିନ୍ଦିତ କର୍ମଯାକ ଲୋଡ଼ିଣ ଆଣଇ ।
ଯେଉଁ କଥା ମନରେ ଥାଇଟି ବିଚ୍ଛରି
ସବୁ ଲୋକଯାକେ ତା କହଇ ଉଚ୍ଚାରି ।
ପ୍ରତି କଥାମାନଙ୍କେ ସଂଶୟକୁ ବହି
ଅଚିରେ ହେବା କଥା ଚିତ୍ତରେ କରଇ ।
ପିତୃଶ୍ରାଦ୍ଧ ନ କରି ଛାଡ଼େ ଦେବପୂଜା
ଜୁଆ ବେଶ୍ୟା ଦୁଇରେ ବୁଡ଼ାଇଥାଇ ମଜ୍ଜା ।
ଅନାହୁତ ହୋଇ ଆସଇ ସେ ସଭାକୁ
ନ ପଚ୍ଛରୁଣୁ କେହି କହଇ କଥାକୁ ।
ଅବିଶ୍ୱାସୀଲୋକଙ୍କୁ କରଇ ବିଶ୍ୱାସ
ଆପଣା ଦୋଷ ଛାଡି ଘେନେ ପରଦୋଷ ।
ନ ପାରି ବଳେ ତୁଣ୍ଡେ କରୁଥାଏ ଗୋଳ
ନୋହିବା କଥାଯାକ କରିମନେ ଠୁଳ ।
ଦୁଷ୍ଟ ଲୋକମାନଙ୍କୁ ଶିକ୍ଷା ଦେଉଥାଏ
ଶୂନ୍ୟ ସ୍ଥାନରେ ଏକୁଟିଆ ହୋଇ ରହେ ।
କୁରୁପଣ ଲୋକେ ସହାୟ କରି ପାଇ
ସମ୍ପାଦଇ ପର ବିପତ୍ତି ତୋଷ ବହି ।
ଏତେ ଦୋଷ ବୁହାଇଥାନ୍ତି ଯେ ଦେହକୁ
ମୂର୍ଖ ବୋଲି ଜାଣିବ ସେ ଜନମାନଙ୍କୁ ।
ଲୋକଙ୍କୁ ନ ଦେଇ ଯେ ଭଲ ପିନ୍ଧେ ଖାଏ
ନାସ୍ତିକରେ ଗଣନା ହୁଅଇ ସେ ରାୟେ ।

କୁଟୁମ୍ବ ପୋଷିବାକୁ ଜଣେ ପାପକରି
ଅରଜୁଥାଏ ଧନ କିଛି ନ ବିଚ୍ଛରି ।
ଖାଇବାଲୋକର ନୁହଇ କିଛି ପାପ
ଅରଜୁଥିବା ଲୋକ ପାପେ ହୁଏ ଲୋପ ।
କାଣ୍ଡଟିଏ ବାଜିଲେ ମରଇ ଗୋଟିଏ
ବୁଦ୍ଧି ପ୍ରୟୋଗରେ ସମୂଳେ ନାଶ ଯାଏ ।
ଏକା ବୁଦ୍ଧି ଘେନି କାରଣ ଅକାରଯ
ବିଚ୍ଛରିଲେ ହୁଏ ହେ ଧୃତରାଷ୍ଟ୍ରରାଜ ।
ଶତ୍ରୁ ମିତ୍ର ଉଦାସୀନଙ୍କୁ ସାମ ଦାନ
ଭେଦ ଦଣ୍ଡ ବୁଦ୍ଧିରେ କରିବ ଅଧୀନ ।
ଯେ ନୃପତି ହେବ ସେ ପାଞ୍ଚ ଇନ୍ଦ୍ରିୟଙ୍କୁ
ଜିଣିଲେ ସୁଖେ ଭୋଗ କରେ ମଣ୍ଡଳକୁ ।
ଏହା ବାହାରେ କେତେବେଳେ ସେ ବିଗ୍ରହ
କରି କେତେବେଳେ କହିବ ବହି ସ୍ନେହ ।
ଶତ୍ରୁମାନଙ୍କର ଦୁର୍ବଳ ଦଶା ବୁଝି
ବାହାରିବ ସୈନ୍ୟ ସଙ୍ଗତେ ଘେନି ଯୁଝି ।
ଆପଣାର ବଳନ ପାଉଥିବ ଯେବେ
ତୁନି ଯେ ହୋଇ ବସିଥିବ ଘରେ ତେବେ ।
ବଳୀୟାର ଶତ୍ରୁ ଯୋଡ଼ାଏ ଉପସ୍ଥିତ
ହୋଇଲେ ବୋଧୁଥିବ ଦୁହିଙ୍କର ଚିତ୍ତ ।
ରୂପ ରସ ଗନ୍ଧ ଯେ ସ୍ପର୍ଶ ଶବ୍ଦ ଜିଣି
ମିତ୍ର କୋଷ ରାଷ୍ଟ୍ର ତ ଦୁର୍ଗ ବଳ ଜାଣି ।
ସ୍ତିରୀ ଜୁଆ ମୃଗୟା ନିଷ୍ଠୁର ବଚନ
ଉଗ୍ରଦଣ୍ଡ ଅର୍ଥଦୂଷଣ ମଦ୍ୟପାନ ।
ଏ ସାତ କଥା ଯେବେ ଛାଡ଼ିଥାଏ ରାଜା
ଜୀବନ ଥିବାଯାକ ପାଉଥାଏ ପୂଜା ।
କାର୍ଯ୍ୟ ନୋହୁ ବିଚ୍ଛର ହୋଇଲେ ପ୍ରକାଶ
ରାଜ୍ୟ ତୁଲେ ରାଜା ଅବଶ୍ୟ ଯାଏ ନାଶ ।
ଏକା ହୋଇ ସ୍ୱାଦୁ ପଦାର୍ଥ ନ ଖାଇବ
ଖାଇବ ଯେବେ ମହାପାତକ ଅର୍ଜିବ ।
ନୁହଇ ତ ଜଣକୁ ସମସ୍ତ ଗୋଚର
ଏକା ହୋଇ ଭାଳିଲେ ହୁଏ ମରିବାର ।
ଏକା ହୋଇ ବାଟ ଚ୍ଛଲଇ ଯେ ନିଃଶଙ୍କେ
ତା ଭଲ ମନ୍ଦ ବାର୍ତ୍ତା ନ ପାଆନ୍ତି ଲୋକେ ।
ଏକାକୀ ବହୁତ ଶୋଇବାଠାରେ ବସି
ଥିଲେ ହୁଅଇଟି ସେ ନର ଚ୍ଛେର ଦୋଷୀ ।

ସତ୍ୟବ୍ରହ୍ମ ସଂସାର-ସମୁଦ୍ର ନାବ
ତାହା ତ ଛାଡିଦେଲେ କିରୂପେ ତରିବ ।
କ୍ଷମା କଲା ଲୋକଙ୍କୁ ବୋଲନ୍ତି ଅଶକ୍ତି
ବିଚାରିଲେ ସେ କଥା ଧର୍ମରେ ନିୟତ ।
କ୍ଷମାକୁ ଯେଉଁ ଲୋକ ଦୂର କରିଅଛି
ସବୁବେଳେ ଜାଣ ସେ ମରଣ ଲୋଡ଼ିଛି ।
ଧର୍ମ କ୍ଷମା ବିଦ୍ୟା ଯେ ଅହିଂସା ଚାରୋଟି
ଏକା ହୋଇ ଯା ଠାରେ ପ୍ରବର୍ତ୍ତି ଅଛିଟି ।
ତାହାରିଟି ରାଜନ କଦାଚିତେ ଦୁଃଖ
କରାଇ ନ ପାରଇ ହୃଦକ ବିମୁଖ ।
ବ୍ରାହ୍ମଣର ତୀର୍ଥଗମନ କ୍ଷତ୍ରିୟର
ଯୁଦ୍ଧ ଏକା ବୃତ୍ତି ହେ ଜାଣ ନରବର ।
ଅସାଧୁକୁ ମାନିବା ବହିବା ନିଷ୍ଠୁର
ଲୋକର ଜୀଇବାର ବ୍ୟର୍ଥ ନରବର ।
ସ୍ତିରୀ ଯେବେ କାମୁକ ଲୋକଙ୍କୁ କାମରେ
କଥା କହେ ପୂଜା କରେ ସେ ସକାମରେ ।
ପୂଜିତ ଲୋକଙ୍କୁ ଯେ କରଇଟି ପୂଜା
ସେ ତାକୁ ପ୍ରଶଂସଇ ମୋଦକରି ମଜ୍ଜା ।
ନ ଥାଇ ଦ୍ରବ୍ୟ କରୁଥାଏ ଯେ କାମନା
ସେ ଶୀର୍ଣ୍ଣ ହୋଏ ଜାଣ ଧୃତରାଷ୍ଟ୍ରନନା ।
ଅନୀଶ୍ୱର ହୋଇ ଯେ ଈଶ୍ୱର ପରି କ୍ରୋଧ
କରୁଥାଏ ସେ ଦୋଷେ ହୁଅଇ ସେ ବଧ ।
ପ୍ରଭୁ ହୋଇଣ ଯେବେ କରୁଥିବ କ୍ଷମା
ଅଲଭ୍ୟରେ ତାକୁ ମିଳଇ ସ୍ୱର୍ଗସୀମା ।
ଅଡ଼ାଏ ଭିଆଇ ଯେ ମୁଠାଏ ଦିଅଇ
ସ୍ୱର୍ଗ ତାର ସଙ୍ଗତେ ଥାଇଟି ଗୋଡ଼ାଇ ।
ନ୍ୟାୟଧନ ଅପାତ୍ରେ ଦେଇ ଯେ ପାତ୍ରରେ
ନ ଦିଏ ସେ ଯାଇ ପଡ଼ଇ ନରକରେ ।
ଉତ୍ତମ ମଧ୍ୟମ ଅଧମ ଏ ତିନୋଟି
ନ୍ୟାୟ ଏଜଗତରେ ପ୍ରବର୍ତ୍ତି ଅଛିଟି ।
ଏହିରୂପରେ ତିନି ପ୍ରକାର ପୁରୁଷ
ଏହି ଜଗତେ ହୋଇଛନ୍ତି ପରକାଶ ।
ଉତ୍ତମକୁ ଉତ୍ତମ ମଧ୍ୟମେ ମଧ୍ୟମ
ଅଧମେ ଅଧମ କଥାରେ ନୃପୋତ୍ତମ ।
ନିଯୁକତ କଲେ ହୁଅଇ କାର୍ଯ୍ୟସିଦ୍ଧି
ଏକଥା ମଧ୍ୟ ଜାଣ ନୀତିଶାସ୍ତ୍ରବିଧି ।
ଭାରିଯା ପୁଅ ଦାସ ଯାହାରଟି ଅଛି
ତାଙ୍କର ଧନଯାକ ତାହାର ହେଉଛି ।
ପରଧନ ପର ନାରୀ ଯେ ହରେ ରାଯେ
ଜାଣ ତାର ହୃଦଯେ ଭୟ ରହିଥାଏ
ଏ ବାହାରେ ସୁହୃଦ କରଇ ଯେ ତ୍ୟାଗ
ସେ ତ ପଡ଼େ ଯାଇ ଭୟର ମୁଖଭାଗ ।
କାମ କ୍ରୋଧ ଭୟ ତିନିହେଁ ନରକକୁ
ଦୁଆର ବୋଲିକରି ଆଣ ହେ ମନକୁ ।
ଯେ ଯାହାକୁ ଭଜିଣ ରହିଥାଏ ନୃପ
ସେ ତାକୁ ତ୍ୟାଗ କଲେ ହୁଏ ଧର୍ମଲୋପ ।
ପୁତ୍ର ରାଜ୍ୟ ଯେ ବର ପ୍ରାପତିର ସମ
ଅଟଇ ଶତ୍ରୁଭୟୁଁ ମୁକ୍ତି ନୃପୋତ୍ତମ ।
ଅଳ୍ପବୁଦ୍ଧି ମଠୁଆ ଅଳସ ସ୍ତୁତିକାର
ଏ ଚାରିଙ୍କ ତୁଲେ ନ କରିବ ବିଚାର ।
ଜ୍ଞାତି ଯେବେ ବୁଢା ହୋଇବ ନରସାଇଁ
ଘରେ ରଖି ପୋଷିବ ତାହାକୁ ବସାଇ ।
କୁଳୀନ ଲୋକ ଯେବେ ପାଇଯିବ ଦୁଃଖ
ଧନ ବଳେ ତାହାର ବଢ଼ାଇବ ସୁଖ ।
ଦୁଃଖୀ ହେଲେ ସଖା ତା ପ୍ରତି ମନେ ଯୋଖା
କରି ତାକୁ ପୋଷିବ ଦେଇଣ ଅଲେଖା ।
ପୁତ୍ରହୀନ ବିଧବା ଭଗିନୀକି ଘରେ
ରଖିଣ ପୋଷିବ ରାଜନ ନିରନ୍ତରେ ।
ଦେବତାଏ ସନ୍ତୋଷ ହୁଅନ୍ତି ଯାହାକୁ
ତାହାର ହୁଏ ଜାଣ ଯଶ ତତ୍କାଳକୁ ।
ବୁଦ୍ଧି ମନ୍ତ୍ରମାନଙ୍କଠାରୁ ଯେ ବିଚାର
ଜାଣିଛି ତା ଫଳ ରାଜନ ନ ପଚାର ।
ଉତ୍ତମ ଗୁରୁଠାରୁ ବିଦ୍ୟା ଯେ ଶିଖିଛି
ତା ହାକୁଟି ଆଦର ନ ପାରେ ମୁରୁଛି ।
ପାପକର୍ମ ଲୋପକୁ କରଇ ଯେ ନାଶ
ସେ ସକାଶୁଁ ସ୍ୱର୍ଗରେ ହୁଅଇ ତା ବାସ ।
ପିତା ମାତା ଗୁରୁ ଅଗ୍ନି ଯେ ଆତମାକୁ
କରିବ ପୂଜା ବିହି ଲେଖିଛି ନରଙ୍କୁ ।
ଦେବ ପିତୃ ମନୁଷ୍ୟ ଭିକ୍ଷ ଅତିଥିଙ୍କି
ଯେ ପୂଜେ ପାତକ ନ ଆସେ କତିକି ।
ଅମିତ୍ର ମିତ୍ର ଉପଜୀବ୍ୟ ଉପଜୀବୀ
ମଧ୍ୟସ୍ଥ ଆଦି ଏ ନୃପଙ୍କୁ ଥାନ୍ତି ସେବି ।

ସେ ସକାଶୁ ସବୁବେଳରେ ଜାଗରୁକ
ହୋଇଥିବ ଯେ ଅବନୀନାୟକ ।
ପଞ୍ଚ ଇନ୍ଦ୍ରିୟରୁ ଗୋଟିଏ ଯେବେ ବଶ୍ୟ
ନୁହେ ତେବେ ଆସି ଉପୁଜେ ଜ୍ଞାନନାଶ।
ନିଦ୍ରା ତନ୍ଦ୍ରା ଆଳସ୍ୟ ଦୀର୍ଘ ସୂତ୍ର ଭୟ
କ୍ରୋଧ ଏହି ଛଅଙ୍କୁ ଛାଡ଼ିବ ହୃଦୟ ।
ଯେଉଁ ଆଚାର୍ଯ୍ୟଟି ନ ପାରୁଥିବ କହି
ତାହାଙ୍କୁ ଘେନି ପାଠ ବିଚାରିବ ନାହିଁ ।
ନ ପଢ଼ି ବେଦ ଦ୍ୱିଜ ଯାଗରେ ଋତ୍ୱିଜ
ହେଲେ ଫଳ ନାହିଁ ହେ ଜାଣ ମହାରାଜ ।
ପ୍ରଭୁ ହୋଇଣ ବରତନକୁ ନ ଦେଲେ
ନିନ୍ଦା ଟି ନାହିଁ ତା ପାଶରୁ ଛାଡ଼ିଗଲେ ।
କଟୁଭାଷୀ ଭାର୍ଯ୍ୟା ମୁହଁ ଯେ ଚାହୁଁ ନାହିଁ
ଭାର୍ଯ୍ୟାଛଡ଼ା ଦୋଷଟି ତାହାର ନୁହଇ ।
ଗଉଡ଼ ଯେବେ ଗ୍ରାମଇଚ୍ଛା ନିରନ୍ତରେ
କରିବ ଗାଈ ନ ରଖାଇବ ତାଠାରେ ।
ଭଣ୍ଡାରୀ ବୃତ୍ତି ଛାଡ଼ି ବନକୁ କାମନା ।
କଲେ ତାହାକୁ କରାଇବ ସେବା ମନା ।
ସତ୍ୟ ଦାନ ଅନସୂୟା ଯେ କ୍ଷମା ଧୃତି
ପରିଶ୍ରମ ମିଶି ଏ ଛଅଟି ବୋଲାନ୍ତି ।
ଏହା ଯେଉଁ ଲୋକଟି ନିତି ଆଚରଇ
ଜାଣିବ ତାହାଠାରୁ ବଡ଼ କେହି ନାହିଁ ।
ସେବା ଗୋ ଯଜ୍ଞ ବିଦ୍ୟା ଭାର୍ଯ୍ୟା କୃଷି ଦିନେ
ନ ଚାହିଁଲେ ନାଶ ଯାଆନ୍ତିଟି ବଦନେ ।
ଶିଷ୍ୟମାନେ ବିଦ୍ୟା ଉତ୍ତମ କରି ଶିଖି
ଯାଆନ୍ତି ଗୁରୁଙ୍କର ପାଶକୁ ଉପେକ୍ଷି ।
କୃତଦାର ହୋଇଲେ ମାତାକୁ ଆଦର
ନ କରନ୍ତି ସଂସାରେ ଛନ୍ତି ଯେତେ ନର ।
ସୁରତ ଶେଷେ ନବ ଅବଳାକୁ ଛାଡ଼ି
ପଡୁଅଛନ୍ତି ଶୋଇ ହୋଇ ଘୋଡ଼ିଘାଡ଼ି ।
ଆରମ୍ଭିବା କଥା ହୁଅଇ ଯେବେ ସିଦ୍ଧ
ତେବେ ଛାଡି ଦିଅନ୍ତି ଉପାୟରୁ ସଧ ।
ନଦୀ ପାରି ହୋଇବା ଉତ୍ତାରେ ନାବକୁ
ନ କରନ୍ତି କେହି ନୃପତି ଆଦରକୁ।
ରୋଗମୁକ୍ତ ହେଲେ ବୈଦ୍ୟକୁ ଆଦରଣା
କଥାଟି କରି ଦେଉଅଛନ୍ତିଟି ଊଣା ।

ଆରୋଗ୍ୟ ଅଋଣୀତ୍ୱ ନିର୍ଭୟେ ନିବାସ
ସାଧୁସଙ୍ଗେ ସ୍ୱାଧୀନ ବୃତ୍ତି ଅପ୍ରବାସ ।
ନରମାନଙ୍କର ଅଟଇ ଏହା ସୁଖ
ଜାଣ ଆହେ ହସ୍ତିନା ନରଙ୍କର ଶିଖ ।
ଦ୍ୱେଷୀ ଅସନ୍ତୁଷ୍ଟ ନିତ୍ୟଶଙ୍କିତ କ୍ରୋଧନ
ପରଭାଗ୍ୟୋପଜୀବୀ ଘୃଣାଯୁକ୍ତ ଜନ ।
ଏ ଲୋକଟି ମହତ ଦୁଃଖକୁ ପାଆନ୍ତି
ସଂଶୟ ନ କର ହେ ମୋ କଥାରେ ମତି ।
ନିତ୍ୟଆୟ ଅଧୀନପୁତ୍ର ଅରୋଗିତା
ଅର୍ଥକାରୀବିଦ୍ୟା ପ୍ରିୟବାଦିନୀ କାନ୍ତା ।
ସେ ପ୍ରିୟକାରିଣୀ ଏ ଛଅ ପ୍ରାଣୀଙ୍କର
ଅଟଇଟି ରାଜନ ମହାସୁଖକର ।
ପାଞ୍ଚ ଜ୍ଞାନଇନ୍ଦ୍ରିୟଙ୍କୁ ଯେ ମନ ତୁଲେ
ଆୟତ୍ତ କରିଛି ସେ ଜାଣ ଅଛି ଭଲେ ।
ଅସାବଧାନ ହୋଇଥାନ୍ତି ଯେତେ ଜନ
ଚୋର ତାଙ୍କଠାରୁ ସାରନ୍ତି ନେଇ ଧନ ।
ବ୍ୟାଧି ଯାର ଦେହରେ ହୋଇଥାଏ ଗୋଟି
ଜୀଇଁବାକୁ ବଇଦେ ତାଙ୍କ ଥାନ୍ତି ଘୋଟି ।
କାମକୁ ଲୋକକୁଟି ରସାଇ ଗଣିକା
ଜୀଇଁବାକୁ କରଇ ସୁରତ ଜୀବିକା ।
ଯାଗ କଲେ ଯାଜକେ ଅରଜିଣ ଧନ
କରନ୍ତି କୁଟୁମ୍ବର ସେ ପରିପୋଷଣ ।
ରାଜା ରାଜ୍ୟ ଯେବେ କରନ୍ତି ଲୋକେ କଳି
ତେବେ ସେ ରାଜା ହୁଏ ଜାଣ ଧନଶାଳୀ ।
ମୂର୍ଖ ଲୋକ ମେଳେ ବସିଲେ ବୁଧଜନ
ଦେଖାଇ ଶାସ୍ତ୍ର କହି ଅରଜଇ ଧନ ।
ଜୁଆଖିରି ମୃଗୟା ଉଗ୍ରଦଣ୍ଡ ପାନ
ପରଧନ ହରଣ ନିଷ୍ଠୁର ବଚନ ।
ଏହି ସାତୋଟି କଥା ରାଜା ଯେବେ କରେ
ବିନାଶ ଲଭଇଟି ଅଳପ କାଳରେ ।
ଯେଉଁ ଲୋକର ନାଶ ଉପସ୍ଥିତ ହୁଏ
ବ୍ରାହ୍ମଣଙ୍କୁ ଦ୍ୱେଷଟି ଆଗ କରେ ରାଏ ।
ବ୍ରାହ୍ମଣର ତୁଲରେ କରଇ ବିରୋଧ
ଦ୍ରବ୍ୟ ହରି ମାରିବାକୁ କରଇ ସଧ ।
ବ୍ରାହ୍ମଣର ନିନ୍ଦା ପଡ଼ିଲେ ହୃଷ୍ଟ ହୁଏ
ଦ୍ୱିଜର ପ୍ରଶଂସା ପଡ଼ିଲେ ନ ଯୋଗାଏ ।

ମଙ୍ଗଳ କର୍ମ ଯେବେ ପଡ଼ଇ ତା ଲୋଡ଼ା
ନ ବରଇ ଦ୍ୱିଜଙ୍କୁ ଛାଡ଼ିଦେଇ ବ୍ରୀଡା ।
ବ୍ରାହ୍ମଣ ଯେବେ ଆସି ମାଗଇ ତାହାକୁ
ତେବେ ତୁଣ୍ଡରେ ବୋଲେ ନ ଦେବି ତୁମ୍ଭଙ୍କୁ ।
ମିତ୍ରସମାଗମ ପୁତ୍ରର ଆଲିଙ୍ଗନ
ସମ୍ଭୋଗ ପ୍ରିୟାଳାପ ସଭାରେ ପୂଜନ ।
ଧନାଗମ କୁଳଶ୍ରେଷ୍ଠତା ଇଷ୍ଟ ଲାଭ
ଏମାନ ଯାର ଅଛି ସେ ବଡ଼ ଦୁର୍ଲ୍ଲଭ ।
ଦମ ପ୍ରଜ୍ଞା ଶାସ୍ତ୍ରଜ୍ଞାନ ଯେ କୁଳୀନତା
ବାଗ୍ମିତ୍ୱ ପରାକ୍ରମ ଦାନ କୃତଜ୍ଞତା ।
ଏ ଆଠଗୁଣ ଯେଉଁ ଲୋକ ଦେହେ ଥାଏ
ଇହ ପର ଦୁଇରେ ବଢଇ ସେ ରାଯେ ।
ଦୁଇ ଶ୍ରୋତ୍ର ନେତ୍ର ନାସିକା ଗୁହ ମୁଖ
ଉପସ୍ଥ ଘେନି ନବଦ୍ୱାର ନବଶିଖ ।
ମଧ୍ୟରେ ବାତ ପିତ୍ତ କଫ ତିନି ଖମ୍ବ
ରହିଅଛି ଯେ ହୋଇ କରିଣ ଆରମ୍ଭ ।
ମହୀ ଜଳ ତେଜ ପବନ ଯେ ଆକାଶ
ଅଟଇ ସେ ଘରର ଝଳର ସଦୃଶ ।
ଜୀବନ ସେହି ଘରକୁ ପାଇ ରହିଅଛି
ତାହା ଯେ ଜାଣୁଅଛି ମୋହିତ ନୋହୁଛି
ପ୍ରମତ୍ତ ମତ୍ତ ଶ୍ରାନ୍ତ ଉନ୍ମତ୍ତ ବୁଭୁକ୍ଷିତ
କ୍ରୁଦ୍ଧ ତ୍ୱରାନ୍ୱିତ ଯେ ଲୁବ୍‌ଧକାମୀ ଭୀତ ।
ଏ ଦଶ ଜନ ଧର୍ମ ନ ଜାଣନ୍ତି କିଛି
ଅଧର୍ମ ଯେତେକ ଲୋଡ଼ନ୍ତି ବାଛି ବାଛି ।
ପୂର୍ବକାଳେ ସୁଧନ୍ୱା ପୁତ୍ରେ କହିଥିଲେ
ଯାହା ମୁଁ ତା ଏବେ କହୁଛି ଶୁଣ ଭଲେ ।
ଯେଉଁ ନୃପତି କାମ କ୍ରୋଧ ଦୁଇ ଛାଡି
ଉତ୍ତମ ପାତ୍ରେ ଦେଉଥାଏ ହରଘଡି ।
ସବୁ କଥାମାନଙ୍କ କଥା ଅନୁସରି
ହୋଇଥାଏ ସବୁ ବିଷୟେ କ୍ଷିପ୍ରକାରୀ ।
ସେହି ରାଜନକୁଟି ଲୋକେ ପ୍ରଶଂସନ୍ତି
ପଡ଼ିଲେ କଥା ତାକୁ ଦୃଷ୍ଟାନ୍ତ ଦିଅନ୍ତି ।
ଲୋକମାନଙ୍କର ଯେ ବିଶ୍ୱାସ ଯିବାର
ଉପାୟକୁ କରୁଣ ଥିବ ନିରନ୍ତର ।
ଦୋଷକୁ ଜାଣି କରି ମାରୁଥିବ ଦଣ୍ଡେ
ନ୍ୟାୟ କ୍ଷମା ଦୁଇଟି ଘେନି କରି ପିଣ୍ଡେ ।
କାର୍ଯ୍ୟ ଯେ ଅକାରଣ ଦୁହିଁଙ୍କ ଜାଣିମ
ଏରୂପେ ହେଲେ ନୃପ ହୁଏ ନୃପୋତ୍ତମ ।
ଦୁର୍ବଳ ହୋଇଥିବା ଶତ୍ରୁଠାରେ ହେଳା
କଲେ କାଟଇଟି ସେ ପୁଣି ଆସି ଗଳା ।
ଶତ୍ରୁ ଯେବେଟି ହୋଇଥିବ ବଳୀୟାର
ବଞ୍ଚାଉଥିବ ତାକୁ ବାକ୍ୟେ ନିରନ୍ତର ।
ବଳିଆର ତୁଲରେ ବିରୋଧ ଯେ କରେ
ଆଗ ହୋଇ ବସଇ ଯମଙ୍କ ନଗରେ ।
କାଳରେ ପରାକ୍ରମ କରେ ଯେଉଁ ନର
ଜୟଲକ୍ଷ୍ମୀ ବଳେ ତ ହୁଅଇ ତାହାର ।
ଦୁଃଖ ସହିଣ ଉଦ୍‌ଯୋଗ ଯେ କରଇ
କାଳରେ ଶତ୍ରୁ ଜିଣି ବୋଲାଏ ବିଜୟୀ ।
କାର୍ଯ୍ୟ ବିନା ଯେ ନର କରେ ପରବାସ
ନ ବସଇଟି ପାପୀ ଲୋକଙ୍କର ପାଶ ।
ପରସ୍ତିରୀମାନଙ୍କୁ ନ କରେ ଧର୍ଷଣା
କପଟରେ ବୁଦ୍ଧି ତ କରିଥାଏ ଊଣା ।
ମଦ୍ୟପାନ ଜୁଆ ଚୋରୀ ଏହି ତିନି କଥା
ପଡିଲେ ହୃଦେ ଘେନୁଥାଏ ମହାବ୍ୟଥା ।
ଏତେକ ଗୁଣ ଥିବା ଲୋକ ଇହଲୋକେ
କଦାଚିତେ ରାଜନ ନ ପଡଇ ଶୋକେ ।
ଦମ୍ଭରେ ଧର୍ମ ଅର୍ଥ କାମ ନ କରିବ
କଲେ ଫଳ ନ ପାଇ ନରକେ ପଡ଼ିବ ।
ପୁଛିବାକୁ ଯେବେ ଡାକିବେ ସାକ୍ଷୀ କରି
ଯା ଜାଣିଥିବ ତା କହିବ ସତ୍ୟକରି ।
ଅଳ୍ପ କଥା ପାଇଁକି ଛାଡ଼ିବ ବିବାଦ
କଲେ ସେ ଘେନି ଆସି ପଡ଼ଇ ପ୍ରମାଦ ।
ନ ପାଇଲେଟି ଲୋକଠାରୁ ସମ୍ଭାବନା
ଯେ ପଣ୍ଡିତ ହେବ ନୋହିବ କୋପମନା ।
ଯେଉଁ ଲୋକ ଲୋକକୁ ନ କରେ ଈରିଷା
ତାହାକୁଟି ସମସ୍ତେ କରନ୍ତି ପ୍ରଶଂସା ।
ଯେଉଁ ଲୋକ ଉଦ୍ଧତ ହୋଇ ବେଗ ନୋହେ
ମୁଁ ବଡ ବୋଲି କରି ଗରବ ନ ବହେ ।
ନ କହଇ ବଚନରେ ଯେ କରି କଟୁ
କହିଲେ ଶୁଭୁଥାଇ ତାହା ଅତି ଚଟୁ ।
ସେହିଟି ଜଗତରେ ସର୍ବଜନପ୍ରିୟ
ହୁଅଇ ହେ ଅମ୍ବିକାଦେବୀଙ୍କ ତନୟ ।

ଯେଉଁ ଲୋକ ଜାଣ କରଇ ନ ବଢାଏ
ଦୀନ ହେଲେ ଶୋକେ ନ କରେ ଶୀର୍ଣ୍ଣ କାୟେ
ପାଇଲେ ସୁଖ ମନେ ନ ହୁଏ ପ୍ରହୃଷ୍ଟ
ପରଦୁଃଖେ ଦୁଃଖକୁ ମଣୁଥାଏ ପୁଷ୍ଟ ।
ଦେଇ କରିଣ ପଛେ ନ କରଇ ତାପ
ଆପଣା ସ୍ତୁତି ପଦ କରିଥାଏ ଲୋପ ।
ତାହାକୁଟି ଆର୍ଯ୍ୟଶୀଳ ବୋଲିଣ କହି
ଆହେ ନରବର ସନ୍ଦେହ ଏଥି ନାହିଁ ।
ଦେଶାଚାର କୁଳଉଚିତ ଧର୍ମ ଜାଣି
ଯେ ଅଛି ତାକୁ ନ ଘାଟଇ ଦୁଃଖଶ୍ରେଣୀ ।
ପାପକୃତ୍ୟ ରାଜବିଦ୍ୱେଷ ଯେ ମତ୍ସର
ଦମ୍ଭ ମୋହ ଯେ ଖଚ ସମୂହବଇର ।
ଦୁର୍ଜନ ଉନମତ୍ତ ମତ୍ତ ତୁଳେ ବାଦ
ଏମାନ କଲା ଲୋକ ଲଭଇ ବିପଦ ।
ଇନ୍ଦ୍ରିୟଜୟ ଶୌଚ ମାଙ୍ଗଲ୍ୟ ଦେବପୂଜା
ପ୍ରାୟଶ୍ଚିତଧର୍ମରେ ଦେଇଥାଏ ମଜ୍ଜା ।
ବାହାର ବୃଦ୍ଧି ଦେବତାଏ ପାଞ୍ଚୁଥାନ୍ତି
କହିବାକୁ ଏଥି କି ଅଛି ନରପତି ।
ସମାନ ଲୋକ ତୁଳେ ବିବାହ ସମ୍ବନ୍ଧ
ସଖ୍ୟ ଯେ କରୁଅଛି ସଦା ତାର ମୋଦ
ଗୁଣବନ୍ତ ଲୋକେ ଆଦର ଯେ କରଇ
ମତିମନ୍ତ ବୋଲିଣ ତାହାକୁଟି କହି ।
ଆଶ୍ରିତଙ୍କୁ ଦେଇଣ ଭୁଞ୍ଜିବ ଅଳପ
କ୍ଷଣେ ଶୋଇ ଛାଡ଼ିବ ଶୟନତଳପ ।
ଶତ୍ରୁ ଲୋକ ମାଗିଲେ ନିର୍ମଳରେ ଧନ
ଗଣିଦେଉଥିବଟି ନୋହିଣ ବିମନ ।
ଏରୂପେ ଯେଉଁ ଲୋକ ଏ ସଂସାରେ ଅଛି
ବିପତ୍ତି ତାହାକୁଟି ଗ୍ରାସି ନ ପାରୁଛି ।
ଯାହାର ବିଚାରକୁ ନ ଜାଣନ୍ତି କେହି
ଏ ମହୀରେ ପ୍ରଶଂସା ଲଭଇଟି ସେହି ।
ପରହିତ କର୍ମ କଲେ ସେ ପାଏ ଲଜ୍ଜା
ତାହାକୁଟି ସମସ୍ତେ କରୁଥାନ୍ତି ପୂଜା ।
ପାଣ୍ଡୁରାଜା ବନେ ପାଞ୍ଚୋଟି ପୁଅ ଜାତ
କରି ଦୈବଯୋଗରେ ହୋଇଗଲେ ମୃତ ।
ଭାଇସ୍ନେହରେ ପୁତୁରାଙ୍କୁ ରଖି ଘରେ
ପାଳନା କଲେ ପୁତ୍ର ପରାୟେ ସ୍ନେହରେ ।
ଏବେ ତୁମ୍ଭେ ଆଜ୍ଞାକୁ ଚାହିଁ ସେ ଅଛନ୍ତି
ତାଙ୍କୁ ଆଣି ପାଖରେ ରଖ ହେ ନୃପତି ।
ଦେବ ନର ଉରଗମାନଙ୍କେ ଅଧର୍ଷଣ
ତାଙ୍କ ବଳରେଟି ହୋଇବ ତୁମ୍ଭେ ଜାଣ ।
ଏହା ଶୁଣିଣ ଧୃତରାଷ୍ଟ୍ର ନରପତି ।
ବୋଇଲେ ଆଉ କହ ବିଦୁର ସୁମତି ।
ଏ ରାତିରେ ନିଦ୍ରା ତ ନୋହିବ ସର୍ବଥା
ଏଣୁ ମୁଁ ବୋଲିଛି ଶୁଣିବି ତୁମ୍ଭ କଥା ।
ଯୁଧିଷ୍ଠିରଙ୍କର ମନକୁ ଯୋଗାଇବ
ଆମ୍ଭର କୁଳଯାକ ଉଚ୍ଛନ୍ନ ନୋହିବ ।
ଏଥିକି ଯେ ଉଚିତ ବିଚାର ହୃଦରେ
କହ ତାହା ବିଦୁର ମୋତେ ପ୍ରମୋଦରେ ।
କୁଳ ନାଶ କଥାରେ ବଢୁଅଛି ଶଙ୍କା
ଏଣୁ କରି ଛଡ଼ାଇ ଦିଅ ହୃଦଦକା ।
ବିଦୁର ବୋଇଲେ ହେ ମିତ୍ର ଯେ ହୋଇବ
ନ ପୁଛିଲେ ହେଲେ ସେ ଉଚିତ କହିବ ।
କୁରୁଙ୍କ ଶ୍ରେୟ ଇଚ୍ଛା କରି ମୁହିଁ ଯାହା
କହିବି ଶୁଣ ତା ବସି ହେ ନରନାହା ।
ସାମ ଦାନ ଭେଦ ଦଣ୍ଡରେ ନେବ ଧନ
ଯେ ହୋଇବ ଅବନୀମଣ୍ଡଳରେ ରାଜନ ।
ଏହା ଛାଡି ଯେବେ କପଟେ ଧନ ନିଏ
ତେବେ ନାଶ ଯାଏଟି ଜାଣ ଆହେ ରାୟେ ।
ଉପାୟରେ ଯେବେଟି ନ ପାଇବ କାର୍ଯ୍ୟ
ତେବେଟି ଦେଖାଇବ ଥିଲେ ବଳ ଓଜ ।
ଆଜି କଥା ବିଚାରି କାଲି ଯେ କରଇ
ତାର କେତେବେଳେ ଅକାର୍ଯ୍ୟ ହୋଇ ନାହିଁ
ଯେଉଁ ଲେକାଟି ଜାଣିମାର ହୋଇଥିବ
ବଳ ଚାହିଁ ଚାଲି ବାହାର କରୁଥିବ ।
କ୍ଷୟ ବୃଦ୍ଧି ଦୁଇରୁ ବାହାର ଯେ ଦଶା
ତା ଜାଣିଲେ ରାଜାଟି ଲଭଇ ପ୍ରଶଂସା ।
ହେଲି ବୋଲି ରାଜ ଯେ ହେଉଥାଏ ତୋଷୀ
ଦୁଃଖେ ଜଳରେଟି ଜାଣ ସେ ଯାଏ ଭାସି ।
ଯେଉଁରୂପେ ପ୍ରବେଶ ହୋଇ ଜରାବସ୍ଥା
ବିନାଶ କରୁଅଛି ସୁନ୍ଦର ଅବସ୍ଥା ।
ସେହିରୂପରେ ଅବିନୟ ଦେହେ ଘୋଟି
କାଳକୁ ସଙ୍ଗେ ଘେନି ଚିପିଦିଏ ତୋଟି ।

ଛେନାପଣା ସିନା ଖାଇଲେ ପାକ ଯାଏ ।
ବିଷପଣା ଖାଇଲେ ନିକି ଲୋକ ଜୀଏଁ ।
ପକ୍ୱଫଳ ତୋଳିଲେ ରସ ବୀଜେ କାର୍ଯ୍ୟ
ହୁଅଇ କଞ୍ଚା ଫଳେ କେବଳ ଅକାର୍ଯ୍ୟ ।
ଭ୍ରମର ମକରନ୍ଦ ପାନ କଲାପରି
ଧନ ଆଣୁଥିବ ଯେ ହେବ ଦଣ୍ଡଧାରୀ ।
ଦେଖୁଛ ମାଳି ଫୁଲ ଲୋଭେ ଗଛ ମୂଳ
ପାଣିଦେଇ କରିଣ କରୁଛୁ ବୃଷାଳ ।
ଅଙ୍ଗାର ପୋଡିବାର ଲୋକ ତ ନଜାଣେ ।
ଆଗ କାଟିଟି ଧରି ମୂଳଟିକୁ ହାଣେ ।
କେଉଁ କଥା କଲେ କି ହୁଏ ତାହା ଭାଳି
କର୍ମ କରୁଥିବ ଯେ ହେବ ଗୁଣଶାଳୀ ।
ଯେ ରୂପେ ନପୁଂସକ ଲୋକେ ନାରୀଜନେ
ପତି କରି ଇଚ୍ଛା ନ କରନ୍ତିଟି ମନେ ।
ସେରୂପେ ନୋହିବା କଥା ଯେ ଆରମ୍ଭଇ
ତାହାକୁ ପ୍ରଭୁ କରି ନ ଇଚ୍ଛନ୍ତି କେହି ।
ଜାଣିମାର ଜନମାନଙ୍କେ ଯେ ହୋଇବ
ଅନାୟାସେ ହେବା କଥାକୁ କରୁଥିବ ।
ଅନୁରାଗ କରେ ଲୋକଙ୍କୁ ଯେଉଁ ରାଜା
ଅଣାଏ ନ ଦେଲେହେଁ କରନ୍ତି ତାଙ୍କୁ ପୂଜା
ଏ ବାହାରେ ବଚନେ ମନେ କର୍ମେ ନୃପ
ଛଡାଉଥିବ ଲୋକମାନଙ୍କ ସନ୍ତାପ ।
ଯେଉଁ ରାଜା ପ୍ରାଣୀଙ୍କି ଦିଅଇଟି ଭୟ
ଚକ୍ରବର୍ତ୍ତୀ ହେଲେ ହୁଅଇ ସେହୁ କ୍ଷୟ ।
ପିତୃପିତାମହରେ ଅର୍ଜିତ ରାଜ୍ୟକୁ
ଛାଡେ ସେ ନୃପତି କହିବା କି ତୁମ୍ଭଙ୍କୁ ।
ରାଜା ଯେବେ ସାଧୁମାର୍ଗକୁ ଆଚରଇ
ଅସାଧୁ ଲୋକ ମଧ୍ୟ ଭଜିଣ ରହଇ ।
ଧର୍ମ ଛାଡି ଅଧର୍ମ ରାଜା ଯଦି କରେ
ତେବେ ପୃଥ୍ୱୀ କ୍ଷୟ ହୁଅଇ ଅଳ୍ପକରେ ।
ପରରାଜ୍ୟ ହରଣେ ଯତ୍ନ କଲା ପରି
ଆପଣାର ଲୋକଙ୍କୁ ପାଳି ଯତ୍ନକରି ।
ବାଳବୃଦ୍ଧ ଯେ ଯୁବାଠାରୁ ସାରକଥା
ଘେନୁଥିବ ତହିଁକି ନ ପାଇବ ବ୍ୟଥା ।
ଯେଉଁରୂପେ ବାଲିରୁ ସୁନା ହୁଏ ଜାତ
ସେହିରୂପେ ସେକଥା ହୁଅଇଟି ହିତ ।
ଉତ୍ତମ ଲୋକେ ଯାହା କରୁଥିବେ ବସି
ତାହା ଶୁଣିଣ ମନେ ରଖୁଥିବ ଘୋଷି ।
ଗାଈଙ୍କର ଆଘ୍ରାଣ ଦ୍ୱିଜଙ୍କର ଶାସ୍ତ୍ର
ନୃପତିଙ୍କର ଚର ଜନଙ୍କର ନେତ୍ର ।
ଜ୍ଞାନ ହୋଇବାକୁ ଏ ଅଟଇ କାରଣ
ଜାଣ ଆହେ ଗାନ୍ଧାରୀଦେବୀଙ୍କ ରମଣ ।
ଯେଉଁ ଗାଈଟି ଦୁହାଁ ନ ଯାଇ ସେ କ୍ଳେଶୀ
ହୁଏ ତାକୁ ମାଡ ମାରନ୍ତି ହୋଇ ରୋଷୀ ।
ଯେଉଁ ଲୋକଟି କ୍ରୋଧତପତି ନ ପାଇ
ଲଇଁଇ ତାକୁ ଲୁଆଁଇବା କାର୍ଯ୍ୟ ନାହିଁ ।
ଏହା ଜାଣିଣ ବଳୀୟାରକୁ ଦୁର୍ବଳେ
ନମ୍ର ହୋଇଥାନ୍ତି ରାଜନ ସବୁବେଳେ ।
ବଳୀୟାର ଲୋକର କରେ ଯେ ଶରଣ
ଇନ୍ଦ୍ରଙ୍କୁ ନମସ୍କାର କଲାପରି ଜାଣ ।
ଯେ ରୂପେ ପଶୁଙ୍କ ବାନ୍ଧବ ଅଟେ ଘନ
ସେରୂପେ ରାଜାଙ୍କ ବାନ୍ଧବ ମନ୍ତ୍ରୀଜନ ।
ସ୍ତିରୀମାନଙ୍କର ବାନ୍ଧବ ଅଟେ ପତି
ବ୍ରାହ୍ମଣଟି ବେଦର ବାନ୍ଧବ ବୋଲାନ୍ତି ।
ସତ୍ୟ ସକାଶରୁଟି ଧର୍ମ ରହୁଅଛି
ଅଭ୍ୟାସ କଲେ ବିଦ୍ୟା ପାଶୋର ନୋହୁଛି ।
ପୋଛାପୋଛି ହେଉଥିଲେଟି ଦେହଜ୍ୟୋତି
ଦିନକୁ ଦିନ ଶୋଭା ଦିଶୁଥାଏ ଅତି ।
ଉତ୍ତମବୃତ୍ତି କଲେ ଲୋକଙ୍କର କୁଳ
ନିର୍ମୂଳ ନୋହି କରି ହୁଅଇ ନିର୍ମଳ ।
ଧାନ ମାପି ରଖିଲେ ଅକ୍ଷୟ ହୋଇଥାଏ
ଘୋଡାକୁ ଚଢୁଥିଲେ ସୁସାରରେ ଯଏ ।
କୁତ୍ସିତ ବସ୍ତ୍ର ଯେବେ ପିନ୍ଧଇଟି ସ୍ତିରୀ
ଜାଣ ନୃପ ରକ୍ଷା ସେ ଅଟଇ ତାହାରି ।
ବ୍ରାହ୍ମଣ ହୋଇଣ ଦୁର୍ବୃତ୍ତି ଯେ କରଇ
ସୁବୃତ୍ତ ଚଣ୍ଡାଳକୁ ସରି ସେ ନୁହଇ ।
ପରର ଦ୍ରବ୍ୟ ପର ସୌନ୍ଦର୍ଯ୍ୟକୁ ଦେଖି
ଯେଉଁ ନରମାନେଟି ହେଉଥାନ୍ତି ଦୁଃଖୀ ।
ତାହାଙ୍କ ଦେହରେଟି ମହାବ୍ୟାଧି ଘୋଟି
ଆଗ କରି ବୁଜାଇ ଦିଏ ଦୁଇ ପାଟି ।
ଅକାର୍ଯ୍ୟ କାର୍ଯ୍ୟତ୍ୟାଗ ଦୁଇରେ ନିର୍ଭୟ
ନୋହିବ ଯେ ଲୋକ ହୋଇବ ସୁହୃଦୟ ।

ବିଦ୍ୟାମଦ ଧନମଦ ଯେ କୁଳମଦ
ଯେ ପିଇଛି ତାକୁଟି ପଡ଼ଇ ପ୍ରମାଦ ।
ସାଧଏ ଅସାଧୁକୁ କାର୍ଯ୍ୟ ପାଇଁ କଥା
କହିଲେ ଫୁଲନ୍ତି ସେ ଘେନି ଛାଡି ବ୍ୟଥା ।
ସାଧୁଲୋକମାନେ ତ ସବୁଙ୍କରି ଗତି
ଅସାଧୁ ଯେରୂପେ ନୁହନ୍ତି ନରପତି ।
ବଡ଼ ଲୁଗା ପିନ୍ଧିଲେ ସଭାକୁ ଜିଣଇଁ
ଖାଇଥିଲା ଲୋକର ଖିଆ ତୃଷା ନାହିଁ ।
ଯାନରେ ବସିଲେ ଜିଣଇଁ ବାଟଶ୍ରାନ୍ତ
ଜାଣ ଆହେ ବିଚିତ୍ରବୀର୍ଯ୍ୟଙ୍କର ସୁତ ।
ସଦବୃତ୍ତିରେ ଯେ ପ୍ରବର୍ତ୍ତିଥାଏ ନିତି
ତାକୁ ଏମାନେ କେହି ଜାଣି ନ ପାରନ୍ତି ।
ଯେଉଁ ଲୋକମାନେ ଅଟନ୍ତିଟି ଦୁର୍ବୃତ୍ତ
ଜୀଇଁଥିଲେ ଜାଣ ସେ ହେଲା ପରି ମୃତ ।
ଉତ୍ତମ ହୋଇ ଯେଉଁ ଲୋକଙ୍କର ଚଳେ
ଭୋଜନ କରନ୍ତି ସେ ଏକାମାଂସ ବଳେ ।
ମଧମେ ଚଳିବାର ଲୋକଙ୍କ ଗୋରସ
ନ ପଡ଼ିଲେ ଅନ୍ନରେ ନ କରନ୍ତି ଗ୍ରାସ ।
ଯେଉଁମାନେ ଅଟନ୍ତି ଅତ୍ୟନ୍ତ ବର୍ଦ୍ଧନ
ମାଲପା ବିନା ସେ ନ କରନ୍ତି ଭୋଜନ ।
ଦରିଦ୍ରଙ୍କ ଭୋଜନସୁଖ ସୁଖୀଙ୍କର
କେତେବେଳେ ନୁହଇ ଜାଣ ନରବର ।
ନୀଚଲୋକ ଜୀବନବୃତ୍ତି କାଳେ ଯାଏ
ଏଥିପାଇଁ ତାହାର ଭୟ ହେଉଥାଏ ।
ମଧଭଳିର ଲୋକ ଜୀବନକୁ ପ୍ରିୟ
ମଣିଷ ମରଣକୁ କରିଥାନ୍ତି ଭୟ ।
ଉତ୍ତମ ଲୋକମାନେ ତର୍କ ଅବସାନ
ଭୟ ଘେନି ଭାଳୁଥାନ୍ତି ତା ପ୍ରତିଦିନ ।
ସମ୍ପତ୍ତିମଦିରାକୁ ମଦଯାକେ ବଳୀ
ଅଛି ବୋଲି କହି ନ ପାରେ ବୁଦ୍ଧିଶାଳୀ ।
ଐଶ୍ୱର୍ଯ୍ୟମଦେ ମତ୍ତ ହୁଏ ଯେଉଁ ଜନ
ନ ପଡ଼ିଲେ ଥରେ ନ ପାଏ ସେ ଚେତନ ।
ଏକାଦଶ ଇନ୍ଦ୍ରିୟଙ୍କୁ ଯେ ଜିଣି ନାହଁ
ଜାଣ ସେ ରହିଥାଏ ସନ୍ତପତ ହୋଇ ।
ମନକୁ ନ ଜିଣି ହେ ଶତ୍ରୁକୁ ଜିଣିମା
ଇଚ୍ଛାକରେ ସେ ଜାଣ ପାଏ ଦୁଃଖ ସୀମା ।

ଯେ ଲୋକ ଇନ୍ଦ୍ରିୟମାନଙ୍କୁ ଜିଣିଥାଏ
ବିଚାରି ଦଣ୍ଡ ଦିଏ ଲୋକଙ୍କର କାଯେ ।
ସେହି ଲୋକକୁ ଘରିଆଡ଼ର ସମ୍ପତ୍ତି
ଘୋଟିଣ ରହିଥାନ୍ତି ଛଡ଼ାଇ ବିପତ୍ତି ।
ଇନ୍ଦ୍ରିୟ ଘୋଡ଼ା ଦେହ ରଥରେ ମାନସ
ସାରଥି ବାହୁଥିଲେ ନ ଲାଗଇ ତ୍ରାସ ।
ଧର୍ମାର୍ଥ ଛାଡ଼ି ଯେ ଇନ୍ଦ୍ରିୟବଶ ହୁଏ
ସମ୍ପତ୍ତି ଛାଡ଼ି ପ୍ରାଣ ହରାଏଟି ସିଏ ।
ମନ ବୁଦ୍ଧି ଇନ୍ଦ୍ରିୟ ଯାହାର ଆୟତ୍ତ
ଜାଣ ତାର ଆତ୍ମା ଅଟଇ କରଗତ ।
ଆତ୍ମାକୁ ଆୟତ୍ତରେ ରଖିଟି ଯେ ନାହିଁ
ତାହାଠାରେ ଶତ୍ରୁ ଯେ କାଳରେ ହୁଅଇ ।
ଇନ୍ଦ୍ରିୟ ବର୍ଗ ଜାଲେକାମ କ୍ରୋଧ ଝସ
ଆବୃତ ହୋଇ ଜ୍ଞାନ କରୁଛନ୍ତି ଧ୍ୱଂସ ।
ଧର୍ମ ଅର୍ଥ ଦୁଇ ଚାହିଁ ଯେ କାର୍ଯ୍ୟ କରେ
ସେ କଦାପି ଜାଣ ନ ପଡେ ବିପତ୍ତିରେ ।
ଇନ୍ଦ୍ରିୟମାନଙ୍କର ବଶ ହୋଇ ଦୁଷ୍ଟ
ରାଜାଏ ଦେଉଛନ୍ତି ରାଜ୍ୟରୁଟି ଭ୍ରଷ୍ଟ ।
ଅସାଧୁ ଲୋକ ତୁଲେ ସାଧୁଲୋକ ଯାଇ
ବସିଲେ ରାଜନ ହେ ବିନାଶ ଲଭଇ ।
ଓଦା କାଷ୍ଠ ଶୁଖିଲା କାଷ୍ଟେ ମିଶାଇଲେ
ଜଳି ତ ଯାଉଛି ଦେଖୁଥାଇଁ ଭଲେ ।
ଏ ସକାଶରୁ ସାଧୁ ଲୋକ ଯେ ହୋଇବ
ଅସାଧୁ ଲୋକ ସଙ୍ଗ ସ୍ୱପ୍ନେ ନ କରିବ ।
ଅନସୂୟା ଦମ ଯେ ଶଉଚ ଆର୍ଜବ
ଅସାଧୁକୁ ଛାଡ଼ିଥାନ୍ତିଟି ନରଦେବ ।
ଦୁର୍ଜନ ଲୋକଠାରେ ସୁକୃତ ବଚନ
ଦାନ ଆତ୍ମଜ୍ଞାନ ଯେ ନ କରନ୍ତି ସ୍ଥାନ ।
ପଣ୍ଡିତ ଲୋକକୁଟି ଅପଣ୍ଡିତ ଜନେ
ବସି ନିନ୍ଦା କରୁଥାନ୍ତିଟି ଅବିଚ୍ଛିନ୍ନେ ।
ତାହା ଶୁଣି ପଣ୍ଡିତେ ହସି ଦେଇ କ୍ଷମା
କରିବା ମାତ୍ରକେ ଲଭନ୍ତି ସ୍ୱର୍ଗସୀମା ।
ଅପଣ୍ଡିତେ ନିନ୍ଦା ପାତକ ସକାଶରୁ
ତରି ନପାରନ୍ତି କେବେ ନରକରୁ ।
ଅସାଧୁଙ୍କର ହିଂସା ସେବା ସ୍ତିରୀଙ୍କର
ରାଜାଙ୍କର ଦଣ୍ଡ ଯେ କ୍ଷମା ବଳୀଙ୍କର ।

ବଳ ଅଟଇ ହେ ହସ୍ତିନା ନରପତି
ଶୁଣିଥାଅ ଭଲ କରିଟି ଦେଇ ମତି ।
କାର୍ଯ୍ୟକୁ ଅନୁରୂପ ବଚନ ଯାହାର
ବାହରୁଛି ଦୁଃଖଟି ନୁହଇ ତାହାର ।
ବାଜିଲେ କାଣ୍ଡକ୍ଷତ ଯାଉଅଛି ଶୁଖି
କଅଁଳୁଅଛି ହାଣି ପକାଇଲେ ଶାଖୀ ।
ବଚନ କାଣ୍ଡଘାତ ହୃଦୁଁ କଦାଚିତେ
ଶୁଖି ନ ଯାଏ ହେ ରାଜନ ମହାମତେ ।
ଯାହାକୁ ଦେବତାଏ ହୁଅନ୍ତିଟି ବାମ
ଦୁର୍ବୁଦ୍ଧି ଆଚରି ସେ ନହୁହ ପୂର୍ଣ୍ଣକାମ ।
ବୁଦ୍ଧି ଯେଉଁ ଲୋକର ଊଣା ହୋଇଯାଏ
ଦୁର୍ନୀତିକି ନୀତି କରି ସେ ମଣୁଥାଏ ।
ତୁମ୍ଭ ପୁଅମାନଙ୍କ ବିପରୀତ ବୁଦ୍ଧି
ହେବାରୁ ପାଣ୍ଡବଙ୍କୁ ହେଲେ ସେ ବିରୋଧୀ ।
ତିନିଲୋକ ପାଳିବା କ୍ଷମ ଯୁଧିଷ୍ଠିର
ତାଙ୍କୁ ରଖ ପାଖରେ କରିଣ କୁମର ।
ତୁମ୍ଭଠାରେ ଗୁରମାନ୍ୟକୁ ସେହୁ ରଖି
ଦେଖି ରହିଅଛନ୍ତି ହୋଇକରି ଦୁଃଖୀ ।
ସବୁ ତୀର୍ଥମାନଙ୍କରେ ବୁଲିଣ ସ୍ନାନ
କରିବା ପ୍ରତି ନିଷ୍କପଟ ଭଲ ଜାଣ ।
ପାଣ୍ଡବଙ୍କଠାରୁ କୁଟିଳତାଟି ଛାଡ଼ି
ବସ ଯାଇ ରାଜନ ସ୍ୱର୍ଗପୁର ମାଡ଼ି ।
କୀର୍ତ୍ତିଟି ଯେତେ କାଳ ମହୀରେଟି ଥାଏ
ତେତେ କାଳ ଲୋକ ସ୍ୱର୍ଗରେ ଭୋଗ ପାଏ ।
ବିରୋଚନ କେଶିନୀ ସୁଧନ୍ୱା ସଂଶୟକୁ
ନାଶିବା ପାଇଁ ଯାହା କହିଛନ୍ତି ତାଙ୍କୁ ।
ପ୍ରହ୍ଲାଦ ସେହି କଥା କରିବି ପ୍ରକାଶ
ଶୁଣ ହେ ନରବର ଦେଇଣ ମାନସ ।
କେଶିନୀ ବୋଇଲେ ହେ ଦ୍ୱିଜଦୈତ୍ୟଙ୍କରେ
କିଏ ସେ ବଡ଼ ତାହା କହ ମୋ ଆଗରେ ।
ବିରୋଚନ ବୋଇଲେ ଶୁଣ ଗୋ ସୁନ୍ଦରି
ଦ୍ୱିଜଙ୍କ ପ୍ରତି ଜାତି ବଡ଼ଟି ଆମ୍ଭରି ।
ତା ଶୁଣି କେଶିନୀ ବୋଇଲେ ବିରୋଚନ
ସୁଧନ୍ୱା ତ ଏଥି କରିବେ ଆଗମନ ।
କାଲି ତୁମ୍ଭ ତାଙ୍କୁ ବସାଇ ପଚାରିବି
ଜାତିରେ ଯେ ବଡ଼ ହୋଇବ ତା ଜାଣିବି ।

ବିରୋଚନ ବୋଇଲେ କାଲି ପ୍ରାତଃକାଳେ
କହିବି ତୋତେ ଘେନି ସୁଧନ୍ୱାକୁ ତୁଳେ ।
ଏହି ସମୟରେ ସୁଧନ୍ୱା ଗଲେ ପାଇ
କହିଲେ ବିରୋଚନ ମୁଖକୁ ଅନାଇଁ ।
ତୁମ୍ଭର ଆସନକୁ ଛୁଇଁବି ମାତ୍ରକ ।
ତହିଁ ନ ବସିବି ହେ ଦୈତ୍ୟଙ୍କ ନାୟକ ।
ବିରୋଚନ ବୋଇଲେ ବୋଇଲ ହେ ଯାହା
ପାଇଲୁ ମହାସୁଖ ଶୁଣି ଆମ୍ଭେ ତାହା ।
ପଟା ଖଣ୍ଡେ ଏବେ ତ ଅଣାଇ ଦେଉଛି
ବସ ଯାଇ ସୁଖେ ସୁଧନ୍ୱା ଦ୍ୱିଜବସ୍ପି ।
ସୁଧନ୍ୱା ବୋଇଲେ ହେ ଶୁଣ ବିରୋଚନ
ମୁଁ ଗଲେ ତୋର ବାବୁ ଛାଡ଼ଇ ଆସନ ।
ବାଳକ ହୋଇ ତୁ ତ ଘରରେ ବଢ଼ିଛୁ
ଏଣୁ ଅମର୍ଯ୍ୟଦା କଥାକୁ ତୁ କହୁଛୁ ।
ବିରୋଚନ ବୋଇଲେ ମୋର ସବୁ ବିତ୍ତ
ହୁଡ଼କରି ଥୋଉଛି ଆହେ ଦ୍ୱିଜସୁତ ।
ତୁମ୍ଭେ ଯେବେ ଆମ୍ଭ ପ୍ରତିକି ବଡ଼ ହେବ
ତେବେ ଏ ବିତ୍ତଯାକ ଘେନି ସୁଖେ ଯିବ ।
ସୁଧନ୍ୱା ବୋଇଲେ ହେ ରଖ ତୁମ୍ଭ ବିତ୍ତ
ପ୍ରାଣ ହୁଡ଼ି କରିବା ପ୍ରହଲାଦ ପୁତ୍ର
ବିରୋଚନ ବୋଇଲେ ଏହିରୂପେ ହୁଡ଼
କରିଛି ମୁଁ ସୁଧନ୍ୱା କରି ଚିତ୍ତ ଦୃଢ ।
ଦେବତା ମନୁଷ୍ୟକୁ ଛାଡ଼ି ଆନଠାକୁ
ଚାଲ ଯିବା ପଚାରି ଏ ହୁଡ଼ କଥାକୁ ।
ସୁଧନ୍ୱା ବୋଇଲେ ହେ ତୁମ୍ଭର ବାପାଙ୍କୁ
ପୁଛିବା ଯା କହିବେ ଆଣିବା ମନକୁ ।
ଏହା ଶୁଣିଣ ବିରୋଚନ ତୋଷ ହେଲେ
ସୁଧନ୍ୱାକୁ ଘେନି ବାପାଙ୍କ ପାଶେ ଗଲେ ।
ପ୍ରହଲାଦ ଦେଖିଣ ବୋଇଲେ ପୁତ୍ରଙ୍କୁ
ସୁଧନ୍ୱା ତୁଲେ ଆଜି ଆସିଛ ମୋଠାକୁ ।
ଏଣୁ ମୁଁ ଜାଣୁଛି ତୁମ୍ଭର ଏହାଙ୍କର
ହୋଇଲା କି ପୀରତି କହ କେ କୁମର ।
ବିରୋଚନା ବୋଇଲେ ସୁଧନ୍ୱା ମୋ ସଖ୍ୟ
କେବେ ହେବ ନାହିଁ ହେ ଜାଣ ଦୈତଶିଖ ।
ଏବେ ତୁମ୍ଭଠାକୁ ଆସିଛୁଁ ହୁଡ଼ ମାରି
ସ[illegible] କରି ତାହା ତ କହିବ ବିଚାରି ।

ପ୍ରହଲାଦ ପୁତ୍ର ମୁଖରୁ ଏହା ଶୁଣି
ବସିଲେ ପୂଜାକରି ସୁଧନ୍ୱାକୁ ଗୁଣି ।
ସୁଧନ୍ୱା ବୋଇଲେ ଘେନିଲି ସବୁ ପୂଜା
ଯା ପୁଚ୍ଛୁଛି ତା ମୋତେ କହ ଦୈତ୍ୟରାଜା ।
ପ୍ରହଲାଦ ବୋଇଲେ ଯା ଇଚ୍ଛା ହୋଇଛି
ପଚାର ତୁମ୍ଭେ ମୁଁ କହିବି ଦ୍ୱିଜବର୍ହି ।
ସୁଧନ୍ୱା ବୋଇଲେ ହେ ଦ୍ୱିଜଙ୍କୁ ମୁଁ ବଡ
ବୋଲିଣ ତୁମ୍ଭ ପୁଅ ମାରିଅଛି ହୁଡ ।
ଏହା ତୁମ୍ଭଠାରୁ ତ ଶୁଣିଲେ ବିଶେଷି
ଦୈତ୍ୟକୁଳନାୟକ ହୋଇବି ମୁଁ ତୋଷୀ ।
ପ୍ରହ୍ଲାଦ ବୋଇଲେ ପଡ଼ିଲା ବଡ଼ କଷ୍ଟ
ମୋ ପୁତ୍ର କଲାନି ତ ତୁମ୍ଭ ସଙ୍ଗେ ରୁଷ୍ଟ ।
କାହାଠାରୁ ଓପ୍ରୋଧ ଛାଡ଼ିକରି ମୁହିଁ
କହିବି ସନ୍ଦେହ ଛିଣ୍ଡାଇ ପାରୁ ନାହିଁ ।
ସୁଧନ୍ୱା ବୋଇଲେ ହେ ସତ କହିବାକୁ
ଓପ୍ରୋଧ କିମ୍ପା ତୁମ୍ଭେ କରୁଛ ଆମ୍ଭଙ୍କୁ ।
ପ୍ରହଲାଦ ବୋଇଲେ ସାକ୍ଷୀଲୋକ ମିଥ୍ୟା
କହିଲେ କହ ନ ପାଏକି ଦୁଃଖାବସ୍ଥା ।
ସୁଧନ୍ୱା ବୋଇଲେ ହେ ପତି ଆନ ନାରୀ
ଧରିକରି ଶୋଇଲେ ଯେଉଁ ଦୁଃଖ ସ୍ତିରୀ
ଅନୁଭବ କରଇ ସେହିରୂପେ ମିଥ୍ୟା
ସକାଶରୁ ରାଜନ ହୁଅଇଟି ବ୍ୟଥା ।
ପଶୁପାଇଁ ମିଥ୍ୟାଟି କହଲେ ପାଞ୍ଚୋଟି
ପୁରୁଷକୁ ନରକେ କରଇ ସେ ଗୋଟେ ।
ଗାଈପାଇଁ ମିଥ୍ୟା କହିଲେ ଦୁଇଗୁଣ
ନରକେ ପୁରୁଷକୁ କରାଇ ସେ ସ୍ଥାନ ।
ଘୋଡ଼ା ପାଇଁ ମିଥ୍ୟା ବଚନ ଯେ ବଖାଣେ
ଶଏ ପୁରୁଷକୁ ସେ ନରକକୁ ଆଣେ ।
ମନୁଷ୍ୟଟିକ ପାଇଁ ମିଥ୍ୟା ଯେ ଉଚ୍ଚାରେ
ଶତଦଶ ପୁରୁଷ ଧର୍ମ ନାଶ କରେ ।
ସୁବର୍ଣ୍ଣ ପାଇଁ ମିଥ୍ୟା କହେ ଯେଉଁ ନର
ନରକେ ପଡନ୍ତିଟି ତା ତଳ ଉପର ।
ଭୂମିପାଇଁ କହିଲେ ମିଥ୍ୟାରେ ବଚନ
ସେ ପାତକ କେବେହେଁ ନୁହଇ ମୋଚନ
ଏହା ଶୁଣିକରି ହୃଦରେ ବହି ମୋଦ
ବିରୋଚନ ଆଗେ କହିଲେ ପ୍ରହଲାଦ ।

ଯେଉଁ ରୂପେ ଅଙ୍ଗିରା ଋଷି ମୋତେ ବଡ
ସେହିରୂପେ ସୁଧନ୍ୱା ଅଟେ ତୋତେ ବଡ଼ ।
ତୋ ମାତାକୁ ସୁଧନ୍ୱା ମାତା ବଡ ବାବୁ
ହାରିଲୁ ତ ଦୁହିରେ ଆଉ କି କହିବୁ ।
ପୁତ୍ରେ ଏହ କହି ବୋଇଲେ ସୁଧନବା
ମୋ ପୁଅ ଆଜୁଁ କରୁ ତୁମ୍ଭ ପାଦସେବା ।
ତୁମ୍ଭେ ଯେବେ ଦେବହେ ମୋତେ ଏ ପୁଅକୁ
ତେବେ ମୁଁ କରିବିଟି ପାଳନା ଏହାକୁ ।
ସୁଧନ୍ୱା ବୋଇଲେ ତୁମ୍ଭର ସତ୍ୟ ଶୁଣି
ଦେଉଛି ପୁତ୍ରଙ୍କୁ ହେ ନିଅ ଦୈତ୍ୟମଣି ।
କେବଳ ବିରୋଚନ କେଶିନୀ ଆଗରେ
ଧୋଇବେ ମୋ ଗୋଡ଼କୁ କରେ ଧରି ଥରେ
ଆହେ ଧୃତରାଷ୍ଟ୍ର କେଶିନୀ ଆଗେ ବସି
ଧୁଆଇଲେ ଗୋଡ଼ ସୁଧନ୍ୱା ମହାଋଷି ।
ପ୍ରହଲାଦ ପୁତ୍ରକୁ ଛାଡ଼ିଣ ସତ୍ୟକୁ
ରଖିଲେ ଆଉ କିସ କହିବା ତୁମ୍ଭଙ୍କୁ ।
ତୁମ୍ଭେ ଭୂମି ପୁତ୍ର ସ୍ନେହରେ ମିଥ୍ୟା ବସି
କହି ରାଜନ ହେ ନ ଯାଅ ଶୋକେ ଭାସି ।
ଯାହାକୁ ଦେବତାଏ ସୁମୁଖ ହୁଅନ୍ତି
ସତ୍ୟ ଧର୍ମ ଦୁଇଟି ତାହାକୁ ଦିଅନ୍ତି ।
ଯେତେ କଥା ଆରମ୍ଭ କରଇଟି ସେହି
ତାହା ଘେନି ତେତେକ ସିଦ୍ଧ ଯେ ଲଭଇ ।
ଥାଉଁ ଆନ ଦ୍ୱିଜ ଆଚରେ ଯେବେ ମାୟା
ପଢ଼ିଲେ ହେଲେ ବେଦ ନୁହେ ଶୁଦ୍ଧକାୟା ।
ମଦ୍ୟପାନ ଯେ ଭାର୍ଯ୍ୟା-ପତି-ଜ୍ଞାତି ଭେଦ
ରାଜଦ୍ୱେଷ ଦୁର୍ମାର୍ଗ ଛାଡ଼ିବ ଗୋବିନ୍ଦ ।
ବୋଇତ ବଣିଜାରୁ ଜୁଆରୀ ଯେ ଚୋର
ବୈଦ୍ୟ ଶତ୍ରୁ ମିତ୍ର ନାଟୁଆ ଆଦି ନର
ମାନଙ୍କୁ ଗୋଳ ହେଲେ ନ କରିବ ସାକ୍ଷୀ
ଅବଶ୍ୟ ସେ କଥା କହନ୍ତି ପଟ ରଖି ।
ଅଗ୍ନି ହୋତ୍ର ମଉନ ଯଜ୍ଞ ଅଧ୍ୟୟନ
ବିଧିମନ୍ତ ହେଲେ ହୁଅଇ ପ୍ରୟୋଜନ ।
ଅଭିମାନ ରଖିଣ ଏହା ଯେ କରଇ
ଭଲ ଏ କଥା ହେଲେ ମନ୍ଦକୁ ଭଜଇ
ଗୃହଦାହୀ ଜାରଜାନ୍ନ ଭୋଜୀ ବିଷଦିଆ
ସୋମବିକ୍ରୟୀ ମିତ୍ରଦ୍ରୋହିକ ଖଟୁଆ ।

ଧୃଷ୍ଟ ଅପବିତ୍ର ଯେ ଜ୍ୟୋତିଷ ନାସ୍ତିକ
ଗୁରୁସ୍ତ୍ରୀଗାମୀ ବିଟ ବେଦଙ୍କ ନିନ୍ଦକ ।
ସଂସ୍କାରହୀନ ଅତି କୃପଣ ବାଳହନ୍ତା
ଶରଣାଗତ ହୋଇକରି ହିଂସାକର୍ତ୍ତା ।
ମଦ୍ୟପୀ କଟୁଭାଷୀ ଗ୍ରାମପୁରୋହିତ
ଏମାନେ ମହାପାତକିରେଟି ଲିଖିତ ।
ଅଗ୍ନିରେ ପୋଡ଼ି ସୁନା କଷଟିରେ ନେଇ
ଯେହ୍ନେ କଷଇ ଭଲ ମନ୍ଦ ସେ ଜାଣଇଁ ।
ଉତ୍ତମ ବୃତ୍ତିକିଟି କରଇ ଯେ ନର
ଭଦ୍ରପଦ ଅଲଭ୍ୟେ ହୁଅଇ ତାହାର ।
ବ୍ୟବହାର କଲେ ସାହୁର ସାହୁପଣ
ସମସ୍ତଙ୍କୁ ପ୍ରତ୍ୟେକ ହୁଅଇଟି ଜାଣ ।
ଯୁଦ୍ଧ ଉପସ୍ଥିତ ହୋଇଲେ ଶୂର ତାକୁ
ବୋଲ ଯେ ହୃଦୟରୁ ଛାଡ଼ିବ ଦକାକୁ ।
ଅର୍ଥ ସନ୍ଦେହରେ କରେ ଯେ ସୁବିଚାର
ତାହାକୁ ପଣ୍ଡିତ ବୋଲନ୍ତି ସବୁ ନର ।
ବିପତ୍ତିରେ ଶତ୍ରୁ ସୁହୃଦ ଦୁଇ ଲୋକ
ହୁଅନ୍ତି ଚିହ୍ନା ଆହେ ହସ୍ତି ନାନାୟକ ।
ଜରା ରୂପ, ଆଶା ଧଇର୍ଯ୍ୟ ମୃତ୍ୟୁ ପ୍ରାଣ ।
ଅସୂୟା ଧର୍ମ କ୍ରୋଧ ସମ୍ପତ୍ତି ଦୁଷ୍ଟଗଣ
ସେବାଶୀଳ ଯେ କାମ ଲଜ୍ଜା ପୂର୍ବ ପର
କଥାମାନଙ୍କର ନାଶର ଅଟେ ଘର ।
ମଙ୍ଗଳକର୍ମ କଲେ ବଢ଼ଇ ସମ୍ପତ୍ତି
ପ୍ରାଗଲ୍‌ଭ୍ୟଠାରେ ପୁଣି ବୃଦ୍ଧି ହୋଏ ଅତି ।
ପ୍ରଜ୍ଞା କୁଳିନତା ଯେ ଦମ ଶାସ୍ତ୍ରଜ୍ଞାନ
ପରାକ୍ରମ ମିତଭାଷିତା ଯଥା ଦାନ ।
କୃତଜ୍ଞତା ଏ ଗୁଣମାନ ମହୀପାଳ
ଉତ୍ତମ ପୁରୁଷକୁ କରେ ସମୁଜ୍ଜ୍ୱଳ ।
ଯେରୂପେ ପାପବୃଦ୍ଧି ବୁଦ୍ଧି କରେ ନାଶ
ସେ ରୂପେ ପୁଣ୍ୟ ଜ୍ଞାନ ବଢ଼ାଏ ବିଶେଷ ।
ପୁଣ୍ୟ କରିଲା ଲୋକ ପୁଣ୍ୟଲୋକ ପାଏ
ଅପୁଣ୍ୟ କଲା ଲୋକ ନରକକୁ ଯାଏ ।
ଅସୂୟାକାରୀ କଟୁଭାଷୀ ଯେତେ ନର
ଅଛନ୍ତି କଷ୍ଟ ନ ସରେଟି ତାହାଙ୍କର ।
ଯେଉଁ ଲୋକ କାହାକୁ ନ କରେ ଅସୂୟା ।
ଆଚରୁଥାଏ ପୁଣ୍ୟ ଛାଡ଼ିଦେଇ ମାୟା ।

ସେହି ଲୋକମାନଙ୍କରଟି ରାୟେ ପାଖ
କେବେ ସେ ଛାଡ଼ି ନ ପାରଇ ଜାଣ ସୁଖ ।
ପଣ୍ଡିତ ଲୋକଠାରୁ ବୁଦ୍ଧି ଯେ ଶିଖଇ
ସେ ବଳେ ସେ ପଣ୍ଡିତ ଗଣନା ଲଭଇ ।
ଦିନ ଭିତରେ ଯେ ଛିଣ୍ଡାଇ ଥାଏ କାର୍ଯ୍ୟ
ରାତିଟି ସୁଖେ ସେ ଶୁଅଇ ମହାରାଜ ।
ଶିଶିର ଗ୍ରୀଷମେ ଭିଆଣ ଥିଲେ କରି
ବରଷାରେ ଦୁଃଖରୁ ହୁଅଇ ସେ ପାରି ।
ବୁଢ଼ାବୟସରେ ସୁଖ ତ ପାଇବାକୁ
ଯୁବାକାଳରେ କରୁଥିବଟି କଥାକୁ ।
ଆଜନ୍ମରୁ ଜୀବନ ଥିବାଯାଏ ଲୋକ
କରିଥିବଟି ପରଲୋକ କଥାଯାକ ।
ଅନ୍ନ ଯେବେ ପେଟରେ ଜୀର୍ଣ୍ଣ ହୋଇଯାଏ
ତେବେ ତାକୁ ପ୍ରଶଂସିବଟି ଆହେ ରାୟେ ।
ଭାରିଯାର ଯେବେ ହୋଇବ ବୃଦ୍ଧାବସ୍ଥା
ତେବେ ତାର କହିବ ଯେ ଭଲ ବ୍ୟବସ୍ଥା ।
ଶୁର ଯେବେ ମାରିଣ ଯୁଦ୍ଧରୁ ଆସିବ
ତେବେ ଏ ଭଲ ଅଛି ବୋଲିଣ କହିବ ।
ତପସ୍ୱୀ ଲୋକ ତପସ୍ୟାକୁ ଶେଷ କଲେ
ମାନଇଟି ତାହାଙ୍କୁ ପ୍ରଶଂସି କହିଲେ ।
ଅଧର୍ମ ଧନରେ ଯେ ଧରମ କରଇ
ଭଲ କରି ଭାବିଲେ ଫଳ ତହିଁ ନାହିଁ ।
ଗୁରୁ ଅଟଇ ଜ୍ଞାନୀମାନଙ୍କର ଶାସ୍ତା
ରାଜା ଭାଙ୍ଗେ ଦୁଷ୍ଟମାନଙ୍କ ଅବ୍ୟବସ୍ଥା ।
ଗୁପତ ପାପୀଙ୍କ ପାପକୁ ଅନୁରୂପ
ଦଣ୍ଡ ଦେଇ ଏକା ପାରଇ ଯମଭୂପ ।
ନିଷ୍ଟସ୍ତିରୀମାନଙ୍କର ଯେ ଦୁଷ୍ଟରୀତି
କାହାକୁଟି ଜଣା ନୁହଇ ନରପତି ।
କ୍ଷତ୍ରିୟ ଯେବେ ଦାତା ହୋଇ ଦ୍ୱିଜସେବା
କରୁଛି ତାକୁ ଲୋକେ ଦେବତା ବୋଲିବା ।
ଲୋକେ ଯେବେ ବିଦ୍ୟାରେ ହୁଏ ପାରଙ୍ଗମ
ରାଜାଠାରୁ ଅର୍ଜି ନିଅନ୍ତି ସୁଖେ ଗ୍ରାମ ।
ବୁଦ୍ଧିରେ ଯେଉଁ କର୍ମ କରଇଟି ନର
ଉତ୍ତମ କର୍ମ ତାକୁ ବୋଲନ୍ତି ନୃବର ।
ବାହୁ ବଳରେ ଯେଉଁ କରମ କରନ୍ତି
ମଧ୍ୟ କର୍ମ ବୋଲିଣ ତାହାକୁ କହନ୍ତି ।

ଯାଇ ଆସି ଯେଉଁ କରମ କରେ ନର
ଅଧର୍ମ ବୋଲାଏଟି ସେ କର୍ମ ତାହାର ।
ଦୁର୍ଯ୍ୟୋଧନ ଶକୁନି କର୍ଣ୍ଣ ଦୁଃଶାସନ
ଏ ଚାରିହେଁ ଅଟନ୍ତି ମୁରୁଖ ମଣ୍ଡନ ।
ଏହାଙ୍କଠାରେ ତୁମ୍ଭେ ରାଜ୍ୟ ଭାର ଦେଇ
କିମ୍ପାଇଁ ଭାବୁଛ ବସିବ ସୁଖ ପାଇ ।
ପାଣ୍ଡୁସୁତମାନଙ୍କୁ ଆହେ ମହାମନା
ମୋ ବୋଲ ଘେନ ଏବେ କର ହେ ଲାଳନା
ଆତ୍ରେୟ ସାଧଙ୍କର ଅଛି ପୁରାତନ
କଥା ଏବେ କହିବା ଶୁଣ ତା ରାଜନ ।
ପୂର୍ବକାଳେ ପରମହଂସ ରୂପ ଧରି
ବୁଲୁଥିଲେ ମହୀ ଆତ୍ରେୟ ତପଚାରୀ ।
ସାଧେ ତାଙ୍କୁ ବୋଇଲେ ଆମ୍ଭେ ଅଟୁଁ ସାଧ
ଶତ୍ରୁଙ୍କ ନୀତି କହି ଆମ୍ଭଙ୍କୁ ହେ ବୋଧ ।
ଆତ୍ରେୟ ବୋଇଲେ ହେ ଧୃତି ଶାନ୍ତି ସତ୍ୟ
ଧର୍ମ ପାଳି ହୋଇବ ପୂର୍ଣ୍ଣକାମ ନିତ୍ୟ ।
ଗାଳି ଦେବା ଲୋକଙ୍କୁ ଗାଳି କି ନ ଦେଲେ
ଗାଳିଦେବା ଲୋକ ନାଗକୁ ଲଭେ ଭଲେ ।
ମିତ୍ରଦ୍ରୋହ ଯେ ପରନିନ୍ଦା ନ କରିବ
ନୀଚ ଆଶ୍ରା କରିଣ କେବେ ନ ରହିବ ।
ଧରମରେ ନିୟତ ବୁଦ୍ଧି ରଖିଥିବ
ପ୍ରାଣୀଙ୍କି କଟୁବଚନକୁ ନ ବୋଲିବ ।
ବଚନ କଣ୍ଟାରେ ଯେ ଲୋକେ ପୀଡ଼ା ଦିଏ
ଲକ୍ଷ୍ମୀ ନ ରହନ୍ତିଟି ଜାଣ ତାର କାୟେ ।
ପର ଯେବେ ବୋଲିବ ନିଷ୍ଠୁର ବଚନ
ତେବେ କିଛି ନ ବୋଲି ହୋଇବ ମଉନ ।
ଲୁଗାକୁ ଯେଉଁ ରଙ୍ଗେ ରଙ୍ଗାଇ ସେ ରଙ୍ଗ
ହେଲା ପରି ଲୋକର ଭଲ ମନ୍ଦ ସଙ୍ଗ ।
କେ ନିଷ୍ଠୁର ବୋଇଲେ ମାଇଲେ ନବୋଲଇ
ନ ବୋଲାଇ ନ ମାରଇ ଯେ ନ ମରାଇ ।
ତାହାକୁଟି ଦେବତା ହୋଇଣ ପ୍ରସନ୍ନ
ଦିଅନ୍ତି ନିର୍ଭାକରି ସବୁ କାର୍ଯ୍ୟମାନ ।
ବହିବା ଅପେକ୍ଷାରେ ନ କହିବା ଭଲ
କହିଲେ ସତ୍ୟ ଧର୍ମ ଥିବ ବାଣୀ ତୁଲ ।
ଯେ ଲୋକ ପ୍ରବୃତ୍ତି କଥାରୁ ଛାଡ଼େ ଭାବ
ବୋଲିବାକୁ ତା ଦେହେ ପାପ କିମ୍ପା ଥିବ ।
ପ୍ରାଣୀମାନଙ୍କର ନାଶ ଯେ ନ ଇଚ୍ଛଇ
ମହାସାଧୁଲୋକ ତୁଲଲେ ସେ ଅଛଇ ।
ଦୁର୍ଯ୍ୟୋଧନ କ୍ରୋଧବଶରୁ ହୋଇ ବାଇ
ଆପଣାର ପର ଦ୍ରବ୍ୟକୁଟି ବୋଲଇ ।
ତାହା ଛାର କିମ୍ପାଇଁ ସାଧୁଲୋକ ମିତ୍ର
ହୋଇବ ଜାଣ ଆହ ଅମ୍ବିକାଙ୍କ ପୁତ୍ର ।
ପର ଭଲ ନ ଜାଣି ଶଙ୍କା କରୁଥାଏ
ଅଧର୍ମଟି ତାହାକୁ ବୋଲି ନରରାୟେ
ଉତ୍ତମ ମଧ୍ୟମରେ ସେବାକୁ କରିବ
ଅଧର୍ମ ଲୋକଙ୍କର ପାଶକୁ ନ ଯିବ ।
ଅସଦ ବୃତ୍ତିରେ ଯେ ଅରଜଇ ଧନ
ଅକୁଳ ଅପ୍ରଶଂସ୍ୟ ହୋଏ ସେ ରାଜନ ।
ଧୃତରାଷ୍ଟ୍ର ବୋଇଲେ ମହାକୁଳବନ୍ତ
କି କର୍ମକଲେ ଲୋକ ହୁଏ ତା କହ ତ ।
ବିଦୁର ବୋଇଲେ ହେ ତପ ଦମଜ୍ଞାନ
ବେଦ ଯଜ୍ଞ ଶୁଦ୍ଧ ବିବାହ ଅନ୍ନଦାନ ।
ଆଚରଣରେ କୁଳ ବୋଲାଏ ମହତ
କହିବି କେତେ ଏହା ତୁମ୍ଭର ଅଗ୍ରତ ।
ଏହା ବାହାରେ କୀର୍ତ୍ତି ଇଚ୍ଛା କରୁଥାନ୍ତି
ସତ୍ୟ ବିନା ଅସତ୍ୟ ତୁଣ୍ଡେ ନ ବସାନ୍ତି ।
ଧର୍ମରେ ଅହନିଶ ହେଉଥାନ୍ତି ରତ
ମହାକୁଳ ତାହାଙ୍କୁ ବୋଲନ୍ତି ଜଗତ ।
ଅବିଦ୍ୟା କୁବିବାହ ବ୍ରହ୍ମସ୍ୱ ହରଣ
ଦେବ ଦ୍ରବ୍ୟ ନାଶ ଯେ ନ୍ୟସ୍ତାପ ହରଣ ।
ବେଦର ଉତ୍ସାଦନ ଧର୍ମ ବ୍ୟତିକ୍ରମ
ଦ୍ୱିଜର ଅପବାଦ ଦ୍ୱିଜଅତିକ୍ରମ ।
ଏମାନ ଯେ କରଇ ତା କୁଳଟି ଯାକ
ଅକୁଳ ହୋଇକରି ଭଜନ୍ତି ନରକ ।
ସୁବୃତ୍ତି କରି ଯେଉଁ ଲୋକମାନେ ଥାନ୍ତି
ତାହାଙ୍କ କୁଳ କେବେ କ୍ଷୟ ନ ଭଜନ୍ତି ।
ସୁବୃତ୍ତି ଥିବା ଲୋକ ତୁଲେ ଧନକାରୀ
ଲୋକଙ୍କୁ ରାଜନ ହେ ନ କରିଟି ସରି ।
ଗାଈ ଘୋଡା ଚାଷ ବଣିଜ ଯେ କରଇ
ସଦ୍‌ବୃତ୍ତିହୀନ ହେଲେ ବଡ଼ ସେ ନୁହଇ
ଆମ୍ଭର କୁଳେ ମିତ୍ରଦ୍ରୋହୀ କୃତଘନ
କେବେ କେ ହୋଇନାହିଁ ଜାଣ ହେ ରାଜନ ।

ବ୍ରାହ୍ମଣଦ୍ରୋହୀ ଲୋକ କୁରୁଙ୍କ ସଭାକୁ
ବଚନ ଆସିବ କି ଆସୁ ବୋଲିବାକୁ ।
ସାଧୁ ଅତିଥିଏ ଆସିବେ ବୋଲି ଜାଣି
ଘରେ ରଖି ଥାନ୍ତି ଅବଶ୍ୟ ଗ୍ରାସ ପାଣି ।
କୁଳୀନ ଲୋକ ସିନା ପାରେ ସହି ଭାର
ଆନଠାରେ ନ ସମ୍ଭବେ ତା ନରବର ।
ଯାହା ସକାଶରୁଟି ହେଉଛି ଭୟ
ସେ ମିତ୍ର ନୁହଇ ଗାନ୍ଧାରୀ ପ୍ରାଣପ୍ରିୟ ।
ଶଙ୍କା କରି ଯାହାକୁ କର ପରିଚର୍ଯ୍ୟା
ମିତ୍ର ନୁହଇ ଆହେ ଜାଣ ମହରାଜା ।
ଯାହା ମୁଖ ଦେଖିଲେ ମାନସ ପ୍ରସନ୍ନ
ହୁଏ ସେ ମିତ୍ର ବୋଲି ଜାଣ ନରରାଣ ।
ସମ୍ବନ୍ଧ ନ ଥାଇ ଯେ ଅନୁକୂଳ ହୁଏ
ତାଠାରୁ ମିତ୍ର ତ ଖୋଜିଲେ ନାହିଁ ରାୟେ ।
ଚଞ୍ଚଳ ଲୋକଙ୍କର ସଙ୍ଗେ ହେଲେ ମିତ୍ର
ଅଳପ ଦିନରେ ହୁଅଇ ସେ ଅମିତ୍ର ।
ହଂସ ଶୁଷ୍କ ସରକୁ ଛାଡ଼ିଲା ପରାୟେ
ଚଞ୍ଚଳକୁ ଛାଡ଼ନ୍ତି ଅର୍ଥ ସବୁ ରାୟେ ।
ଚଞ୍ଚଳ ଲୋକେ ଅଳପକରେ ଚଳନ୍ତି
ନ ଚଳି ଅଳପକେ ପ୍ରିୟକୁ କହନ୍ତି ।
କୃତଘ୍ନ ମିତ୍ରଦ୍ରୋହୀ ଯେତେକ ମରନ୍ତି
ବିଲୁଆ କୁକୁର ତାହାକୁ ନ ଛୁଅନ୍ତି ।
ଯଥାଶକ୍ତି କରି ମିତ୍ର ଜନରେ ଧନ
ଦେଇଣ ପୂଜୁଥିବ ଯେ ଜାଣିବା ଜନ ।
ସନ୍ତାପ କଲେ ରୂପ କୁଳ ଜ୍ଞାନ ବଳ
ଦିନକୁ ଦିନ ହୋଇଯାଏଟି ଦୁର୍ବଳ ।
ଯେଉଁ ପଦାର୍ଥ ହେ ନାଶ ଯାଇଥାଏ
ସନ୍ତାପ କଲେ କି ତାହା ଲୋକ ପାଏ
ଦୁଃଖ ସୁଖ ଜନ୍ମ ମରଣ କ୍ଷୟ ବୃଦ୍ଧି
ଏମାନ ଲାଗିଛି ତ ସଭିଙ୍କି ଅବଧି ।
ଏହା ଜାଣିଣ ଧୀର ଲୋକ ଯେ ହୋଇବ
ଏ କଥାରେ କଥା ପ୍ରସ୍ତାବ ନ ବାଢ଼ିବ ।
କର୍ଣ୍ଣ ଚକ୍ଷୁ ନାସା ଯେ ଜିହ୍ୱା ଚର୍ମ ମନ
ଏଥିରୁ ଗୋଟିଏ ଯହିଁରୁ ପ୍ରତିଦିନ ।
ରହଇ ତାହା ଘେନି ହୁଏ ଜ୍ଞାନ ନାଶ
କହିବି କିସ ଆହେ ନରକୁଳଈଶ ।

ଧୃତରାଷ୍ଟ୍ର ବୋଇଲେ ଧର୍ମାତ୍ମା ଯୁଧିଷ୍ଠିର
ପାପାତ୍ମା ମୋ ପୁତ୍ରକୁ କରିବେ ସଂହାର ।
ଏହା ମୁଁ ନିଃସନ୍ଦେହ କରି ଜାଣୁଅଛି
ଏହି ସକାଶୁଁ ମହା ଉଦ୍‌ବେଗ ପାଉଛି ।
ଏଥିକି ଯେ ଉଚିତ କହିଣ ବିଦୁର
ହୃଦୟର ସଂଶୟ ମୋର ଦୂର କର ।
ବିଦୁର ବୋଇଲେ ହେ ଆଜ୍ଞା କର ଯେବେ
ତୁମ୍ଭଙ୍କୁ ନ କହି କହିବି କାକୁ ତେବେ ।
ଆତ୍ମଜ୍ଞାନ ଇନ୍ଦ୍ରିୟ ନିଗ୍ରହ ଲୋଭ ତ୍ୟାଗ
କର ନୃପ ପାଇବ ତୁମେ ସୁଖ ଭାଗ ।
ବୁଦ୍ଧି ଥିଲେ ଭୟ ନୁହଇ ଉପସ୍ଥିତ
ତପ କଲେ ମହତ ପଦ ହୋଏ ଗତ ।
ଗୁରୁଙ୍କ ସେବା କଲେ ଜ୍ଞାନ ଉପୁଜଇ
ବିଜୟ ନିବୃତ୍ତିରେ ଶାନ୍ତିକି ଲଭଇ ।
କାମ୍ୟ କର୍ମ କରି ଯେ ନିଷ୍କାମ କର୍ମ କରେ
ମୋକ୍ଷପଦବୀ ସେ ଲଭଇ ଅଲଭ୍ୟରେ ।
ଯେଉଁମାନେଟି ଜ୍ଞାତି ଭେଦକୁ କରନ୍ତି
ରାତିରେ ସ୍ତ୍ରୀପାଖେ ଥିଲେ ସେ ଡରୁଥାନ୍ତି ।
ଏ ବାହାରେ ତାଙ୍କ ନ ରହେ କିଛି ଧର୍ମ
ପ୍ରବର୍ତ୍ତଇ ହୃଦରେ ନିତ୍ୟରେ ଅଧର୍ମ ।
ଗାଈଠାରେ ଦୁଧ ବ୍ରାହ୍ମଣଠାରେ ତପ
ସ୍ତିରୀଠାରେ ଚାଞ୍ଚଲ୍ୟ ଜ୍ଞାତିଠାରେ ତାପ ।
ଯେରୂପେ ସୂକ୍ଷ୍ମସୂତା ତନ୍ତେ ବୁଣା ହୋଇ
ଭାର ସହୁଅଛି ଲୋକର ଦେହେ ଥାଇ ।
ସେରୂପେ ସବୁ ଜ୍ଞାତି ଏକମନ ହୋଇ
ଥିଲେ ପରେ ଅକାର୍ଯ୍ୟ କରି ନ ପାରଇ ।
ଦରପୋଡ଼ା କାଠର ପରି ଜ୍ଞାତିଏ ତ
ପୃଥକେ ଧୂମାୟିତ ଏକତ୍ରେ ପ୍ରଜ୍ୱଳିତ ।
ଦ୍ୱିଜ ସ୍ତିରୀ ଗାଈ ଜ୍ଞାତିକି ଯେ ନାଶଇ
ସେହି ପାପରେ ସେ ଅବଶ୍ୟ ନାଶ ଯାଇ ।
ଏକା ହୋଇ ବୃକ୍ଷ ଗୋଟାଏ ଯେବେ ଥାଏ
ଅଳପ ପବନ ବହିଲେ ଭାଜିଯାଏ ।
ଏକଠା ହୋଇ କରି ଥିଲେ ବୃକ୍ଷମାନେ
ଭାଜି ନ ଯାଆନ୍ତି ସେ ବହୁତ ପବନେ ।
ଏହି ରୂପରେ ଜ୍ଞାତିରହିତ ଲୋକଙ୍କୁ
ମାରନ୍ତି ଶତ୍ରୁଜନେ ଦେଖାଇ ବଳକୁ ।

ଅନ୍ୟୋନ୍ୟରେ ଜ୍ଞାତି ଆଶ୍ରୟ ଥିଲେ ହୋଇ
ପରଜନ ଭୟଟି ବାଧି ନ ପାରଇ ।
ଧନ ଥାଇ ଭୋଗ ଯା ଦେହ ଭଜି ନାହିଁ
ସବୁ ଗୁଣଯାକର ଖଣି ଅଟେ ସେହି ।
ତୁମ୍ଭେ କ୍ରୋଧ-ରୋଗ ଧରୁଅଛ ଅନ୍ତରେ
ଏଣୁ ତୁମ୍ଭର ଗୁଣ ବ୍ୟର୍ଥ ନିରନ୍ତରେ ।
ରୋଗମାନେ ଧନ ପାଇଲେ ହେଲେ ଦୁଃଖ
ପାଉଥାନ୍ତି ସ୍ୱପନେ ନ ଦେଖନ୍ତି ସୁଖ ।
ଦୁର୍ଯ୍ୟୋଧନ ପୁତ୍ରେ ନିବାରି ନ ପାରିଲ
ଏବେଟି ନାଶ ଯିବା କଥା ଆଣି କଲ ।
ଅଧର୍ମେ ସମ୍ପତ୍ତି ଆଣିଛ ଗୋଟିଆଇ
ଏ ନିକି ଚିର ହୋଇ ରହିବ ନୃସାଇଁ ।
ଏବେ ମୋ ବୁଦ୍ଧି କରି ପାଣ୍ଡବମାନଙ୍କୁ
ଡକାଇ ଆଣି କରି କର ପାଳନାକୁ ।
କୁରୁପାଣ୍ଡୁ ଦୁହେଁ ବସିଲେ ଏକଠାରେ
ଜାଣ ଇନ୍ଦ୍ର ସମ୍ପତ୍ତି ମିଳିବ ସେଠାରେ ।
କୁଳରେ ବୁଢ଼ା ହୋଇ ଆପଣ ତ ଅଛ
ତୁଚ୍ଛା ବ୍ୟର୍ଥ କଥାରେ କିମ୍ପାଇ ଭୁଲୁଛ ।
ପାଣ୍ଡୁ ସୁତମାନେ ତ ଧର୍ମେ ରହିଛନ୍ତି
ତୁମ୍ଭେ ତାଙ୍କଠାରେ କର ହେ ଧର୍ମମତି ।
ପୁତୁରା ପୁତ୍ରଙ୍କର ପ୍ରୀତିକି କରାଅ
ହସ୍ତିନା ରାଜ୍ୟ ଭୁଞ୍ଜ ମହାସୁଖ ପାଅ ।
କହିଲେ ତ ତୁମ୍ଭେଟି ଘେନୁନାହିଁ କଥା
କେତେ କହିବି ହେ ରାଜନ ମହାରଥା ।
ଇନ୍ଦ୍ର ଧନୁ ନୁଆଇ ଧରି ସୂର୍ଯ୍ୟ କର
ଆକାଶକୁ ମୁଷ୍ଟି ଯେ ମାରି ପାରେ ନର ।
ଯେଉଁ ଲୋକ ତ ଅବିଚ୍ଛିନ୍ନେ କ୍ରୋଧ ହୁଏ
ଯେଉଁ ଲୋକ ସ୍ତିରୀମାନଙ୍କୁ ରଖିଥାଏ ।
ଯେଉଁ ଲୋକଟି ଶତ୍ରୁମାନଙ୍କୁ ଭଜଇ
ଯେଉଁ ଲୋକ ହେ ନୀଚ ଲୋକକୁ ମାଗଇ ।
ଯେଉଁ ଲୋକ ଛାଡ଼ି ଦିଅଇ କୁଳରାଜ
ଦୁର୍ବଳ ହୋଇ ଯେହୁ କହୁଥାଇ ଓଜ ।
ଯେଉଁ ଲୋକ ଅଶ୍ରଦ୍ଧା କଥାକୁ କହଇ
ଯେଁଉ ଲୋକ ଦୁର୍ଲ୍ଲଭ କଥାକୁ ଇଚ୍ଛଇ ।
ଯେଉଁ ଲୋକ ବଧୂକୁ କରେ ପରିହାସ
ନୋହିଲେ ଅବା ନ ଛାଡ଼ଇ ବଧୂପାଶ ।
ଯେଉଁ ଲୋକ ପରସ୍ତିରୀକି ହରଇ
ଯେଉଁ ଲୋକ ଭାରିଯା ନିନ୍ଦାକୁ କରଇ ।
ଯେଉଁ ଲୋକ ପାଇଲେ ବୋଲଇ ପାଇନାହିଁ
ଯେଉଁ ଲୋକ ମାଗିବା ଲୋକକୁ ଜଟଇ ।
ଯେଉଁ ଲୋକ ମିଛକୁ ସତ କରିଯାନ୍ତି
ସେହି ଲୋକମାନେଟି ନରକ ଭୁଞ୍ଜନ୍ତି ।
ଧର୍ମଠାରେ ଧରମ ଅଧର୍ମେ ଅଧର୍ମ
କରିଲେ ଲୋକରଟି ନାଶ ନୋହେ ଧର୍ମ ।
ଜରା ରୂପ, ଆଶା, ଧୈର୍ଯ୍ୟ, ମୃତ୍ୟୁ ପ୍ରାଣ ହରେ
ହିଂସା ଧର୍ମାଘରେ, କାମଲଜ୍ଜା ଭ୍ରଷ୍ଟକରେ ।
ଅସାଧୁ ସେବା ଚରିତ୍ର କ୍ରୋଧ ଶ୍ରୀ ନାଶଇ
ଅଭିମାନଟି ସବୁ ବିଲୋପ କରଇ ।
ଧୃତରାଷ୍ଟ୍ର ବୋଇଲେ ଶତାୟୁ ପୁରୁଷ
ବୋଲିତ ବେଦ ମଧ୍ୟେ ହୋଇଛି ପ୍ରକାଶ ।
କାହିଁପାଇଁକି କି ଶତସମ୍ୱତ୍ସର ନର
ନ ଜୀଇଁ ମରୁଛନ୍ତି କହ ତ ବିଦୂର
ବିଦୁର ବୋଇଲେ ହେ ଅତିବାଦ କୋହ
ଅଭିମାନ ଅତ୍ୟାଗ ହିଂସା ମିତ୍ରମୋହ ।
ଏହି ସକାଶରୁ ଆୟୁଷ କ୍ଷୟ ହୋଇ
ଯାଉଅଛି ଜାଣ ହସ୍ତିନା ନରସାଇଁ ।
ଘେଟୁ କରି ନୃପେ କହିବା ଲୋକମାନେ
ବହୁତ ଛନ୍ତି ଏ ହସ୍ତିନା ରାଜଧାନେ ।
ଅଘେଟୁ କରି କହି କରାଇବ ହିତ
ଏ ରୂପେ ଏ ଲୋକରେ ନାହାନ୍ତି ବହୁତ ।
ଧରମ ଆଶ୍ରେ କରି କହିବା ନରଙ୍କୁ
ରଖିଥିଲେ ରାଜା ନ ପାଏ ଅଭାଗ୍ୟକୁ ।
କୁଳ ଯେବେ ରହିବ ଗୋଟିକୁ ମୁର୍ଚ୍ଛିବ
ଗ୍ରାମ ପାଇଁ କୁଳକୁ ଉପେକ୍ଷା କରିବ ।
ଦେଶ ପାଇଁକି ଗ୍ରାମ ଗୋଟିଏ ଛାଡ଼ିଲେ
ଧରମଟି ତହୁଁରୁ ପ୍ରବର୍ତ୍ତଇ ଭଲେ ।
ପଡ଼ିଲେ ଆପଣାର ଉପରେ ରାଜ୍ୟକୁ
ଆଦର ନ କରିବ ନ କହି କାହାକୁ ।
ବିପତ୍ତି ହେବ ବୋଲି ରଖୁଥିବ ଧନ
ଧନ ଦେଇ ଭାରିଯା କରିବ ରକ୍ଷଣ ।
ଭାରିଯା ଧନ ଦେଇ ଆତ୍ମାକୁ ଯତ୍ନରେ
ରଖିବ ବିପତ୍ତି ପଡ଼ିଲେ ନିରନ୍ତରେ ।

ଜାଣିବା ଲୋକମାନେ ପରିହାସେ ଜୁଅ
ଖେଳିବାକୁ ରାଜନ ନ କରନ୍ତି ପ୍ରିୟ ।
ଜୁଅ ଖେଳାବେଳେ ତ ହିଛି ତୁମ୍ଭଙ୍କୁ
ଏତେବେଳରେ କିସ ପଚାର ଆମ୍ଭଙ୍କୁ ।
ବିଲୁଆ ସାହସକୁ ସାହା କରି ପାଇ
ସିଂହ ମାରିବାକୁ ବସିଛ ନରସାଇଁ ।
ଯେଉଁ ନୃପତି ସେବା କରିବ ଭୃତ୍ୟଙ୍କୁ
ଦେଉଥାଇ ଲେଖିଣ ଭାତ ବର୍ତ୍ତନକୁ ।
ସେ ରାଜ୍ୟକୁ ବିପତ୍ତିକାଳେ ଭୃତ୍ୟଗଣ
ନ ଛାଡ଼ନ୍ତି ଆହ ହସ୍ତିନା ନରରାଣ ।
ନିଜ ଲୋକ ଛାଡ଼ି ଯେ ପରଲୋକ ରଖେ ।
ସେ ଘେନି ପଡ଼ଇ ଯାଇ ସେ ଦଶ ଦୁଃଖେ ।
ଦ୍ରବ୍ୟ ଅନୁରୂପ ରଖଇ ଯେ ଲୋକକୁ
ସେ କେବେ ନ ପାଏଟି ହାନିର କଥାକୁ ।
ପ୍ରଭୁର ଅଭିପ୍ରାୟ ଜାଣି ଯେଉଁ ଲୋକ ।
କାର୍ଯ୍ୟ କରେ ଦୁର୍ମଳ ସେ ନରନାୟକ ।
ପ୍ରଭୁ କହିଲେ ଯେହୁ ନ ଘେନେ ନ କରେ
ତାହାକୁ କେବେ ନ ରଖିବଟି ପାଖରେ ।
ଅଗର୍ବୀ ଦୟାଳୁ ଅରୋଗୀ ପରିଚ୍ଛନ୍ନ
ଅଲାଞ୍ଚୁଆ ଉତ୍ସାହୀ ବାକପଟୁ କୁଳୀନ ।
ଏତେ ଗୁଣ ଥିବା ଲୋକ ଯେ ଭୃତ୍ୟ ହେଲେ
ଉତ୍ତମକାର୍ଯ୍ୟ ରାୟେ ହୁଅଇଟି ଭଲେ ।
ରାତ୍ରେରେ ଏକା ହୋଇ ପରର ଘରକୁ
ନ ଯିବ ଜାଣିବ ଯେ ନୃପ ଆଗରକୁ ।
ରାଜା ଯେଉଁ ସ୍ତିରୀକି କରିଥିବ ମନ
ତାଠାକୁ କେବେ ନ କରିବଟି ଗମନ ।
ଅବିଶ୍ୱାସୀ ଲୋକକୁ କାରଣ ଦେଖାଇ
ମନ୍ତ୍ରଣା ନ କହିବ ଭୁଲାଇ ନୃସାଇଁ ।
ରାଜଭୃତ୍ୟ ତନୟ ଭ୍ରାତ ସେନାପତି
ଦରିଦ୍ର ବାଳପୁତ୍ର ବିଧବା ଅସତୀ ।
ଦୟାଳୁ ରାଜାତୁଲେ ରଣାଦି ବେଭାର
ଯେହୁ କରଇ ନାଶ ହୁଅଇ ତାହାର ।
ଯେଉଁ ଲୋକଟି ନିତି ସ୍ନାନ କରୁଅଛି
ଏତେ ଗୁଣ ଜାଣ ତା ଦେହେ ରହିଅଛି ।
ବଳରୂପ ଶୁଦ୍ଧ ଯେ ଶୋଭା ସୁକୁମାର
ଗୁଣମାନଙ୍କର ସେ ଅଟଇ ଆକାର ।

ଏ ବାହାରେ ନବୀନ ବାଳା ମନୋହାରୀ
ହୁଅଇ ସେ ଜାଣ ହସ୍ତିନା ଦଣ୍ଡଧାରୀ ।
ପରିମିତ ଭୁଞ୍ଜି ଲୋକର ସୁଖ ବଳ
ଆରୋଗ୍ୟ ଆୟୁ ପୁତ୍ର ହୁଏ ମହୀପାଳ ।
ବହୁ ଖାଇ ମ୍ଲେଚ୍ଛବେଶ ଯେ ଧରିଥାଏ
ତାହାକୁ କେବେ ଘରେ ନ ରଖିବ ରାୟେ ।
ଧୂର୍ତ୍ତ କୁରୁପଣ ଯେ ବନବାସୀ ଲୋକ
ଦୃଢବୈର କୃତଘ୍ନ ନିଷ୍ଠୁର ମୁରୁଖ ।
ଅପୂଜ୍ୟପୂଜାକାରୀ ଲୋକ ଯେ ମାଗଇ
ତାଠାରୁ ନ ଜାଣିବା ଲୋକ ଆଉ ନାହିଁ ।
କ୍ଲିଷ୍ଟକର୍ମା ବହୁମାନୀ ଯେ ମିଥ୍ୟାଭାଷୀ
ଏମାନଙ୍କ ସେବାରେ ନୋହିବ ଲାଳସୀ ।
ସହାୟଟି ଅଟଇ ଅର୍ଥର କାରଣ
ଅର୍ଥଟି ସହାୟର ସେହିରୂପେ ଜାଣ ।
ପୁଅ ଝିଅ ଉପୁଜାଇଣ ବିଭା ଦେଇ
ତାଙ୍କର ଜୀଇବାକୁ ବୃତ୍ତିକୁ ଖଞ୍ଜାଇ ।
ସ୍ୱରଗ ପାଇବାକୁ ବନରେ ରହିବ
ଯେଉଁ ଲୋକ ଜାଣିବାରଟି ହୋଇଥିବ ।
ସମସ୍ତ ପ୍ରାଣୀଙ୍କର ହୋଇବ ଯେ ହିତ
ତାହା କରୁଥିବ ହେ ଦେଇ କରି ଚିତ୍ତ ।
ପ୍ରଭାବ ବୁଦ୍ଧି ତେଜ ସତ୍ତ୍ୱ ଯାହାଠାରେ
ରହିଛି ବୃତ୍ତିଭୟ ନାହିଁ ତାହାଠାରେ ।
ପାଣ୍ଡବଙ୍କ ତୁଲେ ବିରୋଧ କରିବାରୁ
ବିମୁଖ ହେଉଛନ୍ତି ଭୀଷ୍ମ ଦ୍ରୋଣଗୁରୁ ।
ଏହା ବାହାରେ ଦେବେ ହୋଇଣ ବିବାଦୀ
ବିପତ୍ତି ତୁମ୍ଭର ହେ ଅଛନ୍ତି ସମ୍ପାଦି ।
ଏହି ଘେନିଣ ପୁଅ ପୁତୁରାଙ୍କୁ ଘେନି
ପାଳ ହେ ସାଗରାନ୍ତ କରି ଏ ମେଦିନୀ ।
ତୁମ୍ଭ ପୁଅ ପାପରେ ବୁଡ଼ାଇ ମାନସ
ଅବିଚ୍ଛିନ୍ନେ ବାଢୁଥାଆନ୍ତି ପରଦୋଷ ।
ଅର୍ଥସିଦ୍ଧି ମନରେ ଯେ ଇଚ୍ଛା କରିବ
ଆଗକରି ସେହି ଧରମ ଆଚରିବ ।
ପାପରୁଟି ନିବର୍ତ୍ତିଥାଏ ଯେଉଁ ଦେହୀ
ପ୍ରକୃତି ବିକୃତିର ମାଗ ଜାଣେ ସେହି ।
ଯଥାକାଳେ ଧରମ ଅର୍ଥ କାମ ନର
କରିଲେ ଇହପରେ ସୁଖ ହୁଏ ତାର ।

ଯେଉଁ ଲୋକଟି କ୍ରୋଧ ହରଷ ଦୁହିଙ୍କି
ଆୟତ କରିଛି ସେ ପାଏ ସମ୍ପତ୍ତିକି ।
ବାହୁବଳ ମିତ୍ରବଳ ଯେ ଧନବଳ
ଆପଣା ଅଭିଜାତବଳ ପ୍ରଜ୍ଞାବଳ ।
ଏ ପାଞ୍ଚେ ଯା ଦେହେ ନିପୁଣ ହୋଇଥାନ୍ତି
ତାହାକୁଟି କେହି ହେ ବଧି ନ ପାରନ୍ତି ।
ଶତ୍ରୁ ତୁଲେ ବଇର କରିଣ ନିଶ୍ଚିନ୍ତ
ହେଲେ ନାଶ ତହୁଁ ହୁଅଇ ଉପଗତ ।
ସ୍ତିରୀ ରାଜନ ଶତ୍ରୁ ସର୍ପବେଦସେବୀ
ଜନକୁ ଆପଣାର ବୋଲିଟି ନ ଭାବି ।
ଏହା ବାହାରେ ଭୋଗ ଆୟୁଷ ଦୁହିଁଙ୍କି
ନ ଯାଇ ବିଶ୍ୱାସଟି ଜଗିବ ତହିଁକି ।
ପର ବୁଦ୍ଧିରେ ଯେ ପଡ଼ଇ ନରଈଶ
ତାହାର ଭଲ କେବେ ନୁହଇ ପ୍ରକାଶ ।
ସାପ ଅଗ୍ନି ଜ୍ଞାତି ଯେ ସିଂହକୁ ଅବଜ୍ଞା
କଲେ ନାଶ କରନ୍ତିଟି ସେ ତାର ସଂଜ୍ଞା ।
କୁଳେ ଜାତ ଲୋକେ କଠୋର ଅଗ୍ନି ଥିଲା
ପରି ରହିଥାନ୍ତିଟି ନୋହିଣ ଚହଲା ।
ପାଣ୍ଡୁ ସୁତମାନେ ଏରୂପେ ରହିଛନ୍ତି
ତୁମ୍ଭ ପୁତ୍ର ବିନାଶେ ଦେଇକରି ମତି ।
ବୁଢ଼ାକୁ ଯେବେ ଯୁବା ନ କରେ ସତ୍କାର
ସ୍ୱସ୍ତି ଲାଭ କାହୁଁ ହୋଇବ ତାହାଙ୍କର ।
ସାଧୁଲୋକ ଯେବେଟି ହୋଇବ ଅତିଥି
କରିବ ପୂଜା ତାଙ୍କ ନୋହି କରି ବ୍ୟଥୀ ।
ଯାହାଠାରେ ଅତିଥି ନ ପାଏଟି ପୂଜା
ତାକୁ ନେଇ ଦଣ୍ଡଇ ଜାଣ ଯମରାଜା ।
ନିୟମ ଭ୍ରଷ୍ଟ ବୈଦ୍ୟ ଚୋର ବାଳଘାତୀ
ମଦ୍ୟପ କ୍ରୂର ବେଦବିକ୍ରେତା ସେନାପତି ।
ଏମାନେ ଦୁଆରକୁ ଅତିଥି ରୂପରେ
ଆସିଲେ ଖେଉଦିବ ନାହିଁ ବିରାଗରେ ।
ଦହି ଦୁଧ ଘିଅ ମାଳପା ଲୁଣ ଅନ୍ନ
ଫଳ ମୂଳ ଯେ ରଙ୍ଗ ବସନ ଚନ୍ଦନ ।
ଗୁଡ଼ ମାଉଁସ ରାଶି ଆଦି ଏ ଦ୍ରବ୍ୟକୁ
ବିକିଲା ଲୋକ ଜାଣ ପାଏ ନରକକୁ ।
ଅକ୍ରୋଧ ନ ହୋଇ ଯେ ନେଉଥିବ ଦିନ
କରିଥିବ ଟେକା ସୁନାରେ ସମଜ୍ଞାନ ।
ଶୋକ ଛାଡ଼ି ନିନ୍ଦ ସ୍ତୁତିକି ନ ଘେନିବ
ପ୍ରିୟ ଅପ୍ରିୟରେ ଉଦାସୀନ ହୋଇବ ।
ଏରୂପେ ଯେଉଁ ଲୋକ ଅଛି ନରରାୟେ
ଭିକ୍ଷୁକ ବୋଲି ତାକୁ ବୋଲନ୍ତି ସଭିଏ ।
ବନେ ପଶି ଫଳମୂଳ ଯେ ଖାଇ ଜିଏଁ
ତପୀ ବୋଲିକରି ତାହାକୁ ବୋଲି ରାୟେ ।
ବୁଦ୍ଧମନ୍ତ ଲୋକର ଅପକାର କରି
ନିଶ୍ଚିନ୍ତ ହେଲେ ନୃପ ଅବଶ୍ୟଟି ମରି ।
ଅବିଶ୍ୱାସୀ ଲୋକେ ବିଶ୍ୱାସ କଲେ ନର
ସମୂଳ ହୋଇ ଜାଣ ନାଶ ହୁଏ ତାର ।
ଈରିଷା ନ କରିବ ହେବ ମୁକ୍ତଦ୍ୱାର
କହିବ ପ୍ରିୟ ବଶ୍ୟ ନୋହିବ ସ୍ତ୍ରୀଙ୍କର ।
ଏମନ୍ତ ଲୋକର ବଢ଼ଇ ଆୟୁ ଶିରୀ
ଜାଣ ଆହେ ଗାନ୍ଧାରୀଦେବୀଙ୍କ ବିହାରି ।
ପିତାଙ୍କୁ ଅନ୍ତଃପୁର ମାତ ହାଣ୍ଡିଶାଳ
ଦେଇ ରକ୍ଷ ଦେଖିବ ଯେ ହେବ କୁଶଳ ।
ଭୃତ୍ୟଙ୍କର ବଣିଜ ପୁତ୍ରଙ୍କର ଦ୍ୱିଜ
ସେବା କରାଇବ ହେ ଜାଣ ମହାରାଜ ।
ଯେଉଁ ରାଜା ବିଚ୍ଚର ନ ଜାଣନ୍ତି କେହି
ତାହାର ବୃଦ୍ଧି ହୁଏ ସନ୍ଦେହ ତ ନାହିଁ ।
ବିଚ୍ଚରିବ ଯାହା କାହାକୁ ନ କହିବ
କରିଲା ଉତାରୁ ସେ ପ୍ରକାଶ ପାଇବ
ବନ ପର୍ବତରେ ଯେ ଏକାନ୍ତ ମନ୍ଦିରେ
ଭାବିବ ରାଜା ବସି ମନ୍ତ୍ରୀଙ୍କ ସଙ୍ଗରେ ।
ଅପଣ୍ଡିତ ସୁହୃଦ ପଣ୍ଡିତ ଅସୁହୃଦ
ବସିଲେ ବିଚ୍ଚରେଟି ପଡ଼ଇ ପ୍ରମାଦ ।
ଲୋକର ଭଲ ମନ୍ଦ ବର୍ଷ ପାଞ୍ଚ ବୁଝି
ତେବେ ତାକୁ କହିବ ରଖି ସଭା ମଝି ।
ପାପ ବସି କରିଣ ଆଚରିଲେ ରାଜା
ଘୋଟଇ ତାକୁ ଆସି କାଳ ମହାତେଜା ।
ପ୍ରଶସ୍ତ କର୍ମ ଯେବେ ନ କରିଣ ନର
ପଶ୍ଚାତାପ କରେ ତା ବ୍ୟର୍ଥଟି ତାହାର ।
ବିଗ୍ରହ ସନ୍ଧି ଯାନ ଆସନ ଦ୍ୱଇଧ
ସମାଶ୍ରୟ ମନ୍ତ୍ରୀଏ ନ ଥିଲେ ନୁହେ ବୋଧ ।
ସ୍ଥିତି ବୃଦ୍ଧି କ୍ଷୟ ତିନିଙ୍କି ଯେ ଜାଣଇ
ତାହାର ମହୀଯାକ ଅକ୍ଷୟ ହୁଅଇ ।

ଛତ୍ର ଚାମରକୁ ଯେ ରଖିକରି ରାଜା
ଆଉ ସବୁ ଦେବ ଯାହାକୁ ହେବ ମଜା ।
ଯେଉଁ ରୂପେ ଲୁହାକୁ ଲୁହା କରେ ଧ୍ୱଂସ
ସେରୂପେ ଜାତିଟିକି ଜାତ କରେ ନାଶ ।
କ୍ରୋଡ଼େ ଧରି ଶତ୍ରୁ ମୁଖରେ ବିଷ ଦେଇ
ମାରଇ ରାଜନ ହେ ଜାଣ କହୁଥାଇଁ ।
ଦେବତା ରାଜା ଦ୍ୱିଜ ବାଳକ ବୃଦ୍ଧକୁ
କ୍ରୋଧ କରିଲେ ଲୋକ ଲଭଇ ନିନ୍ଦାକୁ ।
ଜାଣିବା ଲୋକ ନିରର୍ଥକ କଥା ଘୋଷି
କଳହ ନ କରିବ ରାଜନଟି ବସି ।
ବୁଦ୍ଧି ଥିଲେ ଧନ ଜାଡ଼୍ୟରେ ନିନ୍ଦନ
ହୋଇଛି କେହୁ ଦେଖା ନାହିଁ ତ ରାଜନ ।
ବିଦ୍ୟାବୃଦ୍ଧ ବୟୋବୃଦ୍ଧ ଯେ ଧନବୃଦ୍ଧ
ଲୋକଙ୍କୁ ନିନ୍ଦା କରୁଥାନ୍ତି ମୂର୍ଖ ବୃଦ୍ଧ ।
ଯେଉଁମାନେ କ୍ରୋଧନ ଅଟନ୍ତିଟି ରାୟେ
ଅନର୍ଥ ତାଙ୍କଠାରେ ଘୋଟି ରହିଥାଏ ।
ସମୟ ନ ବିଚାରି ଦେଉଥିବ ଦାନ
ସାଧୁମାର୍ଗେ ଥାଇଣ କହିବ ବଚନ ।
ସେ ଲୋକକୁ ସମସ୍ତେ ବଶ ହୋଇ କରି
ଅନୁକ୍ଷଣେ ରାଜନ ଥାନ୍ତି ଅନୁସରି ।
ଧୃତି ସମ ଦମ ଯେ ଶଉଚ କାରୁଣ୍ୟ
ଅନିଷ୍ଠୁର ବଚନ ସମ୍ପତ୍ତି କାରଣ ।
କୃତଘ୍ନ ଦୁଷ୍ଟଆତ୍ମା ନିର୍ଲଜ୍ଜ ଲୋକକୁ
ଛାଡ଼ିଦେବ ନ କହି ପ୍ରଥମୁ କଥାକୁ ।
ଅନ୍ତରଙ୍ଗ ନିର୍ଦ୍ଦୋଷ ଲୋକକୁ ଯେ ଦୋଷ ।
ଦିଅଇ ତାର ନିଦ୍ରା ନୁହଇ ପ୍ରକାଶ ।
ଅନାର୍ଯ୍ୟ ଦୁଷ୍ଟ ସ୍ତ୍ରୀ ତିନିଙ୍କି ଭାର ଦେଇ
କାର୍ଯ୍ୟ କରି ବସିଲେ କେବେହେଁ ନୁହଇ ।
ଯହିଁ ଧୂର୍ତ୍ତ ସ୍ତିରୀ ବାଳକ ବୁଦ୍ଧିଦାତା
ତହିଁ ନ ରହିବ ଯେ ହେବ ବିବେକିତା ।
ଯାହାକୁ ବେଶ୍ୟାସ୍ତିରୀ ନାଟୁଆ ଜୁଆର
ପ୍ରଶଂସନ୍ତି ଜାଣ ହେ ବ୍ୟର୍ଥ ତା ଶରୀର ।
ତିନି ଲୋକୁଁ ବଳି ଭ୍ରଷ୍ଟ ହୋଇଲା ପ୍ରାୟେ
ନିକଟେ ସ୍ଥାନଭ୍ରଷ୍ଟ ହେବ ତୁମ୍ଭେ ରାୟେ ।
ଧୃତରାଷ୍ଟ୍ର ବୋଇଲେ ବିଧାତା କୁହାଉଛି
ଯାହା କହେ ବିଦୁର ତାହା ମୁଁ କହୁଛି ।

ଏଥିକି ତୁମ୍ଭେ କିମ୍ପା ଧର୍ମ କର ଫନ୍ଦା
ମୁଁ ତୁମ୍ଭ ବଡ଼ଭାଇ କରୁଛ ତ ନିନ୍ଦା ।
ବିଦୁର ବୋଇଲେ କାଳକୁ ଅନୁରୂପ
କଥା ତ କହୁ ନାହିଁ ବସି ତୁମ୍ଭେ ନୃପ ।
ମନ୍ତ୍ର ଦାନ ବାକ୍ୟରେ ଜନଙ୍କର ପ୍ରିୟ
ହେଉଛି ଲୋକ ଆହେ ଅମ୍ବିକାତନୟ ।
ସାହାଜିକ ନରର ହୁଅଇ ଯେ ପ୍ରିୟ
ତାହାର ଲୋଡ଼ା ନାହିଁ ଜାଣ ଗୁଣଚୟ ।
ଶତ୍ରୁଠାରେ ଗୁଣ ଦେଖିଲେ ହିଂସା ବହି
ଦେଉଥାଆନ୍ତି ଗୁଣେ ଦୋଷକୁ ଲଗାଇ ।
ପ୍ରିୟଲୋକ ଦୋଷ କରିଲେ ହୋଇ ତୋଷୀ
ଦୁର୍ଗୁଣ ଲୁଚଇ ହୁଅନ୍ତି ଗୁଣ ଘୋଷି ।
ତୁମ୍ଭେ ଯେବେ ଦୁର୍ଯ୍ୟୋଧନକୁ ଛାଡ଼ିଥାନ୍ତି
ବୃଦ୍ଧକାଳରେ ବ୍ୟଥା କିମ୍ପାଇଁ ପାଆନ୍ତି ।
ଦୁର୍ଯ୍ୟୋଧନ ବୁଦ୍ଧିରୁ ହୁଏ ଯେଉଁ ବୃଦ୍ଧି
ଏଥିରୁ କ୍ଷୟ ଯିବା ପଦ ହେବ ସିଦ୍ଧି ।
ଗୁଣହୀନ ଧନର ବୃଦ୍ଧିକି ଛାଡ଼ିଲେ
ଇହଲୋକେ ସୁଖ ଲଭିବ ତୁମ୍ଭେ ଭଲେ ।
ଧୃତରାଷ୍ଟ୍ର ବୋଇଲେ କହିଲେ ହେ ତୁମ୍ଭେ
ପୁତ୍ରକୁ କିକି ଛାଡି ପାରୁଁ ଜାଣ ଆମ୍ଭେ ।
ଯାହାର ଧର୍ମ ଥିବାର ତାର ହେବ ଜୟ
ଏଥିକି ମୁଁ ବସି କରିବି କେତେ ଭୟ ।
ବିଦୁର ବୋଇଲେ ହେ ଯାର ଯା ସ୍ୱଭାବ
ଗୁର ଶିଖାଇଲେ କି ସେ କଥା ଛାଡ଼ିବ ।
ପର ଅପବାଦରେ ରତ ଯେଉଁମାନେ
ବିରୋଧ କଥା ସେ ଇଚ୍ଛନ୍ତି ଅବିଚ୍ଛିନ୍ନେ ।
ଯେ ଲୋକମାନଙ୍କୁ ଦେଖିଲେ ଲାଗେ ଦୋଷ
ଦୂରକୁ ଛାଡି ଦେଇଥିବ ତାଙ୍କ ପାଶ ।
ଯାହା ଘରେ ରହିଲେ ଅପବାଦ ହୁଏ
କାର୍ଯ୍ୟଥିଲେ ତହିଁ ରହିବା ନ ଯୋଗାଏ ।
ଯାହାଠାରୁ ଆଣିଲେ ଦେଲେ ହେବ ଦୋଷ
ତା କରି ବା ପ୍ରୀତିକି ଭଲ ବିଷଗ୍ରାସ ।
ନୀଚ ପୀରତି ଅଳପକେ ନାଶ ଯାଏ ।
ଉଚ୍ଚଲୋକ ପ୍ରୀତିଟି ବହୁକାଳ ଥାଏ ।
ଦରିଦ୍ରଜ୍ଞାତିକି ଯେ କରେ ଅନୁଗ୍ରହ
ତାହାର ସୁକୃତଟି ଅଟଇ ଅକହ ।

ଯେଉଁମାନେ ଆପଣା ସୁଖକୁ ଇଛନ୍ତି
ସେହିଟି ଜାଣ ଜ୍ଞାତିମାନଙ୍କୁ ପୋଷନ୍ତି ।
କୁଳର ବୃଦ୍ଧି ଏବେ ଆଚରି ରାଜନ
କର ହେ ପାଣ୍ଡୁସୁତମାନଙ୍କୁ ପାଳନ ।
ବିଗୁଣ ହେଲେ ଜ୍ଞାତି ଛାଡ଼ି ନ ଯୋଗାଏ
ପାଣ୍ଡୁବାଳେ ସୁଗୁଣ ଅଟନ୍ତି ତ ରାୟେ ।
ପାଣ୍ଡବଙ୍କୁ ଜୀବନବୃତ୍ତି କିଛି ଦେଇ
ରହ ହେ ହସ୍ତିନାରେ ମହାସୁଖ ପାଇ ।
ଏହା କଲେ ତୁମ୍ଭର ପ୍ରକାଶିବ ଯଶ
ଆହେ କୁରୁକୁଳ କୁମୁଦରାତ୍ରି ଈଶ ।
ବୃଦ୍ଧ ହୋଇ ତୁମ୍ଭେ ଗୃହରେ ଥିବାଠାରେ
ପିଲାଏ ହଣାହଣି ନୁହନ୍ତି କୁଠାରେ ।
ତୁମ୍ଭର ହିତ ବିନା ଅହିତରେ ଚିତ୍ତ
ଥିଲେ ମୋତେ ନାଶିବେ ସାବିତ୍ରୀ ଦେବୀକାନ୍ତ
ସୁବୃତ୍ତି ଜ୍ଞାତିମାନେ ଥାନ୍ତି ଯେବେ ପାଖେ
କେବେ ନ ପକାନ୍ତି ରାଜନ ମହାଦୁଃଖେ ।
ଏହିରୂପେ ଦୁବୃତ୍ତି ଆଚରିବା ଜ୍ଞାତି
ପାଖେ ଥିଲେ ବିପତ୍ତି ଲୋଡ଼ିଣ ଆଣନ୍ତି ।
ଶୀର୍ଣ୍ଣ ହେବା ଜ୍ଞାତିକି କରଇ ଯେ ତାପ
ଶ୍ରୀମନ୍ତ ଜ୍ଞାତିଠାରେ ପଡ଼ଇ ସେ ନୃପ ।
ଯୁଦ୍ଧ ହେଲେ ପୁତୁରା ପୁତ୍ରଙ୍କର ମୃତ
ଯେବେ ହେବ ତେବେଟି ହୋଇବ କ୍ଷୋଭିତ ।
ସାଚିପଣା ପିଇଲେ ମନ୍ଦ ଯେବେ ହେବ
ତେବେ ତା ଛାଡ଼ି ଗୁଡ଼ପଣାକୁ ପିଇବ ।
ଶୁକ୍ରବିନା ଅନୀତି କରନ୍ତି ଯେ ଲୋକ
ପଛେ ତା ଛାଡୁଛନ୍ତ କରିଣ ବିବେକ ।
ଦୁର୍ଯ୍ୟୋଧନ ନ ଜାଣି ବୈର ଯେବେ କଲା
ତା ସମାଧାନ ହେଲେ କିସ ଊଣା ହେଲା ।
ପାଣ୍ଡବେ ତୁମ୍ଭ ପାଶେ ବସିଲେ ରାଜନ
ସମସ୍ତେ କହିବେଟି ଧନ୍ୟ ଏ ବଚନ ।
ଧୀରଲୋକ କଥାମାନି ଯେ କାର୍ଯ୍ୟ କରେ
ଅକାର୍ଯ୍ୟଟି ନୁହଇ ତାହାର କାହିଁରେ
ଉନ୍ନତ ଲୋକଠାରେ କରିଲେ ବିଚାର
ଅବଶ୍ୟ ରାଜନ ସେ କରଇ ପ୍ରଚାର ।
ଦୁଷ୍ଟ ମନ୍ତ୍ରୀଠାରେ ମନ୍ତ୍ରକୁ ଯେ ଭାଳଇ
ଜାଣି ଜାଣି ନାଶକୁ ଲୋଡ଼ିଣ ଆଣଇଁ ।

ଶାସ୍ତ୍ର ଜାଣିଣ ବୃଦ୍ଧାଜନଙ୍କୁ ଯେ ସେବେ
ପଡ଼ିଲେ କାର୍ଯ୍ୟ ଯେ ତୁଳାଇ ନିଏ ଭାବେ ।
ଜଳେ ଯେବେ ନେଇଣ ପକାଏଟି ସୁନା
ତହିଁରେ କେଉଁ କାର୍ଯ୍ୟ ହୁଅଇ ହେ ନନା ।
କାଲ ଆଗରେ କଥା କହିଲେ ଗେଲାଇ
ତହା ମନ କି ଲେକ ପାରଇ ଭୁଲାଇ ।
ପାଉଁଶରେ ବସିଣ ଇଡୁଥିଲେ ଘିଅ
ଫଳ କି ତହିଁରୁ ହେ ହୁଅଇ ଉଦୟ ।
ଦୁଷ୍ଟକୁ ଧର୍ମଶାସ୍ତ୍ର କହୁଥିବ ଯେତେ
ଯେତିକି ଅକାର୍ଯ୍ୟ ହୁଅଇ ମହାମତେ ।
ବରଷଯାଏ ବୁଝି ଲୋକ ଆଚରଣ
ପଛେ କରିବ ହେ ମଇତ୍ର ନରରାଣ ।
ବିନୟ ପରାକ୍ରମ କ୍ଷମା ଆଚରଣ
ଅକୀର୍ତ୍ତି ଅନରଥ କ୍ରୋଧ ଅଲକ୍ଷଣ ।
ସେ ଚରିହେଁ ଏ ଚରଙ୍କର ବିନାଶକୁ
ବିଧାତା କରିଅଛି ଆଣ ହେ ମନକୁ ।
ପ୍ରିୟବାଦୀ ଧାର୍ମିକ ବିଦ୍ୟାବନ୍ତ ମିତ୍ର
ହେଲେ ତାଙ୍କୁ ରଖିବ ଅମ୍ବିକାଙ୍କ ପୁତ୍ର ।
ଧର୍ମ ମର୍ଯ୍ୟାଦାକୁ ଯେ ଜଗି ରହିଥାଏ
ଅକୁଳୀନ ହେଲେଟି କୁଳୀନ ସେ ରାୟେ ।
ଯାହାର ଯାହାରଟି ଆଚରଣ ଏକା
ହୁଏ ତାଙ୍କ ପ୍ରୀତି ନ ଭାଜେ ହୋଇ ଦକା ।
ମେଧାବୀ ଯେବେ ଅମେଧାବୀ ମିତ୍ରକରେ
ପଡ଼ଇ ସେ ଯାଇଣ ସେ ଘେନି ଶୋକରେ ।
ଗର୍ବିତ ମୂର୍ଖ ଅଧର୍ମୀ ତୁଲେ ମଇତ୍ର
କେବେ ନ କରିବ ସେ ହେଲେ ରାଜପୁତ୍ର ।
ଧାର୍ମିକ ଲୋକ ତୁଲେ ମଇତ୍ରତା କଲେ
ଧରମଟି ତହିଁରୁ ଉପୁଜଇ ଭଲେ ।
ଦୁର୍ନୀତି ଦ୍ରବ୍ୟ ଯେବେ ନୀତିରେ ଲଗାନ୍ତି
ସତ ଦ୍ରବ୍ୟରେ ସେହୁ ଗଣନା ହୁଅନ୍ତି ।
ମଙ୍ଗଳଦ୍ରବ୍ୟ ନିତି ଦେଖୁଥିଲେ ନର
ତହିଁରୁ ଆଉ ନାହିଁ ବନ ଶ୍ରେୟସ୍କର ।
ଉଦ୍‌ବେଗେ ପଡ଼ିଲେ ଯେ ଉଦ୍‌ବେଗ ନୁହଇ
ତାଠାରୁ ଭଲ ହୋଇ ସଂସାରରେ କେ ନାହିଁ
ପ୍ରଭୁ ହେବା ଲୋକ ନ ହେଲେ କ୍ଷମାକର
ତାହାକୁଟି ଲକ୍ଷ୍ମୀ ଯାଆନ୍ତି କରି ଦୂର ।

ସଳଖବୁଦ୍ଧି ଲୋକଠାରେ ବଙ୍କାବୁଦ୍ଧି
ନରେ ଯେ ଦୁଷ୍ଟକଥା କରନ୍ତି ଅବଧି ।
ଅତିଦାତା ଅତିଶୂର ଯେ ଅତିବ୍ରତ
ଏମାନଙ୍କୁ ଲକ୍ଷ୍ମୀ ହୁଅଇ ଜାଣ ହତ ।
ଅତିଗୁଣ ଅତିନିର୍ଗୁଣଠାରେ ଲକ୍ଷ୍ମୀ
ଅପୂର୍ବ ହୋଇ କରି ରହନ୍ତି ହେ ସ୍ୱାମୀ ।
ବେଦ ପଢି ଅଗ୍ନିରେ କରଇ ଯେ ହୋମ
ତାହାରଟି ସାର୍ଥ ହୁଅଇ ପଢ଼ାଶ୍ରମ ।
ଶାସ୍ତ୍ର ଜାଣି ଉତ୍ତମ କଥା ଯେ କରଇ
ତେବେଟି ଶାସ୍ତ୍ର ପଢ଼ିବାର ତା ଦିଶଇ ।
ଭାର୍ଯ୍ୟା ତୁଲରେ ରତି କରି ପୁତ୍ର କଲେ
ସଫଳ ବୋଲାଏ ସେ ନୃପ ଜାଣ ଭଲେ ।
ଖାଇଲେ ଦେଲେ ଧନ ହୁଏ କାର୍ଯ୍ୟକାରୀ
ଜାଣ ଆହେ ହସ୍ତି ନାନଗ୍ରଦଣ୍ଡଧାରୀ ।
ଅଧର୍ମ ଦ୍ରବ୍ୟରେ ଯେ କରଇ ସୁକୃତ
ତାକୁ ନେଇ ଦଣ୍ଡ ଦିଅନ୍ତି ସୂର୍ଯ୍ୟସୁତ ।
ବୁଦ୍ଧିମନ୍ତ ଲୋକର କାହାଠାରେ ଶଙ୍କା
ନ ଉପୁଜେ ଆଗୁ ଛାଡ଼ି ସେ ଥାଏ ଦକା ।
ଫଳ ଜଳ ମୂଳ ଯେ କ୍ଷୀର ଅଉଷଧ
କରି ନ ପାରନ୍ତି ଏ ରାଜବ୍ରତବାଧ ।
ଏ ବାହାରେ ବ୍ରାହ୍ମଣ ଦେବ ଯେଉଁ ଦିକ୍ଷା
ତା ପାଳନା କଲେ ରହଇ ବ୍ରତକଥା ।
ସାଧୁମାର୍ଗ କରିଣ ଅସାଧୁ ଲୋକଙ୍କୁ
ଜିଣିବ ଏପରି ଦାନରେ କୃପଣଙ୍କୁ ।
କ୍ରୋଧ ହେବା ଲୋକକୁ ନୁହଇ ଯେ କ୍ରୋଧ
ତାହାକୁଟି ସମସ୍ତେ ବୋଲୁଥାନ୍ତି ବୁଧ ।
ନ ରଖିଣ କଥାରେ କିଛି ସଟାବଟା
କହିଲେ ସତ୍ୟ ଜିଣେ ମିଥ୍ୟା କହିବାଟା ।
ସ୍ତିରୀ ରତ ଅଳସ ଭୟାଳୁ କ୍ରୋଧନ
ନାସ୍ତିକ ଚୌର ବୃତ୍ତିକାରୀ କୃତଘନ ।
ଏମାନଙ୍କ ଠାବରେ ବିଶ୍ୱାସ କଥାଟି
କଦାଚିତେ ହେ ନ କହିବ ମେଲି ପାଟି ।
ବୁଢ଼ାଙ୍କ ସେବାରେ ଯେ ହୁଏ ତତପର
ଆୟୁଷ ଯଶ କୀର୍ତ୍ତି ବଢ଼ଇ ତାଙ୍କର ।
ଧରମ ଅତିକ୍ରମ କରି ଯେଉଁ ଅର୍ଥ
ଅରଜି ତହିଁରେ ନୁହଇ ପୁରୁଷାର୍ଥ ।

ଅତିକ୍ଳେଶ ପାଇଣ ଶତ୍ରୁ ପାଦତଳେ
ପଡ଼ି ଧନ ଅର୍ଜିବା ବ୍ୟର୍ଥ ସବୁକାଳେ ।
ବିଦ୍ୟାହୀନ ଲୋକେ ଯେତିକି ପାନ୍ତି ନିନ୍ଦା
ବିଦ୍ୟାବନ୍ତ ଲୋକ ତେତିକି ପାନ୍ତି ବନ୍ଦା ।
ଭାର୍ଯ୍ୟା ସମ୍ଭୋଗରୁ ନୁହଇ ଯେବେ ପୁତ୍ର
ଜାଣ ସେ ବୋଲାଏ ବାଲିରେ ଯେହ୍ନେ ମୂତ୍ର ।
ପ୍ରଜାମାନେ ଯେବେ ତ ଆହାର ନ ପାନ୍ତି
ତେବେଟି କି କରିବା ବୋଲିଣ ଭାଳନ୍ତି ।
ଅରାଜକ ହୋଇଲେ ରାଜ୍ୟ ଲୋକଯାକ
ମଲାଇଁ ବୋଲି କରି ଧରନ୍ତି ଆତଙ୍କ ।
ନିତି ବାଟ ଚାଲିଲେ ନାଶ ଯାଏ ଲୋକ
ପଥର ଛାଡ଼ିଯାଏ ପଡ଼ିଲେ ଉଦକ ।
ସ୍ତିରୀଏ ନାଶ ଯାନ୍ତି ପତି ନ ଛୁଇଁଲେ
ନିଷ୍ଠୁର ବାଣୀ ହୃଦ ଦହଇଟି ଭଲେ ।
ଦ୍ୱିଜର ଅବ୍ରତ ବେଦର ଅନଭ୍ୟାସ
ଧରଣୀର ବାହ୍ଲିକ, ପୁରୁଷ ମିଥ୍ୟାଭାଷ ।
ସତୀର କଉତୁକ, ସ୍ତିରୀର ବିଯୋଗ
ସୁବର୍ଣ୍ଣର ରଜତ, ରଜତର ରଙ୍ଗ ।
ମଳ ଅଟଇ ଆହେ ନରକୁଳବର
ମୋହଠାରୁ ଏହା ଶୁଣି ମନେ କର ।
ଶୋଇବାରେ ନିଦ୍ରା ଯେ ରତିରେ ନବୀନା
ଜିତ ନୁହଇ ଆହେ ଜାଣ ମହାମନା ।
କାଷ୍ଠ ପକାଇଲେ ହେ ଅଗ୍ନି ନ ଲିଭଇ
ପିଇଲେ ମଦିରା ନିବର୍ତ୍ତି ନ ପାରଇ ।
ମିତ୍ରଦାନେ ଶତ୍ରୁ ଯୁଦ୍ଧରେ ଅନ୍ନ ପାନେ
ଭାରିଯାଙ୍କୁ ଜିଣେ ଯେ ରହି ସାବଧାନେ ।
ତାହାର ଜୀବନଟି ବୋଲାଏ ସଫଳ
ଜାଣ ହେ ହସ୍ତିନା ନା-ମଣ୍ଡଳ-ମହୀପାଳ ।
ଶତ ପରିବାର ସହସ୍ର ପରିବାର
ଲୋକଙ୍କ ଚଳୁଅଛି ଖାଇବା ବେଭାର ।
ତୁମ୍ଭେ କିମ୍ପାଇ ପାପ କଥାକୁ ଆଚରି
ଜୀଇଁବାକୁ ଇଚ୍ଛା କରୁଛ ଦଣ୍ଡଧାରୀ ।
ଏ ସକାଶୁଁ କହୁଛି ପୁନଃ ପୁନଃ କରି
କରି ପ୍ରୀତ ପାଣ୍ଡୁସୁତଙ୍କୁ ଡାକିକରି ।
ସାଧୁରେ ପୂଜା ହୋଇ ଛାଡ଼ି ଅଭିମାନ
ଯଶସ୍ୱୀ ଲୋକ କରେ ଅର୍ଥ ସମ୍ପାଦନ ।

ଆପଣାକୁ ତ ଟେକାଟେକି ଯେ କରଇ
ଗୁରୁ ରାଜା ଆଗରେ ଯେ ମିଛ କହଇ।
ତାହାରଟି ଏ ଘେନି ବ୍ରହ୍ମହତ୍ୟା ଦୋଷ
ଦେହରେ ବସି ବସି ନାଶ କରଇ ଆୟୁଷ ।
ପ୍ରତିକ୍ଷଣେ ଅସୂୟା ବହିଥାଇ ଯେ ଅଙ୍ଗେ
ମୃତ୍ୟୁ ଦେବତାଟି ଥାଏ ତାହାର ସଙ୍ଗେ ।
ସ୍ତ୍ରୀ ଯେବେ ଘଇତା କରାଇ ଅପବାଦ
ତୁଚ୍ଛା ବସି ଦିଆଏ ତା ସେ ମଲା ପଦ ।
କହିଲେ ନ ଶୁଣଇ ଆପଣା ପୌରୁଷ
କରି ଯେ ଦ୍ୱରା ହୁଏ ସେ ଅବିଦ୍ୟାବାସ ।
ବିଦ୍ୟା ସୁଖ ଏ ଦୁଇ ନୁହେ ଏକା କଥା
ପରସ୍ପରେ ବଇର ଜାଣ ମହାରଥା।
କାଠରେ ଅଗ୍ନି କେବେ ନୁହଇ ତୃପତି
ସେ ରୂପେ ନଦୀଗଣ ସମୁଦ୍ରଙ୍କ ରୀତି ।
ସ୍ତିରୀମାନେ ପୁରୁଷଠାରୁ ପାଇ ରତି
ନ ରହନ୍ତି କେବେ ସନ୍ତୋଷ ହୋଇ ମତି ।
ଅନ୍ତକ ସବୁ ପ୍ରାଣୀ କରୁଥିଲେ ନାଶ
ବୋଲଇ ନାହିଁ ମତେ ଲାଗୁଛି ଆୟାସ ।
ଅନ୍ତକ କୁଟୁମ୍ବକୁ ରାଜ୍ୟକୁ କ୍ରୋଧୀ ଦ୍ୱିଜ
ନାଶ କରଇ ଆହ ଜାଣ ମହାରାଜ ।
ଚନ୍ଦନ ବୀଣା ମଧୁ ଦର୍ପଣ ଗୋରଚନା
ଘିଅ ଶଙ୍ଖ ତମ୍ବା ପାତ୍ର ହେ ରୂପା ସୁନା ।
ଘରେ ରଖିଥିବ ଆସିଲେ ଅତିଥିଙ୍କି
ଆହେ ଧୃତରାଷ୍ଟ୍ର ଯେ ପୂଜିବା ପାଇଁକି ।
କାମ କ୍ରୋଧ ଲୋଭ ଜୀବନ ରକ୍ଷା ପାଇଁ
ଧରମ ନ ଛାଡ଼ିବ ଜାଣ କହୁଥାଇଁ ।
ଅନିତ୍ୟ ଦୁଃଖ ସୁଖ ଛାଡି କରି ରାୟେ
ନିତ୍ୟରେ ସନ୍ତୋଷକୁ ଯାଅ ନେଇ କାୟେ ।
ତୁମ୍ଭ ପରି ପୂର୍ବେ ବହୁତ ରାଜା ମରି
ବସିଅଛନ୍ତି ଯମ ପୁରଯାକ ପୂରି ।
କଷ୍ଟରେ ପୁତ୍ରଟିଏ କରିଥାନ୍ତି ଜାତ
ମରିଗଲେ ନ ରଖି ପୋଡ଼ନ୍ତି ତୁରିତ ।
ପୁଣ୍ୟ ପାପ ବିନାଟି ଧନ ଦେହ ଦୁଇ
କାହାର ରହି ନାହିଁ ଆହେ ନରସାଇଁ ।
ଯେଉରୂପେ ଫଳ ଥିଲେ ବୃକ୍ଷେ ଘୋଟେ ପକ୍ଷୀ
ସେହିରୂପେଟି ଲୋକେ ରହିକରି ଯୋଖି ।
ଜୀବନ ଥିବା ଯାକ ରାଜାଙ୍କୁ ମଣିମା
ବୋଲୁଥାନ୍ତି ମଲେ ନ ଯାନ୍ତି ତାର ସୀମା।
ତାହା ଜାଣି ଉତ୍ତମ ରାଜା ଯେ ହୋଇବ
ସବୁବେଳେ ଧର୍ମରେ ବୁଦ୍ଧି ଦେଇଥିବ ।
ଉପରେ ସ୍ୱର୍ଗ ତଳେ ରହିଛି ନରକ
ଏହା ଘେନି ହୃଦରେ କର ହେ ବିବେକ ।
ଆତ୍ମାନଦୀ ସତ୍ୟ ଜଳ ଯେ ପୁଣ୍ୟ ତୀର୍ଥ
ଏଥିରେ ସ୍ନାନ କର ହୋଇବ କୃତାର୍ଥ।
କାମ କ୍ରୋଧ ଗ୍ରାହ ଯୁତ ଯେ ପଞ୍ଚେନ୍ଦ୍ରିୟ
ଜଳରେ ହୋଇଅଛି ଯେ ନଦୀ ଉଦୟ।
ତହିଁକି ଧୃତି-ନାବ କରି ମହାରାଜ
ପାରି ହୋଇ ଯାଅ ହେ ଦେଖାଇଣ ଓଜ ।
ବୁଦ୍ଧିମନ୍ତ ଲୋକକୁ ଘେନି ଯେ ବିଘ୍ନରେ
କେବେ ନ ପଡ଼ଇ ସେ ଜାଣ ଅବିଘ୍ନରେ ।
ଧୈର୍ଯ୍ୟ ଶିଶ୍ନୋଦର ଚକ୍ଷୁରେ ପାଣି ପାଦ
କର୍ମରେ ମନ ବାକ୍ୟ ରଖ ବହି ମୋଦ ।
ନିତ୍ୟ ସ୍ନାନ କରି ଯେ ନିତ୍ୟକର୍ମ କରେ
ସତ୍ୟେ କହି ବେଦ ପଢ଼ଇ ନିରନ୍ତରେ ।
ସେ ବ୍ରାହ୍ମଣ ବ୍ରହ୍ମଲୋକରୁ ପରିଚ୍ୟୁତ
ନୁହଇ ପବିତ୍ର କରଇ ଜାତ ଗୋତ୍ର ।
କ୍ଷତ୍ରିୟ ଲୋକ ପ୍ରଜା ପାଳନାକୁ କଲେ
ସ୍ୱର୍ଗରେ ବସଇଟି ଶଚୀପତି ତୁଲେ ।
ବୈଶ୍ୟ ପଢ଼ି କରିଣ ବ୍ରାହ୍ମଣକୁ ଦାନ
ଦେଲେ ଲଭଇଟି ହେ ଯାଇ ସ୍ୱର୍ଗସ୍ଥାନ ।
ଶୂଦ୍ର ଯେବେ ତିନି ବର୍ଣ୍ଣକୁ ସେବା କରେ
ସେ ପୁଣ୍ୟରୁ କେବେ ନ ପଡେ ନରକରେ ।
ତୁମ୍ଭର ଭାଇ ପୁତ୍ର ହୋଇ ଯୁଧିଷ୍ଠିର
ହୋଇଛନ୍ତି କ୍ଷତ୍ରିୟ ଧର୍ମରୁ ଅନ୍ତର ।
ତାହାଙ୍କୁ ପାଖେ ରଖ ଅଧେ ରାଜ୍ୟ ଦେଇ
ବୋଲ ପ୍ରଜା ପାଳନା କର ତୋଷ ବହି।
ଧୃତରାଷ୍ଟ୍ର ବୋଇଲେ ପାଣ୍ଡବଙ୍କଠାରେ
ସ୍ନେହ ମୋର ପ୍ରବର୍ତ୍ତିଥାଏ ନିରନ୍ତରେ ।
କାହୁଁ କଥାଗୁଡେ ଶିଖି ମୋ ଜ୍ୟେଷ୍ଠ ବେଟା
କରିଦିଏ ତାଙ୍କଠାରୁ ମୋ ମନ ଫିଟା ।
ଏହି ସକାଶରୁ ମୁଁ ଜାଣୁଛି ଦଇବ
ଯାହା କରୁଥିବ ତା ଆନ କେ କରିବ ।

ପାଣ୍ଡୁବାଳେ ମୋ ବାଳେ ହୋଇକରି ଗୋଳ
ଯେବେ ବଢ଼ାଇବେ ବିଲୁଆର କପାଳ ।
ତେବେ ମୋ ଭାଳିବାର ଅଟେ ଅକାରଣ
ଜାଣିଛି ଦଇବ ଖଞ୍ଜିଲା ଅକାରଣ ।
ଆଉ କି କଥା ଥିଲେ କହ ହେ ବିଦୁର
ଶୁଣିବାକୁ ମୋ ମନ ହେଉଛି ଆତୁର ।
ବିଦୁର ବୋଇଲେ ହେ ସନତସୁଜାତ
ଋଷି ମୃତ୍ୟୁ ଜିଣିଅଛନ୍ତି ତୁମ୍ଭ ଚିତ୍ତ ।
ସେହି ଏକା କରି ପାରନ୍ତିଟି ତୋଷ
ଆନ ହାତେ ନୁହେ ବିଚିତ୍ରବୀର୍ଯ୍ୟ ଶିଷ୍ୟ ।
ଧୃତରାଷ୍ଟ୍ର ବୋଇଲେ ସେ ଯାହା କରିବେ
ତୁମ୍ଭେ ତ ତାହା ଜାଣ କହ ତେବେ ଏବେ ।
ବିଦୁର ବୋଇଲେ ହେ ଶୂଦ୍ର ଯୋନିଜନ୍ମ
ପାଇଛି କହିବିଟି କେହି ବେଦଧର୍ମ ।
ସମସୁଜାତଙ୍କର ହାତେ ବେଦ କଥା
କହିବାର ନିର୍ଭା ହେବ ହେ ମହାରଥା ।
ଧୃତରାଷ୍ଟ୍ର ବୋଇଲେ କି ରୂପେ ସେ ଋଷି
ଆସି ମୋ ଆଗେ ବେଦ ଭାଷିବେ କହସି ।
ତାହା ଶୁଣି ବିଦୁର ହୃଦୟେ ଚିନ୍ତିଲେ
ସନତସୁଜାତଙ୍କୁ ଆଗେ ଛିଡ଼ା କଲେ ।
ଧୃତରାଷ୍ଟ୍ର ରାଜା ତାହାଙ୍କୁ କଲେ ପୂଜା
ବସାଇଲେ ଆସନେ ମୋଦ କରି ମଜ୍ଜା ।
ବିଦୁର ସେହିକାଳେ କହିଲେ ତାହାଙ୍କୁ
ଧୃତରାଷ୍ଟ୍ରଙ୍କର ପୁଚ୍ଛିବା ଯେ କଥାକୁ ।
ମୋତେ ପଚାରିଲେ ମୁଁ କିରୂପରେ ବେଦ
କହନ୍ତି ଏବେ ତୁମ୍ଭେ କହି କର ବୋଧ ।
ଜରା ମୃତ୍ୟୁ ପ୍ରିୟ ଯେ ଦ୍ୱେଷ ଭୟ ଲାଭ
ଅମର୍ଷ କ୍ଷୁଧା ତୃଷ୍ଣା ଆଳସ୍ୟ ଅଲାଭ ।
ଉଦୟ କ୍ଷୟ କାମ କ୍ରୋଧ ଅପୀରତି
ନାଶ ଯିବା ଶାସ୍ତ୍ର କହିବା ହେଉ ଯତି ।
ଏଠାରେ ସରିଲା ବିଦୁର ପ୍ରଜା ଗୀର
କହଇ ଗୀତେ କୃଷ୍ଣସିଂହ ନୃପବର ।



## ବିଦୁରଙ୍କର ଜ୍ଞାନାଦି ତତ୍ତ୍ୱ କଥା କଥନ

ବଇଶମ୍ପାୟନ ବୋଇଲେ ଜନ୍ମେଜୟ
ନୃପତି ଶୁଣ ଦେଇ କରି ମନ ଲୟ ।
ଧୃତରାଷ୍ଟ୍ର ସନତ୍ସୁଜାତଙ୍କୁ ପୂଜା କରି
ବ୍ରହ୍ମଜ୍ଞାନ ତାହାଙ୍କୁ ବସିଲେ ପଚାରି ।
ମୃତ୍ୟୁ ନାହିଁ ବୋଲି ଯେ ବିଦୁର କହିଲେ
ତାହା ମୋତେ କହିବା ହେଉ ଭଲେ ।
ଦେବାସୁରେ ମୃତ୍ୟୁକୁ ଡରିଣ ବେଦକୁ
ପଢୁଛନ୍ତି ସନ୍ତେ କହନ୍ତି ଆମ୍ଭଙ୍କୁ ।
ଏହା ତୁମ୍ଭଠାରୁ ଶୁଣିବି ଯେବେ ମୁହିଁ
ତେବେଟି ସନ୍ଦେହକୁ ଘେନିବି ମୁଁ ନାହିଁ ।
ସନତ୍ସୁଜାତ ଶୁଣି ବୋଇଲେ ଧୃତରାଷ୍ଟ୍ର
ପଚାରୁଛ ଯାହା ଶୁଣ ତା ହୋଇ ହୃଷ୍ଟ ।
ଯେଉଁମାନେ ବୋଲନ୍ତି କର୍ମେ ମୃତ୍ୟୁଯାଏ
ଯେଉଁମାନେ ବୋଲନ୍ତି ମୃତ୍ୟୁ ନାହିଁ ରାୟେ ।
ଯାହା କହୁଅଛି ନ କର ତହିଁ ଶଙ୍କା
କଲେ ଜାଣ ଅଧର୍ମ ବୁଦ୍ଧି ହେବ ଏକା ।
ଅମୃତ୍ୟୁ ମୃତ୍ୟୁ ଦୁହେଁ ଅଟନ୍ତିଟି ସତ
ମୋହକୁ କେତେ ଲୋକ ବୋଲୁଥାନ୍ତି ମୃତ ।
ମୋର ମତରେ ମୃତ୍ୟୁ ଅଟଇ ପ୍ରମାଦ
ଏ ବାହାରେ ଅମୃତ୍ୟୁ ଅଟେ ଅପ୍ରମାଦ ।
ପ୍ରମାଦ ଆଚରି ଅସୁରେ ହେଲେ ମୃତ
ଶୁଣ ମନଦେଇ ଅମ୍ବିକାଦେବୀ ପୁତ୍ର ।
ମୃତ୍ୟୁତ ଦୃଶ୍ୟ ହୋଇ ବାଘପରି ଘୋଟି
କାହାକୁ ଖାଉନାହିଁ ବୋଲି ଦେଇ ପାଟି ।
କେଉଁମାନେ ବୋଲନ୍ତି ଯମମୃତ୍ୟୁ ହୋଇ
ସବୁ ପ୍ରାଣୀଙ୍କର ଆତ୍ମାରେ ଥାନ୍ତି ରହି ।
କାଳ ବେଳ ଜାଣି ସେ ନେଇ ନିଜଘରେ
ଭଲମନ୍ଦ ବୁଝି ଦିଅନ୍ତି ଦଣ୍ଡକରେ ।
ପ୍ରମାଦ ରୂପ ମୃତ୍ୟୁ ଅହଙ୍କାରୁ ଜାତ
ହୋଇ କ୍ରୋଧ ମୋହକୁ ବଢ଼ାଏ ତୁରିତ ।
ଅହଙ୍କାର କରି କୁମାର୍ଗ ଯେ ଆଚରେ
ନ ପାଏ ମନ ତାର ସ୍ୱଆତ୍ମା ଯୋଗରେ ।
ଏହି ସକାଶୁ ପ୍ରେତ ହୋଇ ଧୂମମାର୍ଗେ
ସ୍ୱର୍ଗେ ଯାଇ ପୁଣି ଜନ୍ମଇ ମର୍ତ୍ତ୍ୟଭାଗେ
ଏରୂପେ ଲୋକ ଯିବା ଆସିବା ନ ଜାଣି
ମୃତ୍ୟୁ ବୋଲୁଛନ୍ତି ଯେ ଅହେତୁକ ପ୍ରାଣୀ ।
କର୍ମକୁ ଅନୁରୂପ ହୋଇ କର୍ମଫଳ
ଭୁଞ୍ଜୁଥାନ୍ତି ଜାଣ ହେ ମାନବ ମଣ୍ଡଳ ।

ଆତ୍ମତତ୍ତ୍ୱକୁ ନ ଜାଣିଟି ସର୍ବଦେହୀ
ମାନେ ତ ଭୋଗ ନିତି କରନ୍ତି ନିଠାଇଁ ।
ଇନ୍ଦ୍ରିୟମାନଙ୍କ ବିଷୟ ନିବର୍ତ୍ତନ
ମହାମୋହକରଟି ଅଟଇ ରାଜନ ।
ମିଥ୍ୟାଭୂତ ବିଷୟେ ଚିତ୍ତକୁ ନିବେଶି
ହୁଅଇ ସ୍ତିରୀଙ୍କର ରତିରେ ଲାଳସୀ ।
ବିଷୟ ଧ୍ୟାନ କଲେ ଆତ୍ମା ନ ଚିହ୍ନଇଁ
କାମ କ୍ରୋଧ ସକାଶୁଁ ମରଣ ଲଭଇ ।
ଧୀରମାନେ ଧୈର୍ଯ୍ୟରେ ଚିହ୍ନିଣ ଆତ୍ମାକୁ
ମୃତ୍ୟୁଭୟ ଛାଡ଼ି ଜିଣନ୍ତି ସଂସାରକୁ ।
ଯେଉଁଲୋକ ବିଷୟ ଧ୍ୟାନକୁ ଛାଡ଼ଇ
ମୃତ୍ୟୁରଟି ମୃତ୍ୟୁ ଜାଣ ସେହୁ ହୁଅଇ ।
କାମନାକୁ ଯେ ଅନୁସରିଲେ ପୁରୁଷ
ସେ କାମନା ତାହାକୁ କରଇଟି ନାଶ ।
କାମନାକୁ ବିବେକ କରି ଯେ ଛାଡ଼ିଛି
ଜାଣ ସବୁ ପ୍ରମାଦକୁ ସେ ଜିଣିଅଛି ।
ପ୍ରାଣୀଙ୍କର ଦେହ ଅଟଇ ତମ ରୂପ
ବିଚାରିଲେ ଅଟଇ ନରକସ୍ୱରୂପ ।
ଅସ୍ଥି ଚର୍ମ ମେଦ ଯେ ପୂଜ ମାଂସ ରକ୍ତ
ମୂତ୍ର ବିଷ୍ଠା କଫ ତ ପିତ୍ତ ମଜ୍ଜାଯୁତ ।
ଏହା ଜାଣି ଦେହକୁ କରିଣ ଲାଳନା
କରନ୍ତି ପୁରୁଷ ସ୍ତ୍ରୀ ଭୋଗରେ କାମନା ।
ଯେଉଁ ଲୋକ ବ୍ରହ୍ମକୁ ଛାଡ଼ିଣ ବିଷୟ
ଭଜୁଛି ତାହାରଟି ବ୍ୟର୍ଥ ହୁଏ କାୟ ।
କ୍ରୋଧ ମୋହଯୁତ ହେବାରୁ ତୁମ୍ଭ ଆତ୍ମା
ଶରୀର ବିନାଶିବ ଜାଣ ହେ ମହାତ୍ମା ।
ଏହା ଜାଣି ଯେ ସ୍ତିରୀ କାମୁକ ହୁଅନ୍ତି
ଯାଗ କରି ଧୂମମାର୍ଗରେ ସ୍ୱର୍ଗ ଯାନ୍ତି ।
ତହିଁ ଅପସରାମାନଙ୍କୁ କରି ଭୋଗ
ପୁଣି ତଳେ ପଡ଼ି ଲଭନ୍ତି ଦୁଃଖଭୋଗ ।
ଯେଉଁ ବ୍ରାହ୍ମଣର ତ ଭୋଗଇଚ୍ଛା ନୁହେ
ଜ୍ଞାନସାଧନାଟି ତାଙ୍କର କର୍ମ ହୁଏ ।
ସେହି ବଳେ ସେମାନେ ତେଜୋବନ୍ତ ମାର୍ଗେ
ଯାଇକରି ମିଶନ୍ତି ବ୍ରହ୍ମଦେହ ଭାଗେ ।
ଜ୍ଞାନକୁ ଯେ ଜାଣଇ ଶତ୍ରୁ ମିତ୍ରେ ସମ
ବୁଦ୍ଧି ଆଚରଇ ହେ ନୃପତିଉତ୍ତମ ।
ଅନ୍ନ ବିନା ଆତ୍ମଜ୍ଞାନ ତ ନୋହେ ସାଧି
ଏଥିକି ଯା କରିବ ଶୁଣ ଦେଇ ବୁଦ୍ଧି ।
ଯେଉଁ ଦେଶରେ ମିଳୁଥିବ ଦିବ୍ୟ ଅନ୍ନ
ସେ ଦେଶେ ରହିଣ ସାଧିବ ଆତ୍ମଜ୍ଞାନ ।
ଯୋଗୀ ଦ୍ୱିଜ ଯେବେଟି ସମ୍ଭାବନା ପାଏ
ଯୋଗ ତେବେ ତାହାର ନାଶଯାଏ ରାୟେ ।
ସମ୍ଭାବନା ଯେଉଁ ଠାବରେ ହେଉଥିବ
ଆଖି ବୁଜିଣ ଯୋଗୀ ସେଠାରେ ରହିବ ।
ଜଣା ନ ପଡ଼ିବା କଥାକୁ ଯତ୍ନ କରି
ଜଗୁଥିବା ମାତ୍ରକ ଯୋଗ ଇଚ୍ଛା କରି ।
ଅନ୍ତରାତ୍ମା ନିଦ୍ୱନ୍ଦ୍ୱ ନିରଅହଙ୍କାର
ଏ ବିନା ଆନେ ଜଣା ନ ଯାଏ ନୃବର ।
ଆତ୍ମାକୁ ଯେ ଅହଙ୍କାରରେ ଥାଏ ଧରି
ତାକୁ ମହାପାତକୀ ନୋହେ ଜାଣ ସରି ।
ଦେହରେ ଅଭିମାନ କରେ ଯେଉଁ ନର
କୋଟିଏ ଗୋବଧର ଫଳ ହୁଏ ତାର ।
ଯେଉଁ ଲୋକ ଆତ୍ମ-ଜ୍ଞାନକୁ ଉପୁଜାଇ
ଇହ ପର ଦୁଇରେ ନୃପ ସେ ତରଇ ।
କୁକୁର ବାନ୍ତି କରି ଖାଏ ଯେଉଁ ରୂପେ
କହିଲେ ଯୋଗୀ ପ୍ରୌଢ଼ି ଜାଣ ସେହିରୂପେ
ପୁତ୍ର ପୌତ୍ର ଆଦିରେ ଆଢ୍ୟତାକୁ ଛାଡ଼ି
ଆଢ୍ୟ ସମ୍ପାଦନ୍ତି ଯୋଗୀଏ ବେଦ ପଢ଼ି ।
ଯେଉଁ ରୋଗୀ ଗୁଡ଼ଖରୀ ତ ତୁନି ହୁଏ
ତାହାକୁ ବିଦ୍ୟାବନ୍ତେ ମାନନ୍ତି ସଭିଏଁ ।
ଯୋଗୀ ସମ୍ଭାବନା ଅସମ୍ଭବନା ଦୁଇ
ପାଇ ଅସନ୍ତୋଷ ସନ୍ତୋଷ ହେବ ନାହିଁ ।
ମାନ ଥିବା ଲୋକ ଯେ ନ କରେ ମଉନ
ମଉନ କଲା ଲୋକ ନ କରଇ ମାନ ।
ସଂସାର ବେଭାର ଅଟଇ ମାନଧାରୀ
ମଉନରେ ପାଆନ୍ତି ବ୍ରହ୍ମ ନରହରି ।
ସତ୍ୟ ଅକୌଟିଲ୍ୟ ଇନ୍ଦ୍ରିୟ ଜୟ ହାରୀ
ମନ ପ୍ରକ୍ଷାଳନ ଯେ ବ୍ରହ୍ମ ବିଦ୍ୟାକାରୀ ।
ଶରୀରେଟି ମାନ ମୋହ କଦାଚିତେ
ରହି ନ ପାରଇ ହେ ନୃପ ଘେନି ଚିତ୍ତେ ।
ଧୃତରାଷ୍ଟ୍ର ବୋଇଲେ କାହାର ମଉନ
ହୁଅଇ କିଂସ୍ୱରୂପ ଅଟଇ ମଉନ ।

ଏହା ମୋହର ଆଗେ କହ ତ ବିସ୍ତାରି
ଭଲ କରି ସନତସୁତ ତପଋରୀ ।
ଏହା ଶୁଣି ସନତସୁଜାତ କହିଲେ
ବେଦମନ ଆତ୍ମକୁ ଭେଦି ନ ପାରିଲେ ।
ଏଣୁ କରି ଯେ ଆତ୍ମା ବ୍ରହ୍ମଟି ମଉନ
ବୋଲାଏ ଜାଣ ଆହେ କୁରୁଙ୍କ ରାଜନ ।
ଯାହାଙ୍କଠାରୁ ବେଦେ ଜନମି ଅଛନ୍ତି ।
ତାଙ୍କୁ ପରମାତ୍ମା ବୋଲନ୍ତି ନରପତି ।
ଧୃତରାଷ୍ଟ୍ର ବୋଇଲେ ଦ୍ୱିଜେ ପଢ଼ି ବେଦ
ଲଭନ୍ତି କି ନାହିଁ ପାପ ମୋ ଆଗେ ବଦ ।
ଏହା ଶୁଣି ସନତକୁମାର କହିଲେ
ପାପକାରୀ ଲୋକେ ତ ତାରେ ବେଦ ଭଲେ ।
ଧୃତରାଷ୍ଟ୍ର ରାଜନ ତାହା ଶୁଣି କରି
କହିଲେ କହିଛନ୍ତି ସର୍ବ ତପଋରୀ ।
ପଢ଼ିଲେ ଲୋକ ବେଦ ହୁଅଇ ନିଷ୍ପାପ
ତୁମ୍ଭେ କିପାଁ ବୋଲ ନ ଯାଏ ତହିଁ ପାପ ।
ଏଥିରେ ଯେ କାରଣ ବୋଲନ୍ତୁ ହେ ତାହା
ଶୁଣିବାକୁ ମନ ହେଉଅଛି ଉତ୍ସାହା ।
ସମସ୍ତୁ ଜାତ ଋଷି ବୋଇଲେ ନୃବର
କହିଲା ଠାରେ କିପାଁ ସନ୍ଦେହ ହେ କର ।
ବେଦ ପଢ଼ି ପ୍ରବୃତ୍ତମାର୍ଗ ଛାଡ଼ିକରି
ନିବୃତ୍ତିମାର୍ଗ କଲେ ଯାଆନ୍ତି ସେ ତରି ।
ପରମାତ୍ମାରୂପରେ ଏ ଜଗତଯାକ
ପ୍ରକାଶ ହେଉଛି ହେ ଅବନୀନାୟକ ।
ନିଷ୍କାମ କରି ଋନ୍ଦ୍ରାୟଣ ଯାଗ କଲେ
ପାପକୁ ନାଶ କରି ଜ୍ଞାନ ପାଏ ଭଲେ ।
ଜ୍ଞାନ ବଳରେ ପୁଣି ପାଏ ପରମାତ୍ମା
ମୁହିଁ କରିଦିଏ ଦେହର ଜୀବଆତ୍ମା ।
ଯାଗ ଋନ୍ଦ୍ରାୟଣ କରିଲେ ସ୍ୱକାମରେ
ସ୍ୱର୍ଗକୁ ଯାଇ କରି ପଡ଼ଇ ମର୍ତ୍ତ୍ୟରେ ।
ଏହି ଲୋକରେ ତପ କଲେ ଋରିବର୍ଣ୍ଣ
ବେଦ ଘେନି ଦ୍ୱିଜର ଅଧିକ ବୋଲି ଜାଣ ।
ଧୃତରାଷ୍ଟ୍ର ବୋଇଲେ ହେ କି ରୂପରେ ତପ
ବଢ଼ଇ ନ ବଢଇ କହ ତା ସ୍ୱରୂପ ।
ସନସ୍ତୁଜାତ ଋଷି ବୋଇଲେ ନୃପତି
ନିଷ୍କଳୁଷ ହେଲେଟି ତପସ୍ୟା ବଢ଼ନ୍ତି ।

ଧୃତରାଷ୍ଟ୍ର ବୋଇଲେ ତପର କଳ୍ମଷ
କାହାକୁ ବୋଲି ତାହା କର ହେ ପ୍ରକାଶ ।
ଋଷି ବୋଇଲେ ଆହ କହିବା ସେ କଥା
ପଋର ଯେବେ ନୃପବର ମହାରଥା ।
କାମ କ୍ରୋଧ ଲୋଭ ଯେ ମୋହ ଯୁଗୁପସା
ସ୍ପୃହା ମାନ ଶୋକ ଯେ ଅକୃପା ଈରିଷା ।
ବିଧିତ୍ସା ଅସୁୟାଏ ମିଶି ଗୋଟିବାର
କଥାଟି କଳମଷ ଅଟେ ତପସ୍ୟାର ।
ଏ ଦୋଷମାନଙ୍କରୁ ଗୋଟିଏ ଯା ଦେହେ
ଅଛିଟି ସେ ରାଜନ କେଭେଁ ମୁକ୍ତ ନୋହେ ।
ନିଷିଦ୍ଧକର୍ମା କାମୀ ଅଜ୍ଞାନୀ ଭାର୍ଯ୍ୟାଦୋଷୀ
କୃପଣ ତାପଦାତା ଇନ୍ଦ୍ରିୟ ପରଶଂସି ।
ଏମାନେଟି ନୃଶଂସ ବୋଲନ୍ତି ରାଜନ
ପଢ଼ିଲେ ଧର୍ମକଥା ହୁଅନ୍ତି ବିଷର୍ଣ୍ଣ ।
ଜ୍ଞାନ ସତ୍ୟ ଶାସ୍ତ୍ର ଯେ ଅମତ୍ସର ଦମ
ଅନସୂୟା ଲଜ୍ଜାଟି କ୍ଷମା ଧୃତି ସମ ।
ଯାଗ ଦାନ ଆଦିକୁ ବ୍ରାହ୍ମଣ ସମ୍ପାଦି
ଥିଲେ ଲଭେ ପୌରୁଷ ହୋଇ ନିର୍ବିବାଦୀ ।
ଏ ଗୁଣମାନ ଯେବେ କ୍ଷତ୍ରି ଆଚରଇ
ବସିଣ ସାଗରାନ୍ତ ମହୀକି ଭୁଞ୍ଜଇ ।
ଖଚ ମିଛ ତୁଷ୍ଟୀଭାବ ଯେ ପରିବାଦ
ପ୍ରୀତିକୂଲ୍ୟ ଅଜ୍ଞାନ ଅକ୍ଷମା ବିବାଦ ।
ଅତିବାଦ ପରିତାପ ଯେ ଅଭିମାନ
ଅସନ୍ତୋଷ ହିଂସା ପ୍ରାଣୀଙ୍କର ପୀଡ଼ନ ।
ଅସିଦ୍ଧ ପାପକୃତ୍ୟ ଅଧିତି ଲୋକ ଦ୍ୱେଷ
ଏଥିରେ ମନ କେବେ ନୁହଇଟି ବଶ ।
ଖଚ ଆଦି କଥା ଯାହା ଦେହ ହରେ ନାହିଁ
ତାହାର ଉନ୍ମାଦ ନୁହଇ ନରସାଇଁ ।
ସତ୍ୟ ଥିଲେ ସବୁ ଧରମ ଗୁଣଯାକ
ଦେହେ ରହିଥାଏ ହେ ଅବନୀନାୟକ ।
ସତ୍ୟବଳେ ଲୋକର ହୁଅଇ ମୁକତି
ତୁମ୍ଭେ ସେହି କଥା କର ହେ ନରପତି ।
କ୍ରୋଧାଦି ଦୋଷ ଯେବେ ଦେହୁଁ ନିବର୍ତ୍ତଇ
ତେବେ ତପ କରିଟି ମାନବ ତରଇ ।
ଯା ଦେହରେ ଦୋଷ ନ ଥାଏ ଗୁଣ ଥାଏ
ତାହା ତପସ୍ୟାରୁ ଗୋଟିଏ ବ୍ୟର୍ଥ ନୁହେ ।

ଧୃତରାଷ୍ଟ୍ର ବୋଇଲେ ଚାରି ତିନି ଦୁଇ
ଏକ ବେଦ ପଢନ୍ତି ବ୍ରାହ୍ମଣ ଗୋସାଇଁ ।
ମାନେ ତ ସଭା ମଧ୍ୟେ ପୌଢି କହୁଥାନ୍ତ
ଏଥିରେ କେ ବଡ ତା କହ ମୋତେ ଯତି ।
ମନସୁଜାତ ଋଷି ବୋଇଲେ ନୃପତି
ସତ୍ୟ ବିନା ଦେହରେ କାର୍ଯ୍ୟ ନାହିଁ ଅତି ।
ସତ୍ୟରୁ ଯେଉଁମାନେ ହୁଅନ୍ତିଟି ଚ୍ୟୁତ
ତାଙ୍କ ମନୋରଥ ନୁହଇ କରଗତ ।
ସତ୍ୟ ବ୍ରହ୍ମପୁରୁଷ ଗୋଟିକି ନ ଜାଣି
ଯାଗ କରୁଥାଆନ୍ତି ତୁଚ୍ଛା ଦ୍ୱିଜଶ୍ରେଣୀ।
ସତ୍ୟକୁ ଯେ ଆଦର କରୁଥାନ୍ତି ରାୟେ
ବ୍ରାହ୍ମଣଙ୍କରେ ଶ୍ରେଷ୍ଠ ଜାଣ ସେ ବୋଲାଏ ।
ସବୁ ବେଦେ ସତ୍ୟର ଆଶ୍ରୟ ସେ ହୋଇ
ରହିଛନ୍ତି ଜାଣ ହସ୍ତିନା ନରସାଇଁ।
ଜାଣିବା ଦ୍ୱିଜେ ବେଦ ପଢ଼ିଣ ସତ୍ୟକୁ
ଆଦରନ୍ତି ଛାଡି ଦେଇକରି ବେଦକୁ ।
ବେଦମାନେ ଯେବେଟି ସତ୍ୟକୁ ଜାଣନ୍ତେ
କର୍ମକୁ କିପାଁ ରାୟେ ସେ ପ୍ରତିପାଳନ୍ତେ ।
ବେଦେ ସବୁ ନିଷେଧ କରୁ କରୁ ଯାହା
ରହଇ ବାକ୍ୟ ସତ୍ୟ ବୋଲାଏଟି ତାହା।
ବିଷୟକୁ ହୃଦୟେ ନ ରଖେ ଯେ ନର
ସତ୍ୟସ୍ୱରୂପକୁ କରଇ ସେ ଗୋଚର ।
ମଉନ ହୋଇ ଯେଉଁ ଲୋକ ବନେ ରହେ
ସତ୍ୟ ପ୍ରକାଶଟି ହୁଅଇ ତାର ଦେହେ।
ମଉନେ ନ ଥାଇ ଯେ ବନେ କରେ ବାସ
ତାକୁ କେବେ ସତ୍ୟ ନୁହଇ ଜାଣ ଦୃଶ୍ୟ ।
ସବୁ ଅର୍ଥଙ୍କର ବ୍ୟାଖ୍ୟାନ ଯେ କରଇ
ବ୍ୟାକରଣୀ ବୋଲିଣ ତାହାକୁଟି କହି।
ସବୁ ଲୋକକୁ ଯେ ସମାନ ଦେଖେ ରାୟେ
ସର୍ବଦରଶୀଟି ସେ ଜଗତେ ବୋଲାଏ ।
ସତ୍ୟକୁ ଜାଣଇ ଯେ ହୁଅଇ ସର୍ବଜ୍ଞ
ସତ୍ୟ ନ ଜାଣିବା ଲୋକ ଅଟଇ ଅଜ୍ଞ।
ବେଦାନ୍ତ ଶ୍ରାବଣରେ ଯେ ରୂପରେ ସତ୍ୟ
ଜଣାଯାଏ ତା ମଧ୍ୟ କରିବା ବ୍ୟକତ।
ଧୃତରାଷ୍ଟ୍ର ବୋଇଲେ ସନତକୁମର
କହ ତା ଶୁଣିବାକୁ ହୁଏ ମନ ମୋର ।

ମନସୁଜାତ ଋଷି ବୋଇଲେ ହେ ରାଜା
ନ ଜାଣଇ ଯାହାର ଚଞ୍ଚଳଟି ମଜ୍ଜା ।
ତୁମ୍ଭେ ଯେଉଁ ବିଦ୍ୟା ପଚାରୁଅଛ ମୋତେ
ବ୍ରହ୍ମଚର୍ଯ୍ୟ ବିନା ସେ ନୁହେ ଆନ ସୁତେ ।
ବ୍ରହ୍ମଚର୍ଯ୍ୟ ସେ ବିଦ୍ୟା ପାଇଛି ଯେ ନର
ସଂସାରକୁ ଜାଣ ସେ ମଣୁଥାଏ ଛାର ।
ଧୃତରାଷ୍ଟ୍ର ବୋଇଲେ ବ୍ରହ୍ମଚର୍ଯ୍ୟ କଥା
ବତାଇ କହ ମୋତେ ତପି ସାମରଥା ।
ସନସୁଜାତ ଋଷି ବୋଇଲେ ଗୁରୁଙ୍କ
ସେବା ବ୍ରହ୍ମଚର୍ଯ୍ୟ ହେ ନୃପତି ତିଳକ ।
ଗୁରୁ ଅନୁଗ୍ରହରୁ ଶାସ୍ତ୍ରକୁ ଜାଣନ୍ତି
ସେ ଶାସ୍ତ୍ର ଘେନିକରି ବ୍ରହ୍ମାଙ୍କୁ ପାଆନ୍ତି ।
ମାତା ପିତା ଦୁହିଁଟି ଦେହକୁ କାରଣ
ଆଚାର୍ଯ୍ୟଟି ତାହାର ଅଟଇ ତାରଣ ।
ଗୁରୁଦ୍ରୋହ ଯେଁଉମାନେ ଟି ଆଚରନ୍ତି
କେବେହେ ତାହାଙ୍କର ନୁହଇ ମୁକତି ।
ତିନି ବେଦ ପଢି ଗୁରୁଙ୍କୁ ନମସ୍କାର
କରୁଥିବ ସୁଶିଷ୍ୟର ଏହି ବେଭାର ।
ଗୁରୁଙ୍କ ସେବା କରି ବିଦ୍ୟାକୁ ଯେ ପାଏ
ବ୍ରହ୍ମଚର୍ଯ୍ୟ ପ୍ରଥମ ପାଦ ଜାଣ ରାୟେ ।
ଗୁରୁପରି ଗୁରୁପୁତ୍ରରେ ବୁଦ୍ଧି ଯାର
ବ୍ରହ୍ମଚର୍ଯ୍ୟ ଦ୍ୱିତୀୟ ପାଦ ହୁଏ ତାର ।
ବିଦ୍ୟା ହେଲା ଉତ୍ତାରୁ ମାନେ ଯେ ଗୁରୁଙ୍କୁ
ପାଏ ସେ ବ୍ରହ୍ମଚର୍ଯ୍ୟ ତୃତୀୟ ପାଦକୁ ।
ପ୍ରାଣଧନ ଦେଇ ଯେ ଗୁରୁପ୍ରିୟ କରେ
ବ୍ରହ୍ମଚର୍ଯ୍ୟ ଚତୁର୍ଥ ପାଦ ତାହାଠାରେ ।
ଜ୍ଞାନର ବିଦ୍ୟା ପାଦେ ଗୁରୁ ଯୋଗେ ପାଦେ
ଉତ୍ସାହରେ ପାଦେ ଶାସ୍ତ୍ରରେ ହୁଏ ପାଦେ ।
ଏହିରୂପେ ବିଦ୍ୟା ହୁଅଇ ଚାରିପାଦ
ଶୁଣିଥାଅ ଗାନ୍ଧାରୀପତି ବହି ମୋଦ ।
ବ୍ରହ୍ମଚର୍ଯ୍ୟ କରିଣ ସବିତା ଦେବତା
ହୋଇଲେ ଜଗତରେ ଆଲୋକ କରତା ।
ବ୍ରହ୍ମଚର୍ଯ୍ୟ କରିଣ ଦେବତାଏ ସ୍ୱର୍ଗେ ।
ବସି କରି ପଢ଼ିଣଛନ୍ତି ସୁଖଭାଗେ ।
ବ୍ରହ୍ମଚର୍ଯ୍ୟ କରିଣ ଅପସରାକୁଳ
ରୂପରେ ଦେବତାଙ୍କୁ କରନ୍ତି ଆକୁଳ ।

ବ୍ରହ୍ମଚର୍ଯ୍ୟ ଆଚରିବାରୁଟି ବ୍ରାହ୍ମଣେ
ଋଷି ବୋଲି ସବୁରି ବଚନ ବଖାଣେ ।
ବ୍ରହ୍ମଚର୍ଯ୍ୟରଟି ଏ ଅଟେ ଗୁଣ ରାୟେ
ଯେ ଯାହା ଭାବି କରେ ସେ ସେହି କଥା ପାଏ
ଜନମାନେ ନିର୍ମଳ କର୍ମରେ ସ୍ୱର୍ଗକୁ
ପାଇଅଛନ୍ତି ଜିଣି ଲୋକ ସକଳକୁ ।
ଜ୍ଞାନକୁ ଯେଉଁମାନେ କରନ୍ତି ଆଦର
କେବଳ ହୁଅନ୍ତି ସେ ଜାଣ ବ୍ରହ୍ମଙ୍କର ।
ଧୃତରାଷ୍ଟ୍ର ବୋଇଲେ ଜ୍ଞାନରେ ବ୍ରହ୍ମଙ୍କୁ
ଦେଖୁଛନ୍ତି ଦ୍ୱିଜେ ତ କହୁଛ ଆମ୍ଭଙ୍କୁ ।
ସେହି ବ୍ରହ୍ମର ରୂପ ଅଟଇ କିରୂପେ
ଏହା ମୋତେ କହିବା ହେଉ ତ ସଂକ୍ଷେପେ ।
ସନତ୍ସୁଜାତ ଋଷି କହିଲେ କଳାଧଳା
ରୂପ ନୁହଇ ଆହେ ବ୍ରହ୍ମରାଜବଳା ।
ପୃଥିବୀ ଅନ୍ତରୀକ୍ଷ ସିନ୍ଧୁ ଚନ୍ଦ୍ର ସୂର୍ଯ୍ୟ
ତାରକା ଘନରେ ନ ଦିଶେ ବ୍ରହ୍ମତେଜ ।
ଏ ବାହାରେ ଋରି ବେଦରେ ତା ପ୍ରକାଶ
ହୋଇ ନାହିଁଟି ଆହେ ନରକୁଳଈଶ ।
ଆତ୍ମାଜ୍ଞାନୀ ଲୋକତ ତ ତାହା ଏକାଜାଣେ
ନ ସରିବ କେବେ ତା ବଚନ ବଖାଣେ ।
ତମରୁ ପର ଅବାରଣୀୟଟି ବ୍ରହ୍ମ
ନ ପାରି ଜାଣି ଲୋକ ତାକୁ କରେ କର୍ମ ।
ପ୍ରକୃତ ଧର୍ମରେ ତ ଅଟେ ଯେ ରହିତ
ନିର୍ମଳ ଅବିକାର ଗୁଣେ ଅଲିପିତ ।
ଏଣୁ ମହତ ଯେ ଗୁଣକୁ ବହିଥାନ୍ତି
ପ୍ରଳୟ କାଳରେଟି ଏକା ସେ ଥାଆନ୍ତି ।
ଏରୂପେ ବ୍ରହ୍ମକୁ କରିଛି ଯେ ଗୋଚର
କିସ କରି ପାରଇ ତାହାକୁ ସଂସାର ।
ବ୍ରହ୍ମଙ୍କ ଉପାସନା କରିଣ ସୁମନା
ସ୍ୱର୍ଗରେ ବସିଛନ୍ତି ହୋଇଣା ସୁମନା ।
ବ୍ରହ୍ମଙ୍କ ସହାୟରୁ ସବିତା ପ୍ରକାଶ
କରୁଛନ୍ତି ଦଶଦିଶ ହେ ନରଈଶ ।
ବ୍ରହ୍ମରୁଟି ହିରଣ୍ୟଗର୍ଭ ବ୍ରହ୍ମ ଜାତ
ହୋଇଛନ୍ତି ଆହେ ବିଚିତ୍ର ବୀର୍ଯ୍ୟସୁତ ।
ବ୍ରହ୍ମଙ୍କ ପ୍ରଭାବେ ହିରଣ୍ୟଗର୍ଭବ୍ରହ୍ମ
ବଢିଣ ଦେଖାଉ ଅଛନ୍ତି ମହାତମ୍ୟ ।

ସୂର୍ଯ୍ୟ ଅଗ୍ନିରେ ସେହୁ ଅତପ୍ତ ଅଟନ୍ତି
ଆପଣା ଇଚ୍ଛାରେ ପ୍ରକାଶ ହେଉଥାନ୍ତି ।
ବ୍ରହ୍ମଙ୍କରଠାରୁ ଯେ ସ୍ଥାବର ଜଙ୍ଗମ
ଜନମି ଅଛନ୍ତି ହେ ନୃପତି ଉତ୍ତମ ।
ପୁଣି ବ୍ରହ୍ମଠାରେ ଏ ତିନି ଲୋକ ପ୍ରାଣୀ
ରହୁଛନ୍ତି ପ୍ରଳୟ କାଳକୁଟି ଜାଣି ।
ବ୍ରହ୍ମାଣ୍ଡ ସରଜନା କାଳରେ ଅମୃତ
ଜନମି ଜାତ କଲା ପଞ୍ଚମହାଭୂତ ।
ପଞ୍ଚ ମହାଭୂତେ ଦେହକୁ ଜାତ କଲେ
ତହିଁ ଜୀବ ପରମଆତ୍ମାଟି ରହିଲେ ।
ସେହି ବଳରେ ବିଦିଗରେ ଦେହୀ
ପୂରି ରହିଲେଟି ହସ୍ତିନା ନରସାଇଁ ।
ଏକାଦଶ ଇନ୍ଦ୍ରିୟଙ୍କରେ ବୁଦ୍ଧି ମିଶି
ଆତ୍ମବଳେ ହେଉଛି ବିଷୟ ଲାଳସୀ ।
କରମଟିକୁ କରି ଜୀବ ଇହଲୋକେ
ଈଶ୍ୱର ସକାଶୁଁ ତା ଭୁଞ୍ଜେ ପରଲୋକେ ।
ପୁଣି ଜନ୍ମ ହେଲେ ସେ ହୁଅଇ ବ୍ରାହ୍ମଣ
ବ୍ରାହ୍ମଣ ଜାଣ ସେ ହୁଅନ୍ତି ମୁକ୍ତ ଜାଣ ।
ଅପାନ ପ୍ରାଣେ ଲୀନ ପ୍ରାଣ ମନେ ଲୀନ
ମନ ଲୀନ ବୁଦ୍ଧିରେ ବ୍ରହ୍ମେ ବୁଦ୍ଧି ଲୀନ ।
ବ୍ରହ୍ମ ହଂସ ଏକ ପାଦ ତ ଜୀବମାନେ
ନ ଦେଖନ୍ତି ଦେଖିଲେ ତରନ୍ତେ ବହନେ ।
ସେ ଚତୁଷ୍ପଦ ହଂସ ହେବାକୁ କୌତୁକ
ମୋକ୍ଷ ନ କରଇ ଜାଣ ହେ ଜୀବଲୋକ ।
ଲିଙ୍ଗ ଶରୀରକୁ ଯେ ଜୀବ ଆତ୍ମାପାଇ
ସଂସାରରେ ସେ ଭ୍ରମୁଅଛିଟି ନିଠାଇ ।
ବ୍ରହ୍ମଜ୍ଞାନୀ ବିନା ଏହି କଥା ଆନକୁ
ଗୋଚର ନୁହଇଟି କହୁଛି ତୁମ୍ଭଙ୍କୁ ।
ଯେଉଁରୂପେ ସାପ ଗାତରୁ ବାହାରଇ
ଖେଳାଇ କରି ପୁଣି ଗାତରେ ପଶଇ ।
ସେହିରୂପେ ବିଷୟ ବିଷୟରେ ଇନ୍ଦ୍ରିୟେ
କରାଅନ୍ତି ଜୀବକୁ ମୋହ ଅତିଶୟେ ।
ଯୋଗୀ ଅଯୋଗୀଙ୍କର ଦେହରେ ସମାନ
ହୋଇ ବ୍ରହ୍ମ ଅଛି ହେ ନରକୁଳରାଣ
ସଂସାର ମୋକ୍ଷ ଦୁହେଁ ଜୀବେ ଆଶ୍ରେ କରି
ଥାନ୍ତି ଯେ ଯାହାଙ୍କର ହୁଏ ସେ ତାହାରି ।

ସମାଧି ସାଧନାଟି ଅଛି ଯାହାଙ୍କର
ପରମ ବ୍ରହ୍ମ ସ୍ଥାନ ହୁଅଇ ତାଙ୍କର ।
ଅଙ୍ଗୁଷ୍ଠମାନ ଜୀବପୁରୁଷ ଦେହେ ଥାଇ
କାହାକୁ ଗୋଚର ନୁହଇ ନରସାଇଁ ।
ସେ ଜୀବଆତ୍ମା ଚିନ୍ତା କରି ପରମାତ୍ମା
ପାଉଛନ୍ତି ଯେ ଜନେ ବୋଲାନ୍ତି ମହାତ୍ମା ।
ପରମ ଆତ୍ମାରୁଟି ହେଉଛି ଆକାଶ
ଆକାଶରୁ ବାୟୁ ହେଉଅଛି ପ୍ରକାଶ ।
ବାୟୁ ପୁଣି ତେଜକୁ କରିଅଛି ଜାତ
ତେଜରୁଟି ଜଳ ହେଉଅଛି ସମ୍ଭୂତ ।
ଏ ସଂସାର ଜଳକୁ ବହିବାର ପାଇଁ
ଜଳରୁଟି ବାରି ଅଛନ୍ତି ଏ ମହୀ ।
ଯେ ଯାହାଠାରୁ ଜନ୍ମ ସେ ତାହାଠାରେ ଲୀନ
ହୋଇଣ ବ୍ରହ୍ମଠାରେ ମିଶୁଛନ୍ତି ଜାଣ ।
ଏମନ୍ତ ଯେ ବ୍ରହ୍ମ ତାହାଙ୍କୁ ଯୋଗୀ ପାନ୍ତି
ଯୋଗରେ ବଳରେଟି ରାଜନ ଦେଖନ୍ତି ।
ଅନନ୍ତ ଜନ୍ମ ପାଇଁ ବ୍ରହ୍ମଙ୍କର ଅନ୍ତ
ନ ପାଇଣ ଲୋକେ ବୋଲନ୍ତି ଯେ ଅନନ୍ତ ।
ଯେଉଁମାନେ ଯାଗାଦି କର୍ମେ ମନଃଶୁଦ୍ଧି
କରିଥାନ୍ତି ଜାଣନ୍ତି ବ୍ରହ୍ମଙ୍କ ଅବଧି ।
ସବୁ ପ୍ରାଣୀ ଆତ୍ମାକୁ ଏକ ମଣେ ରାୟେ
ଶୋକ ଦୁଃଖ ତାହାର ନ ରହେ ହୃଦୟେ ।
ଶୁଣ ଆହେ ଜନମେଜୟ ନରବର
ଏହା କହି କହିଲେ ସନତକୁମାର ।
ତୁମ୍ଭମାନଙ୍କର ତ ପିତା ପୁତ୍ର ମୁହିଁ
ଏ ଜଗତଯାକର ଆତ୍ମା ମୁଁ ଅଟଇ ।
ମୋର ଆତ୍ମାରେ ତୁମ୍ଭେମାନେ ମଧ ଅଛ
ସତଟିଏ ଅମ୍ବିକା ଦେବୀଙ୍କର ବତ୍ସ ।
ତୁମ୍ଭର ମୁଁ ନୁହଇ ତୁମ୍ଭେ ମୋର ନୁହ
ଏଥିରେ କିଛି ରାୟେ ନ ଘେନ ହେ ମୋହ ।
ଆତ୍ମା ମୋହରଟି ଅଟଇ ଜନ୍ମସ୍ଥାନ
ଆତ୍ମା ଜାଣ ସକଳ ଲୋକର ଜନମ ।
ଅଣୁରୁ ଅଣୁଟିଏ ଅଟଇ ଆତମା
କେ ଜାଣି ପାରିବ ସେ ଆତ୍ମାର ମହିମା ।
ସନକ ସନାତନ ସନତାଦି ଋଷି
ଜାତ କରି ପରମ ଆତ୍ମା ହୃଦକାଶୀ ।
ହୋଇଛନ୍ତି ସେମାନଙ୍କରଟି ହେ ରାୟେ
ଆଉ କିସ ତୁମ୍ଭଙ୍କୁ କହିବା ଗୁଡ଼ାଏ ।
ଏରୂପେ ଧୃତରାଷ୍ଟ୍ର ଆଗରେ ସନତ
କୁମାର କହିଗଲେ ଜ୍ଞାନର ବୃତ୍ତାନ୍ତ ।
ଅନ୍ତର୍ଦ୍ଧାନ ହୋଇଣ ନିଜସ୍ଥାନେ ଗଲେ
ତାଙ୍କର ସେ ଗତିକି କେହି ନ ଜାଣିଲେ ।
ଏହିଠାରେ ସରିଲା ମନତ୍ସୁଜାତୀୟ
ଜ୍ଞାନ ରତ୍ନ ପଣ୍ଡିତ ଜନଙ୍କର ପ୍ରିୟ ।
କହଇ କୃଷ୍ଣସିଂହ ଧରାକୋଟ ପତି
ମୋହର ତ ଅଟଇ ଅଳପ ଶକତି ।
ଏଥିରେ ନୋହିବାର ହେବାର ଯେତେକ
ନ ବାଢ଼ିବ ଏ ପାଠ କରିବ ବିବେକ ।
ଶଙ୍କର ଭାଷ୍ୟ ଟୀକା ଅର୍ଥକୁ ମୁଁ ଚାହିଁ
କରିଅଛି ଏ ଗୀତପଦ ନିର୍ଭା ମୁହିଁ ।



## ସଞ୍ଜୟଙ୍କଠାରୁ ଧୃତରାଷ୍ଟ୍ର ପାଣ୍ଡବ ବାର୍ତ୍ତା ଶ୍ରବଣ

ଏଥୁଅନନ୍ତରେ ରଜନୀ ହେଲା ଶେଷ
ନିଦ୍ରା ଶେଯ ଛାଡ଼ିଣ କୁରୁକୁଳଈଶ ।
ନୃପ ବିଧି ବିଧାନ ଯେତେକ ସାରିଲେ
କୁରୁଙ୍କୁ ଘେନି ସଙ୍ଗେ ସଭାର ବସିଲେ ।
ସେ ସଭାରେ ବିଚିତ୍ର ଚନ୍ଦ୍ରାତପ ବନ୍ଧା
ହୋଇବାରୁ ହୁଅଇ ମନ ନେତ୍ର ଧନ୍ଦା ।
ମର୍କତ ବାଡ଼ଙ୍କରେ ସୁବର୍ଣ୍ଣ ପିତୁଳି
ଘନେ ବିଜୁଳି ପରି ଦିଶୁଛନ୍ତି ଝଳି
ସୁବର୍ଣ୍ଣ ଖମ୍ବଙ୍କରେ ମୁକ୍ତା ହୋଇ ମଣ୍ଡା
ଲମ୍ବି ରହିଅଛନ୍ତି ହୋଇ ପେଣ୍ଡା ପେଣ୍ଡା ।
ମଣିରେ ତଳଯାକ ହୋଇଛି ତ ସ୍ୱଚ୍ଛ
ହେଉଅଛି ତା ଶୋଭା ଜଳକୁଟି କଚ୍ଛ ।
ସେ ଘରକୁ ହୋଇଛି ସ୍ଫଟିକପାବଚ୍ଛ
କ୍ଷୀର ସିନ୍ଧୁ ଲହରୀ ରାଜିକରେ ତୁଚ୍ଛ ।
ସେ ସଭାରେ ସୁବର୍ଣ୍ଣ ଦନ୍ତୀଦନ୍ତ
ଆସନ ପଡ଼ିବାରେ ନାହିଁ ପରିଯନ୍ତ ।
ଏହି ଆସନଙ୍କର ଅନୁରୂପ ଲୋକ
ମାନଙ୍କ ତୁଲେ କଥା ଗାନ୍ଧାରୀନାୟକ ।

ହୋଇବା ସମୟରେ କୃତ ଅଶ୍ୱତ୍ଥାମା
ଶଲ୍ୟ ଜୟଦ୍ରଥ ବିକର୍ଣ୍ଣ କୃତବର୍ମା।
ବାହ୍ଲିକ, ସୋମଦତ୍ତ, ବିଦୁର, ଭୀଷ୍ମ, ଦ୍ରୋଣ
ମଣ୍ଡିଲେ ଚନ୍ଦ୍ର ପରି ସେ ସଭା ଗଗନ ।
ବିଂଶତି ଉଲୁକ କର୍ଣ୍ଣ ଦୁଃଶାସନ
ଦୁର୍ମୁଖ ଦୁଃସହ ଶକୁନି ଚିତ୍ରସେନ ।
ଏମାନଙ୍କୁ ଘେନି ଦୁର୍ଯ୍ୟୋଧନ ରାଜା
ବସିଲେ ସେ ସଭାରେ ଯେସନେ ବିଡୋଜା।
ସେ ସଭା ଗୁହା କୁରୁ-ସିଂହ ପାଇକରି
ପ୍ରକାଶିଲା ଶୋଭା କେ କିହବ ବିସ୍ତାରି ।
ଏହି କାଳେ ଦୁଆରୀ ଧୃତରାଷ୍ଟ୍ର ଆଗେ
ଜଣାମଣା କରିଲା ଯାଇଣ ସରାଗେ।
ପାଣ୍ଡବଙ୍କଠାକୁ ସଞ୍ଜୟ ଯାଇଥିଲେ
ତାଙ୍କଠାରୁ ଏବେ ଏଠାକୁ ସେ ଆସିଲେ।
ଆଜ୍ଞା ଦେଲେ ଛାମୁରେ ଭେଟିବେ ନୃବର
କହିଥିଲେ ସେ ଯାହା କରିବେ ଗୋଚର ।
ଶୁଣି ଧୃତରାଷ୍ଟ୍ର କହିଲେ ଦୁଆରୀକି
ଆସନ୍ତୁ ସେ ଦୁଆରେ ବେଗ ହୋଇଗଲା
ସଞ୍ଜୟ ନୃପତି ଛାମୁରେ ଭେଟାଇଲା ।
ସଞ୍ଜୟ ମନ୍ତ୍ରୀ ନିଜ ନାମକୁ ଉଚ୍ଚାରି
ପ୍ରଣାମ କଲେ କର ଦୁଇ ଯୋଡି କରି।
ବୋଇଲେ ପାଣ୍ଡବଙ୍କଠାକୁ ମୁଁ ରାଜନ
ତୁମ୍ଭର ଆଜ୍ଞା ଘେନି କଲି ତ ଗମନ।
ସେ ଯାହା କହିଛନ୍ତି ତାହା ମୁଁ ଗୋଚର
କରିବି ଭଲକରି ଶୁଣ ନରବର ।
କୁରୁଙ୍କରେ ଯେତେ ବୃଦ୍ଧ ରହିଛନ୍ତି
ତାହାଙ୍କୁ ପାଣ୍ଡବେ ବନ୍ଦନା କହିଛନ୍ତି ।
ଏ ବାହାରେ ସମବୟସ୍କେ ସଙ୍ଘଘନା
କହିଛନ୍ତି ଯେତେ ହୋଇବ ଅକଳନା ।
ଗାନ୍ଧାରୀ ଆଦି ମାତାଙ୍କୁ ଯେ ନମସ୍କାର
କହିବ ବୋଲି କହିଅଛନ୍ତି ଅପାର ।
ଧୃତରାଷ୍ଟ୍ର ବୋଇଲେ ଶତ୍ରୁରେ ଅଜୟ
ହୋଇବାରୁ ନାମଟି ହୋଇଛି ବିଜୟ ।
ଯେଉଁ ଅର୍ଜ୍ଜୁନର ସେ କି କହି ଅଛନ୍ତି
ତାହା ମୋତେ କହ ସଞ୍ଜୟ ମହାମତି ।

ସଞ୍ଜୟ ବୋଲେ ଶୁଣନ୍ତୁ ଦୁର୍ଯ୍ୟୋଧନ
କୃଷ୍ଣ ଯୁଧିଷ୍ଠିର ସମ୍ମତେ ଅରଜୁନ ।
ଯାହା କହିଛନ୍ତି କହୁଛି ତାହା ମୁହିଁ
ଏ ଦୋଷ କ୍ଷମା ମୋ କରିବ କୁରୁସାଇଁ ।
ଯେତେବେଳେ ଯାଇଣ ଯୁଧିଷ୍ଠିର ପାଶେ
ଦେଖା ହୋଇ କଥା ମୁଁ କହିଲି ହରଷେ ।
ତେତେବେଳେ ଅର୍ଜ୍ଜୁନ ଅନାଇଣ ମୋତେ
ବୋଇଲେ ଶୁଣ ହେ ସଞ୍ଜୟ ମହାମତେ।
ଦୁର୍ଯ୍ୟୋଧନ ଯେ କର୍ଣ୍ଣ ଦୁହିଁକି ବସାଇ
ମୋର କହିବା କଥା କହିବ ବୁଝାଇ
ମୋର ସଙ୍ଗତେ ଯୁଦ୍ଧ ଇଚ୍ଛା ସୁତାସୁତ
କରିବାରୁ ଜାଣିଛି ହେବ ତା ନିୟତ ।
ପାଣ୍ଡବଙ୍କ ସଭାରେ ବହୁତ ତ ରାଜା
ବସିଥିଲେ ଶୁଣି କଲେ ସେ ବାଣୀ ପୂଜା।
ଏହା କହି ସାରି ଆଖିରେ ରଙ୍ଗ ଧରି
କହିଲେ ପୁଣି ନିଶ ଦୁଇ ଠିଆ କରି।
ନକୁଳ ସହଦେବ ଭୀମ ଧୃଷ୍ଟଦ୍ୟୁମ୍ନ
ଯୁଧିଷ୍ଠିର ସାତ୍ୟକି ଶିଖଣ୍ଡୀ ଜନାର୍ଦ୍ଦନ ।
ମୋତେ ମିଶି ଯୁଦ୍ଧରେ ବିନ୍ଧି ବାଣଗଣ
ନ ଦେଲେ ରାଜ୍ୟ ନେବୁ ସୁଯୋଧନ ପ୍ରାଣ।
ପ୍ରୀତିରେ କୁରୁଏ ଅଧକେ ରଜା ହେବେ
ଅପ୍ରୀତି କଲେ ମରି ରାଜ୍ୟଯାକ ଦେବେ।
ଦୁଇରୂପରେ କାର୍ଯ୍ୟ ଯୁଧିଷ୍ଠିରଙ୍କର
ଲାଭ ହେବ ଏଥିରେ ସନ୍ଦେହ ନ କର।
ଯୁଧିଷ୍ଠିର ରଜାଙ୍କ ଦୁଃଖୁଁ ଶଏଗୁଣ
ଦୁଃଖକୁ ପାଇବେଟି ଦୁର୍ଯ୍ୟୋଧନ ଜାଣ।
ମୋ କାଣ୍ଡରେ ଛିଣ୍ଡିଲେ ଦୁର୍ଯ୍ୟୋଧନ ମୁଣ୍ଡ
ବିଲୁଆ ଗିଳିବେ ତା ପିଣ୍ଡ ହୋଇ ରୁଣ୍ଡ।
ଦୁର୍ଯ୍ୟୋଧନ ଭାରିଯା ହୋଇକରି ଚଣ୍ଡୀ
କହୁଛି କାନ୍ଦିବାଟି ଧୂଳିକି ଦରାଣ୍ଡି।
ଯୁଧିଷ୍ଠିରଙ୍କ କ୍ରୋଧ ସର୍ପର ଘାଉଡ
ହେଲେ ଯିବ ମିଳାଇ କୁରୁଙ୍କର ହାଡ଼।
ଯୁଧିଷ୍ଠିର ନୟନ ଅଗ୍ନି କୁରୁତୃଣ
ମନେ ଯେବେ ପଡ଼ିବ ହୋଇବେ ଦହନ।
କାଳଦଣ୍ଡ ପରି ଗଦାକୁ ଭୀମ କରେ
ଦେଖି ଦୁର୍ଯ୍ୟୋଧନ ମରିବ ଆତଙ୍କରେ ।

ମୋ ବଚନ କରି କରନ୍ତୁ ଆସି ପ୍ରୀତି
ନୋହିଲେ ସନ୍ତାପି ହୋଇଲେ କୁରୁପତି।
ଯମ ପରି ଭୀମ ଦେଖାଇ ବିକ୍ରମକୁ
ଅନ୍ତ କରିଦେବେଟି କୁରୁଙ୍କ ସୈନ୍ୟକୁ।
ସିଂହ ଆଗୁଁ ବିଲୁଆ ପଳାଇବା ପ୍ରାୟେ
ଯେତେବେଳେ ପଳାଇବଟି ତୁମ୍ଭେ ରାୟେ।
ନକୁଳ ଯେବେ ରୋଳ କରିବେଟି ଗୋଳ
ବଢ଼ାଇବେ ଧୃତରାଷ୍ଟ୍ରଙ୍କ ଯେତେ ବାଳ।
ନକୁଳ ସୁଖ ଚାଡ଼ି ଅହର୍ନିଶି ଘଡ଼ି
ଦୁଃଖରେ ତ ଦେଖ ଯାଉଅଛନ୍ତି ସଢ଼ି।
ଏଥିକି ଯେ ବିରଚର ବସ ଏବେ ବାଢ଼ି
ତୁଚ୍ଛା ଯୁଦ୍ଧେ ନ ମର ଦେଖାଇଣ ପୌଢ଼ି।
ଯୁଧିଷ୍ଠିର ପାଶେ ଅଛନ୍ତି ଯେତେ ରଜା
ଯୁଝିବେ ଓପ୍ରୋଧ ନ ଧରି ଯେବେ ମଜା।
ତେବେଟି ତୁମ୍ଭ ଦୁର୍ଯ୍ୟୋଧନ ରାଜାଙ୍କର
ବଢ଼ିବ ଆତଙ୍କ ସଞ୍ଜୟ ନିରନ୍ତର।
ସହଦେବଙ୍କର ତ ଦେଖିଲ ପ୍ରତାପ
ସୁଯୋଧନ ନେତ୍ରରୁ ଛାଡ଼ିବେଟି ଆପ।
କେକୟମାନଙ୍କର ସଙ୍ଗତରେ କଳି
ହେବାକୁ ଦିଶୁନାହିଁ ତୁମ୍ଭ ସୈନ୍ୟେ ବଳୀ ।
ଦ୍ରୌପଦ୍ରୀ ପଞ୍ଚ ସୁତଙ୍କର କାଣ୍ଡମୁନ
ସହିବାକୁ ନାହିଁ କେ କୁରୁଙ୍କରେ ଜନ ।
ଅଭିମନ୍ୟୁଙ୍କର ଧନୁର କାଣ୍ଡଧାଡି
ଜାଣ ହେ ମାରିବଟି କୁରୁଙ୍କୁ ଘଉଡ଼ି ।
ପ୍ରଭଦ୍ରକମାନଙ୍କର ଯେ ଶରାଘାତ
ଯାହା ଦେହେ ହେବ ସେ ଯୁଦ୍ଧରେ ତରସ୍ତ।
ସମ୍ବନ୍ଧୀ ଶ୍ୱଶୁର ମୋ ବିରାଟ ଦ୍ରୁପଦ
ତୁଲେ ଶଚୀପତି ହାରିବେ କଲେ ବାଦ ।
ଯେବେ ସୈନ୍ୟ ଘେନି ସେ ମାରିବେ କୁରୁଙ୍କୁ
ଜାଣ ପରାଇବେ ଯମଙ୍କ ନଗରକୁ ।
ଉତ୍ତରଙ୍କ ନିଶିତ କାଣ୍ଡ ଯାର ଅଙ୍ଗେ
ବାଜିବ ରହିବଟି ଯାଇ ଯମସଙ୍ଗେ ।
ଶିଖଣ୍ଡି କାଣ୍ଡେ ଭୀଷ୍ମ ପାଆନ୍ତେ ମରଣ
କୁରୁ ଛାର ନିକି ପାରିବେ କରି ରଣ ।
ଦ୍ରୋଣ ବେକ ଧୃଷ୍ଟଦ୍ୟୁମନ ମହାଭେଣ୍ଡା
କାଟି ପକାଇବେ ପ୍ରହାର କରି ଖଣ୍ଡା ।

ବୃଷ୍ଣିସିଂହ ସାତ୍ୟକି ଆଗେ କୁରୁକୁଳ
ବିଲୁଆଏ ହୋଇ ପାରିବେ କି ହେ ଠୁଳ।
ସାତ୍ୟକି ତ ସକଳ ଅସ୍ତ୍ରରେ କୁଶଳ
ଚତୁର୍ହସ୍ତ ଧନ ଧିରନ୍ତି କରତଳ ।
କୋଦଣ୍ଡ-ଘନେଁ ଗୁଣ-ବିଜୁଳିକି ଖଞ୍ଜି
ସରଜିବେ କ୍ରୋଧରେ ଶର-ଧାରାରାଜି ।
ସେ ବୃଷ୍ଟି ବିନାଶିବ ବଳୀ ବାତ ବେଗ
କୁରୁଙ୍କରେ ଅଛି କେ କହ ମୋର ଆଗ।
ତୁମ୍ଭେ ବା ବୋଲିବ କୁରୁଏ ଗିରି ପରି
ଆଡ଼ ହେବବେ ସାତ୍ୟକି କାଣ୍ଡେ ବଜ୍ର ପରି ।
ସାତ୍ୟକିଙ୍କ ବାହୁ ମନ୍ଦର କୁରୁ ସୈନ୍ୟ
କ୍ଷୀରସମୁଦ୍ରକୁ କରିବଟି ମନ୍ଥନ।
କପିଧ୍ୱଜ ରଥେ କୃଷ୍ଣଙ୍କ ତୁଲେ ବସି
ମୁଁ ପୁଣି ଯୁଝୁଥିବି ହୋଇ କରି ରୋଷୀ ।
ମୋ ଧନୁରୁ ବାହାର ହୋଇ ଶରକୋଟି
ନିନ୍ଦିଣ ଅନ୍ତକ ଦେବର ମେଲା ପାଟି।
କୋଟି କୁରୁଙ୍କର ତୋଟି ଦେଉଥିବ କାଟି
କହ କେ ତୁମ୍ଭର ରହବ ମୋତେ ଯୋଟି।
ଗାଣ୍ଡୀବ ଧନୁ ମଧ୍ୟୁଁ ସାୟକ-ଚଡ଼କ
ବାହାରି ନାଶୁଥିବ କୁରୁ ବୃକ୍ଷଯାକ।
କୁରୁ ତିମିରକୁ ମୋହର ଶର ସୂର୍ଯ୍ୟ
ବିନାଶି ପକାଇବ ପକାଇଣ ତେଜ।
ଏ ବାହାରେ ହାତୀ ଘୋଡା ଯେ ରଥପନ୍ତି
ଯେତେକ ଥିବେ ଦେବି ତାହାଙ୍କୁ ବିପତ୍ତି ।
ମୋ ଧନୁ ମଣ୍ଡଳରୁ ବାହାରି ବିପାଠ
ପଢ଼ାଇବେ ସୁଯୋଧନଙ୍କୁ ଧର୍ମପାଠ ।
ଘୋଡା ହାତୀ ମୋ ଶରେ ହୋଇ ଦୁଇ ଗ୍ରଡି
ଦେଖିବ ରକତସ୍ରୋତରେ ଯିବେ ଗଡ଼ି।
ଛିନ୍ନକନ୍ଧ ବୃକ୍ଷଙ୍କ ପରି ସବୁ ସୈନ୍ୟ
ନରଙ୍କୁ ମୋ କାଣ୍ଡେ ଦେଖିବ ସୁଯୋଧନ।
ସଂହାର କାଳେ ରୁଦ୍ର ପ୍ରାୟେ ରୂପ ଧରି
ଧାଇଁ ତ ଥିବି ମୁହିଁ ଗାଣ୍ଡୀବ ଉଭାରି ।
ମୋର ବଳ ଭାର ନ ସହି ଦୁର୍ଯ୍ୟୋଧନ
ପାପୀ ଭୟରେ ବୁଜି ମରିବ ନୟନ।
ଏ ବାହାରେ ମୋତେ ବ୍ରାହ୍ମଣ ଜଣେ ଯାହା
କହିଥିଲେ ପୂର୍ବେ କହୁଛି ଶୁଣ ତାହା ।

ଇନ୍ଦ୍ର ଆଗେ କୃଷ୍ଣ ଯେ ପଛରେ ତୁମ୍ଭର
ରହିଣ ତୁମ୍ଭ ଶତ୍ରୁ କରିବ ସଂହାର ।
ମୋତେ ମଧ୍ୟ ପୂର୍ବରେ ଇନ୍ଦ୍ର ଦଇବତ
ଦେଇଛନ୍ତି ବର ହେବାକୁ କୃଷ୍ଣ ମିତ୍ର ।
ଯୁଦ୍ଧକାଳ ଜାଣି ଅଛନ୍ତି କୃଷ୍ଣ ପାଖେ
ଜାଣୁଛି କୁରୁଏ ପଡ଼ିବେ ଯମ ମୁଖେ।
କୃଷ୍ଣ ଯାହାଙ୍କ ଜୟ ଥିବେ ଇଚ୍ଛା କରି
ତାହାଙ୍କୁ ତିନି ଲୋକେ କେ ପାରିବ ମାରି ।
ସପତ ସମୁଦ୍ରକୁ ତରି ଯେ ପାରିବ
ସେ ଏକା କୃଷ୍ଣ ସଙ୍ଗେ ଯୁଝିବ ବୋଲିବ।
ଯେ ରୂପେ କୈଳାସେ ଉପୋଡ ହୁଏ ବ୍ୟର୍ଥ
ସେରୂପେ କୃଷ୍ଣଠାରେ ସବୁରି ସାମର୍ଥ୍ୟ ।
ଦେବତାଙ୍କଠାରୁ ଯେ ଅମୃତକୁ ଆଣି
ପାରିବ ବଳେ ସେ ଯୁଝିବ ଚକ୍ରପାଣି।
ସିଂହ ଭାଗ ଶୃଗାଳ ଆଗୁଁ ନେଲା ପରି
କୃଷ୍ଣ ବଳେ ଆଣିଲେ ରୁକ୍ମିଣୀଙ୍କି ହରି।
ତା ନ ସହି ରୁକ୍ମୀ କୃଷ୍ଣଙ୍କୁ ଶରେ ଘୋଟି
ଦିଅନ୍ତେ କଟାଇଲେ ଆପଣା ଚୁଟିଟି ।
ଦନ୍ତକୂରେ କଳିଙ୍ଗ, ବକ୍ଷାଘାତେ ପାଣ୍ଡ୍ୟ
ରାଜଙ୍କୁ, ବିମର୍ଦ୍ଦିଲେ, ହତ କଲେ ପିଣ୍ଡ ।
ଏ ବାହାରେ କାଶୀପୁରୀକି ଦଗଧ କଲେ
ନଗ୍ନଜିତେ ଜିଣି ସୁଦର୍ଶନେ ମୁକ୍ତି ଦେଲେ ।
ଦେବତାରେ ଅଜେୟ ଏକଲବ୍ୟ ବୀର
ଦେଖିଲା କୃଷ୍ଣ କାଣ୍ଡେ ଯମଙ୍କ ନଗର ।
ବାଳକ କାଳେ କଂସ ଜୀବନକୁ ହରି
କଲେ ଉଗ୍ରସେନକୁ ରାଜ୍ୟେ ଦଣ୍ଡଧାରୀ ।
ମାୟାବୀ ଶାଲ୍ୱ ଦେହଛାଲକୁ କାଣ୍ଡରେ
ଛଡ଼ାଇ ଚଳାଇଲେ ଯମଙ୍କ ଦାଣ୍ଡରେ।
ପ୍ରାଗ୍ ଜ୍ୟୋତିଷପୁରେ ନରକ ନାମେ ରାଜା
ଥିଲା ଘେନୁଥିଲା ଦେବଙ୍କଠାରୁ ପୂଜା।
ଶ୍ରୀକୃଷ୍ଣ ତା ଶୁଣି ନରକ ପାଶେ ଗଲେ
ଆଗ ତାହାର ସାତ ସ୍ୱର୍ଗକୁ ନାଶିଲେ।
ପଛେ ତାହାର ମୁଣ୍ଡକମଳ ଦୁଇଖଣ୍ଡ
କରି ମଣ୍ଡିଦେଲେ ପ୍ରାଗ୍‌ଜ୍ୟୋତିଷ ଦାଣ୍ଡ।
ନିର୍ମୋଚନ ନଗରେ ମୂରକୁ ନାଶିଲେ
ମଣିକୁଣ୍ଡଳ ତା ନଗରୁ ଆଣିଦେଲେ ।

କୃଷ୍ଣଙ୍କ ପରାକ୍ରମ ଦେଖି କରି ଦେବେ
ମହା ସନ୍ତୋଷରେ ଏ ବର ଦେଲେ ସର୍ବେ।
ତୁମ୍ଭଙ୍କୁ ନ କାଟିବ କାହା ଶରଘାତ
ତୁମ୍ଭେ ସମସ୍ତଙ୍କୁ କରିବ ଯୁଦ୍ଧେ ହତ।
ବସୁଦେବଙ୍କ ସୁତ ବାସୁଦେବ ହରି
କୃଷ୍ଣ ପରମାନନ୍ଦ ମୁକୁନ୍ଦ ମୁରାରୀ।
ଗୋବର୍ଦ୍ଧନଧାରଣ ତ୍ରିପୁରଜିତାରି
ସୁଦାମାବରଦାତା ଯମୁନାତଟଚାରୀ ।
ତାହାଙ୍କୁ ଜିଣିବାକୁ ଦୁର୍ଯ୍ୟୋଧନ ମନ।
ଯାହା କରିଅଛି ଏ ବଡ଼ ବିଡ଼ମ୍ବନ ।
ଦ୍ରୋଣ ଅଶ୍ୱତ୍ଥାମାଙ୍କୁ କରି ନମସ୍କାର
କହିବ ଯୁଦ୍ଧ କଲେ ଯିବେ ଯମପୁର ।
ଯେତେ ଦୁଃଖ ଦେଲେନି ଧୃତରାଷ୍ଟ୍ର ସୁତେ।
ଆଜିସରିକି ତାହା କରିବି ମୁଁ କେତେ।
ସବୁ ରୂପରେ ଧର୍ମ ଛାଡ଼ିଲେନି ସେହି
ଆମ୍ଭେ ମାତ୍ର ଅଛୁଟି ଧରମକୁ ଚାହିଁ ।
ସେ ଯେବେ ଯୁଦ୍ଧେ ବଢ଼ାଇବେ ଆମ୍ଭ ତାପ
ତେବେ ସିନା ବୋଲିବା ଧର୍ମ ହେଲା ଲୋପ ।
ମୋ ମନକୁ ପାଉଛି ଯୁଦ୍ଧଥାଏ କଥା
ନ ଯିବ ଅଧର୍ମରେ ପାଇବେ ସେ ବ୍ୟଥା ।
ତୁମ୍ଭେ ତାଙ୍କର ଅନ୍ନ କରୁଛ ଭୋଜନ
ତାଙ୍କୁ କହିବ ମୋର କହିବା ବଚନ।
ତୁମ୍ଭବୋଲେ ସେ ଯେବେ ଅଧର୍ମେ ନ ଚାଲିବେ
ନାଶ ନୋହି ସେ ତେବେ ମହୀକି ଭୁଞ୍ଜିବେ
କରିବେ ଯଦି ଯୁଦ୍ଧ କର୍ଣ୍ଣେ ଘେନି ସାଥେ
ମୋ କାଣ୍ଡରେ ଯିବେ ସମସ୍ତେ ଯମପଥେ।
ଧର୍ମକୁ ଚାହିଁ ମୁହିଁ କହିଲିଟି ଏହା
ଯେ କଥା ପାଇବ ମନକୁ କର ତାହା ।
ଆମ୍ଭଙ୍କୁ ଜଉତିଷମାନେ କହୁଛନ୍ତି
କୁରୁକ୍ଷୟ କାଳ ହେଉଛି ଉପସ୍ଥିତି
ଆମ୍ଭଙ୍କୁ ପ୍ରତେ ମଧ୍ୟ ହେଉଛି ଯୁଝିଲେ
କୁରୁଏ ନ ଯିବେ ଘରକୁ କେହି ଭଲେ ।
କୁରୁଙ୍କର ମଧ୍ୟ ଏ କଥା ସନମତ
ଜାଣ ଆହେ ସଞ୍ଜୟ ମନ୍ତ୍ରୀ ସୂତସୁତ।
ଦେଖ ତୁଚ୍ଛା ଗାଣ୍ଡୀବ ଧନୁ ମୋ ନଉଁଛି
ଭାରତିରୁ କାଣ୍ଡ ଯେ ବାହାର ପଡୁଛି ।

ମୋ ବାନରଧ୍ୱଜରେ ଅଛନ୍ତି ତ ଭୂତେ
ଯୁଝିବେ କେବେ ପାର୍ଥ ବୋଲୁଛନ୍ତି ମୋତେ।
ବିଲୁଆ ବାଘ କାକ ବଳାକା ସାଗୁଣା
ମାଂସ ଲୋଭେ ନିଜ ବୁଦ୍ଧିକି କରି ବଣା ।
ମୋ ରଥର ପଛରେ ଥାଇ ଅବୀକ୍ଷଣ
ଗର୍ଜନେ କରୁଛନ୍ତି ପ୍ରାଣୀଙ୍କର ଛନ୍ନ।
ବୃଦ୍ଧ କୃପ ଭୀଷ୍ମ ଦ୍ରୋଣ ହେ କୃପାଚାର୍ଯ୍ୟ
ପାଖେ ତ ରଖିଅଛି ଦୁର୍ଯ୍ୟୋଧନ ରାଜ ।
ତାଙ୍କ ତୁଲେ ବିଚାରି କାରଯକୁ କରୁ
ତୁଚ୍ଛା କୁଳଯାକକୁ ମରାଇ ନ ମରୁ ।
ଏଥୁଅନନ୍ତରେ ଦୁର୍ଯ୍ୟୋଧନ ମୁଖ ଚାହିଁ
କହିଲେ ଭୀଷ୍ମ ମହାରଥୀ ହୃଷ୍ଟ ହୋଇ ।
ପୂର୍ବରେ ବସୁ ରୁଦ୍ର ମହେନ୍ଦ୍ର ଆଦିତ୍ୟ
ବିଶ୍ୱାବସୁ ଗନ୍ଧର୍ବ ବୈଶ୍ୱାନର ବାତ ।
ଆଦି ଦେବ ଯେ ବୃହସ୍ପତି ଶୁକ୍ର ତୁଲେ
ଜଗପିତା ବ୍ରହ୍ମା ଛାମୁକୁ ବାହାରିଲେ।
ବ୍ରହ୍ମପୁରେ ବ୍ରହ୍ମାଙ୍କୁ କରି ନମସ୍କାର
ବସିଲେ ତାଙ୍କ ପାଶେ ତୋଷେ ସବୁ ସୁର ।
ପୂର୍ବୁଁତ ବ୍ରହ୍ମା ପାଶେ ନର ନାରାୟଣ
ବସିଥିଲେ ତଦନ୍ତେ କଲେ ସେ ଗମନ।
ତାଙ୍କ ସଙ୍ଗରେ ସବୁ ଦେବତାଙ୍କ ତେଜ
ଗୋଡ଼ାଇ ଗଲା ଜାଣ ଦୁର୍ଯ୍ୟୋଧନ ରାଜ।
ବୃହସ୍ପତି ଦେଖି ବ୍ରହ୍ମାଙ୍କୁ ପଚାରିଲେ
କହ ମୋତେ ଏ ଦୁହେଁ କିଏ ଥିଲେ ଗଲେ
ବ୍ରହ୍ମା ବୋଇଲେ ସେ ତ ନାରାୟଣ ନର
ପାରନ୍ତି କରି ସବୁ ସ୍ଥାନକୁ ସଞ୍ଚାର ।
ସେହିଟି ତପବଳେ ବ୍ରହ୍ମାଣ୍ଡ ଲୋକଙ୍କୁ
ରଖିଛନ୍ତି ସଂହାର କରି ଅସୁରଙ୍କୁ।
ଏରୂପେ ଶୁଣି ବାଣୀ ବ୍ରହ୍ମାଙ୍କରଠାରୁ
ତୁନି ହେଲେ ସେକ୍ଷଣି ସୁରଙ୍କର ଗୁରୁ।
ଇନ୍ଦ୍ର ସେ କଥା ମନେ ବଡ଼ କରି ଘେନି
ସେକ୍ଷଣି ବାହାରିଲେ ଦେବତାଙ୍କୁ ଘେନି ।
ଯେଉଁଠାରେ ସେ ନର ନାରାୟଣ ଋଷି
ତପସ୍ୟା କରୁଥିଲେ ଆଖି ଭଲେ ଖୋସି।
ସେହିଠାରେ ଦେବଙ୍କ ତୁଲେ ଶଚୀବର
ପ୍ରବେଶ ହୋଇ କଲେ ତାଙ୍କୁ ନମସ୍କାର ।
ବୋଇଲେ ଅସୁରଙ୍କ ସକାଶୁଁ ମୋ ଭୟ
ହୋଇଛି ତା ନାଶି ବଢ଼ାଅ ମୋର ପ୍ରିୟ।
ନର ନାରାୟଣ ବୋଇଲେ ଏହିରୂପେ
କରିବୁଁ ଜାଣ ତୁମ୍ଭେ ନ ପଡ଼ ସନ୍ତାପେ ।
ଇନ୍ଦ୍ର ନର ନାରାୟଣଙ୍କ ସହାୟରେ
ବସାଇଲେ ଦୈତ୍ୟଙ୍କୁ ଯମଙ୍କ କ୍ଷୟରେ।
ସେ ନରଟି ଏବେ ଅର୍ଜ୍ଜୁନ ନାମ ବହି
ନେଲେ କାଳକଞ୍ଜମାନଙ୍କୁ ଶରେ ଦହି ।
ଏ ବାହାରେ ନିବାତ କବଚଙ୍କ ପ୍ରାଣ
ଘେନିଗଲେ ବିନ୍ଧିଣ ମୁନ ଘସା ବାଣ।
ସମରେ ଜିଣନ୍ତେ ସେ ଶଚୀଙ୍କ ରମଣ
ଖାଣ୍ଡବଙ୍କୁ ଦହିଲେ ସୁଖରେ ଦହନ ।
ନାରାୟଣ ଋଷି ଶ୍ରୀକୃଷ୍ଣ ନାମ ବହି
ଜନମିଛନ୍ତି ଦୁଷ୍ଟ ସଂହାରିବାପାଇଁ ।
କୃଷ୍ଣ ଅର୍ଜ୍ଜୁନଙ୍କ ଅଟଇ ଏକପ୍ରାଣ
ସେଥିରେ କେ କହି ପାରିବ କରି ଭିନ୍ନ ।
ନାରଦ କହିଛନ୍ତି ପୃଥ୍ୱୀ ଭାର ହେଲେ
ନର ନାରାୟଣ ଜନ୍ମନ୍ତି ମହୀତଳେ।
ଦୁଷ୍ଟମାନଙ୍କର ସେ କରିଣ ନିଧନ
କରନ୍ତି ପଛେ ତାଙ୍କ ସ୍ଥାନକୁ ଗମନ।
କୃଷ୍ଣ ଅରଜୁନ ଏକା ରଥରେ ବସି
ଯେତେବେଳେ କୁରୁଙ୍କୁ ଯୁଝିବେଟି ଆସି ।
ତେତେବେଳେ ମୋହର କହିବାର ବାଣୀ
ଦୁର୍ଯ୍ୟୋଧନ ସୁମରିବୁଟି ପୁଣି ପୁଣି ।
ଏତେବେଳେ ମୋର ବଚନ କରୁନାହୁଁ
ଏ ଦୁଷ୍ଟ କଥା ତୁ ଶିଖିଲୁ କାହ କାହୁଁ।
ଆମ୍ଭ କୁଳରେ ତ ତୁ ପ୍ରଭୁ ହୋଇଅଛୁ
ଏଣୁ ଯା କହୁଅଛୁ ତା ଆମ୍ଭେ ସହୁଛୁ।
ଶକୁନି କର୍ଣ୍ଣ ଦୁଃଶାସନ ମନ୍ତ୍ରଣାରେ
ପଡ଼ି ଲେଖା ହେଲୁନି ମୂର୍ଖ ଗଣନାରେ ।
କର୍ଣ୍ଣ ଏହା ଶୁଣି ବୋଇଲେ ପିତାମହ
ତୁଚ୍ଛାରେ କିପାଁ ମୋତେ କରୁଅଛ କୋହ ।
କ୍ଷତ୍ରିଧର୍ମୁ ମୁଁ ବାହାର ହୋଇନାହିଁ
ମୋତେ ଏଡ଼େ ନିନ୍ଦା କରୁଅଛ କିପାଇଁ ।
କହନ୍ତୁ ଧୃତରାଷ୍ଟ୍ର ସୁତେ ମୁଁ କାହାକୁ
ଡରିବି ଏ ଯୁଦ୍ଧରେ ବତାଇ ଆମ୍ଭଙ୍କୁ ।

ଧୃତରାଷ୍ଟ୍ରର ଯେଉଁ କଥାଟି ପ୍ରିୟ
ହେବ ତା ଭାବୁଥାଏ ମୋହର ହୃଦୟ ।
ଯାର ଅନ୍ନ ଖାଉ ତାହାର କାର୍ଯ୍ୟ କୁରୁଁ
ଗୁରୁଙ୍କୁ ଯେ ଉଚିତ କହୁ ତା ନ ବିଗ୍ଭରୁଁ ।
ମୋହର ତ ଭୀଷ୍ମ ଏହିରୂପରେ ମତ
ନୁହଇ ତ ମୁହିଁ କାହାରି ନିନ୍ଦାପାତ୍ର ।
ସମସ୍ତେ ତ ମୋତେ କରିଥାନ୍ତି ବନ୍ଦା
ତୁମ୍ଭେ ମୋତେ କିମ୍ପାଇଁ କରୁଅଛ ନିନ୍ଦା ।
କର୍ଣ୍ଣଙ୍କର ବଚନ ଶୁଣି ଭୀଷ୍ମ ରଥୀ
ହୃଦୟକୁ କ୍ରୋଧ ଯେ ପକାଇଲା ମଚ୍ଛି ।
ଧୃତରାଷ୍ଟ୍ର ମୁଖ ଅନାଇଁ ଏ ବଚନ
କହିଲେ ଭୀଷ୍ମକୁରୁ ରଥୀଙ୍କ ମଣ୍ଡନ ।
କର୍ଣ୍ଣ ତୁମ୍ଭ ଆଗରେ ପାଣ୍ଡବମାନଙ୍କୁ
ମାରିବି ବୋଲି ନିତି କହେ ବଚନକୁ ।
ପାଣ୍ଡବଙ୍କ ଷୋଳକଳାରୁ କଳାକର
ଗୁଣ ନ ବହଇଟି କର୍ଣ୍ଣଙ୍କ ଶରୀର ।
କର୍ଣ୍ଣଙ୍କ ପ୍ରଭାବେ ତୁମ୍ଭର ପୁଅମାନେ
ଦୁନୀତି କରି ନିଶ୍ଚେ ଯିବେ ଯମସ୍ଥାନେ ।
ପାଣ୍ଡବଙ୍କୁ ଅବଜ୍ଞା କଲେ ଏ ତିନିଲୋକ
ଯାକ ମୁଁ ଜାଣୁଅଛି ଲଭିବେଟି ଶୋକ ।
କର୍ଣ୍ଣ ଛାର ବଳେ କି ପାରିବ ତାକୁ ମାରି
ତୁଚ୍ଛା କହୁଅଛି ବଚନେ ଆଷ୍ଟ କରି ।
ପାଣ୍ଡୁସୁତେ ଜଣ ଜଣକରେ ଦିଗ
ଜିଣି କଲେ ନୃପଙ୍କଠାରୁ କରି ଭୋଗ ।
ଏକା ତ ଅରଜୁନ ବିରାଟ ନଗରେ
କୁରୁଙ୍କୁ ଜିଣିଲେଟି କର୍ଣ୍ଣଙ୍କ ସଙ୍ଗରେ ।
ଘୋଷଯାତ୍ରା କାଳେ ଗନ୍ଧର୍ବେ ଦୁର୍ଯ୍ୟୋଧନ
ରାଜାଙ୍କୁ ଘେନିଗଲେ କରିଣ ବନ୍ଧନ ।
କର୍ଣ୍ଣ ତୁମ୍ଭ ପୁତ୍ର ସଙ୍ଗତେ ଯାଇଥିଲେ
ତେତେବେଳେ ବଳ ଘରେ କି ରଖିଥିଲେ ।
ଅର୍ଜୁନ କାଣ୍ଡରେ ଗନ୍ଧର୍ବେ ହୋଇ ରୁନ୍ଧି
ମୁକତି କରିଦେଲେ ଦୁର୍ଯ୍ୟୋଧନ ବନ୍ଦୀ ।
ଆପଣାକୁ ପ୍ରଶଂସା କରିବାରେ କର୍ଣ୍ଣ
ସାରୁଥାଏ ରାଜନ ବସି ନିଶିଦିନ ।
ଭୀଷ୍ମଙ୍କର ବଚନ ଶୁଣି ଭାରଦ୍ୱାଜ
ବୋଇଲେ ଯା କହିଲେ ସତ ମହାରାଜ ।
କର୍ଣ୍ଣର ବୋଲେ ତୁମେ ଭ୍ରମି ପାଣ୍ଡବଙ୍କୁ
ବିରୋଧ କଲେକ ଯିବ ଯମ ନଗରକୁ ।
ପାଣ୍ଡବଙ୍କୁ ତୁଲେ କରିବ ଯେବେ ପ୍ରୀତି
ଇହ ପର ଦୁଇରେ ପ୍ରକାଶିବ କୀର୍ତ୍ତି ।
ସଞ୍ଜୟ ଅର୍ଜୁନ କହିବା ଯା କହିଲେ
ମୋ ମନକୁ ତାହା ପାଇଲା ନୃପ ଭଲେ ।
ଅର୍ଜୁନଙ୍କ ସମ ଏ ତିନିଲୋକେ ଧନୁ
ଧରିବାକୁ ନାହିଁ ବୀରଙ୍କ ଘରେ ସନୁ ।
ଭୀଷ୍ମଦ୍ରୋଣ ଦୁହିଁଙ୍କ ବାକ୍ୟ ଧୃତରାଷ୍ଟ୍ର
ନ ଶୁଣି ସଞ୍ଜୟ ପୁଛିଲେ ହୋଇ ହୃଷ୍ଟ ।
କୁରୁମାନେ ତା ଦେଖି ବୋଲି ଆହା ଆହା
ବୋଇଲେ ଗଲେ ନାଶ ଗାନ୍ଧାରୀଙ୍କ ନାହା ।
ଧୃତରାଷ୍ଟ୍ର ବୋଇଲେ ଆମ୍ଭ ସୈନ୍ୟ ଗୋଟି
ହେବାର ଶୁଣିକରି ପାଣ୍ଡବ ପାଞ୍ଚୋଟି ।
ପୁଅ ତ କି ବୋଇଲେ ତାହା ମୋର ଆଗେ
କହ ଆହେ ସଞ୍ଜୟ ହୃଦୟ ସରାଗେ ।
ଯୁଧିଷ୍ଠିରଙ୍କର ପାଶରେ ଥିବା ଜନ
କରୁଥିଲେଟିକି ଯୁଦ୍ଧକୁ ନିବର୍ତ୍ତନ ।
ଯୁଧିଷ୍ଠିର ତା ସହି କରୁଥିଲେଟିକି
ବିସ୍ତାରି ତାହା ମୋତେ ନ କହ କାହିଁକି ।
ସଞ୍ଜୟ ବୋଇଲେ ପାଞ୍ଚାଳି ଆଦି ନୃପେ
ରହିଅଛନ୍ତି ପାଣ୍ଡୁ ସୁତଙ୍କ ସନ୍ତାପେ ।
ଯୁଧିଷ୍ଠିର ରାଜା ଯା କହୁଥାନ୍ତି ବସି
ସେ ତାହା ସହି କରିଥାନ୍ତି ଅହର୍ନିଶି ।
ଯୁଧିଷ୍ଠିରଙ୍କର ତ ନ ଦେଖିଣ ଦୋଷ
ହୁଅନ୍ତି ଦ୍ୱିଜରୁ ଚଣ୍ଡାଳଯାଏ ତୋଷ ।
ଧୃତରାଷ୍ଟ୍ର ବୋଇଲେ ପାଞ୍ଚାଳ ସୋମକ
ସୈନ୍ୟ କେତେ କହ ହେ ମନ୍ତ୍ରୀଙ୍କ ନାୟକ ।
ସଞ୍ଜୟ ଧୃତରାଷ୍ଟ୍ରଙ୍କର ବାଣୀ ଶୁଣି
କି ପୁଛୁଥାନ୍ତି ବୋଲି ମନେ ମନେ ପୁଣି ।
ହୃଦୟରେ ମହାନ ମୋହ ପରବେଶ
ହୋନ୍ତେ ପଡ଼ିଲେ ସେ ଆବରି ମହୀଦେଶ ।
ବିଦୁର ତା ଦେଖି ବୋଇଲେ ଧୃତରାଷ୍ଟ୍ର
ସଞ୍ଜୟ ପଡ଼ିଛନ୍ତି ଜ୍ଞାନ କରି ନଷ୍ଟ ।
ତୁମ୍ଭେ ପଗ୍ଭରିବାର କଥାକୁଟି ଶୁଣି
ଆଉ କି ତୁମ୍ଭଙ୍କୁ କହିବି ନରମଣି ।

ଧୃତରାଷ୍ଟ୍ର ବୋଇଲେ ପାଣ୍ଡବଙ୍କେ ମନ
ରହିବାରୁ ହୋଇଲେ ସଞ୍ଜୟ ଅଜ୍ଞାନ ।
ଏ ସମୟେ ସଞ୍ଜୟ ଅଙ୍ଗେ ଜ୍ଞାନ ବହି
କହିଲେ ଧୃତରାଷ୍ଟ୍ର ମୁଖକୁ ଅନାଇ ।
ବିରାଟଙ୍କ ନଗରେ ପାଣ୍ଡବମାନଙ୍କୁ
ଦେଖିଲି ଲଭିଛନ୍ତି ଅତି ଦୀନତାକୁ ।
ପାଣ୍ଡବେ ଯେତେ ସୈନ୍ୟ ଘେନିକରି ସଙ୍ଗେ
ମାରିବେ ଭାବନ୍ତି କୁରୁଙ୍କୁ ରଣରଙ୍ଗେ ।
ତାହା ତୁମ୍ଭ ଆଗରେ କରିବି ପ୍ରକାଶ
ଶୁଣ ହେ ମୋହଠାରୁ ଦେଇଣ ମାନସ ।
ଦ୍ରୁପଦସୁତ ଧୃଷ୍ଟଦ୍ୟୁମ୍ନ ମହାବଳୀ
ସଙ୍ଗେ ପାଣ୍ଡୁ ସୁତେ ବସନ୍ତି ନିତି ଭାଳି ।
ଯୁଧିଷ୍ଠିର ରାଜା ତ ଧର୍ମ ପରାୟଣ
ସେ ଯେବେ ହସ୍ତିନାକୁ କରିବେ ପ୍ରୟାଣ
ସସୈନ୍ୟେ ତୁମ୍ଭଙ୍କୁ ଯୁଝିବା ଇଚ୍ଛା କରି
ତୁମ୍ଭେ କି ତାଙ୍କ ଆଗେ ରହିବ ଧନୁଧରି ।
କାଶୀ ଅଙ୍ଗ ମଗଧ କଳିଙ୍ଗ ଜିଣା ଭୀମ
ସେ ପ୍ରେମ ଛାଡ଼ିଣ ଅଛନ୍ତି କରି ତମ ।
ତାହାଙ୍କ ବଳ ସହି ରହିବାକୁ ଲୋକ
ତୁମ୍ଭର ତ ନାହିଁ ହେ ହସ୍ତିନା ନାୟକ ।
ଯେଉଁ ଭୀମ ଜତୁଘରରୁ ଯେ ବାହାରି
ହିଡ଼ିମ୍ବ ଅସୁରର ନେଲେ ପ୍ରାଣ ହରି ।
ଏକଚକ୍ର ନଗ୍ରେ ବକର ଜୀବନକୁ
ବାହୁ ଯୁଦ୍ଧେ ଦେଲେ ଯମଙ୍କ ନଗରକୁ ।
ଜୟଦ୍ରଥର ବାଳ ଧରିଣ ବାନ୍ଧିଲେ
ଦ୍ରୌପଦୀଙ୍କି ତାଠାରୁ ଛଡ଼ାଇ ଆଣିଲେ ।
ଦ୍ରୌପଦୀଙ୍କର ପ୍ରୀତି ପାଇଁ କ୍ରୋଧବଶ
ରାକ୍ଷସଙ୍କୁ ଗନ୍ଧମାଦନେ କଲେ ନାଶ ।
ନାଗାୟୁତ ବଳ ଯାହାର ବାହୁ ଦୁଇ
ଅହର୍ନିଶ ବହିଛି ଶତ୍ରୁନାଶ ପାଇଁ ।
ସେ ଭୀମ କ୍ରୋଧ ସୁପ ବିଷରେ ରାଜନ
ନ ମରାୟ ମିତ୍ର କୁଟୁମ୍ବ ବନ୍ଧୁଜନ ।
ଶୂଳପାଣିତୋଷକାରୀ ସେ ଅରଜୁନ
କରିଛନ୍ତି ତୁମ୍ଭ ନାଶରେ ବସି ମନ ।
ଯାହାର ଶର ମୁଖେ ପଡ଼ି ଇନ୍ଦ୍ର ଦୁଃଖେ
ଭାଜି ଅଗ୍ନି ଦେବ ଖାଇଲେ ବନ ସୁଖେ ।
ତାହାକୁ ଯେ ଯୁଝିବ ଅନ୍ତକର ପେଟ
ପୂରାଇବ ଜାଣ ଅମ୍ବିକାଦେବୀଘଟ ।
ପଶ୍ଚିମଦିଗଜିଣା ନକୁଳକୁ ଊଣା
ବୀର ବୋଲି ନ ପାରି ଜାଣ ମହାମନା ।
ବିଭୀଷଣର କରଅଣା ସହଦେବ
ତୁଲରେ ଯୁଝିଲେ କି ମାନବ ଜୀଇଁବ ।
ଶିଖଣ୍ଡୀ ଭୀଷ୍ମଙ୍କର ବଧ ଇଚ୍ଛା କରି
ଅଛନ୍ତି ପାଣ୍ଡବଙ୍କ ପାଶେ ନିଶ ଧରି ।
କେକୟ ପାଞ୍ଚେ ତୁମ୍ଭ ବଧରେ ଦଉଡ଼ି
କହୁଅଛନ୍ତି ଖଣ୍ଡା ଫରୀକରେ ଝାଡି ।
ସତ୍ୟ ପରାକ୍ରମ ଯେ ସାତ୍ୟକି ସଂଗ୍ରାମ
ଦେଖି ଲୋକ ଛାଡ଼ି ରହିବ ବଳ ଗ୍ରାମ ।
ବିରାଟଙ୍କ କାଣ୍ଡ ତୁମ୍ଭର ଯେତେ ଥାଟ
ସହି ରହି ନ ପାରିବେଟି ହେଲେ ମୋଟ ।
କାଶୀଦେଶ ରାଜା ଅଟନ୍ତି ମହାରଥୀ
ମନେ କଲେ ଦେବେ ତୁମ୍ଭର ବଳ ମନ୍ଥି ।
ବାଳକ ଅଟନ୍ତି ତ ଦ୍ରୌପଦୀଙ୍କ ବାଳ
ତେବେ ସେ ଅଟନ୍ତି ସେ କାଳସର୍ପ ତୁଲ ।
କୃଷ୍ଣ ଅରଜୁନ ସମାନ ଅଭିମନ୍ୟୁ
ଯୁଝିବାକୁ ତୁମ୍ଭଙ୍କୁ କରିଛନ୍ତି ମନ୍ୟୁ ।
ଶିଶୁପାଳଙ୍କ ପୁଅ ଧୃଷ୍ଟକେତୁ ବଳୀ
ବାଣ ଯମ ଦବ ତୁମ୍ଭର ସୈନ୍ୟ ଦଳି ।
ବସୁଦେବ ସୁତଟି ବାସୁଦେବଙ୍କର
ବଳକୁ ତ ସରି ନୁହନ୍ତି ପୁରନ୍ଦର ।
କୁରୁ ଏ କେତେକର ତାଙ୍କ ଯୋଟିବାକୁ
କହିବ କା ଜିହ୍ୱା ଉଚ୍ଚାରି ବଚନକୁ ।
ଶିଶୁପାଳ ଭାଇ ଶରଭ କର ବର୍ଷ
ତୁମ୍ଭଙ୍କୁ ଯୁଝିବାକୁ କରିଛନ୍ତି ରୋଷ ।
ପାଣ୍ଡବଙ୍କର ପାଇଁ ଜରାସନ୍ଧବୀର
ସୁତ କରୁଅଛନ୍ତି ପ୍ରତିଜ୍ଞା ଅପାର ।
ଯୁଦ୍ଧରେ ପାଣ୍ଡବଙ୍କ ହୋଇ ଅନୁରାଗୀ
ବୋଲୁଛନ୍ତି ଦ୍ରୁପଦ ହେବ ପ୍ରାଣତ୍ୟାଗୀ ।
ଏ ରୂପେ ଶତସଂଖ୍ୟା ନୃପେ ହୋଇ ଯୁତ
ଯୁଧିଷ୍ଠିର ବିଚାରୁଛନ୍ତି ଅହିତ ।
ତୁମ୍ଭର ହେ ରାଜନ ତୁମ୍ଭେ ତାଙ୍କ ପ୍ରୀତି
କରି ମୁଁ କହୁଅଛି କରିଣ ବିନତି ।

କିବା କୁରୁକୁଳ କୁମୁଦ ଯୁଧିଷ୍ଠିର
ସୂର୍ଯ୍ୟଙ୍କ ତାପରେଟି ହୋଇବେ ସଂହାର ।
ଧୃତରାଷ୍ଟ୍ର ବୋଇଲେ ଯେତେ ବୀର ନାମ
କହିଲେ ହେ ସଞ୍ଜୟ ମନ୍ତ୍ରୀଙ୍କ ଉତ୍ତମ ।
ଏକା ଭୀମକରେ କୁରୁ ହୋଇବେ କ୍ଷୟ
ଏହା କେବେ ଭାବିବା ଦେଇଣ ହୃଦୟ ।
ଭୀମ ସିଂହ ମୁଖେ ମୋ ସୁତ ବିଲୁଆଙ୍କୁ
ଭୋଜନ କରିଦେବେ ଆସୁଛି ମନକୁ ।
ଭୀମଙ୍କର ସକାଶୁ ହୃଦୟରେ ଭୟ
ଜନମାଉଛନ୍ତି ମୋହର ରଥୀଚୟ ।
ମୋ ସୈନ୍ୟରେ ଭୀମ ଆଗରେ ଯୋଟିବାକୁ
ହୃଦୟ ପାଉନାହିଁ ମୋହର କାହାକୁ ।
ମହାବାହୁ ମହାଉତ୍ସାହ ମହାସ୍ୱନ
ମହାପରାକ୍ରମୀ ଅଟଇ ଭୀମସେନ ।
ଅନ୍ତକ କାଳଦଣ୍ଡ ପରି ଗଦା ଧରି
ଭୀମ ମୋ ପିଲାଙ୍କର ପ୍ରାଣ ନେବ ହରି ।
ପୁଣି ତ ତାର ଲୁହାଗଦା ଆଠଅଂଶା
ଜାଣୁଛି ସେ ବଳେ କରିବ ଧ୍ୱଂସଦଶା ।
ମୋ ସୈନ୍ୟ ଛେଳି ମୁଖେ ବାଘ ପରି ଭୀମ
ସଞ୍ଚାର କରିବାରେ ପୂରିବ ଯମ ଗ୍ରାମ ।
ମୋ ପୁଅମାନଙ୍କରେ ପିଲାଦିନୁ ତମ
ଧରିଥାଏ ଛାଡ଼ି ସେ ହୃଦୟରୁ ପ୍ରେମ
ମୋ ହୃଦୟ ବକ୍ଷକୁ ଭୀମ ବଳ ଜାତ
ଆଜି କମ୍ପାଉଛି ସଞ୍ଜୟ ସୂତପୁତ୍ର ।
ଭୀମ ସକାଶୁ ମୋ ସୁତେ ହୋଇ କ୍ଳେଶୀ
ପଞ୍ଚ ପାଣ୍ଡବଙ୍କ ରଚିଲେ କ୍ଳେଶ ବସି ।
ଭୀମସେନ ଅନ୍ତକ ମେଲି ଦେଇ ପାଟି
ମୋ ମନେ ପ୍ରତେ ହୁଏ ଅଛି ମୋତେ ଘୋଟି
ଦ୍ରୋଣାଙ୍କୁ ନ ସମ ଅସ୍ତ୍ରରେ ଭୀମସେନ
ଗତି ତାର ଜିଣିଛି ପ୍ରଳୟ ପବନ ।
ମହେଶ୍ୱର ସମାନ ଅଟଇ ସେ କ୍ରୋଧୀ
କେ ତାହାକୁ ରୁନ୍ଧି ପାରିବ ଶର ବିନ୍ଧି ।
ତାର ମୁଖରୁ ଆଜିଯାଏ ମୋର ପୁଏ
ଜୀଇଁଛନ୍ତି ଏ ଲାଭ ନୁହେ କି ଥୋକାଏ ।
ବାଲ୍ୟକାଳୁଁ ଭୀମ ନୁହଇ ମୋର ବଶ
ଏବେ ତ ମୋର ପୁଏ କରିଛନ୍ତି ଦୋଷ ।

ଏ ସକାଶୁଁ ଜାଣୁଛି ବହି ମନେ ରୋଷ
ନିଶ୍ଚୟେ ନାଶ କରି ଦେବ ମୋର ବଂଶ ।
ଭାଜିଯିବ ପଛେ ସେ ଭୀମ ମହାଭେଣ୍ଡା
ଲଇଁବାର ନୁହଇ ସେ ସମର ଶୌଣ୍ଡା ।
ଟେର୍ଛି ଭ୍ରୁରୁ ଦୁଇ ଲୋଗ୍ଭଇ ମୋ ପୁଅଙ୍କୁ
ଗହିଁଲେ ଛାଡ଼ିଦେବେ ଇଚ୍ଛାରେ ପ୍ରାଣକୁ ।
ତାଳଗଛ ପରି ଭୀମଙ୍କର ଶରୀର
ସୁନାଠାରୁ ଅଧିକ ଦିଶଇ ଗଉର ।
ଅର୍ଜ୍ଜୁନ ତାକୁ ପ୍ରତି ହେବ ରଣେ ନୀଚ
ମୋ ଭେଣ୍ଡାଯାକଙ୍କୁ ସେ ହବ ହାତେ ଉଚ୍ଚ ।
ଗୋଡ଼ାଇ ଘୋଡ଼ାଙ୍କର ଗୋଡ଼କୁ ଧରଇ
ହେଲେ ହାତୀଙ୍କର ଦାନ୍ତକୁ ଉପାଡ଼ଇ ।
ଅବ୍ୟକ୍ତ କରି କହୁଥିବା କାଳେ ବଳ
ଏରୂପେ ହୋଇଥିଲା ଏବେ ଯୁବକାଳ ।
ଭୀମର ଏତେ ତେତେ ବଳ ମୁଁ ପ୍ରଶଂସି
କହି ନ ପାରିବି ହେ ରାତ୍ର ଦିନ ବସି ।
ପ୍ରାଣହରା ଗଦା ଅଶନି ଭୀମ କରୁ
ବାହାରିଲେ ନାଶିବ ସୁତ ଶିଳା ତରୁ ।
ମୋ ପୁଏ ଭୋଳା ବିନା ଭୀମବଳ
ଜଳ ତରିବାକୁ କରିଅଛନ୍ତି କଳ ।
ଏଥିରୁ ମୂର୍ଖପଣ ହୋଇ କଥା ନାହିଁ
ଆଉ କିସ ତାହାଙ୍କୁ କହିବଟି ମୁହିଁ ।
ହେବାରୁଟି କାଳ ମୁଖକୁ ଯିବା କାଳ
କହିଲେ ଘେନୁ ନାହିଁ ମୋ ବଡ଼ ଦୁଲାଳ ।
ପରସ୍ତିରୀକାମୀ ହୋଇ ଯେ ଜନ ଯାଏ
ହଣାଯିବି ବୋଲି କି ଭାଳଇ ହୃଦୟେ ।
ସେହିରୂପରେ ଦୁର୍ଯ୍ୟୋଧନ ଧନବାଇ
ହୋଇ ମରିଯିବା କଥାଟି ଜାଣୁନାହିଁ ।
ଭୀମ ଯେତେବେଳରେ ପାଟି ଦୁଇ ତଟ
ଘଟିଣ ଡାକୁଥିବ କଣ୍ଠ କରି ମୋଟ ।
ତେତେବେଳେ ମୋ ପୁଏ ତାହାକୁଟି ଯୋଟ
କଲେ ଦେହ ମରିବେ ଫଟାଇଣ ପେଟ ।
ହାତୀକି ହାତୀ ରଥ ଉପରେ ରଥକୁ
କଗଡ଼ିବାରେ ଭୀମ ଦେଖାଇ ବଳକୁ ।
ଜଳନ୍ତା ଅଗ୍ନି ପରି ଯୁଦ୍ଧେ ଜଳୁଥିବ
ତାହା ଦେଖିଲେ ଧୈର୍ଯ୍ୟ କାହାର ରହିବ ।

ଭୀମ ମତ୍ତହସ୍ତୀ ତ ମୋ ସେନା କଦଳୀ
ବନେ ପଶି କରି କ୍ଷଣକେ ଦେବ ଦଳି ।
ଭୀମ ବଳେ ପୀଡ଼ିତ ହୋଇ ମୋ ପଟର
ନୃପଙ୍କର ବଢ଼ିବା ଆରତ ଅପାର ।
ଶୁଣିଛ ତ କୃଷ୍ଣ ସାହାରେ ଜରାସନ୍ଧ
ପ୍ରାଣ ନେଲା ଭୀମ କରିଣ ବାହୁଯୁଦ୍ଧ ।
ଜରାସନ୍ଧ ବଶେ ରହିଲା ସବୁ ମହୀ
କେବଳ ଛାଡ଼ିକରି କୁରୁବୃଷ୍ଣି ମହୀ ।
ତେବେ ବଳିଟାକୁ ତ ଅନାୟୁଧେ ଭୀମ
ଦେଖାଇଲା ମୁଥମାଡ଼ରେ ଯମଗ୍ରାମ ।
ମୋ ସୈନ୍ୟ ରଥ ନଦୀତଟ ଭେଦି କରି
ବଢ଼ି ତ ଥିବ ଯୁଦ୍ଧେ ପ୍ରବାହକୁ ଧରି ।
ଭୀମ ତାହାକୁ ଦେଖି ବିନ୍ଧିଣ ବିପାଠ
ଭସାଇବ ତହିଁ ଅନେକ ମଡ଼ା କାଠ ।
ଭୀମ ଏବେ ଓଠକୁ କରି ଦନ୍ତେ ଭିଡ଼ା
ପରତେ ହେଉଅଛି ହୋଇଛି କି ଛିଡ଼ା ।
ନ ଥିଲେ ଅସ୍ତ୍ର ଭୀମ ବାହୁ ଅଟେ ରାହୁ
ମୋ ପୁତ୍ର ଶଶୀ ବଞ୍ଚିବେ ତା ଆଗୁ କାହୁଁ ।
ଭୀଷ୍ମ ଦ୍ରୋଣ କୃପ ଭୀମର ବଳ ଜାଣି
ଅହର୍ନିଶ କହନ୍ତି ତିଆରି ମୋତେ ବାଣୀ ।
କେବଳ ମୋ ପୁଏ ମରିବା ସମୟରେ
ଏମାତ୍ର ତାଙ୍କୁଟି ଯୁଝିବେ ଦୁହୃଦରେ ।
ଏଥିରୁ ବା ମୋର ହୋଇବ କେତେ ଜୟ
ଏହି ଶଙ୍କା ନିତି କରଇ ମୋ ହୃଦୟ ।
ସବୁରି ଅପେକ୍ଷାରେ ଦୈବ ବଳୀୟାର
ଯାହା କରିଥିବ ହୋଇବ ତା ମୋହର ।
ପାଣ୍ଡବଙ୍କର ବଳ ଜାଣୁଅଛି ମୁହିଁ
ତେବେଟି ଯୁଦ୍ଧକୁ ଅଛି ମୋ ମନ ଧାଇଁ ।
ଭୀଷ୍ମ ଦ୍ରୋଣ କୃପେ ମୋ ପୋଏ ପାଣ୍ଡୁପୋଏ
ସମାନ ଅଟନ୍ତି ସଞ୍ଜୟ ମନ୍ତ୍ରୀ ରାୟେ ।
ଏହା ଜାଣି ତାଙ୍କ ବାହୁକୁ ଯାହା ଆଶ
କରିଛି ବୋଲିବ କହିବା ଶୁଣ ବସ ।
ସେମାନେ ଆମ୍ଭର ଅନ୍ନରେ ଗଣ୍ଡି ମୋଟା
କରିଛନ୍ତି କେହି କରିବେ ସଟାବଟା ।
ଜାଣୁଛି ଏ ଘେନି ପ୍ରାଣକୁ ଛାଡ଼ି କୋହେ
ପାଣ୍ଡବଙ୍କୁ ଯୁଦ୍ଧେ ମାରିବେ ଏ ତିନିହେଁ ।

ଦଇବେ ତ ବୁଢ଼ା ବୟସ ତାହାଙ୍କର
ହୋଇଛି ଯୁଦ୍ଧେ ମଲେ ବସିବେ ସ୍ୱର୍ଗର ।
ପାଣ୍ଡବଙ୍କ ତୁଲରେ ତୁମ୍ଭେମାନେ ଯୁଝି
ଗଲେ ଜାଣୁଅଛି ଶୋଇବ ରଣ ମଝି ।
ଜାଣୁ ଜାଣୁ ଇଚ୍ଛା ସୁଖରେ ବିଷଗ୍ରାସ
କରୁଛି ଏଥି ମୁହିଁ ନାହିଁ କାହା ଦୋଷ ।
ମନ୍ଦର ପର୍ବତକୁ ଟେକି କରତଳେ
ପକାଇ ମୁଣ୍ଡ ପାତୁଛି ମୁଁ ରହି ତଳେ ।
କଣ୍ଠେ ପାଶ ବାନ୍ଧି ସମୁଦ୍ର ତରିବାକୁ
ଦେଖ ହେ ସଞ୍ଜୟ କରିଛି ସାହସକୁ ।
ଯେତେ ନୀତି କହିଲେ ସୁହୃଦେ ବିଦୁର
ସେ ମୋର ହୃଦେ କରି ନ ପାରିଲା ଘର ।
ମନସ୍ସୁଜାତ ଋଷି ଆତ୍ମଜ୍ଞାନ ମୋତେ
ଶିଖାଇଲେ ସଂସାରୁ ତରିବା ନିମନ୍ତେ ।
ତାହା ହୁଡ଼ି ଦେଇ ମୁଁ ମୋହ ଅହଙ୍କାର
ମରିବାକୁ ଲୋଡ଼ି ଆଣୁଛି ମନ୍ତବୀର ।
ଦେଖୁଛ ତ ମୋହରେ ପଡ଼ି ଋଷିମାନେ
ଲୋକ ବେଭାରକୁ କରନ୍ତ ଅବିଚ୍ଛିନ୍ନେ ।
ମୁଁ କେଉଁରୂପେ ତାହା ପାରିବିଟି ଛାଡ଼ି
ମୋତେ ନିନ୍ଦା ନ କର ତୁମ୍ଭେ ହରଘଡ଼ି ।
ଜୁଅ କାଳରୁ ଏ ତ ଅର୍ଜିଲେ ଅନର୍ଥ
ଏବେ ତା ଭାଳି ବସିବାର ମୋର ବ୍ୟର୍ଥ ।
କାଳବଶେ କୁରୁଙ୍କ ହୋଇବାର ନାଶ
ବିଧାତା ଲଗାଇଛି ମୋତେ ମୋହ ପାଶ ।
ପଳାଇବି ବୋଇଲେ ମୋହ ରଜ୍ଜୁ ବାନ୍ଧି
ରଖୁଅଛି ମୋହର ମନକୁଟି ରୁନ୍ଧି ।
କାଳଚକ୍ରେ ପଡ଼ିଣ କୁରୁଚକ୍ରଙ୍କର
କରାଇବି ଜାଣ ନିକଟରେ ସଂହାର ।
ପୁଅମାନେ ମରି ବଧୂଏ ହୋଇ ରାଣ୍ଡୀ
କାନ୍ଦୁଥିବେ ଦାଣ୍ଡରେ ଧୂଳିକି ଦରାଣ୍ଡି ।
ତାହା ଶୁଣିବାକୁ ତ ଅଛି ମୋର ଯୋଗ
ଏବେ କେହିଁ ପଡ଼ିବ ଯମ ମୁଖ ଭାଗ ।
ଅର୍ଜୁନ ପବନ ସହାୟେ ଭୀମବଳ
ଅଗ୍ନି ଦହିଦେବ ଜାଣୁଛି ମୋର କୁଳ ।
ତିନିଲୋକ ଯାକ ହୋଇବେ ଯେବେ ଗୋଟି
କିରାଟୀ କାଣ୍ଡମୁନେ ଯମ ଯିବେ ଭେଟି ।

ପ୍ରତିକ୍ଷଣେ ଅର୍ଜ୍ଜୁନଠାରେ ମୁଁ ଅହନ୍ତା
ଚିନ୍ତା କରିଣ ଦେଖି ହେଲିଣି କୃଶତା ।
ଅର୍ଜ୍ଜୁନ ଧନୁର ନାଳୀକ ମାରଗଣ
ଗଣ ଘେନିଯିବେ ମୋହ ସୈନ୍ୟର ପ୍ରାଣ ।
ଦ୍ରୋଣ କର୍ଣ୍ଣ ଭୀଷ୍ମ ଜାଣିଲେ ହେଲେ ଅସ୍ତ
ଅର୍ଜ୍ଜୁନଙ୍କ ବଳରେ ହୋଇବେ ପରାସ୍ତ ।
ଅସାବଧାନ ହୋଇ କର୍ଣ୍ଣ ତ ଯୁଝଇ
ଦ୍ରୋଣଆଚାର୍ଯ୍ୟ ତ ଗଲେଣି ବୁଢ଼ା ହୋଇ ।
ଅର୍ଜ୍ଜୁନ ତ ସକଳ ପ୍ରକାରେ ସମର୍ଥ
କେହି ତା ତୁଲେ କରିପାରିବେ ଅନର୍ଥ ।
ଅର୍ଜ୍ଜୁନ ବିନା ଆନ ଲୋକକୁ ଯୁଝିଲେ
ମୋ ରଥିମାନେ ଜିଣି ପକାଇବେ ଭଲେ ।
ଅର୍ଜ୍ଜୁନଙ୍କ ଜିଣିବାକୁ ଯେ ତିନିଲୋକ
ମଧ୍ୟରେ ଥିଲା ପରି ଦିଶୁ ନାହିଁ ଲୋକ ।
ସବୁ ରଥିଙ୍କର ତ ଜୟ ପରାଜୟ
ହେଉଛି ଅର୍ଜ୍ଜୁନର ସବୁବେଳେ ଜୟ ।
ତେତିଶି ବର୍ଷ ପୂର୍ବେ ଜିଣିଣ ଇନ୍ଦ୍ରଙ୍କୁ
ପୋଡ଼ାଇଲେ ଅର୍ଜ୍ଜୁନ ଖାଣ୍ଡବ ବନକୁ ।
ପୁଣି ରଥେ ସାରଥି କୃଷ୍ଣ ହୋଇଛନ୍ତି
ତାଙ୍କୁ କେଉଁ କ୍ଷତ୍ରିୟ ଦେବଟି ବିପତ୍ତି ।
ଗାଣ୍ଡୀବଧନୁକୁ କୃଷ୍ଣ ପାର୍ଥ ତିନି ତେଜ
ମିଶି ନାଶ କରିବେ ମୋ ଲୋକସମାଜ ।
ଆମ୍ଭର ଯେତେ ଛନ୍ତି ଅର୍ଜ୍ଜୁନବଳକୁ
ତୁଳନା କରି ନ ପାରିବେ ତ ଅଧକୁ ।
ଖାଇଲେ ବିଷ ଲୋକ ପାରି ବା ଜୀଇଁ
ନ ଜୀଇଁବ କିରାଟୀ ବୈରୀ ଲୋକ ହୋଇ ।
ଅର୍ଜ୍ଜୁନ କାଣ୍ଡ ଗୋଟି ମୋ ସୈନ୍ୟରେ ଘୋଟି
ରହିଥିବା ପରି ପାଉଛି ମୋ ମନୁଟି ।
ମୋର ସୈନ୍ୟ ଘନେ ଅର୍ଜ୍ଜୁନ ଶରାବଳି
ଝଟକିବେ ନିନ୍ଦା କରିଣ ସେ ବିଜୁଳି ।
ତେତେବେଳେ ମୋର ହେବାକୁ ପରିତ୍ରାଣ
କାହାକୁ ଦେଖୁନାହିଁ ସଞ୍ଜୟ ମନ୍ତ୍ରୀ ଜାଣ ।
ପାର୍ଥ ରଥରଡ଼ି ପ୍ରଳୟ ଘଡ଼ିଘଡ଼ି
ଶବଦ ଶୁଣି ମୋର ସୈନ୍ୟ ଯିବେ ଛାଡ଼ି ।
ଦୁର୍ଯ୍ୟୋଧନ ଏକାକୀ ହୋଇଣ ରହିବ
କିରାଟୀର କାଣ୍ଡକୁ ବୁକୁଟି ଆଡ଼ିବ ।

ସବୁରି ପ୍ରାଣୀ ହରି ଅନ୍ତକ ପରାୟେ
ଦିଶିବ ଯୁଦ୍ଧରେ ଅର୍ଜ୍ଜୁନ ନିଜ କାୟେ ।
ଆହେ ମନ୍ତ୍ରୀ ସଞ୍ଜୟ କହୁଛ ଯା ମୋତେ
ସେହିରୂପେ ହେବି ମୁଁ ଘେନୁଅଛି ଚିତ୍ତେ ।
ପାଣ୍ଡବଙ୍କ ପରି ପାଣ୍ଡବଙ୍କର ସଖା
ମାନଙ୍କର ବଳ ହେ ଅଟଇ ଅଲେଖା ।
ତୁମ୍ଭେ ତ କହୁଅଛ ପାଞ୍ଚାଳ କେକୟ
ମଗଧ ମତ୍ସ୍ୟ ଆଦି ନୃପତିଏ ପ୍ରିୟ ।
ପାଣ୍ଡବଙ୍କର ବାଛି ନିଶ ଦୁଇ ମୋଡି
ଯୁଦ୍ଧ ପାଇଁ ହସ୍ତିନା ଆସିବେ ଦଉଡ଼ି ।
ଏଥିକି ଭାଳିବାର ମୋର ଅକାରଣ
ମୋ ସୁତ କଲାଣି ତ ମରଣ ବରଣ ।
ପାଣ୍ଡବଙ୍କ ଜୟତ କୃଷ୍ଣ ନରହରି
ବାଛିଛନ୍ତି ଅନ୍ୟଥା ପାରିବ କେ କରି ।
ଅର୍ଜ୍ଜୁନଠାରୁ ଅସ୍ତ୍ର ପାଇଣ ସାତ୍ୟକି
ଧାଇଁଥିବେ ଯୁଦ୍ଧରେ ଧନୁ ହାତେ ଟେକି ।
ବିନ୍ଧୁଥିବେ ଧାନ ବୁଣିଲା ପରି ଶର
ମୋର ଲୋକ ତାଙ୍କୁ କି କରିବେ ସମର ।
ଧୃଷ୍ଟଦ୍ୟୁମ୍ନ ତ ଅନାୟାସରେ ଯୁଝିଲେ
ମୋହର ସୈନ୍ୟଯାକ ମାରିଦେବେ ଭଲେ ।
ଯୁଧିଷ୍ଠିର ଭୀମ ଅର୍ଜ୍ଜୁନ ଯେ ନକୁଳ
ସହଦେବ ବଳେ ମୁଁ ହୋଇଛି ବିକଳ ।
ମୋ ସୈନ୍ୟ ମତ୍ସ୍ୟ ପାଣ୍ଡୁସୁତେ ଶରଜାଲେ
ଜାଣୁଅଛି ନାଶ ଯିବେଟି ସେ ପଡ଼ିଲେ ।
ଏଥିକି ଅନୁରୂପ କହୁଛି ମୁଁ ଯେତେ
କଦାଚିତେ ଘେନୁନାହାନ୍ତି ମୋର ସୁତେ ।
ବୁଢ଼ା ବୋଲି ସେ ମୋତେ ଦେଉଥାନ୍ତି ଗାଳି
ମନେ ମନେ ହେଉଅଛନ୍ତି ମହାବଳୀ ।
ମନସ୍ୱୀ ଅନୃଶଂସ ସୁକୃତି ଲକ୍ଷ୍ମୀବନ୍ତ
ବଦାନ୍ୟ ଜିତେନ୍ଦ୍ରିୟ ମେଧାବୀ ଧୃତିମନ୍ତ ।
ହ୍ରୀମନ୍ତ ବହୁଶ୍ରୁତ ପ୍ରାଜ୍ଞ ଧର୍ମଆତ୍ମା
ଦର୍ଶନୀୟ ବୃଦ୍ଧସେବୀ ଯେ କୃତଆତ୍ମା ।
ଏରୂପେ ଯୁଧିଷ୍ଠିର ଅଗ୍ନିମୁଖେ ପଡ଼ି
କହ କେଉଁ ଲୋକଟି ରହିବ ନ ପୋଡ଼ି ।
ଏହି ସକାଶରୁ ବୋଲୁଛି ତାଙ୍କ ପ୍ରୀତି
ହେଲେ ନ ପାଇବେ ମୋଏ ପୋଏ ବିପତ୍ତି ।

ତୁମ୍ଭମାନଙ୍କର ନ ଥିଲେ ଯୁଦ୍ଧେ ମନ
କହ ପାଣ୍ଡୁସୁତେ କରିବା ସମାଧନ ।
ଯୁଧିଷ୍ଠିର ଧର୍ମପନ୍ଥା ତ ନ ଛାଡ଼ିବେ
ଜାଣୁଛି ଯା ବୋଲିବି ସେ ତାହା କରିବେ ।
ସଞ୍ଜୟ ବୋଇଲେ ହେ କହିଲ ଯେତେକ
ତୁମ୍ଭଙ୍କୁ ଅନୁରୂପ ହୋଇଲା ତେତେକ ।
ଅର୍ଜ୍ଜୁନ ଗାଣ୍ଡୀବଧନୁରୁ ଶରରାଜି
ଯେତେବେଳରେ ବାହରିବେଟି ଗରଜି ।
ତେତେବେଳରେ ଜାଣ କୁରୁଙ୍କର ପ୍ରାଣ
ରକ୍ଷା ନ କରିବେଟି ପ୍ରେତଙ୍କର ରାଣ ।
ମରିବାର ମୂଳ କାରଣ ଜାଣି ରାୟେ
କାନ୍ଦୁଅଛ କିପାଁ ଦୁଃଖରେ ଅତିଶୟେ ।
ବଡ଼ବାବୁ ହୋଇ ପୁତୁରାଙ୍କର ବିତ୍ତ
ଅଧର୍ମେ ଆଣିଲ ହୃଦରେ ମଣିହିତ ।
ଏ ବାହାରେ ବନକୁ ଖେଉଦାଇ ଦେଲ
ଭଲ ମନ୍ଦ ଦୁଇ କଥାକୁ ନ ଘେନିଁଲ ।
ତୁମ୍ଭର ତ ଅଟନ୍ତି ସେ ଲାଳନାପାତ୍ର
ତା ଛାଡ଼ି ନ ରଖିଲ କଲେ ଧର୍ମ ମାତ୍ର ।
ଦୁର୍ଯ୍ୟୋଧନ ସଭାରେ ଦ୍ରୋପଦୀଙ୍କି ଛିଡ଼ା
କଲାବେଳେ ତୁମ୍ଭେ ତ ନ ପାଇଲା ବ୍ରୀଡା ।
ପୁଣି ତ ଦୁର୍ଯ୍ୟୋଧନ ଦେଉଥିଲା ଗାଳି
କାନ୍ଦୁଥିଲେ ବିକଳେ ଦ୍ରୂପଦଦୁଲାଳୀ ।
ତାହା ଶୁଣିଣ ତୁମ୍ଭେ ହୋଇ ହସ ହସ
ମୋଡ଼ିଣ ଦେଉଥିଲ ଥରେ ଥରେ ନିଶ ।
ଏ କୁରୁକୁଳ ଯେ କାଳରୁ ରହିଥିଲା
ଏଡ଼େ ଅନ୍ୟାୟଟି କେବେହେଁ ତ ନ ଥିଲା ।
ତୁମ୍ଭର ଦେହକରେ ଛାଡ଼ିଦେଇ ଲାଜ
ଆଣିଲ ସବୁ ଲୋଡ଼ି ଅନ୍ୟାୟ ସମାଜ ।
ଅନ୍ଧ ହୋଇବାଠାରେ ପୁପୁଲୋଭୀ ହୋଇ
ଏହା କଲ ଆହେ ହସ୍ତିନା ନରସାଇଁ ।
ଯେବେ ତ ଧାତା ଦେଇଥାଆନ୍ତା ନୟନ
ତେବେ ହେ ଆଉ କିସ ନୁହନ୍ତା ରାଜନ ।
ପାଣ୍ଡବେ ଏତେ ଦୁଃଖ ପାଇଲା ଉତାରେ
ମରୁଥାନ୍ତି ରାଜନ ତୁମ୍ଭର ଚିନ୍ତାରେ ।
ସୁଯୋଧନ ରାଜାଙ୍କୁ ଚିତ୍ରସେନ ବାନ୍ଧି
ନେଲେ ପାଣ୍ଡବେଟି ଆଣିଲେ ରୁନ୍ଧି ।

ଅର୍ଜ୍ଜୁନ ମନେ କଲେ ସମୁଦ୍ରକୁ ଶରେ
ଶୁଖାଇ ପାରେ ହେ ରାଜ ଅକ୍ଷକରେ ।
ଅର୍ଜ୍ଜୁନର ଗାଣ୍ଡୀବ ଅଟେ କାଳଚକ୍ର
ଶରଧାରା ତାହାର ନିନ୍ଦା କରେ ଅର୍କ ।
ସେ ଚକ୍ରର ଅର ଅଟନ୍ତି ଜନାର୍ଦ୍ଦନ
ପାରନ୍ତି କରି ସବୁ ପ୍ରାଣୀଙ୍କି ନିଧନ ।
ଅରଜୁନ ବୀର ଯାହାର ସାହା ହୋଇ
ଥିବଟି ତାହା ହାତେ ସମସ୍ତ ହୁଅଇ ।
ଭୀମ-ବୋଇତକୁ ପାଇଣ ଯୁଧିଷ୍ଠିର
ହୋଇବେ ସେ ତୁମ୍ଭର ସୈନ୍ୟ ସିନ୍ଧୁପାର ।
ଯେତେକ ରାଜା ତୁମ୍ଭେ କରିଅଛ ଗୋଟି
ଭୀମସିଂହ ଆଗରେ ବିଲୁଆ ପରିଟି ।
ଏରୂପେ ପାଣ୍ଡବଙ୍କ ବଳ ଜାଣି ନୃପେ
ତୁମ୍ଭଙ୍କୁ ନିନ୍ଦା ସେ କରନ୍ତି ଆପେ ଆପେ ।
ପୁଣି ସେ ଯୁଧିଷ୍ଠିରଠାରେ ସ୍ନେହଧରି
ଅଛନ୍ତି ତୁମ୍ଭଙ୍କୁ ମାରିବା ଇଚ୍ଛା କରି ।
ଦୁର୍ଯ୍ୟୋଧନ ଖେଳିବା କାଳେ ମହୀସାଇଁ
ବିଦୁରଙ୍କୁ ଘେନି କହିଛି ଏହା ମୁହିଁ ।
ତେତେବେଳେ ତା କିଛି କରି ତ ରାଜନ
ନ ଘେନିଲ ଏବେ ନାହିଁ ତ ପ୍ରୟୋଜନ ।
ତୁଚ୍ଛା ବସି ଶୋକ ନ କର ମହାରାଜ
ଯୁଦ୍ଧେ ମଲା ଲୋକେ ପୂଜନ୍ତି ଦେବରାଜ ।
ପୁତ୍ରକୁ ମଧ୍ୟ ଏହି ରୂପରେ ବଢାଇ
କହ ଆହେ ଗାନ୍ଧାରୀଦେବୀ ପ୍ରାଣସାଇଁ ।
ଦୁର୍ଯ୍ୟୋଧନ ସଞ୍ଜୟ ମୁଖୁଁ ଏହା ଶୁଣି
ବାପଙ୍କ ଆଗରେ କହିଲେ ଶିର ଟାଣି ।
ମୋହପରି ପୁଅ ଥିବାଠାରେ ଗୃହରେ
କାହିଁକି ଏଡ଼େ ଚିନ୍ତା ହେଉଛି ମନରେ ।
ପାଣ୍ଡବଙ୍କଠାରେ ତ ବହିକରି ଭାବ
ସୈନ୍ୟ ସଙ୍ଗତେ ଘେନି ରାମ ବାସୁଦେବ ।
ଧୃଷ୍ଟକେତୁ ଧୃଷ୍ଟଦ୍ୟୁମ୍ନମନ ଆଦି ବୀରେ
ଏମାନେ ମଧ୍ୟ ଥିଲେ ତାଙ୍କ ସଙ୍ଗତରେ ।
ଇନ୍ଦ୍ର ପ୍ରସ୍ଥ ନିକଟେ ଦୁଇତ ବନରେ
ଭେଟିଲେ ପାଣ୍ଡବଙ୍କୁ ଯାଇ ସୁମନରେ ।
ଯୁଧିଷ୍ଠିର ଅର୍ଜ୍ଜୁନ ବାସ ପିନ୍ଧା ଦେଖି
ରାମକୃଷ୍ଣ ଆଦି କହିଲେ ହୋଇ ଦୁଃଖୀ ।

ଆମ୍ଭେମାନେ ଥାଉଁ କିପାଇଁ ଯୁଧିଷ୍ଠିର
ଛାଡ଼ୁଅଛ କୁରୁଙ୍କ ଘେନି ରାଜ୍ୟଭାର ।
ବୋଲି ଏହିକ୍ଷଣି କୁରୁଙ୍କ ମୁଣ୍ଡ ହାଣି
କରିବୁଁ ହସ୍ତିନାରେ ତୁମ୍ଭଙ୍କୁ ନୃମଣି ।
ଏ ବାରତା ମୁହିଁ ଡଗର ମୁଖୁଁ ଶୁଣି
ତ୍ରସ୍ତ ହୋଇଗଲି ଭୟରେ ନୃପମଣି ।
ଭୀଷ୍ମ ଦ୍ରୋଣ କୃପେ ସେକ୍ଷଣି ଡକାଇଲି
ତାଙ୍କ ସଙ୍ଗେ ଏକାନ୍ତେ ବସିଣ ଭାଳିଲି ।
କହିଲି ପାଣ୍ଡୁ ସୁତେ କରିବା ପ୍ରତିଜ୍ଞା
ରାମକୃଷ୍ଣ ବୋଲେ ସେ କରିବେ ଅବଜ୍ଞା ।
କୃଷ୍ଣ ଧୃତରାଷ୍ଟ୍ର ଯେ ବିଦୁରଙ୍କୁ ଛାଡ଼ି
କୁରୁଙ୍କୁ ମାରିବାକୁ ଛନ୍ତି ନିଶ ମୋଡ଼ି ।
ବୋଲୁଅଛନ୍ତି କୁରୁ ରାଜ୍ୟ ଯା ବିଭାଗ
ହେଉଥିଲା ଏବେ କରିବା ଏକ ଭାଗ ।
ଯୁଧିଷ୍ଠିର ଯେବେ ତ ହୋଇବେଟି ରାଜା
ତେବେ ସୁଖ ପାଇବେ କୁରୁଦେଶ ପ୍ରଜା ।
ଏଥିକି କେଉଁ କଥା କରିବା ବିଚାର
ଏହା କହ ହେ ଭୀଷ୍ମ ଦ୍ରୋଣ କୃପ ବୀର ।
ଯେବେ ଯୁଦ୍ଧ କରିବା କୃଷ୍ଣଙ୍କର ବଳେ
ଜିଣି ପକାଇବେଟି ପାଣ୍ଡୁସୁତେ ହେଳେ ।
ଆମ୍ଭ ପ୍ରତି ବିରକ୍ତ ରାଜନ୍ୟ ମଣ୍ଡଳ
ତାଙ୍କର ବଶବର୍ତ୍ତୀ ସର୍ବ ମହୀପାଳ ।
ଏହି ସକାଶରୁଟି ଆମ୍ଭମାନଙ୍କର
ଏ ସମୟେ ଉଚିତ ପ୍ରୀତି କରିବାର ।
ଯେବେ ପାଣ୍ଡୁ ସୁତଙ୍କୁ ଅପ୍ରୀତି କରିବା
ତେବେ ଜାଣ ଯମର ଘରକୁଟି ଯିବା ।
ଏହା ଶୁଣିଣ ଭୀଷ୍ମ ଦ୍ରୋଣ କୃପ ଦ୍ରୌଣି
ମୋହର ଆଗେ ଗର୍ବେ କହିଲେ ଏ ବାଣୀ ।
ଆମ୍ଭେମାନେ ଜୀଇଁଥିବାଠାରେ ହେ ରାୟେ
କାହିଁପାଇଁ ଭୟରେ ଶୀର୍ଣ୍ଣକର କାୟେ ।
ତିନି ଲୋକଯାକଙ୍କୁ ଜିଣିବା ବଳୁଟି
ଆମ୍ଭ ଦେହମାନଙ୍କେ ହୋଇଛି ତ ଗୋଟି
ଆମ୍ଭଙ୍କୁ ଜିଣି କୃଷ୍ଣ ତୁମ୍ଭଙ୍କୁ ମାରିବେ
ଯେବେ ତେବେ ସିନା ପାଣ୍ଡବେ ରାଜା ହେବେ
ଏହା ଶୁଣିଣ ମୁହିଁ ସନ୍ତୋଷ ହୋଇଲି
କୃପ ଦ୍ରୋଣ ଭୀଷ୍ମଙ୍କୁ ବହୁ ପ୍ରଶଂସିଲି ।

ଆହ ପିତା ଭୀଷ୍ମ ଜୀବନେ ଥାଉଁ ଥାଉଁ
କାହିଁକି କରୁଛ ବୁକୁକୁ ଦାଉ ଦାଉ ।
ପୁଣି ତ ରଜାଯାକ ହେଲେଣି ଆମ୍ଭର
ବ୍ୟର୍ଥେ ଏବେ ଚିନ୍ତା ନ କର ନରବର ।
ମୋ ପାଇଁ ରାଜାନେ ଅଗ୍ନି ମଧ୍ୟେ ଝାସ
ଦେବେ ବୋଲି ମୋହର ପାଉଛି ସାହସ ।
ନୃପତିମାନେ ଦେଖି ତବ ଏ ବ୍ୟବସ୍ଥା ।
ହସିବାର କହି ନ ପାରୁଛନ୍ତି କଥା ।
ଏ ରାଜାଏ ଜଣ ଜଣକେ ଇନ୍ଦ୍ର ପରି
ଲୋକଙ୍କୁ ତ ଦେବେ ସେ ଯୁଦ୍ଧ କଲେ ମାରି ।
ପାଣ୍ଡୁସୁତମାନେ ତ ବଳରେ ଅଳପ
ଏଥି କି ଭୟ କେତେ ମୁଖରେ ଜଳପ।
ଶୁଣୁଛତ ଏବେ ପାଞ୍ଚୋଟି ଗ୍ରାମ ମୋତେ
ମାଗୁଛନ୍ତି ଡରି ପାଣ୍ଡୁଙ୍କ ପାଞ୍ଚ ସୁତେ।
ମୋର ବଳ ନ ଜାଣିବାରୁ ଦଣ୍ଡଧାରୀ
ଭୀମ ବଳ ଟେକୁଛ ଅତି ବଡ଼ କରି ।
ମୋର ସମାନ ଗଦାଯୁଦ୍ଧରେ ଅବନୀ
ମଣ୍ଡଳେ ନ ଥିବ ପୁରୁଷଟିଏ ଜନ୍ମି ।
ବିଦ୍ୟାର ପାରକୁ ମୁଁ ପାଇଛି ରାଜନ
ଭୀମ ଘେନି ଭୟକୁ ନ ଭଜେ ମୋ ମନ।
ବଳଦେବ ମୋତେ ଗଦାଯୁଦ୍ଧ ଶିଖାଇ
ବୋଇଲେ ବାବୁ ତୋହପରି ଅଟୁ ତୁହି ।
ଯୁଦ୍ଧରେ ବଳଦେବ ସମାନ ମୋ ବଳ
ଭୀବ କି ପାରିବ ସେ ଅଟଇ ଦୁର୍ବଳ।
ଥରେ ଗଦା ଯେବେ ପିଟିବି ଭୀମ ମୁଣ୍ଡେ
ଜାଣ ବସିବ ସେ ଯାଇଣ ଯମଦାଣ୍ଡେ।
ମୋର ମନୋରଥ ହେଉଛି ପ୍ରତିଦିନ
କରିବାକୁ ଭୀମ ତୁଲରେ ଆୟୋଜନ।
ମୋ ଗଦା ଯେବେ ହିମବନ୍ତରେ ବାଜିବ
ଟିକି ଟିକି ହୋଇ ସେ ଚୂରି ହୋଇଯିବ ।
ମୋ ସମାନ ଗଦାଯୁଦ୍ଧରେ ଆଉ କେହି
ନ ଥିବା ଭୀମକୁ ଗୋଚର ଅଛି ହୋଇ ।
ଅର୍ଜ୍ଜୁନ କୃଷ୍ଣ ମଧ୍ୟ ଜାଣୁଛନ୍ତି ଏହା
କାହିଁକି ଚିନ୍ତା ବସି କର ନରନାହା।
ଭୀମ ମୋର ହାତରେ ପାଇଲେ ନିଧନ
ଅର୍ଜ୍ଜୁନକୁ ମାରିବେ ଭୀଷ୍ମଦ୍ରୋଣ ଜାଣ ।

ଦ୍ରୌଣି କୃପ ଭଗଦତ୍ତ ଯେ ଜୟଦ୍ରଥ
କର୍ଣ୍ଣ, ଭୂରିଶ୍ରବା, ଶଲ୍ୟ ଯେ ମହାରଥ ।
ଏମାନେ ଗୋଟି ହୋଇ ଧନୁ କରେ ଟାଣି
ବିନ୍ଧୁତ ଥିବେ ଯୁଦ୍ଧେ ଯୋଖି କାଣ୍ଡଶ୍ରେଣୀ ।
ଏମାନଙ୍କୁ ଯୋଟି ପାରିବାକୁ କେ ଜନ
ଅଛି ଏହା ମୋତେ କହ ଆହେ ରାଜନ ।
ସମସ୍ତଙ୍କୁ ଅର୍ଜୁନ ଜିଣିବେ କିରୂପେ
ଏଥି ହେତୁ ନ ଜାଣି ସଢ଼ ତୁଚ୍ଛା ତାପେ।
ଭୀଷ୍ମ ଦ୍ରୋଣ ଦ୍ରୌଣି କୃପଙ୍କ ଶର କୋଟି
କାଟି ନ ପାରିବ ଯୁଦ୍ଧରେ ସେ କିରୀଟୀ ।
ଏ ସକାଶୁଁ ଜାଣୁଛି ଯମଙ୍କର କ୍ଷୟ
ଯୁଦ୍ଧ କଲେ ପାଇବ ଜାଣ ଧନଞ୍ଜୟ ।
ଭୀଷ୍ମ ତ ପିତାଠାରୁ ସ୍ୱଇଚ୍ଛା ମରଣ
ପାଇଛନ୍ତି ତାଙ୍କୁ କେ ଜିଣିବ କରି ରଣ ।
ବ୍ରହ୍ମରଷି ପୁତ୍ର ନାତି ତ ଦ୍ରୋଣ ଦ୍ରୌଣି
ପୁଣି ସବୁ ଅସ୍ତ୍ରମାନଙ୍କୁ ଛନ୍ତି ଜାଣି।
ଏହାଙ୍କୁ ମାରିବାକୁ ଧନଞ୍ଜୟ ଦୁଷ୍ଟ
ମନ ଯେବେ କରିବ ଜାଣ ହେବ ନଷ୍ଟ ।
କୃପଙ୍କର ଶର ତାପକୁ ସହିବାକୁ
ଏ ମହୀରେ ନ ଦେଖି ନୟନେ ବୀରଙ୍କୁ ।
ଦ୍ରୌଣି କୃପ ଅଯୋନିଜାତ ମହାରାଜ
ଏ ଯୁଦ୍ଧ କଲେ ବଢ଼ାଇବେ ତୁମ୍ଭ ଓଜ ।
ଇନ୍ଦ୍ରଙ୍କର ବ୍ୟଥା ଏ ପାରନ୍ତିଟି କରି
ଆନ ଲୋକେ କି କାର୍ଯ୍ୟ ଅଛି ହେ ଦଣ୍ଡାଧାରୀ
ଭୀଷ୍ମ, ଦ୍ରୋଣ, କୃପ ସମାନ କର୍ଣ୍ଣବୀର
ପର୍ଶୁରାମଙ୍କର ବିଦ୍ୟାରେ ନରବର ।
କୁଣ୍ଡଳ କବଚଟି ଆସି ବଜ୍ର ଧାରୀ
କର୍ଣ୍ଣଙ୍କଠାରୁ ମାଗି ନେଲେ ଡରି କରି ।
ପୁଣି କର୍ଣ୍ଣଙ୍କୁ ସେହୁ ଅମୋଘ ଶକତି
ଦେଇଛନ୍ତି ଶତ୍ରୁକୁ ଦେବାକୁ ନିପାତି ।
କର୍ଣ୍ଣ ଯେବେ ସେ ଶକ୍ତି ମାରିବେ ପାର୍ଥଙ୍କୁ
ଅର୍ଜୁନ ଉପାୟ ଅଛି କି ବଞ୍ଚିବାକୁ ।
ଏ ସକାଶୁଁ ମନେ ବିଚାରୁଛି ନିତି
ମରିବାକୁ ପାଣ୍ଡବେ ଯୁଝି ଆସୁଛନ୍ତି ।
ଦିନକରେ ଭୀଷ୍ମ ଯେ ଅୟୁତେ ଲେଖାଏଁ
ସେ ମାରିବେଟି ଯୁଝିଲେ ଆହେ ରାୟେ ।

ସେହିରୂପରେ ଦ୍ରୋଣ ଦ୍ରୌଣି କୃପ କର୍ଣ୍ଣ
ବଳେ କରି ପାରନ୍ତି ସୈନ୍ୟଙ୍କୁ ନିଧନ।
ସଂଶପ୍ତକମାନେ ତ ମନୁଆ ଅଟନ୍ତି
ଯୁଦ୍ଧରେ ଲେଉଟିବା କଥା ନ ଜାଣନ୍ତି ।
ସେ ଯାହାକୁ ଯୁଦ୍ଧରେ ରହନ୍ତିଟି ଘୋଟି
ଯମ ତାହାଙ୍କରଟି ପୋଛନ୍ତି ପାଞ୍ଜିଟି ।
ଭୀମ ଯେ ଅରଜୁନ ଗଲେ ଯମଲୋକେ
ଯୁଝି ନ ପାରିବେ ଆମ୍ଭଙ୍କୁ ଯୋଦ୍ଧା ଲୋକେ
ପାଣ୍ଡବ ସୈନ୍ୟସାର ଛନ୍ତି ସାତ ଜଣ
ତାଙ୍କର ନାମମାନ ମୋହଠାରୁ ଶୁଣ ।
ପାଣ୍ଡବ ପାଞ୍ଚଭାଇ ସାତ୍ୟକି ଧୃଷ୍ଟଦ୍ୟୁମ୍ନ
ଏହାଙ୍କୁ ବଳି ଆଉ ସୈନ୍ୟେ ନାହିଁ ଜନ
ମୋ ସୈନ୍ୟରେ ଭୀଷ୍ମ ଦ୍ରୋଣ ଯେ ସୋମଦତ୍ତ
ବାହ୍ଲିକ ଶଲ୍ୟ ଜୟଦ୍ରଥ ଭଗଦତ୍ତ ।
ବିବିଂଶତି ଦୁର୍ମୁଖ ଦୁଃସହ ଦୁଃଶାସନ
ଶଲ୍ୟ ଭୂରିଶ୍ରବା ବିକର୍ଣ୍ଣ ବୀର କର୍ଣ୍ଣ।
କୃପ ଅଶ୍ୱତ୍ଥାମା ଆଦି ଏ ରଥୀକୁଳ
ମୋତେ ଘେନି ଯେବେଟି ଆରମ୍ଭିବେ ଗୋଳ
କାଳଦେବଙ୍କ ସେ ପାରନ୍ତି କରି କାଳ
କି କରି ପାରିବେଟି ପାଣ୍ଡୁ ପାଞ୍ଚବାଳ ।
ଏଗାର ଅକ୍ଷୌହିଣୀ ସେନା ଅଟେ ମୋର
ସାତ ଅକ୍ଷୌହିଣୀ ସୈନ୍ୟ ଯେ ତାହାଙ୍କର।
ଏମାନ ହୃଦରେ ଭାବନା କରି ରାଏ
ଫୁଲାଇ ଦିଅ ହରଷରେ ତୁମ୍ଭେ କାୟେ ।
ଆମ୍ଭଙ୍କୁ ଜିଣିବାକୁ ପାଣ୍ଡବେ ମହାରଥ
ହେଲେହେଁ ରାଜନ ନୋହିବେ ସମରଥ ।
ଏରୂପେ ଶୁଣି ପୁତ୍ର ମୁଖରୁ ରାଜନ
ହୃଦୟରେ ହରଷ କଲେ ସରଜନ।
ଦୁର୍ଯ୍ୟୋଧନ ବୋଇଲେ ସାତ ଅକ୍ଷୌହିଣୀ
ସୈନ୍ୟ ତ ଯୁଧିଷ୍ଠିର ଭିଆଇଲେ ଆଣି ।
ଏ ବାହାରେ କି ବୋଲୁଥାନ୍ତି ଯୁଝିବାକୁ
ଏହା ଆହେ ସଞ୍ଜୟ କହ ତ ଆମ୍ଭଙ୍କୁ ।
ସଞ୍ଜୟ ବୋଇଲେ ହେ ନିତି ଯୁଧିଷ୍ଠିର
ବସି ଯୁଦ୍ଧ ସାମଗ୍ରୀ କରନ୍ତି ନିରନ୍ତର ।
ଅରଜୁନ ରଥରେ ଘୋଡ଼ାମାନ ଯୋଚି
ହସୁଥାନ୍ତି ଯୁଦ୍ଧ କଥାକୁ ପାଞ୍ଚି ପାଞ୍ଚି ।

ଯାହା ତ କହିଥିଲେ କହିଲି ତୁମ୍ଭଙ୍କୁ
ଆଉ କିସ ଗୁଡ଼ାଏ ପୁଚ୍ଛୁଛ ଆମ୍ଭଙ୍କୁ ।
ଦୁର୍ଯ୍ୟୋଧନ ବୋଇଲେ ପାଣ୍ଡବ ପ୍ରଶଂସା
କରିଣ ସଞ୍ଜୟ ପାଉଛ ଲୋକହସା ।
କହ ତ କେଉଁରୂପେ ରଥେ ଧ୍ୱଜ ଘୋଡ଼ା
ଯୋଚୁଥାଏ ବସି ସେ ଅର୍ଜ୍ଜୁନ ବାପୁଡ଼ା ।
ସଞ୍ଜୟ ବୋଇଲେ ମୁରୁଖ ଦୁର୍ଯ୍ୟୋଧନ
ପଚାରୁଛ ଯାହା କହୁଛି ତାହା ଶୁଣ ।
ବିଶ୍ୱକର୍ମା ସ୍ୱର୍ଗରୁ ଆସି ଅର୍ଜ୍ଜୁନର
ଧ୍ୱଜ କଳପଣାଟି କଲେ ନରବର ।
ଭୀମସେନ ଅନୁରୋଧରେ ହନୁମନ୍ତ
ଅର୍ଜ୍ଜୁନର ରଥେ ହୁଅନ୍ତେ ଆବିର୍ଭୂତ ।
ବିଶ୍ୱକର୍ମାଙ୍କର ମାୟାରେ ସେ ଧ୍ୱଜଟି
ତଳକୁ ଉପରକୁ ପାରଇ ଗମିଟି ।
ବନ ଗିରି ପର୍ବତେ ସେ ରଥ ଗମିଲେ
କଣ୍ଟା ଲଟା ବାଧି ନ ପାରେ ତାକୁ ଭଲେ ।
ଯେ ରୂପେ ଆକାଶରେ ଇନ୍ଦ୍ରଧନୁ ଦିଶେ
ସେରୂପେ ପାର୍ଥ ଧ୍ୱଜ ଶୋଭାଟି ପ୍ରକାଶେ ।
ସେ ଧ୍ୱଜଟି ସଞ୍ଚାର କରେ ଏ ମହୀରେ
ମନ କଲେ ମଧ ଆକାଶେ ବ୍ୟାପି ପାରେ ।
ଚିତ୍ରସେନ ଗନ୍ଧର୍ବ ଦେବା ଶୁକ୍ଳ ଘୋଡ଼ା
ଚାରୋଟି ପାର୍ଥ ରଥେ ହୋଇଛନ୍ତି ଯୋଡ଼ା ।
ପୂର୍ବେ ଚିତ୍ରସେନ ଦେଇ ଅଛନ୍ତି ବର
ମଲେ ଜୀଉଁଥିବେ ସେ ଘୋଡ଼ା ଅର୍ଜ୍ଜୁନର ।
ଏଥିକି ଅନୁରୂପ ଯୁଧିଷ୍ଠିରଙ୍କର
ରଥ ଧ୍ୱଜି ଘୋଡ଼ା ହେ ଟେ ନୃପବର ।
ଭୀମସେନ ଘୋଡ଼ାଙ୍କ ବର୍ଣ୍ଣ ରୂପା ପରି
ଗତିରେ ପବନଟି ହେବ ତାଙ୍କୁ ସରି ।
ତିତ୍ତିରିପକ୍ଷୀ ପରି ବରନ ଘୋଡ଼ାଏ
ସହଦେବ ରଥରେ ଅଛନ୍ତିଟି ରାୟେ ।
ଇନ୍ଦ୍ର ଦେବା ଘୋଡ଼ା ନକୁଳ ରଥେ ଯୋଚା
ହୋଇଛନ୍ତି ଏଥି ନ କର ଶଙ୍କା ପଞ୍ଚା ।
ଦ୍ରୌପଦୀ ପାଞ୍ଚସୁତ ଅଭିମନ୍ୟୁ ଆଦି
ଉତ୍ତମ ଘୋଡ଼ାମାନ ଅଛନ୍ତି ସମ୍ପାଦି ।
ଧୃତରାଷ୍ଟ୍ର ବୋଇଲେ କେଉଁ କେଉଁ ରାଜା
ଆସିଛନ୍ତି ମୋ ସଙ୍ଗେ ଯୁଦ୍ଧେ କରି ମଜା ।

ପାଣ୍ଡବଙ୍କର ହିତ ପାଇଁ ହେ ସଞ୍ଜୟ
ଏହା ମୋର ଆଗେ କର ତ ଉଦୟ ।
ସଞ୍ଜୟ ବୋଇଲେ ହେ ଦାନବସଂହାରି
ସୁରକୁଳପାଳନାକାରୀ ନରହରି ।
ରହିଛନ୍ତି ପାଣ୍ଡବମାନଙ୍କର ପାଖେ
ତୁମ୍ଭଙ୍କୁ ସର୍ବଦା ଅନାଇ କ୍ରୋଧମୁଖେ ।
ସାତ୍ୟକି ଚେକିତାନ ଦୁଇ ମହାମନା
ଦୁଇ ଅକ୍ଷୌହିଣୀ ଯେ ଘେନି କରି ସେନା ।
ତୁମ୍ଭ ପୁତ୍ର ନାଶରେ ହୋଇଣ ଲାଳସୀ
ଧୂଳିରେ ହାତ ମାରି ଦ୍ୟନ୍ତି ଖଣ୍ଡା ଘଷି ।
ଦ୍ରୁପଦ ଧୃଷ୍ଟଦ୍ୟୁମ୍ନ ଶିଖଣ୍ଡୀର ତୁଲେ
ଦଶପୁଅ ଘେନି ଆସିଅଛନ୍ତି ଭଲେ ।
ଏ ବାହାରେ ଅକ୍ଷୌହିଣୀଏ ତାଙ୍କ ସେନା
ସଙ୍ଗତେ ଅଛନ୍ତି ସମେସ୍ତ ଯୁଦ୍ଧମନା ।
ବିରାଟ ଅକ୍ଷୌହିଣୀଏ ସେନା କରି ଗୋଟି
ଅଛନ୍ତି ପାଣ୍ଡବଙ୍କ ଚାରିପଟେ ଘୋଟି ।
ସୂର୍ଯ୍ୟଦତ୍ତ ଆଦି ଭାଇଏ ତାହାଙ୍କର
ଶ୍ୱେତ ଉତ୍ତରକୁ ଘେନିଣ ସଙ୍ଗତର ।
ମନ୍ତ୍ରଣା କରି ବସିଥାନ୍ତି ସେହି ନିତି
ତୁମ୍ଭ ନାଶ ହେବାପାଇଁ ହେ ନରପତି ।
ମଗଧଦେଶ ନୃପ ସହଦେବ ବଳୀ
ସେବା ଅକ୍ଷୌହିଣୀ ଘେନିକରି କଳି ।
ତୁମ୍ଭ ସଙ୍ଗତରେ ହେବାକୁ ଭାବୁଛନ୍ତି
ପାଣ୍ଡବଙ୍କ ହିତକୁ ହୃଦେ ଦେଇ ସ୍ଥିତି ।
ଧୃଷ୍ଟକେତୁ ଅକ୍ଷୌହିଣୀଏ ସଙ୍ଗେ ଥାଟ
ଘେନି ଆସିଅଛନ୍ତି ମନେ କରି ଆଣ୍ଟ ।
କେକୟ ପାଞ୍ଚେ ଅକ୍ଷୌହିଣୀ ରଙ୍ଗଧ୍ୱଜ
ବଢ଼ାଉଛନ୍ତି ଘେନି ପାଣ୍ଡବଙ୍କ ଓଜ ।
ମନୁଷ୍ୟ ଗନ୍ଧରବ ଦଇବ ଅସୁର
ବ୍ୟୂହକୁ ଜାଣନ୍ତି ତ ଧୃଷ୍ଟଦ୍ୟୁମ୍ନ ବୀର ।
ସେନାପତି ହୋଇ ସେ ପାଣ୍ଡବଙ୍କ ଥାଟେ
ବାହାରି ଅଛନ୍ତି ଖଣ୍ଡାକୁ ବାନ୍ଧି ଆଣ୍ଟେ ।
ଶିଖଣ୍ଡୀ-ଘନେ ଭୀଷ୍ମ ବିଜୁଳି ହେବ ଲୀନ
କହୁଅଛି ପାଣ୍ଡବମାନଙ୍କ ବଚନ ।
ଯୁଧିଷ୍ଠିର ଭାଗରେ ମଦ୍ରାଧିପ ବଳୀ
ପଡ଼ିଛନ୍ତି ଜାଣ ରାଜନ ବଳଶାଳୀ ।

ପ୍ରାଚ୍ୟ ଯେ ପ୍ରତୀଚୀୟ ଘେନି ଦୁର୍ଯ୍ୟୋଧନ
ଭାଇ ପୁତ୍ର ତୁଳରେ ପାଇବେ ନିଧନ ।
ଭୀମଙ୍କ ହାତେ ଏହା କରୁଛନ୍ତି ଯୋଖା
ପାଣ୍ଡବଙ୍କର ଲୋକେ କରିଣ ସଲଖା ।
ଜୟଦ୍ରଥ ଅଶ୍ୱତ୍‌ଥାମା ଯେ ଭଗଦତ୍ତ
କର୍ଣ୍ଣ ଆଦି ଏମାନେ ପାର୍ଥ ହାତେ ହତ ।
ହେବେ ବୋଲି ତହିଁ କହୁଅଛନ୍ତି ଲୋକେ
ନିଶ ଦୁଇକି ଟେକି ଦେଇ କର୍ଣ୍ଣଯାକେ ।
ମାଳବ ଶାଲ୍ୱକ ତ୍ରିଗର୍ତ୍ତ ସଂଶପ୍ତକ-
ମାନଙ୍କୁ କେକୟଟି ଦେବେ ଯମଲୋକ ।
ବୃହଦ୍ଦଳ ଦୁଃଶାସନ ଯେ ଦୁର୍ଯ୍ୟୋଧନ-
ସୁତେ ହେବେ ସୌଭଦ୍ର ହାତରେ ନିଧନ ।
ଦ୍ରୋଣଙ୍କର ବାଳକୁ ଧରି ଶିରଟାଣି
ହାଣିବେ ଧୃଷ୍ଟଦ୍ୟୁମ୍ନ ହୋଇ ଖଡ୍‌ଗପାଣି ।
ଚେକିତାନ ସୋମଦତ୍ତର ତୁଲେ ଯୁଦ୍ଧ
ବିଚ୍ଛରୁଛନ୍ତି ତାଙ୍କୁ କରିବାକୁ ବଧ ।
ସାତ୍ୟକି ବୋଲୁଛନ୍ତି କୃତବର୍ମା ଗଣ୍ଡି
ହାଣ୍ଡିକି ମୋ କାଣ୍ଡେ କରିବି ଖଣ୍ଡି ଖଣ୍ଡି ।
ସହଦେବ ଶକୁନି ପଶାଖେଳା ହାତ
କାଟିବି ବୋଲିକରି କରିଛନ୍ତି ସତ୍ୟ ।
ନକୁଳ ଉଲୂକକୁ ସାରସ୍ୱତଗଣ
ତୁଲରେ ଦେବି ବୋଲୁଅଛନ୍ତି ମରଣ ।
ଏହିତା ପୁଚ୍ଛିବାରେ ଯାଉଅଛି କାଳ
ଭାବୁନାହିଁ କିଛି ହେଲାଣି ଆସି କାଳ ।
ତୁମ୍ଭଙ୍କୁ କହିବାରେ ଏହି କଥା ବସି
ଦୁଇ ବାର ମୋର ହେଲାନି ନୃପ ଘଷି ।
ଧୃତରାଷ୍ଟ୍ର ବୋଇଲେ ମଲେନି ମୋର ପୁଏ
ବୋଲି ଜାଣିଲେଣି ସଞ୍ଜୟ ମନ୍ତ୍ରୀରାୟେ ।
ଅର୍ଜ୍ଜୁନ ଗାଣ୍ଡୀବରେ ଘନ ଅଖ ପରା
ବରଷିବ ଯେଉଁ କାଳରେ ଶରଧାରା ।
କୁରୁମାନଙ୍କର ପ୍ରଳୟ ହେବା ପାଇଁ
ବଞ୍ଚିବାକୁ ମୋତେ ଉପାୟ ଦିଶୁନାହିଁ ।
ଯେଉଁ ସୈନ୍ୟରେ ରହି ଅଛନ୍ତି ଗୋବିନ୍ଦ
ତାଙ୍କର କେ ପାଞ୍ଚି ପାରିବ ଅବା ମନ୍ଦ ।
ଭୀମ ଅର୍ଜ୍ଜୁନ ନକୁଳ ସହଦେବ
ଧୃଷ୍ଟଦ୍ୟୁମ୍ନ ସାତ୍ୟକି ଦ୍ରୁପଦ କ୍ଷତ୍ରଦେବ ।
ମତ୍ସ୍ୟ ଚେଦି ବଭ୍ରୁ ଯେ ଉତ୍ତରକାଶୀୟ
ଉତ୍ତମଓଜା ଯୁଧାଧ୍ମନ୍ୟ ସୁରଞ୍ଜୟ ।
ପାଞ୍ଚାଳ ପ୍ରଭଦ୍ରବ ଶିଖଣ୍ଡୀ ଏମାନେ
ଯୁଝୁଥିଲେ ଧନୁକୁ ଧଣି ସାବଧାନେ ।
ଇନ୍ଦ୍ର ତାହାଙ୍କର ହେ ଭାବିଲେ ଅଜୟ
ସନ୍ଦେହ ହେଲା ପରି ପାଉଛି ହୃଦୟ ।
କେତେ ମେଳିକରି କହିବି ମୁହିଁ ପାଟି
ଘେନୁ ତ ନାହିଁ କୁଳବୁଡ଼ା ମୋ ବେଟାଟି ।
ଦୁର୍ଯ୍ୟୋଧନ ବୋଇଲେ ପାଣ୍ଡୁସୁତଙ୍କର
ଜୟ ହୋଇବ ବୋଲି କାହିଁକି ବିଚ୍ଛର ।
ଏକା କୁଳରେ ତ ସେ ଆମ୍ଭେ ଉତ୍‌ପତ୍ତି
ହୋଇଥାଇଁ ଦେବେ ସେ କିରୂପେ ବିପତ୍ତି ।
ପୁଣି ତ ଏକା ଗୁରୁ ତାଙ୍କର ଆମ୍ଭର
କିସ କରି ପାରିବେ କଲେ ସେ ସମର ।
ଭୀଷ୍ମ ଦ୍ରୋଣ କୃପଙ୍କୁ ଦେବତାଏ
ହାରିଯିବେ ଯୁଦ୍ଧ କରିବେ ଯେବେ ରାୟେ ।
ପାଣ୍ଡୁ ସୁତଙ୍କର ତ ଅଳପ ଜୀବନ
କେହି ଏହାଙ୍କୁ ସେ କରିବେ ଆୟୋଜନ ।
ମୋ ପାଇଁ ରାଜାମାନେ ଦେଖ ହୋଇ ଗୋଟି
ବିଚ୍ଛରନ୍ତି ପାଣ୍ଡବମାନଙ୍କର ନାଶୁଟି
ମୋର ନୃପତିମାନଙ୍କର କାଣ୍ଡଜାଲେ
ପଡ଼ିଲେ ଜୀଇଁବେ କି ପାଣ୍ଡବେ ହେ ଭଲେ ।
ଧୃତରାଷ୍ଟ୍ର ତା ଶୁଣି ହୃଦେ ବହି ତାପ
ବୋଇଲେ ଦୁର୍ଯ୍ୟୋଧନ କହେ କି ପ୍ରଳାପ
ଭୀଷ୍ମତ ପାଣ୍ଡବଙ୍କ ବିକ୍ରମକୁ ଡରି
ନୀତି କହୁଛନ୍ତି ପୀରତି ଇଚ୍ଛା କରି ।
ତୁହି କିମ୍ପାଇ ଏଡ଼େ କରୁଛୁ ସାହସ
ଏ ଘେନି ଜାଣୁଛି ନିକଟେ ଯିବୁ ନାଶ ।
ଏହା କହି କହିଲେ ସଞ୍ଜୟ ମନ୍ତ୍ରୀଙ୍କି
ତୁନିଟି ହୋଇ ତୁମ୍ଭେ ରହିଛ କାହିଁକି ।
ପାଣ୍ଡବମାନଙ୍କର କଥା ମୋର ଆଗେ
ବାଢ଼ କି ନା ଆଉ ଥରେ ଆହେ ସରାଗେ ।
ପାଣ୍ଡବ ଅଗ୍ନି ମୁଖେ ଯୁଦ୍ଧେ ମନ୍ତ ଘିଅ
କିଏ ଢାଳୁଛି ତାହା ମୋ ଆଗରେ କହ ।
ସଞ୍ଜୟ ବୋଇଲେ ହେ ଧୃଷ୍ଟଦ୍ୟୁମ୍ନ ବସି
ପାଣ୍ଡବଙ୍କୁ ଶିଖାଉଛନ୍ତି ଅହର୍ନିଶି ।

ତୁମ୍ଭଙ୍କୁ ଧୃତରାଷ୍ଟ୍ର କଲେ ରାଜ୍ୟଭ୍ରଷ୍ଟ
ତୁମ୍ଭେ ତାହାଙ୍କୁ ଏବେ ଦିଅ ପୁତ୍ର କଷ୍ଟ ।
ମୋର କାଣ୍ଡମୁନରେ ଦୁର୍ଯ୍ୟୋଧନ ନୃପ
ଗୋଟି କଲା ନୃପେଟି ପାଇବେ ସନ୍ତାପ ।
ଯେଉଁରୂପେ ବେଳା ମକର ଆଳୟକୁ
ବାରଇ ସେରୂପେ ମୁଁ ବାରିବି ସୈନ୍ୟଙ୍କୁ ।
ଯୁଧିଷ୍ଠିର ତାହା ଶୁଣିଣ ବୋଲୁଥାନ୍ତି
ତୁମ୍ଭେ ମନ କଲେ ସେ କେତେକ ଅଛନ୍ତି ।
ତୁମ୍ଭର ଯେବେ ଯୁଦ୍ଧେ ହେଲାନିଟି ମନ ।
ତେବେ ଜାଣ ସେମାନେ ହେଲେନି ନିଧନ
ଏହା କହି ତାହାଙ୍କୁ କହିଲେ ସେ ମୋତେ
ଶୁଣିଛ ତ ସବୁ ସଞ୍ଜୟ ମହାମତେ ।
ଧୃତରାଷ୍ଟ୍ର ରାଜା ଛାମୁରେ ଏହା କହି
ଭାଇ ଭେଦ ଆମ୍ଭର ଦିଅ ହେ ଭଙ୍ଗାଇ ।
ଅରଜୁନଙ୍କୁ ଜିଣିବାକୁ ଏ ମହୀରେ
ବୀର ତ ନାହାନ୍ତି ହେ ସବୁରି ମତରେ ।
ତୁମ୍ଭ ରାଜା ପୁତ୍ର ବୋଲରେ ହୋଇ ବାଇ
କୁରୁକୁଳ ଯାକ ନ ଦେଉନ୍ତୁ ବୁଡ଼ାଇ ।
ଧୃତରାଷ୍ଟ୍ର ସଞ୍ଜୟ ମୁଖୁଁ ଏହା ଶୁଣି
ଡାକିକରି ଦୁର୍ଯ୍ୟୋଧନଙ୍କୁ ସେହିକ୍ଷଣି ।
ବୋଇଲେ ଆରେ ବାବୁ ଅଧେ ରାଜ୍ୟ ଖାଇ
ମହାସୁଖରେ ବସିଥାଅ ଘରେ ଜୀଇଁ ।
ତୁଚ୍ଛା ମୋହରେ ପଡ଼ି ନ କର ସମର
କାହାର ତ ଶରୀର ନୁହେଁ ବାବୁ ଚିର ।
ସବୁଦିନେ ରହିଥିଲେଟି ଏ ଜୀବନ
ଯୁଦ୍ଧରେ ମାରିଣ ପାଣ୍ଡବ ପାଞ୍ଚ ଜଣ ।
ରାଇଜକୁ ଖାଇଲେ ହୁଅନ୍ତା ଉଚିତ
ଏବେ ସବୁ ବ୍ୟର୍ଥ ଏ ଅଟେ ମୋର ମତ ।
ବାହ୍ଲିକ ଭୀଷ୍ମ ଦ୍ରୋଣ ଶଲ୍ୟ ପୁରୁମିତ୍ର
ଭୂରିଶ୍ରବା ଦ୍ରୋଣୀ କୃପ ଯେ ସୋମଦତ୍ତ ।
ମୋତେ ମିଶି କାହାର ମତ ଯୁଦ୍ଧ ନୁହେ
ତୁ କିପାଁ କର୍ଣ୍ଣ ବୋଲେ ପଡୁଅଛୁ ମୋହେ ।
ଦୁର୍ଯ୍ୟୋଧନ ବୋଇଲେ ଯେଣେ ଲୋକ ନାମ
ଧରି କରି କହିଲ ହେ ନୃପ ଉତ୍ତମ ।
ଏହାଙ୍କ ବାହୁର ସାହାରେ ବୋଲି ମୁହିଁ
ପାଣ୍ଡବଙ୍କୁ ଯୁଦ୍ଧ କରିବି ବୋଲୁ ନାହିଁ ।
ରଣଯୋଗେ କର୍ଣ୍ଣ ମୁଁ ହୋଇବୁ ଦୀକ୍ଷିତ
ରଥ ବେଦୀ ମଧ୍ୟରେ ହୋଇକରି ସ୍ଥିତ ।
ଖଡ଼ଗ ଗଦା ସ୍ରୁବ ସ୍ରୁଚକୁ କରିବୁ
କବଚକୁ ରସ ଯାଗଶାଳ କରାଇବୁଁ ।
ଆମ୍ଭ ଦୁହିଁଙ୍କର ତ ଘୋଡ଼ା ଛାତୁହୋତ୍ର
କରି ଶରମାନଙ୍କୁ କରିବୁ ପବିତ୍ର ।
କୀର୍ତ୍ତି ହବିକୁ କ୍ରୋଧ-ଅଗ୍ନି ମୁଖେ ଦେଇ
ପଶୁ କରି ପୋଡ଼ିବୁ ପାଣ୍ଡବ ନୃସାଇଁ ।
ଯମକୁ ଦେଇଣ ଆମ୍ଭେ ସେ ବଳିଭାଗ
ବଢ଼ାଇବୁଁ ହୃଦରେ ରାଇଜ ସରାଗ ।
ଥାଉଁ ଦୁଃଶାସନ ଭାଇ ପରି ତ ବଳୀ
ଏ ଛାରକଥା ମୁଁ ବସିବି କେତେ ଭାଳି ।
ମୁଁ ଅବା ପାଣ୍ଡବଙ୍କୁ ମାରି ଦେବି ରାଜା
ସେ ବା ମୋତେ ମାରି ପାଳିବେ ଜନପ୍ରଜା ।
ଏ ଦୁଇ କଥାରୁ କଥାଏ ନରବର
ନିକଟରେ ସାର ହୋଇବ ମନେ କର ।
ପ୍ରାଣ ପଛେ ଛାଡ଼ିଦେବି ମୁଁ ଯୁଦ୍ଧ କଲେ
ପାଣ୍ଡବଙ୍କୁ ପ୍ରୀତି ନ କରିବି ମୁଁ ଭଲେ ।
ସୂଚୀଅଗ୍ର ପ୍ରମାଣେ ପାଣ୍ଡବଙ୍କୁ ମହୀ
ଯୁଦ୍ଧ ବିନା ଦେବାକୁ ମନ ହେଉ ନାହିଁ ।



## ଯୁଦ୍ଧ ନ କରିବା ନିମିତ୍ତ ଧୃତରାଷ୍ଟ୍ରଙ୍କର ଦୁର୍ଯ୍ୟୋଧନଙ୍କୁ ଉପଦେଶ

ଧୃତରାଷ୍ଟ୍ର ପୁତ୍ର ମୁଖରୁ ଏହା ଶୁଣି
କାନ୍ଦି କରି କୁରୁଙ୍କୁ କହିଲେ ଏ ବାଣୀ ।
ଆଜୁ ତୁମ୍ଭମାନଙ୍କୁ ପ୍ରେତ କରି ମୁହିଁ
ମଣୁଅଛି ଜାଣ ହେ ମୋର ଦୋଷ ନାହିଁ ।
କେତେ ବୁଝାଇଲେଟି ମୋ ପୁତ୍ର ମୁରୁଖ
ନ ଘେନି କରେ ମୋର କୁଳକୁ ନିରେଖ ।
ସେନାମୁଖରେ ଭୀମ ଥାଇ ମୋର ସୈନ୍ୟ
ତୁଲେ ପୁତ୍ରମାନଙ୍କୁ କରିବ ନିଧନ ।
ସାତ୍ୟକି ଧନୁରୁ ବାହାରି ଶରଜାଳ
କାଟି ପକାଇବ କୁରୁଙ୍କ ମୁଣ୍ଡମାଳ ।
ଭୀମର କାଣ୍ଡ ବାଜି କରି ଗଣ୍ଡସ୍ଥଳ-
ମୁକୁତା ପଡ଼ିଥିବ ଯେତେବେଳେ ତଳ ।

ତେତେବେଳେ ମୋହର କହିବା ବାଣୀକି
ସୁମରି ମାରୁଥିବ କପାଳେ ପାଣିକି ।
ଏହା କହି କୁରୁମାନଙ୍କୁ ଧୃତରାଷ୍ଟ୍ର
ସଞ୍ଜୟଙ୍କୁ ବୋଇଲେ ଆହେ ମନ୍ତ୍ରୀଇଷ୍ଟ ।
କୃଷ୍ଣ ଅରଜୁନ ବୋଲିଅଛନ୍ତି ଯାହା
ଆଉଥରେ ସଞ୍ଜୟ କହ କିନା ତାହା ।
ସଞ୍ଜୟ ବୋଇଲେ ହେ କୃଷ୍ଣ ଅରଜୁନ
ରୂପ ମୁଁ ଯେଉଁରୂପେ କରିଛି ଦର୍ଶନ ।
ସେହିରୂପେ ତୁମ୍ଭ ଆଗରେ ନରବର
କହିବି ମନ ଏକ ଲୟ ଏବେ କର ।
ପାଣ୍ଡବଙ୍କ ଅନ୍ତଃପୁରକୁ ଗଲାବେଳେ
ଦୃଷ୍ଟି ନିବେଶିଣ ମୋହର ପାଦତଳେ ।
କୃଷ୍ଣ ଅରଜୁନଙ୍କ ସମୀପରେ ଯାଇଁ
ବସିଲେ ଜାଣ ହେ ହସ୍ତିନା ନରସାଇଁ ।
ସେହିଠାରେ ଦ୍ରୌପଦୀ ସତ୍ୟଭାମା ଦୁହେଁ
ବସି କରି କଥା ହେଉଥିଲେ ସେ ସ୍ନେହେ ।
ସେ ଦୁଇ ନାରୀ ଯେଝା ପତିଙ୍କର ପାଦ
ଘଷୁଥିଲେ ପୁଣି ହୋଇକରି ପ୍ରମୋଦ ।
ମୋ ପାଇଁ ସୁନା ଆସନଟିଏ ଅର୍ଜୁନ
ଆଦରେ ଅଣାଇଦେଲେ ଯେ ବହନ ।
ତାହା ମାତ୍ର କରେ ମୁଁ ଥରେ ଦେଲି ଛୁଇଁ
ତହିଁରେ କଦାଚିତେ ଜାଣ ବସି ନାହିଁ ।
କୃଷ୍ଣ ଅରଜୁନଙ୍କ ଦେଖିଣ ଅଭେଦ
ଭୟରେ କମ୍ପିଗଲା ଜାଣ ମୋର ହୃଦ ।
ତା ଦେଖି ମନେ କଲି ଦୁର୍ଯ୍ୟୋଧନ ମୂର୍ଖ
ପଣେ ନିଶ୍ଚେ ମରିବେ ହୋଇଣ ନିରେଖ ।
ପୁଣି ତାଙ୍କି ଦୁହିଙ୍କ ନମସ୍କାର କଲି
କର ଦୁଇଟି ଯୋଡ଼ି କରି ଜଣାଇଲି ।
ମୋର କଥା ଶୁଣିଣ ଅର୍ଜୁନ କୃଷ୍ଣଙ୍କ
ପାଦକୁ ଚିପିଦେଲେ ହୋଇଣ ନିଃଶଙ୍କ ।
କୃଷ୍ଣ ସେ କଥା ଜାଣିପାରି କରି ଉଠି
କହିଲେ ମୋତେ ଅର୍ଜୁନଙ୍କୁ କରି ପିଠି ।
ସେହି ବଚନ ଆଗ ଶୁଭିଣ କୋମଳ
ପଛେ ମଡ୍ଡିଦେଲା ମୋ ହୃଦୟ କମଳ ।
ତାହା ଏବେ ବତାଇ କହିବଇଁ ମୁହିଁ
ଶୁଣ ଆହେ ସୁବଳ ସୁତା ପ୍ରାଣସାଇଁ ।

ଆଗ ଭୀଷ୍ମ ଦ୍ରୋଣ ତୁମ୍ଭଙ୍କୁ ନମସ୍କାର
କହି କରି ମୋତେ କହିଲେ ଏ ଉତ୍ତର ।
ଭାରିଯାଙ୍କୁ ବସ୍ତ୍ର ଅଳଙ୍କାରରେ ମଣ୍ଡି
ଭୋଗ କରି ଥାଉନ୍ତୁ ହୋଇଣ ଦରାଣ୍ଡି ।
ପୁତ୍ରଙ୍କୁ ଲାଳନାରେ କରିଣ ସନ୍ତୋଷ
ଦେଇଥାନ୍ତୁ ଧନ ଦ୍ୱିଜଙ୍କୁ ସେ ବିଶେଷ ।
ମୋ ହୃଦରେ ଦ୍ରୌପଦୀ ଆର୍ତ୍ତବେଳ ଡକା
ଋଣଧନ ହୋଇ ସେ ବଢୁଅଛି ଏକା ।
କୁରୁଙ୍କ ପ୍ରାଣ ଯେବେ କରିବି ମୁଁ ନାଶ
ତେବେ ତା ସୁଝିବି ଜାଣ ହେ ମନ୍ତ୍ରୀଈଶ ।
ପ୍ରାଣରୁ ଅଧିକ ମୋହର ଅରଜୁନ
ତା ତୁଲେ ତୁମ୍ଭେ ଯା ଲୋଡୁଛ ଆୟୋଧନ
ଏହି ସକାଶରୁ ତ ତୁମ୍ଭର ନିଧନ
ନିକଟରେ କରିବେ ପ୍ରେତଙ୍କ ରାଜନ ।
ମନ୍ଦର ପର୍ବତକୁ ପାରିଲେ ଉପାଡ଼ି
ଅର୍ଜୁନଙ୍କୁ ବିନ୍ଧିବ ତୁମ୍ଭେ ଶରଧାଡ଼ି ।
ଆକାଶକୁ ଯେବେ କରିବ ମୁଷ୍ଟି ଘାତ
ତେବେଟି ଅରଜୁନ ହୋଇବ ନିହତ ।
ଦେବେ ଅସୁର ନର ଗନ୍ଧର୍ବ ପକ୍ଷରେ
ଦେଖ ନାହିଁ ଯୁଝିବ ପାର୍ଥ ସମ୍ମୁଖରେ ।
ଏକା ଅରଜନ ତ ଗୋଗ୍ରହରେ ଜିଣି
ସମସ୍ତ କୁରୁଙ୍କୁ ଆଣିଲା ଗୋରୁଶ୍ରେଣୀ ।
ବଳବୀର୍ଯ୍ୟ ତେଜ ଅବିଷାଦ ଧୈର୍ଯ୍ୟ
ଅର୍ଜୁନଠାରେ ରହିଛନ୍ତି ଏ ସମାଜ ।
ତୁମ୍ଭେ ବା କେଉଁରୂପେ ଅର୍ଜୁନଙ୍କୁ ଜିଣି
ପାରିବାକୁ କହୁଛ ନିଶ ଧରି ବାଣୀ ।
ଶରତମେଘ ପରି ତୁମ୍ଭର ବଚନ
ହୋଇଯିବ ପରା ଏ ପାଉଛି ମୋ ମନ ।
ଏରୂପେ କହି କୃଷ୍ଣ ମଉନ ହୋଇଲେ
ଅର୍ଜୁନ ମୋତେ ମଧ ସେରୂପେ କହିଲେ ।
ସଞ୍ଜୟଙ୍କ ମୁଖରୁ ଶୁଣି ଏ ବଚନ
ଧୃତରାଷ୍ଟ୍ର ରାଜା ଶୁଖାଇଣ ବଦନ ।
ଆପଣା ଗୁଣ ଦୋଷ ମନରେ ବିଚାରି
କହିଲେ ପୁଣି ଦୁର୍ଯ୍ୟୋଧନେ ଗହିଁ କରି ।
ତୋଠାରେ ସ୍ନେହ ସକାଶରୁ ଆରେ ବାବୁ
ତୋ ଅବିଚାରଯାକ ସହିଛି ମୁଁ ସବୁ ।

ଅର୍ଜ୍ଜୁନ ଅଗ୍ନିଙ୍କ ଅଟନ୍ତି ଉପକାରୀ
ଅର୍ଜ୍ଜୁନ ପକ୍ଷ ଧରି ତୋତେ ଦେବି ମାରି ।
ଧର୍ମ ଇନ୍ଦ୍ର ଅଶ୍ୱିନୀକୁମାର ପବନ
ଏ ତ ପାଣ୍ଡବଙ୍କର ପିତା ଦୁର୍ଯ୍ୟୋଧନ ।
ଯୁଦ୍ଧକାଳେ ପାଣ୍ଡୁପୁତ୍ରଙ୍କୁ ସାହା ହୋଇ
ଆମ୍ଭର ସୈନ୍ୟଯାକ ଦେବେ ଶରେ ଦହି ।
ସହଜେ ପାଣ୍ଡବେ ଅଟନ୍ତି ବଳୀୟାର
ପୁଣି ତାଙ୍କୁ ସାହା ହୋଇବେ ପୁରନ୍ଦର ।
ଧର୍ମ ଆଦି ଦେବଙ୍କୁ ସଙ୍ଗତରେ ଧରି
ଏଣୁଟି ତାଙ୍କୁ ଆମ୍ଭ ନ ପାରିବା ମାରି ।
ଅରଜୁନ ମହାରଥରେ ମହାରଥ
ଦିବ୍ୟ ତାହାର ଚରି ଅଶ୍ୱ ଧ୍ୱଜ ରଥ ।
ଗାଣ୍ଡୀବଧନୁ କାଣ୍ଡ ଭାରତୀ ଅକ୍ଷୟ
ଦେବତାରେ ଏଣୁ ସେ ଅଟଇ ଅଜୟ ।
ନିମିଷ ଭିତରେ ପାଞ୍ଚଶ କାଣ୍ଡ ସନ୍ଧେ
ନ ଦେଖନ୍ତି ଲୋକ ତା କେତେବେଳେବିନ୍ଧେ ।
ଅଲାତଚକ୍ର ପରି ଗାଣ୍ଡୀବ ଧନୁବର
ଅର୍ଜ୍ଜୁନ କରେ ଦିଶୁଥାଇ ଯେ ସୁନ୍ଦର ।
ଭୀଷ୍ମ ଦ୍ରୋଣ କୃପ ତ ମାରନ୍ତି ତାହାଙ୍କୁ
ସାହସ ନ କରନ୍ତି ଯୁଦ୍ଧେ ଜିଣିବାକୁ ।
କାର୍ତ୍ତବୀର୍ଯ୍ୟ ସମାନ ଅଟନ୍ତି ସେ ଯୋଦ୍ଧା
ସାଞ୍ଜୁ କରିଥାଏ ଦେହକୁ ତାର ଗୁନ୍ଧା ।
ପର କାଣ୍ଡୁଟିକି କାଣ୍ଡରେ ଟିକି ଟିକି
କରି କାଟି ପକାଏ ଟାଣି ଧନୁଟିକି ।
ଏରୂପେ ଅର୍ଜ୍ଜୁନର ପରାକ୍ରମ ବଳ
ଭାବିବାରୁ ମୋ ଦେହ ହେଲାନି ଦୁର୍ବଳ ।
ରାତ୍ରରେ ମୋତେ ମଧ ନିଦ ମାଡୁ ନାହିଁ
ଅଶକତ ହେଲାପରି ମୁଁ ଅଛି ଜୀଇଁ ।
ଏବେ ମୋ ବୋଲ କରି କୁରୁକ୍ଷୟକାଳ
ହେଉଛି ଯେ ଭଲ ହେବ ତା କର ବାଳ ।
କୁରୁଙ୍କ ପ୍ରତି ଶତଗୁଣରେ ପାଣ୍ଡବେ
ବଳବନ୍ତ ଅଛନ୍ତି ଜାଣନ୍ତି ତା ସର୍ବେ ।
ବାପଙ୍କର ବଚନ ଦୁର୍ଯ୍ୟୋଧନ ଶୁଣି
ନ ସହି କ୍ରୋଧରେ କହିଲେ ତାଙ୍କୁ ବାଣୀ ।
ତୁମ୍ଭେ ବୋଲୁଅଛ ପାଣ୍ଡବେ ଦେବଯୁତ
ହୋଇଣ କୁରୁଙ୍କୁ କରିବେ ରଣେ ହତ ।
ଏଥିକି ଯେଉଁ କଥା କହୁଅଛି ମୁହିଁ
ଶୁଣ ମୋଠାରୁ ହେ ନୃପତି ମନ ଦେଇ ।
ପର୍ଶୁରାମ ବ୍ୟାସ ନାରଦ ପୂର୍ବେ ମୋତେ
କହିଛନ୍ତି ଏହା ବତାଇ ମହାମତେ ।
କ୍ରୋଧ ହିଂସା ଛାଡ଼ିବାରୁଟି ଦେବତାଏ
ସ୍ୱର୍ଗପୁରେ ଛନ୍ତି ଫୁଲାଇ ଦେଇ କାୟେ ।
ପବନ ଧର୍ମ ଇନ୍ଦ୍ର ଅଶ୍ୱିନୀ କୁମାର
ଯେବେ ପାଣ୍ଡବଙ୍କୁ କରନ୍ତେ ସତକାର ।
ତେବେ ଆଜିଯାଏ ପାଣ୍ଡବମାନେ ଦୁଃଖ
ପାଇ ବୁଲୁଥାନ୍ତେ କି ହୋଇଣ ନିରେଖ ।
ବେଦ ଯେବେ ପ୍ରମାଣ ଦେବେ ପକ୍ଷପାତ
କରିଣ ଯୁଦ୍ଧ କଲେ ହାରିଯିବେ ତାତ ।
ଅଗ୍ନି ପକ୍ଷପାତରେ ପାଣ୍ଡବଙ୍କ ପାଇଁ
ଆସିଲେ ସ୍ତମ୍ଭିବି ରହିବେ ତୁନି ହୋଇ ।
ଦେବତାଙ୍କ ତେଜକୁ ମୋ ତେଜ ଅଧିକ
ବିଚରିଲେ ହେବ ହେ ଅବନୀନାୟକ ।
ଧରଣୀର ଧରଣୀ ସହିତରେ ଫାଟି
ଯାଉଥିଲେ ରଖିବି ପଢି ମୁଁ ମନ୍ତଟି ।
ପ୍ରଳୟ କରିବାକୁ ବହୁଥିଲେ ବାତ
ମୁଁ ବିଚରିଲେ ସେହି ହେବେ ସ୍ତମ୍ଭୀଭୂତ ।
ଜଳେ ହାତୀ ଘୋଡ଼ା ଚଲାଇ ମୁଁ ପାରଇ
ମୋ ପରି ପୁରୁଷ ମହୀରେ କେହି ନାହିଁ ।
ମୋହଠାରେ ରହିଅଛନ୍ତି ଯେତେ ଘୋଡା
ଉଚ୍ଚୈଶ୍ରବା ଅଶ୍ୱ ତୁଲରେ ହେବ ଯୋଡ଼ା ।
ମୋର ମନ୍ତବଳରେ ବାଘଙ୍କର ପାଟି
ମନୁଷ୍ୟଙ୍କୁ ଦେଖିଲେ ରହଇ ବୁଜିଟି ।
ମୁଁ ଯେତେବେଳେ ଇଚ୍ଛା କରୁଅଛି ଜଳ
ତେତେବେଳେ ବରଷୁଛନ୍ତି ଆଖଣ୍ଡଳ ।
ମୋହର ବଳେ ପ୍ରାଣୀମାନେ ନୀତିବନ୍ତ
ହୋଇ କରୁଅଛନ୍ତି ନିଶିଦିନ ଅନ୍ତ ।
ମୁଁ ଯାହାଠାରେ କ୍ରୋଧ ହୋଇଥିବି ରାୟେ
ଦେବେ ରଖି ନ ପାରନ୍ତିଟି ତାର କାୟେ ।
ମୁଁ ଯାହାର ବିଚରୁଥାଏଁ ମନେ ଶୁଭ
ତାହାକୁ ଦେବତାଏ ହୁଅନ୍ତି ସୁଲଭ ।
ମୋ କଥା ମିଥ୍ୟା ନୋହିବାରୁ ନରପତି
ମୋତେଟି ସତ୍ୟବାକ ସମସ୍ତେ ବୋଲନ୍ତି ।

ତୁମ୍ଭେ ଜାଣିବାର ପାଇଁକି ହେ ରାଜନ
କହିଲି ମୁଁ ବଚନେ ଏତେ କଥାମାନ ।
ଆପଣା ସ୍ତୁତି ବସି ନିଜେ ଯେବେ କରେ
କରନ୍ତି ନିନ୍ଦା ତାକୁ ବସି ସବୁ ନରେ ।
କୃଷ୍ଣ ଅରଜୁନ ତୁଲରେ ପାଣ୍ଡବଙ୍କ
ବଳକୁ ମୋର ବଳେ ଦେବି ମୁଁ ଆତଙ୍କ ।
ମୋର କାଣ୍ଡ ବେଳାକୁ ପାଣ୍ଡବ-ଜଳଧି
ବଳି ନ ପାରିବେ ଏ ରୂପେ ମୋର ବୁଦ୍ଧି ।
ପାଣ୍ଡବଙ୍କ ପ୍ରତି ମୁଁ ବୁଦ୍ଧି ବଳ ତେଜ
ଓଜରେ ସତେ ଗୁଣ ବଡ ମହାରାଜ ।
ଭୀଷ୍ମ ଦ୍ରୋଣ କୃପ ଜାଣନ୍ତି ଅସ୍ତ୍ର ଯେତେ
ସବୁ ମୁଁ ଜାଣିଛି ଜାଣ ହେ ମହାମତେ ।
ଧୃତରାଷ୍ଟ୍ର ପୁତ୍ର ମୁଖରୁ ଏହା ଶୁଣି
ସଞ୍ଜୟଙ୍କୁ ପଚରିବାର ବେଳେ ପୁଣି ।
କର୍ଣ୍ଣ ବୋଇଲେ ଆହେ ଶୁଣ ଦୁର୍ଯ୍ୟୋଧନ
କହିବି ମୁଁ ତୁମ୍ଭଙ୍କୁ ଯେତେକ ବଚନ ।
ପୂର୍ବରେ ପର୍ଶୁରାମ ମାରି କ୍ଷତ୍ରିୟଙ୍କୁ
ସତ୍ୟ କରିଥିଲେ ସେ କ୍ଷତ୍ରିୟ ବିଦ୍ୟାକୁ ।
ନ ଦେବି ଦ୍ୱିଜବିନା ଆନ ମୁଁ କାହାକୁ
ତାହା ଜାଣିପାର ରାଜନ ତାଙ୍କଠାକୁ ।
ଯାଇ ମୁଁ କପଟରେ ଦ୍ୱିଜ ବୋଲି କହି
ସବୁ ବିଦ୍ୟାଯାକ ଶିଖିଲି ତୋଷ କହି
ପର୍ଶୁରାମ କଥା ଭାଙ୍ଗିରେ ମୋତେ ଜାଣି
ଶାପ ଦେଲେ ମୋତେ କ୍ରୋଧରେ କହି ବାଣୀ
ଅନ୍ତକାଳରେ ବିଦ୍ୟା ନ ଆସିବ ତୋତେ
ତୁ ତ ମିଥ୍ୟା କହି ଛୁଟିଲୁ ଆସି ମୋତେ ।
ଏହା ଶୁଣି ମୁହିଁ ତାହାଙ୍କ ପାଦେ ପଡି
ସେବା କରିଲି ମନ ଜାଣି ହରଘଡି ।
ମୋ ସେବାରେ ପ୍ରସନ୍ନ ହୋଇ ମହାମତି
ସବୁ ଅସ୍ତ୍ର ପୁଣି ଦେଲେ ସେ ବହି ପ୍ରୀତି ।
ଏବେ ତୁମ୍ଭ ଦେଖିବ ଅସ୍ତ୍ର ବଳେ ମୁହିଁ
ତୁମ୍ଭ ଶତ୍ରୁ ଯାକକୁ ପକାଇବି ଦହି ।
ପାଣ୍ଡବଙ୍କୁ ମାରିବା ଭାର ମୋତେ ଲାଗେ
ସବୁ ରଥୀମାନେ ଥାଆନ୍ତୁ ତୁମ୍ଭ ସଙ୍ଗେ ।
ଏହା ଶଣି ଭୀଷ୍ମ ବୋଇଲେ କର୍ଣ୍ଣ ବାଇ
ହେଲା ପରି କଥା କହୁଛ କାହିଁପାଇଁ ।
ଖାଣ୍ଡବ ବନ ପୋଡାକାଳେ ଅର୍ଜୁନର
ପରାକ୍ରମକୁ ଥରେ ସୁମରଣା କର ।
ଯେଉଁ ଶକତି ଟିକି ଫନ୍ଦା କରିଅଛ
କୃଷ୍ଣଙ୍କ ଚକ୍ରରେ ସେ ହୋଇଯିବ ମିଛ ।
ଯେ ସର୍ପମୁଖ କାଣ୍ଡ ରଖିଛ ପୂଜା କରି
ତୁମ୍ଭ ସହ ପାର୍ଥ ତାକୁ ଦେବ ସଂହାରି ।
ବାଣ ଭୌମହନ୍ତା ପାର୍ଥଙ୍କୁ ରଖିଥିବେ
ତୋ ବାଣେ ଯାଇ ତାକୁ କିସଟି କରିବେ
କର୍ଣ୍ଣ ବୋଇଲେ ଆହେ ଭୀଷ୍ମ ମହାରଥୀ
ବଚନେ ବଳେ ମୋ ବଳକୁ ଦିଅ ମନ୍ଥି ।
ଏଥିକି ଯେ ଉଚିତ ବଳ ପାଅ ତୁମ୍ଭେ
ତୁମ୍ଭ ଯୁଦ୍ଧ ଯାକରେ ନ ଯୁଝିବୁ ଆମ୍ଭେ ।
ତୁମ୍ଭେ ମଲା ଉତ୍ତାରୁ କରେ ଧନୁ ଧରି
କିରୀଟିକି କାଣ୍ଡ ଗୋଟିକେ ଦେବି ମାରି ।
ଏହା କହିଣ କର୍ଣ୍ଣ ଉଠି କୋପଭରେ
ପରବେଶ ହୋଇଲେ ଆପଣା ମନ୍ଦିରେ ।
ଭୀଷ୍ମ କୁରୁମାନଙ୍କ ମଧ୍ୟେ ହସି କରି
କହିଲେ ଦୁର୍ଯ୍ୟୋଧନ ବଦନକୁ ହେରି ।
ମୋ ଆଦି କୁରୁରଥୀମାନେ ତୁମ୍ଭ ପାଇଁ
ଯୁଝିବାଠାରେ କର୍ଣ୍ଣ ଯୁଝିବେ କିପାଇଁ ।
ଯେଉଁକାଳୁ ପରଶୁରାମେ ମିଥ୍ୟା ବାଣୀ
କହିଛନ୍ତି ସେ କାଳୁ ମଲେଣି ସେ ଜାଣି ।
ଭୀଷ୍ମଙ୍କର ମୁଖରୁ ଶୁଣି ଏ ବଚନ
ଭୀଷ୍ମ ମହାରଥୀଙ୍କି କହିଲେ ଦୁର୍ଯ୍ୟୋଧନ ।
ସମସ୍ତେ ତ ମାଉଁସ ପିଠା ଖାଉଅଛ
ପାଣ୍ଡବେ କାହିଁପାଇଁ କିଣିବେ ବୋଲୁଛ ।
ମୁହିଁ ଯେଉଁରୂପେ ପାଣ୍ଡବେ ସେହିରୂପେ
ତୁମ୍ଭର ତୁମ୍ଭେ କିମ୍ବା ତାଙ୍କ ପାଇଁ କୋପେ ।
କହୁଥାଅ ସଭା ମଧରେ ଆଣ୍ଟ କରି
ଏହା ଉଚିତ କିଛି ନୁହଇ ତୁମ୍ଭରି ।
ତୁମ୍ଭମାନଙ୍କଠାରେ ଦେଇଣ ଭାର
ବିଚରି ତ ନାହିଁ ମୁଁ କରିବି ସମର ।
ଦୁଃଶାସନ କର୍ଣ୍ଣ ଯେ ଶକୁନିଙ୍କି ଧରି
ପାଣ୍ଡବେ ମାରିବା ଇଚ୍ଛା ମୁଁ ଅଛି କରି ।
ପାଣ୍ଡବଙ୍କୁ ମାରିବା ଉତ୍ତାରେ ମୁଁ ଯାଗ
କରିଣ ଛଡାଇବି ଭାଇହତ୍ୟା ଭାଗ ।

ଦେଖିବ ଯେଉଁକାଳେ ପାଣ୍ଡବମାନଙ୍କୁ
ମାରି ପକାଇବି ମୁଁ ସେକାଳେ ମନକୁ ।
ଆଣିବ ମୋ କହିବାର ହେ ଭୀଷ୍ମରଥୀ
ବଚନେ ସିନା ତୁମ୍ଭେ ପାଣ୍ଡବଙ୍କ ସାଥୀ ।
ବିଦୁର ବୋଇଲେ ହେ ଇନ୍ଦ୍ରିୟ ନିଗ୍ରହ
ଲୋକ ଯେ ଗୁଣ କରି ପାରଇ ସଂଗ୍ରହ ।
ଇନ୍ଦ୍ରିୟ ନିଗ୍ରହରୁ ହୋଇ କଥା ବଳି
ଏ ମହୀରେ ନାହିଁ ବସିବ ଯେବେ ଭାଳି ।
ଇନ୍ଦ୍ରିୟ ନିଗ୍ରହଟି କଲେ ଜପ ତପ
ଦାନ ଶରୀରଶୁଦ୍ଧି ବଢଇ ଅମାପ ।
ଇନ୍ଦ୍ରିୟମାନଙ୍କୁ ଯେ ଲୋକେ ନ ଜିଣନ୍ତି
ଏ ଲୋକରେ ଦୁଷ୍ଟଆତ୍ମା ସେହୁ ବୋଲାନ୍ତି ।
ଏଥିକି ବ୍ରହ୍ମା କରିଛନ୍ତି ରାଜା ଜାଣ
ଦୁଷ୍ଟାତ୍ମାମାନଙ୍କର ହେବାକୁ ଦମନ ।
ଚାରି ଆଶ୍ରମରେ ଉତ୍ତମ ବ୍ରତ ଦମ
ଜାଣ ମୋ କହିବାରୁ ଦର୍ଯ୍ୟୋଧନାଧମ ।
କ୍ଷମା ଧୃତି ଅହିଂସା ସମତା ଆର୍ଜବ
ଅଚପଳ୍ୟ ସତ୍ୟ ଲଜ୍ଜା ଯେ ମାରଦବ ।
ଶ୍ରଦ୍ଧା ଅସଂରମ୍ଭ ଧୈର୍ଯ୍ୟ ଯେ ଅକାର୍ପଣ୍ୟ
ସନ୍ତୋଷ ଆଦି ଦମବନ୍ତର ଏ ଗୁଣ ।
କାମ ଲୋଭ ମୋହ ମନ୍ୟୁ ନିଦ୍ରା ଯେ ଈର୍ଷା
ଦମବନ୍ତ ହେଲେଟି ନ କରନ୍ତି ବସା ।
ଦମବନ୍ତ ଲୋକଟି ଇହ ପର ଦୁଇ
ଜିଣଇଁ ଏଥିରେ ସନ୍ଦେହ କିଛି ନାହିଁ ।
ପ୍ରାଣୀଙ୍କର ହୁଅଇ ଯାହା ଘେନି ଭୟ
ତାହାରଟି ଲୋକରେ ନୁହଇ ଉଦୟ ।
ସମୁଦ୍ର ପରି ଗଭୀରତା ଗୁଣ ବହି
ସବୁ ପ୍ରାଣୀଙ୍କର ହିତେ ସେ ଥାଏ ରହି ।
ସାଧୁ ଲୋକ ମାର୍ଗକୁ ଆଚରୁଥାଏ ନିତି
ତାହାକୁ ବିହି ଦେଇ ନ ପାରେ ବିପତ୍ତି ।
ଜ୍ଞାନତୃପ୍ତ ଲୋକ ବିଷୟ ଛାଡ଼ିଦେଇ
ଭଜିଲେ ବ୍ରହ୍ମଙ୍କୁ ସେ ବ୍ରହ୍ମ ପାଏ ଯାଇ ।
ନଭେ ପକ୍ଷୀମାର୍ଗ ନୋହିଲା ପରି ଜଣା
ଜ୍ଞାନୀଲୋକ ମାର୍ଗଟି ହୁଅଇ ଅଜଣା ।
ଯେଉଁ ଲୋକ ମୋକ୍ଷ କରଇ ସୀଉକାର
ପୁଅ ଭାର୍ଯ୍ୟାଠାରେ ନ କରେ ସେ ଆଦର ।
ଏ ବାହାରେ ଆଉରି କଥାଟିଏ ତୋତେ
କହିବା ତାହା ବାବୁ ଶୁଣ ଏକ ଚିତ୍ତେ ।
ପୂର୍ବରେ ବ୍ୟାଧ ଫାଶ ଯୋଡିଏ ପକାଇ
ବସିଥିଲା ପକ୍ଷୀକ ଧରିବାର ପାଇଁ ।
ଦଇବରେ ପକ୍ଷୀ ଯୋଡିଏ ସେ ପାଶରେ
ପଡିପାଶ ଧରି ଉଡିଲେ ଆକାଶରେ ।
ବ୍ୟାଧ ତାର ସଙ୍ଗତେ ଧାଇଁଲା ତୋରାରେ
ଦେଖିଲେ ମୁନି ଜଣେ ବ୍ୟାଧକୁ ବାଟରେ ।
ସେ ମୁନି ବୋଇଲେ ହେ ଆକାଶରେ ଉଡି
ଯାଉଛି ପକ୍ଷୀ ବ୍ୟାଧ ନ ମର ଦଉଡି ।
ବ୍ୟାଧ ବୋଇଲା ମୋ ପାଶକୁ ଘେନି କରି
ଏ ବେନି ପକ୍ଷୀ ଯାଉଅଛନ୍ତି ବାହାରି ।
ଯେଉଁଠାରେ ବିରୋଧ କରି ଏ ପଡିବେ
ସେହିଠାରୁ ଧରି ଆଣିବି ଜାଣ ଜବେ ।
ସେ ସମୟରେ ସେ ଦୁଇପକ୍ଷୀ କରି ରୋଳ
ଧରା ଧରି ହୋଇ ପଡିଲେ ମହୀତଳ ।
ସେହିକ୍ଷଣି ସେ ବ୍ୟାଧ କାଳଦେବ ପରି
ଦୁହିଁକି ଦି ହାତେ ଧଇଲା ଚିପିକରି ।
ଆହେ ଦୁର୍ଯ୍ୟୋଧନ ତ ଜ୍ଞାତିରେ ବଇର
କଲେ ଏହିରୂପେ ହୋଇବଟି ବିଚାର ।
ଜ୍ଞାତି ତୁଳେ ବିରୋଧମାର୍ଗ କରିବାର
ଦୂରୁ ଛାଡିଛନ୍ତିଟି ଶାସ୍ତ୍ରବାଦୀ ନର ।
ଯେଉଁମାନେ ପଣ୍ଡିତଙ୍କର ଆଶ୍ରୟରେ
ଥାଆନ୍ତି ଶୋକ ନ ଧରନ୍ତି ସେ ମନରେ ।
ଯେଉଁମାନେ ତ ହୀନ ସଙ୍ଗକୁ କରନ୍ତି
ମହତ ବିପତ୍ତିକି ଲୋଡି ସେ ଆଣନ୍ତି ।
ସାକ୍ଷାତ ପର୍ବତରେ ଦେଖିଛି ମୁଁ ଯାହା
କହୁଅଛି ଶୁଣ ହେ ଦୁର୍ଯ୍ୟୋଧନ ତାହା ।
ବ୍ରାହ୍ମଣଙ୍କ ତୁଳରେ ଗନ୍ଧମାର୍ଦନରେ
ମହୁଫେଣାଟାଏ ଦେଖିଲି ନୟନରେ ।
ମାଛି ବିନା ଅତଡିରେ ସେହି ଫେଣାଟା
ରହିଛି ହୋଇକରି ପୁଡୁଗ ପରାଟା ।
ଫଣୀ ସେ ମହୁଫେଣା ପାଶରେ ଶୋଇଛି
ଫୁଫୁକରି ନିଃଶ୍ୱାସମାନଙ୍କୁ ଛାଡୁଛି ।
ଦ୍ୱିଜେ ଚାହିଁ ମୋତେ କହିଲେ ଏ ମହୁକୁ
ଖାଇଲେ ବୁଢ଼ାଏ ପାଇବେ ଯୌବନକୁ ।

ଅମର ପରି ମହୀମଣ୍ଡଳେ ବିହରି
ରହିବ ଚିର ହୋଇ ଶରୀରକୁ ଧରି ।
ଦଇବରେ ସେଠାକୁ ଆସିଲେ କିରାତ
ଏହା ଶୁଣିକରି ସେ ହୋଇ ମୋହଗ୍ରସ୍ତ ।
ସେ ମହୁ ଆଣିବାକୁ ସେହିଠାକୁ ଗଲେ
ଅତଡ଼ିରୁ ପଡ଼ିଣ ଛେଚି ହୋଇ ମଲେ ।
ଦୁର୍ଯ୍ୟୋଧନ ସେହିରୂପେ ପୃଥ୍ୱୀ ଇଚ୍ଛା କରି
ବସିଅଛି ନାଶକୁ ମନେ ନ ବିଚାରି ।
ଅର୍ଜ୍ଜୁନକୁ ତୁଲେ କରିବୁ ଯେବେ ଯୁଦ୍ଧ
ଆରେ ବାବୁ ତେବେ କାଣ୍ଡକେ ହେବୁ ବଧ
ଏକା ଥରକରେ ବିରାଟ ନଗରରେ
ଜିଣିଲା ସବୁ କୁରୁ ଅର୍ଜ୍ଜୁନ ଯୁଦ୍ଧରେ ।
ଦେଖୁଁ ଦେଖୁଁ ଆଖିରେ ମାଡ଼ି ତୋ ଆଙ୍ଗୁଠି
ଫୁଟାଇ ନ ଦିଅ ତୁ ନୟନ ଦିଓଟି ।
ଦ୍ରୁପଦ ବିରାଟଙ୍କୁ ପାଇ ଅରଜୁନ
ଏବେ ତ ହୋଇଅଛି ଅତି ବଳବାନ ।
ତୁ ତାହାର ଆଗରେ ରହିବାକୁ କ୍ଷଣେ
ସମ ନୋହୁରେ ବାବୁ ସମରଥ ପଣେ ।
ଧୃତରାଷ୍ଟ୍ର ବୋଇଲେ ଆରେ ଦୁର୍ଯ୍ୟୋଧନ
ଘେନ ବାବୁ ବିଦୁର କହିବା ବଚନ ।
ଅମାଗରେ କିପାଁଇ କଣ୍ଟାଲଟା ମାଡ଼ି
ବାହାରି ଅଛୁ ପଡ଼ିବୁଟି ମୁହଁ ମାଡ଼ି ।
ପଞ୍ଚ ମହାଭୂତ ପରି ଯେ ପାଣ୍ଡୁଙ୍କର-
ଠାରୁ ଜନ୍ମିଅଛନ୍ତି ପାଞ୍ଚୋଟି କୁମର ।
ତାଙ୍କର ତେଜକୁ ବଳରେ ହରି ଆଣି
ନ ପାରିବୁଁ ଏ ପୁରେ ହୋଇ ନରମଣି ।
ଯୁଧିଷ୍ଠିର ଭୀମ ଅର୍ଜ୍ଜୁନ ଯେ ନକୁଳ
ସହଦେବ ମିଶି ଏ ପାଞ୍ଚ ମହାବଳ ।
ସବୁ ଅସ୍ତ୍ର ଶସ୍ତ୍ରେ ପାରନ୍ତି ଯୁଦ୍ଧ କରି
ମନେ କଲେ ଦେବେ ଏ ଭୁବନ ସଂହାରି ।
ଧୃଷ୍ଟଦ୍ୟୁମ୍ନ ସାତ୍ୟକି ଶିଖଣ୍ଡୀ ଉତ୍ତମୌଜା
ଏହାଙ୍କର ବଳକୁ ଡରନ୍ତି ବିଡ଼ୋଜା ।
ଏ ତ୍ରିଲୋକ ପ୍ରଭୁ ଅଟନ୍ତି ଜନାର୍ଦ୍ଦନ
ତାଙ୍କୁ କେ କରି ପାରିବଟି ଆୟୋଧନ
କୃଷ୍ଣ ପାଣ୍ଡବଙ୍କର ସାହା ହୋଇଥିଲେ
କେହି ଜିଣି ନ ପାରେଟି ତାହାଙ୍କୁ ଭଲେ ।

ସୁହୃଦମାନଙ୍କର ବଚନକୁ କରି
ଦୁର୍ହୃଦ ଲୋକ କଥା ଦିଅ ତୁ ପାସୋରି ।
ଭୀଷ୍ମ ଦ୍ରୋଣ କୃପ ବିକର୍ଣ୍ଣ ଯେ ବାହ୍ଲିକ
ଯା ବୋଲନ୍ତି ତା କର ନୋହିବ ମୋ ଶୋକ
ଗୋଗ୍ରହରେ ତୋହର ବଳଯାକ ବାବୁ
ଜାଣିଛୁଁ ଅର୍ଜ୍ଜୁନଙ୍କୁ ଯେ ରୂପେ ଜିଣିବୁଁ ।
ଏକା ଅରଜୁନ ମାରି ତୋହର ବଳ
ଗାଈଯାକ ନେଲା ତୁ ତା ସୁମର ବାଳ ।
ଏବେ ସେ ପାଞ୍ଚଭାଇ ସୈନ୍ୟ ସଖା ଗୋଟି
କରିଛନ୍ତି ଚିପି ଦେବାକୁ ତାର ତୋଟି ।
ଏହିରୂପରେ ଜ୍ୟେଷ୍ଠ ଘଟକୁ ତିଆରି
ସଞ୍ଜୟଙ୍କୁ ପୁଚ୍ଛିଲେ ପୁଣି ଦଣ୍ଡଧାରୀ ।
କୃଷ୍ଣଙ୍କ କହିବା ଉତ୍ତାରୁ ଅରଜୁନ
ଯାହା କହିଲେ ତା ମୋ ଆଗରେ ବଖାଣ ।
ସଞ୍ଜୟ ବୋଇଲେ ହେ କୃଷ୍ଣ ଶୁଣୁଥିଲେ
ପାର୍ଥ ଯା କହିଲେ କହିବି ଶୁଣ ଭଲେ ।
ଭୀଷ୍ମ ଧୃତରାଷ୍ଟ୍ର ଦ୍ରୋଣ କୃପ ଯେ କର୍ଣ୍ଣ
ବାହ୍ଲିକ ଅଶ୍ୱତ୍ଥାମା ଶକୁନି ଦୁଃଶାସନ ।
ଶଲ୍ୟ ବିବିଂଶତି ବିକର୍ଣ୍ଣ ପୁରୁମିତ୍ର
ବିନ୍ଦ ଅନୁବିନ୍ଦ ଦୁର୍ମୁଖ ସୋମଦତ୍ତ ।
ଜୟଦ୍ରଥ ଭୁରିଶ୍ରବା ଯେ ଚିତ୍ରସେନ
ଜଳସନ୍ଧ ଭଗଦତ୍ତ ଯେ ଜୟସେନ ।
ଦୁଃସହ ଆଦି ଆମ୍ଭ ସଙ୍ଗତେ ସମର
କରିବେ ବୋଲି ପରା ଭାବନ୍ତି ମନର ।
ମୋ ମତେ କରିଛୁଁ ମୋ ଶର ଅଗ୍ନି ମୁଖେ
ପଡ଼ିଲେ ଘିଅ ପରି ହୋମ ହେବେ ସୁଖେ ।
ଯେ ଯହିଁକି ଉଚିତ ଅଟନ୍ତିଟି ମୋର
ତାଙ୍କୁ ତାହା ତୁମ୍ଭେ କହିବ ମନ୍ତ୍ରୀବର ।
ସୁଯୋଧନ ରଜାଙ୍କୁ ମନ୍ତ୍ରୀଙ୍କର ସଙ୍ଗେ
କହିବଟି ତୁମ୍ଭେ ମୋ କହିବାର ବାଗେ ।
କାଳର ବଶେ କୁରୁକୁଳକୁ ମରାଇ
ମୋ ହାତରେ ନ ଦେଉ ସୁଯୋଧନ ବାଇ ।
ଯୁଧିଷ୍ଠିର ନୃପେ ନ ଦେବେ ଯେବେ ଭାଗ
କରାଇବି ସୁଯୋଧନକୁ ଯମଭାଗ ।
ଏ ବାହାର ତାର ପାଇକ ରଥୀମୁଣ୍ଡ
ଘୋଡ଼ା ହାତୀଙ୍କର ଗଡ଼ାଇ ଦେବି ଦାଣ୍ଡ ।

ଏହା ଶୁଣି କୃଷ୍ଣ ଅର୍ଜ୍ଜୁନ ପାଦେ ନମି
ଆସିଲି ତୁମ୍ଭଠାକୁ ହୋଇ ଅତିଗାମୀ ।
ପଚାରିବାରୁ ସବୁ କହିଲି ତୁମ୍ଭଙ୍କୁ
ବିହି ତ ଆସି ବାମ ହେଲାଣି ଆମ୍ଭଙ୍କୁ ।
ଆଉ କିସ ଗୁଡ଼ାଏ ପାରିବି ମୁଁ ଡକା
ତୁମ୍ଭ ପୁଅ ରୀତିରେ ହେଲେନି ଟାଟକା ।
ଏହିଠାରେ ସଞ୍ଜୟ ଯାନ ହେଲା ଶେଷ
କହଇ କୃଷ୍ଣସିଂହ ନରକୁଳଈଶ ।



## ଗାନ୍ଧାରୀ ଓ ବ୍ୟାସଦେବଙ୍କ ସହିତ ଧୃତରାଷ୍ଟ୍ରଙ୍କର ପାଣ୍ଡବବାର୍ତ୍ତା ଶ୍ରବଣ

ଏଥୁ ଅନ୍ତରେ ଧୃତରାଷ୍ଟ୍ରଙ୍କୁ ମେଲାଣି
ମାଗି ବାହାରିଲେ ସଭାରୁ ନୃପଶ୍ରେଣୀ ।
ଧୃତରାଷ୍ଟ୍ର ନୃପତି ହୋଇଣ ଏକାନ୍ତ
ପଚାରିଲେ ପାଣ୍ଡବମାନଙ୍କ ବୃତ୍ତାନ୍ତ ।
ପାଣ୍ଡୁ କୁରୁଙ୍କର ସେନାରେ କେ ଅଧିକ
ଊଣା ଅଛନ୍ତି ମୋତେ କହ ତ ତେତେକ ।
ସଞ୍ଜୟ ବୋଇଲେ ମୁଁ ଏକାନ୍ତେ ତୁମ୍ଭଙ୍କୁ
କହି ନ ପାରିବି ରାଜନ ଏ କଥାକୁ ।
ତୁମ୍ଭ ହୃଦୟର ତ ଈର୍ଷା କରି ବାସ
ଦେଇଛି ଧର୍ମବୁଦ୍ଧିଯାକ କରି ନାଶ ।
ବେଦବ୍ୟାସ ଗାନ୍ଧାରୀ ଦୁହିଙ୍କି ବସାଇ
ମୋହଠାରୁ କଥା ଶୁଣ ହେ ନରସାଇଁ ।
ଏହା ଶୁଣି ଗାନ୍ଧାରୀ ଦେବୀଙ୍କି ଡକାଇ
ଅଣାଇଲେ ଧୃତରାଷ୍ଟ୍ର ଯେ ତୋଷ କହି ।
ତାହା ଶୁଣିପାରି ସେ ବେଦବ୍ୟାସ ଋଷି
ପୁତ୍ର ଧୃତରାଷ୍ଟ୍ର ପାଶରେ ହେଲେ ଆସି ।
ବୋଇଲେ ବ୍ୟାସଋଷି ଧୃତରାଷ୍ଟ୍ର ଯାହା
ପଚାରୁଛନ୍ତି ତାହା କହ ହେ ମନ୍ତ୍ରୀନାହା ।
ସଞ୍ଜୟ ବୋଇଲେ ହେ ଶୁଣ ନୃପବର
ପଚାରୁଛନ୍ତି ଯାହା କହୁଛି ଉତ୍ତର ।
ଅର୍ଜ୍ଜୁନ କୃଷ୍ଣ ଦୁହେଁ ସ୍ୱଇଚ୍ଛାରେ ଜାତ
ହୋଇଛନ୍ତି ଦୁଷ୍ଟଙ୍କୁ କରିବାକୁ ହତ ।
କୃଷ୍ଣଙ୍କର ମାୟାଚକ୍ରରେ ତୁମ୍ଭେ ପଡି
ସୁଦର୍ଶନ ଚକ୍ରଘାତରେ ଯିବ ଛିଡି ।

ଅରଜୁନ କେକବଳ ଅଟନ୍ତି ନିମିତ୍ତ
ଜାଣ ଆହେ ଅମ୍ବିକା ଦେବୀଙ୍କର ପୁତ୍ର ।
ଶିଶୁପାଳ ଶମ୍ବର ନର୍କ ବାଣାସୁର
କଂସ ଆଦି ଯେତେ ମହୀରେ ଥିଲେ ଶୂର ।
ଏମାନଙ୍କ ସଙ୍ଗତେ ଶ୍ରୀକୃଷ୍ଣ ଆରଣୀ
କରିଣ ଦେଖାଇଲେ କାଳଦଣ୍ଡ ପାଣି ।
ଏ ଚଉଦ ଭୁବନଯାକରେ ଗୋବିନ୍ଦ
ଦେଇ ହରିପାରନ୍ତି ସବୁରି ଆନନ୍ଦ ।
ସବୁ ପ୍ରାଣୀଙ୍କର ବୋଲାନ୍ତି କୃଷ୍ଣ ଗୁରୁ
ସମସ୍ତଙ୍କ ପ୍ରତିକି ବଳରେ ସେ ମେରୁ ।
ସେହିଟି ଏ ଜଗତ ପ୍ରଳୟକରତା
କେତେ ପଚାରୁଛ ହେ ହାରି ବିବେକତା ।
ଯେଉଁଠାରେ ସତ୍ୟ ଧରମ ଆରଜବ
ଥାଏ ତହିଁ ଥାଆନ୍ତି ଜାଣ ହେ ମାଧବ ।
ଗୋବର୍ଦ୍ଧନଧର ମୁକୁନ୍ଦ ଯେ ଗୋବିନ୍ଦ
ଯାର ହୁଅନ୍ତି ସେ ନ ପାଏ କି ଆନନ୍ଦ ।
ଜୟପଦ ତାହାଠାରେ କେଉଁ ରୂପେ
ସମ୍ଭବିବ ବୋଲି କେ ବୋଲିବ ପ୍ରଳାପେ ।
ତୁମ୍ଭ ପୁଅମାନଙ୍କ ଦୁଷ୍ଟପଣ ଦେଖି
ପାଣ୍ଡବଙ୍କ ପଟରେ ରହି ପଦ୍ମଆଖି ।
ସଂହାର କରିବାକୁ କରନ୍ତି ବିଚାର
ଏଥିରେ କି ସନ୍ଦେହ ଅଛି ନରବର ।
କାଳଚକ୍ର ଯୁଗଚକ୍ର ଯେ ଜଗଚକ୍ର
ଭ୍ରମୁଛନ୍ତି ପାଇ କେଶବ ମାୟାଚକ୍ର ।
ଈଶ୍ୱର ହେଲେ ଅନୀଶ୍ୱର ପରି ହୋଇ
କରନ୍ତି ତିନି ଲୋକ ନ ଜାଣିବା ପାଇଁ ।
ଯେ ଏହା ଜାଣିପାରି କୃଷ୍ଣଙ୍କୁ ଶରଣ
ପଶଇ ତାହାରଟି ନୁହଇ ମରଣ ।
ଧୃତରାଷ୍ଟ୍ର ବୋଇଲେ କୃଷ୍ଣଙ୍କୁ ଈଶ୍ୱର
ବୋଲି ତୁମ୍ଭେ କି ରୂପେ କଲ ହେ ଗୋଚର
ମୋହର ତ ସେରୂପ ବୁଦ୍ଧି ହେଉନାହିଁ
ଏକଥା ମୋତେ ଥରେ କହ ତୁ ବୁଝାଇ ।
ସଞ୍ଜୟ ବୋଇଲେ ହେ ନୃପତି ଅଜ୍ଞାନ
ହେବାରୁ ଜାଣିପାରୁନାହିଁ ଭଗବାନ ।
ଜ୍ଞାନ ଥିବା ସକାଶୁ ରାଧିକାବିହାରୀ
ବ୍ରହ୍ମ ବୋଲି ଜାଣୁଅଛି ମୁଁ ଦଣ୍ଡଧାରୀ ।

ଧୃତରାଷ୍ଟ୍ର ବୋଇଲେ କେଉଁ ଜ୍ଞାନ କରି
ଜାଣିଲି ତୁମ୍ଭେ କହ କୃଷ୍ଣ ନରହରି ।
ସଞ୍ଜୟ ବୋଇଲେ ଭକ୍ତିରେ ଧର୍ମଶାସ୍ତ୍ର
ପଢ଼ି ବ୍ରହ୍ମ ବୋଇ ଜାଣିଲି ପଦ୍ମନେତ୍ର ।
ଏହା ଶୁଣିଣ ଧୃତରାଷ୍ଟ୍ର ହୃଷ୍ଟ ହୋଇ
କହିଲେ ଦୁର୍ଯ୍ୟୋଧନ ଆଡ଼େ ମୁଖ ଦେଇ ।
ତୁ ବାବୁ ଏବେ ମୋ ବୋଲରେ କୃଷ୍ଣଙ୍କର
ପାଦପଦ୍ମକୁ ଆଶ୍ରା କର ନିରନ୍ତର ।
ସଞ୍ଜୟ ତ କହୁଅଛନ୍ତି କୃଷ୍ଣ ବ୍ରହ୍ମ
ପାରନ୍ତି କରି ପ୍ରାଣୀ କରମ ଅକର୍ମ ।
ତୁ ତ ଅକରମୀ ହୋଇଛୁ ଆରେ ସୁତ
କୃଷ୍ଣଙ୍କୁ ସେବା କରି ଛାଡ ତା ତୁରିତ ।
ଦୁର୍ଯ୍ୟୋଧନ ବୋଇଲେ ପାର୍ଥ ସଖା ହୋଇ
ଆସିଲେ କୃଷ୍ଣ ତାଙ୍କୁ ମାରିବିଟି ମୁହିଁ ।
ମୋହର ପରା ଲୋକ କି ତାଙ୍କ ଗୋଡତଳେ
ପଡି ପାରଇ କି ହେ ପ୍ରାଣର ବିକଳେ ।
ଏହା କହିଁପାଇଁ କହୁଛ ନରନାଥ
ଲାଜ କି ତୁମ୍ଭ ହୃଦେ କରି ନାହିଁ ସାଥ ।
ଧୃତରାଷ୍ଟ୍ର ଏହା ଶୁଣିଣ ଗାନ୍ଧାରୀଙ୍କି
ବୋଇଲେ ତୁମ୍ଭ ପୁଅ ମରିବା ପାଇଁକି ।
କୃଷ୍ଣଙ୍କର ତୁଲେ ବିରୋଧ ଆରମ୍ଭଇ
ଏଥିରେ ଜାଣିଥାଅ ମୋର ଦୋଷ ନାହିଁ ।
ତିଆରି କହିବାରେ ଦେଖ ମୋର ଓଷ୍ଠ
ବଟି ହୋଇ କଥାକୁ କହିବା ଗୋ କଷ୍ଟ ।
ଗାନ୍ଧାରୀ ବୋଇଲେ ରେ ଦୁର୍ଯ୍ୟୋଧନ ବାଇ
ହୋଇ କୁଳଯାକକୁ ନ ଦିଅ ବୁଡାଇ ।
ତିଆରିଲେ ପିତା କଥାକୁ କରି ଖଙ୍ଗ
କହୁଅଛୁ କଥା ତୁ ଧରି ହୃଦେ ରାଗ ।
ଭୀମସେନର ଗଦାବାଡି ଘାତ ପାଇ
ମଲାବେଳେ ଏହା ସୁମରିବୁଟି ଯାଇ ।
ଜାଣୁଅଛି ଦଇବ ମୋତେ ମୋତେ ପୁତ୍ରକଷ୍ଟ
ଖଞ୍ଜିବାରୁ ଏରୂପେ ବୁଦ୍ଧି ହେଲା ଭ୍ରଷ୍ଟ ।
ବେଦବ୍ୟାସ ବୋଇଲେ ସଞ୍ଜୟ ବଚନ
ଘେନିଣ ଧୃତରାଷ୍ଟ୍ର ଦୁଃଖରୁ ମୋଚନ ।
ହେବା ପରି ମୋହର ମନକୁ ପାଉଛି
ଭାଳିବାକୁ ଏଥିରେ କଥା ନାହିଁ କିଛି ।
ଯେଉଁମାନେ ପରଧନରେ ଲୋଭୀ ହୋଇ
କ୍ରୋଧରେ ଦେଇଥାନ୍ତି ଜ୍ଞାନକୁ ବୁଡାଇ ।
ସେମାନଙ୍କ ମାଉଁସ କାଟି ଯମରାଜା
ମଲେ ଘିଅ ତେଲାଉଣିରେ କରେ ଭଜା ।
ସବୁ ଅମାର୍ଗରେ ପ୍ରବର୍ତ୍ତିଥିବ ଜୀବ
କୃଷ୍ଣଙ୍କୁ ଭଜି ଯେବେ ତାହା ଛାଡିଦେବ ।
ତେବେ ତ ତାହାକୁଟି କାଳ ଦଣ୍ଡପାଣି
ଦେଖିଲେ କର ଦୁଇ ଯୋଡନ୍ତି ସେକ୍ଷଣି ।
ବେଦବ୍ୟାସଙ୍କର ମୁଖରୁ ଏହା ଶୁଣି
ସଞ୍ଜୟଙ୍କୁ ପୁଚ୍ଛିଲେ ପୁଣି ନରମଣି ।
କି କଲେ ହେ ସଞ୍ଜୟ କୃଷ୍ଣରେ ଭକତି
ହେବ ମୋ ଆଗରେ ତା କହ ବହି ପ୍ରୀତି ।
ସଞ୍ଜୟ ବୋଇଲେ ହେ ଇନ୍ଦ୍ରିୟ ନିଗ୍ରହ
ନୋହିଲେ ହେ ରାଜନ ନ ଛାଡଇ ମୋହ ।
ମୋହ ଥିଲେ କୃଷ୍ଣଙ୍କୁ ନ ଜାଣଇ ଲୋକ
ଏହା ଜାଣିଣ ରାୟେ କର ହେ ବିବେକ ।
ଇନ୍ଦ୍ରିୟମାନେ ଯେବେ ରହିବେଟି ବଶେ
ସେ ବଳରେ ଜ୍ଞାନ ପୂରିବ ହୃଦଦେଶେ ।
ଏହି ପନ୍ଥା ଆଶ୍ରୟ କରି ସାଧୁଜନ
ପାଇଲେଟି ଜାଣ ହେ କୃଷ୍ଣ ଭଗବାନ ।
ଇନ୍ଦ୍ରିୟମାନେ ଯାର ଆୟତ୍ତେ ନାହାନ୍ତି
କାହିଁକି ସେହୁ ଜାଣଇ ପାରିବ ଶ୍ରୀପତି ।
ଧୃତରାଷ୍ଟ୍ର ବୋଇଲେ କୃଷ୍ଣନାମ ଅର୍ଥ
କହି ମୋତେ ସଞ୍ଜୟ କର ହେ କୃତାର୍ଥ ।
ସଞ୍ଜୟ ବୋଇଲେ ହେ ନାମ ଅର୍ଥ ମୁହିଁ
ଜାଣିଅଛି ଯେତେକ ଶୁଣ କହିବଇଁ ।
ବେଦରେ ଶ୍ରେଷ୍ଟ ହୋଇ ପ୍ରାଣୀ ହୃଦେ ବାସ
ହେବାରୁ ବସୁଦେବ ନାମଟି ପ୍ରକାଶ ।
ଚତୁର୍ବର୍ଗ ଦେବାରୁ ବୃଷ ସେ ବୋଲାନ୍ତି
ମୌନେ ପାଇବାରୁ ମାଧବ ନାମ ଖ୍ୟାତି ।
ସବୁ ତତ୍ତ୍ୱମାନେ ତାହାଙ୍କଠାରେ ସ୍ଥିତି
ହେବାରୁ ତାଙ୍କୁ ମଧୁସୂଦନ କହନ୍ତି ।
ସତ୍‌ସ୍ୱରୂପ ସୂକ୍ଷ୍ମସ୍ୱରୂପ ସେ ହେବାରୁ ।
କୃଷ୍ଣନାମ ତାଙ୍କର କୁରୁକୁଳଗୁରୁ ।
ପୁଣ୍ଡରୀକାକ୍ଷ ନାମ ପରମ ଧାମ ଥିବା
ସକାଶରୁ ଜାଣ ହେ ଆଉ କି କହିବା ।

ଦୁଷ୍ଟଲୋକମାନଙ୍କୁ ଦେବାରୁଟି ଭୟ
ଜନାର୍ଦ୍ଦନ ନାମଟି ହୋଇଛି ଉଦୟ ।
ସତ୍ତ୍ୱଚ୍ୟୁତ ନୋହିବାରୁ ସେହୁ ଶାଶ୍ୱତ
ବୋଲାଉଛନ୍ତି କୃଷ୍ଣ ଜଗଜ୍ଜନତାତ ।
ଆମ୍ଭାକୁ ଶ୍ରେଷ୍ଠ କରି ଦେଖନ୍ତି ତ ସେହି
ରକ୍ଷଭେକ୍ଷଣ ଏଣୁ ତାହାଙ୍କୁଟି କହି ।
ଆଜ ବୋଲାବନ୍ତି କାହାରିଠାରୁ ଜାତ
ନୋହିବାରୁ ଜାଣ ହେ ଲକ୍ଷ୍ମୀଦେବୀକାନ୍ତ ।
ଦମକୁ ପ୍ରକାଶିବା ଘେନି ଦାମୋଦର
ବୋଲାନ୍ତିଟି ଦେବକୀ ଦେବୀଙ୍କ କୁମର ।
ଆନନ୍ଦ ସୁଖ ଦୁଇ ଉପରେ ସେ ଈଶ
ହେବାରୁଟି ବୋଲାଉଛନ୍ତି ହୃଷୀକେଶ ।
ବାହୁ ତାଙ୍କ ତିନିଭୁବନେ ବ୍ୟାପିଛନ୍ତି
ଏହି ଘେନି ମହାବାହୁ ସେ ବୋଲାବନ୍ତି ।
ଜ୍ଞାନ ଊଣା ନୋହିବାରୁ ସେ ଅଟୋକ୍ଷଜ
ବୋଲାନ୍ତି ଅରୁଣ ଅନୁଜ ଯାର ଧ୍ୱଜ ।
ନରାଶ୍ରୟସ୍ଥାନରୁ ନାରାୟଣ ବୋଲି
ବୋଲନ୍ତି ତାଙ୍କ ଲୋକେ କିଛି ହିଁ ନ ଭାଳି ।
କହିବାରୁ ଲୋକଙ୍କୁ ସର୍ଜନା ସଂହାର
ପୁରୁଷୋତ୍ତମ ନାମ ବୋଲାଏ ତାଙ୍କର ।
ସବୁକଥା ଜାଣିମାରୁ ହେ ନରଦେବ
ବୋଲାଉଛନ୍ତି କୃଷ୍ଣ ଏ ଜଗତେ ସର୍ବ ।
ସତ୍ୟରେ ପ୍ରତିଷ୍ଠିତ ହେବାରୁଟି ସେହି
ସତ୍ୟ ବୋଲିକରି ଯେ ତାହଙ୍କୁଟି କହି ।
ସମସ୍ତ ଜିଣିମା ନ୍ୟାୟରୁ ନାମ ଜିଷ୍ଣୁ
ସର୍ବବ୍ୟାପୀ ହେବାରୁ ବୋଲାଅନ୍ତି ବିଷ୍ଣୁ ।
ନିତ୍ୟ ହେବାରୁ ସେହି ବୋଲାନ୍ତି ଅନନ୍ତ
ଜାଣିବାରୁ ଦେବ ଗୋବିନ୍ଦ ନାମ ଖ୍ୟାତ ।
ଅତତ୍ତ୍ୱକୁ ତତ୍ତ୍ୱ ସେ କରୁଛନ୍ତି ଯାହା
ପ୍ରାଣୀଙ୍କ ନାଶ ହେବାପାଇଁ ନରନାହା ।
ଏବେ ତୁମ୍ଭଠାକୁ ଆସିବେ ପ୍ରୀତି ପାଇଁ
ଘେନି ସଙ୍ଗତରେ ବହୁତ ଋଷିପାଇଁ ।
ଭକ୍ତିରେ ତାଙ୍କ ପାଦେ ହୋଇ ତତପର
ପୁତ୍ର ତୁଲେ ପାଣ୍ଡୁପୁତ୍ରଙ୍କୁ ପ୍ରୀତି କର ।
ଏହା ଶୁଣିଣ ଧୃତରାଷ୍ଟ୍ର ନରମଣି
ଆନନ୍ଦ ଜଳ ମଧ୍ୟେ ଭାସି ପୁଣିପୁଣି ।
ବୋଇଲେ ହେ ସଞ୍ଜୟ ଥିଲେ ମୋର ଆଖି
ହୁଅନ୍ତି ସୁଖୀ ମୁଁ କୃଷ୍ଣ ରୂପ ଦେଖି ।
ସ୍ୱରୂପରେ ଜଗତ କରିଣ ପ୍ରକାଶ
ମୋ ପାଶରେ ବସିଣ ହୋଇ ହସ ହସ ।
କହୁଥିବେ ବାଣୀ ସେ ହୃଦୟହାରିଣୀ
ନ ଘେନୁଥିବ ତାହା ଦୁର୍ଯ୍ୟୋଧନ ଶୁଣି ।
ଯାଦବମାନଙ୍କର ଅଟନ୍ତି ପ୍ରଣେତା
ଦୁଷ୍ଟମାନଙ୍କର ଅଟନ୍ତି ସେ ନିହନ୍ତା ।
ଶତ୍ରୁମାନଙ୍କର କୀରତି ଅପହାରୀ
ପାଣ୍ଡବଙ୍କର ଚିତ୍ତ ଆହାଲାଦକାରୀ ।
ଋଷିମାନଙ୍କର ସେ ହୃଦୟବିହାରୀ
ହୋଇଅଛନ୍ତି ସବୁ ଧର୍ମଶାସ୍ତ୍ର ପାରି ।
ଯତିମାନଙ୍କର ତ ଅଟନ୍ତି ଆଶ୍ରୟ
ନିରନ୍ତରେ ଗରୁଡଦେବଙ୍କର ପ୍ରିୟ ।
ପ୍ରଜାମାନଙ୍କର ସେ ସର୍ଜନ ଧ୍ୱଂସନ
ସହସ୍ର ଶିର ଦୁଇ ସହସ୍ର ନୟନ ।
ଆଦି ମଧ୍ୟ ଅନ୍ତ ତିନିରୁ ବିବର୍ଜନ
ବ୍ରହ୍ମାଦି ଦେବଙ୍କର ମସ୍ତକମଣ୍ଡନ ।
ଅସୁର ସଂହାରଣ ଦେବଙ୍କ ପାଳନ
ଏରୂପେ ନନ୍ଦସୁତ କୃଷ୍ଣ ଭଗବାନ ।
ମୋ ହୃଦ କମଳେ କରିବେ କେବେ ଘର
କହ ତ ହେ ସଞ୍ଜୟ ମନ୍ତ୍ରୀକୁଳବର ।
ଧୃତରାଷ୍ଟ୍ର ଗାନ୍ଧାରୀ ସଞ୍ଜୟ ବେଦବ୍ୟାସ
ସମ୍ବାଦରେ ଏଠାରେ ଯାନସନ୍ଧି ଶେଷ ।
ହୋଇଲା କହେ କୃଷ୍ଣସିଂହ ନରପତି
ହୃଦ-ପଦ୍ମେ ଭାବି ରାଧିକାପ୍ରାଣପତି ।



## କୁରୁଙ୍କଠାକୁ ଶ୍ରୀକୃଷ୍ଣଙ୍କର ଦୂତରୂପେ ଗମନ

ଏଥୁଅନ୍ତରେ ବଇଶମ୍ପାୟନ ଋଷି
ଜନ୍ମେଜୟ ମୁଖପଦକୁ ଚାହିଁ ହସି ।
କହିଲେ ସଞ୍ଜୟ ହସ୍ତିନା ଯିବା ଦେଖି
ଯୁଧିଷ୍ଠିର ରଜା ମନରେ ହୋଇ ସୁଖୀ ।
ବୋଇଲେ ହେ କୃଷ୍ଣ ତୁମ୍ଭେ ତ ଆମ୍ଭ ମିତ୍ର
ତୁମ୍ଭଙ୍କୁ ସେବା କରି ହୋଇବୁଁ ପବିତ୍ର ।

ଏମନ୍ତ ମନଟି କରିଛୁ ପାଞ୍ଚ ଭାଇ
ଆମ୍ଭ ଭାର ସବୁ ତ ତୁମ୍ଭଙ୍କୁ ଲାଗଇ ।
ତୁମ୍ଭର ବଳ ପାଇ ସୁଯୋଧନ ପାପ
ଠାରୁ ଭାଗ ଆଣିବୁଁ ଭାଳୁଁ ଦେଇ ତାପ ।
ଯେଉଁ ରୂପେ ବୃଷ୍ଣି ବୀରଙ୍କ ରକ୍ଷାକାରୀ
ହୋଇଛ ସେହିରୂପେ ହୁଅ ହେ ଆମ୍ଭରି ।
ଶ୍ରୀକୃଷ୍ଣ ବୋଇଲେ ରାଜନ ଯୁଧିଷ୍ଠିର
ତୁମ୍ଭର ବୋଲରୁ ମୁଁ ନୁହଇ ବାହାର ।
ଯାହା ଏବେ ବୋଲିବ ବୋଲିବି ତା ମୁହିଁ
ତା ନ ବୋଲି ଏରୂପେ କହୁଛ କିପାଇଁ ।
ଯୁଧିଷ୍ଠିର ବୋଇଲେ ଧୃତରାଷ୍ଟ୍ର ରୀତି
ସଞ୍ଜୟ କହିବାର ଜାଣିଲ ଶ୍ରୀପତି ।
ସଞ୍ଜୟ ତ ଖଟୁଆ ମିଛୁଆ ନୁହନ୍ତି
ଯାହା କହିଥିଲେ ତା କଲେ ସେ ଯୁକତି ।
ନ ଦେଇ ଭାଗ ଆଗ ଆମ୍ଭ ତୁଲେ ପ୍ରୀତି
ଧୃତରାଷ୍ଟ୍ର ରାଜା ବିଚ୍ଛେରୁଛନ୍ତି ନିତି ।
ଏକଥା ଯେତେବେଳେ ମୋ ହୃଦେ ଗୋବିନ୍ଦ
ପଡ଼ଇ ଭାବେଁ ମୁଁ ଅଟେ ସେ କେଡେ ମନ୍ଦ ।
ପଶାଖେଳ ସମୟେ ଯାହା କହିଥିଲୁ
ଭାଗ୍ୟବଳେ ଆମ୍ଭେ ତହିଁରୁ ପାରି ହେଲୁଁ ।
ଏବେ ହେଲେ ଧୃତରାଷ୍ଟ୍ର ଧର୍ମଙ୍କୁ ଚାହିଁ
କଥା କହୁ ନାହାନ୍ତି ରୁକ୍ମିଣୀ ପ୍ରାଣସାଇଁ ।
ସୁଯୋଧନ ମତରେ ରହି ପ୍ରତିଦିନ
ଆମ୍ଭଠାରେ କରିଅଛନ୍ତି ହିଂସାମନ ।
ଆମ୍ଭର ତ ଅଟନ୍ତି ଗୁରୁରୁ ସେ ଗୁରୁ
ଆଉ ଆମ୍ଭେ ତାହାଙ୍କୁ କିସ ବୋଲିପାରୁ ।
ପାଞ୍ଚୋଟି ଗ୍ରାମ ସିନା ମାଗୁଅଛି ମୁହିଁ
କୁରୁପାଣ୍ଡୁକୁଳ ଯେ ରହିବାର ପାଇଁ ।
ନୋହିଲେ ତ ତାଙ୍କ ଆମ୍ଭର ହେବ ଗୋଳ
କାଳ ନ ମାରିବ କି ଧରି କରି ବାଳ ।
ସୁଯୋଧନ ମତରେ ପାଞ୍ଚୋଟି ଗ୍ରାମକୁ
ଦେବାପରି ଲାଗୁନାହିଁ ତ ହେ ଆମ୍ଭଙ୍କୁ ।
କୁଳେ ଜାତ ହେବା ଲୋକର ହେଲେ ଲାଭ
ଜ୍ଞାନଟି ତାକୁ କୃଷ୍ଣ ହୁଅଇ ଦୁର୍ଲ୍ଲଭ ।
ଜ୍ଞାନ ନୋହିବାରୁ ସେ ଲଜ୍ଜା ମଧ୍ୟ ପାଏ
ଲଜ୍ଜା ନ ଥିବାରୁ ଧର୍ମ ଶ୍ରୀ କ୍ଷୟ ହୁଏ ।
ଧର୍ମ ଶ୍ରୀ ହତ ହେବା ଲୋକେ ଦଇବତ
ମାନେ ଛାଡନ୍ତିଟି କରିଣ ଦୁଃଖଚିତ୍ତ ।
ସେହି ସକାଶରୁ ସେ ଲୋକ ଶୀର୍ଣ୍ଣ ହୁଏ
ତାହା ପାଶରେ ନ ରହନ୍ତିଟି ଗୋଟିଏ ।
ଏତେ ଦୋଷମାନ ମୋ ଦେହରେ ତ ନାହିଁ
କେବଳ ଧନହୀନ ହୋଇଅଛି ମୁହିଁ ।
ଦେଖ ହେ କୃଷ୍ଣ ମୋତେ ଛାଡି ଜ୍ଞାତି କୁଳ
ସୁଯୋଧନଠାରେ ହୋଇଅଛନ୍ତି ଠୁଳ ।
ଦାରିଦ୍ର୍ୟଠାରୁ ପାପବସ୍ଥା ବଳି ମହୀ-
ମଣ୍ଡଳରେ ଥିଲା ପରିତ ଦିଶୁନାହିଁ ।
ଦରିଦ୍ର ହେବା ଲୋକ ପେଟେ ଖାଇ ଦେଇ
ଲୋକଙ୍କୁ ଦେଖିଲେ ସେ ମାଗେ ପୁଣି ଯାଇ ।
ସକାଳୁ ଉଠି ଦାନ୍ତ ଘସି ଭାରିଯାକୁ
ଡାକେ ଭାତ ଥିଲେ ବାଢ ମୋ ଖାଇବାକୁ ।
ଦେଖ ଭୋକେ ପେଟ ଚର୍ମ ମୋ ହୁଏ ଦଳି
କି ଖାଇଲେ ପହଣ୍ଡେ ନ ପାରିବି ଚଳି ।
ଧନ ଥିବାର ଲୋକେ ଏ ରୂପେ ନୁହନ୍ତି
ଯେତେ ତେତେ ଖାଇଲେ ତୃପତି-ନୁହନ୍ତି ।
ଧନବନ୍ତ ଲୋକେ ପାରନ୍ତି ଧର୍ମ ଅର୍ଜ୍ଜି
ଅଧନବନ୍ତେ ତାହା ଥାଆନ୍ତି ବରଜି ।
ଧନଟି ଗଲେ ଧର୍ମ ଅର୍ଥ କାମ ଯାଏ
ଆହେ କୃଷ୍ଣ କିସ ମୁଁ କହିବି ଗୁଡାଏ ।
ନିର୍ଧନ ହେଲେ ଲୋକମାନେ ଯାନ୍ତି ନାଶ
ଏଥିରେ କହିବାକୁ କଥା ଅଛି କିସ ।
ଦ୍ରବ୍ୟ ପାଇଁ ଲୋକେ ଶତ୍ରୁଙ୍କଠାରେ ରହି
ଦିନ ନେଉଥାନ୍ତି ଯେ ଲକଣ୍ଡକ ହୋଇ ।
ମରଣ ଅପେକ୍ଷା ନିର୍ଧନ ଅଟେ ବଡ
ଯାହା ଘେନି ନିତି ଭାଜଇ ଦୁଃଖେ ହାଡ ।
ଜନ୍ମରୁ ଦୁଃଖୀ ହୋଇଅଛି ଯା ଶରୀର
ପଡିଲେ ଦୁଃଖ ମଣୁଥାଏଟି ସେ ଛାର ।
ସୁଖୀଲୋକ ଯେବେଟି ଦୁଃଖକୁ ଲଭଇ
ତେବେ ସେ ମରଣରେ ସେ କଥା ଗଣଇଁ ।
ଆପଣା ଅପରାଧେ ପାଇ ଲୋକ ଦୁଃଖ
ବୋଲଇ ଦୁଃଖ ଦେଲା ଦଇବ ମୁରୁଖ
ନିର୍ଧନ ହେଲେ ଭୃତ୍ୟଗଣେ କ୍ରୋଧ ହୋଇ
ଖେଉଦାଇ ଯେ ଭାତ ବର୍ତ୍ତନ ନ ଦେଇ ।

କ୍ରୋଧ ହେଉଁ ହେଉଁ ହୁଅଇ ମୋହ ଜାତ
ଏ ସକାଶୁଁ କ୍ରୁରକର୍ମାରେ ହୁଏ ଖ୍ୟାତ ।
କ୍ରୁର କର୍ମ କରିବାରେ ତା ମତି ଯାଏ
ମୁଁ ବଡ ବୋଲିଣ ସବୁରି ଘରେ ଖାଏ ।
ଏ ପାପରୁ ତାର ନରକ ହୁଏ ମୂଳ
ମଲେ କିକଲ ବୋଲି ଭାବେ ହୃଦସ୍ଥଳ ।
ବୁଦ୍ଧି ଥିବା ଲୋକଟି ଧର୍ମଟି ଆଚରି
ସ୍ୱର୍ଗେ ବସିଭୋଗ କରଇ ଇନ୍ଦ୍ରପୁରୀ ।
ଜ୍ଞାନ ଥିବା ଲୋକକୁ ନ ଛାଡଇ ଶାସ୍ତ୍ର
ଧର୍ମଟି ହୋଇଥାଏ ତାହାର ମଇତ୍ର ।
ସେହି ଘେନି ଲଜ୍ଜା ତାର ସଙ୍ଗେ ଗୋଡାଇ
ରହିଥାଏ ଶିରୀକି ଘେନି ଲକ୍ଷ୍ମୀସାଇଁ ।
ଶ୍ରୀମନ୍ତ ହେବାଯାକ ଲୋକେ ସେ ପୁରୁଷ
ବୋଲାଉଥାଏ ଆହେ ଜାଣ ଲକ୍ଷ୍ମୀଈଶ ।
ଧାର୍ମିକ ଲୋକ ବୁଦ୍ଧି ଅଧର୍ମରେ କେବେ
ଅହେ ଶ୍ରୀକୃଷ୍ଣ ଭ୍ରମି ନ ଯାଏଟି ଲବେ ।
ଲଜ୍ଜା ଯାର ନାହିଁ ସେ ସ୍ତିରୀ ପୁରୁଷରେ
ଲେଖା ନୁହଇ ଆହେ କୃଷ୍ଣ ସେ ଦୋଷରେ
ଲଜ୍ଜାହୀନ ଲୋକର ଧର୍ମେ ଅଧିକାର
ନୁହେ କଦାଚିତେ ଜାଣ ହେ ଯଦୁବୀର ।
ଲଜ୍ଜାବନ୍ତ ଲୋକଟି ଧର୍ମକୁ ମାନନ୍ତି
ସେ ଘେନି ପୁଣ୍ୟଲୋକେ ହୁଏ ଉପସ୍ଥିତି ।
ଏହି କଥାମାନ ଜାଣଇ ମୁହିଁ ସମ୍ପତ୍ତି
ଛାଡି ନ ପାରୁଛି ହେ ଜାଣ ଶିରୀପତି ।
ରାଜ୍ୟପାଇଁ ଅବଶ୍ୟ କରିବି ଆୟୋଜନ
ମଲେ ତହିଁ ପାଇବି ଇନ୍ଦ୍ରଙ୍କର ସ୍ଥାନ ।
ପ୍ରୀତିରେ ରାଜ୍ୟ ଦେଲେ ଶୁଦ୍ଧ କରିବାର
ଜ୍ଞାତି ତୁଲେ ଲୋଡା ନାହିଁ ହେ କୃଷ୍ଣ ମୋର
ନ ଦେଲେ ରାଜ୍ୟ କରୁ ଅଙ୍ଗାର ସୁଯୋଧନ ।
ପ୍ରାଣ ନେବୁ ଆମ୍ଭେ ପ୍ରହାରି ଶରମୁନ ।
ତିନିବର୍ଣ୍ଣେ ତ ସୁଖ ବୃତ୍ତିରେ ଜୀଅନ୍ତି
କ୍ଷତ୍ରିୟେ ଯୁଦ୍ଧ ବିନା ନାହିଁ ଆନ ବୃତ୍ତି ।
ଯେଉଁ ରୂପରେ ମାଛ ଭକ୍ଷଇ ମାଛକୁ
ସେରୂପେ କ୍ଷତ୍ରିୟେ ମାରନ୍ତି କ୍ଷତ୍ରିୟଙ୍କୁ ।
ଯୁଦ୍ଧ ସକାଶରୁ ତ ଦେହ ହୁଏ ଖିନ୍ନ
ପ୍ରାଣକୁ ରଖିବାକୁ କଷ୍ଟ ହୁଏ ଜାଣ ।

ଜୟ ପରାଜୟ ଦଇବର ଅଧୀନ
ସଇନ ସଖାରୁ କି ଅଛି ପ୍ରୟୋଜନ ।
ଆପଣାର ଇଚ୍ଛାରେ କାହାରି ମରଣ
ହେଉ ତ ନାହିଁ ଆହେ ଯଦୁ କୁଳରାଣ ।
ଇଚ୍ଛାରେ ସୁଖ ଦୁଃଖ କାହାରି ନୋହୁଛି
କାଳର ବଶରେଟି ହରି ସେ ହେଉଛି ।
ଏକା ଗୋଟିକକୁ ଯେ ଶତସଂଖ୍ୟା ଲୋକ
ମାରିକରି ଭେଟାନ୍ତି ପ୍ରେତଙ୍କ ନାୟକ ।
ଗୋଟିକ ଶତସଂଖ୍ୟା ଲୋକଙ୍କୁ ମାରଇ
ଏହା ମଧ୍ୟ ଦେଖୁଥାଇଁ ହେ ଯଦୁସାଇଁ ।
ଅଶୂର ଲୋକ ବସି ମାରୁଛି ଶୂରକୁ
ଅଯଶସ୍ୱୀ ମାରୁଛି ଯଶସ୍ୱୀ ଲୋକକୁ ।
ଯୁଦ୍ଧ ଯେବେ କରନ୍ତି କ୍ରୋଧେ ଲୋକ ଦୁଇ
ତହିଁରୁ ଜଣେ ସିନା ହୁଅଇ ବିଜୟୀ ।
ଏହି ଘେନି ମନେ ପଡିଲେ ଯୁଦ୍ଧ କଥା
ଆହେ କୃଷ୍ଣ ଜାତ ହୁଅଇ ମହାବ୍ୟଥା ।
ଯୁଦ୍ଧରେ ଯେମରେ ତାହାର ପରାଜୟ
ଜୟ ସମାନ ହେ ରୁକ୍ମିଣୀ ଦେବୀ ପ୍ରିୟ ।
ଜୟ ହେବାକାଳେ ତ ମରଣକୁ ପାଏ
ଏ ଘେନି ସେ କଥା ପ୍ରଶଂସି ନ ଯୋଗାଏ ।
ଯୁଦ୍ଧ କରିଣ ପୁଅ ଭାଇଙ୍କି ମରାଇ
ଯେ ଜୀଇଁଛି ତହିଁରୁ କିଛି କାର୍ଯ୍ୟ ନାହିଁ ।
ଯୁଦ୍ଧଟି ଥିଲେ ଲାଜ ଥିବା ଲୋକେ ଯାଇଁ
ମରନ୍ତି ଅଲାଜୁକେ ପଳାନ୍ତି ପିଠିଆଇ ।
ଯୁଦ୍ଧରେ ମାରିଣ ଜିଣଇଁ ଯେଉଁ ଲୋକ
ଶତ୍ରୁ ଶେଷ ହେଲେ ସେ ହୁଏ ଦକଦକ ।
ପରାଜିତ ଲୋକଟି ନିବୃତ୍ତିରେ ପଡେ
ଜିତ ଲୋକ ଯେ ଭୟ ପ୍ରବୃତ୍ତିରେ ସଢେ ।
ଏହା ଜାଣି ବଇର ଇଚ୍ଛା ଯେ ନ କରି
ରହିଛି ସୁଖୀ ନାହିଁ କୃଷ୍ଣ ତାହାପରି ।
ଯେଉଁ ଲୋକ ଲୋକକୁ କରଇ ଉଚ୍ଛନ୍ନ
ଜୀବ ଥିଲେ ତାର ନ ଥିଲା ପରି ଜାଣ ।
ଶତ୍ରୁକୁଳେ ଯେବେ ଗୋଟିଏ ଥାଏ ରହି
ତେବେ ତ ବଇରଟି ନିବର୍ତ୍ତ ନୁହଇ ।
ଯେବେ ନିରିମୂଳ ଗୋଟିଏ କୁଳ ହୁଏ ।
ବଇରଟି ତେବେ ତା ସୁଖେ ଭାଜିଯାଏ ।

କୁରୁମାନେ ଯେବେ ନ କରିବେ ପୀରତି
ତେବେ ତାଙ୍କୁ ଯୁଦ୍ଧ କରିବା ମୋର ମତି ।
ଧର୍ମ ଓଜ ବଳ ଦେଖାଇଣ ତାହାଙ୍କୁ
କହିବା କୁରୁଙ୍କର କୁଳ ରହିବାକୁ ।
କୁକୁର ଗୋଳ କଲେ ଲାଙ୍ଗୁଳ ଦୋହଲାଇ
ଗରଜି ଆଗ ଦାନ୍ତ ଦିଅଇ ଦେଖାଇ ।
ପଛେ ସିନା କାମୋଡା କାମୋଡି ହୁଅଇ
ସାକ୍ଷାତରେ ଏହା ନୟନେ ଦେଖୁଥାଇଁ ।
ଏହିରୂପେ ଆମ୍ଭେ କୁରୁଙ୍କ ସଙ୍ଗତରେ
କହିବା କଥା ଅଛି ଧରମରେ ମତରେ ।
ନ ଘେନିବେ ଯେବେ ସେ ତେବେ ଧନୁଶର
ଧରିଣ କରିଦେବା ତାହାଙ୍କୁ ସଂହାର ।
ଧୃତରାଷ୍ଟ୍ରରାଜା ଅଟନ୍ତି ଆମ୍ଭ ତାତ
ଏଣୁ ତାଙ୍କୁ କହିବା ହୋଇଣ ବିନୀତ ।
ସମସ୍ତ ପ୍ରକାରେ ତ ସେ ଆମ୍ଭର ବନ୍ଦ୍ୟ
କାହିଁପାଇଁ ଆମ୍ଭର ହୋଇବେଟି ନିନ୍ଦ୍ୟ ।
ଜାଣୁଅଛି ପୁତ୍ର ସ୍ନେହରେ ଅନ୍ଧବୁଢା
ଆମ୍ଭ ସଙ୍ଗେ କରି କଥାରେ ଯୁଦ୍ଧବଢା ।
ତୁମ୍ଭେ ତ ତିନିଲୋକ ହୃଦୟରେ ସ୍ଥିତ
ଯେ କଥା ମନକୁ ପାଉଛି ତା କହ ତ ।
ସଂଶୟଟି ଛିଣ୍ଡାଇବାକୁ ତୁମ୍ଭ ସରି
ମନେ ଆସୁନାହିଁ ସଂସାରେ ଥିବା ପରି ।
ତୁମ୍ଭେ ସବୁବେଳେ ଆମ୍ଭର ପ୍ରିୟକାମ
ଆଚରୁଥାଅ ଆହେ ପୁରୁଷଉତ୍ତମ ।
ଯୁଧିଷ୍ଠିର ମୁଖୁଁ ଏ ରୂପେ କୃଷ୍ଣ ଶୁଣି
ବୋଇଲେ ତୁମ୍ଭେ ଆଜ୍ଞା ଦେଲେ ନରମଣି ।
ଧୃତରାଷ୍ଟ୍ର ରଜାଙ୍କଠାକୁ ଦୂତ ହୋଇ
ଯିବି ତୁମ୍ଭର କାର୍ଯ୍ୟ କରିବାର ପାଇଁ ।
ତୁମ୍ଭ ଭାଗ ରଖି ପାରିବି ଯେବେ ପ୍ରୀତି
କରି ତେବେ ମୋହର ନୋହିବ କେଉଁକୀର୍ତ୍ତି
କୁରୁ ପାଣ୍ଡୁକୁଳ ନୋହିବେ ତ ନିର୍ମୂଳ
ଏଥିରୁ ଆଉ କେଉଁ ଭାଗ୍ୟ ହେବ ଠୂଳ ।
ଯୁଧିଷ୍ଠିର ବୋଇଲେ ପ୍ରୀତି ପାଇଁ ତୁମ୍ଭେ
କୁରୁଙ୍କଠାକୁ ଯାଅ ବୋଲୁନାହୁଁ ଆମ୍ଭେ ।
ତୁମ୍ଭେ ଯେତେକ କଥା କହିବ ସଭାରେ
ନ ଘେନିବେ କୁରୁଏ ରାଇଜ ଲୋଭରେ ।

ପୁଣିତ ସୁଯୋଧନ ସବୁ ରାଜା ଗୋଟି
କରିଛି ପାଞ୍ଚିବଟି ତୁମ୍ଭର ମନ୍ଦୁଟି ।
ତୁମ୍ଭେ ସୁଖେ ସିନା ଆମ୍ଭର ସବୁ ସୁଖ
ତୁମ୍ଭ ବିନା ଆମ୍ଭେ ତ କ୍ଷଣକେ ନିରେଖ ।
ତୁମ୍ଭର ନାଶ ହେଲେ ତିନିଲୋକଶିରୀ
ଇଚ୍ଛା ମୁଁ ନ କରଇ ମନେ ଚକ୍ରଧାରୀ ।
ଶ୍ରୀକୃଷ୍ଣ ବୋଇଲେ ମୁଁ ଜାଣୁଅଛି ଏହା
ଦୁର୍ଯ୍ୟୋଧନ ଦୁଷ୍ଟ ପାଇଛି ନଷ୍ଟସାହା ।
ଗଲେ ବିଘରିବ ଅବଶ୍ୟ ସେହୁ ପାପ
ତହିଁକି ହେ କିଛି ନ କର ମନେ ତାପ ।
ସିଂହ ଆଗେ ବିଲୁଆ ନ ରହିଲା ପ୍ରାୟେ
ମୋ ଆଗେ ନ ରହିବେ ଜାଣ ହେ ରାଜାଏ।
ମୋହଠାରେ ଯେବେଟି ଆରମ୍ଭିବେ ଗୋଳ
ତେବେ ଜାଣ ସେକ୍ଷଣି ହେଲେ ମହୀପାଳ ।
ଲୋକେ ହେଲେ ନିନ୍ଦା ଦେବେଟି କୃଷ୍ଣ ଥିଲେ
ଥରେ ବା କୁରୁଙ୍କୁ ଭଙ୍ଗାଇ ନ କହିଲେ ।
ଏଥିପାଇଁକି ସିନା ଯାଉଅଛି ମୁହିଁ
ତୁମ୍ଭେ କିମ୍ପା ଚିନ୍ତା କରୁଛ ନରସାଇଁ ।
ଯୁଧିଷ୍ଠିର ବୋଇଲେ ତୁମ୍ଭର ଯେ ଉଚିତ
ହେଉଛି ତାହା କର ପ୍ରଦ୍ୟୁମନ ତାତ ।
କରିବ ଯେବେ ସୁଯୋଧନ ତୁମ୍ଭେ ଶାନ୍ତି
ତେବେ ଉଦ୍ଧାରିବେ ଭରତବଂଶ ନାତି ।
ଆମ୍ଭର ତ ମନୋରଥଟି ଜାଣ ତୁମ୍ଭେ
ତୁମ୍ଭଙ୍କୁ ବସି ଆଉ କି କହିବୁ ଆମ୍ଭେ ।
ସେ କଥା ଧର୍ମରେ ହୋଇବ ହିତପଥ୍ୟ
ତାହା ତୁମ୍ଭେ କହିବ ତାଙ୍କୁ କରି ତଥ୍ୟ ।
ଶ୍ରୀକୃଷ୍ଣ ବୋଇଲେ ହେ ନୃପ ଯୁଧିଷ୍ଠିର
ଜାଣିଲି ସବୁ ଅଭିପ୍ରାୟ ମୁଁ ତୁମ୍ଭର ।
ସଞ୍ଜୟ କହିବାରୁ ଆଗୁଁ ତ ଜାଣିଛି
ଏଥିକି ଘହିଁଣ କହିବି ମୁଁ ଯାଉଛି ।
ତୁମ୍ଭ ବୁଦ୍ଧି ଧର୍ମରେ ହୋଇଅଛି ସ୍ଥିତ
ତାଙ୍କ ବୁଦ୍ଧି ବିରୋଧ କଥା କରେ ଜାତ ।
ନ କରି ଯୁଦ୍ଧ ଯେବେ କୁରୁ ରାଜ୍ୟ ଦେବେ
ସବୁ ଧର୍ମ ଆମ୍ଭର ଅଛି ଜାଣ ତେବେ ।
କ୍ଷତ୍ରିୟ ଯେବେ ଭିକ୍ଷା କରିଣ ଜୀଅଇ
ଏଥିରୁ ତାର ଆଉ ଅଭାଗ୍ୟତ ନାହିଁ ।

କ୍ଷତ୍ରିୟ ଯୁଦ୍ଧେ ମଲେ ଲଭେ ସ୍ୱର୍ଗସ୍ଥାନ
ଜିଣିଲେ ମହୀ ସୁଖେ ହୁଏ ଭୋଗ ଜାଣ ।
ତୁମ୍ଭେ ତ ହୋଇଛ କ୍ଷତ୍ରିୟ କୁଳେ ଜାତ
ବିକ୍ରମ କରି କର ଶତ୍ରୁକୁଳ ହତ ।
ଏ ନୋହିଲେ ରାଜ୍ୟ ତୁମ୍ଭଙ୍କୁ ସୁଯୋଧନ
ଭଲରେ ଦେଲା ପରି ପାଉନାହିଁ ମନ ।
ଭୀଷ୍ମ ଦ୍ରୋଣ କୃପଙ୍କ ବାହୁ ସାହା ପାଇ
ସୁଯୋଧନ ତୁମ୍ଭଙ୍କୁ ଲେଖା କରୁନାହିଁ ।
ଯେତିକି ପ୍ରୀତି ତୁମ୍ଭେ କରୁଥିବ ଇଚ୍ଛା
ତେତିକି କରୁଥିବେ ତୁମ୍ଭଙ୍କୁ ସେ କକ୍ଷା ।
ଭୀଷ୍ମଦ୍ରୋଣ ଆଦି ନୟନେ ଚାହିଁ ଥିଲେ
ତୁମ୍ଭଙ୍କୁ ସୁଯୋଧନ ବନେ ଖେଦିଦେଲେ ।
ତେବେ ହେଲେ ସେମାନେ ସୁଯୋଧନ ହିତ
ଛାଡୁ ନାହାନ୍ତି ହେ କୁନ୍ତିଙ୍କ ଜ୍ୟେଷ୍ଠସୁତ ।
ସୁଯୋଧନ ମୁଖରେ କିଛି ଲାଜ ନାହିଁ
ତାକୁ ବୋଲିବାର ଆମ୍ଭର ନ ଯୋଗାଇ ।
ତୁମ୍ଭେ ଅବା କି ରୂପେ ସହିତ ତା ଦୋଷ
ମୋହର ତ ବଳି ପଡୁଅଛି ଯେ ରୋଷ ।
କଟୁ ବାକ୍ୟ ଶରେ ତୁମ୍ଭର ହୃଦ ଗୋଳି
ବସିଛି ଖାଇବ ହସ୍ତିନା ରାଜ୍ୟ ଭାଳି ।
ସଭାରେ ଦୁଃଶାସନ ଉଠିକରି କୋପେ
ଗାଈ ବୋଲି ତୁମ୍ଭଙ୍କୁ ଗାଳି ଦେଲା ଆପେ ।
ଭୀଷ୍ମ ଦ୍ରୋଣ ବୁଢ଼ା ଯୋଡ଼ାଏ ଥାଇକରି
ନ କହିଲେ କଥା ଯେ ଉଚିତ ବିଚାରି ।
ତୁମ୍ଭେ ଧର୍ମପାଶେ ତ ବନ୍ଧା ହୋଇଥିଲ
ଏଣୁ ନିବର୍ତ୍ତାଇଣ ଭାଇଙ୍କି ରଖିଲ ।
ଭାଇ ଯେ ଭାରିଯାଙ୍କୁ ଘେନିଣ ସଙ୍ଗତେ
ବାହାରି ତ ଆସିଲ ବନକୁ ତୁରିତେ ।
ସଭା ଲୋକେ ଦୁର୍ଯ୍ୟୋଧନକୁ ନିନ୍ଦା କରି
ତୁମ୍ଭର ସଙ୍ଗେ ଗୋଡ଼ାଇଲେ ସ୍ନେହ ଧରି ।
ସେହିଦିନରୁ ସୁଯୋଧନର ମରଣ
ଖଞ୍ଜି ଲାଣି ରାଜନ ଦଇବଟି ଜାଣ ।
ଧର୍ମକୁ ଛାଡ଼ିଛି ସେ ପାପୀ ହୋଇକୋପୀ
ଜାଣୁଛି ମରିବ ସେ ହୋଇଣ ସନ୍ତାପୀ ।
ସାପ ବାଘ ଭାଲୁଙ୍କୁ କରଇ ଯେ ନାଶ
ତାହାର କି ଊଣା ହୋଇଛି ଆୟୁ ଯଶ ।

ତୁମ୍ଭେ ଯେବେଟି ସୁଯୋଧନକୁ ମାରିବ
ଜାଣୁଛି ଏ ମହୀରେ ପ୍ରଶଂସା ପାଇବ ।
ଧୃତରାଷ୍ଟ୍ର ଭୀଷ୍ମଙ୍କୁ ନମ୍ର ହୋଇ ଯାହା
କହିବ ବୋଲୁଛ ଏ ଭଲ ନରନାହା ।
ଭ୍ରମିଅଛନ୍ତି ସୁଯୋଧନର କଥାରେ
ନୃପେ ଯା ଭାଙ୍ଗି ଦେବି ତା ମୋ କହିବାରେ
ତୁମ୍ଭର ଗୁଣଯାକ କଥାରେ ମୁଁ ବାଢ଼ି
ଦେବି ସୁଯୋଧନର ଅବିଗୁଣ କାଢ଼ି ।
ମୋ କହିବା କଥାରେ ନୃପେଯାଇ ପ୍ରତେ
ଦୋଷ ନାହିଁ ତୁମ୍ଭର ବୋଲିବେ ସମସ୍ତେ ।
ସବୁ ଲୋକଙ୍କରେ କରାଇ ତାଙ୍କୁ ନିନ୍ଦା
ବଢ଼ାଇବି ରାଜନ ତୁମ୍ଭର ମୁଁ ବନ୍ଦା ।
ମୋ କଥାରେ ସୁଯୋଧନଙ୍କୁ ଲୋକେ ଛାଡ଼ି
ଯିବେ ତୁମ୍ଭେ ସୁଖେ ମାରିବ ଘଉଡ଼ି ।
ଏତେକ କରି ମୁହିଁ ଆସିବି ତୁମ୍ଭ ପାଶ
ବସିଥାଅ ତୁମ୍ଭେ ଧରିଣ କରେ ନିଶ ।
ଯୁଦ୍ଧ ବିନା ଆଉ କଥାରେ ମୋର ମତି
ହେଉନାହିଁ ଆହେ ପାଣ୍ଡବକୁଳପତି ।
ସାଗୁଣାଙ୍କ ତୁଲେ ବିଲୁଆ ହୋଇ ଗୋଟି
ରାତି ହେଲେ ଡକା ପଡ଼ନ୍ତି ମେଳି ପାଟି ।
ଏହି ସଙ୍କେତରୁ ଜାଣୁଛି କୁରୁକୁଳ-
ଯାକ ହୋଇଯିବଟି ଯୁଦ୍ଧରେ ନିର୍ମୂଳ ।
ଯୁଦ୍ଧରେ ସାମଗିରି ରଖାଅ ଭିଆଇ
ତୁନି ହୋଇ ବସିବା କାଳ ଏ ନୁହଇ ।
ଭୀମ ବୋଇଲେ ଆହେ ଜଗତ କାରଣ
ଯାଇଅଛ ତ ତୁମ୍ଭେ ହସ୍ତିନା ଭୁବନ ।
କୁରୁଙ୍କର ଆମ୍ଭର କରାଇବ ପ୍ରୀତି
ନୋହିଲେ ପାଇବଟି ଲୋକରେ ଅକୀର୍ତ୍ତି ।
କ୍ରୋଧ ସୁଯୋଧନ ରଜାର ଥାଏ ଦେହେ
ତାହାକୁ ଉଗ୍ର ନ କହିବଟି କେବେହେଁ ।
ଐଶ୍ୱର୍ଯ୍ୟମଦରେତ ହୋଇଅଛି ମତ୍ତ
ତେଣୁ ଜ୍ଞାନ ହରିଅଛି ତାହାକୁ ଚିତ୍ତ
ତାର ତୁଲରେ ପ୍ରୀତି ହେବାର ଦୁଷ୍କର
କଥା ମୁଁ ଜାଣୁଅଛି ଆହେ ଚକ୍ରଧର ।
ମିଥ୍ୟା କଥାରେ ତ ସେ ଭୁଲୁଥାଏ ନିତି
କେହି ଭଲ କଥାରେ ବଳାଇବ ମତି ।

ସୁଯୋଧନର ବଳ ପରାକ୍ରମ ତୁମ୍ଭେ
ଜାଣ ତାହା କିସ ବା କହିବୁଟି ଆମ୍ଭେ ।
ସୁଯୋଧନ କ୍ରୋଧର ଭରତଙ୍କ ବଂଶ
ଯାକ ମୁଁ ଜାଣଉଅଛି ଯିବେ ସିନା ନାଶ ।
ଉଦାବର୍ତ୍ତ ଜନମେଜୟ ରୁଷଦ୍ଧକ
ବହୁଳ ବସୁ ବାହୁ ଧଉତମୂଳକ ।
ହୟଗ୍ରୀବ ବରୟୁ ଅର୍କଜ ବିଗାହନ
ପୁରୁରବା ସହଜ ଧାରଣ ସମନ ।
ଅଜବିନ୍ଦୁ ଯେ ବୃଷଧ୍ୱଜ ଆଦି ନୃପ
ନାଶଗଲେ କର ଜ୍ଞାତିଙ୍କର ସନ୍ତାପ ।
ସୁଯୋଧନ ଯେ କୁଳଅଙ୍ଗାର ଅଟଇ
ମୃଦୁ ବନା ନିଷ୍ଠୁରେ ସାଧ୍ୟ ସେ ନୁହଇ ।
ବଂଶ ନାଶ ଯିବା ପାଇଁକି ସୁଯୋଧନ
ନୃପର ଆମ୍ଭେମାନେ ହୋଇବୁଁ ଅଧୀନ ।
ସୁଯୋଧନ ପଛକେ ରାଜା ହୋଇଥାଉ
କେବଳ ଭାତ ଲୁଗା ଆମ୍ଭମାନଙ୍କୁ ସେ ଦେଉ
ଭୀଷ୍ମେ ମଧ୍ୟ ମୋର ଏରୂପେ କହିବାର
ବତାଇ କହିବଟି ନ କରି ଅନ୍ତର ।
ସୁଯୋଧନ ଶାନ୍ତିରୁ କୁରୁଙ୍କର ବୃଦ୍ଧି
କରାଇବ ବିହି ହେଉଛି ମୋର ବୁଦ୍ଧି ।
ଯୁଧିଷ୍ଠିର ଅର୍ଜୁନ ମୋର ଯୁଦ୍ଧମତ
ନୁହଇ କଦାଚିତ ଜାଣ ହେ ଅଚ୍ୟୁତ ।
ଭୀମଙ୍କର ଏହି ବଚନ ଶୁଣି ହରି
ବିଚାରିଲେ ହୃଦପଦ୍ମରେ ହସିକରି ।
ଏତେ ଦିନଯାଏ ତ ଏରୂପରେ ଭୀମ
ନ ଥିଲେ ବହି କୁରୁମାନଙ୍କରେ ପ୍ରେମ ।
ଆଜ କିପାଁ ଏରୂପେ କହିଲେ ପ୍ରୀତିଚିତ୍ତେ
କି କାରଣ ଅଛି ଗୋଚର ନୋହେ ମୋତେ
ଏହା ଭାବି ବୋଇଲେ ଆହେ ଭୀମସେନ
ସବୁଦିନେ କୁରୁଙ୍କ ନିଧନରେ ମନ ।
କରି ରାତି ତୁମ୍ଭେ ନ ଯାଉ ଥାଅ ନିଦ
ଏବେ କିପାଁ ତାଙ୍କୁ କହୁଛ କହ ମୋଦ
ତୁମ୍ଭ କ୍ରୋଧ ନ ଜାଣଇ ଲୋକେ ବୋଲୁଥାନ୍ତି
ବାଇ ହୋଇଲେ ଅବା ଭୀମ ମହାମତି ।
କୁରୁଙ୍କର ଘରେ ତ ବଢିଥାଏ କୋହ
ଏଣୁ ତୁମ୍ଭେ କାହାରି ପାଖରେ ନ ରହ ।
ଥରେ ଥରେ ଆଣ୍ଠୁ ଭିତରେ ମୁଣ୍ଡ ଦେଇ
ରହିଥାଅ କାହାକୁ କଥା ନ କହି ।
ରଙ୍ଗିମାରେ ନୟନ ଯାଉଥାଏ ଫାଟି
ରହୁଁଥାଅ ଓଷ୍ଠ କାମୁଡି ଭିଡି ପାଟି ।
ଏରୂପେ କୁରୁଙ୍କରଠାରେ ଆଚରଣ
କରୁଥାଅ ଛାଡିଲ କହ ଅବିଗୁଣ ।
ସୂର୍ଯ୍ୟ ତ ଦେଖୁଛ ଉଦୟ ଯେଉଁ ରୂପେ
ହେଉଛନ୍ତି ଅସ୍ତ ହୁଅନ୍ତି ସେହିରୂପେ ।
ତୁମ୍ଭର ସେହିରୂପେ ନୋହୁଛି ଆଚରଣ
ଏଣୁ ଜାଣୁଅଛି ମୁଁ ଦଇବ ବାରଣ ।
ପୂର୍ବେ କହୁଥିଲା ଗଦାରେ ସୁଯୋଧନ
ପ୍ରାଣ ନେବି ତା ତୁଲେ କଲେ ଆୟୋଧନ ।
ଏବେ ତ ବୋଲୁଅଛ ପ୍ରୀତି ତାର ସାଥ
କଲେ ସବୁରୂପେ ହୋଇବ ପୁରୁଷାର୍ଥ ।
ଯୁଦ୍ଧକାଳ ହୋଇବାରୁ କି ଉପସ୍ଥିତ
ହେଉଛି କି ହୃଦ ମଧ୍ୟରେ ଭୟ ଜାତ ।
ନୋହିଲେ ବା ସ୍ୱପନେ ଦେଖିଲି ବିନାଶ
ଆପଣାର ତାହାକୁ କର ହେ ପ୍ରକାଶ ।
ପୁଂସତ୍ୱ ଥାଉଁ ଅପୁଂସତ୍ୱ ଲୋକ ପରି
କହିବ କେ ନାହିଁ ମହୀରେ ତୁମ୍ଭ ପରି ।
ତୁମ୍ଭ ହୃଦ ଶିମୁଳି ତୁଳାରୁ ଉଶ୍ୱାସ
ହେବାରୁ ଭୟ-ବାତେ ବୁଲେ କି ଦଶଦିଶ ।
କରିଥିଲେ ଆଜନ୍ମ କୀର୍ତ୍ତି ଯେତେ ବାଗେ
ଏ ଭୟ ବଚନେ ସେ ନାଶ ଯିବ ବେଗେ ।
ଉଠ ଏବେ କୁଳ ବଳକୁ ଅନୁରୂପ
କରମ କରିବାକୁ ଭୀମ ବହି କୋପ ।
କ୍ଷତ୍ରିୟ ଯେବେ ତେଜ ଓଜକୁ ଛାଡଇ
ଜୀଇଁଥିଲେ ଜାଣଟି ମଲାପରି ସେହି ।
ସୁଯୋଧନ ରାଜାକୁ ହୋଇ ଲକସ୍ତକ
ପୋଷିଲେ ଉଦର ସେ ଅଟଇ ନରକ ।
କୃଷ୍ଣଙ୍କର ଶୁଣି ଏ ଭଙ୍ଗିର ବଚନ
କ୍ରୋଧରେ କହିଲେ କୃଷ୍ଣଙ୍କୁ ଭୀମସେନ ।
ସତ୍ୟ ପରାକ୍ରମ ତ ବହେ ମୋର ଦେହ
ମୋତେ କିପାଁ ଗୋବିନ୍ଦ ଏରୂପରେ କହ
ପିଲାଦିନରୁ ସଙ୍ଗ ହୋଇ ଚକ୍ରପାଣି
ମୋ ମନ ଆଜିଯାଏ ପାରି ନାହିଁ ଜାଣି ।

ଯେବେ ମୋ ମନ ଜାଣି ଥାଆନ୍ତିଟି ଆପେ
ତେବେ କହିବାର କି ପଡନ୍ତା ଏରୂପେ ।
ଆହେ କୃଷ୍ଣ ଏପରି କଥା ମୁଁ ବଚନେ
କାହାଠାରୁ ଶୁଣି ନାହିଁଟି ଦିନେ କାନେ ।
ମୋହ ଇଚ୍ଛାରେ କହୁଅଛି ମୋ ପ୍ରଶଂସା
ସମସ୍ତଙ୍କୁ ଦେଇ ପାରଇ ଦୁଃଖଦଶା ।
ମୋତେ ଦୁଃଖ ଦେବାକୁ ଏ ମହୀରେ ବୀର
ଦିଶୁନାହିଁ ଥିବା ପରି ହେ ଚକ୍ରଧର ।
ମନକଲେ ମହୀର ଲୋକଯାକ ମୁହିଁ
ମାରିଦେବି କିଛି ତ ଶ୍ରମ ହେବ ନାହିଁ ।
ମୋ ବାହୁ ମଧ୍ୟକୁ ଆସିବ ଯେଉଁ ବୀର
ଯମ ପାଞ୍ଜି ପୋଛି ସେକ୍ଷଣି ଦେବ ତାର ।
ମୋ ତୁଲରେ ବଇର କଲେ ଶଚୀପତି
ବସିବେଟି ଯାଇ ସେ ଯମଙ୍କର କତି ।
ସୁଯୋଧନ ଆଣିଛି ଯେତେ ନୃପକୁଳ
ଦେଖିବ ମରିବେ ସେ ପାଇଲେ ମୋ ବଳ ।
ଯେବେ ମୋ ବଳ ତୁମ୍ଭେ ଜାରି ନାହିଁ ଯୁଦ୍ଧ
କାଳରେ କରାଇବି ତୁମ୍ଭଙ୍କୁ ତା ବୋଧ ।
ହାତୀ ଘୋଡା ସିପାଇ ପାଇକ ମହାରଥି
ମାନଙ୍କ ହୃଦୟ ଦେବି ମୁଁ ବଳେ ମନ୍ଥି ।
ତୁମ୍ଭେ ତ ଯୁଦ୍ଧକାଳେ ମୋ ପାଖରେ ଥିବ
ଏ କଥାମାନ ସାକ୍ଷାତରେ ତ ଦେଖିବ ।
ତିନିଲୋକ ଯୁଦ୍ଧ କଲେ ହୋଇଣ ଗୋଟି
ତାଙ୍କୁ ମନ କଲେ ମୁଁ ଯୋଟି ପାରଇଁଟି ।
ସୁଯୋଧନ ସକାଶୁ ମୋର ହୃଦେ ଭୟ
ହୋଇବ କାହିଁକି ହେ କହ ତ ଉଦୟ ।
ଭରତ ବଂଶ ନାଶ ପାଇଁ ମୁଁ ବିକଳେ
ବୋଇଲି ତା ତୁଲରେ ପ୍ରୀତି କର କଳେ ।
ଏଥିପାଇଁ କି ଯେବେ ମୋ ବଳ ଦୁର୍ବଳ
ଦିଶିଲା ତୁମ୍ଭେ ତେବେ ଆରମ୍ଭ କର ଗୋଳ
ତେତେବେଳେ ହରି ଦେଖିବ ମୋ ବଳକୁ
ଏତେବେଳେ କିସ ମୁଁ କହିବି ତୁମ୍ଭଙ୍କୁ ।
ଶ୍ରୀକୃଷ୍ଣ ବୋଇଲେ ନ ବଳ ଭୀମସେନ
ବୁଝୁଥିଲି ସିନା ରୂପେ କହି ମନ ।
ତୁମ୍ଭର ବଳ ପରାକ୍ରମ ମୁଁ ଜାଣଇଁ
ତୁମ୍ଭଙ୍କୁ ତ ପରାଭବ ମୁଁ କରି ନାହିଁ ।

ଯେଉଁ ରୂପେ ବଳ କହିଲ ବଚନରେ
ତହିଁକି ଶତେଗୁଣେ ସମ୍ଭବେ ତୁମ୍ଭରେ ।
କୁଳକୁ ଅନୁରୂପ ତୁମ୍ଭ ପରାକ୍ରମ
ହୋଇଅଛି ମୁହିଁ ହେ ଜାଣୁଅଛି ଭୀମ ।
ଦଇବ ମାନୁଷରେ ବଡ କେ ଅଟଇ
ଆଜିଯାଏ କାହାକୁ ଗୋଚର ହୋଇ ନାହିଁ ।
ପୁରୁଷକାର କଲେ ଯଥା ପାଏ ଯଶ
ସେରୂପେ ସେ ଘେନି ଯାଉଛି ଲୋକ ନାଶ ।
ମନୁଷ୍ୟେ ବିଗ୍ରରିବା କଥା ବିହି-ବାତ
ଉଡାଇ ଘେନିଯାଏ ଯହିଁ ହୋଏ ଚିତ୍ତ ।
ପୌରୁଷବଳେ ଯେଉଁ କର୍ମ ହୋଇଥାଏ
ଦଇବବଳେ ପୁଣି ସେହି ନାଶଯାଏ ।
ଶୀତ ଉଷ୍ଣ ବରଷା ଦଇବର କୃତ୍ୟ
ଦେଖୁଥାଇ ହୁଏ ପୁରୁଷକର୍ମେ ହତ ।
ପଉରୁଷ ଦଇବ ଦୁହିଁଯାକ ମିଶି
ଯେ କଥା ହୁଅଇ ସେ ହୁଏ ଅବିନାଶୀ ।
ଦଇବେ ପଉରୁଷେ ନ ପାଇଲେ ଫଳ
ତେବେ ନ ବୋଲିବ ସେ ହୋଇଲା ବିଫଳ ।
ଶତ୍ରୁ ତୁଲେ ଯୁଝି ଏକା ଯେ ଜୟ ଲୋଡା
କରେ ଜାଣିବଟି ତାହାର ନାହିଁ ବ୍ରୀଡା ।
ଧୃତରାଷ୍ଟ୍ର ପାଶକୁ କାଲି ଯାଇ ମୁହିଁ
ତୁମ୍ଭର ପ୍ରୀତି ପାଇଁ ଯତ୍ନ କରିବଇଁ ।
ନ ଘେନନ୍ତୁ ଘେନନ୍ତୁ ତାଙ୍କର ଆୟତ୍ତ
କହିବି ତ ତୁମ୍ଭଙ୍କୁ ଦେଖାଇ ଦୃଷ୍ଟାନ୍ତ ।
ମୋହ ଆସିବା ଯାଏ ଥାଅ ଦୁଃଖ ସହି
ତଦନ୍ତେ ଯୁଝିବ ପାଣ୍ଡବ ପାଞ୍ଚଭାଇ ।
ଅର୍ଜ୍ଜୁନ ତୁମ୍ଭେ ଆମ୍ଭେ ହେବା ଯେବେ କ୍ରୋଧ
ତେବେ ହେଲାଟି ଜାଣ କୁରୁଙ୍କର ବଧ ।
ଅରଜୁନ ମନରେ କରିଛି ସାରଥି
ମୋତେ କରି ରଥେ ମାରିବ କୁରୁରଥୀ ।
ଏହି ଘେନି ମୁହିଁ ଛାଡିବି ଧନୁଶର
ବାହିବା ଘୋଡା ବସି ରଥେ ଅର୍ଜ୍ଜୁନର ।
ତୁମ୍ଭ ତେଜ ବଢାଇବାକୁ ମୁଁ ନିଷ୍ଠୁର
କରି ତୁମ୍ଭ ଆଗରେ କହିଲି ଉତ୍ତର ।
ଅର୍ଜ୍ଜୁନ ଏହା ଶୁଣି ହୋଇ ହସ ହସ
ବୋଇଲେ ପୁଣ ଆହେ କୃଷ୍ଣ ହୃଷୀକେଶ ।

ସମ୍ବାଦ ଯୁଧିଷ୍ଠିର ଭୀମର ତୁମର
ବସି ଶୁଣୁଅଛି ମୁଁ ମନ କରି ଧୀର ।
ଲୋଭରୁ ସୁଯୋଧନ ରାଜ୍ୟ ତ ନ ଦେବ
ଏଥିପାଇଁ ସିନା ବୋଲୁଛ ଯୁଦ୍ଧ ହେବ ।
ପୁରୁଷ ପରାକ୍ରମ ଦୈବ କଲା କଥା
ଦେଖୁଥାଇଁ ହୋଇ ଯାଉଛି ତ ଅନ୍ୟଥା ।
କୁରୁ ପାଣ୍ଡୁଙ୍କର ଯେଉଁ ରୂପେ ପୀରତି
ହୋଇବ ସେହି ରୂପେ କର ହେ ଶ୍ରୀପତି ।
ପଡିଲେ ଏଥୁଁ ବଳି ଦେଖାଇ ବିକ୍ରମ
କରିବା ତାଙ୍କ ତୁଲେ ଯାଇଣ ସଂଗ୍ରାମ ।
ତାଙ୍କ କଥା ବୁଝିଲା ପରେ ତୁମ୍ଭେ ଯାହା
ବୋଲିଣ ଆମ୍ଭେ ତ କରିବୁ ନିଶ୍ଚେ ତାହା ।
ଦୁଷ୍ଟଆତ୍ମା ସୁଯୋଧନକୁ ତ ମାଇଲେ
ମହୀତଳେ ଯଶ ପାଇବା ଆମ୍ଭେ ଭଲେ ।
ଆମ୍ଭମାନଙ୍କରେ ଅରଜି ଅପରାଧ
ବିଷ ଇଚ୍ଛା ସୁଖେ ଖାଉଛି ସେ ଦୁର୍ବୋଧ ।
ଜୁଆଖେଳ ବଳ କରି ସେ ରାଜ୍ୟ ହରି
ବୋଲାଉଛି ଦେଖ ହସ୍ତିନା ଦଣ୍ଡଧାରୀ ।
ତାହା ଦେହରେ ଜୁଆବିତ୍ତ-ସନ୍ନିପାତ
ଘୋଟି କରାଉଛି ତା ପ୍ରାଣ କଣ୍ଠଗତ ।
ପ୍ରୀତିରେ କଲେ ବା ବଳରେ ରାଜ୍ୟ ଆଣି
କରାଅ ଆମ୍ଭଙ୍କୁ ହେ ଭୋଗ ଚକ୍ରପାଣି ।
ଯେବେ ହେ ମନକୁ ପାଉଛି ତାଙ୍କ ନାଶ
ତେବେ ଆଉ ନ ଯାଅ ରହ ପୀତବାସ ।
ଦ୍ରୌପଦୀଙ୍କ କ୍ଳେଶ-ଅନଳ ମୋ ହୃଦୟ
ଆଜି ପୋଡୁଅଛି ହେ ଦେବକୀ ତନୟ ।
ମଲାଲୋକ ତୁଣ୍ଡରେ ଦେଲେ ସର ପଣା
ଯେଉଁରୂପେ ନ ପିଏ ନୋହିବାରୁ ଜଣା ।
ସେରୂପେ ତ ହୋଇଛି ଧୃତରାଷ୍ଟ୍ରସୁତ
ଜାଣେ ନ ଘେନିବ କହିଲେ ତୁମ୍ଭେ ହିତ ।
ଶ୍ରୀକୃଷ୍ଣ ବୋଇଲେ ମୁଁ ଜାଣୁଛି ଅର୍ଜୁନ
କହିଲେ ନ ଘେନିବ ରାଜା ସୁଯୋଧନ ।
ତେବେ ହେଲେ ତୁମ୍ଭେ ତାଙ୍କର ସ୍ନେହ ଭାବି
କୁରୁଙ୍କଠାକୁ ଥରେ ଇଚ୍ଛା ଅଛି ଯିବି ।
ପୁରୁଷକୃତ୍ୟ କରୁ କରୁ ବସି ଆମ୍ଭେ
ଦଇବେ ନୋହିଲେ ଯୁଝିବେ ଯାଇ ତୁମ୍ଭେ ।

ସୁଯୋଧନ ଧର୍ମର ଆଚରକୁ ଛାଡି
ଶୁଣୁଥାଇଁ ଅଧର୍ମେ ଅଛି ହରଘଡି ।
ଶକୁନି ଦୁଃଶାସନ କର୍ଣ୍ଣ ମନ୍ତ୍ରଣାରେ
ନ ଲେଖୁଛି ତୁମ୍ଭଙ୍କୁ ବୀରଗଣନାରେ ।
ଏ ସକାଶୁଁ ଜାଣୁଛି ନ ମାଇଲେ ତାଙ୍କୁ
ରାଜ୍ୟ ପରାପତ ନୋହିବଟି ତୁମ୍ଭଙ୍କୁ ।
ଯୁଧିଷ୍ଠିର ଯେତେ ବୋଇଲେ କହିବାକୁ
କହିଲେ ନ ଘେନିବ କେବେ ସେ କଥାକୁ ।
ଏଣୁ ମୁଁ କହୁଅଛି ତା କଥାକୁ ମତେ
ଯାହା ଦିଶିବ ତାହା କହିବି ନିରତେ ।
ସେ ତ ତୁମ୍ଭଠାରେ ଆଜନ୍ମ ହୋଇ ଦୋଷୀ
ତୁମ୍ଭ ନାଶ ବିଚାରୁଅଛି ଅହର୍ନିଶ ।
ତୁମ୍ଭ ଆମ୍ଭ ମନକୁ ଫଟାଇବା ପାଇଁ
ଯୋଟାଇ କଥା ମୋତେ ଶିଖାଏ ସେ ଯାଇ ।
ଯୁଧିଷ୍ଠିର ଯାହା କହିଲେ କହିବାକୁ
ଲାଜ ମାଡୁ ଅଛି ତା ମୋତେ ବୋଲିବାକୁ
ଗୋଗ୍ରହରେ ମଧ୍ୟ ଭୀଷ୍ମ ଯେ ଦ୍ରୋଣ କହି
ନିବର୍ତ୍ତାଇ ନ ପାରି ଥିଲେ ତୁନି ହୋଇ ।
ଯୁଧିଷ୍ଠିରଙ୍କର କହିବା କଥା କହିଁ
ଥରେ ମୁଁ ତାଙ୍କ କଥା ବୁଝି ଆସେ ଯାଇଁ ।
ତହୁଁଟି ନକୁଳ ବୋଇଲେ ତିନିଭାଇ
କହିବାରୁ ଜାଣିଲ ନ ହେ ଯଦୁ ସାଇଁ ।
ଆପଣ ଯେଉଁ ରୂପେ କହିବା ହୋଇଲେ
ତାହା ମଧ୍ୟ ମୁହିଁଟି ଜାଣୁଅଛି ଭଲେ ।
ବର୍ତ୍ତମାନ କାଳକୁ ହେବ ଯେ ଉଚିତ
ତାହା ଏବେ କର ହେ ଯାଇଣ ଅଚ୍ୟୁତ ।
ଜଣ ଜଣକରେ ତ ମତ ଟିଏ ଟିଏ
ସମ୍ପାଦି କହୁଛନ୍ତି ଫୁଲାଇଣ କାୟେ ।
ତୁମ୍ଭକୁ ତ ସମସ୍ତ ମତରେ ଯେ ସାର
ଗୋଚର ହୋଇଅଛି ତାହାକୁ ଆଚର ।
ବନବାସ ସରିଲେ ନେବ ବୋଲି ରାଜ୍ୟ
ବୋଲିଥିଲା ଆମ୍ଭଙ୍କୁ ସୁଯୋଧନରାଜ ।
ଏବେଟି ବନବାସ ସରିଲାରୁ ଆମ୍ଭେ
ନ ଦେବି ବୋଲୁଅଛି ଶୁଣୁଛ ତ ତୁମ୍ଭେ ।
ଆମ୍ଭେ ତ ଅଛୁ ସାତ ଅକ୍ଷୌହିଣୀ ବଳ
ଘେନି କରିବାକୁ ତାଙ୍କ ତୁଲରେ ଗୋଳ ।

ତୁମ୍ଭ ଆମ୍ଭ ତୁଲରେ ଏ ମହୀରେ କେହି
ଯୁଦ୍ଧେ ରହିବାକୁ ତ ମୋତେ ଦିଶୁ ନାହିଁ ।
ଏବେ ହେ ତୁମ୍ଭେ ସୁଯୋଧନଠାକୁ ଯାଅ
ସାମ ଓଜ ଯେ ବଳ ବିହିଣ ବତାଅ ।
ତୁମ୍ଭେ ଗଲାଉତାରୁ ଯୁଧିଷ୍ଠିରଙ୍କର
କେଉଁ କଥା ନୋହିବ ଆହେ ଚକ୍ରଧର ।
ବିଦୁର ଭୀଷ୍ମ ଦ୍ରୋଣ ବାହ୍ଲିକ ମହାରଥା
ଛନ୍ତି ଜାଣିମାର ଘେନିବେ ତୁମ୍ଭ କଥା ।
ସୁଯୋଧନ ରାଜାକୁ କହିବ ବୁଝାଇ
ସେ ତାଙ୍କ କଥା କରି ନ ପାରିବ ନାହିଁ ।
ବିଦୁର ବସିଥିବେ ତୁମ୍ଭେ କହୁଥିବ
ଅଜ୍ଞାନୀ ଶୁଣିଲେ ତା ଜ୍ଞାନକୁ ପାଇବ ।
ସହଦେବ କହିଲେ କି କହ ନକୁଳ
କୃଷ୍ଣଙ୍କୁ ବୋଲ ଗୋଳ କରନ୍ତୁ ସେ ମୂଳ ।
କୁରୁଙ୍କର ପ୍ରୀତିରେ ଇଚ୍ଛା ଥିଲେ ମତି
ହେଉଛି ମୋର ତାଙ୍କୁ ଦେବାକୁ ବିପତ୍ତି ।
ଦ୍ରୌପଦିଙ୍କି ସଭାରେ ଛିଡା କଲା ଦିନୁଁ
ମୋର ହୃଦରେ ପୁରି ରହିଅଛି ମନ୍ୟୁ ।
ତାହା ଛାଡିଣ ନ ପାରିବି ସୁଯୋଧନ
ନୃପର ରଣେ ମୁହିଁ ନ ନେଲେ ଜୀବନ ।
ଭୀମ ଅରଜୁନ ରହିଲେ ଧର୍ମ ମାନି
କୁରୁଙ୍କ ତୁଲେ ମୁଁ ଯୁଝିବି ଶସ୍ତ୍ର ଘେନି ।
ସାତ୍ୟକି ସେହିକାଳେ କହିଲେ ଗୋବିନ୍ଦ
ସହଦେବ କଥା ବଢାଏ ମୋ ଆନନ୍ଦ ।
ପାଣ୍ଡବେ ଯେଉଁ କାଳୁଁ ବନକୁଟି ଗଲେ
ସେହିକାଳୁଁ କ୍ରୋଧ ମୋ ଉପୁଜିଛି ଭଲେ ।
ସହଦେବ କହୁଅଛନ୍ତି ଯେଉଁ ମତ
ସବୁ ଯୋଦ୍ଧାମାନଙ୍କର ଏହି ସମ୍ମତ ।
ସାତ୍ୟକିଙ୍କ ମୁଖୁ ଶୁଣି ଏ ଉତ୍ତରକୁ
ଗରଜିଲେ ଯୋଦ୍ଧାଏ ଫୁଲାଇ କଣ୍ଠକୁ ।
ସାତ୍ୟକିଙ୍କି ସମସ୍ତେ କରିଣ ପ୍ରଶଂସା
ମରିଲେ କୁରୁ ବୋଲି କଲେ ଅଟ୍ଟହସା ।
ଦ୍ରୌପଦୀ ତ ପତିଙ୍କ ପାଶେ ବସିଥିଲେ
ନୟନ ଯୁଗଳରୁ ଲୋତକ ମୁଞ୍ଚିଲେ
ବୋଇଲେ ଆହେ କୃଷ୍ଣ ରାଜା ଭାର୍ଯ୍ୟା ହୋଇ
ମୋହପରିଟି ଆଉ ଦୁଃଖୀ ନାହିଁ କାହିଁ ।

ସଞ୍ଜୟ ଯୁଧିଷ୍ଠିର ହୋଇଲେ ଯେତେ କଥା
ତାହା ତ ଶୁଣିଲ ହେ କୃଷ୍ଣ ମହାରଥା ।
ଅବିସ୍ଥଳ ବୃକସ୍ଥଳ ଯେ ହସ୍ତି ନାମ
ମାକନ୍ଦୀ ବାରୁଣାବତ ହେ ଜନାର୍ଦ୍ଦନ ।
ମାଗିଲେ ଯୁଧିଷ୍ଠିର କୁଟୁମ୍ବ ପୋଷିବାକୁ
ତା ନାହିଁ କଲା ପରି ଆସୁଛି ମନକୁ ।
ଯେବେ କଥା ସହି ହୁଅନ୍ତା ତାଙ୍କର
ସଞ୍ଜୟ ଗଲା କ୍ଷଣି ଆସିଥାନ୍ତା ଘର ।
କୁରୁଙ୍କଠାରୁ ଗ୍ରାମ ନ ପାଇ ପୀରତି
କରିବ ନାହିଁଟି ହେ ମାଗୁଛି ଶ୍ରୀପତି ।
ମୋ ପତିଏ ତୁମ୍ଭଙ୍କୁ ପାଇ ବଳୀୟାର
ହୋଇଅଛନ୍ତି କରିପାରନ୍ତି ସଂହାର
ତୁମ୍ଭେଟି ଥିବାଠାରେ ତାଙ୍କ ଛାର ବଳେ
ପାରିବେ କେହିଁ ପାଣ୍ଡୁ ସୁତଙ୍କୁ ସେ ଗୋଳେ ।
ସାମ ଦାନ ଭେଦେ ନୋହିଲେ ଶତ୍ରୁ ସାଧ
ଶାସ୍ତ୍ର ଲେଖିଅଛି କରିବ ଯାଇ ବଧ ।
କୁରୁଙ୍କ ସଂହାରିଲେ ପାଣ୍ଡବଙ୍କ ସୁଖ
ବଢେ ପାଶୋରିବେ ସେ ବନବାସ ଦୁଃଖ ।
ଲାଭୀଟି କ୍ଷତ୍ରୟଙ୍କୁ କ୍ଷତ୍ରିୟ ମାଇଲେ
ଧରମ ତହୁଁ ଜାଣ ଉପୁଜଇ ଭଲେ ।
ବ୍ରାହ୍ମଣ ସବୁ ପାପେ ସ୍ଥିତ ହେଲେ ଜୀବ
ଯେ ନିଏ ତାକୁ ଦଣ୍ଡ ଦିଏ ଜୀବଧବ ।
ସବୁ ବର୍ଣ୍ଣମାନଙ୍କେ ଗୁରୁ ତ ବ୍ରାହ୍ମଣ
ଏଣୁ ପାପୀ ହେଲେ ନ ନେବ ତାଙ୍କ ପ୍ରାଣ ।
ଅବଧେ ମାଇଲେ ସେହିରୂପେ ହୁଏ ।
ବଧକୁ ନ ମାଇଲେ ସେହିରୂପେ ହୁଏ ।
କୁରୁ ପାଣ୍ଡୁ କଥାରେ କିଛି ନାହିଁ ଦୋଷ
ନୋହିବାକୁ ଉପାୟ କର ହୃଷୀକେଶ ।
ଅଗ୍ନିକୁଣ୍ଡ ଭେଦି ମୁଁ ହୋଇଛି ଜନମ
ପିତା ମୋ ଅଟନ୍ତି ପଞ୍ଚାଳ ନରୋତ୍ତମ ।
ଧୃଷ୍ଟଦ୍ୟୁମ୍ନଙ୍କର ଅଟେ ମୁହିଁ ଭଗିନୀ
ଏ ବାହାରେ ତୁମ୍ଭର ସଖୀ ଚକ୍ରପାଣି ।
ପାଣ୍ଡୁ ରାଜାଙ୍କର ଅଟେ ମୁଁ କୁଳବଧୂ ।
ପାଞ୍ଚପତି ମୋହର ବୀରଙ୍କର ବିଧୁ ।
ଅଭିମନ୍ୟୁ ଯେ ରୂପେ ଭଣଜା ତୁମ୍ଭର
ସେହିରୂପେ ତୁମ୍ଭର ମୋ ପାଞ୍ଚ କୁମର ।

ଏମନ୍ତ ହେଲେ ସଭା ମଧ୍ୟେ ବାଳ ଝିଙ୍କା
ପାଇଁ ମୁଁ ଉଚ୍ଚସ୍ୱରେ ପାଡୁଥିଲି ଡକା ।
କୁରୁମାନଙ୍କର ଦାସୀ ମୁଁ ହୋଇଥିଲି
ରକ୍ଷାକାରୀ କରି କାହାକୁ ନ ଦେଖିଲି ।
ରକ୍ଷାକର ବୋଲି ହେ ପୁରୁଷଉତ୍ତମ
ସେ କାଳରେ ଡାକିଲି ଧରି ତୁମ୍ଭ ନାମ ।
ସେକ୍ଷଣି ଧୃତରାଷ୍ଟ୍ର ମୋତେ ସାହା ହୋଇ
ଯାଚିଲେ ବର ତାଙ୍କୁ ମାଗିଲି ଯେ ମୁହିଁ ।
ରଥ ଆୟୁଧରେ ସହିତ ହୋଇ ପତି-
ମାନେ ମୋର ତରନ୍ତୁ ନ ପାଇ୍ ବିପତ୍ତି ।
ଏ ଘେନି ପାଣ୍ଡୁସୁତେ ଦାସଭାବ ମୁକ୍ତ
ହୋଇଣ ବାହୁଡ଼ିଲେ ରାଜ୍ୟକୁ ତୁରିତ ।
ପୁଣି ବାହୁଁ ଡକାଇ ଦୁର୍ଯ୍ୟୋଧନ ପାପ
ଖେଳେ ଜିଣି ଖେଦିଲା ବନେ ବହି କୋପ ।
ବନବାସ ସାରି ପାଣ୍ଡବେ ଦଇବରେ
ରହିଅଛନ୍ତି ଏବେ ବିରାଟ ନଗରେ ।
ପାଣ୍ଡବେ କୌରବେ କରିବେ ଯେବେ ସ୍ନେହ
ମୁହିଁ ତ ଛାଡି ନ ପାରିବ କେବେ କୋହ ।
ଭୀଷ୍ମ ଧୃତରାଷ୍ଟ୍ରଙ୍କର ମୁଁ କୁଳବଧୂ
ହେଲେ କିମ୍ପା ଦିଅନ୍ତେ ମୋତେ ଦୁଃଖସିନ୍ଧୁ
ମୋ ତାପ ବଢାଇ ଯା ଦୁର୍ଯ୍ୟୋଧନ ନୃପ
ଜୀଇଁଛି ଧିକ ହେଉ ପାର୍ଥ କର ଋପ ।
ଭୀମ ଦଶ ସହସ୍ର ମତ୍ତହସ୍ତୀ ପ୍ରାଣ
ବହିବାର ମୋହର ହେଲା କି କାରଣ ।
ଯେବେ କୃଷ୍ଣ ମୁଁ ତୁମ୍ଭ ଅଟେ କୃପାପାତ୍ର
ତେବେ ମାରି ଆସ ହେ ଧୃତରାଷ୍ଟ୍ର ପୁତ୍ର ।
ଆହେ ଜନମେଜୟ କୃଷ୍ଣଙ୍କର ଆଗେ
ଏରୂପେ କହିଣ ଦ୍ରୁପଦଜେମା ବାଗେ ।
ବାଳ ଆଗକୁ ବାମ କର କରପୁଟେ ଧରି
ପୁଣି କୃଷ୍ଣ ଆଗେ କହିଲେ ଶୋକ କରି ।
ଦେଖ ଏ ବାଳକୁ ଝିଙ୍କିଲା ଦୁଃଶାସନ
ନ ପାସୋରିବଟି ହେ ଏହା ଜନାର୍ଦ୍ଦନ ।
ପାଣ୍ଡୁ ସୁତେ ଯେବେ କୁରୁଙ୍କ ତୁଲେ ପ୍ରୀତି
କରିବେ ତେବେ କ୍ରୋଧେ ଦ୍ରୁପଦ ନୃପତି ।
ମୋତେ ଦେବା କେଶକୁ ସୁମରି ମନରେ
କୁରୁଯାକ ମାରିବେ ସେ ଆୟୋଧନରେ ।

ମୋର ପାଞ୍ଚ ପୋଏ ବହନ୍ତି ବିକ୍ରମକୁ
କରିଣ ଆଗ ଅଭିମନ୍ୟୁ କୁମରକୁ ।
ମୁନ ଥିବା ବାଣକୁ ଗୁଣରେ ବସାଇ
ସୁଯୋଧନ ଜୀବନ ଘେନିବେ ରୋଷାଇ ।
ଦୁଃଶାସନ ଭୁଜ ମହୀରେ ଗଡୁଥିବ
ଦେଖିବା ଯାଏ ରାଗ ଅଛି ମୋ ମାଧବ ।
ଏ ରୂପେ କହୁ କହୁ ଦ୍ରୌପଦୀ ନୟନ
ଅଶ୍ରୁ କରିଲା ଓଦା ହୃଦୟ ବସନ ।
ଶ୍ରୀକୃଷ୍ଣ ତାହା ଦେଖି ବୋଇଲେ ଦ୍ରୌପଦୀ
ତୁମ୍ଭ ସଙ୍ଗତେ ଦୁର୍ଯ୍ୟୋଧନ ହୋଇ ବାଦୀ ।
ନିକଟେ ମାଇପକୁ କରାଇବେ ରାଣ୍ଡ
ଖୁଆଇଣ ବିଲୁଆମାନଙ୍କୁ ତା ପିଣ୍ଡ ।
ନ ଘେନିବେ ସୁଯୋଧନ ମୋ ବଚନକୁ
ମଲା ବୋଲି ଦ୍ରୌପଦୀ ଆଣ ଗୋ ମନକୁ ।
ପୃଥ୍ୱୀ ଶଏ ଖଣ୍ଡ ହୋଇଲେ ମୋର କଥା
ନୋହିବ ଗୋ ଦ୍ରୌପଦୀ ଜାଣ ତ ଅନ୍ୟଥା ।
ଯୁଧିଷ୍ଠିରଙ୍କର ଯେ ଅଭିଷେକ ସୁଖ
ତୁମ୍ଭ ନେତ୍ର ଦେଖି ପାଇବ ମହାସୁଖ ।
ଜାଣୁ ଅଛି ଏହା ମୁଁ ଖଞ୍ଜିଛି ଦଇବ
ଏ ଘେନି ହୃଦୟେ ବଳାଉଥାଏ ଭାବ ।
ଅରଜୁନ ବୋଇଲେ କୁରୁ ପାଣ୍ଡୁଙ୍କର
ସମାନ ପ୍ରିୟ ତୁମ୍ଭେ ଅଟ ଚକ୍ରଧର ।
ପ୍ରୀତି କରିବାକୁ ସମର୍ଥ ଅଟ ତୁମ୍ଭେ
ଭଲ କରି ଏହାଟି ଜାଣୁଅଛୁଁ ଆମ୍ଭେ ।
ସୁଯୋଧନ ରାଜାଙ୍କୁ କରାଇଣ ଶାନ୍ତି
ଆଣ ଆମ୍ଭର ଭାଗ ଅରଜି ଶ୍ରୀପତି ।
ସୁଯୋଧନ ମୂରୁଖପଣରୁ ଭାବୁଛି
ନୋହିବ ପରା କିଛି କାର୍ଯ୍ୟ ହେ ଶ୍ରୀବତ୍ସି ।
କୃଷ୍ଣ ବୋଇଲେ ମୁଁ ଯାଉଛି ତାଙ୍କଠାକୁ
ଆସିଲେ ଭଲ ମନ୍ଦ କହିବି ତୁମ୍ଭଙ୍କୁ ।
ଏହା କହିଣ ସୂର୍ଯ୍ୟୋଦୟ ସମୟରେ
ସ୍ନାନ ସନ୍ଧ୍ୟା ଜପ ଯେ ସାରିଣ ସତ୍ୱରେ ।
ଅଳଙ୍କାରମାନଙ୍କୁ ଲଗାଇ ଅଙ୍ଗରେ
ହୋଇଲେ ଅଙ୍ଗରାଗ ବୋଳି ସରାଗରେ ।
ବୃଷଭଙ୍କୁ ଛୁଇଁ ଦ୍ୱିଜଙ୍କୁ ନମସ୍କାର
କଲେ ନମ୍ର ହୋଇଣ ଶଙ୍ଖଚକ୍ରଧର ।

ଆଗେ ମଙ୍ଗଳାଦି ଦ୍ରବ୍ୟକୁ ଧରାଇଲେ
ଅଗ୍ନି ପ୍ରଦକ୍ଷିଣ କରିଣ ବାହାରିଲେ ।
ସେହିଦିନ କାର୍ତ୍ତିକ ଶୁକ୍ଳ ତ୍ରୟୋଦଶୀ
ରେବତୀ ନକ୍ଷତ୍ରରେ ରହିଥିଲେ ଶଶୀ ।
ସାତ୍ୟକିଙ୍କି ଅନାଇ ବୋଇଲେ ମାଧବ
ତିଆର କରାଅ ମୋ ରଥ ବହି ଭାବ ।
ଶଙ୍ଖ ଚକ୍ର ଶାରଙ୍ଗ ତୁଣୀର ଗଦା ଖଡ଼୍‌ଗ
ରଖାଇଥିବା ମୋର ରଥରେଟି ଆଗ ।
ଦୁର୍ଯ୍ୟୋଧନ କର୍ଣ୍ଣ ଶକୁନି ଦୁଷ୍ଟ ଆତ୍ମା
ଆଚରିଲେ ପାପ ମୁଁ ନେବି ତାଙ୍କ ଆତ୍ମା ।
ଏହା ଶୁଣି ଲୋକେ କୃଷ୍ଣଙ୍କ ରଥଠାକୁ
ବାହାରିଲେ ବେଗେ ତିଆର କରିବାକୁ ।
ଚନ୍ଦ୍ର ସୂର୍ଯ୍ୟ ପରି ଯେ ଚକ୍ରରେ ଶୋଭିତ
ହୋଇ ସେ ରଥ ନିନ୍ଦୁଅଛି ବୀତିହୋତ୍ର ।
ନାନା ମଣି ରତ୍ନରେ ଚିତ୍ରିତ ହେବାରୁ
ଦେଖିଲେ ନେତ୍ର ଆସି ନ ପାରେ ତହିଁରୁ ।
ସୁର ଅସୁରଙ୍କର ଗରବ ଗଞ୍ଜନ
ଯଦୁଙ୍କ ଅଟନ୍ତି ଆନନ୍ଦ-ବରଧନ ।
ସୁଗ୍ରୀବ ଶୈବ୍ୟ ମେଘ ପୁଷ୍ପ ବଳାହକ
ଘୋଡାଙ୍କ ସେ ରଥେ ହୋଇଛି ଯୋଚ୍ଚବେକ
ସେ ଅଶ୍ୱେ ଗତିରେ ପବନ ଦେବତାଙ୍କୁ
ଜିଣିଛନ୍ତି ନୃପେ କି କହିବି ତୁମ୍ଭଙ୍କୁ ।
କୃଷ୍ଣଙ୍କର ରଥେ ବସିବା କାଳ ଜାଣି
ଧ୍ୱଜ ହେଲା ଆସି ଗରୁଡ ପକ୍ଷୀମଣି ।
କୃଷ୍ଣ ସେ ରଥବର ପ୍ରଦକ୍ଷିଣ କରି
ବସିଲେ ତହିଁ ଯାଇ କରେ ନିଶ ଧରି ।
ଦାରୁକଙ୍କ ବହିବା ଘାତେ ରଥଘୋଷ
ତିନିଲୋକଯାକରେ କଲା ଯାଇ ବାସ ।
ମନ୍ଦ ଶୀତ ଗନ୍ଧ ଗୁଣକୁ ଯେ ପବନ
ବହି କୃଷ୍ଣ ପୃଷ୍ଠେ ବହିଲା ଅବିଚ୍ଛିନ୍ନ ।
ମୃଗେ କୃଷ୍ଣ ରଥକୁ ପ୍ରଦକ୍ଷିଣ କରି
ଦକ୍ଷିଣପଟଯାକ ରହିଲେ ଆବୋରି ।
ଚକ୍ରବାକ ହଂସ ଯେ ଭଦଳିଆ ପକ୍ଷୀ
ଉଡିଲେ ଆଗେ କୃଷ୍ଣ ମଙ୍ଗଳକୁ ଦେଖି ।
ଦ୍ୱିଜଙ୍କ ହୋମାଗ୍ନି ନିର୍ଦ୍ଧୁମ ହୋଇ ଜଳି
ଉଠିଲେ ସେହିକାଳେ ତେଜେ ହୋଇ ବଳୀ
ଦଶଦିଗଯାକଟି ହୋଇଲା ନିର୍ମଳ
ତୁଚ୍ଛା ସୁଖୀ ହୋଇଲେ ମାନବମଣ୍ଡଳ ।
ବଶିଷ୍ଠ ବାମଦେବ ଗୟତ୍ରଥ ଶୁକ୍ର
ବାଲ୍ମୀକି ଭୃଗୁ ଭୂରିଦ୍ୟୁମ୍ନ କୁଶିକ ।
ମରୁତ ବ୍ରହ୍ମଋଷି ନାରଦ ଦେବର୍ଷି
ବସୁଦେବ ସୁତେ ଆଶିଷ କଲେ ଆସି ।
ଋଷିମାନଙ୍କରେ ଯେ ବାଟରେ ପୂଜିତ
ହୋଇଯିବା ବେଳରେ ହସ୍ତିନା ଅଚ୍ୟୁତ
ଭାଇଙ୍କ ସଙ୍ଗତରେ ଯୁଧିଷ୍ଠିର ରାଜା
ଧାଇଁଲେ କୃଷ୍ଣ ପାଶେ ମୋଦ ଧରି ମଜ୍ଜା ।
ଧୃଷ୍ଟକେତୁ ଦ୍ରୁପଦ ଶିଖଣ୍ଡୀ ଚେକିତାନ
କାଶୀରଜା କେକୟ ବିରାଟ ଧୃଷ୍ଟଦ୍ୟୁମ୍ନ ।
ଉତ୍ତର ଶ୍ୱେତାଦି କ୍ଷତ୍ରିୟ କୃଷ୍ଣଙ୍କରେ
ସେନେହ ଧରି କରି ଧାଇଁଲେ ସଙ୍ଗରେ ।
ତିନିଲୋକର ପ୍ରଭୁ ସନାତନ ହରି
କୃଷ୍ଣେ ଯୁଧିଷ୍ଠିର କହିଲେ କୋଳେ ଧରି ।
ମାତାଙ୍କୁ ଅନାମୟ ପୁଚ୍ଛିଣ ଗୋବିନ୍ଦ
କରାଇବ ତାଙ୍କର ମନକୁ ଆନନ୍ଦ
ଏ ବାହାରେ କହିବ ଆମ୍ଭମାନଙ୍କର
ପାଦ ଦୁଇ ଧରି ତାହାଙ୍କୁ ବନ୍ଦିବାର ।
ଆହେ କୃଷ୍ଣ ଏ ଦୁଃଖ ସିନ୍ଧୁ ପାରି ହୋଇ
କହ ମାତା ସୁଖ କି କରିବି ମୁଁ ଯାଇ ।
ଯେତେବେଳରେ ଆମ୍ଭେ ବନକୁ ଆସିଲୁଁ
ଧାଇଁଥିଲେ ସଙ୍ଗେ ସେ ଛାଡିଣ ଆସିଲୁଁ ।
ଭୀଷ୍ମ ଦ୍ରୋଣ କୃପ ବାହ୍ଲିକ ସୋମଦତ୍ତ
ଅଶ୍ୱତ୍ଥାମା ସୁଯୋଧନଙ୍କର ଯେ ତାତ ।
ଏ ଆଦି ଯେତେ କୁରୁ ବୁଢାଏ ଅଛନ୍ତି
ତାହାଙ୍କୁ କହିବଟି ଗୋବିନ୍ଦ ପ୍ରଣତି ।
ବିଦୁରଙ୍କୁ ଆପଣକରି ଆଲିଙ୍ଗନ
କହୁଛି କରାଇବ ଆନନ୍ଦ ବର୍ଦ୍ଧନ ।
ଏରୂପେ ଯୁଧିଷ୍ଠିର କୃଷ୍ଣେ କହି କରି
ଉପପ୍ଳବ ଗଡକୁ ଆସିଲେ ବାହାରି ।
ଏ କାଳେ ଅର୍ଜ୍ଜୁନ ବୋଇଲେ ରାଜ୍ୟ ଅଧେ
ଦେଲେ ଦୁର୍ଯ୍ୟୋଧନକୁ ନ ମାରିବ କ୍ରୋଧେ ।
ଏ ନୋହିଲେ ମୋର ମାର୍ଗଣେ ତାର ପ୍ରାଣ
ଦେଖିବଟି ଯାଇ ହେ ପ୍ରେତଙ୍କର ରାଣ ।

ଅର୍ଜୁନ କହିବା ଉତ୍ତରୁ ଭୀମ ବଳୀ
ଚଳିବା ଘାତେ ସେ ଦେହକୁ ଦେଲେ ଝଳି ।
ଅରଜୁନଙ୍କୁ କହି ପ୍ରଶଂସା ଉତ୍ତର
ବୋଇଲେ ସୁଯୋଧନ ହୋଇବ ସଂହାର ।
ହର୍ଷେ ଭୀମ ଦେହ ଦ୍ୱିଗୁଣ ଫୁଲାଇଲେ
କଣ୍ଠକୁ ମୋଟ କରି ସିଂହନାଦ କଲେ ।
ସେ ସିଂହନାଦ ଶୁଣି କ୍ଷତ୍ରୀୟେ ତରସ୍ତ
ହେଲେ ହାତୀ ଘୋଡ଼ା ତେଜିଲେ ମଳ ମୁତ୍ର ।
ଅର୍ଜୁନ କୃଷ୍ଣଙ୍କର ଆଜ୍ଞା ଶିରେ ଧରି
ବାହାରିଲେ ବସାକୁ ଯିବା ଇଚ୍ଛା କରି ।
ଶ୍ରୀକୃଷ୍ଣଙ୍କ ଅଶ୍ୱେ ଦାରୁକ ବାହିବାରେ
ଗମିଲେ ବାଟେ ଯିବାପରି ଆକାଶରେ ।
କୃଷ୍ଣଙ୍କ ରଥ ଦୁଇପାଶେ ଋଷିଶ୍ରେଣୀ
ଛିଡ଼ା ହୋଇଥିଲେ ଦେଖିଲେ ଚକ୍ରପାଣି ।
ସେହିକ୍ଷଣି ରଥରୁ ଓହ୍ଲାଇ ଗୋବିନ୍ଦ
ନମିଲେ ତାଙ୍କ ପାଦେ ହୋଇଣ ଆନନ୍ଦ ।
ବୋଇଲେ କାହିଁପାଇଁ ଏଠାରେ ଗୋସାଇଁ
ମାନେ ଛିଡ଼ା ହୋଇଛ କହ ତୋଷ ବହି ।
ହୋଇଛଟିକି ତୁମ୍ଭେମାନେ ତପଚାରୀ
ଲୋକେ ହୋଇଅଛନ୍ତିଟିକି ଧର୍ମକାରୀ ।
ତିନି ବର୍ଣ୍ଣଯାକ ହେ ତୁମ୍ଭର ଆଜ୍ଞାକୁ
ମାନି କରୁଅଛନ୍ତିଟିକି ବେଭାରକୁ ।
କି କାର୍ଯ୍ୟେକୁ ମୋଠାକୁ ଆସିବା ହୋଇଛି
କହ ତା କରିଦେବି ଦ୍ୱିଗ ହୋଇଅଛି ।
ଏହା ଶୁଣି ପରଶୁରାମ ହୋଇ ତୋଷୀ
କୃଷ୍ଣଙ୍କୁ ଆଲିଙ୍ଗନ କଲେ ହସି ହସି ।
କହିଲେ ପୂର୍ବେ ଦେବାସୁରେ ଋଷିମାନେ
ଦେଖି ତ ଥିଲେ ଏବେ ଦେଖିବା କରି ମନେ
କ୍ଷତ୍ରିୟମାନଙ୍କ ଏକାଠୀ ହେବା ଜାଣି
ଆସିଛନ୍ତି ଜାଣ ହେ ଶଙ୍ଖଚକ୍ରପାଣି ।
ପୁଣି ତ ଯାଉଛ ଆପଣ ଦୂତ ହୋଇ
କି ବୋଲିବ କୁରୁଙ୍କୁ ଶୁଣିବିଟି ଯାଇଁ ।
ତୁମ୍ଭଙ୍କୁ ଭୀଷ୍ମ ଦ୍ରୋଣ ଦେବେ କି ଉତ୍ତର
ତା ଶୁଣିବାକୁ ମନ ହେଉଛି ଆମ୍ଭର ।
ଆପଣ ତ କୁରୁସଭାକୁ ଯାଅ ବେଗେ
ଆମ୍ଭେ ଯାଉଅଛୁଁ ତୁମ୍ଭର ସଙ୍ଗେ ସଙ୍ଗେ ।

କୃଷ୍ଣଙ୍କର ସଙ୍ଗେ ତ ଦଶ ମହାରଥୀ
ଆସିଥିଲେ ହୋଇଣ ପୃଷ୍ଠରକ୍ଷା ସାଥି ।
ଏ ବାହାରେ ସହସ୍ରେ ଲେଖାରେ ପାଇକ
ସିପାଇ ଥିଲେ ବହି କୋଦଣ୍ଡ ସାୟକ ।
ଶରସଂଖ୍ୟା ଲୋକ ସଙ୍ଗରରେ ଗୋଡ଼ାଇ
ଥିଲେ ଭାର ବୁଜୁଳା କନ୍ଧଦେଶେ ବହି ।
ସେ ଭାରମାନଙ୍କରେ ଖଜା ପିଠା ଛେନା
ଦହି ଦୁଧ ନବାତ ଥିଲା ଅକଳନା ।
ଏହା ଶୁଣି ଜନମେଜୟ ମହାରାଜା
ବଇଶମ୍ପାୟନ ଋଷିଙ୍କି କରି ପୂଜା ।
ବୋଇଲେ କୃଷ୍ଣ ହସ୍ତିନାକୁ ଯିବାବେଳେ
କି ନିମିତ୍ତ ହେଲା ତା କହ ମୋତେ ଭଲେ ।
ବଇଶମ୍ପାୟନ ବୋଇଲେ କହୁଥାଇ
ତାହା ଶୁଣ ରାଜନ ଏବେ ମନ ଦେଇ ।
ମେଘ ବିନା ବୃଷ୍ଟି ହେବାରୁ କୁରୁସୃଷ୍ଟି
ପୂରିଗଲା ଦେଖିଲା ସବୁ ଜନ ଦୃଷ୍ଟି ।
ବିଜୁଳି ବୁଜାଇଲା ସବୁରି ନୟନ
ନିର୍ଘାତ ଘାତେ କର୍ଣ୍ଣ ହୋଇଗଲା ଛନ୍ନ ।
ପୂର୍ବକୁ ବହିଯିବା ନଦୀ ପଶ୍ଚିମକୁ
ବହି ଜାତକଲେ ପ୍ରାଣୀଙ୍କର ଭୟକୁ ।
କେଉଁଆଡରେ କେଉଁଦିଗ ଏ ଅଜଣା
ହେବାରୁ ଯିବାଲୋକେ ହେଲେ ବାଟବଣା
ସବୁଆଡରେ ଦିଗଦାହ ଭୂମିକମ୍ପ
ହେବାରୁ ପ୍ରାଣୀହୃଦେ ବାସକଲା କମ୍ପ ।
କୂପମାନଙ୍କରୁଟି ଉଛୁଳିଣ ଜଳ
ଶୁଖିଲା ଭୂମିଖଣ୍ଡମାନଙ୍କେ ହେଲେ ଠୁଳ ।
ବନ ଗିରି ଭୂମି-ଅନ୍ଧାର-ବାସ ଘୋଡି
ହେବାରୁ ନୟନ ତା ନ ପାରିଲା କାଢ଼ି
ଆକାଶରେ ମୁଣ୍ଡ ଯେ ନ ଥାଇ ଶରୀର
ଦିଶିଲା ହୋଇବାକୁ ପ୍ରାଣୀଙ୍କ ସଂହାର ।
ନଇର୍ରତ କୋଣରୁ ପବନ ବହିଲା
ହସ୍ତିନାପୁର ପାଖ ତୋଟା ଭାଙ୍ଗିଦେଲା ।
ଯେଉଁ ସ୍ଥାନମାନଙ୍କେ ରହନ୍ତି କୃଷ୍ଣ ଯାଇଁ
ପ୍ରତିକୂଳ ପବନ ସତ୍ତା ତହିଁ ନାହିଁ ।
ପୁଷ୍ପବୃଷ୍ଟି ହୋଇବା ସକାଶରୁ ବାଟ
ମହୀର ନ ଲାଗିଲା ପାଦକୁଟି ଆଣ୍ଠ ।

ଖାଲ ଢିପ କଣ୍ଟା ଲଟା ଯେତେକ ଥିଲେ
ପୁଷ୍ପ ପଡ଼ିବାରେ ସେ ଗୋଚର ନୋହିଲେ ।
ଶତସଂଖ୍ୟା ବ୍ରାହ୍ମଣେ ଯାଉଁ ଯାଉଁ ପୂଜା
କଲେ ଶ୍ରୀକୃଷ୍ଣଙ୍କୁ ଆନନ୍ଦ ଧରି ମଜ୍ଜା ।
ଗ୍ରାମସ୍ତିରୀମାନେ ବାଟରେ ହୋଇ ଗୋଟି ।
ପକାଇଲେ କୃଷ୍ଣଙ୍କୁ ଫୁଲ ଆଞ୍ଜୁଳିଟି ।
ନାନା ଦେଶକୁ ଅତିକ୍ରମି ବନମାଳୀ
ମିଳିଲେ ଯାଇ ହସ୍ତିନାରେ ବୃକସ୍ଥଳୀ ।
ସେଠାରେ ସୂର୍ଯ୍ୟ ଅସ୍ତ ହୁଅନ୍ତେ କୃଷ୍ଣଙ୍କୁ
ଓହ୍ଲାଇଲେ ରଥରୁ ସନ୍ଧ୍ୟା କରିବାକୁ ।
ଦାରୁକ ରଥୁଁ ଘୋଡା ଫିଟାଇଣ ଝଣ୍ଟେ
ଟହଲାଇଲେ ସେହୁ ବୃକସ୍ଥଳୀ ଦାଣ୍ଡେ ।
ରାତ୍ର ହୋଇଯିବାରୁ ସେଠାରୁ ଶ୍ରୀପତି
ଯିବାକୁ ନିବର୍ତ୍ତାଇ ଦେଲେ ତାଙ୍କ ମତି ।
କୃଷ୍ଣଙ୍କ ମତ ଜାଣି ଲୋକେ ତହିଁ ବସା
କରିଲେ ଯେଝା ସୁଖେ ବଞ୍ଚିବାକୁ ନିଶା ।
ବୃକସ୍ଥଳୀ ଗ୍ରାମରେ ଯେତେ ଦ୍ୱିଜ ଥିଲେ
କୃଷ୍ଣଙ୍କୁ ନେଇଣ ଗୃହରେ ବସାଇଲେ ।
ସେ ଘରଟିମାନ ହେବାରୁ ରତ୍ନମଣ୍ଡା
କରୁଅଛନ୍ତି ମନ ନୟନକୁ ଥଣ୍ଡା ।
ବ୍ରାହ୍ମଣଙ୍କ ସନ୍ତୋଷ ହେବାପାଇଁ ହରି
ସେ ଘରେ ଜଡ ପାରି ନିଶି ଦେଲେ ହରି ।
ବୃକସ୍ଥଳୀ ନଗରେ କୃଷ୍ଣ ରହିବାର ।
ଧୃତରାଷ୍ଟ୍ର ଆଗେ କହିଲା ଯାଇ ଝର
ଭୀଷ୍ମ ଦ୍ରୋଣ ବିଦୁର ସଞ୍ଜୟ ଦୁର୍ଯ୍ୟୋଧନ ।
ଏମାନଙ୍କୁ ଡାକିଣ ହସ୍ତିନା ରାଜନ ।
କହିଲେ ଦୂତ ହୋଇ ଆସନ୍ତି ଚକ୍ରପାଣି
ଝର ଆସି ମୋତେ କହିଲା ଏହିକ୍ଷଣି ।
ଏ ବାହାରେ ହସ୍ତୀନାବାସୀ ସ୍ତ୍ରୀ ପୁରୁଷ
ମୁଖରେ ଏହି କଥା ହୋଇଛି ପ୍ରକାଶ ।
କୃଷ୍ଣ ତ ପୂଜ୍ୟ ପାତ୍ର ଆମ୍ଭମାନଙ୍କର
ଏଥିକି ଯେ ଉଚିତ ତା ବିଚାର କର ।
କୃଷ୍ଣ ଯେବେ ଆମ୍ଭ ପୂଜାରେ ତୋଷୀ ହେବେ
ଜାଣୁଛି ପାଣ୍ଡବଙ୍କ ପଟ ଛାଡିଦେବେ ।
ଏହି ସକାଶରୁ ବାଟରେ ବସା ସଞ୍ଜା
କରାଅ ତାଙ୍କପାଇଁ ନ କରି କିଛି ପଞ୍ଝା ।

ଯେଉରୂପେ କୁରୁଙ୍କରେ କୃଷ୍ଣଙ୍କର ପ୍ରୀତି
ବଳିବ ସେରୂପେ କରାଅ ଝଟତି ।
ଆହେ ଭୀଷ୍ମ ମୋ କଥା ତୁମ୍ଭର ମନକୁ
ପାଉଛି କି ନାହିଁ ତା କହ ହେ ଆମ୍ଭଙ୍କୁ ।
ଭୀଷ୍ମ ବୋଇଲେ ଯାହା କହିଲ ହେ ବାବୁ
ଏଥିରୁ ବଡ କଥା ଅଛି କି କହିବୁଁ ।
ସୁଯୋଧନ ରାଜନ ଶୁଣି ସୁଖୀ ହୋଇ
କରାଇଲା ଯେ ବସା ସଞ୍ଜା ଟଙ୍କା ଦେଇ ।
ସେ ବସାମାନଙ୍କେ ସୁପାଟିପଡା ଖଟ
ବହୁ ପକାଇଲେ ଶୋଭାକୁ କରି ପୁଷ୍ଟ ।
ଗନ୍ଧ ପୁଷ୍ପ ପେୟ ଯେ ଭୋଜ୍ୟ ସାମଗ୍ରୀରେ
ସ୍ଥାନ ହେଉ ନାହିଁ ସେ ବସାମାନଙ୍କରେ ।
ଏହିରୂପରେ କରି ବସାର ବିଧାନ
କହିଲେ ଧୃତରାଷ୍ଟ୍ରେ ନୃପେ ସୁଯୋଧନ ।
ତୁମ୍ଭ ସୀଉକାରେ କୃଷ୍ଣଙ୍କ ରହିବାକୁ
ବାଟରେ କରାଇଲି ଅମୂଲ୍ୟ ବସାକୁ ।
ଏହା ବାହାରେ ଲେହ୍ୟ ପେୟ ଭକ୍ଷ ଭୋଜ୍ୟ
ରଖାଇଛି ତହିଁରେ ଜାଣ ମହାରାଜ ।
ଧୃତରାଷ୍ଟ୍ର ଶୁଣି ବୋଇଲେ ବସୁଦେବ
ସୁତ ତାହାଙ୍କର ନାମଟି ବାସୁଦେବ ।
ତାହାଙ୍କୁ କେଉଁରୂପେ କରିବି ମୁଁ ପୂଜା
ଶୁଣ ତାହା ବିଦୁର ଦେଇକରି ମଜ୍ଜା ।
ସେହିଟି ତିନିଲୋକଙ୍କର ପିତାମହ
ତାହାଙ୍କୁ ସେବିଲେ ଛାଡଇ ଲୋକେ ମୋହ ।
ମହାମନ ମହାବଳ ଯେ ପରାକ୍ରମ
ବହିଥାନ୍ତି ଯୁଦ୍ଧରେ ନୁହେ ତାଙ୍କ ଶ୍ରମ ।
ବୃଷ୍ଣି ଅନ୍ଧକର ପ୍ରଭୁ ସେହୁ ଅଟନ୍ତି
ଏ ଜଗତଯାକକୁ ପାଳନା କରନ୍ତି ।
ମୋତେ ତ ଲୋକେ ଭାଗ୍ୟବନ୍ତରେ ଗଣନ୍ତି
ଦୈବେ କୃଷ୍ଣ ଯେବେ ମୋଠାକୁ ଆସୁଛନ୍ତି ।
ଏ ସକାଶୁଁ ବାହ୍ଳିକ ଦେଶ ଘୋଡା ଯୋଚି
ଷୋଳଟି ସ୍ୱର୍ଣ୍ଣରଥ ଦେବି ଅଛି ପାଞ୍ଚି ।
ଶଏ ଦାସ ତୁଲରେ ଶଏଟି ନବୀନା
ଏ ବାରେ ଦେବି ମୁଁ ମଣ୍ଡିକରି ସୁନା ।
ମୋ ଶାଳରେ ଯେତେ ଅଛନ୍ତି ବଳବନ୍ତା
ବାଛି ତହୁଁ ଦେବି ଆଠୋଟି ଦନ୍ତଦନ୍ତା ।

ଖରତରେ ଦେବି ମୁଁ ଅଠର ସହସ୍ର
ଚୀନଦେଶ ଜାତ ସହସ୍ରେ ଦେବି ବାସ ।
ଅନ୍ଧାରକୁ ଆଲୋକ କରିବା ମଣିଟି
କୃଷ୍ଣଙ୍କୁ ଦେବାକୁ ହେଉଛି ମୋ ମନୁଟି ।
ଦିନକେ ଚଉଦ ଯୋଜନ ଯିବା ଘୋଡି
କୃଷ୍ଣଙ୍କୁ ସମର୍ପିବ କହେ ହୃଦ ଫେଡି ।
ଯେତେକ ଲୋକ କୃଷ୍ଣ ସଙ୍ଗେ ଥିବ ଆସି
ଆଠଗୁଣ ଭୋଜନେ ଦେବି ତାଙ୍କୁ ତୋଷି ।
ସୁଯୋଧନ ବିନା ମୋହର ପୁଅ ନାତି
ଯାଆନ୍ତୁ ଘେନି ଆସିବାକୁ ଶିରୀପତି ।
ସହସ୍ର ସଂଖ୍ୟା ବେଶ୍ୟା ହୋଇକରି ସଜ
କୃଷ୍ଣଙ୍କ ଆଗରେ ନାଚନ୍ତୁ ଛାଡି ଲାଜ ।
ମୋ ପୁରରେ ଯେତେକ ଛନ୍ତି ଗୃହକାରୀ
ରହନ୍ତୁ ଯାଇ ବାଟେ ଯେଝା ସ୍ତିରୀ ଧରି ।
କୃଷ୍ଣଙ୍କୁ ଦେଖି କରି ନୟନ ପାତକ
ଛଡାଅନ୍ତୁ ଅନ୍ତିଟି ତାହାର ଯେତେକ ।
ପୁରମାନଙ୍କରେ ପତାକା ବାନ୍ଧନ୍ତୁ
ବାଟରେ ପାଣି ସିଞ୍ଚି ଫୁଲକୁ ବିଞ୍ଚନ୍ତୁ ।
ଆମ୍ଭ କୁରୁଘର ଯାକରେ ଦୁଃଶାସନ
ଘରଟି ତ ଅଟଇ ଅତ୍ୟନ୍ତ ଶୋଭନ ।
ସେ ଘରଟି ତାହାକୁ ଛଡ଼ାଇ କୃଷ୍ଣଙ୍କୁ
ରଖିବି ପାଉଅଛି ମୋର ବିଚ୍ଚରକୁ ।
ମୋ ଘରରେ ଯେତେକ ସମ୍ପାଦିଛି ଧନ
ଆଜି କୃଷ୍ଣଙ୍କର ମୁଁ କରିବି ଅଧୀନ ।
ବିଦୁର ବୋଇଲେ କହିଲ ତୁମ୍ଭେ ଯାହା
ସୁଖୀ ହୋଇଲୁ ଆମ୍ଭେ ଶୁଣି କରି ତାହା ।
ବୟସ ଅନୁରୂପେ କହୁଛ କଥାକୁ
କିସ ପରଶଂସା ମୁଁ କରିବି ତୁମ୍ଭଙ୍କୁ ।
ସମୁଦ୍ରରେ ଲହରୀ ସୂର୍ଯ୍ୟଙ୍କର ତେଜ
ପଥରେ ଲେଖାପରି ଧର୍ମ ମହାରାଜ ।
ତୁମ୍ଭରଠାରେ ନିତି କରିଅଛି ସ୍ଥିତି
ହସ୍ତିନାରେ ରହିବା ପ୍ରାଣୀଏ ବୋଲନ୍ତି ।
ଯେଉଁରୂପେ ଏହି ଗୁଣ ରହିବ ତୁମ୍ଭର
ସେ ରୂପରେ ଯତ୍ନ କର ହେ ନରବର ।
କୁରୁରାଜ୍ୟଯାକକୁ ଧର୍ମେ ତୁମ୍ଭେ ବସି
ପାଳନା କଲେ ପ୍ରାନ୍ତେ ହେବ ସ୍ୱର୍ଗ ବାସୀ ।
କୃଷ୍ଣଙ୍କୁ ଯେଉଁମାନେ କହିଲେ ଦେବାକୁ
ଏଥିରୁ ଶତଗୁଣେ ଯୋଗ୍ୟ ସେ ନେବାକୁ ।
ଧର୍ମଙ୍କୁ ଗ୍ରହିଁ ଏହା ତୁମ୍ଭେ ଦେବା ପରି ।
ମୋର ମନକୁ ପାଉନାହିଁ ଦଣ୍ଡଧାରୀ
ଧରମ ପାଉଁଶେ କପଟ ଅଗ୍ନି ରଖି
କହୁଅଛ ହୃଦରେ ହୋଇ ଅତି ସୁଖୀ ।
କୃଷ୍ଣ ତ ତିନିଲୋକ ଯାକରେ ଈଶ୍ୱର
ଏ ଛାର କଥା ତାଙ୍କୁ ନୋହେ କି ଗୋଚର ।
ପାଣ୍ଡବଙ୍କୁ ରାଜ୍ୟ ନ ଦେଲେ ତୁମ୍ଭ ପ୍ରୀତି
ଇଚ୍ଛା କରିନାହିନ୍ତି କେବେ ଯଦୁପତି ।
ଦ୍ରବ୍ୟ ଦେଇଣ ମନ ଘେନିଲେ ତାଙ୍କର
ଅର୍ଜ୍ଜୁନଙ୍କୁ କରି ସେ ନ ପାରନ୍ତି ଦୂର ।
ପ୍ରାଣ ପଛେ କୃଷ୍ଣ ପୀରତିରେ ଛାଡିବେ
ଅରଜୁନଙ୍କୁ କଦାଚିତେ ନ ଛାଡିବେ ।
କୃଷ୍ଣ ପାଦଧୁଅ ଉଦକ ବିନା ଆନ
ଘେନିବା ପରି ମୋର ପାଉନାହିଁ ମନ ।
ସେ ଯାହା ପାଣ୍ଡବଙ୍କୁ ପାଇଁଟି କହିବେ
ତୁମ୍ଭେ ତା ଘେନିଲେ ଘେନିବେ ସବୁ ଭାବେ ।
ପାଣ୍ଡବଙ୍କର ଅଟ ତୁମ୍ଭେ ବଡ ବାବୁ
ପାଳନା କର ତାଙ୍କ ଆଉ କି କହିବୁ ।
ଦୁର୍ଯ୍ୟୋଧନ ବାପାଙ୍କ ପାଶେ ରହିଥିଲେ
ଏହା ଶୁଣି କରିଣ ବାପାଙ୍କୁ କହିଲେ ।
ବିଦୁର କହିବାରୁ ପାଉଛି ମନକୁ
ତାଙ୍କୁ ଛାଡି କୃଷ୍ଣ ଆସିବେ ଆମ୍ଭଠାକୁ ।
ବୋଲିବାକୁ ମୋହାର ଫିଟୁନାହିଁ ତୁଣ୍ଡ
ଯେତେ ଶ୍ରମ କରିବସବୁ ହେବ ପଣ୍ଡ ।
କୃଷ୍ଣଙ୍କୁ ଯେତେ ଧନ ରତ୍ନ ଦେବ ତୁମ୍ଭେ
ଡରିମଲା ବୋଲିବେ ଜାଣୁଅଛୁଁ ଆମ୍ଭେ
ଅପମାନ କଥା କ୍ଷତ୍ରିୟ ଯେବେ କରେ
ତହିଁରୁ ନିନ୍ଦା କଥା ନାହିଁ ନା ସଂସାରେ ।
ତିନି ଲୋକ ପୂଜ୍ୟ ଅଟନ୍ତି ଜନାର୍ଦ୍ଦନ
ଏହା ମଧ ମୁଁ ଜାଣୁ ଅଛି ହେ ରାଜନ ।
ଏମନ୍ତେ ହେଲେ ତାଙ୍କ ଏତେବେଳେ ପୂଜା
କରିଲେ ବହ ହୋଇ ଉପୁଜିବ ଲଜ୍ଜା ।
ଖଣ୍ଡାରେ ଶାନ୍ତି ହେବ କଥାକୁ ବିଚ୍ଚର
ଯୋଚି ନ ପାରଇ ହେ ଜାଣ ନରବର ।

ଦୁର୍ଯ୍ୟୋଧନଙ୍କର ଏ କଥା ଭୀଷ୍ମ ଶୁଣି
ଧୃତରାଷ୍ଟ୍ର ଆଗରେ କହିଲେ ଏ ବାଣୀ ।
ତୁମ୍ଭର ସତକାର ଅସତକାରକୁ ।
କହିବେ ନାହିଁ କୃଷ୍ଣ ଜାଣେ ଗଣନାକୁ ।
କେବଳ ତାଙ୍କଠାରୁ ଦୁର୍ଯ୍ୟୋଧନ ମୂଢ଼
କରିବ ନାହିଁ ଅବଜ୍ଞାରେ କଥା ପୌଢ଼ ।
କୃଷ୍ଣ ଯାହା ମନରେ ଭାବି ଆସିଥିବେ
ତିନିଲୋକେ ଆନ କରି ତା ନ ପାରିବେ ।
ସେ ଯା ବୋଲୁଥିବେ କରିବ ଯେବେ ତୁମ୍ଭେ
ତେବେ ଭଲ ହୋଇବ ଜାଣୁଅଛୁଁ ଆମ୍ଭେ ।
କୃଷ୍ଣଙ୍କର ସହାୟେ ପାଣ୍ଡବଙ୍କ ପ୍ରୀତି
କର ଯେବେଟି ନ ବସିବ ଯମ କତି ।
ଦୁର୍ଯ୍ୟୋଧନ ବୋଇଲେ ମୁଁ ଯା ବିଚାରୁଛି
ତାହା ଏବେ ଶୁଣ ହେ ଶାନ୍ତନୁଙ୍କ ବହି ।
ପାଣ୍ଡବ ବଳୀୟାର ଅଟନ୍ତି କୃଷ୍ଣଙ୍କରେ
ବନ୍ଦୀ କରି ରଖିବି କୃଷ୍ଣ ଏଣୁ ଘରେ ।
ଏକଥା ଧୃତରାଷ୍ଟ୍ର ନୃପଙ୍କ ମନକୁ
ନ ପାଇଥିଲେ କହିଥାଆନ୍ତୁ ଆମ୍ଭଙ୍କୁ ।
ଧୃତରାଷ୍ଟ୍ର ଶୁଣିଣ ଦୁର୍ଯ୍ୟୋଧନ ବାଣୀ
ମଲୁ ବୋଲି ପୁତ୍ର ମୁଞ୍ଛିଲେ ନେତ୍ରୁ ପାଣି ।
ଆସୁଛନ୍ତି ଶ୍ରୀକୃଷ୍ଣ ହୋଇକରି ଦୂତ
କାହିଁକି ତାଙ୍କୁ ବନ୍ଦୀ କରିବୁ କହତ ।
ପୁଣି ତୋହର ସେହୁ ସମ୍ବନ୍ଧୀ ଅଟନ୍ତି
ଲାଜ ଛାଡି ଦେଲାନି ବାବୁ କି ତୋ ମତି ।
ଏଡେ ପାପ କଥାକୁ ପାପୀ ବିନା ଆନ
ଲୋକର କହିବାକୁ ହେବ କାହିଁ ଜ୍ଞାନ ।
ଭୀଷ୍ମ ବୋଇଲେ ହେ ରାଜନ କହ କିସ
ତୁମ୍ଭର ପୁଅ ଲୋଡୁଅଛି ବିଷଗ୍ରାସ ।
ତୁମ୍ଭେ ମଧ୍ୟ ପୁଅ କଥାରେ ବଶ ହୋଇ
ଭଲ ମନ୍ଦ କିଛି ନ ଜାଣ ନରସାଇଁ ।
ତୁମ୍ଭ ପାଶରେ ରହି ଶୁଣୁଥିଲେ ଏହା
ନିନ୍ଦା ମୋତେ କରିବେ ସର୍ବ ନରନାହା ।
ଆହ ଜନ୍ମେଜୟ ଏରୂପେ ଭୀଷ୍ମ କହି
ବାହାରିଲେ ଘରକୁ ଅତି ତୋରା ହୋଇ ।
କୃଷ୍ଣ ତ ରହିଥିଲେ ବୃକସ୍ଥଳୀ ଗ୍ରାମ
ରାତ୍ର ଶେଷ ହୁଅନ୍ତେ ସାରି ନିତ୍ୟକର୍ମ ।
ହସ୍ତିନାକୁ ଯିବାକୁ ଚଢିଲେ ରଥକୁ
ବୁହାଇ ମଣ୍ଡାଇଲେ ସେ ଗ୍ରାମପଥକୁ ।
ବୃକସ୍ଥଳୀ ବାସୀଏ ଖଣ୍ଡେ ଦୂର ଆସି
କୃଷ୍ଣଙ୍କୁ କହିଣ ଘରକୁ ଗଲେ ହସି ।
ଦୁର୍ଯ୍ୟୋଧନ ବିନା କୁରୁଏ ହୋଇ ଗୋଟି
ବାହାରିଲେ ବାଟକୁ କୃଷ୍ଣଙ୍କୁ ପାଛୋଟି ।
ପୁରଜମାନେ ଯେ କୃଷ୍ଣଙ୍କର ମୁଖ
ଦେଖିବାକୁ ମଧ୍ୟ ଗଲେଟି ଲଭି ସୁଖ ।
ବାଟେ କୁରୁରଥୀଙ୍କ ସଙ୍ଗେ କୃଷ୍ଣ ଦେଖା
ହୋଇଣ ସଙ୍ଗଳନା କରିଣ ଅଲେଖା ।
ହସ୍ତିନା ରାଜଧାନୀ ନିକଟରେ ହେଲେ
ହୋଇଛି ମଣ୍ଡା ପୁର ନୟନେ ଦେଖିଲେ ।
ହସ୍ତିନା ନାରୀମାନେ କୃଷ୍ଣଙ୍କ ବଦନ
ଦେଖିବାରେ ପଲକ ନୋହିଲା ଚଳନ ।
ଲୋକଙ୍କେ ଆବୃତ୍ତ ହେବାରେ କୃଷ୍ଣ ଘୋଡା
ମାନେ ଚଳିବାରେ ପାଇଲେ ମହାପୀଡା ।
ରଥକୁ ଦୁଆରେ ରଖାଇ ହୃଷୀକେଶ
ଧୃତରାଷ୍ଟ୍ର ପାଶରେ ହୋଇଲେ ପ୍ରବେଶ ।
ଶ୍ରୀକୃଷ୍ଣ ଆସିବାର ଶୁଣି ଧୃତରାଷ୍ଟ୍ର-
ନୃପ ଆସନରୁ ଉଠିଲେ ହୋଇ ହୃଷ୍ଟ ।
ଭୀଷ୍ମ, ଧୃତରାଷ୍ଟ୍ର ବାହ୍ଲିକ, ସୋମଦତ୍ତ
ଦ୍ରୋଣ ଯେ ଅଶ୍ୱତ୍ଥାମା ଏହାଙ୍କୁ ଅଚ୍ୟୁତ ।
ନମସ୍କାର କରିଣ ଦିବ୍ୟ ଆସନରେ
ବସିଲେ ନରହରି କୃଷ୍ଣ ସୁମନରେ ।
ତା ଦେଖି ପୁରୋହିତେ ବହିଣ ତୋଷକୁ
ଗାଈ ଜଳ ଦେଇଣ ପୂଜିଲେ କୃଷ୍ଣଙ୍କୁ ।
ସମ୍ବନ୍ଧୀ ଲେଖା କରି କୁରୁଙ୍କୁ ମାଧବ
ପରିହାସ କଥାରେ ବଳାଇଲେ ଭାବ ।
ଟିକିଏ ରହି ଧୃତରାଷ୍ଟ୍ରଙ୍କୁ ମେଲାଣି
ମାଗି ବାହାରିଲେ ସେଠାରୁ ସେହିକ୍ଷଣି ।
ବିଦୁରଙ୍କର ଘରେ ହୁଅନ୍ତେ ପ୍ରବେଶ
ବିଦୁର ପୂଜା କଲେ ବହିଣ ସନ୍ତୋଷ ।
ଏ ବିନା କହିଲେ ତୁମ୍ଭଙ୍କୁ ଦେଖି ମତି
ଯା ହେଉଛି କି କହି ପାରିବି ଶ୍ରୀପତି ।
ଆଜି ମୋହର ଭାଗ୍ୟ ହେବାରୁ ପ୍ରକାଶ
ମୋ ଘରକୁ ଆସିବା ହେଲ ପୀତବାସ ।

ଏଥିଅନ୍ତେ ପାଣ୍ଡବମାନଙ୍କ କୁଶଳ
ପଚ୍ଛରିଲେ ବିଦୁର ଶୂଦ୍ରସ୍ତିରୀବାଳ ।
ବିଦୁରଙ୍କୁ ପାଣ୍ଡବମାନଙ୍କର କଥା
କହିଣ କୃଷ୍ଣ ଛଡାଇଲେ ହୃଦବ୍ୟଥା ।
ସେହିଦିନ ବେଳ ପ୍ରହର ତିନି ଶେଷ
ହୁଅନ୍ତେ କୃଷ୍ଣ ଗଲେ କୁନ୍ତୀଦେବୀ ପାଶ ।
କୁନ୍ତୀଙ୍କର ପାଦ ଦେଶରେ ସେ ପ୍ରଣମି
ଛିଡା ହେଲେ ଆଗରେ ତ୍ରିଜଗତସ୍ୱାମୀ ।
ଦୁଇ ହାତରେ କୁନ୍ତୀଧରି କୃଷ୍ଣ ଗଳା
ନୟନ ଅଶ୍ରୁଧାରା ହୃଦେ କରି ମାଳା ।
ବୋଇଲେ ହେ କୃଷ୍ଣ ମୋ ପୋଏ ବନବାସୀ
ହୋଇଣ ଦିନ ନେଲେ ରାଜ୍ୟକୁ ନ ଆସି ।
ଦେଖ ମୁଁ ତାଙ୍କ ବିନା ହୋଇଛି ଅନାଥ ।
କହ ତୁମ୍ଭେ ହୋଇଛ କି ମୋ ପୁତ୍ରନାଥ ।
ନିତି ଶଙ୍ଖ ଭେରୀ ତାହାଙ୍କ କର୍ଣ୍ଣ ବେନି
ଶୁଣୁଥିଲା ଏବେ ଶୁଣୁଛି ବାଘଧ୍ୱନି ।
ଶ୍ରୀମନ୍ତ ସତ୍ୟବନ୍ତ ହ୍ରୀମନ୍ତ ଦୟାବନ୍ତ
ଏ ମହୀରେ ବୋଲନ୍ତି ମୋର ଜ୍ୟେଷ୍ଠସୁତ ।
ଅମ୍ବରୀଷ ମାନ୍ଧାତା ନହୁଷ ପରାୟେ
କୀର୍ତ୍ତିଖ୍ୟାତ କଲେ ମହୀରେ ହୋଇ ରାୟେ ।
ରାଜରଷିମାନଙ୍କରେ ସେ ପୁରନ୍ଦର
ଅଟନ୍ତି ମାନନୀୟ ସର୍ବ ନୃପଙ୍କର ।
ସବୁ ରାଜଗୁଣେ ସଂଯୁତେ ତାଙ୍କ କାୟେ
ହାରିଯିବେ ବଳେ ତାହାଙ୍କୁ ବେଦତାଏ ।
ଜମ୍ବୁନଦର ପରି ତାହାଙ୍କର କାନ୍ତି
ସରି କଲେ ମଳିନ ହେବ ବିଦ୍ୟୁ ଜ୍ୟୋତି ।
ଏରୂପେ ମୋର ପୁତ୍ର ଯୁଧିଷ୍ଠିର ରାଜା
ଅଛନ୍ତିଟି ବସି ଆନନ୍ଦ ଧରି ମଜ୍ଜା ।
ନାଗାୟୁତ ଜାଣ ସେ ଭୀମ ମହାବଳୀ
ସବୁ ଶତ୍ରୁଙ୍କର ବଳକୁ ପାରେ ଦଳି ।
ପବନର ସମାନ ଅଟଇ ଗତିରେ
ମହେଶ୍ୱରଙ୍କ ପରି ସେ କ୍ରୋଧ ମତିରେ ।
ମହାତେଜ ସମୂହରେ ସେ ଅଟେ ଯୁତ
କହ ସୁଖେ ରହିଅଛ କି ମୋର ସୁତ ।
ଦୁଇ ବାହୁ ବହି ସହସ୍ର ବାହୁ ତୁଲ୍ୟ
ଯେଉଁ ଅରଜୁନ ବୀରଙ୍କରେ ଅତୁଲ୍ୟ ।
ଅସ୍ତ୍ର ଜ୍ଞାନରେ ତାଙ୍କ ପରି ମହାଦେବ
ହେବେ ଥିବା ବୋଲି ବଚନ ବାହାରିବ ।
ତେଜରେ ସୂର୍ଯ୍ୟ ଅଗ୍ନି ସମାନ ଅଟନ୍ତି
ଦମରେ ମହାରଷିପନ୍ତିଙ୍କି ନିନ୍ଦନ୍ତି ।
କ୍ଷମାଗୁଣେ ତାହାଙ୍କୁ ଊଣା ହେବ କ୍ଷମା
ଅଟନ୍ତି ସବୁ ଗୁଣମାନଙ୍କର ସୀମା ।
ଯାହାଙ୍କ ବାହୁକୁ ପାଣ୍ଡବେ ଆଶ୍ରେ କରି
ବୋଲୁଛନ୍ତି ହେବୁଁ ହସ୍ତିନା ଦଣ୍ଡଧାରୀ ।
ତାହାଙ୍କ ତୁଲେ ଯୁଦ୍ଧ କରଇ ଯେ ଯାଇ
ଯମର ପ୍ରୀତି ଟିକି ସେ ଆପେ ବଢାଇ ।
ପ୍ରାଣ ପରି ତୁମ୍ଭର ଅଟଇ ସେ ସଖା
ସ୍ୱପନରେ ଦୁଃଖ ନ ଥିଲା ତାଙ୍କ ଦେଖା ।
ଏବେ ଦୁଃଖ ପାଇଣ ବନରେ କେମନ୍ତେ
ଅଛନ୍ତି ଆହେ କୃଷ୍ଣ କହ ତାହା ମୋତେ ।
ଦୟା ଲଜ୍ଜା ମୃଦୁ ଗୁଣରେ ସହଦେବ
ଯୁତ ହୋଇ ଜିଣିଛି ସକଳ ମାନବ ।
ଶୂରପଣେ ତାର ସମାନ ଏକା ସେହି
ଭାଇଙ୍କଠାରେ ନିତି ସ୍ନେହ ଥାଏ ବହି ।
ବର୍ଷ ତେର ହେଲା ସେ କଲା ବନବାସ
କହ ସୁଖେ ଅଛି କି ଆହ ପୀତବାସ ।
ସୁନ୍ଦର ସୁକୁମାର ନକୁଳ ପୁଅଟି
ମୋର ଭଲେ ଅଛିଟି କହିବା ହେଉଟି ।
ଏ ଆଖିରେ ଥରେ ସେହି ପାଞ୍ଚପୁଅଙ୍କୁ
ଦେଖିଲା ପରି କୃଷ୍ଣ ନ ଆସେ ମନକୁ ।
ଦ୍ରୁପଦ ରାଜାଙ୍କର ଅଟନ୍ତି ଦୁହିତା
ଏ ମହୀମଣ୍ଡଳରେ ସେ ଏକା ପତିବ୍ରତା ।
ସୁନ୍ଦରପଣେ ରମା ରତି ଉମା ପରି
ଅପ୍‌ସରୀ ରହିବେ ଦେଖିଲେ ଅପସରି ।
ମୋ ପୁଅ ପାଞ୍ଚଙ୍କ ଅଟନ୍ତି ପ୍ରିୟକାରୀ
ଦୌପଦୀ ସୁଖେ କହ ଅଛନ୍ତି କି ହରି ।
ଦ୍ରୌପଦୀଙ୍କଠାରୁ ନ ଥିବ ପୁଣ୍ୟକର୍ମା
ସେ ଯେବେ ଲଭିବେନି ମହା ଦୁଃଖ ସୀମା ।
ତେବେ ମୁଁ ମନେ କରୁଅଛିଁ ଚକ୍ରଧର
ଲୋକଙ୍କର ବ୍ୟର୍ଥଟି ପୁଣ୍ୟ କରିବାର ।
ଦ୍ରୌପଦୀଙ୍କ ସଭାରେ ଦୁର୍ଯ୍ୟୋଧନ ପାପ
ଛିଡା କଲା କାଳେ ମୋ ଜ୍ଞାନ ହେଲା ଲୋପ ।

ମନେ କଲି ପୁଅମାନେ ମୋ ଜୀଇଛନ୍ତି
କଷ୍ଟଯୋଗ୍ୟ ହୋଇଲେ ଦ୍ରୁପଦ ଦୁହିତୀ ।
ପୁଣି ମୋର ବଧୁସ୍ତିରୀଧର୍ମା ହୋଇ
ପିନ୍ଧିଥିଲା ଗୋଟିଏ ବସ୍ତ୍ର ଯଦୁସାଇଁ ।
କୁରୁମାନେ ତ ତାହା ଦେଖି କରି ସୁଖ
ପାଉଥିଲେ ତଳକୁ ନ ପୋତିଣ ମୁଖ ।
ଭୀଷ୍ମ ଦ୍ରୋଣକୃପ ତା ଦେଖି ଦୁଃଖ କଲେ
ବିଦୁର ଦ୍ରୌପଦୀଙ୍କ ପାଇଁ ଯୁକ୍ତି ଦେଲେ ।
ବିଦୁରଙ୍କ କଥା ସେ ଦିନୁଁ ମୋର ମନେ
ବଡ ହିତ ହୋଇ ରହିଛି ଅବିଚ୍ଛିନ୍ନେ ।
ସଚ୍ଚରିତ୍ର ହୋଇଲେ ସିନା ଲୋକ ଶ୍ରେଷ୍ଠ
ବୋଲାଏ ଆଉ କଥାମାନ ସବୁ ଭ୍ରଷ୍ଟ ।
ବିଦୁରଙ୍କ ଗୁଣ ମୁଁ ସସ୍ରେ ଜନମରେ
ଶୁଝି ନ ପାରିବି ହେ ଭାବୁଛି ମନରେ ।
କୁତ୍ସିତ ନୃପେ ସିନା ମଦ୍ୟ ଜୁଆସ୍ତିରୀ
କଥାରେ ପ୍ରବର୍ତ୍ତି ନିଅନ୍ତି ଦିନ ହରି ।
ଯୁଧିଷ୍ଠିର ରାଜା ତ ଅଟନ୍ତି ଧାର୍ମିକ
ଜୁଆଖେଳ କଥାକୁ କରନ୍ତି କି ଶୋକ ।
ଦ୍ରୌପଦିଙ୍କ କୁରୁ ସଭାରେ ଦେବା କ୍ଳେଶ
ଅଗ୍ନି ଦହୁଅଛି କୃଷ୍ଣ ମୋହର ମାନସ ।
ପୁଅ ବୋହୂ ଛାଡି ମୁଁ ଯା ଘରେ ରହିଛି
ଏଥିରୁ ଆଉ ଦୁଃଖ ଅଧିକ କି ଅଛି ।
ତାଙ୍କ ତୁଲେ ଥାଇ ପାଆନ୍ତି ଯେବେ ଦୁଃଖ
ତେବେ ତାହା ମଣୁଥାଆନ୍ତି ମୁହିଁ ସୁଖ ।
ଜୁଆଖେଳ ଅବଧି ସାରି ମୋର ପୋଏ
ରହି ଯାଇଛନ୍ତି ଦୁଃଖ ଶୀର୍ଣ୍ଣ କରି କାୟେ ।
ଏଣୁ ମୁଁ ମଣୁଅଛି ଦଇବ ବିମୁଖ
ନୋହିଲେ ହେବ ଏବେ ମୋ ପୁଅଙ୍କ ସୁଖ ।
ମୋର ଯେବେ କୁରୁ ପାଣ୍ଡବେ ସମ ପ୍ରୀତି
ଥିବ ତେବେ ଜିଣିବେ ମୋହର ସନ୍ତତି ।
ବାପେ ତ କୁନ୍ତିଭୋଜ ରାଜା ମୋତେ ଦେଲେ
ତେଣୁକରି ପାଣ୍ଡୁ ମୋତେ ତ ବିଭା ହେଲେ
ପାଣ୍ଡୁଙ୍କୁ ବିଭାହେବା ସକାଶୁଁ ଏ କଷ୍ଟ
ପାଇଲି ମୁଁ ଜାଣ ହେ ଯଦୁକୁଳଶ୍ରେଷ୍ଠ ।
ଅର୍ଜୁନ ଜନ୍ମକାଳେ ଆକାଶୁଁ ବଚନ
ଶୁଣିଛି ଜିଣିବ ଏ ପୁତ୍ର ତ୍ରିଭୁବନ ।

ଭାଇଙ୍କ ତୁଲେ ତିନି ଅଶ୍ୱମେଧ କରି
ମହୀରେ ହେବ ଚନ୍ଦ୍ର ପରି କୀର୍ତ୍ତିକାରୀ ।
ସେହି ଆକାଶବାଣୀ ଏବେ ତ ଅନ୍ୟଥା
ହୋଇଲା ତେବେ ମୋର ହେଉନାହିଁ ବ୍ୟଥା ।
ଧର୍ମେ ରହିଁ କରି କହୁଛି ଯୋଗ ଥିଲେ
ପାଇବୁଁ ସୁଖ ଆମ୍ଭେ ତୁମ୍ଭ ବଳେ ଭଲେ ।
ଅର୍ଜୁନଙ୍କୁ ନ ଦେଖି ମୋ ଆଖି ଦିଓଟି
ନିରନ୍ତରେ ଗୋବିନ୍ଦ ଯାଉ ଅଛି ଫୁଟି ।
ଯୁଧିଷ୍ଠିର ଭୀମ ନକୁଳ ସହଦେବ
ଏହାଙ୍କୁ ଥରେ ନ ଦେଖିଲି ମୁଁ ମାଧବ ।
ଯେବେ ଯିବ କହିବ ଥରେ ମୋ ପୁଅଙ୍କୁ
କାହିଁପାଇଁ ଛାଡି ଦେଉଛ ସ୍ୱଧର୍ମକୁ ।
ପରେ ଆଶ୍ରେ କରି ଜୀବ ଯେ ଅଛି ଧରି
ବୁଝିଲେ ସେ କଥା ଅଟଇ ମୃତ୍ୟୁ ସରି ।
ଭୀମ ନିତି ବସି ଆଉଁସୁଥାନ୍ତି ନିଶ
ତାହାଙ୍କୁ ଅର୍ଜୁନଙ୍କୁ କହିବ ମୋ ଭାଷ ।
ଯହିଁ ପାଇଁ କ୍ଷତ୍ରିୟସ୍ତିରୀ ସୁତ ଜାତ-
କରେ ସେକାଳେ ହୋଇଅଛି ଉପଗତ ।
ଏ ବାହାରେ ନକୁଳ ସହଦେବ ଦୁଇ
ଭାଇଙ୍କ କହିବ ବିକ୍ରମ ଗଲା କାହିଁ ।
କ୍ଷତ୍ରିୟ ଯେବେ ବଳେ ଅର୍ଜଇ ଅନର୍ଥ
ତହୁଁ ତାର ଆଉ ନାହିଁଟି ପୁରୁଷାର୍ଥ ।
ଭୀମ ଅରଜୁନ ହୋଇବେ ଯେବେ କ୍ରୋଧ
ପଳାଇବେ ଯୁଦ୍ଧଦାଣ୍ଡରୁ ଯେ ବିବୁଧ ।
ସୁଯୋଧନ ଭୀମଠାକୁ ଯେବେଟି ଯୁଝି
ଯିବ ମୁଁ ଜାଣୁଛି ଶୋଇବ ରଣ ମଝି ।
ଭୀମଠାରେ ବୈର ଆଚରି କରି ଦେହୀ
ଜୀବନେ ରହିବ କେ ଅଛି ଦିଶୁନାହିଁ ।
ଭୀମ ଯାହା ଠାବରେ କରିଥାଏ କ୍ରୋଧ
ଅବଶ୍ୟ ତାକୁଟି କରଇ ରଣେ ବଧ ।
ପୁତ୍ରଙ୍କ ବଳ ପଉରୁଷେ କିଛି କାର୍ଯ୍ୟ
ନାହିଁ କରିବାରେ ଜାଣ ହେ ଯଦୁରାଜ ।
ଆପଣ ନାଥ ହୋଇ ଥିବାଠାରେ ସେହି
ଅନାଥ ହୋଇ କିମ୍ପା ବୁଲୁଛନ୍ତି ମହୀ ।
ଏଥିରୁ ବଡ କି ଆଶ୍ଚର୍ଯ୍ୟ କଥା ଥିବା
ପରି ଦିଶୁନାହିଁ ହେ ଆଉକି କହିବା ।

ଶ୍ରୀକୃଷ୍ଣ ବୋଇଲେ ହେ ଶୂରଙ୍କ ଦୁହିତା
ହୋଇ ହେଲେ ପାଣ୍ଡୁ ନୃପଙ୍କର ବନିତା ।
ଇନ୍ଦ୍ରଙ୍କ ପରି ପାଞ୍ଚପୁଅ ପାଇ କରି
ଯାହା ଭାଳୁଅଛ ମନରେଦୁଃଖ ଧରି ।
ଏ କଥା ଦେଖି ମୁଁ ଭାବୁଛି ଦୁଃଖ ସୁତ
ଖଞ୍ଜି ଅଛି ସଭିଙ୍କି ଦଇବ ମୁରୁଖ ।
ତୁମ୍ଭ ପୁଏ ଗ୍ରାମ ସୁଖକୁ ଛାଡି କରି
ବିହରୁଛନ୍ତି ବନେ ଦେବତାଙ୍କ ପରି ।
କହିଛନ୍ତି ତୁମ୍ଭଙ୍କୁ ବହୁତ ପ୍ରଣତ
ବଧୂଙ୍କର ତୁଲରେ ଜାଣ ଆଗୋ ମାତ ।
କୁନ୍ତୀ ବୋଇଲେ ମୁହିଁ ଆହେ ଚକ୍ରବାହା
କି କହିବି ଯେ ଇଚ୍ଛା ହୁଏ କର ତାହା ।
କପଟ ଅଧରମ କଥାକୁ କେବଳ
ଆଚରିବ ନାହିଁ ହେ ବସୁଦେବବାଳ ।
ତୁମ୍ଭର ପ୍ରଭାବ ମୁଁ ଜାଣିଅଛି ସବୁ
ତୁମ୍ଭେ ଥିବାଠାରେ ବା କାହିଁକି ଭାଳିବୁ ।
ଆମ୍ଭ କୁଳେ ସାକ୍ଷତ ଧର୍ମଦେବ ତୁମ୍ଭେ
ତୁମ୍ଭଙ୍କୁ ଆଶ୍ରେ କରି ଭଲ ହେବୁଁ ଆମ୍ଭେ ।
ଆହେ ଜନ୍ମେଜୟ ଏରୂପେ କୁନ୍ତୀବାଣୀ
ଶୁଣି ହୃଷ୍ଟ ହୋଇ ହୃଦେରେ ଚକ୍ରପାଣି ।
କୁନ୍ତୀଙ୍କି ପ୍ରଦକ୍ଷିଣ କରିଣ ନମିଲେ
ପୁଣି ଦୁର୍ଯ୍ୟୋଧନଙ୍କ ଘରକୁ ଗମିଲେ ।
ଦେଖିଲେ ସେ ଘରକୁ ପୁରନ୍ଦରପୁର
ଶୋଭାକୁ ଗଛାଇଲେ ହେବ ପଟାନ୍ତର ।
ସେ ଘର ପାଶରେ ପ୍ରାସାଦୁଟାଏ ଅଛି
ତହିଁରେ ଉଠିଲେ ଦେବକୀଦେବୀବତ୍ସି ।
ସେ ଜଗତୀ ମଧ୍ୟେ ବସିଛି ସୁଯୋଧନ
ତାହାଙ୍କୁ ବେଢ଼ିଛନ୍ତି ସହସ୍ରେ ରାଜନ ।
ଦୁଃଶାସନ କର୍ଣ୍ଣ ଯେ ଶକୁନି ତିନିହେଁ
ବସିଛନ୍ତି ତା ପାଶେ ଲାଗିଣ ସେନେହେ ।
ଦୁର୍ଯ୍ୟୋଧନ କୃଷ୍ଣଙ୍କୁ ଦେଖିଣ ନୟନେ
ନୃପ ମନ୍ତ୍ରୀ ତୁଲରେ ଉଠିଲେ ବହନେ ।
ତାହା ଦେଖି କରି ଶ୍ରୀକୃଷ୍ଣ ମହାମନା
କଲେ କୁଳ ଅନୁରୂପରେ ସମ୍ଭାବନା ।
ସୁବର୍ଣ୍ଣ ଆସନରେ ଦୁର୍ଯ୍ୟୋଧନ ତୁଲେ
ବୀର ଆସନରେ ଯେ ଶ୍ରୀକୃଷ୍ଣ ବସିଲେ ।

ଦୁର୍ଯ୍ୟୋଧନ କୃଷ୍ଣଙ୍କୁ ପୂଜାବିଧି କଲେ
ବଚନରେ ଆପଣେ ସମର୍ପି ହୋଇଲେ ।
କୁରୁମାନେ ରାଜାମାନଙ୍କୁ ସଙ୍ଗେ ଧରି
ରହିଲେ କୃଷ୍ଣ ଚଉପଟେ ବେଢ଼ି କରି ।
ଏଥୁ ଅନନ୍ତରେ ବୋଇଲେ ଦୁର୍ଯ୍ୟୋଧନ
ଉଠିବା ହେଉ କୃଷ୍ଣ କରିବା ଭୋଜନ ।
କୃଷ୍ଣ ବୋଇଲେ ମୁଁ ଆସିଛି ବାଟେ ଖାଇ
ତୁମ୍ଭର ଘରେ ଭୁଞ୍ଜି ପାରିବି ମୁଁ ନାହିଁ ।
ଦୁର୍ଯ୍ୟୋଧନ ବୋଇଲେ ତୁମ୍ଭ ପାଇଁ ଭୋଜ୍ୟ
ସାମଗ୍ରୀଯାକ ମୁଁ କରିଅଛି ଭୁଞ୍ଜ ।
ତୁମ୍ଭେ ଆମ୍ଭ ସମ୍ବନ୍ଧୀ ହୋଇ ଏହିରୂପେ
କହିବାର ହେଲି କି କହ କୃଷ୍ଣ ଆପେ ।
କୃଷ୍ଣ ଶୁଣିଣ ଦୁର୍ଯ୍ୟୋଧନର ଉତ୍ତର
କହିଲେ ମେଘପରି ଗମ୍ଭୀର କି ସ୍ୱର ।
ମୁହିଁ ଆସିଅଛି ଦୂତ କାର୍ଯ୍ୟ କରି
ଏବେ ମୁଁ ତୁମ୍ଭ ଘରେ ଖାଇବି କିପରି ।
ଯେବେ ତୁମ୍ଭେ କରିବ ମୋ ଆସିବା କାର୍ଯ୍ୟ
ତେବେ ମୁଁ ଖାଇବି ଜାଣ ହେ ନରରାଜ ।
ଦୁର୍ଯ୍ୟୋଧନ ବୋଇଲେ ମୁଁ ତ ତୁମ ଶତ୍ରୁ
ନୁହେ ନ ଭୁଞ୍ଜୁଛ କହ ତ କେଉଁ ହେତୁ ।
ଏହା ଶୁଣିଣ କୃଷ୍ଣ ଅଳପ ହସିଲେ
ଦୁର୍ଯ୍ୟୋଧନ ମୁଖକୁ ଚହିଁଣ ଭାଷିଲେ ।
ପ୍ରୀତିରେ ବିପତ୍ତିରେ ପରଘରେ ଭାତ
ଖାଇବ ଏହି କଥା ସବୁରିଟି ମତ ।
ଆମ୍ଭର ତ ପୀରତି ହୋଇନାହିଁ ତୁମ୍ଭେ
କିରୂପେ ତୁମ୍ଭ ଘରେ ଖାଇବୁଟି ଆମ୍ଭେ ।
ଦେଖୁଛ ତ ମୋ ଦେହ ମହାବଳ ବହି
ଅଛି ବିପତ୍ତିଟିଏ ହୋଇବ କାହିଁ ପାଇଁ ।
ଯେବେଟି ଦଇବରେ ପଡ଼ିବ ବିପତ୍ତି
ତେବେସବୁ କରିବୁ ଛାଡ଼ି କୁଳରୀତି ।
ପାଣ୍ଡବଙ୍କଠାରେ ହୋଇଛ ତୁମ୍ଭେ ଦୋଷୀ
ଯେ ତାହାଙ୍କର ଦୋଷୀ ସେ ମୋହର ଦୋଷୀ
ପାଣ୍ଡବଙ୍କଠାରେ ଯେ ବହିଥାଏ ଭାବ
ତାହାଠାରେ ମୋହର ନ ଥାଏ ଅଭାବ ।
ପାଞ୍ଚ ପାଣ୍ଡବଙ୍କର ପଚିଶଟି ପ୍ରାଣ
ତହିଁ ମଧ୍ୟେ ପ୍ରାଣ ମିଶିଛି ମୋର ଜାଣ ।

ଯେ କାମ କ୍ରୋଧବଶେ ଗୁଣବନ୍ତଠାରେ
ଦୋଷ କରଇ ସେହୁ ମରଇ କୁଠାରେ ।
ଉତ୍ତମ ଜ୍ଞାତିକି ଯେ ନ ପାଳେ ବିପତ୍ତି
ତାହା ମୂଳେ ଗୋଡାଇ ରହିଥାଏ ନିତି ।
ଗୁଣବନ୍ତ ଜ୍ଞାନିକୀ ରଖିଥିଲେ ପାଶେ
କୀରତି ତାହାରଟି ବଢଇ ବିଶେଷେ ।
ବିଦୁରଙ୍କର ବିନା ତୁମ୍ଭମାନଙ୍କର
ଅନ୍ନ ଖାଇବାକୁ ହେ ମନ ନାହିଁ ମୋର ।
ଆହେ ଜନ୍ମେଜୟ ଏରୂପେ କୃଷ୍ଣ କହି
ଦୁର୍ଯ୍ୟୋଧନ ପାଶୁଁ ଉଠିଲେ ତୋରା ହୋଇ
ବିଦୁରଙ୍କର ଘରେ ଯାଇଣ ରହିଲେ
ତହିଁ ଭୀଷ୍ମଦ୍ରୋଣ ବାହ୍ଲିକ କୃପ ଗଲେ ।
ବୋଇଲେ ଆମ୍ଭ ଘରେ ରହିଣ ଗୋବିନ୍ଦ
ବଢାଅ ଆମ୍ଭମାନଙ୍କର ହେ ଆନନ୍ଦ ।
କୃଷ୍ଣ ବୋଇଲେ ମୁଁ ପାଇଲି ଏବେ ସବୁ
ଘରକୁ ଯାଅ ଆମ୍ଭେ ଏଠାରେ ରହିବୁଁ ।
କୁରୁବୃଦ୍ଧେ ଯିବା ଉତ୍ତାରୁ ସେ ବିଦୁର
ଭୋଜନ ସାମଗିରୀ କରାଇ ତିଆରି ।
ଠାଆପିଢା କରି କୃଷ୍ଣଙ୍କୁ ଘେନିଗଲେ
ତଦଅନ୍ତରେ ଘରୁ ବଢାବଢି କଲେ ।
କୃଷ୍ଣ ସେହି ଅନ୍ନକୁ ଦେଖି ତୋଷୀ ହେଲେ
ଦ୍ୱିଜଙ୍କୁ ଆଗ ତହୁଁ ଅଧେ ଅନ୍ନ ଦେଲେ ।
ପଛେ ଦାଶରଥିଙ୍କି ଘେନିଣ ଗୋବିନ୍ଦ
ଭୁଞ୍ଜିଲେ ସେହି ଅନ୍ନ ହୋଇଣ ଆନନ୍ଦ ।
କୃଷ୍ଣ ଭୋଜନ ସାରି ଉଠିବା ଉତ୍ତାରେ
ବିଦୁର ଜଣାଇଲେ କୃଷ୍ଣଙ୍କ ଛାମୁରେ ।
ଦୂତ ହୋଇ ଆପଣ ଏଥି ଆସିବାର
ଯୋଗାଉ ନାହିଁ ମୋ ମନକୁ ଦାମୋଦର ।
କ୍ରୋଧ ନ ବୁଦ୍ଧି ଧର୍ମଶାସ୍ତ୍ର ଅତିକ୍ରମୀ
ସର୍ବଶଙ୍କୀ ଦୁଷ୍ଟଆତ୍ମା ଯେ ମାନକାମୀ ।
ମିତ୍ରଦ୍ରୋହୀ ପ୍ରଜ୍ଞାମାନୀ ଯେ ନୀତିହୀନ
ଅକୃତଜ୍ଞ ଅଜିତେନ୍ଦ୍ରିୟ କୃତଘନ ।
ଏରୂପେ ଯେଉଁ ଦୁର୍ଯ୍ୟୋଧନ ନୃପବର
ତା ସଙ୍ଗେ କେଉଁ କଥା କରିବି ବିଚାର ।
ଭୀଷ୍ମ ଦ୍ରୋଣ ଦ୍ରୋଣି କର୍ଣ୍ଣ ଯେ ଜୟଦ୍ରଥ ।
ବଳ ପାଇ ହୋଇଛି ସେ ଅତି ସମର୍ଥ ।
ରାଜାଗୁଡାଏ ତ କରିଅଛି ସେ ଗୋଟି
ଏଣୁ ଦେହ କରିଛି ଆନନ୍ଦେ ମୋଟାଟି ।
ଦୁର୍ଯ୍ୟୋଧନ ମତରେ ଏକା ମୋର କର୍ଣ୍ଣ
ତିନିପୁର ଜିଣି ପାରଇ କଲେ ମନ ।
ପାଣ୍ଡବଙ୍କ ପାଇଁକହିବ ତୁମ୍ଭେ ଯାହା
ଘେନିବ ନାହିଁ ସେ ଜାଣୁଛିଁ ଚକ୍ରବାହା ।
ବଧିର ଆଗେ ଗୀତ ଗାଇଲେ ଗୋବିନ୍ଦ
କେବେ ଲୋକ କରି ପାରେ କି ତା ଆନନ୍ଦ ।
ଦୁର୍ଯ୍ୟୋଧନ ରାଜା ତ ହୁଡିଛି ଲାଜକୁ
ତାକୁ କି କଥା ଅଛି ତୁମ୍ଭେ କହିବାକୁ ।
କହିବ ଯେବେ କୁରୁମାନଙ୍କର ହିତ
ସୁଯୋଧନ ତେବେ ତା ଘେନିବ ଅହିତ ।
ନିଷ୍କଣ୍ଟକ ରାଜ୍ୟ ତ ଭାବିଛି ସେ ପାପୀ
ମନେ ମନେ ହୋଇ ସେ ବଳରେ ପ୍ରତାପୀ
ଦଇବ ତ ସଭିଙ୍କି ହୋଇଅଛି ବାମ
ହୋଇଛନ୍ତି ନୃପେ ନିରତେ ଯୁଦ୍ଧକାମ ।
ଦୁର୍ଯ୍ୟୋଧନ ପାଇଁ ସେ ପାଣ୍ଡବଙ୍କୁ ମାରି
ରାଜ୍ୟ ନେବା ବୋଲି ଅଛନ୍ତି ଇଚ୍ଛା କରି ।
ପୂର୍ବେ ତୁମ୍ଭ ବୈରୀ ଅଟନ୍ତି ଯେତେ ରାଜା
ଏବେ ସେ ସୁଯୋଧନ ନୃପେ କଲେ ପୂଜା ।
ତୁମ୍ଭ ନାଶ କରିବା ପାଇଁ ହୃଷୀକେଶ
ଏଥିରେ କହିବାକୁ କଥା ଅଛି କିସ ।
ଆପଣ ଯେବେ ତାଙ୍କ ମଧ୍ୟକୁ ହେ ଯିବ
ଜାଣୁଛିଁ ଅବଶ୍ୟ କଳହ ଉପୁଜିବ ।
ତୁମ୍ଭର ପ୍ରଭାବକୁ ଜାଣୁଅଛି ମୁହିଁ
ଧରିଥିଲେ ଚକ୍ର ଜିଣିବ ଶଚୀସାଇଁ ।
ଏମନ୍ତ ହେଲେ ତୁମ୍ଭ ସ୍ନେହପାଶେ ପଡି
ଜଣାମଣା କଲି ହୃଦୟ କଥା ଫେଡି ।
ସବୁ ଦେହୀଙ୍କର ହୃଦରେ ତୁମ୍ଭେ ଅଛ
ଯାର ଯେ ଭଲମନ୍ଦ ତାହା ତ ଜାଣୁଛ ।
ମୋ କହିବାରୁ ଯେବେ ବାହାରିବ ଦୋଷ
କ୍ଷମା ତାହା କରିବ ଜଗତନିବାସ ।
କୃଷ୍ଣ ବୋଇଲେ ହେ ବିଦୁର ମହାରଥୀ
ଜାଣିଲି ମୁହିଁ ତୁମ୍ଭ ହୃଦୟର କଥା ।
ମାତା ପିତା ପରି ତ କହିଲ କଥାକୁ
ଏଥିରୁ ହିତ ଆଉ ନାହିଁ ଘେନିବାକୁ ।

ତୁମ୍ଭେ କହିବାର କଥାଟି ମୁଁ ଜାଣିଛି ।
ଥରେ ବୁଝି ଯିବାପାଇଁ ମୁଁ ଆସଅଛି ।
ଯେଉଁ ଲୋକଟି ପ୍ରାଣୀମାନଙ୍କୁ ମରଣ-
ପାଶୁଁ ରଖେ ଧର୍ମ ନୁହେଁ କି ତାର ଜାଣ ।
ପାଣ୍ଡବଙ୍କ ତୁଲେ କୁରୁଏ ଯୁଦ୍ଧ କଲେ
ଘରକୁ ଯିବେ କି କି ବଞ୍ଚି କରି ଭଲେ ।
ପାଣ୍ଡବେ ତ ହୋଇଅଛନ୍ତି ବଡ କ୍ରୋଧୀ
ତାଙ୍କୁ ନିବର୍ତ୍ତାଇ ଆସଲି ଯାଙ୍କୁ ବୋଧି ।
ଦୁହିଙ୍କଠାରେ ଅଛି ସମ୍ବନ୍ଧ ଆମ୍ଭର
ଏଣୁ ହେଲା ଉଚିତ ଧର୍ମ ଜଗିବାର ।
ଜୀବନ ଥିବାଯାକ ମିତ୍ରଠାରେ ଚିତ୍ତ
ଦେଇ ତାର ଭାବନା କରୁଥିବ ହିତ ।
କର୍ଣ୍ଣ ବୋଲରେ ସୁଯୋଧନ ଭୁଲି ପଡି
ମରିବାକୁ ଯୁଦ୍ଧ-ରୋଗକୁ ଆଣେ ଲୋଡି ।
ଏ ସକାଶୁଁ ହିତବଚନ ଅଉଷଧ
ଦେଇ ତାର ଜୀବକୁ କରିବ ପ୍ରବୋଧ ।
ମୁଁ କହୁଁ କହୁଁ ଯେବେ ସୁଯୋଧନ ଦୁଷ୍ଟ-
କଥାକୁ ଭଜିବ ପାଇବ ତେବେ କଷ୍ଟ ।
ପାପୀ ସୁଯୋଧନକୁ ଧରମେ ତିଆରି
ମୁଁ ତ ନିନ୍ଦାଭାଗରୁ ହୋଇଯିବି ପାରି ।
ପାଣ୍ଡବେ ରାଜ୍ୟ ପାଇଁ କୁରୁ ତୁଲେ ପ୍ରୀତି
କଲେ ବଡ ହୋଇ ପାରିବି ମୁହିଁ କୀର୍ତ୍ତି ।
ଶୁତ୍ରଙ୍କର ପରି ମୋ ତୁଣ୍ଡରୁ ବଚନ
ବାହରୁଥିବ ଶୁଣୁଥିବେ ସଭାଜନ ।
ସବୁ ରାଜାମାନେ ଏକାଠି ହୋଇ ମୋତେ
କିଛି କରି ନ ପାରନ୍ତି ହେ ମହାମତେ ।
ଏରୂପେ ବିଦୁରଙ୍କୁ ରାଧିକା-ବିହାରୀ
କହି ଶୋଇ ପଡିଲେ ନିଦ୍ରା ଇଚ୍ଛା କରି ।
ସେ ରାତ୍ରଶେଷରେ ମାଗଧ ସୁତମାନେ
ସ୍ତୁତି କଲେ ଯାଇ କୃଷ୍ଣଙ୍କ ସନ୍ନିଧାନେ
ଶଙ୍ଖ ଯେ ଦୁନ୍ଦୁଭିର ଘୋଷରେ କେଶବ
ନୟନରୁ ଛାଡିଣଦେଲେ ନିଦ୍ରାଭାବ ।
ସୂର୍ଯ୍ୟୋଦୟ ପୂର୍ବ କାଳରୁ ସ୍ନାନ ସାରି
ସୁଝୀନ ପୀତବାସ ହୋଇଲେ ପହରି ।
ଆଡ କରି ଦୋଷଡା ପକାଇ କାନ୍ଧରେ
ବସି ଜଳାଞ୍ଜୋଳି ସୂର୍ଯ୍ୟେ ଦେଲେ ତୋଷରେ
ତଦଅନ୍ତରେ ଅଗ୍ନି ସ୍ଥାପି କଲେ ହୋମ
ଗାୟତ୍ରି ମନ୍ତ୍ର ପଢି ପୁରୁଷ ଉତ୍ତମ ।
ଏକାଳେ ଦୁର୍ଯ୍ୟୋଧନ ଶକୁନି ଦୁହେଁ ମିଶି
କୃଷ୍ଣଙ୍କର ଛାମୁରେ ଦେଖା ହେଲେ ଆସି ।
ବୋଇଲେ କେତେ ବସି ଦ୍ୱିଜଙ୍କ ପରାୟେ
ହୋମ କରୁଅଛି ହେ ଯଦୁକୁଳ ରାୟେ ।
ଧୃତରାଷ୍ଟ୍ର ସଭା କରି ବସଅଛନ୍ତି
ଭୀଷ୍ମ ଆଦି କୌରବେ ସମସ୍ତେ ଅଛନ୍ତି ।
ତୁମ୍ଭଙ୍କୁ ରହିଛନ୍ତି କରିଣ ଅପେକ୍ଷା
ତୁମ୍ଭର ତ ନିତି ହେଉଅଛି ଅସଂଖ୍ୟା
କୃଷ୍ଣ ବୋଇଲେ ମୁହିଁ ଯାଉଅଛି ବେଗେ
କେତେ ବୋଲୁଅଛ ହେ ମୋତେ କଥାବାଗେ
ଏହା କହି ଦ୍ୱିଜଙ୍କୁ ଗାଇ ସୁନା ଦାନ
ତତକାଳରେ କରି ଦେଲେ ଭଗବାନ ।
ସାରଥି ହାତେ ରଥ ତିଆର କରାଇ
ତହିଁ ମଧ୍ୟେ ଯାଇ ବସିଲେ ତୋରା ହୋଇ ।
ଯେରୂପେ ଉଦୟପର୍ବତରେ ଭାସ୍କର
ସେରୂପେ ରଥ ମଧ୍ୟେ ଦିଶିଲେ ସୁନ୍ଦର ।
କଉସ୍ତୁଭମଣି ହୃଦୟ ଦେଶେ ପଡି
ତେଜରେ ଦେଲା ସୂର୍ଯ୍ୟକରଜାଳ ପୋଡି ।
କୃଷ୍ଣ ଘନରେ ବିଦ୍ୟୁପରି ପୀତବାସ
ଝଟକି କରୁଥିଲା ସବୁରି ଉଲ୍ଲାସ ।
ନାନାଜାତିର ଅଳଙ୍କାରମାନ ଅଙ୍ଗେ
ଶ୍ରୀକୃଷ୍ଣଙ୍କର ବ୍ୟାପି ରହିଥିଲା ରଙ୍ଗେ ।
ସେ ଘେନି କୃଷ୍ଣଦେହ ଦିଶିଲା ଏ ଶୋଭା
ତମାଳବଲ୍ଲୀ ମଧ୍ୟେ ଯେହ୍ନେ ଅଗ୍ନିପ୍ରଭା ।
ବିଦୁର ସେ ସମୟେ କୃଷ୍ଣଙ୍କ ସାଥିରେ ।
ଯିବାପାଇଁ ଚଢିଲେ କୃଷ୍ଣଙ୍କ ରଥରେ ।
ଦୁର୍ଯ୍ୟୋଧନ ଶକୁନି ଆରୋହିଣ ରଥ
ମଣ୍ଡିଦେଲେ ତ କୃଷ୍ଣଙ୍କର ଯିବା ପଥ ।
ସାତ୍ୟକି କୃତବର୍ମା ଆଦି ରଥୀଶ୍ରେଣୀ
କୃଷ୍ଣଙ୍କ ପଛରେ ଗମିଲେ ରଡ ଘେନି ।
ସେ ରଥମାନଙ୍କର ଶ୍ୱବଦ ମେଘର
ଗମ୍ଭୀର ଧ୍ୱନି ଟିକି କରିଦେଲା ଦୂର ।
କୃଷ୍ଣ ଯିବାକାଳେ ଦୁନ୍ଦୁଭି ଶଙ୍ଖରଡି
ଆକାଶମଣ୍ଡଳ ରହିଲା ଯାଇ ମାଡି ।

ସହସ୍ରସଂଖ୍ୟା କୁରୁ ରଥୀଏ ରଥ ଚଢ଼ି
ବାହରିଲେ କୃଷ୍ଣଙ୍କୁ ଘେରିପାଶେ ବେଢ଼ି ।
ଏଥିକି ଅନୁରୂପ ପାଇକ ସିପାହୀ
ଅଛନ୍ତି ଜନ୍ମେଜୟ ପାରିବି କେତେ କହି ।
କୁଳସ୍ତ୍ରୀମାନେ ଦେଇ ମୁଣ୍ଡରେ ଓଢ଼ଣା ।
କୃଷ୍ଣଙ୍କୁ ମୁଖ ଦେଖି ବୁଦ୍ଧି କରି ବଣା ।
ବୋଇଲେ କାମଦେବ ଛାଡିକରି ଘେପ
ବାହରି ବଢ଼ାଉଛି ଆମ୍ଭ ମନସ୍ତାପ ।
କେତେ ସ୍ତିରୀ ବାଟରେ ଆଡ଼ିଆଇ ହୋଇ
ଆହକରି କୃଷ୍ଣଙ୍କୁ ଦିଅନ୍ତି ଅନାଇଁ ।
କେତେକ ସ୍ତିରୀ କଳାବାଟିର ପାଖ
ଥାଇକରି ଦେଖନ୍ତି କୃଷ୍ଣଙ୍କର ମୁଖ ।
କେତେ ସ୍ତିରୀ ବଦନ ଦେଇଣ ଦେଖାଇ
ହୃଦୟେ ମାରି କର ଦିଅନ୍ତି ଲୁଚାଇ ।
କେତେ ସ୍ତିରୀ ବୋଲନ୍ତି ଛାଡି କୁଳ ଲଜ୍ଜା
କୃଷ୍ଣ ପାଶ ଯିବାକୁ ହେଉଛି ମୋ ମଜ୍ଜା ।
କେତେ ସ୍ତିରୀ ବୋଲନ୍ତି ଯାର ଥିବ ଭାଗ୍ୟ
ସେ ସିନା ହେବ ଗୋ ଶ୍ରୀକୃଷ୍ଣ ଦେହଯୋଗ୍ୟ
ଏହି ରୂପରେ ଚେଷ୍ଟା କରି ସ୍ତିରୀଜନ
କୃଷ୍ଣଙ୍କ ଶୋଭା ଅଠାକାଠିରେ ବନ୍ଧନ ।
ନୟନ-ଖଞ୍ଜନକୁ କରାଇ ରଖିଲେ
ପାଦେ ପାଦ କେହି କାଢ଼ିଣ ନ ପାରିଲେ ।
ସେମାନଙ୍କୁ କୃପା କଟାକ୍ଷରେ ଗୋବିନ୍ଦ
ଚାହିଁବା କ୍ଷଣି ଛାଡିଗଲା ପାପବୃନ୍ଦ ।
ଶୁଣି କୃଷ୍ଣଙ୍କର ଆସିବା ରଥଧ୍ୱନି
ରାଜାମାନେ ଚାହିଁଲେ ହୃଦେ ତୋଷ ଘେନି ।
କୃଷ୍ଣ ଧୃତରାଷ୍ଟ୍ରଙ୍କ ସଭାର ନିକଟେ
କରଭର ଦେଇ ବିଦୁର କରପୁଟେ ।
ଗରୁଡ ଧ୍ୱଜ ରଥୁଁ ଓହ୍ଲାଇ ପଡିଲେ
ବିକ୍ରମସିଂହ ଜିଣା ଗତିରେ ଗମିଲେ ।
ଆର କର ସାତ୍ୟକି କରରେ ପଇଠ
ଦେଇଗଲେ ଚାଲିକି କରି ମଠ ମଠ ।
ଆଗରେ ଦୁର୍ଯ୍ୟୋଧନ ଶକୁନିଙ୍କି ଘେନି
ବାହାରିଲେ ହୃଦରେ ହୋଇ ଅଭିମାନୀ ।
କୃତବର୍ମା କୃଷ୍ଣଙ୍କୁ ପୃଷ୍ଠଦେଶେ ଥାଇ
ଦେଇଥିଲେ ଯେ ଛାତିପଟକୁ ଫୁଲାଇ ।

ଧୃତରାଷ୍ଟ୍ର ରାଜା କୃଷ୍ଣଙ୍କର ଗମନ
ଶୁଣି କରି ଉଠିଲେ ଛାଡିଣ ଆସନ ।
ସହସ୍ର ସଂଖ୍ୟା ରାଜାମାନେ ତାହା ଚାହିଁ
ଛିଡା ହେଲେ ସଭାରେ ଧସଧାସ ହୋଇ ।
କୁରୁ ବୃଦ୍ଧମାନଙ୍କ ତୁଲେ କୃଷ୍ଣ କଥା
ହୋଇ ଛିଡା ହେଲେ ତାଙ୍କର ହୃଦବ୍ୟଥା ।
ନୃପତି-ନକ୍ଷତ୍ରଙ୍କ ମଧ୍ୟେ ଶଶୀପରି
ସେ ସଭା-ଆକାଶେ ଦିଶିଲେ ନରହରି ।
ଆକାଶରେ ଋଷିମାନେ ତ ରହିଥିଲେ
ତାହାଙ୍କୁ ଚାହିଁ କୃଷ୍ଣ ଭୀଷ୍ମଙ୍କୁ କହିଲେ ।
ମର୍ତ୍ତ୍ୟ ସଭା ଦର୍ଶନେ ଦେଖ ଋଷିକୁଳ
ଆକାଶରେ ରହିଅଛନ୍ତି ହୋଇ ଠୁଳ ।
ତାହାଙ୍କୁ ଆମ୍ଭେ ଆଗେ ଆସନେ ବସାଇ
ପଛେ ସିନା ବସିବା ଆସନେ ହେ ଯାଇ ।
ଭୀଷ୍ମଙ୍କର ସେକ୍ଷଣିଟି ପରିକର ଜନ
ହାତରେ ଅଣାଇଲେ ଅମୂଲ୍ୟ ଆସନ ।
ଋଷିମାନେ ପୂଜା ପାଇ ସେ ଆସନେ
ବସଲେ କଲ୍ୟାଣକୁ କରି ସୁମନରେ ।
କୃଷ୍ଣ ତଦଅନ୍ତରେ ସୁବର୍ଣ୍ଣ ଆସନ
ମଧ୍ୟେ ଯାଇ ବସିଲେ ହୋଇ ଇଷ୍ଟମନ ।
ରାଜାମାନେ ଆସନମାନ ଛାଡିଥିଲେ
କୃଷ୍ଣଙ୍କ ବସିବାର ଦେଖିଣ ବସିଲେ ।
ଦୁଃଶାସନ ଆଣିଲେ ସାତ୍ୟକି ପାଇଁକି
ଆସନ ତହିଁ ଯାଇ ବସିଲେ ସାତ୍ୟକି ।
ବିବିଂଶତି କୃତବରମାନଙ୍କୁ ସୁବର୍ଣ୍ଣ
ପିଢ଼ା ଆଣିଣ ଦେଲେ ବସିବାକୁ ତୂର୍ଣ୍ଣ ।
କୃଷ୍ଣଙ୍କର ପାଶରେ କର୍ଣ୍ଣ ଦୁର୍ଯ୍ୟୋଧନ
ବସିଲେ ହୋଇକର ସେ ଏକ ଆସନ ।
ଶକୁନି ପୁତ୍ର ଉଲୁକକୁ ସାହା ପାଇ
ଉଲୁପର ବସିଲା କୃଷ୍ଣଙ୍କୁ ଅନାଇଁ ।
ବିଦୁର ପାଇଁ ମଣିମୟର ଆସନ
ପଡିଥିଲା ତା କରେ ଛୁଇଁଲା ବହନ ।
କୃଷ୍ଣଙ୍କ ସନ୍ନିଧାନ ତଳରେ ବସିଲେ
କୃଷ୍ଣଙ୍କର ଗତିରେ ଚିତ୍ତ ଉଲ୍ଲାସିଲେ ।
କୃଷ୍ଣଙ୍କର ବଦନଚନ୍ଦ୍ରକୁ ନିରେଖି
ନୃପତିଏ ଯେ ଆଣି ନ ପାରିଲେ ଆଖି ।

ସୁନାରେ ଯୁତ ମରକତମଣି ପ୍ରାୟେ
ପୀତବାସ ଘେନି ଦିଶିଲା କୃଷ୍ଣ କାୟେ ।
ଆହେ ଜନ୍ମେଜୟ ସେକାଳେ ତେତେ ସଭା
ନିଶବଦ ହୋଇଲା ପାଇ କୃଷ୍ଣପ୍ରଭା ।
ସେ ସଭା-ଆକାଶେ ପ୍ରକାଶି କୃଷ୍ଣ ମେଘ
ବଚନ ବ୍ୟାଜେ କଲେ ଗରଜନସଙ୍ଘ ।
ପାଣ୍ଡବ-ସିନ୍ଧୁକୁ କୁରୁଙ୍କ ତୁଳେ ନୃପେ
ପାରି ହୋଇବେ ଯୁଦ୍ଧ-ବୋଇତ ପ୍ରତାପେ ।
ଇଚ୍ଛା ଯା କରିଛନ୍ତି ଏ କଥା ବିବୁଧ-
ମାନେ ପକ୍ଷ ହେଲେ ନୋହିବ ଜାଣ ସିଦ୍ଧ ।
ଏହାଜାଣି ଏଠାକୁ ଆସିଅଛି ମୁହିଁ
ତୁମ୍ଭ ତାଙ୍କ ପୀରତି କରାଇବା ପାଇଁ ।
ସବୁ ନୃପକୁଳରୁ କୁରୁକୁଳ ଶ୍ରେଷ୍ଠ
ପୁଣି ତ ଧର୍ମଗୁଣେ ଅଟନ୍ତି ଗରିଷ୍ଠ ।
ବୃଦ୍ଧ ହୋଇ ତୁମ୍ଭେ ତ ଅଛ ରାଜା ହୋଇ
ବାଛବାକୁ ଏଥିରେ କଥା କିଛି ନାହିଁ ।
ଶକୁନି ଦୁଃଶାସନ କର୍ଣ୍ଣଙ୍କ ବଚନ
ପବନ ସାହା ପାଇ ଅଗ୍ନି ସୁଯୋଧନ ।
ଧର୍ମ-ତୃଣବନକୁ ପକାଉଛି ଦହି
ତା ଶାନ୍ତି କରିବି ବଚନ-ଜଳ ଦେଇ ।
ମୁଁ କହିବାର ଯେବେ ନ ଘେନିବ ତୁମ୍ଭେ
କୁରୁଏ ନାଶ ଯିବେ ଜାଣୁଅଛୁ ଆମ୍ଭେ ।
ତୁମ୍ଭେ ଆମ୍ଭେ ଯେବେ କରିବା ଏକ ଯୁକ୍ତି
ତା ନାହିଁ କରିବାକୁ ଅଛି କା ଶକତି ।
ତୁମ୍ଭ ପୁତ୍ରମାନଙ୍କ ହିଂସା ନିବର୍ତ୍ତନ
ତୁମ୍ଭେ କଲେ ପାଣ୍ଡବେ ହୋଇବେ ମଉନ ।
ପାଣ୍ଡୁସୁତଙ୍କରେ ରକ୍ଷିତ ତୁମ୍ଭେ ହୋଇ
ତିନିଲୋକ ଶିରୀ ଭୁଞ୍ଜିବ ନରସାଇଁ ।
ତୁମ୍ଭଙ୍କୁ କି ଅନ୍ନ ହେ ଲାଗୁଅଛି ପିତା
ହେଉନାହିଁ ଏଣିକି ଏଣେ ବିବେକିତା ।
ପାଣ୍ଡୁସୂତେ ତୁମ୍ଭର ବଶେ ଯେବେ ଥିବେ
ଶଚୀପତି ମଧ୍ୟ ତ ଶଙ୍କିଣ ରହିବେ ।
ଭୀଷ୍ମ ଦ୍ରୋଣ କୃପ ଯେ ବିବିଂଶତି କର୍ଣ୍ଣ
ବାହ୍ଲିକ ସୋମଦତ୍ତ ଯୁସୁସ୍ସୁ ବକର୍ଣ୍ଣ ।
ଭୁରିଶ୍ରବା ଜୟଦ୍ରଥ ଯେ ଦୁର୍ଯ୍ୟୋଧନ
ଅଭିମନ୍ୟୁ ଦ୍ରୌପଦେୟଟି ଦୁଃଶାସନ ।

ଯୁଧିଷ୍ଠିର ଭୀମ ନକୁଳ ସହଦେବ
ଅଶ୍ୱଥାମା ଆଦି ତୁମ୍ଭର ନରଦେବ ।
ହୋଇଥିବେ ଯେବେ କେ ଅଛି ଜିଣିବାକୁ
ନୃପକୂଳେ ମୁହିଁ ତ ନ ଦେଖେ କାହାକୁ
ପୁଣି ଆମ୍ଭେମାନେ ତୁମ୍ଭର ହିତକାରୀ
ହୋଇଥିବୁଁ କିସ ବା ନ ପାରିବୁ କରି ।
କୁରୁଦେଶକୁ ଲାଗିଅଛି ଯେତେ ରାଜ୍ୟ
ତା ସବୁଯାକ ପାଇ ହେବ ମହାରାଜ ।
ଏହା ଛାଡି ଯୁଦ୍ଧ କରିବ ଯେବେ ରାୟେ
ମରିବେଟି କୁରୁପାଣ୍ଡୁ ସୁତେ ସଭିଏ
ଜନ୍ମରୁ ତ ଯାଇଛି ଦୁଇ ଆଖି ଫୁଟି
ପୁଣି ସେ ଶୋକେ ଯିବ ହୃଦୟଟି ଫାଟି ।
ପାଣ୍ଡବ କୁରୁଙ୍କରେ ଦୁଷ୍ଟ ଲୋକେ ଗୋଟି
ହୋଇଛନ୍ତି ଜାଣୁଛି ବୁଡିବ ଏ ସୃଷ୍ଟି ।
ପାଣ୍ଡବ କୁରୁମାନେ ପାଇ କାଣ୍ଡଘାତ
ପଡୁଥିବେ ଭୂମିରେ ରଥୁ ହୋଇ ହତ ।
ତାହା ଦେଖି ନ ପାରିବି ମୁଁ ଧୃତରାଷ୍ଟ୍ର
ତୁମ୍ଭଙ୍କୁ କି ଲାଗୁଛି ମୋତେ ବଡ କଷ୍ଟ ।
ଏହା ଜାଣି ରାଜାମାନଙ୍କୁ ଅଳଙ୍କାର
ବସ୍ତ୍ର ଦେଇ ମେଲାଣି ହସ୍ତି ନାରୁ କର ।
ପାଣ୍ଡବେ ତ ତୁମ୍ଭର ଭାଇଙ୍କର ପୁତ୍ର
ପୋଷ ତାହାଙ୍କୁ ଆହେ ଦେଇ ଅନ୍ନ ବସ୍ତ୍ର ।
ପାଣ୍ଡବେ ତୁମ୍ଭ ଦୁଇ ଗୋଡତଳେ ପଡି
କହିଛନ୍ତି ତାଙ୍କର ହୃଦକଥା ଫେଡି ।
ବାରବରଷୁଟି ସାରିଲୁ ବନବାସ
ଏ ବାହାରେ ବରଷେ ଅଜ୍ଞାତ ପ୍ରବାସ ।
ଏତେବ ତ ଆମ୍ଭ ରାଜ୍ୟ ଦେଇଣ ଆମ୍ଭଙ୍କୁ
ରଖନ୍ତୁ ପୁତ୍ର ପରି କରି ଲାଳନାକୁ ।
ଖେଳବେଳରେ ବୋଲିଥିଲେ ଏ ପ୍ରବାସ
ସାରିଲେ ଯୁଧିଷ୍ଠିର ନେବ ତୁମ୍ଭ ଦେଶ ।
ଏବେ କିପାଁ ସେ କଥା ହୃଦରୁ ପାସୋରି
ପକାଇଲେଟି ଧୃତରାଷ୍ଟ୍ର ଦଣ୍ଡଧାରୀ ।
ଏହା କହି କହିଲେ କୃଷ୍ଣ ତ ସେଠାକୁ
ଯାଉଅଛ ଚିତୋଇ ଦେବଟି ତାହାଙ୍କୁ ।
ଆମ୍ଭେ ପୁତ୍ର ପରି ତାହାଙ୍କଠାରେ ରହି
ଅଛୁ ପିତା ପରି ପାଳନ୍ତୁ ସ୍ନେହ ବହି ।

ବାବୁ ସିନା ପୁଅକୁ ଧରମେ ତିଆରେ
ପୁଅଠାରେ ଏ କଥା ସମ୍ଭବି ନ ପାରେ ।
କୁରୁବୃଦ୍ଧମାନଙ୍କୁ ନମସ୍କାର କହି
ଏହା ମଧ କହିବ କହିଛନ୍ତି ସେହି ।
ତୁମ୍ଭେ ବା ବୋଲିବ କୁରୁଙ୍କୁ କାହିଁପାଇଁ
କହିଲେ ସେ କାରଣ କହିବା ବତାଇ ।
ଦ୍ରୋଣ ଦ୍ରୋଣି କୃପ ହୋଇ ସେ ସଭାସଦ
କୁରୁଙ୍କ ତୁଲରେ କରନ୍ତି ତୁମ୍ଭ ମୋଦ ।
ଏ କଥା ଶୁଣିଲେ ନ୍ୟାୟେ ବଚନକୁ
କହିବେ ନୋହିଲେ ପାଇବେ ନରକକୁ ।
ବୋଲିବାକୁ ଥିବ କି ପାଣ୍ଡବ ମହାରଥା
କୁଳ ମର୍ଯ୍ୟାଦାକୁ କଲେଟି ସେ ଅନ୍ୟଥା ।
ଧର୍ମ ଜାଣି ଧର୍ମ ସଭାରେ ଯେ ନ କହେ
ତାହାକୁ ଦଣ୍ଡଧର ଦଣ୍ଡ ଦିଏ କୋହେ ।
ଏବେ ତ ସର୍ବକଥା ସଭାଲୋକ ତୁଲେ
ଶୁଣିଲ ଯେ ଉଚିତ କହ ମୋତେ ଭଲେ ।
ପାଣ୍ଡବଙ୍କର ଭାଇ ଭାଗ ଲେଖି ଦେଇ
ଭୋଗ ହେ ସୁଖରେ ହସ୍ତିନା ନାମେ ମହୀ ।
ଅଜାତଶତ୍ରୁ ଯୁଧିଷ୍ଠିର ମହାରଜା
ତୁମ୍ଭଠାରୁ ଛାଡି ନାହାନ୍ତି ସ୍ନେହ ମଜ୍ଜା ।
ବିଷ ଦେଇ ଘରେ ପୋଡିଣ ମାରୁଥିଲ
ତେବେ ତ ପାଣ୍ଡବେ ବାଞ୍ଛିଲେ ତୁମ୍ଭ ଭଲ ।
ପୁଣି ପଶାଖେଳାଇ ରାଜ୍ୟ ନେଲ ହରି
ଭାରିଯାଙ୍କୁ ତାଙ୍କ ଆଣିଲ ଝିଙ୍କି କରି ।
ଏକବସ୍ତ୍ରା ହୋଇ ସେ ସଭା ମଧ୍ୟେ ଛିଡ଼ା
ହେଲାଠାରେ ତୁମ୍ଭେ ନ ପାଇଲଟି ବ୍ରୀଡା ।
ସେ ଯେତିକି ହୁଅନ୍ତି ତୁମ୍ଭ ପାଦେ ନମ୍ର
ତେତିକି ଚିପୁଡଟି ତାଙ୍କ ବଳ ଆମ୍ର ।
ଅନରଥ ଅର୍ଥକୁ ପାଇ ନୃପମଣି
ହେବ ଯା ବିଚ୍ଛରୁଛି ମରିବଟି ପୁଣି ।
ପାଣ୍ଡବେ ସେବା ଯୁଦ୍ଧାଦିରେ ନିଶ ଧରି
ଅଛନ୍ତି ଯେ ଉଚିତ କର ଦଣ୍ଡଧାରୀ ।
କୃଷ୍ଣଙ୍କର ବଚନ ଶୁଣି ନୃପରାଣ
ହୃଦୟରେ ପ୍ରଶଂସି ହୋଇଲେ ମଉନ ।
ରାଜାମାନଙ୍କର ଯେ ମଉନକୁ ଜାଣି
ଜମଦଗ୍ନି ସୁତ କହିଲେ ଏହି ବାଣୀ ।
ମୁଁ ଯାହା କରିବି ହେ ସୁଯୋଧନ ନୃପ
ଶୁଣ ତା ଏକ ଚିତ୍ତେ ଛାଡିବ ସନ୍ତାପ ।
ଶୁଣିଥାଇ ତ ଦମ୍ଭୋଦ୍ଭବ ନାମେ ରାଜା
ସାଗରାନତ ମହୀରେ ପାଇଲେ ତ ପୂଜା ।
ଏହି ସକାଶୁଁ ଦମ୍ଭୋଦ୍ଭବ ଜ୍ଞାନ ହାରି
ପଚ୍ଚରନ୍ତି ଲୋକଙ୍କୁ ଅଛ କେ ମୋ ପରି ।
ଏହା ଶୁଣି ବ୍ରାହ୍ମଣେ ବୋଇଲେ ତାହାଙ୍କୁ
କେତେ ପଚ୍ଚରୁଅଛ ବହି ଗୁମାନକୁ ।
ତେବେହେଲେ ସେ ରାଜା ନ ବୁଝି ସେ କଥା
ପୁଚ୍ଛିଲେ ବ୍ରାହ୍ମଣଙ୍କୁ ବାକ୍ୟେ ଦେଇ ବ୍ୟଥା ।
ବ୍ରାହ୍ମଣେ ତା ନ ସହି ହୋଇ ଅତି କ୍ରୋଧ
କହିଲେ ହୃଦୟରେ ବହିକରି ମୋଦ ।
ମହୀରେ ଯେ ଅଛନ୍ତି ନର ନାରାୟଣ
ତାଙ୍କ ସଙ୍ଗେ ପାରିଲେ କର ଯାଇ ରଣ ।
ଗନ୍ଧମାଦନ ପରବତେ ଛନ୍ତି ରହି
ନେତ୍ର ମନ ଲୟ ତପସ୍ୟାରେ ମନ ଦେଇ ।
ଦମ୍ଭୋଦ୍ଭବ ତହୁଁ ତିଆର କରି ସୈନ୍ୟ
ତହିଁ ବାହରିଲେ ଯୁଝିବା କରି ମନ ।
ଗନ୍ଧମାଦନର ଉପରେ ସେ ଚଢିଲେ
ନର ଯେ ନାରାୟଣ ଦୁହିଁଙ୍କି ବେଢିଲେ ।
ନର ନାରାୟଣଙ୍କୁ ତପସ୍ୟାକୁ ଦେଖି
ଦମ୍ଭୋଦ୍ଭବ ନମି ପୁଚ୍ଛିଲେ ହୋଇ ସୁଖୀ ।
ତୁମ୍ଭର ସବୁ କଥା ହୋଇଛି କି ଭଲ
କହ ହେ ଋଷି ମୋତେ କର ଉତ୍‌ଫୁଲ୍ଲ ।
ନର ନାରାୟଣ ଜଳ ଯେ ଫଳ ଦେଇ
ପଚ୍ଚରିଲେ ଏଠାକୁ ଆସିଛ କିମ୍ପାଇ ।
ଆମ୍ଭଙ୍କୁ ତୁମ୍ଭେ ଆସି ପଚ୍ଚରୁଛ କିସ
ତୁମ୍ଭ କଥା ଶୁଣବୁଁ ବଳିଛି ମାନସ ।
ଦମ୍ଭୋଦ୍ଭବ ବୋଇଲେ ମହୀ ଜିଣିସାରି
ତୁମ୍ଭଠାକୁ ଆସିଛୁ ଯୁଦ୍ଧ ଇଚ୍ଛା କରି ।
ମୋତେ ତୁମ୍ଭେ ଦୁଇ ଋଷି ଦେଇଣ ଯୁଦ୍ଧ
ମୋହ ରାଜ୍ୟକୁ ପଠିଆଅ କରି ବୋଧ ।
ନର ନାରାୟଣ ବୋଇଲେ କାମ କ୍ରୋଧ
ନାହିଁ ତ ଆମ୍ଭର କରିବୁ କେହିଁ ଯୁଦ୍ଧ ।
ଯେବେ ମନ ଅଛି କ୍ଷତ୍ରିୟଠାକୁ ଯାଇ
ଏରୂପେ ବଚନ କହ ହେ ନରସାଇଁ ।

ଦମ୍ଭୋଭବ ତେବେକେ ନୋହି କରି ଶାନ୍ତି
ଯୁଦ୍ଧ ଇଚ୍ଛା କର ମୋଡିଲେ ନିଶ ଅତି ।
ତାହା ନ ସହି ନର ଇଷୀକା ମୁଠାଏ
ଧରି ଡାକିଲେ ଯେ ଯୁଝିବା ଆସ ରାୟେ ।
ଯେତେ ଅସ୍ତ୍ର ଶସ୍ତ୍ରର ଶିଖିଛ ପ୍ରୟୋଗ
କହ ତାହା ବିନାଶି ଭାଙ୍ଗି ଦେବି ରାଗ ।
ଦମ୍ଭୋଭବ ବୋଇଲେ ଯୁଦ୍ଧାର୍ଥୀ ମୁଁ ହୋଇ
ଆସିଛି ଯୁଝିବାକୁ କରିବି କି ନାହିଁ ।
ଏହା କହି ସୈନ୍ୟ ଘେନିଣ ଦମ୍ଭୋଭବ
ହୃଦୟରେ ଧରିଣ ତାଙ୍କର ଅଭାବ ।
ଭିଡିକରି ଆଣ୍ଠରେ କର ଧନୁମୁଠି
ସରଜିଲେ ଶରବୃଷ୍ଟି କି ଚଳି ଉଠି ।
ସେ କାଣ୍ଡଟିମାନଙ୍କୁ ନର ଇଷୀକାରେ
କାଟିଲେ ତା ଦେବ ଦେଖନ୍ତି ଆକାଶରେ ।
ସେ ଇଷୀକା ଅସ୍ତ୍ରକୁ ଧନୁରେ ନ ସନ୍ଧି
ଫିଙ୍ଗି ଦମ୍ଭୋଭବ ପ୍ରାଣକୁ ଦେଲେ ରୁନ୍ଧି ।
ସେହି ଇଷୀକାମୁଷ୍ଟି ସୈନ୍ୟଯାକ ଦେହେ
ଆଖି କାନ ନାକେ ଛେଦିଲା ନରକୋହେ ।
ଇଷୀକାରେ ଆକାଶ ହୁଅନ୍ତେ ସଂକୁଳ
ପରାଣ ଭୟେ ଦମ୍ଭୋଭବ ମହୀପାଳ ।
ନରଙ୍କର ପାଦତଳରେ ସେ ପଡିଲେ
ମୋତେ ରକ୍ଷାକର ଆହେ ଋଷି ବୋଇଲେ ।
ନର ବୋଇଲେ ହେ ବ୍ରହ୍ମଣ୍ୟ ରାଜା ହୁଅ
ଏରୂପେ ହେଲେ ନାଶ ଯିବ ଜାଣିଥାଅ ।
କ୍ଷତ୍ରିୟରେ ତୁମ୍ଭର ପରି ଅଟ ତୁମ୍ଭେ
ଏକଥା ଭଲ କରି ଜାଣିଅଛୁ ଆମ୍ଭେ ।
ଆଜିଠାରୁ ଏରୂପେ କାକୁ ଗର୍ବ ବହି
ଅଧିକ୍ଷେପ ନ କରିବ ହେ ନରସାଇଁ ।
ଅହଙ୍କାର ଲୋଭକୁ ଛାଡ଼ିକରି ପ୍ରଜା
ପାଳିକରି ମଲେ କରିବେ ଇନ୍ଦ୍ରପୂଜା ।
ବ୍ରାହ୍ମଣଙ୍କଠାରେ ହୋଇଣ ବିନତି
ନିତି ଦିନ ସାରୁଥିବେ ହେ ନରପତି ।
ଦମ୍ଭୋଭବ ଏରୂପେ ନରଠାରୁ ଶିକ୍ଷା
ପାଇକରି ଛାଡିଲେ ହୃଦୁଁ ହିଂସା କକ୍ଷା ।
ନର ନାରାୟଣଙ୍କ ପାଦରେ ନମିଲେ
ରଥ ଚଢିଣ ନିଜ ପୁରକୁ ଗମିଲେ ।
ନରଙ୍କ ପରାକ୍ରମ ପ୍ରତି ନାରାୟଣ
ବହୁତ ପ୍ରକାରେ ଅଧିକ ହେବେ ଜାଣ ।
ଆହେ ଦୁର୍ଯ୍ୟୋଧନ ଗାଣ୍ଡୀବରେ କିରୀଟି ।
ଯେତେବେଳଯାଏ ଶରଟି ନାହିଁ ଯୋଚି ।
ତେତେବେଳ ଭିତରେ ପଶିଣ ଶରଣ
ରକ୍ଷାକର କୁରୁଙ୍କ ତୁଲେ ତୁମ୍ଭ ପ୍ରାଣ ।
କକୁଦୀକ ଶୁକ ନର୍ତ୍ତକ ଘୋର ନାକ
ଅକ୍ଷି ସନ୍ତର୍ଜନ ସେହୁ ଆସ୍ୟମୋଦକ ।
ସନ୍ତାନାଦି ଆଠ ଶରକୁ ଅରଜୁନ
ଯେବେ ଯୁଦ୍ଧକାଳେ କରିବେ ସରଜନ ।
ତେବେ ମଳ ମୂତ୍ର ଉତ୍ସଗ ତୁମ୍ଭ ସୈନ୍ୟ
ହଗି ବାନ୍ତିକରି ପାଇବେ ଯମସ୍ଥାନ ।
ଏ ଆଠ ଶରଙ୍କ ଆଠୋଟି ଗୁଣ ଅଛି
ସଂକ୍ଷେପେ ଏହା ସିନା ତୁମ୍ଭଙ୍କୁ କହୁଛି ।
ଅରଜୁନଙ୍କ ଗୁଣ ବଳ କଳିବାକୁ
ଥିଲା ପରିମହୀରେ ନ ଦେଖି କାହାକୁ ।
ଅର୍ଜୁନଙ୍କୁ ପ୍ରତିକି ସହସ୍ରେ ଗୁଣରେ
ଅଧିକଟି କୃଷ୍ଣ ସମସ୍ତ ପରକାରେ ।
ଯେଉଁ ଋଷି ଦୁହେଁଟି ନର ନାରାୟଣ
ସେହିଟି ଏବେ କୃଷ୍ଣ ଅରଜୁନ ଜାଣ ।
ଯେବେ ଆମ୍ଭମାନଙ୍କ କଥା ସୁଯୋଧନ
ଘେନ ତେବେ କର ପାଣ୍ଡବେ ପ୍ରୀତି ମନ ।
ତୁଚ୍ଛା ଯୁଦ୍ଧରେ ମନ କରି ପ୍ରାଣ ହରି
ପାର୍ଥ ପାଶେ ଯାଇ ନ ବସ ଯମପୁରୀ ।
ଦମ୍ଭୁଦ୍‌ଭବର ଉପାଖ୍ୟାନ ଶେଷ
ହୋଇଲା କହେ କୃଷ୍ଣସିଂହ ନରଈଶ ।



## ଗୁଣକେଶୀ ନିମିତ୍ତ ମାତଳିଙ୍କ ବର ଅନ୍ୱେଷଣ

ଏଥୁ ଅନନ୍ତରେ ଯେ କଣ୍ୱ ଋଷିବର
ଦୁର୍ଯ୍ୟୋଧନ ରାଜାଙ୍କୁ କହିଲେ ଉତ୍ତର ।
ମୋ ଝିଅ ଶକୁନ୍ତଳାବଂଶେ ଜାତ ହୋଇ
ଏ ଅନ୍ୟାୟ କଥା କରୁଛ କାହିଁପାଇଁ ।
ଯେଉଁ ରୂପରେ ବ୍ରହ୍ମା ଅକ୍ଷୟ ଅବ୍ୟୟ
ସେ ରୂପେ କୃଷ୍ଣାର୍ଜୁନ ଗାନ୍ଧାରୀତନୟ ।

ତିନିଲୋକ ହରତା କରତାଟି ସେହି ।
ତାଙ୍କଠାରୁ ଆଉ ବଡ ତ କେହି ନାହିଁ ।
ଦିନର ପ୍ରଳୟରେ ଚନ୍ଦ୍ର ସୂର୍ଯ୍ୟ ଆଦି
ଦେବତାଏ ମରନ୍ତି ବିପତ୍ତି ସମ୍ପାଦି ।
ନର ନାରାୟଣଙ୍କ ନୁହଇଟି ନାଶ
ଜାଣ ହେ ଗାନ୍ଧାରୀ ଦେବୀଙ୍କ ଜ୍ୟେଷ୍ଠ ଶିଷ୍ୟ ।
ପୁଣି ଆରଦିନ ସକାଳରୁ ବିଧାତା
ସରଜନା କରନ୍ତି ସକଳ ଦେବତା ।
ଜୀବଲୋକେ ଯେତକ ପ୍ରାଣିଏ ଅଛନ୍ତି
ଅଳପ କାଳ ଜୀଇଁ ମରଣ ପାଆନ୍ତି ।
ରାଜାମାନେ ସମ୍ପତ୍ତିବଳେ ମତ୍ତ ହୋଇ
ଦୁଷ୍କୃତ କଲେ ତା ଭୁଞ୍ଜନ୍ତି ମଲେ ଯାଇ ।
ତୁମ୍ଭେ ତ ନୃପକୁଳେ ହୋଇଅଛ ଜାତ
ଲଭିବଟି ପାତକ କଲେ ଜ୍ଞାତି ହତ ।
ଏଣୁଟି ପାଣ୍ଡବମାନଙ୍କେ ପ୍ରୀତି କରି
ପରଲୋକ କଥାରେ ହୁଅ ରକ୍ଷାକାରୀ ।
ମୁଁ ବଳୀୟାର ବୋଲି ମନେ ଯା ଘେନୁଛ
ଏଗୁଡାକ ସକଳ ଅଟଇଟି ମିଛ ।
ପାଣ୍ଡବେ ଧର୍ମବଳେ କ୍ଷତ୍ରିୟ ବିଳରେ
ବଳୀୟାର ଅଟନ୍ତି ମାରିବେ ହେଳାରେ ।
ବଳ ନିନ୍ଦା ବିଷୟେ ଯେଉଁ କଥା ଅଛି
ତା କହିବା ଶୁଣ ହେ ଧୃତରାଷ୍ଟ୍ର ବସି ।
ଇନ୍ଦ୍ରଙ୍କ ସାରଥି ମାତଳି ଝିଅଟିଏ
ପୂର୍ବେ ଜାତ କଲେ ସୁନ୍ଦର ତାର କାୟେ ।
ସବୁ ଗୁଣରେ ସେ ହେବାରୁ ପାରଙ୍ଗମ
ଗୁଣକେଶୀ ନାମ ତା ହେଲା ନୃପୋତ୍ତମ ।
ସେହି କନ୍ୟାର ଯୁବା ଅବସ୍ଥାକୁ ଦେଖି
କାକୁ ଦେବି ବୋଲି ମାତଳି ହେଲେ ଦୁଃଖୀ ।
ଭାରିଯାକୁ ବୋଇଲେ ଝିଅ ଅନୁରୂପ
ବର ତ ନାହିଁ ଆଗେ ବଢୁଅଛି ତାପ ।
ବଡଲୋକ କୁଳରେ କନ୍ୟା ଯେବେ ହୁଏ
ଭର୍ତ୍ତୃ ପିତୃ କୁଳରେ ସଂଶୟ କରାଏ ।
ଦେବେଲୋକ ମନୁଷ୍ୟ ଲୋକ ମୁଁ ଖୋଜିଲି
ଝିଅ ଅନୁରୂପ ବର ତ ନ ଦେଖିଲି ।
ଏବେ ନାଗଲୋକକୁ ଯିବି ବର ପାଇଁ
ମନେ କରିଅଛି ଗୋ ଚନ୍ଦ୍ରମୁଖୀ ମୁହିଁ ।

ଏରୂପେ କହି ନାଗଲୋକକୁ ମାତଳି
ବାହାରିଲେ ବର ଖୋଜିବା ଚିତ୍ତେ ଭାଳି ।
ବାଟରେ ନାରଦଙ୍କ ତୁଲେ ଭେଟ ହେଲେ
ନାରଦ ମାତଳିଙ୍କି ଦେଖି ପଚାରିଲେ ।
ଇନ୍ଦ୍ରଙ୍କର କାର୍ଯ୍ୟରେ କି ତୁମ୍ଭ କାର୍ଯ୍ୟରେ
ଯାଉଛ ସତ କରି କହ ମୋ ଆଗରେ ।
ମାତଳି ବୋଇଲେ ମୋ ଝିଅ ପାଇଁ ବର
କରି ଯାଉଛି ହେ ନାରଦ ନାଗପୁର ।
ନାରଦ ବୋଇଲେ ହେ ତୁମ୍ଭେ ଆମ୍ଭେ ଦୁହେଁ
ମିଶି ଯାଇ ଚାଲ ଖୋଜିବା ବର ସ୍ନେହେ ।
ପାତାଳ କଥାଯାକ ଗୋଚର ଆମ୍ଭଙ୍କୁ
ଚିହ୍ନାଇ ଦେବି ନାଗମାନଙ୍କୁ ତୁମ୍ଭଙ୍କୁ ।
ଏହା ଶୁଣି ମାତଳି ସଙ୍ଗତରେ ମିଶି
ଦେଖିଲେ ଆଗେ ସେ ବରୁଣପୁରବାସୀ ।
ନାରଦ ମାତଳିକି ଦେଖି ଜଳରାଜା
ଆନନ୍ଦ ମନ କରି କଲେ ତାଙ୍କୁ ପୂଜା ।
ବରୁଣପୁରେ ଯେତେ ଲୋକ ରହିଥିଲେ
ନାରଦ ମାତଳିଙ୍କି ଚିହ୍ନାଇଣ ଦେଲେ ।
ବୋଇଲେ ହେ ମାତଳି ବରୁଣଙ୍କ ପୁତ୍ର
ପୁଷ୍କର ରହି ଦେଖ ଦେଇ କରି ନେତ୍ର ।
ଏ ସୁଶୀଳ ପଦ୍ମାକ୍ଷ ଶୋଭା କାମ ପରି
ଅଟନ୍ତି ତାଙ୍କ ଭାର୍ଯ୍ୟା ଚନ୍ଦ୍ରଙ୍କ କୁମାରୀ ।
ନ କଲେ ହେ ବରୁଣ ଜଳପତି ଯତ୍ନ
ଘରରେ ରହିଛନ୍ତି ଆସି ସବୁ ରତ୍ନ ।
ଦୈତ୍ୟମାନଙ୍କର ଆୟୁଧ କୋଟି କୋଟି
ଛନ୍ତି ତେଜେ ନିନ୍ଦି ସବିତା ଦେବତାଟି ।
ଦେବପରାଜିତ ରାକ୍ଷସେ ଏହି ଲୋକେ
ଥାଇ ଦିନ ହରନ୍ତି ଅତି ଭୟ ଶୋକେ ।
ବରୁଣହ୍ରଦେ ଯେଉଁ ଅଗ୍ନି ରହିଅଛି
ଘିଅ ପରି ଜଳଯାକକୁ ସେ ଖାଉଛି ।
ବିଷ୍ଣୁଙ୍କର ଚକ୍ର ଗାଣ୍ଡୀବ ଶରାସନ
ବରୁଣଙ୍କ ଘରେଟି କରିଛନ୍ତି ସ୍ଥାନ ।
ଦେବତାମାନଙ୍କରେ ଗାଣ୍ଡୀବଧନୁଟି
ଆହେ ଦେବ ସାରଥେ ରଖା ହୋଇଛିଟି ।
ସେ ଧନୁର ବଳରେ ନର ଦେବସାଧ
ରହିଲେ ଜାଣ ହୋଇକରିଟି ହେ ସାଧ ।

ବରୁଣଙ୍କ ଛାତିରୁ ହୋଇ ଜଳବୃଷ୍ଟି
ସରଜୁଛି ମଣିମାନଙ୍କ ସୁଖସୃଷ୍ଟି ।
ଏହିରୂପେ ଅନେକ ଚମତ୍କାର କଥା
ରଖିଛନ୍ତି-ଘରେ ବରୁଣ ମହାରଥା ।
ଏବେ ଚାଲ ନାଗଲୋକକୁ ଆମ୍ଭେ ଯିବା
ଏଠାରେ ଥିଲେ କାର୍ଯ୍ୟେ ବିରୋଧ ପାଇବା ।
ନାରଦଙ୍କୁ ବୋଲେ ମାତଳି ତତପରେ
ଉଠିକରି ଗମିଲେ ନାଗଙ୍କର ପୁରେ ।
ନାଗଙ୍କର ପୁରେ ହୁଅନ୍ତେ ପରବେଶ
ନାରଦ ବୋଇଲେ ଏ ନାଗଙ୍କ ନିବାସ ।
ପୂରିତ ଏ ଅଟଇ ଦୈତ୍ୟ ଦାନବରେ
ଏଥିକି ଆସି ନ ପାରନ୍ତି କେବେ ନରେ ।
ପର୍ବତ ପରି କାୟ ଏଥି ସର୍ପଙ୍କର
ସବୁ ପ୍ରାଣୀମାନଙ୍କ ଅଟେ ଭୟଙ୍କର ।
ଅମୃତଭାଣ୍ଡ ମଧ୍ୟ ଏଥି ଦେବେ ରଖି
ବସିଛନ୍ତି ସ୍ୱର୍ଗରେ ହୋଇକରି ସୁଖୀ ।
ଚନ୍ଦ୍ରଙ୍କର କ୍ଷୟ ବୃଦ୍ଧି କିଏ ପାତାଳ
ନ କରେ ଜାଣ ହେ ମାତଳି ସୂତା ବାଳ ।
ଜଳ ପଡିବାରୁଟି ପାତାଳ ଏହାକୁ
ବୋଲନ୍ତି ଲୋକେ ଜାଣ କହିଲି ତୁମ୍ଭଙ୍କୁ ।
ଅଇରାବତ ଏହିଠାରୁ ପାଣି ନେଇ
ଇନ୍ଦ୍ରଙ୍କୁ ଦେଲେ ବୃଷ୍ଟି କରନ୍ତିଟି ସେହି ।
ଏ ପାତାଳଜଳେ ଅଛନ୍ତି ଯେତେ ମାଛ
କାୟାରେ ପର୍ବତେ ପାରନ୍ତି କରି ତୁଚ୍ଛ ।
ଷାଠିଏ ସହସ୍ର ରାକ୍ଷସ ଏଥି ଛନ୍ତି
ଦିବସେ ମରି ରାତ୍ରେ ଜୀବନ ପାଆନ୍ତି ।
ଏ ପୁରେ ଶଶୀଦେବ ଅମୃତକୁ ଦେଇ
ପ୍ରାଣୀମାନଙ୍କୁ ଜୀଆଉଁଛନ୍ତି ସେହି ।
ବିଷ୍ଣୁଙ୍କର ପୀଡା ପାଇଣ ଦୈତ୍ୟଗଣ
ଏଠାରେ ଘର କରି ରହିଲେଟି ଜାଣ ।
ଏଠାରେ ତପ କରୁଥିଲେ ଉମାସାଇଁ
ସବୁ ପ୍ରାଣୀମାନଙ୍କ ହିତ ହେବାପାଇଁ ।
ଏଠାରେ ଋଷିମାନେ କରିଣ ଗୋବ୍ରତ ।
କଲେ ନିଜର ଦେହମାନଙ୍କୁ ପବିତ୍ର ।
ଗୁରୁ ଦିଗଦନ୍ତିଙ୍କ ପିଲେ ସୁଖ ପାଇ
ପାତାଳ ମଧ୍ୟେ ଛନ୍ତି ମର୍ତ୍ତ୍ୟକୁ ନ ଯାଇ ।
ଏଥିରେ କାହାକୁ ହେ ଝିଅକୁ ତୁମ୍ଭର
ଦେବାକୁ ମନ ହେଉଅଛି ବେଗେ କର ।
ଏ ପାତାଳ ଜଳରେ ବ୍ରହ୍ମାଣ୍ଡ ହାଣ୍ଡିଟି
ରହିଅଛିଟି ଜାଣ ତିନିଲୋକ ଘୋଟି ।
ଏହି ପାତାଳରୁଟି ବ୍ରହ୍ମ ସନ୍ଧ୍ୟାକାଳେ
ବାହାରି ଅଗ୍ନି ତିନିଲୋକ ବ୍ୟାପି ଜଳେ ।
ମାତଳି ବୋଇଲେ ମୁଁ ପାତାଳ ବୃତ୍ତାନ୍ତ
ଶୁଣିଲି ସବୁ ହେ ନାରଦ ତପୋବନ୍ତ ।
ଏବେ ଚାଲ ହେ ଆନଠାକୁ ବର ପାଇଁ ।
ଯିବା ଏଥି ବର ମନକୁ ପାଉନାହିଁ ।
ଏହା ଶୁଣି ନାରଦ ମାତଳିଙ୍କୁ ତୁଲେ
ଘେନିକରି ହିରଣ୍ୟପୁରରେ ମିଳିଲେ
ମାତଳିକି କହିଲେ ନାରଦ ମହର୍ଷି
ଏ ପୁର କରିଛନ୍ତି ବିଶ୍ୱକର୍ମା ଆସି ।
ସସ୍ରସଖ୍ୟା ମାୟାମାନଙ୍କେ ଯୁତ ହୋଇ
ମହାକାୟ ଦାନବେ ଏଥି ଛନ୍ତି ରହି ।
ଏହି ଦାନବଙ୍କୁ ଇନ୍ଦ୍ରାଦି ଦେବଗଣ
ଜିଣି ନ ପାରିବେଟି ଆରମ୍ଭିଲେ ରଣ ।
କାଳକଞ୍ଜ ନିବାତକବଚଙ୍କ ସ୍ଥାନ ।
ଏହିଟି ହେ ଦେବସାରଥି ମନେ ଘେନ ।
ଇନ୍ଦ୍ର ରଥେ ପୂର୍ବେ ସାରଥି ହୋଇ କରି
ଏଥିକି ତୁମ୍ଭେ ଆସି ପଳାଉଛ ଡରି ।
ଅଷ୍ଟଧାତୁଙ୍କରେ ଏ ପୁର ସରଜନ
ହୋଇ ଦେଖ ହରୁଛି ହୃଦୟ ନୟନ ।
ଦୈତ୍ୟମାନଙ୍କର ଶୋଇବା ଶେଯଯାକ
ଦେଖିଲେ ରହୁ ନାହିଁ ହୃଦରେ ବିବେକ ।
ଏ ପୁରେ ଯେତେ ବୃକ୍ଷପନ୍ତି ରହିଛନ୍ତି
ସବୁକାଳେ ପୁଷ୍ପଫଳକୁ ବହିଥାନ୍ତି ।
ଏଥିରେ ଯେବେ ଅଛି ଝିଅକୁ ଅନୁରୂପ
ବର ତେବେ ନିର୍ଭା କର ହେ ଛାଡି ତାପ ।
ମାତଳି ବୋଇଲେ ଏ ଦେବଙ୍କ ବଇରୀ
ଏହାଙ୍କୁ ମୋ ଝିଅକୁ ଦେବି ମୁଁ କିପରି ।
ଏହାଙ୍କର ମୁଖ ଚାହିଁଲେ ମୋତେ ଦୋଷ
ଲାଗିବ ଜାଣ ଆହେ ଋଷିକୁଳଈଶ ।
ନାରଦ ସେହିକ୍ଷଣି ସେଠାରୁ ଗମିଲେ
ଗରୁଡଙ୍କ ଲୋକରେ ଯାଇଣ ମିଳିଲେ ।

ବୋଇଲେ ହେ ମାତଳି ଏ ଗରୁଡଙ୍କ ଲୋକ
ଏହା ଯେ ଦେଖେ ତାର ନୁହଇ ଭୟ ଶୋକ
ଗରୁଡ ପକ୍ଷୀଙ୍କ ଛଅଟି ପୁଅ ଛନ୍ତି
ସବୁ ପକ୍ଷୀଙ୍କର ତାତ ସେହୁ ବୋଲାନ୍ତି ।
ସେ ଛଅ ପୁଅଙ୍କର ନାମମାନ ଯାହା
କହିବା ହେ ମାତଳି ଶୁଣ ଏବେ ତାହା ।
ସୁମୁଖ ସୁନାମ ସୁରୁକ ସୁନେତର
ସୁବଳ ସୁବର୍ଚ୍ଚ ଯେ ନାମ ତାହାଙ୍କର ।
ଜ୍ଞାତି ନାଶ କରିବା ସକାଶୁଁ କ୍ଷତ୍ରିୟ
ବୋଲାଇଲେ ଜାଣ ହେ ଗରୁଡ ଅନ୍ୱୟ ।
ଗରୁଡଙ୍କର ପକ୍ଷପାତୀ ହୋଇ ହରି
ଥିବାରୁ ଏହାଙ୍କୁ ନୁହଇ କେହି ସରି ।
ଗରୁଡଙ୍କ ବଂଶରେ ଯେତେ ପକ୍ଷୀ ଜାତ
ତାହାଙ୍କ ନାମ ମଧ୍ୟ କରିବା ବିଦିତ ।
ସୁବର୍ଣ୍ଣଚୂଡ ଚଣ୍ଡତୁଣ୍ଡଳ ଅନିଳ
ବିଶାଳାକ୍ଷ କୁଣ୍ଡଳୀ ଦାରୁଣ ଅନଳ ।
ବାତବେଗ ନାଗାଶୀ ବାମନ ନିମିଷ
ଦିଶାଚକ୍ଷୁ ବୈନତେୟ ଯେ ଅନିମିଷ ।
ସାରିସ ଚିତ୍ରକେତୁ କୁମୁଦ ସରିଦ୍ୱୀପ
ଚିତ୍ରବର୍ହ ଦକ୍ଷ ସର୍ପାନ୍ତ ଦୈତ୍ୟଦ୍ୱୀପ ।
ଅମଘ ପଙ୍କଜିତ ବାଲ୍ମୀକି ତ୍ରିବାର
ଦୀପକ ଗୁରୁଭାର ସୁମୁଖ ସପ୍ତବାର ।
ବିଷ୍ଣୁଧର୍ମା ସୋମଭୋଜନ ଯେ କପୋତ
ପରିବର୍ହ ପଦ୍ମକେତନ ମେଘହୃତ ।
ସୂର୍ଯ୍ୟନେତ୍ର କୁମାର ହରି ମଧୁପର୍କ
ସୁସ୍ୱର ହେମବର୍ଣ୍ଣ ମଳୟ ଚିରାନ୍ତକ ।
ମାରରିଶ୍ୱା ଦିବାକର ଯେ ନିଶାକର
ଏରୂପେ ନାମରେ ଅନେକ ପକ୍ଷୀବର ।
ଗରୁଡଙ୍କ ବଂଶରେ ଅଛନ୍ତି ମାତଳି
କେତେ ତାହା ତୁମ୍ଭଙ୍କୁ କହିବି ମୁଁ ଭାଳି ।
ଏ ପକ୍ଷୀଙ୍କରେ ଯାହାଠାରେ ତୁମ୍ଭ ମନ
ହେଉଛି କନ୍ୟା କର ତାହାକୁ ପ୍ରଦାନ ।
ମାତଳି ବୋଇଲେ ହେ ନାରଦ ଗୋସାଇଁ
ପକ୍ଷୀଗୁଡାକୁ ମୁଁ ଝିଅ ଦେବି କେହିଁ ।
ନାରଦ ବୋଇଲେ ହେ ଚାଲ ରସାତଳ
ତହିଁରେ ଅବା ନର ମିଳିବେଟି ଭଲ ।
ମାତଳି ତା ଶୁଣି ବୋଇଲେ ବ୍ରହ୍ମବସି
ଦେଖିବାକୁ ତାହା ମୋ ମାନସ ହେଉଛି ।
ଏରୂପେ ଦୁର୍ଯ୍ୟୋଧନ ମାତଳି ନାରଦ
କଥା ହୋଇ ସେଠାକୁ ଗଲେ ବହି ମୋଦ ।
ନାରଦ ବୋଇଲେ ହେ ଏଠାରେ ସୁରଭି
ରହିଅଛନ୍ତି ମହା ସୁଖ ଟିକି ଲଭି ।
ତାହାଙ୍କର ପହ୍ନାରୁ ବହିକରି କ୍ଷୀର
ସମୁଦ୍ରଟି ହେଲା ଜାଣନ୍ତି ତିନିପୁର ।
ସେହି ସମୁଦ୍ର ଫେନ ଋଷିମାନେ ଖାଇ
ତପ କରିବାରୁ ଫେନପ ତାଙ୍କୁ କହି ।
ସୁରଭି ଗର୍ଭୁ ଚାରିକନ୍ୟା ଜାତ ହେଲେ
ଚାରିଙ୍କି ଚାରି ଦିଗେ ନେଇଣ ରଖିଲେ ।
ପୂର୍ବେ କ୍ଷୀରସମୁଦ୍ର ମନ୍ଥି ଦେବଗଣ
ଅମୃତକୁ ଖାଇ ଅମର ହେଲେ ଜାଣ ।
ଏ ସ୍ଥାନରେ ସବୁ ସୁଖରେ ରହିଅଛି
ସ୍ୱର୍ଗ ଏହା ସମ ନୋହିବ ମୁଁ ବୋଲୁଛି ।
ଭୋଗବତୀପୁରୀ ରହିଛି ଏ ମଧ୍ୟରେ
ବାସୁକି ତା ପାଳି ଅଛନ୍ତି ନିରନ୍ତରେ ।
ଶେଷଦେବ ଯେ ନାଗଲୋକରେଟି ରହି
ଧରିଛନ୍ତି ସହସ୍ରେ ଫଣାଙ୍କରେ ମହୀ ।
ଏହି ପୁର ନାଗେ କୁଣ୍ଡଳ ଅଳଙ୍କାର
ଭରି କରିଅଛନ୍ତି ଦେହକୁ ସୁନ୍ଦର ।
ସୁରସା ଦେବୀଙ୍କର ପୁଅ ଏ ଅଟନ୍ତି
ସସ୍ର ମୁଣ୍ଡଠାରୁ ଏଣିକି ବହିଛନ୍ତି ।
ଏହିରୂପେ ଏ ପୁରେ ଲକ୍ଷ ଲକ୍ଷ ସର୍ପ
ରହିକରି ବଢାଇ ଅଛନ୍ତି ପ୍ରତାପ ।
ସର୍ପଙ୍କେ ପ୍ରଧାନ ଅଟନ୍ତି ଯେତେ ସର୍ପେ ।
ତାଙ୍କ ନାମ ମାତଳି ଶୁଣ ଏବେ ଆପେ ।
ବାସୁକି ଅଶ୍ୱତର ନହୁଷ ତକ୍ଷକ
ବାହ୍ୟକୁଣ୍ଡ କମ୍ବଳ କୁକୁର କର୍କୋଟକ ।
ଅପୂରଣ ଐଳପତ୍ର ଯେ ଧନଞ୍ଜୟ
କୁକୁଣ ପିଞ୍ଜରକ ନନ୍ଦକ କାଳୀୟ ।
ହସ୍ତି ଭଦ୍ର ଐରାବତ ଯେ ଦଧିମୁଖ
ପୁଷ୍ପ ଶଙ୍ଖ ଆପ୍ତ କଳପ ସୁମନୋମୁଖ ।
କୁମୁଦ ମାଲ୍ୟପିଣ୍ଡ ପଦ୍ମ ପୁଣ୍ଡରୀକ
ବାମନ ନିଷ୍ଠୁରକ ତିତିର ଆର୍ଯ୍ୟକ ।

ଜୟ ଅନ୍ଧ ବଧିର ସୁବାହୁ ମୁଖର
ମୁଦ୍‌ଗରପର୍ଣ୍ଣ ଶିରୀଷକ କରବୀର ।
କୋଟରକ ଶିଖୀ ପୋତକ ଉପନନ୍ଦ
ସଦ୍ ବୃତ୍ତ ବିଲ୍ୱପତ୍ର ପିଣ୍ଡାରକ ନନ୍ଦ ।
ବିରଜା ମୂଷିକାଦ ଧାରଣ ମଣିନାଗ
ବକ୍ଷୁଣ୍ଡି ପିଠରକ ଦିଲୀପ ବୃତ୍ତ ଖଗ ।
କୌରବ୍ୟ ଧୃତରାଷ୍ଟ୍ର ସୁମୁଖ ବିରସ
ଶଙ୍ଖଶୀର୍ଷ କୁଶକ କୁହର ସୁରସ ।
ଜ୍ୟୋତିଷ୍କ ଅପରାଜିତ ସର୍ପେ ବାସୁକି
ପାଇ ନିତି ବହିଣ ଥାଆନ୍ତି ପ୍ରୀତିକି ।
ଏସାପମାନଙ୍କରେ କାହାକୁ କନ୍ୟାକୁ
ଦେବାକୁ ମନ ହୋଏ କହ ତା ଆମ୍ଭଙ୍କୁ ।
ମାତଳି ବୋଇଲେ ହେ ଆର୍ଯ୍ୟକଙ୍କ ଆଗେ
ବସିଛନ୍ତି ଯେ ଏଟି ଶୋଭା ବହି ଅଙ୍ଗେ ।
ସେ ନାଗଙ୍କର ମାତା ପିତା ନାମ କିସ
ଏହା ମୋହର ଆଗେ କର ତ ପ୍ରକାଶ ।
ମୋ ମନ ହେଉଅଛି ଏହାଙ୍କୁ ଝିଅକୁ
ଦେବାକୁ ମହାମୁନି କହିଲି ତୁମ୍ଭଙ୍କୁ ।
ନାରଦ ବୋଇଲେ ସେ ଆର୍ଯ୍ୟକଙ୍କ ନାତି
ଐରାବତଙ୍କର କୁଳରେ ଉତପତ୍ତି ।
ବାସନ ସର୍ପଙ୍କର ଝିଅର ସେ ସୁତ
ସୁମୁଖ ନାମ ତାଙ୍କ ହୋଇଛି ବିଖ୍ୟାତ ।
ସୁମୁଖଙ୍କର ବାବୁ ଚିକୁରଙ୍କୁ ଖଗ-
ପତି ପୂର୍ବେ ଖାଇଅଛନ୍ତି ବହି ରାଗ ।
ମାତଳି ବୋଇଲେ ଜାଣିଲି ସବୁ କଥା
ଯତ୍ନ କରି ଝିଅକୁ ଦେବି ଛାଡି ବ୍ୟଥା ।
ନାରଦ ମାତଳିଙ୍କ ବଚନେ ଆର୍ଯ୍ୟକ
ନାଗେ ଯାଇ କରି କହିଲେ ଛାଡି ଦକ ।
ଇନ୍ଦ୍ରଙ୍କ ସାରଥି ମାତଳି ଏ ଅଟନ୍ତି
ଝିଅକୁ ସୁମୁଖକୁ ଦେବେ ବୋଲୁଛନ୍ତି ।
ଯେବେ ତୁମ୍ଭ ଇଚ୍ଛା ହେଉଛି ସର୍ପେଶ୍ୱର
ତେବେ ବିଭା ହୁଅନ୍ତୁ ସୁମୁଖ କୁମର ।
ସୁମୁଖଙ୍କର ବାବୁ ନ ଥିବାର ଜାଣି
ଦେଉଛନ୍ତି ଆର୍ଯ୍ୟକ ମାତଳି କନ୍ୟା ଆଣି ।
ଆର୍ଯ୍ୟକ ବୋଇଲେ ହେ ସୁମୁଖ ବାବୁଙ୍କୁ
ଖାଇଣ ଗରୁଡ ଚଦିଲେ ସୁମୁଖକୁ ।

ଜୀଇଥାଅ ମାସେ ତୋ ବାବୁ ପେଟେ ଜୀର୍ଣ୍ଣ
ହେଲେ ତୋତେ ଆସି ମୁଁ କରିବି ଭୋଜନ
ଏ କଥା ଜାଣୁ ଜାଣୁ ମାତଳି ଝିଅକୁ
କିରୂପେ ମୁଁ ବିଭା କରିବି ସୁମୁଖକୁ ।
ମାତଳି ବୋଇଲେ ମୁଁ ସୁମୁଖଙ୍କୁ ବରି
ଏ କଥା ଶୁଣ କନ୍ୟା ନ ଦେବି କି ଡରି ।
ଗରୁଡ ସୁମୁଖଙ୍କ ନ ନେବେ ଜୀବନ
ଯେଉଁରୂପେ ସେରୂପେ କରିବି ମୁଁ ଜାଣ ।
ମୋ ତୁଲରେ ସହିତ ହୋଇଣ ସୁମୁଖ
ଆସନ୍ତୁ ଦେଖନ୍ତୁ ଏ ଇନ୍ଦ୍ରଙ୍କର ମୁଖ ।
ଏହା ଶୁଣି ଆର୍ଯ୍ୟକ ସୁମୁଖଙ୍କୁ ଘେନି
ସେ ଦୁହିଙ୍କ ସଙ୍ଗେ ମିଳିଲେ ଇନ୍ଦ୍ରଧାନୀ ।
ସୁମୁଖଙ୍କର କୋଟିଜନ୍ମ ଭାଗ୍ୟବଶେ
ଦଇବେ ବିଷ୍ଣୁ ବସିଥିଲେ ଇନ୍ଦ୍ରପାଶେ ।
ମାତଳିଙ୍କ ତୁଲରେ ସୁମୁଖ ନାରଦ
ବିଷ୍ଣୁଙ୍କ ପାଦରେ ନମିଲେ ବହି ମୋଦ ।
କହିଲେ ମହର୍ଷି ମାତଳି ଝିଅ ବିଭା
କଥାଟି ବିଷ୍ଣୁ ଆଗେ ହୋଇକରି ଉଭା ।
ନାରଦଙ୍କ ମୁଖରୁ ମରିବେ ସୁମୁଖ
ଶୁଣିଣ ଅଳପ ହସିଲେ ପଦ୍ମମୁଖ ।
ଇନ୍ଦ୍ରଙ୍କୁ ବୋଇଲେ ଅମୃତ ସୁମୁଖଙ୍କୁ
ଦେଇ କରି ରଖ ସୁମୁଖ ଜୀବନଙ୍କୁ ।
ମାତଳି ତ ଅଟନ୍ତି ତୁମ୍ଭର ସାରଥି
ସୁମୁଖ ମରିବାକୁ ହେଉଛନ୍ତି ବ୍ୟଥୀ ।
ପୁଣି ତାଙ୍କର ସେହୁ ହୋଇବେ ଜୁଆଇଁ
ଦୁଃଖ କରିବାର ଏଣୁଟି ନ ଯୋଗାଇ ।
ଇନ୍ଦ୍ର ଗରୁଡଙ୍କର ଜାଣି ପରାକ୍ରମ
ବିଷ୍ଣୁଙ୍କୁ ବୋଇଲେ ହେ ପୁରୁଷ ଉତ୍ତମ ।
ଆପଣ ସୁମୁଖକୁ ଦେଇ ଅମୃତକୁ ।
ରକ୍ଷାକର ଏତକ ମାଗୁଛି ତୁମ୍ଭଙ୍କୁ ।
ବିଷ୍ଣୁ ବୋଇଲେ ଆହେ ଶଚୀଙ୍କ ନାୟକ
ତୁମ୍ଭ ବଶରେ ତ ଅଛନ୍ତି ତିନିଲୋକ ।
ତୁମ୍ଭେ ଅନୁଗ୍ରହ କରିବ ଯାକୁ ଯାହା
ତା ଅନ୍ୟଥା କରିବ ଅଛି କେ ବୃତ୍ରହା ।
ପୁନଃ ପୁନଃ ବିଷ୍ଣୁ କହନ୍ତେ ଏ ବଚନ
ସୁମୁଖକୁ ଆୟୁଷ ଦେଲେ ମଘବାନ ।

ସୁମୁଖ ବର ପାଇ ଆନନ୍ଦ ହୋଇଲେ
ମାତଳିଙ୍କ ଝିଅକୁ ଯାଇ ବିଭା ହେଲେ ।
ଗୁଣକେଶୀ ରୂପରେ ହୋଇଣ ଲାଳସୀ
ହରିଲେ ପାତାଳରେ ବସି ଅହର୍ନିଶି ।
ନାରଦ ଆର୍ଯ୍ୟକ ହୋଇଣ କୃତକାର୍ଯ୍ୟ
ପୁରକୁ ଗଲେ ଲଭି ଆନନ୍ଦ ସମାଜ ।
ଗରୁଡ ସୁମୁଖଙ୍କୁ ଶଚୀଦେବୀ ପତି
ଆୟୁଷ ଦେବାକ୍ଷଣି ବହି କୋପମୂର୍ତ୍ତି ।
ସ୍ୱର୍ଗପୁରେ ଆସି ସେ ଇନ୍ଦ୍ରଙ୍କ ଆଗରେ
କହିଲେ ଏ ବଚନ ଅତ୍ୟନ୍ତ ରାଗରେ ।
ମୋର ପେଟ ବିକଳକୁ ତ ନ ଜାଣିଲ
ସୁମୁଖକୁ ଜୀଆଇବାର ମୂଳ କଲ ।
ଆହାର କରି ମୋତେ ବିହି ତାଙ୍କୁ ଦେଇ
ଅଛି ତୁମ୍ଭେ ଜାଣିଅଛ ହେ ସୁରସାଇଁ ।
ସୁମୁଖକୁ ମାଇଲେ ମୋ କୁଟୁମ୍ବଯାକ
ଉଦର ପୂରାନ୍ତେ ଖାଇ ତା ମାଂସତକ ।
ସୁମୁଖ ପରି ତୁମ୍ଭଠାରୁ ସବୁ ସର୍ପ
ପାଇଲେ ବର ଛାଡି ଦେବେ ହୃଦୁଁ ତାପ ।
ଆଉ କାହାକୁ ମୁଁ ଖାଇବି ସୁରସାଇଁ
ଏଡେ ପାପ କଥାଟି କଲ କାହିଁପାଇଁ ।
କୁଟୁମ୍ବ ତୁଳେ ମୁହିଁ ପାଇଲେ ମରଣ
କେଉଁ ସୁଖ ପାଇବି ଶଚୀଙ୍କ ରମଣ ।
ମୁଁ ତ ହୋଇଅଛି କଶ୍ୟପଠାରୁ ଜାତ
ଅଟନ୍ତି ଦକ୍ଷଙ୍କ ଦୁହିତା ମୋର ମାତ ।
ତିନିଲୋକ ଯାକ ମୁଁ ପାରଇ ତ ଦହି
ବହୁତ ଦୈତ୍ୟଙ୍କୁ ମାରିଅଛି ମୁହିଁ ।
ତୁମ୍ଭ ସାନ ଭାଇଙ୍କି କହିଲି ମୁଁ ଯାହା
ଏ ଘେନି ମୋତେ ଊଣା ଦେଖ ଶଚୀନାହା ।
ଏଡେ ପାପ କଥାକୁ ବସି ଆଚରିଲ
କାହିଁକି ମୁଁ ବାଞ୍ଛିବି ତୁମ୍ଭରଟି ଭଲ ।
ବିଷ୍ଣୁଙ୍କୁ ଆଶ୍ରେ କଲା ଫଳ ଏତେ କାଳେ
ପାଇଲି ସୁମୁଖ ଜୀଇଁଲେ ତାଙ୍କ ବୋଲେ ।
ଅଦିତିଙ୍କ ପୁଅମାନଙ୍କେ ତୁମ୍ଭେ ବର
ତୁମ୍ଭଙ୍କୁ ବହି ନେଲି ସାମର୍ଥ୍ୟ ଅଛି ମୋର ।
ଇନ୍ଦ୍ରଙ୍କର ପାଶେ ତ ବିଷ୍ଣୁ ବସିଥିଲେ
ଏହା ଶୁଣି ସେ ଗରୁଡକୁ ଆଜ୍ଞା ଦେଲେ ।
ମୋ ଥିବାଠାରେ ତୁମ୍ଭେ ଏଡେ ଆଣ୍ଠ କଥା ।
କହୁଛ କିପାଁ ଛାଡ ହୃଦୁଁ ବହି ବୃଥା ।
ମୁଁ ସିନା ତୁମ୍ଭ ଦେହେ ଥୋଇ କରି ବହି
ହୋଇଥାଏ ମୋହର ଇଚ୍ଛାରେଟି ମୁହିଁ ।
ମୋତେ ବହିବାକୁ ତୁମର କି ସାମର୍ଥ୍ୟ
ମୁଁ ନ କଲେ ବ୍ୟର୍ଥ ହେବଟି ପୁରୁଷାର୍ଥ ।
ଯେବେ ବଳ ଅଛି ଦକ୍ଷିଣବାହୁ ବହି
ଥରେ ଚଳି କି ନା ଦେଖିବି ନେତ୍ରେ ମୁହିଁ ।
ଆହେ ଦୁର୍ଯ୍ୟୋଧନ ଏରୂପେ ବିଷ୍ଣୁ କହି
ଗରୁଡ କାନ୍ଧେ ବାହୁ ଲଦିଦେଲେ ନେଇ ।
ଗରୁଡ ବିଷ୍ଣୁଙ୍କର ବାହୁଭାର ପାଇ
ଚିତି ହୋଇ ପଡିଲେ ଆଖି ଲେଉଟାଇ ।
ଗରୁଡ ବିକଳେ ପିଟନ୍ତେ ଦୁଇଡେଣା
ଉଡିଲା ଦେହ ରୋମ ହୋଇ ଅକଳନା ।
ବିଷ୍ଣୁ ତା ଜାଣିଣ ଶ୍ରୀଭୁଜ ଉଶ୍ୱାସ
କରି ଦେବାକ୍ଷଣି ସେ ଛାଡିଲେ ନିଃଶ୍ୱାସ ।
କହିଲେ ନ ଜାଣି ଅପ୍ରାଧ ତୁମ୍ଭଠାରେ
ଅରଜିଲି ମୁଁ ତାହା କ୍ଷମା କର ଥରେ ।
ମୋ ତୁଳରେ ବ୍ରହ୍ମାଣ୍ଡ ତୁମ୍ଭ ଦେହେ ଅଛି
ମୋତେ ଏହା କଲ ଅଧିକ କି ଘେନୁଅଛି ।
ମୋ ମତରେ ମୁହିଁ ଯା କରୁଥିଲି ଗର୍ବ
ତାହା ତ ଏବେ ଭାଙ୍ଗି ଦେଲ ଆହେ ସର୍ବ
ବିଷ୍ଣୁ ପ୍ରସନ୍ନରେ ବୋଇଲେ ଏହିରୂପେ
ଆଉ ଥରେ ଗରୁଡ ନ କହିବ ଦର୍ପେ ।
କହିଲେ ଜାଣିଥାଅ ଏରୂପେ ସନ୍ତାପ
ଅଧିକ ପାଇକରି ହୋଇବଟି ଲୋପ ।
ଆହେ ଦୁର୍ଯ୍ୟୋଧନ ଗରୁଡଙ୍କର ପରି
ନାଶ ଯିବଟି ଜାଣୁଅଛୁଁ ଗର୍ବ କରି ।
ଭୀମ ଯେ ଅରଜୁନ ଦୁହିଁଙ୍କର କାଣ୍ଡ
ତୁମ ଦେହଯାକେ ହୋଇ ତ ନାହିଁ ଗୁଣ୍ଡ ।
ଏଣୁ କରି ସିନା ଏ କୁରୁସଭା ଦାଣ୍ଡ
କହୁଅଛ ବଚନ ହୋଇଣ ପ୍ରଚଣ୍ଡ ।
ବିଷ୍ଣୁ ଶକ୍ର ପବନ ଅଶ୍ୱିନୀକୁମାର
ଧର୍ମାଦି ଦେବଙ୍କୁ ଜିଣିବ କେଉଁ ନର ।
ଏହି ସକାଶରୁଟି ବିରୋଧକୁ ଛାଡି
କୁଳରକ୍ଷା କଥାରେ ଦୌଡ ହରଘଡି ।

ଯେ ବିଷ୍ଣୁ ଗରୁଡ଼ ଗର୍ବକୁ ଚୂନା କଲେ
ସେହି ହୋଇଛନ୍ତିଟି କୃଷ୍ଣ ଜାଣ ଭଲେ ।
କଣ୍ୱକ ଏବଚନ ଦୁର୍ଯ୍ୟୋଧନ ଶୁଣି
ହସିଲେ କର୍ଣ୍ଣ ମୁଖ ଋହିଁ ସେହିକ୍ଷଣି ।
ଆଣ୍ଠୁ ଦୁଇ ପାଡ଼ି ବସିଣ ଦୁର୍ଯ୍ୟୋଧନ
ଉରୁରେ ହାତମାରି କହିଲେ ବଚନ ।
ଆହେ କଣ୍ୱଋଷି ତୁମ୍ଭର ବଚନକୁ
ମାନି ଦୁର୍ଯ୍ୟୋଧନ ଭଜିବ ନିସତକୁ ।
ନିଶ ଯେବେ ବହିଥିବି ମୁଁ ନାକ ତଳେ
ଦେଖିବ ପାଣ୍ଡବଙ୍କ ପ୍ରାଣ ନେବି ହେଲେ ।
ମୋତେ ଯେଉଁ ରୂପେ ଈଶ୍ୱର ସରଜନା
କରିଛନ୍ତି ସେରୂପେ କହିବି ମୁଁ ସିନା ।
ଶେଷ ହେଲା ମାତଳି ବର ଅନ୍ୱେଷଣ
କହଇ କୃଷ୍ଣସିଂହ ନରକୁଳରାଣ ।



## ଗାଲବ ମହର୍ଷି ଉପାଖ୍ୟାନ

ଜନ୍ମେଜୟ ବୋଇଲେ ବଇଶମ୍ପାୟନ
ଅତି ଦୁଷ୍ଟ ନଷ୍ଟ ଅଟଇ ଦୁର୍ଯ୍ୟୋଧନ ।
ବନ୍ଧୁ ସୁହୃଦଙ୍କର ଦୁଃଖର କରତା
ହେଲା ତହିଁ ଥିଲେ ବହୁତ ବିବେକିତା ।
ଦୁର୍ଯ୍ୟୋଧନ ରାଜାଙ୍କୁ ଭୀଷ୍ମ କୃଷ୍ଣ ବେନି
ନ ନିବାରିଲେ କିମ୍ପା କହ ଋଷିମଣି ।
ବଇଶମ୍ପାୟନ ବୋଇଲେ କୃଷ୍ଣ ତୁମ୍ଭେ
ଭୀଷ୍ମ ଯା କହିଲେ ଶୁଣିଲା ନାହିଁ ଭଲେ ।
ନାରଦ ମହାଋଷି ତାହା ଦେଖି ହସି
ଦୁର୍ଯ୍ୟୋଧନ ନୃପେ ବୋଇଲେ ମଲୁ ଆସି ।
ଯେଉଁ ଆଗ୍ରହ ତୁ କରିଛୁ ବହି ତମ
ସେ ଆଗ୍ରହ ନିକଟେ ଯିବ ନୃପାଧମ ।
ଆଗ୍ରହ କରି ପୂର୍ବେ ଗାଲବ ମହର୍ଷି
ପରାଭବ ପାଇଣ ହୋଇଲେ ବିଦେଶୀ ।
ଏବେ ସେହି କଥା କହିବା ଦୁର୍ଯ୍ୟୋଧନ
ଶୁଣ ମୋହଠାରୁ ତା ଦେଇକରି ମନ ।
ପୂର୍ବେ ବିଶ୍ୱାମିତ୍ର ତପସ୍ୟା କରୁଥିଲେ
ବଶିଷ୍ଠରୂପେ ଧର୍ମ ତାଙ୍କୁ ଦେଖାଦେଲେ ।
ବୋଇଲେ କ୍ଷୁଧିତ ହୋଇଛି ବିଶ୍ୱାମିତ୍ର
ଅନ୍ନ ଦେଇ କରି ରଖ ମୋହର ଗାତ୍ର ।
ବିଶ୍ୱାମିତ୍ର ତା ଶୁଣି ତୋଷ ହୋଇ ଅନ୍ନ
ତିଆରୁଁ ତିଅରୁ ମାୟାବୀ ତପୋଧନ ।
କାଳ ସହି ନ ପାରି ଆନ ଋଷି ଅନ୍ନ
ଅଣାଇ କରି ବେଗେ କଲେ ତା ଭୋଜନ ।
ଏହି ସମୟେ ବିଶ୍ୱାମିତ୍ର ଅନ୍ନ ଘେନି
ଆସିଲେ ଭୁଞ୍ଜି ବାକୁ ସେ ବଶିଷ୍ଠ ମୁନି ।
ତା ଦେଖି ମାୟାବୀ ବଶିଷ୍ଠ ହସିଦେଇ
ବୋଇଲେ ଅନ୍ନ ଭୁଞ୍ଜି ସାରିଲିଣି ମୁହିଁ ।
ଯାଉଛ ମୁଁ ଆସିବା ଯାଏ ଅନ୍ନ ଥାଳୀ
ଧରି ରହିଥାଅ ଏଠାରେଟି ନ ଭାଳି ।
ଏହା କହି ସେଠାରୁ ସେକ୍ଷଣି ସେ ଗଲେ
ବିଶ୍ୱାମିତ୍ର ଥାଳୀକି ଧରିଣ ରହିଲେ ।
ବିଶ୍ୱାମିତ୍ରଙ୍କର ଗାଲବ ନାମେ ଶିଷ୍ୟ
ତା ଦେଖି ସେବା କଲେ ତାଙ୍କୁ ବହି ତୋଷ
ନିତି ସଜ ଅନ୍ନ ସେ ଥାଳୀରେ ପରାନ୍ତି
ବାସି ଅନ୍ନ ଗୁଡ଼ିକ ପକାଇ ଦିଅନ୍ତି ।
ଏହିରୂପେ ଶତେକ ବରଷର ଶେଷେ
ବଶିଷ୍ଠ ରୂପେ ଧର୍ମ ଆସି ତାଙ୍କ ପାଶେ ।
ଦେଖିଲେ ସେ ବିଶ୍ୱାମିତ୍ରଙ୍କର ଥାଳୀରେ
ସଜ ଅନ୍ନ ଅଛି ଅତ୍ୟନ୍ତ ଉଷ୍ମମରେ ।
ଅତି ହୃଷ୍ଟ ହୋଇଣ ମାୟାବୀ ବଶିଷ୍ଠ
ତାହା ଗ୍ରାସ କରି ପେଟକୁ କଲେ ପୁଷ୍ଟ ।
ବୋଇଲେ ବିଶ୍ୱାମିତ୍ର ମୋର ସନ୍ତୋଷରେ
ଲେଖା ହେବ ତୁମ୍ଭେ ହେ ଦ୍ୱିଜ ସମୂହରେ ।
ସେ ଋଷିଙ୍କ ବୋଲିବା କ୍ଷଣି ବିଶ୍ୱାମିତ୍ର
ବ୍ରାହ୍ମଣ ହେଲେ ଦେହ କରିଣ ପବିତ୍ର ।
ସେ କ୍ଷଣି ସେ ଧର୍ମ ବଶିଷ୍ଠ ରୂପ ଛାଡ଼ି
ନିଜ ରୂପେ ଘରକୁ ଗଲେ ଶୂନ୍ୟେ ଉଡ଼ି ।
ବିଶ୍ୱାମିତ୍ର ବୋଇଲେ ଗାଲବ ଏ ସେବା
ଦେଖି ମୁଁ ଯେ ସନ୍ତୋଷ ହେଲି କି କହିବା ।
ଏବେ ତୁମ୍ଭେ ମୋହର ବଚନକୁ ମାନି
ଆଶ୍ରମକୁ ବାବୁ ଯାଅଟି ଏହିକ୍ଷଣି ।
ଗାଲବ ବୋଇଲେ ମୁଁ ତୁମ୍ଭ ଦକ୍ଷିଣାକୁ
ନ ଦେଲେ କି ରୂପରେ ଯିବି ଆଶ୍ରମକୁ ।
ଯାଗ କଲେ ତ ଲୋକ ଦେଉଛି ଦକ୍ଷିଣା
ଏହା ଜାଣି କି ରୂପେ ହୋଇବି ମୁଁ ବଣା ।

ଦକ୍ଷିଣା ଦେଲେ ଫଳ ବିଧି ସିଦ୍ଧି
ନୋହିଲେ ଜାଣ ହୋଇଯାଏଟି ଅବିଧି ।
ବିଶ୍ୱାମିତ୍ର ବୋଇଲେ ହେଲିନି ମୁଁ ତୋଷ
କାହିଁକି ଆଗ୍ରହକୁ କର ବସି ଶିଷ୍ୟ ।
ବିଶ୍ୱାମିତ୍ର ଯେତିକି ଯାଅ ବୋଲୁଥିଲେ
ଗାଲବ ଆଗ୍ରହ ତେତିକି ବସି କଲେ ।
ବିଶ୍ୱାମିତ୍ର ତା ନ ସହି କ୍ରୋଧଚିତ୍ତେ
ବୋଇଲେ ଯା ମାଗିବି ଆଣିଦେବ ମୋତେ ।
ଚନ୍ଦ୍ର ପରି ବରନ ଏକ କର୍ଣ୍ଣ ଶ୍ୟାମ
ଆଠଶ ଘୋଡା ଦେଇ କର ପୂର୍ଣ୍ଣକାମ ।
ବିଶ୍ୱାମିତ୍ର ମୁଖରୁ ଏ ବଚନ ଶୁଣି
ଚିନ୍ତାରେ ଗାଲବ ଛାଡିଲେ ଭକ୍ଷ୍ୟ ପାଣି ।
ଗାଲବଙ୍କ ଦେହରୁ ଶୁଖି ରକ୍ତ ମାଂସ
ଅସ୍ଥି ଶିର ଯାକ ଦିଶିଲା ହୋଇ ବ୍ୟକ୍ତ ।
ମନେ କଲେ ଅତି ନିର୍ଦ୍ଧନ ଅଟେ ମୁହିଁ
ଶ୍ୟାମ କର୍ଣ୍ଣ ଘୋଡା ଆଠଶ ଦେବି କେହିଁ ।
ଗୁରୁମାଗିଛନ୍ତି ଦକ୍ଷିଣା କରି ମୋତେ
ନଦେଲେ ସେ ଯେ ଶାପଦେବେ କ୍ରୋଧଚିତ୍ତେ
ଏ ସକାଶୁଁ ଆଗ ତ ହୋଇଣ ମରଣ
ହେଲେ ହେବ ମୋହର ଗତି ଅକାରଣ ।
ନିର୍ଦ୍ଧନ ହୋଇ ଋଣୀ ହୋଇଛି ଯେ ନର
ତାହାର ଦିନଟି ତ ହୁଅଇ ଅସାର ।
ସୁହୃଦ ପ୍ରତି ପ୍ରତିଉପକାର କରି
ନାହିଁ ଯେ ତାର ଦେହ ଅଟେ ଶବ ପରି
କରିବି ବୋଲଇ କହି ନ ପାରେ ଯେ କରି
ମଲେଟି ନରକୁଟି ହୁଅଇ ତାହାରି ।
ମିଥ୍ୟାକୁ ଯେଉଁ ଲୋକ କହଇ ନରକ
ତାକୁ ଆଗ ଦିଓଟି ପ୍ରେତଙ୍କ ନାୟକ ।
କୃତଘ୍ନ ଲୋକଙ୍କର ମୁକତିର କଥା
କାହିଁତ ଲେଖି ନାହିଁ ବିଧାତା ସର୍ବଥା ।
ଗୁରୁ ଆଗରେ ମିଥ୍ୟା କହି କରି ମୁହିଁ
କି ରୂପରେ ରହିବି ଦେହେ ପ୍ରାଣ ବହି ।
ଦେବତାଏ ମୋହର କରନ୍ତି ସମ୍ମାନ
ତାଙ୍କୁ କିଛି ମାଗି ନାହିଁ ତ କେଉଁଦିନ ।
ଏତେବେଳେ ମୋହର ତ୍ରିଭୁବନପତି
ବିଷ୍ଣୁ ବିନା ହେବାକୁ ଦିଶୁନାହିଁ ଗତି ।

ଏହିକାଳେ ଗରୁଡ ଗାଲବଙ୍କ ଆଗେ
ଦଇବ ଯୋଗେ ଆସି ପାଇଗଲେ ବେଗେ ।
ବୋଇଲେ ହେ ଗାଲବ ତୁମ୍ଭ ମିତ୍ର ହୋଇ
ସୁଖୀ ହୋଇଛି ତ ବିଷ୍ଣୁଙ୍କୁ ସାହା ପାଇ ।
ପୂର୍ବେ ମୁଁ ତୁମ୍ଭ ପାଇଁ କହିଛି ବିଷ୍ଣୁଙ୍କୁ
ଅଙ୍ଗୀକାର କରିଅଛନ୍ତି ସେ କଥାକୁ ।
ମୋ ପିଠିରେ ଏବେ ବସିଣ ତୁମ୍ଭେ ତୋଷେ
ଶ୍ୟାମ କର୍ଣ୍ଣଘୋଡା ଖୋଜ ହେ ସବୁ ଦେଶେ ।
ଏ ନୋହିଲେ ଚାରି ଦିଗରୁ କେଉଁଦିଗ
ଇଛା ଅଛି ଯିବାକୁ କହ ମହାଭାଗ ।
ଆଗ ଚାରି ଦିଗ କଥାଟି ଯେ ତୁମ୍ଭଙ୍କୁ
କହିବା ଦେଇ କରି ଶୁଣ ହେ ମନକୁ ।
ସୂର୍ଯ୍ୟ ଯେଉଁ ଦିଗେ ଉଦୟ ହେଉଛନ୍ତି
ପୁରୁବ ବୋଲି ଲୋକେ ତାହାକୁ ବୋଲନ୍ତି ।
ସାଧେ ସେ ଦିଗେ ବସି ସାଧୁଥାନ୍ତି ତପ
ଛାଡିଦେଇ କରି ହୃଦୟରୁ ସନ୍ତାପ ।
ଧର୍ମଙ୍କର ଚକ୍ଷୁ ଯେ ସୂର୍ଯ୍ୟ କଳାକର
ସେହିଦିନୁ ହେଉଣ ଥାଆନ୍ତି ବାହାର ।
ଦକ୍ଷ ପ୍ରଜାପତିଙ୍କ ଝିଅ ସେହି ଦିଗେ
ବହୁତ ପୁତ୍ର ଜନ୍ମ କଲେଟି ସରାଗେ ।
ଦିବସକୁ ପ୍ରତି ଅଟଇ ସେ ଦୁଆର
ଜାଣ କହିବାରେ ଗାଲବ ଋଷିବର ।
ସେହି ଦିଗେ ଇନ୍ଦ୍ର ଯେ ଅଭିଷେକ ହୋଇ
ସୁରରାଜ୍ୟକୁ ସୁଖେ ପାଳିଲେଟି ଯାଇ ।
ବ୍ରହ୍ମା ସେହି ଦିଗରେ ପଢି କରି ବେଦ
ବହିଲେଟି ମନରେ ଅତ୍ୟନ୍ତ ପ୍ରମୋଦ ।
ସେହି ଦିଗେ ସୂର୍ଯ୍ୟ ଯେ ଯଜୁର୍ବେଦ କହି
ଋଷିଙ୍କ କର୍ଣ୍ଣେ ଦେଲେ ସାବିତ୍ରୀ କି କହି ।
ସେ ଦିଗେ ଚନ୍ଦ୍ର କୁ ଯାଗରେ ଦେବତାଏ
ଖାଆନ୍ତି ଗୋଟି ହୋଇ କରି ଏକଠାଏ ।
ସେହି ଦିଗରେ ଅଗ୍ନିମାନେ ତୃପ୍ତହୋଇ
ରହିଣଛନ୍ତି ଘିଅ ଜଳ ଆଦି ପିଇ ।
ସେହି ଦିଗକୁ ଆଶ୍ରେ କରିଣ ବରୁଣ
ସମ୍ପତ୍ତି ପାଇ ହେଲେ ତୃପତି ଦ୍ୱିଗୁଣ ।
ସେହି ଦିଗେ ବଶିଷ୍ଠ ତପସ୍ୟାକୁ କରି
ସମସ୍ତ ପ୍ରତିଷ୍ଠାକୁ କଲେ ତାହାଙ୍କରି ।

ସେହି ଦିଗେ ବରାହ ଆଦି ପଶୁ ପ୍ରାଣ
ଯାଗରେ ପ୍ରୋକ୍ଷଣଟି କଲେ ସୁରରାଣ ।
ସେହି ଦିଗେ ସୂର୍ଯ୍ୟଟି ଅସୁରଙ୍କୁ ଦଳି
ତିନିଲୋକେ ଆଲୋକ କରେ ତେଜେ ଜଳି ।
ସେହି ଦିଗେ ଯେ ସ୍ୱର୍ଗ ସୁଖ ଲାଭ ବାଟ
ଜାଣ ଆହେ ଗାଲବ ଋଷିକୁଳଘଟ ।
ଏବେ ଶୁଣ ଦକ୍ଷିଣ ଦିଗ ମହାତମ୍ୟ
ଗାଲବ ଋଷି ହୃଦେ ବହିକରି ପ୍ରେମ ।
ବିଧିରେ ସୂର୍ଯ୍ୟଗୁରୁ ପାଦରେ ଦକ୍ଷିଣା
ରୂପରେ ଦେବାରୁଟି ନାମ ତା ଦକ୍ଷିଣା ।
ସେହି ଦିଗେ ଧୂମପ ଆଦି ଦେବତାଏ
ଘରକରି ଅଛନ୍ତି ଜାଣନ୍ତି ସଭିଏଁ ।
ଦକ୍ଷିଣ ଦିଗେ ବିଶ୍ୱଦେବ ପିତୃକୁଳ
ସଙ୍ଗତେ ଧରି ରହିଥାନ୍ତି ହୋଇ ଠୁଳ ।
ଦକ୍ଷିଣ ଦିଗେ ଜନ୍ତୁମାନଙ୍କର ପ୍ରାଣ
ତ୍ରୁଟିଲବଠାରୁ ଗଣନ୍ତି ପ୍ରେତ ରାଣ ।
ଦକ୍ଷିଣ ଦିଗେ ଦେବଋଷି ରାଜଋଷି
ବସିଣ ତପସ୍ୟା କରନ୍ତି ଅହର୍ନିଶି ।
ଦକ୍ଷିଣ ଦିଗେ କର୍ମ ଧର୍ମ ସତ୍ୟ ନୀତି
ଘରକରି ରହିଅଛି ହେ ମହାମତି ।
ମଲେ ସବୁ ପ୍ରାଣୀଏ ଦକ୍ଷିଣକୁ ଯାଇ
ଦେଖନ୍ତି ନୟନରେ ପ୍ରେତକୁଳସାଇଁ ।
ଦକ୍ଷିଣରେ ସହସ୍ର ସହସ୍ର ନୈର୍ଋତ
ରହିବାରୁ କରାନ୍ତି ମହାଭୟ ଜାତ ।
ଦକ୍ଷିଣରେ ଗନ୍ଧର୍ବେ ଋଷି କୁଡିଆରେ
ଥାଇ ଗୀତ ଗାଆନ୍ତି ମନମୁଗ୍‌ଧ ସ୍ୱରେ ।
ଦକ୍ଷିଣରେ ରୈବତ ନାମେ ଦୈତ୍ୟ ରାଜା
ସାମଗାନ ଶୁଣିଲେ ଛାଡିଣ ଭାରିଯା ।
ଦକ୍ଷିଣରେ ସାବର୍ଣ୍ଣ ଯବତ୍ରୀତ ସୁତ
ସ୍ଥାପିତ ନିୟମକୁ ନ ଲଙ୍ଘେ ସୂର୍ଯ୍ୟତ ।
ଦକ୍ଷିଣରେ ରାବଣ ବୀର ପାଇ ବର
ଜିଣି ପକାଇଲାଟି ବଳେ ପୁରନ୍ଦର ।
ଦକ୍ଷିଣରେ ବୃତ୍ର ଅସୁର ତପବ୍ରତ
ଆଚରି ଇନ୍ଦ୍ର ପଦ ପାଇ ହେଲେ ମତ୍ତ ।
ଦକ୍ଷିଣରେ ଦୁଷ୍କୃତି ହୋଇକରି ଗୋଟି ।
ଘାଣ୍ଟି ହେଉଥାନ୍ତି ପାଇ ନରକୁଟି ।
ଦକ୍ଷିଣ ଦିଗେ ବୈତରଣୀ ନଦୀ ଅଛି
ବିତରଣ କଲେ ତା ଲୋକ ଯେ ତରୁଛି ।
ଦକ୍ଷିଣ ଦିଗେ ଗଜ କଚ୍ଛପକୁ ଖାଇ
ଅମୃତ ଆଣିଗଲି ସ୍ୱର୍ଗକୁଟି ମୁହିଁ ।
ଦକ୍ଷିଣରେ ଯେ ଚକ୍ରଧନୁ ତପୋବନ୍ତ
ସୂର୍ଯ୍ୟଙ୍କର ବୀର୍ଯ୍ୟରୁ ହୋଇଲେଟି ଜାତ ।
ଲୋକରେ ସେ କପିଳ ଦେବ ବୋଲି ଖ୍ୟାତ
ଯାହାଙ୍କ ପ୍ରଭାବେ ସଗରବଂଶ ହତ ।
ଏବେ ପୁଣି ପଶ୍ଚିମ ଦିଗର କଥାକୁ
ମୋଠାରୁ ଶୁଣ ତୁମ୍ଭେ ଦେଇଣ ମନକୁ ।
ବରୁଣ ରାଜାଙ୍କର ସେ ଦିଗୁଟି ପ୍ରିୟ
ହୋଇଣ କରେ ସୂର୍ଯ୍ୟ କରକୁଟି କ୍ଷୟ ।
ପଶ୍ଚିମରେ କଶ୍ୟପ ଜଳଜନ୍ତୁଙ୍କରେ
ବରୁଣକୁ ରାଜା କରିଲେ ନିଃଶଙ୍କରେ ।
ପଶ୍ଚିମରେ ଦ୍ୱିତୀୟାଠାରୁ ଓଷଧୀଶ
ଦିନକୁ କଳାଟିଏ କରନ୍ତି ପ୍ରକାଶ ।
ପଶ୍ଚିମରେ ପବନେ ବନ୍ଧ ହୋଇ ଦୈତ୍ୟେ
ଶୋଇଛନ୍ତି ଆହେ ଗାଲବ ଋଷି ନିତ୍ୟେ ।
ପଶ୍ଚିମ ଦିଗରେଟି ଅସ୍ତପରବତ
ଥାଇକରି ସୂର୍ଯ୍ୟଙ୍କୁ କରୁଅଛି ଗ୍ରସ୍ତ ।
ସେ ଅସ୍ତପରବତ ସକାଶୁଁ ପଶ୍ଚିମ
ସନ୍ଧ୍ୟା ହୁଏ ଦ୍ୱିଜେ କରନ୍ତି ସନ୍ଧ୍ୟାକର୍ମ ।
ଅସ୍ତ ପରବତ ବଳରେଟି ଯେ ନିଶା
ପ୍ରବର୍ତ୍ତିବାରୁ ନିଦ୍ରା କରେ ଦେହେ ବସା ।
ଏ ସକାଶୁଁ ପ୍ରାଣୀମାନଙ୍କର ଆୟୁଷ
ଅଧେ ଆହେ ଗାଲବ ହୁଅଇଟି ନାଶ ।
ପଶ୍ଚିମ ଦିଗେ ଦିତି ଗର୍ଭ ଶକ୍ର କାଟି
କଲେଟି ପବନକୁ ଅଣଞ୍ଚାଶ ଗୋଟି ।
ପଶ୍ଚିମଦିଗେ ରାହୁ କବନ୍ଧଟି ଦୃଶ୍ୟ
ହେଉଛି ସେଟି କରେ ଚନ୍ଦ୍ର ସୂର୍ଯ୍ୟ ଗ୍ରାସ ।
ପଶ୍ଚିମରେ ହରିତରୋମା ମୁନି ବେଦ
ପଢୁଛନ୍ତି ସଭିଙ୍କି ଶୁଭୁଛି ଶବଦ ।
ପଶ୍ଚିମ ଦିଗରେଟି ମେଧାଙ୍କ ଦୁହିତୀ
ସୂର୍ଯ୍ୟଙ୍କ ବୋଲ ମାନି କରୁଛନ୍ତି ସ୍ଥିତି ।
ପଶ୍ଚିମ ଦିଗରେଟି ସୂର୍ଯ୍ୟରଶ୍ମି କାଳେ
ଲୀନ ହେଉଅଛନ୍ତି ନକ୍ଷତ୍ର ମଣ୍ଡଳେ ।

ଚନ୍ଦ୍ରଙ୍କର ସଂଯୋଗୁ ହୋଇକରି ଜାତ
ପୁଣି ଆକଶରେ ସେ ହୁଅନ୍ତି ବ୍ୟାପତ ।
ପଶ୍ଚିମ ଦିଗରେଟି ନଦୀମାନେ ବହି
ଜଳରେ ପୂର୍ଣ୍ଣକରି ଦେଉଛନ୍ତି ମହୀ ।
ପଶ୍ଚିମ ଦିଗରେଟି ଅନନ୍ତଙ୍କ ସ୍ଥାନ
ସେଠାରେ ମଧ୍ୟେ ଅଛି ବିଷ୍ଣୁଙ୍କ ଆସ୍ଥାନ ।
ପଶ୍ଚିମେ କଶ୍ୟପ ପବନ ଦୁହେଁ ମିଶି
ରହିଛନ୍ତି ସୁଖରେ ଆସି ଅହର୍ନିଶି ।
ଏବେ ଶୁଣ ଉତ୍ତର ଦିଗର ଚରିତ
ସେ ଦିଗରେ ହୋଇଛି ବହୁ ପୁଣ୍ୟ ଖ୍ୟାତ ।
ଅଧମ ଲୋକ କେବେ ଉତ୍ତର ଦିଗକୁ
ଜାଣିଛି ଏ ବାଣୀ ନ ଆସେ କହିବାକୁ ।
ନରନାରାୟଣଙ୍କ ବଦରିକାଶ୍ରମ
ଉତ୍ତର ଦିଗରେଟି ଜାଣ ଦ୍ୱିଜୋତ୍ତମ ।
ବ୍ରହ୍ମା ମଧ ଉତ୍ତରଦିଗେ ରହିଛନ୍ତି
ଚାରି ମୁଖରେଟି ବେଦକୁ ସେ ପଢନ୍ତି ।
ଉତ୍ତର ଦିଗରେ ପୁରୁଷ ପ୍ରକୃତିକି
ଘେନିଣ ରହିଛନ୍ତି ନ ଯାଇ କାହିଁକି ।
ପ୍ରକୃତି ପୁରୁଷକୁ ନରନାରାୟଣ
ବିନା କେହି ନ ଦେଖନ୍ତି ହେ ତାହା ଜାଣ ।
ଉତ୍ତର ଦିଗରେ ସହସ୍ର ଚକ୍ଷୁଶିର
ପାଦ ବହି ରହିଅଛନ୍ତି ଚକ୍ରଧର ।
ଉତ୍ତର ଦିଗରେ ବ୍ରାହ୍ମଣଙ୍କ ରାଜା
ହୋଇକରି ଚନ୍ଦ୍ରମା ପାଉଛନ୍ତି ପୂଜା ।
ଉତ୍ତର ଦିଗରେ ଗଙ୍ଗା ଶିବ ଶିରେ
ପଡିକରି ଯେ ଆସି ବହିଲେ ମହୀରେ ।
ଉତ୍ତର ଦିଗରେଟି ପାର୍ବତୀ ତପସ୍ୟା
କରିଛନ୍ତି ଶିବରେ କରିଣ ଲାଳସା ।
ଉତ୍ତର ଦିଗେ ଶିବ କ୍ରୋଧ କାମ ଉମା
ହିମାଳୟ ଆଦି କରିଅଛନ୍ତି ସୀମା ।
ଉତ୍ତର ଦିଗରେ ଗନ୍ଧର୍ବ ରାକ୍ଷସରେ
ଅଭିଷେକ ହୋଇଲେ କୁବେର ତୋଷରେ ।
ଉତ୍ତର ଦିଗରେ ମନ୍ଦର ମନ୍ଦାକିନୀ
ସୌଗନ୍ଧିକ ଚୈତ୍ରରଥ ଯେ ରମ୍ଭାବନି ।
କଳ୍ପବୃକ୍ଷ ଋଷିମାନଙ୍କର ବିମାନ
ଏହୁ କରିଛନ୍ତି ଗାଲବ ଋଷି ସ୍ଥାନ ।

ଉତ୍ତର ଦିଗେ ଅରୁନ୍ଧତୀଙ୍କର ତୁଲେ
ସପତଋଷି ରହିଅଛନ୍ତିଟି ଭଲେ ।
ସ୍ୱାତୀ ନକ୍ଷତ୍ରଟି ଉତ୍ତର ଦିଗେ ଥାଇ
ଆକାଶେ ଦିଶନ୍ତି ନିର୍ମଳ ରୂପ ବହି ।
ଉତ୍ତର ଦିଗରେଟି ଧ୍ରୁବଙ୍କ ମଣ୍ଡଳ
ପାଇ ବୁଲୁଅଛନ୍ତି ନକ୍ଷତ୍ର ସକଳ ।
ଉତ୍ତର ଦିଗରେଟି କଇଲାସ ଗିରି
ରହିଛି ସଦାଶିବ ଦେବ ବହି କରି ।
ଉତ୍ତର ଦିଗରେଟି ବିଦ୍ୟୁପ୍ରଭା ନାମ
ଦଶ ଅପସରାଟି ହେଲେ ଜନମ ।
ଉତ୍ତର ଦିଗରେଟି ତ୍ରିବିକ୍ରମରୂପେ ।
ବଳିଙ୍କି ନିଗ୍ରହ ଯେ କଲେ ବିଷ୍ଣୁ ଆପେ ।
ଉତ୍ତର ଦିଗରେ ଉଶୀରବୀଜ ସ୍ଥାନ
ଯାଗ କରୁଣ ଥିଲେ ମରୁତରାଜନ ।
ଉତ୍ତର ଦିଗରେ ଜୀମୂତ ଋଷି ଥାଇଁ
ତୋଷ ହୋଇଲେ ସୁନାଗୁଡାଏଟି ପାଇ ।
ବ୍ରାହ୍ମଣଙ୍କୁ ସେ ସୁନାଯାକ ସମର୍ପିଲେ ।
ବ୍ରାହ୍ମଣେ ସେ ଘେନି ତାହାଙ୍କୁ ବର ଦେଲେ
ଚାରିଦିଗ କଥା ତ କହିଲି ବତାଇ
ଯହିଁକି ମନ ହେବ ତହିଁ ନେବି ମୁହିଁ ।
ଗାଲବ ବୋଇଲେ ହେ ଧର୍ମଙ୍କ ନନ୍ଦନ
ଚନ୍ଦ୍ର ସୂର୍ଯ୍ୟ କରିଅଛନ୍ତି ଯହିଁ ସ୍ଥାନ ।
ତାହାକୁ ତ ପୂରୁବଦିଗ ବୋଲି କରି
ତହିଁକି ଯିବି ମୁହିଁ ନିଅ ପକ୍ଷୀସାଇଁ ।
ଗରୁଡ ଏହା ଶୁଣି ବହି ସ୍ନେହଭାବ
ପାତିଦେଲେ ପିଠିକି ବସିଲେ ଗାଲବ ।
ସେହିକ୍ଷଣି ଆକାଶମାର୍ଗେ ପକ୍ଷୀବର
ଉଡିଲେ ଡେଣା ଦୁଇ ବିସ୍ତାରି ତାଙ୍କର ।
ଗାଲବ ବୋଇଲେ ଗରୁଡ ତୁମ୍ଭ ତେଜ
ବଢି ବଢାଉଛି ଯେ ସୂର୍ଯ୍ୟଙ୍କର ଲାଜ ।
ତୁମ୍ଭ ପକ୍ଷବାତ ଘାତରେ ବୃକ୍ଷପନ୍ତି
ଆମ୍ଭ ପଛେ ଆସିବା ପରାୟେ ଦିଶନ୍ତି ।
ଏଥି ମଧରେ ଯେ ଅଛନ୍ତି ଗିରିରାଜି
କମ୍ପିଣ ଯାଉଛନ୍ତି ବିକଳେ ବରଜି ।
ସମୁଦ୍ରରେ ଯେତେ ଅଛନ୍ତି ଜଳଜନ୍ତୁ
ମଚ୍ଛି ହେଲା ପରି ହେଉଛି ମୋର ହେତୁ ।

ସମୁଦ୍ରଙ୍କ ଜଳ ଶବଦେ ମୋର କାନ
ସ୍ତବ୍ଧ ହୋଇଲାନି ଗରୁଡ ପକ୍ଷୀରାଣ ।
ଯେବେ ବ୍ରହ୍ମହତ୍ୟାକୁ ତୁମ୍ଭ ଭୟ ଅଛି
ତେବେ ହେ ଧୀର ହୋଇ ଉଡ ମୁଁ କହୁଛି ।
ତୁମ୍ଭ ତୁଲେ ଯେ ଦଶଦିଶ ନଭ ସୂର୍ଯ୍ୟ
ଦେଖି ପାରୁନାହିଁ ମୋନୟନ ସରୋଜ ।
ଯେଉଁଆଡେ ମୋହର ପଡୁଅଛି ବୃଷ୍ଟି
ମଣୁଛି ସେ ଆଡେ କି ହୁଏ ଅଗ୍ନି ବୃଷ୍ଟି ।
ଏହି ସକାଶରୁ ମୁଁ କହୁଅଛି ତୁମ୍ଭଙ୍କୁ
ନିବର୍ତ୍ତ ଏଠାରେ ଘେନି ମୋ ବଚନକୁ ।
ଗୁରୁଙ୍କୁ ଶ୍ୟାମକର୍ଣ୍ଣ ଘୋଡା ମୁଁ ଆଠଶ
ଯାଚିଛି ଏରୂପେ ଗଲେ କି ପକ୍ଷୀଈଶ ।
ଆଠଶ ଘୋଡା ମୋତେ ହେବ ପରାପତ
ହୃଦୟରେ ଥରେ ବିଚ୍ଚରି ତା କହତ ।
ପ୍ରାଣ ଛାଡିବାର ମୂଳ ମୋ ହେଉଅଛି
ଆଉ କି କହିବି ହେ କଶ୍ୟପଙ୍କ ବାସି ।
ଏହା ଶୁଣି ଗରୁଡ ଅଳପ ହସିଲେ
ଅଣ୍ଟାରୁ ଥଣ୍ଟ ଟେକି ବଚନ ଭାଷିଲେ ।
କିଛି କଥା ତୁମ୍ଭେ ନ ଜାଣ ତ ଗାଲବ
ମରିବାରେ କିପାଇଁ ବଳାଇଛ ଭାବ ।
ପୂର୍ବରୁ ଉପାୟପଚ୍ଚରି ଥିଲେ ତୁମ୍ଭେ
ଯହିଁକି ଯେ ଉଚିତ କହିଥାନ୍ତୁ ଆମ୍ଭେ ।
ଚ୍ଚଲ ହେ ଋଷଭ ପର୍ବତ ସିନ୍ଧୁ ପାଶେ
ରହିଛି ତାର ଶିଖେ ବସିବା ସନ୍ତୋଷେ ।
ଏହା କହି ଗରୁଡ ଋଷଭ ପର୍ବତ
ଉପରେ ଦ୍ୱିଜ ତୁଲେ ହେଲେ ଉପଗତ ।
ସେ ପର୍ବତଶିଖରେ ଶାଣ୍ଡିଳୀ ବ୍ରାହ୍ମଣୀ
ତପସ୍ୟା କରୁଥିଲେ ଦେଖି ପକ୍ଷୀମଣି ।
ଗାଲବଙ୍କ ତୁଲେ ଆନନ୍ଦ ଧରି ମଜ୍ଜା
ଶାଣ୍ଡିଳୀ ବ୍ରାହ୍ମଣୀଙ୍କ ପାଦେ କଲେ ପୂଜା ।
ଶାଣ୍ଡିଳୀ ତାଙ୍କଠାରୁ ପୂଜାବିଧି ପାଇ
ସିଦ୍ଧ ଅନ୍ନ ଦେଲେ ତାହାଙ୍କୁ ତୋଷ ହୋଇ ।
ସେ ଅନ୍ନକୁ ଗରୁଡ ଗାଲବ ଖାଇଲେ
ନ କହି କଥା ମଥା ଢାଳି ନିଦ୍ରା ଗଲେ ।
ମୁହୂର୍ତ୍ତକ ଉତାରେ ଗରୁଡ ଉଠିଲେ
ଦେହରେ ପକ୍ଷ ନାହିଁ ଗୋଟିଏ ଦେଖିଲେ ।

ଗଣ୍ଡିରୁ ତ ଛାଡି ଯାଇଛି ସବୁ ପତ୍ର
ଏଣୁ ନିନ୍ଦୁଛି ସେ ନିଦାଘକାଳ ଗୋତ୍ର ।
ଏ ଅନ୍ତେ ଗାଲବ ବ୍ରାହ୍ମଣ ଚେତା ପାଇ ।
ଦେଖିଲେ ଗରୁଡଙ୍କ ଦେହେ ପକ୍ଷ ନାହିଁ ।
ବୋଇଲେ କିମ୍ପାଇଁ ଏରୂପେ ତୁମ୍ଭେ ଦଶା
ପାଇଲ କହ ପକ୍ଷୀକୁଳ ମହାଯଶା ।
ପଡିଛି ତ ମୁଁ ତୁମ୍ଭ ସେନେହ ଅଠାରେ
କହ ହେ କେତେ କାଳ ରହିବା ଏଠାରେ ।
ମନରେ ଅବା ତୁମ୍ଭେ ବ୍ୟଭିଚ୍ଚର କର୍ମ
ଆଚରିଲ ଗରୁଡ ପକ୍ଷୀଙ୍କ ଉତ୍ତମ ।
ଗରୁଡ ବୋଇଲେ ଶାଣ୍ଡିଳୀ ବ୍ରାହ୍ମଣୀଙ୍କି
ମନ କଲି ନେବି ମୁଁ ବିଷ୍ଣୁଙ୍କ କତିକି ।
ଏ କଥାକୁ ଅବା ଶାଣ୍ଡିଳୀ ବହି କୋପ
ଧମା ଦେହ ପକ୍ଷୀଯାକ କରିଦେଲେ ଲୋପ ।
ଏରୂପେ ଗାଲବଙ୍କୁ କହିଣ ଗରୁଡ
ଶାଣ୍ଡିଳୀଙ୍କି ନମିଲେ ଭାଙ୍ଗି ବେକହାଡ ।
ମନରେସନା ବିଷ୍ଣୁଲୋକକୁ ତୁମ୍ଭଙ୍କୁ
ନେବି ବୋଲି ଭାବିଲି ଏଥିକି ଆମ୍ଭଙ୍କୁ ।
ଏଡେ କଷ୍ଟ ଦେବା ଉଚିତ କି ଶାଣ୍ଡିଳୀ
ଦେଖ ପଡି ରହିଲି ମୋହ ପରା ବଳୀ ।
ଶାଣ୍ଡିଳୀ ବୋଇଲେ ହେ ମୋ ଇଚ୍ଛାନୋହିଲେ
ମୋତେ କେହି ନେଇ ନ ପାରଇଟି ଭଲେ
ସବୁ ଲକ୍ଷଣରେ ନିନ୍ଦିତା ହେଲେ ମୁହିଁ
ରହିଛି ଏଠରେ ମୁଁ ଦେହଶୁଦ୍ଧି ପାଇଁ ।
ଆଚ୍ଚରରୁ ଧରମ ଧରମ ଧନ ଶୋଭା ହୁଏ
କହିଅଛନ୍ତି ଏହ ସକଳ ଋଷିଏ ।
ଏବେ ହେ ଯେଉଁଠାକୁ ଆଶ କରିଅଛ
ଯାଅ ସେହିଠାକୁ ହେ କଶ୍ୟପଙ୍କ ବସ୍ତ ।
ଆଜଠାରୁ ସ୍ତିରୀମାନଙ୍କର ନିନ୍ଦା
ନ ବାଢିବ ମୁଖେ ଗରୁଡ କରି ଫନ୍ଦା ।
ଶାଣ୍ଡିଳୀ ସନ୍ତୋଷେ ବୋଲିବା କ୍ଷଣି ଏହା
ପୂର୍ବପରି ଗରୁଡପାଇ ପକ୍ଷ ବାହା ।
ଶାଣ୍ଡିଳୀଙ୍କ ଅନୁଜ୍ଞା ପାଇ ପକ୍ଷୀସାଇଁ
ବାହାରିଲେ ସେଠାରୁ ଅତି ତୋରା ହୋଇ ।
ବିଶ୍ୱାମିତ୍ର ଗରୁଡ ତୁଲେ ଗାଲବଙ୍କୁ
ବାଟେ ଦେଖିକରି କହିଲେ ବଚନକୁ ।

ହେ ଶିଷ୍ୟ ଗାଲବ ଯାଚିଛି ମୋତେ ଯାହା
ଦେବ ନ ଦେବ କି କହ ହେ ମୋତେ ତାହା
ବହୁତ କାଳ ହେଲା ଘୋଡା ଯାଚି ମୋତେ
ଆଣି ନ ଦେଲେ ହେ ଗାଲବ ମହାମତେ ।
ଆଉ ଦିନାକେତେ ମୁଁ ତୁନିଟି ହେଉଛି
ଏଥିକି ଯେ ଫଳ ଜାଣିବ ଦ୍ୱିଜବସ୍ତି ।
ଏହା ଶୁଣି ଗାଲବ ସାହସ ଉଡାଇ
ଡୋଳାରେ ଦେଲେ ଦୁଇ ପତାକୁ ଘୋଡାଇ
ଗରୁଡ ବୋଇଲେ ଗାଲବ ଋଷିବର
ବିଶ୍ୱାମିତ୍ର କଥାରେ ଭୟକୁ ନ କର ।
ମହୀଯାକ ବୁଲିଣ କରୁ କରୁ ଲୋଡା ।
ମିଳିବ ବା ଆଠଶ ଶ୍ୟାମକର୍ଣ୍ଣ ଘୋଡା ।
ଅଗ୍ନିଠାରୁ ଜାତ ଯେ ପବନେ ବର୍ଦ୍ଧିତ
ହେବାରୁ ହିରଣ୍ୟଟି ବୋଲନ୍ତି ଜଗତ ।
ପ୍ରାଣୀଙ୍କ ଧରିବାର ସକାଶୁଁ ତାହାଙ୍କୁ
ଧନ ମଧ ବୋଲନ୍ତି କରି ଆଦରକୁ ।
ତିନିଲୋକରେ ଥିଲେ ହେଲେ ସେ ପଦାର୍ଥ
ଜଗିଛନ୍ତି କୁବେର ମହାସମରଥ ।
ମନୁଷ୍ୟଠାରେ ଯେତେ ହୁଏ ଧନ ଗୋଟି
କାଳେ ତା ନିଅନ୍ତି କୁବେର ଦେବତାଟି ।
ତୁମ୍ଭେ ଧନହୀନ ହୋଇଣ ଦ୍ୱିଜବର
ଏବେ ମୋ ବୋଲେ ରାଜା ଗୋଟି ଆଶ୍ରେକର
ଧନ ଦେଲେ ଘୋଡା ଯେ ପାଶେ ଥିବ ରହି
ବଳେ ସେ ଆଣିଦେବ ହେ ଦ୍ୱିଜ ଗୋସାଇଁ ।
ଯଯାତି ରାଜା ମୋର ମଇତ୍ର ଅଟନ୍ତି
ତାଙ୍କୁ ଧନ ମାଗିବା ହୋଇଣ ବିନତି ।
ମୋ ଉପ୍ରଧରେ ସେ ତୁମ୍ଭଙ୍କୁ ଧନ ଦେବେ ।
ଏଥିରେ ସନ୍ଦେହ ନ କର ତୁମ୍ଭେ ଲବେ ।
ଏହିରୂପେ ଗରୁଡ ଦ୍ୱିଜ ହୋଇ କଥା
ପ୍ରତିଷ୍ଠାନ ପୁରକୁ ଗଲେ ଛାଡି ବ୍ୟଥା ।
ଯଯାତି ରାଜାଙ୍କ ତୁଳରେ ଦେଖା ହେଲେ
ବିଧିରେ ତାଙ୍କଠାରୁ ପୂଜାକୁ ଘେନିଲେ ।
ଆସନେ ବସନ୍ତେ ଯଯାତି ନୃପ ହସି
ବୋଇଲେ କିପାଇଁ ମୋଠାକୁ ଅଛ ଆସି ।
ଗରୁଡ ଗାଲବଙ୍କୁ କହିଲେ ଏକାନ୍ତେ
ଏଥର ଯେ କାରଣ କହ ତାହା ମୋତେ ।

ଗରୁଡ ବୋଇଲେ ହେ ଶ୍ୟାମକର୍ଣ୍ଣ ଘୋଡା
ଆଠଶ ଗାଲବ ଦ୍ୱିଜଙ୍କୁ ଅଛି ଲୋଡା ।
ତୁମ୍ଭେ ଅବା ବୋଲିବ ଏ କିସ କରିବେ
ବିଶ୍ୱାମିତ୍ରଙ୍କୁ ତା ଦକ୍ଷିଣା କରି ଦେବେ ।
ତୁମ୍ଭେ ଏବେ ମୋ ବୋଲେ ତାଙ୍କୁ ସାହାହୁଅ
ଶ୍ୟାମକର୍ଣ୍ଣ ଘୋଡା ଆଠଶ ଆଣିଦିଅ ।
ଏହାଙ୍କ ସନ୍ତୋଷ ହେବାରୁ ତୁମ୍ଭ କୀର୍ତ୍ତି
ଏ ମହୀରେ ଜାଣ ହୋଇବ ଯେ ବିଖ୍ୟାତି
ଆଠଶ ଘୋଡାଙ୍କ ଦେହରେ ଯେତେ ରୋମ
ଥିବ କେତେକ କାଳ ତୁମ୍ଭେ ସ୍ୱର୍ଗଗ୍ରାମ ।
ନ ଛାଡିବଟି ଆହେ  ନରକୁଳ ପତି
ମୋ କଥାରେ କିଛି ନ କର ଶଙ୍କା ମତି ।
ଏହାଙ୍କଠାରୁ କର୍ମେ ଧର୍ମେ ଆଉ ଦ୍ୱିଜ
ଏ ମହୀରେ ଅଧିକ ନାହିଁ ମହାରାଜ ।
ଯଯାତି ଏହା ଶୁଣିକରି ମନେ କଲେ
ମୋ ପ୍ରୀତିରେ ଗରୁଡ ଏଠାକୁ ଆସିଲେ
ମୋର ପ୍ରୀତିକି ସୂର୍ଯ୍ୟବଂଶନୃପେ ଧନୀ
ହୋଇ ହୋଇଅଛନ୍ତି ମଧ ମହାଦାନୀ ।
ତା ଭାବି ବୋଇଲେ ଗରୁଡ ତୁମ୍ଭ ବୋଲେ
ଗାଲବ ମନୋରଥ ପୂରାଇବି ଭଲେ ।
ପୂର୍ବ ପରି ଧନବନ୍ତ ମୁଁ ହୋଇ ନାହିଁ
ଝିଅଟିଏ ଅଛି ତାହାକୁ ଦେବି ମୁହିଁ ।
ଆଶା କରି ଆସିବା ଲୋକ ଆଶା ଭଙ୍ଗ
ଯେ କରିଛି ତାହାର ନର୍କ ହୁଏ ସଙ୍ଗ ।
ମାଗି ଆସି ଲୋକ ଅକୃତକାର୍ଯ୍ୟ ହେଲେ
ନ ଦେବା ଲୋକ ମରେ ପୁତ୍ର ନାତି ତୁଲେ ।
ମୋର ଝିଅ ରୂପ ଦେଖିବ ଯେବେ କାମ
ରଖି ନ ପାରିବ ସେ ତାହା ଦେହ ଧର୍ମ ।
ମୋ ଝିଅ ନେଇ ଯାହାକୁ ଦେବ ତୁମ୍ଭେ
ରାଜ୍ୟଟି ତୁମ୍ଭଙ୍କୁ ସେ ଦେବ ଜାଣୁ ଆମ୍ଭେ ।
ଆଠଶ ଶ୍ୟାମକର୍ଣ୍ଣ ଘୋଡା ଅଳପକ
କଥା ଏଥିପାଇଁ ନ କର ମନେ ଶୋକ ।
ଏହା କହି ଝିଅକୁ ସଜବାଜ କରି
ଗାଲବଙ୍କୁ ସମର୍ପିଦେଲେ ହାତଧରି ।
କନ୍ୟାକୁ ପାଇଣ ଗାଲବ ତୋଷ ହେଲେ
ଗମିଲେ କନ୍ୟା ଧରି ଗରୁଡଙ୍କ ତୁଲେ ।

ବାଟରେ ଗାଲବଙ୍କୁ କହିଲେ ଗରୁଡ
ଘୋଡା ପାଇବାକୁ ପାଇଲ ଏବେ ଗୋଡ ।
ଏବେ ମୋର ଘରକୁ ଯାଉଅଛି ମୁହିଁ
ତୁମ୍ଭେ ହେ ଯାଅ ଶ୍ୟାମକର୍ଣ୍ଣ ଘୋଡା ପାଇଁ ।
ଗାଲବ ଅଯୋଧ୍ୟା ହର୍ଯ୍ୟଶ୍ୱ ରାଜାଠାକୁ
ତଦଅନ୍ତେ ଗଲେ ଘେନିଣ ସେ କନ୍ୟାକୁ ।
ହର୍ଯ୍ୟଶ୍ୱରାଜାଠାରେ ଆଗେ ଦେଖା ହେଲେ
ପଛେ ଏ କନ୍ୟାଟିକି ନିଅ ହେ ବୋଇଲେ ।
କେବଳ ଏ କନ୍ୟା ଦେଉଛି ଯହିଁ ପାଇଁ
ତାହା ମୋତେ ଦେବ ଅଯୋଧ୍ୟା ନରସାଇଁ ।
ହର୍ଯ୍ୟଶ୍ୱରାଜା ଦେଖି ସେ କନ୍ୟାର ମୁଖ
ଭାବିଲେ ଗଲା ଏବେ ମୋର କାମ ଦୁଃଖ ।
ଏହାର ରୂପ ଦେଖି ରମ୍ଭାଦି ଅପ୍‌ସରୀ
ମୋ ମନକୁ ପାଉଛି ଯିବେ ଅପସରି ।
କେତେ କଳ୍ପ ସ୍ତିରୀ ନାମରେ ମୁଁ ସଂକଳ୍ପ
କରି ଜପ କରୁଣଥିଲି କୁଶତଳ୍ପ ।
ସେ ସୁକୃତ ବଳୁଁ ଏ କଳ୍ପଜୀବୀ ମୋହୀ
ଆସିଛି ଅଙ୍କ ଜଳପିବ ଯେବେ ଋହିଁ ।
ତେବେ ମୁଁ ଜାଣିବି ଏ ଶତପତ୍ରନେତ୍ର
ଏହା ଦେହେ କରିବି ମୋ ଦେହ ପବିତ୍ର ।
ଗାଲବ ତ ବୋଲନ୍ତି ମାଗିବି ମୁଁ ଯାହା
ତାହା ମୋତେ ଦେବ୍ ଅଯୋଧ୍ୟା ନରନାହା ।
ଏଥିପାଇଁ କରୁଛି ବିହିକି ଗୁହାରି
ମୋ ହାତେ ହେବାକଥା ମାଗିବେ ତପଋରୀ
ଏହିରୂପେ ବିଋରି ଆହେ ଦୁର୍ଯ୍ୟୋଧନ
ଗାଲବଙ୍କୁ ଋହିଁ ସେ ବୋଇଲେ ବଚନ ।
କି ଇଚ୍ଛା ଅଛି ମୋତେ ମାଗ ହେ ଗାଲବ
ବିଳମ୍ବ କରିବାର ନ ଯୋଗାଇ ଲବ ।
ଗାଲବ ବୋଇଲେ ଆଠଶ ଶ୍ୟାମକର୍ଣ୍ଣ
ଘୋଡା ଦେଇ ରାଜା ମୋ ବାଞ୍ଛା କର ପୂର୍ଣ୍ଣ
ଏ କନ୍ୟାର ତୁଳରେ ସୁଖରେ ବିହରି
ପୁତ୍ର ଜାତ କର ହେ ବଂଶ ରକ୍ଷାକାରୀ ।
ହର୍ଯ୍ୟଶ୍ୱରାଜା ଯେ ବୋଇଲେ କି କରିବି
ଆଠଶ ଶ୍ୟାମକର୍ଣ୍ଣ ଘୋଡା କାହୁଁ ଦେବି ।
ଯେବେ ଏ କନ୍ୟାଟିକୁ ଘେନିଯିବେ ଦ୍ୱିଜ
ମୋତେ ଖୋଜି ଖୋଜି ମାରିବ ମନସିଜ ।
ଏହିରୂପେ କରି ସେ କେତେ ବିଋରକୁ
ପୁଣି ଋହିଁ କହିଲେ ବାକ୍ୟ ଗାଲବଙ୍କୁ ।
ଦୁଇଶ ଶ୍ୟାମକର୍ଣ୍ଣ ଘୋଡା ମୋର ଅଛି
ଏହା ନେଇ ଏ କନ୍ୟା ଦିଅ ଦ୍ୱିଜବସ୍ତି ।
ପୁତ୍ରଟିଏ ଏ ମୋର ଆଡୁ ଜାତ କରୁ
ପଛେ ଘେନିଯିବ ତୁମ୍ଭର ଏହି ଭୀରୁ ।
ଏହା ଶୁଣିଣ କନ୍ୟା ଅଳପ ହସିଲେ
ମୋ ମନ କଥା ରାଜା କହିଲେ ଭାଷିଲେ ।
ଏହିରୂପେ ଗାଲବ ପାଇଛି ମୁଁ ବର
ଏହା ଆନ ନକରି ମନରେ ବିଋର ।
ପୁତ୍ରଜାତ କଲାକ୍ଷଣି ମୁଁ କନ୍ୟା ହୋଇ
ଆନ ନୃପ ମନକୁ ଲୋଭାଇବି ଯାଇ
ମୋତେ ଏହି ରୂପରେ ଋରୋଟି ନୃପଙ୍କୁ
ଦେଲେ ତୁମ୍ଭେ ପାଇବ ଆଠଶ ଘୋଡାଙ୍କୁ ।
ଋରିନୃପ ଆଡେ ମୋ ଗର୍ଭୁଁ ଋରିପୁତ୍ର
ଜାତ ହୋଇ ମହୀରେ ହୋଇବେ ବିଖ୍ୟାତ ।
ଗାଲବ କନ୍ୟା ମୁଖୁଁ ଶୁଣଇ ତତ୍ତ୍ୱବାଣୀ
ବୋଇଲେ ଏ କନ୍ୟାକୁ ରଖ ନୃପମଣି ।
ଦୁଇଶ ଅଶ୍ୱ ଦେଇ ଏହାକୁ ଗର୍ଭବାସ
କରି ପୁତ୍ର ଜାତ କର ହେ ନରଈଶ ।
ଏହା ଶୁଣି ରାଜା ଯେ କନ୍ୟାକୁ ରଖିଲେ
କନ୍ୟା ତୁଳରେ ଘୋଡା ନେବହେ ବୋଇଲେ
ଗାଲବ ଦ୍ୱିଜବର ଶୁଣି ସୁଖ ପାଇ
ଗଲେ ନିଜ ପୁରକୁ କାନ୍ଧେ ଛତା ବହି ।
ସେ କନ୍ୟା ତୁଳେ ଋତୁକାଳରେ ସଙ୍ଗମ
କରି ପୁତ୍ର ଜାତ କଲେ ସେ ନରୋତ୍ତମ ।
ବସୁ ଦେଇ କରି ମାତାକୁ କିଣିଥିଲେ
ଏଣୁ ବସୁମନା ପୁଅର ନାମ ଦେଲେ ।
ପୁଅ ହେବ ଜାଣି ଗାଲବ ମହାଋଷି
ହର୍ଯ୍ୟଶ୍ୱ ରାଜାପାଶେ ପାଇ ଗଲେ ଆସି ।
ହର୍ଯ୍ୟଶ୍ୱଙ୍କୁ ବୋଇଲେ ହେଲା ତୁମ୍ଭ ପୁତ୍ର
ଏବେ କନ୍ୟା ଦିଅ ନୃପତି ମାନି ସତ୍ୟ ।
ହର୍ଯ୍ୟଶ୍ୱ ସତ୍ୟଭଗ୍ନ ହେବାକୁ ଡରିଲେ
ମାଧବୀ କନ୍ୟାଟିକୁ ଦ୍ୱିଜେ ଆଣି ଦେଲେ ।
ମାଧବୀ ସେହିକ୍ଷଣି କନ୍ୟା ହୋଇଗଲେ
ଗାଲବଙ୍କ ତୁଳେ ଯିବାକୁ ଇଚ୍ଛା କଲେ ।

ଗାଲବ ବୋଇଲେ ହେ ମୋ ଘୋଡା ଦୁଇଶ
ଥାଉ ତୁମ୍ଭଠାବରେ ଆହେ ନରଈଶ ।
ଛଅଶ ଘୋଡା ମୁହିଁ ଭିଆଇବି ଯେବେ
ଏ ଦୁଇଶ ଘୋଡା ମୁଁ ଜାଣ ନେବି ତେବେ
ଏହା କହି ମାଧବୀ କନ୍ୟା ସଙ୍ଗେ ଧରି
ମିଳିଲେ ଦିବୋଦାସ ନୃପତିଙ୍କ ପୁରୀ ।
ଦିବୋଦାସ ନୃପେ ବୋଇଲେ କନ୍ୟା ନିଅ
ଶ୍ୟାମକର୍ଣ୍ଣ ଘୋଡା ଛଅଶ ମୋତେ ଦିଅ ।
ଦିବୋଦାସ ବୋଇଲେ ଏ କନ୍ୟା ଚରିତ
ମୋତେ ଦ୍ୱିଜ ଆଗୁଁ ତ ହୋଇଛି ବିଦିତ ।
ମୋର ଶ୍ୟାମକର୍ଣ୍ଣ ଦୁଇଶ ଘୋଡା ଅଛି
କନ୍ୟା ଦେଇ ତାହା ନିଅ ହେ ଦ୍ୱିଜବସ୍ତି ।
ଯେରୂପେ ହର୍ଯ୍ୟଶ୍ୱ ରାଜାଙ୍କଠାରେ କଲ
ସେହିରୂପେ ଆଚରଣରେ ଏବେ ଚଳ ।
ଗାଲବ ଏହା ଶୁଣି ସନମତ କଲେ ।
ଯାଉଛି ବୋଲି ନିଜ ଘରେ ବାହାରିଲେ ।
ସେ ରାଜା ମାଧବୀକି ହୋଇକରି ବିଭା
ଶଚୀ ଇନ୍ଦ୍ର ପରି ସେ ପ୍ରକାଶିଲେ ଶୋଭା ।
ନାରାୟଣ ଲକ୍ଷ୍ମୀ ଯେ ରବି ପ୍ରଭାବତୀ
ଜମଦଗ୍ନି ରେଣୁକା ବଶିଷ୍ଠ ଅରୁନ୍ଧତୀ ।
ପୁରୁରବା ଉର୍ବଶୀ ନାରଦ ସତ୍ୟବତୀ
ଦୁଷ୍ମନ୍ତ ଶକୁନ୍ତଳା କଶ୍ୟପ ଅଦିତି ।
ଧନଞ୍ଜୟ କୁମାରୀ ବ୍ରହ୍ମା ସରସ୍ୱତୀ
ବହ୍ନି ସ୍ୱାହା ଯେ ଇନ୍ଦ୍ର ଶଚୀ ଧର୍ମ ଧୃତି ।
କୁବେର ଋଦ୍ଧି ଭୃଗୁ ପୁଲୋମା ଯଦୁପତି
ରୁକ୍ମିଣୀ ରାମ ସୀତା ଭୂମିପତି କ୍ଷିତି ।
ବୃହସ୍ପତି ତାରା ବିଶ୍ୱାମିତ୍ର ହୈମବତୀ
ଶଶାଙ୍କ ରୋହିଣୀ ସତ୍ୟବାନ ସାବିତ୍ରୀ ।
ଯେଉଁରୂପେ ଏମାନେ ବିହରିଲେ ରଙ୍ଗେ
ସେ ରୂପେ ବିହରିଲେ ସେ ମାଧବୀ ସଙ୍ଗେ ।
ମାଧବୀ କେତେଦିନେ ପୁତ୍ର ଜାତ କଲେ
ଏହାଶୁଣି ଗାଲବ ସେଠାକୁ ଆସିଲେ ।
ବୋଇଲେ ମୋତେ କନ୍ୟା ଦିଅ ନରରାଣ
ଘୋଡା ନେବି ଯେବେ ହୋଇବ ମୋର ମନ
ଦିବୋଦାସ ରାଜା ଯେ ମାଧବୀଙ୍କି ଦେଇ
ତୁନି ହୋଇ ରହିଲେ ଘରେ ଲାଜ ପାଇ ।
ମାଧବୀ ପୂର୍ବ ପରି ଧରି କନ୍ୟାରୂପ
ଛିଡା ହୋଇଲେ ଆସି ଗାଲବ ସମୀପ ।
ଗାଲବ ମାଧବୀଙ୍କି ସଙ୍ଗତରେ ଧରି
ଭେଟିଲେ ଯାଇ ଉଶୀନର ଦଣ୍ଡଧାରୀ ।
ବୋଇଲେ ଏ କନ୍ୟାଟି ରଖ ହେ ରାଜନ
ଦିଅ ମୋତେ ଚାରିଶ ଘୋଡା ଶ୍ୟାମକର୍ଣ୍ଣ ।
ତୁମ୍ଭେ ତ ଅପୁତ୍ରିକ ହୋଇଛ ନୃପତି
କର ଏ କନ୍ୟାଠାରେ ପୁତ୍ର ଉତପତି ।
ପୁତ୍ର ସକାଶରୁଟି ପୂରୁବ ପୁରୁଷ
ମାନେ ତୁମ୍ଭରଟି ହୋଇବେ ତ ସନ୍ତୋଷ ।
ପୁତ୍ର ନ ଥିଲେଟି ପୁନ୍ନାମ ନରକକୁ
ଲୋକ ତରି ନ ପାରେ କହୁଛି ତୁମ୍ଭଙ୍କୁ ।
ଉଶୀନର ବୋଇଲେ କନ୍ୟାରୂପ ଦେଖି
କେଉଁ ପୁରୁଷଟି ନୋହିବ କାମେ ଦୁଃଖୀ ।
କେବଳ ଶ୍ୟମକର୍ଣ୍ଣ ଘୋଡା ମୋ ଦୁଇଶ
ଅଛି ଏହା ଘେନିଯାଅ ହେ ଦ୍ୱିଜବସ୍ତ ।
ଆଉ ଶ୍ୟାମକର୍ଣ୍ଣ ଘୋଡା ତ ମୋର ନାହିଁ
ବୋଇଲେ ଆନ ଘୋଡାଶାଲୁଁ ଦେବି ମୁହିଁ ।
ଏ ନାରୀ ମୋ ପାଶେ ଥାଉ ଦିନାକେତେ
ପୁତ୍ରଜାତ ହେଲେ ନେବ ହେ ମହାମତେ ।
ଏହା ଶୁଣି ଗାଲବ ଅତି ତୋଷ ହୋଇ ।
ଗଲେ ନିଜ ଘରକୁ ନୃପେ କନ୍ୟା ଦେଇ ।
ସେ କନ୍ୟାକୁ ପାଇ ଉଦ୍ୟାନ ବନ ସର
ନଦୀ ପୁର ପ୍ରାସାଦ ପର୍ବତ କନ୍ଦର ।
ଏ ବାହାରେ ଉତ୍ତମ ସ୍ଥାନେ ନରଶିଖ
କନ୍ୟା ତୁଲେ ମାତି ଛାଡିଲେ କାମ ଦୁଃଖ ।
ସେ ନାରୀ ଶିବି ନାମେ ପୁତ୍ର ଉପୁଜାଇ
ଗାଲବ ନିଅନ୍ତେ ସେ ଗଲେ କନ୍ୟା ହୋଇ ।
କନ୍ୟା ଘେନି ଗାଲବ ବାଟେ ଯାଉଥିଲେ
ଗରୁଡ ଦେଖିକରି ତାହାଙ୍କୁ ପୁଚ୍ଛିଲେ ।
ଏବେ ତ କୃତକାର୍ଯ୍ୟ ହେଲ ଦ୍ୱିଜଶିଖ
ଆଉ ସଙ୍କୋଳିବାକୁ ଅଛି କେଉଁ ଦୁଃଖ ।
ତା ଶୁଣି ଗାଲବ କହିଲେ ତୋଷ ହୋଇ
ବାକୀ ଘୋଡା ଦୁଇଶ ମୋତେ ମିଳିନାହିଁ ।
ଗରୁଡ ବୋଇଲେ ହେ ଶ୍ୟାମକର୍ଣ୍ଣ ଘୋଡା
ନ ମିଳିବ ଆଉ ନ କର ତୁମ୍ଭେ ଲୋଡା ।

ଏଥିର ଯେ କାରଣ କହିବା ତୁମ୍ଭଙ୍କୁ
ଶୁଣ ଦେଇ କରି ମୋହଠାରୁ ମନକୁ ।
ଗାଧିଙ୍କ ଝିଅ ସତ୍ୟବତୀଙ୍କି ଋଚୀକ
କରିବାକୁ ଗଲେଟି ହୋଇଣ ଉତ୍ସୁକ ।
ଗାଧି ବୋଇଲେ ହେ ସହସ୍ରେ ଶ୍ୟାମକର୍ଣ୍ଣ
ଘୋଡା ଦେଲେ କନ୍ୟା ମୁଁ କରିବି ପ୍ରଦାନ ।
ଋଚୀକ ସହି କରି ଯାଇ ସେ କଥାକୁ
ଶ୍ୟାମକର୍ଣ୍ଣ ଘୋଡା ମାଗିଲେ ବରୁଣଙ୍କୁ ।
ବରୁଣ ଋଷିଙ୍କର ମାଗିବାର ଦେଖି
ଶ୍ୟାମକର୍ଣ୍ଣ ଘୋଡା ସହସ୍ରେ ଦେଲେ ଲେଖି ।
ଋଚୀକ ସେହି ଘୋଡାମାନଙ୍କୁ ଆଣିଲେ
ଗାଧି ନୃପତିଙ୍କିନିଅ ତାହା ବୋଇଲେ ।
ଗାଧିରାଜା ସେ ଘୋଡା ପାଇ ପୁଣ୍ଡରୀକ
ଯାଗ କରିଲେ ହୃଦରୁ ଛାଡି ଦକ ।
ଯାଗ ଅନ୍ତେ ଦ୍ୱିଜଙ୍କୁ ସେ ଘୋଡାମାନଙ୍କୁ
ଦାନ ଦେଇ ଦକ୍ଷିଣା ଦେଲେ ସେ ଧନକୁ ।
ଉଶୀନର ହର୍ଯ୍ୟଶ୍ୱ ଦିବୋଦାସ ନୃପ
ସେ ବ୍ରାହ୍ମଣକୁ ଧନ ଦେଇଣ ଅମାପ ।
ଦୁଇଶ କରି ଘୋଡାଶାଳରେ ବାନ୍ଧିଲେ
ବାକି ଘୋଡା ଚାରିଶ ଜଳେ ବୁଲି ମଲେ ।
ଏଣୁ କରି ତୁମ୍ଭେ ଯେତେକ କର ଲୋଡା
ନ ପାଇବ ଆଉଟି ଶ୍ୟାମକର୍ଣ୍ଣ ଘୋଡା ।
ମୋ ବୋଲରେ ଏବେ ଛଅଶ ଘୋଡା ଧରି
ଭେଟ ଯାଇଣ ବିଶ୍ୱାମିତ୍ର ତପଚାରୀ ।
ବିଶ୍ୱାମିତ୍ର ଯେବେ ବୋଲିବେ ଆଉ ବାକୀ
ଦୁଇଶତ ତେବେ ଦେବ ଏ କନ୍ୟାଟିକି ।
ଗରୁଡ ମୁଖୁଁ ଯହୁଁ ଏହା ସେ ଶୁଣିଲେ
କୃତ କାର୍ଯ୍ୟ ହେବି ବୋଲିଣ ମନ କଲେ ।
ତିନି ନୃପଙ୍କଠାରୁ ଯାଇ ସେହିକ୍ଷଣି
ଛଅଶ ଘୋଡା ସଙ୍ଗେ ଧରାଇ ଦ୍ୱିଜମଣି ।
ମାଧବୀ କନ୍ୟାକୁ ଆଗରେ ଚଳାଇଲେ
ବିଶ୍ୱାମିତ୍ର ପାଶରେ ପ୍ରବେଶ ହୋଇଲେ ।
ବୋଇଲେ ହେ ଗୁରୁ ଛଅଶ ଘୋଡା ନିଅ
ଦୁଇଶ ପାଇଁ ମୋ ଏ କନ୍ୟାଟିକି ପାଅ ।
ଏହି କନ୍ୟାଟିରଠାରେ ତିନୋଟି କୁମର
ଜାଗ କରିଛନ୍ତି ତିନୋଟି ନରବର ।
ଚତୁର୍ଥ ବର ତୁମ୍ଭେ ହୋଇ ମହାମତି
କର ଏ କନ୍ୟାଠାରେ ପୁତ୍ର ଉତପତ୍ତି ।
ବିଶ୍ୱାମିତ୍ର ଋଷି ତ ଅଟନ୍ତି କାମୁକ
ଦେଖି କରି ନୟନେ ସେ ନାରୀତିଳକ ।
ବୋଇଲେ ହେ ଗାଲବ ଏ ନାରୀକି ପାଇ
କାହିଁକି ନ ଆସିଲ ମୋ ପାଖକୁ ଧାଇଁ ।
ଆଠଶ ଶ୍ୟାମକର୍ଣ୍ଣ ଘୋଡା ଶଏ ଗୁଣ ।
କରି ଦେଲେ ଏହାକୁ ସରି ନୁହେ ଜାଣ ।
ଏ କନ୍ୟା ରୂପ ଦେଖି ମୋହର ପିଛଡା
ନ ପଡୁଛି ବାବୁ କହୁଛି ଛାଡି ବ୍ରୀଡା ।
ଏ ଯେତେବେଳରେ କହିବ ହସି କଥା
କି କରିପାରିବ ମଦନ ମହାରଥା ।
ଏ ବାଳା ଜାନୁଭେଳା ଦୁଇକି ମୁଁ ପାଇ
ହେଳାରେ କାମନଦୀ ପାରି ହେବି ମୁହିଁ ।
ଏ ବାଳା ଅଧର ବନ୍ଧୁକ ମଧୁ ପିଇ
ଅମୃତକୁ ତୁଚ୍ଛ ଯେ କରିଦେବି ମୁହିଁ ।
ଏହା ଗଣ୍ଡଖଣ୍ଡରେ ମଣ୍ଡିଣ ଚୁମ୍ବନ
କରାଇବି ମୋହର ଜୀବନକୁ ଧନ୍ୟ ।
ମୋ ନୟନ ଚକୋର ଏ ବାଳା ବଦନ
ଚନ୍ଦ୍ରମା ନିତି ଦେଖି ହେବ ତୋଷ ମନ ।
ଏ ନବୀନା କୁଚଶମ୍ଭୁ ତ ଅତି ଉଚ୍ଚ
କାମ ବ୍ୟାଧି ନାଶ ହେବାକୁ କରି ପାଞ୍ଚ ।
ମୋର କରପଦ୍ମ ଦୁହିଁକି ମୁହିଁ ନିତି
ଛଡାଇ ଦେଇଥିବି ହୃଦେ ବହି ପ୍ରୀତି ।
ଛଅଶ ଘୋଡା ଛାଡି ଦେଇ ଆଶ୍ରମରେ
ଯାଅ ତୁମ୍ଭ ଘରେ ବୋଲୁଛୁଁ ସନ୍ତୋଷରେ ।
ଗାଲବ ଏହା ଶୁଣି ହୋଇ ହସ ହସ
ବାହାରିଲେ ତପରେ ଦେଇଣ ମାନସ ।
ବିଶ୍ୱାମିତ୍ରଙ୍କର ସମ୍ଭୋଗେ ସେ ସୁମନା
ଜାତ କଲେ ପୁତ୍ର ଅଷ୍ଟକ ମହାମନା ।
ଅଷ୍ଟକଙ୍କୁ ବିଶ୍ୱାମିତ୍ର ଯେ ଶ୍ୟାମକର୍ଣ୍ଣ
ଘୋଡାଯାକ ଦେଲେ ସନ୍ତୋଷ ବହି ମନ ।
ଅଷ୍ଟକ ଅଷ୍ଟଶତ ଘୋଡା ଘେନି କରି
ପାଳନା କଲେ ଯାଇ ବିଶ୍ୱାମିତ୍ର ପୁରୀ ।
ବିଶ୍ୱାମିତ୍ର ମାଧବୀ ସୁରତେ ତୃପତି
ହେଇ ଗାଲବଙ୍କୁ ଡକାଇ କରି କତି ।

ମାଧବୀ କନ୍ୟାଟିକି ତାଙ୍କୁ ସମର୍ପିଲେ
ତପ କରିବାକୁ ବନକୁ ବାହାରିଲେ ।
ଗାଲବ ସେହିକାଳେ ରହିଁ ସେ କନ୍ୟାକୁ
ବୋଇଲେ ଶୁଣ ମୋର କହିବା କଥାକୁ ।
ଚାରିଟି ପୁତ୍ର ଜାତ କଲ ଜାଣୁ ଆମ୍ଭେ
ଏବେ ତୁମ୍ଭ ବାବୁ ଘରରେ ରହ ତୁମ୍ଭେ ।
କନ୍ୟା ବୋଇଲେ ହେ ବୋଲିବ ତୁମ୍ଭେ ଯାହା
ନାହିଁ କରି ମୁହିଁ ତ ପାରିବି କି ତାହା ।
କନ୍ୟାର ସନମତି ଜାଣିଣ ଗାଲବ
ଆସିଲେ ଯହିଁ ଥିଲେ ଯଯାତି ନୃଦେବ ।
ଯଯାତିଙ୍କି ବୋଇଲେ ଏ ତୁମ୍ଭ ଦୁହିତା
ଜାତକଲେ ଚାରୋଟି ପୁତ୍ର ବଳବନ୍ତା
ଏବେ ତୁମ୍ଭଠାକୁ ଆସି ଅଛନ୍ତି ଧାଇଁ
ଗୃହରେ ନେଇ ରଖ ଆହେ ନରସାଇଁ ।
ଏ କନ୍ୟା ସକାଶୁଁ ହୋଇଲେ କୃତକାର୍ଯ୍ୟ
ଆଉ କି କହିବି ତୁମ୍ଭଙ୍କୁ ମହାରାଜ ।
ଏତେ କହି ଗାଲବ ହୋଇଣ ମେଲାଣି
ଚିନ୍ତା ଛାଡିଣ ତପ ଆରମ୍ଭିଲେ ପୁଣି ।
ଯଯାତି ଦୁହିତାର ଦେଖି କନ୍ୟାରୂପ
କାହାକୁ ଦେବି ବୋଲି ମନେ କଲେ ତାପ ।
ଏହାକୁ ଅନୁରୂପ ବର ନ ମିଳିବ
ମୁଁ ଦେଲେ ବର ଏହା ମନ ନ ପାଇବ ।
ଏତେ ଭାବିଣ ଗଙ୍ଗା ଯମୁନା ସଙ୍ଗମ
ଆଶ୍ରମେ ସ୍ୱୟମ୍ବର ବିଧି ନୃପୋତ୍ତମ ।
ସେବକଙ୍କର ହାତେ କରାଇଲେ ଯାଇ
ଡକାଇଲେ ନୃପମାନଙ୍କୁ ତୋରା ହୋଇ ।
ପୁରୁ ଯଦୁଁ ଦୁହେଁ ମାଧବୀ ଭଗିନୀକି
ରଥରେ ଘେନିଗଲେ ଆଶ୍ରମ କତିକି ।
ମାଧବୀ କନ୍ୟାଙ୍କର ଦେଖି ସ୍ୱୟମ୍ବର
ଆସିଲେ ସବୁ ଦେଶଯାକର ନୃବର ।
ଦେବ ଯକ୍ଷ ଗନ୍ଧର୍ବ ନର ରହିବାରେ ।
ସେ ବନଭୂମି ତ ନ ଦିଶେ ନୟନରେ ।
ସ୍ୱରୂପେ ମାଧବୀଙ୍କ ବେଶ କରାଇଲେ
ବରଣମାଳା ଦେଇ ସଭାରେ ଛିଡା କଲେ ।
ନୃପତି ମଣ୍ଡଳକୁ ଛାଡିଣ ମାଧବୀ
ମାଳା ଧରିଗଲେ ବନକୁ ବର ଭାବି ।
ବନେ ରହି ଦେହକୁ କରିଦେଇ କ୍ଷୀଣ
ବୁଲିଲେ ସେ ମୃଗଙ୍କୁ ସଙ୍ଗେ ପ୍ରତିଦିନ ।
ବନରେ ମୃଗଙ୍କର ସଙ୍ଗେ ଘାସ ଫଳ
ଖାଇ କଲେ ଧରମ ଅର୍ଜନ କେବଳ ।
ଏଣେ ଯେ କେତେ କାଳ ଉତ୍ତାରୁ ଯଯାତି
ପାଇଲେ ବିଧି ବଶେ ସତ୍ୟଧର୍ମ ଗତି ।
ପୁରୁଯଦୁ ଦୁହେଁ ବଂଶର ବରଧନ
ଯଯାତିଙ୍କ କୁଳେ ହୋଇଲେ ଦୁର୍ଯ୍ୟୋଧନ ।
ସ୍ୱର୍ଗରେ ସୁକୃତିଙ୍କି ଅବଜ୍ଞା ଯଯାତି
କରିବାରୁ ସୁକୃତ ଉଣାହେଲା ଅତି ।
ସ୍ୱର୍ଗରେ ଯେତେ ରାଜାମାନେ ବସିଥିଲେ
ଏହା ଶୁଣି ଯଯାତିଙ୍କି ନିନ୍ଦା କରିଲେ ।
ବୋଇଲେ ଏ ପାମର କାହୁଁ ଆସିଅଛି
ଏଡେ ପାପ କଥାକୁ କାହିଁକି କହୁଛି ।
ସୁକୃତିଙ୍କ ଅବଜ୍ଞା ମୁହୂର୍ତ୍ତେ ଗଲାକ୍ଷଣି
ତେଜେ ଉଣା ହୋଇଲେ ଯଯାତି ନୃମଣି ।
ଶୋକ ଦୁଃଖ ବିନା କମ୍ପିଲା ହୃଦସ୍ଥଳ
ମ୍ଳାନ ହୋଇଲା ମସ୍ତକରୁ ଫୁଲମାଳ ।
ଅଙ୍ଗରେ ଯେତେ ଅଳଙ୍କାର ଖଞ୍ଜିଥିଲେ
ମୁକୁଟ ତୁଳରେ ସେ ଖସିଣ ପଡିଲେ ।
ତାହା ଦେଖି କରିଣ ଯଯାତି ନୃପତି
କି ପାପ କଲି ବୋଲି ବିଚାରିଲେ ମତି ।
ଏ କାଳେ ଇନ୍ଦ୍ରଙ୍କ ଆଜ୍ଞାରେ ଜଣେ ଆସି
ବୋଇଲା ହେ ଯଯାତି ତଳେ ପଡ ଖସି ।
ଯଯାତି ତା ଶୁଣି ବୋଇଲେ ସାଧୁପାଶେ
ପ୍ରବେଶ କରାଅ ତଳରେ ମୋତେ ତୋଷେ ।
ନଇମିଷା ଅରଣ୍ୟେ ପ୍ରତର୍ଦ୍ଦନ ଶିବି
ବସୁମନା ଅଷ୍ଟକ ହୃଦେ ଧର୍ମ ଭାବି ।
ଯାଗ କରୁଥିଲେ ଯଯାତି ତାଙ୍କ ମଧ୍ୟେ
ପଡିଲେ ସ୍ୱର୍ଗୁଁ ଖସି ଯେସନେ ବିବୁଧେ ।
ସେ ରଜାଏ ଯଯାତି ନୃପତିଙ୍କି ଦେଖି
କିଏ ତୁମ୍ଭେ ବୋଲି ପୁଚ୍ଛିଲେ ହୋଇ ସୁଖୀ ।
ମନୁଷ୍ୟ ପରି ତୁମ୍ଭ ରୂପ ଦିଶୁ ନାହିଁ
କହ ଏହିଠାକୁ ଆସିଛ କାହିଁପାଇଁ ।
ଯଯାତି ବୋଇଲେ ମୁଁ ଅଟେ ରାଜଋଷି
ପୁଣ୍ୟେଚ୍ୟୁତ ହେବାରୁ ପଡିଲି ହେ ଆସି ।

ସେ ନୃପ ବୋଇଲେ ହେ ଆମ୍ଭ ଯାଗଫଳ
ପାଇକରି ଯଯାତି ସ୍ୱର୍ଗପୁରେ ଚଳ ।
ଯଯାତି ବୋଇଲେ ମୁଁ ବ୍ରାହ୍ମଣ ତ ନୁହେଁ
ପ୍ରତିଗ୍ରହ କରିବି କିରୂପରେ ମୋହେ ।
ଏକାଳେ ମାଧବୀ ମୃଗଙ୍କ ତୁଲେ ମିଶି
ଯଯାତିଙ୍କ ପାଶରେ ପାଇଗଲେ ଆସି ।
ସେ ଝରି ନୃପେ ଦେଖି ମାତାଙ୍କ ବଦନ
ନମସ୍କାର କରି କହିଲେ, ଏ ବଚନ ।
କାହିଁପାଇଁ ଏଠାକୁ ଆସିଲ ଗୋ ମାତ
କହିଲେ ତାହା ଆମ୍ଭେ କରିବୁଁ ତୁରିତ ।
ମାଧବୀଙ୍କ ପୁତ୍ରଙ୍କର ଏ ବଚନ ଶୁଣି
ପିତା ଯଯାତିଙ୍କି ନମିଲେ ସେହିକ୍ଷଣି ।
ବୋଇଲେ ଆହେ ତାତ ଏ ଝରିହେଁ ନାତି
ହୋଇଛନ୍ତି ମୋର ଗର୍ଭରୁ ଉତପତ୍ତି ।
ଏ ଝରିଙ୍କ ସୁକୃତ ମୋ ସୁକୃତ ବଳେ
ବସ ଯାଇ ରାଜନ ସ୍ୱର୍ଗପୁରେ ହେଳେ ।
ମାଧବୀଙ୍କ ଝରିକୁମରେ ମାଧବୀଙ୍କ
ଏ ବଚନ ଶୁଣି କହିଲେ କରି ଶୋକ ।
ଆମ୍ଭ ସୁକୃତରେ ତୁମ୍ଭଙ୍କୁ ନୃପବର
ପୁଣି ହେ ଆଦର କରନ୍ତୁ ପୁରନ୍ଦର ।
ଗାଲବ ଯୋଗବଳେ ଯଯାତି ପଡିବାର
ଜାଣିକରି ସେଠାକୁ ଆସିଲେ ସତ୍ୱର ।
ବୋଇଲେ ନୃପ ମୋ ତପସ୍ୟା ଆଠଭାଗ
ନେଇକରି କର ସ୍ୱରଗପୁର ଭୋଗ ।
ମାଧବୀ ପୁତ୍ର ତୁଲେ ଧରମ ତ ଦେଲେ
ଗାଲବ ସେହିରୂପେ ସାହା ମଧ୍ୟ ହେଲେ ।
ଏ ଘେନି ଯଯାତିଙ୍କ ପ୍ରକାଶିଲା ପ୍ରଭା
ଦେବତାଙ୍କ ପ୍ରାୟେ ସେ ଶୂନ୍ୟେ ହେଲେ ଉଭା
ବସୁମନା କହିଲେ ଅଜାଙ୍କ ଅବିକଳେ
ଦାନ କ୍ଷମା ଯାର ଫଳ ମୁଁ ଦେଲି ହେଳେ ।
ପ୍ରତର୍ଦ୍ଦନ ବୋଇଲେ ଧର୍ମପରାୟଣ
କ୍ଷତ୍ରିୟଧର୍ମ କୀର୍ତ୍ତି ନିଅ ନରରାଣ ।
ଶିବି ବୋଇଲେ ମୋର ସତ୍ୟବଳେ ନୃପ
ସ୍ୱର୍ଗକୁ ଯାଅ ଛାଡି କରି ହୃଦତାପ ।
ଅଷ୍ଟକ ବୋଇଲେ ମୁଁ ସପ୍ତେ ବାଜପେୟ
କରିଅଛି ନିଅ ହେ ନହୁଷତନୟ ।

ନାତିମାନେ ଯେତିକି ପୁଣ୍ୟ ଦେଉଥିଲେ
ତେତିକି ସେ ଯଯାତି ଉପରକୁ ଗଲେ ।
ପୁରନ୍ଦରପୁରରେ ପାଇଣ ଆଦର
ହୃଦୟରୁ ପଡିବା ଦର କଲେ ଦୂର ।
ସୁକୃତବଳରେ ଦେବତାଙ୍କ ପ୍ରଭାରେ
ଜିଣି ଅପସରୀଙ୍କି ମୋହିଲେ ସଭାରେ ।
ବ୍ରହ୍ମା ସେହି କାଳରେ ଆସି ଯଯାତିଙ୍କି
କହିଲେ ଏ ବଚନ ବହିଣ ପ୍ରୀତିକି ।
ଚତୁଷ୍ପାଦ କରି ଧରମ ଅର୍ଜିଥିଲ
ବଡାଇ କରି ତାକୁ ବୁଡାଇଣ ଦେଲ ।
ନାତିଙ୍କ ସୁକୃତେ ନିଷ୍କଳ ସ୍ଥାନ ପାଇ
ଅଛ ଭୋଗସୁଖ କର ହେ ନରସାଇଁ ।
ଆଜଠାରୁ ଏ କଥା ଛାଡ ନରବର
କଲେ ଆଉ ଥରେ ପାଇବ ଦୁଃଖ ଘୋର ।
ଯଯାତି ବୋଇଲେ ମୁଁ ବହୁ ଯାଗତପ
କରିଥିଲି ହୃଦରୁ ଛାଡି କାମତାପ ।
କଥାପଦକରେ ମୋହର ସେ ସୁକୃତ
କହ କୁଶଧର କାହିଁକିହେଲା ହତ ।
ବ୍ରହ୍ମା ବୋଇଲେ ହେ କହୁଛ ତୁମ୍ଭେ ଯାହା
ମାନୁଅଛୁଁ ଆମ୍ଭେ ମନେ ହେ ନରନାହା ।
ବଡାଇରୁ ପାତକ ହୋଇ କଥା ନାହିଁ
ଇଚ୍ଛାସୁଖେ ତା ଅର୍ଜିଲେ ହେ ନରସାଇଁ ।
ଆଜଠାରୁ ଏ କଥା ଛାଡ ନରବର
କଲେ ଆଉ ଥରେ ପାଇବ ଦୁଃଖ ଘୋର ।
ଯେଉଁମାନେ ତୁମ୍ଭର ଚରିତ ଶୁଣିବେ
ନିଷ୍ପାପୀ ହୋଇ କରି ସ୍ୱର୍ଗରେ ବସିବେ ।
ଆହେ ଦୁର୍ଯ୍ୟୋଧନ ତ ଅଭିମାନ ବହି
ତଳେ ଆସି ପଡିଲେ ଯଯାତି ନୃସାଇଁ ।
ନିର୍ବନ୍ଧ କରିବାରୁ ଗାଲବ ଦ୍ୱିଜବର
ବୁଲିଲେ ମହୀ ମୂଳ କରି ବୁଲିବାର ।
ହିତକାମ ଲୋକ କହିବାର ହିତକୁ
ନ ଘେନିଲେ ଲୋକଟି ଲଭଇ ଦୁଃଖକୁ ।
ଆହେ ଦୁର୍ଯ୍ୟୋଧନ ତ ମାନ କ୍ରୋଧ ଛାଡି
ଆଣ ଯାଇ ପାଣ୍ଡୁସୁତଙ୍କୁ ତୁମ୍ଭେ ଲୋଡି ।
ଯାହା ଲୋକ କରିଥାଏଟି ଲଭେ ତାହା
ଦୁର୍ଯ୍ୟୋଧନ ତୁଚ୍ଛାଇ ନ ଫୁଲାଅ ବାହା ।

ଏଠାରେ ଗାଲବ ଚରିତ ସମାପତି
ହେଲା ଏହା ଯେହୁ ଶୁଣଇ ଦେଇ ମତି ।
ପାପ ପୃଷ୍ଠେ ପକାଇ ତ୍ରିପିଷ୍ଟପେ ବାସ
କରଇଟି ସେ ନର ହୋଇଣ ଉଲ୍ଲାସ ।
ଆହେ ରାଧାଧବ ଯେ ମାଧବ ମୁକୁନ୍ଦ
ବିକାଶ ସରସିଜ ତୁମ୍ଭ ପାଦଦ୍ୱନ୍ଦ୍ୱ ।
ତହିଁ କୃଷ୍ଣସିଂହ ମାନସଭୃଙ୍ଗ ମଦ
ରଖାଇ ଅବିଚ୍ଛନ୍ନେ ବଢାଅ ଆନନ୍ଦ ।



## ଶ୍ରୀକୃଷ୍ଣ ଭୀଷ୍ମ ପ୍ରଭୃତିଙ୍କର ଦୁର୍ଯ୍ୟୋଧନଙ୍କୁ ଉପଦେଶ

ଏଥୁଅନ୍ତେ କହିଲେ ବଇଶମ୍ପାୟନ
ଶୁଣ ଜନମେଜୟ ନୃପତିମଣ୍ଡନ ।
ନାରଦଙ୍କର ମୁଖୁଁ ଏ ବଚନ ଶୁଣି
କହିଲେ ଧୃତରାଷ୍ଟ୍ର ଅନ୍ଧ ନୃପମଣି ।
ଯାହା ମୋତେ କହିବା ହୋଇଲା ନାରଦ
ଏହା ଶୁଣି ମୁହିଁ ହେଉଅଛି ଆନନ୍ଦ ।
ଏଥୁଁ ବିଚାରିଲେ ଅଧିକ ଶ୍ରେୟ ହୋଇ
କଥା ଥିବା ପର ମହୀରେ ଦିଶୁନାହିଁ ।
ଏହା କହି ନାରଦଋଷିଙ୍କି ଗାନ୍ଧାରୀ-
ପତି ପୁଣି କହିଲେ କୃଷ୍ଣ ମୁଖ ହେରି ।
ଯେଉଁ କଥା ଆପଣ କହିବା ହେଉଛି
ଘେନୁ ତ ନାହିଁ ମୋର ଦୁର୍ଯ୍ୟୋଧନ ବତ୍ସି ।
ଏ ମୁର୍ଖପଣରେ ଅବଶ୍ୟ ଯିବ ନାଶ
ବତାଇ ତାକୁ ଥରେ କହ ହୃଷୀକେଶ ।
ଭୀଷ୍ମ, ଦ୍ରୋଣ ବିଦୁର ଗାନ୍ଧାରୀ ମୋ ତୁଲରେ
କହିଲେ ଭଲକରି ନ ଘେନଇ ମନରେ ।
ତୁମ୍ଭଠାରୁ ବନ୍ଧୁରେ ଆମ୍ଭର ଅଧିକ
ଆଉ ତ ନାହିଁ କେହି ରୁକ୍ମିଣୀନାୟକ ।
ଏହି ସକାଶରୁ ବନ୍ଧୁଙ୍କ ରକ୍ଷା ପାଇଁ
କହି ସୁଯୋଧନଙ୍କୁ ବନ୍ଧୁ ଭାବ ବହି ।
ଏହା କହୁଁ କୃଷ୍ଣ ବୋଇଲେ ଦୁର୍ଯ୍ୟୋଧନ
ଘେନ ହେ ବାପାଙ୍କର କହିବା ବଚନ ।
କୁଳରେ ତ ତୁମ୍ଭେ ହେ ଅଛ ଜନ୍ମ ହୋଇ
ଏରୂପେ ମୁର୍ଖ କଥା କରୁଛ କିମ୍ପାଇ ।
ତୁମ୍ଭର ଯେ ବୁଦ୍ଧି ହୋଇଛି ନରବର
କରିବ କୁରୁକୁଳନାଶକୁ ସଂହାର ।
ଭାଇ ପୁତ୍ର ମିତ୍ର ଯେ ଜ୍ଞାତି ବନ୍ଧୁ ଶ୍ରେୟ
ବିଚାରିଲେ ପାଇବ ମହତ ଉଦୟ ।
ପ୍ରକର୍ଷଣ ମହୋତ୍ସାହ ତ ପାଣ୍ଡୁ ସୁତେ
ତାଙ୍କ ତୁଲେ ପୀରତି କର ହେ ନିରତେ ।
ପାଣ୍ଡୁ ସୁତଙ୍କର ସଙ୍ଗତେ କଲେ ପ୍ରୀତି
ସବୁ ଜ୍ଞାତି ତୁମ୍ଭଙ୍କୁ ହୋଇବେ ତୃପତି ।
ପାଣ୍ଡବଙ୍କ ତୁଲେ ପୀରତି କରିବାର
ବଡ ମତ ଅଟଇ ତୁମ୍ଭ ବାପଙ୍କର ।
ଶୁଣିଛ ତା ସାକ୍ଷାତେ ବସିକରି ତୁମ୍ଭେ
ଆଉ କିସ ବତାଇ କହିବୁଁଟି ଆମ୍ଭେ ।
ସୁହୃଦକଥାକୁ ଯେ ଦୁହୃଦ ହୁଅଇ
ଅବଶ୍ୟ ସେ ବିପଦପଦକୁ ଲଭଇ ।
ଆପଣା ମତ ଛାଡି ପର ମତ ହିତ
ହେଲେ ତାହା କରିବ ଯେ ହେବ ପଣ୍ଡିତ ।
ସାଧୁଲୋକ ମତ ଯେ ଅତିକ୍ରମ କରେ
ତା କଥା ଲେଖା ହୁଏଟି ବୃଥା ଶ୍ରମରେ ।
ମୁଖ୍ୟ ମନ୍ତ୍ରୀମାନଙ୍କୁ ଛାଡି ହୀନମନ୍ତ୍ରୀ
ଆଶ୍ରେ କଲେ ଲୋକଟି ଲଭଇ ବିପତ୍ତି ।
ଆପଣା ଲୋକଙ୍କୁ ଯେ ଛାଡି ପର ଲୋକ
ଆଶ୍ରେ କରେ ତାକୁ ବୋଲନ୍ତି ଅବିବେକ ।
ସମର୍ଥ ପାଣ୍ଡବଙ୍କୁ ଛାଡି ଅସମର୍ଥ
ଲୋକ ପାଇ ବୋଲ ଅର୍ଜିବ ପୁରୁଷାର୍ଥ ।
ତୁମ୍ଭର ବିନା ବଳୀ ପାଣ୍ଡବଙ୍କୁ ଛାଡି
କେ ଅଛି ଆଣିବି ଇତରଲୋକ ଲୋଡି ।
ଜନ୍ମକାଳୁଁ ପାଣ୍ଡବଙ୍କର ଉପକାର
କରୁଛ ତେବେ କ୍ରୋଧ ନୋହୁଛି ତାଙ୍କର ।
ତାଙ୍କର ତୁମ୍ଭରଟି ଧର୍ମରେ ଏତେକ ।
ଉଣା ଅଧିକ ତା କର ଆହେ ବିବେକ ।
ଧର୍ମ ଅର୍ଥ ଯେ କାମ ଏ ତିନି କ୍ରମରେ
କରନ୍ତି ଉତ୍ତମ ମଧ୍ୟମାଧମ ନରେ ।
ଧର୍ମ ଛାଡି କାମ ଅର୍ଥ ଯେ କରେ ଇଚ୍ଛା
ସେ ନାଶ ଯାଏ ହେ ଗାନ୍ଧାରୀଦେବୀ ବତ୍ସା ।
କାମ ଅର୍ଥ ଇଚ୍ଛା କରିବ ଯେବେ ନର
ଆଗ କରି କରିବ ଧର୍ମରେ ବେଭାର ।

ଧରମରେ ଯେ ଅର୍ଥ କାମ ଇଚ୍ଛାକରେ
ଭୋଗ କରଇ ସେହୁ ଜୀବନ ଥିବାରେ ।
ଧମର ବିନା ଚକ୍ରବର୍ତ୍ତୀ ରାଜତ୍ୱକୁ
ବିଚ୍ଛରୁଛି କେହି ସେ ମିଳିବ ତୁମ୍ଭଙ୍କୁ ।
ଉତ୍ତମ ବୁଦ୍ଧି ଲୋକ ଭଲ ବୁଦ୍ଧି କଲେ
ମଙ୍ଗଳ ବୃଦ୍ଧି ତାର ହୁଅଟି ଭଲେ ।
ପାଣ୍ଡବଙ୍କ ତୁଲରେ କର ରାୟେ ପ୍ରୀତି
ସୁଖେ ଭୁଞ୍ଜ ପାଣ୍ଡୁ ସୁତଙ୍କ ଜିଣା ଭୂତି ।
ଦୁଃଶାସନ କର୍ଣ୍ଣ ଶକୁନିଠାରେ ଭାର
ଦେଇଛ କାର୍ଯ୍ୟ ନିକି ପାଇବ ନୃବର ।
ହୀନ ବଳ ବୁଦ୍ଧି ଏହାଙ୍କ ଦେହ ବହେ
ଏ ରହି ପାରିବେ କି ପାଣ୍ଡବଙ୍କ କୋହେ ।
ଭୀମ ଯେତେବେଳରେ କ୍ରୋଧ ହୋଇଥିବ
ତୁମ୍ଭର କେହି ତାକୁ ରହିଁ ନ ପାରିବ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ଆଦି ଏ ନୃପ ଶ୍ରେଣୀ
ବିଜୟଠାରୁ ଜୟ ନ ପାରିବେ ଆଣି ।
ଅରଜୁନ ଶର ମୁଖରୁ ବର୍ଞ୍ଚି ଘର
ଦେଖିବାକୁ ମହୀରେ ଦିଶୁନାହିଁ ବୀର ।
ଖାଣ୍ଡବଦାହେ ଇନ୍ଦ୍ର ତୁଲେ ଦେବତାଙ୍କୁ
ଜିଣି ପକାଇଲେ ଦେଖାଇ ବିକ୍ରମକୁ ।
ବିରାଟଙ୍କ ନଗରେ ଏକା ରଥେ ଚଢି
ଦେଖିଅଛ ତ ଦେଖାଇଲେ ଶର ପୌଢି ।
ପୁଣି ମୁଁ ଅର୍ଜୁନ ଅଗ୍ନିକି ହୋଇ ବାତ
ରହିଥିବି ଶାନ୍ତି କେ କରିବ କହ ତ ।
ବାହୁ ଦୁଇରେ ଯେ ପାରିବ ମହୀ ଧରି
ଅର୍ଜୁନଙ୍କ ସଙ୍ଗେ ସେ ପାରେ ଯୁଦ୍ଧ କରି ।
ପାର୍ଥ ତୁଲେ ବାଦ କରିଣ କୁଳଘନ
ନ ବୋଲାଅ ଆହେ ରାଜନ ଦୁର୍ଯ୍ୟୋଧନ ।
ପାଣ୍ଡବେ ଭାବିଛନ୍ତି ଧୃତରାଷ୍ଟ୍ର ରାଜା
ହୋଇକରି ପାଳିବେ ସୁଖରେଟି ପ୍ରଜା ।
ତୁମ୍ଭଙ୍କୁ ଯୁବରାଜା କରି ଭାଗ ଖାଇ
ରହିଥିବେ ତୁମ୍ଭଠାରେ ସ୍ନେହ ବହି ।
ଏଥିକି ଯେବେ ମନ ନ ଥିବ ତୁମ୍ଭର
କହିବୁଁ ସିନା ଆମ୍ଭେ କି ଦୋଷ ଆମ୍ଭର ।
କୃଷ୍ଣଙ୍କର କହିବା ଉତ୍ତାରୁ ଶାନ୍ତନୁ ।
ନୃପଙ୍କର ସୁତ କହିଲେ ହୋଇ ମନୁ ।
ଆହେ ଦୁର୍ଯ୍ୟୋଧନ କୃଷ୍ଣଙ୍କର ବଚନ
ଆଚରଣ କର କରିଣ ଗୁରୁଜ୍ଞାନ ।
କୃଷ୍ଣଙ୍କ ବଚନ ନ କଲେ ତୁମ୍ଭେ ଶ୍ରେୟ
କେବେ ହୋଇନାହିଁ ହେ ରାଜନ ଉଦୟ ।
ବାବୁ ଜୀଇ ଥାଉଁ ପାଉଅଛ ସମ୍ପତ୍ତି
ନ ବୁଡାଅ ତା ଇଚ୍ଛାସୁଖରେ ନୃପତି ।
ଦାଦି ଭାଇ ଜ୍ଞାତିମାନଙ୍କର ବଚନ
ଆଚରଣ କର ହେ କରି ଗୁରୁଜ୍ଞାନ ।
ଏମାନଙ୍କ ବଚନ ଘେନ ହେ ରାଜନ
ନ ଘେନିଣ ତୁମ୍ଭେ ନ ଦେଖ ଯମସ୍ଥାନ ।
ମାତା ପିତା ଦୁହିଁଙ୍କି ଶୋକଜଳେ ଦେଇ ।
ନ ପଡ ରଣଭୂମି ଶେଯେ ତୁମ୍ଭେ ଶୋଇ ।
ଭୀଷ୍ମଙ୍କର କହିବା କଥା ଅନୁଯାୟୀ
ଦ୍ରୋଣ ଦୁର୍ଯ୍ୟୋଧନକୁ କହିଲେ ବୁଝାଇ ।
ଏ ବାହାରେ ବୋଇଲେ କୃଷ୍ଣ ଭୀମ କଥା
ନ କଲେ ରାଜନ ପାଇବ ମହାବ୍ୟଥା ।
ଯେଉଁମାନେ ତୁମ୍ଭଙ୍କୁ ଦେଇଛନ୍ତି ଶିକ୍ଷା
ଯୁଦ୍ଧକାଳେ ନ କରିବେଟି ତୁମ୍ଭ ରକ୍ଷା ।
ଯେତେବେଳେ କୃଷ୍ଣ ଅର୍ଜୁନ ଥିବେ ରହି
ଜିଣି ନ ପାରିବେ ହେ ଶଚୀଦେବୀ ସାଇଁ ।
କୁରୁମାନେ ତୁମ୍ଭେ ଅଳପ ବଳୀୟାର
ଏଥିପାଇଁ ବସି ଗୁମାନ କେତେ କର ।
ପରଶୁରାମଙ୍କର ଠାରୁ କୃଷ୍ଣାର୍ଜୁନ
ଜନ୍ମ ବିଧାନ ତ ଶୁଣିଛ ଦିର୍ଯ୍ୟୋଧନ ।
ବୁଢାଟାଏ ହେବାରୁ କହିଲାଇଁ ଆମ୍ଭେ
ନ ଘେନିଲେ ନାଶ ତ ଯିବ ଜାଣ ତୁମ୍ଭେ ।
କହି କହି ଏବେ ବଥାଇଲାଣି ପାଟି
କହିଲେ ଆଉ ତଣ୍ଟି ଯିବ ସିନା ଫାଟି ।
ବିଦୁର ବୋଇଲେ ହେ ଦୁର୍ଯ୍ୟୋଧନ ପାପ
ତୁ ମରିବାକୁ ମୁହିଁ କରୁନାହିଁ ତାପ ।
ତୋ ବାବୁ ବୁଢାକାଳେ ହୋଇ ପୁତ୍ରକଷ୍ଟୀ
ଭିଖ ମାଗି ଜୀଇଁବ ଦେଖିବି କେହିଁଟି
ଧୃତରାଷ୍ଟ୍ର ବୋଇଲେ ବାବୁ ଦୁର୍ଯ୍ୟୋଧନ
ଘେନୁନାହୁଁ କିମ୍ପା ଏମାନଙ୍କ ବଚନ ।
କୃଷ୍ଣ ପାଣ୍ଡବଙ୍କୁ ଘେନିଣ ଆମ୍ଭ ସାହା
ହେଲେ କିସ କରି ନ ପାରେ ଆମ୍ଭ ବାହା ।

କୃଷ୍ଣଙ୍କୁ ଘେନି ତୁମ୍ଭେ ଯୁଧିଷ୍ଠିର ପାଶ
ଯାଇ ବାବୁ କର ହେ ତାହାଙ୍କୁ ସନ୍ତୋଷ ।
କୃଷ୍ଣଙ୍କ କଥାକୁ କରିବୁ ଯେବେ ନାହିଁ
ତୋତେ ନେଇ ସନ୍ତୋଷ ହେବେ ପ୍ରେତସାଇଁ
ଧୃତରାଷ୍ଟ୍ର ବଚନ ଭୀଷ୍ମ ଦ୍ରୋଣ ଶୁଣି
ପୁଣି ଦୁର୍ଯ୍ୟୋଧନକୁ କହିଲେ ଏ ବାଣୀ ।
ଯେତେକାଳ ଭିତରେ କୃଷ୍ଣ ଅରଜୁନ
ନ କରିଛନ୍ତି ମନେ ନେବା ତୋ ଜୀବନ ।
ଭୀମ ଗଦାଘାତରେ ତୋର ସୈନ୍ୟ ବଳ
ନୋହିବା ଯାଏ ଯୁଦ୍ଧ ଭୂମିରେ ଆକୁଳ ।
ନକୁଳ ସହଦେବ ବିରାଟ ଧୃଷ୍ଟଦ୍ୟୁମ୍ନ
ଏମାନଙ୍କ ଆସି ନ ବାଜୁଁ କାଣ୍ଡମୁନ ।
ତେତେକାଳ ଭିତରେ ପାଣ୍ଡବଙ୍କ ପାଦେ
ପଡ ବାବୁ ନ ପଡିବାକୁ ଅପ୍ରମାଦେ ।
ତୁମ୍ଭେ ଯୁଧିଷ୍ଠିରଙ୍କ ପାଶେ ଥିବ ବସି
ଭୀମ ଦେଖି ତୁମ୍ଭଙ୍କୁ କହୁଥିବେ ହସି ।
ଅର୍ଜ୍ଜୁନ ମସ୍ତକ ଆଘ୍ରାଣ କରାଇବେ
ନକୁଳ ସହଦେବ ପାଦରେ ବନ୍ଦିବେ ।
ଏରୂପେ ମୋକ୍ଷବୁଦ୍ଧି କର ଯେବେ ତୁମ୍ଭେ
ଅକ୍ଷୟ ହୋଇବଟି କୁରୁକୁଳ ତେବେ ।
ଭୀଷ୍ମ ଦ୍ରୋଣ କୃଷ୍ଣ ବଚନ ଦୁର୍ଯ୍ୟୋଧନ
କର୍ଣ୍ଣେ ଶୁଣି କୃଷ୍ଣଙ୍କୁ ବୋଇଲେ ବଚନ ।
ପାଣ୍ଡବଙ୍କ ପଛରେ ଥାଇ ହେ ମାଧବ
କାହିଁକି କରୁଅଛ ମୋତେ ପରାଭବ ।
ବିଦୁର ଭୀଷ୍ମ ଦ୍ରୋଣ ତୁଲେ ତାତ ମୋତେ
ତୁମ୍ଭ ଶିକ୍ଷା ପାଇ ଯେ ନିନ୍ଦନ୍ତି ସମସ୍ତେ ।
ମୋ ମତରେ କିଛି ତ ଅପରାଧ ମୁହିଁ
କଲା ପରି ମୋତେ ପରତେ ହେଉ ନାହିଁ ।
ପାଣ୍ଡୁ ସୁତେ ଜୁଆ ଖେଳିଣ ଶକୁନିଙ୍କି
ରାଜ୍ୟ ହାରିଲେ କି କରିବି ମୁଁ ତହିଁକି ।
ଏ ବାହାରେ ଖେଳରେ ବହିକରି ପ୍ରିୟ
ପ୍ରିୟା ହାରିଲେ ମୁଁ କରନ୍ତି କି ଉପାୟ ।
ଜୁଅରେ ପରାଭୂତ ହୋଇ ବନବାସୀ
ସେ ହେଲେ ମୁଁ କାହିଁକି ହେଲି କହ ଦୋଷୀ
ଏଥିପାଇଁ ପାଣ୍ଡବେ ଯେବେ ବହି କୋହ
ମାରିବେ ମୋତେ ତାଙ୍କ ନ୍ୟାୟ କି ହେଲା କହ ।
ଇନ୍ଦ୍ର ପରି ଲୋକକୁ ଆଜିଯାଏ ମୁହିଁ
ନମ୍ର ହୋଇ କଥା ପଦେ ତ କହି ନାହିଁ ।
କ୍ଷତ୍ରିୟ ହୋଇ ଆମ୍ଭ ସଙ୍ଗତରେ ଯୁଝି
କିଏ ରହିବ ଦିଶୁ ନାହିଁ ରଣମଝି ।
ଭୀଷ୍ମ ଦ୍ରୋଣ କୃପ ଯେ କର୍ଣ୍ଣ ଦେବଗଣ
ସଙ୍ଗରେ ଯୁଝିଲେ ହାରିବେ ଶଚୀରାଣ ।
ପାଣ୍ଡୁସୁତମାନେ ତ କେତେକେ ଅଛନ୍ତି
ଏଥିପାଇଁ କିମ୍ପା ଡରିବ ମୋର ମତି ।
କ୍ଷତ୍ରିୟକୁଳେ ଆମ୍ଭେ ହୋଇଛୁଁ ତ ଜାତ
ଯୁଦ୍ଧେ ମଲେ ସ୍ୱର୍ଗ ହୋଇବ ପରାପତ ।
ଏଥିପାଇଁ ଆମ୍ଭର କିଛି ନାହିଁ ଚିନ୍ତା
ଜାଣ ଆହେ କୃଷ୍ଣ ମାଧବ କେଶୀହନ୍ତା ।
କ୍ଷତ୍ରିୟ ପିଲା ହୋଇ ଯୁଦ୍ଧକୁ ଯେବେ ଡରେ
କେବେ ହେଲେ ପୃଥ୍ୱୀ ସେ ଅରଜି ନ ପାରେ
ମାତଙ୍ଗରଷି କହିଛନ୍ତି ଭାଜିଯିବ
କଦାଚିତେ ନମ୍ର ହୋଇଣ ନ କହିବ ।
ଧର୍ମ ଲାଗି ଦ୍ୱିଜଙ୍କ ବିନା ମୋର ହାତ
କେବେ ଯୋଡି ନାହିଁ ହେ ଜାଣ ଚକ୍ରହାତ ।
ମୁଁ ଜୀଇଁଥିଲେ ପାଣ୍ଡବଙ୍କୁ ରାଜ୍ୟଭାଗ
ଦେଇ ନାହିଁ ପାରିଲେ ନିଅନ୍ତୁ କରି ରାଗ ।
ତୁମ୍ଭେ ବା ବୋଲିବ ପୂର୍ବେ ମୁଁ ରାଜ୍ୟ ଦେଇ
ଏବେଟି କିପାଁ ତାହା କରୁଅଛି ନାହିଁ ।
ଏଥିକି କହୁଥାଇଁ ସେଦିନ ମୋ ଜ୍ଞାନ
ନ ଥିଲା ଏ ରୂପରେ ଆହେ ଜନାର୍ଦ୍ଦନ ।
ସୂଚ୍ୟଗ୍ରେ ହସ୍ତିନା ମହୀରୁ ଯେତେ ଯିବ
ତେତେ ଭୂମି ଦେଲେ ମୋ ଦେହ ନ ସହିବ ।
ଆଉ କିସ ଗୁଡାଏ କହିବି ତୁମ୍ଭଙ୍କୁ
ବଳ ଥିଲେ ପାଣ୍ଡବେ ଦେଖାନ୍ତୁ ବଳକୁ ।
ଏହା ଶୁଣି କୃଷ୍ଣ କ୍ରୋଧରେ ହସ ହସ
ହୋଇ କଲେ ସଭାରେ ବଚନ ପ୍ରକାଶ ।
ଆହେ ଦୁର୍ଯ୍ୟୋଧନ ହୋଇଲନି ତ ବାଇ
ରହିଥାଅ ଘରରେ ସୁଖେ ତୁନି ହୋଇ ।
ନିକଟରେ ପାଣ୍ଡବେ ଧରି ତୋର ବାଳ
ଦେଖାଇବେ ଯେ ନେଇ କରି ଯମଆଳ ।
ପାଣ୍ଡବଙ୍କେ ଅପ୍ରାଧୀ ହୋଇଣ ଦୁର୍ବୁଦ୍ଧି ।
ବୋଲୁ ମୋ ଦୋଷ ନାହିଁ ବାମ ତାଙ୍କ ବୁଦ୍ଧି

ଏଥିକି କହୁଥାଇ ଯାହା ତୋତେ ଦୁଷ୍ଟ
ଶୁଣ ସେ କଥା ଏବେ ଛାଡି ଦେଇ ହୃଷ୍ଟ ।
ଶକୁନିଙ୍କ ନିକେ ଶିଖାଇ ଜୁଆଖେଳ
ଭିଆଇଲ ପାଣ୍ଡବମାନେ କରି ଠୁଳ ।
କପଟରେ ତାଙ୍କର ରାଜ୍ୟଶିରୀ ହରି
ଭାର୍ଯ୍ୟାକୁ ତାଙ୍କର ଆଣିଲ ଝିଙ୍କି କରି ।
ଯେତେରୂପ ବଚନେ କହିଲ ନିଷ୍ଠୁର
ତାଙ୍କ ବିନା ସହିବ କାହାର ଶରୀର ।
ବନକୁ ଗଲାବେଳେ ଦୁଃଶାସନ ମନ୍ଦ
ଗାଳିଦେଲା ନ ବିଚାରିଣ ଭଲ ମନ୍ଦ ।
ତୁମ୍ଭ ବିନା ଭାଇ ଭାରିଯାକୁ ସଭାକୁ
ଆଣି କରାଇବ କେ ଉଲଗ୍ନ ଦେଖିବାକୁ ।
ବାରୁଣାବନ୍ତେ ଜତୁଘରଟାଏ କଲ
ତହିଁରେ ରଖି ପାଣ୍ଡବଙ୍କୁ ପୋଡୁଥିଲ ।
ତେବେ ହେଲେ ଧର୍ମବଳରେ ସେହୁ ଜୀଇଁ
ଦ୍ରୌପଦିଙ୍କି ବିବାହ ହୋଇଲେଟି ଯାଇଁ ।
ବିଷ ଦେଇ ଭୀମଙ୍କୁ ଜଳେ ଫିଙ୍ଗି ଦେଲ
କହ ତୁମ୍ଭର ଏ ଅଟଇ କେଉଁ ଭଲ ।
ଏବେ ଲାଜ ପଛକୁ ପକାଇ ସଭାରେ
କହୁଛ କି ଯୁକତି ଗୁଡାଏ ମୁହଁରେ ।
ଆମ୍ଭେ କହିଲେ କି ପାଣ୍ଡୁ ସୁତଙ୍କୁ ଭାଗ
ତୁମ୍ଭେ ଦେବ ହୃଦରେ ଧରିଛ ତ ରାଗ ।
ଯେତେବେଳେ ଧୂଳି ଖାଇବ ମେଲି ପାଟି
ତେତେବେଳେ ରଖିପାରିବ କି ଭାଗୁଟି ।
ମାତା ପିତା ଗୁରୁ ବାନ୍ଧବ ଜ୍ଞାତି ମିତ୍ର
ବହିଲେ କରୁଅଛ ତାହାଙ୍କୁ ଅମିତ୍ର ।
ଏ ସକାଶୁଁ ମୁହିଁ ଜାଣୁଛି କାଳବଶ
ହେବାରୁ ବାହାରୁଛି କଥାକ୍ଷୟାୟୁଷ ।
ବଇଶମ୍ପାୟନ ବୋଇଲେ ଜନ୍ମେଜୟ
ଶୁଣ ଦୁଃଶାସନ କହିବା ବାଣୀ ପ୍ରିୟ ।
ଆହେ ଦୁର୍ଯ୍ୟୋଧନ ତ ଭୀଷ୍ମ ଧୃତରଷ୍ଟ୍ର
ଦ୍ରୋଣ ଭାବିଛନ୍ତି ହୃଦରେ ହୋଇ ହୃଷ୍ଟ ।
ତୁମ୍ଭ ସଙ୍ଗତେ ମୋତେ କର୍ଣ୍ଣକୁ ବାନ୍ଧିବେ
ପାଣ୍ଡବ ରାଜନକୁ ନେଇ ସମର୍ପିବେ ।
ଦୁର୍ଯ୍ୟୋଧନ ଦୁଃଶାସନର ମୁଖୁ ଶୁଣି
ସତ କରି ମନରେ ଘେନିଲା ସେହିକ୍ଷଣି ।
କ୍ରୋଧ ହୋଇ ସଭା ମଧ୍ୟରୁ ଉଠିଗଲା
କୃଷ୍ଣ ତୁଲେ କୁରୁବୃଦ୍ଧଙ୍କୁ ସେ ଲଙ୍ଘିଲା ।
ଆପଣା ପୁରେ ଯାଇ ହେଲା ପରବେଶ
ସବୁ ଭାଇମାନେ ମିଳିଲେ ତାର ପାଶ ।
ଯେତେ ରଜାମାନେ ସଭାରେ ବସିଥିଲେ
ଦୁର୍ଯ୍ୟୋଧନ ଯିବାର ଦେଖି ସବୁ ଉଠିଗଲେ
ଭୀଷ୍ମ ଦୁର୍ଯ୍ୟୋଧନର ଏ ରୀତିକି ଦେଖି
ସଭା ମଧ୍ୟେ କହିଲେ ହୋଇ ଅତି ଦୁଃଖୀ ।
କାଳରେ ନୃପତିଏ ହୋଇବାରୁ ରୁନ୍ଧା
ହୋଇଲେ ଦୁର୍ମନ୍ତ୍ରଣା ବୁଦ୍ଧି ପାଶେ ବନ୍ଧା ।
କ୍ରୋଧ ଲୋଭ ବଶ ହୋଇଣ ଧୃତରାଷ୍ଟ୍ର
ସୁତ ମୁଁ ଜାଣୁଛି କରିବ ମହୀ ନଷ୍ଟ ।
ଶ୍ରୀକୃଷ୍ଣ ଏହା ଶୁଣି କହିଲେ ଭୀଷ୍ମଙ୍କୁ
ଏ ପୁତ୍ର ହୋଇଅଛି କୁଳ ଅଭାଗ୍ୟକୁ ।
ଅଇଶ୍ୱର୍ଯ୍ୟରେ ମତ୍ତ ହୋଇଣ ସେ ପାପୀ
ମୁଁ ବୋଲି ବଡ କରି ହୋଇଛି ପ୍ରତାପୀ ।
କାଳକୁ ଯେ ଉଚିତ କହୁଅଛି ତାହା
ମୋଠାରୁ ଶୁଣ ଆହେ ଭୀଷ୍ମ ମହାବାହା ।
ପୂର୍ବେ ଯେ ମଥୁରାରେ କଂସ ହୋଇ ରାଜା
ଦୁଷ୍ଟ ପଣ କରିଣ ପାଳୁଥିଲା ପ୍ରଜା ।
ତାହା ଜାଣି ଜ୍ଞାନିଏ ଉଗ୍ରସେନ ଆଶ୍ରେ
ରହିଲେ ନ ଯାଇଣ ଗୋଟିଏ ତା ପାଶେ ।
ଦଇବାରେ ମୋ ହାତେ କଂସର ପରାଣ
ଗଲା ସୁଖୀ ହୋଇଲେ ସେ କାଳୁ ସେ ଜାଣ ।
ଲୋକେ ଯେ ଦୁଇଭାଗ ଦେବାସୁର ରଣେ
ହୁଅନ୍ତେ ବ୍ରହ୍ମା ଯାହା କହିଲେ ଆପଣେ ।
ତାହା ମଧ୍ୟ ତୁମ୍ଭଙ୍କୁ କହିବା ବତାଇ
ଶୁଣ ହେ କୁରୁମାନେ ମନକର୍ଣ୍ଣ ଦେଇ ।
ବ୍ରହ୍ମା, ଧରମଙ୍କୁ କହିଲେ, ଦାନବଙ୍କୁ
ବାନ୍ଧିକରି ନେଇ ଦିଅ ତ ବରୁଣଙ୍କୁ ।
ବ୍ରହ୍ମାଙ୍କର ଆଜ୍ଞାରେ ଧର୍ମ ପାଇ ବଳ
ବରୁଣଙ୍କୁ ଦେଲେଟି ବାନ୍ଧି ଦୈତ୍ୟକୁଳ ।
ବରୁଣ ସେହି ଦିନୁ ଦାନବଙ୍କୁ ରୁନ୍ଧି
ରଖିଛନ୍ତି ଜଳମଧ୍ୟରେ କରି ବନ୍ଦୀ ।
ଏବେ ମୋ ବୋଲେକର୍ଣ୍ଣ ଶକୁନି ଦୁର୍ଯ୍ୟୋଧନ
ଦୁଃଶାସନ ଆଦିଙ୍କି କରିଣ ବନ୍ଧନ ।

ଯୁଧିଷ୍ଠିର ରାଜାଙ୍କୁ ସମର୍ପିବା ନେଇ
ସୁଖପାଇ ଘରେ ରହିବା ଆମ୍ଭେ ଯାଇ ।
ଶାସ୍ତ୍ର ତ ଲେଖିଅଛି କୁଳଟିଏ ଧ୍ୱଂସ
ଗୋଟିକ ଘେନି ହେଲେ କରିବ ହେ ନାଶ ।
ଏହା କହି ଧୃତରାଷ୍ଟ୍ରଙ୍କୁ ଯଦୁସାଇଁ
ବୋଇଲେ ଏହିପରି କର ନରସାଇଁ ।
ଧୃତରାଷ୍ଟ୍ର ଶୁଣିଣ କୃଷ୍ଣଙ୍କ ବଚନ
ବିଦୁରଙ୍କୁ କହିଲେ ଫେଡି କରି ମନ ।
ଗାନ୍ଧାରୀଙ୍କି ମୋଠାକୁ ବେଗେ ଦିଅ ଆଣି
ଦୁର୍ମତି ପୁତ୍ରକୁ ବୋଧିବି ତାକୁ ଘେନି ।
ଗାନ୍ଧାରୀ ବଚନରେ ଦୁର୍ଯ୍ୟୋଧନେ ପ୍ରୀତି
ହୋଇଲେ ଆମ୍ଭେମାନେ ପାଇବା ଶ୍ରୀପତି ।
ଧୃତରାଷ୍ଟ୍ରଙ୍କର ଆଜ୍ଞାକୁ ଧରି ଶିରେ
ଆଣିଲେ ଗାନ୍ଧାରୀଙ୍କି ବିଦୁର ସତ୍ୱରେ ।
ଧୃତରାଷ୍ଟ୍ର ବୋଇଲେ ଶୁଣ ଗୋ ଗାନ୍ଧାରୀ
ତୋ ପୁଅ ମରଣ ମଣିଲା ହିତ କରି ।
ଦୁଷ୍ଟଲୋକର ସଙ୍ଗ ହୋଇ ସଭା ଲୋକ-
ଯାକକୁ ଲଙ୍ଘିଲା ସେ ହୋଇ ଅବିବେକ ।
ଏହା ଶୁଣି ଗାନ୍ଧାରୀ ଗହିଁ ବିଦୁରଙ୍କୁ
ବୋଇଲେ ଘେନି ଆସ ମୋ ଜ୍ୟେଷ୍ଠ ପୁଅକୁ ।
ଧୃତରାଷ୍ଟ୍ର ନୃପେ ବୋଇଲେ ସୁତପ୍ରିୟ
ହୋଇଣ ତୁମ୍ଭେ ନାଶ କରୁଛ ଉଦୟ
ଦୁଷ୍ଟ ନଷ୍ଟ ପୁତ୍ରେ ହସ୍ତିନାଶିରୀ ଦେଇ
ବସିଛ ଯେଣୁ ଦୁଃଖ ପାଇବ ନୃସାଇଁ ।
ସାମ ଦାନେ ଯେଉଁ ବିପତ୍ତି ହେବ ଶେଷ
ତାହା ନ କରି ଦଣ୍ଡେ ଲୋଡ଼ିବ କେ ନାଶ ।
ଗାନ୍ଧାରୀ ବଚନରେ ବିଦୁର ତ ଗଲେ
ଆଣି ଦୁର୍ଯ୍ୟୋଧନେ ମାତାଙ୍କୁ ଭେଟାଇଲେ ।
ଗାନ୍ଧାରୀ ଦୁର୍ଯ୍ୟୋଧନ ଆସିବାର ଜାଣି
ଚଳିକରି ତାହାଙ୍କୁ କହିଲେ ଏ ବାଣୀ ।
ଯେଉଁ ରୂପେ ପିତା ବୋଲୁଅଛନ୍ତି ତୋତେ
ସେରୂପେ କର ବାବୁ ଏବେ ତୋଷ ଚିତ୍ତେ ।
ଭୀଷ୍ମ ଦ୍ରୋଣ ମଧ୍ୟ ତ ହୋଇବେ ସନ୍ତୋଷ
ଏଥିରୁ ତାର ବଢ଼ିବଟି ଆୟୁ ଯଶ ।
ଆପଣା ବଶ ହେଲେ ରାଜ୍ୟ ନୋହେ ଭୋଗ
ଜିତେନ୍ଦ୍ରିୟ ଲୋକ ବୋଲାଏ ମହାଭାଗ ।

କାମ କ୍ରୋଧ ଦୁହେଁ ତ ଜ୍ଞାନକୁ ଆଛନ୍ନ
କରୁଛନ୍ତି ନିତ୍ୟ ଜାଣ ହେ ଦୁର୍ଯ୍ୟୋଧନ ।
କାମ କ୍ରୋଧ ସକାଶୁଁ ସ୍ୱର୍ଗପୁର ଛାଡ଼ି
ଲୋକେ ନରକରେ ରହିଲେ ହରଘଡ଼ି ।
କାମ କ୍ରୋଧ ଲୋଭ ଦର୍ପକୁ ଜିଣିଛି
ମହାସୁଖ ପାଇ ମହୀକି ସେ ଭୁଞ୍ଜୁଛି
ପାଣ୍ଡବଙ୍କ ତୁଲରେ କରିଣ ପୀରତି
ବସି ବାବୁ ଭୋଗ କର ତୁ ବସୁମତୀ ।
ଭୀଷ୍ମ ଦ୍ରୋଣ କହୁଛନ୍ତି ବାବୁ ଯାହା
ଏ ମହୀରେ ଅନ୍ୟଥା କେ କରିବ ତାହା
ଅକ୍ଲିଷ୍ଟକର୍ମା କୃଷ୍ଣ ଅରଜୁନ ଦୁହେଁ
ଏହାଙ୍କୁ ଯୁଝିବାକୁ ନ ଯାଅ ତୁ ମୋହେ ।
ଶ୍ରୀକୃଷ୍ଣଙ୍କ ଶରଣାପନ୍ନ ଯେବେ ହେବୁ
ଯମର ଉପରେ ତୁ ଯମ ବୋଲାଇବୁ ।
ସୁହୃଦମାନଙ୍କ ଶିକ୍ଷାରେ ଯେ ନ ରହେ
ଶତ୍ରୁ ଘର ସମ୍ପତ୍ତି ବୃଦ୍ଧି କରିଥାଏ ।
କହୁଥାଇଁ ଯୁଦ୍ଧ କରିବୁ ଯେବେ ବାବୁ
ପୁତ୍ର ଜ୍ଞାତି ତୁଲେ ନିଧନଟି ଲଭିବୁ ।
ପୂର୍ବରୁ ପାଣ୍ଡବମାନଙ୍କୁ ତୁମ୍ଭ ପିତା
ଦେଇଥିଲେ ଭାଗକୁ କରି ଭୟ ଚିନ୍ତା ।
ଏତେବେଳେ କିପାଁ କରୁଛ ତାହା ନାହିଁ
ବାବୁଠାରୁ ବଳିୟାର କି ହେଲୁ ତୁହି ।
ଅଧେ ରାଜ୍ୟ ଦେଲେ ଅଧକ ପାଇ ରାଜ୍ୟ
ଜୀଇବେ ତ ତୋ ତୁଲେ କୁଟୁମ୍ବ ସମାଜ ।
ଦୁଃଶାସନ କର୍ଣ୍ଣ ଶକୁନିକି ତୁ ଘେନି
ପାରିବୁ ନାହିଁ ପାଣ୍ଡବଙ୍କ ଧନ ଆଣି ।
ଭୀଷ୍ମ ଦ୍ରୋଣ କୃପ ଆଦି ଯେ ବୀରଗଣ
ନ କରିବେ ଯୁଦ୍ଧ କରି ସେ ପ୍ରାଣ ପଣ
କୁରୁ ପାଣ୍ଡବଙ୍କରେ ସମ ତାଙ୍କ ପ୍ରୀତି
ବିଶେଷରେ ପାଣ୍ଡବେ ଧାର୍ମିକ ଅଟନ୍ତି ।
ଏଣୁ କରି ତାହାଙ୍କଠାରେ ସ୍ନେହ ଧରି-
ଥାଆନ୍ତି ସେ ଅଧିକେ ଏ ଜଣା ମୋହରି ।
ତୁ ଯେ ବୋଲିବୁ ସେ ଖାଆନ୍ତି ଆମ୍ଭ ଅନ୍ନ
ତେବେ ନ କରିବେଟି ତୋ କାମନା ପୂର୍ଣ୍ଣ ।
ଲୋଭ କଲା ଲୋକଟି ନ ପାଇ ସମ୍ପତ୍ତି
ଇଚ୍ଛା ସୁଖରେ ଲୋଡ଼ି ଆଣି ବିପତ୍ତି ।

ଗାନ୍ଧାରୀ କହିବା କଥାକୁ ପାଇ ଶଙ୍ଗ
ଯାଇଣ ଦୁର୍ଯ୍ୟୋଧନ କରି ଦୁଷ୍ଟ ସଙ୍ଗ ।
କର୍ଣ୍ଣାଦିଙ୍କୁ ବୋଇଲା କୃଷ୍ଣେ ଆମ୍ଭେମାନେ
ବାନ୍ଧି ପକାଇ କରି ରଖିବା ସଦନେ ।
ପାଣ୍ଡବେ କୃଷ୍ଣଙ୍କର ବନ୍ଧା ଶୁଣି କରି
ରହିବେ ବସିବାରଠାରେ ମଲା ପରି ।
ଧୃତରାଷ୍ଟ୍ର ରାଜାଟି ପାଉଥିବେ ଡକା
ତେବେତ ବାନ୍ଧିବା କୃଷ୍ଣଙ୍କୁ ଛାଡ଼ି ଶଙ୍କା ।
ସାତ୍ୟକି ଦୁର୍ଯ୍ୟୋଧନ ଅଭିପ୍ରାୟ ଜାଣି
କୃତବର୍ମା ଆଗରେ କହିଲେ ଏ ବାଣୀ ।
କିସ ଦେଖୁଛ ହେ ତିଆର କର ସେନା
ଦୁର୍ଯ୍ୟୋଧନ ପାପୀ ହେଲାନି ପାପମନା ।
ସେନା ଘେନି ତୁମ୍ଭେ ଦୁଆରେ ଥାଅ ରହି
କୃଷ୍ଣଙ୍କୁ ଏ ବାରତା ଆସଇ ମୁଁ କହି ।
ଏହା କହି ସାତ୍ୱକି କୃଷ୍ଣ ପାଶେ ଗଲେ
କୃଷ୍ଣଙ୍କୁ କହି ଧୃତରାଷ୍ଟ୍ରଙ୍କୁ କହିଲେ ।
ତୁମ୍ଭର ପୁଅ ଏବେ ଦୁଷ୍ଟମତି ଧରି
କୃଷ୍ଣଙ୍କୁ ବାନ୍ଧିବାକୁ ଅଛି ଇଚ୍ଛା କରି ।
ଜାଣୁ ଜାଣୁ ଜଳନ୍ତା ଅନଳରେ ଝାସ
ଦେବାକୁ କରିଅଛି ବିଷମ ସାହାସ ।
ବିଦୁର ବୋଇଲେ ହେ ଧୃତରାଷ୍ଟ୍ର ରାୟେ
ତୁମ୍ଭ ପୁଅ ବାଢିଲା ମରିବା ଉପାୟେ
ପାଣ୍ଡବେ କେତେବେଳେ ମାରିବେ ଯେ ଆସି
ଏହିକ୍ଷଣି ଅନାଥ ହେବ ରାୟେ ବସି ।
କୃଷ୍ଣ ଯେବେ ଅଳପକରେ ହେବେ କ୍ରୋଧ
ସ୍ୱର୍ଗକୁ ଛାଡ଼ି ପଳାଇବେଟି ବିବୁଧ ।
କୁରୁମାନଙ୍କର ଅଟଇ ଅଳ୍ପ ସତ୍ୱ
ବଳେ ଏବେ ରାଜନ ରଖ ହେ ମହତ୍ୱ ।
କୃଷ୍ଣ ଦୁତ ହୋଇ ଏଠାକୁ ଛନ୍ତି ଆସି
ଏଣୁ ବା ନ ମାରିବେ ହୋଇ କରି ରୋଷୀ ।
ନୋହିଲେ ତୁମ୍ଭ ପୁଅମାନଙ୍କର ବାଳ
ବଳେ ଆଜି ଗ୍ରସ୍ତ କରିବ କରେ କାଳ ।
ବିଦୁରଙ୍କ ମୁଖରୁ ଏ ବଚନ ଶୁଣି
ହସିଣ ମଧୁରେ କହିଲେ କୃଷ୍ଣ ବାଣୀ ।
କ୍ଷଣକରେ ସଭିଙ୍କି ପାରଇ ମୁଁ ନାଶି
କରିବେ ନିନ୍ଦା ମୋତେ ତିନିଲୋକବାସୀ ।
ଦୂତ ହୋଇ ନ ଆସିଥିଲେ ତାର ଗାଲୁ
ଭାଙ୍ଗନ୍ତି ସଭା ଲୋକମାନେ କରି ଓଲୁ ।
ଦୁର୍ଯ୍ୟୋଧନ ବାନ୍ଧି ଆସିବ ଯେବେ ମୋତେ
ହିତକରି ଏହା ମୁଁ ଘେନୁଅଛି ଚିତ୍ତେ ।
ଯୁଧିଷ୍ଠିର ରାଜା ପାଇବେ କିମ୍ବା ଶ୍ରମ
ସୁଖରେ ଭୁଞ୍ଜିବେ ହସ୍ତିନା ନାମେ ଗ୍ରାମ ।
ଆହେ ଧୃତରାଷ୍ଟ୍ର ତୁମ୍ଭର ପୁଅମାନେ
ମହାବଳ ବହି ଅଛନ୍ତି ଅପଘନେ ।
ବୋଲୁଅଛି ଏବେ ଦଉଡ଼ିମାନ ଧରି
ପାରିଲେ ମୋତେ ବାନ୍ଧି ରଖନ୍ତୁ ଲୋଡ଼କରି ।
ଏହା ଶୁଣିଣ ଧୃତରାଷ୍ଟ୍ର ହୋଇ କ୍ରୋଧ
ବିଦୁରଙ୍କୁ ବୋଇଲେ କୃଷ୍ଣଙ୍କୁ କି କ୍ରୋଧ ।
ପାପୀ ଦୁର୍ଯ୍ୟୋଧନଙ୍କୁ ମୋ ପାଖକୁ ଆଣ .
ବୁଝିବା ତା ଦେହେ ଅଛି କେତେ ଟାଣ ।
ବିଦୁର ଧୃତରାଷ୍ଟ୍ର ବଚନରେ ଗଲେ
ଆଣି ଦୁର୍ଯ୍ୟୋଧନେ ବାପାଙ୍କ ପାଶେ ଦେଲେ ।
ଧୃତରାଷ୍ଟ୍ର ବୋଇଲେ ଦୁର୍ଯ୍ୟୋଧନ ବାଇ
ପାପ ବିଚରୁଛୁ ପାପୀଙ୍କ ସାହା ପାଇ ।
ବିଷ୍ଣୁଙ୍କୁ ବାନ୍ଧିବାକୁ ନାହିଁ ତୋର ବଳ
ଯା ବୋଲୁଛୁଁ ତୋର ହେଲାନି ଆସି କାଳ ।
ଇନ୍ଦ୍ରାଦି ଦେବତା ଯୁଝିଲେ ହୋଇ ଗୋଟି
କୃଷ୍ଣଙ୍କୁ ନ ପାରି ରହିବେ ଲାଜେ ଫୁଟି ।
ପବନକୁ ବାନ୍ଧିବାକୁ ତୁ ପାତି ଫାଶ
ହାତ ବଢାଉଛୁ ଧରିବୁ ତାରାଈଶ ।
ଧୃତରାଷ୍ଟ୍ର କହିବା ଉତ୍ତାରେ ବିଦୁର
ଦୁର୍ଯ୍ୟୋଧନ ଆଗେ କହିଲେ ଏ ଉତ୍ତର ।
ପୂର୍ବେ କୃଷ୍ଣ ସଙ୍ଗତେ ଦ୍ୱିବିନ୍ଦ ବାନର
ଯୁଦ୍ଧ କରି କଲା ସେ ପଥର ପ୍ରହାର ।
ତା ପଥର ପ୍ରହାରେ ରବିଙ୍କ କରୁଟି
ଛୁଇଁ ନ ପାରିଲା ଆସିଣ ଏ ମହୀଟି ।
ତେବେହେଲେ କୃଷ୍ଣଙ୍କୁ ନ ପାରିଲା ଧରି
ତୁ ଧରିବୁ ବାବୁ କହ ତ କିସ କରି ।
ନିର୍ମୋଚନ ପୁରରେ ଛ ସହସ୍ର ପାଶ
ଧରି ଦୈତ୍ୟେ ଆସିଲେ ଶ୍ରୀକୃଷ୍ଣଙ୍କ ଫାଶ
କୃଷ୍ଣଙ୍କୁ ବାନ୍ଧିବାକୁ ବହୁ ଯତ୍ନ କଲେ
ନ ପାରିବାରୁ କୃଷ୍ଣ ବଳରେ ସେ ମଲେ ।

ପ୍ରାଗ୍ ଜ୍ୟୋତିଷପୁରେ ନରକ ମହାସୁର
କରୁଥିଲା ରାଜ୍ୟଟି ବୋଲାଇଣ ଶୁର ।
କୃଷ୍ଣ ତାର ସଙ୍ଗତେ ଯେବେଟି ଯୁଝିଲେ
କୃଷ୍ଣେ ବାନ୍ଧିବାକୁ ବିଗ୍ରହ କଲା ଭଲେ ।
ନ ପାରି କୃଷ୍ଣହାତେ ଦେଇଣ ପରାଣ
ତେଡ଼େ ବଳୀ ଯାଇ ଭେଟିଲା ଯମରାଣ ।
କଂସ କେଶୀ ଅରିଷ୍ଟ ଧେନୁକା ପୂତନା
ପ୍ରାଣ ନେଇଛନ୍ତିଟି କୃଷ୍ଣ ମହାମନା ।
ଗୋପ ରକ୍ଷା ପାଇଁକି ଗୋବର୍ଦ୍ଧନ ଧରି
ଏ କୃଷ୍ଣ ଜିଣିଲେ ହେଳାରେ ବଜ୍ରଧାରୀ ।
ଜରାସନ୍ଧ ଶିଶୁପାଳ ଯେ ବାଣାସୁର
ଏମାନଙ୍କୁ ଜିଣିଲେ କରିଟି ସମର ।
ବରୁଣ ଅଗ୍ନି ତୁଲେ କରିଣ କୃଷ୍ଣ ରଣ
ତାହାଙ୍କର ଭାଙ୍ଗି ଦେଲେଟି ଦେହଟାଣ ।
ସ୍ୱର୍ଗକୁ ଜିଣି ପାରିଜାତକ ଆଣିଲେ
ସତ୍ୟଭାମା ଘରେ ତା ନେଇଣ ରଖିଲେ ।
ଜନ୍ମାନ୍ତରରେ ମଧୁ କଇଟଭ ହତ
କରିଅଛନ୍ତି ଆହେ ବସୁଦେବ ସୁତ ।
ସବୁଲୋକମାନ କରିବା କର୍ତ୍ତା ଏହି ।
ତାଙ୍କୁ କରିବାକୁ ବ୍ରହ୍ମାଣ୍ଡେ କେହି ନାହିଁ ।
କୃଷ୍ଣଙ୍କ ତେଜ ଅନଳରେ ଦୁର୍ଯ୍ୟୋଧନ
ପତଙ୍ଗ ପରି ପଡ଼ି ନୁହ ତୁ ଦହନ ।
ତୋହ ବଳରେ କୃଷ୍ଣଙ୍କର ବଧ କିଛି
ହେବା ପରି ମୋର ମନକୁ ନ ପାଉଛି ।
ବିଦୁରଙ୍କ କହିବା ଉତ୍ତାରୁ ଗୋବିନ୍ଦ
ବୋଇଲେ ଦୁର୍ଯ୍ୟୋଧନ ଅଟୁ କେଡ଼େ ମନ୍ଦ ।
ଏକା ହେଲେ ମୁହିଁ ଅନେକ ହୋଇପାରେ
କିସ ବାଧ ହୋଇବ ମୋର ତୋ.ବଳରେ ।
ପାଣ୍ଡବ ବୃଷ୍ଣି ଯଦୁ ଅନ୍ଧକାଦି ରୋଷେ
ବୋଇଲେ ଏକ୍ଷଣି ଆସିବେ ମୋର ପାଶେ ।
ଏହା କହିଣ କୃଷ୍ଣ ମହାମହିମାକୁ
ଦେଖାଇଲେ ସେ ଦୁର୍ଯ୍ୟୋଧନ ପାମରକୁ ।
ଲଲାଟରୁ ବ୍ରହ୍ମା ଯେ ବକ୍ଷସ୍ଥଳୁ ଶିବ
ଭୁଜୁଁ ଲୋକପାଳ ମୁଖରୁ ଅଗ୍ନି ଦେବ ।
ସାଧ୍ୟ ଆଦିତ୍ୟାଦି ମରୁତ ବିଶ୍ୱଦେବ
ଗନ୍ଧରବ ରାକ୍ଷସ ଇନ୍ଦ୍ର ଆଦି ଦେବ ।
ଦୁଇବାହୁ ଭେଦିତ କରି ଯେ ଅରଜୁନ
ରେବତୀଙ୍କ ରମଣ ହୋଇଲେ ଜନମ ।
ଦକ୍ଷିଣରେ ଅର୍ଜ୍ଜୁନ ବାମେ ବଳଦେବ
ରହିଣ ବଢାଇଲେ ସେ ମହା ପ୍ରଭାବ ।
ଭୀମ ଯୁଧିଷ୍ଠିର ନକୁଳ ସହଦେବ
ପୃଷ୍ଠରୁ ଜାତ ହୋଇ ପୃଷ୍ଠେ କଲେ ଠାବ ।
ସମ୍ମୁଖ ଭାଗରୁ ପ୍ରଦ୍ୟୁମ୍ନ ଆଦି ସୁତେ
ବୃଷ୍ଣି ଅନ୍ଧକ ତୁଲେ ଜନ୍ମିଲେ ସମସ୍ତେ ।
ଶଙ୍ଖ ଚକ୍ର ଗଦା ଶାରଙ୍ଗ ଶରାସନ
ଆୟୁଧାଦି ରହିଲେ କୃଷ୍ଣ ସନ୍ନିଧାନ ।
ସହସ୍ର ସଂଖ୍ୟା ବାହୁ କୃଷ୍ଣଙ୍କ ଦେହରୁ
ଜାତ ହୋଇଣ ନିନ୍ଦା କଲେ ଶାଳତରୁ ।
ସେ ବାହୁମାନେ ଅସ୍ତ୍ର ଶସ୍ତ୍ରରେ ଶୋଭିତ
ହେବାରୁ ସୂର୍ଯ୍ୟକର କରନ୍ତି ଲୁପତ ।
କର୍ଣ୍ଣ ନାସା ନେତ୍ରୁ ବାହାରି ଅଗି ଜ୍ୱାଳା
ନିନ୍ଦା କରିଦେଲେ ନକ୍ଷତ୍ରଙ୍କର ମାଳା ।
ରୋମକୂପମାନଙ୍କୁ ରଶ୍ମି ହୋଇ ଜାତ
ଚଉଦିଗଯାକରେ ହୋଇଲେ ପୂରିତ ।
ଶ୍ରୀକୃଷ୍ଣଙ୍କ ଏ ରୂପ ଦେଖି ନୃପତିଏ
ବୋଇଲେ ମଲାଇଁ ତ ଆସିଣ ସଭିଏଁ ।
ସେକାଳେ ନୃପତିଙ୍କ ଡୋଳା ଚଞ୍ଚରୀକ
ପକାଇଣ ରହିଲା ତା ପକ୍ଷ୍ମ ପଲକ ।
ଭୀଷ୍ମ ଦ୍ରୋଣ ବିଦୁର ସଞ୍ଜୟ ଋଷିକୁଳ
କୃଷ୍ଣଙ୍କ ସେ ରୂପେ ନୟନ କଲେ ଥୂଳ ।
କୃଷ୍ଣ ତ ତାଙ୍କର ଅଟନ୍ତି ଅତି ପ୍ରିୟ
ଏଣୁ କୃଷ୍ଣ ହେଲେ ତାହାଙ୍କୁଟି ସଦୟ ।
କୃଷ୍ଣଙ୍କ ପ୍ରଭାବରେ ଧୃତରାଷ୍ଟ୍ର ନେତ୍ର
ପାଇ ଦେଖି କୃଷ୍ଣଙ୍କୁ ହୋଇଲେ ପବିତ୍ର ।
ଋଷିଙ୍କ ତୁଲେ ଭୀଷ୍ମ ବିଦୁର ସଞ୍ଜୟ
ଦ୍ରୋଣ ଯେ ଧୃତରାଷ୍ଟ୍ର ହୋଇଣ ବିନୟ ।
ଶ୍ରୀକୃଷ୍ଣଙ୍କ ପାଦବେନିକି କର ଯୋଡ଼ି
ପ୍ରକାଶିଲେ ସ୍ୱସ୍ତିବାଚନ ଦୁଃଖ ଛାଡ଼ି ।
ସେକାଳେ ଧୃତରାଷ୍ଟ୍ର କଲେ ଜଣାମଣା
ତୁମ୍ଭେ ହେ ମହାପ୍ରଭୁ ତିନିଲୋକଜଣା ।
ତୁମ୍ଭର ତ ରୂପକୁ କଲି ଦରଶନ
ଆଉ କିସ ଦେଖିବା ଅଛି ପ୍ରୟୋଜନ ।

କୃଷ୍ଣ ବୋଇଲେ ଆହେ ଯେବେ ଇଚ୍ଛା ନାହିଁ
ତେବେ ନୟନକୁ ନ ଦିଶୁ ନରସାଇଁ ।
ସେହିକାଳରେ ଦେବଦୁନ୍ଦୁଭି ଆନକ
ବାଜନ୍ତେ କମ୍ପିଗଲା ମହୀଲୋକଯାକ ।
ଆକାଶରୁ ପୁଷ୍ପ ଅମାପ ହୋଇ ବୃଷ୍ଟି
ପୂରିଗଲା ହସ୍ତିନା ରାଜଧାନୀ ସୃଷ୍ଟି ।
ମହୀ ତୁଲରେ ମହୀଧର ଗଲେ ଚଳି
କି ହେବ ବୋଲି ଶେଷେ ବସିଲେ ଯେ ଭାଳି ।
ବିଶ୍ୱରୂପେ କୃଷ୍ଣ କୁରୁଙ୍କୁ ଦରଶନ
କରାଇ କରିଦେଲେ ସେକ୍ଷଣି ଗୋପନ ।
ସାତ୍ୟକି କୃତବର୍ମା ଦୁହିଁଙ୍କି ଘେନିଲେ
ଋଷିଙ୍କ ଅନୁଜ୍ଞାରେ ତହୁଁ ବାହାରିଲେ ।
ନାରଦଙ୍କୁ ଆଦି ଋଷିଏ ଅନ୍ତର୍ଦ୍ଧାନେ
ବାହାରିଲେ ଆକାଶମାର୍ଗରେ ବହନେ ।
କୃଷ୍ଣଙ୍କ ଯିବା ଦେଖି ନୃପଙ୍କର ମେଳେ
କୁରୁଏ କେତେଦୂର ଗୋଡ଼ାଇଣ ଗଲେ ।
ଗରୁଡ଼ଧ୍ୱଜରଥ ଦାରୁକ ସାରଥି
ଆଣିଦେଲେ କୃଷ୍ଣ ବସିଲେ ହୋଇ ରଥୀ ।
ସେହିକାଳରେ ଧୃତରାଷ୍ଟ୍ର ମହାରାଜ
କରିଲେ ଜଣାମଣା ଘେନି ମନେ ଲାଜ ।
ମୋପୁଅ ଦୁଷ୍ଟପଣେ ମୋ କୁଳ ବୁଡୁଛି
ନ ଘେନିମ ମୋଠାରେ କୃଷ୍ଣ ଶଙ୍କା କିଛି ।
ବୁଢ଼ା ବୋଲି ମୋତେ ବସାଇ ଦେଇ ଘରେ
ଦୁର୍ଯ୍ୟୋଧନ ବିଚର ତା ମନକୁ କରେ ।
ଧୃତରାଷ୍ଟ୍ର ବଚନ ଶୁଣିଣ ଗୋବିନ୍ଦ
ବୋଇଲେ ଭୀଷ୍ମ ଦ୍ରୋଣ ଦୁର୍ଯ୍ୟୋଧନ ମନ୍ଦ
ବୁଦ୍ଧି ତ ସଭାମଧ୍ୟେ ବସିଣ ଦେଖିଲ
ଆଉ କହିବାକୁ ଅଛି କି ତାଙ୍କ ଭଲ ।
ଏବେ ମୁଁ ଯୁଧିଷ୍ଠିର ପାଶକୁ ଯାଉଛି
ଅଦୃଷ୍ଟ ମାନି ରହ ଦୁଃଖକୁ ମୁରୁଛି ।
ଏହା କହିଣ ଦାରୁକକୁ ଆଜ୍ଞା ଦେଲେ
ଏଠାରୁ ମୋର ରଥ ବାହିନିଅ ଭଲେ ।
ଧୃତରାଷ୍ଟ୍ର ଅଶ୍ୱଥାମା ଯେ ଭୀଷ୍ମ ଦ୍ରୋଣ
ବିଦୁର ବାହ୍ଲିକ ଯୁଯୁତ୍ସୁ ଯେ ବିକର୍ଣ୍ଣ ।
କୃପ ଆଦି କୃଷ୍ଣଙ୍କ ରଥପଛେ ଧାଇଁ
ବାହାରିଲେ ମହାଶରଧା ମନେବହି

କୁନ୍ତୀ ତ ବିଦୁରଙ୍କ ଘରେ ରହିଥିଲେ
କୃଷ୍ଣ ତହିଁ ରଥ ରଖାଇ ଓହ୍ଲାଇଲେ ।
କୁନ୍ତୀଙ୍କ ପାଦେ କୃଷ୍ଣ କରିଣ ପ୍ରଣାମ
କହିଲେ କୁରୁମାନଙ୍କର କଲା କର୍ମ ।
ମୋ ତୁଲରେ ଋଷିଏ ସୁଯୋଧନ ମୂଢ଼
ରାଜାକୁ କହିଲୁଁ ସେନେହେ ଛାଡ଼ି ପ୍ରୌଢ଼ ।
ଯାହା ଆଚରଣ କଲା ସେ କହିବାକୁ
ନ ଆସୁଛି ଜାଣ ତା ମୋହର ମୁଖକୁ ।
କାଳରେ ତ ସମସ୍ତେ ହୋଇଛନ୍ତି ବଶ
ନର ଜନ୍ମ ହୋଇ କରିବ କେ ତା ନାଶ ।
ତୁମ୍ଭ ପୁଅମାନଙ୍କୁ କି କହିବି ଯାଇ
କହିଥାଅ ମାତ-ତା ପଚ୍ଛରୁଛିଁ ମୁହିଁ ।
କୁନ୍ତୀ ବୋଇଲେ ହେ କହିବ ମୋ ପୁଅଙ୍କୁ
କୁଳକୁ ଅନୁରୂପ ଦେଖାନ୍ତୁ ବଳକୁ ।
ଦ୍ୱିଜେ ବେଦ ବଢ଼ିଣ ହେଉଥାନ୍ତି ବଡ଼
କହିଲେ କଥା ସବୁ ହେଉଥାଏ ହୁଡ଼ ।
ମୋ ପୋଏ ସେହିରୂପେ ଧରମ ଆଚରି
ଘର ବିଦ୍ୟାଯାକ ଦେଲେ କି ଦୂର କରି ।
କ୍ଷତ୍ରିୟଙ୍କୁ ବାହାରୁ ବିହି କଲା ଜାତ
ବାହୁବଳରେ ରଖିବାକୁଟି ଜୀବିତ ।
କ୍ଷତ୍ରିୟଙ୍କ ଧରମ ଶୁଣିଛି ମୁଁ ଯାହା
କହିବି ଏବେ ତା ଶୁଣ ହେ ଚକ୍ରବାହା ।
ପୂର୍ବେ ମୁଚୁକୁନ୍ଦେ କୁବେର ତୋଷ ହୋଇ
ବସୁନ୍ଧରାମଣ୍ଡଳ ସମର୍ପିଲେ ନେଇ ।
ମୁଚୁକୁନ୍ଦ ଦେଖି ବୋଇଲେ ବାହୁବଳ
ବିନାର୍ଜିତ ଚିତ୍ତେ ନୋହିବି ମହୀପାଳ ।
କୁବେର ତାହା ଶୁଣି ଆଶ୍ଚର୍ଯ୍ୟ ହୋଇଲେ
ନ କହି କଥା ଲାଜ ପାଇଣ ରହିଲେ ।
ମୁଚୁକୁନ୍ଦ ରାଜାଟି କ୍ଷତ୍ରିୟ ଧରମ
ଆଶ୍ରେ କରି ଭୁଞ୍ଜିଲେ ସର୍ବ ମହୀଗ୍ରାମ ।
ଯେଉଁ ଲୋକଟି ରାଜା ହୋଇ ମହୀ ପାଳେ
ଚତୁର୍ଥଭାଗ ସୁକୃତକୁ ନିଏ ବଳେ ।
ଏ ବାହାରେ ରାଜା କରଇ ଯେବେ ପୁଣ୍ୟ
ଦେବଲୋକରେ ସେହୁ ବୋଲାଏଟି ଧନ୍ୟ ।
ଅଧରମ କଲେ ରାଜାକୁ କାଳଦଣ୍ଡ
ପାଣି କ୍ରୋଧ ହୋଇ ଦିଅଇ କାଳଦଣ୍ଡ ।

ରାଜା ହେବ ଋରିବର୍ଣ୍ଣକୁ ଦଣ୍ଡ ଦେଇ
ଏହା ଜାଣି ଧର୍ମରେ ଥିବଟି ଚଳାଇ ।
ଧର୍ମକୁ ଋହିଁ ରାଜା ଦେଉଥିଲେ ଦଣ୍ଡ
ଲଭଇ ସତ୍ୟଯୁଗ ଫଳ ମହୀଖଣ୍ଡ ।
କାଳକୁ ପ୍ରତି ରାଜା ଅଟଇ କାରଣ
ରାଜାଠାରୁ ଧର୍ମ ଅଧର୍ମ ହୋଏ ଜାଣ ।
ଋରିଯୁଗଯାକ ହେଉଛି ରାଜା ଘେନି
ଶୁଣ ହେ ରୁକ୍ମିଣୀ ବଲ୍ଲଭ ଚକ୍ରପାଣି ।
କୃତଯୁଗ କଲେ ଲଭଇ ରାଜା ସ୍ୱର୍ଗ
ସୁଖରେ ବସେ ଯାଇ ଦେବାସନଭାଗ ।
ତ୍ରେତା ଦ୍ୱାପରକୁ ସେ ପ୍ରବର୍ତ୍ତାଏ ଯେବେ
ଭାଗେ ଫଳ ଊଣା ହୁଅଇ ତାର ତେବେ ।
କଳିଯୁଗକାରୀ ହୁଅଇ ଯେବେ ରାଜା
ନରକ ଭୋଗ କରେ ନ ପାଇଣ ପୂଜା ।
ପରସ୍ପରେ ନୃପତି ଜଗତ ଦୋଷରେ
ଭାଗୀ ହେଉଅଛନ୍ତି ରଜନୀ ବାସରେ ।
ଅକ୍ରୁର ହୋଇ ରାଜା ପାଳେ ଯେବେ ପ୍ରଜା
ତେବେ ତାକୁ ପ୍ରଜାଏ ନ କରନ୍ତି ପୂଜା ।
ଯାଗ ଦାନ ତପ ଶଉର୍ଯ୍ୟ ପରାକ୍ରମ
ପ୍ରଜାପାଳନ ଏ କ୍ଷତ୍ରିୟର ଧରମ ।
କ୍ଷତ୍ରିୟ ପିତୃଦେବତାଙ୍କୁ ଆରାଧିଲେ
ଆୟୁଷ ଧନ ପୁତ୍ର ଦିଅନ୍ତି ସେ ଭଲେ ।
କୁଳୀନଲୋକ ଯେବେ ଦୀନ ହୋଇଯାଏ
କ୍ଷତ୍ରିୟ ଘେନିଣ ପୁଣି ସେ ଧନ ପାଏ ।
କ୍ଷତ୍ରିୟ ପୃଥ୍ୱୀ ପାଇଥିଲେ ଦାନ ବଳ
ଦେଖାଇ ଜଗତେ ବୋଲାଏ ମହୀପାଳ ।
ଏ ବାହାରେ କହିବି ପିତୃ ପିତାମହ-
ମାନେ ତୁମ୍ଭ ପରି ଧର୍ମରେ ବହି ମୋହ ।
ଏପରି ଆଚରଣମାନ ସହି କରି
ରହିବାର ହେ ଶୁଣା ନାହିଁ ତ ଆମ୍ଭରି ।
ତୁମ୍ଭେ ତ ହୋଇଛ କ୍ଷତ୍ରିୟଠାରୁ ଜାତ
କ୍ଷତ୍ରିୟଧର୍ମେ କିମ୍ପା ହେଉଛ ନିସତ ।
ତୁମ୍ଭଙ୍କୁ ଜାତ କରି ପରଭାତ ଖାଇ
ଯା ଜୀଇଛି ମୋର ଅଭାଗ୍ୟ ଏଥୁଁ ନାହିଁ ।
ବିଦୁଳା ପୂର୍ବେ ନିଜ ପୁତ୍ରକୁ ବସାଇ
ଯା କହିଛନ୍ତି ତ ଶୁଣ ହେ ଯଦୁସାଇଁ ।

ସିନ୍ଧୁ ନୃପଠାରୁ ତ ବିଦୁଳାଙ୍କ ସୁତ
ଯୁଦ୍ଧ କରିଣ ଦେଇଥିଲା ପରଭୂତ ।
ପୁଣି ତ ନିସତରେ ନିଶଧରା ଛାଡ଼ି
ଘରେ ବସିଣ ଭାଳୁଥିଲେ ହରଘଡ଼ି
ସଞ୍ଜୟର ମାତା ବିଦୁଳା ହୋଇ କ୍ରୋଧୀ
କ୍ଷତ୍ରି ଧର୍ମ ଦେଖାଇ କହିଲେ ତାଙ୍କୁ ବୋଧି
କ୍ଷତ୍ରିୟ ରାଜା ବୀର୍ଯ୍ୟେ ହୋଇଥିଲେ ଜାତ
ସଞ୍ଜୟ ଯୁଦ୍ଧେ କିମ୍ପା ହୁଅନ୍ତୁ ନିସତ ।
ଯେଉଁ କ୍ଷତ୍ରିୟ ଯୁଝି ଯୁଦ୍ଧ ଛାଡ଼ିଦିଏ
କ୍ଷତ୍ରିୟ ଅଗାଡ଼ିଟି ଜଗତେ ବୋଲାଏ ।
ତୁ ବାବୁ ଏବେ କୁଳ ବୃତିକି ଆଚରି
ଦିଅ ତୋ ମନରୁ ଭୟକୁ ଦୂରକରି ।
କାପୁରୁଷେ ସିନା ଅଳପକେ ସନ୍ତୋଷ
ହୋଇ ସୁଖେ ରହନ୍ତି ଗୃହେ କରି ବାସ ।
ଏବେ ମୋ ବୋଲେ ଶତ୍ରୁ ସଙ୍ଗତରେ ଯୁଝି
ଶୁଅ ସୁଖ ପାଇଣ ରଣଭୂମି ମଝି ।
ପରାକ୍ରମ ଜଗତ ମଧ୍ୟେ କର ଖ୍ୟାତ
ବାହୁ ବଳେ ବାବୁ ଅରଜି ଆଣ ବିତ୍ତ ।
କେନ୍ଦୁକାଠର ପରି ଯୁଦ୍ଧାଗ୍ନିରେ ଜଳି
ମରିଯାଅ ହେ ସ୍ୱର୍ଗଲୋକ ହେବ ଭାଳି ।
କ୍ଷତ୍ରିୟ ପିଲା ଯେବେ ଯୁଦ୍ଧ ଶୁଣି ଧାଏଁ
ତାହାଙ୍କୁ ପରଶଂସା କରନ୍ତି ସଭିଏ ।
ଯୁଦ୍ଧରେ ଜୟ ହେଲେ ବଢ଼ଇ କୀରତି
ଅଜୟ ହେଲେ ମଧ୍ୟ ହୁଏ ସ୍ୱର୍ଗଗତି ।
କ୍ଷତ୍ରିୟ କୀର୍ତ୍ତି ନାଶ କରି ଯେବେ ଜୀଏଁ
ମଲା ପରି ତାର ସେ ଯେତେ କାଳ ଥାଏ ।
ଶସ୍ତ୍ରଟି ନ ଥିଲେହେଁ ଶତ୍ରୁକୁ କାମୋଡ଼ି
ଆଖି ଭିଡ଼ି ଦେବଟି ପରାଣକୁ ଛାଡ଼ି ।
ତୋ ଘେନି କୁଳଯାକ ହେଉଛି ଆବିଳ
ଛଡ଼ାଅ ଯୁଦ୍ଧେ ତା ଦେଖାଇ ଦେହ ବଳ ।
ପର ଅବଜ୍ଞାରେ ଅଛି ଯେ ଦେହ ଧରି
ସେ ଲୋକ ଜନକ ଜନନୀ କ୍ଲେଶକାରୀ ।
ଦାନ ତପ ବିଦ୍ୟା ଯେ ଶଉର୍ଯ୍ୟରେ ଖ୍ୟାତ
ଯେ ନୋହେ ପୁତ୍ର ହେଲେ ବୋଲାଏ ସେ ମୂତ୍ର
ତପ ଶାସ୍ତ୍ର ଶିରୀ ବିକ୍ରମେ ପରାଭୂତ
ଯେ କରେ ପରକୁ ସେ ହୁଅଇ ବିଦିତ ।

ଶତ୍ରୁ ଯେଉଁ ଲୋକକୁ ନ କରଇ ଭୟେ
ତାହାର ଧନ ବସ୍ତ୍ର ହୁଅଇଟି କ୍ଷୟେ ।
ଅଳ୍ପଜୀବୀ ଲୋକ ତୁଲରେ ବନ୍ଧୁ କଲେ
ଉତ୍ତମ ଲୋକେ ନାଶ ଯାଆନ୍ତିଟି ଭଲେ ।
ରାଜ୍ୟ ଛାଡ଼ି ଆମ୍ଭେ ପ୍ରବାସ କରିଥାଉଁ
କେଉଁ ବୃତ୍ତି କରି ଜୀଇବା କହ ତୁହି ।
ତୋ ଦୁର୍ଗୁଣ ଦେଖି କହୁଛି ଦଇବକୁ
ଏରୂପେ ପୁତ୍ର ଆଉ ନ ଦେବ କାହାକୁ ।
କ୍ରୋଧବନ୍ତ ଲୋକକୁ ବୋଲିଟି ପୁରୁଷ
ଅକ୍ରୋଧୀ ଲୋକଟି ବୋଲାଏ ଅପୁରୁଷ ।
ସନ୍ତୋଷ ଅନୁଦ୍ୟମ ଦୟା ସମ୍ପତ୍ତିକି
ନାଶ କରି ଲୋଡ଼ି ଆଣନ୍ତି ବିପତ୍ତିକି ।
ଲବଣୀ ପରି କରି କୋମଳ ହୃଦୟ
ନ ବୁଡ଼ାଅ ତୋହର ନାମୁଟି ସଞ୍ଜୟ ।
ଶତ୍ରୁପୁର ଜିଣିମା ସକାଶୁଁ ପୁରୁଷ
ବୋଲିଣ ଜଗତରେ ହୁଅଇ ପ୍ରକାଶ ।
ପ୍ରିୟସୁଖ ଛାଡ଼ି ଯେ ଯୁଦ୍ଧ ଇଚ୍ଛା କରେ
ତାହାକୁ ଲେଖନ୍ତିଟି ଶୁରଙ୍କ ବସ୍ତାରେ ।
ସଞ୍ଜୟ ବୋଇଲେ ମରିବି ଯେବେ ଯୁଦ୍ଧେ
କହ ତୁମ୍ଭେ ଜୀଇଁ ରହିବ କେଉଁ ସଧେ ।
ବିଦୁଲା ତା ଶୁଣି ବୋଇଲେ ଯୁଦ୍ଧଭୀରୁ
ବାହାରି ନ ପାରନ୍ତି କେବେ ନରକରୁ ।
ତୁ ଏବେ ବାବୁ ଜିଣି କରି ଶତ୍ରୁଗ୍ରାମ
ଯାଗ ଦାନେ ବଢ଼ାଅ ବୀରଙ୍କ କରମ ।
ଆପଣା ବାହୁବଳ କରି ଯେ ଜୀଅଇଁ
ଇହ ପର ଦୁଇ ଲୋକରୁ ସେ ତରଇ ।
ଏ ଯୁବା ବୟସେ ନ କଲେ ପରାକ୍ରମ
ଆଉ ନିକି ତୋହର ଦିଶିବ କରମ ।
ଜୀବ ଆକାଂକ୍ଷାରେ ବିକ୍ରମ ଯେ ନ କରେ
ପଣ୍ଡିତେ ନ ଗଣନ୍ତି ତାକୁ କ୍ଷତ୍ରିୟରେ ।
ଯଥା ମୃତଲୋକ ଔଷଧ ନ ପିଅଇ
ତଥା ମୋର ବାଣୀ ନ ଘେନୁ ପୁତ୍ର ତୁହି ।
ତୋ ଶତ୍ରୁ ଲୋକ ତ ଦୁର୍ବଳ ହୋଇଛନ୍ତି
ଏତେବେଳେ ତୋହର ଯୁଝିବା ଯୁକତି ।
ଜନ୍ମକାଳେ ମଧ୍ୟ ବ୍ରାହ୍ମଣ କହିଛନ୍ତି
ଏ ଦୁଃଖ ପାଇ ପୁଣି ପାଇବ ସମ୍ପତ୍ତି ।
ସେ କଥା କହି କହୁଅଛି ବାବୁ ତୋତେ
ଯୁଦ୍ଧ କଲେ ଶତ୍ରୁକୁ ମାରିବୁ କିଞ୍ଚିତେ ।
ଯୁଦ୍ଧମନାଟି ସୁମନାରେ ଶୂର ହେଲେ
ଅସୁର ହେଲେ ଘୁଞ୍ଚି ପଳାଏଟି ଭଲେ ।
ଦିନକୁ ଯାର ଘରେ ନ ଥାଏଟି ଭାତ
ବ୍ୟର୍ଥ ଅଟେ ବାବୁରେ ତାହାର ଜୀବିତ ।
ପତି ପୁତ୍ର ମରଣ ପ୍ରତିକି ଦାରିଦ୍ର୍ୟ
ଆରେ ପୁତ୍ର ସଞ୍ଜୟ ଅଟଇ ଅଭଦ୍ର ।
ଦରିଦ୍ରକୁ ପ୍ରତି ମରଣ ଅଟେ ଭଲ
ପ୍ରାଣୀ ଥିଲେ ହେଉଥାଏ ସେ କଲବଲ ।
ବଡ଼ କୁଳରେ ଜାତ ହୋଇ ମୁଁ ଭୋଗିନୀ
ହୋଇଥିଲି ଦୁଃଖ ପାଇଲି ତୋହ ଘେନି ।
ମୋହ ତୁଲେ ତୋର ଭାର୍ଯ୍ୟାର ଦେଖି କଷ୍ଟ
ଯା ଜୀଇଁଛି ବାବୁରେ ହୁଅ ପ୍ରାଣେ ଭ୍ରଷ୍ଟ ।
ବରତନ ନ ପାଇ ଲୋକ ନାନ ଦେଶେ
ଜୀଇବାକୁ ଗଲେଣି ନ ରହି ତୋ ପାଶେ ।
ପୂର୍ବପରି ତୋର ନ ଦେଖିଲେ ଶିରୀ
ମରିଯିବି ତ ମୁହିଁ ନିତି ଝୁରିଝୁରି ।
ଦ୍ୱିଜେ ଯେବେ ମୋତେ ମାଗିବେ ଅନ୍ନପାନ
ନ ଦେଲେ ମଲାପରି ହୋଇବ ସେ ଦିନ ।
ମୋ ଆଶ୍ରୟରେ ଲୋକେ ରହିଲେ ଅବିଚ୍ଛିନ୍ନେ
ମୁଁ କାହା ଆଶ୍ରୟରେ ନ ରହିବି କ୍ଷଣେ ।
ଏକା ଶତ୍ରୁଟିଏ ମାଇଲେ ଶୂର ଲୋକ
ଭଲ ବୋଲି ତାଙ୍କୁ ବୋଲନ୍ତି ମହୀଯାକ ।
ସଞ୍ଜୟ ନାମକୁ ତ ଯୁଦ୍ଧରେ ଶୁଣାଇ
ଦିଅ ଶତ୍ରୁ ବଳକୁ ଶରାଗ୍ନିରେ ଦହି ।
ସମ୍ମୁଖ ଯୁଦ୍ଧ କରି କୀର୍ତ୍ତିକି ପାଇଲେ
ଶତ୍ରୁମାନେ ତା ପାଦେ ପଡ଼ନ୍ତିଟି ଭଲେ ।
ଯୁଦ୍ଧ କଲା ଲୋକକୁ ସ୍ୱର୍ଗଦ୍ୱାର ବାଟ
ଫିଟିଥାଏ ତାପାଇଁ ନ ପଡ଼ି କବାଟ ।
କ୍ଷତ୍ରିୟ ଧର୍ମତତ୍ତ୍ୱ କଥା ମୁଁ ଜାଣଇଁ
ଏଣୁ ତୋ କଥା ମୋ ମନକୁ ପାଉ ନାହିଁ ।
କ୍ଷତ୍ରିୟ ଧର୍ମ ବ୍ରାହ୍ମଣକୁ ନମ୍ର ହେବ
ଆନ ଲୋକ ଦେଖିଲେ ଛାତି ଫୁଲାଇବ ।
ସଞ୍ଜୟ ବୋଇଲେ ହେ ମାତ ହୋଇ କରି
କହୁଛ ତ ମୋତେ ବଚନ ବଜ୍ରପରି ।

ବିଦୁଳା ବୋଇଲେ ମୁଁ କୁଳଧର୍ମ ରହି
କହୁଅଛି ଦୟା ହୃଦୟରେ ନ ବହି ।
ଏ ତ ବେଳ କାଳ ହୋଇଅଛି ତୋହର
ଏଥିରେ ବଳ କିମ୍ପା ନ କରୁ କୁମର ।
ଏବେ ତୋ ମନକୁ ପାଉଛି ଯେଉଁ କର୍ମ
ତାହା ଆଚର ତୁହି ସୁମରିଣ ଧର୍ମ ।
ନିତି ନୀତିମନ୍ତ ହୋଇଲେ ଲୋକ ସୁଖୀ
ହେଉଥାନ୍ତି ଅନୀତି ପୁତ୍ରକୁ ଉପେକ୍ଷି ।
ପର ଅଭିମାନେ ଯେ ହୋଇଥିବ ଗ୍ରସ୍ତ
ସେ ତାକୁ ମାରି ମରିବାରଟି ଉଚିତ ।
ସଞ୍ଜୟ ବୋଇଲେ ପୁଅଙ୍କୁ ଦୟା ଛାଡ଼ି
କାହିଁକି ଏ ରୂପେ କହୁଛ ହରଘଡ଼ି ।
ବିଦୁଳା ବୋଇଲେ ତୁ ମାଇଲେ ଶତ୍ରୁଙ୍କୁ
କରିବି ତେତେବେଳେ ତୋତେ ଆଦରକୁ ।
ସଞ୍ଜୟ ବୋଇଲେ ନାହିଁ ତ ଦ୍ରବ୍ୟ ଲୋକ
କିରୂପେ ଶତ୍ରୁ ମୁଖେ ବାନ୍ଧିବି ସାୟକ ।
ଦ୍ରବ୍ୟ ଲୋକ ଯେବେଟି ଭିଆଇ ପାରିବି
ତେବେ ଯାଇ ଶତ୍ରୁକୁ ଆହବେ ମାରିବି
ବିଦୁଳା ବୋଇଲେ ରେ ପୁତ୍ର ସବୁଦିନେ
କ୍ଷତ୍ରିୟ ବସିଥିବ ଯୁଦ୍ଧ ଇଚ୍ଛି ମନେ ।
ଘଟନା କ୍ରମେ ଅର୍ଥ ଅନର୍ଥରୁ ଜାତ
ହୋଇଣ ଅନର୍ଥରେ ହୁଅଇଟି ହତ ।
ଏହି ସକାଶରୁ ପ୍ରାଣକୁ ରଖି କରି
କାଳକୁ ଜାଣି ହେବ ପରାକ୍ରମକାରୀ ।
ମଙ୍ଗଳ ଦ୍ରବ୍ୟମାନ ଦେଖି ଅନୁକୂଳ
କରି ଏବେ ଶତ୍ରୁକୁ କର ଯା ନିର୍ମୂଳ ।
କ୍ଷତ୍ରିୟ ହୋଇଣ ଡରିଲେ ବିପତ୍ତିକି
ଆଣି ନ ପାରଇ କେବେ ସେ ସମ୍ପତ୍ତିକି ।
ତୋ ତେଜ ବଢ଼ାଇ କହିଲେ ଏତେ କଥା
କାହିଁକି ଡରୁଛୁ ହୋଇ ତୁ ମହାରଥା ।
ତୋ ପାଇଁ ଯେତେ ଦ୍ରବ୍ୟ ଭିଆଇ ମୁଁ ଅଛି
ଲୋଡୁଛୁ ଯେବେ ତାହା ଅଣାଇଁ ଦେଉଛି ।
ସୁହୃଦମାନେ ତୋର ହୋଇଣ ନିରକ୍ଷ
ଜଗି ରହିଛନ୍ତି ନ ଛାଡ଼ି ତୋର ପାଖ ।
ସଞ୍ଜୟ ବୋଇଲେ କହିଲ ଏବେ ଯାହା
ଏହା ଶୁଣି କେତେ ମୋ ବଳିଲା ଉତ୍ସାହା ।
ଯେବେ ଧନ ସୁହୃଦ ଆଣିଦେବ ମୋତେ
ତେବେ ଶତ୍ରୁକୁ ମୁହିଁ ଜିଣିମି କିଞ୍ଚିତେ ।
ଏହା ଶୁଣିଣ ବୃଦ୍ଧପ୍ରବଳା ବିଦୁଳା
ଆନନ୍ଦେ ନେତ୍ର ଦୁଇ କଲେ ଅଶ୍ରୁମାଳା ।
ଦ୍ରବ୍ୟ ଦେଇ ସୁହୃଦମାନେ ଅଣାଇଲେ
ସଞ୍ଜୟ ତୁମେ ବୁଝି ଯାଅ ହେ ବୋଇଲେ ।
ସଞ୍ଜୟ ବଳ ପାଇ କରେ ଧନୁ ଟାଣି
ସିନ୍ଧୁ ଦେଶ ରାଜାକୁ ପକାଇଲେ ଜିଣି ।
ଆହେ ଜନ୍ମେଜୟ ପୁତ୍ରଙ୍କୁ କହିବାକୁ
ଏରୂପରେ କୁନ୍ତୀ କହିଣ ଶ୍ରୀକୃଷ୍ଣଙ୍କୁ ।
କହିଲେ ଏହା ଯେବେ ନୃପେ ମନ୍ତ୍ରୀଜନ ।
ଶୁଣାଏ ବଳ ତାର ହୁଏ ବରଧନ ।
ଏ ଇତିହାସ ନାମ ଅଟଇଟି ଜୟ
ଶୁଣିଲେ ରାଜା ଏହା ଲଭଇ ଉଦୟ ।
ଏ ଚରିତଟି ଯେବେ ଶୁଣଇ ଗର୍ଭିଣୀ
ବୀର ପୁତ୍ର ଜାତ କରଇ ସେହିକ୍ଷଣି ।
ଏହିଠାରେ ବିଦୁଳା ଉପାଖ୍ୟାନ ଶେଷ
ହୋଇଲା କହେ କୃଷ୍ଣସିଂହ ନରଈଶ ।



## ପାଣ୍ଡବଙ୍କ ପ୍ରତି କୁନ୍ତୀଙ୍କ ବାର୍ତ୍ତା ଓ ଦୁର୍ଯ୍ୟୋଧନଙ୍କୁ ଭୀଷ୍ମଙ୍କ ଉପଦେଶ

ଏଥିଅନ୍ତେ କୃଷ୍ଣଙ୍କ ମୁଖକୁ ଅନାଇଁ
ପୁଣି କୁନ୍ତୀ କହିଲେ ମନ ଦୁଃଖ ବହି ।
ଅର୍ଜୁନକୁ କହିବ ତୁମ୍ଭ ଜନ୍ମକାଳେ
ଆକାଶେ ଥାଇ ଦେହେ ଋଷିଙ୍କର ମେଳେ ।
କହିଲେ ଏ ପୁଅଟି ହୋଇଣ ବିଜୟୀ
କୁରୁଗ୍ରାମ ଭୁଞ୍ଜି ବସିବ ସୁଖ ପାଇ ।
ଏହାଙ୍କ ବଡ଼ ଭାଇ ଅଛନ୍ତି ତ ଭୀମ
ସେ ମଧ୍ୟ ଜିଣିବେ ବହୁତ ପୁରଗ୍ରାମ ।
ଭାଇଙ୍କ ସଙ୍ଗ ଘେନି ନିତି ଅଶ୍ୱମେଧ
କରି ପୁତ୍ର ତୋଷ କରିବେ ଦ୍ୱିଜବୃନ୍ଦ ।
ଅର୍ଜୁନର ବଳ ତ ଜାଣୁଅଛ ତୁମ୍ଭେ
ଆଉ କିସଗୁଡ଼ାଏ କହିବୁଁଟି ଆମ୍ଭେ ।
ଆକାଶବାଣୀ ଯେଉଁରୂପେ ମୁଁ ଶୁଣିଛି
ସେହିରୂପେ ହେବ ହେ ବସୁଦେବ ବଛି ।

ଧର୍ମ ଯେବେଟି ଅଛି ଦେବବାଣୀ ସତ
ହୋଇବ ହେ ଜାଣ ରୁକ୍ମିଣୀ ପ୍ରାଣକାନ୍ତ ।
ଶୁଣିଛି ମୁହିଁ ଭୀମ ନିତି ଯୁଦ୍ଧ ପାଇଁ
ଭାଇଙ୍କି କହୁଅଛି ଅତି ତୋରା ହୋଇ ।
ଅର୍ଜ୍ଜୁନ ତାହା ଶୁଣି ବୋଲୁଥାନ୍ତି ହେଉ
ଯୁଧିଷ୍ଠିର ବୋଲନ୍ତି ଏତେକେ କଥା ରହୁ ।
ନକୁଳ ସହଦେବ ପିଲା ତ ବୋଲିବା
ତାଙ୍କୁ ଭଲ ମନ୍ଦେ ଗଣନା ନ କରିବା ।
ପୁଛିବଟି କୃଷ୍ଣ ବସାଇ ଅର୍ଜ୍ଜୁନଙ୍କୁ
କ୍ଷତ୍ରିୟ ଜାତ କରେ କିପାଁ କୁମରକୁ
କ୍ଷତ୍ରିୟ କୁଳେ ଜନ୍ମିଣ ଯେ ମୃଦୁ ହୁଏ
ଅକ୍ଷତ୍ରିୟ ତାହାଙ୍କୁ ବୋଲନ୍ତି ସଭିଏଁ ।
କ୍ଷତ୍ରିୟ କର୍ମକାଳ ହୋଇଛି ଉପଗତ
ଏତେବେଳେ କାହିଁକି ହୁଅନ୍ତି ନିସତ ।
ଦ୍ରୌପଦୀଙ୍କି କହିବ କୁଳ ଅନୁରୂପ
କଥା କରି ପ୍ରଶଂସା ପାଇବ ଅନେକ ।
ମାଦ୍ରୀ ସୁତ ଦୁହିଙ୍କି କହିବ ପୃଥ୍ୱୀ ଥିଲେ
ସବୁ ଗେଲବସର ପ୍ରକାଶଇ ଭଲେ ।
ଏ ବାହାରେ ପାଞ୍ଚଟି ଭାଇଙ୍କି ବସାଇ
କହିବି ସଭା ମଧ୍ୟେ ଦ୍ରୌପଦୀଙ୍କି ନେଇ ।
ଦୁର୍ଯ୍ୟୋଧନ ବାପୁଡ଼ା ଉଲଙ୍ଗ ଯେ କଲା
କେହିଁ ସେ କଥା କହ ପାସୋର ହୋଇଲା ।
ହେ କୃଷ୍ଣ ଦ୍ରୌପଦୀ ଦେବୀଙ୍କ ସଭା କ୍ଲେଶ
ଅନଳ ହୋଇଣ ପୋଡୁଛି ମୋ ମାନସ
ପାଞ୍ଚୋଟି ପୁରୁଷରେ ସ୍ତିରୀଟିଏ କରି
କହ ତ ସହିଲେ ତା କେହିଁ ଶସ୍ତ୍ର ଧରି ।
ଦୁଃଶାସନ ବୋଲିବା କଟୁ ବଚନକୁ
ସୁମରାଇ ଦେବଟି ଥରେ ପାଣ୍ଡବଙ୍କୁ ।
ଏଠାରୁ ମୋର ପୁଅଠାକୁ ହେ ଗୋବିନ୍ଦ
ଯାଇ କୁରୁ ଜିଣି ବଢ଼ାଅ ମୋ ଆନନ୍ଦ ।
ତୁମ୍ଭେ ଥିବାଠାରେ ଯା ଦଇବ ମୁରୁଖ
ଦେଉଛି ମୋତେ ଦୁଃଖ ଦେଖିଣ ନିରକ୍ଷ ।
ଏଥିରୁ ଚମତ୍କାର କଥା ହୋଇ ନାହିଁ
ତୁମ୍ଭେ ତ ତ୍ରିଭୁବନ ପ୍ରଭୁ ଯଦୁସାଇଁ ।
ଆହେ ଜନ୍ମେଜୟ ଏରୂପେ କୁନ୍ତୀ କହି
ନୟନୁ ଅଶ୍ରୁଧାରା ଦେଲେ ସେ ବୁହାଇ ।

ଶ୍ରୀକୃଷ୍ଣ ବୋଇଲେ ହେ ନ କାନ୍ଦ ପିଉସି
ନିକଟେ ବିହି ଦେବ ତୁମ୍ଭ ଦୁଃଖ ନାଶି ।
ଏହା କହି କୁନ୍ତୀଙ୍କି କରି ପ୍ରଦକ୍ଷିଣ
ଭୀଷ୍ମ ଆଦି କୁରୁଙ୍କୁ ଚାହିଁ ନାରାୟଣ ।
ବୋଇଲେ ଯେଝା ଘରେ ବସ ସୁଖେ ଯାଇ
ମୁଁ ଯାଉଛି ଉପପ୍ଲବକୁ ତୋରା ହୋଇ ।
ଏହା କହି ସାତ୍ୟକି କର୍ଣ୍ଣ ଘେନି ତୁଲେ
ଗରୁଡ଼ଧ୍ୱଜରଥେ ଯାଇଣ ବସିଲେ ।
କୁରୁମାନେ କୃଷ୍ଣ ଯିବାର ନେତ୍ରେ ଦେଖି
ମଲା ଦୁର୍ଯ୍ୟୋଧନ ବୋଇଲେ ହୋଇ ସୁଖୀ
କର୍ଣ୍ଣ ତୁଲେ କଥା ବାଟରେ କୃଷ୍ଣ ହୋଇ
ନ ପାରିଲେ ତାହାଙ୍କ ମାନସକୁ ନେଇ ।
କର୍ଣ୍ଣକୁ ବୋଇଲେ ହେ ହସ୍ତିନାକୁ ଯାଅ
ଛାଡ଼ିଲ ପାଣ୍ଡବଙ୍କୁ ହୋଇ କୁନ୍ତୀପୁଅ ।
ଦାରୁକଙ୍କ ବାହିବା ବେଗରେ ଘୋଡ଼ାଏ
ଗମିଲେ ଆକାଶରେ ମିଶିଗଲା ପ୍ରାୟେ ।
ଉପପ୍ଲବ ଗଡ଼ରେ ହେଲେ ପରବେଶ
ସାତ୍ୟକିଙ୍କି ଘେନିଣ ଜଗତ-ନିବାସ ।
ଭୀଷ୍ମ ଦ୍ରୋଣ କୁନ୍ତୀଙ୍କ କହିବା ବଚନ
ଶୁଣୁ ତ ଥିଲେ ଡେରି ଦେଇ କରି କାନ ।
କୃଷ୍ଣ ଯିବା ଉତ୍ତାରେ ଦୁର୍ଯ୍ୟୋଧନ ପାଶେ
ଯାଇକରି ତାହା କହିଲେ ସେ ବିରସେ ।
ଏ ବାହାରେ କହିଲେ ନ ପାଇଲେ ରାଜ୍ୟ
କୁରୁମାରି ପାଣ୍ଡବେ ଭରିବେ ଯମରାଜ୍ୟ ।
ପାଣ୍ଡବେ ତୁମ୍ଭ ଘେନି ହୋଇ ପରାଭୂତ
ରିହଲେ ବୋଲି ତାଙ୍କୁ ନ ମଣ ନିସତ ।
କୃଷ୍ଣଙ୍କ ସହାୟେ ଗାଣ୍ଡୀବ-ଧନୁଧାରୀ
କେଉଁ କଥା ରାଜନ ନ ପାରଇ କରି ।
ବିରାଟଙ୍କ ନଗରେ ଅର୍ଜ୍ଜୁନ ବିକ୍ରମ
ଜାଣି ତ ଅଛ ଆହେ ନୃପତି ଉତ୍ତମ ।
ବାନରକେତୁ ରୌଦ୍ର ଅସ୍ତ୍ର ଘାତ ପାଇ
ନିବାତକବଚେଟି ହୋଇଗଲେ ଦହି ।
କର୍ଣ୍ଣ ଆଦି ତୁମ୍ଭଙ୍କୁ ଘୋଷ ଯାତ୍ରା କାଳେ
ରଖି ନ ପାରିଲେଟି ରଖିଲେ ସେ ହେଳେ ।
ପାଣ୍ଡବ ସର୍ପେ ଶୋଇଛନ୍ତି ପାଟି ପାଡ଼ି
ମୁଖେ ହାତ ନ ଦିଅ ଯିବ ବିଷେ ପୋଡି ।

ଯୁଧିଷ୍ଠିର ରାଜାଙ୍କୁ କରିଣ ବନ୍ଦନା
ଘରେ ଆଣି ରଖ ରାଜନ ମହାମନା ।
ଯୁଧିଷ୍ଠିର ତୁମ୍ଭଙ୍କୁ କରିବେ ଯେତେ ସ୍ନେହ ।
ତେତିକି ଫୁଲୁଥିବ ଆମ୍ଭରଟି ଦେହ ।
ତୁମ୍ଭ ତାଙ୍କ ସଖା ବାନ୍ଧିବେ ଏହା ଦେଖି
ପିଛାଡ଼ି ନ ପାରିବେ ସୁଖେ ଦୁଇ ଆଖି ।
କ୍ଷତ୍ରିୟ ନାଶ ପାଇଁ ବହୁ ଉତପାତ
ନିତି ଜାତ ହେଉଛି ଗାନ୍ଧାରୀଙ୍କ ସୁତ ।
ବିଶେଷ କୁରୁଙ୍କର ପ୍ରତି ଦେଶଙ୍କରେ
ଉତ୍ପାତ ଜାତ ହୋଏ ଅତି ଭୟଙ୍କରେ ।
ଉଲ୍‌କାମାନେ ଶତସଂଖ୍ୟାରେ ହୋଇ ଗୋଟି
ପଡ଼ିବାରେ ସେନାଏ ବୁଜନ୍ତି ଆଖିଟି ।
ହାତୀ ଘୋଡ଼ା ଓଟ ତେଜିଣ ମଳ ମୂତ୍ର
ଯୁଦ୍ଧ ବିନା କମ୍ପାଉଛନ୍ତି ତାଙ୍କ ଗାତ୍ର ।
ଯେତେଛନ୍ତି ତୁମ୍ଭ ସେନାରେ ରଥୀଶ୍ରେଣୀ
ପୂର୍ବପରି ମୁଖରେ ନାହିଁ ଆଉ ପାଣି ।
ଗୃଧ୍ରମାନେ ମାଉଁସଲୋଭେ ହୋଇ ଭୋଖୀ
ସେନାଙ୍କ ଉପରେ ଉଡ଼ନ୍ତି ହୋଇ ଯୋଖି ।
ବିଲୁଆଏ ବଡ଼ କରିଣ ମେଲି ପାଟି
ବୋବାଉଛନ୍ତି ଆଖି ଦେଇଣ ତରାଟି ।
ଆମ୍ଭର ବାଣୀ ଭେଳା ନ ଧଇଲେ ବାବୁ
ଉତପାତ-ସିନ୍ଧୁଜଳରେ ତୁ ବୁଡ଼ିବୁ ।
ଯୁଦ୍ଧ ପ୍ରୀତି ଦୁହେଁଟି ତୋହର ଆୟତ୍ତ
ବଳକୁ ଋହିଁ କର ବିଋର ତୁରିତ ।
ଯେବେ ସୁହୃଦ ବଚନ ଦେବ ଛାଡ଼ି
ଅର୍ଜ୍ଜୁନ ଶର ଅଗ୍ନି ମୁଖେ ଯିବୁ ପୋଡ଼ି ।
ଭୀମ ଗରଜନ ଯେ ଗାଣ୍ଡୀବ ନିସ୍ୱନ
ପୁଣି ସ୍ତବ୍ଧଟି ହୋଇବ ବେନି କାନ ।
ଭୀଷ୍ମଙ୍କ ମୁଖୁ ଏହା ଦୁର୍ଯ୍ୟୋଧନ ପାପୀ
ଶୁଣିକରି ମନରେ ହୋଇ ବଡ଼ କୋପୀ ।
ଭ୍ରୁରୁ ଦୁଇ ସଙ୍କୋଚି ତେରିଛି ଋହିଁଲା
ନ କହି କଥା ମଥା ତଳକୁ ପୋତିଲା ।
ଭୀଷ୍ମ ତା ଜାଣିଣ ବୋଇଲେ ଦୁର୍ଯ୍ୟୋଧନ
ହେଲୁନି-ତ ବାଇ କହବା କି ବଚନ ।
ଗାଣ୍ଡୀବକାଣ୍ଡ ତୋର ଦେହଯାକ ଘୋଟି
ନ ଥିବାରୁ ବାହରୁଅଛିଟି କ୍ରୋଧଟି ।
ଦ୍ରୋଣ ବୋଇଲେ ଆହେ ଶୁଣ ଦୁର୍ଯ୍ୟୋଧନ
ଅରଜୁନ ଧର୍ମେ ଅଟଇ ମୋ ନନ୍ଦନ ।
ତୁମ୍ଭର ବୋଲେ ତାଙ୍କ ତୁଲେ ଯା ଯୁଝିବି
ଆଜହୁଁ ମରିଥିଲେ ଭଲ ବୋଲାଇବି
ଅର୍ଜୁନ ତ ମହୀମଧେ ବୀରଲୋକ
ଯାକର ଉପରେଟି ବୋଲାଏ ତିଳକ ।
ତୁମ୍ଭର ତ ଅଧର୍ମେ ବୁଡ଼ିଲାଣି ବୁଦ୍ଧି
ଏଣୁ ଆମ୍ଭର କଥା ହେଉନାହିଁ ବିଧି ।
କାଳରେ ଯେଉଁ ଲୋକ ହୁଅଇଟି ବଶ
ଭଲ ମଣି ଲୋଡ଼ି ଆଣଇଁ ସେହୁ ନାଶ ।
ବିଦୁର ଭୀଷ୍ମ ଆମ୍ଭେ କୃପ ଧୃତରାଷ୍ଟ୍ର
କଥାକୁଟି ତ ତୁମ୍ଭେ ମଣିଲଣି ରୁଷ୍ଟ ।
ମୁଁ କହିଲେ ତୁମ୍ଭେ ହେବ କି ଆଉ ଶାନ୍ତି
ଜାଣିଲିନି ବିଧି ଖଞ୍ଜିଛି ଏ ବିପତ୍ତି ।
ପାଣ୍ଡବ ପାଞ୍ଚଜଣ ମକରାଳୟ ସରି
ବାହୁ ବଳରେ କି ପାରିବ ତାଙ୍କୁ ମାରି ।
ପ୍ରିୟା ପତିବ୍ରତା ସେ ଦ୍ରୁପଦ ଦୁହିତା
ପୁଣି ସାହା ଅଛନ୍ତି ଯଦୁଙ୍କ କରତା ।
ଅର୍ଜୁନ ଭୀମ ପରା ଭାଇ ସଙ୍ଗେ ଛନ୍ତି
ନୃପତିମଣ୍ଡଳଙ୍କୁ ଆଣିଣ ଅଛନ୍ତି ।
ଏରୂପେ ଯେଉଁ ଯୁଧିଷ୍ଠିର ନରବର
ତାଙ୍କୁ କେ ଯାଇକରି କହିବ ସମର ।
ଆମ୍ଭେ ଦୁହେଁ ଧର୍ମ ଦାନ ଯେ ବ୍ରତ କରି
ଦେଉଛୁଁ ତ ଦେହରୁ ପାତକ ନିବାରି ।
ପୁଣି ତ ଆସି କରି ହୋଇଲୁନି ବୃଦ୍ଧ
ଯୁଦ୍ଧେ ମଲେ ସ୍ୱର୍ଗରେ ହୋଇବୁଁ ବିବୁଧ ।
ତୁମ୍ଭର ବୟସ ତ ହୋଇଅଛି ଊଣା
ଯୁଦ୍ଧେ ମରିବାକୁ ନ କର ବୁଦ୍ଧି ବଣା ।
ବୁଢ଼ା ହୋଇ ଯୋଡ଼େ ଥିବାରୁ ତୁମ୍ଭ ପାଶ
କହିଲୁଁ ଘେନ ବା ଘେନ କଳା ଦୋଷ ।
ଭଗବତୀ ଯାନ ଏଠାରେ ହେଲା ଶେଷ ।
କହଇ କୃଷ୍ଣସିଂହ ଧରାକୋଟଈଶ ।



## ଶ୍ରୀକୃଷ୍ଣ ଓ କର୍ଣ୍ଣଙ୍କ କଥୋପକଥନ

ଏଥୁଅନ୍ତରେ ଧୃତରାଷ୍ଟ୍ର ନରପତି
ସଞ୍ଜୟଙ୍କୁ ଋହିଁ ପୁଚ୍ଛିଲେ ବହି ପ୍ରୀତି ।

କର୍ଣ୍ଣଙ୍କୁ ତ କୃଷ୍ଣ ରଥରେ ଘେନିଗଲେ
କି କହିଲେ ତାହା କହ ତ ମୋତେ ଭଲେ
ସଞ୍ଜୟ ବୋଇଲେ ଶୁଣିଛି ଯାହା ରାୟେ
କହିବି ଶୁଣ ତାହା ଏକ ମନ ଲୟେ ।
କୃଷ୍ଣ ବୋଇଲେ ଆହେ କର୍ଣ୍ଣ ମହାରଥା
ବ୍ରାହ୍ମଣଙ୍କଠାରୁ ଶୁଣିଛ ଧର୍ମକଥା ।
କହୁଥାଇଁ ଏବେ ତୁମ୍ଭଙ୍କୁ ତାହା ବସି
ଶୁଣ ହେ ମୋହଠାରୁ ହୋଇଣ ଲାଳସୀ ।
ଯେଉଁ ନାରୀ କନ୍ୟା କାଳରେ ପୁତ୍ର ପାଇ
ପୁଣି ଯାଇଣ ପତି ଆଶ୍ରାରେ ରହଇ ।
କନ୍ୟାକାଳ ପୁତ୍ରଟି ହୁଏ ସେ ପତିର
ଏଥିରେ ସନ୍ଦେହ ନ କର କର୍ଣ୍ଣ ବୀର ।
ତୁମ୍ଭେ ତ କୁନ୍ତୀଙ୍କର କନ୍ୟାକାଳ ପୁତ୍ର
ଏଣୁ ପାଣ୍ଡୁ ରାଜା ଅଟନ୍ତି ତୁମ୍ଭ ତାତ ।
ଏବେ ଆସ ପାଣ୍ଡବଙ୍କଠାକୁ ତୁମ୍ଭେ
କରାଇବୁଁ ତାଙ୍କ ଉପରେ ରାଜା ଆମ୍ଭେ ।
ଯଦୁଏ ପାଣ୍ଡବେ ତ ମାତୃ ପିତୃ ପକ୍ଷ
ତୁମେ କେହିଁ ହୋଇବ ଦୁର୍ଯ୍ୟୋଧନ ପକ୍ଷ ?
ମୋ ତୁଲେ ଆଜି ଆସି କୁଳ କର ଜଣା
ପାଣ୍ଡୁ ସୁତମାନେ କଳିବେ ନୋହି ବଣା
ତୁମ୍ଭର ପାଇଁ ଅଭିଷେକ ସାମଗ୍ରୀକି
ଭିଆଇବେ ପାଣ୍ଡବେ ବହିଣ ପ୍ରୀତିକି ।
ଦ୍ରୌପଦୀ ତୁମ୍ଭଠାରେ କରି ଅନୁରାଗ
ଷଷ୍ଠ ଦିନ ଯାଚି କରି ଦେବେଟି ଭାଗ ।
ଚାରିଦିଗୁଁ ବେଦ ଜାଣିବା ଦ୍ୱିଜଶ୍ରେଣୀ
ଆସି ତୁମ୍ଭର ମୁଣ୍ଡେ ନିଉଡ଼ିବେ ପାଣି ।
ଧୌମ୍ୟ ଯେ ପୁରୋହିତ ହୋଇଣ ତୁମ୍ଭର
ମଙ୍ଗଳ ବାଞ୍ଛା କରୁଥିବେ ନିରନ୍ତର ।
ଯୁଧିଷ୍ଠିର ଯୁବରାଜା ତ ବୋଲାଇବେ
ତୁମ୍ଭେ ଯାହା ବୋଲିବ ସେ ତାହା କରିବେ
ଅଭିଷେକ କାଳରେ ପାଣ୍ଡବେ ତୁମ୍ଭଙ୍କୁ
ଟେକ ଛତି ପକାଇବେଟି ଚାମରଙ୍କୁ ।
ଅରଜୁନ ରଥୀପଣକୁ ଛାଡ଼ି ଦେଇ
ତୁମ୍ଭେ ଯହିଁ ବୋଲିବ ରଥ ନେବେ ବାହି ।
ପୁତ୍ର ବନ୍ଧୁ ତୁଲେ ପାଣ୍ଡବେ ତୁମ୍ଭ ପାଦ
ନିତି ବନ୍ଦୁଥିବେ ହେ ହୋଇଣ ଆନନ୍ଦ ।
ମୁହିଁ ମଧ୍ୟ ତୁମ୍ଭ କଥାକୁ ଅନୁଗତ
ହୋଇଣ କାର୍ଯ୍ୟ କରୁଥିବିଟି ତୁରିତ ।
ଏରୂପେ ତୁମ୍ଭେ ହୋଇ ପାଣ୍ଡବଙ୍କେ ରାଜା
ମହାସୁଖେ ବସି ପାଳନା କର ପ୍ରଜା ।
ମିତ୍ରମାନଙ୍କର ଯେ ବଢ଼ାଇ ଆନନ୍ଦ
ତେଜରେ ସୂର୍ଯ୍ୟ ନିନ୍ଦି ମୁଖ କର ଚନ୍ଦ ।
କର୍ଣ୍ଣ ବୋଇଲେ ଆହେ କୃଷ୍ଣ କହିବାରେ
ଜାଣିଲି ପାଣ୍ଡୁଙ୍କ ପୁଅ ମୁଁ ଧରମରେ ।
କୁନ୍ତୀ ସୂର୍ଯ୍ୟଙ୍କ ଆଡ଼େ ମୋତେ ଜାତ କଲେ
ମଞ୍ଜୁଷେ ଭରି ଜଳେ ଭସାଇଣ ଦେଲେ ।
ଅଧିରଥ ଦୈବେ ନଦୀକି ଥିଲେ ଯାଇ
ମୋତେ ଦେଖି ଘରେ ଆଣିଲେ ତୋଷ ବହି
ତାଙ୍କର ଭାର୍ଯ୍ୟା ରାଧା ପାଳିବାରୁ ମୋତେ
ରାଧେୟ ବୋଲି ନାମ ମୋହର ଜଗତେ ।
ଯେବେ ଯୁଧିଷ୍ଠିରଙ୍କ ପାଶେ ଆଜି ଯିବ
ଅଧିରଥଙ୍କୁ ତ ପିଣ୍ଡ ମୁହିଁ ନ ଦେବି ।
ଧର୍ମ ଜାଣୁ ଜାଣୁ ମୋହର ପରା ଲୋକ
କିରୂପେ ଯାଇ ହେବ ପାଣ୍ଡବନାୟକ ।
ତିନିଲୋକ ଭୂତି ହୋଇବ ମୋର ଯେବେ
ଅଧିରଥ ସ୍ନେହ ମୁଁ ନ ଛାଡ଼ିବି ତେବେ ।
କୁନ୍ତୀ ଜଳେ ମୋତେ ଭସାଇ ଦେଇଥିଲେ
ଧର୍ମବଳେ ମାଛ କଇଁଚ ନ ଖାଇଲେ ।
ମାତ ହୋଇ ମହତ୍ତ୍ୱକୁ ନ ଚାହିଁ କରି
ଏତେ ପାପ କଥା କଲେ ସେ ନ ବିଚାରି ।
ଏତେବେଳରେ ମୁହିଁ ମାତ ବୋଲି କରି
ସୁମରି ଗଲେ ନିନ୍ଦା ହୋଇବ ମୋହରି ।
ଧୃତରାଷ୍ଟ୍ର ପୁଅଙ୍କ ପାଇଣ ଆଶ୍ରୟ
କରାଇଲି ମୋହର କରମ ଉଦୟ ।
ତାଙ୍କର ବଳେ ଅଙ୍ଗଦେଶ ମୁଁ ପାଇଲି
ଅଲଭ୍ୟେ ରାଜଶିରୀ ଗୋଟିଏ ଭୁଞ୍ଜିଲି ।
ଯେତେ ମୋର ଅଛନ୍ତି ପୁତ୍ର ଭାର୍ଯ୍ୟାଜନ
ମୋ ତୁଲେ ଜାଣ ଦୁର୍ଯ୍ୟୋଧନର ଅଧୀନ ।
ଦୁର୍ଯ୍ୟୋଧନ ମୋ ବଳେ ପାଞ୍ଚି କୂଟବୁଦ୍ଧି
ପାଣ୍ଡବଙ୍କୁ ଯୁଝିବେ ବୋଲନ୍ତି ଅବଧି ।
କାମ କ୍ରୋଧ ମୋହ ଭୟରେ ମୋ ବଚନ
କଦାଚିତରେ କୃଷ୍ଣ ନୁହଇଟି ଆନ ।

ଅର୍ଜ୍ଜୁନ ସଙ୍ଗେ ହଇରଥ ଯୁଦ୍ଧ ବିନା
କରିବେ ନାହିଁ ଲୋକେ ମୋତେଟି ଗଣନା ।
ଜାଣୁଛି ପାଣ୍ଡବେ ତୁମ୍ଭର ବୋଲେ ସବୁ
ଦେଇ ମୋତେ ମାନିବେ କରି ପାଣ୍ଡୁବାବୁ ।
ଏମନ୍ତ ହେଲେ ମୋର ତ ଏ ନୁହଇ
ଏ କଥା କାହାକୁ ନ କହ ଯଦୁସାଇଁ ।
ଯୁଧିଷ୍ଠିର ରାଜ ଧାର୍ମିକ ମହାମତି
ଜାଣିବେ ଯେବେ ମୋତେ କୁନ୍ତୀଙ୍କ ସନ୍ତତି ।
ତେବେ ରାଜ୍ୟ ଇଚ୍ଛାଟି ନ କରିଣ ସେହି
ରହିବେଟି ମନ ମଧ୍ୟରେ ପୁଣି ଯାଇ ।
ମୋତେ ପାଣ୍ଡୁ ସୁତେ କରିବେ ଯେବେ ପୂଜା
ମୁହିଁ ତ ନ ଛାଡ଼ିବ ଦୁର୍ଯ୍ୟୋଧନ ରାଜା ।
ଏହି ଘେନି ଯୁଧିଷ୍ଠିରଙ୍କ ବନବାସ
ଆଉ ଥରେ ଅବଶ୍ୟ ହୋଇବ ପ୍ରକାଶ ।
ଏତେ ଅପକୀର୍ତ୍ତି ମୋର କି ଲୋଡା ଅଛି
ପ୍ରଥମୁଁ ନ ଯିବି ମୁଁ ତୁମ୍ଭଙ୍କୁ କହୁଛି ।
ଯହିଁରେ ଯୋଦ୍ଧା ହୋଇ ଅଛନ୍ତି ଅର୍ଜ୍ଜୁନ
ପାଳନ କରୁଅଛ ତୁମ୍ଭେ ଜନାର୍ଦ୍ଦନ ।
ଭୀମ ଆଦି ମହାରଥୀଏ ସାହା ହୋଇ
ଛନ୍ତି ଯହିଁ ଜୟ ନୋହିବ କାହିଁପାଇଁ ।
ଦୁର୍ଯ୍ୟୋଧନ ରାଜାକୁ ଅଛି କୃଷ୍ଣ ଯୋଗ
ସ୍ୱର୍ଗେ ଯାଇ ବସିବେ କରି ଶସ୍ତ୍ରଯାଗ ।
ସେ ଯାଗେ ଆପଣ ଆର୍ଯ୍ୟ ବୋଲାଇବ
ଧନଞ୍ଜୟ ପୁଣି ବହିବେ ହୋତୃଭାବ ।
ନୃପ-ବଳ-ଘୃତ ଗାଣ୍ଡୀବ-ସୁଚ ପାଇ
ଜଳାଇବ ସନ୍ତାପ ଅଗ୍ନିକି ନିଠାଇ ।
ଐନ୍ଦ୍ର ପାଶୁପତ ବ୍ରାହ୍ମ ଯେ ସ୍ଥୁଣାକର୍ଣ୍ଣ
ମନ୍ତ୍ରରେ ହୋଇବ ସେ ଯାଗ ମନ୍ତ୍ରପୂର୍ଣ୍ଣ ।
ଯୁଧିଷ୍ଠିର ବ୍ରହ୍ମା ଭୀମ ଯେ ଉଦାଗତା
ହେବେ ତ ଏ ଦୁହେଁ ଅଟନ୍ତି ଅସ୍ତ୍ରବେତ୍ତା ।
ନକୁଳ ସହଦେବ କ୍ଷତ୍ରିୟ-ପଶୁକୁଳ
ମାରିବାରେ ଦେଖାଇବେ ସେ ଦେହବଳ ।
ରଥମାନେ ସେ ଯାଗ ଯୂପ ପରା ହୋଇ
ପାଇବେ ମହାଶୋଭା ଜାଣ ଯଦୁସାଇଁ ।
ତୋମର ଶର ଧନୁ ହୋଇ ସୋମପାତ୍ର
କରାଇବେ ଦୁର୍ଯ୍ୟୋଧନଙ୍କୁ ସେ ପବିତ୍ର ।
ଖଣ୍ଡାମାନେ କପାଳ, ମୁଣ୍ଡ ପୁରୋଡ଼ାଶ
ଦ୍ରୋଣ କୃପଶିଷ୍ୟେ ହୋଇବେ ଯେ ସଦସ୍ୟ ।
ପ୍ରାସ୍ଥନିକ କର୍ମଟି ସାତ୍ୟକି କରିବେ
ଦୁର୍ଯ୍ୟୋଧନ ରାଜା ଦୀକ୍ଷିତ ବୋଲାଇବେ ।
ସେନା ତାହାଙ୍କର ହୋଇବେଟି ପତନୀ
ସେ ଯାଗର ଫଳ ସେ ଏକା ଯିବେ ଘେନି
ସେ ଯାଗ ଦକ୍ଷିଣା ହୋଇବେ ଧୃଷ୍ଟଦ୍ୟୁମ୍ନ
ଅର୍ଜ୍ଜୁନ ହାତେ ମାରି ମୁହିଁ ହେବି ଜାଣ ।
ଦୁଃଶାସନ ରକ୍ତ ପଇବାବେଳେ ଭୀମ
ତାହାକୁଟି ବୋଲିବେ ଲୋକେ ସୋମପାନ ।
ଭୀଷ୍ମ ଦ୍ରୋଣ ମଲା ଉତ୍ତାରୁ ସେହି ଯାଗ
ସରିଲା ପରି ହେବ ଜାଣ ମହାଭାଗ ।
ଦୁର୍ଯ୍ୟୋଧନର ପ୍ରାଣ ଭୀମ ନେବା ବେଳେ
ସେ ଯାଗ ସମାପତି ହୋଇବଟି ବଳେ ।
ବୋହୂଙ୍କୁ ଘେନି ଧୃତରାଷ୍ଟ୍ର ତ କାନ୍ଦିବେ
ତହିଁରେ ଅବଭୃଥସ୍ନାନ କରାଇବେ ।
ବିଦ୍ୟାବୃଦ୍ଧ ଯେ ବୟୋବୃଦ୍ଧରେ କ୍ଷତ୍ରିୟ
ଯେତେ ଛନ୍ତି ଯୁଦ୍ଧରେ ପାଇଣ ଅଜୟ ।
ସ୍ୱରଗ ଲୋକେ ଇନ୍ଦ୍ର ସମୀପରେ ବସି
ଦେଉଥିବେ କରରେ ଦୁଇନିଶ ଘଷି ।
ମନେ ଯେଉଁ କଥା ଭାବିବା ହେଉଅଛି
ତାହା କର କହିବାକୁ କି କଥା ଅଛି ।
ଯେଉଁ ଯୁଦ୍ଧଟି ଏବେ ହୋଇବ ଗୋବିନ୍ଦ
କହୁଥିବେଟି ଲୋକେ ଥିବାଯାଏ ଚନ୍ଦ୍ର ।
ତୁମ୍ଭେ ଯାଇଁ ପାଣ୍ଡବମାନଙ୍କୁ ଅଣାଇଁ
କୁରୁ ତୁଳରେ ଦିଅ ଆମ୍ଭଙ୍କୁ ବଢ଼ାଇ ।
ଜୀଇଥିଲେ ଆଉ ନାହିଁ ତ କିଛି କାର୍ଯ୍ୟ
ମଲେ ହେଲେ ପୂଜା କରିବେ ଦେବରାଜ ।
କର୍ଣ୍ଣଙ୍କର ବଚନ କର୍ଣ୍ଣେ କୃଷ୍ଣ ଶୁଣି
ହସି କରି ପୁଣି କହିଲେ ତାଙ୍କୁ ବାଣୀ ।
ମୋ ଦେଲାଠାରେ ରାଜ୍ୟ ନ ନେଲେ ଯା ତୁମ୍ଭେ
କୁରୁଏ ନାଶ ଯିବେ ଜାଣୁଅଛୁଁ ଆମ୍ଭେ ।
ବିଶ୍ୱକର୍ମା ନିମିତ୍ତ ପାର୍ଥ ଜୟଧ୍ୱଜ
ଦିଶୁଅଛି ମୋତେ ହେ କର୍ଣ୍ଣ ବୀରରାଜ ।
ଯୁଧିଷ୍ଠିର ଭୀମ ଅର୍ଜ୍ଜୁନ ଯେ ନକୁଳ
ସହଦେବ ଆଦି ଦେଖାଇ ଦେହ ବଳ ।

ଯେତେବେଳେ ଯୁଦ୍ଧେ ହୋଇବେ ଆସି ଗୋଟି
ତେବେଟି ଜାଣିମ ଆସିଲା କଳି ଘୋଟି ।
ଦ୍ରୋଣ ଭୀଷ୍ମ କୃପ ଦେହରେ କାଣ୍ଡରାଜି
ଅରଜୁନଙ୍କରଟି ବାଜିଲେ ଗରଜି ।
ଜାଣିମ ହେ କର୍ଣ୍ଣ ପ୍ରବର୍ତ୍ତି କଳିଯୁଗ
ଭାଙ୍ଗି ପକାଇଲା ମହୀରୁ ଧର୍ମଭାଗ ।
ଏବେ ତ ହୋଇଅଛି ମାର୍ଗଶିର ମାସ
ଅମାବାସ୍ୟା ଅଛି ସାତୋଟି ତ ଦିବସ ।
ସେହିଦିନ ହୋଇଅଛି ତ ଜ୍ୟେଷ୍ଠାତାରା
ଯୁଦ୍ଧକୁ ଅନୁକୂଳ କର ହୋଇ ତୋରା ।
ଏ ଦିନେ ପାଣି ଘାସ ଧାନ ତ ପରଜା
ଦେବେ ହେବେ ଚତୁରଙ୍ଗରେ ପରିଚର୍ଯ୍ୟା ।
ତୁମ୍ଭେ ତ ମୋଠାରୁ ଶୁଣିଲ ଭଲ କରି
କହବ ଭୀଷ୍ମ ଦ୍ରୋଣ କୃପେ ଡାକି କରି ।
କର୍ଣ୍ଣ ବୋଇଲେ ହେ ପୃଥିବୀର ବିନାଶ
ଦଇବ ତ ଆଣି କଲାଣି ପରବେଶ ।
ତୁମ୍ଭଙ୍କୁ ତ ସକଳ କଥା ଜଣା ଅଛି
ମୋତେ କିମ୍ପାଇ ଭୁଲାଇବାର ହେଉଛି ।
ଶକୁନି ଦୁଃଶାସନ ଦୁର୍ଯ୍ୟୋଧନ ମୁହିଁ
ନିମିତ୍ତ ହେବୁଁ ପ୍ରଜା ନାଶ ଯିବା ପାଇଁ ।
ପାଣ୍ଡବ କୁରୁଙ୍କର ଗୋଳରୁ ଶାଗୁଣା
ବିଲୁଆଏ ମାଂସେ କରିବେ ପେଟଟଣା ।
ସ୍ୱପନରେ ଦେଖୁଅଛି ମୁଁ ପରାଜୟ
ପାଇବେ ଦୁର୍ଯ୍ୟୋଧନ ଯୁଧିଷ୍ଠିର ଜୟ ।
ତହିଁକି ଅନୁରୂପ ହେଉଛି ଉତ୍‌ପାତ
ତା ଦେଖି ମଣୁଛି ମୁଁ ମରଣକୁ ହିତ ।
ରୋହିଣୀ ନକ୍ଷତ୍ରକୁ ଶନିଶ୍ଚର ପୀଡ଼ା
ଦେଉଛନ୍ତି ଦେଖିବେ ରାତ୍ରେ ହୋଇ ଛିଡ଼ା ।
ମଙ୍ଗଳ ଜ୍ୟେଷ୍ଠା ଛାଡ଼ି ଅନୁରାଧା ପାଶେ
ବାହାରି ଅଛନ୍ତିଟି ଯିବାକୁ ହରଷେ ।
ଚିତ୍ରା ନକ୍ଷତ୍ରକୁ ଦେଉଛି ରାହୁ ପୀଡ଼ା
ନିଶ୍ଚେ ନାଶ ଯିବେ କୃଷ୍ଣ ଏ କୁରୁଭିଡ଼ା
ଦିଶୁଅନ୍ତି ତ ଅକଳଙ୍କ ହୋଇ ଶଶୀ
କିରଣରେ ଯେ ଦଶଦିଗକୁ ପ୍ରକାଶି ।
ପର୍ବତିଥି ବିନା ସୂର୍ଯ୍ୟଙ୍କୁ ଘୋଟି ରାହୁ
କରୁଛି ସବୁରି ହୃଦୟ ଦାଉ ଦାଉ ।

ଉଲ୍‌କା ତୁଲେ ନିର୍ଘାତ ଆକାଶୁ ପଡ଼ଇ
ଦେହିଙ୍କର ଦେହକୁ ଶଙ୍କୋଡ଼ାଇ ଦେଇ ।
ଘୋଡ଼ା ହାତୀମାନେ ନୟନରୁ ଲୋତକ
ଛାଡୁଅଛନ୍ତି ଅବିଚ୍ଛିନ୍ନେ ଧରି ଶୋକ ।
ଅଳପ ଖାଇ ଲୋକେ ବହୁତ ବାଡ଼ିକି
ବସୁଛନ୍ତି ଆଣ୍ଠୁକୁ ହୋଇ ଯାକିଯୁକି ।
ମୃଗମାନେ ଦୁର୍ଯ୍ୟୋଧନଙ୍କ ବାମ ଭାଗେ
ଯାଉଅଛନ୍ତି ନିତି ବୁଲି ହେ ସରାଗେ ।
ଏ ବାହାରେ ଗୃଧ୍ର କାକ ଯେ ବକପନ୍ତି
ଦୁର୍ଯ୍ୟୋଧନ ସୈନ୍ୟ ଉପରେ ଉଡୁଥାନ୍ତି
ଦୁର୍ଯ୍ୟୋଧନ ସୈନ୍ୟରେ ବଜାଇଲେ ବାଦ୍ୟ
ଫଟା ଢ଼ୋଲ ପରି ସେ କରୁଛି ଶବଦ ।
କୂପମାନେ ବୃଷଭ ପରି ଗରଜନ୍ତି
ଶୋଣିତ ନିତି ଏଥି ଇନ୍ଦ୍ର ବରଷନ୍ତି ।
ଗନ୍ଧର୍ବଙ୍କ ନଗର ସୂର୍ଯ୍ୟଙ୍କ ସମୀପେ
ହେ କୃଷ୍ଣ ଦିଶୁଛି ଦେଖିବା ହେଉ ଆପେ
କଳା ହୋଇ ପରିଧି ଗୋଟିଏ ପଡ଼ିଛି
ସୂର୍ଯ୍ୟଙ୍କ ତେଜକୁ ସେ ଲୁପତ କରୁଛି ।
ଲୋକମାନେ ବ୍ରାହ୍ମଣ ଭୃତ୍ୟଠାରେ ଦୋଷ
ଅହର୍ନିଶ ମୁଖରେ କରନ୍ତି ପ୍ରକାଶ ।
ପୂର୍ବ ଆରକତ ଯେ ଦକ୍ଷିଣ ନୀଳ ତ
ପଶ୍ଚିମ କଂସା ପାତ୍ର ପରାୟେ ଶୋଭିତ ।
ହୋଇଛି ଜଗତ ଜୀବନ ମଧୁରିପୁ
ଦେଖିଲେ ଜନଙ୍କର ଭାଙ୍ଗୁଅଛି ବପୁ ।
ଏରୂପେ ଦେଖିଲେ ମୁଁ ହରି ସାକ୍ଷାତରେ
ନାଶଯିବେ କୁରୁଏ ଭାବୁଛି ଚିତ୍ତରେ ।
ଆହୁରି ସ୍ୱପ୍ନଟାଏ କହିବି ତୁମ୍ଭଙ୍କୁ
ଶୁଣ ମୋଠାରୁ ତୁମ୍ଭେ ଦେଇଣ ମନକୁ ।
ଯୁଧିଷ୍ଠିର ଶ୍ୱେତପାଗ ଯେ ଶ୍ୱେତଛତ୍ର
ପିନ୍ଧିଣ କନ୍ଧେ ବହି ସୁଶ୍ୱେତ ପବିତ୍ର ।
ଶ୍ୱେତ ଆସନରୁ ସେ ଗୋଟିଏ ପକାଇ
ପ୍ରାସାଦେ ବସିଥିଲେ ଅତି ସୁଖ ପାଇ ।
ଭାଇମାନେ ଛନ୍ତି ଚାମର କରେ ଧରି
ରହିଥିଲେ ପାଖରେ ପରିଜନ ପରି ।
ଏ ବାହାରେ ଦେଖିଲେ କୃଷ୍ଣ ତୁମ୍ଭ ଅଗ୍ରେ
ରକତ ପୂର୍ଣ୍ଣ ହେଲା କ୍ଷତ୍ରିୟଙ୍କ ଗାତ୍ରେ ।

ହାଡ଼ଗୁଡ଼ାକର ଉପରେ ଯୁଧିଷ୍ଠିର
ବସିଣ ସୁନାପାତ୍ରେ କରନ୍ତି ଆହାର ।
ପୁଣି କରେ ମାଟି କରିଣ ମୁଠି ମୁଠି
ଭଞ୍ଜୁଛନ୍ତି ଭାଇମାନଙ୍କୁ କରି ପିଠ ।
ଏ ସକାଶୁଁ ଜାଣୁଛି ହସ୍ତିନା ରାଜନ
ହୋଇ ଯୁଧିଷ୍ଠିର ପାଳିବେ ପ୍ରଜାଗଣ
ଭୀମ ଗଦାଟି ଧରି ପର୍ବତରେ ବସି
ପକାଉଅଛନ୍ତି କୁରୁମାନଙ୍କୁ ବିନାଶି ।
ତୁମ୍ଭ ତୁଲେ ସହିତ ହୋଇ ଅରଜୁନ
ଶୁକଳ ହାତୀ କରିଛନ୍ତି ଆରୋହଣ ।
ନକୁଳ ସହଦେବ ସାତ୍ୟକ୍ୟାଦି ବେଶ
ଏଥି ଅନୁରୂପ ହୋଇଛି ହୃଷୀକେଶ ।
ଅଶ୍ୱତ୍ଥାମା କୃପ ଯେ କୃତବର୍ମା ଶ୍ୱେତ
ପାଖରେ ଦିଶୁଥିଲେ କେବଳ ଶୋଭିତ ।
ଯୁଦ୍ଧକୁ ଯେତେ ନୃପ ହୋଇଛନ୍ତି ଗୁଣ୍ଡ
ପାଉଥିଲା ରକ୍ତପାଗରେ ଶୋଭା ମୁଣ୍ଡ ।
ମୋ ତୁଲେ ଭୀଷ୍ମ ଦ୍ରୋଣ ଦୁର୍ଯ୍ୟୋଧନ ମନ୍ଦ
ଚଢ଼ିଣ ଉଟଯୋଗ୍ଭ ରଥରେ ଆନନ୍ଦ ।
ହୋଇଣ ଦକ୍ଷିଣକୁ ଅନୁକୂଳ କରି
ବାହାରିଥିଲୁଁ ଆଉ କହିବି କି ହରି ।
ଏ ସ୍ୱପ୍ନ ଦେଖି ମୁହିଁ ଜାଣୁଅଛି ପାର୍ଥ
ଶରେ ଦିଆଇବ ଆମ୍ଭଙ୍କୁ ମୃତ୍ୟୁ ସାଥ ।
କୃଷ୍ଣ ବୋଇଲେ ଆହେ କର୍ଣ୍ଣ ମହାମତି
ଘୋଟିଲେ କାଳଲୋକ କରଇ ଅନୀତି ।
ଅନୀତିକି ଋହିଁଟି ଉତପାତ ଜାତ
ହେଉଥାଏ ପ୍ରାଣୀଏ ହୋଇବାକୁ ହତ ।
ଏହା ଶୁଣିଣ କର୍ଣ୍ଣ କହିଲେ କୃଷ୍ଣଙ୍କୁ
ଜୀଇଁଲେ ମୁଁ ଏ ଯୁଦ୍ଧେ ଦେଖିବି ତୁମ୍ଭଙ୍କୁ ।
ମଲେ ହେଲେ ସ୍ୱର୍ଗେ ତୁମ୍ଭର ମୋର ସଙ୍ଗ
ନିଶ୍ଚେଁ ହୋଇବ ଜାଣ ଆହେ ଶିରୀରଙ୍ଗ ।
ଏରୂପେ କହି କର୍ଣ୍ଣ ମାଗିଲେ ମେଲାଣି
ମୋ ତୁଲେ ରଥରେ ବସିଲେ ଆସି ପୁଣି ।
ଆହେ ଜନ୍ମେଜୟ ନୃପତି ବିଶାରଦ
କହିଲି ତ କୃଷ୍ଣ କର୍ଣ୍ଣଙ୍କର ସମ୍ବାଦ ।
ସଞ୍ଜୟ ମୁଖୁଁ ଶୁଣି କୃଷ୍ଣ କର୍ଣ୍ଣ କଥା
ଧୃତରାଷ୍ଟ୍ର ରାଜା ପାଇଲେ ମହାବ୍ୟଥା ।
ଏଥି କର୍ଣ୍ଣ ଉପନିର୍ବାଦ ହେଲା ଶେଷ
କହେ କୃଷ୍ଣସିଂହ ନରେଶ ବହି ତୋଷ ।



## କୁନ୍ତୀ କର୍ଣ୍ଣ ବୃତ୍ତାନ୍ତ

ଏଥନ୍ତେ ବିଦୁର କୁନ୍ତୀଙ୍କି ଡାକି କରି
କହିଲେ ବଚନ ଲୋତକ ନେତ୍ରେ ଭରି ।
ଯେତେ କହିଲି ମୁଁ ତିଆରି ସୁଯୋଧନ
ଘେନିଲା ନାହିଁ କେବେ ମୋହର ବଚନ ।
ଯୁଧିଷ୍ଠିର ରାଜ ତ ବଳୀୟାର ହୋଇ
ରହିଛନ୍ତି ଧର୍ମ ପାଶରେ ବନ୍ଧା ହୋଇ
ବୟସରେ ବୃଦ୍ଧ ହୋଇଣ ଧୃତରାଷ୍ଟ୍ର
ଆରମ୍ଭିଲେ ଯୁଦ୍ଧଟି କୁଳ ହେବ ନଷ୍ଟ ।
ଜୟଦ୍ରଥ କର୍ଣ୍ଣ ଶକୁନି ଦୁଃଶାସନ
ବଳରେ ପାଣ୍ଡବେ ଜିଣିବ ସୁଯୋଧନ ।
ନିତି ସେ କହୁଅଛି ସଭାରେ ଲୋକଙ୍କୁ
ଏଥିରୁ ଉପହାସ ନାହିଁ କହିବାକୁ ।
ଅଧର୍ମେ ଯେଉଁମାନେ ରାଜ୍ୟ ନେଇଛନ୍ତି
ସେମାନେ ଆଜି ଧର୍ମେ ହେବେ କି ତା କୁନ୍ତୀ
ଦୂତ ହୋଇ କୃଷ୍ଣ ତ ଆସି ରଷି ଗଲେ
ଆଉ କାହା କଥା ସେ ଘେନିବେଟି ଭଲେ ।
ସମସ୍ତେ ନାଶ ଯିବା କଥା ଉପସ୍ଥିତ
ହେବା ଜାଣି ନିଦ୍ରା ନ ଭଜେ ମୋର ନେତ୍ର ।
କୁନ୍ତୀ ବିଦୁରଙ୍କର ବଚନକୁ ଶୁଣି
ନିଃଶ୍ୱାସ ଛାଡ଼ିଣ କହିଲେ ତାଙ୍କୁ ବାଣୀ ।
ଜ୍ଞାତି ବଧ କରିଣ ଅରଜେ ଯେ ଧନ
ଧିକ ହେଉ ବିଦୁର ତାହାର ଜୀବନ ।
ପାଣ୍ଡବେ ଚେଦି ପାଞ୍ଚାଳଙ୍କୁ ସଙ୍ଗେ ଧରି
ଯୁଦ୍ଧ କରି ନେବେ କୁରୁଙ୍କ ପ୍ରାଣ ହରି ।
ଏଥିର ଅଭାଗ୍ୟରେ ଅଛି କେଉଁ କଥା ।
ଲେଖିବା କହହେ ବିଦୁର ମହାରଥା ।
କର୍ଣ୍ଣ ସକାଶରୁ ଏ ରୂପେ ହୋଏ ଭୟ
ଭୀଷ୍ମ ଦ୍ରୋଣ ଘେନିଟି ଲଭେ ସେ ଉଦୟ ।
ସେ ଦୁହେଁ ଅଟନ୍ତି ପୁତ୍ରଙ୍କ ଗୁରୁ ପିତା
ଏଥିକି ବସି କିମ୍ପା କରିବି ମୁଁ ଚିନ୍ତା ।
ଏହି ସକାଶରୁ କର୍ଣ୍ଣଙ୍କଠାକୁ ଯାଇ
ପ୍ରୀତି କରି କହିବି ତାଙ୍କୁ ବାଣୀ ମୁହିଁ ।

ବାବୁଘରେ ଥାଇଣ ଦୁର୍ବାସାଙ୍କ ବରେ
କର୍ଣ୍ଣଙ୍କୁ ଜାତ କଲି ସୂର୍ଯ୍ୟଙ୍କ ଆଡ଼ରେ ।
କୁଳକୁ ଡରି ତାକୁ ମଞ୍ଜୁଷେ ପୂରାଇଲି
ଜଳ ମଧ୍ୟରେ ନେଇ ଭସାଇଣ ଦେଲି ।
ଏମନ୍ତେ ହେଲେହେ ତ ତାଠାରୁ ଲାଳନା
ନ ତୁଟେ କେବେହେଁ ବିଦୁର ମହାମନା ।
ଏହା କହି କୁନ୍ତୀ ବିଦୁରଠାରୁ ଗଲେ
ଏକା ହୋଇକରି କର୍ଣ୍ଣଙ୍କ ପାଶେ ହେଲେ ।
ସୂର୍ଯ୍ୟଙ୍କ କରେ କୁନ୍ତୀ ପାଇଣ ପ୍ରୟାସ
ରହିଲେ ଯାଇ କର୍ଣ୍ଣ ପଛ ଛାଇ ଦେଶ ।
ଜପ ସାରିଣ କର୍ଣ୍ଣ ପୃଷ୍ଠକୁ ଅନାଇ
କୁନ୍ତୀ ଦେବୀ ପାଦେ ପଡ଼ିଲେ ଦଣ୍ଡା ହୋଇ ।
ପୁଣି ଛିଡା ହୋଇଣ ପୁଛିଲେ ତାହାଙ୍କୁ
କାହିଁପାଇଁ ଆସିବା ହୋଇଲା ଏଠାକୁ ।
କୁନ୍ତୀ ବୋଇଲେ ତୁହି ଅଟୁ ପୁତ୍ର ମୋର
ଏ ସକାଶୁଁ ଦେଖି ଆସିଲି ଏତେ ଦୂର ।
ତୁ ବା ବୋଲିବୁ ମୁଁ ତୁମ୍ଭର କେହିଁ ସୁତ
ହେଲି ତାହା କହିବି ଶୁଣ ଦେଇ ଚିତ୍ତ ।
କନ୍ୟାକାଳେ ଦୁର୍ବାସା ବରେ ସୂର୍ଯ୍ୟଆଡ଼େ
ଜାତ କରି ତୋତେ ମୁଁ ଧରିଥିଲି କୋଡ଼େ ।
ସୋଦର ଭାଇ ଛାଡ଼ି ବଡ଼ ବାବୁ ପୁତ୍ର-
ମାନଙ୍କୁ କିପାଁ ବାବୁ କରୁଅଛୁ ମିତ୍ର ।
ବଳରେ ଦୁର୍ଯ୍ୟୋଧନଠାରୁ ଶିରୀ ଆଣି
ଭୁଞ୍ଜ ତା ଘେନିକରି ସଙ୍ଗେ ଭାଇଶ୍ରେଣୀ ।
ଆଜି କର୍ଣ୍ଣାର୍ଜ୍ଜୁନ ପ୍ରୀତିକି କରୁଲୋକ-
ଯାକ ଦେଖି ହୃଦେ ଧରନ୍ତୁ ମହାଶୋକ ।
ପାଞ୍ଚଭାଇ ଦେବତାମାନଙ୍କେ ଇନ୍ଦ୍ରପରି
ଆଜି କର୍ଣ୍ଣ ଶୋଭା ପାଅ ହେ ଶସ୍ତ୍ର ଧରି ।
ସୂତପୁତ୍ରକୁ ଯାହା ବୋଲନ୍ତି ତୁମ୍ଭଙ୍କୁ
ଏହା ଦେଖି ଛାଡ଼ି ଦିଅନ୍ତୁ ସେ ନାମକୁ ।
ଏହିକାଳେ ସୂର୍ଯ୍ୟ ଯେ କହିଲେ କର୍ଣ୍ଣକୁ
ମୋ ଆଡ଼େ କୁନ୍ତୀ କଲେ ଜନମ ତୁମ୍ଭଙ୍କୁ ।
ଏ କଥା ମିଛ କରି ନ ଘେନ ହେ କର୍ଣ୍ଣ
କର ମାତାଙ୍କର ମନୋରଥଟି ପୂର୍ଣ୍ଣ ।
ମାତା ପିତା ବଚନ ଶୁଣି କର୍ଣ୍ଣ କାନେ
ନିଶ୍ଚଳରେ ରହିଲେ ସତ୍ୟ ବୁଝି ମନେ ।

କୁନ୍ତୀଙ୍କି ବୋଇଲେ ମୁଁ ଅଟେ ତୁମ୍ଭ ସୁତ
ତୁମ୍ଭ କଥା କଲେ ହେବ ମୋ' ଧର୍ମ ଖ୍ୟାତ ।
ଜାଣିଲେ ହେଲେ ମୁହିଁ ସହସ୍ର ପ୍ରକାରେ
ଘେନିଛି ତାହା ମୁଁ ନ କରିବା ପ୍ରକାରେ ।
କ୍ଷତ୍ରିୟମାନଙ୍କ ଅଟେ ବ୍ରତ ବିଧି
ବୋଲି କରି ବୁଧେ କହନ୍ତି ନିରବଧି ।
ମାତା ହୋଇ ମୋତେ ଅହିତ-ଅହିମୁଖେ
ଦେଇ ଏବେ ଆସି କହୁଛ କେଉଁ ମୁଖେ ।
କୃଷ୍ଣଙ୍କର ସକାଶୁଁ ଅର୍ଜୁନଙ୍କ ଜୟ
ହେବ ମାତା କିଛି ନ କର ମନେ ଭୟ ।
ଆଜି ଯେବେଟି ଭାବପଣ ଲୋଡ଼ି ଯିବି
ଦୟାଳୁ ବୋଲିଣ ଜଗତେ ବୋଲାଇବି ।
ଖାଇ ପିଇ ଧୃତରାଷ୍ଟ୍ରଙ୍କ ସୁତେ ଭେଣ୍ଡା
କଲେ କି ଛାଡ଼ିବି ପଡ଼ିବା ବେଳେ ଖଣ୍ଡା ।
ମୋତେ ପାଇ ଯୁଦ୍ଧକୁ ହୋଇଣ ଦରାଣ୍ଡି
ଭାବେ ଦୁର୍ଯ୍ୟୋଧନ ଆଣିବି ରାଜ୍ୟଖଣ୍ଡି ।
ଯାହାର ଅନ୍ନ ଖାଇ ତାର ମନ୍ଦକାଳ
ଜାଣି ଛାଡ଼ିଗଲେ ବୁଡ଼ଇ ପଦ୍ମବାଳ ।
ଧୃତରାଷ୍ଟ୍ର ପୁଅକୁ ଶିରୀ ବାଞ୍ଛା କରି
ଯୁଝିବି ମୁଁ ତୁମ୍ଭ ପୁଅକୁ ଶସ୍ତ୍ରଧରି ।
ତୁମ୍ଭେ ଯା କହୁଅଛ ଯେବେ ହେବ ଭଲ
ତେବେ ମୁଁ ନ କରିବି ଅଟେ ମହାମଲ୍ଲ ।
ତୁମ୍ଭେ ମାତା ହୋଇ ଆସିଛ ମୋହଠାକୁ
ନ କରିବି କେହିଁ ମୁଁ ତୁମ୍ଭର କାର୍ଯ୍ୟକୁ ।
ପାର୍ଥ ବିନା ଚାରିଭାଇଙ୍କ ବଧଯୋଗ
ହେଲେ ତାଙ୍କଠାରୁ ମୁଁ ଛାଡିଦେବି ରାଗ ।
ଅର୍ଜୁନ ମୋତେ ମାରି ନେବେ ରାଜ୍ୟଶିରୀ
ନୋହିଲେ ତାକୁ ମାରି ହେବି କୀର୍ତ୍ତିକାରୀ ।
ତୁମ୍ଭେ ପାଞ୍ଚପୁତ୍ରୀ ହୋଇଛ ସବୁବେଳେ
କାହିଁକି ମାତ ବୁଡୁଅଛ ଶୋକଜଳେ ।
କର୍ଣ୍ଣଙ୍କ ବାଣୀ କୁନ୍ତୀ କର୍ଣ୍ଣଦେଶେ ଶୁଣି
କର୍ଣ୍ଣକୁ କୁଣ୍ଢିଆଇ କହିଲେ ସେ ପୁଣି ।
ବୋଇଲୁ ଯା ବାବୁ ରଖିବୁ ତା ମନରେ
ନ ଦେବୁ ପାସୋରିଟି ଯୁଦ୍ଧ ଉତ୍ସାହରେ ।
ଏହା କହି କର୍ଣ୍ଣ ଆଶିଷ ବାଞ୍ଛା କରି
ବାହାରିଲେ ଘରକୁ ପାଣ୍ଡୁ-ମନୋହାରୀ ।

କର୍ଣ୍ଣ କୁନ୍ତୀ ପାଦରେ କରି ନମସ୍କାର
ଗଲେ ଗନ୍ତୁ ପାତ୍ରୀ ଧରିଣ ତାଙ୍କ ଘର ।
ଏହିଠାରେ କୁନ୍ତୀକର୍ଣ୍ଣଙ୍କ ସମାଗମ
ସରିଲା କହେ କୃଷ୍ଣସିଂହ ନରୋତ୍ତମ ।



## କୃଷ୍ଣଙ୍କ ହସ୍ତିନା ପ୍ରତ୍ୟାଗମନ ବାର୍ତ୍ତା କଥନ

ଏଥୁଅନ୍ତେ ଯେଉଁ ଚରିତ ଜନ୍ମେଜୟ
ହୋଇଲା ତା କହିବା ମନ ଲୟ ଦିଅ ।
ଯୁଧିଷ୍ଠିରଙ୍କର ତୁଲରେ ଦେଖା ହୋଇ
ଗଲେ ଶ୍ରୀକୃଷ୍ଣ ସଜ ଓହ୍ଲାଇବା ପାଇଁ ।
ପାଣ୍ଡବେ ସୂର୍ଯ୍ୟଅସ୍ତ ସମୟେ ନୃପଙ୍କୁ
ମେଲାଣି ଦେଇ କଲେ ସେ ସନ୍ଧ୍ୟା ଜପକୁ ।
ପୁଣି ଏକାନ୍ତରେ ବସିଣ ଶ୍ରୀକୃଷ୍ଣଙ୍କୁ
ଡକାଇ ଅଣାଇଲେ ତାଙ୍କର ପାଶକୁ ।
ପଚାରିଲେ ଯାଇଣ ଥିଲେ ତ ଗୋବିନ୍ଦ
କି କହିଲେ କହ ତ ସୁଯୋଧନ ମନ୍ଦ ।
ଶ୍ରୀକୃଷ୍ଣ ବୋଇଲେ କହିଲ ଧର୍ମ ଯେତେ
କଦାଚିତେ ନ ଘେନିଲା ସେହୁ କିଞ୍ଚିତେ ।
ଯୁଧିଷ୍ଠିର ବୋଇଲେ ବିଦୁର ଭୀଷ୍ମ ଦ୍ରୋଣ
ଗାନ୍ଧାରୀ ଧୃତରାଷ୍ଟ୍ର ଆଦି ନରରାଣ ।
କି ବୋଇଲେ ଏହା କହ ହେ ଯଦୁସାଇଁ
ଶୁଣିବାକୁ ଶରଧା ଅଛି ହୃଦେ ବହି ।
ଶ୍ରୀକୃଷ୍ଣ ବୋଇଲେ ହେ ପାଣ୍ଡବରାଜନ
ମୋ କଥାକୁ ହସି ତ ଦେଲା ସୁଯୋଧନ ।
ଭୀଷ୍ମ ତାହା ଦେଖିଟି ନ ପାରିଣ ସହି
କହିଲେ ତାହାକୁ ସେ ଅତିକ୍ରୋଧ ହୋଇ ।
ଶାନ୍ତନୁ ରାଜାଙ୍କର ପୁତ୍ର ହୋଇ ମୁହିଁ
ଏକା ଥିବାରୁ ସେ ବସିଲେ ଦୁଃଖ ହୋଇ ।
ତାହାଙ୍କର ମତ ଜାଣି ମୁହିଁ ପାରିଲି ।
ଆଣି ସତ୍ୟବତୀଙ୍କ ବିଭା କରାଇଲି ।
ସତ୍ୟବତୀ ବାପେ ଝିଅଙ୍କୁ ଯେତେବେଳେ
ଦେଲେ ମୋତେ କହିଲେ ଯା ତା ଶୁଣଭଲେ
ତୁମ୍ଭର ପରା ପୁଅ ଥିବାଠାରେ ମୁହିଁ
ଶାନ୍ତନୁ ନୃପତିଙ୍କି ଝିଅ ଦେବି ନାହିଁ ।
ମୁଁ ତହିଁକି ବୋଇଲି ନୋହିବି ମୁଁ ରାଜା
ଝିଅ ଦିଅ ତୁମ୍ଭେ ତ ହୋଇବି ଅପ୍ରଜା ।
ବିଶେଷତଃ ଏକଥା ବୃଦ୍ଧଠାରୁ ଶୁଣି
ଥିବ କେତୋଟି ମୁହିଁ ହୋଇବି ବଖାଣି ।
ସତ୍ୟବତୀଙ୍କର ବିଚିତ୍ରବୀର୍ଯ୍ୟ ସୁତ
ହେଲେ ତାଙ୍କୁ ପାଳିଲି ମୁଁ ପୁତ୍ରସମିତ ।
ଶାନ୍ତନୁ ନରପତି ପାଆନ୍ତେ ମରଣ
ବିଚିତ୍ରବୀର୍ଯ୍ୟଙ୍କୁ ମୁହିଁ କଲି ନରରାଣ ।
କାଶୀ ରାଜାଙ୍କ ତିନି ଝିଅଙ୍କୁ ମୁଁ ବଳେ
ସ୍ୱୟମ୍ବରୁ ଆଣିଲି ମୋର ବାହୁବଳେ ।
ବିଚିତ୍ରବୀର୍ଯ୍ୟ ମୁଁ ତହିଁରୁ ଦୁଇଝିଅ
ବିଭା କରାଇବି ଯେ ହୋଇବାକୁ ପୁଅ
ଗୋଟିଏ ଝିଅ ଶାଲ୍ୱକୁ ତ ବରିଥିଲା
ମୋ ବୋଲରେ ବିଭା ହେବାକୁ ନାହିଁ କଲା
ମୁହିଁ ନେବାର ଶୁଣି ଶାଲ୍ୱ ସେ ନାରୀକି
ନୋହିଲା ବିଭା ଅପବାଦକୁ ଡରକି ।
ସେହି କନ୍ୟାଟି ଶାଲ୍ୱ ମୋଠାରୁ ବାହାର
ହୋଇ ଆଶ୍ରେ କରିଲା ପର୍ଶୁରାମ ବୀର ।
ପର୍ଶୁରାମ ମୋ ତୁଲେ ତାପାଇଁ ଲଢାଇ
କଲେ ଦେଲି ତାଙ୍କର ଗର୍ବକୁ ଛଡ଼ାଇ ।
ବିଚିତ୍ରବୀର୍ଯ୍ୟ ପାଇଁ ସେ ଦୁଇ ସ୍ତ୍ରୀ ଗତି
ରାଜଯକ୍ଷ୍ମା ରୋଗେ ବସିଲେ ଯମକତି ।
ସେହି ସକାଶୁଁ କୁରୁଭୂମି ଅରାଜକ
ହେବାରୁ ସବୁ ଲୋକେ କଲେ ମହା ଶୋକ ।
ମୋତେ ବୋଇଲେ ଆହେ ରାଜା ହୁଅ ତୁମ୍ଭେ
ମୁହିଁ ବୋଇଲି ସତ୍ୟ ନ ଛାଡ଼ିବୁ ଆମ୍ଭେ ।
ମାତା ମଧ୍ୟ ମୋତେ ବୋଇଲେ ରାଜା ହୁଅ
ଦଇବେ ହେ ନାଶ ଗଲାନି ମୋର ପୁଅ ।
ତେବେ ହେଲେ ତା ମୁଁ ନ କରି ସନମତ
ବିଚିତ୍ରବୀର୍ଯ୍ୟ କ୍ଷେତ୍ରେ କରାଇଲି ପୁତ୍ର ।
ଜ୍ୟେଷ୍ଠ ଧୃତରାଷ୍ଟ୍ର କନିଷ୍ଠ ହେଲେ ପାଣ୍ଡୁ
ରାଜା ହୋଇ ଭାଙ୍ଗିଲେ ନୃପ ଯୁଦ୍ଧକଣ୍ଡୁ ।
ତୋ ବାପା ଜନ୍ମରୁ ଅନ୍ଧ ହୋଇଥିଲେ
ଏଣୁ ରାଜ ସିଂହାସନରେ ନ ବସିଲେ ।
ରାଜାପୁଅ ପାଣ୍ଡବେ କରିବେ ରାଜ୍ୟଭୋଗ
ବ୍ୟର୍ଥେ ଦୁର୍ଯ୍ୟୋଧନ ନ ଧର ମନେ ରାଗ ।

ମୋର ବଚନ କରି ମାହାଳିଆ ଅଧେ
ରାଜ୍ୟ ଖାଇ କରି ଘରରେ ରହ ସଧେ ।
ଧୃତରାଷ୍ଟ୍ର ପୋଏ ଯେ ପାଣ୍ଡୁଙ୍କର ପୋଏ
ନାତି ଲେଖାଁ ମୋହର ଅଟ ତ ସଭିଏ ।
ମୁଁ ଥାଇଣ ଦୁଇକୁଳକୁ ରାଜ୍ୟ ବାଣ୍ଟି
ଦେଉଛି ହେ କଥା ନ କହ ମେଲି ପାଟି ।
ତୁମ୍ଭ ବାପେ ଏ କଥା ଜାଣନ୍ତି ତ ଭଲେ
ଏଣୁ ତିଆରିଟି କହନ୍ତି ସବୁବେଳେ ।
ତୁମ୍ଭ ମତେ ତୁମ୍ଭେ ହୋଇବ ଯେବେ ରାଜା
ତେବେ ହେବ ଅର୍ଜୁନ କାଣ୍ଡେ ଯମପ୍ରଜା ।
ଭୀଷ୍ମଙ୍କ କହବା ଉତ୍ତାରୁ ସୁଯୋଧନ
ମୁଖକୁ ଅନାଇଁ କହିଲେ ଗୁରୁଦ୍ରୋଣ ।
ପ୍ରତୀପଙ୍କର ପୁଅ ଶାନ୍ତନୁ ନୃପତି
ପାଳୁଥିଲେ କୁଳ ଧର୍ମରେ ଦେଇ ମତି ।
ଭୀଷ୍ମକୁଳ ପାଇଁକି ଆଚରିଲେ ଯାହା
ତୁମ୍ଭର ତ ଶୁଣାଟି ହୋଇଅଛି ତାହା ।
ବିଚିତ୍ରବୀର୍ଯ୍ୟ ଅନ୍ତେ ପାଣ୍ଡୁରାଜା ହେଲେ
ଧର୍ମ ସତ୍ୟବ୍ରତରେ କୁଳକୁ ରଖିଲେ ।
ମୃଗୟାରେ ଆସକତ ସେ ନରପତି
ହୋଇ ବନବାସ କରିଲେ ଯାଇ ନିତି ।
ଜ୍ୟେଷ୍ଠଭାଇ ଧୃତରାଷ୍ଟ୍ରଙ୍କୁ ରାଜ୍ୟ ଦେଲେ
ସେ ଦିନୁ ଧୃତରାଷ୍ଟ୍ର ରାଜ୍ୟକୁ ପାଳିଲେ ।
ଭୀଷ୍ମ ସନ୍ଧି ବିଗ୍ରହ ବୁଝିଲେ ରାଜାଙ୍କର
ରାଜ କାର୍ଯ୍ୟଯାକ କରିଲେଟି ବିଦୁର
ସେ କୁଳରେ ଜନମ ହୋଇ କୁଳ ଭେଦ
କାହିଁକି କରୁଅଛ ହୋଇଣ ପ୍ରମୋଦ ।
ଏବେ ତୁମ୍ଭ ଭାଇଙ୍କ ସଙ୍ଗେ ପାଣ୍ଡୁସୁତେ
ରହିବେ ଯେଉଁରୂପେ କର ତା ତୁରିତେ ।
ଭୀଷ୍ମଦେବ ଅନ୍ନ ଖାଇ ମୁହିଁ ତୁମ୍ଭଙ୍କୁ
ଶିଖାଉଥିଲି ବସି ଶସ୍ତ୍ରାସ୍ତ୍ର ବିଦ୍ୟାକୁ ।
ତୁମ୍ଭଠାରୁ ଅନ୍ନ ବେଳେ ମୁଁ ଆଜଯାଏ
ଖାଇନାହିଁ ତ ଆହେ ଦୁର୍ଯ୍ୟୋଧନ ରାୟେ ।
ଭୀଷ୍ମଙ୍କର ଯେ ମତ ମୋହର ସେ ମତ
କହିଲି ସତ ହେ ଗାନ୍ଧାରୀଦେବୀସୁତ ।
ତୁମ୍ଭେ ଯେଉଁରୂପେ ମୋହର ସେହିରୂପେ
ପାଣ୍ଡବେଟି ଜାଣ ମୁଁ କହୁଅଛି ଆପେ ।
ଅଶ୍ୱତ୍ଥମାଠାରୁ ଅଧିକ ଅରଜୁନ
କରଇଟି ମୋହର ପୀରତି ବର୍ଦ୍ଧନ ।
ବହୁତ କରିବାରେ କେଉଁ କାର୍ଯ୍ୟ ଅଛି
ଯାର ଧର୍ମ ହେବ ଜିଣିବ ମୁଁ ଜାଣୁଛି ।
ଏରୂପେ କହି ଦ୍ରୋଣ ହୁଅନ୍ତେ ମଉନ
ଭୀଷ୍ମ ଆଗେ ବିଦୁର କହିଲେ ବଚନ ।
କୁରୁବଂଶଯାକ ତ ଯାଇଥିଲା ନାଶ
ତୁମ୍ଭ ସକାଶରୁଟି ହୋଇଲା ପ୍ରକାଶ ।
ଦୁର୍ଯ୍ୟୋଧନ ଯେହେଲା କୁଳର ପାଉଁଶ ।
କଲ ନାହିଁ କିମ୍ପାଇଁ ତହାକୁ ନିରାଶ ।
ଦୁର୍ଯ୍ୟୋଧନ ଘେନି କୁରୁଏ ନାଶ ଗଲେ
ଏଘେନି ନିନ୍ଦା ତୁମ୍ଭେ ପାଇବଟି ଭଲେ ।
ବ୍ରହ୍ମାପରି ସର୍ଜନା କରିଣ ସଂହାର
ନ କର ଆହେ ଭୀଷ୍ମ ରଥୀଙ୍କ ଶେଖର ।
ଆମ୍ଭର କରମକୁ ହୋଇ ଅନୁରୂପ
ତୁମ୍ଭର ବୁଦ୍ଧି ଆସି ହୋଇଲାନି ଲୋପ ।
ତୁମ୍ଭେ ଆମ୍ଭ ଧୃତରାଷ୍ଟ୍ରଙ୍କୁ ଘେନି କରି
ଚାଲ ଯାଇ ରହିବା ବନେ ଘର କରି ।
ଏ ନୋହିଲେ ଦୁର୍ଯ୍ୟୋଧନକୁ ବାନ୍ଧିକରି
ପାଳନା କର ମହୀ ପାଣ୍ଡବଙ୍କୁ ଧରି ।
ଭୀଷ୍ମ ଆଗେ ବିଦୁର ଏରୂପେ ବଚନ
କହି ତୁନି ହୋଇଲେ ପୋତିଣ ବଦନ ।
ବିଦୁରଙ୍କ ମଉନ ଦେଖିଣ ଗାନ୍ଧାରୀ
କହିଲେ ଦୁର୍ଯ୍ୟୋଧନ ପୁଅଙ୍କୁ ତିଆରି ।
ପିତୃପିତ ମହ କ୍ରମରେ କୁଳ ଧର୍ମ
ନାଶ କରୁଅଛୁ ତ ଆଚରି ଅଧର୍ମ ।
ବାବୁ ଦାଦି ଯୋଡ଼ାଏ ଥିବାଠାରେ ତୁହି
ଲାଜ ନାହିଁ ବୋଲାଉଅଛୁ ମହୀସାଇଁ ।
ଧର୍ମଟି ଜାଣିମାରୁ ଭୀଷ୍ମ ପରା ଲୋକ
ରାଜ୍ୟ ଛାଡ଼ି ଦେଲେ ତୁମ୍ଭର ବାବୁ ଲୋକ
ପାଣ୍ଡୁ ସିନା ଅଟନ୍ତି ହସ୍ତିନାରେ ରାଜା
ତାଙ୍କ ପୋଏ ଥାଉଁ ପାଇବୁଁ କେଉଁ ପୂଜା ।
ଭୀଷ୍ମ ଯେଉଁରୂପରେ ବୋଲୁଛନ୍ତି ତୋତେ
ଭଲ ହେବୁ ଯେବେ ତୁ ଘେନ ତାହା ଚିତ୍ତେ ।
ସେହିରୂପେ ବିଦୁର କହିବା ବଚନ
ଘେନିବାର ଉଚିତ ଅଟେ ଦୁର୍ଯ୍ୟୋଧନ ।

ଧର୍ମରେ ତ ପାଣ୍ଡୁ ପୁତ୍ରଙ୍କ ହେଲା ରାଜ୍ୟ
ନ ଦେବୁ ବୋଇଲେ ପାଇବୁ ବଡ଼ ଲାଜ ।
ଗାନ୍ଧାରୀଙ୍କ କଥା ସରିଲାକ୍ଷଣି ଧୃତ
ରାଷ୍ଟ୍ର ରାଜା ବୋଇଲେ ଦୁର୍ଯ୍ୟୋଧନ ସୁତ ।
ମାତାଙ୍କ କହିବାର ଶୁଣିଲୁ ତ ସବୁ
କର ତାହା ବାବୁ ରେ ଯେବେ ତୁ ଜୀଇବୁ ।
ଚନ୍ଦ୍ରଙ୍କଠାରୁ ଯେ ଛଅ ପୁରୁଷରେ
ଯଯାତି ରାଜା ହେଲେ ହସ୍ତିନା ଦେଶରେ ।
ଯଯାତିଙ୍କଠାରୁ ଯେ ପାଞ୍ଚପୁତ୍ର ଜାତ
ହୋଇଣ ହେଲେ ବଳ ବିକ୍ରମେ ବିଖ୍ୟାତ ।
ଜ୍ୟେଷ୍ଠ ପୁତ୍ର ଯଦୁ କନିଷ୍ଠ ପୁରୁଙ୍କର
ବଂଶେ ହେଲା ଯାଦବ ପୌରବ ସଂସାର ।
ବାପଙ୍କ ଶାସନରେ ଯଦୁ ନ ରହିଲେ
ବଳରେ ମହୀ ଜିଣି ତାହାଙ୍କର କଲେ ।
ଯଯାତି କ୍ରୋଧ ହୋଇ ତାଙ୍କୁ ଦେଲେ ଶାପ
ଏଣୁଟି ଛାଡ଼ିଲେ ସେ ରାଜ୍ୟେ ବହି ତାପ ।
ଯଦୁଙ୍କ ଅନୁଗତ ହୋଇ ଯେତେ ଭାଇ
ଥିଲେ ତାହାଙ୍କୁ ମଧ ଶାପ ଦେଲେ ସେହି ।
ସାନ ପୁଅ ପୁରୁଙ୍କୁ ହସ୍ତିନାରେ ପୂଜା
ଦିଆଇଲେ ବସି ଯଯାତି ମହାରାଜା ।
କୁଳ ଧର୍ମେ ଆମ୍ଭର ଅଛି ଜ୍ୟେଷ୍ଠ ସୁତ
ଅବିବେକ ହେଲେଟି ନପାଏ ରାଜତ୍ୱ ।
ମୋର ବାପାଙ୍କର ପ୍ରତୀପ ପିତାମହ
ରାଜା ହୋଇ ପାଳିଲେ ମହୀ ବହି ସ୍ନେହ ।
ପ୍ରତୀପ ରାଜାଙ୍କ ତିନୋଟି ପୁଅ ହେଲେ
ଦେବାପି ସେ ତିନିହେଁ ଜ୍ୟେଷ୍ଠ ବୋଲାଇଲେ
ଦେବାପି କନିଷ୍ଠ ବାହ୍ଲିକ ହୋଇଲେ
ବାହ୍ଲିକଙ୍କ କନିଷ୍ଠ ଶାନ୍ତନୁଟି ଭଲେ ।
ଦେବାପି ଧର୍ମେ ସବୁ ଜନ ମନ ହରି
କେବଳ ସେ ହୋଇଲେ କୁଷ୍ଠରୋଗଧାରୀ ।
ଦେବାପିଙ୍କ ମୁଖ ବାହ୍ଲିକ ଶାନ୍ତନୁ
ନ ଦେଖିଲେ ଅଶ୍ରୁ ସେ ତେଜନ୍ତି ନୟନୁଁ ।
କେତେକାଳ ଅନ୍ତେ ପ୍ରତୀପ ବୁଢ଼ା ହେଲେ
ପୁତ୍ରେ ଅଭିଷେକ କରିବ ପଚାରିଲେ ।
ଏ କଥା ଶୁଣିକରି ପୁର ଲୋକଯାକ
ନିବାରିଲେ ଦେବାପିଙ୍କର ଅଭିଷେକ ।
ଦେବାପିଙ୍କର ଅଭିଷେକ ନିବାରଣ
ଶୁଣି ଶୋକ କଲେ ପ୍ରତୀପ ନରରାଣ ।
ସବୁ ଗୁଣ ଥାଇ ହେବାରୁ କୁଷ୍ଠରୋଗୀ
ଦେବାପି ହୋଇଲେ ହସ୍ତି ନାବାସୀ ତ୍ୟାଗୀ ।
ଏହି ଶୋକ ପ୍ରତୀପ ପାଆନ୍ତେ ମରଣ
ଦେବାପି ବନ ମଧ୍ୟେ କଲେ ଯାଇ ସ୍ଥାନ ।
ପିତୃ ରାଜ୍ୟ ଛାଡିଣ ମାମୁରାଜ୍ୟେ ରାଜା
ବାହ୍ଲିକ ହୋଇଣ ପାଇଲେ ମହାପୂଜା ।
ବାହ୍ଲିକ ସମ୍ମତେ ଶାନ୍ତନୁ ପିତୃଦେଶେ
ରାଜା ହୋଇଣ ପ୍ରଜା ପାଇଲେ ହରଷେ
ମୋହର ଆଖି ନ ଥିବାରୁ ନରପତି
ହସ୍ତିନାରେ ହୋଇଲେ ପାଣ୍ଡୁ ମହାମତି ।
ରଜାପୁଏ ପାଣ୍ଡବେ ହେବେ ସିନା ରାଜା
ତୁ କିମ୍ପାଇଁ କହିଁ କରିଛୁ ଗୋଳ ମଜା ।
ଯୁଧିଷ୍ଠିର ତ ରାଜଗୁଣରେ ନିପୁଣ
କହିବାକୁ କଥାଟି ନାହିଁ ତହିଁଜାଣ ।
ରାଜାପୁଅ ହୋଇ ଅନାର୍ଯ୍ୟ ବୃତ୍ତି କରି
କାହିଁପାଇଁ ଲୋଡ଼ୁଛୁ ହସ୍ତନାର ଶିରୀ ।
କୁଳକ୍ରମରେ ତ ରାଜ୍ୟରେ ଯୁଧିଷ୍ଠିର
ରାଜା ତୁ ତୁଚ୍ଛା ସିନା କରିବୁ ସମର
ଏହିରୂପରେ ଭୀଷ୍ମ ବିଦୁର ଗାନ୍ଧାରୀ
ଦ୍ରୋଣ ଆଦି କହିଲେ ବହୁତ ତିଆରି ।
ତେବେ ହେଲେ ସେ ସୁଯୋଧନ ମନ୍ଦବୁଦ୍ଧି
ତୁମ୍ଭରଠାରୁ ନ ଛାଡ଼ିଲା ହିଂସା ବୁଦ୍ଧି ।
ସମସ୍ତଙ୍କୁ ଅବଜ୍ଞା କରିଣ ସଭାରେ
ନ ରହି ଉଠିଗଲା ତା ପୁରକୁ ଖରେ ।
ସୁଯୋଧନ ପଛେ ଗୋଡ଼ାଇ ନୃପଶ୍ରେଣୀ ।
ଗଲେ ଘେନୁଥିଲେ ଯେ ତାହା କହିବା ବାଣୀ ।
ଦୁର୍ଯ୍ୟୋଧନ ବୋଇଲେ କର ଅନୁକୂଳ
ପାଣ୍ଡବଙ୍କ ତୁଲରେ କରିବାକୁ ଗୋଳ ।
ସେନାପତି କରିଣ ଭୀଷ୍ମ ମହାବଳ
କାଳବଶେ ରାଜାଏ କଲେ ଅନୁକୂଳ
ବହୁତରୂପେ ପ୍ରୀତି ବଚନ କହିଲି
ନ ଘେନିବାରୁ ତାହା ଭେଦ ମୁଁ ବିହିଲି ।
କୁରୁଙ୍କ ନାଶ ଯିବା ପାଇଁ ଉତପାତ
କରାଇଲି ମୁହିଁ ସବୁରି ନେତ୍ରଗତ ।

ସବୁ ରାଜାମାନଙ୍କୁ ତିରସ୍କାର କରି
ଡରାଇଲି କୁରୁଙ୍କୁ ଭୀଷଣ ରୂପ ଧରି ।
ଏରୂପେ କଲାଠାରେ କୁରୁଏ ଆୟତ
ନୋହିବାରୁ କହି ତୋଷିଲ ତାଙ୍କ ଚିତ୍ତ
ଖାଅ ହେ ଦର୍ଯ୍ୟୋଧନ ଏ ରାଜ୍ୟଯାକକୁ
ପାଞ୍ଚୋଟି ଗ୍ରାମ ମାତ୍ର ଦିଅ ପାଣ୍ଡବଙ୍କୁ ।
ଯେତେକି ବିନୟରେ ମାଗୁଥିଲି ମୁହିଁ
ତେତିକି ସୁଯୋଧନ କରୁଥିଲା ନାହିଁ ।
ଶାମଦାନ ଭେଦେ ନୋହିଲା କାର୍ଯ୍ୟ କିଛି
ଯୁଦ୍ଧ କର ଏବେ ମୁଁ ତୁମ୍ଭଙ୍କୁ ବୋଲୁଛି ।
ଯୁଦ୍ଧକୁ କୁରୁଏ କଲେନି ଅନୁକୂଳ
ଓହୋରିଲେ ବଳକୁ ଦିଶିବ ଦୁର୍ବଳ ।
ଯୁଦ୍ଧ ବିନା କୁରୁଏ ଗ୍ରାମରୁ ଗୋଟିଏ
ତୁମ୍ଭଙ୍କୁ ଦେବେ ନାହିଁ ବୋଲୁଛି ମୁଁ ରାୟେ ।



## କୌରବ ଓ ପାଣ୍ଡବମାନଙ୍କର ସମର ସଜ୍ଜା

କୃଷ୍ଣଙ୍କ ମୁଖୁଁ ଶୁଣି କଥା କୁରୁଙ୍କର
ଭାଇଙ୍କି ହସିଣ କହିଲେ ଯୁଧିଷ୍ଠିର
ଯେତେ କଥା କହିଲେ କୃଷ୍ଣ ମୋ ଆଗରେ
ସକଳ ଘେନିଲି କି ହୃଦୟ ଭାଗରେ ।
ସାତ ଆକ୍ଷୋହିଣୀ ଆମ୍ଭର ସେନା ଅଛି
ସାତୋଟି ସେନାପତି କର ମୁଁ ବୋଲୁଛି ।
ତୁମ୍ଭେ ଅବା ବୋଲିବ କରିବା କାହାକୁ
ଯହିଁ କି ଯେ ଯୋଗ୍ୟତା କହୁଛି ତୁମ୍ଭଙ୍କୁ ।
ଦ୍ରୁପଦ ଧୃଷ୍ଟଦ୍ୟୁମ୍ନ ଶିଖଣ୍ଡୀ ସାତ୍ୟକି
ବିରାଟ ଚେକିତାନ ଭୀମ ଏ ରଥୀଙ୍କି ।
ସେନାପତି କର ଆମ୍ଭର ସୈନ୍ୟ ରଖି
ଥିଲେ ଇନ୍ଦ୍ର ଯୁଦ୍ଧେ ନ ପାରିବେଟି ଯୋଖି ।
ଏ ସାତଙ୍କରେ ପୁଣି ହେବେ କେ ନାୟକ
କହ ତା ସହଦେବ କରିଣ ବିବେକ ।
ଶୁଣୁ ଥାଇ ତ ଭୀଷ୍ମ କୁରୁଙ୍କର ସେନା-
ପତି ହୋଇଣ ସେନା କରିବେ ପାଳନା
ଭୀଷ୍ମଙ୍କୁ ଅନୁରୂପ ଆମ୍ଭ ସେନାପତି
ହେଲେଟି ଯୁଝିବ ସାୟକ ବିନ୍ଧି ଅତି

ସହଦେବ ବୋଇଲେ ସମ୍ବନ୍ଧୀ ବିରାଟ
ସେନାପତି କର କରିବେ ଯୁଦ୍ଧ ଆଣ୍ଟ ।
ନକୁଳ ବୋଇଲେ କି କହ ସହଦେବ
ଛନ୍ତି ଆମ୍ଭ ସୈନ୍ୟେ ଦ୍ରୁପଦ ନରଦେବ ।
ଦ୍ରୋଣ ଭୀଷ୍ମ ହନ୍ତା ଦିଓଟି ପୁଅ ପାଇ
ତାଙ୍କ ମରଣେ ସେ ଥାଆନ୍ତି ଶ୍ରଦ୍ଧା ବହି ।
ସମସ୍ତ ବିଦ୍ୟାରେ ଅଟନ୍ତି ପାରଙ୍ଗମ
ନିତିମନ୍ତ ନୃପତିମାନଙ୍କେ ଉତ୍ତମ ।
ଦ୍ରୁପଦ-ମହାବୃକ୍ଷେ ପୁତ୍ର ଡାଳ ଫଳ
ନାତି ମଧ୍ୟ ବହୁତ ହୋଇଛନ୍ତି ଠୁଳ ।
ପୁଣି ତ ତାଙ୍କ ଝିଅ ଆମ୍ଭ ପାଞ୍ଚଙ୍କରି
ରହିଛନ୍ତି ଘରେ ହୋଇ ମନୋହାରୀ ।
ଦ୍ରୌପଦୀଙ୍କି ଦୁଃଶାସନ ଦେବାର କ୍ଲେଶ
ସୁମରି କୁରୁଙ୍କୁ କରିବେ ନିଷ୍ଟେ ନାଶ ।
ତାହାଙ୍କୁ ସେନାପତି ନ କରି କାହାକୁ ।
କରିବା ବୋଲି କିପାଁ ଆଣୁଛ ମନକୁ ।
ଅରଜୁନ ବୋଇଲେ ଅଗ୍ନି କୁଣ୍ଡ ଭେଦି
ଜନମିଛନ୍ତି ଧୃଷ୍ଟ ଦ୍ୟୁମନ ଦ୍ରୌପଦୀ ।
ଦ୍ରୋଣ ନାଶ ପାଇଁ ଦ୍ରୁପଦ ଯାଗକର୍ମ
କରାଉଁ ପୁତ୍ର ତୁଲେ ଝିଅ ହେଲେ ଜନ୍ମ ।
ଦଇବରେ ସେହି ଝିଅଟିକୁ ଦ୍ରୁପଦ
ବିଭାଦେଲେ ଆମ୍ଭଙ୍କୁ ହୋଇଣ ପ୍ରମୋଦ ।
ପୁତ୍ର ତୁଲେ ଆମ୍ଭର ବଳକୁ ସେ ପାଇ
ନିଶା ଧରିଅଛନ୍ତି ଦ୍ରୋଣ ନାଶ ପାଇଁ ।
ଦ୍ରୋଣାଦି ରଥି ଧୃଷ୍ଟ୍ୟଦ୍ୟୁମ୍ନ- ସିଂହ ମୁଖେ
ପଡିଲେ ଗ୍ରାସ ହେବ ଗଜ ପରି ସୁଖେ ।
ମୋ ମତରେ ଧୃଷ୍ଟଦ୍ୟୁମନ ମହାମତି
ପାଇଁ ଆନଲୋକ ନ କର ସେନାପତି ।
ଭୀମ ବୋଇଲେ ଆହେ ଭୀଷ୍ମଙ୍କର କାଣ୍ଡ
ସହି ଏକା ପାରଇ ଶିଖଣ୍ଡୀଙ୍କ ପିଣ୍ଡ ।
ଭୀଷ୍ମ ହନ୍ତା ହୋଇ ଜନମିଛନ୍ତି ମହୀ
ଋଷିଙ୍କର ମୁଖରୁ ଆମ୍ଭେ ଶୁଣିଥାଇଁ ।
ଶିଖଣ୍ଡୀ ସେନାପତି ନୋହିଲେ ଭୀଷ୍ମ ଆଗେ
ଶରବିନ୍ଧିବାକୁ ରଚିକି ନାହିଁ ରାଗେ ।
ଯୁଧିଷ୍ଠିର ବୋଇଲେ ଦେବକୀଙ୍କ ବାଳ
ଯାହାକୁ ବୋଲିବେ ସେ ହେଉ ସେନାପାଳ ।

ଆମ୍ଭର ଜୟ ପରାଜୟର କାରଣ
ଅଟନ୍ତି ବସୁଦେବସୁତ କୃଷ୍ଣ ଜାଣ ।
ଆଜି ଶସ୍ତ୍ରମାନଙ୍କୁ କରାଅ ପ୍ରସ୍ଥାନ
କାଲିଟି କୁରୁଙ୍କୁ କରିବା ଆୟୋଧନ ।
କୃଷ୍ଣ ଅରଜୁନଙ୍କ ମୁଖକୁ ଅନାଇଁ
ବୋଇଲେ ଯା କହିଲ ମୋର ମତ ସେହି ।
ଯେତେକ ରାଜା ଆମ୍ଭେ କରିଥାଇଁ ଗୋଟି
ଜଣଜଣକରେ ଏ ଜିଣିବେ ମହୀଟି ।
ଧୃତରାଷ୍ଟ୍ର ପୁଅଙ୍କୁ କରିବାର ନାଶ
ତାଙ୍କଠାରେ ନୁହେ ଜାଣ ଏ ବଡ଼ ଯଶ ।
ଧର୍ମରେ କୁରୁଙ୍କୁ ଆସିଲୁଁ ଜିଣି ଆମ୍ଭେ
ଆଉ କିଛି ଚିନ୍ତା କର ମନେ ତୁମ୍ଭେ ।
ଦୁର୍ଯ୍ୟୋଧନ ତ ମନେ ମନେ ବଳୀୟାର
ହୋଇଛି ଯୁଦ୍ଧ କରି ଆଗ ତାକୁ ମାର
ବିରାଟ ଦ୍ରୁପଦ ସାତ୍ୟକି ଧୃଷ୍ଟଦ୍ୟୁମ୍ନ
ତୁମ୍ଭ ପାଞ୍ଚଭାଇଙ୍କ ଦେଖି ଆୟୋଧନ ।
କୁରୁମାନେ କକ୍ଷାକୁ ପଛକୁ ପକାଇ
ପଳାଇବେ ଗୋଟିଏ ଯୁଦ୍ଧରେ ନ ରହି ।
ଶ୍ରୀ କୃଷ୍ଣଙ୍କର ମୁଖୁଁ ଶୁଣି ଏ ବଚନ
ଗର୍ଜିଲେ ରାଜାମାନେ ହୋଇ ହୃଷ୍ଟମନ ।
ଯୁଦ୍ଧ ବେଳ ହେଲା ବୋଲିଣ ମନେ କଲେ
ଆଗ ଶଙ୍ଖ ବଜାଇ ସର୍ବେ ବାହାରିଲେ
ହୟମାନେ ତା ଶୁଣି କଲେ ହେରକ୍ଷଣ
ଆକାଶେ ତା ଥାଇ ଶୁଣିଲେ ଦେବଗଣ ।
ଧୃଷ୍ଟଦ୍ୟୁମ୍ନ ଅଭିମନ୍ୟୁ ଯେ ପ୍ରଭଦ୍ରକ
ପାଞ୍ଚାଳେ ଘେନି ସଙ୍ଗତରେ ସେନାଯାକ ।
ବାହାରିଲେ ଯୁଦ୍ଧକୁ ଗହଣ ଲଗାଇ
ଗୀତ ବାଦ୍ୟ ନାଟ ଆଗରେ ସେ କରାଇ ।
ପାଣ୍ଡବ ସେନାଙ୍କର ମୁଖର ଚହଳେ
ରହିଣ ନ ପାରିଲେ ଲୋକ ସିନ୍ଧୁକୂଳେ ।
ଏହା ଦେଖିଣ ଯୁଧିଷ୍ଠିର ମହାରଥ
ବାହାରିଲେ ପଛରେ ଚଢ଼ି କରି ରଥ ।
ଆଗରେ ବେଶ୍ୟାମାନେ ଆଳାପି ମଙ୍ଗଳ
ଗାଇଲେ ଉଚ୍ଚେ ଗୀତ କରେ ମାରି ତାଳ ।
ବୈଦ୍ୟମାନେ ଭାତ ବରତନକୁ ନେଇ
ଗୋଡ଼ାଇଲେ ପୁରୁଷାର୍ଥ ଅର୍ଜିବାପାଇଁ ।

ହାଟୁଆଏ ହାଟର ସାମଗ୍ରୀକି ଧରି
ବାହାରିଲେ ପସରା ବାଢ଼ିବା ଇଚ୍ଛା କରି ।
ଉପପ୍ଲବଗଡ଼ରେ ଦ୍ରୌପଦୀ ରହିଲେ
ପାଣ୍ଡବେ ତାଙ୍କୁ ଲୋକେ ଜଗାଇଣ ଗଲେ
ଯେବେ ଦ୍ୱିଜ ବାଟରେ ହେଉଥିଲେ ଭେଟ
ଦେଉଥିଲେ ଧନ ତାହାଙ୍କୁ ପାଣ୍ଡୁଭଟ ।
ବ୍ରାହ୍ମଣ ଜୟାଶିବ ତଥାସ୍ତୁ ଶବ୍ଦରେ
ବହିଲେ ରାଜାମନେ ପ୍ରମୋଦ ହୃଦରେ ।
କେକୟ ଧୃଷ୍ଟଦ୍ୟୁମ୍ନ ଶିଖଣ୍ଡି ଜୟସେନ
ସୁଧର୍ମା କୋନ୍ତଭୋଜ ବିରାଟ ବସୁଦାନ ।
ଏମାନେ କବଚ ତୁଳରେ ଅଳଙ୍କାର
ଲଗାଇ ପଛେ ଗଲେ ସେ ପାଣ୍ଡବଙ୍କର ।
ଅୟୁତ ଋରି ଥର କୋଡ଼ିଏ ଅୟୁତ
ଘୋଡ଼ା ଯେ ପଦାତିରେ ଦୁଇଶ ଅୟୁତ ।
ଛ ଅୟୁତ ହାତୀ ତୁଲରେ ଆନ ଜାତି
ଲୋକେ ଥିଲେ ହେ ଜନ୍ମେଜୟ ଅଗଣତି ।
ଆଗରେ ଯିବା ସେନା ଏଥି ଲେଖା ନାହିଁ
କହୁଥାଇଁ ଜାଣ ହସ୍ତିନା ନରସାଇଁ ।
ଅନାଧୃଷ୍ଟ ସାତ୍ୟକି ଚେକିତାନ ଆଦି
କୃଷ୍ଣାର୍ଜୁନ ସଙ୍ଗେ ଗମିଲେ ହୋଇ ବାଦୀ ।
ଏରୂପେ ସଇନ ଚଳାଇ ଯୁଧିଷ୍ଠିର
କୁରୁକ୍ଷେତ୍ରରେ ଯାଇ ମିଳିଲେ ସତ୍ୱର ।
ପାଣ୍ଡୁସୁତେ ଶଙ୍ଖକୁ ମୁଖରେ ଭରିଲେ
ଗଲା ଦୁଃଖ ବୋଲି ସୁଖରେ ବଜାଇଲେ ।
କୃଷ୍ଣ ଅରଜୁନ ଶଙ୍ଖର ଶବ୍ଦ ଶୁଣି
ପାଣ୍ଡୁ ସେନାଯାକ ଗର୍ଜିଲେ ହୋଇ ଟାଣି ।
ଏ ସକାଶୁଁ ସମୁଦ୍ର ଉଛୁଳିଲା ପ୍ରାୟେ
ମଣିଲେ କର୍ଣ୍ଣେ ଶୁଣି ହସ୍ତିନା ବାସିଏ ।
ଯୁଧିଷ୍ଠିର କୁରୁକ୍ଷେତ୍ରରେ ସମସ୍ଥାନ
ଦେଖି କରି ରଖାଇଲେ ଯେ ତହିଁ ସୈନ୍ୟ ।
ଦୁର୍ଯ୍ୟୋଧନ ଯେତେକ କରିଥିଲେ ଗୁଡା
ତା ଭଙ୍ଗାଇ ଦେଲେ ଲଗାଇ ହାତୀଭିଡ଼ା ।
ସାତ୍ୟକୀ ଧୃଷ୍ଟଦ୍ୟୁମ୍ନ ସ୍ଥାନକୁ ମପାଇ
ରଖାଇଲେ ସେନାଟି ଯତନ କରାଇ ।
ହିରଣ୍ୟବତୀ ନଦୀ ବେଳାଳ ଖୋଳି
ସେନାର ଋରିପଟଯାକେ କଲେ ଜଳୀ ।

ପାଣ୍ଡବେ ଯେଉଁରୂପେ କଲେଟି ଶିବିର
ସେହିରୂପରେ ହେଲା ନୃପମାନଙ୍କର ।
ବସାମାନଙ୍କରେ ଯେ ଭକ୍ଷ୍ୟ ଭୋଜ୍ୟ ପାନ
ରହିବାରେ ରହି ନ ପାରିଲେଟି ଜନ ।
ଶୀତ ପୀତ ନୀଳ ଲୋହିତ ତମ୍ବୁମାନେ
ଇନ୍ଦ୍ରଧନୁ ପରି ଯେ ଦିଶିଲେ ନୟନେ ।
ଶତ ସଂଖ୍ୟା ତମ୍ବୁ ସଜଡ଼ାକାରୀ ଲୋକ
ରହିଲେ ଜଗିଣ ସେ ତମ୍ବୁ ଘରିପାଖ ।
ଯେତେ ଆସିଥିଲେ ସଙ୍ଗତେ ବୈଦ୍ୟଶ୍ରେଣୀ
ରହିଲେ ସେ ଶିବିର କରି ଛିପା ଟାଣି ।
ସେହି ସୈନ୍ୟରେ ଥିଲେ ଯେତେକ ଗଡୁଆ
ଶହକରେ ଗୋଟିଏ କଲେ ସେ ତାଡୁଆ ।
ପ୍ରତି ବସା ଆଗରେ ସଜଳ ସଧୂଳି
ମହୁ ଘିଅ ଆଦି ରଖାଇଲେ ସେ ଭାଳି ।
ଖଣ୍ଡା ଗଦା ଶକ୍ତି ତୋମର ଧନୁ ଶର
ସେନା ମଧ୍ୟେ ରଖିଲେ ଆଣି ଭାର ଭାର ।
ଶସ୍ତ୍ରମାନଙ୍କର ଦେଖିକରି ସେ ଜ୍ୟୋତି
ଭୟାଳୁମାନେ ନେତ୍ର ବୁଜି ଦେଇ ଯାନ୍ତି ।
ଅଙ୍ଗାର ଚକ୍ଷୁ ଭୋଜି ମୂଲିଆଙ୍କ ଯୋଷା
ହାତରେ ରଖାଇଣ ପୂରାଇଲେ ବସା ।
ବସା ଆଗମାନଙ୍କେ ରହିବାରୁ ଘାସ
ଦିଶିଲା ନୟନକୁ ପର୍ବତ ସଦୃଶ ।
ସସ୍ର ଶତ ଯୋଦ୍ଧା ମାରିବା ହାତୀକୂଳ
ବସା ପାଇ ଗର୍ଜନ ନଭେ କଲେ ଠୂଳ ।
ପାଣ୍ଡବେ କୁରୁକ୍ଷେତ୍ରେ ରହିବାର ଜାଣି
ଆସିଲେ ବାକି ଥିବା ମିତ୍ରନୃପ ଶ୍ରେଣୀ ।
ଜନ୍ମେଜୟ ବୋଇଲେ ବଇଶମ୍ପାୟନ
ଯୁଧିଷ୍ଠିର କରନ୍ତେ କୁରୁକ୍ଷେତ୍ରେ ସ୍ଥାନ ।
ଦୁର୍ଯ୍ୟୋଧନ ଶୁଣି ତା କି ବିଚାର କଲେ
ଏହା ମୋର ଆଗେ କହ ତ୍ ଏବେ ଭଲେ ।
ବଇଶମ୍ପାୟନ ବୋଇଲେ ଜନ୍ମେଜୟ
ହସ୍ତିନାରୁ ଯାଆନ୍ତେ ଦେବକୀତନୟ ।
ଦୁର୍ଯ୍ୟୋଧନ କର୍ଣ୍ଣ ଯେ ଶକୁନିକି ଡ଼ାକି
ବୋଇଲେ ବୁଝିଲି କି କୃଷ୍ଣଙ୍କ ରୀତିକି ।
ଆମ୍ଭଠାରୁ ଏବେ ସେ ଗଲେ ତ ଅଭାବେ
ଲଗା ଯୋଡ଼ା କରିଣ ତାହାଙ୍କୁ କହିବେ

ପାଣ୍ଡବଙ୍କ ତୁଳରେ ମୋହର ବିରୋଧ
ହେଉଥିଲେ ହେ କୃଷ୍ଣ ପାଉଥାନ୍ତି ସଧ ।
ଏତେ ତ ଦଇବରେ ହୋଇଛି ସେ କଥା
କହିବେ କୃଷ୍ଣ ଛାଡ଼ି ଦୁହୁଁ ଲାଜ ବ୍ୟଥା ।
କୃଷ୍ଣଙ୍କର କଥାରୁ ଭୀମ ଅରଜୁନ
ବାହାର ନୁହନ୍ତି ହେ କର୍ଣ୍ଣ ବୀର ଜାଣ ।
ଯୁଧିଷ୍ଠିର ଭୀମ ଅରଜୁନଙ୍କୁ ରହିଁ
କୃଷ୍ଣଙ୍କ କଥାକୁ ବୋଲିବେ ହୋଇ ହୋଇ ।
ଯୁଧିଷ୍ଠିର ବିରାଟ ଦ୍ରୁପଦ ତିନିଙ୍କର
ଅପକାର ଋଲି ତ ଅଟଇ ମୋହର ।
ଏ ସକାଶୁ ସେମାନେ ହୋଇ ଏକଗୋଟି
କରିବେ ଯୁଦ୍ଧ ଏଥି ନାହିଁ ସନ୍ଦେହଟି ।
ସଂଗ୍ରାମକୁ ଉଚିତ ସାମଗ୍ରୀ ଭିଆଅ
ଯାଇଣ କୁରୁକ୍ଷେତ୍ରେ ବସାକୁ କରାଅ ।
ଯେ ରୂପରେ ଶତ୍ରୁ ନ ପାରିବେଟି ଆସି
ସେହି ରୂପରେ ବସା କରିବଟି ବସି
କାଠ ପାଣି ପାଖରେ ରଖାଇଣ ଥିବ ।
ଲୋଡ଼ିବାକୁ ଆଉ କଥାଏଟି ନ ଥିବ
ଶିବିରମାନଙ୍କେ ଥୁଆଇ ଥିବ ଧ୍ୱଜ
ଭାଙ୍ଗିବ ସଭାରେ ସେ ଗିରିଶୃଙ୍ଗ ଓଜ ।
ଖାଇବାକୁ ପାଣିତୁଲରେ ଭୋଜନାଦି
ବସାମାନଙ୍କରେ ତା ଥିବଟି ସମ୍ପାଦି ।
ସୈନ୍ୟ ଯିବାପାଇଁ ହସ୍ତିନା ଦାଣ୍ଡଯାକ
କୁରୁକ୍ଷେତ୍ର ଯାଏ କରାଇ ଦିଅ ଏକ ।
କାଲି ଯିବ ବୋଲିଟି ଟମକ ବଜାଇ
ଡାକୁଆକୁ ବୋଲ ହେ ଦେଇଯାଉ କହି ।
କର୍ଣ୍ଣ ଦୁର୍ଯ୍ୟୋଧନର ବଚନ ମାନିଲେ
ଲୋକ ବରଗାଇ ତା ସେହିକ୍ଷଣି କଲେ ।
ଏହା ଦେଖି ରାଜାଏ ଅଣାଇ ଚନ୍ଦନ
କସ୍ତୁରୀ ବୋଳାଇଲେ ଯେଝା ଅପଘନ ।
ଯୁଦ୍ଧ ରସରେ ସବୁ ନୃପତି ମଜିଲେ
ନାନା ଜାତିର ଅଳଙ୍କାର ଖଞ୍ଜି ହେଲେ ।
ସେ ଅଳଙ୍କାରରେ ସେ ନୃପେ ଏମନ୍ତ
ଦିଶିଲେ ଅନଳେ ସେ ଯେସନେ ପରବତ ।
ଶୁକଳ ରଙ୍ଗପାଗ ଛତ୍ର ସାହିକରି
ଆଣ୍ଟରେ ବାନ୍ଧିଣ ମସ୍ତକେ ଦେଲେ ଭରି ।

ସେ ପାଗମାନେ ଶ୍ୱେତ ରକତ ପଦ୍ମକୁ
ନିନ୍ଦା କରାଇଲେ ଦେଖାଇଣ ଶୋଭାକୁ ।
ସହଜେ ତ ସେ ନରପତିମାନେ ଭେଣ୍ଡା
ଉଠି ଆଣ୍ଟେ ଅଣ୍ଟାରେ ବାନ୍ଧିଲେ ସେ ଖଣ୍ଡା
ଉଲଟ ଶୁଆ ପରି ପଛ ମୋଡ଼ା ଦେଇ
ଅଣ୍ଟା ଉହିଁ ଖଣ୍ଡା ମୁଠିରେ ହାତ ଦେଇ ।
ରହିବାର ଖଣ୍ଡାଟି ହାଣିବାର ସଙ୍ଗେ
ନିଶ ଟେକିଦେଲେ ସେ ନୃପତିଏ ଓଜେ ।
ନ ଗଳିବାକୁ ଦେହେ ଶତ୍ରୁଙ୍କ ନାରାଚ
ଲଗାଇଲେ ସୁନା ଲୁହାର ଯେଂ-କବଚ ।
ସିପାଇଏ ତା ଦେଖି ଅଣାଇଣ ଘୋଡ଼ା
ତା ପୃଷ୍ଠେ ବାଖର ପକାଇ କଲେ ଭିଡ଼ା ।
ମାହୁନ୍ତେ ହାତୀ ଛତାମାନଙ୍କୁ ଅମାରୀ
ପକାଇ ଆଣିଦେଲେ ତିଆରି ଯେ କରି ।
ରଥୀଏ ରଥମାନଙ୍କରେ ନେଇ ଘୋଡ଼ା
ଯୋଉଇଲେ ପାଖମାନଙ୍କେ ହୋଇ ଛିଡ଼ା ।
ପାଲକେ ଢାଲ ଖଣ୍ଡା ତୋମର କରେ କଷି
ଅନୁକୂଳ କଲେ ଯୁଝିବା ବୋଲି ହସି ।
ଏହିରୂପରେ ରଣଯାଗ କରିବାକୁ
ଯିବାର ମନ କଲେ ବହିଣ ହୃଷ୍ଟକୁ ।
ଦୁର୍ଯ୍ୟୋଧନର ସୈନ୍ୟ ସଲିଳ ଆବର୍ତ୍ତ
ରଥ ନାଗ ଅଶ୍ୱ ଯେ ମୀନରେ ସଂଯୁକ୍ତ ।
ଭେରୀ ଶଙ୍ଖ ପରି ଜନଙ୍କୁ ତର୍ଜନ ।
କରଇ ତହିଁ ପର ଜନଙ୍କୁ ତର୍ଜନ ।
ଦୁର୍ଯ୍ୟୋଧନ ଧନର ଭଣ୍ଡାରକୁ ପାଇ
ରତ୍ନାକର ନାମକୁ ଦେଲା ସେ ତୁଲାଇ ।
ଆଭରଣ କବଚ ଲହଡ଼ା ଭିଡ଼ା ପରା
ଦେଖିବା ଜନଙ୍କ ନେତ୍ରକୁ କଲା ଢୋରା ।
ଶସ୍ତ୍ର ଫେନ ପ୍ରାସାଦ ଶୈଳେ ବୃତ ହୋଇ
ହସ୍ତିନା ଦାଣ୍ଡ-ହ୍ରଦମଣ୍ଡି ତୋଷ ବହି ।
ଦ୍ରୋଣ-ଚନ୍ଦ୍ରର ଉଦୟରୁ ଉଚ୍ଛୃଙ୍ଖଳ
ହୋଇ ଲଘୁ ଅଛି ସେଇନ-ଜଳ-କୂଳ ।
ଆହେ ଜନମେଜୟ ଶୁଣ ଯୁଧିଷ୍ଠିର
କୁରୁକ୍ଷେତ୍ର ମଧ୍ୟରେ କରି ବସାଘର ।
ବୋଇଲେ ଆହେ କୃଷ୍ଣ କର୍ଣ୍ଣ ଦୁର୍ଯ୍ୟୋଧନ
ଶକୁନି ଧୃତରାଷ୍ଟ୍ର ଦ୍ରୋଣ ଦୁଃଶାସନ ।
ଭୀଷ୍ମ ଆଦି ରଥୀ ମାନଙ୍କ କଥା ଶୁଣି
ଆସିଲ ତ ହସ୍ତିନାରୁ ହେ ଚକ୍ରପାଣି ।
ବିଦୁର କୁନ୍ତୀ ଆମ୍ଭ ଭାଇଙ୍କ ବିଉର
ହୋଇଅଛି ତ ସବୁ ତୁମ୍ଭଙ୍କୁ ଗୋଚର ।
ଏବେ କେଉଁ କଥାଟି ଆଚରଣ କଲେ
ଭଲ ବୋଲାଇବା ହେ କହ ତାହା ଭଲେ ।
କୃଷ୍ଣ ବୋଇଲେ ମୁହିଁ ସୁଯୋଧନ ଆଗେ
ତିଆରି ଧର୍ମଟି କହିଲି ନାନା ବାଗେ ।
ତେବେ ହେଲେ ତ ପାପୀ ସୁଯୋଧନ ନାହିଁ-
କଲା ତୁମ୍ଭମାନଙ୍କୁ ଭାଗ ଦେବାପାଇଁ ।
କର୍ଣ୍ଣର ବାହୁବଳେ ତୁମ୍ଭମାନଙ୍କର
ପ୍ରାଣନେବା ଇଚ୍ଛା କରିଛି ନିରନ୍ତର ।
ମୋତେ ବନ୍ଧାଇବାକୁ ଉଦ୍‌ଯୋଗ କଲା
ନ ପାରିବାରୁ ସିନା ନିବର୍ତ୍ତି ରହିଲା ।
ଭୀଷ୍ମ ଦ୍ରୋଣ ସେ କଥା ଜାଣି ତୁନି ହେଲେ
ବିଦୁର ଏକା ସୁଯୋଧନେ ନିନ୍ଦା କଲେ ।
ଶକୁନି ଦୁଃଶାସନ କର୍ଣ୍ଣ ବଚନକୁ
କି କହିବା ତା କିସ ପଉର ଆମ୍ଭଙ୍କୁ ।
ସବୁପାପ ଆଚରଣଟି ସୁଯୋଧନ
କରୁଅଛି ଯୁଦ୍ଧରେ ନେବାକୁ ଜୀବନ ।
ରାଜ୍ୟ ଛାଡି ଆମ୍ଭେ ତ ପ୍ରୀତି ନ କରିବା
ଆଉ କିମ୍ବା ଗୁଡ଼ାଏ ବସିଣ ବାଢ଼ିବା ।
କୃଷ୍ଣଙ୍କର ମୁଖରୁ ଶୁଣିଣ ଏ ବାଣୀ
ନ କହି କଥା ତୁନି ହେଲେ ନୃପଶ୍ରେଣୀ ।
ଯୁଧିଷ୍ଠିର ରାଜାମାନଙ୍କର ହୃଦୟ
ଜାଣି ବୋଇଲେ ଅହେ ଯୁଦ୍ଧ ମୋର ପ୍ରିୟ ।
ଏହା ଶୁଣି ପାଣ୍ଡବସେନା ହୃଷ୍ଟ ହେଲେ
ଦେହମାନଙ୍କୁ ପୁଷ୍ଟ କରିଣ ବସିଲେ ।
ପୁଣି ଜ୍ଞାତିବଧ ବିଉରି ଯୁଧିଷ୍ଠିର
ଭୀମ ଅର୍ଜୁନଙ୍କୁ କହିଲେ ଏ ଉତ୍ତର ।
ବହୁତ ଯତ୍ନ କଲୁଁ ହୋଇବାକୁ ପ୍ରୀତି
ସେ ନୋହି ବଳେ ହେଲା ଆସିଟି ଅପ୍ରୀତି ।
ରାଜ୍ୟପାଇଁ କିରୂପେ ଭୀଷ୍ମ ଦ୍ରୋଣପ୍ରାଣ
ନେବା କହ ଆହେ ବିନ୍ଧିଣ ତୀକ୍ଷ୍ଣବାଣ ।
ଅରଜୁନ ବୋଇଲେ ଆହେ ଯୁଧିଷ୍ଠିର
ଶୁଣିଲଟିକି କୃଷ୍ଣ ମୁଖୁ କୁନ୍ତୀଗିର ।

ଆଉ ଯାହାଟି ବସି ଭାଳୁଅଛ ତୁମ୍ଭେ
ଭଲ କରିଣ ତାହା ଘେନୁ ନାହିଁ ଆମ୍ଭେ ।
ପୁଣି ତୁମ୍ଭ ଦାଦି ବିଦୁର କୁନ୍ତୀ ପରି
କହିଛନ୍ତି କହୁଅଛନ୍ତି ନରହରି ।
କୃଷ୍ଣ ଶୁଣିଣ ଅରଜୁନଙ୍କ ବଚନ
ହସି ଅର୍ଜୁନଙ୍କୁ ବୋଇଲେ ଧନ୍ୟ ଧନ୍ୟ ।
ଏଥିରୂପେ ବିଚାର କରି ପାଣ୍ଡୁସୁତେ
ରଜନୀ ଅର୍ଦ୍ଧକାଳେ ଶୋଇଲେ ସମସ୍ତେ ।
ସେ ରଜନୀ ଶେଷରେ ଦୁର୍ଯ୍ୟୋଧନ ରାଜା
କରିବା ଯୁଦ୍ଧ ବୋଲି ଆନନ୍ଦ କରି ମଜ୍ଜା ।
ଏଗାର ଅକ୍ଷୌହିଣୀ ସେନା ଡକାଇଣ
ଉତ୍ତମ ମଧ୍ୟାଧମ ବାଛିଲେ ଆପଣ ।
ରଥମାନ ସବୁ ତିଆରି କରାଇଲେ
ଧ୍ୱଜ ପତାକାରେ ତାହାକୁ ମୁଣ୍ଡାଇଲେ ।
ଶର ଶକ୍ତି ଗଦା ଯେ ମୂଷଳ ପରିଘ
ଧନୁ ତୂଣ ଖଣ୍ଡା ଢାଲ ଯେ ଫରିଘ ।
ରଥର ମଧ୍ୟରେ ଏମାନ ଗଦାଗଦା
ରଖାଇଲେ ଶତ୍ରୁଙ୍କୁ କରିବାକୁ ପଦା ।
ବାଲଝିଙ୍କା ଯନ୍ତ୍ର ସଶୂଳ ଭିନ୍ଦିପାଳ
ବିଷଯୁକ୍ତ ଶର ଯେ କରତ ଲାଙ୍ଗୁଳ ।
ମାଳପା ଘିଅ ଗୁଡ଼ ବାଲି ଜଳୋପଳ
ସର୍ପଘଟ ଯେ ନିଆଁ ଉମ୍ବାଇ ଲାଙ୍ଗଳ ।
କୁରାଢ଼ ବାରିସି ତ ଶୃଙ୍ଗ ଲେଣ୍ଡି କୋଢ଼ି
ବାଘଚମ ହାତୀଚମ ଯେ କୀଳା ପୋଡ଼ି ।
ଏମାନଙ୍କୁ ମଧ୍ୟ ରଥୀଏ ଦୁର୍ଯ୍ୟୋଧନ
ବୋଲେ ରଖିବାକୁ ରଥରେ ଦେଲେ ସ୍ଥାନ ।
ଘୋଡ଼ା-ବିଦ୍ୟା-ନିପୁଣ ଯେତେ ଲୋକ ଥିଲେ
ସାଞ୍ଜୁ ଭରି ସାରଥି ହୋଇ ବାହାରିଲେ ।
ରଥ ଦୁଇ ପାଶରେ ଦିଓଟି ସାରଥି
ଜଗାଇଲେ ଶତ୍ରୁଙ୍କୁ ଦେବାପାଇଁ ମନ୍ତି ।
ଏ ବାହାରେ ରଥ ଗୋଟିକୁ ଦୁଇ ଲୋକ
ଜଗିଲେ ଯାଇ ଧରି କରରେ କାର୍ମୁକ ।
ଏହିରୂପେ ଅୟୁତ ଅୟୁତ ରଥକୁ
ଜଗାଇଲେ ଯେ ଦୁର୍ଯ୍ୟୋଧନଟି ବୀରଙ୍କୁ ।
ହାତୀ ଗୋଟିକରେ ତ ସାତଟି ଲେଖାଏଁ
ଜଗିଲେ ଯେଉଁରୂପେ ଶୁଣ ତାହା ରାୟେ ।
ଅଙ୍କୁଶଧାରା ଧନୁଧରା ଖଣ୍ଡାଧରା
ଦୁଇ ଦୁଇ ଜଗିଲେ ପ୍ରକାଶି ଦେହତୋରା ।
ତ୍ରିଶୂଳଧରା ଲୋକ ହାତୀରେ ବସିଲା
ମାହୁନ୍ତର ପୃଷ୍ଠଦେଶକୁ ସାହା ହେଲା ।
ସୁନାର ଅଳଙ୍କାର ମଣ୍ଡନ କରାଇ
ଅୟୁତାୟୁତ ଘୋଡ଼ା ଚଢ଼ିଲା ସିପାଇ ।
ପାଇକେ ନୋଳି ମାଳି ଭରି କର୍ଣ୍ଣ ଗଳେ
ମଣ୍ଡି ହେଲେ ହସ୍ତିନା ଦାଣ୍ଡଯାକ ଢାଳେ ।
ରଥୀ ଗୋଟିକରେ ଦଶଗୋଟି ହାତୀ ।
ହାତୀ ଗୋଟିକରେ ଦଶଗୋଟି ସପତି
ସପତି ଗୋଟିକରେ ପତ୍ତି ଦଶ ଜାଣ
ରହିଲେ ଜଗିକରି ଧରି ଧନର୍ବାଣ ।
ଏ ବାହାରେ ରଥ ଗୋଟିକରେ ପଞ୍ଚାଶ
ହାତୀ ଜଗି ରହିଲେ ନୋହିବାକୁ ନାଶ
ହାତୀ ଗୋଟିକରେ ଯେ ସାତଗୋଟି ଘୋଡ଼ା
ଘୋଡ଼ାକେ ଏକ ଊଣା ପଦାତି ଚରିଯୋଡା ।
ଏହିରୂପେ ଏଗାର ଅକ୍ଷୌହିଣୀ ସୈନ୍ୟ
ତିଆର କଲେ ଧୃତରାଷ୍ଟ୍ରଙ୍କ ନନ୍ଦନ ।
ପାଣ୍ଡବେ ମଧ୍ୟ କୁରୁମାନଙ୍କ ପରାୟେ
ସେନା ରଖିଲେ ଆହେ ଜନ୍ମେଜୟ ରାୟେ ।
କୁରୁଙ୍କର ଏଗାର ପାଣ୍ଡବଙ୍କ ସାତ
ମିଶିଣ ଅକ୍ଷୌହିଣୀ ଅଠର ଗଣିତ ।
ପଞ୍ଚାବନ ପଦାତିରେ ହୁଅଇ ପତ୍ତି
ପତ୍ତି ତିନିଗୁଣରେ ସେନାମୁଖ ଖ୍ୟାତି ।
ତିନି ସେନା ମୁଖରେ ଗୁଳ୍ମ ନରରାଣ
ତିନୋଟି ଗୁଳ୍ମରେ ହୁଅଇଟି ଗଣ ।
ଏରୂପେ ଦୁର୍ଯ୍ୟୋଧନ ସୈନ୍ୟର ଗଣ୍ଡୁଟି
କହି ନ ପାରିବି ହୋଇଲେ କୋଟି କୋଟି ।
କୃପ ଶଲ୍ୟ ଯେ ଜୟଦ୍ରଥ ସୁଦକ୍ଷିଣ
ଭୂରିଶ୍ରବା ବାହ୍ଲିକ ଶକୁନି କର୍ଣ୍ଣ ଦ୍ରୋଣ ।
କୃତବର୍ମା କାମ୍ବୋଜ ଅଶ୍ୱତ୍ଥମା ବୀର
ସେନାପତି ହେଲେ ସେ ସୈନ୍ୟମାନଙ୍କର ।
ସେନାପତିଙ୍କର ଯେ ବୀରତା ଶୁରତା
ଦେଖି ସୈନ୍ୟ ଲୋକେ ଛାଡ଼ିଲେ ମନୁ ଚିନ୍ତା ।
ଏଥୁ ଅନନ୍ତରେ ସେ ଦୁର୍ଯୋଧନ ରାୟେ
ନୃପଙ୍କ ସଙ୍ଗେ ଘେନି ପଡ଼ି ଭୀଷ୍ମ ପାଏ ।

ବୋଇଲେ ସେନାପତି ବିନା ପିତାମହ
କେଉଁଠାରେ ଥାଟ ରହିଛି ମୋତେ କହ ।
ଶୁଣିଥାଇଁ ପୂରୁବେ ଦୁଇ ବର୍ଣ୍ଣ ଧରି
ଦ୍ୱିଜେ ଗଲେ ହଇହୟଙ୍କୁ ଯୁଦ୍ଧ କରି ।
ହଇହୟମାନେ ହୋଇଣ ଏକ ଗୋଟି
ବ୍ରାହ୍ମଣେ ଜିଣିଲେ ସରଜି ଶରବୃଷ୍ଟି ।
ବ୍ରାହ୍ମଣେ ତାହା ଦେଖି ଛାଡ଼ିଦେଲେ ଲାଜ
କ୍ଷତ୍ରିୟଙ୍କୁ ପୁଚ୍ଛିଲେ ହୋଇଣ ନିସ୍ତେଜ ।
ତୁମ୍ଭେ କାହିଁପାଇଁ କି ଜିଣିଲ ଆମ୍ଭଙ୍କୁ
କହ ତ ସେ କାରଣ ପୁଚ୍ଛୁଛୁ ତୁମ୍ଭଙ୍କୁ ।
ହଇହୟ ବୋଇଲେ ସେନାପତି ବିନା
ଯୁଦ୍ଧ କଲେ ଲୋକ ହୁଅନ୍ତି ଭଗ୍ନମନା ।
ଏହା ଶୁଣି ବ୍ରାହ୍ମଣେ ପୁଣି ହୋଇ ଗୋଟି
ବ୍ରାହ୍ମଣଟିଏ କରି ସୈନ୍ୟେ ନାୟକୁଟି ।
ହଇହୟମାନଙ୍କୁ ଯୁଦ୍ଧରେ ଯୋଟିଲେ
ତାହାଙ୍କର କରି ସେ ଯଶୁଟିକି ନେଲେ ।
ଏହା ଜାଣି କହୁଛି ହିତକାରୀ ଶୂର
ସେନାପତି ହେଲେ ହାରନ୍ତି ଶତ୍ରୁନର ।
ଧର୍ମବଳ ଯଶେ ମଣ୍ଡିଛ ତୁମ୍ଭେ ମହୀ
ବାହାର ମୋ ସୈନ୍ୟରେ ସେନାପତି ହୋଇ
ଯେରୂପେ ଦେବସୈନ୍ୟ କୁମାର ପାଳନ୍ତି
ସେରୂପେ ମୋ ସୈନ୍ୟ ପାଳ ହେ ମହାମତି ।
ଆମ୍ଭଙ୍କୁ ତୁମ୍ଭେ ଯେବେ ସମରେ ରଖିବ
ଇନ୍ଦ୍ର ପରି ଲୋକ ଯୁଝିଲେ କିସ ହେବ ।
ଆପଣ ତ ଆଗେ ବାହାର ରଥ ଚଢ଼ି
ବାହରିବୁଁ ପଛେ ତୁମ୍ଭଙ୍କୁ ଆମ୍ଭେ ବେଢ଼ି ।
ଭୀଷ୍ମ ବୋଇଲେ ଯା କହିଲ ଦୁର୍ଯ୍ୟୋଧନ
ଶୁଣିଲି ମୁହିଁ ତାହା ଡେରି ଦେଇ କାନ ।
ଯେଉଁ ରୂପରେ ତୁମ୍ଭେ ସେରୂପେ ପାଣ୍ଡବେ
ତାଙ୍କ ଶ୍ରେୟ କହି ଯୁଝିବି ତୁମ୍ଭ ଲାଗେ ।
ପୂର୍ବରୁ ତ ମୁହିଁ କହିଅଛି ତୁମ୍ଭଙ୍କୁ
ତୁମ୍ଭପାଇଁ ଛାଡ଼ିବି ମୁଁ ଦିନେ ପ୍ରାଣକୁ ।
ସେ ସମୟ ଆସ ହୋଇଲା ଉପଗତ
ମୋହ ପରା ଲୋକ କି ହୋଇବ ନିସତ ।
ଅର୍ଜ୍ଜୁନ ବିନା ମୋତେ ଯୁଦ୍ଧେ ଯୋଟିବାକୁ
ଦେଖିନାହିଁ ମୁହିଁଟି ମହୀରେ ବୀରଙ୍କୁ ।

ସବୁ ଦିବ୍ୟ ଅସ୍ତ୍ରରେ ପଣ୍ଡିତ ସେ ଅଟେ
ନ ଯୁଝିବେ ମୋତେ ସେ ଜାଣୁଛି ମୁଁ ଆଣ୍ଟେ ।
ମୁଁ ମନ କଲେ ଦେବ ଅସୁର ମନୁଷ୍ୟ
କ୍ଷଣମାତ୍ରକରେ ପାରଇଁ କରି ନାଶ ।
ପାଣ୍ଡୁପୁତ୍ର ସହିତେ ନିଷ୍ଠୁର ଯୁଦ୍ଧଟି
ନ କରିବ ଜାଣିଥା ଗାନ୍ଧାରୀବେଟାଟି ।
ତୋହପାଇଁ ଅବଶ୍ୟ ଧରିଅଛି ଧନୁ
ନିତି ମାରିବି ମୁଁ ଅୟୁତେ ରାଜସୂନୁ ।
କର୍ଣ୍ଣ ମନେ ମନେ ଯେ ଯୁଦ୍ଧବିଶାରଦ
ହୋଇ ମୋ ତୁଲେ ନିତି କରୁଥାଇ ବାଦ ।
ତାହାଙ୍କୁ ବୋଲ ଆଗେ କରେ ଧନୁ ଧରି
ପାଣ୍ଡବଙ୍କୁ ମାରିଣ ଆଣୁ ଜୟଶିରୀ ।
ମୁହିଁ ତ ବୁଢ଼ା ହୋଇ ତୁମ୍ଭ ପାଶେ ଅଛି
ଯୁଦ୍ଧ ନ କରିବି କି ଗାନ୍ଧାରୀଙ୍କ ବଛି ।
କର୍ଣ୍ଣ ବୋଇଲେ ହେ ଜୀବନେ ଭୀଷ୍ମ ଥିଲେ
ଯୁଦ୍ଧ ମୁଁ କରିନାହିଁ ଅର୍ଜ୍ଜୁନଙ୍କ ତୁଲେ ।
ଭୀଷ୍ମ ମଲା ଉତ୍ତାରୁ ଅର୍ଜ୍ଜୁନଙ୍କ ପ୍ରାଣ
ଦେଖିବ ଘେନିଯିବି ବିନ୍ଧି ତୀକ୍ଷ୍ଣ ବାଣ ।
ତଦନ୍ତେ ବସାଇ ଭୀଷ୍ମଙ୍କୁ ସେନାପତି
ଅଭିଷେକ କରିଲେ ଗାନ୍ଧାରୀ ସନ୍ତତି ।
ଦୁର୍ଯ୍ୟୋଧନ ଆଜ୍ଞାରେ ସସ୍ରେ ଭେରୀ ଶଙ୍ଖ
ବାଜିଣ କରାଇଲା ବୀରଙ୍କର ସୁଖ ।
ବୀରଙ୍କ ସିଂହାସନେ ଆକାଶ ସେକାଳେ
ପୂରିଗଲା ପଳାଇଲେଟି ଲୋକପାଳେ ।
ଆକାଶରୁ ରକତ ତୁଲରେ ଖପରା
ପଡ଼ିଣ ପୂରିଲା ହସ୍ତିନା ବସୁନ୍ଧରା ।
ଶେଷଙ୍କର ଶିର ଘେନିଣ ଯିବା ଚଳି
ପଡ଼ିବା ପରି ତଳେ ହେଲା ମହୀଆଳୀ ।
ଭୀଷ୍ମେ ସେନାପତି କରାଇ ଦୁର୍ଯ୍ୟୋଧନ
ଦ୍ୱିଜଙ୍କୁ ବସ୍ତ୍ର ଧନ ରତ୍ନ ଦେଇ ଦାନ ।
ଏହା ବାହାରେ ସ୍ୱସ୍ତି ବାଚକ କରାଇ
ସୈନ୍ୟ ଘେନି କୁରୁକ୍ଷେତ୍ରରେ ହେଲେ ଯାଇଁ ।
କର୍ଣ୍ଣ ଦୁର୍ଯ୍ୟୋଧନ ତ ରଥରୁ ଓହ୍ଲାଇ
ମପାଇଲେ ଭୂମି ସଇନଙ୍କର ପାଇଁ ।
ବିଷମ ସ୍ଥାନମାନ ଦୂରକରି ଦେଲେ
ସମସ୍ଥାନମାନଙ୍କେ ସଇନ ରଖିଲେ ।

ଯେଉଁରୂପେ ହସ୍ତିନା ଦେଶେ ତାଙ୍କ ଘର
ସେ ରୂପେ କରାଇଲେ ସେହିଠାରେ ପୁର ।
ଜନ୍ମେଜୟ ବୋଇଲେ ବଇଶମ୍ପାୟନ
ଶୁଣ ଯା ପଚ୍ଛରୁଛି ଦେଇକରି ମନ ।
ବଳରେ ମଘବାନ ତେଜରେ ତପନ
ଗାମ୍ଭୀର୍ଯ୍ୟରେ ସମୁଦ୍ର ସ୍ଥୈର୍ଯ୍ୟେ ହିମବାନ ।
କ୍ଷମାରେ ବସୁନ୍ଧରା ବୁଦ୍ଧିରେ ବୃହସ୍ପତି
ଔଦାର୍ଯ୍ୟ କଥାରେ ସାକ୍ଷାତେ ପ୍ରଜାପତି ।
ଏରୂପେ ଯେଉଁ ଭୀଷ୍ମ ତାଙ୍କୁ ଦୁର୍ଯ୍ୟୋଧନ
କଲା ତ ନିଜ ସେନାଯାକରେ ମଣ୍ଡନ ।
କୃଷ୍ଣଙ୍କ ତୁଲେ ପାଣ୍ଡୁ ସୁତେ ଏହା ଶୁଣି
କି ବିଚ୍ଛର କଲେ କହ ତ ଋଷିମଣି ।
ବଇଶମ୍ପାୟନ ବୋଇଲେ ନରବର
ଭୀଷ୍ମଙ୍କ ଅଭିଷେକ ଶୁଣି ଯୁଧିଷ୍ଠିର ।
ଭାଇଙ୍କି ଡକାଇ ବୋଇଲେ ପିତାମହ
ଆଗ ତ ଯୁଝିବେଟି ସାବଧାନ ହୁଅ ।
ଆମ୍ଭ ସାତ ଅକ୍ଷୌହିଣୀରେ ସେନାପତି
ସାତ ଜଣ ବାଛି କରି ଆହ ଝଟତି ।
କୃଷ୍ଣ ଶୁଣି ବୋଇଲେ ଏହି କଥା ଆମ୍ଭେ ।
ଭାବୁ ତ ଥିଲୁଁ ଆଗେ କହିଲ ତ ତୁମ୍ଭେ ।
ଧୃଷ୍ଟଦ୍ୟୁମ୍ନ ଶିଖଣ୍ଡୀ ଜରାସନ୍ଧଋଟ
ସାତ୍ୟକି ଧୃଷ୍ଟକେତୁ ଦ୍ରୁପଦ ବିରାଟ ।
ଏହି ସାତଙ୍କୁ ସାତ ଅକ୍ଷୌହିଣୀଙ୍କରେ
ସେନାପତି କଲେ ଗୋଟିଏ ଗୋଟିକରେ ।
ସାତ ଅକ୍ଷୌହିଣୀଯାକରେ ଧୃଷ୍ଟଦ୍ୟୁମ୍ନ
ସେନାପତି ହେଲେ ହେ ଜନ୍ମେଜୟ ଜାଣ ।
ଏ ସାତଙ୍କରେ ଅରଜୁନ ପତି ହେଲେ
ଅର୍ଜୁନଙ୍କର ପତି ଶ୍ରୀପତି ହୋଇଲେ ।
ଏହି ସମୟରେ ପାଣ୍ଡବଙ୍କର ପାଶେ
ରେବତୀଙ୍କ ରମଣ ପ୍ରବେଶିଲେ ତୋଷେ ।
ତାଙ୍କ ପାଶେ ପ୍ରଦ୍ୟୁମ୍ନ ଆଦି କୃଷ୍ଣ ସୁତେ
ରହିଥିଲେ ଘେନିଣ ଯଦୁଙ୍କୁ ସଙ୍ଗତେ ।
ପାଣ୍ଡବେ କୃଷ୍ଣ ତୁଲେ ଘେନି ନୃପଶ୍ରେଣୀ
ଦେଖି ବଳରାମଙ୍କୁ ଉଠିଲେ ସେକ୍ଷଣି ।
କୃଷ୍ଣଙ୍କ ତୁଲେ ପାଣ୍ଡୁ ନନ୍ଦନ ପ୍ରଣାମ
କରିଣ ବଢ଼ାଇଲେ ରାମଙ୍କର ପ୍ରେମ ।
ବଳଦେବ ଦ୍ରୁପଦ ବିରାଟ ପାଦରେ
ନମସ୍କାର କଲେ ଅତ୍ୟନ୍ତ ପ୍ରମୋଦରେ ।
ଯୁଧିଷ୍ଠିର ବଳରାମଙ୍କ କର ଧରି
ବସିଲେ ନିଜ ଆସନରେ ଯାଇକରି ।
ସେକାଳେ ଶ୍ରୀକୃଷ୍ଣଙ୍କୁ ଚ୍ଛହିଁ ବଳରାମ
କହିଲେ ହସି ହସି ବଚନ ଉତ୍ତମ ।
ଦାରୁଣ ଯୁଦ୍ଧ ଆସି ପ୍ରବର୍ତ୍ତିବା କାଳ
ହେଉଅଛି କ୍ଷତ୍ରିୟେ ଯିବେ ଯମଆଳ ।
ଏ ଯୁଦ୍ଧରୁ ସମସ୍ତେ ବଞ୍ଚିବେଟି ଯେବେ
ତୁମ୍ଭଙ୍କୁ ଆସି ପୁଣି ଦେଖିବି ମୁଁ ତେବେ ।
କୃଷ୍ଣଙ୍କ ପୁନଃ ପୁନଃ କରି ମୁଁ କହିଲି
ତେବେ ହେଲେ ତାଙ୍କୁ ବୁଝାଇ ନ ପାରିଲି ।
କୁରୁ ପାଣ୍ଡୁସୁତେ ତ ବନ୍ଧୁରେ ଆମ୍ଭର
ସମାନ ଅଟନ୍ତି ଜାଣ ହେ ଯୁଧିଷ୍ଠିର ।
ତୁମ୍ଭ ଭାଇ ଅରଜୁନଙ୍କ ପୀରତିରେ
ଆସିଲେଟି ଶ୍ରୀକୃଷ୍ଣ ଯୁଝିବା ମତିରେ ।
କୃଷ୍ଣ ଯେବେ ଅଛନ୍ତି ତୁମ୍ଭ ପାଶେ ରହି
ଜାଣୁଛ କୌରବେ ଭେଟିବେ ପ୍ରେତସାଇଁ ।
ଭୀମ ଦୁର୍ଯ୍ୟୋଧନ ଦୁହେଁ ମୋହର ଶିଷ୍ୟ
ଦୁହିଁଙ୍କି କରି ନ ପାରଇ ମୁଁ ନିରାଶ ।
ତୁମ୍ଭ ତାହାଙ୍କର ଯୁଦ୍ଧରେ ପିଟାପିଟି
ଦେଖି ନ ପାରିବ ମୋହର ନୟନଟି ।
କୃଷ୍ଣଙ୍କୁ ଲଙ୍ଘିବାକୁ ସାମର୍ଥ୍ୟ ମୋହର
ନାହିଁଟି ଆହ ଯୁଧିଷ୍ଠିର ନରବର ।
ତୁମ୍ଭ ଯୁଦ୍ଧ ସରିବାଯାଏ ତୀର୍ଥ କରି
ଯାଉଅଛି ଜାଣ ପାଣ୍ଡବ ଦଣ୍ଡଧାରୀ ।
ଏହା କହିଣ ରାମ ପକାଇ ନିଃଶ୍ୱାସ
ତୀର୍ଥଯାତ୍ରା କରି ଗଲେ ଯେ ବହି ତୋଷ ।
ଏକାଳେ କୁରୁପାଣ୍ଡୁ ଯୁଦ୍ଧ କର୍ଣ୍ଣେ ଶୁଣି
ରୁକ୍ମିଣୀଙ୍କର ଭାଇ ରୁକ୍ମ ବୀରମଣି ।
ଆସିଲେ ପାଣ୍ଡବଙ୍କୁ ହୋଇବାକୁ ସାହା
ହୋଇକରି କେବଳ ଧନୁଶର ବାହା ।
ଗନ୍ଧମାଦନବାସୀ କିଂପୁରୁଷବର
ଶିଷ୍ୟ ଅଟନ୍ତି ସେହୁ ଜାଣ ନରବର ।
ଶାରଙ୍ଗ ଗାଣ୍ଡୀବ ସମାନ ତାଙ୍କୁ ଧନୁ
ସେ ଶବଦ ଶୁଣିଲେ କମ୍ପେ ଶତ୍ରୁ ତନୁ ।

ବରୁଣଙ୍କ ସମ୍ବନ୍ଧୀ ଅଟଇ ଗାଣ୍ଡୀବ
ବିଜୟ ଧନୁକୁ ବହନ୍ତି ଇନ୍ଦ୍ରଦେବ ।
ଶାରଙ୍ଗଧନୁ ବିଷ୍ଣୁ କରଦେଶେ ଥୋଇ
ଦିଅଇ ସୁର ଅସୁରଙ୍କ ବଳ ଦହି ।
ଶାରଙ୍ଗ ଗାଣ୍ଡୀବ ତ କୃଷ୍ଣ ଅରଜୁନ
ବହି ପର ସଇନ କଲେ ମରଦନ ।
କିଂପୁରୁଷଠାରୁ ଯେ ବିଜୟ ଧନୁଟି
ରୁକ୍ମୀପାଇ ହେଲେ ଜଗତେ ବିଜୟୀଟି ।
ପାଣ୍ଡବଙ୍କଠାକୁ ତ ଅକ୍ଷୌହିଣୀ ସେନା
ଘେନିକରି ଆସିଲେ ରୁକ୍ମିଣୀ ମହାମନା ।
ତାଙ୍କର ଆସିବାର ଶୁଣି ଯୁଧିଷ୍ଠିର
ପାଛୋଟି ଗଲେ ସଙ୍ଗେ ଘେନି ସୈନ୍ୟବର ।
ପାଣ୍ଡବଙ୍କେ ପୂଜିତ ହୋଇ କୃଷ୍ଣ ଶଳା
ପାର୍ଥଙ୍କୁ କହିଲେ ବୀରଙ୍କୁ କରି ହେଳା ।
ତୁମ୍ଭେମାନେ କିଛି ନ ଡର ମୁହିଁ ଅଛି
କୁରୁଙ୍କୁ ମାରି ରାଜ୍ୟ ତୁମ୍ଭଙ୍କୁ ଦେଉଛି ।
ଭୀଷ୍ମ ଦ୍ରୋଣ କୃପ ଯେ କର୍ଣ୍ଣ ସୋମଦତ୍ତ
ଯାଉଛି ମୁହିଁ ରଣେ କରିଦେବି ହତ ।
ତୁଚ୍ଛା ତୁମ୍ଭେ ସୈନ୍ୟଗୁଡାଏ ଘେନି ଯୁଝି
ନ ଶୁଅ ପାଇକରି ରଣଭୂମି ମଝି ।
ଅର୍ଜୁନ ଏହା ଶୁଣି ଅଳପ ହସିଲେ
ହେ ସଖେ କିସ କହୁଅଛଟି ଭାଷିଲେ ।
ଘୋଷଯାତ୍ରାରେ ମୁହିଁ ଗନ୍ଧର୍ବଙ୍କ ତୁଲେ
ଯୁଝିଥିଲି କେହି ତ ନ ଥିଲେ ମୋ ତୁଲେ ।
ଦେବତାମାନଙ୍କୁ ମୁଁ ଇନ୍ଦ୍ର ତୁଲେ ଜିଣି
ଖାଣ୍ଡବ ପୋଡ଼ାଇଲି ଅଗ୍ନିଙ୍କିଟି ଆଣି ।
କାଳକେୟ ନିବାତ କବଚଙ୍କୁ ରଣ
ଏକା କରି ମୁହିଁ ଯେ ଘେନିଲି ପରାଣ ।
ବିରାଟଙ୍କର ପୁରେ ଗୋଗ୍ରହେ କୁରୁଙ୍କୁ ।
ଦେଲି ମୁହିଁ କାଣ୍ଡରେ ନବମ ଦଶାକୁ ।
ମୋହପରି ଲୋକ କୁରୁକୁଳରେ ଜାତ
ହୋଇ କହ ତ କେହି ହୋଇବ ନିସତ ।
କୃଷ୍ଣ ତୁଲେ ଗାଣ୍ଡୀବ ଧନୁ ମୋର ସାହା
ହୋଇଛି କି କରିବା ନ ପାରେ ମୋ ବାହା ।
ଇନ୍ଦ୍ରାଦି ଦେବେ ମୋତେ ଦେଇଛନ୍ତି ଅସ୍ତ୍ର
ଖୋଳି ପକାଇବାକୁ ଶତ୍ରୁଙ୍କର ଗାତ୍ର
ମୁହିଁ ତ ପଡ଼ିନାହିଁ ଶତ୍ରୁଙ୍କର ଭୟେ
ଏଠାରେ ରହିବା ତୁମ୍ଭର ନ ଯୋଗାଏ ।
ଅର୍ଜୁନର ମୁଖୁଁ ଶୁଣି ଏ ବଚନଟି
ରୁକ୍ମ ଉଠିଗଲେ କରିଣ ତାଙ୍କୁ ପିଠି ।
ପାଣ୍ଡବଙ୍କୁ କହିବା ପ୍ରାୟେ ଦୁର୍ଯ୍ୟୋଧନ
ଆଗେ ବସି ରୁକ୍ମ କହିଲେ ଏ ବଚନ ।
ଦୁର୍ଯ୍ୟୋଧନ ବୋଇଲେ ତୁମ୍ଭର ବଳକୁ
ମୁଁ ଆଶା କରି ନାହିଁ ଯାଅ ହେ ଘରକୁ ।
ରୁକ୍ମ ତାହା ଶୁଣିଣ ଚଢ଼ି ରଥବର
ପରବେଶ ହୋଇଲେ ଭୋଜ କଟକର ।
ଜନ୍ମେଜୟ ବୋଇଲେ କୁରୁକ୍ଷେତ୍ରେ ସେନା
ପକାଇ କୁରୁଏ କି କଲେ କହ କିନା ।
ବଇଶମ୍ପାୟନ ବୋଇଲେ ଦୁର୍ଯ୍ୟୋଧନ
କୁରୁକ୍ଷେତ୍ରେ ଯାଇଁ କରନ୍ତେ ବାସସ୍ଥାନ ।
ଧୃତରାଷ୍ଟ୍ର ରାଜା ଡକାଇ ସଞ୍ଜୟଙ୍କୁ
ପଚାରିଲେ ସୈନ୍ୟଙ୍କ ବ୍ୟବସ୍ଥା କଥାକୁ ।
ଏ ବାହାରେ ବୋଇଲେ ଜାଣୁ ଜାଣୁ ମୁହିଁ
ମୋ ନାଶ ମୁଁ କଲିଟି କାର ଦୋଷ ନାହିଁ ।
ଦୁର୍ଯ୍ୟୋଧନ ତ ପିଲା ହୋଇକରି ପ୍ରୌଢ଼ା
ପ୍ରାୟେ ହେଲା ଯେଣୁ ହେଲି ମୁଁ ଅନ୍ଧ ବୁଢ଼ା ।
ଯୁଦ୍ଧରେ ମରିବାର କ୍ଷତ୍ରିୟର ଧର୍ମ
ଏଥିକି କି ଭାଳି ବସିବା ଧରି କର୍ମ ।
ସଞ୍ଜୟ ବୋଇଲେ ପୁତ୍ରଙ୍କୁ କିପାଁ ବୋଲ
ବୁଢ଼ା ହୋଇ ଥାଇ ଆପଣ ସବୁ କଲ ।
ଦୁଷ୍ଚରିତ କରି ଯେ କରଇ ଅଶୁଭ
ଦଇବ ତାକୁ କେବେ ନୁହଇଟି ଶୁଭ ।
ଜାଣ ଯାର ମୁଖରୁ ଛାଡ଼ିଥାଏ ଲାଜ
ନିନ୍ଦିତ କର୍ମ ଆଚରେ ସେ ମହାରାଜ
ଧର୍ମକୁ ଚାହିଁ ପାଣ୍ଡୁସୁତେ ହୋଇ ଦୁଃଖୀ
ବନ ମଧ୍ୟେ ରହିଲେ ରାଜ୍ୟକୁ ଉପେକ୍ଷି ।
ସ୍ଥିର ହୋଇ ସବୁ ଜନଙ୍କର ସଂହାର
ଶୁଣ କର୍ଣ୍ଣ ଡେରି ମୋଠାରୁ ନରବର ।
ଶୁଭ ଯେ ଅଶୁଭରେ ଈଶ୍ୱର କାରଣ
କାଠ କଣ୍ଢାଇଟି ପୁରୁଷ ନାରାୟଣ ।
ଏହିଠାରେ ସରିଲା ଅଭିନିରିଯାଣ
କହଇ କୃଷ୍ଣସିଂହ ନରକୁଳ ରାଣ ।

❑

## ଶକୁନିପୁତ୍ର ଉଲୁକଙ୍କ ଦୌତକାର୍ଯ୍ୟ

ଏ ଅନ୍ତେ ସଞ୍ଜୟ କହିଲେ ଦୁର୍ଯ୍ୟୋଧନ
କରାଇଲେ କୁରୁକ୍ଷେତ୍ରେରେ ଗଡ଼ମାନ ।
ଶକୁନି ଦୁଃଶାସନ କର୍ଣ୍ଣଙ୍କୁ ବସାଇ
ଯୁଝିବା କଥା ହେଲେ ହୃଦୟ ମିଶାଇ ।
ଶକୁନି ପୁଅ ଉଲୁକକୁ ଦୁର୍ଯ୍ୟୋଧନ
ଡକାଇ ଅଣାଇଣ କହିଲେ ବଚନ ।
ଉଲୁକ ମୋ ବଚନେ ପାଣ୍ଡବଙ୍କ ପାଶେ
ଏହିକ୍ଷଣି ଯାଅ ନ ରହି ଏହି ବେଶେ ।
ବୋଲିବ ତୁମ୍ଭେ ଏହା ପାଣ୍ଡବମାନଙ୍କୁ
ପୂର୍ବେ ତ କହିଥିଲ ତୁମ୍ଭେ ସଞ୍ଜୟଙ୍କୁ ।
ଯୁଦ୍ଧକୁ ଆମ୍ଭେମାନେ ହେଲୁନି ତିଆର
ଦୁର୍ଯ୍ୟୋଧନ ନୃପେ କହିବା ଧନୁର୍ଦ୍ଧର ।
ଏବେ ସେ କାଳଟି ହେଉଛି ଉପଗତ
ତତ୍‌କାଳ କରନ୍ତୁ ନୋହିଣ ନିସତ ।
ଏ ବାହାରେ ବୋଲିବ ହୋଇ ଧର୍ମରାଜ
ଅଧର୍ମ ଆଚରୁଛ ଛାଡ଼ି କିମ୍ପା ଲାଜ ।
ଅଭୟଦାତା ସବୁ ପ୍ରାଣୀଙ୍କର ହୋଇ
ପୂର୍ବ ଅକ୍ଷରୁଟିକି ଦେଉଛ ଲିଭାଇ ।
ଧର୍ମକୁ ଦେଖାଇ ଯେ ପାପକୁ ଲୁଚାଏ
ତାହାରଟି ବିଲାଇ ବ୍ରତଟି ବୋଲାଏ ।
ଏ ବିଲାଇ ବ୍ରତ ମୋ ବାପାଙ୍କର ଆଗେ
କହୁଥିଲେ ନାରଦ ଶୁଣିଛି ସରାଗେ ।
ତୁମ୍ଭଙ୍କୁ ତାହା ଏବେ କହୁଅଛି ମୁହିଁ
ଶୁଣ ମୋହଠାରୁ ଉଲୁକ ମନ ଦେଇ ।
ନ ପାରି ଭୁଆ ମୂଷାମାନେ କରି ଗ୍ରାସ
ଭାବିଣ ତାହାଙ୍କର ହୃଦୟରେ ନାଶ ।
ଗଙ୍ଗାକର ତଟରେ ଯାଇଣ ବସିଲା
ଭୁଆ ଖୁଆକୁ ଟେକି ତପ ଆଚରିଲା ।
ପକ୍ଷୀମାନେ ତା ଦେଖି ହୋଇ ଏକ ଗୋଟି
ବୋଇଲେ ଧର୍ମାତ୍ମା ହୋଇଲା ଏ ଭୁଆଟି ।
ଦେଖ ବାହୁ ଟେକି ଏ କରୁଅଛି ତପ
ଗଲେ ଏହା ପାଶକୁ ନ କରିବ କୋପ ।
ପକ୍ଷୀମାନଙ୍କର ଏହି ପ୍ରଶଂସା ବାଣୀ
ଆନନ୍ଦ ହୋଇ ଭୁଆ ହସୁଥାଏ ଶୁଣି ।
ଦଇବବଶେ ଦିନେ ସେଠାକୁ ମୂଷାଏ
ଆସିଲେ ସଙ୍ଗେ ଥିଲେ ଗୋଡ଼ାଇ ପିଲାଏ ।
ବିଲାଇର ଉର୍ଦ୍ଧ୍ୱ ବାହୁ ବ୍ରତଟି ଦେଖି
ଚମତ୍କାର ମଣି ମୂଷାଏ ହେଲେ ସୁଖୀ ।
ବୋଇଲେ ଏହାପରି ମାର୍ଜାରେ ଧାର୍ମିକ
ହୋଇଥିଲା ପରି ଦିଶୁନାହିଁଟି ଲୋକ ।
ଆସ ଆମ୍ଭେମାନେ କରିବା ମାମୁ ଲେଖା
ଏହାର ସମୀପରେ ଯାଇ ହେବା ଦେଖା ।
ଏହିରୂପେ ବିଚାରି ମୂଷାଏ ଛିଣ୍ଡାଇ
ମାର୍ଜାର ପାଶେସେ କହିଲେ ତୋଷ ବହି ।
ଆପଣ ମାମୁଁ ହୋଇ ପିଲାଟିମାନଙ୍କୁ
ରକ୍ଷାକର ହେ ଆସି ମାଗୁଛୁଁ ତୁମ୍ଭଙ୍କୁ ।
ତୁମ୍ଭର ପରି ଧର୍ମବନ୍ତରେ ବିଲାଇ
ଏ ମହୀରେ ଆମ୍ଭମାନଙ୍କ ଦେଖା ନାହିଁ ।
ଏହା ଶୁଣିଣ ଭୁଆ ଫୁଲାଇ ହିଆକୁ
କହିଲା ଦୟା-ତପ ଯୁକ୍ତ-ବଚନକୁ ।
ମୁହିଁ ତ ତପସ୍ୟାରେ ବୁଜିଥାଏ ଆଖି
ନ ପାରିବି ତୁମ୍ଭର ପିଲାଙ୍କୁ ମୁଁ ରଖି ।
ଭଣଜାମାନେ ଆଉ ଜଞ୍ଜାଳ ନ କର
ମୋ ବ୍ରତ ଭଗ୍ନ ଦୋଷ ହେବଟି ତୁମ୍ଭର ।
ମୂଷାଏ ତା ଶୁଣି ବୋଇଲେ ମାମୁଁ ଏହା
ନକଲେ ତୁମ୍ଭ ବିନା କେହି ନାହିଁ ସାହା ।
ଭୂଆ ବୋଇଲା ମୁଁ ତପରେ କ୍ଷୀଣ ହୋଇ
ଅଛି ତ ଚଳିବାକୁ ଆୟଉଟି ନାହିଁ ।
ଯେବେ ତୁମ୍ଭ ପିଲାଙ୍କୁ ରଖିବ ମୋ କତି
ତେବେ ମୋତେ ନଦୀକି ବହିନେ ନିତି ।
ସ୍ନାନ କରି ପାଣି ପିଇବି ଯେବେ ମୁହିଁ
ତେବେ ବଳ ହୋଇଣ ଅବା କହୁଥାଇଁ ।
ମୂଷାଏ ବୋଇଲେ ଯା ବୋଲୁଅଛ ତୁମ୍ଭେ
ରଖ ଆମ୍ଭ ପିଲାଙ୍କୁ ତା କରିବୁଁ ଆମ୍ଭେ ।
ଏହା ବୋଲି ବୃଦ୍ଧ ବାଳକ ମୂଷା ଯେତେ
ଥିଲେ ମାର୍ଜାରକୁ ଦେଇଣ ତା ତୁରିତେ ।
ସେହିକ୍ଷଣେ-ମୂଷାମାନେ ଯେ ଫିଟାଫିଟି
ହୋଇଣ ଚରିଗଲେ ମେଲିଦେଇ ପାଟି ।
ସେ ଭୁଆ ମୂଷାଙ୍କର ଜାଣି ନିଦ୍ରାକାଳ
ବାଛି ବାଛି ମନକୁ କରଇ କବଳ ।

ଏରୂପେ ପ୍ରତିଦିନ ଖାନ୍ତେ ସେ ବିଲାଇ
ରହିବା ମୂଷା କେତେ ଗଲେ ଶେଷ ହୋଇ ।
ବଢ଼ିଲା ବିଲାଇର ତେଜ ବିକ୍ରମଟି
ବେଳକୁବେଳ ଗଣ୍ଡି ପ୍ରକାଶିଲା ପୁଷ୍ଟି ।
ମୂଷାମାନେ ଭୁଆମାମୁର ଗଣ୍ଡି ଦେଖି
ଏକଠା ହୋଇଣ ଭାବିଲେ ହୋଇ ଦୁଃଖୀ ।
ଆମ୍ଭ ବଂଶଯାକ ତ ହୋଇଗଲେ ଊଣା
ମାମୁଙ୍କ ଦେହ ତ ହୋଇଲା ଶୋଭାଜିଣା ।
ଡ଼ିଣ୍ଡିକ ମୂଷା ଶୁଣି କହିଲା ମୂଷାଙ୍କୁ
ତୁମ୍ଭେ ଯାଅ ଆଜି ମୁ ଜଗିଛି ମାମୁଙ୍କୁ ।
ମୂଷାମାନେ ଶୁଣି ସେ କଥାକୁ ପ୍ରଶଂସି
ଡ଼ିଣ୍ଡିକକୁ ଜଗାଇ ଗଲେ ହୋଇ ତୋଷି ।
ମାର୍ଜାର ତ ଡ଼ିଣ୍ଡିକ ଜଗିବା କଥାକୁ
ନ ଜାଣିଥିଲା ତେଣୁ ଖାଇଲା ତାହାକୁ ।
ଆରଦିନ ମୂଷାଏ ହୋଇକରି ଗୋଟି
ବୋଇଲେ କାହିଁ ଗଲା ଡ଼ିଣ୍ଡିକ ମୂଷାଟି ।
କୋକିଳ ମୂଷା ଶୁଣି ବୋଇଲା କି ବୋଲ
ମାମୁ ଆରମ୍ଭଟି ନୁହନ୍ତି କିଛି ଭଲ ।
ଡ଼ିଣ୍ଡିକକୁ ଖାଇଣ ପୋଛି ଦେଇ ପାଟି
ମିଛେ ଜପ କରନ୍ତି ଆଖିକି ତରାଟି ।
ଏହା ଶୁଣି ମୂଷାଏ ବୋଇଲେ ଏ ସତ
ମାମୁ ଆଚରଣ କଲାଟି କୁଳମତ ।
ଏହିରୂପେ ପରସ୍ପରରେ ବୋଲାବୋଲି
ହୋଇ ପଳାଇଲେ ମୂଷାଏ ଭୟ ଭାଳି ।
ବିଲାଇ ତାହା ଦେଖି ଛାଡ଼ି ଆଖିବୁଜା
ସ୍ୱସ୍ଥାନରେ ରହିଲା ଦୁଃଖ କରି ମଜା ।
ସେରୂପେ ଯୁଧିଷ୍ଠିର ଅଧର୍ମ ଲୁଚାଇ
ଧର୍ମକୁ ବାଢ଼ିଛନ୍ତି ମିଛେ କାହିଁପାଇଁ ।
କହିବ ଏବେ ଛାଡ଼ି କପଟ ଚରିତ
ଯୁଦ୍ଧ କରି ନିଜ ବୃତ୍ତିରେ ଦେଇ ଚିତ୍ତ ।
ପାରିବ ଯେବେ ଯୁଦ୍ଧେ ଜିଣିବ କୁରୁଙ୍କୁ
ପୋଛ କୁନ୍ତୀଙ୍କର ନୟନ ଲୋତକକୁ ।
ରହିବ ବୋଲୁଛ ପାଞ୍ଚୋଟି ଗ୍ରାମ ମାଗି
ତେବେହେଲେ ଆମ୍ଭେ ତୁମ୍ଭଙ୍କୁ କଲୁଁ ତ୍ୟାଗୀ
ତୁମ୍ଭେ ଅବା ବୋଲିବ କିପାଁ କଲ ଏହା
ବୁଝାଯାଉ କି ବଳ ବହେ ତୁମ୍ଭ ବାହା ।
ଯୁଦ୍ଧରୁ କ୍ଷତ୍ରିୟର ବଡ଼ ଲାଭ ନାହିଁ
କ୍ଷତ୍ରିୟ କୁଳରେ ତ ଅଛ ଜନ୍ମ ହୋଇ ।
ଏଥିକି ଯେ ଉଚିତ ହେବ ତାହା କର
ନିସତ ହେଲେ ନିନ୍ଦା କରିବେଟି ନର ।
ବସୁଦେବସୁତଙ୍କୁ କହିବଟି ମଧ
କର ଯୁଦ୍ଧ କୁରୁ କରନ୍ତି ଯୁଦ୍ଧ ସଧ ।
ଏ ବାହାରେ କହିବ ସଭାରେ ଯେ ରୂପ
ଦେଖାଇଲ ତହିଁକି କିଛି ନାହିଁ ତାପ ।
ଶସ୍ତ୍ର ଧରିଣ ଦୁର୍ଯ୍ୟୋଧନ ଥିଲେ ରହି
ତୁମ୍ଭ ମାୟା କ୍ଷଣକେ ଦେବେଟି ଲିଭାଇ ।
ଇନ୍ଦ୍ରଜାଲ ମାୟା ତ ଅଛି ମୋହଠାରେ
ମନ କଲେ ମୁଁ ତିନିଲୋକ ଯାଇପାରେ ।
ମନୁଷ୍ୟ ବୁଦ୍ଧିରେ କି ହୁଏ କାର୍ଯ୍ୟ ସିଦ୍ଧି
ବିଧି ଯାହା କରେ ସେ ସିନା ହୋଏ ବିଧି ।
ପରାକ୍ରମ କରି ଯୁଦ୍ଧରେ ଆମ୍ଭ ଶୋକ
ବଢ଼ାଅନ୍ତୁ କହିବ ରୁକ୍ମିଣୀ ନାୟକ ।
ତୁଚ୍ଛାରେ ସିନା କୃଷ୍ଣ ବଳୀୟାର ହୋଇ
ଲୋକରେ କୀର୍ତ୍ତିଟାଏ ଅଛନ୍ତିଟି ପାଇ ।
ମୋର ବାହୁ ମଧକୁ ରତ ହୋଇ ଜିଣି
ଗଲେ ତାଙ୍କୁ କହିବା ପ୍ରଶଂସାରେ ବାଣୀ ।
ମାଖୁନା ଭୀମଙ୍କୁ କହିବି ଭାତଖିଆ
ନୁହଇ ଯେତେବେଳେ ଯୁଦ୍ଧେ ହେବ ଠିଆ ।
ବୋଲୁ ଯେ ଥିଲ ଦୁଃଶାସନର ରକତ
ପିଇବି ବୋଲି କାଳ ହୋଇଛି ଉପଗତ ।
ବଳ ଥିଲେ ଏତେବେଳରେ ତାହା କରି
ହୁଅ ଏ ଜଗତର ମଧ୍ୟେ କୀର୍ତ୍ତିକାରୀ ।
ନକୁଳଙ୍କୁ ବୋଲିବ ଥିଲେ ପରାକ୍ରମ
କର ଯାଇ କୁରୁଙ୍କ ସଙ୍ଗରେ ସଂଗ୍ରାମ ।
ଯୁଧିଷ୍ଠିରଠାରେ ସେନେହ ଥିଲେ ରଖି
ମରିଯାଅ ଯୁଦ୍ଧରେ ବୁଜି ବେନି ଆଖି ।
ଏହି ରୂପରେ ସହଦେବଙ୍କୁ କହିବ
କିଛିଟି ହୃଦୟରେ ନ ରଖିଣ ଭାବ ।
ବିରାଟ ଦ୍ରୁପଦାଦି ନୃପେ ଡ଼ାକି କରି
କହିବ ଆସି ଯୁଝି କରେ ନିଶ ଧରି ।
ଧୃଷ୍ଟଦ୍ୟୁମ୍ନଙ୍କୁ ବୋଲିବ ଦ୍ରୋଣ ପ୍ରାଣ
ନେବ ପରା ତୁମ୍ଭେ ହେ କର ଯାଇ ରଣ ।

ଶିଖଣ୍ଡୀଙ୍କି କହିବ ତୁମ୍ଭେ ପୂର୍ବେ ସ୍ତିରୀ
ହୋଇଥିଲି ତୁମ୍ଭଙ୍କୁ ମାରିବେ କି କରି ।
ଶାନ୍ତନୁଙ୍କ କୁମର ଭୀଷ୍ମ ମହାରଥ
ଏଣୁ ତୁମ୍ଭେ ଯୁଝ ମନକୁ ଚଢ଼ି ରଥ ।
ଅର୍ଜ୍ଜୁନଙ୍କୁ କହିକ କୁରୁଙ୍କୁ ବା ମାର
ନୋହିଲେ କୁରୁଙ୍କ ହାତରେ ତୁମ୍ଭେ ମର ।
ଦ୍ରୌପଦୀଙ୍କର କ୍ଲେଶ ବନବାସ ଦୁଃଖ
ସୁମରି ମନେ ବିନ୍ଧ କୁରୁଙ୍କୁ ବିଶିଖ ।
କ୍ଷତ୍ରିୟ ଯେ କାଳ ବିଚାରୁଥାଏ ନୀତି
ସେ କାଳ ଏବେ ଆସି ହୋଇଛି ପ୍ରାପତି ।
ନିସତ ନୋହିକରି ବହି କରେ ଧନୁ
ଯୁଦ୍ଧେ ମରିକରି ଦେଖିବ ସୂର୍ଯ୍ୟସୁନୁ ।
କହିଅଛ ତ ପୂର୍ବେ ମାରିବି କୁରୁଙ୍କୁ
ଏବେ ସେହି କଥାଟି ଚ଼ର ସଫଳକୁ ।
ବୀର ହୋଇ କହିବା କଥାକୁ ନ କଲେ
ନରକରେ ଯାଇଣ ପଡ଼ିବଟ ଭଲେ ।
ଜନ୍ମରୁ ଆଜଯାଏ ଅପ୍ରିୟ ବଚନ
କହୁଛୁଁ ତୁମ୍ଭେ କିପାଁ ନୁହ କ୍ରୋଧମନ ।
କ୍ରୋଧ ବଳ ବୀର୍ଯ୍ୟ ଯେ ଅସ୍ତ୍ରକୁ ଦେଖାଇ
ଯୁଦ୍ଧ କରି ପାରିଲେ କରେ ଧନୁ ବହି ।
ସୈନ୍ୟ ସଖା ଧରି ତ ଖାଇ ପିଇ ମୋଟା
ହୋଇଛ ଯୁଦ୍ଧ କରି ଆଣ ରାଇକୁଟା ।
ଦ୍ରୋଣ ଭୀଷ୍ମ କର୍ଣ୍ଣ ଯେ ଶଲ୍ୟଙ୍କୁ ନ ଜିଣି
ନ କହ ସଭା ମଧ୍ୟେ ହୋଇ ଟାଣିଟଣି ।
ଯେବେ ତୁମ୍ଭେ ତାଙ୍କୁ ପାରିବ ରଣେ ଜିଣି
ଆକାଶକୁ ମହୀରେ ପକାଇବ ଆଣି ।
ଜୀବନାକାଂକ୍ଷୀ ହୋଇଥିବ ଯେଉଁ ନର
ନ କରିବ ସେ ଭୀଷ୍ମ ଦ୍ରୋଣଙ୍କୁ ସମର ।
ପ୍ରାଚ୍ୟ, ଦାକ୍ଷିଣାତ୍ୟ, ଯେ କାମ୍ଭୋଜ ଉଦୀଚ୍ୟ
ଖସ, ଶାଲ୍ୱ, ମତ୍ସ୍ୟ, ଦ୍ରାବିଡ ଯେ ପ୍ରତୀଚ୍ୟ ।
ମ୍ଲେଚ୍ଛ ଆଉ ଓଡ୍ରକ, ଅନ୍ଧ୍ରର, ପୁଲିନ୍ଦ
ଶକ ଆଦି ଦେଶମାନଙ୍କର ନରେନ୍ଦ୍ର ।
ଆମ୍ଭର ସେନା ରଖିଛନ୍ତି ଶସ୍ତ୍ର ଧରି
ଜିଣି ନ ପାରିବେ ଯୁଝିଲେ ବଜ୍ରଧାରୀ ।
ତୁମ୍ଭମାନଙ୍କର ତ ବଳଟି ଅଳପ
ଜିଣିବା କଥା କିପାଁ କରୁଛ ସଂକଳ୍ପ ।

ଅକ୍ଷୟ ତୂଣିର ଗାଣ୍ଡୀବ ଶରାସନ
ଥିଲେ ହେଲେ ଆମ୍ଭର ନୁହେଁ ଭୟ ମନ ।
ଏ ବାହାରେ ଅଗ୍ନି ତ ଦେଇଛନ୍ତି ରଥ
ସେ ମଧ୍ୟ ଭାଜିବ ପାଇଲେ ଯୁଦ୍ଧ ସାଥ ।
କୃଷ୍ଣଙ୍କର ବଳର ସହାୟରେ ତୁମ୍ଭେ
ଜିଣିପାର ଜଗତ ଜାଣୁଅଛୁଁ ଆମ୍ଭେ ।
ଜୀଇଥାଉଁ ତୁମ୍ଭେ ତ ତେରଟି ବରଷ
ଭୋଗ କଲେ ସୁଖେ ହସ୍ତିନା ମହୀଦେଶ ।
ଏବେ ଯୁଦ୍ଧରେ ମାରି ତୁମ୍ଭଙ୍କୁ ହସ୍ତିନା
ଭୁଞ୍ଜିବେ ମଲାଯାଏ ହୋଇ ହୃଷ୍ଟମନା ।
ଗଦାକୁ ଧରି ଭୀମ ଧନୁ ଧରି ତୁମ୍ଭେ
ଥିଲ କୃଷ୍ଣାଙ୍କୁ ତ ଆଣିଲେ ଝିଙ୍କି ଦମ୍ଭେ ।
ତୁମ୍ଭଙ୍କୁ ଯାହା ଷଣ୍ଢତିଳ ବୋଲୁଥିଲେ
ବିରାଟ ନଗର ତା ସତ କରାଇଲେ ।
ପଚାରିବ ନୋହିଲେ କାହିଁପାଇଁ ବେଣୀ
ଧରିଣ ଜୀଇଥିଲେ ହୋଇଣ ନାଚୁଣୀ ।
ଭୀମଙ୍କୁଟି ବୋଲିବ ହୋଇଣ ଅଣ୍ଡିରା
ରାନ୍ଧିଲେ ବିରାଟର ଭାତ ମାଇ ପରା ।
ଜାଣୁଅଛି ନିର୍ଲଜ୍ଜ ହେବାରୁ ଏ କଥା
ପାସୋରି ଆସୁଅଛ ଯୁଦ୍ଧକୁ ଟେକି ମଥା ।
ସହସ୍ରେ ବାସୁଦେବ ସହସ୍ରେ ଅର୍ଜ୍ଜୁନ
ଯୁଝିଲେ କୁରୁମାନେ କରିବେ ନିଧନ ।
ଦୁର୍ଯ୍ୟୋଧନ ରାଜା ଅଟନ୍ତି ଅତି ବଡ଼
ଯୁଝିଲେ ଭାଙ୍ଗିବେ ଖୁନ୍ଦାରେ ଗାଲ ହାଡ଼ ।
ପଥରରେ ମୁଣ୍ଡ ମାଇଲା ପରା ହୋଇ
ଭୀଷ୍ମ ତୁଲେ ଯୁଝ ପାଣ୍ଡବ ପାଞ୍ଚଭାଇ ।
ସାରଦ୍ୱତ ମୀନ ଯେ ବୃହଦ୍‌ବଳ ନକ୍ର
ଦୁଃଶାସନ ଶଲ୍ୟଟି ସ୍ରୋତ ଯେ ଉଦକ ।
ଜୟଦ୍ରଥ ପୁରୁମିତ୍ର ଯେ ଦୁର୍ମର୍ଷଣ
ଗଭୀରଟି ଚିତ୍ର ଆୟୁଧ ଯେ ସୁଷେଣ ।
କୂଳ ଭୀଷ୍ମ ବେଗ ତ ଝାସ ସୋମଦତ୍ତ
ଭୂରିଶ୍ରବା ଯେ କର୍ଣ୍ଣ ଅଟନ୍ତି ଆବର୍ତ୍ତ ।
ଧନୁତୂଣ ଦୁଇ ଅର୍ଜ୍ଜୁନ ଭେଳ କରି
ପାରିଲେ ହୁଅ ତୁମ୍ଭେ ଏ ସମୁଦ୍ର ପାରି
ଦୁର୍ଯ୍ୟୋଧନ ମୁଖୁଁ ଏ କଥାମାନ ଶୁଣି
ଶକୁନିଙ୍କ କୁମର ଉଲୁକ ମେଲାଣି ।

ହୋଇକରି ରଥୁଟିକରେ ସେ ବସିଲେ
ଯାଇପାଣ୍ଡବଙ୍କ ସମୀପେ ଦେଖା ହେଲେ ।
ବୋଇଲେ ଦୁର୍ଯ୍ୟୋଧନ କହିଛନ୍ତି ଯାହା
କହିବି ତା ଶୁଣ ପାଣ୍ଡବ ନରନାହା
ମୋ କହିବା କଥାକୁ ହୋଇଲେ ଅବୋଧ
ମାଗୁଅଛି କେବେହେଁ ନୋହିବଟି କ୍ରୋଧ ।
ଯୁଧିଷ୍ଠିର ବୋଇଲେ ଉଲୁକ ନ ଡର
କି କହିଛନ୍ତି ତାହା ପରକାଶ କର ।
ଏହା ଶୁଣି ଉଲୁକ ନୃପଙ୍କୁ ଆଲୋକ
କରି କହି ବସିଲା ସବୁ କଥାଯାକ ।
ଦୁର୍ଯ୍ୟୋଧନ ରାଜ ଡକାଇ ମୋତେ ନେଲେ
ତୁମ୍ଭଠାକୁ ଦୂତ କରି ସେ ବରଗିଲେ ।
ଜୁଆରେ ତ ତୁମ୍ଭେ ହୋଇଛ ପରାଜିତ
ପୁଣି ତୁମ୍ଭ ଭାର୍ଯ୍ୟା ଦ୍ରୁପଦ ଦୁହିତା ତ ।
ତାହାକୁ ଆଗକରି ସଭାରେ ଲଙ୍ଗଳା
କଲେ ତା ଦେଖୁଥିଲ ହୋଇ ଜଳଜଳା ।
ଏବେ ଯେବେ ସେହି କଥାକୁ ଲାଜ ଘେନି
ଆସୁଛ ଯୁଦ୍ଧ କର କରେ ଶସ୍ତ୍ର ଘେନି ।
ଭୀମ ଯେବେ ଦୁଃଶାସନଙ୍କର ରୁଧିର
ପିଇବେ ବୋଲୁଛନ୍ତି କରନ୍ତୁ ସମର ।
ସାହା ହୋଇଛନ୍ତି ତୁମ୍ଭଙ୍କୁ ହୃଷୀକେଶ
ପୁଣି ତ ହୋଇଅଛି ମାର୍ଗଶୀର ମାସ ।
ଘୋଡ଼ା ହାତୀ ଗୋଡ଼ରେ ନ ଲାଗିବ ପଙ୍କ
ବଢ଼ାଅ କୁରୁଙ୍କର ଏକାଳେ ଆତଙ୍କ ।
ଭୀଷ୍ମଙ୍କର କାଣ୍ଡ ନ ବାଜିବାରୁ ଦେହେ
ଗୁମାନ କହୁଛ ସଭାରେ ବସି ମୋହେ ।
ଦ୍ରୋଣ କର୍ଣ୍ଣ ଶଲ୍ୟ ସୋମଦତ୍ତ ଯେ ଭୂରି
ଶ୍ରବା ଆଦି ଯୁଦ୍ଧରେ ନାହାନ୍ତି ତ ହାରି ।
କାହାପାଇଁ ତୁମ୍ଭେ ରାଜ୍ୟକୁ କର ସଧ
ତୁମ୍ଭ ପରି ନାହିଁ ତ ମହୀରେ ଦୁର୍ବୋଧ ।
ଧନର୍ବିଦ୍ୟା ପାରଙ୍ଗମ ତ ଦ୍ରୋଣଗୁରୁ
ନ ପଳାଇ ଯୁଝିବେ କେ ତାଙ୍କ ଆଗରୁ ।
ଆକାଶ ଚନ୍ଦ୍ର ଯେବେ ହାତକୁ ଆସିବ
ତେବେ ଦ୍ରୋଣ ଆଗରେ ରହିଣ ଯୁଝିବ ।
ଦୁର୍ଯ୍ୟୋଧନ ଯୁଦ୍ଧରେ ଥିଲେ ରଥ ଚଢ଼ି
ମାରି ପାରିବ କି ତାହାଙ୍କୁ ତୁମ୍ଭେ ବେଢ଼ି ।
ଏରୂପେ ଯୁଧିଷ୍ଠିର ଆଗରେ ଉଲୁକ
କହିକରି ଛାଡ଼ିଣ ହୃଦୟରୁ ଦକ ।
ଅର୍ଜ୍ଜୁନେ ବୋଇଲା ନ ପାରି ବଚନରେ
କାହିଁପାଇଁକି କହୁଥାଅଛି ସଭାରେ ।
ତୁମ୍ଭ ବଳ ବିକ୍ରମ ଜାଣି ଦୁର୍ଯ୍ୟୋଧନ
କରିଅଛନ୍ତି ତୁମ୍ଭ ରାଇଜ ଅଧୀନ ।
ଜାଣିଅଛ ତ ପୂର୍ବେ ଖେଉଦି ତୁମ୍ଭଙ୍କୁ
ଭୋଗ କଲେ ସେ ତେରବରଷ ରାଜ୍ୟକୁ ।
ଏବେ ଯୁଦ୍ଧ କଲେ କାଣ୍ଡରେ ତୁମ୍ଭ ଗଣ୍ଠି
କରି ଦୁଇଖଣ୍ଡ ଖାଇବେ ରାଜ୍ୟଖଣ୍ଡି ।
ଗଦା ଗାଣ୍ଡୀବ ତ ଭୀମ ତୁମ୍ଭର କରେ
ରହିଥାଏ ସବୁବେଳରେ ନିରନ୍ତରେ ।
ଖେଳରେ ଦାସ ହେଲା କାଳରେ ଏ ବଳ
ନ କଲ କିପାଁ ମାନି ରହିଲ କପାଳ ।
ଷଣ୍ଢତିଳ ବୋଲିବା ପଦୁଟି ବିରାଟ
ନଗରରେ ରହିଣ କରିଦେଲ ଆଣ୍ଟ ।
ତୁମ୍ଭ ବିନା ବିରାଟସୁତକୁ ନରଇ
କେ ଜୀଇଁବ ମହୀରେ ବୀର ଦିଶୁ ନାହିଁ ।
ସହସ୍ରେ ଅର୍ଜ୍ଜୁନ ସହସ୍ରେ କୃଷ୍ଣ ହେଲେ
ଦୁର୍ଯ୍ୟୋଧନ ନିକି ଡରୁଅଛନ୍ତି ଭଲେ ।
କଥାଏ ଏଥିରୁ ପାଇବ ତୁମ୍ଭେ ସର
ଯୁଦ୍ଧ କରି ମଲେ ବସିବ ସ୍ୱର୍ଗପୁର ।
ପାଣ୍ଡବେ ଏହା ଶୁଣି ବାହୁ ମୋଡି ମୋଡି
ଉଠାଇଲେ ପିଟ୍ଟ ମୁଠିକି ତଳେ ଭିଡ଼ ।
ଭୀମ ଆଖି ଦୁଇକି ରଙ୍ଗ କରି ଦେଲେ
ବକ୍ର କରି କୃଷ୍ଣ ମୁଖକୁ ଋହିଁଲେ ।
ଭୀମଙ୍କର କ୍ରୋଧ ଜାଣିଣ ପୀତବାସ
ମନେ କଲେ ଏବେ ଉଲୁକ ଯିବ ନାଶ ।
ଏ ଛାର ପାପୀକି ମାଇଲେ ବଳ ତେଜ
ଓଜ ଧରମରଟି ହୋଇବ ଅକାର୍ଯ୍ୟ ।
ଆହେ ଜନ୍ମେଜୟ ଏରୂପେ ଭାବି ହରି
ଉଲୂକକୁ ବୋଇଲେ ଯାଆ ଯା ବାହାରି ।
ଦୁର୍ଯ୍ୟୋଧନ ବାବୁକୁ କହିବୁ ତୋହର
ତିଆର ହୋଇଥାଉ କରିବ ସମର ।
ଉଲୁକ ତେବେ ହେଲେ କିଛି ନ ଡରିଲା
ଅର୍ଜ୍ଜୁନକୁ ଋହିଁଣ ବଚନ କହିଲା ।

ଉଲୁକରେ ବଚନ ଶୁଣିଣ କିରାଟୀ
ଲଲାଟରେ ରଖିଲେ ସେ ଶିଖା ତିନୋଟି ।
ରାଜାମାନେ ଶୁଣିଣ ଉଲୁକ ବଚନକୁ
ଜାତକଲେ ହୃଦରେ କ୍ରୋଧ ଦହନକୁ ।
ଦନ୍ତେ ଦନ୍ତ ଚୋବାଇ ଭୀମ ମହାମନା
ସୃକ୍‌କଣୀ ଦୁଇପଟେ ଚାଟିଲେ ରସନା ।
ହାତେ ହାତେ ପେଷି ବୋଇଲେ ଆରେ ବାଇ
ଉଲୁକ ମରିବାକୁ ଆସିଲୁ କିମ୍ପାଇଁ ।
ଏବେ ମୋଠାରୁ ଶୁଣି କରିଯାଅ ବେଗେ
କହିବୁ ତୋର ବାବୁ ଦୁର୍ଯ୍ୟୋଧନ ଆଗେ ।
କୁଳ ହିତପାଇଁ ରାଜନ ଯୁଧିଷ୍ଠିର
ପେଷିଥିଲେ ବସୁଦେବଙ୍କର କୁମର ।
ତାହା ନ ଘେନିବା ଦିନରୁ ତୋ ଜୀବନ
କରରେ ଧଇଲେଣି ଜନ୍ତୁଙ୍କ ରାଜନ ।
ମୁଁ ତ ବୋଲୁଅଛି ତୋ ଆଦି ଶହେ ଭାଇ-
ମାନଙ୍କୁ ଗଦା ପିଟି ଦେବାକୁ ଗଡ଼ାଇ ।
ଏ କଥା ନିକଟେ ଲେଖିଛି କୁଶଧାରୀ
ଏଥିକି କୁହାଉଛି ଅଭାବକୁ କହି ।
ସମୁଦ୍ର ମଧ ଜାଣ ବେଳାକୁ ଲଙ୍ଘିବ ।
ମୋ କହିବା କଥା ତ ଅନ୍ୟଥା ନୋହିବ ।
ଯମ ରୁଦ୍ର କୁବେର ସାହା ଥିଲେ ତାର
ଭୀମ ହାତରେ ହେବ ଜାଣ ମରିବାର ।
ଦୁଃଶାସନ ରକ୍ତ ପିଇବି ରଣେ ମୁହିଁ
ତାପାଇଁ ଯେ ଯୁଝିବ ଦେଖିବ ପ୍ରେତସାଇଁ ।
ସହଦେବ ବୋଇଲେ ଉଲୁକ ବାବୁକୁ
କହିବୁ ଯାହା ମୋର ଶୁଣ ସେ କଥାକୁ ।
ଦୁର୍ଯ୍ୟୋଧନର ମାମୁଁ ତୁ ହୋଇ ନ ଥିଲେ
କରୁପାଣ୍ଡୁ ଭେଦଟି କରନ୍ତୁ କି ଭଲେ ।
କୁରୁଙ୍କ ତୁଲେ ମହୀଲୋକ ନାଶକାରୀ
ହେବାକୁ ତୋର ବାବୁ ଅଛି ଅବତରି ।
ଯୁଦ୍ଧରେ ଆଗେ ତୋତେ ମାରି କାଟି ମୁଣ୍ଡ
ତୋ ବାବୁକୁ ଗଡ଼ାଇ ଦେବି ରଣଦାଣ୍ଡ ।
ଭୀମ ସହଦେବଙ୍କ କହିବା ବଚନ
ଶୁଣିକରି କହିଲେ ତାହାଙ୍କୁ ଅର୍ଜୁନ ।
ତୁମ୍ଭଙ୍କୁ କେଉଁମାନେ ଦେଲେ ଦୁଃଖଦଶା
ସେ ତ କୁରୁକ୍ଷେତ୍ରେ କଲେଣି ଆସି ବସା ।
ତାହାଙ୍କୁ ତୁମ୍ଭେ ଯୁଦ୍ଧେ ମାରି ଏହି ଟାଣ
କଲେ ସିନା ଲୋକେ ହୋଇବ ବଡ଼ପଣ ।
ଦୂତ ହୋଇ ଉଲୁକ ଆମ୍ଭଠାକୁ ଆସି
ଅଛି କିମ୍ପା ତାକୁ ହେଉଛ ଏଡେ ରୋଷୀ ।
ଯାହା ସୁଯୋଧନ କହିଥିଲା ତାହାକୁ
ତା ସିନା କହିଲା ନ ଘେନି ତା ଦୋଷକୁ ।
ଏହା କହି ଭାଇଙ୍କି ରାଜାଙ୍କୁ ଅନାଇଁ
ଅରଜୁନ କହିଲେ ଦେହକୁ ଫୁଲାଇ ।
ଶୁଣିଲା ଉଲୁକ ବଚନେ ସୁଯୋଧନ
ମୋତେ ତ ମଣୁଅଛି ତୃଣର ସମାନ ।
କୃଷ୍ଣଙ୍କ ସହାୟରେ କେଉଁ କଥା କରି
ନ ପାରିବି ମୁହିଁ ବା କହ ତ ବିଚାରି ।
ଏବେ ତ ତୁମ୍ଭେମାନେ କର ସନମତ
ସୁଯୋଧନରଠାକୁ ଦେବି ମୁଁ ଉଦନ୍ତ ।
ରାଜାମାନେ ତହିଁ ବୋଇଲେ ଯେ ଉଚିତ
ସେ ବାରତା କର ସୁଭଦ୍ରାଦେବୀକାନ୍ତ ।
ଅର୍ଜୁନ ବୋଇଲେ ଉଲୁକ ସୁଯୋଧନ
ଆଗେ ଯାଇଁ ଆଗ କହିବୁ ଏ ବଚନ ।
ଗାଣ୍ଡୀବରେ ମୁଁ ପ୍ରତିଉତ୍ତର ତାହାଙ୍କୁ
ଶୁଣାଇବି ଯୁଦ୍ଧେ ଦେଖାଇ ବିକ୍ରମକୁ ।
ଏହା ଶୁଣି ରାଜାଏ ଅର୍ଜୁନ ପ୍ରଶଂସା
ବଚନକୁ ମୁଖ ମଧ୍ୟରେ ଦେଲେ ବସା ।
ଯୁଧିଷ୍ଠିର ବୋଇଲେ ଯାଅ ହେ ଉଲୁକ
କହିବ ଆସିଛି ଯାହାର ହୋଇ ଲୋକ ।
ଆପଣାର ବଳକୁ ଆଶ୍ରେ କରି ପର-
ଜନକଙ୍କୁ ଯେ ଯୁଝେ ସେ କ୍ଷତ୍ରିୟଙ୍କେ ସାର ।
ପରୀବର୍ଯ୍ୟକୁ ଆଶ୍ରେ ଯେଉଁ ଲୋକ
ଶତ୍ରୁ ଜିଣେ ତାହାକୁ ବୋଲି ନପୁଂସକ ।
କୃଷ୍ଣ ବୋଇଲେ ହେ ଉଲୁକ ସୁଯୋଧନ
କାଲି ଯୁଦ୍ଧ କରୁ ହୋଇଣ ସାବଧାନ ।
ଆମ୍ଭମାନଙ୍କର ବୁଝିବ ଯେବେ ବଳ
କହିବୁ ତେବେ କରି ଧନୁକୁ ମଣ୍ଡଳ ।
ସୁଯୋଧନ ଅବା ମନରେ କରିଥିବେ
କୃଷ୍ଣ ଶସ୍ତ୍ର ଧରି ଆମ୍ଭଙ୍କୁ ନ ଯୁଝିବେ ।
ଏଥିପାଇଁ କହୁଛି ହାରିଲେ ପାଣ୍ଡବେ
ତିନିଲୋକ ମୋ ଶରାଗ୍ନିରେ ପୋଡ଼ିଯିବେ ।

ଯା'ଠାରେ ସୁଯୋଧନ ରହୁଥିବ ଯାଇ
ତହିଁ ଥିବ ଅର୍ଜ୍ଜୁନ ରଥ ଜାଣ ରହି ।
ଭୀମ ଦୁଃଶାସନର ପିଇବେ ରକତ
ସନ୍ଦେହ କିପାଁ କରେ ଧୃତରାଷ୍ଟ୍ରସୁତ ।
ଅର୍ଜ୍ଜୁନ ବୋଇଲେ ଉଲୁକ ଦୁର୍ଯ୍ୟୋଧନ
ଭୀଷ୍ମଙ୍କୁ ଯାହା କଲେ ସେନାରେ ମଣ୍ଡନ ।
ଏଥିର କାରଣ ଶୁଣ ମୋଠାରୁ ସଧେ
ପିତାମହ ବୋଲି ଛାଡିବୁଁ କିପାଁଯୁଦ୍ଧେ ।
ସମସ୍ତେ ଦେଖୁଥିବ ଅଗଟି ତାହାଙ୍କୁ
ମାରିବି ଗାଣ୍ଡୀବରେ ଯୋଚି ମୁଁ ଶରକୁ ।
ଦୁର୍ଯ୍ୟୋଧନ ଜାନୁକୁ ଭୀମସେନ ରଣେ ।
ଭାଙ୍ଗି ପକାଇବେ କହିବ ଗଦାଟାଣେ ।
ଦର୍ପ, ଦ୍ୱେଷ, ଅଧର୍ମ, ବୃଦ୍ଧଅତିକ୍ରମ-
କରିବା ଘେନି ବାମ ହେଲାନି ତା ଧର୍ମ ।
କୃଷ୍ଣ ତୁଲରେ ମୁହିଁ କ୍ରୋଧ ହୋଇଥିଲେ
ରହିବ ସେ ଜୀବେ ଦେଖିବା କେହିଁ ଭଲେ ।
ଭୀଷ୍ମ ଦ୍ରୋଣ କର୍ଣ୍ଣ ହୋଇଲେ ପ୍ରାଣେ ନାଶ
ଜାଣିବା ତେବେଟି ଧରିବ ଯେବେ ନିଶ ।
ମୋହର ପ୍ରତିଜ୍ଞା ନୁହଇ ଦୁଇଥର
ଯାହା କହୁଛି ସତ କରି ମନେ କର ।
ଯୁଧିଷ୍ଠିର ଉଲୁକ ମୁଖକୁ ଅନାଇଁ
କହିଲେ ସୁଯୋଧନ ବାବୁକୁ କହ ଯାଇ ।
ଅସତ୍ୟରେ ଥାଇ ମୋ ପରି ସତ୍ୟବନ୍ତ
ହେବାକୁ ତାର କିପାଁ ବଳୁଅଛି ଚିତ୍ତ ।
ଆଜଯାଏ ପିମ୍ପୁଡିଠାରେ ହିଂସା ମୁହିଁ
କରିନାହିଁ ଜ୍ଞାତିକି ମାରିବି ତାପାଇଁ ।
ଏତକ ହୃଦୟରେ କରି ମୁଁ ବିବେକ
ମାଗିଲ ପଞ୍ଚ ଗ୍ରାମ ହୋଇ ଲକସ୍ତକ ।
ତେବେ ହେଲେ ମୁଢ଼ପଣେ ସେ ନାହିଁ କଲା
ଜାଣିଲି ବିଧି ତାକୁ ମନ୍ଦ ବୁଦ୍ଧି ଦେଲା ।
ମୋର ବୁଦ୍ଧିରେ ଆଉ ରହିବାକୁ କାଳ
ନାହିଁ ସୁମରନ୍ତୁଟି କୁରୁଏ କପାଳ ।
କୃଷ୍ଣଙ୍କର ବଚନ ନ ଘେନିଲା ଦିନୁ
ମଣିଲି ମୁଁ ମଲାନି ଧୃତରାଷ୍ଟ୍ର ସୁନୂ ।
ପୁଣି ଭୀମ ବୋଇଲେ ଉଲୁକ ସୁଯୋଧନ
ଆଗରେ କହିବୁ ମୋ କହିବା ବଚନ ।
ଯୁଦ୍ଧ କଲେ ଶାଗୁଣା ପେଟେ ଅବା ବସା ।
କରିବ ନୋହିଲେ ଭୁଞ୍ଜିବ ସୁଖେ ରସା ।
ଶଏ ଭାଇ ମାରିଣ ଭାଙ୍ଗି ତା ଉରୁକୁ ।
ମାରିବି ତୋ ମୁଣ୍ଡରେ ନେଇ ଗୋଇଠାକୁ ।
ଏ ପ୍ରତିଜ୍ଞା ମୋହର ନୁହେ କେବେ ଆନ ।
ହୃଦୟରେ ଗାର କାଟିଥାଉ ସୁଯୋଧନ ।
ନକୁଳ ସହଦେବ ପୁଣି ପୂର୍ବପରି
କହିବୁ ବୋଲିଣ କହିଲେ ନିଶ ଧରି ।
ପାଣ୍ଡବ ସମ୍ବନ୍ଧୀ ଶ୍ୱଶୁର ଦୁଇ ରାଜା
ଉଲୁକେ କହିଲେ ବଚନ କରି ତେଜା ।
କାଲି ଦୁର୍ଯ୍ୟୋଧନକୁ ଆଣିବ ଯୁଦ୍ଧକୁ
ଦେଖିବା ତାର ଅଛି କେତେ ବିକ୍ରମକୁ ।
ଶିଖଣ୍ଡୀ ବୋଇଲେ ଯେ ମୋତେ ଭୀଷ୍ମହନ୍ତା
କରି ଜାତ କରିଛି ପୂର୍ବରୁ ବିଧାତା ।
ଏହା ଶୁଣି ଧୃଷ୍ଟଦ୍ୟୁମ୍ନ ହସି ହସି
କହିଲେ କହିବ ମୁଁ ଦ୍ରୋଣଙ୍କ ବିନାଶୀ ।
ଯୁଧିଷ୍ଠିର ପୁଣି ବୋଇଲେ ହେ ଉଲୁକ
ମରଣକୁ ଯେବେଟି ହୋଇଅଛି ଶୋକ ।
ତେବେ ବସା ଘରରେ ରହ ବୋଲୁଁ ଆମ୍ଭେ
ଆମ୍ଭର ସବୁରୂପେ ବନ୍ଧୁ ଅଟ ତୁମ୍ଭେ ।
ଉଲୁକ ବୋଇଲେ ମୁଁ ରହିବି କି କରି
ଆସିଛି ଦୁର୍ଯ୍ୟୋଧନ ଦୂତ ହୋଇକରି ।
ଏହା କହି ପାଣ୍ଡବମାନଙ୍କୁ ମେଲାଣି
ମାଗି ଦୁର୍ଯ୍ୟୋଧନକୁ ଭେଟିଲେ ସେକ୍ଷଣି ।
କୃଷ୍ଣଙ୍କର ତୁଲେ ପାଣ୍ଡବଙ୍କର ବାଣୀ
ଦୁର୍ଯ୍ୟୋଧନ ଆଗେ ସେ ହୋଇଲେ ବଖାଣି ।
ଏହା ବାହାରେ ରାଜାମାନଙ୍କ ବିଚାର-
ଯାକ ମଧ କହିଲେ କରିଣ ବିସ୍ତାର ।
ଦୁର୍ଯ୍ୟୋଧନ ଶୁଣି ପାଣ୍ଡବଙ୍କର କଥା
ନ ଘେନିଲା କିଛି ସେହୁ ତ ମହାରଥା ।
ସୈନ୍ୟକୁ କହିଲା ତିଆର ହୋଇଥାଅ
କାଲି ଆସି ଯୁଝିବେ ପାଣ୍ଡୁ ପାଞ୍ଚପୁଅ ।
ଏହିଠାରେ ଉଲକଯାନ ସମାପତି
ହେଲା କହଇ କୃଷ୍ଣସିଂହ ନରପତି ।



## କୁରୁ ଓ ପାଣ୍ଡବମାନଙ୍କ ପକ୍ଷର ରଥ, ଅତିରଥ ଓ ଅର୍ଦ୍ଧରଥ ଗଣନା

ଏଥୁ ଅନନ୍ତରେ ସଞ୍ଜୟ ମନ୍ତ୍ରୀବର
ଧୃତରାଷ୍ଟ୍ର ନୃପଙ୍କୁ କହିଲେ ଉତ୍ତର ।
ଉଲୂକଙ୍କ ଯିବା ଉତ୍ତାରୁ ଯୁଧିଷ୍ଠିର
ବୋଇଲେ ସୈନ୍ୟଯାକ ହୁଅ ହେ ତିଆର ।
ରଜନୀ ଶେଷ ସେନା ମଧ୍ୟେ ଆମ୍ଭେ ପଶି
ଧୃତରାଷ୍ଟ୍ର ପୁଅଙ୍କୁ ଦେବା ହେ ବିନାଶି ।
ଦ୍ରୋଣଙ୍କର ବିନାଶ ପାଇଁ ଧୃଷ୍ଟଦ୍ୟୁମ୍ନ
ରହିଥିବେ ଆଗରେ ଧରି ଶରାସନ ।
ସେହିପରି କର୍ଣ୍ଣଙ୍କୁ ମାରିବା ପାଇଁକି
ତିଆର କରାଇଲେ ଭାଇ କିରୀଟୀକି ।
ଭୀମଙ୍କୁ ବୋଇଲେ ହେ ସୁଯୋଧନ ପ୍ରାଣ
ଗଦାକୁ ପିଟିକରି ନେବଟି ଆପଣ ।
ନକୁଳ ସହଦେବ ଦୁହିଁକି କହିଲେ
ଅଶ୍ୱତ୍ଥାମା ଶକୁନି ତୁମ୍ଭ ଭାଗେ ହେଲେ ।
ଶଇବ୍ୟଙ୍କୁ ବୋଇଲେ କୃତବର୍ମା ରଣ
ଗରବକୁ ତୁମ୍ଭେ ଭାଙ୍ଗିବ ବିନ୍ଧି ବାଣ ।
ଯୁଧିଷ୍ଠିର ଡାକି ସାତ୍ୟକି ମହାରଥ
ବୋଇଲେ ତୁମ୍ଭ ଭାଗ ହେଲା ଜୟଦ୍ରଥ ।
ଶିଖଣ୍ଡୀକି ବୋଇଲେ ତୁମ୍ଭେ ଭୀଷ୍ମହନ୍ତା
ଆମ୍ଭର ସେ କଥାକୁ ନାହିଁ ମନେ ଚିନ୍ତା ।
ଧୃଷ୍ଟଦ୍ୟୁମନଙ୍କର ଭାଇ ଉତ୍ତମୌଜା
ବୋଇଲେ ହେ ଭାଙ୍ଗ କୃପଙ୍କ ଯୁଦ୍ଧ ମଜା ।
ଦ୍ରୌପଦୀଙ୍କ ପୁଅଙ୍କୁ ବୋଇଲେ ତ୍ରିଗର୍ତ୍ତ
ମାନଙ୍କୁ ବାଣ ବିନ୍ଧି ବାଛି ପାଶୁପତ୍ର ।
ପୁଣି ସୁଭଦ୍ରାଙ୍କର କୁମରକୁ ଚାହିଁ
ବୋଇଲେ ବୃଷସେନ ଜୀବ ନିଅ ତୁହି ।
ଏହିରୂପରେ ସେନାବିଭାଗକୁ କରି
ସଂଯତେ ରହିଲେ ପାଣ୍ଡବଦଣ୍ଡଧାରୀ ।
ଧୃତରାଷ୍ଟ୍ର ବୋଇଲେ ଶୁଣ ହେ ସଞ୍ଜୟ
କଲା ତ ଭୀଷ୍ମ ନାଶେ ପ୍ରତିଜ୍ଞା ବିଜୟ ।
ଏହାଶୁଣି କରିଣ ଦୁର୍ଯ୍ୟୋଧନ ମନ୍ଦ
କହ କିସ କରିଲା କରି କଥା ଛନ୍ଦ ।
ଅର୍ଜ୍ଜୁନଙ୍କ ପ୍ରତିଜ୍ଞା କଥା ଶୁଣିକରି
ବିଚାରୁଅଛ ଜ୍ୟେଷ୍ଠ ପିତା ଯେବେ ମରି ।
ଭୀଷ୍ମ ଶୁଣିଣ ଅରଜୁନଙ୍କ ବଚନ
କି କହିଲା ତା କହ ଶୁଣିବ ମୋ ମନ ।
ସଞ୍ଜୟ ବୋଇଲେ ହେ ଭୀଷ୍ମ ସେନାପତି
ହୋଇଲେ ତ ତୁମ୍ଭରଠାରେ ବହି ପ୍ରୀତି ।
ଅରଜୁନର ଶୁଣି ପ୍ରତିଜ୍ଞା ବଚନ
ନିଃଶ୍ୱାସ ମାରି କ୍ଷଣେ ହୋଇଲେ ମଉନ ।
ସୁଯୋଧନ ରାଜାଙ୍କୁ ଆଣିଣ ଡକାଇ
କହିଲେ ସେନାପତି ହୋଇଲି ତ ମୁହିଁ ।
ତୁମ୍ଭ ସେନା ଯୁଦ୍ଧରେ ପାଳନା ଯେରୂପେ
ହୋଇବେ ତାହା ମୁଁ କରିବି ଜାଣ ଆପେ ।
ଦେବାସୁର ଗନ୍ଧର୍ବ ନର ବ୍ୟୂହଯାକ
ଜାଣିଛି ମୁହିଁ ଆହେ କୁରୁଙ୍କ ନାୟକ ।
ସେ ବ୍ୟୂହମାନଙ୍କରେ ପାଣ୍ଡବଙ୍କୁ ମୋହ
କରାଇ ବଢ଼ାଇବି ତୁମ୍ଭର ସେନେହେ ।
ଦୁର୍ଯ୍ୟୋଧନ ବୋଇଲେ ତୁମ୍ଭେ ସେନାପତି
ହେଲାଠାରେ ଜିଣି ନ ପାରେ ସୁରପତି
ପୁଣି ତୁମ୍ଭର ସାହା ହୋଇକରି ଦ୍ରୋଣ
ବିନ୍ଧୁଥିବେ ସନ୍ଧି ଧନୁରେ ତୀକ୍ଷ୍ଣ ବାଣ ।
ତୁମ୍ଭ ଦୁହିଁଙ୍କି ଏ ମହୀରେ ଜିଣିବାକୁ
ଥିଲା ପରି ଲୋକ ନ ଆସେ ମୋ ମନକୁ ।
ରଥୀ ମହାରଥୀ ଯେ ଅତିରଥୀ କିଏ
ଆମ୍ଭ ଦୁଇ ସୈନ୍ୟେ କହ ହେ ରଥୀରାୟେ ।
ଭୀଷ୍ମ ବୋଇଲେ ଯା ପୁଚ୍ଛିଲେ ଦୁର୍ଯ୍ୟୋଧନ
କହିବି ତାହା ତୁମ୍ଭ ସୈନ୍ୟେ ଯେତେ ଜଣ ।
ରଥୀ ମହାରଥୀମାନଙ୍କ ନାମ ଧରି
ଏକ ମନ ହୋଇ ଶୁଣ ହେ ଦଣ୍ଡଧାରୀ ।
ସବୁ ସମରଥ ଗୁଣ ତ ଅଛ ବହି
ଏଣୁଟି ମହାରଥୀ ତୁମ୍ଭେ ଶଏ ଭାଇ ।
ମହାରଥୀଙ୍କରେ ମୁଁ ଅଟେ ମହାରଥ
ଆଉ କି ଗୁଡ଼ାଏ କହିବି ସାମରଥ୍ୟ ।
କୃତବର୍ମା ଯେ ଅତିରଥୀ ବୋଲାଅନ୍ତି
ଅସ୍ତ୍ରଶସ୍ତ୍ର ଦୁଇଟି ବିଦ୍ୟାକୁ ଜାଣନ୍ତି ।
ନକୁଳ ସହଦେବ ଯାହାଙ୍କ ଭଣଜା
ଅତିରଥୀ ବୋଲିଣ ତାହାଙ୍କୁ ହେ ରାଜା ।
ଭୂରିଶ୍ରବା ମଧ୍ୟ ଅଟନ୍ତି ଅତି ରଥ
କ୍ଷଣେ ମୁଣ୍ଡ ମଣ୍ଡି ପାରନ୍ତି ମହୀପଥ ।

ଜୟଦ୍ରଥ ରାଜା ଅଟନ୍ତି ମହାରଥୀ
ମନ କଲେ ପାରିବେ ଶତ୍ରୁ ସୈନ୍ୟ ମନ୍ଥି ।
ଦ୍ରୌପଦୀଙ୍କ ହରଣେ ପାଣ୍ଡବଙ୍କ ତୁଲେ
ବଇରକୁ ଅରଜି ଅଛନ୍ତି ସେ ଭଲେ ।
ଏଥିପାଇଁ ତାହାଙ୍କ ତୁଲେ ଏ ଓପ୍ରୌଧ
ଛାଡ଼ି ବିଋରିବେ ହୃଦରେ ତାଙ୍କ ବଧ ।
ସୁଦକ୍ଷିଣ ରାଜା ତ ରଥୀ ବୋଲାଅନ୍ତି
ରଖିଛନ୍ତିସଙ୍ଗେ ବହୁତ ରଥିପନ୍ତି ।
ନୀଳରାଜା ରଥୀ ବୋଲାନ୍ତି ଆହେ ରାୟେ
ମାରିବେ ଶତ୍ରୁ ସୈନ୍ୟେ ସାୟକେ ଏକାଏ ।
ସହଦେବଙ୍କର ତାହାଙ୍କର ବଇର
ପୂର୍ବରୁ ହୋଇଅଛି ଜାର ନରବର ।
ଅବନ୍ତୀଦେଶ ରାଜା ବିନ୍ଦ ଅନୁବିନ୍ଦ
ରଥୀଏ ରଥ ଚଢ଼ି ନାଶିବେ ଶତ୍ରୁ ବୃନ୍ଦ ।
ତ୍ରିଗର୍ତ୍ତ ପାଞ୍ଚଭାଇ ବୋଲଅନ୍ତି ରଥୀ
ଶତ୍ରୁବଳ ଦେଖିଲେ ହୁଅନ୍ତି ଯେ ବ୍ୟଥୀ ।
ରାଜସୂୟ ଯାଗର ଅର୍ଜୁନ ଏହାଙ୍କୁ
ଜିଣିକରି ବଳରେ ଆଣିଲେ କରକୁ ।
ଏହି ସକାଶୁଁ ଏ ତୁମ୍ଭଙ୍କୁ ଆଶ୍ରେ କରି
ରହିଛନ୍ତି ମାରିବେ ତାହାଙ୍କୁ ବିଋରି ।
ତୁମ୍ଭ ପୁଅ ଲକ୍ଷଣ ଦୁଃଶାସନ ପୁଅ
ରଥୀଙ୍କରେ ଉତ୍ତମ ପାଇବେ ବିଜୟ ।
ଦଣ୍ଡଧାରରାଜା ରଥୀଙ୍କେ ଅଗ୍ରଗାର
ସେରୂପେ ବୃହଦ୍‌ବଳ ରଥୀଙ୍କରେ ସାର ।
କୃପ ଆଋର୍ଯ୍ୟ ତ ଅଟନ୍ତି ମହାରଥୀ
ଜିଣଇଁ ଯୁଦ୍ଧେ ନର ହେଲେ ତାଙ୍କ ସାଥୀ ।
ଶରସ୍ତମ୍ଭରୁ ସେହୁ ହୋଇଛନ୍ତି ଜାତ
ଅଗ୍ନି ପରି ତେଜରେ ହୋଇଣ ଦୀପିତ ।
ରଥୀ ବୋଲାଅନ୍ତିଟି ତୁମ୍ଭର ଯେ ମାମୁ
ପଳାନ୍ତି ପରଲୋକେ ତାଙ୍କ ତମତମୁଁ ।
ଅଶ୍ୱଥ୍ମା ଯେ ଅତିରଥୀ ମହାରଥ
କହି ନ ପାରିବି ତାହା ମୁଁ ନରନାଥ ।
ମନ କଲେ କ୍ଷଣେ ପାରନ୍ତି ମହୀ ପୋଡ଼ି
ଅର୍ଜୁନ କାଣ୍ଡ ପରି ତାଙ୍କ କାଣ୍ଡଧାଡ଼ି ।
ନିତ୍ୟ ଆୟୁଷ୍ମାମୀ ଦୋଷରେ ଦ୍ରୋଣସୁତ
ନିନ୍ଦାକୁ ହେଉଛନ୍ତି କେବଳ ଯୁକତ ।

କୁରୁପାଣ୍ଡୁ ସୈନ୍ୟରେ ତାଙ୍କ ପରି କେହି
ଯୋଦ୍ଧା ଥିଲା ପରି ଆଖିକି ଦିଶୁ ନାହିଁ ।
ମନ କଲେ ଦେବତାବାହିନୀକି ବାଣେ
ନିବାରଣ କରି ପାରନ୍ତି ସେହି ରଣେ ।
କାଳଦଣ୍ଡର ସମ ଶର ତାହାଙ୍କର
ଯୁଦ୍ଧେ କରିପାରନ୍ତି ନିଃଶଙ୍କେ ସଞ୍ଚାର ।
ତାହାଙ୍କର ବାବୁ ବୁଢ଼ା ହୋଇଲାଠାରେ
ଷୋଳବରଷିଆ ସେ ଅଟନ୍ତି ଯୁଦ୍ଧରେ ।
ମହୀରଥୀଙ୍କର ସେ ମଉଳିମଣ୍ଡନ
ମହାସ୍ଥବିରଟି ତାହାଙ୍କ ଆୟୋଧନ ।
ଅର୍ଜୁନଙ୍କ ଗୁଣରେ ବଶ ହୋଇଛନ୍ତି
ଏଣୁ ତାଙ୍କୁ ଓପ୍ରୋଧ କରି ସେ ଥାଆନ୍ତି ।
ଏକା ରଥକରେଟି ଦ୍ରୋଣ ଭୂମିଦେବ
ସଂହାରିଣ କ୍ଷଣକେ ଦେବତା ମାନବ ।
ମହାରଥ ଅଟନ୍ତି ପଉରବରାଜା
ପାଣ୍ଡବଙ୍କୁ ନାଶିବେ କ୍ରୋଧ କରି ମଜା ।
ବୃହଦ୍ ବଳ ଅଟନ୍ତି ରଥୀରେ ଗଣତି
ଯୁଦ୍ଧେ ବଢ଼ାଇବେ ସେ ଏକ ତୁମ୍ଭପ୍ରୀତି ।
କର୍ଣ୍ଣଙ୍କ ପୁଅ ବୃଷସେନ ମହାରଥ
ସମରଥଙ୍କରେ ସେ ଅଟନ୍ତି ସମର୍ଥ ।
ଜଳସନ୍ଧ ରଥୀ ଯେ ଶତ୍ରୁକୁଳ ମନ୍ଥି
ପାରନ୍ତି ଯେବେ ଜଗିଥିବେ ସୈନ୍ୟ ସାଥୀ ।
ଯମଙ୍କ ପରି ଅତିରଥୀଟି ବାହ୍ଲିକ
ପାରନ୍ତି ଯୋଟି ବିନ୍ଧି ଇନ୍ଦ୍ରଙ୍କୁ ସାୟକ ।
ସତ୍ୟବାନରାଜା ଯେ ମହାରଥୀକରେ
ଲେଖା ହୁଅନ୍ତିଟି ହେ ଜାଣ ଅଗ୍ରଗାରେ ।
ମହାରଥ ଅଟେ ରାକ୍ଷସ ଅଳମ୍ବୁଷ
ମାୟାରେ ପରବଳ କରିପାରେ ଧ୍ୱଂସ ।
ପ୍ରାଗ୍‌ଜ୍ୟୋତିଷପତି ଅଟନ୍ତି ଭଗଦତ୍ତ
ପୂର୍ବେ ପାର୍ଥ ତୁଲରେ ଯୁଦ୍ଧରେ ସଙ୍ଗତ ।
ହୋଇଣ ଅଜୟକୁ ପାଇ ସେ ନାହାନ୍ତି
ବିଜୟକୁ ଜୟ ଦେଲେ ସେ ବହି ପ୍ରୀତି ।
ରଥୀ ବୋଲାଅନ୍ତି ତ ଅଚଳ ଇଷକ
ମରିବା କଥାଟିରେ ତାଙ୍କ ନାହିଁ ଦକ ।
ଅଭିମାନୀ ଘୃଣୀ ହେବାରୁ ଅଧିରଥୀ
କର୍ଣ୍ଣ ବୋଲାଅନ୍ତି ମୋ ମତେ ଅଧିରଥୀ ।

ଅର୍ଜ୍ଜୁନ କାଣ୍ଡମୁନେ ପଡ଼ିବେ ଯେ ଦିନ
ଯମ ଘେନି ଯିବଟେ କର୍ଣ୍ଣଙ୍କ ଜୀବନ ।
ଦ୍ରୋଣ ବୋଇଲେ ହେ କହିବାହେଲା ଯାହା
ଭୀଷ୍ମ ମୋହର ମତ ଅଟଇଟି ତାହା ।
କର୍ଣ୍ଣଠାରେ ଆପଣ ବାଛିଲ ଯେ ଗୁଣ
କହିବାକୁ ନାହିଁ ହେ ଏଥିରେ ବଚନ ।
କର୍ଣ୍ଣ ବୋଇଲେ ଆହେ କୁରୁ ପିତାମହ
କାହିଁକି ମୋତେ କୋହ ଧଣି ଅଛି କହ ।
କୁତ୍ସିତ କରି ଯାହା କହିଲା ବଚନ
ସୁହାଇଲା ତ ଏହା ରାଜା ସୁଯୋଧନ ।
ମୋ ମତରେ ତୁମ୍ଭେ କିମ୍ପାଇ ଅଧିରଥୀ
ନୋହି ବୋଲାଇବ ମହୀରେ ମହାରଥୀ ।
କୁରୁଙ୍କ ପାଖେ ଥାଇ ପାଣ୍ଡବଙ୍କ କାର୍ଯ୍ୟ
ସାଧୁଛ ଜାଣୁନାହିଁ ଦୂର୍ଯ୍ୟୋଧନରାଜ ।
ତୁମ୍ଭର ବିନା ଫଟାଫଟି କଥା ଯୋଟି
କହିବାକୁ ସଂସାରେ ନାହିଁ ମନିଷ୍ଯୁଟି ।
ବୟସରେ ଧନରେ ଅଥବା ବନ୍ଧୁରେ
ମହାରଥେ ଗଣନାହୁଏ କେ ସଂସାରେ ।
ଦ୍ୱିଜ ବେଦମନ୍ତରେ ବଳରେ କ୍ଷତ୍ରିୟ
ଧନେ ବୈଶ୍ୟ ଶୁଦ୍ର ଅଧିକ ହେଲେ ବୟ ।
ଶ୍ରେଷ୍ଠ ଅଟନ୍ତି ଆହେ ଭୀଷ୍ମ ମହାମୁର୍ଖ
ମନେ ମନେ ନୁହ ପଣ୍ଡିଙ୍କର ଶିଖ ।
ମନକୁ ଯା ଆସୁଛି ତାହା ବୟା ପରି
କହୁଅଛ ହେ ଭୀଷ୍ମ ସଭାରେ ଉଚ୍ଚାରି ।
ଆହେ ଦୁର୍ଯ୍ୟୋଧନ ତ ଜାଣିଲ ଭୀଷ୍ମଙ୍କୁ
କି କାର୍ଯ୍ୟ ଅଛି ଯାଙ୍କୁ ଡାକିଲେ ଯୁଦ୍ଧକୁ ।
ଏବେ ହେ ସେନାରୁ ବାହାର କରି ଦିଅ
ଏ ଥିଲେ ଆମ୍ଭର ତ ହୋଇବ ଅଜୟ ।
ଏହାଙ୍କ କଥାରେଟି ଆମ୍ଭ ମନ ଫାଟି
ଯାଉଛି ସିନା କେହିଁ କରିବା ତ ଗୋଟି ।
ମହାରଥୀ ଗଣିବା ଜ୍ଞାନ ଏହାଙ୍କର
ଥିଲା ପରି ମନକୁ ପାଏ କି ତୁମ୍ଭର ।
ଏକା ମୋତେ ଲାଗିଲା ଭାରତ ଯୁଦ୍ଧଭାର
କି କରିବେ ଥିଲେ ନ ଥିଲେ ଯାଙ୍କ ଛାର ।
ଗର୍ବରେ ଏ ବୀରଙ୍କୁ ଗଣିକରି ତୁଚ୍ଛ
ମନେ ମନେ ହେଉଥାଆନ୍ତି ବଡ଼ କଚ୍ଛ ।
ଶାସ୍ତ୍ର ତ ଲେଖିଅଛି ଅତି ବୃଦ୍ଧବାଳ
ସମାନ ଭୀଷ୍ମଙ୍କର ହୋଇଛି ସେ କାଳ ।
ଭୀଷ୍ମ ଜୀଇଁଥିଲେଟି ପାଣ୍ଡବମାନଙ୍କୁ
ମରି ନାହିଁ ମୁହିଁ ହେ କହୁଛି ତୁମ୍ଭଙ୍କୁ ।
ନ ଜାଣି ବା ଜାଣି ଭୀଷ୍ମଙ୍କୁ ସେନାପତି
କଲଣି ତ ତାହାଙ୍କୁ ଦେବି କି କୀରତି ।
ଭୀଷ୍ମ ବୋଇଲେ ଆହେ କର୍ଣ୍ଣ ତୁନି ହୁଅ
ଲାଡ଼ିନୁହ ସଭାରେ ତୁମ୍ଭେ ସୂତପୁଅ ।
ତୁମ୍ଭଙ୍କୁ ଏହିକ୍ଷଣି ଦିଅନ୍ତି ମୁଁ ମାରି
ମାତ୍ର ବଡ଼ କାର୍ଯ୍ୟ ପଡ଼ିଛି କୁରୁଙ୍କରି ।
ପର୍ଶୁରାମ ଯୁଦ୍ଧରେ ମୋହର ବିମୁଖ
ନାହାନ୍ତି କରିକି କରିବ ତୋ ବିଶିଖ ।
ଆପଣା ପ୍ରଶଂସା ଆପଣେ କହିବାର
ଶୁଣନ୍ତି ଯାର ତାକୁ ନିନ୍ଦନ୍ତି ସାଧୁନର ।
ଏହା ଶୁଣିଣ ମୁହିଁ କହୁଅଛି ତୋତେ
ଚଳାଇବାରୁ ଅଧିରଥୀ କର୍ଣ୍ଣ ମୋତେ ।
ଶୁଣା ତ ଥିବ କାଶୀରାଜାପୁରେ ମୁହିଁ
ଏରୂପେ ସହସ୍ର ରାଜାଙ୍କ ବଳ ଦହି ।
କାଶୀରାଜା ଝିଅକୁ ଘେନି ମୁଁ ଆସିଲି
ବିଚିତ୍ରବୀର୍ଯ୍ୟଙ୍କୁ ତା ବିଭା କରାଇଲି ।
ଏବେ ତା ବୋଲେ କୁରୁମାନଙ୍କର ନାଶ
ଉପସ୍ଥିତ ହୋଇଛି ଧର ଥରେ ନିଶ ।
ଅର୍ଜ୍ଜୁନଙ୍କ ବାଣ ମୁନକୁ ଅଙ୍ଗେ ବହି
ଲେଉଟି ତୁ ଆସିଲେ ପ୍ରଶଂସିବି ମୁହିଁ ।
ଦୁର୍ଯ୍ୟୋଧନ ବୋଇଲେ ଭୀଷ୍ମ ନିବରତ
ମୋହର କାର୍ଯ୍ୟ ଆସି ପଡ଼ିଛି ମହତ ।
ତୁମ୍ଭ ଦୁହିଙ୍କର ବଳରେ ପାଣ୍ଡବଙ୍କୁ
ମାରି ଆଣିବି ମୁହିଁ ଭାବୁଛି ରାଜ୍ୟକୁ ।
ମହାରଥୀ ରଥୀ ଯେ ପାଣ୍ଡବ ସେନାରେ
ଯେଉଁମାନେ କହ ତ ଭୀଷ୍ମ ମୋ ଆଗରେ ।
ରାତ୍ର ପାଇଲେ ତ କରିବା ଆମ୍ଭେ ଯୁଦ୍ଧ
କରିଥିବା ତାଙ୍କର ବଳ କର୍ଣ୍ଣବୋଧ
ଭୀଷ୍ମ ବୋଇଲେ ଆହେ ପାଣ୍ଡବ ସଇନ
ରଥୀ ଅତିରଥୀଙ୍କି ଶୁଣ ଦେଇ ମନ ।
ଯୁଧିଷ୍ଠିର ରାଜା ବୋଲାନ୍ତି ମହାରଥା
ତେଜେ କରି ପାରନ୍ତି ଅଗ୍ନିଙ୍କର ବ୍ୟଥା ।

ଅୟୁତେ ନାଗବଳ ବହେ ଭୀମସେନ
ମହାରଥୀଙ୍କର ସେ ମସ୍ତକମଣ୍ଡନ ।
ମହାରଥୀ ଅଟନ୍ତି ମାଦ୍ରୀସୁତ ଦୁହେଁ
ଜିଣି ପାରନ୍ତି ସେ ଯୋଦ୍ଧାଙ୍କୁ ଏକା କୋହେ ।
ପାଣ୍ଡୁସୁତମାନେ ଯେ ସମର ସଉଣ୍ଡା
ଶାଳ ଗଛ ପରି ଅଟନ୍ତି ସେହୁ ଭେଣ୍ଡା ।
ଯେତେ ଜନମାନେ ଜନମିଛନ୍ତି ମଞ୍ଚ
ପାଣ୍ଡବେ ତାହାଙ୍କୁଟି ଅଟନ୍ତି ଯେ ଉଚ୍ଚ ।
ବ୍ରହ୍ମଚର୍ଯ୍ୟ ବ୍ରତରେ ଅଟନ୍ତି ସେ ସାଧୁ
ଯୁଦ୍ଧରେ ମୁଖ ନିନ୍ଦା କରୁଥାଏ ବିଧୁ ।
ହୀମନ୍ତ ଯେ ଶ୍ରୀମନ୍ତ ଅଟନ୍ତି ତ ସେହି
ତାହାଙ୍କର କର୍ମକୁ ଅମାନୁଷ କହି ।
ଦିଗବିଜୟରେ ପାଣ୍ଡବ ନୃପକୁଳ
ଜିଣି ପକାଇଲେ ଯେ କରି ରଣ ଗୋଳ ।
ପାଣ୍ଡବଙ୍କର ଗଦା ଶକ୍ତି ଶରାସନ
ଥାଉ ସନ୍ଧିବାର ନ ପାରେ ବହି ଜନ ।
ଜାଣିଛ ତ ପିଲାଟିମାନଙ୍କର କାଳେ
ତୁମ୍ଭଙ୍କୁ ସେ ଜିଣି ପକାଇଥିଲେ ଖେଳେ ।
ସେମାନେ ଯେତେବେଳେ ତୁମ୍ଭଙ୍କୁ ସାୟକ
ବିନ୍ଧିବେ ସୈନ୍ୟ ଘେନି ଯିବ ପରଲୋକ ।
ଏହା ଜାଣି ତୁମ୍ଭଙ୍କୁ କହୁଥାଇଁ ବାବୁ
ତୋ ଭଲ ହୋଇଥିଲେ ଆମ୍ଭ ଭଲ ସବୁ ।
ରାଜସୂୟ ଯାଗ କଲେ ସେ ଯେଉଁରୂପେ
ଇନ୍ଦ୍ର ଯାଗ କଲେ ନୋହିବ ସେହିରୂପେ ।
ତାଙ୍କ ଆମ୍ଭ ସେନାରେ ଅର୍ଜ୍ଜୁନ ସଦୃଶ
ରଥୀ ଥିଲା ପରିଟି ହେଉ ନାହିଁ ଦୃଶ୍ୟ ।
ଦେବାସୁର ଉରଗ ଯକ୍ଷରେ ତ କଷ୍ଟ
ଥିବାର ପାର୍ଥ ପରି ମହାରଥୀ ଶ୍ରେଷ୍ଟ ।
ଆମ୍ଭେମାନେ ନରଜନ୍ମ ତ ପାଇଥାଇଁ
ଅର୍ଜ୍ଜୁନଙ୍କ କିରୂପେ ମାରିବା ତୁଳାଇ ।
କପିଧ୍ୱଜ ରଥ ଗାଣ୍ଡୀବ ମହାଧନୁ
ଧଣି କବଚରେ ଘୋଡ଼ାଇଥାନ୍ତି ତନୁ ।
ଅର୍ଜ୍ଜୁନ ଘରିଘୋଡ଼ା ଗତିକି ପବନ
ଊଣା ହେବ ଆହେ ରାଜନ ଦୁର୍ଯ୍ୟୋଧନ ।
ସ୍କନ୍ଧଦେଶେ ଅକ୍ଷୟ ଇଷୁଧି ଦିଓଟି
ନିନ୍ଦୁଥାଆନ୍ତି ଶରପୁଙ୍ଖରେ ସୂର୍ଯ୍ୟଟି ।

ମହେନ୍ଦ୍ର ଯମ ରୁଦ୍ରବରୁଣ କୁବେର
ଅସ୍ତ୍ରମାନଙ୍କର ସେ ପାଣ୍ଡବ ଭଣ୍ଡାର ।
ଶୁଣିଛ ତ ନିବାତ କବଚମାନଙ୍କୁ
ଏକା ହୋଇଣ ଦେଖାଇଲେ ସେ ଯମଙ୍କୁ ।
ଏବେ ତ ତୁମ୍ଭ ସଙ୍ଗେ ଯୁଝିବ ସେ କାଲି
ଏଥିପାଇଁ ସିନା ମୁଁ ମରୁଅଛି ଭାଳି ।
ଗୁରୁ ତୁଳରେ ମୁହିଁ ଜୀଇଁ ଥିବାଯାକ
ପାଇନାହିଁ ତୁମ୍ଭଙ୍କୁ କିରୀଟୀ ସାୟକ ।
ଏକେତ ଅରଜୁନ ଗୋବିନ୍ଦରେ ଯୁତ
ହୋଇଲେ କି ନ କରି ପାରିବେ କହ ତ ।
ଆମ୍ଭେ ଦୁହେଁ ଆସି ତ ହୋଇଲୁନି ବୁଢ଼ା
ଯୋଟିବୁଁ ବୋଲିବା କଥାଟା ମଧ୍ୟ ପୌଢ଼ା ।
ଭୀଷ୍ମଙ୍କରଠାରୁ ଶୁଣିଣ ଏ ବଚନ
ଭୟରେ ନୃପ ଦେହ କରିଦେଲେ ଖିନ୍ନ ।
ସେକାଳେ ତାଙ୍କ କରୁ ଖସିଣ କଙ୍କଣ
ପଡ଼ି ଜାତ କଲା ଶବଦ ଟଣ ଟଣ ।
କୃଷ୍ଣା ପାଞ୍ଚପୁତ୍ର ବୋଲାନ୍ତି ମହାରଥୀ
ବିରାଟଙ୍କର ପୁଅ ଉତ୍ତରଟି ରଥୀ ।
ଅର୍ଜ୍ଜୁନ ପରି ମହାରଥୀଙ୍କ ମଣ୍ଡନ
ଅଭିମନ୍ୟୁ ସୁଭଦ୍ରାଦେବୀଙ୍କ ନନ୍ଦନ ।
ମଧୁବଂଶେ ଜାତ ସାତ୍ୟକି ମହାରଥା
ଆଗେ ମହାରଥାଏ ନ କହିବେ କଥା ।
ଉତ୍ତମୌଜା ଯୁଧାମନ୍ୟୁ ଏ ଦୁଇ ରଥୀ
ଶତ୍ରୁ କୁଳ କ୍ଷଣକେ ପାରନ୍ତିଟି ମଣ୍ଡି ।
ବୟୋବୃଦ୍ଧ ହେଲେହେଁ ଦ୍ରୁପଦ ବିରାଟ
ଅଟନ୍ତି ମହାରଥୀ ଜାଣନ୍ତି ଯୁଦ୍ଧ ଆଣ୍ଟ ।
ସେ ଦୁହେଁ ଆର୍ଯ୍ୟାବୃତ୍ତମାନଙ୍କ ଆକର
ପାଣ୍ଡୁସୁତଙ୍କର ଯେ ସମ୍ବନ୍ଧୀ ଶ୍ୱଶୁର ।
ପୁଣି ତା ପାଇଛନ୍ତି ପାଣ୍ଡବଙ୍କୁ ସାହା
ଯୁଦ୍ଧେ କରି ପାରଇ ସବୁ ତାଙ୍କ ବାହା ।
ଦୁହେଁ ଦୁଇଟି ଅକ୍ଷୌହିଣୀ ସେନା ଘେନି
ଦହିଦେବ କ୍ଷଣକେ ତୁମ୍ଭର ବାହିନୀ ।
ମହାରଥ ଦ୍ରୁପଦନନ୍ଦନ ଶିଖଣ୍ଡୀ
ଯୁଦ୍ଧେ ଫୁଟାଇବେ ଯୋଦ୍ଧାଙ୍କ ଗଣ୍ଡି ହାଣ୍ଡି ।
ଅଯୋନିଜ ଧୃଷ୍ଟଦ୍ୟୁମନ ମହାରଥ
କରିବେ ଯୁଦ୍ଧେ ପାଣ୍ଡବଙ୍କ ମନୋରଥ ।

ଧୃଷ୍ଟଦ୍ୟୁମନଙ୍କର ପୁଅ କ୍ଷତ୍ରଧର୍ମା
ବୋଲଇଁ ତାହାଙ୍କୁ ମୁଁ ଅର୍ଦ୍ଧରଥକର୍ମା ।
ଶିଶୁପାଳ ପୁତ୍ର ଯେ ଧୃଷ୍ଟକେତୁ ରାଏ
ମହାରଥ ତାହାଙ୍କୁ ବୋଲନ୍ତି ସଭିଏଁ ।
କ୍ଷତ୍ରଧର୍ମ ରତ ଜୟନ୍ତ କ୍ଷତ୍ରଦେବ
ସତ୍ୟଜିତ ମହାରଥୀ ହେ ନରଦେବ ।
ଅଜ ଭୋଜ ଏ ଦୁଇ ମହାରଥୀ ତମେ
କୁରୁଙ୍କୁ ଦେବ ଗ୍ରାମ ଜାଣ ଯମଗ୍ରାମେ ।
ରକ୍ତଧ୍ୱଜ ପାଞ୍ଚ କେକୟ ମହାରଥୀ
ବୋଲାନ୍ତି ଶରେ ପୂର୍ଣ୍ଣ ପାରନ୍ତ କରି ପୃଥ୍ୱୀ ।
କାଶୀକ, ସୁକୁମାର, ନୀଳ, ସୂର୍ଯ୍ୟଦତ୍ତ
ମଦିରାଶ୍ୱ ଶଙ୍ଖ ଏ ରଥୀ ମୋର ମତ ।
ବୃଦ୍ଧକ୍ଷେମ ପୁତ୍ର ଅଟନ୍ତି ମହାରଥ
ଚିତ୍ରାୟୁଧ ରଥୀଙ୍କରେ ତ ସମରଥ ।
ଚେକିତାନ ଯେ ସତ୍ୟଧୃତି ମହାରଥୀ
ପାରନ୍ତି ପରବଳ ବଳ ଶରେ ମନ୍ଥି ।
ବ୍ୟାଘ୍ର ଦତ୍ତ ଚନ୍ଦ୍ରସେନ ଯେ ରଥିଶିଖ
ପାରନ୍ତି ଯୁଦ୍ଧେ ବିନ୍ଧି ଅନେକ ସାୟକ ।
ସେନାବିନ୍ଦୁ ରଥୀ କ୍ରୋଧହନ୍ତା ଭୀମସେନ
ସମାନ ଅଟନ୍ତିଟି ବଳେ ଦୁର୍ଯ୍ୟୋଧନ
ରଥୀ ହେଲେ ଆଣ୍ଟ ରଥୀଟି କାଶୀରାଜା
କରନ୍ତି ତାଙ୍କୁ ମହାରଥୀମାନେ ପୂଜା ।
ଶ୍ରେଣୀମାନ ବସୁଦାନ ଯେ ରୋଚମାନ
ପାଣ୍ଡ୍ୟଙ୍କୁ ମିଶି ମହାରଥୀ ଏ ରାଜନ ।
ପୁରୁଜିତ କୁନ୍ତିଭୋଜ ଏ ଦୁଇ ରାଜା
ମହାରଥୀଙ୍କରେ ଯେ ପାଉଛନ୍ତି ପୂଜା ।
ଭୀମସେନର ପୁଅ ଘଟୋତ୍କଚ ବଳୀ
ପାରଇ କ୍ଷଣକେ ତୁମ୍ଭର ସୈନ୍ୟ ଦଳି ।
ପାଣ୍ଡବଙ୍କ ସୈନ୍ୟର ମହାରଥ ଆଦି
ଅର୍ଦ୍ଧରଥଯାଏ ମୁଁ କହିଲି ସମ୍ପାଦି ।
ଅର୍ଜ୍ଜୁନରେ ପାଳନା ହୋଇ ରଥୀକୁଳ
ମୋ ସଙ୍ଗରେ କାଲି ଯୁଦ୍ଧରେ ହେବେ ମେଳ
ଦେଖିବ ତ ତୁମ୍ଭେ ଯେ ତାଙ୍କର ଆମ୍ଭର
ଯୁଦ୍ଧରେ କରିବାର ଶରକୁ ପ୍ରସାର ।
ଅରଜୁନ ଗାଣ୍ଡୀବ କୃଷ୍ଣ ସୁଦର୍ଶନ
ଚକ୍ର ଧରିଥିଲେ କରିବି ଆୟୋଧନ ।
ଯେତେ କାଳଯାଏ ଜୀବନ ଥିବି ଧରି
ଯୁଝିଥିବି ତୁମ୍ଭର ସୈନ୍ୟକୁ ଆବୋରି ।
ଏକା ଶିଖଣ୍ଡୀକି ମୁଁ ନ ବିନ୍ଧିବି ଶର
ଅଟଇ ଯେଣୁ ସ୍ତିରୀ ପୂର୍ବେ ସେ ନୃବର ।
ବାପାଙ୍କ ପ୍ରିୟପାଇଁ ବ୍ରହ୍ମଚର୍ଯ୍ୟ କଲି
ରାଜ୍ୟେସୋନ ଭାଇକି ରାଜା କରାଇଲି ।
ମାଇପିଟା ଶିଖଣ୍ଡୀ ତାର ଶରେ ଗଣ୍ଡି
ଫୁଟାଇଲେ ବୁଡ଼ିବ ମୋର କୀର୍ତ୍ତି ଖଣ୍ଡି ।
ଆଉ ଯେତେ ରାଜାଏ କରିବେ ସମର
ମୋ ଶରମୁଖେ ଦେଖି ଯିବେ ସ୍ୱର୍ଗପୁର ।
କେବଳ କହୁଛି ପାଣ୍ଡବମାନଙ୍କର
ଜୀବନ ନେବା କର୍ମ ନୁହେଟି ମୋହର ।
ମୋର ପ୍ରାଣ ପଛକେ ପାଣ୍ଡୁସୁତେ ନେଇ
ତୁମ୍ଭଙ୍କୁ ମାରି ଭୋଗ କରନ୍ତୁ ଏ ମହୀ ।
ଏଥିପାଇଁ ଦୁଃଖ ମୋ ନାହିଁ ନରବର
ଯୁଦ୍ଧେ ମଲେ ଯାଇ ବସିବି ସ୍ୱର୍ଗପୁର ।
ରଥ ଅତିରଥ ଯେ ଅର୍ଦ୍ଧରଥଙ୍କର
ସାରିଲେ ସଂଖ୍ୟା କୃଷ୍ଣସିଂହ ନରବର ।



## ଶିଖଣ୍ଡୀ ଉପାଖ୍ୟାନ

ଏଥୁଅନ୍ତରେ ଦୁର୍ଯ୍ୟୋଧନ ନରପତି
ଭୀଷ୍ମଙ୍କୁ ଚାହିଁ କରି କହିଲେ ଯୁକତି ।
କାହିଁକି ଏ ଭାରତ ଯୁଦ୍ଧେ ଶିଖଣ୍ଡୀର
ଦେହକୁ ବୋଲୁଅଛ ନ ବିନ୍ଧିବ ଶର ।
ଏ ବାହାରେ ବୋଲୁଛ ପାଣ୍ଡବମାନଙ୍କୁ
ନ କରିବ ଓପ୍ରଧ ଛଡ଼ା ମୁଁ ଯୁଦ୍ଧକୁ ।
ପୂର୍ବରୁ ପ୍ରତିଜ୍ଞା ମୋ ଆଗେ ଥିଲା କରି
ପାଣ୍ଡବଙ୍କୁ ମାରି କରିବି ଦଣ୍ଡଧାରୀ ।
ଏବେ ସେ କଥା କରି ଦେଉଛ ଅନ୍ୟଥା
କହ ତ କିପାଇଁ ହୃଦରେ ହେଲା ବ୍ୟଥା ।
ଭୀଷ୍ମ ବୋଇଲେ ମୁଁ ଯହିଁକି ଶିଖଣ୍ଡୀକି
ନ ମାରିବି ପୁଚ୍ଛିଲ କହିବି ନାହିଁକି ।
ଶାନ୍ତନୁ କୁରୁଦେଶ ସମ୍ପତ୍ତି ଭୋଗକରି
କାଳବଶେ ଯାଇ ବସିଲେ ସ୍ୱର୍ଗପୁରୀ ।
ପୂର୍ବରୁ ତ ଥିଲି ପ୍ରତିଜ୍ଞା ମୁହିଁ କରି
ନୋହିବି ହସ୍ତିନାରେ ବୋଲି ଦଣ୍ଡଧାରୀ ।

ସେହି ସକାଶୁଁ କୁରୁଦେଶେ ରାଜା ନୋହି
ଚିତ୍ରାଙ୍ଗଦକୁ ମୁହିଁ କଲି ନରସାଇଁ ।
ଚିତ୍ରାଙ୍ଗଦ ଯେ ଚିତ୍ରାଙ୍ଗ ଗନ୍ଧର୍ବକୁ
ଯୁଝିକରି ଗଲେ ସେହୁ ପରଲୋକକୁ ।
ତାହା ଦେଖି ମୁହିଁ କରିଣ ମହାଶୋକ
ରାଜ୍ୟେ କଲି ଚିତ୍ରବୀର୍ଯ୍ୟଙ୍କୁ ଅଭିଷେକ ।
ଚିତ୍ରବୀର୍ଯ୍ୟ ମୋହଠାରେ ଭାରଟି ଦେଇ
ରହିଲେ ଘରେ ମହାସୁଖେ ତୁନି ହୋଇ ।
ବିଚିତ୍ରବୀର୍ଯ୍ୟଙ୍କର ହୁଅନ୍ତେ ଯୌବନ
ବିଭା କରିବାକୁ ମୁଁ କରୁଥିଲି ମନ ।
ସେହି ସମୟରେଟି କାଶୀରାଜାଙ୍କର
ଶୁଣିଲି ତିନି ଝିଅ କରନ୍ତି ସ୍ୱୟମ୍ବର ।
ସାନ ଦୁଇ ନାମ ଅମ୍ବିକା ଅମ୍ବାଳିକା
ଏ ଦୁଇରୁ ଜ୍ୟେଷ୍ଠା ସେହି ଅମ୍ବା ବାଳିକା ।
କାଶୀରାଜା କୁଳ ଶୀଳରେ ତ ବିଶୁଦ୍ଧ
ଏଣୁ ତାର ଝିଅଙ୍କୁ ବଳଇ ମୋ ସଧ ।
ଏହା ସତ୍ୟବତୀଙ୍କ ଆଗରେ କହିଲି
ରଥ ଚଢ଼ି ଏକ ମୁଁ କାଶୀପୁରେ ଗଲି ।
ଦେଖିଲି ଶତ ଶତ ସଂଖ୍ୟା ନରବର
ବସିଅଛନ୍ତି ସ୍ୱୟମ୍ବରର ସଭାର ।
ମୁହିଁ ତ ଯାଇଥିଲି କନ୍ୟାଲୋଭୀ ହୋଇ
ବରଣକାଳେ ବଳେ ଧଇଲି କନ୍ୟା ଯାଇ ।
ବୋଇଲି ଆହେ ନୃପେ ନେଲି ମୁଁ କନ୍ୟାଙ୍କୁ
ଥିଲେ ବଳ କର ମୋ ତୁଳରେ ଯୁଦ୍ଧକୁ ।
ଏହା କହି ତିନି କନ୍ୟାଙ୍କୁ ମୋ ରଥରେ
ବସାଇ ଆସନ୍ତେ ମୁଁ ସୁଖରେ ପଥରେ ।
ନ ସହି ରାଜାମାନେ ହୋଇ ଏକଗୋଟି
ବିନ୍ଧିଲେ ଗୋଡାଇ ସାୟକ କୋଟିକୋଟି ।
ମୁଁ ତାହା ଦେଖିକରି ସାରଥିକି ଝଣ୍ଟେ
ବୋଇଲି ରଥ ଲେଉଟାଅ ଯୁଦ୍ଧ ଦାଣ୍ଡେ ।
ଆଜ ମୁଁ ରାଜାଙ୍କର ଭାଙ୍ଗିବି ଗରବ
ବଢ଼ାଇବି ମୋହର ଯୁଦ୍ଧରେ ଗୌରବ ।
ଏହା ଶୁଣି ସାରଥି ରଥ ଲେଉଟାଇ
ନୃପକୋଟି ମଧ୍ୟରେ ରଖି ଦେଲା ନେଇ ।
ସେ କାଳରେ ଡେବିରି କରରେ ଧନୁଟି
ଧରି ଥରେ ଆମୁଞ୍ଛିଥିଲି ତା ଗୁଣଟି ।

କକ୍ଷୁଣି ଅଙ୍ଗୁଷ୍ଠିକି ଲଗାଇ ଗୁଣରେ
ଟଙ୍କାର କରିଦେଲି ଥରେ ମୁଁ ଆଣ୍ଟରେ ।
ନୃପତିଏ ଘରି ପାଶରେ ଥିଲେ ବେଢ଼ି
ମୋ ଗୁଣରଡି ଶୁଣି ପଳାଇଲେ ଛାଡ଼ି ।
ମୁହିଁ ତ ହୋଇଥିଲି ଯୁଦ୍ଧରେ ଆବେଗ
ବିନ୍ଧିଲି ତୀକ୍ଷ୍ଣ ଶରମାନ ବହି ରୋଷ ।
ମୋ ହସ୍ତଲାଘବେ ଧନୁରୁ ଶର ଫିଟି
ଆକାଶରେ ରହିଲେ ହୋଇ କୋଟି କୋଟି
ସେ ସକାଶୁଁ ପକ୍ଷୀଏ ନ ପାରିଲେ ଚଳି
ନ ପଡ଼ିଲେ ତଳେ ସୂର୍ଯ୍ୟଙ୍କ ରଶ୍ମିମାଳୀ ।
ଗଜବାଜିମାନଙ୍କ ମରମେ ମୋ କାଣ୍ଡ
ବାଜନ୍ତେ ପଡ଼ିଲେ ସେ ରଣ ଭୂମି ଦାଣ୍ଡ ।
ରାଜାମାନେ ଦେଖି କି କଲା ବୋଲି ଭାଳି
ମୋତେ ସେହିରୂପେ ବିନ୍ଧିଲେ ଶରମାଳୀ ।
ତାଙ୍କ ଶରମାନଙ୍କୁ ନିବାରି ମୁଁ ଶରେ
ଯୋଖିଲି ଦିବ୍ୟଅସ୍ତ୍ର ଧନୁରେ ରୋଷରେ ।
ସେ ଅସ୍ତ୍ରମାନଙ୍କର ପାଇ ପରିଘାତ
ଯୁଦ୍ଧେ ହେଲେ ଖର୍ବ ସକଳ ମହୀଭୃତ ।
ନୃପଙ୍କ ନିସତପଣକୁ ମୁଁ ଜାଣିଲି
ନ ଯୁଝି ହସ୍ତିନାକୁ ରଥକୁ ବାହିଲି ।
ଶାଲ୍ୱ ମୋ ପଛେ ପଛେ ଗୋଡ଼ାଇଣ ବେଗେ
ବାଛି କାଣ୍ଡମାନ ବିନ୍ଧିଲା ମୋର ଅଙ୍ଗେ ।
ସେହି କାଣ୍ଡରେ ଅଙ୍ଗଦେଶକୁ ମୁଁ ମଣ୍ଡି
ନିନ୍ଦା କଲି ଯେ ଗେରୁମଣ୍ଡା ଗିରିଖଣ୍ଡି ।
ସାରଥିକି ବୋଇଲେ ଦେଖ ଶାଲ୍ୱ ମୂର୍ଖ
ଗୋଡ଼ାଇ ବିନ୍ଧୁଅଛି ମୋ ପଛେ ବିଶିଖ ।
ବାହା ଥରେ ରଥ ମୋହର ଶାଲ୍ୱଠାକୁ
ଭାଙ୍ଗିଦେବି ଯୁଦ୍ଧେ ତାହାର ଗରବକୁ ।
ମୁହିଁ ବୋଲିବା ମାତ୍ରକରେ ତ୍ୱରା ହୋଇ
ଶାଲ୍ୱ ରଥେ ମୋ ରଥ ଲଗାଇଲେ ନେଇ ।
ଶାଲ୍ୱକୁ ବରଗିବାପାଇଁ ଯମପଥ
ପ୍ରହାର କଲି ତା ହୃଦେ ମୁଁ ଶରମୁଥ ।
ମୋ ଶରରେ ପୀଡ଼ିତ ହୋଇ ଶାଲ୍ୱ ରାଜା
ପଳାଇଲା ଯୁଦ୍ଧରୁ ଛାଡ଼ିଦେଇ ଲଜ୍ଜା ।
କୋଳରେ ଧରି ବାପ ପରାୟେ ଝିଅଙ୍କୁ
ସେ କନ୍ୟାଙ୍କୁ ଘେନି ଆସିଲି ହସ୍ତିନାକୁ ।

ମାତା ସତ୍ୟବତୀଙ୍କି କନ୍ୟା ଧର୍ମର୍ପିଲି
ବାଟରେ ଯୁଦ୍ଧ ହେବା କଥାକୁ କହିଲି ।
ସତ୍ୟବତୀ ବୋଇଲେ ଜିଣି ନୃପକୁଳ
ଆଣିଲ କନ୍ୟା ସବୁରୂପେ ମୋର ଭଲ ।
ଏତେ କହି ମୋହର ମୂର୍ଦ୍ଧାକୁ ଶୁଙ୍ଘିଲେ
ଯାଅ ବାବୁ ଘରକୁ ବୋଲିଣ ବୋଇଲେ ।
ମାତାଙ୍କର ବୋଲରେ ଆସିଲି ଘରକୁ
ସୁଖେ ନିଦ୍ରା ଯାଇ ହରିଲି ରଜନୀକୁ ।
ଆରଦିନ ସକାଳୁ କହିଲି ମାତାକୁ
ଏହି ତିନୋଟି କନ୍ୟା ବିଚିତ୍ରବୀର୍ଯ୍ୟଙ୍କୁ ।
ବିଭା କରାଇବାକୁ ଆଣିଅଛି ମୁହିଁ
ବୋଇଲେ ତୁମ୍ଭେ ସିନା ଏହା କରିବଇଁ ।
ସତ୍ୟବତୀ ବୋଇଲେ ତୋହର ଯେ ମତ
ତହିଁରେଟି ବାବୁ ପାଏ ମୋହର ବିତ୍ତ ।
ଯେବେ ବୋଲୁଅଛୁ ଭାଇକି କରି ବେଶ ।
ବିଭା କରି ମଣ୍ଡି ହସ୍ତିନା ମହୀଦେଶ ।
କାଶୀ ରାଜାଙ୍କ ଜ୍ୟେଷ୍ଠସୁତା ଚାରୁକେଶୀ
କହିଲା ମୋତେ ସେହି ସମୟରେ ଆସି ।
ତୁମ୍ଭଙ୍କୁ ତ ଧରମ ଗୋଚର ହୋଇଛି
ଏଣୁକରି କହୁଛି ତୁମ୍ଭଙ୍କୁ ମୁରୁଛି ।
ବାବୁଙ୍କୁ ନ କହି ଶାଲ୍ୱଙ୍କୁ ଅଛି ବରି
ସେ ଆଶା ମୋ ତୁମ୍ଭେ ନ ଦିଅ ଦୂର କରି ।
ନୋହିଲେ ମୋର ବୋଲ ଘେନି ପର୍ଶୁରାମ
ଦ୍ୱିଜଙ୍କ ପାଶେ ଯାଅ କାମିନୀ ଉତ୍ତମ ।
ସେ ତୋର ଦୁଃଖ ଘେନି ଡକାଇ ଭୀଷ୍ମଙ୍କୁ ।
କରାଇ ବିଭା ଦେବ ପାଉଛି ମନକୁ ।
ଅମ୍ବା ବୋଇଲେ ଆହେ ଅଜା ମୋର ଭଲ
ବାଛି ଯେବେ କହ କରିବି ତୁମ୍ଭ ବୋଲ ।
କେଉଁ ପର୍ଶୁରାମ କରିବେ ଦୁଃଖ ନାଶ
ଏହା ଥରେ ମୋ ଆଗେ କର ତ ପ୍ରକାଶ ।
ହୋତ୍ରବାହନ ଶୁଣି ବୋଇଲେ ମହେନ୍ଦ୍ର
ପର୍ବତରେ ଅଛନ୍ତି ରାମ ଦ୍ୱିଜଇନ୍ଦ୍ର ।
ଗନ୍ଧର୍ବ ଅପସରାମାନଙ୍କେ ସେବିତ
ହୋଇ କରୁଛନ୍ତି ଚିତ୍ତକୁ ଉଲ୍ଲସିତ ।
ସେଠାକୁ ତୁମ୍ଭେ ଯାଇ ତାଙ୍କ ପାଦେ ପଡ଼ି
କହିବ ଯେ ଓଳଗି ଦୁଃଖଟିକି ଫେଡ଼ି ।
ପୁଣି ମୋର ନାତୁଣୀ ବୋଲିଣ ତାହାଙ୍କୁ
କହିଲେ ସେ ସରାଗ କରିବେ ତୁମ୍ଭଙ୍କୁ ।
ପୂର୍ବରୁ ସେହି ସଖା ଅଟନ୍ତି ମୋହର
ଏଥିରେ ଶଙ୍କା ଥିଲେ କରିଦିଅ ଦୂର ।
ଏହିକାଳେ ଅକୃତବ୍ରଣ ମହାଋଷି
ହୋତ୍ରବାହନଙ୍କୁ ଦେଖିଲେ ବନେ ଆସି ।
ଋଷି ସଙ୍ଗେ ହୋତ୍ରବାହନ ହୋଇ ତୋଷ
ନମିଲେ ସେ ଅକୃତବ୍ରଣ ପାଦଦେଶ ।
ହୋତ୍ରବାହନଙ୍କରଠାରୁ ପୂଜା ପାଇ
ଅକୃତବ୍ରଣଋଷି ବସିଲେ ତୋଷ ବହି ।
ଆଗ ନାନାଜାତି କଥାମାନ ହୋଇଲେ
ପଛେ ପର୍ଶୁରାମଙ୍କ କଥାମାନ ହୋଇଲେ
କଥା ପ୍ରସଙ୍ଗରେ ପୁଛିଲେ ରାଜା ତାଙ୍କୁ
ରାମ କାହିଁ ଅଛନ୍ତି କହ ତ ଆମ୍ଭଙ୍କୁ ।
ଅକୃତବ୍ରଣ ବୋଇଲେ ହେ ନରପତି
ତୁମ୍ଭେ ଥାଅ ପର୍ଶୁରାମଙ୍କ ମନେ ନିତି ।
କାଲି ଏହିଠାକୁ ଆସିବେ ପର୍ଶୁରାମ
ଦେଖିବ ହେ ନୟନେ ନରଙ୍କ ଉତ୍ତମ ।
ଏ କନ୍ୟାଟି କାହିଁକି ଆସିଛି ବନକୁ
ପଚାରୁଛି ତୁମ୍ଭଙ୍କୁ କହ ତ ଆମ୍ଭଙ୍କୁ ।
ଭୀଷ୍ମ ଯେବେଟି ବିଭା ଇଚ୍ଛା କରିଥାନ୍ତେ·
ଏରୂପେ କହିବା ମାନନ୍ତା ମହାମତେ ।
ବୁଝ ଏବେ ତ ସାନ ଦୁଇ ଭଉଣୀଙ୍କି
ବିଭା କଲେ ନାହିଁ କି ତାଙ୍କର ଭାଇଙ୍କି ।
ନିୟମ କରାଇ ହେ ଶାଲ୍ୱ ରଣରଙ୍କା
ମୋହରଠାରୁ ଛାଡ଼ି ଦିଅ ମନୁ ଶଙ୍କା ।
ଯେତେ ସେ କନ୍ୟା ରସି କହୁଥିଲା ତାକୁ
ତେତେ ଶାଲ୍ୱ ଧଇଲା ହୃଦରେ ରାଗକୁ ।
ଶାଲ୍ୱର ଦେଖି କରି ନ ନେବାର ଗତି
କାନ୍ଦିକରି କହିଲା ସେ ନବ ଯୁବତୀ ।
ଯେବେ ତୁମ୍ଭେ ମୋତେ କରୁଅଛ ନିରାଶ
ଆନ ପତି କଲେଟି ନାହିଁ ମୋର ଦୋଷ ।
ଶାଲ୍ୱ ତାହା ଶୁଣିଣ ପୁନଃ ପୁନଃ କରି
ବୋଇଲା ଯାଅ ଆଲୋ ବାହାରି ପାମରି ।
ଭୀଷ୍ମ ତୋତେ ନେଇଥିଲେ ମୁହିଁ ରଖିଲେ
ମୋତେ ଆସି ମାରିବେ ଯୁଦ୍ଧରେ ସେ ଭଲେ

ମୁଁ ତ ତାଙ୍କପରି ନୁହଇ ସମରଥ
ମଲେ ଆଉ ହେବି କି କହ ନରନାଥ ।
ଏହା ଶୁଣି ସେ କନ୍ୟା କରି ଉଚେ ଡକା
ବାହାରିଲା ସେହିଠାରୁ ହୋଇଣ ଏକା ।
ମନେ କଲା ମୋ ପରି ଅଭାଗିନୀ ନାରୀ
ଏ ମହୀରେ ଆଉ ନ ଥିବ ଅବତରି ।
ବାବୁ ଭାଇ ବନ୍ଧୁରେ ହୋଇଲି ମୁଁ ତ୍ୟାଗ
ପୁଣି ଛାଡ଼ି ଅଇଲି ଭୀଷ୍ମ ମହାଭାଗ ।
ଭାବିଲି ଯାହା ଶାଲ୍ୱ ଘେନି କାମ ବ୍ୟଥା
ଛାଡ଼ିବି ବୋଲି ହେଲା ଦ୍ୱିଗୁଣ ସେ କଥା ।
ମୋର ଇଛାରେ ମୁହିଁ ଲୋଡ଼ି ବିଷ ଗ୍ରାସ
କରିଛି ଏଥିରେ କାହାର ନାହିଁ ଦୋଷ ।
ଯେତେବେଳରେ ଭୀଷ୍ମ ଶାଲ୍ୱଙ୍କର ରଣ
ହେଉଥିଲା ଯେତେବଳେ ମୁହିଁ ଗମନ ।
କରିଥିଲେ ଶାଲ୍ୱଙ୍କଠାକୁ ମୋତେ ତୋଷ
ହୋଇ ଶାଲ୍ୱ ଘେନି କରନ୍ତେ ଘରବାସ ।
ଏ କଥା ତେତେବେଳେ ବିଚ୍ଚର ନ କଲି
ଏବେଟି ସବୁ ଦୁଃଖ ଦେହକୁ ଆଣିଲି ।
ସହଜେ ତ ଅଟଇ ମୁଁ ଅବୋଧ ଯୋଷା
ଭୀଷ୍ମ ମୋତେ ଆଣିଣ ଦେଲେ ଏତେ ଦଶା ।
ବାବୁହିଁ ତ ଥାଇ କିଛି ଯେନ କହିଲେ
ଭୀଷ୍ମ ବଳେ ଆଣିଲେ ତୋଳେ ଦେଖୁଥିଲେ
ଏ ସକାଶୁଁ ଭୀଷ୍ମ କାଶୀ ନରପତି
ଧିକ ହେଉଟି ଜୀଇଛନ୍ତି ଯା ଧରିତ୍ରୀ ।
ମୋ ଦୁଃଖକୁ ପ୍ରତିକାରଣ ଅଟେ ଭୀଷ୍ମ
ମୋ କ୍ରୋଧାନଳରେ କରିବି ତାକୁ ଭସ୍ମ ।
ଆହେ ଦୁର୍ଯ୍ୟୋଧନ ଏହିରୂପେ ସୁମନା
ଭାବନା କରି ମୋତେ ହୋଇ କୋପମନା ।
ମୁନିମାନଙ୍କର ଆଶ୍ରମରେ ଯେ ରହି
ସେଦିନ ରଜନୀକି ଦେଲା ସେ ବଞ୍ଚାଇ ।
ଆରଦିନ ବସାଇ ସେ ମୁନିମାନଙ୍କୁ
କହିଲା ଆଦ୍ୟ ପ୍ରାନ୍ତ ଯାଏ ତା କଥାକୁ ।
ଏହିକାଳରେ ଶୈଖାବତ୍ୟ ନାମେ ଋଷି
ସେ କନ୍ୟାର ପାଶରେ ପାଇଗଲେ ଆସି ।
ଦେଖିକରି ଅମ୍ବାର ବଦନ ମଳିନ
ବୋଇଲେ କାହିଁପାଇଁ କରୁ ତୁ ରୋଦନ ।

ତାଙ୍କ ପଚ୍ଚରିବା ଉତ୍ତାରୁ ଅମ୍ବା ଭୀରୁ
କହିଲେ ପୁଣି ତାଙ୍କ ସ୍ୱୟମ୍ବରଠାରୁ ।
ଶୈଖାବତ୍ୟ ବୋଇଲେ ଏଥିକି ଋଷିଏ
କି ଉପାୟ କରିବେ ନ କାନ୍ଦ ଗୋ ମାଏ ।
ଅମ୍ବା ବୋଇଲେ ହେ କରିବି ମୁଁ ତପସ୍ୟା
ଦିଅ ମୋତେ ତୁମ୍ଭ ପାଶରେ ଖଣ୍ଡେ ବସା ।
ପୂର୍ବଦେହରେ ମୁଁ କରିଛି ଖଣ୍ଡ ତପ
ଏଣୁ ପତିସଙ୍ଗ ପ୍ରଥମୁ ହେଲା ଲୋପ ।
ଭୀଷ୍ମ ଶାଲ୍ୱ ଦୁହେଁତ ଉପେକ୍ଷିଲେ ମୋତେ
ଆଉ ଯାଇ ତାହାଙ୍କୁ ଚ୍ଛହିଁକି କେମନ୍ତେ ।
ମୋହର ତ ଯୋଡ଼ାଏ ହୋଇନାହିଁ ମୁହଁ
ଆଉ କି କଥା ଥିଲେ ଋଷିମାନେ କହ ।
ଋଷିମାନେ ଅମ୍ବାକୁ ବୋଇଲେ ବିମନ
ନୁହ ତୋ ମନୋରଥ କରିବୁଁ ତ ପୂର୍ଣ୍ଣ ।
ଏହା କହି ତାହାଙ୍କୁ ବସାଇ ଏକାନ୍ତେ
ପୁଛାପୁଛି ହୋଇଲେ ମୁନିଏ ସମସ୍ତେ ।
ଯହିଁପାଇଁ ଦୁଃଖ ତୁ କରୁଛୁ ନବୀନା
କହିଲେ ତା କରି କରିବି ତୋ କାମନା ।
ଅମ୍ବା ହୋଇଲା ମୁହିଁ ଶୋକ ପଙ୍କେ ପଡ଼ି
ଦେଖ ଯାଇଛି ଆହେ ମହାଋଷି ବୁଡ଼ି ।
ରାମ୍ ଏହା ଶୁଣିଣ ଦେଖି ତାର ରୂପ
ସୁନ୍ଦର ପଣେ ମନେ କଲେ ମହାତାପ ।
ଭାବିଲେ କାହିଁକି ଏ ଛାଡ଼ିଣ ପତିକି
ବନେ ରହି ଲଭିଲା ମହା ବିପତ୍ତିକି ।
କି କହିବ ଆଗତକହୁ ଏ ନବୀନା
ଶୁଣିଲେ ଯେ ଉଚିତ କହିବାଟି ସିନା ।
ସେହି କାଳରେ ଅମ୍ବା ସବୁଯାକ ଦୁଃଖ
କହିଲା ଚ୍ଛହିଁ କରି ପର୍ଶୁରାମ ମୁଖ ।
ପର୍ଶୁରାମ ବୋଇଲେ ଭୀଷ୍ମ ମୋର ଶିଷ୍ୟ
ମୁଁ ବୋଲିବ ଯାହା ସେ କରିବେ ଅବଶ୍ୟ ।
ଏବେ ତାଙ୍କଠାକୁ ପେଷିଛି ଦୂତ ମୁହିଁ
ନ ଭାଳ ମନେ କିଛି ଆଗୋ ଚ୍ଛରୁମୁହିଁ ।
ଯେବେ ମୋହର ବୋଲ ନ କରିବ ଭୀଷ୍ମ
ଶର-ଅନଳେ ମୁଁ କରିବି ତାଙ୍କୁ ଭସ୍ମ ।
ଭୀଷ୍ମଙ୍କୁ ଯେବେ ତୁମ୍ଭ ମନ ହେଉନାହିଁ
କହ ଶାଲ୍ୱଠାକୁ ବରଗେ ଦୂତ ମୁହିଁ ।

ଅମ୍ବା ବୋଇଲେ ହେ ଭୀଷ୍ମ ତ ବଳେନେଲେ
ଏ ଘେନିଶାଲ୍ୱ ମୋତେ ଘରେ ନ ରଖିଲେ ।
ତୁଲେ ତ ସର୍ବ ଶାସ୍ତ୍ର ଅର୍ଥ ତତ୍ତ୍ୱ ଜାଣ
ତୁମ୍ଭ ଆଗେ କିସ ମୁଁ କରିବି ବଖାଣ ।
ମୋ ମତରେ ମୋହର ଦୁଃଖକୁ କାରଣ
ଅଟନ୍ତି ଏକ ଭୀଷ୍ମ ରଥୀଙ୍କର ରାଣ ।
ଜାଣ ଆହେ ବ୍ରାହ୍ମଣଙ୍କର କୁଳଶିଖ ।
ଭୀଷ୍ମଙ୍କୁ ମାଇଲେ ମୋ ହେଲା ସବୁ ଶେଷ ।
ମୋତେ ସେ ବଳେ ଧରି ଆଣିବାର କାଳେ
ତା ନାଶ ଭାବି ପୋଡୁଥିଲି କ୍ରୋଧାନଳେ ।
ପର୍ଶୁରାମ ବୋଇଲେ ବ୍ରାହ୍ମଣ ଉପରେ
ପଡ଼ିଲେ କଥା ଶସ୍ତ୍ର ଧରେ ମୁଁ କୋପରେ ।
ତୋପାଇଁ ଶାସ୍ତ୍ର ଧରି ଭୀଷ୍ମେ ମରିବାର
ନୋହିବ ମୋ ହାତେ ଗୋଜାଣ ନାରୀବର
ଏଥିକି ଯେଉଁ କଥା ହୋଇବ ଉଚିତ
ତାହା କର ତ ଆହେ ଭୀଷ୍ମ ଧର୍ମବନ୍ତ ।
ଶାଲ୍ୱ ଏବେଟି ମୋତେ ବଇଥିବେ ରହିଁ
ବୋଇଲେ ତାଙ୍କଠାକୁ ଯିବି ମୁହିଁ ଧାଇଁ ।
ଏହା ଶୁଣିଣ ପୁରୋହିତ ମନ୍ତ୍ରୀକୁଳ
ସତ୍ୟବତୀଙ୍କର ପାଶରେ କରି ଠୁଳ ।
ବୋଇଲି ଅମ୍ବା ମୋତେ କହୁଛି ଶାଲ୍ୱକୁ
ବରିଛି ଛାଡ଼ିଦେଲେ ଯିବି ମୁଁ ତା ଠାକୁ ।
ଏହା ଶୁଣି ସମସ୍ତେ ବୋଇଲେ ତା କଥା
ଅନ୍ୟଥା ନ କର ହେ ଭୀଷ୍ମ ମହାରଥା ।
ମୋର ମନକୁ ମଧ ପାଇଲା ସେ ବାଣୀ
ଯାଅ ବୋଲି ଅମ୍ବାକୁ ବୋଇଲି ସେକ୍ଷଣି ।
ଅମ୍ବା ମୋହରଠାରୁ ଘେନି ବୃଦ୍ଧ ଲୋକ
ଭେଟିଲା ଯାଇ ଶାଲ୍ୱ ଅବନୀନାୟକ ।
ବୋଇଲା ପୂର୍ବରୁ ତ ତୁମ୍ଭଙ୍କୁ ବରିଛି
ଏ ସକାଶୁଁ ଆସିଲି ଜାଣ ନୃପବସି ।
ଶାସ୍ତ୍ର ତ ଲେଖିଛି ମନରେ ଯେ ଯାହାକୁ
ବରିଥିବ ପତି କରିବ ସେ ତାହାକୁ ।
ନୋହିଲେ ସେ ନାରୀ ଦୋଚାରୀ ଦୋଷ ପଏ
ତୁମ୍ଭେ କିସ ନ ଜାଣ କହିବି ମୁଁ ରାୟେ ।
ଶାଲ୍ୱ ସେ କନ୍ୟାବାଣୀ ଶୁଣି ଖଙ୍ଗ ମଣି
ନିନ୍ଦାକଲା କ୍ରୋଧରେ ଗୋଡ଼ବଜା ଫଣୀ ।

ବୋଇଲା ଭୀଷ୍ମ କୋଳେ ଥାଇ ମୋ ଘରକୁ
ଆସି କହୁଛୁ ଯା ମୋତେ ଏ ବଚନକୁ ।
ଏଥିରୁ ଜାଣିଲି ତୋହର ସତୀପଣ
ଅମ୍ବା ମୋତେ ତ ବାଧୁ ନାହିଁ ଫୁଲବାଣ
ଏବେ ତୋହର ମନ ହେଉଛି ଯହିଁକି
ଯାଅ ମୋତେ ଗୁଡ଼ାଏ କହୁଛୁ କାହିଁକି ।
ଅମ୍ବା ବୋଇଲା ହେ ଦେଖୁ ତ ଥିଲ ତୁମ୍ଭେ
ବଳେ ତ ନେଲେ ଭୀଷ୍ମ କି କରନ୍ତୁ ଆମ୍ଭେ
ଭଜିଛି ମୁଁ ତୁମ୍ଭଙ୍କୁ ଯେବେ ନ ଭଜିବି
ତେବେ ଅକୀର୍ତ୍ତିକି ଲୋକରେ ଅରଜିବି ।
ଭୀଷ୍ମ ନେଇଥିଲେ ଭାଇଙ୍କ ବିଭାପାଇଁ
ତାଙ୍କୁ କହିଣ ସିନା ଆସିଅଛି ମୁହିଁ ।
ସେ ରାଜା ବୋଇଲେ ଏ ମୋହର ନାତୁଣୀ
କାଶୀରାଜାଙ୍କର ତ ଅଟଇ ଦୁଲଣୀ ।
ଅମ୍ବା ନାମ ଏହାର ଜଗତେ ବିଦିତ
ଜାଣ ଆହେ ମୋ କହିବାରେ ତପୋବନ୍ତ
ଅମ୍ବିକା ଅମ୍ବାଳିକା ଦିଓଟି ଭଗିନୀ
ଏହାର ମଧ ଛନ୍ତି ଅକୃତବ୍ରଣ ମୁନି ।
କାଶୀରାଜ ଯେ ଏକାବେଳରେ ତିନିଙ୍କ
ସ୍ୱୟମ୍ବର କଲେ ଡକାଇ ରାଜାଯାକ ।
ଭୀଷ୍ମ ସେ ସ୍ୱୟମ୍ବର ଶୁଣିଣ ଆସିଲେ
ବଳେ ତିନି କନ୍ୟାଙ୍କୁ ହସ୍ତିନାକୁ ନେଲେ ।
ତାଙ୍କ ସାନଭାଇଙ୍କି ସାନ ଦୁଇକନ୍ୟା
ବିଭା କରାଇଲେ ସେ ହୋଇ ତୋଷମନା ।
ଏ କନ୍ୟାଟି କହିଲା ତାଙ୍କୁ ମୁଁ ଶାଲ୍ୱଙ୍କୁ
ବରିଅଛି ବୋଇଲେ ଯିବି ତାଙ୍କଠାକୁ ।
ଏହା ଶୁଣି ଭୀଷ୍ମ ଛାଡ଼ିଦେଲେ ଏହାକୁ
ଶାଲ୍ୱ ବିଭା ନୋହିଲା ବହିଣ ରାଗକୁ ।
ବୋଇଲା ଭୀଷ୍ମ ତୋତେ ନେଲେ ବଳେ ହରି
କେହିଁ ବିଭା ହେବ ମୋ ପରି ଦଣ୍ଡଧାରୀ ।
ଏଣୁ ଏ କନ୍ୟା ଦୁଃଖୀ ହୋଇକରି ବନେ
ରହିଅଛି ବସି ତପସ୍ୟା ଇଛି ମନେ ।
ଦଇବେ ମୁଁ ଏଠାକୁ ତପପାଇଁ ଆସି
ଏହା ଦୁଃଖ ଦେଖି ଯାଉଛି ଶୋକେ ଭାସି ।
ଏହି କନ୍ୟାକୁ ଦୁଃଖ ଦେବାକୁ କାରଣ
ଭୀଷ୍ମ ଅଟନ୍ତି ହେ ଅକୃତବ୍ରଣ ଜାଣ ।

ଅମ୍ବା ବୋଇଲେ ହେ କହିଲ ଅଜା ଯାହା
ଏଥିରେ କିଛି ମିଥ୍ୟା ନାହିଁ ଋଷିନାହା ।
ଭୀଷ୍ମଙ୍କ ସକାଶୁଁ ହୋଇ ମୁଁ ନିରିମାକ୍ଷୀ
ବନ ମଧ୍ୟେ ବୁଲୁଛି ହୋଇ ଅତି ଦୁଃଖୀ ।
ପର୍ଶୁରାମ ପାଦରେ ପଶିବି ଶରଣ
ଭାବୁଛି ହେବେ ମୋର ସେ ଏକା କାରଣ ।
ଅକୃତବ୍ରଣ ଶୁଣି ଅମ୍ବାର ବଚନ
ବୋଇଲେ ଆଗୋ ନାରୀ ନୁହ ତୁ ବିମନ ।
ଶାଲ୍ୱ ଭୀଷ୍ମ ଦୁଇରେ ଯାକୁ ତୋର ମତି
ହୋଇଛି ତାକୁ କହି କର ଦେବା ପତି ।
ଅମ୍ବା ବୋଇଲେ ମୁଁ ଶାଲ୍ୱଙ୍କୁ ବରିଥିଲି
ଭୀଷ୍ମ ଆଣିବାରୁ ଏ ଦୁଃଖକୁ ଭୁଞ୍ଜିଲି ।
ଏଥିକି ଯେ ଉଚିତ ଆପଣ ବିଚ୍ଛର
ମୋତେ କିମ୍ପାଇଁ ତାହା ବସିଣ ପଚ୍ଛର ।
ଅକୃତବ୍ରଣ ଋଷି ଶୁଣି ଅମ୍ବାବାଣୀ
ବୋଇଲେ ଭୀଷ୍ମ ତୋତେ ନାଶ କଲା ଆଣି ।
ଭୀଷ୍ମଙ୍କୁ ତୋତେ ନେଇ ସମର୍ପଣ ଦେବା
ନ ଘେନିଲେ ରାମ ହାତରେ ମରାଇବା ।
ଅମ୍ବା ବୋଇଲେ ମୋହର ତ ଏହି ମନ
ଥିଲା ସେହିରୂପରେ କହିଲ ବଚନ
ଶାଲ୍ୱ ଭୀଷ୍ମ ଦୁଇରୁ ଯାର ହେବ ଦୋଷ
ବେଗେ ଯାଇ ତାହାକୁ କର ଋଷି ନାଶ ।
ସେହି ଦିନ ରଜନୀ ଶେଷେ ପର୍ଶୁରାମ
ଆସିଲେ ଏ ମହୀର ନରପତି ଯମ ।
ତେଜରେ ଅଗ୍ନି ଦେବତାଙ୍କ ତେଜ ଜିଣି
ହୋଇଛନ୍ତି ପୁଣି ସେ ଖଡ୍‌ଗ ଧନୁଃପାଣି ।
ତାହାଙ୍କୁ ଦେଖି କନ୍ୟା ତୁଳରେ ଋଷିଏ
ରାଜାଙ୍କୁ ଘେନି କରି ଉଠିଲେ ସଭିଏଁ ।
ପାଦ ଦୁଇ ଧରିଣ ନମସ୍କାର କଲେ
ଆସନରେ ବସାଇ ତାହାଙ୍କୁ ପୂଜିଲେ ।
ପର୍ଶୁରାମ ହୋମବାହନ ଦୁହେଁ ବସି
ପୂରୁବ କଥା ସେହି ହେଲେ ହସି ହସି ।
କଥାପ୍ରାନ୍ତେ ପରଶୁରାମଙ୍କୁ ବୋଇଲେ
ମୋର ଏ ନାତୁଣୀଟି ଜାଣ ରାମ ଭଲେ ।
ଏହାର ଯେଉଁ କାର୍ଯ୍ୟ ପଡ଼ିଅଛି ଏବେ
କହିବି ମୁହିଁ ଯେବେ କହିବା ହୋଇବେ ।
ପର୍ଶୁରାମ ବୋଇଲେ କହିବ ହେ କିସ
ନାତୁଣୀକି ବୋଲ ତା କରନ୍ତୁ ପ୍ରକାଶ
ପର୍ଶୁରାମ ମୁଖରୁ ଶୁଣି ଏ ବଚନ
ଅମ୍ବା ନେତ୍ରଯୁଗଳୁ ତେଜିକରି ବନ ।
ପର୍ଶୁରାମ ପାଦତଳରେ ଛେଚି ହେଲା
କି କହିବି ଦୁଃଖ ମୋହର ନ ସରିଲା ।
ରାମ ବୋଇଲେ ତୁହି ହୋତ୍ରବାହନର
ନାତୁଣୀ ଯେଉଁରୂପେ ସେରୂପେ ଆମ୍ଭର ।
ଏହି କନ୍ୟା ତ ଭୀଷ୍ମ ଶାଲ୍ୱରୁ ବାହାର
ହୋଇଲା କି କରିବା କହ ତ ବିଚ୍ଛର ।
କିଏ ସେ ବୋଇଲେ ଏ କନ୍ୟା କିଛି ନୁହେଁ
କିଏସେ ବୋଇଲେ ଭ୍ରମିଲା କାମ ମୋହେ ।
କିଏସେ ବୋଇଲେ ଭୀଷ୍ମଙ୍କଠାକୁ ନେବା
କେଉଁମାନେ ବୋଇଲେ ବାପେ ନେଇଦେବା
କେଉଁମାନେ ବୋଇଲେ ଶାଲ୍ୱେ ଅନୁରାଗ
କରିଛି କରୁ ଶାଲ୍ୱ ଏହା ଅଙ୍ଗ ଭୋଗ ।
ଏରୂପେ ଋଷିମାନେ ବିଚ୍ଛର ଛିଣ୍ଡାଇ
ବୋଇଲେ ବାବୁ ଘରେ ଯାଅ କନ୍ୟା ତୁହି ।
ବାବୁ ବିନା ତୋହର ଅନ୍ୟଠାରେ ଗତି
ଥିଲା ପରି ଆମ୍ଭର ପାଉନାହିଁ ମତି ।
ବନେ ରହିବୁ ଯା ବୋଲୁଛୁ ଚନ୍ଦ୍ରମୁହିଁ
ଏ କଥା ଆମ୍ଭର ମନକୁ ପାଉନାହିଁ ।
ଏକୁଟିଆ ହୋଇ ରହିବୁ ଯେବେ ବନେ
ନାନା ଅପବାଦ ଦେବେଟି ଲୋକମାନେ ।
ଅମ୍ବା ବୋଇଲେ ମୁଁ ନ ଯିବି ବାବୁ ଘର
ଗଲେ ନିନ୍ଦା ମୋତେ ସେ କରିବେ ଅପାର
ତୁମ୍ଭର ସଙ୍ଗତରେ ହୋଇକରି ସଙ୍ଗ
ତା ପରେ ପବିତ୍ର ମୁଁ କରିବି ମୋ ଅଙ୍ଗ ।
ତୁମ୍ଭେମାନେ ତ ରକ୍ଷାକାରୀ ହୋଇଥିଲେ
ଆନ କେ ଋହିଁ କି ପାରିବ ମୋତେ ଭଲେ
ଋଷିମାନଙ୍କର ବିଚ୍ଛର ସମୟରେ
ହୋତ୍ରବାହନ ରାଜା ମିଳିଲେ ସେଠାରେ ।
ମୁନିମାନଙ୍କର ଠାରୁ ଯେ ପୂଜା ପାଇ
ବସିଲେ ସେହୁ ରାଜା ଆସନରେ ଯାଇ ।
ଋଷିଙ୍କଠାରୁ ଅମ୍ବା କନ୍ୟାର ଚରିତ
ଶୁଣି ହୋତ୍ରବାହନ ହେଲେ ଦୁଃଖ ଚିତ୍ତ ।

ହୋତ୍ରବାହନ ସେହି କନ୍ୟାଙ୍କର ଅଜ୍ଞା
ଏ ଘେନି ଦୁଃଖରେ କାନ୍ଦିଲା ତାଙ୍କ ମଜ୍ଜା ।
ଅମ୍ବାକୁ କୋଳେ ଘେନି ବୋଇଲେ ନାତୁଣି
ଏଡ଼େ ଦୁଃଖ ବିହିଲା ତୋତେ କୁଶପାଣି ।
ମୁଁ ତ ଆସିଅଛି ତପସ୍ୟା କରିବାକୁ
ମୋ ପାଶେ ଥାଅ ତୋର ନାଶିବି ଦୁଃଖକୁ ।
ଆନ ଯାହା ବୋଲିବୁ କରିବି ମୁଁ ତାହା
ଏଥିରେ ସନ୍ଦେହ ଗୋ ନ କର ସୁଦେହା ।
ଭୀଷ୍ମ ଶାଲ୍ୱ ଦୁହେଁ ଅଟନ୍ତି ଆମ୍ଭ ଶିଷ୍ୟ
ମୁଁ କହିଲି ତୋତେ କି କରିବେ ନିରାଶ ।
ଅମ୍ବା ବୋଇଲେ ହେ ଭୀଷ୍ମଙ୍କୁ ନ ମାଇଲେ
ମୋ ମନ ସୁଖ ହୋଇ ନାହିଁ ଜାଣ ଭଲେ ।
ରାମ ବୋଇଲେ ମୋ ବଚନ ମାନି ଭୀଷ୍ମ
ପଡ଼ିବେ ତୋର ଗୋଡ଼ତଳେ ଛାଡ଼ି ଉଷ୍ମ ।
ଅକୃତବ୍ରଣ ଏହା ଶୁଣିଣ ରାମଙ୍କୁ
ହସି ହସି କରି କହିଲେ ବଚନକୁ ।
ତୁମ୍ଭଠାରେ ଶରଣ ପଶିଲା ଏ ଯୋଷ
ଯେବେ ତ ନ ଯିବଟି ଏହାର ଦୁର୍ଦ୍ଦଶା ।
ତେବେ ଯାଇ କାହାକୁ କରିବ ଗୁହାରି
କହ ତ ଆହେ ପର୍ଶୁରାମ ତପଚାରୀ ।
ଭୀଷ୍ମ ଯେବେ ତୁମ୍ଭ ବଚନ ନ ମାନିବେ
ତେବେ ତାଙ୍କୁ ଯୁଦ୍ଧରେ ମାରିବା ହୋଇବେ ।
ବୋଲ ଯେବେ ଘେନିବେ କାହିଁପାଇଁ ରୋଷ
କରିବ ତାହାଙ୍କୁ ହେ ବିପ୍ରକୁଳ ଈଷ ।
ତୁମ୍ଭେ ତ ବୋଲୁଅଛ ବ୍ରାହ୍ମଣଙ୍କୁ ମାଡ଼
ଯେ ମାରିବ ତାକୁ କରିବି ଦୁଇ ଗଡ଼ ।
ଶରଣ ମୋହଠାରେ ଯେ ପଶିବ ଆସି
ତାର ଆନନ୍ଦ ମୁଁ କରିବି ଅହର୍ନିଶି ।
ଯେଉଁ କ୍ଷତ୍ରିୟଟି ଜିଣିବ ସମସ୍ତଙ୍କୁ
ତାକୁ ପିଠିଆଇବି ଯମଙ୍କ କତିକୁ ।
ଏବେ ସେ କଥାକୁ ଏ କଥା ହେଉନାହିଁ
ବୋଲିବା କଥା ପାସୋରିଲ ଋଷିପାଇଁ ।
ଭୀଷ୍ମ ହୋଇଛନ୍ତି ବିଜୟୀ ଜଗତରେ
ଘେନ ତାଙ୍କ ପ୍ରାଣ ସାୟକେ କିଞ୍ଚିତରେ ।
ପର୍ଶୁରାମ ବୋଇଲେ କହିବାରୁ ତୁମ୍ଭେ
ପୂରୁବ କଥା ସୁମରଣା କଲୁଁ ଆମ୍ଭେ ।
ନୋହିଲେ ଆମ୍ଭ ମନେ ନ ପଡନ୍ତା ତାହା
ଭୀଷ୍ମ ନ ଘେନିଲେ ହୋଇବି ଧନୁର୍ବାହା ।
ଏହା କହି ପରଶୁରାମ ଋଷିଗଣ
ସଙ୍ଗତରେ ଘେନି ଯେ ଲଗାଇ ଗହଣ ।
ଅମ୍ବା କନ୍ୟାଟିକି ଆଗରେ ଚଳାଇଲେ
କୁରୁକ୍ଷେତ୍ରେ ଯାଇଣ ପ୍ରବେଶ ହୋଇଲେ ।
କୁରୁକ୍ଷେତ୍ରରେ ଥାଇ ମୋହଠାକୁ ଲୋକ
ପେଷିଲେ ପର୍ଶୁରାମ ମୁନିଙ୍କ ତିଳକ ।
ପରଶୁରାମଙ୍କର ଆସିବାର ଶୁଣି
ସଙ୍ଗତରେ ଘେନି ମୁଁ ଦ୍ୱିଜକୁଳ ଶ୍ରେଣୀ ।
କୁରୁକ୍ଷେତ୍ରେ ରାମଙ୍କ ତୁଳେ ଦେଖା ହେଲି
ପାଦ ଦୁଇ ଧରିଣ ତାଙ୍କର ବନ୍ଦିଲି ।
ପରଶୁରାମ ମୋହଠାରୁ ପାଇ ପୂଜା
ଫୁଲାଇଲେ ଦେହ ଆନନ୍ଦ କରି ମଜ୍ଜା ।
ବୋଇଲେ ଆହେ ଭୀଷ୍ମ କହ କାଶୀଦେଶ
ନୃପତିଙ୍କର ଝିଅ ଅମ୍ବା ନାରୀଈଶ ।
ଏହାକୁ ସ୍ୱୟମ୍ବରୁ ବଳେ ଧରି ଆଣି
ଦୋଷ ବିନା ନ ରଖି ଛାଡ଼ିଦେଇ ପୁଣି ।
ପୂର୍ବରୁ ଏ କନ୍ୟାକୁ ଶାଲ୍ୱ ମନ ଥିଲା
ତୁମ୍ଭେ ଆଣିବାରୁ ସେ ନିବର୍ତ୍ତି ରହିଲା ।
ଏବେ ତାହାଙ୍କୁ ବୋଲିବାକୁ କଥା ନାହିଁ
ଏ କନ୍ୟାଟି ଘରେ ରଖିବା ହେଉ ନେଇ ।
ମୁଁ ବୋଇଲି ଏ କଥା ଅଟଇ ପ୍ରମାଣ
ଏ କନ୍ୟା ଯାହା କଲା ତା ମୋଠାରୁ ଶୁଣ ।
ବିଚିତ୍ରବୀର୍ଯ୍ୟକୁ ମୁଁ ବିଭା କଲା କାଳେ
ଏ କନ୍ୟା ଆସିଣ କହିଲା ମୋତେ ବଳେ ।
ଶାଲ୍ୱକୁ ମୁହିଁ ବର କରିଣ ବରିଛିଁ
ମୋତେ ବିଭା ନ କର ଶାନ୍ତନୁଙ୍କ ବଂଶି ।
ଏହା ଶୁଣି ମୁଁ ବୋଇଲି ବେଗ ହୋଇ
ଯାଅ ମନ ଯେବେ ଶାଲ୍ୱକୁ ଅଛି ପାଇ ।
ସେହିକ୍ଷଣି ଏ ନାରୀ ଗଲା ଶାଲ୍ୱ ପାଶ
ବୁଝ ହେ ମହାଋଷି ନାହିଁ ମୋର ଦୋଷ ।
ଭୟରେ କାମନାରେ ଅର୍ଥରେ କ୍ଷତ୍ରିୟ
ଧର୍ମ ନ ଛାଡ଼ିବଟି ଏ ମୋର ନିଶ୍ଚୟ ।
ମୋହଠାରୁ ଶୁଣି କରି ଏ ବଚନକୁ
ପର୍ଶୁରାମ ଦନ୍ତେ ଘେବାଇ ଅଧରକୁ ।

ବୋଇଲେ ମୋର ବୋଲ ନ କରିବୁ ଯେବେ
ଯମପୁରେ ନେଇଣ ବସାଇବି ତେବେ ।
ମୁହିଁ ଯେତେ ବିନୟ ହୋଇଣ କହିଲି
ତେତିକି ପର୍ଶୁରାମ କ୍ରୋଧେ ଗଲେ ଫୁଲି ।
ତାଙ୍କର କ୍ରୋଧରୀତି ଜାଣିକରି ମୁହିଁ
ବୋଇଲି ମୋତେ କିମ୍ପା ଚଳୁଛ ଗୋସାଇଁ ।
ତୁମ୍ଭେତ ଗୁରୁ ମୋର ମୁଁ ତୁମ୍ଭର ବଶ
ମୋ ସଙ୍ଗରେ କିପାଇଁ ଯୁଝିବ ବୋଲୁଛ ।
ଶୁଣିଲେ ଲୋକେ ତୁମ୍ଭ ଆମ୍ଭର ଏ କଥା
ବୋଲିବେ ବୁଡ଼ିଲାଟି ଧରମ ବ୍ୟବସ୍ଥା ।
ପର୍ଶୁରାମ ବୋଇଲେ ଜାଣୁଛ ତ ଏହା
ମୋ ବୋଲେ କରୁନାହିଁ କାହିଁକି ହେ ତାହା
ଯେବେ ତ କନ୍ୟାଟିକି ନ ରଖିବ ତୁମ୍ଭେ
ଯୁଦ୍ଧ ବିନା ଘରକୁ ଯାଇ ନାହୁଁ ଆମ୍ଭେ ।
ମୁଁ ବୋଇଲି ଏରୂପେ ଗୁଡ଼େ ନ ବଖାଣି
ନୁହ ପର୍ଶୁରାମ ମୁଁ ନେବି ତରୁଣୀ ।
ଗୁରୁ ବୋଲି ସିନା ହୋଇଣ ଲକସ୍ତକ
କହୁଛି ଛାଡ଼ି ଦେଇ କ୍ଷତ୍ରି ବୃତ୍ତିଯାକ ।
ଏଥେଁ କିମ୍ପା ମୋତେ ଦୁର୍ବଳ ବୋଲି ଭାଳି
ଉଠୁଅଛି ପରଶୁରାମ କ୍ରୋଧେ ଫୁଲି ।
ପରରଠାରେ ମନ କେବା ନବୀନାକୁ
ମୋପରି ଲୋକ କେଉଁ ରଖିବଟି ତାକୁ ।
ଇନ୍ଦ୍ର ବଜ୍ର ଧଇଲେ ମୋର ନାହିଁ ଭୟ
କର ତୁମ୍ଭର ଯେ ହୋଇବ ରାମ ପ୍ରିୟ ।
ଗୁରୁ ଯେବେଟି କାର୍ଯ୍ୟ ଅକାର୍ଯ୍ୟ ନ ଜାଣି
ଅମାର୍ଗ ଆଚରେ ତ୍ୟାଗରେ ତାକୁ ଗଣି ।
ଯୁଦ୍ଧରେ ଶ୍ରଦ୍ଧା ଯେବେ ହୋଇଲା ତୁମ୍ଭର
ନାହିଁ କଲେ କଥା କି ରହିବ ମୋହର ।
ଶାସ୍ତ୍ର ଲେଖିଅଛି ବ୍ରାହ୍ମଣ ଶସ୍ତ୍ର ଧରି
ଯୁଦ୍ଧ କରିଲେ ତାକୁ ପକାଇବି ମାରି ।
କ୍ଷତ୍ରିୟ ଧରମେ ତ ରହିଅଛି ମୁହିଁ
ଯୁଦ୍ଧକୁ ଡାକୁଅଛି କରିବି କି ନାହିଁ ।
ଯାହାକୁ ଯେ ଯେଉଁରୂପରେ ଆଚରଣ
କରେ ତାକୁ ସେ ସେହିରୂପେ କରେ ଜାଣ ।
ଏବେ ମୋର ବାହୁବଳକୁ ପର୍ଶୁରାମ
ଦେଖହେ ଇଚ୍ଛା ଥିଲେ କରିଣ ସଂଗ୍ରାମ ।

ତୁମ୍ଭେ ଆମ୍ଭେ ଦୁହେଁଟି ଏ କୁରୁକ୍ଷେତ୍ରରେ
କରିବା ଆସ ଯୁଦ୍ଧ ଉତ୍ତମ ପ୍ରୀତିରେ
ମୋର ମାରଗଣଗଣଙ୍କୁ ଅଙ୍ଗେ ବହି
ଅମରଗଣଙ୍କର ସଙ୍ଗେ ବସ ଯାଇ ।
ଯେଉଁଠାରେ ରକ୍ତତର୍ପଣ କରିଥିଲ
ଯୁଝିବା ମନ ଥିଲେ ସେହିଠାକୁ ଚାଲ ।
ତୁମ୍ଭେ ଯେଉଁକାଳରେ କ୍ଷତ୍ରିୟଙ୍କୁ ମାରି
ଥିଲ ପୁଅ ନ ଥିଲା ଜାଣ ମୋହପରି ।
ତୁମ୍ଭ ଗର୍ବ ଭାଙ୍ଗିବା ପାଇଁ ଆହେ ରାମ
କ୍ଷତ୍ରିୟ କୁଳରେ ମୁଁ ହୋଇଛି ଜନମ
ପର୍ଶୁରାମ ବୋଇଲେ ଆଛା ହେଲା ବାବୁ
ମୋ ସଙ୍ଗତରେ ଯେବେ ଯୁଝି ତ ପାରିବୁ ।
ଚାଲ ସମନ୍ତ ପଞ୍ଚକ ପାଶରେ ମୁହିଁ
ରହିଣ ତୋତେ ଦେଖାଇବି ପ୍ରେତସାଇଁ ।
ତୋ ମାଉଁସ ବିଲୁଆ ଗୃଧ୍ର ମେଳି ପାଟି
ଖାଉଥିବେ ଦେଖିବା ଗଙ୍ଗା ଜନନୀଟି ।
ଗଙ୍ଗାଙ୍କର ନୟନୁ ଅଶ୍ରୁଧାରା ବହି
ବାରୁଣାରୁ ନଦୀ ବୋହିବ ଭୀଷ୍ମ ମହୀ ।
ଏହା ଶୁଣି ମୁହିଁ ରାମଙ୍କୁ ନମସ୍କାର
କରି ବୋଇଲି ଆହେ ଯୁଦ୍ଧକୁ ବାହାର
ରାମ ସେହିକ୍ଷଣି କରରେ ଧନୁ ବହି
ସମସ୍ତ ପଞ୍ଚକରେ ପ୍ରବେଶିଲେ ଯାଇଁ ।
ରଥ ଚଢ଼ି ମୁହିଁ ଆସିଲି ହସ୍ତନାକୁ
କହିଲି ପର୍ଶୁରାମ ଚରିତ ମାନଙ୍କୁ ।
ମାତା ତାହା ଶୁଣି ବିଚାରି ମୋ ମଙ୍ଗଳ
ଡକାଇ ଆଣିଲେ ଶୀଘ୍ର ଦ୍ୱିଜକୁଳ ।
ତାହାଙ୍କ ହାତେ ସ୍ୱସ୍ତିବାଚନ କରାଇ
ବୋଇଲେ ଯେତେ ବାବୁ ଯୁଝ ଏବେ ଯାଇ
ଶ୍ୱେତ ଚାରି ଅଶ୍ୱକୁ ଯୋଚାଇଣ ରଥେ
ବସିଲି ସାରଥିକି ଘେନି କରି ସାଥେ ।
କବଚ ଧନୁ ଛତି ବସନ ଚାମର
ଅଳଙ୍କାର ପାଗ ଶୁକ୍ଳ ଅଟେ ମୋର ।
ଏହି ସକାଶୁଁ ମୁହିଁ କଇଳାସଗିରି
ଶୋଭାଦେଲି ଦେହଶୋଭାରେ ଛାଇ କରି ।
ସାରଥିଙ୍କ ବାହିବା ବେଗରେ ମୋ ଅଶ୍ୱେ
କ୍ଷଣକରେ ମିଳିଲେ ପର୍ଶୁରାମ ପାଶେ ।

ରାମ ମୋରେ ଦେଖିବା କ୍ଷଣି ମୁହିଁ ଶଙ୍ଖ
ମୁଖରେ ଭାରି ବଜାଇଲି ଛାଡ଼ି ଦୁଃଖ ।
ସେ କାଳରେ ଦେବଙ୍କ ତୁଲେ ଋଷି ଗୋଟି
ହୋଇ କରି ଆସିଲେ ଦେଖିବା ଯୁଝଟି ।
ଦେବେ ତ ଆକାଶରେ ବଜାଇ ବାଇଦ
ବଢ଼ାଇଲେ ରାମ ତୁଲରେ ମୋ ପ୍ରମୋଦ ।
ସେ କାଳରେ ଜଗତପାବନୀ ଦେବୀ ମାତ
ଗଙ୍ଗା ମୋର ପାଶରେ ହୋଇଣ ସମେତ ।
ବୋଇଲେ କାହିଁପାଇଁ ପର୍ଶୁରାମ ତୁଲେ
ଗୋଳ ଆରମ୍ଭିଲୁ କହ ତ ମୋତେ ଭଲେ ।
ପରଶୁରାମଙ୍କୁ ମୁଁ ବୋଲୁଅଛି ଯାଇ
ଶିଷ୍ୟ ପୁତ୍ରଟିକି ନ ମାର ବାଇ ହୋଇ ।
ପରଶୁରାମଙ୍କର ଦେହ ମହାବଳ
ରହିପାରିବୁ କି ତୁ କଲେ ବାବୁ ଗୋଳ ।
ବ୍ରାହ୍ମଣ ଜନ୍ମ ହୋଇ କ୍ଷତ୍ରିୟଙ୍କୁ ମାରି
ରକ୍ତରେ ତର୍ପଣ ସେ କଲା ନ ବିଚାରି ।
ଏହା ଶୁଣି ମାତାଙ୍କ ଗୋଡ଼ ମୁଁ ଧଇଲି
ଆଦ୍ୟ ପ୍ରାନ୍ତ କରିଣ ସେ କଥା କହିଲି ।
ମାତା ବୋଇଲେ ହେ ଯାଉଛି ତାଙ୍କୁ ବାବୁ
ବୋଧିବି ଯୁଝିଲେ କି ତୁ ତାଙ୍କୁ ପାଇବୁ ।
ଏହା କହି ପର୍ଶୁରାମଙ୍କ ପାଶେ ଗଲେ
ମୋ ପୁଅ ଦୋଷ କ୍ଷମା କର ହେ ବୋଇଲେ
ପର୍ଶୁରାମ ବୋଇଲେ ଅମ୍ବା ନ ରଖିଲେ
ଭୀଷ୍ମଙ୍କୁ ଯୁଦ୍ଧରେ ମାରିବି ଜାଣ ଭଲେ ।
ଏହାଶୁଣି ଗଙ୍ଗା ଆସିଣ ମୋହଠାକୁ
ବୋଇଲେ ଆଣି ବାବୁ ରଖ ସେ କନ୍ୟାକୁ ।
ଏରୂପେ ମାତା କହୁଁ କହୁଁ ନାହିଁ କରି
ବୋଇଲି ଯୁଝିବି ମୁଁ ରାଗେ ଶସ୍ତ୍ର ଧରି ।
ଏ ସମୟେ ମୋତେ ଡାକିଲେ ପର୍ଶୁରାମ
ଆସ ଭୀଷ୍ମ କରିବା ପରା ହେ ସଂଗ୍ରାମ ।
ମୁଁ ବୋଇଲି ତୁମ୍ଭେ ତ ତଳେ ଅଛ ରହି
ରଥ ଚଢ଼ି କିରୂପେ ଯୁଝିବିଟି ମୁହିଁ ।
ଯେବେ ମୋ ତୁଲେ ଯୁଝିବାକୁ ଇଚ୍ଛା ଅଛି
ତେବେ ରଥ ଚଢ଼ି ବାହାର ମୁଁ ବୋଲୁଛି ।
ରାମ ବୋଇଲେ ହେ ମେଦିନୀ ଅଟେ ରଥ
ବେଦମାନେ ମୋ ଘୋଡ଼ା ମଣ୍ଡିବେ ଯୁଦ୍ଧପଥ ।
ଗାୟତ୍ରୀ କବଚ ସାରଥି ମୋ ପବନ
ଦେଖିବ ତ ନୟନେ ଏକ୍ଷଣି ଏମାନ ।
ଏହା କହିଣ ଶର ମୁହିଁରେଟି ମୋତେ
ଛାଇଁ ଦେଲେଟି ପର୍ଶୁରାମ ମହାମତେ ।
ସେ ଶରକୁ କାଟି ମୁଁ ଚାହାନ୍ତେ ତରାଟି
ଦେଖିଲେ ଯମଦଗ୍ନିଙ୍କ ସାନ ବେଟାଟି ।
ବସିଅଛନ୍ତି ଦିବ୍ୟ ରଥଟି ଉପରେ
ଝିଙ୍କି ଛନ୍ତି ଧନୁକୁ ଅତ୍ୟନ୍ତ କୋପରେ ।
ସେହି ଅସ୍ତ୍ରରେ ସବୁ ଅସ୍ତ୍ର ଶସ୍ତ୍ରରାଜି
ରଖି ଦେଉଛନ୍ତି ସୂର୍ଯ୍ୟଙ୍କ ତେଜ ଗଞ୍ଜି ।
ଦେହଯାକ କବଚେ ହୋଇଛି ଆବୃତ
ନ କାଟିବାକୁ କିଛି ଶତ୍ରୁ ଶରବ୍ରାତ
ସେ ରଥରେ ଅକୃତବ୍ରଣ ମହାଋଷି
ସାରଥି ହୋଇ ଘୋଡା ବାହୁଛନ୍ତି ବସି ।
ତାହା ଦେଖି ମୁହିଁ ରଥରୁ ଓହ୍ଲାଇଲି
ତୁଚ୍ଛା ହାତେ ପରଶୁରାମଙ୍କ ପାଶେ ଗଲି ।
ଦୁଇ ଗୋଡ ଧରିଣ କରି ନମସ୍କାର
ବୋଇଲେ ମୋ ଜୟ ବିଚାର ଋଷିବର ।
ପର୍ଶୁରାମ ବୋଇଲେ ଯୁଦ୍ଧ କାଳେ ଆସି
ଏରୂପେ ନ କହିଲେ ହୋଇ ମୁହିଁ ରୋଷୀ ।
ଅବଶ୍ୟ ଶାପ ତୋତେ ଦିଅନ୍ତି ହେ ଭୀଷ୍ମ
ସେହି ସକାଶୁଁ ଦେହ ହୋଇଯାନ୍ତା ଭସ୍ମ ।
ଆସିକରି ଦୋଷ ତ ଛଡ଼ାଇଲ ତୁମ୍ଭେ
ଯୁଝ ସନ୍ତୋଷରେଟି ବୋଲୁଅଛୁଁ ଆମ୍ଭେ ।
ତୁମ୍ଭଙ୍କୁ ଯୁଦ୍ଧରେ ମୁଁ ଦେବି ଦୁଃଖଦଶା
କିରୂପରେ କହିବି କହ ତ ଆଶଂସା ।
ଏହା ଶୁଣିଣ ପୁଣି ନମସ୍କାର କଲି
ଆସି ମୋହର ରଥ ଉପରେ ବସିଲି ।
ପୁଣି ଆଉରି ଥରେ ଫୁଙ୍କିଲି ମୁଁ ଶଙ୍ଖ
ସେ ଶ୍ରମୁ ଝାଳ ମୋ ବହିଲା କାଖଯାକ ।
ତା ଦେଖି ପର୍ଶୁରାମ ଧନୁ ଆଣ୍ଟେ ଭିଡ଼ି
ନଅ ଶତ ଷାଠିଏ କାଣ୍ଡ ଦେଲେ ଛାଡ଼ି ।
ସେ କାଣ୍ଡମାନଙ୍କେ ସାରଥି ଅଶ୍ୱ ତୁଲେ
ଚଳି ନ ପାରିଲି ରାଜ ନ ଜାଣ ଭଲେ ।
ପୁଣି ମୁହିଁ ଦେବତା ବ୍ରାହ୍ମଣଙ୍କୁ ନମି
ପର୍ଶୁରାମ ଆଗେ କହିଲି ହୋଇ ତମୀ ।

ବ୍ରାହ୍ମଣକୁଳରେ ହୋଇଛ ତୁମ୍ଭେ ଜାତ
ସବୁ ବେଦେ ଦେହେ ତ ହୋଇଛନ୍ତି ସ୍ଥିତ ।
ତାହାଙ୍କଠାରେ ମୁହିଁ କ୍ରୋଧ କରୁ ନାହିଁ
କେବଳ ତୁମ୍ଭ ଗର୍ବ ଭାଙ୍ଗିବଇଁ ମୁହିଁ ।
କ୍ଷତ୍ରିୟ ଧର୍ମରେ ଯା ହୋଇଛ ଗର୍ବିତ
ତା ଏକା ଭାଙ୍ଗି ଦେବି କହୁଛି ମୁଁ ସତ ।
ଦେଖିବ ପରା ବୋଲୁଛ ମୋ ବିକ୍ରମକୁ
ଜଗିଥାଅ କାଟୁଛି ତୁମ୍ଭର ଧନୁକୁ ।
ଏତେ ବୋଲି ନିମିଷ ମାତ୍ରକ ଅନ୍ତରେ
କାଟିଲି ତାହାଙ୍କ ଧନୁକୁ ସାୟକରେ ।
ଶତ ଶତ କାଣ୍ଡ ଯେ ବିନ୍ଧିଣ ତାହାଙ୍କୁ
ରାହୁ ପରି ଘୋଟିଣ ରହିଣ ରଥକୁ ।
ମୋର କାଣ୍ଡେ ତାଙ୍କ ଗଣ୍ଡିରେ ପଟପାଟେ
ବାଜିକରି ବାହାରି ଗଲେ ପୃଷ୍ଠ ପଟେ ।
ପରଶୁରାମ ଦେହ ଫୁଟିଲା ଶିମୁଳୀ
ବୃକ୍ଷର ଶୋଭାକୁଟି ପକାଇଲା ଗିଳି ।
ଫଗୁମୁଠା ଦେହରେ ବାଜିଲା ପରାୟେ
ରକତରେ ଦିଶିଲା ପର୍ଶୁରାମ କାୟେ ।
ପର୍ଶୁରାମ ଆଉ ଗୋଟିଏ ଧନୁଧରି
ଶିଳାଘଷା କାଣ୍ଡ ଅନେକ ଦେଲେ ମାରି ।
ପର୍ଶୁରାମ ଧନୁରୁ ଆସି ଶର ଗୋଟି
ପିଇଲେ ରକତକୁ ମୋ ଦେହକୁ କାଟି ।
ଯୁଦ୍ଧ ବିଷୟରେ ମୁଁ ଅଟେ ବିଶାରଦ
ଘୋର ଯୁଦ୍ଧ କରିଲି ହୋଇଣ ପ୍ରମୋଦ ।
ମୋ କାଣ୍ଡମାନଙ୍କରେ ପର୍ଶୁରାମ ପୀଡ଼ା
ପାଇକରି ଯୁଦ୍ଧେ ଟିକିଏ ହେଲେ ଛିଡ଼ା ।
ତାହା ଦେଖିଣ ମୁହିଁ ବୋଇଲି କି କଲି
ବ୍ୟର୍ଥେ ଏଡ଼େ ଲୋକକୁ ବିନ୍ଧି ପକାଇଲି ।
ପ୍ରଥମରେ ବ୍ରାହ୍ମଣ ଦ୍ୱିତୀୟେ ମୋ ଗୁରୁ
ତୃତୀୟରେ ବଳେ ଅଟନ୍ତି ହନ୍ତାକରୁ ।
ଦ୍ୱିଜବୃତ୍ତି କରିଣ ହେବାରୁ ଏ ଛିଡ଼ା
ଏବେ ମୋ ସାୟକେ ପାଇଲେ ଆସି ପୀଡ଼ା ।
ଏହିରୂପେ ମନରେ କରି ଦୁର୍ଯ୍ୟୋଧନ
ଧନୁରେ ଆଉ ଶର ନ କଲି ସନ୍ଧାନ ।
ସୂର୍ଯ୍ୟ ତ ସେହିକ୍ଷଣି ଅସ୍ତକୁ ଭଜିଲେ
ପର୍ଶୁରାମ ମଧ୍ୟ ଯୁଦ୍ଧରୁ ନିବର୍ତ୍ତିଲେ ।
ନିଶି ଦେଖି ରଥ ଦୁହିଁଙ୍କି ଲେଉଟାଇ
ଉଭୟେ ବସାରେ ରହିଲୁଁ ସୁଖେ ଯାଇ ।
ଘୋଡ଼ା ଦେହରେ ମୋ ଦେହେ ତ କାଣ୍ଡଗଣ
ଲାଗିଣ ବ୍ୟଥା କରୁଥିଲା ଅବିଚ୍ଛିନ୍ନ ।
ସାରଥି ଯେ କାଣ୍ଡଟିମାନଙ୍କୁ ହାତରେ
କାଢ଼ି ପକାଇଲାଟି କାଲୁଆ ମନ୍ତରେ ।
ତଦନନ୍ତରେ ଘରି ଘୋଡ଼ାଙ୍କୁ ବୁଲାଇ
ଖୁଆଇ ଘାସ ପାଣି ବାନ୍ଧିଲା ରଥେ ନେଇ ।
ନିଶି ଶେଷେ ପୁଣି ତିଆରି କରି ରଥ
ରହିଲି ମଣ୍ଡି ଆଗ ଯାଇ ଯୁଦ୍ଧପଥ ।
ମୋର ଆସିବା ଦେଖି ରାମ ତ୍ୱରା ହୋଇ
ରଥ ଚଢ଼ି ଆଗେ ରହିଲେ ଧନୁ ବହି ।
ପର୍ଶୁରାମ ମୋର ଅଟନ୍ତି ବିଦ୍ୟାଗୁରୁ
ନମସ୍କାର କରିଲି ଓହ୍ଲାଇ ରଥରୁ
ପୁଣି ରଥେ ବସି ଧନୁକୁ ଧରି ହସି
ହୁଳଯାଏଟି ଥରେ ତାହା ଦେଲି ଘଷି ।
ମୁନ ଥିବା କାଣ୍ଡକୁ ଗୁଣରେ ବସାଇ
ରାମଙ୍କର ଦେହକୁ ବିନ୍ଧିଲି ରୋଷାଇ ।
ପର୍ଶୁରାମ ସେହିକାଳରେ ଶିଳାଘଷା
ବାଣମାନ ବିନ୍ଧିଣ ପୂରାଇଲେ ରସା ।
ଭଲ ଭାଲିକାଣ୍ଡକେ ରାମ ଶରକୋଟି
ଟିକି ଟିକି କରିଣ ପକାଇଲ କାଟି ।
ତା ନ ସହି ପରଶୁରାମ ମହାବୀର
ବାଛି ଦିବ୍ୟ ଅସ୍ତ୍ରେ କଲେ ସେହୁ ପ୍ରହାର ।
ରାମଙ୍କ ଅସ୍ତ୍ର ଦେଖି ମୁଁ ମଧ୍ୟ ଅସ୍ତ୍ର କଲି
ଆହେ ଦୁର୍ଯ୍ୟୋଧନ ନିବାରି ପକାଇଲି ।
ତା ଦେଖିବା ଲୋକେ ପ୍ରଶଂସି ଆଛା ଆଛା
ବୋଇଲେ ଭୀଷ୍ମ ରାମ ରଥୀଙ୍କରେ ବଛା ।
ବାୟବ୍ୟ ଅସ୍ତ୍ରକୁ ମୋ ଗୃହ୍ୟକ ଅସ୍ତ୍ରରେ
କାଟି ପକାଇଲେ ସେ ରାମରଥୀ ଖରେ ।
ମୋ ଆଗ୍ନେୟ ଅସ୍ତ୍ର ବାରୁଣ ଅସ୍ତ୍ରେ ରାମ
ଶାନ୍ତ କରି ଯୁଦ୍ଧରେ ଫୁଲାଇଣ ରୋମ ।
ମୋ ହୃଦସ୍ଥଳକୁ ଉପରେ ଯୋଖି ରୋପ
ବିନ୍ଧିଲେ ଯୁଦ୍ଧଦାଣ୍ଡେ ଘଣ୍ଟେ କହି କୋପ ।
ସେ ଶର ହୃଦସ୍ଥଳେ ରହନ୍ତେ ମୋ ବୁଡ଼ି
ପଡ଼ିଲି ମୁଁ ରଥରେ ହୋଇଣ କଚଡ଼ି ।

ସାରଥି ଦେଖିକରି ମୋହର ମୋହକୁ
ଲେଉଟାଇଣ ରଥ ବାହିଲା ପଛକୁ ।
ରାମଙ୍କର ବିକ୍ରମ ଦେଖି ଅମ୍ବାନାରୀ
ବୋଇଲା ମଲାତରେ ଭୀଷ୍ମ ଶସ୍ତ୍ରଧାରୀ ।
ଜ୍ଞାନ ପାଇଣ ମୁହିଁ କହିଲି ସୁତକୁ
ବାହା ରଥ ମୋହର ବେଗେ ରାମଠାକୁ ।
ସେହିକ୍ଷଣି ସାରଥି ବାହି ମୋର ଘୋଡ଼ା
ରାମ ରଥ ଆଗରେ କରିଦେଲା ଛିଡ଼ା ।
ମାରଗଣଗଣକୁ ଗୁଣରେ ବସାଇ
ରାମ ପ୍ରାଣ ନେବାକୁ ବିନ୍ଧିଲି ରୋଷାଇ ।
ମୋର କାଣ୍ଡ ଗୋଟିକୁ ରାମ ତିନିକାଣ୍ଡ
ବିନ୍ଧିଣ ରାଗେ କରିଦେଲେ ଖଣ୍ଡ ଖଣ୍ଡ ।
ତା ଦେଖି ରାମକୁ ବିନ୍ଧିଲି କାଣ୍ଡଟିଏ
ଧାଇଁଲା ସେ ଯୁଦ୍ଧେ ଅନ୍ତକପାଟି ପ୍ରାୟେ ।
ସେ ଶରକୁ କାଟି ନ ପାରି ଋଷି ବେଟା
ଧନ ଛାଡ଼ି ରଥ ମଧ୍ୟରେ ଦେଲେ ଲୋଟା
ଲୋକ ଦେଖି ରାମଙ୍କ ଯୁଦ୍ଧରେ ଏ ଦଶା
ନେତ୍ରପିତୁଳାକୁ ମଣିଲା ଅଶୁଭାଷା ।
ଋଷିମାନେ ଅମ୍ଭଙ୍କ ତୁଲେ ଧାଇଁ ଆସି
ରାମ ପାଦପାଣି ଘଷିଲେ ତହିଁ ବସି
ହୋଇଯାଇଥିଲା ବଦନ ନିପାଣିଆ
ପାଣିରେ ଧୋଇବାରୁ ତାହା ହେଲା ନୂଆ ।
ରାମ ସେ ସକାଶରୁ ଅଙ୍ଗେ ଜ୍ଞାନ ପାଇ
ବୋଇଲେ ଭୀଷ୍ମ ଆଜି ମଲୁ ଯିବୁ କାହିଁ ।
ଏହାକହି ଧନୁରେ ସନ୍ଧିଣ କାଣ୍ଡକୁ
ବିନ୍ଧିଲେ ଦେଖାଇ ମୋ ବାମ ପାରୁଶକୁ ।
ସେ କାଣ୍ଡ ସକାଶରୁ କ୍ଷଣମାତ୍ର ଝୁମି
ପୁଣି କରେ ଧନୁ ଧଇଲି ହୋଇ ତମୀ ।
ପୁଣି ରାମ ମୋତେ ବିନ୍ଧିଲେ ତିନିଅସ୍ତ୍ର
ମୁଁ ତ ସେ ଅସ୍ତ୍ରକୁ ବିନ୍ଧିଲି ପ୍ରତିଅସ୍ତ୍ର ।
ସେ ଅସ୍ତ୍ର ଦୁହିଙ୍କ ବାଟରେ ଭେଟାଭେଟି
ହେବାରୁ ଜାତ ହେଲା ଅଗ୍ନି କୋଟି କୋଟି ।
ସେ ଅଗ୍ନି ସକାଶରୁ ଦୁହିଁଙ୍କର ଅସ୍ତ୍ର
ଏକା ବେଳକରେ ହୋଇଲେ ଭୂମିଗତ ।
ଖର୍ବ ଖର୍ବ ଅୟୁତ ଅୟୁତ କାଣ୍ଡ ରାମ
ବିନ୍ଧୁଥିଲେ କାଟୁଥିଲି ମୁଁ ବହି ତମ ।

ସୂର୍ଯ୍ୟ ଅସ୍ତ ହେବାର ସମୟ ଦେଖି
ବସାକୁ ଗଲେ ରାମ ଯୁଦ୍ଧକୁ ଉପେକ୍ଷି ।
ଆରଦିନ ରାମ ତୁଲରେ ଆଯୋଧନ
ଯେଉଁରୂପେ କଲି ତା ଶୁଣ ଦୁର୍ଯ୍ୟୋଧନ ।
ରାମ ଦିବ୍ୟ ଅସ୍ତ୍ର ବିନ୍ଧିଲେ କୋଟି କୋଟି
ମୁହିଁ ଦିବ୍ୟ ଅସ୍ତ୍ରେ ପକାଉଥିଲି କାଟି ।
ତା ନ ସହି ରାମ ଫିଙ୍ଗିଲେ ଶକ୍ତି ରୋଷେ
ଉଲକା ପରି ଧାଇଁଲା ଆକାଶେ ମୋ ନାଶେ
କାଣ୍ଡମାନଙ୍କରେ ସେ ଶକତିକି ମୁହିଁ
ତିନିଖଣ୍ଡ କଲି ଯେ ମହୀରେ ପକାଇ ।
ସେ ଶକତି ଛିଡ଼ିବା ଦେଖିବାରୁ ଶକ୍ତି
ଫିଙ୍ଗିଲେ ପର୍ଶୁରାମ ଦେଖାଇଣ ଶକ୍ତି ।
ସେ ଶକ୍ତିଙ୍କର ତେଜ ଦେଖିବାରୁ ମଞ୍ଜା
କମ୍ପିଗଲା ତ ଆହେ ଦୁର୍ଯ୍ୟୋଧନ ରାଜା ।
ମନେ କଲି ପ୍ରଳୟ କାଳର ଦ୍ୱାଦଶ
ଆଦିତ୍ୟ ନେତ୍ରେ କି ହୋଇଲେ ଆସି ଦୃଶ୍ୟ ।
ବାରଟି କାଣ୍ଡ ବିନ୍ଧି ସେ ବାର ଶକ୍ତିକି
କାଟି ପକାଇଲି ମୁଁ କରି ଟିକି ଟିକି ।
ପୁଣି ସୁନାପଟାଲଗା ଶକତି କୁଳ
ଫିଙ୍ଗିଲେ ପର୍ଶୁରାମ ଦେଖାଇ କରବଳ ।
ସେ ଶକତିମାନଙ୍କୁ ମୋ ନେତ୍ର ଦିଓଟି
ଦେଖିବାକ୍ଷଣି ଖଡ଼ଗେ ପକାଇଲି କାଟି ।
ପୁଣି ଦିବ୍ୟ କାଣ୍ଡମାନଙ୍କେ ରାମ ଘୋଡ଼ା
ଦେହମାନଙ୍କରେ ମୁଁ କରି ଦେଲି ପୀଡା ।
ନ ସହି ତାହା ରାମ ଘେନି ଅସ୍ତ୍ରଗଣ
ମନ୍ତ୍ରକରି ବିନ୍ଧିଲେ ହେବାକୁ ମରଣ ।
ସେହି ଅସ୍ତ୍ରରେ ଘୋଡ଼ା ରଥ ମୋ ଦେହକୁ
ଆଣି ନ ପାରିଲି ମୋହର ନଜରକୁ ।
ମୋ ରଥର ଜୁଳିଆ ହେଲା ଦୁଇ ଗୋଡ଼
କାଣ୍ଡଘାତେ ଶୁଭିଲା ମୋ ରଥ ମଡ଼ ମଡ଼ ।
ଏଥିଅନନ୍ତରେ ମୁହିଁ କୋଦଣ୍ଡରେ କାଣ୍ଡ
ସନ୍ଧିଣ ଛାଇ ଦେଲି ପର୍ଶୁରାମ ପିଣ୍ଡ ।
ମୋତେ ସେହିରୂପେ ଶର ସେ କଲେ ରାଗେ
କହୁଛି ଦୁର୍ଯ୍ୟୋଧନ ରାଜା ତୁମ୍ଭ ଆଗେ ।
ଏହି କାଳେ ପଶ୍ଚିମଅଞ୍ଚଳରେ ରବି
ରହିଲେ ନିବର୍ତ୍ତିଲୁଁ ଯୁଦ୍ଧୁଁ ସନ୍ଧ୍ୟା ଭାବି ।

ପୁଣି ପ୍ରଭାତରୁ ଉଠିଣ ଦୁଇ ଲୋକ
ବିନ୍ଧାବିନ୍ଧି ହୋଇଲୁଁ ଯୋଖିଣ ସାୟକ ।
ମୋ ସାରଥି ବକ୍ଷସ୍ଥଳରେ ରାମ ବାଣ
ବାଜନ୍ତେ ଯମ ନେଲା ପିଣ୍ଡରୁ ତା ପ୍ରାଣ ।
ସାରଥି ମାରିବାର ଦେଖି କରି ଡରି
ରହିବାର ଜାଣିଣ ରାମ ନିଶ ଧରି ।
ରୋଷ କରି ବୋଇଲେ ଆଜି ଭୀଷ୍ମ ମଲୁ
କାହିଁକି ଅମ୍ବାକନ୍ୟା ଦେଲି ମୁଁ ନ ନେଲୁ ।
ଏକାଳେ ରାମ ଧନୁ ଧରି କରତଳେ
ବିନ୍ଧିଲେ କାଣ୍ଡ ମୋ ବାଜିଲା ବକ୍ଷସ୍ଥଳେ ।
ସେ କାଣ୍ଡ ମୋତେ ଘେନି ତଳରେ ପଡ଼ିଲା
ପାତାଳକୁ ବୋଲି ମଧ୍ୟ ସେ ଭେଦିଗଲା ।
ମଲା ବୋଲି ମୋତେ ମନରେ କରି ରାମ
ଗର୍ଜନଟାଏ କଲେ ମନେ ବହି ତମ ।
ମୋହର ଏହି ଦଶା ଦେଖି କୁରୁଲୋକ
ମଲେ ଭୀଷ୍ମ ବୋଲିଣ ଆରମ୍ଭିଲେ ଶୋକ ।
ସେହି କାଳରେ ମୋତେ ଆଠ ଦ୍ୱିଜ ଆସି
ଉଠାଇଲେ ସ୍ନେହରେ ହୋଇଣ ଲାଳସୀ ।
ସେ ସକାଶୁଁ ଶୂନ୍ୟେ ରହିଲା ମୋର ଦେହ
କେତେ ଛାଡ଼ି ଗଲା ମୋ ହୃଦୟରୁ ମୋହ ।
ସେ ଦ୍ୱିଜେ ବୋଇଲେ ହେ ଭୀଷ୍ମ ଜିତେନ୍ଦ୍ରିୟ
ମଙ୍ଗଳ ହେବ କିଛି ନ କରଟି ଭୟ ।
ତାଙ୍କର ଏ ବଚନେ ପାଇ ଧଇର୍ଯ୍ୟକୁ
ବସିବାବେଳେ ରଥେ ଦେଖିଲି ମାତାଙ୍କୁ ।
ମୁଁ ତାଙ୍କର ପାଦରେ କରି ନମସ୍କାର
ଆରୋହିଲି ଯାଇପୁଣି ମୋ ରଥବର ।
ମାତା ମୋର ରଥ ବାହିବା ବେଳେ ମୁହିଁ
ବୋଇଲି ଯାଅ ତୁମ୍ଭେ ଏକା ଯୁଝିବଇଁ ।
ଏହା କହି ଘୋଡ଼ାମାନଙ୍କୁ ବାହିଲି
ପର୍ଶୁରାମ ତୁଲରେ ଯୁଦ୍ଧ ଆରମ୍ଭିଲି ।
ମୋର ବାଣରେ ରାମ ହୋଇଣ ମୂର୍ଚ୍ଛିତ
ଜାନୁ ଦୁଇ ମାଡ଼ି ଭୂମିକି ହେଲେ ଗତ ।
ପର୍ଶୁରାମଙ୍କର ପଡ଼ିବା ସମୟରେ
ଉତପାତ ଜାତ ହେଲା ଏ ଜଗତରେ ।
ମେଘମାନେ ଖପରା ତୁଲରେ ରକତ
ବରଷି ପୂରାଇଲେ ମହୀ ପରବତ ।

କୋଟି କୋଟି ଉଲ୍କା ହୋଇଲା ଉଦୟ
ସୂର୍ଯ୍ୟଙ୍କୁ ଯାଇଣ ଭେଟିଲା ସିଂହିକେୟ ।
ଏହିରୂପରେ ନାନାଜାତି ଉତପାତ
ଜାତ ହେଲା ଜାଣହେ ଗାନ୍ଧାରୀଙ୍କ ସୁତ ।
ଉତପାତ ହେଉଁ ହେଉଁ ଯେ ରବିଦେବ
ପଶ୍ଚିମ ପର୍ବତରେ ପାଇଲେ ଅଭାବ ।
ତା ଦେଖି ମୋ ବସାଘରକୁ ମୁଁ ଆସିଲି
ରାମଙ୍କୁ ଆଉ ଶର ବିନ୍ଧି ନ ନାଶିଲି ।
ଏହିରୂପେ ତେଇଶି ଦିନଯାଏ ମୁହିଁ
ରାମ ସଙ୍ଗେ ଯୁଝିଲି କରେ ଧନୁ ବହି ।
ତେଇଶି ଦିନ ରାତ୍ରି କାଳେ ଶେଯେ ବସି
ବିଚାରିଲି ମୁଁ ମନେ ମନେ ହୋଇ ରୋଷୀ ।
କିରୂପରେ ରାମଙ୍କୁ କରିବି ସଂହାର
ରାମ ତ ସବୁ ଅସ୍ତ୍ର ନାଶିଲେ ମୋହର ।
ଯେବେ କାଲି ରାମଙ୍କୁ ଜିଣିବି ମୁଁ ରଣେ
ତେବେ ଦେବେ ଦେଖା ଦିଅନ୍ତୁ ମୋ ନୟନେ
ଏହିରୂପେ ବହୁତ କରି ମୁଁ କାମନା
କଲି ତ ଦେବଙ୍କର ପାଦରେ ବନ୍ଦନା ।
କାଣ୍ଡଘାତେ ମୋ ଦେହ ଯାଉଥିଲା ତାତି
ଏଣୁ ଶୋଇ ପଡିଲି ହୁଅନ୍ତେ ପାହାନ୍ତି ।
ଯେଉଁ ଆଠଟି ଦ୍ୱିଜେ ମୋହ ଯିବାକାଳେ
ଉଠାଇଲେ ମୋତେ ସେ ସ୍ୱପ୍ନେ ଦେଖାଦେଲେ
ବୋଇଲେ ହେ ଗଙ୍ଗା ନନ୍ଦନ ଉଠ ଉଠ
ଜାଣିଲୁଣି ଆମ୍ଭେ ତୁମ୍ଭର ହୃଦପାଠ ।
ତୁମ୍ଭଙ୍କୁ ପର୍ଶୁରାମ ନ ପାରିବେ ଜିଣି
ଆମ୍ଭେ ଆଠେ ସାହା ଅଛୁଁ ହେ ବୀରମଣି ।
ପୂର୍ବ ଜନ୍ମେ ପ୍ରସ୍ୱାପ ଅସ୍ତ୍ର ତ ଜାଣିଛ
ଆମ୍ଭଠାରୁ ଏବେ ତା ନିଅ ନୃପବତ୍ସ
ପ୍ରଜାପତିଙ୍କର ଅସ୍ତ୍ର ସେହୁ ଅଟଇ
ବ୍ରହ୍ମା ବିନା ସେ ଅସ୍ତ୍ର କାକୁ ନ ଆସଇ ।
ତୁମ୍ଭେ ଏବେ ସେ ଅସ୍ତ୍ର ସୁମର ଯୁଦ୍ଧରେ
ଉପସ୍ଥିତ ହେବ ସେ ଆମ୍ଭ ପ୍ରଭାବରେ ।
ସେ ଅସ୍ତ୍ର ଯେବେ ତୁମ୍ଭେ କରିବ ପ୍ରୟୋଗ
ପରଶୁରମା ମହୀଶେଯକୁ ସରାଗ ।
କରି ମାତ୍ର ଆଖି ବୁଜିଣ ନିଦ୍ରା ଯିବେ
ଆହେ ଭୀଷ୍ମ ଜାଣ ସେ ପ୍ରାଣ ନ ଛାଡ଼ିବେ ।

ରାମ ଦ୍ୱିଜେ ପୁଣି ଅଟନ୍ତି ତୁମ୍ଭ ଗୁରୁ
ନ ମାରି ଯୁଦ୍ଧେ କର ଏରୂପେ ତାଙ୍କୁ ଭୀରୁ ।
ପଛରେ ପ୍ରବୋଧନ ଅସ୍ତ୍ରକୁ କରିବ
ଶୋଇବାଠାରୁ ପର୍ଶୁରାମେ ଉଠାଇବ ।
ଏତେ କହି ସେ ଦ୍ୱିଜେ ଅନ୍ତର୍ଦ୍ଧାନ ହୋଇ-
ଯାନ୍ତେ ଦୁର୍ଯ୍ୟୋଧନ ବସିଲି ଚେତା ପାଇ ।
ପୂର୍ବଦିଗେ ଦେଖିଣ ଉଦୟ ଅରୁଣ
ସେହିକ୍ଷଣି କରରେ ଧରି ଧନୁର୍ବାଣ ।
ସଜ କରି ରଥର ଉପରେ ବସିଲି
ରାମଙ୍କ ଯୁଝିବାର ସ୍ଥାନେ ଯାଇ ହେଲି ।
ପର୍ଶୁରାମ ମଧ୍ୟ ମୋ ପରି ରଥ ଚଢ଼ି
ଯୁଦ୍ଧକୁ ଆସି ମୋତେ ଦେଲେ କାଣ୍ଡଧାଡ଼ି ।
ତାଙ୍କ କାଣ୍ଡଯାକକୁ ପ୍ରହାରିଣ କାଣ୍ଡ
ଆହେ ଦୁର୍ଯ୍ୟୋଧନ କଲି ମୁଁ ଦୁଇଖଣ୍ଡ ।
କାଳଦଣ୍ଡ ପରି ଶକତି ଦଣ୍ଡକରେ
ଧରି ରାମ ଫିଙ୍ଗିଲେ କ୍ରୋଧେ ମୋ ଉପରେ ।
ସେହି ଶକତି ଯୁଦ୍ଧ ଦାଣ୍ଡରେ ଗରଜି
ମୋ ଅଙ୍ଗ ଦେଶେ ବାଜି ରହିଲା କେତେ ମଜ୍ଜି
ମୁହିଁ ମଧ୍ୟ ରାମଙ୍କ ବିଚାରିଣ ଅନ୍ତ
କାଳପରି ଶର ବିନ୍ଧିଲି ଅଗଣିତ ।
ମୋ କାଣ୍ଡକୁ ଲଲାଟ ପଟେ ରାମ ବହି
ଶୃଙ୍ଗଥିବା ପର୍ବତ ଶୋଭା ଦେଲେ ଦହି ।
ରାମ କାଣ୍ଡୁଟିଏ ବିନ୍ଧିଲେ ମୋତେ ଆଣ୍ଟେ
ବାଜିଲା ସେ ଆସି ମୋହର ହୃଦ ତଟେ ।
ଭକ ଭକ ବାହାର କରାଇ ରକତ
ସେ ଶର ଦେଖୁଁ ଦେଖୁଁ କଲା ମୋତେ ଅସ୍ତ
ପୁଣି ମୁଁ ଚେତା ପାଇ ଧଇର୍ଯ୍ୟ ଧଇଲି
ଶକତିଟାଏ ଟେକି ରାମଙ୍କୁ ଫିଙ୍ଗିଲି ।
ସେ ଶକତି ମୋର ହାତରୁ ଫିଟିଗଲା
ଭୂଜାନ୍ତରେ ବାଜି ଚଟୁଆ ଫୁଟିଗଲା ।
ପର୍ଶୁରାମ ସେ ଘାତେ ହୋଇ ଥରହର
ଧରି ନ ପାରିଲେ ସେ ଧନୁଶର କର ।
ଅକୃତବ୍ରଣଋଷି ପୋଟାଳି ତାହାଙ୍କୁ
ବୋଇଲେ କିପାଇଁ ପାଉଛ ଅଧୈର୍ଯ୍ୟକୁ ।
କ୍ଷତ୍ରିୟହନ୍ତା ହୋଇ ଜନ୍ମିଛ ତ ତୁମ୍ଭେ
ଭୀଷ୍ମକୁ ହାରିବ କି ପଚାରୁଛୁଁ ଆମ୍ଭେ ।
ଏହାଶୁଣିଣ ରାମ ନିଶକୁ ଆଉଁଷି
ବ୍ରହ୍ମଅସ୍ତ୍ରଟି ବରଗିଲେ ହୋଇ ରୋଷୀ ।
ସେ ଅସ୍ତ୍ରକୁ ଦେଖି ମୁଁ କଲି ବ୍ରହ୍ମଅସ୍ତ୍ର
ନୋହିବାକୁ ନାଶ ଯୁଦ୍ଧରେ ମୋର ଗାତ୍ର ।
ଆମ୍ଭ ଦୁହିଙ୍କର ଦୁଇଟି ବ୍ରହ୍ମଶର
ଆକାଶ ମଧ୍ୟେ ମିଶି କଲେଟି ସମର ।
ସେହି ସକାଶୁଁ କୋଟି କୋଟି ଅଗ୍ନି ଜ୍ୱାଳା
ଜନ୍ମି ଲୁଚାଇଲା ସୂର୍ଯ୍ୟଙ୍କ ରଶ୍ମିମାଳା ।
ପର୍ବତ ତୁଲେ ବନ ନଦୀ ମହୀ ଯେତେ
ଥିଲେ କମ୍ପିଗଲେ ଭୟରେ ସେ ସମସ୍ତେ ।
ଦେବ ଯକ୍ଷ କିନ୍ନର ରକ୍ଷେ ହୋଇଗୋଟି
ବିଚାରିଲେ ଏଥର ପ୍ରଳୟ ହେଲାଟି ।
ଏହି ଛିଦ୍ରେ ପ୍ରସ୍ୱାପ ଅସ୍ତ୍ର ମୁଁ ପ୍ରୟୋଗ
କରିବି ବୋଲି ବଚାରିଲି ହୃଦଭାଗ ।
ଚିନ୍ତିବା ମାତ୍ରକେ ସେ ଅସ୍ତ୍ର ମନ୍ତ୍ରରାୟେ
ପରତେ ହେଲା ମୋତେ ଶିଖିଲା ପରାୟେ ।
ଏହିକାଳେ ଆକାଶୁ ଶୁଭିଲା ବଚନ
ଶୁଣ ଆହେ ଭୀଷ୍ମ ରଥିଙ୍କର ମଣ୍ଡନ ।
ପ୍ରସ୍ୱାପନ ଅସ୍ତ୍ରଟି ଯୁଦ୍ଧରେ ରାମଙ୍କୁ
ନ ବିନ୍ଧ ଘେନି ଆମ୍ଭ କହିବା କଥାକୁ ।
ପର୍ଶୁରାମ ବ୍ରାହ୍ମଣ ବ୍ରହ୍ମଣ୍ୟ ତପସ୍ୱୀ
ତେଜସ୍ୱୀ ତିନି ଲୋକ ମଧ୍ୟରେ ଯଶସ୍ୱୀ ।
ପୁଣି ତ ସେହି ଗୁରୁ ଅଟନ୍ତି ତୁମ୍ଭର
ନ କର ଯୁଦ୍ଧେ ତୁମ୍ଭେ ତାହାଙ୍କୁ ସଂହାର ।
ଯେ ଆଠ ବ୍ରାହ୍ମଣେ ସେ ଅସ୍ତ୍ର ଦେଇଥିଲେ
ଆକାଶରେ ଥାଇଣ ସେ ମଧ୍ୟ କହିଲେ ।
ଦେବତାଏ ଯେବେଟି ବୋଲନ୍ତି ତୁମ୍ଭଙ୍କୁ
ନ ବିନ୍ଧ ସେହି ଅସ୍ତ୍ରବରକୁ ରାମଙ୍କୁ ।
ଏହା ଶୁଣି ସେ ଅସ୍ତ୍ର ହୁଡ଼ି କରି ମୁହିଁ
ବ୍ରହ୍ମଅସ୍ତ୍ର ଗୁଣରେ ବସାଇଲି ନେଇ
ପରଶୁରାମ ତାହା ଜାଣି ତ ପାରିଲେ
ହାରିଲି ଭୀଷ୍ମ ମୁହିଁ ତୁମ୍ଭଙ୍କୁ ବୋଇଲେ ।
ପରଶୁରାମଙ୍କର ପିତୃ ପିତାମହ
ଆସି ରାମଠାକୁ କହିଲେ ବହି ସ୍ନେହ ।
ଆହେ ବାବୁ ଭୀଷ୍ମଙ୍କ ତୁଲରେ ସାହସ
କରିଣ ଯୁଦ୍ଧେ କଲେ ହେବଟି ବିନାଶ ।

ଯେଉଁ ରୂପରେ କ୍ଷତ୍ରିୟର ଯୁଦ୍ଧ ଧର୍ମ
ସେହିରୂପରେ ବ୍ରାହ୍ମଣର ବେଦକର୍ମ ।
ଆମ୍ଭମାନଙ୍କର ତ କାରଣ ଥିବାକୁ
ଅସ୍ତ୍ର ଧରାଇଲୁ ପୂରୁବରେ ତୁମ୍ଭଙ୍କୁ ।
ଏବେ ତ ସେହିପରି କାର୍ଯ୍ୟ ଆଉ ନାହିଁ
ଏପରି ଯୁଦ୍ଧ କିପାଁ କର କୋପ ବହି ।
ତପ କରି ଏବେ ଅରଜ ପୁଣ୍ୟଯାକ
ନୋହିଲେ ନାଶ ଯିବ ତୁମ୍ଭ ପରି ଲୋକ ।
ଦେବଙ୍କ ବୋଲେ ଭୀଷ୍ମ-ଯୁଦ୍ଧରୁ ନିବର୍ତ୍ତ
ଲଭିଲାଣି ଫଳ ନ କରି ତାପବୃତ୍ତ ।
ଭୀଷ୍ମ ବସୁଅଂଶରେ ହୋଇଛନ୍ତି ଜାତ
ଜିଣି ନ ପାରିବେଟି ତାହାଙ୍କୁ ଜଗତ ।
ନର ଯେବେ ଅର୍ଜୁନ ହୋଇ ଜନମିବେ
ତେବେ ଏକା ଭୀଷ୍ମଙ୍କୁ କାଣ୍ଡେ ସେ ମାରିବେ
ପିତୃଙ୍କର ବଚନ ଶୁଣି ପର୍ଶୁରାମ
ବୋଇଲେ କିରୂପେ ମୁଁ ଛାଡ଼ିବି ସଂଗ୍ରାମ ।
ଭୀଷ୍ମ ଆଗ ଯୁଦ୍ଧରୁ ଲେଉଟିବେ ଯେବେ
ତୁମ୍ଭର ବୋଲେ ମୁହିଁ ଲେଉଟିବେ ତେବେ ।
ଏହା ଶୁଣି ଋଚୀକ ଆଦି ମହାଋଷି
ନାରଦଙ୍କୁ ଘେନି ମୋ ପାଶେ ହେଲେ ଆସି ।
ବୋଇଲେ ଆମ୍ଭ ବୋଲ ଘେନି ଭୀଷ୍ମ ବୀର
ନ କର ପର୍ଶୁରାମ ସଙ୍ଗତେ ସମର ।
ମୁଁ ବୋଇଲି ମୁଁ ତ ହୃଦରେ ଅଛି ଭାବି
ନ ଜିଣିଲେ ରାମଙ୍କୁ ଛାଡ଼ିଣ ନ ଯିବି ।
ମୋଠାରୁ ଏହା ଶୁଣି ଘେନିଣ ଗଙ୍ଗାକୁ
ପୁଣି କହିଲେ ସେହୁ ରାଇଣ ରାମଙ୍କୁ ।
ହେ ପର୍ଶୁରାମ ତୁମ୍ଭେ ନୁହ ତ କ୍ଷତ୍ରିୟ
ନିବର୍ତ୍ତି ରହ ଯୁଦ୍ଧେ ହେବଟି ଅଜୟ ।
ଭୀଷ୍ମର ତୁମ୍ଭ ହାତେ ପରାଜୟ ନାହିଁ
ଶୋଇବ ରଥେ ଶରେ ଗଣ୍ଡିକି ଫୁଟାଇ ।
ପରଶୁରାମ ଋଷିମାନଙ୍କ ବଚନେ
ଛାଡ଼ିଦେଇ ଧନୁଟି ରହିଲେ ମଉନେ ।
ପୁଣି ସେ ଆଠ ଦ୍ୱିଜେ ଆକାଶରେ ଥାଇ
ବୋଇଲେ ରାମଠାକୁ ଯାଅ ଭୀଷ୍ମ ଧାଇଁ ।
ତୁମ୍ଭର ସେହୁ ଗୁରୁ କରି ତାଙ୍କୁ ପୂଜା
ହସ୍ତିନାକୁ ଯାଅ ଆନନ୍ଦ କରି ମଜ୍ଜା ।

ପରଶୁରାମଙ୍କର ନିବର୍ତ୍ତିବା ଦେଖି
ମୁହିଁ ତ ନିବର୍ତ୍ତିଲି ହୋଇ ଅତି ସୁଖୀ ।
ରାମଙ୍କର ପାଦରେ କରି ନମସ୍କାର
ବୋଇଲି ସବୁ ଦୋଷ କ୍ଷମା କର ମୋର ।
ରାମ ବୋଇଲେ ଆହେ ଭୀଷ୍ମ ତୁମ୍ଭପରି
ଏ ମହୀରେ ଆଉ ନୋହିବେ ଶସ୍ତ୍ରଧାରୀ ।
ଏବେ ଯାଅ ବାବୁରେ ଘରକୁ ତୋହର
ସନ୍ତୋଷ ହେଲି ବାବୁ ଦେଖି ତୋ ସମର ।
ଏହା କହିଣ ମୋତେ ଡାକି ସେ କନ୍ୟାକୁ
ପର୍ଶୁରାମ ବୋଇଲେ ଯାଅ ତୋ ଘରକୁ ।
ଦେଖିଲୁ ତ ତୋପାଇଁ କଲୁଁ ଯେତେ ବଳ
ତୋର କର୍ମକୁ ତାହା ହୋଇଲା ନିଷ୍ଫଳ ।
ଭୀଷ୍ମଙ୍କର ପାଦ ବେନିକି ଧରି ପଡ଼ି
କହ ତୋ ହୃଦ କଥା ଲାଜ ଦେଇ ଛାଡ଼ି ।
ଅମ୍ବା ବୋଇଲେ ମୁହିଁ ଯାଉଛି ଗୋସାଇଁ
ନ କହିଲେ ହେଲେ ଜାଣିଲି ସବୁ ମୁହିଁ ।
ଭୀଷ୍ମ ତିନିଲୋକରେ ଅଜେୟ ଯୁଦ୍ଧରେ
କି କରିବ ତୁମ୍ଭେ ଜନ୍ମ ତ ଦ୍ୱିଜଘରେ ।
ବହୁ ଅସ୍ତ୍ର ଶସ୍ତ୍ର କଲ ତ ମୋହପାଇଁ
ନ ପାରିଲ ଭୀଷ୍ମ ହୃଦୟକୁ କମ୍ପାଇ ।
ମୁଁ ତ ହୋଇଅଛି କ୍ଷତ୍ରିୟ ବୀର୍ଯ୍ୟେ ଜାତ
ହୋଇବି କେହିଁ କହ ଭୀଷ୍ମଙ୍କୁ ନିସତ ।
ଅବଶ୍ୟ ଭୀଷ୍ମ ତୁଲେ ଯୁଦ୍ଧକୁ କରିବି
ଯମଙ୍କ ନଗରରେ ନେଇ ବସାଇବି ।
ଏହା କହିଣ ଅମ୍ବା ମୋ ମରଣପାଇଁ
ବନେ ରହି ତପସ୍ୟା କଲା ସେ ନିଠାଇଁ ।
ଏଥୁଅନ୍ତରେ ରାମ ଆଶ୍ରମକୁ ଗଲେ
ହସ୍ତିନାକୁ ମଧ ଆସିଲି ମୁହିଁଭଲେ ।
ସତ୍ୟବତୀ ଶୁଣିଣ ମୋହର ବିଜୟ
ହରଷରେ ଫୁଲାଇ ଦେଲେ ସେ ହୃଦୟ ।
ସେହି ଦିନୁ ଡଗରମାନଙ୍କୁ ବୁଲାଇ
କି କରୁଛି ସେ କନ୍ୟା ବୁଝେ ନିତି ମୁହିଁ ।
ମନରେ ଭାବୁଥାଇଁ କାଶୀରାଜା ଝିଅ
ମାଗିବ ଯେବେ ମୋତେ ତେବେ ହେବ ପୁଅ ।
ନାରଦ ବେଦବ୍ୟାସ ଜାଣି ମୋର ମନ
ବୋଇଲେ ନ ଡର ହେ ଭୀଷ୍ମ ରଥୀରାଣ ।

ଦଇବ ଯାହା କରିଥିବ ତାହା ହେବ
ଭାଳି ବସିଲେ କି ତା ଆନ ହୋଇଯିବ ।
ଯମୁନାଙ୍କ ତୀରରେ ଥାଇ ଅମ୍ବା ନାରୀ
ମହାତପ କଲା ହୋଇଣ ନିରାହାରୀ ।
ଯମୁନା ଜଳେ ବରଷେଯାଏ ପଶି
ତପ କଲା ଆଖିକି ଭାଲପଟେ ଖୋଷି ।
ଆହୁରି ବରଷେ ସେ ଶୁଖିଲା ପତର
ଆହାର କରି ପୁଣି ଜପିଲା ମନ୍ତର ।
ବରଷେ ଗୋଡ଼ର ଅଙ୍ଗୁଷ୍ଠି ଟିପେ ରହି ।
ତପ କଲା ତା କରି ନ ପାରିବେ କେହି ।
ଏହିରୂପେ ଦ୍ୱାଦଶ ବରଷ ସେ ବାମା
ତପରେ ଶୀର୍ଣ୍ଣ ହେଲା ନୋହି ପୂର୍ଣ୍ଣକାମା ।
ଜ୍ଞାତିମାନେ ଆସି କହିଲେ ଯେତେ ତାକୁ
ତେତିକି ରାଜଜେମା କଲାଟି ତପକୁ ।
ବସ୍ତଭୂମିତୀର୍ଥରେ ପୁଣ୍ୟ ନଦୀଙ୍କରେ
ସ୍ନାନ କରି ଅମ୍ବା ବୁଲିଲା ନିଃଶଙ୍କରେ ।
ନନ୍ଦ ଐଳ ମାଣ୍ଡବ୍ୟ ଦିଲୀପ କୌଶିକ
ଆଶ୍ରମାଦିରେ ତପ କଲା ଛାଡ଼ି ଦକ ।
ଏ ବାହାରେ ବ୍ରହ୍ମସ୍ନାନ ଯେ ରାମହ୍ରଦ
ଏମାନଙ୍କେ ଜପିଲା ହେବାକୁ ତା ଭଦ୍ର ।
ଅମ୍ବା ରୀତି ଜାଣି ମୋ ମାତା କରି ତାପ
ବୋଇଲେ କିପାଇଁ କରୁଛ ଅମ୍ବା ତପ ।
ଅମ୍ବା ମୋ ମାତାଙ୍କୁ ବୋଇଲା ଭୀଷ୍ମ ନାଶେ
ତପସ୍ୟାରେ ରସିଛି ମୁଁ ନିଶି ଦିବସେ ।
ଏ ଦେହେଁ ତ ସ୍ତିରୀଟାଏ ହୋଇଣ ଅଛି
ପୁରୁଷ ଜନ୍ମ ହୋଇ ମାରିବି ଭାବୁଛି ।
ଗଙ୍ଗା ବୋଇଲେ ତୁ କରୁଛୁ ଯାହା ଇଚ୍ଛା
ନୋହିବ ତ ସେକଥା ସେ ତ ମୋର ବତ୍ସା ।
ଯେଉଁକାଳେ ଦେହକୁ ଛାଡ଼ି ଦେବୁ ନାରୀ
ନଦୀ ହୋଇ ଯିବୁଟି ଶାପରେ ମୋହରି ।
ବର୍ଷା କାଳେ ମାତ୍ର ଜଳରେ ପୂର୍ଣ୍ଣ ହେବୁ
ଶୀତ ଖରାଯାକ ଶୁଖିଲା ହୋଇଥିବୁ ।
ଏରୂପେ ଶାପ ଦେଇ ମୋ ମାତା ବାହୁଡ଼ି
ଆସି ଗଙ୍ଗାଜଳେ ରହିଲେ ଯାଇଁ ବୁଡ଼ି ।
ମୋ ମାତାର ବଚନେ ଅମ୍ବା ଦେହ ଅଧେ
ନଦୀ ହୋଇଣ ବହିଗଲା ମହୀମଧେ ।
ଋଷମାନେ ମଧ୍ୟ ଅମ୍ବାର ତପସ୍ୟାକୁ
ଦେଖିକରି ବୋଇଲେ ଛାଡ ଏ ତପକୁ ।
ଅମ୍ବା ବୋଇଲେ ମୁହିଁ ନ ମାରିଲେ ଭୀଷ୍ମ
ଛାଡ଼ି ପାରୁନାହିଁ ହୃଦରୁ କ୍ରୋଧ ଉଷ୍ମ ।
ଏଥିପାଇଁ ତପସ୍ୟା କରୁଅଛି ମୁହିଁ
ପୁରୁଷ ହେଲେ ପ୍ରାଣ ନେବି ତାର ଯାଇଁ ।
ସେହିକାଳରେ ଶିବ ଆସି ସେହିଠାକୁ
ବୋଇଲେ ମାଗ ଅମ୍ବା ଯେ ଇଚ୍ଛା ବରକୁ ।
ଅମ୍ବା ବୋଇଲେ ମୁଁ ଭୀଷ୍ମଙ୍କୁ ମାରିବଇଁ
ଏହି ବର ମୋତେ ଦିଅ ହେ ଉମାସାଇଁ ।
ସ୍ତିରୀଟାଏ ହୋଇ କି କରିବ ସମର
ଏଥିକି ଯେ ଉଚିତ ହେବ ତାହା କର ।
ହର ବୋଇଲେ ତୁହି ଛାଡି ଏ ଦେହକୁ
ପୁରୁଷ ହୋଇ କରି ମାରିବୁ ଭୀଷ୍ମକୁ ।
ଜାତ ଶୂର ଗୁଣଟି ହୋଇବ ତୋହର
ଏଥିକି ମଧ୍ୟ ମୁହିଁ ଦେଉଅଛି ବର ।
ଦ୍ରୁପଦ ରାଜାଙ୍କର ଝିଅ ତୁ ହୋଇବୁ
ପୁରୁଷତ୍ୱ ପାଇ ଭୀଷ୍ମଙ୍କୁ ତୁ ମାରିବୁ ।
ସବୁ ଅସ୍ତ୍ର ଶସ୍ତ୍ର ପ୍ରସନ୍ନ ହେବ ତୋତେ
ବିଅର୍ଥ ହୋଇବ କି ସେବିଛୁ ତୁ ମୋତେ ।
ଏହା କହି ବୃଷଭଧ୍ୱଜ ଅନ୍ତର୍ଦ୍ଧାନ
ହୋଇଲେ ଅମ୍ବା ଶୁଣି ହେଲା ତୋଷମନ ।
ଗୁଡ଼ିଏ କାଠ ଆଣି ନିଆଁ ଲଗାଇଲା
ଭୀଷ୍ମଙ୍କପାଇଁ ମୁହିଁ ମରୁଛି ବୋଇଲା ।
ସେହି ଅଗ୍ନିର ମଧ୍ୟେ ପଶିଲା ଜୀବନ
ଛାଡ଼ିଦେଲା ଅମ୍ବା ନାରୀଙ୍କର ମଣ୍ଡନ ।
ଦୁର୍ଯ୍ୟୋଧନ ବୋଇଲେ ଶିଖଣ୍ଡୀ ତ ନାରୀ
ହୋଇଥିଲା ପୁରୁଷ ହୋଇଲା କିପରି ।
ଏହା ମୋ ଆଗେ କହ ହୋଇଣ ନିଃଶଙ୍କ
ଆହେ ଭୀଷ୍ମ କୁରୁ କୁମୁଦଙ୍କ ଶଶାଙ୍କ ।
ଭୀଷ୍ମ ବୋଇଲେ ତାହା କରିବା ପ୍ରକାଶ
ଶୁଣ ମୋହଠାରୁହେ ଗାନ୍ଧାରୀ ଜ୍ୟେଷ୍ଠଶିଷ୍ୟ ।
ଦ୍ରୁପଦ ଭାର୍ଯ୍ୟା ପୁତ୍ରହୀନ ହୋଇଥିଲେ
ଏହିକାଳେ ଦ୍ରୁପଦ ନରପତି ଭଲେ ।
ଅସତ୍ୟ ହେବାପାଇଁ ସେବିଲେ ଶିବଙ୍କୁ
ଶିବଦେଲେ କନ୍ୟାଲାଭ ବରଟି ତାଙ୍କୁ ।

ଦ୍ରୁପଦ ବୋଇଲେ ମୁଁ ଭୀଷ୍ମ ନାଶପାଇଁ ।
ପୁତ୍ର ଇଚ୍ଛା କରିଛି ଆହ ଉମାସାଇଁ ।
ଆପଣ କନ୍ୟାଲାଭ ବର ଦେବା ହେଲା
ଭୀଷ୍ମଙ୍କୁ ମାରିବାର ମୋହର ନୋହିଲା ।
ଶିବ ବୋଇଲେ ଆହେ ରାଜନ ସନ୍ତାପ
ନ କର ଝିଅ ତୁ ଛଡ଼ାଇବ ତାପ ।
ସ୍ତିରୀ ହୋଇଣ ଦିନାକେତେ ରହିଥିବ
କାଳରେ ଏହି ପୁଣି ପୁରୁଷ ହୋଇବ ।
ଏହା ଶୁଣି ଦ୍ରୁପଦ ନିଜ ପୁରେ ଆସି
କହିଲେ ଡାକିଣ ଭାରିଯା ଋରୁକେଶୀ ।
ଶିବଙ୍କୁ ପୁତ୍ରପାଇଁ ସେବା କଲି ମୁହିଁ
ବୋଇଲେ ଝିଅ ଜନ୍ମି ହେବ ପୁତ୍ର ସେହି ।
ତାହା ଶୁଣି ତାଙ୍କର ଭାରିଯା ବୋଇଲେ
ଯାହା ସେ ବୋଇଲେ ହୋଇ ଜାଣ ଭଲେ ।
ଏରୂପେ କେତେ ଦିନ ଅନ୍ତେ ଋତୁକାଳ
ହୁଅନ୍ତେ ସେ ନାରୀ ଦ୍ରୁପଦ ସଙ୍ଗେ ମେଳ ।
ହୋଇ ଶିବ ଆଜ୍ଞାରେ ହେଲା ଗର୍ଭଧାରୀ
ଦେହରେ ନିନ୍ଦା କଲା କଇଳାସ ଗିରି ।
ତାହା ଦେଖି ଦ୍ରୁପଦ ରାଜା ସୁଖୀ ହେଲେ
ଭାରିଯାର ବଶବର୍ତ୍ତୀ ସେହୁ ହୋଇଲେ ।
ଯଥାକାଳରେ ପୁଣି ଦ୍ରୁପଦ ଭାରିଯା
ଜାତ କଲେ ଶିବଙ୍କ ବରରେ ଆତ୍ମଜା ।
ଦ୍ରୁପଦତ ଅପୁତ୍ରିକଟି ହୋଇଥିଲେ
ଏଣୁ ସେ ପୁତ୍ର ବୋଲି ଭୂମେ ଖ୍ୟାତ କଲେ ।
ପୁତ୍ର ପରି ସେ ଦୁହିତାର କାର୍ଯ୍ୟଯାକ
କରିଲେ ପାଞ୍ଚାଳଙ୍କ କୁଳର ନାୟକ ।
ଦ୍ରୁପଦଙ୍କ ଭାରିଯା ଲୁଚ୍ଛଇ ସେ ଝିଅ
କହୁଥାନ୍ତି ହେଲା ବୋଲି ମୋହର ପୁଅ ।
ମାତା ପିତାଙ୍କରଟି ଲୁଚ୍ଛଇବା ଘେନି
ସେ ନଗର ଲୋକେ ତ ନ ପାରିଲେ ଜାଣି ।
ଜାତକର୍ମ ଦିନ ସେ ଝିଅଟିର ନାମ
ଶିଖଣ୍ଡୀ ଦେଲେ ସେ ଦ୍ରୁପଦ ନୃପୋତ୍ତମ ।
ନାରଦଙ୍କ ମୁଖୁଁ ଏକଥାମାନ ଶୁଣି
ଭାବିଲି ମରଣ ଖଞ୍ଜିଲା ବିହି ଆଣି ।
ଶିଖଣ୍ଡୀର ଆସି ହୁଅନ୍ତେ ଯୁବାକାଳ
ତା ବିଭାପାଇଁ ମାତା ହୋଇଣ ଆକୁଳ ।

ବାପାଙ୍କୁ ଡାକି କରି ଏମନ୍ତ କହିଲା
ପୁଅକୁ ବିଭାକର ଆସି କାଳ ହେଲା ।
ଦ୍ରୁପଦ ବୋଇଲେ ମୁଁ ଶିବଙ୍କ ଆଜ୍ଞାରେ
ଝିଅକୁ ପୁଅ ବୋଲି କହିଲି ପୃଥ୍ୱୀରେ ।
ଆଜଯାଏ ସଖି ଗୋ ନୋହିଲା ସେ ପୁଅ
ବିଭାପାଇଁ ଆଉ ଆଦୃର ତୁମ୍ଭେ ନୁହ ।
ତା ଶୁଣି ଭାରିଯା ବୋଇଲେ ଶିବ ଆଜ୍ଞା
ନ କର ମହୀପତି ମାନସେ ଅବଜ୍ଞା ।
ମୁଁ ବୋଲୁଛି ଏବେ ଝିଅକୁ ବିଭା କର
କାଳରେ ପୁଅ ହୋଇ କରିବେ ସେ ଘର ।
ଭାରିଯାର ବଚନ ଦ୍ରୁପଦ ଘେନିଲେ
ଦଶାର୍ଣ୍ଣାଧିପତି ଝିଅକୁ ବିଭା କଲେ ।
ଦଶାର୍ଣ୍ଣାଧିପତି ଝିଅ ଶିଖଣ୍ଡୀରି
ରୀତିକି ଜାଣିଲା କଥାକୁ ତର୍କ କରି ।
ଧାଇକି କହିଲା ମାଇପିଟାକୁ ମୋତେ
ବାପେ ବିଭା ଦେଲେଟି କହ ତ କେମନ୍ତେ ।
ଧାଇମାନେ ତା ଶୁଣି ବହୁ କରି ଦୁଃଖ
ପେଷିଲେ ଦାସୀଏ ଦଶାର୍ଣ୍ଣାଧିପ ପାଖ ।
ସେ ଦାସୀ ମୁଖରୁ ହିରଣ୍ୟବର୍ମା ରାଜା
ଶିଖଣ୍ଡୀ ରୀତି ଶୁଣି ପାଇଲେ ମହାଲଜ୍ଜା ।
ବୋଇଲେ ଏକ୍ଷଣି ଯାଇ ମୁଁ ଦ୍ରୁପଦଙ୍କୁ
ମାରିବି ଯେଣୁ ଜଟି କହିଲେ ଆମ୍ଭଙ୍କୁ ।
ଆଜଯାଏ କାହାରି ଏହା ଶୁଣା ନାହିଁ
ଝିଅକୁ ପୁଅ ବୋଲି କହିଲେ ସେ କାହିଁ ।
ଏହିରୂପେ କରି ଅନେକ ଭାବନାକୁ
ପେଷିଲେ ସେ ଦୂତକୁ ଦ୍ରୁପଦ ପାଶକୁ ।
ସେ ଦୂତ ଆସି ଏକାନ୍ତରେ ଦ୍ରୁପଦଙ୍କୁ
କହିଲା ଆଦ୍ୟ ପ୍ରାନ୍ତ କରି ବୃତ୍ତାନ୍ତକୁ ।
ଏ ବାହାରେ କହିଲା ଆମ୍ଭ ନରପତି
କହିଛନ୍ତି ତୁମ୍ଭଙ୍କୁ ଦେବେ ଯମ କତି ।
ଏହା ଶୁଣି ଦ୍ରୁପଦ ରାଜ ଲାଜ ପାଇ
ନ କହିଣ କଥା ରହିଲେ ତୁନି ହୋଇ ।
ପୁଣି ଦୂତ ଆଗରେ ଭୁରୁଡ଼ାଇ କଥା
ହସିଣ କହିଲେ ଦ୍ରୁପଦ ମହାରଥା ।
ଦୂତ ଯାଇ ଦଶାର୍ଣ୍ଣ ରାଜାଙ୍କୁ ଦ୍ରୁପଦ
ବଚନ କହି କରି କଲା ଅପ୍ରମଦ ।

ସେହିକ୍ଷଣି ଦଶାର୍ଣ୍ଣଅଧିପ ସଇନ
ତିଆର କରାଇଣ ଚଢ଼ିଲେ ସ୍ୟନ୍ଦନ ।
ମନ୍ତ୍ରିଏ ତା ଦେଖି ଦଶାର୍ଣ୍ଣ ଅଧିପଙ୍କୁ
ବୋଇଲେ କିମ୍ପା ଯାଅ ପାଞ୍ଚାଳ ଦେଶକୁ ।
ସେ ବୋଇଲେ ଦ୍ରୁପଦ ଝିଅ ପୁଅ କରି
ଢ଼ଟିଣ ବିଭା କରାଇଲେ ମୋ କୁମାରୀ ।
ଏଥିପାଇଁ ମୁହିଁ ଯାଉଛି ସୈନ୍ୟ ଘେନି
ଦ୍ରୁପଦଙ୍କୁ ଦେବି ଯମଙ୍କ ରାଜଧାନୀ ।
ମନ୍ତ୍ରୀମାନେ ବୋଇଲେ ଏ କଥାକୁ ଏହା
କଲେ କିଛି ନିନ୍ଦା ନାହିଁ ହେ ନରନାହା ।
ଏହା କହି ରାଜାଙ୍କୁ ନିବର୍ତ୍ତାଇ ରଖି
ଦ୍ରୁପଦେ ଦୂତଟି ପେଷିଲେ ହୋଇ ଦୁଃଖୀ ।
ଦୂତ ଯାଇ ଦ୍ରୁପଦ ରାଜାଙ୍କୁ ଦର୍ଶନ
କରିବା ମାତ୍ରକେ କହିଲ ଏ ବଚନ ।
ତୁମ୍ଭଙ୍କୁ ମାରିବାକୁ ଆସିବେ ଆମ୍ଭ ନୃପ
ତିଆରି କର ସୈନ୍ୟ ଧରି କରେ ଚାପ ।
ସହଜେ ଦ୍ରୁପଦ ତ ଅଟନ୍ତି ଭୟାଳୁ
ଏହା ଶୁଣିକରି ଶୁଖିଲା ତାଙ୍କ ତାଳୁ ।
ଭାରିଯାଙ୍କୁ ଯାଇଣ ବୋଇଲେ ଆମ୍ଭର
ଶିଖଣ୍ଡୀ ଘେନି କରି ହେଲା ମରିବାର ।
ବୋହୂ କି କହିବାରୁ ଦଶାର୍ଣ୍ଣାଧିପ ତାପେ
ଆସୁଛନ୍ତି ମୋତେ ମାରିବାକୁ ଆପେ ।
ଏଥିକି ଯେ ଉପାୟ ବିଚାରିଣ ଚିତ୍ତେ
କହିଲେ ତାହା ମୁହିଁ କରିବି ତୁରିତେ ।
ଦ୍ରୁପଦଙ୍କ ଭାର୍ଯ୍ୟା ବୋଇଲେ ଝିଅ ପାଇ
ପୁଅ ବୋଲି ଦାଣ୍ଡରେ କହିଲି ତ ମୁହିଁ ।
ତୁମ୍ଭେ ମଧ ମୋର କଥାକୁ ଅନୁଗତ
ହୋଇକରି ଖ୍ୟାତ କଲ ତ ଏ ଜଗତ ।
ପୁଣିଟି କରାଇଲ ଦଶାର୍ଣ୍ଣ ଅଧିପ
ଝିଅକୁ ବିଭା ମନୁ ଛାଡ଼ି ଦେଇ ତାପ ।
ଶିବଙ୍କଠାରୁ ବର ପାଇବାରୁ ତୁମ୍ଭେ
ଝିଅ ପୁଅ ହେବ ପୁଛିଲେ ବୋଲ ଆମ୍ଭେ ।
ମୋତେ ତ ଏ କଥା ଗୋଚର ହୋଇ ନାହିଁ
ତୁମ୍ଭଙ୍କୁ କି ଶିକ୍ଷା ଦେବି ମୁଁ ନରସାଇଁ ।
ଏହା ଶୁଣି ଦ୍ରୁପଦ ଭାରିଯାକୁ ଛାଡ଼ି
ମନ୍ତ୍ରୀଙ୍କ ତୁଳରେ ବସିଲେ ତାହା ବାଡ଼ି ।
କି କରିବା ଏବେ ଝିଅକୁ ପୁଅ ବୋଲି
ବିଭା କରିଛି ମୁଁ ନିଶ୍ଚୟ ଜାଣ ମଲି ।
ମନ୍ତ୍ରୀମାନେ ବୋଇଲେ କିସ ବୋଲ ରାୟେ
ଆସିଲେ ସେହୁ ରାଜା ଯୁଝିବା ସଭିଏଁ ।
ଦ୍ରୁପଦ ଘେନି ମନ୍ତ୍ରୀମାନଙ୍କ ବଚନ
ଜଗାଇଲେ ଗଡ଼କୁ ଡକାଇ ସଇନ ।
ଯୁଦ୍ଧ ନୋହିବାକୁ ଯେ ଦେବତାମାନଙ୍କୁ
ଦ୍ରୁପଦ ମହୀପତି ଯାଚିଲେ ଭୋଗକୁ ।
ଭାରିଯା ତାହା ଜାଣି ପାରିଣ କହିଲେ
ବିପତ୍ତି ନାଶପାଇଁ ଦେବଙ୍କୁ ପୂଜିଲେ ।
ଦେବତାଏ ଯେବେଟି ହୋଇବେ ପ୍ରସନ୍ନ
କି କରିବେ ଆସିଲେ ଦଶାର୍ଣ୍ଣ ରାଜନ ।
ପୌରଷଯୁକ୍ତ ହେଲେ ଦୈବ ସିଦ୍ଧ ହୁଏ
ଅବଶ୍ୟ ଯୁଦ୍ଧେ ଜୟ ଲଭଇ ସେ ରାୟେ ।
ମାତା ପିତାଙ୍କର ଶୁଣିଣ ଏହି କଥା
ଶିଖଣ୍ଡୀ ହୃଦୟରେ ଧରି ଲାଜ ବ୍ୟଥା ।
ଭାବିଲା ମୋ ଘେନି ଏ ଯିବେ ନାଶ
ଆଗରେ କିମ୍ପା ମୁଁ ନ ଯାଏ ଯମପାଶ ।
ଏରୂପେ ଭାବନା କରିଣ ଶିଖଣ୍ଡିନୀ
ବନ ମଧ୍ୟେ ପଶିଲା ହୋଇ ଅଭିମାନୀ ।
ସେ ବନରେ ସ୍ଥୁଣାକର୍ଣ୍ଣର ଥିଲା ସ୍ଥାନ
ବସିଲା ଶଖଣ୍ଡିନୀ ତାର ସନ୍ନିଧାନ ।
ଦୁଃଖ ସକାଶରୁ ଆହାର ଦେଲା ଛାଡ଼ି
ଦିନକୁ ଦିନ ଦେହ ମାଂସ ଗଲା ଝଡି ।
ସ୍ଥୁଣାକର୍ଣ୍ଣ ଯକ୍ଷ ଶିଖଣ୍ଡିନୀ ଦଶା
ଦେଖି ପାଶେ ଆସି ବୋଇଲେ ଆଗୋ ଯୋଷା
କାହିଁପାଇଁକି ଏଡ଼େ କରୁଛ କାରୁଣ୍ୟ
ମୋ ଆଗରେ କହ ତ ତହିଁର କାରଣ ।
ଶିଖଣ୍ଡିନୀ ବୋଇଲା ମୋର ପୁରୁଷାର୍ଥ
କରିବାକୁ ନାହିଁଟି ତୁମ୍ଭର ସାମର୍ଥ୍ୟ ।
ସ୍ଥୁଣାକର୍ଣ୍ଣ ଯକ୍ଷ ବୋଇଲା ମୋର ଶିଖଣ୍ଡିନୀ
ଯା ବୋଲିବୁ ତାହା କରିବି ଏହିକ୍ଷଣି ।
ଏହା ଶୁଣି ଶିଖଣ୍ଡୀ ସ୍ଥୁଣାକର୍ଣ୍ଣ ଆଗେ
ସବୁ କଥାଯାକ କହିଲା କଥା ବାଗେ ।
ମାଗିଲା ଥରେ ହେ ପୁରୁଷପଣ ଦିଅ
ଦଶାର୍ଣ୍ଣ ଅଧିପତି ଗଲାକ୍ଷଣି ନିଅ ।

ଯକ୍ଷ ବୋଇଲେ ତୁହି ସତ୍ୟ କରି କହ
ନ ଦେବୁ ପରା ଦେଲେ ହୃଦେ ବହି ମୋହ ।
ଶିଖଣ୍ଡୀ ବୋଇଲା କରୁଛି ସତ୍ୟ ମୁହିଁ
ଦିଅ ପୁରୁଷତ୍ୱ ଆଣି ମୁଁ ତା ଦେବଇଁ ।
ଏରୂପେ ଶିଖଣ୍ଡୀ ତୁଲରେ କଥାବାର୍ତ୍ତା
ହୋଇଣ ସ୍ଥୁଣାକର୍ଣ୍ଣ ଯକ୍ଷ ବିବେକିତା ।
ଛାଡ଼ିଣ ଶିଖଣ୍ଡୀକି ପୁରୁଷତ୍ୱ ଦେଲେ
ଶିଖଣ୍ଡୀଙ୍କ ସ୍ତିରୀତ୍ୱ ଯକ୍ଷ ଯେ ଧଇଲେ ।
ଶିଖଣ୍ଡୀ ଯକ୍ଷଠାରୁ ପୁରୁଷତ୍ୱ ପାଇ
ବାପାଙ୍କୁ ତା ଯାଇ କହିଲେ ତ୍ୱରା ହୋଇ ।
ଦ୍ରୁପଦ ଶୁଣି ଶିଖଣ୍ଡୀଙ୍କର ବଚନ
ହସିଦେଲେ ଚାହିଁଣ ଭାର୍ଯ୍ୟାଙ୍କ ବଦନ ।
ଭାରିଯାବୋଇଲେ ହେ ଯେତେବେଳେ ଯୋଗ
ଯେ ଥାଏ ସେ ସବୁରି ହୁଏ ମହାଭାଗ ।
ଦ୍ରୁପଦ ସେହିକ୍ଷଣି ଦୂତଙ୍କୁ ଡକାଇ
ବୋଇଲେ ଘେନି ଆସ ସମ୍ବନ୍ଧିଙ୍କି ଯାଇ ।
ମୋହ ପୁଅକୁ ପରା ବୋଲୁଥିଲେ ସ୍ତିରୀ
ଦେଖନ୍ତୁ ଏବେଟି ସମ୍ବନ୍ଧୀ ଭଲ କରି ।
ସେ ଦୂତ ଦ୍ରୁପଦଙ୍କ ବଚନ ମାନିଲା
ଦଶାର୍ଣ୍ଣାଧିପ ସନ୍ନିଧକୁ ବାହାରିଲା ।
ଦ୍ରୁପଦଙ୍କ କହିବା ପରାୟେ ତାହାଙ୍କୁ
କହିଲା ହୃଦୟରେ ବହି ସରାଗକୁ ।
ଦଶାର୍ଣ୍ଣ ଅଧିପତି ଦୂତର କଥାକୁ
ପରତେ ନ ଯାଇଣ ଦ୍ରୁପଦଙ୍କଠାକୁ ।
ସୈନ୍ୟ ତୁଲେ ଘେନି ଆପଣେ ବାହାରିଲେ
ଦ୍ରୁପଦଙ୍କ ତୁଲେ ଯୁଝିବା ମନ କଲେ ।
ଦ୍ରୁପଦଙ୍କର ଗଡ଼ ସମୀପେ ରହିଲେ
ଦ୍ୱିଜ ଜଣଙ୍କୁ ଦୂତ କରିଣ ପେଷିଲେ ।
ବୋଇଲେ ଦ୍ରୁପଦେ କହିବ ତୁମ୍ଭେ ଯାଇ
ଆସନ୍ତୁ ଯୁଝି ଘରେ ଅଛନ୍ତି କିମ୍ପାଇଁ ।
ଦଶାର୍ଣ୍ଣାଧିପଙ୍କ ବଚନେ ସେ ବ୍ରାହ୍ମଣ
ଭେଟିଲେ ଯାଇଣ ଦ୍ରୁପଦ ନରରାଣ ।
ଦ୍ରୁପଦ ସେ ଦ୍ୱିଜେ ବିଧିରେ ପୂଜା କରି
ନମସ୍କାର କରିଲେ ପାଦବେନି ଧରି ।
ଦ୍ୱିଜ ଦ୍ରୁପଦଙ୍କ ପୂଜାରେ ହୋଇ ତୋଷ
ବୋଇଲେ ଶୁଣ ହେ ଦ୍ରୁପଦ ନରଈଶ ।
ଦଶାର୍ଣ୍ଣାଧିପତି ତୁମ୍ଭଙ୍କୁ ଯୁଝିବାକୁ
ଆସିଛନ୍ତି ଏବେ ବାହାର ତାଙ୍କଠାକୁ ।
ଶିଖଣ୍ଡୀନୀକି ତ ପୁଅ ବୋଲି କହି
ଆଣିଛ ତୁମ୍ଭେ ତାଙ୍କ ଝିଅ ନରସାଇଁ ।
ଏହି ସକାଶରୁ ଫଳୁଛି ଯେଉଁ ଫଳ
ନିକଟରେ ତାହା ଭୁଞ୍ଜିବ ମହୀପାଳ ।
ଦ୍ରୁପଦ ବୋଇଲେ ମୁଁ ତୁମ୍ଭ ସଙ୍ଗେ ଲୋକ
ପଠିଆଉଅଛି ହେ ଦ୍ୱିଜଙ୍କ ନାୟକ ।
ଦୂତଠାରୁ ମୋହର ଶୁଣିଣ ବାରତା
ଦଶାର୍ଣ୍ଣାଧିପତି କରିବେ ଲାଜେ ଚିନ୍ତା ।
ଏହା କହି ଦ୍ୱିଜଙ୍କ ସଙ୍ଗତେ ଦୂତକୁ
ପେଷିଲେ ଆଣିବାକୁ ଦଶାର୍ଣ୍ଣାଧିପଙ୍କୁ ।
ଏ ବାହାରେ ବୋଇଲେ କହିବ ତାହାଙ୍କୁ
ଭୁଲୁଛ କେତେ ତୁମ୍ଭେ ଶୁଣିବା କଥାକୁ ।
ସାକ୍ଷାତରେ ଆସିଣ ଜ୍ୱଆଇଁ କି ଦେଖ
ପୁରୁଷତ୍ୱ ନ ଥିଲେ କର ମୋତେ ଦୁଃଖ ।
ଦ୍ରୁପଦଙ୍କର ଦୂତ ଏ ବଚନ ଶୁଣି
ଭେଟିଲା ଯାଇଣ ଦଶାର୍ଣ୍ଣ ନରମଣି ।
ବୋଇଲା ଡାକୁଛନ୍ତି ଦ୍ରୁପଦ ନରେଶ
ଜ୍ୱଆଇଁ ପୁରୁଷତ୍ୱ ଦେଖିବ ତା ଆସ ।
ଏହା ଶୁଣି ଦଶାର୍ଣ୍ଣଦେଶ ଅଧିପତି
ଡକାଇଣ ପାଶକୁ ନବୀନାଯୁବତୀ ।
ବୋଇଲେ ତୁମ୍ଭେ ରାତିକି ଶିଖଣ୍ଡୀର
ପାଶେ ଶୋଇ ବୁଝ ପୁରୁଷପଣ ତାର ।
ସେ ନବଅବଳା ନୃପଙ୍କର ଆଦେଶେ
ମିଳିଲେ ଯାଇ କରି ଦ୍ରୁପଦଙ୍କ ପାଶେ ।
ଦ୍ରୁପଦଙ୍କ ସମ୍ମତେ ଶିଖଣ୍ଡୀକି ଧରି
ଶୋଇଲେ ନିଶିଟି ରତିରେ ଦେଲେ ସାରି ।
ରାତ୍ର ଶେଷେ ଆସି ଦଶାର୍ଣ୍ଣ ନୃପଠାକୁ
ବୋଇଲା କିଏ ବୋଲୁଥିଲା ଏହା ତାଙ୍କୁ ।
ତାଙ୍କପରି ତୁମ୍ଭେ ନୋହିବ ନରବର
ଯାଇଥିଲୁଁ ଯେତେକ ଏ ମତ ଆମ୍ଭର ।
ଦଶାର୍ଣ୍ଣନୃପ ଶୁଣି ଫୁଲାଇ ଛାତିକି
ଭେଟିଲେ ଯାଇଣ ଦ୍ରୁପଦ ସମ୍ବନ୍ଧିଙ୍କି ।
ଶିଖଣ୍ଡୀର ପିଠିରେ ମାରିଣ ହାପୋଲ
ବୋଇଲେ ସବୁ ଗୁଣଙ୍କରେ ତୁମ୍ଭେ ଭଲ ।

ନ ଜାଣି ଯା ତୁମ୍ଭରଠାରେ ଶଙ୍କା କଲି
ସେ ଦୋଷ ଛାଡ଼ାଇବାପାଇଁକି ଅଇଲି ।
ଝିଅକୁ ବୋଇଲେ ତୁ ଅଟୁ ବଡ଼ ନଷ୍ଟ
ତୋ ଇଚ୍ଛାରେ ତୁହି ପାଆନ୍ତୁ ପତିକଷ୍ଟ ।
ଆହେ ଦୁର୍ଯ୍ୟୋଧନ ଏରୂପେ ନୃପ କହି
ଗଲେ ନିଜ ପୁରକୁ ସେ ମେଲାଣି ହୋଇ ।
ଏକାଳେ କୁବେର ବିହାର କରିବାକୁ
ଆସିଲେ ସ୍ଥୁଣାକର୍ଣ୍ଣ ଯମଘରଠାକୁ ।
ଦେଖିଲେ ଘର ହୋଇଅଛି ଅତି ତୋରା
ମଣ୍ଡା ହୋଇଅଛି ରତନ ସୁନା ହୀରା ।
କୁବେର ବୋଇଲେ ହେ ସ୍ଥୁଣାକର୍ଣ୍ଣ ଯକ୍ଷ
ଘରସବୁ ଘରମାନଙ୍କେ ଦିଶେ ମୁଖ୍ୟ ।
କାହିଁକି ମୋରଠାକୁ ଆସୁନାହିଁ ସେହି
କହ ତ ଜାଣିଥିଲେ ପଚ୍ଛରୁଛି ମୁହିଁ ।
ଯକ୍ଷେ ବୋଇଲେ ସେ ତ ଦ୍ରୁପଦ ଝିଅକୁ
ପୁରୁଷପଣ ଦେଇ ଲୁଚିଛି ତୁମ୍ଭଙ୍କୁ ।
କୁବେର ବୋଇଲେ ସେ ଏଡ଼େ କଥା କରି
ଲୁଚିଲେ କି କରିବ ଆଣ ଝିଙ୍କି କରି ।
କୁବେରଙ୍କ ଆଜ୍ଞାରେ ଯକ୍ଷେ ଧାଇଁ ଗଲେ
ସ୍ଥୁଣାକର୍ଣ୍ଣ ଯକ୍ଷଙ୍କୁ ଝିଙ୍କିଣ ଆଣିଲେ ।
କୁବେର ଆଜ୍ଞାରେ ପୁରୁଷପଣ ଦେଇ
ସ୍ତିରୀ ହେଲୁ ଯାହା ଏରୂପେ ଥାଅ ରହି ।
ଏହା ଶୁଣିଣ ସବୁ ଯକ୍ଷେ ଗୋଟି ହେଲେ
କୁବେରଙ୍କ ପାଦୁଟି ଧରିଣ ଲୁଟିଲେ ।
ବୋଇଲେ ଏହି ଶାପ କେବେ ଯିବ ନାଶ
କହ ତା ଆହେ କୁବେର ଦେଇବଶ ।
କୁବେର ବୋଇଲେ କହୁଛ ତୁମ୍ଭେ ଯେବେ
ଶିଖଣ୍ଡୀ ମଲେ ଯାଇ ପୁଂସତ୍ୱ ପାଇବେ ।
ଏରୂପେ କୁବେର କହିଣ ସେ ଯକ୍ଷଙ୍କୁ
ସେହିକ୍ଷଣି ଚଳିଲେ ଆପଣା ସ୍ଥାନକୁ ।
ସ୍ଥୁଣାକର୍ଣ୍ଣ ଯକ୍ଷ କପାଳେ ହାତ କୋଡ଼ି
ବୋଇଲା କି କରିବି ମୁହିଁ ମୁହଁପୋଡୀ ।
ଶିଖଣ୍ଡୀ ତ ସତ୍ୟ କରିଣ ଆଣିଥିଲେ
ପୁଣି ପୁରୁଷତ୍ୱ ଯକ୍ଷଙ୍କୁ ଯାଚିଗଲେ ।
ସ୍ଥୁଣାକର୍ଣ୍ଣ ଯକ୍ଷ ବୋଇଲା ମୋର ଲୋଡ଼ା
ନାହିଁ ମୁଁ ହେଲିଣି ଇଚ୍ଛାରେ ଘରବୁଡ଼ା ।
କୁବେର ତ ଆସିଣ ମୋତେ ଶାପ ଦେଲେ
ପୁରୁଷତ୍ୱ ନ ନେବି ତୁମ୍ଭେ ଜୀଇଁ ଥିଲେ ।
ତୁମ୍ଭେ ମୋର ପୁରୁଷପଣ ନେଇଅଛ
ଭୋଗ କର ନାରୀଙ୍କି ହୋଇ ନୃପବତ୍ସ ।
ଶିଖଣ୍ଡୀ ଏହା ଶୁଣି ହୋଇ ଅତି ତୋଷୀ
ନିଜ ପୁରେ ଆସିଲେ ଅଛ ହସି ହସି ।
ବ୍ରାହ୍ମଣଙ୍କୁ ଡକାଇ ଧନରତ୍ନ ଦାନ
ଦେଇଣ ତାହାଙ୍କର ତୋଷ କଲେ ମନ ।
ଭାରିଯାଙ୍କୁ ଘେନିଣ ଏକାନ୍ତ ମନ୍ଦିରେ
ଶୋଇଲେ ମୁଖ ଖୁନ୍ଦି କୁଚର ସନ୍ଧିରେ ।
ବୋଇଲେ ମୋହ ପରି ପୁରୁଷକୁ ବାଳି
ନପୁଂସକ ବୋଲି ତୁ ବସିଥିଲୁ ଭାଳି ।
ଆଜି ତୋର ମୋହର ଜଣାଯିବ କଥା
ନ ବୋଲିବୁ କାଲି ହେଲା ମୋ ଦେହ ବ୍ୟଥା
ଏତେ କହି ସୁରତରସେ ପ୍ରବର୍ତ୍ତିଲେ
କେବଳ ସେ ରଜନୀ ଶେଷେ ନିବର୍ତ୍ତିଲେ ।
ଦ୍ରୁପଦ ପୁତ୍ର ପାଇ ମହାସୁଖୀ ହେଲେ
ଦ୍ରୋଣଙ୍କଠାରେ ତାଙ୍କୁ ଶିଷ୍ୟ କରି ଦେଲେ ।
ଶିଖଣ୍ଡୀ ଦ୍ରୋଣଠାରୁ ଚତୁଷ୍ପାଦ କରି
ଧନୁର୍ବିଦ୍ୟା ଶିଖିଲେ ନିୟମ ଆଚରି ।
ଏହା ସକାଶରୁଟି ବାବୁ ମୁଁ ତୁମ୍ଭଙ୍କୁ
କହୁଛି ନ ମାରିବି ବୋଲିଟି ତାହାକୁ ।
ପୂର୍ବରୁ ତ ସ୍ତିରୀଟି ଅଟଇ ଶିଖଣ୍ଡୀ
କିରୂପେ ଗଳାଇବି କାଣ୍ଡରେ ତା ଗଣ୍ଡି ।
ଦୁର୍ଯ୍ୟୋଧନ ବୋଇଲେ ଅହେ ପିତାମହ
କହିବାରୁ ତୁମ୍ଭେ ଛାଡ଼ିଲା ମୋର ମୋହ ।
ଜାଣୁ ଜାଣୁ ତୁମ୍ଭର ପରାୟେ ଲୋକକୁ ।
କେ ବୋଲିବ ବିନ୍ଧ ତାହାକୁ ସାୟକକୁ ।
ଏହିଠାରେ ଅମ୍ବାଙ୍କ ଉପାଖ୍ୟାନ ଶେଷ
ହୋଇଲା କହେ କୃଷ୍ଣସିଂହ ନରଈଶ ।



## କୁରୁ ଓ ପାଣ୍ଡଙ୍କ ଯୁଦ୍ଧ ମନ୍ତ୍ରଣା

ଏଥୁଅନନ୍ତରେ ନିଦ୍ରାରେ ବଶ ହୋଇ
ଶୋଇଲେ କୁରୁମାନେ ବସାଘରେ ଯାଇ ।
ରାତ୍ରଶେଷେ ସଭାରେ ଦୁର୍ଯ୍ୟୋଧନ ରାଜା
ଭୀଷ୍ମ ମହାରଥୀଙ୍କ କରି ପାଦପୂଜା ।

କହିଲେ ପାଣ୍ଡବେ ତ ମହାରଥୀକୁଳ
ରଖିଛନ୍ତି ଆମ୍ଭଙ୍କୁ କରିବାକୁ ଗୋଳ ।
ଏ ବାହାରେ ସେ ନୃପମାନେ ଚତୁରଙ୍ଗ
ଆଣିଅଛନ୍ତି କରିବାକୁ ରଣରଙ୍ଗ ।
ଭୀମ ଅରଜୁନରେ ହୋଇଣ ଯୁକତ
ପାରିବେ ସାଧ କରି କିଞ୍ଚିତେ ଜଗତ ।
ସେ ଥାଟରେ ଧୃଷ୍ଟଦ୍ୟୁମନ ସେନାପତି
ହୋଇଛନ୍ତି ଜିଣି ପାରନ୍ତି ସୁରପତି ।
ଏରୂପେ ତ ପାଣ୍ଡବ ସଇନ ସାଗର
କେତେ ଦିନେ ଶର ଭେଳାରେ ହେବ ପାର
ଏହା ମୋର ଆଗେ କହିବା ହେଉ ଥରେ
ଶୁଣିବାକୁ ଭାବୁଛି ମୋହର ହୃଦରେ ।
ଦ୍ରୋଣ ଦ୍ରୌଣି ଯେ କୃପ କରି ମହାଯୁଦ୍ଧ
କେତେ ଦିନେ ସେ ସୈନ୍ୟ କରିଦେବେ ବଧ
ଏହା ମଧ ମୁହିଁ ଶୁଣିବି ତୁମ୍ଭଠାରୁ
କହିବା ହେଉ ମଧ ଭୀଷ୍ମ ହନ୍ତକାରୁ ।
ଭୀଷ୍ମ ବୋଇଲେ ଯାହା ପଚ୍ଛରୁଛ ମୋତେ
ତୁମ୍ଭଙ୍କୁ ଅନୁରୂପ କଥା ମହାମତେ ।
ଶୁଣ ମୋ ପରାକ୍ରମ ଦେଇ କରି ମନ
ଆହେ ଦୁର୍ଯ୍ୟୋଧନ ଗାନ୍ଧାରୀଙ୍କ ନନ୍ଦନ ।
କପଟିକି କପଟୀ ସରଳ ଅନ୍ୟେ ହୋଇ
ପାଣ୍ଡୁ ସେନା ସାୟକେ ପାରଇ ମୁଁ ଦହି ।
ଦିନଟିକେ ଦଶସହସ୍ର ଯୋଦ୍ଧାକୁଳ
ସହସ୍ରେ ରଥୀ ପେଷିଦେବି ଯମଆଳ ।
ଏହିରୂପେ ତିରିଶି ଦିନି କଲେ ଯୁଦ୍ଧ
ପାଣ୍ଡୁ ସେନାଯାକ ହୋଇଯିବେ ତ ବଧ ।
ଏହା ଶୁଣି ତୁମ୍ଭ କୁମର ଦୁର୍ଯ୍ୟୋଧନ
ଦ୍ରୋଣଙ୍କୁ ଚ୍ଛହିଁ କରି କହିଲେ ବଚନ ।
ଭୀଷ୍ମଙ୍କୁ ବୋଇଲେ ମାସକେ ପାଣ୍ଡବଙ୍କ
ସେନାଯାକ ମାରିବି ବିନ୍ଧିଣ ସାୟକ ।
ତୁମ୍ଭେ କେତେ ଦିନରେ ପାରିବ ହେ ମାରି
ତା ଶୁଣିବାକୁ ଇଚ୍ଛା ହେଉଛି ମୋହରି ।
ଦ୍ରୋଣେ ବୋଇଲେ ମୁଁ ତ ହୋଇଲିଣି ବୁଢ଼ା
ନ ପାରି ତୁମ୍ଭ ଆଗେ କହିବି କି ପ୍ରୌଢ଼ା ।
ଭୀଷ୍ମ ପରି ମୁହିଁ ମାରିବି ମାସକରେ
ଯୁଧିଷ୍ଠିର ରାଜାଙ୍କୁ ବୁଡାଇ ଶୋକରେ ।
କୃପ ବୋଇଲେ ମୁଁ ଯୁଝିଲେ ଧନୁ ଧରି
ଦୁଇମାସେ ପାରେ ପାଣ୍ଡବସେନା ମାରି ।
ଅଶ୍ୱତ୍ଥାମା ବୋଇଲେ ବିନ୍ଧିଲେ ମୁଁ ବାଣ
ଦଶଦିନେ ନେବି ପାଣ୍ଡବସେନା ପ୍ରାଣ ।
କର୍ଣ୍ଣ ବୋଇଲେ ମୁଁ ଯୁଝିଲେ ଦିନ ପାଞ୍ଚ
ପାଣ୍ଡବ ସେନାଯାକ ନ ରହିବେ ମଞ୍ଚ ।
କର୍ଣ୍ଣର ବାଣୀ ଶୁଣି ଭୀଷ୍ମ ମହାଯଶା
ବୋଇଲେ ଦୁର୍ଯ୍ୟୋଧନ ପାଇଲା ଭରସା ।
ପାଞ୍ଚଦିନେ ପାଣ୍ଡବସେନା କର୍ଣ୍ଣମାରି
ଦେବ ତ ଭୁଞ୍ଜିବ ହସ୍ତିନାରାଜଶିରୀ ।
ଆଉ ବସି ତୁଚ୍ଛାଇ ନୁହ ଛଟପଟ
କର୍ଣ୍ଣ କଥା ଶୁଣି ପୂରାଇ ଦିଅ ପେଟ ।
ଏହା କହି କହିଲେ ଆହେ କର୍ଣ୍ଣବୀର
କୃଷ୍ଣ ଅରଜୁନଙ୍କ ଯୁଦ୍ଧରେ ତୁମ୍ଭର ।
ନ ଦେଖିବାଯାଏ ତ ଏହିରୂପେ କଥା
ବାହାରୁଥିବ ଛାଡ଼ିଦେଇ ଲାଜବ୍ୟଥା ।
ଏହି ବାରତା ଯୁଧିଷ୍ଠିରଙ୍କ ଆଗରେ
ଶୁଣିଣ ଯାଇ କରି କହନ୍ତେ ଡଗରେ ।
ଯୁଧିଷ୍ଠିର ଉଠିଯାଇଣ ଏକାନ୍ତରେ
କହିଲେ ଏ କଥା ଭାଇଙ୍କର ଆଗରେ ।
ଦୁର୍ଯ୍ୟୋଧନ ପଚ୍ଛରିବାରୁ ଦେବବ୍ରତ
କହିଲେ କରିବି ମାସକେ ସିନା ହତ ।
ଦ୍ରୋଣ ମଧ ଭୀଷ୍ମଙ୍କ ପରାୟେ କହିଲେ
ନିଶ ଦୁଇଥର କରଦ୍ୱେ ଘଷିଦେଲେ ।
କୃପ ବୋଇଲେ ମୁଁ ମାରିବି ଦୁଇମାସେ ।
ଅଶ୍ୱଥାମା ବୋଇଲେ ମୁଁ ଦଶ ଦିବସେ ।
କର୍ଣ୍ଣ ବୋଇଲେ ମୁଁ ବିନ୍ଧିଣ ତୀକ୍ଷ୍ଣ ବାଣ ।
ପାଞ୍ଚଦିନେ ନେବି ପାଣ୍ଡବସେନା ପ୍ରାଣ ।
ଆମ୍ଭର ତ ଅର୍ଜୁନ ଜଗତେ ବିଜୟୀ
ହୋଇବାରୁ ବିଜୟ ନାମ ଛନ୍ତି ବହି ।
ଏକାଥରକରେ ନିବାତକବଚଙ୍କ
ପ୍ରାଣ ନେଲେ ଯୁଦ୍ଧରେ ଦେଇଣ ଆତଙ୍କ ।
କାଳକେୟମାନଙ୍କୁ ଯୁଦ୍ଧରେ ଘଉଡ଼ି
ପୁଣି ମୁନଘଷା ବାଣରେ ଦେଲେ ପୋଡ଼ି ।
ଦେବଙ୍କର ପତି ତ ଇନ୍ଦ୍ରଙ୍କୁ ଜିଣିଲେ
ଅଗ୍ନି ଦେବତାଙ୍କୁ ତପତ କରାଇଲେ ।

ଦ୍ରୁପଦଙ୍କ ନଗରେ ଝିଙ୍କିକରି ଧନୁ
ଲାଖ ବିନ୍ଧି ଆଣିଲେ ଦ୍ରୌପଦୀସୁତନୁ ।
ଜିଣିଲେ ତ ବିରାଟ ନଗ୍ରେ କୁରୁଥାଟ
ଜିଣି କରି ଅଡ଼ାଇ ଆଣିଲେ ଗୋପାଟ ।
ଚିତ୍ରସେନଠାରୁ ତ ଦୁର୍ଯ୍ୟୋଧନ ବନ୍ଧା
ଫିଟାଇଲେ ଅର୍ଜୁନ ନୋହି ଯୁଦ୍ଧେ ଧନ୍ଦା ।
ଏହିରୂପେ ଅନେକ ନୋହି ଅମାନୁଷ କର୍ମ
କରିଛନ୍ତି ଅର୍ଜୁନ ଦେଖାଇ ବିକ୍ରମ ।
ଅର୍ଜୁନ ଏହା ଶୁଣି ଅଳ୍ପ ହସ ହସ-
ହୋଇ କରି ଥରେ ଆଉଁଷି ଦେଇ ନିଶ ।
ବୋଇଲେ କି ପୁଚ୍ଛ ପାଣ୍ଡବ ଦଣ୍ଡଧାରୀ
କୃଷ୍ଣଙ୍କ ସହାୟେ ମୁଁ ନ ପାରେଁ କି କରି ।
ତୁମ୍ଭ ପାଶେ ଯେତେ ଅଛନ୍ତି ରଥୀକୁଳ
ପାରିବେ ଏ ଭାଙ୍ଗି ଯୁଦ୍ଧରେ ଶତ୍ରୁବଳ ।
ତିନିଲୋକଯାକକୁ ବିରାରିଲେ ମୁହିଁ
ନିମିଷମାତ୍ରକେ ସାୟକେ ଦେବି ଦହି ।
ପଶୁପତଙ୍କର ଯେ ପାଶୁପତ କାଣ୍ଡ
ମୋ ହାତେ ଅଛି ଜିଣିପାରେ ମୁଁ ବ୍ରହ୍ମାଣ୍ଡ ।
ପାଶୁପତ ଅସ୍ତ୍ରରେ ପ୍ରଳୟ କାଳରେ
ପଶୁପତି ସଂହାର କରନ୍ତି ହେଳରେ ।
ଭୀଷ୍ମ ଦ୍ରୋଣ କୃପ କର୍ଣ୍ଣ ତ ଜାଣିବାର
ଥାଉ କାନ ଶୁଣି ନାହିଁଟି ତାହାଙ୍କର ।
କହିଲି ସିନା ମୁହିଁ କଥାର ପ୍ରସଙ୍ଗେ
ଇତର କାଣ୍ଡକେ ମାରିବି ରଣଭଙ୍ଗେ ।
ମୋ ଅସ୍ତ୍ର କୁରୁଙ୍କର ନୋହେ ଦେହଯୋଗ୍ୟ
ଜାଣ ହେ ପାଣ୍ଡବରାଜନ ମହାଭାଗ ।
ନକୁଳ ସହଦେବ ଶିଖଣ୍ଡୀ ଭୀମସେନ
ବିରାଟ ଉତ୍ତମୌଜା ଦ୍ରୁପଦ ଧୃଷ୍ଟଦ୍ୟୁମ୍ନ ।
ଶଙ୍ଖ ଘଟୋତ୍କଚ ସାତ୍ୟକି ଅଭିମନ୍ୟୁ
ଦ୍ରୌପଦେୟ ଅଞ୍ଜନପର୍ବା ଯୁଧାମନ୍ୟୁ ।
ଏମାନଙ୍କୁ ଘେନି ଆପଣ କଲେ ଯୁଦ୍ଧ
କରିପାର କୁରୁଙ୍କ ସେନାଯାକ ବଧ ।
କ୍ରୋଧ ହୋଇ ଯାକୁ ଚହିଁବ ଯିବ ପୋଡ଼ି
କାହିଁକି ତୁମ୍ଭେ ଯିବ ଧନୁ ଶର ଲୋଡ଼ି ।
ଏହା ଶୁଣିଣ ଯୁଧିଷ୍ଠିର ତୋଷ ହେଲେ
ଅର୍ଜୁନ ବଳେ ରାଜା ବୋଲି ମନେ କଲେ ।

ଏ ଅନ୍ତେ ପ୍ରଭାତ ସମୟେ ଦୁର୍ଯ୍ୟୋଧନ
ଉଠିକରି ତିଆରି କରାଇଲେ ସୈନ୍ୟ ।
ରାଜାମାନେ ସମସ୍ତେ ସ୍ନାନ ସନ୍ଧ୍ୟା ସାରି
ଶୁକ୍ଳବସ୍ତ୍ର ଫୁଲ ଅଙ୍ଗରେ ପହରି ।
ଶୁକଳ ପାଗମାନ ବାନ୍ଧିଣ ମସ୍ତକେ
ଯେ ଯାର ଶସ୍ତ୍ରମାନ ଧଇଲେ ନିଃଶଙ୍କେ ।
ଏକମନ ହୋଇଣ ଦୁର୍ଯ୍ୟୋଧନ ଆଗେ
ଛିଡ଼ା ହୋଇଲେ ଆସି ଯୁଝିବା ସରାଗେ ।
ବିନ୍ଦ ଅନୁବିନ୍ଦ କେକୟ ଯେ ବାହ୍ଲିକ
ଦ୍ରୋଣ ସଙ୍ଗେ ଆସିଲେ ଧରିଣ ସାୟକ ।
କୃପ ଯେ ଅଶ୍ୱଥାମା ଶକୁନି ସୈନ୍ଧବ
କିରାତ ଶିବି ବସାତି ଯେ ନରଦେବ ।
ଦାକ୍ଷିଣାତ୍ୟ ପ୍ରତୀଚ୍ୟ ପାର୍ବତୀୟ ନୃ ପ
ସଙ୍ଗତରେ ଧରିଣ ମନୁ ଛାଡ଼ି ତାପ ।
କୁରୁରାଜା ଆଗରେ ଭୀଷ୍ମ ଶସ୍ତ୍ରଧାରୀ
ଛିଡ଼ା ହେଲେ ଖଣ୍ଡାକୁ ଧରି ଭେଣ୍ଡାପରି ।
କୃତବର୍ମା ତ୍ରିଗର୍ତ୍ତ ଭୂରିଶ୍ରବା ଶର
ଦୁର୍ଯ୍ୟୋଧନ ଭାଇ ସଙ୍ଗତେ ହୋଇ ମେଳ ।
ଦୁର୍ଯ୍ୟୋଧନ ରାଜା ଛାମୁରେ ଦେଖା ହେଲେ
ଯୁଦ୍ଧ ଇଚ୍ଛା କରି ଛାତିକି ଫୁଲାଇଲେ ।
ଦୁର୍ଯ୍ୟୋଧନ ଦେଖି କରି ସେ ସେନାଗଣ
ମନେକଲେ ମଲେ ପାଣ୍ଡବ ନରରାଣ ।
ଦୁର୍ଯ୍ୟୋଧନ ରାଜା ତ ଯେଉଁ ଶିବିରକୁ
କରିଥିଲେ ତା ଶୁଣଦେଇ ମାନସକୁ ।
ପତାକାମାନଙ୍କେ ସେ ଦ୍ୱାରମାନ ଯୁତ
ହେବାରୁ କରନ୍ତି ସବୁରି ତାପ ଶାନ୍ତ ।
ଯେଉଁ ରୂପେ ହସ୍ତିନାପୁର ତାହାଙ୍କର
ସେ ରୂପେ ହେଲା ସେ ଶିବିର ମନୋହର ।
କୁରୁକ୍ଷେତ୍ର ପାଞ୍ଚ ଯୋଜନ ଭୂମି ମାଡ଼ି
ଦୁର୍ଯ୍ୟୋଧନ ସେନା ରହିଲେ ଜାଣ ପଡ଼ି ।
ମାଗଧ ସୁତ ବନ୍ଦି ସିପୁଟି କମାର
ବଣିଜାରୁ ଯେ ମୋଚି ବଢ଼ାଇ କୁମ୍ଭାର ।
ବେଶ୍ୟା ଖେଳ ଦେଖିବା ଲୋକମାନେ ତହିଁ
ରହିଲେ ଦୁର୍ଯ୍ୟୋଧନ ବୋଲେ ତୋଷ ବହି ।
ଏହା ଶୁଣିଣ ଯୁଧିଷ୍ଠିର ନରପତି
ଡକାଇଣ ଧୃଷ୍ଟଦ୍ୟୁମନ ସେନାପତି ।

ବୋଇଲେ ସଙ୍ଗେ ସେନା ଘେନି ବେଗେଯାଅ
ଧୃତରାଷ୍ଟ୍ର ପୁଅଙ୍କୁ ଯୁଦ୍ଧରେ ବଢ଼ାଅ ।
ଚେଦି କାଶୀ ନୃପେ ବୋଇଲେ ଧୃଷ୍ଟକେତୁ
ସଙ୍ଗରେ ଯାଇ କର ଦୁର୍ଯ୍ୟୋଧନ ମୃତ୍ୟୁ ।
ଉତ୍ତମୌଜା ବିରାଟ ସାତ୍ୟକି ଦ୍ରୁପଦ
ଶିଖଣ୍ଡୀ ଯୁଦ୍ଧାମନ୍ୟୁ ଆଦି ରଥୀବୃନ୍ଦ ।
ମୁଖକୁ ଅନାଇଁ ବୋଇଲେ ଯୁଧିଷ୍ଠିର
ସୈନ୍ୟ ଘେନି ଯାଇଣ କୁରୁଙ୍କୁ ସଂହାର ।
ଭୀମ ଅରଜୁନଙ୍କୁ ବୋଇଲେ ରାଜନ
ହେଲାଟି କାଳ ଯାଇ କର ଆୟୋଧନ ।
ଯାହାକୁ ଯେଉଁରୂପେ ଆଜ୍ଞା ଦେଲେ ରାୟେ
ସେହିରୂପେ ଯୁଦ୍ଧକୁ ଗମିଲେ ସଭିଏଁ ।
ପାଞ୍ଚଶ ରଥ ଦଶ ସହସ୍ର ପାଇକ
ସହସ୍ର ଦୁଇ ହାତୀ ଅଯୁତେ ଘୋଟକ ।
ଏତେ ସେନା ଘେନିଣ ଭୀମ ମହାମନା
ବାହାରିଲେ ଆଗରେ ହୋଇ ଯୁଦ୍ଧମନା
ଯୁଧାମନ୍ୟୁ ଉତ୍ତମୌଜା ଯେ ଜୟସେନ
ବିରାଟ ପାଞ୍ଚାକେଶ କୃଷ୍ଣ ଅରଜୁନ ।
ସେନା ମଧ୍ୟେ ରହିଲେ ଧନୁକୁ ଉଭାରି
ଦୁର୍ଯ୍ୟୋଧନ ତୁଲେ ଯୁଝିବା ଇଚ୍ଛା କରି ।
ଏମାନଙ୍କର ସାଥେ ଯେତେ ସେନା ଥିଲେ
କହିବା ତାହା ଶୁଣ ଜନ୍ମେଜୟ ଭଲେ ।
ସହସ୍ର ପାଞ୍ଚ ରଥ ସସ୍ର ପାଞ୍ଚ ହାତୀ
ଅଯୁତ ଦୁଇ ଘୋଡ଼ା ଅନେକ ପଦାତି ।
ଯୁଧିଷ୍ଠିର ଯେଉଁ ସୈନ୍ୟରେ ଥିଲେ ରହି
ରଥୀ ରଶ୍ୱ ପାଇକ ହାତୀ ଗଣା ନାହିଁ ।
ଚେକିତାନ ଧୃଷ୍ଟକେତୁ ନିଜର ସୈନ୍ୟ
ଘେନି ବାହାରିଲେ ଯୁଦ୍ଧରେ ଦେଇ ମନ ।
ସାତ୍ୟକି ଲକ୍ଷେ ରଥ ଘେନି ଯୁଦ୍ଧଦାଣ୍ଡେ
ବାହାରିଲେ ମୁକୁଟ ବାନ୍ଧିକରି ମୁଣ୍ଡେ ।
କ୍ଷତ୍ରଦେବ ବ୍ରହ୍ମଦେବ ଯେ ଦୁଇ ରଥୀ
ହୋଇଲେ ପାଣ୍ଡବଙ୍କ ସେନା ପଛ ସାଥୀ ।
ଭକ୍ଷ୍ୟ ଭୋଜ୍ୟ ପେୟ ଚର୍ବାଦି ସାମଗିରି
ସେନା ପଛେ ବୁହାଇଥିଲେ ଭାରକରି ।
ଦୁର୍ଯ୍ୟୋଧନର ସୈନ୍ୟ କରିବାକୁ ଲୁଟି
ଜଗିଥିଲେ ତହିଁକି ସୈନ୍ୟ କୋଟି କୋଟି ।
ନବକୋଟି ଘୋଡ଼ା ଅଯୁତ ଦୁଇ ହାତୀ
ସଙ୍ଗତେ ଘେନି କରି ସୁଭଦ୍ରାସନ୍ତତି ।
ଯୁଧିଷ୍ଠିରଙ୍କରଟି ସାଥେ ସାଥେ ରଥ
ଲଗାଇ ରହିଥିଲେ ସେତ ମହାରଥ ।
ଯୁଧିଷ୍ଠିର ରାଜାଙ୍କ ଥାଟେ ସାତ ସେନା-
ପତି କରିଥିଲେ ସେ ବଳ ଅକଳନା ।
ସମାନେ ସଙ୍ଗରେ ଅଯୁତ ସାତ ହାତୀ
ଘେନି ବାହାରିଲେ ଯୁଦ୍ଧରେ ଦେଇ ମତି ।
ଏହି ରୂପରେ ଯୁଧିଷ୍ଠିର ସୈନ୍ୟଲୋକ
ବାହାରିଲେ ମାଡ଼ିଣ କୁରୁଭୂମି ଯାକ ।
ସହସ୍ରେ ସଂଖ୍ୟା ଭେରୀ ଅଯୁତ ଅଯୁତ
ଶଙ୍ଖ ତୁଳେ ବାଜନ୍ତେ ପୂରିଲା ଜଗତ ।
ଏଠାରେ ଏହି ପର୍ବ ପୂର୍ବଚନ୍ଦ୍ର ପ୍ରାୟେ
ଶେଷ-ରାହୁ ମୁଖରେ ଲୁଚଇଲା କାୟେ ।
ବହୁତ କଥାରେ ତ ହୋଇଛି ମଣ୍ଡିତ ।
ଶୁଣିଲେ ଏହା ତୋଷ ହୋଇବେ ପଣ୍ଡିତ
ଚନ୍ଦ୍ରକ ଇକ୍ଷୁ-ଭାରତ ପ୍ରତୀତ ବିରସ
ନେତ୍ର ଜିହ୍ୱା କର୍ଣ୍ଣକୁ କରଇ ଉଲ୍ଲାସ
ସତରଶ ପାଞ୍ଚଶ ଶକାବ୍ଦ ପ୍ରାପତି
ଏକାଳରେ ପୋଥି ହୋଇଲା ସମାପତି ।
ନାରାୟଣସିଂହ ନରପତିଙ୍କ ସୁତ
ପୁରୁଷୋତ୍ତମ ସିଂହ ନୃପତି ବିଖ୍ୟାତ ।
ତାହାଙ୍କ ଜ୍ୟେଷ୍ଠସୁତ ରାମଚନ୍ଦ୍ର ସିଂହ
ରାଜପଦ୍ଧତିରେ ନ ବଳାଇଣ ମୋହ ।
ଗୁରୁଙ୍କୁ ଧରି ହରି ନାମ ଭେଳା କରି
ଦେହ ଛାଡ଼ି ହେଲେ ସଂସାର ଜଳୁଁ ପାରି ।
ନୀଳାଦ୍ରି ସିଂହ ତାଙ୍କ କନିଷ୍ଠ କୁମର
ମଧ୍ୟମ ସୁତ ମୁଁ ନୀଳାଦ୍ରି ସିଂହଙ୍କର ।
ହୋଇ ଧରାକୋଟ ମଣ୍ଡଳେ ହେଲି ରାଜା
ବିଷୟ-ରସରେ ମୁଁ ବୁଡ଼ାଇଲି ମଜା ।
ନ ଜାଣି ଶାସ୍ତ୍ର ଅର୍ଥ ମୂର୍ଖପଣ କରି
ଭାରତକୁ ଗୀତ କରୁଛି ନ ବିଚାରି ।
ପଣ୍ଡିତେ ଉଦ୍‌ଯୋଗ ପର୍ବତ ଅକଥିତ
ମୋର ବୁଦ୍ଧିରେ କି ସେ ହୋଇବ କଥିତ ।
ଏଥେଁ ଉପହାସ ନ କରି ସାଧୁଜନେ
ହରିକଥା-ଅମୃତ ପିଅ ଅବିଚ୍ଛିନ୍ନେ ।

ଏ ଉଦ୍‌ଯୋଗ ପର୍ବେ କୃଷ୍ଣଙ୍କ ମାହାତମ୍ୟ
ବର୍ଣ୍ଣିତଛନ୍ତି ବ୍ୟାସ ଋଷିଙ୍କ ଉତ୍ତମ ।
ତହିଁରୁ ତାହା ମୁଁ ଜାଣିଲି ଲବ ମାତ୍ର
ବଖାଣି ହେଲି ମୁଖେ ହେବାକୁ ପବିତ୍ର ।
ଏଣୁ ସାଧୁଜନଙ୍କର ମୁଁ ପାଦେ ପଡ଼ି
କହୁଛି ଥିଲେ ଦେବ ଦୋଷ ହୃଦୁଁ ଛାଡ଼ି ।
କୂପ ପାଣି ଶାଳଗ୍ରାମ ଯେ ସ୍ନାନ କଲେ
ମସ୍ତକରେ ତାହାଟି ନ ଘେନି କି ଭଲେ ।
ଆହେ ନବଘନ ଶ୍ୟାମଳବରନିଆଁ
କେକିପୁଚ୍ଛବୁହା ଯେ ପୀତବସନିଆଁ ।
ନ ବସାଇ ତୁଣ୍ଡେ ତୁମ୍ଭର ନାମ ପଦ
ଅରଜୁଛି ପାଇବି ନରକ ସମ୍ପଦ ।
ଭକତ ହୃଦବାସ ରାଧିକାବିଳାସ
ମୁରଲୀବଦନିଆଁ ଗୋକୁଳ ତାରାଈଶ ।
ମୋ ଛାର ମୁଖେ କି ପାରିବ ସ୍ତୁତି କରି
ଅଳପ ତ ବୁଦ୍ଧିଟି ଅଟଇ ମୋହରି ।
କଦମ୍ବବୃକ୍ଷଚଢ଼ା ଷଣ୍ଢାବେକମୋଡ଼ା
ଗୋକୁଳ କୁଳବଧୂ କୁଳଲାଜଛଡ଼ା ।
କରି କୃପା ମୋହରଠାରେ କିଞ୍ଚିତରେ
ଭାରତକୁ ପୂର୍ଣ୍ଣ କରାଅ ହେ ଗୀତରେ ।

ବୃନ୍ଦାବନ ବାଛୁରୀଚରା ବସ୍ତ୍ରଘେରା
ଗୋବର୍ଦ୍ଧନଧରା ପାତକ ନାଶକରା ।
ଥରେ ହୃଦପଥରେ ମୋରେ ଧରି ଭାବ
ଦିଅ ବୁଦ୍ଧି ହେବାକୁ ସର୍ବ ପର୍ବ ପର୍ବ ।
ଯୁଦ୍ଧରେ ବଳି-ବାଣ ଗରବ-ବିନାଶି
କେଶୀ-କଂସ-ରିପୁ ଗୋକୁଳଧାମବାସୀ ।
ଦିନକୁ ଦିନ ମୋ ବୟସ ହୁଏ ଗତ
ରଖାଅ ତୁମ୍ଭପାଦ ଭଜନେ ମୋ ଚିତ୍ତ ।
ବୃନ୍ଦାବନବୁଲା ଯେ ମଥୁରାବିହାରୀ
ଭାରତଯୁଦ୍ଧକାରୀ ସାରଙ୍ଗ ଧନୁର୍ଦ୍ଧାରୀ ।
ପକାଅ ଥରେ ମୋର ଉପରେ କଟାକ୍ଷ
ହେବି ମୁହିଁ ସଂସାର ବନ୍ଧନରୁ ମୋକ୍ଷ ।
ପାରିଜାତହରତା ପ୍ରଳୟକରତା
ସୁଦାମାଦ୍ରବ୍ୟଦାତା ଜଗତପିତାମାତା ।
ତୁମ୍ଭ ନାମ ଭଜନ ଛାଡ଼ି ମୁଁ ବିଷୟ-
ରସରେ ପ୍ରବର୍ତ୍ତିଛି ଛଡ଼ାଇ ତା ଦିଅ ।
ଦେବପୁରେ ଅଗମ୍ୟ ଯେଉଁ ପାଦପଦ୍ମ
ସେ ପାଦପଦ୍ମ କରୁ ମୋର ହୃଦେ ସଦ୍ମ ।
ପଦ୍ମନାଭ ଯେ ପ୍ରଦ୍ୟୁମ୍ନତାତ ହରି
ହୁଅ କୃଷ୍ଣସିଂହ ଅରକ୍ଷ ରକ୍ଷାକାରୀ ।

-ସମାପ୍ତ-

□□□

ରାଜା କୃଷ୍ଣସିଂହଙ୍କ କୃତ

# ମହାଭାରତ

## ଭୀଷ୍ମପର୍ବ

ପ୍ରକାଶକ—ଧର୍ମଗ୍ରନ୍ଥ ଷ୍ଟୋର

ପ୍ରାପ୍ତିସ୍ଥାନ—ଧର୍ମଗ୍ରନ୍ଥ ଷ୍ଟୋର

ପଣସ୍ତକ—ଶ୍ରୀ ବିଦ୍ୟାଧର ସାହୁ
ଅଲଣାବଜାର, କଟକ-୨
ଫୋନ ନଂ ୨୫୬୯୭

# ସୂଚୀପତ୍ର

# ମ ହା ଭା ର ତ

## ଭୀଷ୍ମ ପର୍ବ

ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ ।
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋ ଜୟମୁଦୀରୟେତ୍ ॥
ଭୀଷ୍ମଦ୍ରୋଣତଟା ଜୟଦ୍ରଥଜଳା ଗାନ୍ଧାରନୀଳୋତ୍ପଳା ।
ଶଲ୍ୟଗ୍ରାହବତୀ କୃପେଣ ବହନୀ କର୍ଣ୍ଣେନ ବେଳାକୁଳା ।
ଅଶ୍ୱତ୍ଥାମାବିକର୍ଣ୍ଣ ଘୋରମକରା ଦୁର୍ଯ୍ୟୋଧନାବର୍ତ୍ତିନୀ ।
ସୋତ୍ତୀର୍ଣ୍ଣା ଖଳୁ ପାଣ୍ଡବୈଃ ରଣନଦୀ କୈବର୍ତ୍ତକଃ କେଶବଃ ॥

---

ଜୟ ନୀଳକନ୍ଦର ମନ୍ଦର ନିବାସୀ
ସୁବରଣନିଧାନ କମଳାବିଳାସୀ ।
ମୁନିଜନଙ୍କ ମନ-ନଳିନଉଲ୍ଲାସୀ
ଅରକ୍ଷ ରକ୍ଷାକାରୀ ଭକତ-ଲାଳସୀ ।
ପତିତଉଦ୍ଧାରଣ ବିପତ୍ତିବିନାଶୀ
ଗୋପବଧୂକେଳିକର ଯେ ମୁରଧ୍ୱଂସୀ ।
କାଳୟମରଦନ ହରି ପୀତବାସୀ
ତମାଳବରନଆଁ ପୁରାତନ ଋଷି ।
କୃଷ୍ଣ ପାଦପଦ୍ମେ ରଜନୀ ଦିନ ରସି
ସେବକ ହେବି ମୁଁ କର ତା ହୋଇ ତୋଷି ।
ହେ ସଂସାରକରତା ନନ୍ଦଗୋପଣାବ
ବଇତଦନୁସୂଦ ଗରୁଡ଼ସଣାହବ ।
ଅଖିଳ ମହିମାସମୁଦ୍ର ହେ ସର୍ବ
ସର୍ବହୃଦସରସୀକାବନ୍ଧୁ କେଶବ ।
ସରସିଜଉଦ୍ଭବଜନକ ବାସୁଦେବ
ଧରାଧର ଧରାଧର ଯେ ମହାଦେବ ।
ପ୍ରଳୟକାଳଜଳତଳପ ମାଧବ
କଲ୍ପଶାଖ ମାରକଣ୍ଡେୟଙ୍କର ଠାବ ।

ଅଳପ ବୁଦ୍ଧିରେ ମୁଁ ହେ ଶରଣ୍ୟ ଦେବ
କଲ୍ପଶାଖ କୃଷ୍ଣଙ୍କୁ କହୁଛେ ବନ୍ଧୁ ଭାବ ।
ମୋହଠାରେ କରୁଣା କର ନାରାୟଣ
ପଶୁଛି ମୁହିଁ କୃଷ୍ଣ ପାଦରେ ଶରଣ ।
ମୋ ମତରେ କୃଷ୍ଣର ମହିମାକୁ ଜାଣି
ଭାରତ ଗୀତାରେ ପାରିବି କି ବଖାଣି ।
ଯେବେ କୃପା କଟାକ୍ଷେ ହେ କୃପାମୟ
ସ୍ଫୁରିବ ତେବେ ବୁଦ୍ଧି ହେବ ମୋ ଉଦୟ ।
ମହିମା-ସୂର୍ଯ୍ୟ ମୋ ହୃଦୟ-ଉଦୟଗିରି
ଶିଖରରେ ଉଦୟ କରାଇଣ ହରି ।
ଭାରତ-ସରସିଜବନକୁ ପ୍ରକାଶ
କରାଅ ମହାପ୍ରଭୁ ନ ଦେଖ ମୋ ଦୋଷ ।
ଉଦ୍ୟୋଗପର୍ବ ଯାଏ କଲି ଗୀତ
ଲାଗିଛି ଭୀଷ୍ମପର୍ବକୁ ମୋ ଏବେ ଚିତ୍ତ ।
ତହିଁରେ ଗୀତାପର୍ବ-ଶୈଳ ଗ୍ରନ୍ଥ ରତ୍ନ
ମୋହର ମନ-ସୂଚୀ ଭେଦିବଟି କେଣ୍ଟି ।
ଏଥିକି ଆହେ ଲକ୍ଷ୍ମୀନାହା ଚକ୍ରବାହା ।
କୃଷ୍ଣ ନାମ-ବଜ୍ର ମୋ ମୁଖେ କର ସାହା ।

ଏ ନୋହିଲେ ଗୀତାପଦ୍ମରେ ମନ-ଭୃଙ୍ଗ
ମୋର କରି ନ ପାରଇ ହେ ହରି ସଙ୍ଗ ।
ପାତକ-ଅନ୍ଧାରେ ମୋ ଆଖି ଫୁଟିଅଛି
ହେ କୃଷ୍ଣଚନ୍ଦ୍ର ଉଦ୍ଧ ତହିଁ ମୁଁ ଜଣାଉଛି ।
ମୋହର ଜିହ୍ୱା ନାନା ଗତରେ ଲାଳସା
କରୁଛି ତା ଛଡ଼ାଅ କରି ତହିଁ ବସା ।
ମୋ କର୍ଣ୍ଣ-କୂପୁଁ ପାପଶ୍ରବଣ-ପଙ୍କ କାଢ଼ି
ଲଢ଼ ତହିଁରେ କୃଷ୍ଣ ନାମ-ରସ-ପେଡ଼ି ।

—୦—

## ଧୃତରାଷ୍ଟ୍ରଙ୍କ ପ୍ରତି ବ୍ୟାସଙ୍କ ଉକ୍ତି

ଜନ୍ମେଜୟ ବୋଇଲେ ବଇଶମ୍ପାୟନ
କହ କୁରୁ ପାଣ୍ଡବ ଯୁଦ୍ଧର ବିଧାନ ।
ନାନାଦେଶ ରଜାମାନେ ତ ହୋଇ ଜୋଟି
ଯୁଝିବାକୁ କରୁଥିଲେ ତ ଗୁମାନୁଟି ।
ଯୁଦ୍ଧଭୂମିକି ସେ ଆସିଣ ସବଗରେ
କି ରୂପେ ଯୁଦ୍ଧ କଲେ ଅନ୍ୟୋନ୍ୟ ରାଗରେ
ଏହା ଶୁଣିବାକୁ ହେଉଛି ମୋର ଇଚ୍ଛା
ଆହେ ବଇଶମ୍ପାୟନ ମୁନଙ୍କର ବଚ୍ଛା ।
ବଇଶମ୍ପାୟନ ବୋଇଲେ କୁରୁକ୍ଷେତ୍ରେ
ଯେ ରୂପେ ମହାମରି ହେଲେ ଅସ୍ତ୍ରଘାତେ ।
ନୃପତିମାନେ ତାହା କୁହ ଆଗେ ବସି
କହିବା ଶୁଣ ଆହେ ପରୀକ୍ଷିତ ଶିଷି ।
ପାଣ୍ଡବ କୁରୁକ୍ଷେତ୍ର ପଶ୍ଚିମଦେଶ ଭୂମି
ମାଡ଼ି କରି ରହିଲେ ଯୁଦ୍ଧେ ହୋଇ ତମୀ ।
କୁରୁଏ ସେରୂପେ ରହିଲେ ପୂର୍ବଭାଗେ
ଯୁଝିବାକୁ ପାଣ୍ଡବମାନଙ୍କର ସଙ୍ଗେ ।
ସାମନ୍ତପଞ୍ଚକ ବାହାରେ ଦୁଇ ସୈନ୍ୟ
ଚଢ଼ିଲେ କରି ମହୀମଣ୍ଡଳକୁ ଶୂନ୍ୟ ।
ବାଳବୃଦ୍ଧ ଲୋକ ଯା ଘରେ ଯେତେ ଥିଲେ
ବସି ଘରମାନଙ୍କୁ ଏକା ଜଗିଥିଲେ ।
ଯୁବା ଜନମାନଙ୍କ କାଳ ଧରି ଚୁଟି
ଆଣିଲା ଡାକି ଯୁଦ୍ଧେ ନେବାକୁ ପ୍ରାଣୁଟି ।
ସବୁ ବର୍ଣ୍ଣଯାକ ତ ହେବେ ଏକଗୋଷ୍ଠି
ପୂରିଗଲା ସେ ଯେନ କୁରୁକ୍ଷେତ୍ର ସୃଷ୍ଟି ।
ଯୁଧିଷ୍ଠିରରଜା ଯେ ଭକ୍ଷ୍ୟ ଭୋଜ୍ୟ ପେୟ
ଦେଇଣ ହରନେଲେ ପ୍ରାଣୀଙ୍କ ହୃଦୟ ।
ଯୁଦ୍ଧେ ପର ଆପଣା ହେବାକୁ କଳନା
ସଙ୍କେତ କଲେ ପାଣ୍ଡୁସୁତ ମହାମନା ।
ଦୁର୍ଯ୍ୟୋଧନ ଯୁଧିଷ୍ଠିରଙ୍କ ଆସିବାର
ଦେଖି ବ୍ୟୂହ ରଚନା କଲେ ସେ ଅପାର ।
ପାଣ୍ଡୁର ଆତପତ୍ର ମସ୍ତକେ ଟେକାଇ
ଇନ୍ଦ୍ରଙ୍କ ପରି ଦୁର୍ଯ୍ୟୋଧନ ମହୀସାଇଁ ।
ଭାଇମାନଙ୍କର କୁଳରେ ହାଣି ମେଳେ
ଅଚଳ ପରି ସେନା ମଧ୍ୟରେ ବସିଲେ ।
ରଥ ରଖାଇଲେ କରରେ ଧନୁ ବହି
ମନେ କଲେ ମାରିବ ପାଣ୍ଡବେନ୍ଦ୍ରସାଇଁ ।
ଗାଙ୍ଗେୟ ଦୁର୍ଯ୍ୟୋଧନକୁ ନୟନେ ଦେଖି
ବଜାଇଲେ ଭେରୀ ଶଙ୍ଖ ହୋଇଣ ସୁଖୀ ।
ଆପଣା ସେନା ହୃଷ୍ଟ ଦେଖି ପାଣ୍ଡୁସୁତେ ।
କୃଷ୍ଣଙ୍କ କୁଳେ ହୃଷ୍ଟ ହୋଇଲେ ସେ ଚିତ୍ତେ ।
କୃଷ୍ଣଅରଜୁନ ତ ବସି ଏକା ରଥେ
ବଜାଇଲେ ଶଙ୍ଖ ବେଣୁକ ଧରି ହାତେ ।
ସେ ଦୁହିଙ୍କ ଶଙ୍ଖଶବ୍ଦ କୁରୁଜନ
ଶୁଣି ମନ ମୂଢ଼ ତେଜଲେ ଆବର୍ଚ୍ଛିଇ ।
ସୈନ୍ୟଙ୍କ ପାଦଘାତେ ଉଡ଼ି ତଜୁ ରେଣୁ
ସୂର୍ଯ୍ୟଙ୍କର କରକୁ କରିଦେଲା ଅଣୁ ।
ସେ କାଳରେ ମେଘେ ଆକାଶେ କରି ସଙ୍ଗ
ରକତରେ କୁରୁମସ୍ତକ କଲେ ରଙ୍ଗ ।
ବଡ଼ ହୋଇ ପବନ ଗୋଟାଏ ବହିଲା
କୁରୁ ପାଣ୍ଡୁ ସୈନ୍ୟଙ୍କ ଚକ୍ଷୁ ବୁଜାଇଲା ।
ସେ ସକାଶୁଁ ଉଡ଼ଣ ଶର୍କରା ପରାଗେ
ବସ୍ତ୍ର ଫୁଟିକରି ଭେଦିଲେ ଦେହଭାଗେ ।
ଭୀଷ୍ମ ଅରଜୁନ ଚନ୍ଦ୍ରମାଙ୍କୁ ଯେ ପାଇ
ଦୁଇ ସୈନ୍ୟସିନ୍ଧୁ ବଢ଼ିଲେ ତୋଷ ହୋଇ
ଯୁଦ୍ଧ ଅନ୍ତେ ପୃଷ୍ଠି ହୋଇଲେ ସମାଗମ
ହୃଦୟରେ କେହି ତ ନ ରଖିବା ତମ ।
ବଚନରେ ଯୁଦ୍ଧକୁ ଯେବେ ଆଚରିବା
ତେବେ ଖଣ୍ଡା କାଢ଼ିବା ଲୋକେ ନିଷେଧିବା
ସେନା ମଧ୍ୟରୁ ଯେ ପଳାଉଥିବ ଡରି
ତାହାକୁ ନ ମାରିବା କରେ ଶସ୍ତ୍ର ଧରି ।
ରଥୀକି ରଥୀ ଅଶ୍ୱଚଢ଼ାକୁ ଅଶ୍ୱଚଢ଼ା
ପଦାତିକ ପଦାତି ଯୁଝିବ ହୋଇ ଛିଡ଼ା ।

ମୋହ ଯିବା ଲୋକଙ୍କୁ ନ କରିବା ନାଶ
କରିବା ଯେବେ ଧର୍ମ ହୋଇବ ବିନାଶ ।
ନ୍ୟସ୍ତଶସ୍ତ୍ର ଶରଣାଗତ ଯେଉଁ ନର
ତାଠାରେ ନ କରିବା ଶସ୍ତ୍ରକୁ ପ୍ରହାର ।
କବଚ ଛାଡ଼ିବା ଲୋକଙ୍କୁ ଛାଡ଼ିଦେଇ
ଆନ କୁଳରେ ଯୁଦ୍ଧ ପାଞ୍ଚିବାଟି ଯାଇ ।
ସାରଥି ଭେରୀ ଶଙ୍ଖବଜାଳଙ୍କ ତନୁ
ନ ଫୁଟାଇବା କାହେଁ ଧରି କେହି ଧନୁ ।
ଏହିରୂପେ ଶପଥ କରି ଦୁଇ ସେନା
ଯୁଦ୍ଧ କରିବାକୁ ଯେ ହେଲେ ଉଗ୍ରମନା ।
ସେହି କାଳରେ ଋଷିମାନଙ୍କ ମଣ୍ଡନ
ସତ୍ୟବତୀଙ୍କର ଯେ ଆନନ୍ଦ-ବର୍ଦ୍ଧନ ।
ପରାଶର ଋଷି-ସରରଟି ସାରସ
ତ୍ରିକାଳଦର୍ଶୀ ସର୍ବ ବେଦଙ୍କଙ୍କ ଈଶ ।
ଯେଉଁ ବ୍ୟାସଟି ଧୃତରାଷ୍ଟ୍ର ପାଣ୍ଡୁପିତା
ଆସିଲେ ଧୃତରାଷ୍ଟ୍ରଠାକୁ ଧରି ଚିନ୍ତା ।
ବୋଇଲେ ଆହେ ଧୃତରାଷ୍ଟ୍ର ନୃପଶିଖ
ପୁତ୍ର ସେନ ତୁମ୍ଭେ ଲଭିବ ଏବେ ଦୁଃଖ ।
ଏ ମଣ୍ଡଳ ନୃପତିମଣ୍ଡଳ କାଳ ସେଣ
ଆସିଛନ୍ତି ଯୁଦ୍ଧରେ ହେବେ କାଳସ୍ଥାମୀ ।
କାଳ ଏହିରୂପେ କରୁଛି ସବୁ ଗ୍ରାସ
ଜାଣ ଆହେ ଅମ୍ବିକାଦେବୀଙ୍କର ଶିଷ୍ୟ ।
ଯୁଦ୍ଧ ଦେଖିବାକୁ ତୁମ୍ଭର ଇଚ୍ଛା ଥିଲେ
ବୋଲ ମୁହିଁ ତୁମ୍ଭଙ୍କୁ ଚକ୍ଷୁ ଦେବି ଭଲେ ।
ଧୃତରାଷ୍ଟ୍ର ବୋଇଲେ ଜ୍ଞାତିଙ୍କ ମରଣ
ଦେଖିଲେ ଋଷି ମୋର ହେବ କି କାରଣ ।
ମାତ୍ର ଯୁଦ୍ଧକଥା ଶୁଣିବା ଇଚ୍ଛା ଅଛି
ଏଥିକି ଯେ ଉପାୟ ଦିଅ ମୁନିବରି ।
ବ୍ୟାସ ବୋଇଲେ ହେ ସଞ୍ଜୟ ତୁମ୍ଭ ପାଖେ
ଥାଇ ଯୁଦ୍ଧକଥା କହିବେ ଜାଣ ମୁଖେ ।
ମୁହିଁ ଏହାଙ୍କୁ ଦିବ୍ୟଚକ୍ଷୁ ଦେଉଅଛି
ଛାଡ଼ ମନୁ ଶଙ୍କା ହେ ଚିତ୍ରବୀର୍ଯ୍ୟବଂଶି ।
ପୁଣି ବୋଲୁଅଛି ସର୍ବଜ୍ଞ ସେ ହୋଇବେ
ଗୁପ୍ତ ଜନ ମନର କଥାକୁ କହିବେ ।
ସଞ୍ଜୟଙ୍କୁ ଶସ୍ତ୍ର ଛିଡିଲେ ପାଣ୍ଡୁ ଲୋକ
ଭେଦ ନ ପାରିବ ହେ ଅବନୀ ନାୟକ ।

କୁରୁପାଣ୍ଡୁ କଥାରେ ଶୋକ ଛାଡ଼ିଦେଇ
ସଞ୍ଜୟଠାରୁ ସବୁ ଶୁଣ ନରସାଇଁ ।
ଯାର ଧର୍ମ ଥିବ ହୋଇବ ତା'ର ଜୟ
ବସି ଘରେ ନୃପତି ନୁହିଁ ରାଜ୍ୟପ୍ରିୟ ।
ଦେଖ ହେ ନୃପ ଉତପାତ ହୁଏ କୋଟି
ନେବାକୁଟି କୁରୁମାନଙ୍କର ପ୍ରାଣଟି ।
ଶ୍ୟେନ ଗୃଧ୍ରଙ୍କ ବକ ଯେ କାକ ବୃକ୍ଷେ
ଅତି ବସୁଛନ୍ତି ରାଜନ ମହାସୁଖେ ।
ପକ୍ଷୀମାନେ ମୁଖରେ କରି ଘୋର ରଡ଼ି
ଆକାଶ ମାର୍ଗରେ ଯାଉଛନ୍ତି ଉଡ଼ି ।
କଙ୍କମାନେ ହ୍ରେଷରେ ହୋଇଣ ଆତଙ୍କ
ଦକ୍ଷିଣକୁ ଧାଉଁଅଛନ୍ତି ଛାଡ଼ି ଦଳ ।
ଶୃଗାଳକୁଳ ଶୋଳ କରୁଛନ୍ତି ଅତି
ମାଉଁସ ଖାଇବାରେ ଦେଇ କରି ମତି ।
ଉଦୟ ଅସ୍ତ ସନ୍ଧ୍ୟାକାଳରେ ସୂର୍ଯ୍ୟଙ୍କୁ
କବନ୍ଧ ଘୋଡ଼ାଉଛି ଦିଶେ ନୟନକୁ ।
ସୂର୍ଯ୍ୟଙ୍କର ରଶ୍ମିମାନେ ଯେ ରକ୍ତ ପୀତ
ଶ୍ୱେତବରନରେଟି ଦିଶନ୍ତି ଶୋଭିତ ।
ସୂର୍ଯ୍ୟ ଚନ୍ଦ୍ର ନକ୍ଷତ୍ର ରଜନୀ ଦିବାରେ
ଜଳୁଛନ୍ତି ରାଜନ କୁରୁଙ୍କ ନାଶରେ ।
କାର୍ତ୍ତିକ ପୂର୍ଣ୍ଣିମୀରେ ଚନ୍ଦ୍ର ନରସତ
ତମ୍ବାର ପରି ଭଜଥିଲେଟି ମୁରତି ।
ଶୁଣୁଛୁ ମୁଁ ରାତିରେ ବଗଡ଼ ବିଗଡ଼
ଆକାଶରେ ହୁଅନ୍ତି କାମୁଡ଼ାକାମୁଡ଼ ।
ଅଛନ୍ତି ତୁମ୍ଭଦେଶେ ଯେତେକ ପ୍ରତିମା
ସ୍ୱେଦେ ବୁଡ଼ିଅଛି ତାହାଙ୍କ ଅଙ୍ଗସୀମା ।
ହୋଇବାଠାରେ ତୁମ୍ଭ କୁରୁଙ୍କ ବାଇଦ
କରୁଅଛି ସେ କର୍ଣ୍ଣ ବେନକ ସ୍ତବଧ ।
ଘୋଡ଼ାଙ୍କ ବନା ରଥମାନେ ହୋଇ କୋଟି
ଚଳିବାରେ ଖୋଳନ୍ତି କୁରୁଦେଶ ମାଟି ।
ଶୁଆ ଶାରୀ ଛାଡ଼ିଣ ଯେ ଯାହା ଭାଷାକୁ
କରୁଅଛନ୍ତି ରଡ଼ି ଡାକିଲ ଲୋକଙ୍କୁ ।
ଧରୁଣ ଉଦୟରୁ ଉଡ଼ିଣ ପତଙ୍ଗ
ଘାଇଁ ଦେଉଅଛନ୍ତି ତାହାଙ୍କର ରଙ୍ଗ ।
ଦୁଇ ସନ୍ଧ୍ୟାଯାକରେ ହେଉଛି ଦିଗ୍‌ଦାହ
ପ୍ରାଣୀମାନଙ୍କରଟି ଦହିବାକୁ ଦେହ ।

ଅରୁନ୍ଧତୀ ବଶିଷ୍ଠଋଷିଙ୍କ କରି ପିଠ
ବସିଛନ୍ତି ବୁଡ଼ାଇବାକୁ ନୃପସୃଷ୍ଟି ।
ଶନଶ୍ଚର ରୋହିଣୀ ନକ୍ଷତ୍ରକୁ ପୀଡ଼ା
ଦେବାକୁ ରହିଛନ୍ତି ଇନ୍ଦ୍ର ଲଭି କ୍ରୀଡ଼ା ।
ନିଷ୍ପ୍ରଭ ହୋଇଅଛନ୍ତି ତାରାଗଣ
ବାହନମାନେ ଧରିଛନ୍ତି ଅଶ୍ରୁ ଦୃଶ୍ୟ ।
ଶୁଖା ଆକାଶରେ ଶୁଭୁଛି ଘଡ଼ଘଡ଼
ପଡ଼ୁଛି ମହୀଦେଶେ ବଡ଼ ବଡ଼ ହାଡ଼ ।
ହେଉଛନ୍ତି ଗାଈ ଗର୍ଭରୁ ଗଧ ଜାତ
ମାତା ଧରି କୋଳେ କରନ୍ତି ରତି ସୁତ ।
ରକ୍ତ ବମା ବୃକ୍ଷ ଫଳରେ ହୋଇ ଘସା
ଲେଉଟିଅଛନ୍ତି ଚତୁର୍ଭୁଜ ଦଣ୍ଡଧାରୀ ।
ରାଜଭାର୍ଯ୍ୟାମାନେ ଯେ ପାଇ ରତି ଭାବ
ବ ସ ଲଙ୍କ ମାଙ୍କଡ଼ କରନ୍ତି ପ୍ରସବ ।
ବଲୁଆ ଆଦି କରୁଛନ୍ତି ଶିଶୁ ଜାତ
କେଶିଙ୍କ ଦୁଇ ଲାଙ୍ଗୁଡ଼େ ସେ ସଂଯୁତ ।
ଏ ବାହାରେ ଶୁଣ ଆଖି ଯେ ପାଞ୍ଚପାଦ
ଦୁଇମୁଣ୍ଡ କା'ର ସବୁରି ଉପୁଜଦ ।
ଜୁମ୍ବ ପୁର ବ୍ରାହ୍ମଣେ ଗୃହି ଗାଏ ମୟୂର
ଜାତ କରୁଛନ୍ତି ହେ ନୃପ ନରବର ।
ଘୋଡ଼ୀଠାରୁ ବାଛୁରୀ କୁକୁରରୁ ବଲୁଆ
ନର ଜାତକରେ ସରଭ ହାଗୁଛୁଆ ।
ପାଞ୍ଚ ସ୍ୱର ଝିଅ ଯେ ଏକା ଗର୍ଭ ଜନ୍ମ
ଏକାବେଳେ ହୋଇ କରନ୍ତି ନୃତ୍ୟକର୍ମ ।
ସବୁଘର ପିଲାଏ ଲେଖୁଛନ୍ତି ଚିତ୍ର
ଦେଖିଲା ଲୋକେ ବୋଲୁଛନ୍ତି ଏ ବିଚିତ୍ର ।
ପ୍ରତିଘରଙ୍କରେ କୁମୁଦ ପଦ୍ମ ରାଜି
ଫୁଟିବାରୁ ଭ୍ରମରେ ଧାଆନ୍ତି ଗରଜି ।
ଶୁକ୍ରଗ୍ରହ ଟି ଚିତ୍ରା ନକ୍ଷତ୍ରକୁ ଛାଡ଼ି
ରହିଛନ୍ତି ରାଜନ ଶୋକଜଳେ ବୁଡ଼ି ।
ଧୂମକେତୁ ଯେ ପୁଷ୍ୟା ନକ୍ଷତ୍ରର ପାଶେ
ଅଛନ୍ତି କୁରୁ ପାଣ୍ଡୁ ସେନାଙ୍କ ବିନାଶେ ।
ମଘା ନକ୍ଷତ୍ରରେ ମଙ୍ଗଳ ବକ୍ର ହୋଇ
ରହିଛନ୍ତି କୁରୁସେନାଙ୍କୁ ନାଶପାଇଁ ।
ଚିତ୍ରା ସ୍ୱାତି ଦୁଇନକ୍ଷତ୍ର ମଧ୍ୟ କେତୁ
ରହିଛନ୍ତି କ୍ଷତ୍ରିୟେ ନାଶ ଯିବା ହେତୁ ।

ାଦ ନଡ଼ା ଗୋଟିକେ ଶଏଗୋଟି ଶୀଂସା
ଗୋଟି ହୋଇଛନ୍ତି ରାଜନ ମହାଯଶା ।
ଗାଈଙ୍କ ଦୁଗ୍ଧ ଥିଲେ ସ୍ରବୁଛି ରକତ
ଖାପର ଖଣ୍ଡା ବଳେ ହେଉଛି ଭୂଗତ ।
କବଚ ଧ୍ୱଜ ଶସ୍ତ୍ର ପ୍ରଭାରୁ ହେ ରାୟେ
ଜଣାଉଅଛି ନଷ୍ଟେ ମରିବେ କ୍ଷତ୍ରିୟେ ।
ପକ୍ଷୀ ଆଖି ଚରଣ ଗୋଟିଏ ଲେଖାରେ
ବସି ପକ୍ଷୀଟିଏ ବୋବାଏ ନିରନ୍ତରେ ।
ସପତ ଋଷିଙ୍କ ପ୍ରଭାକୁ ଆଚ୍ଛାଦଣ
ରହିଅଛନ୍ତି ଶନି ବୃହସ୍ପତି ଜାଣ ।
ତିନିପୂର୍ବା ମଧ୍ୟରେ ବୁଧ ହୋଇ ସ୍ଥିତ
ସୃଷ୍ଟିସଂହାରକୁ କରିଅଛନ୍ତି ମତ ।
ପର୍ବତିଥିର ବିନା ଶଶୀ ଦିବାକର
ଦୁହିଙ୍କି ରାହୁ କରୁଅଛନ୍ତି ଆହାର ।
ଦିଗମାନେ ପାଂଶୁବୃଷ୍ଟିରେ ଘୋଡ଼ି ହୋଇ
ରହିବାରୁ କଳୁଛି ଜଣା ଯାଉନାହିଁ ।
କୃଷ୍ଣ ତ୍ରୟୋଦଶୀ ଦିନ ତ ମେଘ ମାଂସ
ବର୍ଷି ପରାଉଛି ହସ୍ତିନା ମହୀଦେଶ ।
ଦୁର୍ଭିମଗ୍ନ ହୋଇ ଦୁଇକୂଳ ଖାଇ
ନଦୀଜଳ ରକତ ହୋଇ ଯାଏ ବହି ।
ବୃଷଭ ପରି କୂପମାନ କରି ଧ୍ୱନି
ଫେନ ଜାତ କରଣ ମଣ୍ଡନ୍ତି ଅବନୀ ।
ଉଲ୍କା ପଡ଼ିବାରେ ଗଣନା ନାହିଁ ରାୟେ
ନିର୍ଘାତ ଭୂମିକମ୍ପ ଦେହକୁ କମ୍ପାଏ ।
ସୂର୍ଯ୍ୟ ଉଦୟଗିରିରେ ହେବାବେଳେ ସ୍ଥିତ
ଷୁରୋଟି ଉଲ୍କାରେ ହୁଅନ୍ତି ଆହତ
ଏରୂପେ ଉତ୍ପାତ ହୋଇଲେ ରାଜକୁଳ
ରକତକୁ ଚାରନ୍ତି ବଲୁଆ ମଣ୍ଡଳ ।
ପର୍ବତମାନଙ୍କରୁ ଶୃଙ୍ଗମାନେ ଝଡ଼ି
ମହୀମଧ୍ୟେ ପଡ଼ି ଯାଉଅଛନ୍ତି ଗଡ଼ି ।
ବେଳାକୁ ଅତିକ୍ରମି ଷୁରୋଟି ସମୁଦ୍ର
ଆସୁଛନ୍ତି ପ୍ରାଣୀଙ୍କ ହେବାକୁ ଅଭଦ୍ର ।
ପବନ ବିନା ମାଟିକୁଡ଼ ବୃକ୍ଷପନ୍ତି
ଧରି ମସ୍ତଦେଶେ ଉପୁଡ଼ି ପଡ଼ୁଛନ୍ତି ।
ବ୍ରାହ୍ମଣଙ୍କର ହୋମଅଗ୍ନି ବାମାବର୍ତ୍ତ
ହୋଇଣ ଜଳୁଅଛି ବହି ନୀଳ ପାତ ।

ବିପରୀତ ଶବ୍ଦଟି ସ୍ପର୍ଶ ଗନ୍ଧ ରସ
କରୁଛି ପ୍ରକାଶ ଜାଣ ହେ ନରଈଶ ।
ବଧୂଜନମାନଙ୍କରୁ ତ ନିଆଁ ବନା
ଜାତ ହେଉଅଛି ଧୂମ ଯେ ଅକଳନା ।
ଫୁଙ୍କିବା ବେଳେ ଭେଗ ବାହାର ଅଙ୍ଗାର
ତତାଇ ଦେଉଅଛି ଶଙ୍ଖୀର ଝଙ୍କାର ।
ଗୃଧ୍ରମାନେ ପ୍ରାସାଦଙ୍କରେ ମେଲି ପାଟି
ରଡ଼କରି ମୃତ୍ୟୁଜଣନ୍ତି ଗଗନୁଟି ।
ଏହି ରୂପରେ ନାନାଜାତି ଉତପାତ
ହେଉଅଛି ତ ଆହେ ଜାଣ ନୃପସୁତ ।
ଏଥିକି ବୁଦ୍ଧି କରି ଈଶ୍ୱର ଧର୍ମକୁ
ଆଚରଣ କର ହେ ବଂଶ ରକ୍ଷିବାକୁ ।
ଏହା ଶୁଣିଣ ଧୃତରାଷ୍ଟ୍ର ନରସାଇଁ
ବୋଇଲେ ଅଦୃଷ୍ଟକୁ ସୁମରୁଛି ମୁହିଁ ।
କ୍ଷତ୍ରିୟେ ଯେବେଟି ଯୁଦ୍ଧରେ ହେବେ ହତ
ଇହରେ କୀର୍ତ୍ତି ପାଇ ସ୍ୱର୍ଗେ ହେବେ ଗତ ।
ଧୃତରାଷ୍ଟ୍ରଙ୍କ ଏ ବଚନ ଶୁଣି ଋଷି
ବିଚାରିଲେ ଟିକଏ ଆଖି ଘଲେ ଖୋଷି ।
ବୋଇଲେ କାଳ ସକାଶରୁ ଏ ଜଗତ
କ୍ଷୟ ବୃଦ୍ଧି ହୁଇକ କରୁଅଛି ଜାତ ।
ଜ୍ଞାନୀଜନମାନଙ୍କୁ କହି ଧର୍ମପଥ
ଛଡ଼ାଇଦିଅ ହୃଦମଧ୍ୟୁଁ ଯୁଦ୍ଧବେଗ ।
କାଳ ଦୁର୍ଯ୍ୟୋଧନ ରୂପରେ ଜନ୍ମ ହୋଇ
ରହିଛି ସବୁ ପ୍ରାଣୀଙ୍କୁ ସେ ଦେବ ଖାଇ ।
ବେଦରେ ଲେଖିଅଛି କୁଳ ଯେ ବୁଡ଼ାଏ
ତା ଘରବାସ ଜାଣ ତଳିବ ଛଡ଼ାଏ ।
ଅଧର୍ମରେ ରାଇଜ ଅର୍ଜିଲେ ନୃବର
ପ୍ରାଣକାଳେ ନର୍କେ କରିବ ଯାଇ ଘର ।
ପାଣ୍ଡବେ ଯେବେ ଟି ଚାହିଁବେ ବାବୁ ଭାଗ
ତେବେ କାହିଁପାଇଁ ସେ କରିବେଟି ରାଗ ।
ଏରୂପେ ବେଦବ୍ୟାସ ମୁଖୁଁ ବାଣୀ ଶୁଣି
କହିଲେ ପୁଣି ଧୃତରାଷ୍ଟ୍ର ନରମଣି ।
ଆପଣା କାର୍ଯ୍ୟେ ସବୁ ଲୋକ ପାଇ ମୋହ
ଧନ ଅର୍ଜିବାରେ ବଳାବନ୍ତି ସ୍ନେହ ।
ମୁଁ ତ ଲୋକ ମଧ୍ୟରୁ ବାହାର ନୁହଇ
ମୋତେ ନିନ୍ଦା ନ କର ଆହେ ଋଷିସାଇଁ ।

ମାଗୁଅଛି କର ଯୋଡ଼ି ହେ ମହାମତେ
ଅନ୍ତକାଳରେ ଭକ୍ତି ଦେବା ହେବ ମୋତେ ।
ପୁଅମାନେ ମୋହର ବଶ ତ ନୁହନ୍ତି
ତାଙ୍କୁ କହିବାକୁ ନ ହିଁ ମୋର ଯୁକତି ।
କୁରୁ ପାଣ୍ଡବଙ୍କ ତ ପୂଜ୍ୟ ପାଦ ତୁମ୍ଭେ
ତୁମ୍ଭ ଆଗେ ଆଉ କହିବୁଁ କିସ ଆମ୍ଭେ ।
ବେଦବ୍ୟାସ ବୋଇଲେ ଆହେ ଧୃତରାଷ୍ଟ୍ର
ଯା ଇଚ୍ଛା କରୁଛ ପୃଚ୍ଛ ତା ହୋଇ ହୃଷ୍ଟ ।
ଧୃତରାଷ୍ଟ୍ର ବୋଇଲେ ଯୁଦ୍ଧେ ଜୟ ଚିହ୍ନ
କେଉଁ କଥାମାନ କହ ତା ତପୋଧନ ।
ବ୍ୟାସ ବୋଇଲେ ଆହେ ଅମ୍ବିକାଙ୍କ ପୁତ୍ର
ଦକ୍ଷିଣାବର୍ତ୍ତି ହୋଇ ହୋମ-ସାନ୍ତିହୋତ୍ର ।
ନିର୍ଧୂମକୁ ବହ୍ନି ଯାହାର ଜଳଇ
କ୍ଷୀମ ଶତ୍ରୁଜନମାନେ ସେ ଜଣଇଁ ।
ମୃଦଙ୍ଗ ଶଙ୍ଖ ଯା ଗମ୍ଭୀରେ ଧ୍ୱନ କରେ
ପିବଜୟ ତାର ନୁହଇ ଶତ୍ରୁଙ୍କରେ ।
ଚନ୍ଦ୍ର ସୂର୍ଯ୍ୟ ଯାହାକୁ ଦିଶନ୍ତି ନିର୍ମଳ
କରିଦଏ ଶତ୍ରୁ କୁଳକୁ ସେ ନିର୍ମଳ ।
ଯୁଦ୍ଧକୁ ଯିବାକାଳେ ଯାହା ପଛେ କୁଆ
ବୋବାଏ ହୋଏ ଶତ୍ରୁ-ଗୁଣକୁ ସେ ନିଆଁ ।
ଯିବାକାଳରେ ରାଜ ହଂସ କ୍ରୌଞ୍ଚ ଶୁକ
ଯାକୁ ପ୍ରଦକ୍ଷିଣ କରନ୍ତି ଗୁଡ଼ି ବକ ।
ତାହାର ସଙ୍ଗତରେ ଜୟଟି ଗୋଡ଼ାଇ
ଯାଏ ଜାଣ ହେ ନରପତି କହୁଥାଇଁ ।
ଅଳଙ୍କାର କବଚ ଯା ଦେହରେ ତେଜ
ବଢ଼ଇ ସେ ଯୁଦ୍ଧରେ ଜିଣେ ମହାରାଜ ।
ଯୁଦ୍ଧ କଲେ ଯାହାର ନୁହେଁ ଫୁଲ ମ୍ଳାନ
ତାହାକୁଟି ପ୍ରାପତ ହୋଏ ଜୟସ୍ଥାନ ।
ଯିବାକାଳେ ପବନ କୂଳେ ମେଘ ବୃଷ୍ଟି
ପଛୁଁ କଲେ ଜାଣ ସେ ଲଭେ ଜୟ ସୃଷ୍ଟି
ଯେତେକ କଥା କହିଲଇଁ ବିପରୀତ
ଯାକୁ ହୋଏ ଜାଣ ସେ ହୋଏ ରଣେ ହତ
ସେନାମଧ୍ୟରୁ ଯେବେ ଯୋଟିଏ ଦଳାଏ
ସେ ସକାଶୁଁ ଭାଜନ୍ତି ସମସ୍ତେଟି ସପ୍ତେ ।
ପଳାଇବା ସେନାଙ୍କୁ ଯୋଟିଆଇ ରଣ
କରିବାର କଷ୍ଟ ହୁଅଇ ନୃପ ଜାଣ ।

ଏଣୁ ସକାଶରୁ ଜାଣିବା ରଥୀମାନେ
ସେନା ଭଗ୍ନବାକୁ ଜଗନ୍ତି ଅବଚ୍ଛିନ୍ନେ ।
ସାମ ଦାନ ଜୟଟି ଅଟଇ ଉତ୍ତମ
ଭେଦରେ ଜିଣିଲେ ବୋଲାଏ ସେ ମଧ୍ୟମ ।
ଯୁଦ୍ଧ ଜୟ ରାଜନ ଅଧମ ଅଟଇ
ଏହା ଜାଣି ତାହା ନ କର ନରସାଇଁ ।
ନ ପଳାଇବା ଲୋକ ପାଞ୍ଚକୁ ପଞ୍ଚାଶ
ଜିଣି ତ ନ ପାରନ୍ତି ଆହେ ନରଈଶ ।
ଏକା ସିଂହଟାକୁ ବଳୁଆ କୋଟି କୋଟି
ଘୋଟି ହେଲେ ନେଇ ନ ପାରନ୍ତି ପ୍ରାଣଟି ।
ଯୁଦ୍ଧରେ ଜୟକଥା ଦଇବ ଆୟତ୍ତ
ପୁରୁଷର ଏ ସାଧ୍ୟ ନୋହେ ନୃପସୁତ ।
ଆହେ ଜନ୍ମେଜୟ ଏରୂପେ ବ୍ୟାସ କହି
ସେହିକ୍ଷଣି ସେଠାରେ ଲୁଚିଇଲେ ଦେଖ ।
ବ୍ୟାସ ଯିବା ଉତ୍ତାରୁ ଫୁଟିଯିବା ଆଖି
ଲେଉଟାଇଣ ଧୃତରାଷ୍ଟ୍ର ହୋଇ ଦୁଃଖୀ ।
ଟିକକ ଉତ୍ତାରୁ ସେ ପକାଇ ନିଃଶ୍ୱାସ
ସଞ୍ଜୟେ ଡାକଲେ ପାଖକୁ ଆସ ଆସ ।
ଏ ଧନା କହଲେ କ୍ଷତ୍ରିୟେ ପୃଥ୍ୱୀପାଇଁ
ଯୁଦ୍ଧରେ ଛାଡ଼ନ୍ତି ଦେହ ଦେଖୁଥାଇ ।
ଆମ୍ଭେ ତ ମଧ୍ୟ ପୃଥ୍ୱୀ ପାଇଁ ଯୁଝିବାକୁ
ଡକାଇ ଆଣିଥାଇଁ ନୃପମଣ୍ଡଳକୁ ।
ପୃଥ୍ୱି ତ ସବୁ କଥାମାନଙ୍କରେ ଭବ୍ୟ
ତୁମ୍ଭେ ତ ଜ୍ଞାନଚକ୍ଷୁ ପାଇଅଛ ଦିବ୍ୟ ।
ଏଣୁ ସକାଶରୁଟି ପଚାରୁଛି ମୁହିଁ
ପୃଥିବୀର କି ଗୁଣ କହ ତା ବତାଇ ।
ସଞ୍ଜୟ ବୋଇଲେ ତ ପୃଥିବୀର ଗୁଣ
କହିବା ବସି ତାହା ଶୁଣ ନରରାଣ ।
ପୃଥ୍ୱୀରେ ପ୍ରାଣୀମାନେ ସ୍ଥାବର ଜଙ୍ଗମ
ଜନମକୁ ପାଉଅଛନ୍ତି ନରୋତ୍ତମ ।
ଜରାୟୁଜ ଅଣ୍ଡଜ ସ୍ୱେଦଜ ତ୍ରି ପ୍ରକାର
ଜନମ ହୋଉଛି ଜଙ୍ଗମମାନଙ୍କର ।
ଜରାୟୁଜ ଜନ୍ମେ ମନୁଷ୍ୟ ପଶୁ ସାର
ଧର୍ମ ଅଧରମ ସେ କରଇ ବେଭାର ।
ପୁଣି ସେ ଜରାୟୁଜେ ବନ ଗ୍ରାମ ବାଣ୍ଟି
ରହନ୍ତି ହୋଇଦଳ ସାତୋଟି ସାତୋଟି ।

ସିଂହ ବ୍ୟାଘ୍ର ବରାହ ମହିଷ ବାରଣ
ବାନର ଋକ୍ଷ ମିଶି ସାତେ ଥାନ୍ତି ବଣ ।
ଗାଈ ମେଣ୍ଢା ଛେଳି ଗଧ ଯେ ଅଶ୍ୱତର
ଅଶ୍ୱ ନରମାନଙ୍କ ଗ୍ରାମରେ ବେଭାର ।
ଏ ଚଉଦଙ୍କ ସକାଶରୁ ଯାଗ ହୋଏ
ଏ ସକାଶୁଁ ଏହା କହିଲି ମୁହିଁ ରାୟେ ।
ଗ୍ରାମବାସୀମାନଙ୍କେ ନର ଶ୍ରେଷ୍ଠ ଜାଣ
ବନବାସୀମାନଙ୍କେ ସିଂହଟି ପ୍ରଧାନ ।
ସ୍ଥାବରେ ପୃଥ୍ୱୀ ଭେଦ ବାହାରିବା ଯେନ
ଉଦ୍ଭିଜ୍ଜ ତାହାଙ୍କର ଅଟେ ନାମସ୍ଥାନ ।
ବୃକ୍ଷ ଗୁଳ୍ମ ଲତା ବ ଉଁଶ ତୃଣ ଜାତି
ପଞ୍ଚ ପରକାରେଟି ଏହାଙ୍କର ଖ୍ୟାତି ।
ଏରୂପେ ଊନବିଂଶ ପ୍ରକାର ସ୍ଥାବର
ଜଙ୍ଗମ ହୁଅନ୍ତି ହେ ଜାଣ ନୃପବର ।
ପଞ୍ଚମହାଭୂତେ ତ୍ୟାଇଣ ମିଶାଇ
ଗାୟତ୍ରୀ କରନ୍ତି ସର୍ବ ବୁଦ୍ଧିସାଇଁ ।
ଗାୟତ୍ରୀ ମନ୍ତ୍ର ଯେ ଉତ୍ତମ ଭରି ଜାଣେ
ତାହାର ନାଶ ନ ପଡ଼ଇଟି ପରାଣେ ।
ସବୁଠାରୁ ଭୂମି ଅଟଇ ପରାୟଣ
ଏଣୁ ସକାଶୁ ଭୂମିପତି ବଡ଼ ଜାଣ ।
ଏହା ଜାଣି ନୃପେ କରୁପେ ଭୂମି ଗୁଡ଼
ରକ୍ତ ପାଶଦେଟି ବନରେ ଦୁଃଖେ ପଡ଼ ।
ଧୃତରାଷ୍ଟ୍ର ବୋଇଲେ ନଦୀ ପରବତ
ନାମ ପୃଥ୍ୱୀ ପରିମାଣ ମୋ ଆଗେ କହ ତ
ଏ ବାହାରେ ଦେଶ ବନ ତ ଏ ମଣ୍ଡଳର
କେତେଅଛନ୍ତି ତା ମଧ୍ୟ କହ ସବରରେ ।
ସଞ୍ଜୟ ବୋଇଲେ ହେ ପଞ୍ଚମହାଭୂତ
ଏ ଜଗତଯାକରେ ହୋଇଛନ୍ତି ସ୍ଥିତ ।
ତୁମ୍ଭ ଅବା ବୋଲବ କେ କେ ସେ ଅଟନ୍ତି
ବତାଇ ତୁମ୍ଭଙ୍କୁ କହିବା ନରପତି ।
ଭୂମି ଜଳ ପବନ ଦହନ ଗଗନ
ଏ ପାଞ୍ଚଙ୍କେ ଭୂମିଟି ଅଟଇ ପ୍ରଧାନ ।
ରୂପ ରସ ଶବ୍ଦ ସ୍ପରଶ ଗନ୍ଧ ଭୂମି
ବହୁଛି ଜାଣ ଆହେ ଧୃତରାଷ୍ଟ୍ର ସ୍ୱାମି ।
ଗନ୍ଧକୁ ଛାଡ଼ି ଚାରି ଗୁଣ ସଲିଳର
ରସ ଗନ୍ଧ ଛାଡ଼ି ତ୍ରିଗୁଣ ଅନଳର ।

ରୂପ ରସ ଗନ୍ଧକୁ ପବନ ଘୁଡ଼ିଛୁ
କେବଳ ଶବ୍ଦଟି ଆକାଶରେ ଅଛୁ ।
ଏ ପାଞ୍ଚ ମହାଭୂତ ହୋଇଲେ ବିଷମ
ଜଗତର କାରଣ ହୁଏ ନୃପୋତ୍ତମ ।
ପଞ୍ଚମହାଭୂତର ଜମାଣେକୁ ଲୋକ
ତତ୍ତ୍ୱକ ଜାଣୁଛନ୍ତି ହେ ନୃପନାୟକ ।
ଜମ୍ବୁଦ୍ୱୀପ ମଣ୍ଡଳ ଆକାର ନୃପବର
କହିବା ଶୁଣ ଆପେ ମନ ଏକ କର ।
ସୁବାସିତ ଜଳକୁ ବହିକରି ନଦୀ
ବହି ଯାଉଅଛନ୍ତି ଦୂଇତଟ ଭେଦି ।
ସାରସସମୂହରେ ସାରସସମୂହ
କ୍ରୀଡ଼ା କରୁଛନ୍ତି ହ୍ରଦରେ ବହି ସ୍ନେହ ।
ଗିରିମାନେ ବୃକ୍ଷ ପୁଷ୍ପରେ ମଣ୍ଡି ହୋଇ
ମଣ୍ଡୁଅଛନ୍ତି ଜମ୍ବୁଦ୍ୱୀପେ ଯୋକେ ରହି ।
ସ୍ୱଳପଟେ ଲବଣ ସିନ୍ଧୁ ବାସ ପରି
ଜମ୍ବୁଦ୍ୱୀପ ମଣ୍ଡଳ ଅଛୁ ବେଢ଼ି କରି ।
ଦର୍ପଣେ ସ୍ୱରୂପ ଯେ ରୂପେ ଦୃଶ୍ୟମେ
ଜମ୍ବୁଦ୍ୱୀପ ସେରୂପେ ଦିଶେ ଚନ୍ଦ୍ରବିମ୍ବେ ।
ଏ ହାବାରେ ଚନ୍ଦ୍ରବିମ୍ବରେ ଯେ ପିପ୍ପଳ
ଶଶଦ୍ୱୀପ ଦିଶୁଅଛୁ ସେ ଅନ୍ତରାଳ ।
ସେ ଦ୍ୱୀପଙ୍କରେ ସାର ଅଟେ ଜମ୍ବୁଦ୍ୱୀପ
ମୋହର କହିବାରୁ ଶୁଣ ମନେ ନୃପ ।
ସମ୍ବନ୍ଧ ଜମ୍ବୁଦ୍ୱୀପ ଅଟଇ ଅଲକ୍ଷ୍ୟ
ପ୍ରଳୟକାଳରେଟି ନରେ ତାକୁ ଲକ୍ଷ୍ୟ ।
ଏହା ଶୁଣିଣ ଧୃତରାଷ୍ଟ୍ର ଦଣ୍ଡଧାରୀ
ବୋଇଲେ କହ ଜମ୍ବୁଦ୍ୱୀପକୁ ବିସ୍ତାରି ।
ସଞ୍ଜୟ ବୋଇଲେ ହେ ପୂର୍ବରୁ ପଶ୍ଚିମ
ସମୁଦ୍ରକୁ ବ୍ୟାପିଣ ପର୍ବତ ଉତ୍ତମ ।
ଛଅଟି ରହିଛନ୍ତି ତାଙ୍କ ନାମମାନ
କହିବା ଶୁଣ ସ୍ୱୟେ ହୋଇ ସାବଧାନ ।
ହିମାଳୟ ହେମକୂଟ ନିଷଧ ନୀଳ
ଶ୍ୱେତ ଶୃଙ୍ଗୀ ମିଶି ଏ ଛଅଟି ଅଚଳ ।
ମଧ୍ୟରେ ନାନାଜାତି ଦେଶମାନେ ଛନ୍ତି
ନାନାଜାତିର ପ୍ରାଣୀମାନଙ୍କୁ ବହନ୍ତି ।
ଜମ୍ବୁଦ୍ୱୀପ ଉତ୍ତରେ ହିମେ ହୈମବତ
ହରିବର୍ଷ ଖଣ୍ଡ ଅଛୁ ହେ ନୃପସୁତ ।

ପୂର୍ବ ପଶ୍ଚିମରେ ମେରୁର ଦୁଇକତି
ନିଷଧ ନୀଳଯାଏ ଦୁଇ ଗିରି ଛନ୍ତି ।
ସେ ପର୍ବତ ଦୁହିଙ୍କି ଆହେ ନରସାଇଁ
ମାଲ୍ୟବାନ ଗନ୍ଧମାଦନ ବୋଲି କହି ।
ଗନ୍ଧମାଦନ ମାଲ୍ୟବାନର ମଧ୍ୟରେ
ମେରୁ ରହିଛନ୍ତି ଅତ୍ୟନ୍ତ ଯେ ଧୀରେ ।
ଯୋଡ଼ା ଷୋଳସହସ୍ର ଯୋଜନ ଚଉରାଶି
ସହସ୍ର ଯୋଜନଟି ଉଚକୁ ପ୍ରକାଶି ।
ରହିଅଛୁ ମେରୁଟି ମହାଗିରିବର
ଦେବତାମାନଙ୍କର ଅଟଇ ସେ ଘର ।
ମେରୁ ପୂର୍ବପଶ୍ଚିମେ ଭଦ୍ରାଶ୍ୱ କେତୁମାଳ
ଦ୍ୱୀପ ରହିଅଛୁ ଜାଣ ଯେ ମହୀପାଳ ।
ମେରୁଙ୍କରେ ସବୁ ପକ୍ଷୀଙ୍କ ଦେହ ସୁନା
ଦେଖି ଦୁଃଖ କରି ସୁମୁଖ ମହାମନା ।
ମେରୁ ଛାଡ଼ି ଆନ ସ୍ଥାନରେ ଆଶ୍ରେ କଲେ
ଏଥିରେ ଭଲ ମନ୍ଦ ନାହିଁ ସେ ବୋଇଲେ ।
ସେ ସୁମୁଖ ଅଟନ୍ତି ଗରୁଡ଼ଙ୍କ ସୁତ
ମୁଁ କହିବାରୁ ଜାଣ ଦୁର୍ଯ୍ୟୋଧନ ତାତ ।
ମେରୁକୁଟି ସୂର୍ଯ୍ୟ ପବନ ଚନ୍ଦ୍ରଦେବ
ପ୍ରଦକ୍ଷିଣ କରୁଅଛନ୍ତି ବହି ଭାବ ।
ସେ ମେରୁରେ ପଥର ରହିଛନ୍ତି ଯେତେ
ଅଷ୍ଟ ରତନରେଟି ମଣ୍ଡିତ ସମସ୍ତେ ।
ସେ ମେରୁରେ ବ୍ରହ୍ମା ରୁଦ୍ରାଦି ଦେବତାଏ
ଯାଗ କରି ଦକ୍ଷିଣା ଦ୍ୟନ୍ତି ଅତିଶୟେ ।
ଭୃଗୁ ଆଦି ନାରଦାଦି ଋଷି ତହିଁ ଥାନ୍ତି
ସ୍ତୁତି କରି ଦେବଙ୍କ ମାନସ ତୋଷନ୍ତି ।
ସପ୍ତଋଷି ଯେନ କଶ୍ୟପ ପ୍ରଜାପତି
ସେ ମେରୁ ପର୍ବତରେ ପର୍ବାହ କରନ୍ତି ।
ସେ ମେରୁଙ୍କ ଶିଖରେ ଘର ଶୁକ୍ରଙ୍କର
ତହୁଁ ଧନ ଆଣି କୁବେର ଧନେଶ୍ୱର ।
କୁବେରଙ୍କ ଷୋଳଭାଗରୁ ଭାଗୁଟିଏ
ଧନ ପାଇଣ ଧନୀ ବୋଲାନ୍ତି ସର୍ବଏଁ ।
ମେରୁଙ୍କ ଉତ୍ତର ଭାଗରେ କର୍ଣ୍ଣିକାର
ବନ ଅଛୁ ତହିଁ ଅଛନ୍ତି ମହେଶ୍ୱର ।
ସିଦ୍ଧଙ୍କ ବିନା ସେ ଶିବଙ୍କୁ ଆନ ଲୋକ
ମହୀରେ କେ ଅଛୁ କରିବ ଅବଲୋକ ।

ମେରୁଙ୍କର ଶିଖରୁ ଶୁଭ୍ରଧାର ବହି
ଶୁଭ୍ର ଚନ୍ଦ୍ରହ୍ରଦେ ପଡନ୍ତି ଗଙ୍ଗା ଯାଇଁ ।
ସେ ଗଙ୍ଗାଙ୍କୁ ସହସ୍ର ବର୍ଷ ପରଯନ୍ତେ
ଶିବ ଧରିଥିଲେ ମସ୍ତକେ ମହୀପତେ ।
ମେରୁଙ୍କର ପଶ୍ଚିମପାଖେ କେତୁମାଳ
ବର୍ଷ ଅଛି ବହୁକରିଟି ଶୋଭାଜାଳ ।
ସେ କେତୁମାଳେ ଯେତେ ଲୋକେ ରହନ୍ତି
ସହସ୍ର ଦଶ ସମ୍ବତ୍ସର ଯେ ଜୀଅନ୍ତି ।
ତାଙ୍କ ସ୍ତ୍ରୀମାନଙ୍କ ଦେହ ସୁନାକାନ୍ତି
ଅପସରୀମାନଙ୍କ ଗରବ ଭାଙ୍ଗନ୍ତି ।
ଗନ୍ଧମାଦନ ଶୃଙ୍ଗେ ଅଛନ୍ତି କୁବେର—
ଦେବ କରି ଘର ହେ ଜାଣ ନୃପବର ।
ଗନ୍ଧମାଦନ ପାଖେ ସ୍ଥିତ ଯେ ଗିରିମାନ
ତହିଁ ଘର କରି ଅଛନ୍ତି ଯେତେ ଜନ ।
ଏକାଦଶସହସ୍ର ବର୍ଷଯାକେ ସେହି
ଯମଙ୍କୁ ନ ମାନନ୍ତି ଥାନ୍ତି ଯେଣୁ ଜୀଇଁ ।
ତାଙ୍କ ସ୍ତ୍ରୀମାନଙ୍କ ଦେହ ନୀଳୋତ୍ପଳ
ପୁରୁଷଙ୍କୁଟି ରଜନ କରଇ ଦୁର୍ବଳ ।
ଶ୍ୱେତ ହିରଣ୍ୟକ ଐରାବତ ବରଷ
କ୍ରମେ କ୍ରମେ ଉତ୍ତରେ ହୋଇଛି ପ୍ରକାଶ ।
ଭରତ ଖଣ୍ଡ ଉତ୍ତରକୁ ଧନୁପରି
ଇଳାବୃତଖଣ୍ଡ ମଧ୍ୟରେ ଦଣ୍ଡଧାରୀ ।
ଭରତଖଣ୍ଡରୁ ଉତ୍ତରକୁରୁଯାଏ
କ୍ରମରେ ଗୁଣରେଟି ଅଧିକ ହେ ରାୟେ ।
ହେମକୂଟର ନିକଟରେ କଇଳାସ
ଅଛି କୁବେରଙ୍କର ଅଟଇ ସେ ବାସ ।
କଇଳାସ ଉତ୍ତରେ ମଇନାକ ଗିରି
ରହିଅଛି ଦେବେ ଥାଆନ୍ତି ତହିଁ ପୂରି ।
ସେ ମୈନାକ ତଟେ ରହିଛି ବିନ୍ଦୁସର
ସୁନାବାଳିଯ କରି ଅଟଇ ସେ ଘର ।
ପୂର୍ବେ ଭଗୀରଥ ବିନ୍ଦୁସରେ ରହି
ଗଙ୍ଗାଙ୍କୁ ଦେଖିବାକୁ କ୍ଷଣ କଲେ ଚେଷ୍ଟି ।
ଇନ୍ଦ୍ର ବିନ୍ଦୁସରରେ କରି ମହାଯାଗ
ଅଲକ୍ଷ୍ୟ ସିଦ୍ଧି ଲଭି କଲେ ମହାଭାଗ ।
ବିନ୍ଦୁସରରେ ରହିକରି ପ୍ରଜାପତି
ସବୁ ପ୍ରାଣୀମାନଙ୍କୁ ସର୍ଜିଲେ ନୃପତି ।
ନର ନାରାୟଣ ଯେ ବ୍ରହ୍ମା ରୁଦ୍ର ବୁଲେ
ବିନ୍ଦୁସରେ ରହିଣ ତପରେ ସଢ଼ିଲେ ।
ବ୍ରହ୍ମଲୋକରୁ ଗଙ୍ଗା ଆସି ବିନ୍ଦୁସରେ
ପଡ଼ି ବହିଗଲେ ମହୀରେ ସାତଧାରେ ।
ସେ ସାତଧାରଙ୍କର ସାତଗୋଟି ନାମ
କହିବା ବସି ଶୁଣ ହୃଦେ ବହି ପ୍ରେମ ।
ଜମ୍ବୁନଦୀ ସୀତା ଯେ ସିନ୍ଧୁ ସରସ୍ୱତୀ
ବିଶୋକସାରି ଗଙ୍ଗା ନଳିନୀ ନୃପତି ।
ପବିତ୍ରକାରିଣୀ ଏ ସାତଗୋଟି ନଦୀ
ବହିଯାଇ ଅଛନ୍ତି ମହୀତଳ ଭେଦି ।
ସରସ୍ୱତୀଟି ଯେଉଁ ନଦୀ ବୋଲିବନ୍ତି
ଚକ୍ଷୁକୁ କେତେ ସେ ଦିଶନ୍ତି ନ ଦିଶନ୍ତି ।
ହିମାଳୟେ ଋଷ ଶୃଙ୍ଗକ ହେମକୂଟେ
ନିଷଧରେ ଗନ୍ଧର୍ବ ନାଗ ପରକଟେ ।
ଶ୍ୱେତ ପରବତରେ ଦେବତା ଅସୁର
ନୀଳରେ ବ୍ରହ୍ମଋଷିମାନଙ୍କର ଘର ।
ଧୃତରାଷ୍ଟ୍ର ବୋଇଲେ ଉତ୍ତର କୁରୁରେ
କିସ ଅଛି ତାହା ହେ କହ ମୋ ଆଗରେ ।
ସଞ୍ଜୟ ବୋଇଲେ ହେ ରାଜନ ଉତ୍ତର—
କୁରୁରେ ରହନ୍ତି ସିଦ୍ଧି କରି ଘର ।
ନାନାଜାତିରେ ବୃକ୍ଷ ଫଳ ତହିଁ ନିତି
ରହି ପ୍ରାଣୀମାନଙ୍କ ତୋଷୁଅଛି ମତି ।
ଏ ବାହାରେ ତହିଁରେ ଛନ୍ତି କ୍ଷୀର ବୃକ୍ଷ
ଅମୃତ ତୁଲେ ତାହାଙ୍କର କ୍ଷୀର ଲକ୍ଷ୍ୟ ।
ବସ୍ତ୍ର ଆଭରଣ ସେ ବରଷା କରନ୍ତି
ତନ୍ତୀ ସୁନାରଙ୍କି ସେ ଲୋକେ ନ ଜାଣନ୍ତି ।
ସେ ଭୂମି ମଣିଙ୍କରେ ହୋଇଛି ନିର୍ମିତ
ସୁନା ବାଲି ସୂର୍ଯ୍ୟର ପରାୟେ ଦୀପିତ ।
ସ୍ୱର୍ଗରୁ ଚ୍ୟୁତ ହେଲେ ଉତ୍ତର କୁରୁରେ
ରହି ପଛେ ଜନମ ହୁଅନ୍ତି ମହୀରେ ।
ପୁରୁଷ ସ୍ତ୍ରୀ ଦୁହେଁ ଉତ୍ତରକୁରୁଙ୍କରେ
ଯାମଳ ହୋଇ ଜନ୍ମ ମାତନ୍ତି ରତିରେ ।
ଏକାଦଶ ସହସ୍ର ବରଷ ଆୟୁଷ
ଭୋଗ କରି ପ୍ରାନ୍ତେ ଯାଆନ୍ତି ଯମପାଶ ।
ଉତ୍ତରକୁରୁ ଲୋକେ ମରନ୍ତି ଯେବେଟି
ଭାରୁଣ୍ଡ ପକ୍ଷୀ ନେଇଯାଏ ତ ବେବେଟି ।

ମେରୁପୂର୍ବ ଭଦ୍ରାଶ୍ୱବର୍ଷ ଲକ୍ଷେକୁ
କହିବା ଏବେ ସଂକ୍ଷେପେ ବତାଇ ତୁମ୍ଭଙ୍କୁ ।
ଭଦ୍ରାଶ୍ୱଦେଶେ ଭଦ୍ରଶାଳବନେ କାଳ
ରସାଳ ଗଛ ଅଛି ତା ଫଳ ବିଶାଳ ।
ସେହି ରସାଳ ଗଛ ଯୋଜନେ ଉଚ୍ଚତ
ନ ପାରନ୍ତି ପକ୍ଷୀ ଟପ୍ପିକି ହୋଇ ଗତ ।
ଭଦ୍ରାଶ୍ୱରେ ଯେତେ ପୁରୁଷ ସ୍ତ୍ରୀ ଅଛନ୍ତି
କୈଳାସ ଗିରି ପରି ତାହାଙ୍କ କାନ୍ତି ।
ଅୟୁତେ ସମ୍ବତ୍ସରେ ଆୟୁଷ ତହିଁରେ
ଜରା ନୋହେ ତ କାଳ-ଆମ୍ବ ଖାଇବାରେ ।
ନିଷଧର ଉତ୍ତରେ ଦକ୍ଷିଣେ ମେରୁର
ରହିଅଛି ଟି ମହାଜମ୍ବୁ ତରୁବର ।
ସେ ଜମ୍ବୁ ବୃକ୍ଷତଳେ ଯେ ଯାହା ବାଞ୍ଛରେ
ବସିବାଠାରେ ସୁଖେ ସେ ତା ଲଭିପାରେ ।
ଜମ୍ବୁବୃକ୍ଷ ଲାଗି ଏ ଦ୍ୱୀପ ଜମ୍ବୁଦ୍ୱୀପ
ବୋଲାଉଅଛି ଆହେ ଦକ୍ଷିଣା ଅଧିପ ।
ଏକାଦଶ ଶତ ଯୋଜନ ଉଚ୍ଚ ବୃକ୍ଷ
ମହାପରବତକୁ ହୋଇପାରେ ଲକ୍ଷ୍ୟ ।
ପଚାଶ ଅରତ୍ନି ସ୍ଥୂଳ ତାହା ଫଳଟି—
ମାନ ଗଣ୍ଡ୍ରାଙ୍କେ ଭୂମିରେ ପାଚି ଫୁଟି ।
ସେ ଫଳରୁ ରସ ବାହାର ରଙ୍ଗ ହୋଇ
ବହି ଯାଉଅଛି ମେରୁକୁ ବେଢିଆଇ ।
ସେ ନଦୀ ଯେତେ ଭୂମିଯାକ ମାଡ଼ଯାଏ
ତା ପଙ୍କଯାକ ସବୁ ସୁବର୍ଣ୍ଣ ହୋଇଏ ।
ଏହି ସକାଶରୁ ଟି ସୁବର୍ଣ୍ଣର ନାମ
ଜାମ୍ବୁନଦ ବୋଲନ୍ତି ଜାଣ ନୃପୋତ୍ତମ ।
ଜମ୍ବୁଫଳ ରସ କରଇ ଯେତ୍କି ପାନ
କ୍ଷୁଧା ପିପାସାକୁ ସେ କରଇ ବର୍ଜନ ।
ଜାମ୍ବୁନଦ ସୁନା ଯେ ପାଟମୋକ ପରି
ବଇନ ଧରିଥାଏ ଆହେ ଦଣ୍ଡଧାରି ।
ମାଲ୍ୟବାନ ଶୃଙ୍ଗେ ସମ୍ବର୍ତ୍ତକ ଅଗ୍ନି ଛନ୍ତି
ପ୍ରବର୍ତ୍ତିଲେ ସେହିଟି ପ୍ରଳୟ କରନ୍ତି ।
ଏକାଦଶ ସହସ୍ର ଯୋଜନ ମାଲ୍ୟବାନ
ଉଚ୍ଚ ସେଠା ଲୋକେ କାଞ୍ଚନ କାନ୍ତିମାନ ।
ବ୍ରହ୍ମଲୋକରୁ ଚ୍ୟୁତ ହୋଇବା ଲୋକେ ଆସି
ହୁଅନ୍ତି ଟି ସଜନ ମାଲ୍ୟବାନବାସୀ ।

ତପୋବଳେ ଦ୍ୱିଜ ହୁଅନ୍ତେ ଉର୍ଦ୍ଧ୍ୱରେତା
ତାହାଙ୍କର ସମାନ ହୁଅନ୍ତି ଦେବତା ।
ଲେଖାରେ ସେ ଷାଠିଏ ସହସ୍ର ଅଛନ୍ତି
ଅରୁଣଙ୍କ ଆଗରେ ନାଚ ବାହାରନ୍ତି ।
ସୂର୍ଯ୍ୟଙ୍କରେ ଷାଠିଏ ସହସ୍ର ବରଷ
ତାହି ଚନ୍ଦ୍ରବଂଶ ହୁଅନ୍ତେ ପରବେଶ ।
ଶ୍ୱେତ ଦକ୍ଷିଣରେ ନିଷଧ ଉତ୍ତରରେ
ରମଣକବର୍ଷ ତ ଅଛି ଏ ମଧ୍ୟରେ ।
ସେ ବର୍ଷରେ ଯେତେକ ହୁଅନ୍ତି ଜନମ
ଆଚରନ୍ତି ସଜନ ଉତ୍ତମ କରମ ।
ଅୟୁତେ ପନ୍ଦରଶ ବର୍ଷ ତହିଁ ଥାଇଁ
ଯାଆନ୍ତି ସ୍ୱାନ୍ତେ ଟି ପ୍ରେତଲୋକସାଇଁ ।
ମାଳ ଦକ୍ଷିଣେ ନିଷଧ ଉତ୍ତରେ ରହେ
ହିରଣ୍ମୟ ବର୍ଷ ହିରଣ୍ଵତୀ ନଦୀ ବହେ ।
ଗରୁଡ଼ଟି ସେହି ଦେଶରେ ଜନ୍ମ ହୋଇ
ଅମୃତକୁ ଆଣିଲେ ଜିଣି ସୁରସାଇ ।
ସେ ଦେଶରେ ଯେତେକ ଲୋକ ରହିଛନ୍ତି
ଧନ ବସ୍ତ୍ର ଦୁଃଖ କେବେ ଟି ନ ଜାଣନ୍ତି ।
ଦ୍ୱାଦଶ ସହସ୍ର ଯେ ପଞ୍ଚାଶ ବରଷ
ସେ ଦେଶଲୋକଙ୍କର ଅଟଇ ଆୟୁଷ ।
ହିରଣ୍ମୟ ବର୍ଷେ ପର୍ବତୁଟାଏ ଅଛି
ତିନ ଶୃଙ୍ଗ ଏ ତିନ ଗୁଣକୁ ବହିଛି ।
ମଣି ସୁନା ରତ୍ନରେ ହୋଇଣ ମଣ୍ଡିତ
ହେଉଅଛି ସରବ ଜନଙ୍କର ଚିତ୍ତ ।
ସେ ଶୃଙ୍ଗରେ ଶାଣ୍ଡିଲ ବ୍ରାହ୍ମଣୀ ଅଛନ୍ତି
ତପସ୍ୟାରେ ଦେହକୁ କ୍ଷୀଣ କରିଛନ୍ତି ।
ଶୃଙ୍ଗୀର ଉତ୍ତରରେ ଐରାବତ ବର୍ଷ
ଦେବଲୋକଚ୍ୟୁତ ଲୋକଙ୍କ ତହିଁ ବାସ ।
ପଦ୍ମପତ୍ର-ନେତ୍ର ଯେ ପଦ୍ମବର୍ଣ୍ଣ ବର୍ଣ୍ଣ
ସହସ୍ର ତେରବର୍ଷ ସେ ଲୋକେ ଥାନ୍ତି ଥାଇଁ ।
କ୍ଷୀରସମୁଦ୍ରଙ୍କର ଉତ୍ତରେ ସୁବର୍ଣ୍ଣ
ଶଙ୍ଖେଛନ୍ତି ବଇକୁଣ୍ଠ ଭଗବାନ ।
ଆଠଟି ଚକ୍ର ସେ ଶଗଡ଼େ ଲାଗିଥାଏ
ମନ ପବନରୁ ଅଧିକ ଗମିଯାଏ ।
ସେହିଟି ତନଲୋକ ହରତା କରତା
ଯଜ୍ଞବାନ ଦକ୍ଷିଣାର ତ ଅଧିଷ୍ଠାତା ।

ବଇଶମ୍ପାୟନ ବୋଇଲେ ହେ ରାଜନ
ସଞ୍ଜୟଠାରୁ ଶୁଣି ଏରୂପେ ବଚନ ।
ଧୃତରାଷ୍ଟ୍ର ରାଜା ହୃଦରେ ଚିନ୍ତା ବନ୍ତ
ଭାବଲେ ମୋ ପୋଏ ଭେଟିବେ ପ୍ରେତସାଇଁ
ସଞ୍ଜୟଙ୍କୁ ପୁଣି ବୋଇଲେ ଧୃତରାଷ୍ଟ୍ର
କାଳ ସବୁ ପ୍ରାଣୀଙ୍କି କରୁଅଛି ଭ୍ରଷ୍ଟ ।
ଜାଣୁଛି ନର ନାରାୟଣ କୃଷ୍ଣାର୍ଜୁନ
କାଳର ବଶ ହୋଇ କରନ୍ତି ଏମାନ ।
ଭାରତଖଣ୍ଡ କଥା ସଞ୍ଜୟ ବିସ୍ତାର
ଶୁଣିବାକୁ ଇଚ୍ଛା ତ ହେଉଛି ମୋହର ।
ପାଣ୍ଡୁଙ୍କର ସୁତେ ମୋହର ଶଏ ସୁତେ
ତା ଭୋଗ କରିବାକୁ ଲୋଭୁଛନ୍ତି ଚିତ୍ତେ ।
ସଞ୍ଜୟ ବୋଇଲେ ପାଣ୍ଡବେ ପୃଥ୍ୱୀ ପାଇଁ
ଲୋଭ କରି ନାହାନ୍ତି ଆହେ ନରସାଇଁ ।
ତୁମ୍ଭ ପୁଅ ସିନା ଶକୁନି କଥା ମାନି
ପାଣ୍ଡବଙ୍କୁ ଯୁଝି ଯାଉଛି ସୈନ୍ୟ ଘେନି ।
ଖାଇବାକୁ ଅନ୍ନ ଯେ ଦେଲେ ପାଣ୍ଡବଙ୍କୁ
ରହିବେ ସେବା କରି ଆସି ସେ ତୁମ୍ଭଙ୍କୁ ।
ଭାରତଖଣ୍ଡ କଥା ପଚାରୁଛ ଯେବେ
କହିବା ଏବେ ଶୁଣ ମନ ଦେଇ ତେବେ ।
ଇନ୍ଦ୍ର ପୃଥୁ ଇକ୍ଷ୍ୱାକୁ ଯଯାତି ଅମ୍ବରୀଷ
ବୈବସ୍ୱତମନୁ ଯେ ମାନ୍ଧାତା ନହୁଷ ।
ଶିବି ଐଳ ଋଷଭ ଆଉ ନୃଗଙ୍କର
ଭାରତଖଣ୍ଡ ପ୍ରିୟ ଅଟେ ନରବର ।
ଋକ୍ଷବାନ ଶକ୍ତିମାନ ଯେ ପାରିପାତ୍ର
ବିନ୍ଧ୍ୟ ସହ୍ୟ ମଳୟ ମହେନ୍ଦ୍ର ସମତ ।
କୁଳପରବତ ତ ଅଟନ୍ତି ହେ ରାୟେ
ଏହାଙ୍କୁ ଜନ୍ମା ଆଉ ପର୍ବତ ସଭିଏଁ ।
ଉତ୍ତମ ମଧ୍ୟମ ଅଧମ ତିନି ଜାତି
ଏ ଭାରତ ଖଣ୍ଡଯାକରେ ଲୋକ ଛନ୍ତି ।
ଏହା ମଧ୍ୟରେ ନଦୀମାନ ଅଛି ଯେତେ
ତାହା ମଧ୍ୟ କହିବା ଶୁଣ ହେ ସୁମତେ ।
ଗଙ୍ଗାସିନ୍ଧୁ ଯେ ଗୋଦାବରୀ ସରସ୍ୱତୀ
ଶତଦ୍ରୁ ଚନ୍ଦ୍ରଭାଗା ଯମୁନା ଦୃଷଦ୍ୱତୀ ।
ବିପାଶା କୃଷ୍ଣବେଣୀ ନର୍ମଦା ବେତ୍ରବତୀ
ବିତସ୍ତା ହସ୍ତିସୋମା ପୟୋଷ୍ଣୀ ଇରାବତୀ ।
ଚିତ୍ରସେନା ଇହବ୍ୟା କୌଶିକୀ ଗୋମତୀ
ଧୂତପାପା ବେଣ୍ୟା ଯେ ଶଲ୍ଲୁ ବେଦସ୍ମୃତି ।
ଦାମ୍ବୀ କର୍ମ୍ନା ଯେ ମାର୍ଗ ଶରାବତୀ
ଅନୁଷ୍ଣା କାପୀ ମହଗୌରୀ ଧୂତବତୀ ;
ଶତକୁମ୍ଭା ସେବ୍ୟା ତ ଶିବା ବୀରବତୀ
ସଦାକାନ୍ତା ଚନ୍ଦନା ଯେ ମହ୍ୱରଣ୍ବତୀ ।
କୃଷଧାରା କାବେରୀ ମହତ୍ ନର୍ମଣ୍ବତୀ
ନଚିତା ବାପୀ ବସ୍ତୁ ହେମା ବେତ୍ରବତୀ ।
ତୁଙ୍ଗବେଣ୍ଣା କୃଲ୍ୟା ଯେ କୃମି ଓଘବତୀ
ବେତସିର ଅଧୃଷ୍ୟା ବର ପାଟଳାବତୀ ।
କୁଣ୍ଡଳା ରାଜନୀ ଇକ୍ଷୁଳା ବୀରକରୀ
ଭୀମରଥୀ ଚନ୍ଦ୍ରମା ସୁବର୍ଣ୍ଣଗଉରୀ ।
ଚିତ୍ରବହା ଚୂଳୁକା ରୋହିଣୀ କରୀଷଣୀ
ନିନ୍ଦବା ସୁପ୍ରୟୋଗା ଯେ ଲୋହତାରଣୀ ।
ଶତବଳୀ ସ୍ଥୂଳବାଲୁକା ତ ଲୋହିତ୍ୟା
ବ୍ରହ୍ମମେଧ୍ୟା ଅଶ୍ମିକ୍ନା ବାହୁଦା ପବହା ।
ବୀରା ମହାପଗା ମହେନ୍ଦ୍ରା ଶାପହରା
ମେନା ପ୍ରମାଳନୀ ଖ୍ୟାପା କୃଷଚୀରା ।
ପୂର୍ବାଭିରାମା ପ୍ରବରା ଯେ ପଲାଶିନୀ
ବିପାପା ଜ୍ୟୋତିରଥା ଦେବକା ବାଲୁନୀ ।
ଶରଦ୍ୱତୀ ବନ୍ଦନା ତମ୍ରା କପିଞ୍ଜଳା
କୁମାରୀ ଧୂର୍ତ୍ତିକରୀ ଉପେନ୍ଦ୍ରା ବହୁଳା ।
ବୃହଦ୍ବତୀ ଶୀଘ୍ରା ସୁଦାମା ଯେ ପିଞ୍ଜଳା
ବୈନଦୀ ଦୁର୍ଗା ଶୋଣା ଚନ୍ଦ୍ରମା ପିଚ୍ଛିଳା ।
ଜମ୍ବୁନଦୀ ଅମ୍ବୁବହା ଯେ ରଥଚିତ୍ରା
ସୁପୁଣ୍ୟା ମାରିଷା ବେଦାଶ୍ୱା ବିଶ୍ୱାମିତ୍ରା ।
ସର୍ବଗଙ୍ଗା ଚିତ୍ରରଥା କୁମାରୀ ମନ୍ଦାକନୀ
ପୁନାବତୀ କୃଷ୍ଣା ମନ୍ଦଗା ଯେ ବ୍ରାହ୍ମଣୀ ।
ଲତା କୋଷା ବରଣା ଅସୀ ଚିତ୍ରୋପଳା
ସଦାନୀରା ସୁରସା ଅନଙ୍ଗା ମଞ୍ଜୁଳା ।
ଅମ୍ବୁବାହିନୀ ସାମାନ୍ୟ ଯେ ମୁକ୍ତିମତୀ
ବୈତରଣୀ ବୃଷଭ ମଳା କୁଞ୍ଜବତୀ ।
ତମସା କରତୋୟା ମହିତା ବ୍ରହ୍ମକନ୍ୟା
ଚିତ୍ରବାହିନୀ ମନ୍ଦବାହିନୀ ଋଷିକୁଲ୍ୟା ।
ଏ ନଦୀମାନେ ଗଙ୍ଗା ସମାନ ଅଟନ୍ତି
ସ୍ନାନ କଲେ ଲୋକଙ୍କୁ ଦିଅନ୍ତି ମୁକତି ।

ଏ ବାହାରେ ସହସ୍ର ସଂଖ୍ୟାରେ ନଦୀମାନେ
ଅପ୍ରକାଶେ ଛନ୍ତି ରାଜନ ଏ ଭୁବନେ ।
ନଦୀଙ୍କର ନାମ ତ ଶୁଣିଲ ମୋଠାରୁ
ଦେଶ ନାମ ଶୁଣ ଭାଷ ଗାଦେବୀ ଗୁରୁ ।
କୁରୁ ଶାଲ୍ୱ ମାଦ୍ରେୟ ପୁଳିନ୍ଦ ପାଞ୍ଚାଳ
ଶୂରସେନ ମତ୍ସ୍ୟ ମାଳବ ଯେ ଜାଙ୍ଗଳ ।
କୁଣ୍ଠ ବୋଧ ସିନ୍ଧୁ ଉତ୍ତରକୋଶଳ
କୁନ୍ତୀ କାଶୀ ଭୋଜ ଯେ କୌଶଲ୍ୟ ମେଖଳ ।
ଚେଦ ମତ୍ସ ଚର୍ମଚଣ୍ଡକ ଯୁଗନ୍ଧର
ପାଣ୍ଡ୍ୟ କୁକୁର ଅବନ୍ତୀ ମଦ୍ରକ ଜଠର ।
ଦଶାର୍ଣ୍ଣ ନୈକପୃଷ୍ଟ ବଦର୍ଭ ଅଶ୍ମକ
ଅଧିରାଜ୍ୟ ସୁରାଷ୍ଟ୍ର କୋଳୁଣ୍ଠ କନକ ।
କୁଳନ୍ଦ ଗୋପରାଷ୍ଟ୍ର କୋଶଳ ଉତ୍କଳ
ସୁବେଷ୍ଟ ଯକୁଲ୍ଲୋମା କଳିଙ୍ଗ କେରଳ ।
ଆଶୀର ବାଟଧାନ ଅନୂପ ବାହ୍ଲକ
ଅଘଟ ବସ ଜପରାନ୍ତ ଉପଚ୍ୟକ ।
ସାମୁଦ୍ର ନିଷ୍କୁଟ ଯେ ମାଦ୍ରେୟ ବାହ୍ଲିକ
କରାତ ବାରବାଣ୍ୟ ମାହିଷ ଦର୍ଶକ ।
କକ୍ଷକୁଟ ପରାନ୍ତ ଅନ୍ଧ୍ର ପ୍ରାବୃଷକ
ସୁଦେଷ୍ଣ ପୂତମତ୍ସ୍ୟ ନିଷଧ ଚୋଯୁକ ।
କାକ ମଲ୍ଲ ଦୂନ କରୁଷ ମେରୁଭୂତ
ମଧୁମତ୍ତ ସୃଞ୍ଜୟ ଆନର୍ତ୍ତ ଗୋମନ୍ତ ।
ମଲ୍ଲରାଷ୍ଟ୍ର ଯାମୁନ ବୈରଂଚ ଅନ୍ତର୍ଗିରି
ସକୁଦ୍ଦହ ବଦର୍ଭ ଦୁର୍ଗଳ ବହିର୍ଗିରି ।
ଶର୍ବ ପୁଣ୍ଡ୍ର ଭର୍ଗ ନିଷାଦ ସୁକନ୍ଦୁକ
ଖରଗଦ ଶୂରସେନ ଯେ ଶଷୀକ ଶକ ।
ବଇଦେହ ସିନ୍ଧୁ ଅଙ୍ଗ ବଙ୍ଗ କୁଷଳ
ମଗଧ ତିଳଭ୍ରର ଇକକ କୁନ୍ତଳ ।
ମଳୟ ଅଟବିଶିଖର ଅନନ୍ତୁର
ବଜୟ ଅନୁପାବୃତ୍ତ ଉପାବୃତ୍ତ ନର ।
କାଶ୍ମୀର ସୁମଲ୍ଲିକ କଶତି ସୌବୀର
ସୁଦାମ କଷ୍ଟଷକ ବାନାୟୁ ଅଶ୍ୱସାର ।
ଭାଟାଜ ଓଡ୍ର ମ୍ଲେଚ୍ଛ ଦର୍ବ ମହୁଉର
ଝଜଲ୍ଲ ଅପବାହ ଦାଶାର୍ଣ୍ଣ ନାଛର ।
ଗୋପାଳ କଚ୍ଛପ ହନ୍ୟମାନ ମାଣ୍ଡଷକ
ତ୍ରୁବଡ଼ ପାବଖସ୍ତ ସୈଣ୍ଡନ୍ତ୍ର ଝିଲ୍ଲିକ ।

ଦଣ୍ଡ ପାଶୁରୋମା ଶୈବାଳ ଦେବୀଚର
ଅଳଦାୟ ଦରଦ ମାଶ୍ରଷ ଅଙ୍ଗାର ।
କନ୍ଦୁକର୍ଣ୍ଣିକ କଚ୍ଛ ବର୍ବର କେରଳ
କୋଙ୍କଣ ବନ୍ଧ୍ୟ ପ୍ରାଚ୍ୟ କେକୟ ପଙ୍କଳ ।
ସୌହ୍ମବ କୃଶଛନ୍ଦ ବ୍ୟତ୍ରକ ତୋମର
ବନବାସକ ସିଦ୍ଧପ୍ରଦ୍ୟାବ ମସର ।
କୋରକ ଶ୍ରୀବାଟ ସ୍ତେଳ ବଦେହ ମୂଷିକ
ତାମ୍ରଲପତନ କାଳଦ କର୍ଣ୍ଣାଟକ ।
ପୌଷ୍ଟ ପାଂଶୁରାଷ୍ଟ୍ର ଦଣ୍ଡକ ଯେ ବଲ୍କଳ
ମାଳବ ନିଷର୍ଭ ବସାତି ସ୍ତନବାଳ ।
ଅପର ବରନକ ପୁଳିନ୍ଦ ବନ୍ଧ୍ୟସ୍ଥଳ
ସାତେକ ସମଙ୍ଗ ଶାଲ୍ୱସେନ ଯେ ମାଳ ।
ମାଳବାଜଟ ନଳକାନନ ଉଳୂତ
ହନ୍ୟମାନ ତଙ୍ଗନ ବନ୍ଧ୍ର ଆମରଥ ।
ଉତ୍ତରମ୍ଲେଚ୍ଛ ଭରଦ୍ୱାଜ ଯେ ସମୀୟ
କାମ୍ବୋଜ ପାରସିକ ପଲ୍ଲବ ସୁନୟ ।
ହବନଟ ବାହୁବଟ ସ୍ତନପ ଋଷିକ
କୁଳନ୍ଦ ନବ ସୁକ୍ଷ ତୋମର ତ୍ରୋଷକ ।
ରମଣ ଆତ୍ରେୟ ଚୀନ କରଭଞ୍ଜକ
ଗିରିଗହ୍ୱର ସ୍ତନଶୋଷିକ ଖାଶୀକ ।
ଏତେକ ଦେଶମାନଙ୍କର ନାମମାନ
ଶୁଣିଲ ହେ ହସ୍ତିନାମଣ୍ଡଳ ରାଜନ ।
ଦେଶକୁ ଅନୁରୂପ ହୋଇଅଛି ଫଳ
ରହିଅଛନ୍ତି ଲୋକେ ଆଦର କପାଳ ।
ନୃପତି ଯେବେ ଭୂମିମଣ୍ଡଳ ପାଳଇ
ଯାହା ଇଚ୍ଛା କରଇ ତାହା ସେ ଲଭଇ ।
ପୃଥିବୀ ଲୋଭେ ନୃପମାନେ ଯୁଦ୍ଧ କରି
ନଚି ବସୁଛନ୍ତି ଯାଇଣ ସ୍ୱର୍ଗପୁରୀ ।
ଦେବତା ମନୁଷ୍ୟର ଆଶ୍ରମ ଏ ଭୂମି
ଜାଣ ହେ ହସ୍ତିନାନଗର ଦେଶସ୍ୱାମୀ ।
ପୃଥିବୀ ବିଷୟରେ ଭୂପତି କାହାର
ଅଛି ବୋଲି ଶୁଣା ନାହିଁଟି ହେ କାନରେ ।
ସ୍ୱଶ ଉପାୟରେ ଯେ କୁରୁ ପାଣ୍ଡୁ ଦୁହେଁ
ମାରି ଛନ୍ତି ହସ୍ତିନାନଗ୍ରୀ ପାଇଁ ମୋହେ ।
ଧରିବା ପ୍ରକାଶରୁ ଭୂମି ଅଟେ ମାତା
ଜାତ କରିବାରୁ ବୋଲିଅଛି ପିତା ।

ଅଇଶ୍ୱର୍ଯ୍ୟ ଦେବାଙ୍କୁ ବୋଲାଉଛୁ ସ୍ୱର୍ଗ
ଭୋଗ କର ତୁମ୍ଭେ ଜାଣ ତ ମହାଭାଗ ।
ଧୃତରାଷ୍ଟ୍ର ବୋଇଲେ ଭରତ ହେମବତ
ଖଣ୍ଡର ଆୟୁ ମଧ୍ୟ ସଞ୍ଜୟ କହତ ।
ସଞ୍ଜୟ ବୋଇଲେ ଭରତଖଣ୍ଡ ବୀର
ଭୁଗ ଭୋଗ ହେଉଛୁ ଆହେ ଦଣ୍ଡଧାରୀ ।
ଆଗ ସତ୍ୟଯୁଗ ହୋଇଣ ପରବେଶ
କରଇ ଚଉଶିଣ ବରଷ ଆୟୁଷ ।
ତ୍ରେତା ତିରିଶିଣ ଦ୍ୱାପରେ କୋଡ଼ିଶେ
ଆୟୁଷ ପ୍ରମାଣ ହେ ଜାଣ ନରଈଶ ।
କଳିଯୁଗେ ଆୟୁଷ ଏତେ କେତେ ବୋଲି
କହି ନ ପାରଇ ବରଷ ଶତେ ଭାଳି ।
ଧର୍ମକୁ ଛାଡ଼ି ବିନା ଲୋକର ଆୟୁଷ
କଳିଯୁଗ ଲୋକ ତ ଅଧର୍ମୀ ପୁରୁଷ ।
ଏଥିକି ଅନୁରୂପ ଆୟୁଷକୁ ବହି
ଭୋଗ କରି ଛାଡ଼ିଯାଆନ୍ତି ଏହି ମହୀ ।
କୃତଯୁଗେ ଯେ ଲୋକମାନଙ୍କ ଜନମ
ଧାର୍ମିକଜନଙ୍କରେ ବୋଲନ୍ତି ସେ ଧନ୍ୟ ।
ତ୍ରେତାଯୁଗର ଲୋକେ ବଳଆର ହୋଇ
ଧର୍ମକୁ ପାଳି ଭୋଗ କରୁଥାନ୍ତି ମହୀ ।
ଦ୍ୱାପର ଯୁଗ ଲୋକ ତହିଁ ଊଣା ହୋଇ
ପରସ୍ପରେ ହିଂସା ହୃଦରେ ଥାନ୍ତି ବହି ।
କଳି ଲୋକେ କ୍ରୋଧ ଅଧର୍ମ ମିଥ୍ୟାକଥା
ସମାଦନ୍ତି ଛାଡ଼ିଦେଇଣ ଲଜବ୍ୟଥା ।
କଳିଯୁଗ ପ୍ରାଣୀମନରେ ଘର ଈର୍ଷା
ସବୁବେଳେ ଆସିଛି କରିଥାଏ ବସା ।
ଧୃତରାଷ୍ଟ୍ର ବୋଇଲେ ଶାଳ୍ମଳୀ ଜମ୍ବୁ କୁଶ
ଶାକ କ୍ରୌଞ୍ଚଦ୍ୱୀପ ସମୁଦ୍ର ତାରଜଣ ।
ସୂର୍ଯ୍ୟ ଚନ୍ଦ୍ରଙ୍କର ପ୍ରମାଣ ମୋ ଆଗରେ
କହ ତ ସଞ୍ଜୟ ଶୁଣିବି ସରାଗରେ ।
ସଞ୍ଜୟ ବୋଇଲେ ହେ ହସ୍ତିନା ମଣ୍ଡନ
ଅଷ୍ଟାଦଶ ସହସ୍ର ଷଟ୍‌ଶତ ଯୋଜନ ।
ଜମ୍ବୁଦ୍ୱୀପ ଲବଣ ସମୁଦ୍ର ଦ୍ୱିଗୁଣ
ଯୋଜନ ବାରପଂଚ ରହିଛି ବଜନ ।
ଜମ୍ବୁପ୍ଲକ୍ଷ ଶାଳ୍ମଳୀ କୁଶ କ୍ରୌଞ୍ଚ ଶାକ
ପୁଷ୍କର ମିଶି ସାତଦ୍ୱୀପ ଭୂନାୟକ ।

ଯେରୂପେ ଜମ୍ବୁଦ୍ୱୀପ କହିଲଇଁ ଗପେ
କ୍ରମରେ ତ ଦ୍ୱିଗୁଣ ଅଟନ୍ତି ସର୍ବେ ।
ଲବଣ ଇକ୍ଷୁ ସୁରା ଘିଅ ଦହି ଦୁଧ
ଜଳ ମିଶି ଏ ସାତ ସମୁଦ୍ର ପ୍ରସିଦ୍ଧ ।
ଜମ୍ବୁଦ୍ୱୀପେ ଲୁଣ ସମୁଦ୍ର ଯେଉଁରୂପେ
ବେଢ଼ିଛି କ୍ରମେ ତ ଦ୍ୱିଗୁଣ ସେହିରୂପେ ।
ଜମ୍ବୁଦ୍ୱୀପ ଉତ୍ତରୁ ଅଛି ପ୍ଲକ୍ଷଦ୍ୱୀପ
ତହିଁରେ ଥିବା ଲୋକଙ୍କର ନାହିଁ ତାପ ।
ଶାନ୍ତ ଭୟ ଶିଶିର ସୁଖଦ ଆନନ୍ଦ
କ୍ଷେମକ ଶୁଭ ଧୀର ଏରୂପେ ସାତଖଣ୍ଡ ।
ସୋମକ ବୃନ୍ଦ ଭୂ ସୁମନା ଯେ ଗୋମେଦ
ଚନ୍ଦ୍ର ବଇଭ୍ରାଜ ସନ୍ଧତେ ଯେ ନାରଦ ।
ଏ ସାତ ପରବତ ସାତ ସ୍ଥାନେ ରହି—
ବାରୁ ସାତଖଣ୍ଡ ବୋଲିଣ ଗପେ କହି ।
ସେ ଖଣ୍ଡେ ନଦୀ ଅନୁତପତା ସୁକୃତା
ବିଦ୍ଧବା ହମ୍ସିଖୀ ବିପାତ ଅମୃତା ।
ଏ ବାହାରେ କ୍ଷୁଦ୍ର ନଦୀ ଯେ ପରବତ
ସଂଖ୍ୟା ନାହିଁ ଜାଣ ହେ ଅମ୍ବିକାଙ୍କ ସୁତ ।
ତ୍ରେତା ଯୁଗର ପରି ତନପାଦ ଧର୍ମ
ସେ ଖଣ୍ଡ ଲୋକେ କରୁଥାନ୍ତି ବହୁ ପ୍ରେମ ।
ପଞ୍ଚ ସହସ୍ର ଟି ବରଷ ଯେ ଆୟୁଷ
ସେ ଦ୍ୱୀପ ଲୋକଙ୍କର ହୋଇଛି ପ୍ରକାଶ ।
ଆର୍ଯ୍ୟକ କୁରର ବଣାଙ୍ଗ ଭାବ ଭୂର—
ବର୍ଣ୍ଣଙ୍କର ନାମ ହେ ଜାଣ ଦଣ୍ଡଧାରୀ ।
ଜମ୍ବୁ ବୃକ୍ଷ ପ୍ରାୟେ ଥିବାରୁ ପ୍ଲକ୍ଷ ବୃକ୍ଷ
ସେହି ଦ୍ୱୀପକୁ ଲୋକେ ବୋଲନ୍ତି ପ୍ଲକ୍ଷ ।
ଚନ୍ଦ୍ରଙ୍କ ସ୍ୱରୂପେ ଅଛନ୍ତି ତହିଁ ହରି
ସନ୍ତୁଙ୍କର ଭୋଗ ବୋଲି ପାଇ କରି ।
ସେ ସାତଖଣ୍ଡଙ୍କେ ସାତୋଟି ନରବର
ଯେ ସାତଖଣ୍ଡଙ୍କ ନାମ ଅଟେ ତାହାଙ୍କର ।
ତା ଉତ୍ତରୁ ଶାଳ୍ମଳୀ ଦ୍ୱୀପ ସାତଖଣ୍ଡ
ସୁକୃଷ୍ଣ ଲୋକେ ତହିଁ ହୋଇଥାନ୍ତି ରୁଣ୍ଡ ।
ଶ୍ୱେତ ଲୋହିତକ ଯେ ଜୀମୂତ ରୋହିତ
ସୁପ୍ରଭ ମାନସ କୂଳରେ ନବଦ୍ୟୁତ ।
ସାତଖଣ୍ଡ ନାମ କହିଲି ଯେଉଁରୂପେ
ସେ ନାମ ବହନ୍ତି ତହିଁର ସାତ ନୃପେ ।

କୁମୁଦ ବଳାହକ ମହୀଷ କଙ୍କ ଦ୍ରୋଣ
ଉନ୍ନତ କକୁଦ୍ମାନ ଏ ସାତଗିରି ଜାଣ ।
ଯୋନତୋୟା ବିତୃଷ୍ଣା ନିବୃତା ବିମୋଚନୀ
ଶୁକ୍ଳା ରୁଦ୍ରା ଏ ସାତ ନଦୀ ଭୂମିସ୍ଥାନୀ ।
କପିଳ ଅରୁଣ ଯେ ପୀତ କୃଷ୍ଣ ସ୍ୱକ—
ବର୍ଣ୍ଣରେ ସେହି ଖଣ୍ଡମାନ ଅଛି ପୂରି ।
ପବନରୂପେ ବିଷ୍ଣୁ ପାଇ କରି ପୂଜା
ବସିଛନ୍ତି ମହାସନ୍ତୋଷ କରି ମନ୍ଦା ।
ଶିମ୍ବଳ ଗଛ ଥିବା ସକାଶୁଁ ଶାଳ୍ମଳ—
ଦ୍ୱୀପ ତାକୁ କହନ୍ତି ଆହେ ମହୀପାଳ ।
ତଦନ୍ତରେ ସାତଖଣ୍ଡ କୁଶଦ୍ୱୀପ
ତହିଁର କଥାଟି କହିବା ଶୁଣ ନୃପ ।
ସୁରଥ ଊଭିଦ ଧୃତିମତ ବେଣୁମାନ
ପ୍ରଭାକର କାପିଳ ଲମ୍ବନ ନାମ ଜାଣ ।
ସେ ସାତଖଣ୍ଡକରେ ସାତଗୋଟି ରାଜା
ଏହି ନାମ ବହି ପାଳୁଅଛନ୍ତି ପ୍ରଜା ।
ଗୋମନ୍ତ ସୁନାମା ଦ୍ୟୁତିମାନ ଯେ ହରି
କୁଶେଶୟ କୁମୁଦ ପୁଷ୍ପବାନ ଗିରି ।
ଏ ଗିରି ସାତଙ୍କରେ ସାତ ଗୋଟି ନଦୀ
ପ୍ରଧାନ ତାଙ୍କ ନାମ କହୁଛି ସମ୍ବାଦ ।
ଧୂତପାପ ଶିବା ସମନ୍ତ ଯେ ପବିତ୍ରା
ବିଦ୍ୟୁତ ଅସୀ ମହୀ ଏ ସାତେ ପବିତ୍ରା ।
ବମି ସୃଷ୍ଟି ସ୍ନେହ ସନ୍ଦେହ ସ୍ୱରବର୍ଣ୍ଣ—
ମାନଙ୍କରେ ସେ ଖଣ୍ଡ ହୋଇଅଛି ପୂର୍ଣ୍ଣ ।
କୁଶପାପେ ଯେତେକ ରହିଛନ୍ତି ପ୍ରଜା
କୃତ୍ତିରୂପୀ ହରିଙ୍କି କରୁଛନ୍ତି ପୂଜା ।
ମହାକୁଶ ଗଛ ତ ସେ ଦ୍ୱୀପରେ ଅଛି
ଏଣୁ କୁଶଦ୍ୱୀପ ସେ ନୃପ ବୋଲାଉଛି ।
କୁଶଦ୍ୱୀପ ଉତ୍ତରୁ ଅଛି କ୍ରୌଞ୍ଚଦ୍ୱୀପ
ସାତଖଣ୍ଡ ତାହା କହିବା ଆହେ ନୃପ ।
ଉଷ୍ଣ ଅନ୍ଧକାର ଯେ କୁଶଳ ପ୍ରାବର
ମନୋନୁଗ ମୁନି ଦୁନ୍ଦୁଭିସ୍ୱନ ତାର ।
ନାମଟି ଏହି ନାମେ ସାତୋଟି ଭରତା
ତହିଁଜାଣ ଜାହ୍ନାଗୀ ଦେବୀରତିହୋତା ।
ଚନ୍ଦ୍ରଶୈଳ ଦୁନ୍ଦୁଭି ବାମନ ଦେହାଦ୍ଭୁତ
ଅନ୍ଧାକାର କ୍ରୌଞ୍ଚ ସେ ପୁଣ୍ଡରୀକବନ୍ତ ।
ସେ ସାତଖଣ୍ଡଙ୍କରେ ଏ ସାତ ଅଚଳ
ରହିଅଛନ୍ତି ଦେହକରି ମହାତଳ ।
ଗଉରୀ କୁମୁଦ୍ୱତୀ ମନୋଜବା ଶାନ୍ତି
ଖ୍ୟାତି ପୁଣ୍ଡରୀକା ଯେ ସନ୍ଧ୍ୟାନଦୀ ଖ୍ୟାତ ।
ଶୁକ୍ଳବର୍ଣ୍ଣ ପୁଷ୍କର ପୁଷ୍ୟାଳ ଧନ୍ୟ ସ୍ନିଗ୍ଧ
ତହିଁ ରତ ସବୁ ଶାସ୍ତ୍ରରେ ବିଦଗ୍ଧ ।
କ୍ରୌଞ୍ଚଗିରି ଥିବା ସକାଶୁଁ ଦ୍ୱୀପ କ୍ରୌଞ୍ଚ
ନାମ ବହିଛନ୍ତି ହେ ବୋଲୁଛନ୍ତି ମଞ୍ଚ ।
ସେହି ଖଣ୍ଡର ଲୋକେ ରୁଦ୍ରରୂପୀ ହରି
ସେବା କରୁଥାନ୍ତି ସ୍ୱର୍ଗକୁ ଇଚ୍ଛା କରି ।
କ୍ରୌଞ୍ଚ ଦ୍ୱୀପ ଉତ୍ତରୁ ଶାକ ଦ୍ୱୀପ ଅଛି
ସେ ଦ୍ୱୀପ ସାତଖଣ୍ଡ କହିବା ନୃପବର୍ଯ୍ୟ ।
କୁମ୍ଭବୋଉର ମଣିବନ୍ଧକ କୁସୁମୋଦ
ମୌଦାକ ମହାଦ୍ରୁମ କୌମାର ଜଳଦ ।
ସାତଖଣ୍ଡଙ୍କର ନାମଟି ଏ ଅଟଇ
ସାତଗିରି ନାମ ଏ ମଧ୍ୟ ନରସାଇଁ ।
ଉଦୟଗିରି ଶ୍ୟାମ ରୈବତ କେଶରୀ
ଜଳଧାର ଅମ୍ବିକେୟ ଯେ ଆସ୍ତ ଗିରି ।
ଏ ସାତ ପର୍ବତ ସକାଶୁ ସାତଦ୍ୱୀପ
ନଷ୍ଟଙ୍କ ରହିଅଛି ଗୁଢ଼ ଭୂପ ଚାପ ।
ଅନ୍ତୁଗବରଧନୀ ଶୀତା ସୁକୁମାରୀ
ମହାନଦୀ ଯେ ଶତସଲିଳ କୁମାରୀ ।
ମଣିଜଳା ମିଶିଣ ଏ ସାତ ସରିତ
ବହି କରୁଛନ୍ତି ବହୁତ ନଦୀ ଜାତ ।
ମଗସୁ ମାଗଧ ମାନସ ଯେ ମନ୍ଦଗ
ଏ ସ୍ୱର ବେଶଙ୍କେ ଶୋଭେ ସେ ଦ୍ୱୀପଭାଗ ।
ସୂର୍ଯ୍ୟରୂପୀ ବିଷ୍ଣୁଙ୍କୁ ପୂଜନ୍ତି ଏମାନେ
ଧୈର୍ଯ୍ୟରେ ମନ ଦେଇ କରି ଅବିଚ୍ଛିନ୍ନେ ।
ପର୍ବତ ପରି ଶାକ ଗଛ ତହିଁ ଅଛି
ଏଣୁ ଶାକଦ୍ୱୀପ ରାଜନ ବୋଲାଉଛି ।
ପ୍ଲକ୍ଷଦ୍ୱୀପଠାରୁ ଯେ ଶାକଦ୍ୱୀପ ଯାଏ
ପାଞ୍ଚ ସହସ୍ରଟି ବରଷ ଆୟୁ ସହେ ।
ଏ ଛଅଦ୍ୱୀପ ପ୍ରାନ୍ତେ ପୁଷ୍କର ନାମେ ଦ୍ୱୀପ
ଅଛି ସ୍ୱର୍ଗ ଶୋଭକୁ ପାରେ କରି ଲୋପ ।
ଜମ୍ବୁଦ୍ୱୀପକୁ ଛାଡ଼ି ମଧ୍ୟ ପାଞ୍ଚ ଦ୍ୱୀପ
ସାତଖଣ୍ଡ ଲେଖାରେ କହିଲଇଁ ନୃପ ।

ଶାକଦ୍ୱୀପ କେବଳ ଦ୍ୱିଖଣ୍ଡ ହୋଇଛି
ମାନସୋତ୍ତର ଗିରି ମଧ୍ୟରେ ବେଢ଼ିଛି ।
ସେହି ଗିରିଟି ପାଞ୍ଚ ସହସ୍ର ଯୋଜନ
ବିସ୍ତାର ଉତ୍ସେଧରେ ଲଭିଛି ରାଜନ ।
ପୁଷ୍କର ଦ୍ୱୀପ ଦୁଇଖଣ୍ଡଙ୍କ ସେ ନାମ
ଧାତକି ମହାବୀର ବୋଲି ନୃପୋତ୍ତମ ।
ପୁଷ୍କରଗିରି ହୃଦୁଁ ଜନ ପ୍ରଜାପତି
ଆସି ବରଷନ୍ତି ଜାଣ ହେ ନରପତି ।
ସେ ପରବତ ବିନା ଆନ ପରବତେ
ବରଜିତ ଅଟନ୍ତି ନଦୀଙ୍କ ସଙ୍ଗତେ ।
ଭକ୍ଷ୍ୟ ଭୋଜ୍ୟ ଯେ ଯେସୁ ଇଚ୍ଛା କଲେ ମିଳେ
ଧର୍ମାଧର୍ମ ବର୍ତ୍ତନ୍ତି ତହିଁରେ ନ ଚଳେ ।
ପୁଷ୍କର ଗିରିଟି ଥିବାରୁ ସେ ଖଣ୍ଡର
ପୁଷ୍କରଖଣ୍ଡ ନାମ ଦେଲେକ ବ୍ରହ୍ମ ବର ।
ବ୍ରହ୍ମରୂପୀ ବସ୍ତୁ ତ ତହିଁରେ ଅଛନ୍ତି
ମନକୁ ତାଙ୍କର ସେ ଭୋଗ ଖାଉଛନ୍ତି ।
ସ୍ୱାଦୂଦକ ଉତ୍ତରୁ ସମାସ୍ଥାନ ଅଛି
ସ୍ୱରଦଶବର୍ତ୍ତୀରେ ମଣ୍ଡିତ ହୋଇଛି ।
ଚାରିଆଡ଼ ପବନେ ସେଠାରୁ ଆସନ୍ତି
ସେ ଦିଗ୍‌ଗଜେ ଶୁଣ୍ଢାରେ ଧରି ତା ଛୁଡ଼ନ୍ତି ।
ତାଙ୍କ ଶୁଣ୍ଢା ପବନ ଆସି ଏ ଦ୍ୱୀପକୁ
ଆମୋଦ କରୁଛନ୍ତି ଦେହୀଙ୍କ ଦେହକୁ ।
ଧୃତରାଷ୍ଟ୍ର ବୋଇଲେ ଦ୍ୱୀପର ବ୍ୟବସ୍ଥା
ଶୁଣିଲି କହ ରାହୁ ସୂର୍ଯ୍ୟ ଚନ୍ଦ୍ର କଥା ।
ସଞ୍ଜୟ ବୋଇଲେ ହେ ପରୁଷିଳ ଯାହା
କହିବି ମୁଁ ବିସ୍ତାରି ଶୁଣ ନରନାହା ।
ଯୋଜନ ଦ୍ୱାଦଶସହସ୍ର ଯାଏ ରାହୁ
ମଣ୍ଡଳ ଆକାଶରେ ଅଛି ମହାବାହୁ ।
ଏକାଦଶ ସହସ୍ର ଯୋଜନ ଚନ୍ଦ୍ରଙ୍କର
ମଣ୍ଡଳ ଆକାଶରେ ହୋଇଛି ବିସ୍ତାର ।
ସହସ୍ର ଦଶ ଯୋଜନଟି ସୂର୍ଯ୍ୟଙ୍କର
ମଣ୍ଡଳ ଆକାଶରେ କରିଅଛି ଘର ।
ରାହୁମଣ୍ଡଳ ତ ଏ ଦୁଇମଣ୍ଡଳକୁ
ବଡ଼ ହୋଇବାରୁଟି ଗ୍ରାସୁଛି ତାହାଙ୍କୁ ।
ଯେତେକ ପରୁଷିଲ କହିଲି ତେତେକ
ଏବେ ଭୂମି ଦୁଃଖ ହେ ଅବଧାନାତ୍ମକ ।
ପୁଅ ଭୂମିର ମରିବାକୁ ଯାଉଅଛି
ତାକୁ ବୋଧି ରଖ ଘରେ ମୁଁ ବୋଲୁଅଛି ।
ଏହା ପଚାରିବାରେ ଅଛି କେଉଁ କାର୍ଯ୍ୟ
ଜନକ ହେଲଣି ତ ଭୂମିର ଅକାର୍ଯ୍ୟ ।
ଆୟୁ ଖାଇଁ ଯଶ ଯେ ମହୀରେ ଲଭଇ
ଯେତୁ ଇଷ୍ଟଧରମ ସୃହୃଦେ ପାଳଇ ।
ତୁମ୍ଭେ ତ ମୋଠାରୁ ଶୁଣିଲ ଭୂମିପର୍ବ
ବଡ଼ାଅ ଏହାଙ୍କୁ ପାଣ୍ଡବେ ବନ୍ଧୁ ଭାବ ।
ବୋଇଲେ ଭୂମିପର୍ବ ଶୁଣିମାତ୍ରେ ଗଦ୍ୟେ
ଫଳ ନାହିଁ ହେ କସ କହି ବୁଝାଏ ।
ଧରମକୁ ଆଚରିବେ ଏ ପର୍ବକୁ ଶୁଣି
ସ୍ୱର୍ଗକୁ ଆଚରିବେ ନୃପକୁଳମଣି ।
ମିତ୍ରପିତାମହଙ୍କର ତ ଜଳ ଦାନ
ପୃଥ୍ୱୀରେ ଲୋଭ କରି ନ ନାଶ ରାଜନ ।
ଏଣୁଠାରେ ଭୂମିପରବ ସମାପତ
ହୋଇଲା କହେ କୃଷ୍ଣସିଂହ ନରପତି ।

---

## ସଞ୍ଜୟଙ୍କ କୁରୁକ୍ଷେତ୍ର ଯୁଦ୍ଧ ବର୍ଣ୍ଣନା

ଏଥୁଅନନ୍ତରେ ଯେ ବଇଶମ୍ପାୟନ
ବୋଇଲେ ଶୁଣ ଆହେ ହସ୍ତିନାରାଜନ ।
ସଞ୍ଜୟ ଧୃତରାଷ୍ଟ୍ର ସ୍ଥମ୍ଭରୁ ମେଲଣି
ହୋଇ କୁରୁକ୍ଷେତ୍ରକୁ ଗଲେ ସେହିକ୍ଷଣି ।
ଅର୍ଜୁନ ଅସ୍ତ୍ରେ ଦେବବ୍ରତ ଅସ୍ତ୍ର ଦେଖି
ଧୃତରାଷ୍ଟ୍ରଠାରୁ ଆସିଲେ ହୋଇ ଦୁଃଖୀ ।
ଆପଣାର ନାମ କହିଣ ଜଣାମଣା
ଧୃତରାଷ୍ଟ୍ର ପାଦରେ କଲେ ସେ ବନ୍ଦନା ।
ଧୃତରାଷ୍ଟ୍ର ସଞ୍ଜୟ ଆସିବାର ଜାଣି
ବସ ହେ ବୋଲନ୍ତେ ବସିଲେ ମନ୍ତ୍ରୀମଣି ।
କହିଲେ କୁମ୍ଭପିତା ସୂର୍ଯ୍ୟ ଦେବବ୍ରତ
ଅରଜୁନଙ୍କ କାଣ୍ଡ-କରଣେ ମଣ୍ଡିତ—
ହୋଇ ରଥାକାଶୁଁ ପଡ଼ିଲେ ମହୀବେଶେ ।
କୁଡ଼ଇ କୁରୁସାରେ ନରାଣ-ଭ୍ରମସେ ।
ଶାନ୍ତ ମହାରଥୀପ୍ରସିଦ୍ଧ ହୋଇ ଇନ୍ଦୁ
ବଢ଼ାଉଥିଲ ବସି କୁମ୍ଭସୈନ୍ୟ-ସିନ୍ଧୁ ।
ପାଣ୍ଡବସୈନ୍ୟ-ଭେଳା ବୁଡ଼ାଇବା ପାଇଁ
ଅର୍ଜୁନ-ରାହୁ ଆସି ଖାଇଲା ଗୋସାଇଁ ।

ଏ ଯେବେ କୁରୁଙ୍କର ମାନସ-କୁମୁଦ
ମଳିନକୁ କରିଲା ଗ୍ଲାନି କରି ମୋଦ ।
ଶୌର୍ଯ୍ୟ ଧୈର୍ଯ୍ୟ ଗାମ୍ଭୀର୍ଯ୍ୟ କ୍ଷମା ଧନୁର୍ବିଦ୍ୟା
ଭୀଷ୍ମଙ୍କରଠାରେ ଯେ ଥିଲା ଟି ସର୍ବଦା ।
ଭୀଷ୍ମ-ଭୃଙ୍ଗ ତାଣ୍ଡବ ସଇନ-ଚମ୍ପକ
ଶର-କଣ୍ଟକ-ମଧ୍ୟରେ ତା ସ୍ତବକ ।
ଦେଖାଇ ଅଙ୍ଗେ ଯୁଦ୍ଧଅଙ୍ଗନକୁ ମଣ୍ଡି
ଶୋଭୁଛନ୍ତି ଶୋଣିତରେ ଇନ୍ଦ୍ରଧ୍ୱଜ ଦଣ୍ଡି ।
ଯା ବଳେ ପୁଣି କରି ରାଜ୍ୟରେ କାମନା
ବୋଲୁଥାଏ ମାଣବ ଯୁଧିଷ୍ଠିର ନନା ।
ତାହାଙ୍କୁ ଏବେ ରଥତଳେ ଅବହେଳେ
ପକାଇଲା ପାର୍ଥ ଶିଖଣ୍ଡି କୁଳେ ଦେଲେ ।
ମହାରଥୀ ଭୀଷ୍ମ ଏକରଥରେ କାଶୀ—
ପୁରେ ନୃପତିଙ୍କର ବଳକୁ ଦଳାଣି ।
ତିନୋଟି କନ୍ୟା ଆଣି ବିଚିତ୍ରବୀର୍ଯ୍ୟଙ୍କୁ
ଯୋଡ଼ିଏ ବନ୍ଧୁ କଲେ କୁଳ ରକ୍ଷିବାକୁ ।
ସେ ଏବେ ପଡ଼ିଛନ୍ତି ହୋଇଣ ଅନାଥ
ଯୁଦ୍ଧଭୂମିମଣ୍ଡଳେ ଆହେ ନରନାଥ ।
ପର୍ଶୁରାମଙ୍କର ଗରବମରଦିଆ
କ୍ଷତ୍ରିୟ-ତୃଣବନ ଦହନେ ଯେ ନିଆଁ ।
ସେ ଭୀଷ୍ମ ଅର୍ଜୁନ ବାଣ-ଜାଳ ପାଇଁ
ନବୁଝିଲେ ଜାଣ ହସ୍ତିନାନଗରସାଇଁ ।
ଇନ୍ଦ୍ର ପରି ବଳ ଦେଖାଇ ପାଣ୍ଡବଙ୍କୁ
ବଢ଼ାଉଥିଲେ ଭୀଷ୍ମ ଯୁଦ୍ଧରେ ଦୁଃଖକୁ ।
ପାର୍ଥହାତ ଧନୁ ଶରକୁ ଦେହ ସାଥ
କରି ରଥ ଛାଡ଼ି ଶୋଇଲେ ମହୀନାଥ ।
ଦଶରାତ୍ରଯାଏ ଦୁଷ୍କରକର୍ମ କରି
ପାଇଲେ ଭୀଷ୍ମ ପାର୍ଥ ଅର୍ଜୁନ-ଅସ୍ତ୍ରଚିର ।
ମେଘର ପରି ବାଣ ବରଷା କରିଣ
ଅର୍ବୁଦେ ସଇନକୁ ଦେଇଣ ମରଣ ।
ଯମଙ୍କର କରଣ ହାତରେ ପାଞ୍ଜିକ
ପୋଛାଇଲେ ଭୀଷ୍ମ ବହୁଣ ଜୀବଟିକ ।
ଯେରୂପେ ମହାବାତ ଭଙ୍ଗି ଗିରିବନ
ଅବରେ ସେହିରୂପେ ଭୀଷ୍ମ ଦେଲେ ଜାଣ ।
ତୁମ୍ଭେ ଦୁର୍ମନ୍ତ୍ରଣାରୁ ଏତେ ସବୁ କଥା
ପ୍ରବର୍ତ୍ତିଲା ତୁମ୍ଭର ନାହିଁ ଲାଜ ବ୍ୟଥା ।

ଧୃତରାଷ୍ଟ୍ର କହୋଇଲେ ନ ଦେଅ ଗାଳି ମୋତେ
କହୁଛେ ମଲେ କହ ଭୀଷ୍ମ ମହାମତେ ।
ଶିଖଣ୍ଡି-ଅନଳରେ ଭୀଷ୍ମ-ଜଳନିଧି
ଶୁଣିବାକୁ ଲେଖିଥିଲା ତ ଭଲ ବିଧି ।
ମୋର ସୈନ୍ୟ-ମେରୁଶିଖରେ ଭୀଷ୍ମ-ସୂର୍ଯ୍ୟ
ଜଳୁଥିଲେ ଧନୁଶରରେ ବହୁ ତେଜ ।
ଅର୍ଜୁନ-ଘନ ତାଙ୍କୁ ଉତ୍ତରପବନ
ଶିଖଣ୍ଡିକ ପାଇଣ କରୁଛେ ଆଚ୍ଛନ—
କରିଲା ଏହା ମୋହ ଆଗରେ ଉଦେଶି
କହିବା ହେଉ ହେ ସଞ୍ଜୟମନ୍ତ୍ରି ବସି ।
ମହାସିଂହପର ମୋ ମହାରଥୀକୁଳ
ପାଣ୍ଡବସୈନ୍ୟ-ଛେଳି କରୁଥିଲେ କବଳ—
କରିଲେ କାଣ୍ଡମନ-ପାଟିଳ ବସ୍ତାର
କାଳାଗ୍ନି ତେଜସ୍ୱୀ ଭୀଷ୍ମ-ମହାଗିରି ।
ସେ କଥା ଶୁଣିବାକୁ ଇଚ୍ଛା ତ ମୋହର
ହେଉଅଛି ଆହେ ସଞ୍ଜୟ ନିରନ୍ତର ।
ଭୀଷ୍ମସିଂହ ଶର-ନଖରେ ଶତ୍ରୁକୁଳ-
କରୀ କପାଳକ କରନ୍ତେ ଫାଳଫାଳ ।
ସେ ତାଙ୍କୁ ମାଇଲା ପରଭ ପରା ହୋଇ
ଦୁର୍ଲଭ ଓ ମହୀମଣ୍ଡଳେ ଜାଣ ସେହି ।
ଭୀଷ୍ମ ଧନୁ-ଘନୁ ବାହାରି ଶର-ଜଳେ
ପାଣ୍ଡବ ସୈନ୍ୟ-ଧାନ-ଧୋଇ କରୁଥିଲେ ।
ଖଣ୍ଡି ଆଘାତ-ଶିଖଣ୍ଡୀ'ର ବଳେ କେହି
ନିବାରିଲେ ଏହା ମନକୁ ଆସୁନାହିଁ ।
ଦ୍ରୋଣ ଅଶ୍ୱତ୍ଥାମା କୃପ ତ ଥାଇଁଥିଲେ
ଭୀଷ୍ମ କାହିଁପାଇଁ ମରଣ ଅରଜିଲେ ।
ଏହି କଥାଟି ଶୁଣିବାକୁ ମୁହିଁ ମନ
ହେଉଛି ସଞ୍ଜୟ ହେ ବସି ଅଛଛି ।
ପାଣ୍ଡବଙ୍କୁ ଧାର୍ମିକ ବୋଲି ତୁମ୍ଭେ କହ
ଏବେ ରାଜ୍ୟଲୋଭେ ମାଇଲେ ପିତାମହ ।
ଏବେ ମୋ ପୁଅ ଯିବା ପଡିସ୍ଥିତ ନାଶ
ସଭାସେ ହେ ସଞ୍ଜୟ ଗୁହଥିବ ଶିଷ୍ୟ ।
ଜାଣୁଛି ମୋ ହୃଦ ପଥରଠାରୁ ଟାଣ
ହେଲା ଯା ରହିଅଛି ଶୁଣି ଭୀଷ୍ମ କଷ୍ଟ ।
ଶୋକ-ସମୁଦ୍ରରେ ମୋ ଆଶା-ଭେଳ ଖଣ୍ଡ
ବୁଡ଼ାଇଲେ ଭୀଷ୍ମ ବଧୂ ଏ ହେବେ ରାଣ୍ଡ ।

ଯୁଦ୍ଧରେ ଭୀଷ୍ମଙ୍କର ରଜତ-ସମୁଦ୍ର
କରୁଥିଲେ ପାଣ୍ଡବମାନଙ୍କ ଅଭଦ୍ର ।
ସେ ସମୁଦ୍ରେ ଛୁଟନ୍ତା ଘୋଡ଼ା ଉଚ୍ଚବେଗ
ମକରଙ୍କ ପ୍ରଭାକୁ କରୁଥିଲା ଧିକ ।
ପଥର ପର ହାତୀକୁଳ ଉଣ୍ଡି ପଡ଼ି
ରହିଥିଲେ ସେ ସିନ୍ଧୁ ବେଳାଯାକ ମାଡ଼ି ।
ଶଙ୍ଖ ଯେ ଶୁକ୍ତିକାରେ ହୋଇ ଶୋଭିତ
କରାଉଥିଲା ପ୍ରାଣୀମାନଙ୍କୁ ସେ ଭୀତ ।
ଏ ରୂପେ ବଳୀୟାର ଯେଉଁ ଭୀଷ୍ମରଥୀ
କେଉଁ ରଥୀ-ହାତେ ହେଲାଟି ତାଙ୍କ ମୃତ୍ୟୁ ।
କମଳ ବନ ପରି କହ ତ ସଞ୍ଜୟ
ପୋଡ଼ୁଛି ଦୁଃଖାନଳେ ମୋହର ହୃଦୟ ।
ଭୀଷ୍ମଙ୍କ ଦକ୍ଷିଣ ଉତ୍ତର ପୃଷ୍ଠ ଆଗ
ରଖିଥିଲେ କେ କେ ଯୋଦ୍ଧା ହେ ମହାଭାଗ ।
ତାଙ୍କର ନାମମାନ ମୋ ଆଗେ ପ୍ରକାଶ
କରି କହ ଆହେ ଗାବଲଗଣ ଶିଷ୍ୟ ।
ବଇତେ ବଳୀୟାର ହେବାରୁ ଇନ୍ଦ୍ରଙ୍କୁ
ଦେବେ ନେଇ ଭୀଷ୍ମଙ୍କୁ ମାଇଲେ ତାହାଙ୍କୁ ।
ସେ ଭୀଷ୍ମଙ୍କର ଶତ୍ରୁ ହ'ନ୍ତି କି ଶିଖଣ୍ଡୀ
ବନ୍ଧିବାରେ ପାରିଲା କେଉଁ କାଣ୍ଡଖଣ୍ଡି ।
ଭୀଷ୍ମଙ୍କ ପରଲୋକ ପ୍ରାପତିକି ଦେଖି
କହ ଦୁର୍ଯ୍ୟୋଧନ ହେଲା କି ନାହିଁ ଦୁଃଖୀ ।
ଯୁଦ୍ଧଭୂମି ସଭାରେ କ୍ଷତ୍ରିୟେଟି ଭଲ
ଖଡ୍ଗ-ଖଡ଼ ଧରି କାଟିଲେ ପଣାପାଲ ।
ନରଙ୍କର ଦେହ-ଭୂମିରେ କରି ଦମ୍ଭ
ପଶାସାର ବସାଇଲେଟି କର-କୁମ୍ଭ ।
ବାଣ-କାଠି ଧରି ମୋ କୁଳବୁଡ଼ା ଖେଳା
ଜଣିଲ ନାହିଁ କି ତା କହ କରି ହେଳା ।
କଥାଗଣ୍ଠି ଦୁର୍ଯ୍ୟୋଧନର ଗୁମାନୁଟି
ସେ ଖେଳେ ସଞ୍ଜୟ ନ କଲା କମା ଗୋଟି ।
ଏସବୁକଥା ମାନ ଶୁଣିଲେ କେତେ ମନ
କୁପିତ ହେବ ହେ ସଞ୍ଜୟ ମନ୍ତ୍ରି ଜାଣ ।
ସଞ୍ଜୟ ବୋଇଲେ ହେ ନୃପତି ଶିଖର
ଆପ୍ତ ମତରେ ସବୁ ଦୋଷଟି ତୁମ୍ଭର ।
କସ ପଶ୍ଚୁଅଛ କହିବ ମୁଁ କସ
ଆପଣ ଏ ବଂଶକୁ କାଳର ସଦୃଶ ।

ଆପଣା ଆଚରଣେ ଅଭଜେ ଯେ ଯାହା
ପରକୁ ସେ ଦୋଷ ଦିଏ କି ନରନାହା ।
ଯେଉଁ ଲୋକ ଲୋକରେ ଦୁଷ୍ଟ କଥା କରେ
ଟାକର ମାରନ୍ତି ଲୋକେ ତା ମସ୍ତକରେ ।
ପାଣ୍ଡୁ ସୁତେ ତୁମ୍ଭଙ୍କୁ ବଡ଼ବାପୁ ବୋଲି
ରହିଲେ ଏତେ କାଳଯାଏ ଧର୍ମ ଭଳି ।
କି ରୂପରେ ଧର୍ମ ରଖିବେ ସେ କହ ତ
ଯେବେ ତାଙ୍କର ଦୁଃଖ ହେଲା ଉତ୍କଟାନ୍ତ ।
ତୁମ୍ଭର ସେନାମାନେ ହୋଇ ପିଟାପିଟି
ଯେ ରୂପେ ମଲେ ରାଜ୍ୟେ ଶୁଣ ସେ କଥାଟି ।
ଯେ ବ୍ୟାସ ସକାଶୁ ପାଇଲି ଦିବ୍ୟଜ୍ଞାନ
ତାଙ୍କ ବଳେ ଏବେ କହିବି ତାହା ଜାଣ ।
ତୁମ୍ଭର ପୁଅ ସୈନ୍ୟ ଘେନ କୁରୁଦେଶେ
ବ୍ୟୂହ କଲେ ଭୀଷ୍ମଙ୍କ ସଙ୍ଗେ ଅତି ତୋଷେ ।
ସଇନକୁ ଭାଗ ଭାଗ ଯେ କରାଇଣ
ରଟାଇଲେଟି ଦୁର୍ଯ୍ୟୋଧନ ଏ ବଚନ ।
ଦୁଃଶାସନ ମୁଖକୁ ଅନାଇଁ କହିଲେ
ଭୀଷ୍ମଙ୍କୁ ଭାଇ ରକ୍ଷା କର ଏବେ ଭଲେ ।
ବହୁତ କାଳୁଁ ଯାହା ବିଚାରି ଥିଲଇଁ
ଦଇବ ତାହା ଏବେ ଦେଉଛି ଯୋଗାଇ ।
ଯାତ୍ରେ ରଖିଥିଲେ ପାଣ୍ଡବ ମହୀପାଳ
ଭାଇଙ୍କ ତୁଲେ ଯୁଦ୍ଧେ ହୋଇବେ ନିର୍ମୂଳ ।
ନିଷ୍କଣ୍ଟକ କରି ହସ୍ତିନା ଦେଶ ମହୀ
ଏଣୁ ଆମ୍ଭେ ଖାଇବା ମନେ ସୁଖବହି ।
କେବଳ କହୁଛନ୍ତି ଭୀଷ୍ମ ମହାମନା
ଶିଖଣ୍ଡୀକି ନ ମାରିବ ଏ ମୋ କାମନା ।
ଏଣୁ ସକାଶରୁଟି କହୁଅଛୁ ମୁହିଁ
ଶିଖଣ୍ଡୀକି ମାରି ହେ ପିତାମହ ଯାଇ ।
ଶିଖଣ୍ଡୀ ମଲେ ଭୀଷ୍ମଙ୍କର ନାହିଁ ବଧ
ଜଣି ନ ପାରନ୍ତି ତାହାଙ୍କୁ ତ ବିବୁଧ ।
ବ୍ରହ୍ମଦ୍ୱୀପରୁ ଯେତେ ରାଜା ଆସିଛନ୍ତି
ତାଙ୍କୁ କହ ଜଗନ୍ତୁ ଦ୍ରୋଣଙ୍କ ନାତି ।
ସିଂହପରି ଜନ୍ତୁ ଅଜାଗରକ ହେଲେ
ଶଲୁଆ ପ୍ରାଣ ନିଏ ଦେଖୁଥାଇଁ ଭଲେ ।
ଯୁଧାମନ୍ୟୁ ଉତ୍ତମୌଜା ଯେ କଶାଟିକ
ଜଗିଛନ୍ତି ପାର୍ଥ ଜଗିଛି ଶିଖଣ୍ଡୀକ ।

ଏଣୁ ଶୁଣ ମୁଁ ପୁନଃ ପୁନଃ କରି ଭାଇ
କହୁଛି ଯତ୍ନ କରିଥିବ ଭୀଷ୍ମ ପାଇଁ ।
ଏଥିଅନ୍ତେ ରଜନୀ ହେଲା ଅବଶେଷ
ନିଦ୍ରା ତ୍ୟଜି ଉଠିଲେ ସର୍ବ ନରଈଶ ।
ଦୁନ୍ଦୁଭି ଶଙ୍ଖ ରଥ ଗଜ ଅଶ୍ୱ ଧ୍ୱନି
କମ୍ପ ଭଇଲା ଚଉଦିଗ କୁଳଯେ ମେଦିନୀ ।
ରାଜାମାନେ ରଥମାନଙ୍କ ଯୋଚି ଘୋଡ଼ା
ଲଗାଇଲେ ସାଞ୍ଜୁ ତହିଁରେ ହୋଇ ଛିଡ଼ା ।
ମାହୁନ୍ତେ ହାତୀ ପରେ ଅମାରି ପକାଇ
ବସିଲେ ତା କାନ୍ଧରେ ଅତି ଉଗ୍ର ହୋଇ ।
ସିପାଇଏ ବାଖର ମଣ୍ଡାଇ ସେ ଡ଼ାଇ
ଚଢ଼ି ମାରି ବସିଲେ ମାଡ଼ଣ ଘୋଡ଼ାକୁ ।
କରହେଣରେ ପଟିଖଣ୍ଡା ଫରି ଛଡ଼ା
ଧରି ବାହାରିଲେ ପାଇକ ଭେଣ୍ଡା ଭିଡ଼ା ।
ଏରୂପେ ସୂର୍ଯ୍ୟୋଦୟୁ କାଳେ ଦୁଇ ଥାଟ
ସଜ ହୋଇ ଯୁଦ୍ଧଭୂମିରେ ହେଲେ ଭେଟ ।
ଦୁଇ ସେନାଙ୍କ ଶସ୍ତ୍ର ଝଳ ବାରି ପରି
ଦିଶିଲା ବୁଡ଼ାଇବା ପାଇଁ ଧର୍ମ-ତରୀ ।
ସୁବର୍ଣ୍ଣରେ ରଥ ତ ମଣ୍ଡି ହୋଇଥିଲେ
ଅନଳଲଗା ଗିରି ପ୍ରାୟ ଶୋଭା ଦେଲେ ।
ସେ ରଥମାନଙ୍କର ନାନାଜାତି ଧ୍ୱଜ
ଦିଶିଣ ଲୁପ୍ତ କଲା ସୂର୍ଯ୍ୟଙ୍କର ତେଜ ।
ବେଢ଼ାଇଣ ରଥମାନଙ୍କ ସ୍ୱରପଟ
ଜାଲପରି ରହିଲେ ଗଜ ଘୋଡ଼ା ଥାଟ ।
ପାଇକଙ୍କରେ ପୁଣି ଆବୃତ ସେ ହୋଇ
ଗରଜନ କରି ପୂରାଇ ଦେଲେ ମହୀ ।
ରଥୀଏ ଧନୁହାତେ ଉପରକୁ ଟେକ
ଶର ଧରି ରହିଲେ ସମରକୁ ଡାକ ।
ମାହୁନ୍ତେ ଅଙ୍କୁଶ କରିଙ୍କ ଗଣ୍ଡସ୍ଥଳେ
ଲଗାଇ କରି ଚିପି ଦେଲେ ହେଲେ ହେଲେ
ସିପାଇମାନେ ଘୋଡ଼ାମାନଙ୍କୁ ଧୂଆଁଇ
ଫେରାଇ ମଣ୍ଡାଇଲେ ଭୂମିକି କମ୍ପାଇ ।
ପାଇକମାନେ ଫରି ଖଣ୍ଡା ଆଞ୍ଜି ପାଞ୍ଜି
ବାହାରିଲେ କୁରୁକ୍ଷେତ୍ରରେ ନାଚି ନାଚି ।
ଶକୁନି ଶଲ୍ୟ ଜୟଦ୍ରଥ ଅନୁବିନ୍ଦ
ସହ ଯେ ବିନ୍ଦ ସୁଦକ୍ଷିଣ ଶ୍ରୁତାୟୁଧ ।

ଜୟତ୍ସେନ କୃତବର୍ମା ଯେ ବୃହଦ୍‌ବଳ
କୈକେୟଙ୍କୁ ବେଷ୍ଟନ କରିବାକୁ ଗୋଳ ।
ବାହାରିଲେ ଟୋପି କବଚେ ମଣ୍ଡି ହୋଇ
ସୂର୍ଯ୍ୟଲୋକକୁ ଭେଦି ଯିବା ଆଶା ବହି ।
ଏମାନଙ୍କ ଆଗରେ ଭୀଷ୍ମ ହାତୀ ପରି
ଥିଲେ ଶତ୍ରୁ-ପଦ୍ମ ଦଳିବା ଇଚ୍ଛା କରି ।
ଶ୍ୱେତଘୋଡ଼ା ଶ୍ୱେତରଥ ଯେ ଶ୍ୱେତଛତ୍ର
ଶ୍ୱେତପାଗ ଶ୍ୱେତକବଚ ଶ୍ୱେତବସ୍ତ୍ର ।
କୁରୁ ସୈନ୍ୟ ଆଗରେ ଭୀଷ୍ମ ଚନ୍ଦ୍ର ପରି
ଥିଲେ ଶତ୍ରୁ-ପଦ୍ମ ମୁଦିବା ଇଚ୍ଛା କରି ।
ଭୀଷ୍ମଙ୍କୁ ସେନାମୁଖେ ଦେଖି ପାଣ୍ଡୁ ସୈନ୍ୟ
ଭାବିଲେ ମରଣ ପାଇବା ମହାପୂଣ୍ୟ ।
ଧୃଷ୍ଟଦ୍ୟୁମ୍ନ ଆଦି ଯେତେ ରଥୀ ଥିଲେ
ଭୀଷ୍ମଙ୍କୁ ଦେଖି ମହାଭୟରେ କମ୍ପିଲେ ।
ଯୋଦ୍ଧାଏ ସିନ୍ଧୁ ମିଶି ଗଲା ପରି ହୋଇ
ଦୁଇସେନା ନେଟେ ମିଶିଲେ ନରସାଇଁ ।
ଯଥା ପାଣ୍ଡବ କୁରୁ ହେଲେ ସମାଗମ
ତଥା କାହିଁ ଦେଖି ନାହିଁ ମୁଁ ନୃପୋତ୍ତମ ।
ବେଦବ୍ୟାସ ଗୋସାଇଁ କହିଲା ପରସ୍ତେ
ସେକାଳେ ମହା ଉତପାତ ହେଲା ସ୍ୱସ୍ତେ ।
ପୁଷ୍ୟା ନକ୍ଷତ୍ରକୁ ଯେ ଶୁକ୍ରମଣ୍ଡଳ
ଆହେ ନରପାଳ ହୋଇବେ ପ୍ରତିକୂଳ ।
ସାତରଙ୍ଗଯାକ ମେଘାଡ଼ା ହୋଇ କରି
ରହିଲେ ଆକାଶରେ ମହାତେଜ ଧରି ।
ସୂର୍ଯ୍ୟ ଉଦୟରେ ଦି ଖଣ୍ଡ ହେଲା ପ୍ରାୟେ
ସବୁରି ନୟନକୁ ଦିଶିଲେ ହେ ରାୟେ ।
ପୂର୍ବଆଡ଼େ ବହୁ କୁକୁର କୁଆ ଗୋଟି
ହୋଇ ବୋବାଇଲେ ବହୁତ ଦେଇ ପାଟି ।
ଭୀଷ୍ମ ଦ୍ରୋଣ ସକାଳୁ ଉଠି ହେ ରାଜନ
ପାଣ୍ଡବଙ୍କ ଜୟ ବାଞ୍ଛିଲେ ପ୍ରତିଦିନ ।
ଆଗୁଁ ବୃଦ୍ଧଙ୍କୁ ସେ ବଚନ ଦେଇଥିଲେ
ଏଣୁ ଟି ଧନୁ ଧରି ଯୁଦ୍ଧ କରି ଗଲେ ।
ଭୀଷ୍ମ ଟି ସକଳ ରାଜାମାନଙ୍କ ଆଗେ
କୋଇଲେ ସ୍ୱର୍ଗଦ୍ୱାର ଫିଟିଛି ଯାଅ ବେଗେ ।
ତୁମ୍ଭମାନଙ୍କର ଯେ ପିତୃ ପିତାମହ
ସେ ମାର୍ଗ ଯିବାକୁ ଛାଡ଼ିଲେ ଯୁଦ୍ଧେଁ ଦେହ ।

କ୍ଷତ୍ରିୟର ଗୃହରେ ରୋଗରେ ମରଣ
ଅଧର୍ମ ଯୁଦ୍ଧେ ମୃତ୍ୟୁ ଧର୍ମ ସନାତନ ।
ରାଜାମାନେ ତା ଶୁଣି ମୁଣ୍ଡ ଦୋହଲାଇ
ବୋଇଲେ ଯୁଦ୍ଧମୃତ୍ୟୁଠାରୁ ସ୍ୱର୍ଗ ନାହିଁ ।
ଏହିରୂପେ ଭୀଷ୍ମଙ୍କୁ ଭଜି ରାଜାଗଣ
ବାହାରିଲେ ରଚନ କରିବାକୁ ରଣ ।
କୁମ୍ଭର ସୁତ ପୃଷ୍ଠ ଜାନ୍ତି ମିତ୍ର ଧରି
ଚଳିଲେ ଦେଖି ଯୁଦ୍ଧ ମଧ୍ୟସ୍ଥ ଲୋକ ପରି ।
ଆଜ ସବୁ କ୍ଷତ୍ରିୟେ ଭୀଷ୍ମ ପୃଷ୍ଠ ଭୂଲେ
ସିଂହନାଦ କରି ଅବନୀ କମ୍ପାଇଲେ ।
ଭୀଷ୍ମଙ୍କ ତାଳଧ୍ୱଜେ ପାଞ୍ଚ ତାରା ଲେଖା
ହୋଇ ଚଞ୍ଚୁଥିଲେ ପ୍ରଳୟ ଅଗ୍ନିଶିଖା ।
ଗୋବାସନ ରାଜା ଆରୋହି ମତ୍ତହସ୍ତୀ
ବାହାରିଲେ ଆଗରେ ଚଳାଇ ପଦାତି ।
ଅଶ୍ୱତ୍ଥାମା ସିଂହଲାଙ୍ଗୁଳଧ୍ୱଜ ରଥେ
ବସିଣ ବାହାରିଲେ ଯୁଦ୍ଧଭୂମି ପଥେ ।
ଶ୍ରୁତାୟୁଧ ପୁରୁମିତ୍ର ଯେ ଚିତ୍ରସେନ
ଭୂରିଶ୍ରବା ବିବିଂଶତି ଯେ ବିକର୍ଣ ।
ଶଲ୍ୟ ଆଦି ରଥୀଏ ଭୀଷ୍ମଙ୍କ ଆଗରେ
ବାହାରିଲେ ଯେ ଧନୁ ଧରି ସତ୍ୱରରେ ।
ଏମାନଙ୍କ ରଥମାନଙ୍କେ ସୁନାଧ୍ୱଜ
ସାଜଣ ଥାଇ ଲାଗୁଥିଲା ଆଖି ତେଜ ।
ସୁନାବେଦିଟିକରେ କମଣ୍ଡଳୁଧ୍ୱଜ
ଥୋଇଥିଲେ ସେ ରଥେ ବସିଣ ଆଚାର୍ଯ୍ୟ ।
ରକ୍ତବର୍ଣ୍ଣ ଘୋଡ଼ା ରଥିରେ ଯୋଚିଇ
ବାହାରିଲେ ଯେ ଦୁତଘୋଡ଼କୁ ନଚାଇ ।
ମଣିନାଗଧ୍ୱଜ ରଥରେ ଦୁର୍ଯ୍ୟୋଧନ
ବସି ବାହାରିଲେ ଯୁଦ୍ଧକୁ କରି ମନ ।
ବୃଷଧ୍ୱଜ ରଥକୁ କୃପାଚାର୍ଯ୍ୟ ଚଢ଼ି
ବାହାରିଲେ ସେନା ଆଗରେ ଆଗ ବଢ଼ି ।
ଜୟଦ୍ରଥ ରୂପାବରାହ କରି ଧ୍ୱଜ
ବାହାରିଲେ ଯୁଦ୍ଧେ ଧନୁକୁ କରି ସଜ ।
ଜୟଦ୍ରଥ ସଙ୍ଗେ ସହସ୍ର ଶଏ ରଥ
ବାହାରିଲେ ଯେ ମଣ୍ଡି ଦେଇ ମସ୍ତପଥ ।
ଛ-ଅୟୁତ ଘୋଡ଼ା ସହସ୍ର ଆଠ ହାତୀ
ଏତେକ ସୈନ୍ୟ ଘେନି ସିନ୍ଧୁଦେଶପତି ।

ପାଣ୍ଡବଙ୍କ ପ୍ରାଣକୁ କରିବାକୁ ନାଶ
ମୋଡ଼ୁଥିଲେ ସେ ଦୁଇ କରେ ଧରି ଜଣ ।
ସ୍ୱସ୍ତିକ୍ଷି ରଥ ଅୟୁତେ ହାତୀ ଭୂଲେ
ବାହାରିଲେ କଳିଙ୍ଗଦେଶରାଜା ଗଲେ ।
କେତୁମାନେ ରାଜା ହାତୀରେ ବସିକରି
ବାହାରିଲେ ମେଘରେ ଥିଲା ସୂର୍ଯ୍ୟ ପରି ।
ଭଗଦତ୍ତ ଯୁଦ୍ଧରେ ହୋଇ ଉନମତ୍ତ
ମାତଙ୍ଗ ଭୂଲେ କରି ପିଠି ହୋଇ ଗତ ।
ବାହାରିଲେ ଯେ ଯୁଦ୍ଧଦେଶେ ହୋଇ କରି
ଇନ୍ଦ୍ରଙ୍କ ପରି ଦେହ ଶୋଭକୁ ବିସ୍ତାରି ।
ହାତୀକାନ୍ଧରେ ବସି ବିନ୍ଦ ଅନୁବିନ୍ଦ
ବାହାରିଲେଟି କରିବାକୁ ଘୋର ଦ୍ୱନ୍ଦ୍ୱ ।
ଦ୍ରୋଣ ଭୀଷ୍ମ ଯେ ଅଶ୍ୱତ୍ଥା କୃପାଚାର୍ଯ୍ୟ
ଯେଉଁ ବ୍ୟୂହ କଲେଟି ସେ ମହାଆଶ୍ଚର୍ଯ୍ୟ ।
ତାହା ଦେଖିଣ ଯୋଦ୍ଧା ରଥୀ ହାତୀ ଗୁଡ଼
କରନ୍ତେ ଗିରିଶୃଙ୍ଗେ ପଡ଼ିଲେ ତ ଝଡ଼ ।
କ୍ଷତ୍ରିୟେ ତ ସୁନାକବଚ ବନ୍ଧିଥିଲେ
ଅଗ୍ନି ପରି ସମରଭୂମିରେ ଜଳିଲେ ।
ଦୁର୍ମୁଖ ଦୁର୍ବିସହ ଦୁଃସହ ଦୁଃଶାସନ
ବିବିଂଶତି ବିକର୍ଣ୍ଣ ଶଳ ଚିତ୍ରସେନ ।
ରାଜା ଭୂରିଶ୍ରବା ଯେ ସତ୍ୟବ୍ରତ ଜୟ
ପୁରୁମିତ୍ର ଆଦି ଯୁଦ୍ଧରେଟି ବିଜୟ ।
ଭୀଷ୍ମଙ୍କର ଭାବ ତାହାଙ୍କ ପୃଷ୍ଠ ଦେଶେ
ରହିଲେ ଧନୁଶର ଧରି କରଦେଶେ ।
ଏମାନଙ୍କ ସଙ୍ଗରେ କୋଡ଼ିଏ ସହସ୍ର
ରଥ ଥିଲା ହାତୀ ପଦାତି ହୋଇ ମିଶ୍ର ।
ଶୂରସେନ ଶିବ ଯେ ବସାତି ପ୍ରତୀଚ୍ୟ
କୈକେୟ ଶାଳ ମତ୍ସ୍ୟ ଅମ୍ବଷ୍ଠ ଉଦୀଚ୍ୟ ।
ଦାକ୍ଷିଣାତ୍ୟ ପ୍ରାଚ୍ୟ କରିବ ଅଭୀଷାହ
ସୌବୀର ଯେ ତ୍ରିଗର୍ତ୍ତ ଧରିଣ ଉତ୍ସାହ ।
ଭୀଷ୍ମଙ୍କର ରକ୍ଷାରେ ନିଯୁକ୍ତ ହୋଇ
ଚଳିଲେ ପାଣ୍ଡୁ ସେନା ବଢ଼ାଇବାପାଇଁ ।
ଶଏଶତ ହାତୀ ଯେ ଘେନିଣ ମାଗଧ
ନରପତିଟି ବାହାରିଲେ କରି ଯୁଦ୍ଧ ।
ରଥହାତୀ ଘୋଡ଼ାମାନଙ୍କ ରକ୍ଷାକାରୀ
ହୋଇଲେ ଷଷ୍ଟି ଲକ୍ଷ ସୈନ୍ୟ ଶସ୍ତ୍ର ଧରି ।

ଧୃତରାଷ୍ଟ୍ର ବୋଇଲେ ଏଗାର ଅକ୍ଷୌହିଣୀ
ସୈନ୍ୟ ତ ଆମ୍ଭର ଗଣନ୍ତି ମନ୍ତ୍ରୀମଣି ।
ଯୁଧିଷ୍ଠିରଙ୍କର ତ ଅଳପ ସଇନ
କି ରୂପରେ କଲେ ସେ କହ ବ୍ୟୂହମାନ ।
ଭୀଷ୍ମ ମହାରଥୀ ଯେ ଗାନ୍ଧର୍ବ ରାକ୍ଷସ
ମାନୁଷ ବ୍ୟୂହରେ ତ ଦେବତା ସଦୃଶ ।
ତାହାଙ୍କର ବ୍ୟୂହକୁ ଯୁଧିଷ୍ଠିର ବ୍ୟୂହ
ଯୋଟ ପାଇଲା କି ହେ ତାହା ମୋତେ କହ ।
ସଞ୍ଜୟ ବୋଇଲେ ଭୀଷ୍ମଙ୍କ ବ୍ୟୂହ ଦେଖି
ଯୁଧିଷ୍ଠିର ରାଜା ଯେ ହୋଇ ମନେ ଦୁଃଖୀ ।
ଅର୍ଜୁନଙ୍କୁ ବୋଇଲେ ସୂଚୀବ୍ୟୂହ କର
ଅଳପ ସଇନ ତ ଅଟଇ ଆମ୍ଭର ।
ଅର୍ଜୁନ ତା ଶୁଣି ବୋଇଲେ ବଜ୍ରବ୍ୟୂହ
କରିବ ହେ ନୃପତି ନୁହ ତୁମ୍ଭେ ମୋହ ।
ବ୍ୟୂହ ଆଗରେ ଭୀମସେନଙ୍କୁ ରଖିବ
ଦୁର୍ଯ୍ୟୋଧନ ଗରବ ଯୁଦ୍ଧରେ ଭାଙ୍ଗିବ ।
ଭୀମ ହେ ଧ ହୋଇଥିଲେଟି କୁରୁଜନ
କରି ନ ପାରିବେଟି ଜାଣ ଆୟୋଧନ ।
ଏ ରୂପେ ଜ୍ୟେଷ୍ଠଭାଇ ଆଗେ ଜଣାମଣା
କରିଣ ପାର୍ଥ ମହାରଥୀ ମହାମନା ।
ସଇନରେ ଯେ ବଜ୍ରବ୍ୟୂହକୁ ରଚିଲେ
ସେ ବ୍ୟୂହ ଆଗେ ନେଇ ଭୀମେ ରଖାଇଲେ ।
ତଦନ୍ତେ ଅର୍ଜୁନ ରଥପରେ ବସି
କୃଷ୍ଣ ତୁଲେ ଯୁଦ୍ଧକୁ ଗଲେ ହୋଇ ବେଶୀ ।
ତା ଦେଖି ଧୃଷ୍ଟଦ୍ୟୁମ୍ନ ନକୁଳ ସହଦେବ
ଧୃଷ୍ଟକେତୁ ସାତ୍ୟକି ବିରାଟ ନରଦେବ ।
ସୈନ୍ୟ ସେନ ଅର୍ଜୁନ ପଛରେ ଗୋଡ଼ାଇ
ବାହାରିଲେ ଯୁଦ୍ଧରେ ଶରଧାକୁ ବନ୍ଧି ।
ଭୀମଙ୍କ ଚକ୍ରରକ୍ଷା ନକୁଳ ସହଦେବ
ହୋଇଲେ ଆହେ ହସ୍ତିନାର ନରଦେବ ।
ଏ ବାହାରେ ଭୀମଙ୍କ ପୃଷ୍ଠରକ୍ଷା ହୋଇ
ଦ୍ରୌପଦେୟ ଅଭିମନ୍ୟୁ ତ ଥିଲେ ଯାଇ ।
ଶିଖଣ୍ଡୀ ପ୍ରଭଦ୍ରକମାନେ ଧରି ସାଥେ
ଭୀଷ୍ମେ ମାରିବାକୁ ବସିର ହୃଦପଥେ ।
ବାହାରିଲେ ବାହା ବେନକ ସେ ଅନାଇଁ
ରଥଚଢ଼ି ଆହେ ହସ୍ତିନା ନରସାଇଁ ।

ଯୁଧାମନ୍ୟୁ ଯେ ଉତ୍ତମୌଜା ଦୁଇଭାଇ
ଅର୍ଜୁନ ଚକ୍ରରକ୍ଷା ହେଲେ ମହାସାଇଁ ।
ପୃଷ୍ଠରକ୍ଷା ତାଙ୍କର ସୈନିକ ପ୍ରବର
ସାତ୍ୟକି ହୋଇଲେଟି ଧରି ଧନୁଶର ।
ଭୀମ ବ୍ୟୂହ ଆଗରେ ଟେକି ଗଦାବର
ଏହି କାଳରେ ଗର୍ଜ୍ଜ କରନ୍ତେ ଅପାର ।
ଅର୍ଜୁନ ବୋଇଲେ ଧୃତରାଷ୍ଟ୍ର ସୁତେ
ତୁମ୍ଭଙ୍କୁ ହର୍ଷିଛନ୍ତି ଦେଖ ଏକଚିତ୍ତେ ।
ସେମାନେ ତା ଶୁଣି ବୋଇଲେ ହର୍ଷି ହର୍ଷି
ଧୃତରାଷ୍ଟ୍ର ସୁତେ ଭେଟନ୍ତୁ ହେତୁପାଇଁ ।
ଭୀମ ତ ବଳୀଙ୍କର ମସ୍ତକ-ମଣ୍ଡନ
ଅଳପକରେ ନେବେ ଦୁର୍ଯ୍ୟୋଧନ ପ୍ରାଣ ।
ତାହା ଛାର ବଳେ ଏହାଙ୍କ ବାଧା କରି
ପାରିବ ବୋଲି ତା କେ ପାରିବ ଉଚ୍ଚାରି ।
ଯୁଧିଷ୍ଠିର ଯେ ହାଣି ସଇନ ମଧ୍ୟରେ
ରହିଲେ ସଜ ହୋଇ ସମର ସଧରେ ।
ଅକ୍ଷୌହିଣୀ ସେନା ଘେନ ଯେ ଦ୍ରୁପଦ
ବିରାଟ ପଛେ ଗଲେ ବହିଣ ପ୍ରମୋଦ ।
ଅର୍ଜୁନ କପିଧ୍ୱଜ ଦେଖାଇ ଗରବ
ତୁମ୍ଭ ଧ୍ୱଜମାନଙ୍କ ଭାଙ୍ଗିଲା ଗରବ ।
ଲକ୍ଷ ବଳୀ ବହୁ ପତାକି ରହିବାରେ
ଭୀମଙ୍କର ବଳ ବଢ଼ିଲା ଯେ ଯୁଦ୍ଧରେ ।
ଭୀମଙ୍କର ଗଦାଟି ଧରିବା ଭଙ୍ଗୀକି
ହର୍ଷିଣ କୁରୁମାନେ ଲଭିଲେ ଭୀତିକ ।
ଅର୍ଜୁନ ଯେଉଁ ବଜ୍ରବ୍ୟୂହ କରିଲେ
ସେ ବ୍ୟୂହ ବେଢ଼ି ପାଣ୍ଡୁସେନାଏ ରହିଲେ ।
ଏହି ସମୟରେ ତ ରେଣୁ ହୋଇ ଗୋଟି
ପବନରେ ଉଡ଼ି ଛପାଇଦେଲା ଦୃଷ୍ଟି ।
ସେ ପବନ ରଥଧ୍ୱଜଙ୍କ ଜଣ ଜଣ
ଧ୍ୱଜ ଜାତ କଲା ହସ୍ତିନା ନରସଣ ।
ସବୁ ଉଗମାନଙ୍କେ ପଡ଼ିଲା ନିର୍ଘାତ
ହୋଇବାକୁ ତାଙ୍କ ତୁମ୍ଭର ସେନା ହତ ।
ଧୃତରାଷ୍ଟ୍ର ବୋଇଲେ ସଞ୍ଜୟ ମନ୍ତ୍ରୀବର
ଭୀଷ୍ମଙ୍କୁ ଘେନି ଆମ୍ଭ ସୈନ୍ୟ କେତେ ନର ।
ପାଣ୍ଡବଙ୍କ ସଙ୍ଗେ ସମର ଆଗ କଲେ
ଏହା ମୋତେ ବିସ୍ତାରି କହିବା ହେଉ ଭଲେ ।

ଚନ୍ଦ୍ର ସୂର୍ଯ୍ୟ ପବନ ଅନୁକୂଳ ହୋଇ
ଥିଲେ କାହାକୁଟି ହେ କହ ତା ବଡାଇ ।
ଯେଉଁମାନଙ୍କର ଆଗରେ ହରଷଡ଼
ରହିକରି ବଳୁଆ କରୁଥିଲେ ରଡ଼ ।
ଏହି କଥାମାନଙ୍କ ବିଶେଷାବିଶେଷ
ଶୁଣିବାକୁ ସଞ୍ଜୟ ହେଉଛି ମାନସ ।
ସଞ୍ଜୟ ବୋଇଲେ ହେ ତୁମ୍ଭ ତାଙ୍କ ସେନା
ଯୁଦ୍ଧେ ହୋଇଥିଲେ ସ୍ୱଜନ ହୃଷ୍ଟମନା ।
ପରସ୍ପର ଦୁଇ ସେନାଏ ବଳ ସ୍ୱାର
ମରିବା ଭୟ କମ୍ପା ହୋଇବ ତାଙ୍କର ।
ପୂର୍ବକୁ ମୁଖ କରି ପାଣ୍ଡବଙ୍କ ସେନା
ଆସିଲେ ହେ ସ୍ୱଜନ ହୋଇ ଯୁଦ୍ଧମନା ।
ସେରୂପେ ତୁମ୍ଭ ସେନା ପଶ୍ଚିମମୁଖ ହୋଇ
ବାହାରିଲେ ଜୟଲକ୍ଷ୍ମୀରେ ମନ ଦେଇ ।
ଦେବଗଣ ପରି ପାଣ୍ଡବସେନା ଶୋଭି
ପ୍ରକାଶିଥିଲେ ସୂର୍ଯ୍ୟ ପ୍ରାୟେ ବୀରପ୍ରଭି ।
ତୁମ୍ଭ ସେନାଯାକ ଦୈତ୍ୟେନ୍ଦ୍ର ସେନାପ୍ରାୟେ
ଦିଶୁଥିଲେଟି ଆହେ କୁରୁକୁଳରାୟେ ।
ପାଣ୍ଡବଙ୍କ ପୃଷ୍ଠଆଡ଼ରୁ ଗନ୍ଧବହ
ଗନ୍ଧ ବୁଲେ ବହି ଫୁଲଉଥିଲେ ଦେହ ।
ତୁମ୍ଭ ସେନାଯାକେ ବଳୁଆ ହୋଇ ଗୋଟି
ବୋଲାଉଥିଲେ ରାୟେ ମେଲ ଦେଇ ପାଟି ।
ଶ୍ୱେତଛତ୍ର ଧରାଇ ଚଢ଼ି ମହାଗଜ
ରହିଥିଲେ ଯୁଦ୍ଧରେ ଦୁର୍ଯ୍ୟୋଧନରାଜ ।
ଶକୁନି ପାର୍ବତେୟଗଣ ସଙ୍ଗେ ଧରି
ଭଣଜାର ହୋଇଥିଲେଟି ରକ୍ଷାକାରୀ ।
ଭୀଷ୍ମ ସେହିରୂପେ ଟେକାଇ ଶ୍ୱେତଛତ୍ର
ସେନା ଆଗରେ ଦିଶୁଥିଲେ ଦୀପ୍ତିମନ୍ତ ।
ଅମ୍ବଷ୍ଠ ସଉବୀର ଶଳ ପଞ୍ଚନଦ
ଜଗିଥିଲେ ତୁମ୍ଭ ସୈନ୍ୟଙ୍କୁ ବହି ମୋଦ ।
ସୁନାରଥ ଉପରେ ବସି ଦ୍ରୋଣଗୁରୁ
ରହିଲେ ଯୁଦ୍ଧ ଯେସନେ ଦିଶେ ମେରୁ ।
ଭୂରିଶ୍ରବା ଜୟ ଶାଲ୍ୱାଦି ବୀରମାନେ
ରହିଥିଲେ ଧେଲୁ ଚଢ଼ି ଯୁଦ୍ଧମାନେ ।
ପଞ୍ଚାଳ ଶକ କଗଡକୁ ଦେଖି କୃପ
ଯୁଦ୍ଧ କରିବାକୁଟି କରିଥିଲେ କୋପ ।

ବୃଷ୍ଣି ଭୋଜ କୈକୟ ସୁରାଷ୍ଟ୍ର ବୃହସେନା
ଘେନିଣ ସଙ୍ଗେ କୃତବର୍ମା ମହାମନା ।
ତୁମ୍ଭ ସେନା ଦକ୍ଷିଣପାର୍ଶ୍ୱ ରକ୍ଷାକାରୀ
ହୋଇଥିଲେ ମାତ୍ର ସେ ଧନୁ କରେ ଧରି ।
ଅର୍ଜ୍ଜୁନେ ମାରିବା ଇଚ୍ଛାରେ-ସଂଶପ୍ତକ
ଅଗ୍ରତେ ଥିଲେ ରହି ହେ ନୃପନାୟକ ।
ହାତୀ ଗୋଟିକକୁ ଯେ ଶଏଗୋଟି ରଥ
ଜଗାଇଲେ ଭୀଷ୍ମ ଜାଣ ନରନାଥ ।
ରଥ ଗୋଟିକକୁ ଯେ ଶଏଗୋଟି ଘୋଡ଼ା
ଜଗିଥିଲେ ସ୍ୱରିପଟରେ ହୋଇ ଛିଡ଼ା ।
ଘୋଡ଼ା ଗୋଟିକରେ ଦଶୋଟି ଧନୁର୍ଦ୍ଧାରୀ
ଜଗିଥିଲେ ନୃପ ଭୀଷ୍ମଙ୍କ ଆଜ୍ଞା ଧରି ।
ଧନୁର୍ଦ୍ଧାରୀ ଗୋଟିକୁ ଦଶ ଫରିକାର
ଜଗିଣ କରୁଥିଲେ ଫରି ଫରଫର ।
ମହାବ୍ୟୂହ କୁରୁସେନାଙ୍କ ମଧ୍ୟେ ରଚି
ଯୁଦ୍ଧପାଇଁ ଭୀଷ୍ମ ଥିଲେ ଧନୁ ଆଞ୍ଚି ।
ବ୍ୟୂହଟି କରି ସାରି ଭୀଷ୍ମ ନରବାଘ
ପ୍ରକାଶିଣ ବଜ୍ର-ସାୟକମୂନ ସଙ୍ଘ ।
ପାଣ୍ଡବସେନା-ମୃଗଗଣଙ୍କର ପ୍ରାଣ
ନେବାକୁ ହୋଇଟି ରହିଥିଲେ ନରବଣ ।
ପାଣ୍ଡବ ସୈନ୍ୟ-ଚନ୍ଦ୍ର ଆଗରେ ଖଦ୍ୟୋତ
ପରି ତୁମ୍ଭର ସେନା ହୋଇଲେ ଉଦିତ ।
ଯେଉଁ ସେନା ନେତା ଅର୍ଜ୍ଜୁନ କେଶୀହନ୍ତା
ଶତ୍ରୁକୁ ସେ କାଣ୍ଡିକ କରିବେଟି ଚନ୍ତା ।
କେବଳ ଯୁଧିଷ୍ଠିର ଦୁର୍ଯ୍ୟୋଧନ ସୈନ୍ୟ
ଦେଖିଲାକ୍ଷଣି ମୁଖ କରିଦେଲେ ମ୍ଳାନ ।
ଭୀଷ୍ମଙ୍କ ବ୍ୟୂହକୁ ଅଭେଦ୍ୟ କରି ମଣି
ଅର୍ଜ୍ଜୁନଙ୍କୁ ଡାକି କହିଲେ ଏହି ବାଣୀ ।
ଭୀଷ୍ମଙ୍କ ପରି ଯୋଦ୍ଧା ଥାଉଁ ଦୁର୍ଯ୍ୟୋଧନ
ସଇନକୁ କେ କରି ପାରିବ ନିଧନ ।
ଭୀଷ୍ମଙ୍କର ବ୍ୟୂହକୁ ଭେଦିବାକୁ ଲୋକ
ମହୀରେ ଦିଶୁନାହିଁ ସୁଭଦ୍ରା ନାୟକ ।
ଏହି ସକାଶରୁଟି ମୋହର ହୃଦୟ
କରୁଅଛି ବିଜୟ ବିଜୟେ ସଂଶୟ ।
ଅର୍ଜ୍ଜୁନ ବୋଇଲେ ହେ ବହୁତ ଲୋକଙ୍କୁ
ଯେ ରୂପେ ଜିଣି ତାହା କହିବା ତୁମ୍ଭଙ୍କୁ ।

ନାରଦ ଭୀଷ୍ମ ଦ୍ରୋଣ ଜାଣନ୍ତି ତ ଏହା
ତୁମ୍ଭେ ଏବେ ଶୁଣି ତା ଜାଣ ନରନାହା ।
ଇନ୍ଦ୍ରାଦି ଦେବତାଙ୍କୁ ଦେବାସୁରଙ୍କର
ସମରକାଳେ ଏହା କହିଲେ କୁଶଧର ।
ଧର୍ମ ବିନା ଯୁଦ୍ଧରେ ନୁହଇଟି ଜୟ
ଏଥିକି ଜାଗିଥିବ ସର୍ବ ଦେବଚୟ ।
ମୋତେ ମଧ୍ୟ ନାରଦ ପୂର୍ବେ କହିଛନ୍ତି
କୃଷ୍ଣ ବିନା ଆନରେ ନାହିଁ ଜୟ-ଭୂତି ।
କୃଷ୍ଣ ଯହିଁ ଥାଆନ୍ତି ତହିଁ ଥାଏ ଜୟ
ଏଥିରେ ଶଙ୍କା ରଖିଥିଲେ ଗୁଢ଼ବଡ଼ ।
ଏବେ ତ କୃଷ୍ଣ ଆମ୍ଭ ପାଶେ ରହିଛନ୍ତି
ଏଥିକି କମ୍ପା ଚିନ୍ତା କରୁଛ ନୃପତି ।
ପୁଣି ସେ ତୁମ୍ଭ ଜୟ କରନ୍ତି ଆଶଂସା
ଏଥିରେ କହିବାକୁ ଅଛି କେଉଁ କଥା ।
ଅର୍ଜୁନଙ୍କ ବଚନ ଶୁଣି ନରଈଶ
ଡାକକରି ସେନାଙ୍କୁ ଦେଲେ ସେ ଆଦେଶ ।
ସ୍ୱର୍ଗଦ୍ୱାର ବାଟଟି ଫିଟିଅଛି ଏବେ
ଯୁଦ୍ଧରେ ବିକଳ୍ପ ନ ରଖି ହୃଦେ ଲବେ ।
ଏହା କହିଣ ଦ୍ୱିଜମାନଙ୍କୁ ଡକାଇ
କରାଇଲେ ସ୍ୱସ୍ତି ବାଚନ ନରସାଇଁ ।
ଗାଈ ବସ୍ତ୍ର ଫଳ ପୁଷ୍ପ ଯେ ଦାନ ଦେଲେ
ଦାନ ଅନୁରୂପ ଦକ୍ଷିଣା ସମର୍ପିଲେ ।
ସ୍ୱଗୋତ୍ରଜ ଆଦି ଯେତେକ ଦ୍ୱିଜବୃନ୍ଦ
ଥିଲେ ଜୟ ପାଇଁ ଜପିଲେ ମନ୍ତ୍ରସିଦ୍ଧ ।
କପିଧ୍ୱଜ ରଥରେ ଅର୍ଜୁନ ଆସୋହି
ରହିଲେ ପ୍ରଳୟାଗ୍ନି ପ୍ରାୟେ ପ୍ରଭା ବହି ।
ତୁମ୍ଭ ପୁତ୍ରମାନଙ୍କ ନାଶପାଇଁ କାଳ
ସ୍ୱରୂପ ଧଇଲେ ସେ କାଳେ ଇନ୍ଦ୍ରବାଳ ।
ଭୀମ ମହାବଳ ସାନ ଦୁଇଟି ଭାଇ
ସଙ୍ଗେ ଘେନି ଅର୍ଜୁନ ସାହା ହେଲେ ଯାଇ ।
ତୁମ୍ଭ ସେନାଯାକ ମନ୍ଦ୍ରିଁ ଗଜ୍ରୁଣିଟି
କରି ଭୀମସେନଙ୍କୁ ଖୋଜିଲେ ଚଉଦିଟି ।
ଏହିକାଳେ ଅର୍ଜୁନ ମୁଖକୁ ଗୋବିନ୍ଦ
ଅନାଇଁ କରି ହୃଦେ ବହିଣ ଆନନ୍ଦ ।
କହିଲେ ଦେଖ ହେ ବିଜୟ ଜୟ ଇଚ୍ଛା
କରିଣ ରହିଛନ୍ତି ଶାନ୍ତନୁଙ୍କ ବଚ୍ଛା ।

ପୂର୍ବରେ ଏ ଭୀଷ୍ମ ତିନଶ ବାଜମେଧ
ଯାଗ କରି ତୋଷିଅଛନ୍ତି ବିବୁଧ ।
ଏହାଙ୍କୁ କି ଯୁଦ୍ଧରେ ପର୍ଶୁରାମ ହାରି
ଅଛନ୍ତି ଆନ ଲୋକ ଯୁଝିବ କି କରି ।
ତୁମ୍ଭମାନଙ୍କର ଅଟନ୍ତି ପିତାମହ
କୁରୁ ପାଣ୍ଡବଙ୍କରେ ଏହାଙ୍କର ସ୍ନେହ ।
ସଞ୍ଜୟ ବୋଇଲେ ହେ ରାଜନ ଏରୂପେ
ଅର୍ଜୁନଙ୍କୁ ଶ୍ରୀକୃଷ୍ଣ କହି କରି ଆପେ ।
ପୁଣି ଅର୍ଜୁନଙ୍କର ହିତକୁ ବିସ୍ତାରି
କହିଲେ ହୃଦପଦ୍ମେ ହରି ଭାବ କରି ।
ବିଜୟ ପାଇଁ ଦୁର୍ଗାଦେବୀଙ୍କର ସ୍ତୋତ୍ର
ପଢ଼ ଆହେ ପାଣ୍ଡୁ ନୃପତିଙ୍କର ପୁତ୍ର ।
କୃଷ୍ଣଙ୍କ ବଚନେ ଅର୍ଜୁନ ହୋଇ ତୋଷ
ନମସ୍କାର କରି ଦୁର୍ଗାଙ୍କ ପାଦଦେଶ ।
ଦେହଟି ଶୁଦ୍ଧ କରି କର ଦୁଇ ଯୋଡ଼ି
ଦୁର୍ଗାଙ୍କର ସ୍ତୋତ୍ର ପଢ଼ିଲେ ମୁଖେ ବାଢ଼ି ।
ଚଣ୍ଡି ମହାପୁଣ୍ୟେ କୁମାରି ଭଦ୍ରକାଳି
କାତ୍ୟାୟିନି ସିଦ୍ଧସେନାନି ମହାକାଳି ।
ଶିଖିପୁଚ୍ଛୀ ଧ୍ୱଜଧାରିଣି ଆର୍ଯ୍ୟେ କାଳି
କପିଳେ ଜୟେ କୃଷ୍ଣପିଙ୍ଗଳେ କପାଳି ।
ଖଡ୍ଗଖେଟକଧାରିଣି ମନ୍ଦରବାସିନି
ବରବର୍ଣ୍ଣିନି ହେ ଜ୍ୟେଷ୍ଠେ ପୀତବାସିନି ।
ଅଟ୍ଟହାସିନି କରାଳି କୌଶିକି ବିଜୟେ
ଗୋପେନ୍ଦ୍ରକନ୍ୟେ ହେ ମହିଷାସୃକ୍‌ପ୍ରିୟେ ।
ଉମେ ଶାକମ୍ଭରି ଶ୍ୱେତେ ହେ ବିରୂପାକ୍ଷି
କୃଷ୍ଣେ ରଣପ୍ରିୟେ କୃଷ୍ଣେ ହିରଣ୍ୟାକ୍ଷି ।
ନନ୍ଦଗୋପକୁଳୋଦ୍ଭବେ ହେ ଧୂମ୍ରାକୃତି
ଅଟ୍ଟଶୂଳପ୍ରହରଣେ ହେ ବେଦଶ୍ରୁତି ।
ହେ ବ୍ରହ୍ମବନ୍ଦ୍ୟେ ସ୍ୱାହେ ଦୁଷ୍ଟଅବାସିନି
ମହାନିଦ୍ରେ ହେ ଦୁର୍ଗେ କୈଟଭନାଶିନି ।
ଜୃମ୍ଭଣି କଳେ କାଷ୍ଠେ ସ୍ୱାଧେ ସ୍କନ୍ଦମାତଃ
ଚନ୍ଦ୍ରାଦିତ୍ୟବିବର୍ଦ୍ଧନି ହେ ବେଦମାତଃ ।
ନାନା ଆଭରଣଭୂଷିତେ ପ୍ରଭାବତି
ତାରିଣି ମହାଭାଗେ ମାୟେ ଭଗବତି ।
ମୋହିନୀ ଭୂତସାଧେ ଜନନୀ ସରସ୍ୱତି
ତୁଷ୍ଟି ପୁଷ୍ଟି ଜାତବେଦସି ହେ ସାବିତ୍ରି ।

ଭୁମ୍ଭ ପାଦେ ପୁନଃ ପୁନଃ ମୁଁ ନମସ୍କାର
ଜରେ ଯୁଦ୍ଧେ ଜୟ ଦେବାକୁ ଦିଅ ବର ।
ଅର୍ଜୁନଙ୍କ ଭକତି ଜାଣି ଭଗବତୀ
ଆକାଶେ ଉତ୍ତର କଲେ ଏ ଯୁକତି ।
ତୁମ୍ଭେ ତ ନର ନାରାୟଣ ତୁମ୍ଭ ସାହା
ଏଣୁ ଶତ୍ରୁ ମାରି ପାରିବ ତୁମ୍ଭ ବାହା ।
ଆମ୍ଭେ ବରଂ ଦେବାକୁ ଆଉ କସ ଅଛି
ଯୁଦ୍ଧ କରି ଜିଣ ହେ ପାଣ୍ଡୁ ନୃପବନ୍ଧି ।
ଆହେ ଧୃତରାଷ୍ଟ୍ର ଏହିରୂପେ କର୍ମାୟା
ବଚନ କହିଣ ଗଲେ ସେ ମହାମାୟା ।
ଅର୍ଜୁନ ଦୁର୍ଗାଙ୍କଠାରୁ ବର ପାଇ
ଭାବିଲେ ମାରିବ କୁରୁଙ୍କୁ ଶରେ ମୁହିଁ ।
କୃଷ୍ଣ ଅରଜୁନ ଥାଇଣ ଏକ ରଥେ
ଶଙ୍ଖକୁ ବଜାଇଲେ ଧରି ଦୁଇହାତେ ।
ସକାଳୁ ଉଠିଣ ଏ ସ୍ତୋତ୍ର ଯେ ପଢଇ
ଯକ୍ଷ ରକ୍ଷ ପିଶାଚ ଭୟ ତାକୁ ନାହିଁ ।
ସାପ ବାଘ ମୁଖରୁ ତରେ ସେହୁ ଜନ
ବିବାଦରେ ଜିଣିବେ ଜିଣେ ଶତ୍ରୁଜନ ।
ବନ୍ଧନ ଦୁର୍ଗତିରୁ ଅଚିରେ ତରଇ
ରାଜାଠାରେ ଥିବାର ଭୟକୁ ଛଡ଼ାଇ ।
ମନବେଗ ହୋଇଣ ବହୁତ ଶତ ଜୀଏ
ଅନ୍ତଃକାଳେ ଯାଇ ସ୍ୱର୍ଗକୁ ସେହୁ ପାଏ ।
ବ୍ୟାସଙ୍କ ବଳରେ ଅର୍ଜୁନ ମନକଥା
ଜାଣି କହିଲ ହେ ରାଜନ ମହାରଥା ।
ଅଞ୍ଜନ ସକାଶୁଁ ତୁମ୍ଭର ସୁତମାନେ
ବହିଛନ୍ତି କୃଷ୍ଣାର୍ଜୁନଙ୍କୁ ରୋଷ ମନେ ।
ବୈଶମ୍ପାୟନ ନାରଦ କଣ୍ୱ ରାମ ବାଣୀ
ନ ଶୁଣିଲ ଦୁଃଖ ପାଇବ ନରମଣି ।
ଧର୍ମମାର୍ଗ ହରି ଟି ଶିବ ଯେଉଁଠାରେ
ଅଛି କୃଷ୍ଣ ଅନନ୍ତ ଜାଣ ସେହିଠାରେ ।
କୃଷ୍ଣଙ୍କ ଥିବାଠାରେ ଜୟ ରହିଅଛି
ଏଥି କହିବାକୁ ସନ୍ଦେହ ନାହିଁ କିଛି ।
ଧୃତରାଷ୍ଟ୍ର ବୋଇଲେ ଦୁଇକୁଳ ସେନା
ରହିଲେ ତ ଯୁଦ୍ଧରେ କରିଣ କାମନା ।
କେଉଁମାନେ ଆଗରେ ଯୁଦ୍ଧ ଆରମ୍ଭିଲେ
ତାହା ତ ମନ୍ତ୍ରୀ ମହାଭାଗ କହ ଭଲେ ।

ସଞ୍ଜୟ ବୋଇଲେ ହେ ଦୁଇସେନା ଲୋକ
ମରିବାକୁ ରାଜନ ଛାଡ଼ିଥିଲେ ଶୋକ ।
କର୍ପୂର ଚନ୍ଦନ ଫୁଲରେ ବିଭୂଷିତ
ହୋଇଣ ଦେହ କରିଥିଲେ ଉଲ୍ଲସିତ ।
ଏରୂପେ ଦୁଇସୈନ୍ୟ ଯୁଦ୍ଧରେ ସନ୍ନଦ୍ଧ
ହୋଇ ହୃଦମଧ୍ୟରେ ବଢ଼ି କରି କ୍ରୋଧ ।
ଶଙ୍ଖ ଭେରୀ ମୃଦଙ୍ଗମାନ ବଜାଇଲେ
ତାହା ଶୁଣିଣ ହାତୀ ଘୋଡ଼ା ଗରଜିଲେ ।

———

## ଶ୍ରୀକୃଷ୍ଣଙ୍କର ଭଗବଦ୍‌ଗୀତା କଥନ

ଭଗବତ ଗୀତା ଅଠରଅଧ୍ୟାୟ ବ୍ୟାସ
ଏଠାରୁ କରିଛନ୍ତି ଏଥିକି ପ୍ରକାଶ ।
ସେ ଗୀତାକୁ ମୁଖରେ ଗାଇବ ଯେ ମୁହିଁ
ହେଲେ ମୋର ଦୋଷ ନ ଧେନିବ ଟି କେହି ।
ଜୟ ଜଗନ୍ନାଥ ହେ ଶଙ୍ଖଚକ୍ରହାତ
ମୋ ହୃଦପଦ୍ମ ମଧ୍ୟେ ପୂରିଅ ଗୀତାର୍ଥ ।
ଏହା ଶୁଣି ହସ୍ତିନାମଣ୍ଡଳ ନୃସାଇଁ
ପୁଚ୍ଛିଲେ ସଞ୍ଜୟଙ୍କ ମୁଖକୁ ଅନାଇଁ ।
ଧର୍ମଭୂମି କୁରୁକ୍ଷେତ୍ରରେ ମୋର ସୁତେ
ଘୋଟି ତ ହେଲେ ଯୁଝି ରାଜ୍ୟ ନେବା ଚିତ୍ତେ
ପାଣ୍ଡୁ ସୁତେ ଥିଲେ ସଇନ ଘୋଟିଆଇ
କି କଲେ ତାହା ମୋତେ କହ ତ ବତାଇ ।
ସଞ୍ଜୟ ବୋଇଲେ ପାଣ୍ଡବ ସେନା ଦୃଢ଼
ଦେଖି କରି ତୁମ୍ଭର ଦୁର୍ଯ୍ୟୋଧନ ମୂଢ଼ ।
ଦ୍ରୋଣଙ୍କଠାକୁ ଯାଇ ବୋଇଲେ ଗୋସାଇଁ
ଦେଖ ଅରଜୁନ ରହିଛି ଯୁଦ୍ଧ ପାଇଁ ।
ଦ୍ରୁପଦ ପୁତ୍ରଙ୍କରେ ହୋଇଣ ପାଳିତ
ଆସିଛି ସଙ୍ଗେ ମଧ୍ୟ ସଇନ୍ୟ ବହୁତ ।
ବିରାଟ କାଶୀରାଜା ଶୈବ୍ୟ ଯୁଯୁଧାନ
କୁନ୍ତିଭୋଜ ଦ୍ରୌପଦେୟ ଯେ ଚେକିତାନ ।
ଉତ୍ତମୌଜା ଧୃଷ୍ଟକେତୁ ଯେ ଯୁଧାମନ୍ୟୁ
ଦ୍ରୁପଦରାଜ ପୁରୁଜିତ ଅଭିମନ୍ୟୁ ।
ଏ ସମସ୍ତେ ତ ମହାରଥୀରେ ଗଣିତ
ଦେଖ ଅସ୍ତ୍ର ଶସ୍ତ୍ରରେ ବିଶନ୍ତି ଶୋଭିତ ।
ଆମ୍ଭ ସୈନ୍ୟେ ଯେତେ ଅଛନ୍ତି ରଥିଗଣ
ତାହା ମଧ୍ୟ କହିବି ଶୁଣ ଗୁରୁ ଦ୍ରୋଣ ।

ଆପଣ ଭୀଷ୍ମ କର୍ଣ୍ଣ କୃପ ଜୟଦ୍ରଥ
ବିକର୍ଣ୍ଣ ସୋମଦତ୍ତ ଦ୍ରୌଣି ମହାରଥ ।
ଏ ବାହାରେ ମୋ ପାଇଁ ମରିବାକୁ ଶୂର
ମୋ ସୈନ୍ୟରେ ଦ୍ରୋଣ ହେ ଅଛନ୍ତି ଅପାର ।
ପୁଣି ଭୀଷ୍ମଙ୍କରେ ସେ ହୋଇଛି ରକ୍ଷିତ
ତେବେ ହେଲେ ଜୟରେ ପାଉନାହିଁ ଚିତ୍ତ ।
ପାଣ୍ଡବଙ୍କ ଅଳପ ସେନା ଭୀମବଳେ
ପାଳିତ ହୋଇ ଯୁଦ୍ଧେ ଜୟନେବେ ହେଳେ ।
ଏଣୁ ସକାଶରୁଟି ବ୍ୟୂହଦ୍ୱାରେ ତୁମ୍ଭେ
ରକ୍ଷ ଭୀଷ୍ମ ରଥୀଙ୍କି ରଖ ବୋଲି ଆମ୍ଭେ ।
ଦ୍ରୋଣଙ୍କୁ ଦୁର୍ଯ୍ୟୋଧନ କହିବା ବଚନ
ଶୁଣିଣ ପିତାମହ ହୋଇଣ ପ୍ରସନ୍ନ ।
ଗର୍ଜନୁଟାଏ କରି ବଜାଇଣ ଶଙ୍ଖ
ସେ ଶବଦେ ହରିଲେ ନିଜ ଯୋଦ୍ଧା ଦୁଃଖ ।
ତଦନ୍ତରେ କୁରୁ ଯୋଦ୍ଧାଏ ଗୋମୁଖ
ପଣବ ଭେରୀ ଶଙ୍ଖ ଫୁଙ୍କିଲେ ଦେଇ ମୁଖ ।
ସେ ଶବଦରୁ ମହାଶବଦ ପ୍ରବର୍ତ୍ତି
ଫାଟିଗଲା କି ଅବା ଗିରି ବୁଲେ କ୍ଷିତି ।
ଶ୍ୱେତହୟ ଯୋକ୍ତ ରଥରେ କୃଷ୍ଣାର୍ଜୁନ
ବସି କରି ଯୁଦ୍ଧରେ ବଳାଇଣ ମନ ।
ପାଞ୍ଚଜନ୍ୟ ଯେ ଦେବଦତ୍ତ ଶଙ୍ଖ ଧରି
ଫୁଙ୍କିଲେ ଏହା ଦେଖି କରି ଆଣ୍ଠ ଭରି ।
ପଉଣ୍ଡ୍ରକ ଶଙ୍ଖକୁ ଧରି ବୃକୋଦର
ବଜାଇଲେ ଉଜାକୁ କରି ଥରଥର ।
ଅନନ୍ତ ବିଜୟ ବିଜୟ ହେବା ପାଇଁ
ବିଜୟ ବଡ଼ଭାଇ ଫୁଙ୍କିଲେ ତୋଷ ବହି ।
ସୁଘୋଷ ମଣିପୁଷ୍ପକ ଶଙ୍ଖ ଯମଳ
ନକୁଳ ସହଦେବ ଫୁଙ୍କିଲେ କରି ବଳ ।
କାଶୀରାଜା ଶିଖଣ୍ଡୀ ବିରାଟ ଧୃଷ୍ଟଦ୍ୟୁମ୍ନ
ସାତ୍ୟକି ଦ୍ରୌପଦେୟ ଦ୍ରୁପଦ ରାଜନ ।
ଅଭିମନ୍ୟୁ ଆଦି ନାନା ଶଙ୍ଖକୁ ଧରି
ବଜାଇଲେ ମୁଖଦେଶରେ ଭରି କରି ।
ସେ ଶଙ୍ଖ ଶବଦେ ରାଜନ କୁରୁ ପୋଏ
ମଲୁଇଁ ବୋଲି କରି କମ୍ପିଲେ ହୃଦୟେ ।
ଶର ବନ୍ଧିବାକୁ କଥାଟି ମାତ୍ର ଅଛି
ଏଣୁକାଳେ କୃଷ୍ଣେ କହିଲେ ଇନ୍ଦ୍ରବସ୍ତି ।

ଏ ଦୁଇସେନା ମଧ୍ୟେ ମୋ ରଥ ଗୋବିନ୍ଦ
ରଖ ନେଇ ହୃଦରେ ବହିଣ ଆନନ୍ଦ ।
ମୋ ସଙ୍ଗେ ଯୁଦ୍ଧି ଆସିଛନ୍ତି ଯେଉଁମାନେ
ଦେଖିବି ତାହାଙ୍କୁ ହେ କୃଷ୍ଣ ମୁଁ ନୟନେ ।
କାହା ଜୁଝରେ ମୁହିଁ ବନ୍ଧାବନ୍ଧି ବାଣ
ହୋଇବ ମୋତେ କହ ରୁକ୍ମିଣୀ ରମଣ ।
ଧୃତରାଷ୍ଟ୍ର ପ୍ରିୟକାରୀଙ୍କ ମୁଖ ହେରି
ଥରେ ମୁଁ ଦେଖାଯାଏ ଥିରେ ଥାଅ ହେରି ।
ଏରୂପେ ଅର୍ଜୁନ ବଚନେ ଯଦୁସାଇଁ
ଭୀଷ୍ମ ଦ୍ରୋଣ ଆଗେ ରଖିଲେ ରଥ ନେଇ ।
ଏ ବାହାରେ କୁମ୍ଭର ସୈନ୍ୟଯାକ ଗୋଟି
ହୋଇ ଦେଖୁଥିଲେ ରାଜନ ସେ କଥାଟି ।
ଏ ସମୟେ କୃଷ୍ଣ କହିଲେ ଅର୍ଜୁନଙ୍କୁ
ଦେଖ ଭୀଷ୍ମ ଦ୍ରୋଣଙ୍କ କୁଳରେ କୁରୁଙ୍କୁ ।
ଏ କାଳକୁ ଉଚିତ ହେଉଛି ଯେ କଥା
ତାହା କରି ଆହେ ଅର୍ଜୁନ ମହାରଥା ।
ପିତୃ ପିତାମହ ଯେ ଗୁରୁ ଭାଇ ପୁତ୍ର
ନାତି ମାମୁଁ ଶ୍ୱଶୁର ସମ୍ବନ୍ଧୀ ଶଳା ମିତ୍ର ।
ନୟନରେ ଦେଖିଣ ଅର୍ଜୁନ ମେଟା
ଦେହକୁ ସେହିକ୍ଷଣି କରିଦେଇ କୁଣ୍ଠା ।
କହିଲେ ଆହେ ମଧୁସୂଦନ ଗୋବିନ୍ଦ
ଯୁଦ୍ଧରେ ହେଉନାହିଁ ମୋହର ଆନନ୍ଦ ।
ଦେଖ ମୋ ଦେହକୁ ଶୀର୍ଣ୍ଣତା ଭଜିଅଛି
ମୁଖ ମଧ୍ୟ ମୋହର ଶୁଖି ଯାଉଅଛି ।
ଜଙ୍ଘା ମୋର ଗଣ୍ଠି ହେଉଛି ଥରଥର
ରୋମୋଦ୍ଗମ ମଧ୍ୟ ହେଉଛି ମୋ ଶରୀର ।
ଦେହ ଗୁଡ଼ି ମୋର ସୁବର୍ଣ୍ଣ କବଚଟି
ଗୋବିନ୍ଦ ଦେଖ ରଥ ପରେ ଅଛି ଲୋଟି ।
ଗାଣ୍ଡୀବଧନୁ ମୋର ପ୍ରାଣରୁ ଅଧିକ
ଧରିପାରୁ ନାହିଁ ମୋ ଦୁଇକରଯାକ ।
ମସ୍ତକ ମଧ୍ୟ ମୋର ହେଉଛି ବୁଲାଇ
ଦେଉଁ ବେଳ ସ୍ୱର ଯାଉଛି ଊଣା ହୋଇ ।
ସ୍ୱଜନଙ୍କୁ ଯୁଦ୍ଧରେ [illegible]ଲି ମୁଁ ବିନାଶ
ଶ୍ରେୟ ନ ପାଇବ ଜାଣୁଛି ହୃଷୀକେଶ ।
ବିଜୟ-ଲକ୍ଷ୍ମୀ କୃଷ୍ଣ ନାହିଁ ମୋର ଲୋଡ଼ା
କେ କଲା କହ ମୋତେ ଯୁଦ୍ଧ ମୁହଁପୋଡ଼ା ।

ରାଜ୍ୟଭୋଗରୁ ମୋ କାରଣ ହେବ କିସ
ବନ୍ଧୁଜନମାନେ ତ ଯିବେ ଯମପାଶ ।
କୁଳରେ ଯେବେ ଲୋକ ଗୋଟିଏ ପାଇବ
କୁଳ ବୁଡ଼ାଏ କି ହେ ଯଦୁକୁଳ ସାଇଁ ।
ଯାହାଙ୍କ ପାଇଁ ରାଜ୍ୟ ଧନ ଅରଜିବା
ତାହାଙ୍କୁ ମାଇଲେ କି ସମ୍ପତ୍ତି ଭୁଞ୍ଜିବା ।
ମୋତେ ମାରି ପଛକେ ରାଜ୍ୟ ଏ ଖାଆନ୍ତୁ
ଏହାଙ୍କୁ ମୁଁ ହେଳି ନ ପାରେ କୃଷ୍ଣ ମୃତ୍ୟୁ ।
ଏହାଙ୍କୁ ମାରି ତିନଲୋକ ସମ୍ପତ୍ତିକ
ଆଣି ନ ପାରିବ ଗୋବିନ୍ଦ ମୋ କତିକ ।
ଆତତାୟୀ ଲୋକଙ୍କୁ ଲେଖିଅଛୁ ଶାସ୍ତ୍ର
ପକାଇବ ନାଶି ପ୍ରହାରି କରି ଶସ୍ତ୍ର ।
ସେ ରୂପେ ହେଲେ ହେଲେ ଧୃତରାଷ୍ଟ୍ରକୁଳ—
ଭୃଣ ନ ଦହିବ ମୁଁ ବର୍ଷି ଶରାନଳ ।
ସ୍ୱଜନଙ୍କୁ ମାରିଣ ଇହ ପର ଦୁଇ
ବୁଡ଼ାଇ ନ ପାରିବ ଜାଣ ଯଦୁସାଇଁ ।
ଧୃତରାଷ୍ଟ୍ର ସୁତେ ତ ଜ୍ଞାନ ଛନ୍ତି ଛାଡ଼ି
ଏଣୁ କୁଳକ୍ଷୟ ଲୋଡ଼ନ୍ତି ହରଷଢ଼ି ।
ଜ୍ଞାନ ଥାଇ ଆମ୍ଭେ କି ରୂପରେ ତାହାଙ୍କୁ
ମାରିବାଟି ହେ କୃଷ୍ଣ କହ ତା ଆମ୍ଭଙ୍କୁ ।
ମରଣକୁ ଯେବେ ଭଜନ୍ତି କୁଳଶ୍ରେଷ୍ଠେ
ନାଶ ଯାନ୍ତି କୁଳଧର୍ମରେ ଗରିଷ୍ଠେ ।
କୁଳଧର୍ମ ନାଶ ଗଲେଟି ଅଧରମ
କୁଳକୁ ଆକର୍ଷେ ହେ ପୁରୁଷୋତ୍ତମ ।
ଅଧର୍ମ ଯେଣୁ କୁଳସ୍ତ୍ରୀଏ ଯାନ୍ତି ନାଶ
ଏ ଯେଣୁ ହୋଏ ବର୍ଣ୍ଣସଙ୍କର ପ୍ରକାଶ ।
ବର୍ଣ୍ଣସଙ୍କରଙ୍କ ସକାଶୁଁ ପିତୃଲୋକେ
ଲୁପ୍ତପିଣ୍ଡ ହୋଇଟି ପଡ଼ନ୍ତି ନରକେ ।
ଜାତି କୁଳ ଧରମ ଝରିଣ ଉଚ୍ଛନ୍ନ
ସେ ମଧ୍ୟ କରନ୍ତିଟି ନରକରେ ସ୍ଥାନ ।
ଆମ୍ଭେମାନେ ରାଜ୍ୟଲୋଭରେ ବାଇ ହୋଇ
ସ୍ୱଜନ ମାରିବାକୁ ଆସିଥାଇଁ ଧାଇଁ ।
ଆମ୍ଭେ ଶସ୍ତ୍ର ଗ୍ରହଣ ହୋଇଥିବା ଛାଡ଼ି
ମାରନ୍ତୁ ଧୃତରାଷ୍ଟ୍ରସୁତେ ଗୁଡ଼ ଭୀଡ଼ି ।
ଏ ରୂପେ ଅର୍ଜୁନ କୃଷ୍ଣଙ୍କ ଆଗେ କହି
ପକାଇ ଧନୁଶର ପଡ଼ିଲେ ରଥେ ଶୋଇ ।

ଏଠାରେ ଭଗବତ ଗୀତାଙ୍କ ପ୍ରଥମ—
ଅଧ୍ୟାୟ ଶେଷ କଲେ ସେନାଦର୍ଶ ନାମ ।
ପରାଶର ସୁତ ଯେ ବ୍ୟାସ ମହର୍ଷି
କହେ କୃଷ୍ଣସିଂହ ନରେଶ ଗୀତେ ବସି ।

———

## ଦ୍ୱିତୀୟ ଅଧ୍ୟାୟ

ଏଥନ୍ତେ ସଞ୍ଜୟ ବୋଇଲେ ଧୃତରାଷ୍ଟ୍ର
ଦେଖି ଅର୍ଜୁନଙ୍କୁ ବିଷଣ୍ଣ କୃପାବିଷ୍ଟ ।
ମଧୁ ଦୈତ୍ୟ ଅରି ରୁକ୍ମଣୀ ପ୍ରାଣସାଇଁ
କହିଲେ ଅର୍ଜୁନଙ୍କ ମୁଖକୁ ଅନାଇଁ ।
କୁରୁଏ ପ୍ରାଣ ନେବାପାଇଁ ଆସିଛନ୍ତି
ତାହାଙ୍କଠାରେ ତୁମ୍ଭେ ବହୁକରି ପ୍ରୀତି ।
ଅଜ୍ଞାନ ହୋଇ କରି ପଡ଼ିଛ ରଥରେ
କହତ ଅରଜୁନ ଏ କାରଣ ଥରେ ।
ଆର୍ଯ୍ୟମାନଙ୍କର ଏ ନୁହଇ ସେବିତ
ଇହ ପର ଦୁଇରେ ଏ ଅଟେ ଗର୍ହିତ ।
ଏହି ସକାଶରୁଟି କାତରତା ଛାଡ଼ି
ଉଠ ହେ ଅରଜୁନ ବାହୁ ଦୁଇ ମୋଡ଼ି ।
ଅର୍ଜୁନ ବୋଇଲେ ଗୁରୁ ତ ଭୀଷ୍ମ ଦ୍ରୋଣ
କହ କି ରୂପେ ମୁଁ ବିନ୍ଧିବ ତାଙ୍କୁ ବାଣ ।
ଏହାଙ୍କୁ ମାରିବା ପ୍ରତିକ ଭିକ୍ଷା ମାଗି
ଖାଇବ ହେ କୃଷ୍ଣ ହୋଇଣ ବଇରାଗୀ ।
ଗୁରୁଙ୍କୁ ମାରି ଭୋଗ କରିବ ମୁଁ ଯହା
ଅମେଧ୍ୟ ଦ୍ରବ୍ୟ ବୋଲି ଜାଣ ହରି ତାହା ।
କୁରୁଙ୍କର ଆମ୍ଭର ଜୟ ପରାଜୟ
ଦୁଇରୁ ଜାଣୁନାହିଁ କେଉଁ କଥା ଶ୍ରେୟ ।
ଯାହାକୁ ମାରିବାକୁ ଇଚ୍ଛା କରୁନାହିଁ
ସେ ଏବେ ମରିବାକୁ ଛନ୍ତି ଆଗେ ରହି ।
କୁରୁଠାରେ ଦୟା ବହି ମୋ ବଳ ଗୁଣ
ଊଣା ହୋଇଗଲା ହେ ଜାଣ ନାରାୟଣ ।
କ୍ଷତ୍ରିୟ ଭିକ୍ଷା କଲେ ଧର୍ମ ବା ଅଧର୍ମ
ହେବ କୃଷ୍ଣ ମୋତେ କହ ଏଥି ଧର୍ମ ।
ଏହି ସକାଶରୁ ସନ୍ଦିଗ୍ଧ ଚିତ୍ତ ହୋଇ
ଅତଏବ ପୁଚ୍ଛୁଅଛୁ ଜାଣ ମୁହିଁ ।
ସବୁବେଳେ ତୁମ୍ଭେ ତ ମୋ ଶରଣ ପାଦ
ଯଥାର୍ଥ କହି କର ମୋ ଗାଢ ପ୍ରବୋଧ ।

ମୋର ଇନ୍ଦ୍ରିୟଶୋକଦନ୍ତା ହୋଇ କେହି
ମର୍ତ୍ତ୍ୟରେ ଥିଲ ପର ଲୋକ ଦିଶୁନାହିଁ ।
ନିଷ୍କଣ୍ଟକ ହୋଇଣ ପୃଥିବୀ ସ୍ୱରାଜ
ମିଳିଲେ ହେଲେ ନ ମିଟେ ମୋ ଶୋକଭାଗ ।
ଏରୂପେ ଶ୍ରୀକୃଷ୍ଣଙ୍କୁ ଅରଜୁନ କହି
ନ ଯୁଝିବି ବୋଲି ରହିଲେ ତୂନି ହୋଇ ।
ଅର୍ଜୁନର ଶୁଣି ଏ ଉକ୍ତି ଭଗବାନ
ହସି କରି ତାଙ୍କୁ କହିଲେ ଏ ବଚନ ।
ଶୋକକୁ ଅଯୋଗ୍ୟ ତା ପାଇଁ କର ଶୋକ
ବୁଧ ନୋହି କହୁଛ ବୁଧ କଥାଯାକ ।
ପଣ୍ଡିତମାନେ ମଲା ଜୀଇଲା ଲୋକଙ୍କୁ
ଶୋକ ନ କରନ୍ତି ହେ କହୁଛି ତୁମ୍ଭଙ୍କୁ ।
ତୁମ୍ଭେ ଆମ୍ଭେ ଏ ମହୀମଣ୍ଡଳେ ନରସାଇଁ
ଥିଲୁଇଁ ପୂର୍ବେ ଜାଣ ଏବେ ହୋଇଲୁଇଁ ।
ଏବେ ଯାଇ ସୃଷ୍ଟି ହୋଇବା ଆଉ ଥରେ
ଏଥିକି ଶୋକ କିମ୍ପା ଧରୁଛ ହୃଦରେ ।
ମର୍ତ୍ତ୍ୟଲୋକ ଦେହରେ କୌମାର ଯୌବନ
ଜରା ଯେଉଁରୂପେ ହେଉଛି ଉତପନ୍ନ ।
ସେ ରୂପେ ଆନ ଦେହ ହେଉଛି ପ୍ରାପତ
ପଣ୍ଡିତେ ଏହା ଜାଣି ମୋହ ଛାଡ଼ିଥାନ୍ତି ।
ଇନ୍ଦ୍ରିୟମାନଙ୍କର ବିଷୟ ସମ୍ବନ୍ଧ
ଶୀତ ଉଷ୍ଣ ସୁଖ ଦୁଃଖାଦିଙ୍କର ପ୍ରଦ ।
ହେଉଥାନ୍ତି ଯାଉଥାନ୍ତି ଏ ଅବଛିନ୍ନ
ଏମାନଙ୍କ ସହ ଅର୍ଜୁନ ପ୍ରତିଦିନ ।
ଯାହାକୁ ଶୀତ ଉଷ୍ଣ ସୁଖ ଦୁଃଖ କଥା
ନ ବାଧଇ ସେ ଜାଣ ଲଭେ ମୋକ୍ଷ ପନ୍ଥା ।
ଶୀତ ଉଷ୍ଣ ସୁଖ ଦୁଃଖ ଆହେ ବିଜୟ
ସବୁବେଳେ ଅସତ୍ୟ ଅଟଇ ଅପ୍ରିୟ ।
ସତ୍ୟ ବୋଲି କରି ଆତ୍ମାକୁ ଯାହା କହି
ବସ୍ତୁରଲେ ଅଭାବ ତା'ର କେବେ ନାହିଁ ।
ତତ୍ତ୍ୱଦର୍ଶୀମାନେ କହିଅଛନ୍ତି ଏହା
ମୋ କଥାରୁ ଜାଣ ଗାଣ୍ଡୀବଧନୁବାହା ।
ସବୁ ଜଗତକୁ ତ ଆତମା ମହାତମା
ବ୍ୟାପିଛି ଅବିନାଶୀ ଅଟେ ତା ମହିମା ।
ତାହାର ବିନାଶକୁ କରିବାକୁ ମହୀ-
ମଣ୍ଡଳରେ ଆହେ ବିଜୟ କେହି ନାହିଁ ।

ଦେହୀ ନେକଙ୍କର ଯେ ବେଢୁଥାଇଁ ଦେହ
ନାଶ ହେଉଅଛି ନ ପାଅ ତୁମ୍ଭେ ମୋହ ।
କରେ ଧନୁ ଧରିଣ ଉଠ ଏବେ ବେଗେ
ମାର ଭୀଷ୍ମ ଦ୍ରୋଣାଦି ରଥୀ ଶରେ ବେଗେ ।
ମୁଁ ମାଇଲି ମୋତେ ମାଇଲା ଯେ ବୋଲଇ
ତାଠାରୁ ନ ଜାଣିମା ଲୋକ ଆଉ ନାହିଁ ।
ଆତ୍ମାକୁ ମାରିବାକୁ ନାହିଁ କାହିଁ ନର
ସବୁକାଳେ ଆତ୍ମା ତ ଅଟଇ ଅମର ।
ଆତ୍ମାଠାରେ ଜନ୍ମ ମରଣ ଉପଗତ
ହୋଇ ନ ପାରଇ ହେ କୁନ୍ତୀଙ୍କର ସୁତ ।
ସବୁକାଳେ ବୃଦ୍ଧି ରହିଛି ଦରଢ଼
ଜାତ ହୋଇବା ଅବା ମରିବାର ଛାଡ଼ ।
ଏକାରୂପ ହେବାରୁ ନ ବଢ଼ଇ କେବେ
କହିଛନ୍ତି ବସି ଋଷିଏ ଭାବ ସର୍ବେ ।
ନିତ୍ୟ ହେବା ଯୋଗୁଁ ଅକ୍ଷୟ ଅବଦିତ
ପୁରାତନ ହେବାରୁ ନୁହଇ ବିକୃତ ।
ଦେହକୁ ଯେବେ ଛାଡ଼ି ଦଅଇଟି ଦେହୀ
ଅଦୃଶ୍ୟ ହୋଇକରି ଆତ୍ମା ଥାଏ ରହି ।
ଜାତ ନୋହେ ବୋଲି ଯେ ଆତ୍ମାକୁଟି ଜାଣେ
ସେ କାହେ ମାରିବ ମରିବ କିମ୍ପା ରଣେ ।
ପୁରୁଣା ଛାଡ଼ି ନୂଆ ପିନ୍ଧିବା ପରାୟେ
ଆତମାଟି ଯାଇଣ ନୂଆ ଦେହ ପାଏ ।
ଆତମାଟିକୁ ଶସ୍ତ୍ରରେ ନ ପାରନ୍ତି କାଟି
ଅଗ୍ନି ପୋଡ଼ି ନ ପାରଇଟି ହେ କିରୀଟି ।
ଜଳ ସକାଶରୁ ସେ ନୁହଇ କୋମଳ
ଶୁଖାଇ ନ ପାରେଟି ଅଣୁଏ ଅନିଳ ।
ଆତମାକୁ କାଟିଲେ ନୁହେଁ କେବେ କଟା
ନୁହେ ତ ସେ ଦେହ ପଥର କଣ୍ଡା ଲଟା ।
ମୂର୍ତ୍ତି ନ ଥିବାରୁ ନ ଯାଏ ସେହୁ ଜଳି
ଉଡ଼ା ହେବ ବୋଲିବା କେହି ଏହା ଭୁଲି ।
ଦ୍ରବିବା ପଦାର୍ଥ ତ ନୁହଇ ସେ କେବେ
କହ ଅରଜୁନ ଶୁଖି ସେ କାହିଁ ଯିବେ ।
ଆତ୍ମା ଅବିନାଶୀ ଯେ ଥାଏ ସବୁଠାରେ
ସ୍ଥିର ହୋଇକରି ରଜନୀ ଦିବସରେ ।
ପୂର୍ବରୂପ ନ ଛାଡ଼ି ଅନାଦି ସେ ଅଟେ
ଅପ୍ରକଟେ ସବୁରି ଦେହରେ ପ୍ରକଟେ ।

ଗୋଚର ନୋହେ ଆତ୍ମା ଚକ୍ଷୁ ଆଦଙ୍କର
ମନ ଚିନ୍ତା ତାକୁ ସେ ନ ପାରଇ କରି ।
କର୍ମେନ୍ଦ୍ରିୟମାନଙ୍କୁ ନୋହେ ସେ ଗୋଚର
ଏହା ଜାଣି ଶୋକ ଛାଡ଼ିଣ ଉଠ ବୀର ।
ଦେହେ ହୋଇଲେ ତ ଆତମା ହେଉଅଛି
ଦେହ ନାଶ ଗଲେ ସେ ନାଶ ଯାଉଅଛି ।
ଏହା ଭାବ ଅବା କରିବ ତୁମ୍ଭେ ଶୋକ
ଏଥିକି ଯା କହିବା କର ତା ବିବେକ ।
ଜନମିଲେ ମୃତ୍ୟୁ ଯେ ମୃତ୍ୟୁ ହେଲେ ଜନ୍ମ
ହେଉଛି ତ ଅବଶ୍ୟ ଏ ସଂସାର କର୍ମ ।
ପ୍ରକୃତିରୁ ଦେହ ତ ହୋଇକରି ଜାତ
କେତେକାଳ ମଧ୍ୟରେ ହୁଅଇ ବ୍ୟକତ ।
ପୁଣି ପ୍ରକୃତିରେ ସେ ଲୀନକୁ ଭଜଇ
ତହିଁକି ଦୁଃଖ କରିବାର ନ ଯୋଗାଇ ।
ଶାସ୍ତ୍ର ଗୁରୁଠାରୁ ଯେ ଶିକ୍ଷା ପାଇଥାନ୍ତି
ଆତ୍ମା ଦେଖିକରି ଆଶ୍ଚର୍ଯ୍ୟ କେ ପାଆନ୍ତି ।
କେହିମାନେଟି ତାହା ଆଶ୍ଚର୍ଯ୍ୟ ପ୍ରାୟେ
କହୁଥାନ୍ତି ଶୁଣନ୍ତି ସେରୂପେ ସଭିଏ ।
ଦେଖିଲେ ଶୁଣିଲେ ହେ ଆତମାକୁ ଜନ
ଜାଣି ନ ପାରଇ ହେ ଗାଣ୍ଡୀବୀ ଅର୍ଜୁନ ।
ଦେହୀମାନଙ୍କର ଯେ ଦେହ ମୃତ ଜାତ
ହେଉଛି ଆତ୍ମା ଅବିନାଶୀ ସର୍ବଗତ ।
ଏହା ଜାଣି ଆତ୍ମାରେ ମାନସ ଲଗସା
ନ କର ଆହେ ଅରଜୁନ ମହାଯଶା ।
ଆପଣାର ବୃତ୍ତିକି ଆଦରଣା କର
ନ କମ୍ପାଅ ବ୍ୟର୍ଥେ ଶୋକରେ ଶରୀର ।
କ୍ଷତ୍ରିୟର ଯୁଦ୍ଧରୁ ଶ୍ରେୟ ହୋଇ କଥା
ଥିଲପରି ବସ୍ତୁନାହିଁ ହେ ମହାରଥୀ ।
ଅଲୋଡ଼ାରେ ଫିଟିଣ ଅଛି ସ୍ୱର୍ଗଦ୍ୱାର
ତହିଁ ଯିବାପାଇଁ ଯୁଦ୍ଧକୁ ଲୋଡ଼ା କର ।
କ୍ଷତ୍ରିୟ ଧର୍ମ ଯେବେ ନ କରିବ ତୁମ୍ଭେ
ଅକୀର୍ତ୍ତିରେ ପାପ ପାଇବ ଜାଣୁ ଆମ୍ଭେ ।
ଏ ଅକୀର୍ତ୍ତି ତୁମ୍ଭର ଯେବେଟି ବ୍ୟାପିବ
ଶୁଣିଲେ ମଲାପରି ତେବେଟି ହୋଇବ ।
ତୁମ୍ଭକୁ ଯେଉଁମାନେ ଡରୁଛନ୍ତି ଏବେ
କିଛି ନୋହେ ଅର୍ଜୁନ ବୋଲିବେଟି ତେବେ ।
ବୀର ହୋଇ ଯୁଦ୍ଧ ନ କରି ଟି ରହିଲେ
ମହାଲାଘବକୁ ପାଇବ ସେହୁ ଭଲେ ।
ଶତ୍ରୁମାନେ ତୁମ୍ଭଙ୍କୁ ନ ବୋଲିବା କଥା
ବୋଲିବେ ଛାଡ଼ିଦେଇ କରି ହୃଦବ୍ୟଥା ।
ଏଥିରୁ ଦୁଃଖ ହୋଇ କଥା ଆଉ ନାହିଁ
ନିନ୍ଦି ନାହିଁ ଆହେ ଅର୍ଜୁନ କହୁଥାଇ ।
ଯୁଦ୍ଧେ ମଲେ ସ୍ୱର୍ଗ ପାଇଲେ ମହୀ ଭୋଗ
କରିବ ହେ ଜାଣ ଅର୍ଜୁନ ମହାଭାଗ ।
ଏବେ ମୋର କହିବା କଥା ଘେନ ବୀର
ଗାଣ୍ଡୀବକୁ ଧରି ଯୁଦ୍ଧରେ ମନ କର ।
ସୁଖ ଦୁଃଖ ଲାଭ ଅଲାଭ ଜୟାଜୟ
ସମାନ କରି ଯୁଦ୍ଧ କର ହେ ବିଜୟ ।
ଏଥି କିଛି ପାପ ତୁମ୍ଭର ହେବ ନାହିଁ
ସତ କରି ଏହା ଯେ କହୁଅଛି ମୁହିଁ ।
ଆତ୍ମତତ୍ତ୍ୱ ବିଷୟେ ଜ୍ଞାନ ଦେବା ପାଇଁ
କହିଲଇଁ ତୁମ୍ଭଙ୍କୁ ସବୁ ତ ବତାଇ ।
ଏବେ କର୍ମ କରିବାର ଯେ କଥାଯାକ
କହିବା ଶୁଣ ପାର୍ଥ କରିଣ ବିବେକ ।
ତହିଁ ଯେବେ ତୁମ୍ଭେ ବୁଦ୍ଧି ଟି ଥିବ ଦେଇ
ଏ ସଂସାରବନ୍ଧ ଫିଟିବ କହୁଥାଇଁ ।
ନିଷ୍କାମକର୍ମ ତୃଷ୍ଣା ଅଧିକ ହେଲେ ପାର୍ଥ
ପାରଇ କରି ପ୍ରାଣୀମାନଙ୍କୁ କୃତାର୍ଥ ।
ଈଶ୍ୱରଠାରେ ଭକ୍ତି କରି ତରିବାକୁ
ଯେ ଭାବେ ଏକବୁଦ୍ଧି ବୋଲି ଟି ତାହାକୁ ।
କାମନା କରି କର୍ମ କରିବା ଲୋକର
ଅନନ୍ତବୁଦ୍ଧି-ବୃକ୍ଷେ ଶାଖା ଟି ଅପାର ।
ସ୍ୱର୍ଗାଦି ଫଳଙ୍କରେ ହୋଇଣ ମନାଶା
ବେଦକୁ ଘେନ କାମୀ କହୁଥାନ୍ତି ଭାଷା ।
ପୁଷ୍ପିତ ବିଷଲତା ଆପାତ ରମଣୀୟ
ଫଳରେ ଯେଉଁରୂପେ ହୁଅଇ ଅପ୍ରିୟ ।
ସେରୂପେ କାମୀଙ୍କର କହିବା ବଚନ
ମୂଢ଼ମାନଙ୍କରେ ତ ସେମାନେ ଗଣନ ।
ବେଦ ଅର୍ଥବାଦେ କାମୀଏ ରତ ହୋଇ
ଅହର୍ନିଶ କାଟି ଯାଆନ୍ତି ସୁଖ ପାଇଁ ।
ସ୍ୱର୍ଗରୁ ବଳି କରି ନ କହନ୍ତି କଥା
ଦେଖାଉଥାନ୍ତି ତହିଁ ପାଇଁ ନାନା ପୋଥା ।

ତହିଁର ଯେଉଁମାନେ ହୋନ୍ତି ପ୍ରବର୍ତ୍ତକ
ଲଭୁଥାନ୍ତି ଜନମ କର୍ମଫଳଦାୟକ ।
ଭୋଗ ଐଶ୍ୱର୍ଯ୍ୟେ ଆସକ୍ତ ହୋଇ ନର
ଈଶ୍ୱରଠାରୁ ବୁଦ୍ଧି କରନ୍ତି ଅନ୍ତର ।
ସକାମ ଲୋକର ହେବାକୁ ସୁଖପ୍ରଦ
କରମ କର ବୋଲି କହୁଅଛି ବେଦ ।
ଏବେ ମୁଁ ବୋଲୁଛି ନିଷ୍କାମପୂର୍ଣ ବହ
ଅରଜୁନ ତୁମ୍ଭେ ସୁଖରେ ଥାଅ ରହ ।
ସତ୍ତ୍ୱଗୁଣେ ରହ ଯେ ନିର୍ଦ୍ୱନ୍ଦ୍ୱକୁ ଭଜ
ସାବଧାନ ହୁଅ ହେ ଯୋଗକ୍ଷେମ ତେଜ ।
ପାଣିକାର୍ଯ୍ୟ ଯାକ ଯେ ଏକାବେଳକରେ
ନିର୍ଭା ହୋଇଯାଏ ଯେ ମହାହ୍ରଦଙ୍କରେ ।
କୂପ ବାପିଙ୍କର ପ୍ରତ୍ୟେକେ ପାଣିକାର୍ଯ୍ୟ
ନିର୍ଭାହୁଏ ଆହେ ଯେ ରୂପେ ବୀରରଜ ।
ନିଷ୍କାମକର୍ମ କଲେ ଲୋକ ବେଦଉକ୍ତ
କର୍ମଫଳ ସବୁ ସେରୂପେ ହୋଏ ପ୍ରାପ୍ତ ।
ତତ୍ତ୍ୱଜ୍ଞାନ କର୍ମରେ ବୁଡ଼ନ୍ତୁ ତ ତୁମ୍ଭେ
ଏଣୁ କର୍ମଫଳକୁ ଛାଡ଼ ବୋଲୁଁ ଆମ୍ଭେ ।
କର୍ମଫଳ ପ୍ରବୃତ୍ତିର ତ ଅଟେ ହେତୁ
ତାହା ଛାଡ଼ିଦେଇ କର୍ମରେ କର ହେତୁ ।
କରୁଛୁ ବୋଲି ଅହଂ ବୁଦ୍ଧି ଟିକ ଛାଡ଼
କରମ କର ଯୋଗରସ-ଜଳେ ବୁଡ଼ ।
କର୍ମ ସିଦ୍ଧ ଅସିଦ୍ଧ ହେଲେ ବୁଦ୍ଧି ସମ
କର ତହିଁରେ ହେ ଅର୍ଜ୍ଜୁନ ବହ ପ୍ରେମ ।
ନିଷ୍କାମ କର୍ମରୁଟି କାମ୍ୟକର୍ମ ଊଣା
ତା ଜାଣି ତହିଁରେ ନ କର ବୁଦ୍ଧି ବଣା ।
ଆହେ ଅରଜୁନ ନିଷ୍କାମ କର୍ମ କର
ଫଳ ହେତୁ କର୍ମରୁ ମନ କର ଦୂର ।
ନିଷ୍କାମକର୍ମ ଇହଲୋକେ କରେ ଯେଉଁ
ସୁକୃତ ଦୁଷ୍କୃତ ତାହାର ଜାଣ ନାହିଁ ।
ଏହୁ ସକାଶରୁ ଯେ କର୍ମଯୋଗେ ଯତ୍ନ
କର ହେ ବୀରବରଙ୍କର ଶିରୋରତ୍ନ ।
ନିଷ୍କାମକାମୀ ହୋଇ ଛାଡ଼ି ଜନ୍ମବନ୍ଧ
ଅନାମୟ ପଦର ପାନ୍ତି ଅନୁବନ୍ଧ ।
ଯେବେ ତ ବୁଦ୍ଧି ନ ଭଜବଟି ମୋହକୁ
ତେବେ ତୁମ୍ଭେ ତେଜିବ ଶୁଣିମା କଥାକୁ ।

ଈଶ୍ୱରଠାରେ ବୁଦ୍ଧି ନିଶ୍ଚଳ ହୋଇଲେ
ପାଇବ ଅର୍ଜ୍ଜୁନ ଯୋଗକୁ ତୁମ୍ଭେ ଭଲେ ।
ଅରଜୁନ ବୋଇଲେ ସ୍ଥିତପ୍ରଜ୍ଞ ଲୋକ
ଲକ୍ଷଣ କହ ମୋତେ ରୁକ୍ମିଣୀ ନାୟକ ।
କି ରୂପରେ କହେ କି ରୂପରେ ସେ ଯାଏ
କି ରୂପରେ ବସେ ତା କହ ଯଦୁରାୟେ ।
ଶ୍ରୀକୃଷ୍ଣ ବୋଇଲେ କାମନା ଛାଡ଼ି ଦେଇ
ଯେ ରହେ ସ୍ଥିତପ୍ରଜ୍ଞ ତାହାକୁଟି କହି ।
ଦୁଃଖରେ ଯେହୁ ଉଦବେଗମନା ନୋହେ
ସୁଖ-ଜଳେ ଆଶାକୁ ନ ବୁଡ଼ାଏ ମୋହେ ।
ହୃଦୟରୁ ରାଗକୁ କରିଥାଏ ଦୂର
ସ୍ଥିତପ୍ରଜ୍ଞ ମଧ୍ୟ ବୋଲାଏ ସେହୁ ନର ।
ପୁତ୍ର ମିତ୍ରଠାରେ ଯେ ସ୍ନେହ ନ କରଇ
ଶୁଭାଶୁଭେ ଗୁଣ ଦୋଷକୁ ନ ହେଜଇ ।
ଉଦାସୀନ ହୋଇଣ କହୁଥାଏ କଥା
ମହାବୁଦ୍ଧିମନ୍ତ ସେ ଅଟେ ମହାରଥୀ ।
ମୁଖ କର ଚରଣ କୂର୍ମ ସଂହାର
କଲା ପରି ଯୋଗୀ ତ ଇନ୍ଦ୍ରିୟ ତାହାର ।
ଆବୃତ୍ତ ଯେଉଁକାଳେ କରଇ ଅର୍ଜ୍ଜୁନ
ସେକାଳେ ଜ୍ଞାନ ସିଦ୍ଧ ହୋଏ ତା'ର ଜାଣ ।
ଦେହୀ ଲୋକ ଯେବେହିଁ ଆହାର ନ ପାଇ
ରାଗ ଥାଇ ବିଷୟେ ଇନ୍ଦ୍ରିୟ ନିବର୍ତ୍ତଇ ।
ଯୋଗୀଲୋକଙ୍କର ଇନ୍ଦ୍ରିୟ ତୁଲେ ରାଗ
ନିବର୍ତ୍ତିଯାଏ ହେ ଅର୍ଜ୍ଜୁନ ମହାଭାଗ ।
ମୋକ୍ଷ ନିମନ୍ତେରେ ଯତନ କଲେ ଲୋକ
ଇନ୍ଦ୍ରିୟେ ହରି ନେଇ ଯାଆନ୍ତି ବିବେକ ।
ତା ଜାଣି ଇନ୍ଦ୍ରିୟ ସଂଯତ କର ବୀର
ମୋ' ଭକତି କଥାରେ ହୁଅ ତତପର ।
ଇନ୍ଦ୍ରିୟ ଯାହାରଟି ବଶରେ ରହିଛି
ତା ବୁଦ୍ଧି ପ୍ରତିଷ୍ଠିତ ଜଗତେ ହୋଇଛି ।
ବିଷୟ ଧ୍ୟାନ କଲେ ବିଷୟେ ଆସକ୍ତ
ହୁଅଇ ହେ ଲୋକ ବଚନବାର୍ଯ୍ୟ ନାନ୍ତ ।
ଆସକ୍ତି ସକାଶରୁ କାମ ହୋଏ ଜାତ
କାମରୁ କ୍ରୋଧ ପୁଣି ହୁଅଇ ସମ୍ଭୂତ ।
କ୍ରୋଧୁ ମୋହ ହୋଏ ମୋହରୁ ସ୍ମୃତିଭ୍ରଂଶ
ସ୍ମୃତିଭ୍ରଂଶରୁଟି ହୁଅଇ ବୁଦ୍ଧି ନାଶ ।

ବୁଦ୍ଧି ନାଶ ଗଲେ ତ ମନ୍ଦ ମତି ହୋଇ
ରହଇଟି ଜାଣ ସେ ଏ ସଂସାରେ ଯାଇ ।
ରାଗ-ଦ୍ୱେଷ-ରହିତ ଇନ୍ଦ୍ରିୟ ଯାହାର
ଇନ୍ଦ୍ରିୟଭୋଗ ଦୋଷ ନୁହଇ ତାହାର ।
ଶାନ୍ତହେବା ଲୋକ ଭୋଗିଲେ ହେଲେ ଦୁଃଖ
କରି ନ ପାରନ୍ତି ହେ କେବେହିଁ ବିମୁଖ ।
ଚିତ୍ତ ଯାହାରଟି ପ୍ରସନ୍ନ ହୋଇଅଛି
ତା ବୁଦ୍ଧି ଚଳିବାକୁ କଥା ନାହିଁ କିଛି ।
ଅନାୟତ ଇନ୍ଦ୍ରିୟ ଯେଉଁ ଲୋକଙ୍କର
ଆତ୍ମବୁଦ୍ଧି ହେବାକୁ କଷ୍ଟ ତାହାଙ୍କର ।
ଏମନ୍ତ ଲୋକରେ ଭାବନା ନ ସମ୍ଭବେ
ଭାବନା ବିନା ଶାନ୍ତି ନୁହଇ ତ ଲଭେ ।
ଅଶାନ୍ତ ଲୋକଙ୍କ କିରୂପେ ମୋକ୍ଷସୁଖ
ହୋଇବ କହ ତ ବୀରଙ୍କର ଶିଖ ।
ଇନ୍ଦ୍ରିୟଟି ଯେବେ ବିଷୟ ଆଶ୍ରେ କରେ
ସେ ବଳରେ ସେହି ମନଟି ପ୍ରଜ୍ଞା ହରେ ।
ନାବକୁ ଯେସନ ଜଳ ପରସେ ପବନ
ଜାଣ ମୋ କହିବାରୁ ଆହେ ଅରଜୁନ ।
ଇନ୍ଦ୍ରିୟ ବଶ କରିଥାଏ ଯେଉଁ ଦେହୀ
ପ୍ରଜ୍ଞା ପ୍ରତିଷ୍ଠ ତ ଅର୍ଜୁନ ତାକୁ କହି ।
ପ୍ରାଣୀଙ୍କ ବ୍ରହ୍ମଜ୍ଞାନ ବିଭାବରୀ ପରି
ତହିଁ ଯୋଗୀଜନେ ହୁଅନ୍ତି ଉଜାଗରୀ ।
ବିଷୟଟି ପ୍ରାଣୀମାନଙ୍କର ଦିବସ
ଯୋଗୀଜନଙ୍କୁ ତାହା ଅନ୍ଧାର ସଦୃଶ ।
ନାନାଦି ନଦୀମାନଙ୍କରେ ପୂର୍ଣ୍ଣ ହୋଇ
ସମୁଦ୍ର ବେଳା କୂଳ ଲଙ୍ଘି ନ ପାରଇ ।
ଯୋଗୀଠାରେ ବିଷୟ ଥୋଇଲେ ପ୍ରବେଶ
କରି ନ ପାରନ୍ତି ଯୋଗୀ ଜ୍ଞାନକୁ ବିନାଶ ।
ନିଷ୍କାମରେ ଯୋଗୀ ସଞ୍ଚାରି ଯେବେ କରେ
ରହଇ ସେହୁ ଜାଣ ନିଷ୍କାମ ପଦରେ ।
ବ୍ରହ୍ମଜ୍ଞାନ ରୀତି ତ କହିଲି ତୁମ୍ଭଙ୍କୁ
ତୁମ୍ଭେ ଏବେହିଁ ଗ୍ରହଣ ହେ ମୋହକୁ ।
ବ୍ରହ୍ମଜ୍ଞାନରେ ଅନ୍ତକାଳେ କ୍ଷଣେ ଲୋକ
ରହିଲେ ପାଏ ମୋକ୍ଷ ଛାଡ଼ି ଦେଇ ଶୋକ ।
ବାଲ୍ମୀକାଦ୍ୟ ଯୋଗ ଆରମ୍ଭି ଯେ ରହିଛି
ତା କରିବା ବେଳେ କହିବା କୁନ୍ତୀବନ୍ଦି ।

ଏଠାରେ ସାଙ୍ଖ୍ୟଯୋଗ ନାମ ଭଗବତ
ଗୀତାଙ୍କ ଦ୍ୱିତୀୟ ଅଧ୍ୟାୟ ସମାପତ ।
ସତ୍ୟବତୀଙ୍କ ସୁତ ବେଦବ୍ୟାସ କଲେ
କହେ କୃଷ୍ଣସିଂହ ନରେଶ ଗୀତେ ଭଲେ ।

———

## ତୃତୀୟ ଅଧ୍ୟାୟ

ଏଥୁଅନ୍ତେ ଅର୍ଜୁନ ଅନାଇଁ କୃଷ୍ଣଙ୍କୁ
କହିଲେ ଏ ବଚନ ହସିଣ ତାହାଙ୍କୁ ।
ଜ୍ଞାନକୁ ତ କର୍ମ ବଡ଼ତ ଅଟେ ଊଣା
ବୋଲୁଛ କିମ୍ପା ମୋତେ ହୁଅ ଯୁଦ୍ଧମନା ।
ଜ୍ଞାନ କର୍ମ ଦୁଇ ପ୍ରଶଂସିବାରୁ ତୁମ୍ଭେ
ଭ୍ରମାଉଅଛ ବୋଲି ଜାଣୁଅଛୁଁ ଆମ୍ଭେ ।
ଏହି ସକାଶରୁ ପଚାରୁଅଛି ମୁହିଁ
ଏଥିକି ନିଶ୍ଚୟ କହ ତା ଯଦୁସାଇଁ ।
ଯହିଁ ଜାଣିଲେ ମୁଁ ପାଇବି ଲୋକେ ଶ୍ରେୟ
ସେ କଥା ମୋର ଆଗେ କର ତ ଉଦୟ ।
କୃଷ୍ଣ ବୋଇଲେ ମୁହିଁ କର୍ମଜ୍ଞାନନିଷ୍ଠ
କଥା ସିନା କହିଲି ଯେସନ ହୋଇ ହୃଷ୍ଟ ।
କର୍ମ ଜ୍ଞାନ ଦୁହେଁ ମିଶିଲେ ହୋଏ ମୋକ୍ଷ
କିସ ପଚାରୁଛ ପାଣ୍ଡବକୁଳ ମୋକ୍ଷ ।
କର୍ମକୁ ପ୍ରତି ଜ୍ଞାନ ପ୍ରଧାନ ଅଟଇ
କହିବି କେତେ ଏହା ତୁମ୍ଭକୁ ବତାଇ ।
ଶୁଦ୍ଧଅନ୍ତଃକରଣ ଲୋକଙ୍କର ଜ୍ଞାନ
ହେବାକ୍ଷଣି ପାଆନ୍ତି ଯାଇ ମୋକ୍ଷ ସ୍ଥାନ ।
ହୃଦୟ ଯାହାରଟି ଶୁଦ୍ଧ ହୋଇ ନାହିଁ
ଜ୍ଞାନ ପାଇଁ କର୍ମ ଅପେକ୍ଷା ସେ କରଇ ।
ଏ ସକାଶୁଁ ଚିତ୍ତର ଶୁଦ୍ଧାଶୁଦ୍ଧ ଯେସନ
ଦ୍ୱିପ୍ରକାର କରି କହିଲି ମୁହିଁ ବାଣୀ ।
କରମ ଅନୁଷ୍ଠାନ ନ କରଇ ଯେହି
ଜ୍ଞାନକୁଟି ପାଇ ନ ପାରେ ଜାଣ ସେହି ।
ଚିତ୍ତଶୁଦ୍ଧି ବିନା କରମ ତ୍ୟାଗ କଲେ
ମୋକ୍ଷ ନ ପାଇଟି ଅର୍ଜୁନ ଜାଣ ଭଲେ ।
କଉଣସି ଅବସ୍ଥାରେ କରମ ଛାଡ଼
ଲୋକଟି ବର୍ତ୍ତି ନ ପାରଇ ଏକଦଣ୍ଡ ।
ସବୁ ଲୋକମାନଙ୍କୁ ରାଗ ଦ୍ୱେଷ ଆଦି
ଗୁଣେ କର୍ମ କରାଉଛନ୍ତି ହୋଇ ବାଦୀ ।

କର୍ମେନ୍ଦ୍ରିୟମାନେ ସଂଯତ କରି ଦେଇ
ମନକୁ ବିଷୟରେ ଦେଉଥାଏ ଯୋଗି ।
ଏରୂପେ ଯେଉଁ ଲୋକ ଅଛି ଅରଜୁନ
ଦାମ୍ଭିକ ବୋଲି ତାକୁ କହନ୍ତି ଜନ ।
ଜ୍ଞାନେନ୍ଦ୍ରିୟମାନଙ୍କୁ ମନରେ ସଂଯତ
କରି କର୍ମେନ୍ଦ୍ରିୟରେ କର୍ମେ ହେଲେ ରତ ।
ଆସକତ ବିନା ତାହାକୁ କେବେ ପାପ
କରି ନ ପାରଇ ଅର୍ଜୁନ ଜାଣ ଲେପ ।
ଏହି ସକାଶରୁ ଟି କହୁଅଛି ମୁହିଁ
ନିତ୍ୟ କରମ କରିବାରେ ଦୋଷ ନାହିଁ ।
କରମ ନ କରିବା ପ୍ରତିକ କରମ
କରିବାରେ ତ ଆହେ ଅର୍ଜୁନ ଧରମ ।
କର୍ମକୁ ନ କଲେ ଶରୀର ରକ୍ଷିବାର
ନିର୍ବାହ ନ ପଡ଼ିବ କେବେ ଟି ତୁମ୍ଭର ।
ଯଜ୍ଞାର୍ଥ କର୍ମ ବିନା ସବୁ କର୍ମଯାକ
ଲୋକର ବନ୍ଧନ ହେ ବୀରଙ୍କ ନାୟକ ।
ଏହା ଜାଣି ସିନା ବିଷ୍ଣୁଙ୍କ ପ୍ରିୟପାଇଁ
କରମ କର ଅରଜୁନ କହୁଥାଇଁ ।
ପ୍ରଜାପତି ଯାଗର ମୂଳରେ ପ୍ରଜାଙ୍କୁ
ସରଜନା କରି କହିଲେ ଏ କଥାକୁ ।
ଆଜଠାରୁ ଯାଗକୁ କରି ପ୍ରଜାମାନେ
ଉତ୍ତରୋତ୍ତର ବୃଦ୍ଧି ଲଭ ଅବଚ୍ଛିନ୍ନେ ।
ଏହା ତୁମ୍ଭର ଇଷ୍ଟକାମକୁ କରିବ
ଏ କଥାରେ କିଛି ନ କର ଶଙ୍କା ଲବ ।
ଯଜ୍ଞେ ଦେବତାଙ୍କୁ ଭାବନା କରି କର
ଦେବଙ୍କଠାରେ ଭାବନା ପାଅ ସବୁ ନର ।
ପରସ୍ପରରେ ଯେବେ ଭାବିତ ହୋଇବ
ମହାଶ୍ରେୟ ଏ ସକାଶରୁ ଟି ଲଭିବ ।
ଦେବେ ବୃଷ୍ଟି ଆଦିରେ ବଢ଼ାଇବେ ଶସ୍ୟ
ତୁମ୍ଭେ ଯାଗ ବଳରେ କରିବ ତାଙ୍କୁ ତୋଷ ।
ଦେବତାଙ୍କର ଦତ୍ତ ଅଟଇ ତ ଅନ୍ନ
ନ ଦେଇ ତାଙ୍କୁ ନ କରିବ ଟି ଭୋଜନ ।
ସାଧୁ ଲୋକମାନେ ଯଜ୍ଞର ଅବଶେଷ
ଖାଇବାକ୍ଷଣି ପାପ କରିଦେବେ ଧ୍ୱଂସ ।
ଆପଣା ପାଇଁ ରାନ୍ଧି ବାଢ଼ି ଯେ ଭୁଞ୍ଜଇ
ଏଥୁ ବଳି ପାପୀ ଖୋଜିଲେ ଆଉ ନାହିଁ ।

ଅନ୍ନରୁ ପ୍ରାଣୀମାନେ ହୁଅନ୍ତି ଉତ୍ପତ୍ତି
ବୃଷ୍ଟିରୁ ଯେଣୁ ଅନ୍ନ ହେଉଅଛି ଖ୍ୟାତି ।
ଯାଗ ଯୋଗୁ ବୃଷ୍ଟି ପ୍ରକାଶଇ ଜଗତେ
ଯଜମାନ ବ୍ୟାପାର ଯାଗ ହୁଏ ନିତ୍ୟେ ।
ଯଜମାନ ବ୍ୟାପାରେ ବେଦରୁ ଟି ଜାତ
ବେଦ ଟି ବ୍ରହ୍ମରୁ ହୋଇଅଛି ସମ୍ଭୂତ ।
ସର୍ବବ୍ୟାପୀ ହୋଇ ଯାଗରେ ପ୍ରତିଷ୍ଠିତ
ହୋଇଛି ଜାଣ ଆହେ କୁନ୍ତୀଦେବୀସୁତ ।
ଏ ରୂପେ ପ୍ରବର୍ତ୍ତିବା ଚକ୍ରକୁ ଯେ ନର
ଅନୁଷ୍ଠାନ ନ କରେ ଜୀବ ବ୍ୟର୍ଥ ତା'ର ।
ଯେଉଁ ଲୋକ ଆତ୍ମାରେ ରତ ତୃପ୍ତ ତୁଷ୍ଟ
ହୋଇଥାଏ ତାହାର କର୍ମ ନୋହେ ଇଷ୍ଟ ।
ଆତ୍ମତୃପ୍ତ ଲୋକର କର୍ମ କଲେ ପୁଣ୍ୟ
ନାହିଁ ଆହେ ଜାଣ ପାଣ୍ଡବଅର୍ଜୁନ ।
କରମ ନ କଲେ ତା ଦୋଷ ନୋହେ କିଛି
ଆଶ୍ରା କାହାକୁ ସେ ନ କରେ କୁନ୍ତୀବତ୍ସି ।
ଏ ସକାଶୁଁ ଆସକତିକି ଛାଡ଼ି ଦେଇ
କର୍ମ କର ପାର୍ଥ ତୁମ୍ଭଙ୍କୁ କହୁଥାଇ ।
ଆସକ୍ତ ନୋହି କରି ଧର୍ମକୁ ଯେ କରେ
ନ ପଡ଼ଇ କେବେ ସେ ସଂସାର ବନ୍ଧରେ ।
ଜନକ ଆଦି ରାଜାମାନେ କର୍ମ କରି
ପାଇଛନ୍ତି ସିଦ୍ଧି ପାଣ୍ଡବ କୀର୍ତ୍ତିଧାରି ।
ତୁମ୍ଭେ କର୍ମ କଲେ କରିବେ ଲୋକ କର୍ମ
ଏଥିପାଇଁ କହୁଛି କର ଯୁଦ୍ଧଧର୍ମ ।
ବଡ଼ଲୋକ ଆଚରଣକୁ ସାନ ଲୋକ
ସ୍ୱୀକରନ୍ତି କରୁଥାଏ କଥାପାକ ।
ବଡ଼ଲୋକ ଯାହା ପ୍ରମାଣ କରଯାଏ
ଲୋକ ତହିଁକି ସଦା ଅନୁଗତ ହୋଏ ।
ତିନିଲୋକ ଅପ୍ରାପ୍ତ ହୋଇ କଥା ମୋର
ନାହିଁ ତେବେ କର୍ମ କରୁଛି ନିରନ୍ତର ।
କର୍ମରେ ମୁହିଁ ନ ପ୍ରବର୍ତ୍ତିବଟି ଯେବେ
ସମସ୍ତେ ମୋତେ ଦେଖି କର୍ମ ଛାଡ଼ିଦେବେ ।
କରମ ନ କଲେ ମୁଁ ପ୍ରାଣୀଏ ଉଚ୍ଛନ୍ନ
ହେବେ ବର୍ଣ୍ଣସଙ୍କରକାରୀ ହେବି ଜାଣ ।
କରମେ ଆସକତ ଅବିଦ୍ୟାଂଶ ଜନେ
ଅନାସକ୍ତ କର୍ମ କରିବେ ସାଧୁଜନେ ।

ଅଜ୍ଞେ କରମରେ ହୋଇବେ ଆସକତ
ଜ୍ଞାନୀ ଯେ ହେବ ତା କରୁଥିବ ନିତ୍ୟ ।
ଇନ୍ଦ୍ରିୟମାନେ କର୍ମ କରୁଥାନ୍ତି ନିତ୍ୟ
ଅହଙ୍କାରୀ ଜନେ ମୁଁ କଲି ତ ବୋଲନ୍ତି ।
ଗୁଣ କର୍ମ ବିଭାଗ ତତ୍ତ୍ୱ ଯେ ଜାଣଇ
ମୁଁ କରୁଛି ବୋଲିବା କଥା ସେ ଛାଡ଼ଇ ।
ପ୍ରକୃତିର ସତ୍ତ୍ୱାଦି ଗୁଣେ ମୂଢ଼ ହୋଇ
ଗୁଣ କର୍ମେ ଆସକ୍ତ ହୋନ୍ତି ସବୁ ଦେହୀ ।
ଏଣୁ ସକାଶରୁ ଯେ ହେବ ଜ୍ଞାନୀ ଜନ
ପ୍ରବର୍ତ୍ତାଉଥିବ ଯତ୍ନରେ କର୍ମମାନ ।
ମୋଠାରେ ଅରଜୁନ ସବୁ କର୍ମ ଦେଇ
ଈଶ୍ୱରାଧୀନ ବୋଲି ଯୁଝ ଏବେ ଯାଇ ।
ଯେଉଁମାନେ ମୋ ମତ କରନ୍ତି ଅନୁଷ୍ଠାନ
ଜ୍ଞାନୀପରି ମୁକ୍ତ ହୁଅନ୍ତି ସେ ଅର୍ଜୁନ ।
ଯେଉଁମାନେ ମୋ ମତ ଅସୂୟା କରନ୍ତି
ଜ୍ଞାନମୂଢ଼ ହୋଇ ନାଶକୁ ସେ ପାଆନ୍ତି ।
ଜ୍ଞାନବନ୍ତ ଲୋକେ ପୂର୍ବତ ସଂସ୍କାରକୁ
ଅନୁସରି କରୁଅଛନ୍ତି କରମକୁ ।
ପ୍ରକୃତି ଆଶ୍ରେ କରିଥାନ୍ତି ସବୁ ଜନ
ଇନ୍ଦ୍ରିୟ ନିଗ୍ରହ କି କରିବ ଅର୍ଜୁନ ।
ପ୍ରତି ଇନ୍ଦ୍ରିୟଙ୍କ ବିଷୟମାନଙ୍କରେ
ରାଗଦ୍ୱେଷ ରହିଅଛନ୍ତି ନିରନ୍ତରେ ।
ରାଗ ଯେ ଦ୍ୱେଷ ଦୁହିଙ୍କରେ କେବେ ବଶ
ନୋହିବଟି ଆହେ ଅର୍ଜୁନ ବୀରଈଶ ।
ମୁକ୍ତି ଇଚ୍ଛା କରିବା ଲୋକର ରାଗ ଦ୍ୱେଷ
ଦୁଇଟି ଅଟନ୍ତିଟି ଶତ୍ରୁର ସଦୃଶ ।
ପରଧର୍ମ ପ୍ରତିକି ଆପଣା ଧରମ
ନିର୍ଗୁଣ ହେଲେ ମଧ୍ୟ ଅଟଇ ଉତ୍ତମ ।
ସ୍ୱ ଧର୍ମରେ ମରଣ ଅଟଇଟି ଶ୍ରେୟ
ପରଧରମେ ପାଏ ନରକ ଆଶ୍ରୟ ।
ଅର୍ଜୁନ ବୋଇଲେ ଲୋକ କାହାପ୍ରୟୋଗରେ
ପାପ କରୁଅଛୁ କହ ତା ମୋ ଆଗରେ ।
କୃଷ୍ଣ ବୋଇଲେ ଆହେ କାମ କ୍ରୋଧ ଦୁଇ
ଯେକଣ ପାପ ପ୍ରବର୍ତ୍ତକ ହୋଏ ଦେହୀ ।
କାମ କେବେ ଭୋଗରେ ନୁହଇଟି ପୂର୍ଣ୍ଣ
ଅତ୍ୟୁଗ୍ର ବୋଲି ତାକୁ ଅରଜୁନ ଜାଣ ।

ଯହ ଲୋକେ ସବୁରି କାମଟି ବଇରୀ
କାମକୁ ନ ପାରନ୍ତି କେହିଟି ସଂହାରି ।
ବହ୍ନି ଧୂମେ ଦର୍ପଣ ମଳେ ଗର୍ଭ ଚର୍ମେ
ଆବୃତ ହେଲପରି ଏ ଜ୍ଞାନଟି କାମେ ।
ଜ୍ଞାନୀ ଲୋକେଟି ଜ୍ଞାନ କର୍ମରେ ଆବୃତ
ସେ କାମଟି ଦୁଷ୍ପୂର ଅନଳ ସମିତ ।
ଇନ୍ଦ୍ରିୟମାନେ ବୁଦ୍ଧି କାମରଟି ସ୍ଥାନ
ବିବେକ ଘୋଡ଼ାଇ ମୋହୁଛି ପ୍ରାଣୀଗଣ ।
ଇନ୍ଦ୍ରିୟଙ୍କୁ ନିୟତ ଅରଜୁନ କରି
ପାପୀ କାମେ ନାଶ କର ଆହେ ବିଷ୍ଣୁରି ।
ଦେହାଦିରୁ ଇନ୍ଦ୍ରିୟମାନଟି ପରଶ୍ରେଷ୍ଠ
ଇନ୍ଦ୍ରିୟଙ୍କ ପ୍ରତି କହନ୍ତି ମନ ଶ୍ରେଷ୍ଠ ।
ମନକୁ ପ୍ରତି ବୁଦ୍ଧି ଅଟେ ବଳୀୟାର
ବୁଦ୍ଧିକିଟି ଆତ୍ମପୁରୁଷ ଅଟେ ବର ।
ବୁଦ୍ଧିରୁ ବଡ଼ କରି ଆତମାକୁ ଜାଣି
ଆତ୍ମାଠାରେ ମନକୁ ରଖିକରି ଆଣି ।
କାମ ଶତ୍ରୁ ସଂହାର କର ଅରଜୁନ
ଯେଣ-କରି ମୋହର କହିବା ବଚନ ।
ଭଗବତଗୀତାର ତୃତୀୟ ଅଧ୍ୟାୟ
ଶେଷକଲେ ପରାଶରଙ୍କର ତନୟ ।
ଅଧ୍ୟାତ୍ମଯୋଗ ନାମ ଏହାକୁଟି କହି
କହଇ କୃଷ୍ଣସିଂହ ଧରାକୋଟ-ସାଇଁ ।

———

## ଚତୁର୍ଥ ଅଧ୍ୟାୟ

ଏଥୁ ଅନନ୍ତରେ ଯେ ଜଗତପାବନ
କହିଲେ ପୁଣି ଅର୍ଜୁନଙ୍କୁ ଏ ବଚନ ।
ପୂର୍ବେ ଏ ଜ୍ଞାନଯୋଗ କହିଛି ସୂର୍ଯ୍ୟଙ୍କୁ
ସୂର୍ଯ୍ୟ କହିଅଛନ୍ତି ଆତ୍ମଜ ମନୁଙ୍କୁ ।
ମନୁ ପୁଣି ଇକ୍ଷ୍ୱାକୁଙ୍କୁ ତା ଶିଖାଇଲେ
କ୍ରମରେ ଆନ ରାଜର୍ଷିଏ ଜାଣିଲେ ।
ବହୁକାଳ ଅନ୍ତେ ମୁଁ ଦୀକ୍ଷା ଦେବା ଯୋଗ
ନାଶଗଲା ଆହେ ଅର୍ଜୁନ ମହାଭାଗ ।
ସେ ଯୋଗ ଏବେ ଆସି ତୁମ୍ଭଙ୍କୁ କହିଲି
ଶୁଣିଲ ତ ମୋଠାରୁ ଯେଣ ଏବେ ଭଲି ।
ମୋହର ତ ତୁମ୍ଭେ ଅଟ ହେ ପ୍ରାଣସଖା
ପୁଣି ଭକତଙ୍କ ମଧ୍ୟରେ ହୁଅ ଲେଖା ।

ଏହି ସକାଶରୁ ନ ଜାଣିବାର ହୋଇ
ତୁମ୍ଭଙ୍କୁ ଅରଜୁନ ମୋର କଥା ନାହିଁ ।
ଅରଜୁନ ବୋଇଲେ ଆପଣ ଜନମ
ସୂର୍ଯ୍ୟ ପରେ ହୋଇ କି ରୂପେ ଜ୍ଞାନମର୍ମ ।
ତାହାଙ୍କୁ କହିଲ ହେ ଯଦୁକୁଳସାଇଁ ।
ଏ କଥା ଶୁଣି ମୋ ମନକୁ ପାଉ ନାହିଁ ।
ଯେ ରୂପରେ ମୁଁ ସତ କରିବି ଗୋବିନ୍ଦ
ସେରୂପେ କହି ମୋ ଛଡ଼ାଅ ହୃଦଦ୍ୱନ୍ଦ୍ୱ ।
କୃଷ୍ଣ ବୋଇଲେ ମୁଁ ହୋଇଲି ଜନ୍ମ ଯେତେ
କେତେକ ଅରଜୁନ ଅଛୁ ମୋର ସଙ୍ଗେ ।
ଏ ବାହାରେ ତୁମ୍ଭର ଜନ୍ମମାନ ମୂର୍ତ୍ତି
ଜାଣିଛୁ ଏଥିରେ ସନ୍ଦେହ କିଛି ନାହିଁ ।
ତୁମ୍ଭଙ୍କୁ କିଛି ନୋହିବାରୁଟି ଗୋଚର
ଏରୂପରେ ପଚାରିଲ ହେ ମହାବୀର ।
ଅଜ ଅବିନାଶୀ ଈଶ୍ୱର ମୂର୍ତ୍ତି ଅଟେ
ମୋ ମାୟାରେ ମୂର୍ତ୍ତି ମହୀରେ ପରକଟେ ।
ଯେବେ ଧର୍ମ ଯାଇ ଅଧର୍ମ ପ୍ରବର୍ତ୍ତଇ
ତେବେଟି ମୁଁ ଆସି ମହୀରେ ଜନମଇଁ ।
ସାଧୁ ପରିତ୍ରାଣ ଦୁଷ୍ଟର ସଂହାରଣ
କରଇ ଧର୍ମ ସ୍ଥାପି ପ୍ରତିଯୁଗେ ଜାଣ ।
ଧର୍ମ ପାଳିବାର ପାଇଁ ମୋର ଜନମ
ହେବାର ଯେ ଜାଣଇ ସେ ନୋହେ ଜନମ ।
ମୋ ଲୋକରେ ମୋର ସମୀପରେ ସେ ଥାଏ
ଏଥିରେ ସନ୍ଦେହ ନ କର ବୀରରାୟେ ।
ରାଗ ଭୟ କ୍ରୋଧଟି କରି ବିବର୍ଜିତ
ଜ୍ଞାନର ତପସ୍ୟାରେ ହୋଇ ବିବର୍ଜିତ ।
ମୋତେ ଆଶ୍ରେ କରି ବହୁତ ଲୋକମାନେ
ମୋ ରୂପ ପାଇଛନ୍ତି ବିଜୟ ଯେନ ମନେ ।
ମୋଠାରେ ଯେ ଯେ ରୂପେ ପଶଇ ଶରଣ
ସେ ରୂପରେ ମୁଁ ତାକୁ ରଖଇଟି ଜାଣ ।
ମୋ ମାର୍ଗକୁ ବର୍ତ୍ତିଣ ତିନଲୋକ ପ୍ରାଣୀ
ବରତି ଅଛନ୍ତି ପାଣ୍ଡବବୀରମଣି ।
କର୍ମସିଦ୍ଧି ଇଚ୍ଛାଟି କରି ସବୁ ଜନ
ଇନ୍ଦ୍ରାଦି ଦେବତାଙ୍କୁ କରନ୍ତି ଯଜନ ।
ଯେବେ ତ କର୍ମଫଳ ତତକାଳ ସିଦ୍ଧି
କରନ୍ତି ଏଣୁ ଲୋକେ ବଳାନ୍ତି ତହିଁ ବୁଦ୍ଧି ।

ଚାରିବର୍ଣ୍ଣ ଗୁଣ କର୍ମର ବିଭାଗରେ
ସୃଜନା କରିଛି ମୁଁ ଏ ମର୍ତ୍ତ୍ୟଭାଗରେ ।
ଏହି କଥାରେ କର୍ତ୍ତା ଅଟଇଟି ମୁହିଁ
ଆସକ୍ତ ନୋହିବାରୁ ଅକର୍ତ୍ତା ବୋଲାଇ ।
ମୋତେଟି କର୍ମମାନେ ନ ଲାଗନ୍ତି କେବେ
କର୍ମଫଳ ସ୍ପୃହା ମୁଁ ନ କରଇ ଲବେ ।
ଯେଉଁ ଲୋକ ଏହା ଜାଣୁଛି କର୍ମବନ୍ଧ
ତା'ର ନୋହେ କର୍ମ ହେବ ମୁଁ ତହିଁ ଅଛ
ମୋକ୍ଷଇଚ୍ଛାକାରୀଏ କରିଛନ୍ତି କର୍ମ
ପୂର୍ବରେ ଏହା ଜାଣି ଆଚର ସେ ଧର୍ମ ।
ଅକରମ କରମ ବୋଲିବା କଥାଟି
ନ ଜାଣନ୍ତି ଜ୍ଞାନୀଲେ ବିଜ୍ଞ ସମାଜଟି ।
ସେହି କର୍ମ ତୁମ୍ଭଙ୍କୁ କହିବା ଅର୍ଜୁନ
ଫିଟିବା ପାଇଁ ତୁମ୍ଭ ସଂସାର ବନ୍ଧନ ।
କରମ ଅକରମ ବିକର୍ମଙ୍କ ଗତି
ବୁଝି ନ ପାରଇ ଅର୍ଜୁନ କେବେ ମତି ।
ଈଶ୍ୱର ଆରାଧନା କରମ ବନ୍ଧକ
ନୁହଇ ବୋଲି ଯାର ହୋଇଛି ବିବେକ ।
ଏ ବାହାରେ ବିହିତ କରମ ନ କଲେ
ଦୋଷ ହୋଏ ବୋଲି ଯେ ଜାଣଇଟି ଭଲେ
ସେହି ଲୋକକୁଟି ବୋଲିବ ବୁଦ୍ଧିମନ୍ତ
ସବୁ କର୍ମ ତାକୁ ହୁଅଇ ପରାପତ ।
ଯାର କରମଟି ଫଳକୁ ନ ଗୋଡ଼ାଏ
ଜ୍ଞାନାଗ୍ନିରେ ଦଗଧ କର୍ମ ହୋଇଯାଏ ।
ତାହାକୁଟି ପଣ୍ଡିତ ବୋଲିଣ ମାନନ୍ତି
ପଣ୍ଡିତେ ଜାଣ ତା ବିଚାରସାର୍ଯ୍ୟ ନାହିଁ ।
କର୍ମଫଳେ ଆସକ୍ତି ଗୁଡ଼ି ନିତ୍ୟ ତୋଷ
ହୋଇ ନିରାଶ୍ରୟ ଯେ ନ ପାଏ କର୍ମଦୋଷ ।
ନିଷ୍କାମୀ ଯତଚିତ୍ତଆତ୍ମା ହୋଇ ନର
ସବୁ ପରିଗ୍ରହକୁ କରିଥାଏ ଦୂର ।
ଦେହ ଥିବା ଯେନ କର୍ମ ସେ କଲେ ହେଲେ
ସଂସାର ବନ୍ଧନରେ ନ ପଡ଼ଇ ଭଲେ ।
ଅଯାଚିତ ପଦାର୍ଥ ଆସି ଉପସ୍ଥିତ
ହୋଇଲେ ନେଇଲେ ଯେ ତୋଷିଥାଏ ଚିତ୍ତ
ଶୀତ ଉଷ୍ଣ ଦୁଇଟି ନିର୍ମତ୍ସର ହୋଇ
ଯେ ସହେ ତା'ର କର୍ମବନ୍ଧନ ନୁହଇ ।

ନିଷ୍କାମ ହୋଇ ଜ୍ଞାନ ଆଗରେ ଯୁକତ
ହୋଇ ନିଷ୍ଠ କର୍ମେ ହେଇ ଯେ ଥାଏ ରତ ।
ତାହାର ସବୁ କର୍ମମାନ ଲୋପ ହୋଇ
ପ୍ରାନ୍ତେ ମୋ ସମୀପକୁ ହଅନ୍ତି ଯୁଆଇ ।
ସ୍ରୁକ ସ୍ରୁତ ଅଗ୍ନି ହବି ସ୍ୱା ଯେ ଯଜମାନ
ବ୍ରହ୍ମ ବୋଲି କରି ଜାଣ ହେ ଅର୍ଜୁନ ।
ସେ ଲୋକକୁ ବ୍ରହ୍ମତ୍ୱ ଅଲଭ୍ୟେ ମିଳଇ
କର୍ମଫଳ ତା'ର ଦେହରେ ନ ଲହଇ ।
କର୍ମଯୋଗୀମାନେ ତ ଦଇବଯାଗକୁ
ଉପାସନା କରନ୍ତି କହୁଛି ତୁମ୍ଭଙ୍କୁ ।
ଜ୍ଞାନଯୋଗୀମାନେ ତ ବ୍ରହ୍ମଅଗ୍ନି-ମରେ
କର୍ମ ଲୀନ କରୁଅଛନ୍ତି ନିରନ୍ତରେ ।
ବ୍ରହ୍ମଚାରୀମାନେଟି ସଞ୍ଜମ-ଅଗ୍ନିରେ
ଇନ୍ଦ୍ରିୟ-ଘୃତ ହୋମ କରନ୍ତି ଯତ୍ନରେ ।
ଗୃହୀଜନେ ଇନ୍ଦ୍ରିୟ-ଅଗ୍ନିରେ ବିଷୟ—
ଘୃତକୁ ଇଡ଼୍ଥାନ୍ତି ବନ୍ଧୁକର ପ୍ରିୟ ।
ଧ୍ୟାନନିଷ୍ଠେ ଜ୍ଞାନଇନ୍ଦ୍ରିୟ କର୍ମେନ୍ଦ୍ରିୟ
ପ୍ରାଣ କର୍ମ କରନ୍ତି ଧ୍ୟାନାଗ୍ନିରେ ଲୟ ।
ଦାନଯଜ୍ଞ ତପୋଯଜ୍ଞ ଯେ ଯୋଗଯଜ୍ଞ
ବେଦଯଜ୍ଞ କରନ୍ତି କେହି ପାର୍ଥ ବିଜ୍ଞ ।
କେହି ବା ଅପମାନେ ପ୍ରାଣକୁଟି ହୋମ
କରୁଛନ୍ତି ଜାଣ ହେ ନରଙ୍କ ଉତ୍ତମ ।
ପ୍ରାଣ ଅପାନରେ ଗତିକ ରୁଦ୍ଧହୋଇ
ଅପାନକୁ ପ୍ରାଣେ କରନ୍ତି ହୋମ ନେଇ ।
ଏ ରୂପରେ ପୂରକ କୁମ୍ଭକ ରେଚକ
କରି ପ୍ରାଣାୟାମରେ କରନ୍ତି ବିବେକ ।
କେଉଁମାନେ ବା ମିତ-ଆହାରୀ ହୁଅନ୍ତି
ପ୍ରାଣାଦରେ ପ୍ରାଣାଦ କରନ୍ତି ଆହୁତ ।
ଏହା କଲା ଲୋକେ ବୋଲନ୍ତି ଯଜ୍ଞବିଦ
ଯଜ୍ଞଶିଷ୍ଟ ଭୋଜନେ ତାଙ୍କ ହୋଏ ମୋଦ ।
ଏମନ୍ତ ଯେ ସେମାନେ ବ୍ରହ୍ମକୁ ପାଆନ୍ତି
ଆଉ ଥରେ ମହୀରେ ଜନମ ନୁହନ୍ତି ।
ଏ ଯଜ୍ଞମାନ ଯେଉଁ ଲୋକ ନ କରନ୍ତି
ଇହ ପର ଦୁଇଟି ତାଙ୍କର ନାହାନ୍ତି ।
ଏରୂପେ ଯଜ୍ଞବିଧି ବେଦ ବାଛି ବାଛି
ନିତ ବସି ମୁଖେ ଅର୍ଜୁନ କହୁଅଛି ।

ଏ ଯଜ୍ଞମାନ କର୍ମରୁଟି ପାର୍ଥ ଜାତ
ହୋଇ ପ୍ରାଣୀଙ୍କର କରନ୍ତି ମୋକ୍ଷ ହିତ ।
ଏହା ଜାଣିପାରି ଯେ ଜନଟି କରଇ
ଏ ସଂସାରବନ୍ଧ ତାହାକୁ ନ ଲାଗଇ ।
ଦ୍ରବ୍ୟମୟ ଯଜ୍ଞ ପ୍ରତିକ ଜ୍ଞାନଯଜ୍ଞ
ବଡ଼ ବୋଲି କହିଅଛନ୍ତି ସବୁ ବିଜ୍ଞ ।
ସବୁ କର୍ମଯାକ ଜ୍ଞାନଯଜ୍ଞରେ ଗୋଟି
ହୋଇଅଛି ଜାଣ ହେ ପାଣ୍ଡବ କସଟି ।
ଏ ଜ୍ଞାନ ଜ୍ଞାନୀଙ୍କର ପାଦ ସେବା କରି
ପଚାରି ଶିକ୍ଷାକର ଗାଣ୍ଡୀବଧନୁର୍ଦ୍ଧାରି ।
ତେବେଟି ତୁମ୍ଭକୁ ଜ୍ଞାନୀଙ୍କୁ ଜ୍ଞାନ ଦେବେ
ଏ ସଂସାରବନ୍ଧରୁ ତାରିବା ହୋଇବେ ।
ଜ୍ଞାନୀଙ୍କରଠାରୁ ପାଇଲେ ତୁମ୍ଭେ ଜ୍ଞାନ
ବନ୍ଧୁଙ୍କୁ ମାରିବାରେ ନୋହିବେ ବିମନ ।
ଯେଉଁ ଜ୍ଞାନ ପାଇଲେ ଆତ୍ମାରେ ମୋଠାରେ
ଏ ଜଗତଯାକକୁ ଦେଖିବେ ନେତ୍ରରେ ।
ତୁମ୍ଭେ ଯେବେ ପାପରେ ମହାପାପୀ ହେବ
ଜ୍ଞାନ-ପ୍ଲବେ ପାପ-ସମୁଦ୍ର ତରିଯିବ ।
ଜଳନ୍ତା ଅଗ୍ନି କାଷ୍ଠ ପୋଡ଼ିଲା ପରସ୍ୱେ
ଜ୍ଞାନ ଅଗ୍ନି ପାପ ପୋଡ଼ୁଛି ସାରସ୍ୱେ ।
ଇହ ଲୋକେ ଜ୍ଞାନ ସମାନ ହୋଇ କଥା
ପବିତ୍ର କରିବାକୁ ନାହିଁ ମହାରଥୀ ।
ଯାବ କର୍ମଯୋଗରେ ସିଦ୍ଧ ହୋଇ କରି
ତତ୍ତ୍ୱଜ୍ଞାନ ପାଏ ଗାଣ୍ଡୀବଧନୁର୍ଦ୍ଧାରି ।
ଶ୍ରଦ୍ଧାବନ୍ତ ସଞ୍ଜତ ଇନ୍ଦ୍ରିୟ ଗୁରୁଭକ୍ତି
କଲେଟି ଜ୍ଞାନ ଆସି ହୁଏ ଉପସ୍ଥିତ ।
ଜ୍ଞାନକୁ ପାଇଲେଟି ନରକୁଁ ମୁକତ
ଅଳପକାଳେ ପାର୍ଥ ହୁଅଇ ବହତ ।
ଗୁରୁ ଦେବା ଉପଦେଶ ଯେ ନ ଜାଣଇ
ଜାଣଇ ଯେବେ ତେବେ ଶ୍ରଦ୍ଧା ନ କରଇ ।
ଶ୍ରଦ୍ଧା ହେଲେ ତହିଁରେ କରଇ ସଂଶୟ
ତାହାର ହୃଦେ ଜ୍ଞାନ ନୁହଇ ଉଦୟ ।
ଏ ତିନି ଲୋକଙ୍କେ ସଂଶୟମନା ଯେହି
ତାହାର ଜାଣ ଇହ ପରେ ସୁଖ ନାହିଁ ।
ନିଷ୍କାମକର୍ମ ଜ୍ଞାନ ଯେଉଁ ଦେହୀଠାରେ
ଅଛି ନ ପଡ଼େ ସେ ସଂସାର ବନ୍ଧନରେ ।

ଅଜ୍ଞାନୁ ଜାତ ହୃଦସ୍ଥିତ ସଂଶୟକୁ
ପକାଅ ନାଶି ସେହି ଜ୍ଞାନଖଡ୍ଗକୁ ।
କର୍ମଯୋଗକୁ ଆଶ୍ରେ କରି ବୀର ଉଠ
କ୍ଷତ୍ରିୟ ଧରମେ ନ କର ଆଉ ମଠ ।
ଭଗବତଗୀତାର ଜ୍ଞାନ-ଯୋଗ ନାମ
ଚତୁର୍ଥାଧ୍ୟାୟ ବ୍ୟାସ ଋଷିଙ୍କ ଉତ୍ତମ ।
ଶେଷ କଲେ ଏଠାରେ କହେ କୃଷ୍ଣସିଂହ
ନରେଶ କୃଷ୍ଣ ପାଦପଦ୍ମେ କରି ସ୍ନେହ ।

---

## ପଞ୍ଚମ ଅଧ୍ୟାୟ

ଏଥିଅନ୍ତେ ଅର୍ଜ୍ଜୁନ କୃଷ୍ଣଙ୍କୁ ଅନାଇଁ
ପଚାରିଲେ ପୁଣି ସଂଶୟମନା ହୋଇ ।
କର୍ମଯୋଗ କର୍ମସନ୍ନ୍ୟାସ ଦୁଇ କଥା
କହିଲ ତ ମୋତେ ହେ କୃଷ୍ଣ ମହାରଥୀ ।
ଏ ଦୁଇ କଥାଙ୍କରେ କେଉଁ କଥା ଶ୍ରେୟ
ତା ମୋର ଆଗରେ କର ତ ଉଦୟ ।
ଶ୍ରୀକୃଷ୍ଣ ବୋଇଲେ ସନ୍ନ୍ୟାସ କର୍ମଯୋଗ
ମୋକ୍ଷକର ବୋଲି ଜାଣ ହେ ମହାଭାଗ ।
ସନ୍ନ୍ୟାସକୁ ପ୍ରତି କର୍ମଯୋଗଟି ଶ୍ରେଷ୍ଠ
ଜାଣି ଆଚରନ୍ତି ତା ନରେ କରି ଇଷ୍ଟ ।
ଯେଉଁ ଲୋକ ଦ୍ୱେଷ ଆକାଙ୍କ୍ଷା ନ କରଇ
ନିତ୍ୟ ସନ୍ନ୍ୟାସୀଟି ପାର୍ଥ ତାହାକୁ କହି ।
ନିର୍ଦ୍ୱନ୍ଦ୍ୱ ହୋଇ ପୁଣି ହୋଇ ସେ ମୁକତ
ତୁମ୍ଭ ଆଗେ କହୁଛୁ କରିଟି ବ୍ୟକତ ।
ଅଜ୍ଞେ କର୍ମସନ୍ନ୍ୟାସ କର୍ମଯୋଗ ଦୁଇ
ଭିନ୍ନ କରି କହନ୍ତି ବୋଲି ଶୁଣିଥାଇଁ ।
ପଣ୍ଡିତଙ୍କ ମତ ଏ ନୁହେଁ ଅରଜୁନ
କର୍ମଟି କଲେ ଦୁଇଫଳ ହୋଏ ଜାଣ ।
କର୍ମସନ୍ନ୍ୟାସୀଙ୍କର ହୁଏ ଯେଉଁ ସ୍ଥାନ
କର୍ମ କଲ ଲୋକର ହୁଅଇ ଯେ ଜାଣ ।
ସନ୍ନ୍ୟାସ କର୍ମଯୋଗ ଏକ ଯେ ଦେଖଇ
ଜାଣିମାର ବୋଲଣ ତାହାକୁଟି କହି ।
କର୍ମଯୋଗ ନ କଲେ ସନ୍ନ୍ୟାସ ଯୋଗକୁ
କଷ୍ଟ ହୋଇ ଅର୍ଜ୍ଜୁନ ଜାଣ କରିବାକୁ ।
କର୍ମଯୋଗୀ ଲୋକଟି ସନ୍ନ୍ୟାସକୁ ପାଇ
ଅଳ୍ପକାଳେ ଅର୍ଜ୍ଜୁନ ବ୍ରହ୍ମକୁ ଜାଣଇ ।

ଯୋଗଯୁକ୍ତ ବିଶୁଦ୍ଧଦେହ ବିଜିତାତ୍ମା
ଜିତେନ୍ଦ୍ରିୟ ଯେ ସର୍ବଭୂତଆତ୍ମା ଆତ୍ମା ।
ଲୋକ କର୍ମ କଲେ ନ ଲାଗେ କର୍ମଫଳ
ଅର୍ଜ୍ଜୁନ ଏଥି ମନ ନ କର ଆକୁଳ ।
କର୍ମଯୋଗ ଯେଉଁ ଲୋକଟି କରୁଥାଏ
ତତ୍ତ୍ୱଜ୍ଞାନ ତାହାର ଯେବେ ଜାତ ହୋଏ ।
ସେ ଦେଖିଲେ ଶୁଣିଲେ ଛୁଇଁଲେ ଶୁଙ୍ଘିଲେ
ଶୋଇଲେ ଖାଇଲେ ନିଃଶ୍ୱାସ ପକାଇଲେ ।
କହିଲେ ଛାଡ଼ିଦେଲେ ଘେନିଲେ ଗମିଲେ
ଆଖି ଦୁଇକୁ ବୁଜ କରି ଫିଟାଇଲେ ।
ବୋଲଇ ଇନ୍ଦ୍ରିୟର ଅଟଇ ଏ ଚେଷ୍ଟା
ମୋର ନୁହଇଟି କରିବା ଏ କଥାଟା ।
ଏରୂପେ ଭାବନା ଧରନ୍ତି ଯେଉଁମାନେ
କର୍ମେ ଲିପ୍ତ ନୁହଇ ପାର୍ଥ ଘେନ ମନେ ।
ଈଶ୍ୱରଠାରେ କର୍ମଫଳ ସମର୍ପଇ
କର୍ମଫଳ ଛାଡ଼ି କର୍ମକୁ ଯେ କରଇ ।
ପାପରେ ସେହୁ କେବେ ନୁହଇ ଲିପତ
ପଦ୍ମପତ୍ରେ ଜଳ ପରିଏ ହୋଏ ଖ୍ୟାତ ।
କର୍ମଯୋଗୀମାନେଟି ଚିତ୍ତଶୁଦ୍ଧି ପାଇଁ ।
କରମର ଫଳଟିକୁ ଯେ ଛାଡ଼ିଦେଇ ।
କାୟ ଯେ ମନ ବୁଦ୍ଧି ଇନ୍ଦ୍ରିୟରେ କର୍ମ
କରୁଥାନ୍ତି ଜାଣ ହେ ବୀରଙ୍କ ଉତ୍ତମ ।
କର୍ମଯୋଗୀଟି କର୍ମଫଳକୁ ତେଜିଲେ
ମୋକ୍ଷପଦବୀକ ସେ ଲଭଇଟି ଭଲେ ।
ମୋଠାରେ ବହିର୍ମୁଖ ହୋଇ କାମ୍ୟ କର୍ମ
ଯେ କରେ ନ ଛାଡ଼େ ସେ ଭବବନ୍ଧ ଧର୍ମ ।
ଜିତେନ୍ଦ୍ରିୟଟି କର୍ମମାନ ଛାଡ଼ିଦିଏ
ନବଦ୍ୱାର ଘରରେ ସୁଖେ ରହିଥାଏ ।
କରୁଛି କରାଉଛି ବୋଲିବା କଥାଟି
ତାହାଠାରେ କେବେହିଁ ନ ପାରଇ ଘୋଟି ।
କର୍ତ୍ତୃତ୍ୱ କର୍ମଫଳ ଈଶ୍ୱର କରିନାହିଁ
ସ୍ୱଭାବରୁ ଲୋକର ପାର୍ଥ ପ୍ରବର୍ତ୍ତଇ ।
ଏହି ସକାଶରୁ ଈଶ୍ୱର ପାପ ପୁଣ୍ୟ
କାହାର ନ ଘେନନ୍ତି ଜାଣ ଅରଜୁନ ।
ଜ୍ଞାନ ତ ଅଜ୍ଞାନରେ ଆବୃତ ହୋଇଛି
ତେଣୁ ଜୀବ ଭଗବାନଙ୍କୁ ନିନ୍ଦୁଛି ।

ଅଜ୍ଞାନୁଟି ଯେବେ ଆତ୍ମଜ୍ଞାନରେ ଯାଏ
ବଳାତ୍କାରେ ଯାଇ ଈଶ୍ୱରଙ୍କୁ ପାଏ ।
ତକାଳର ଅନ୍ଧାର ନାଶିବା ପରପ୍ରେ
ଆତ୍ମଜ୍ଞାନ ଯୋଗୁଁ ଅଜ୍ଞାନ-ତମ ଯାଏ ।
ବୁଦ୍ଧି ଯତ୍ନ ନିଷ୍ଠା ଯେ ଆଶ୍ରୟ ଈଶ୍ୱର—
ଠାରେ କଲେ ବିଗତପାପ ହୋଇ ନର ।
ମୁକତିକି ଲଭେ ସନ୍ଦେହ ଏଥି ନାହିଁ
ଶାରଙ୍ଗ-ଶଙ୍ଖ-ମର୍ଦ୍ଦନ ପାର୍ଥ ଭାଇ ।
ବିଦ୍ୟାବନ୍ତ ଦ୍ୱିଜ ଚଣ୍ଡାଳ ଗାଈ ହାତୀ
କୁକୁରେ ଯାହାର ସମାନ ଅଟେ ମତି ।
ତାହାକୁ ଟି ଅର୍ଜୁନ ଜ୍ଞାନୀ ବୋଲି କହି
ଆନଠାରେ ସେ କଥା ସମ୍ଭବଇ ନାହିଁ ।
ଯାହାର ମନ ସବୁଠାରେ ଟି ସମାନ
ତାହାକୁ ନ ଲାଗଇ ସଂସାର ବନ୍ଧନ ।
ବ୍ରହ୍ମ ତ ସମ ସବୁ ଦୋଷରେ ରହିତ
ସମଦରଶୀଙ୍କି ସେ ହୁଅଇ ପ୍ରାପତ ।
ପ୍ରିୟ କଥା ହୋଇଲେ ଆନନ୍ଦ ନୋହିବ
ଅପ୍ରିୟ ହେଲେ ଉଦ୍‌ବେଗକୁ ଛାଡ଼ିବ ।
ଏରୂପେ ଯେଉଁ ଲୋକ ଅଛି ଅରଜୁନ
ତାକୁ ଟି ବ୍ରହ୍ମବିଦ ବୋଲଇ ବଚନ ।
ବିଷୟେ ଆସକ୍ତ ନୋହିଲେ ଯେଉଁ ସୁଖ
ଆତମାରେ ଲଭଇ ଆହେ ନରଶିଖ ।
ସେ ସୁଖରୁ ଅକ୍ଷୟ କହି ଟି ଲଭଇ
ବ୍ରହ୍ମଯୋଗେ ଯେବେ ତ ନିଯୁକ୍ତ ହୁଅଇ ।
ଯେଉଁ ଲୋକ ଟି ଜାଣିମାରୁ ହେ ହୋଇବ
ବିଷୟ ସୁଖ ଦୁଃଖ ବୋଲିଣ ଯେଣିକ ।
ଇହଲୋକେ କାମ କ୍ରୋଧଙ୍କ ଉଦ୍‌ବେଗ
ଦେହ ଥିବା ଯାଏ ଯେ ସହେ ମହାଭାଗ ।
ତାହାକୁ ଟି ଯୋଗୀ ସୁଖୀ ବୋଲିଣ କହି
ଆନଠାରେ ଏ କଥା ସମ୍ଭବଇ ନାହିଁ ।
ଆତ୍ମସୁଖ ଆତ୍ମାରାମ ଯେ ଆତ୍ମଦୃଷ୍ଟି
ଏରୂପେ ଏ ମର୍ତ୍ତ୍ୟରେ ଅଛି ଟି ଯେ ଏଟି ।
ସେହି ଟି ବ୍ରହ୍ମଟିରେ ରହଇ ଲୟଟି
ଜାଣିଥାଅ ଯେ କୁନ୍ତୀ ପାଣ୍ଡବ କୀରିଟି ।
ସମଦର୍ଶୀ ନିଷ୍ପାପ ନିଃସଂଶୟ ଯୁତ
ତହିଁ ସବୁ ପ୍ରାଣୀଙ୍କ ହିତରେ ଯେ ରତ ।
ସେହି ବ୍ରହ୍ମଙ୍କରେ ଟି ଲୟକୁ ପାଆନ୍ତି
ନ କର ଚିନ୍ତା ହେ ଭରତବଂଶ୍ୟ ନାଥ ।
ଯେ କାମ କ୍ରୋଧ ଦୁଇ କରିଥାଏ ଦୂର
ସଂଯତ-ଚିତ୍ତ ହୋଇଥାଏ ନିରନ୍ତର ।
ଆତ୍ମତତ୍ତ୍ୱ କଥାକୁ ହୃଦେ ଧରିଥାଏ
ଜୀବନ-ମୁକ୍ତ ତାକୁ ବୋଲନ୍ତି ସର୍ବେ ।
ବିଷୟକୁ ହୃଦ ବାହାରେ ରଖିଥିବ
ଚକ୍ଷୁକୁ ଦୁଇଭୃକୁଟି ମଧ୍ୟରେ ଥୋଇବ ।
ପ୍ରାଣ ଅପାନକୁ ଯେ ନାସିକା ମଧ୍ୟରେ
ସଞ୍ଚାର କରାଇ ରୁନ୍ଧିବ ନିରନ୍ତରେ ।
ଏ ରୂପରେ ଇନ୍ଦ୍ରିୟ ମନ ବୁଦ୍ଧି ଜିଣି
ଛାଡ଼ିଥାଏ ତ ଇଚ୍ଛା ଭୟ କ୍ରୋଧ ଶ୍ରେଣୀ ।
ଏହି ଲୋକମାନେ ଟି ସବୁକାଳେ ମୁକ୍ତ
ବୋଲନ୍ତି ଆହେ ଅରଜୁନ କୁନ୍ତୀସୁତ ।
ଯାଗ ତପ ପାଳକ ପ୍ରାଣୀଙ୍କ ଈଶ୍ୱର
ଅନ୍ତର୍ଯ୍ୟାମୀ ମୋତେ ଜାଣଇ ଯେଉଁ ନର ।
ମୋର ପ୍ରସାଦରୁ ସେ ଲଭଇ ମୁକତି
ନ କର ହେ ବିଜୟ ହୃଦେ ଶଙ୍କା ଏଥି ।
ଭଗବଦଗୀତାର ଯୋଗଗର୍ଭନାମ
ପଞ୍ଚମ ଅଧ୍ୟାୟ ବ୍ୟାସ ମୁନିଙ୍କ ଉତ୍ତମ ।
ଏଠାରେ ଶେଷ କଲେ ହୋଇ ଅତି ତୋଷ
କହଇ କୃଷ୍ଣସିଂହ ନରକୁଳଈଶ ।

—୦—

## ଷଷ୍ଠ ଅଧ୍ୟାୟ

ଏଥୁଅନ୍ତେ କୃଷ୍ଣ ବୋଇଲେ ଅରଜୁନ
କହିବା ଆଉ କଥାଟିଏ ଦିଅ ମନ ।
କର୍ମ ଫଳ ଆଶା ନ କରି ଶାସ୍ତ୍ର ଯେଣି
କର୍ମ କରେ ସନ୍ନ୍ୟାସୀ ଯୋଗୀ ବୋଲି ମାନି ।
ଯାଗ ଆଶ୍ରମାଦି କରମ ଯେ ଛାଡ଼ଇ
ସନ୍ନ୍ୟାସୀ କି ଯୋଗୀ ତାହାକୁ ନ କହଇ ।
ସନ୍ନ୍ୟାସୀ ଯାହାକୁ ଟି ବୋଲି ଅରଜୁନ
କର୍ମଯୋଗୀ ବୋଲିଣ ତାହାକୁ ଟି ଜାଣ ।
ଫଳ ସଂକଳପକୁ ନ ଛାଡ଼ଇ ସେହି
ଯୋଗୀ ବୋଲି ତାକୁ କେ ପାରିବ କହି ।
ଜ୍ଞାନ ହେବା ଯାଏ ଟି କରୁଥିବ କର୍ମ
ଜ୍ଞାନ ହେବା ଉତ୍ତାରୁ ଛାଡ଼ିବ ସେ ଧର୍ମ ।

ଯେଉଁ କାଳେ ବିଷୟ କର୍ମ ଆସକତ
ନୋହେ ଲୋକ ଯୋଗରୁଢ଼ ସେ କଥିତ ।
ଆତମା ଆପଣାର ଅଟେ ବନ୍ଧୁ ଶତ୍ରୁ
ଉଦ୍ଧରିବା କଥାରେ ତାକୁ ଦେବ ହେତୁ ।
ଆତ୍ମାକୁ ତଳକୁ ନ ନେବ କଦାଚିତେ
ତହିଁରୁ ଦୋଷ ଆଉ ନାହିଁ ଟି ଜଗତେ ।
ଯେଉଁ ଲୋକଟି ଆତମାକୁ କରେ ବଶ
ଆତମା ତାର ବନ୍ଧୁ ହୋଏ ସାରଶଶ ।
ଆତମା ଯାହାର ବଶରେ ରହି ନାହିଁ
ତାକୁ ତାଠାରୁ ଶତ୍ରୁ ଭୂମେ କେହି ନାହିଁ ।
ଶୀତୋଷ୍ଣ ସୁଖ ଦୁଃଖ ମାନ ଅନାଦର
ରାଗ ଦ୍ୱେଷ ରହିତ ହୋଇ ଯେଉଁ ନର ।
ଆତ୍ମାକୁ ରଖିଅଛି ତାକୁ ପରମାତ୍ମା
ଗୋଚର ହୋଏ ଜାଣ ଅର୍ଜ୍ଜୁନ ମହାତ୍ମା ।
ଜ୍ଞାନ ବିଜ୍ଞାନରେ ତୃପତ ନିର୍ବିକାର
ମାଟି ସୁନା ପଥର ସମାନ ଦେଖର ।
ଜିଣିଣ ଜିତେନ୍ଦ୍ରିୟ ଯେଉଁ ନର ହୋଏ
ଯୋଗାରୁଢ଼ଯୋଗୀ ଜଗତେ ସେ ବୋଲାଏ ।
ସୁହୃଦ ମିତ୍ର ଅରି ମଧ୍ୟସ୍ଥ ଦ୍ୱେଷୀ ବନ୍ଧୁ
ପାପୀ ଉଦାସୀନ ଅସାଧୁ ଜନ ସାଧୁ ।
ଏମାନଙ୍କେ ବୁଦ୍ଧି ଯେ କରେ ସମତାକୁ
ଯୋଗାରୁଢ଼ ଯୋଗୀ ସମ ନୋହେ ତାହାକୁ ।
ଯୋଗୀଲୋକ ଏକାନ୍ତେ ରହିଣ ମନକୁ
ସାବଧାନ କରିବ ଯୋଗ ସାଧିବାକୁ ।
ଏକାକୀ ହୋଇ ଚିତ୍ତ ଦେହକୁ ସଂଯତ
କରିବ ସବୁଠାରୁ ଛାଡ଼ିଦେଇ ଚିତ୍ତ ।
ବିଶୁଦ୍ଧ ସ୍ଥାନେ ଉଚ୍ଚ ନୀଚରୁ ବାହାର
ହେବ ନିଶ୍ଚଳରେ ଆସନ ଯୋଗୀ ନର ।
କରିବ ଆଗ ତଳେ କୁଶକୁ ପକାଇ
ତହିଁ ମୃଗ ଛାଲ ସ୍ଥାପିବ ତୋଷ ବହି ।
ଛାଲ ଉପରରେ ଯେ ପକାଇ ବସନ
ତହିଁରେ ଚକା ମାଡ଼ି କରିବ ଆସନ ।
ଏକାଗ୍ରମନା ହୋଇ ନତଚିତ୍ତ ହେବ
ଇନ୍ଦ୍ରିୟଙ୍କ କ୍ରିୟାକୁ ନିରୋଧ କରିବ ।
ଏ ରୂପରେ ଯୋଗକୁ କରିବ ଅଭ୍ୟାସ
ତେବେ ଚିତ୍ତଶୁଦ୍ଧି ଟି ହୁଅଇ ପ୍ରକାଶ ।

ଦେହର ମଧ୍ୟଭାଗଠାରୁ ଗ୍ରୀବା ଶିର
ଯାଏ ସମ କରି କରିବ ଅତି ସ୍ଥିର ।
ଏକାଗ୍ର ହୋଇ ନାସାଅଗ୍ରେ ଦୃଷ୍ଟି ଦେଇ
ପ୍ରଶାନ୍ତଚିତ୍ତ ହେବ ଭୟ ଛାଡ଼ି ଦେଇ ।
ବ୍ରହ୍ମଚର୍ଯ୍ୟେ ରହିଣ ଅହଂପରସ୍ୱଣ
ହୋଇଣ ମୋହଠାରେ ସମର୍ପିବ ମନ ।
ମୋ ଠାରେ ତତପର ହୋଇଣ ରହିବ
ଯୋଗଫଳ ପାଇବା ଇଚ୍ଛା ଯେବେ ଥିବ ।
ଏରୂପେ ଯେବେ ଯୋଗୀ ଯୋଗକୁ ଅଭ୍ୟାସ
କରେ ମୋକ୍ଷପଦଟି ହୁଅଇ ପ୍ରକାଶ ।
ଖାଇବା ଶୋଇବା ଚଆଁଇବାର ଅତି
ଯୋଗକୁଟି କାରଣ କେବେ ସେ ନୁହନ୍ତି ।
ନ ଖାଇ ଯୋଗୀ ଯେବେ ଯୋଗ ସାଧି ବସେ
ଯୋଗସିଦ୍ଧି ତାହାର କେବେ ନ ପ୍ରକାଶେ ।
ଶୋଇବାର ଚେତା ହେବାର ନିୟମିତ
କରି ଅତି ଯତନେ ରହିଣ ସଂଯତ ।
ଅନୁରୂପ ଆହାର ବିହାର କରମ
କଲେ ଯୋଗ ସିଦ୍ଧ ହୁଏ ହେ ସାରୋତ୍ତମ ।
ଯେଉଁକାଳେ ଆତ୍ମାରେ ରହେ ଚିତ୍ତ ଆସି
ସେକାଳେ ଯୋଗୀ ବୋଲି ତାହାକୁଟି ଭାଷି ।
ନିର୍ବାତଦେଶ ଦୀପ ପରି ଯୋଗୀ ଯେବେ
ଜଗିଣ ରହେ ଯୋଗସିଦ୍ଧି ହୋଏ ତେବେ ।
ଯୋଗର ଅଭ୍ୟାସରେ ଚିତ୍ତ ରୁନ୍ଧ ଦେଇ
ବିଷୟ ବିଷ ପରି ହୁଅଇ ପକାଇ ।
ମନରେ ଆତ୍ମାକୁ କରଇ ଦରଶନ
ତେବେ ବୋଲାଏ ସେହୁ ଯୋଗସିଦ୍ଧ ଜନ ।
ଯେଉଁ ଅବସ୍ଥାରେଟି ଆତ୍ୟନ୍ତିକ ସୁଖ
ଜଣାଯାଏ ଜାଣ ସେ ହୁଏ ଯୋଗଶିଖ ।
ଯେଉଁ ସୁଖେ ରହିଲେ ତତ୍ତ୍ୱରୁ ଯୋଗୀଏ
ନ ଚଳନ୍ତି କହିଅଛନ୍ତି ତ ସଭିଏଁ ।
ଆତ୍ମାଲାଭରୁଟି ହୋଇଣ ଯେ ଦୁର୍ଲ୍ଲଭ
ଖୋଜିଲେ ହେ ମଣ୍ଡରେ ଆଉ ନାହିଁ ଲଭ ।
ଆତ୍ମାଲାଭେ ଯେବେ ରହଇ ଲୋକ ଯାଇ
ଶୀତୋଷ୍ଣ ଦୁଃଖ ତେବେ ବାଧି ନ ପାରଇ ।
ଯୋଗସିଦ୍ଧି ନୋହିଲେ ନିର୍ବେଦ ନୋହିବ
ନିରନ୍ତରେ ଯୋଗରେ ଦଉଡ଼ଣ ଥିବ ।

ସଂକଳ୍ପରୁ କାମ ଉତ୍ପତ୍ତି ହୁଅନ୍ତି
ଯୋଗୀମାନଙ୍କ ହେ ପାର୍ଥ ନାଶି ପକାଅନ୍ତି ।
ଏହି ସକାଶରୁ ଟି ତ୍ୟାଗ କାମନାକୁ
ଇନ୍ଦ୍ରିୟ ସଂଯତରେ କରିବ ଯୋଗକୁ ।
ମନ ଯେବେ ବଶ୍ୟେ ହେବ କ୍ରମଗତ
ଆତ୍ମାରେ ଆଣି ଯେ କରିବ ତାକୁ ସ୍ଥିତ ।
ସମସ୍ତ ଚିନ୍ତାଯାକ ପଛକୁ ପକାଇ
ଯୋଗରେ ଦେବ ଏକା ମନକୁ ବୁଡ଼ାଇ ।
ମନ ଯେଉଁଠାକୁ ତ ବଳାତ୍କାରେ ଯିବ
ସେଠାରୁ ଆଣି ତାକୁ ଆତ୍ମାରେ ରଖିବ ।
ମନ ଯେଉଁ କାଳରେ ଶାନ୍ତ ହୋଇଯାଏ
ସେହି କାଳରେ ବ୍ରହ୍ମସୁଖ ଭୋଗ ହୋଏ ।
ଯୋଗୀଜନଙ୍କ ମନ ହୋଇଲେ ଆୟତ୍ତ
ବ୍ରହ୍ମ ପ୍ରାପ୍ତ ତାହାର ହୁଅଇ ନିଶ୍ଚିତ ।
ଯୋଗୀଲୋକ ମୋ ଆତ୍ମା ସବୁ ପ୍ରାଣୀଠାରେ
ଅଛୁ ସବୁ ପ୍ରାଣୀ ଅଛନ୍ତି ମୋ ଆତ୍ମାରେ ।
ବୋଲି ତ ସବୁଠାରେ ଦେଖଇ ବ୍ରହ୍ମଙ୍କୁ
ଏଥିରେ କସ ପାର୍ଥ ଅଛୁ କହିବାକୁ ।
ଯେଉଁ ଲୋକଟି ସବୁଠାରେ ମୋତେ ଦେଖେ
ମୋହ ଦେହରେ ସବୁ ଅଛନ୍ତି ନିରେଖେ ।
ସେ ଲୋକକୁ ମୁହିଁ ନୁହଇଟି ଅଦୃଶ୍ୟ
ସେ ଲୋକ ମୋର ମଧ୍ୟ ନୁହଇ ଅଦୃଶ୍ୟ ।
ସବୁପ୍ରାଣୀ ଆତ୍ମା ମୁଁ ବୋଲି ଯେଉଁ ଯୋଗୀ
ମୋତେ ଭଜେ ଜାଣ ସେ ଉତ୍ତମ ବୈରାଗୀ ।
ଆପଣା ସୁଖ ଦୁଃଖ ପ୍ରାୟେ ପର ଦୁଃଖ
ସୁଖ ଯେନେ ଯୋଗୀଟି ଆହେ ନରଶିଖ ।
ଅରଜୁନ ବୋଇଲେ ଯୋଗରେ ମାନସ
ସମାନ ହୋଇ ରହେ ବୋଲି ପୀତବାସ ।
ମୋ ଆଗେ କହିବା ହୋଇଲା ବହି ଭାବ
ମୋ ମତରେ ମନ ତ ଚଞ୍ଚଳ ସ୍ୱଭାବ ।
ଏହି ସକାଶରୁଟି ଯୋଗସ୍ଥିତି ମୁହିଁ
ଜାଣୁନାହିଁ ଆହେ ରୁକ୍ମିଣୀ ପ୍ରାଣସାଇଁ ।
ମନ ବୋଲି ଇନ୍ଦ୍ରିୟ ଦୁହିଙ୍କ କ୍ଷୋଭକ
ପୁଣି ବଳୀୟାର ଦୁର୍ଭେଦ୍ୟ ସେ ଅଧିକ ।
ପବନ ରୁନ୍ଧିବାର ଦୁଷ୍କର ଯେ ରୂପେ
ମନ ରୁନ୍ଧିବା ମୁଁ ବୋଲୁଛୁ ସେହିରୂପେ ।

ଶ୍ରୀକୃଷ୍ଣ ବୋଇଲେ କହିଲ ଯା ଅର୍ଜୁନ
ସ୍ୱଭାବରେ ଚଞ୍ଚଳ ଅଟଇଟି ମନ ।
ଏହା ଜାଣି ଅଭ୍ୟାସ ବଇରାଗ ଦୁଇ
କଥାରେ ରଖୁଥିବ ତାକୁ ଯତ୍ନ ବହି ।
ମନକୁ ସଂଯତଟି ନ କଲେ ଯୋଗକୁ
ପାଏ ନାହିଁ ଜାଣ କହୁଛୁ ମୁଁ ତୁମ୍ଭଙ୍କୁ ।
ମନ ବଶ ଯାର ହୋଇଛୁ ଅରଜୁନ
ସବୁବେଳରେ ଯୋଗ ତାହାର ଅଧୀନ ।
ଅରଜୁନ ବୋଇଲେ ଯୋଗ ସାଧୁଥିବ
ତଇବରେ ତ ମନ ବିଚଳିତ ହେବ ।
ଏହି ସମୟରେଟି ହୋଇଲେ ମରଣ
କି ଗତି ହେବ ତା'ର କହ ନାରାୟଣ ।
ଯୋଗ କର୍ମଫଳ ଦୁଇକ ନ ପାଇଲେ
ନାଶ ନୋହେଟିକି ଲୋକ ତା କହେ ଭଲେ ।
ଆପଣ ତ ସଂଶୟଚ୍ଛେତ୍ତା ଏ ଜଗତେ
ମୋହର ସଂଶୟକୁ ନାଶ ତ କରତେ ।
ଶ୍ରୀକୃଷ୍ଣ ବୋଇଲେ ହେ ଯୋଗଭ୍ରଷ୍ଟ ଲୋକ
ଇହ ପର ଦୁଇରେ ନ ଲଭଇ ଶୋକ ।
ଭଲକଥା କରୁ କରୁ ତ ନ ପାରିଲେ
ମନ୍ଦେ ଗଣନା କି କରିବା ତାକୁ ଭଲେ ।
ଯୋଗଭ୍ରଷ୍ଟ ଲୋକ ଯେ ମଲେ ପୁଣ୍ୟ ଲୋକ
ଭୋଗକରେ ପୁଣି ମର୍ତ୍ତ୍ୟରେ ଧର୍ମଲୋକ ।
କୁଳରେ ଜାତ ହୋଇ ଭୋଗକୁ କରଇ
ନୋହିଲେ ତ ଯୋଗୀକୁଳେ ଜନ୍ମ ହୁଅଇ ।
ପୂର୍ବଦେହର ଯୋଗ ବୁଦ୍ଧିଟି ତାହାକୁ
ଦିଅନ୍ତି ଈଶ୍ୱରଟି ବହି ସଙ୍ଗତକୁ ।
ବୁଦ୍ଧି ହେବାକ୍ଷଣି ସେ ଯୋଗକୁ ଯତନ
କରଇ ଅହର୍ନିଶ ବସି ଅରଜୁନ ।
ପୂର୍ବ ଅଭ୍ୟାସରେ ତ ହୁଅଇ ଅବଶ
ଏଣୁ ଯୋଗ ମନ ସେ କରଇଁ ଲାଳସ ।
ଯୋଗ ଇଚ୍ଛା ନ ଥିଲେ ଲୋକ କର୍ମଗତି
ଛାଡ଼ଇ ହେ ଅର୍ଜୁନ ବ୍ରହ୍ମେ ଦିଏ ମତି ।
ଯୋଗକଲା ଲୋକର ଗତି କି ପଚ୍ଛର
ବସି ଅରଜୁନ ପାଣ୍ଡବ କୁଳସାର ।
ତପସ୍ୱୀ ଜ୍ଞାନୀ କର୍ମୀ ତିନିଙ୍କ ଯୋଗୀଜନ
ଅଧିକ ତୁମ୍ଭେ ଯୋଗ ସାଧ ପ୍ରତିଦିନ ।

ଯେଉଁ ଯୋଗୀ ବ୍ରହ୍ମ ଜାଣିଣ ମୋତେ ଭଜେ
ବଡ଼ ଅଟଇ ସେହୁ ଯୋଗୀଙ୍କ ସମାଜେ ।
ଏହୁ ସକାଶରୁ ମୋ ଭକ୍ତ ହୋଇ ବାବୁ
ମୁଁ ଯାହା ବୋଲୁଛି କର ତା ଉଠି ସବୁ ।
ଆତ୍ମଯୋଗଶିରୋମଣି ଯେ ଧ୍ୟାନଯୋଗ
ବୋଲି ଅର୍ଜୁନଙ୍କୁ କହିଲେ ଯେ ସଭାଗ ।
ବହି ହୃଦଦେଶେ ହେ କୃଷ୍ଣ ପାଦପଦ୍ମେ
ମୋ ମନ ଭୃଙ୍ଗ ରହୁ ନିରତେ ଅଚ୍ଛଦ୍ମେ ।
ଭଗବତଗୀତା ଆତ୍ମସଂଯମ ଯୋଗ
ନାମ ଷଷ୍ଠ ଅଧ୍ୟାୟ ବ୍ୟାସ ମହାଭାଗ ।
ଏହିଠାରୁ ସାରିଲେ ବହି ଅତି ପ୍ରୀତି
କହଇ ଦୀନ କୃଷ୍ଣସିଂହ ନରପତି ।

———

## ସପ୍ତମ ଅଧ୍ୟାୟ

ଏଥିଅନ୍ତେ କୃଷ୍ଣ ବୋଇଲେ ଅରଜୁନ
ମୋହଠାରେ ମନ ଦେଇଣ ପ୍ରତିଦିନ ।
ଯୋଗ ଅଭ୍ୟାସରେଟି ଯେ ରୂପରେ ମୋତେ
ଜାଣିବ ତା କହିବି ଶୁଣ ଏକ ଚିତ୍ତେ ।
ଯେଉଁ ଜ୍ଞାନ ଆଜ ତୁମ୍ଭଙ୍କୁ ଦେବି ମୁହିଁ
ତା ଜାଣିଲେ କାହିଁରେ ଭ୍ରମ ହେବ ନାହିଁ ।
ମନୁଷ୍ୟମାନଙ୍କର ମଧ୍ୟେ ଯେଉଁମାନେ
ସିଦ୍ଧ ହେବା ଇଚ୍ଛା କରନ୍ତି ପ୍ରତିଦିନେ ।
ସିଦ୍ଧମାନଙ୍କେ ଯେହୁ ଅତି ଯତ୍ନ କରି
ଜାଣନ୍ତି ସେ ମୋତେ ଗାଣ୍ଡୀବ ଧନୁର୍ଦ୍ଧାରି ।
ଭୂମି ଜଳ ପବନ ଅନଳ ଗଗନ
ବୁଦ୍ଧି ଯେ ଅହଙ୍କାର ସହିତରେ ମନ ।
ଏ ଆଠଗୋଟି ମୋର ଯେ ଛଡ଼ା ପ୍ରକୃତି
ଜୀବ ବୋଲାଏଟି ହେ ଅପରା ପ୍ରକୃତି ।
ଜଗତକୁ ଧରିବା ସକାଶୁଁ ଅପର
ନାମ ତାହାର ଟି ଯେ ବୋଲେ ଚରାଚର ।
ସବୁ ଅପରରୁ ଟି ସ୍ଥାବର ଜଙ୍ଗମ
ହେଉଅଛି ଜାଣ ହେ ଅର୍ଜୁନ ଜନମ ।
ପର ଅପରଙ୍କର ଜନକ ହେବାରୁ
ସର୍ଜନା ସଂହାର ଟି ହୁଏ ମୋହଠାରୁ ।
ଜଗତରେ ମୋଠୁ ଅଧିକ ହୋଇ କେହି
ଏହି ଭେଦ ଜାଣ ହେ ଅର୍ଜୁନ ଟି ନାହିଁ ।
ସୂତାରେ ମଣି ଥିବା ପରାୟେ ଜଗତ
ମୋହ ଦେହରେ ଜାଣ ହୋଇଅଛି ଗ୍ରଥିତ ।
ଜଳଙ୍କର ରସ ତ ଅଟଇ ଟି ମୁହିଁ
ଚନ୍ଦ୍ର ସୂର୍ଯ୍ୟ ପ୍ରଭା ବୋଲି ହେ ମୋତେ କହି
ସବୁ ବେଦଙ୍କରେ ଅଟଇ ମୁଁ ପ୍ରଣବ
ଆକାଶରେ ଶବଦ ମୁଁ ଦ୍ରୌପଦୀଧବ ।
ମନୁଷ୍ୟଙ୍କ ପଉରୁଷ ମୁହିଁ ତ ଅଟଇ
ମହୀରେ ପୁଣ୍ୟଗନ୍ଧ ବୋଲାଏ ଟି ମୁହିଁ ।
ଅଗ୍ନିଙ୍କର ତେଜ ପ୍ରାଣୀଙ୍କର ଆୟୁଷ
ମୁହିଁ ଅଟଇ ଆହେ ଜାଣ ନରଈଶ ।
ତପସ୍ୱୀଙ୍କର ତପ ପ୍ରାଣୀଙ୍କର ବୀଜ
ମୋତେ ବୋଲି ଜାଣ ହେ ବୀରବରରାଜ ।
ବୁଦ୍ଧିମନ୍ତ ବୁଦ୍ଧି ଯେ ପ୍ରଗଲ୍ଭ ପ୍ରାଗଲ୍ଭ୍ୟ
ମୁହିଁ ବୋଲି ଜାଣ ହେ ଧାନୁକ ଦୁର୍ଲଭ ।
କାମରାଗ-ରହିତ ବଳବନ୍ତଙ୍କର
ବଳ ମୁହିଁ ବୋଲି ଟି ଯେବେ ଆହେ ବୀର ।
ପ୍ରାଣୀଙ୍କର ଧରମ ଅବିରୁଦ୍ଧ କାମ
ମୁହିଁ ଅଟଇ ଆହେ ବୀରଙ୍କ ଉତ୍ତମ ।
ସାତ୍ତ୍ୱିକ ରାଜସ ତାମସ ତିନଭାଗ
କରତା ତ ମୁହିଁ ହେ ନରଙ୍କ ପୁଙ୍ଗବ ।
ଏ ତିନଭାବଙ୍କରେ ମୁହିଁ ରହେ ନାହିଁ
ମୋହଠାରେ ଜନେ ଅଛନ୍ତି ସେହି ରହି ।
ଜଗତ ତ ଏ ତିନଗୁଣରେ ମୋହିତ
ମୋତେ ଜାଣିବାକୁ ନ ପାଏ ଏଣୁ ଚିତ୍ତ ।
ଗୁଣମୟୀ ଦଇବୀ ମାୟାଟି ମୋହର
ଅଛି ତରି ନ ପାରନ୍ତି ଟି ତାହା ନର ।
ମୋହ ଶରଣ ବିନା ସେ ମାୟା-ଜଳକୁ
ଭେଦି ନାହିଁ ବାବୁ ହେ କହୁଛି ତୁମ୍ଭଙ୍କୁ ।
ଯେଉଁମାନେ ଟି ମୂଢ଼ ଅସୁର ସ୍ୱଭାବ
ମୋଠାରେ ତାଙ୍କ ଚିତ୍ତ ନ ଲଗେ ହେ ଠାବ
ଜିଜ୍ଞାସୁ ସେବୀ ଜ୍ଞାନୀ ଅର୍ଥାର୍ଥୀଏ କଉନ୍ତେୟ
ସୁକୃତ ଥିଲେ ପାର୍ଥ ଭଜନ୍ତି ଟି ମୋତେ ।
ଏ ଚାରିଙ୍କ ମଧ୍ୟରେ ଜ୍ଞାନେ ଯେ ଭଜଇ
ବଡ଼ ବୋଲି ଅର୍ଜୁନ ତାହାକୁ ଟି କହି ।
ଜ୍ଞାନୀର ମୁହିଁ ପ୍ରିୟ ଜ୍ଞାନୀ ମୋର ପ୍ରିୟ
କହୁଛି ଜାଣିଥାଅ କୃଷ୍ଣାଦେବୀପ୍ରିୟ ।

ଯେଉଁରୂପେ ଯେଉଁରୂପରେ ଭଜନ୍ତି ମୁକତି
ଦଅଇ ଜ୍ଞାନ ମୋର ଆତମା ବୋଲନ୍ତି ।
ମୋହଠାରେ ତ ମନ ଜ୍ଞାନ ଦେଇଥାଏ
ଉତ୍ତମ ଗତି ତାକୁ ଏ ଯେଣୁ ମୁଁ ଦଏ ।
ବହୁତ ଜନ୍ମେ ଜ୍ଞାନ ପାଇ ବାସୁଦେବ
ଜଗତ ବୋଲି ଯେ ଭଜଇ ବନ୍ଧୁ ସ୍ୱଭାବ ।
ସେହି ଲୋକମାନେ ମହାତମା ବୋଲନ୍ତି
ନ କର ଅରଜୁନ ସଂଶୟତା ମତି ।
ଯେଉଁମାନେ କାମେ ହୁଅନ୍ତି ହତଜ୍ଞାନ
ଆନ ଦେବ ଆଶ୍ରୟ କରନ୍ତି ସେ ଜାଣ ।
ଯେ ଯେଉଁ ଦେବତାଙ୍କୁ ଯେଉଁ କାମନାରେ
ଭଜେ ତା ପୂର୍ଣ୍ଣ କରେ ମୁଁ ଟି ସୁମନାରେ ।
ଏ ଯେଣୁ ତହିଁ ବୁଦ୍ଧି ହୋଏ ତା ନିଶ୍ଚଳ
ସବୁବେଳେ ତା କରଇ ସେ କୃତିବାନ ।
ଏ ଫଳମାନ ଅଳ୍ପଦିନେ ନାଶ ଯାଏ
ମୋ ଭଜନ ଫଳଟି ସବୁଦିନେ ଥାଏ ।
ଦେବତାଙ୍କୁ ପୂଜିଲେ ପାନ୍ତି ଦେବତାଙ୍କୁ
ଯେ ମୋତେ ପୂଜେ ମୁହିଁ ମିଳଇ ତାହାକୁ ।
ଅବ୍ୟକତ ମୁହିଁ ଅଟଇ ଅରଜୁନ
ମୂର୍ଖେ ମୁଖରେ କହି ମୋହର କଥନ ।
ମନୁଷ୍ୟ ପର ମୋହଠାରେ ବୁଦ୍ଧି ଦେଇ
ଆନ ଦେବତାଙ୍କୁ ସେବନ୍ତି ଟି ସେ ଯାଇ ।
ଯୋଗମାୟାରେ ତ ମୁଁ ହୋଇଛି ଆବୃତ
ଏଣୁ କରି ନ ପାରେ ମୋତେ ଦୃଢ଼ଚିତ୍ତ ।
ଅବ୍ୟୟ ଅଜ ବୋଲି ମୂଢ଼ ଲୋକ ମୋତେ
ଜାଣି ନ ପାରଇ ଅର୍ଜୁନ ମହାମତେ ।
ସବୁପ୍ରାଣୀମାନଙ୍କ ତିନିକାଳକୁ ମୁହିଁ
ଜାଣିଅଛି ମୋତେ କେହିଟି ଜାଣିନାହିଁ ।
ଇଚ୍ଛା ଦେଷ ଦୁଇରୁ ଜାତ ଦ୍ୱନ୍ଦ ମୋହ
ତହିଁରେ ପ୍ରାଣୀ ରହିଅଛି ବନ୍ଧ ମୋହ ।
ପୁଣ୍ୟକର୍ମେ ଯାହାର ପାପ ନାଶ ଯାଏ
ସେ ଏକା ଭଜ କରି ପାର୍ଥ ମୋତେ ପାଏ ।
ଜନ୍ମ ମରଣରୁ ମୁକ୍ତି ପାଇଁଟି ମୋତେ
ଯେ ଆଶ୍ରେ କରଇଟି ଜାଣ ମହାମତେ ।
ବ୍ରହ୍ମ ଯେ ଅଧ୍ୟାତମ ଅଖିଳ କରମ
ଯୋଗର ହୁଏ ତାକୁ ହେ ବୀରଉତ୍ତମ ।

ଅଧିଦୈବ ଅଧିଯଜ୍ଞ ଯେ ଅଧିଭୂତ
ଭୁଲରେ ମୋତେ ଜାଣଇ ଯେ ତା'ର ଅନ୍ତ
କାଳରେ ମୁଁ ତାକୁ ପ୍ରାପତ ହୋଏ ଯାଇ
ମୋତେ ସେ କେତେବେଳେ ପାସୋରଇନାହିଁ
ପରାପର ପ୍ରକୃତି ବିଜ୍ଞାନ ଜ୍ଞାନଯୋଗ
ନାମ ସପତମ ଅଧ୍ୟାୟ ମହାଭାଗ ।
ବ୍ୟାସ ମହରଷି ଏଠାରେ କଲେ ଶେଷ
କହଇ କୃଷ୍ଣସିଂହ ଧର୍ମକୋଟ ଈଶ ।

———

## ଅଷ୍ଟମ ଅଧ୍ୟାୟ

ଏଥିଅନ୍ତେ ଅର୍ଜୁନ ବୋଇଲେ ଗୋବିନ୍ଦ
ପୃଚ୍ଛିବା କଥା କହି କର ମୋ ଆନନ୍ଦ ।
ବ୍ରହ୍ମ ଅଧ୍ୟାତମ କର୍ମ ଯେ ଅଧିଭୂତ
ଅଧିଦୈବ ଅଧିଯଜ୍ଞ ଆହେ ଅଚ୍ୟୁତ ।
ମଲାକାଳେ କି ରୂପେ ଯାଅଇଟି ଜଣା
କହ ତା ବତାଇ ହେ କୃଷ୍ଣମହାମନା ।
ଶ୍ରୀକୃଷ୍ଣ ବୋଇଲେ କାରଣ ଅବିନାଶୀ
ଯେଏଟି ପାର୍ଥ ତାକୁ ବ୍ରହ୍ମ ବୋଲି ଭାଷି ।
ବ୍ରହ୍ମଙ୍କର ଜୀବଭାବ ଯେ ଅରଜୁନ
ଅଧ୍ୟାତମ ବୋଲିଣ ତାହାକୁଟି ଜାଣ ।
ପ୍ରାଣୀଙ୍କର ଉତ୍ପତ୍ତି ବୃଦ୍ଧି ହେବାପାଇଁ
ଦ୍ରବ୍ୟତ୍ୟାଗରୂପ ଯାଗକୁ କର୍ମ କହି ।
ଦେହ ଆଦି ଯେତେ ପଦାର୍ଥ ନାଶ ଯାଏ
ଅଧିଭୂତ ନାମ ତ ସେହିଟି ବୋଲାଏ ।
ଇନ୍ଦ୍ରିୟଜାତ ପ୍ରବର୍ତ୍ତକ ସୂର୍ଯ୍ୟନାଥ
ହିରଣ୍ୟଗର୍ଭ ପୁରୁଷ ଅଧିଦୈବତ ।
ଦେହେ ମୁଁ ଯଜ୍ଞ ପ୍ରବର୍ତ୍ତକ ଫଳଦାତା
ଭୂପରେ ଥାଇ ଅଧିଯଜ୍ଞ ମହାରଥା ।
ଅନ୍ତକାଳରେ ମୋତେ ସୁମରି ଯେ ମରେ
ଲୀନ ହୋଇଯାଏ ସେ ମୋହର ଦେହରେ ।
ଏ ବାହାରେ ଅନ୍ତକାଳରେ ଯେଉଁରୂପ
ଯେ ସୁମରେ ଜାଣ ସେ ଲଭେ ସେହି ରୂପ ।
ଏ ସକାଶରୁ ଅରଜୁନ ପ୍ରତିଦିନେ
ସୁମର ଅନ୍ତକାଳେ ସ୍ତୁରିବ ହେ ମନେ ।
ଚିତ୍ତଶୁଦ୍ଧି ବିନା ତ ନୋହେ ମୋ ସ୍ମରଣ
ଚିତ୍ତଶୁଦ୍ଧି ଟି କି ତ ସ୍ୱଧର୍ମ କାରଣ ।

ତାହା ରଖି ଆଗ, ମୋ ପାଖେ ମନ ରଖି
ପଡ଼ନ୍ତେ ହେବ ଭବର ଦୁଃଖକୁ ଉପେକ୍ଷି ।
ଏରୂପେ ମୋହଠାରେ ଦେଲେ ମନ ବୁଦ୍ଧି
ପାଇ ମୋତେ ପାର୍ଥ ଲଭିବ ମହାସିଦ୍ଧି ।
ଅଭ୍ୟାସଯୋଗଯୁକ୍ତ ଚିତ୍ତେ ମୋତେ ଚିନ୍ତା
କଲେ ପାର୍ଥ ହୋଇବ ଧରି ବିବେକତା ।
ସରବଜ୍ଞ ନିୟନ୍ତା ଆଦିତ୍ୟବରଣ
ପ୍ରକୃତିରୁ ପର ଅଚିନ୍ତ୍ୟ ଚିରନ୍ତନ ।
ଅନାଦି ସର୍ବଧାତା ଜନଙ୍କ ପୋଷକ
ସୂକ୍ଷ୍ମମାନଙ୍କରେ ତ ଅତ୍ୟନ୍ତରେ ସ୍ତୋକ ।
ପୁରୁଷକୁ ଯୋଗବଳେ ସେ ଅନ୍ତକାଳେ
ସ୍ମରେ ପ୍ରାଣବାୟୁ ରଖି ଭ୍ରୂମଧ୍ୟରେ ।
ସେହି ଟି ପରମାତ୍ମା ସ୍ୱରୂପକୁ ପାଏ
କହୁଛି ଏ କଥା ତୁମ୍ଭଙ୍କୁ ନିଃସଂଶୟେ ।
ବେଦବିଦେ ଯାହାକୁ ଅକ୍ଷରେ ବୋଲନ୍ତି
ଯତିମାନେ ଯହିଁରେ ପ୍ରବେଶ ହୁଅନ୍ତି ।
ଯାକୁ ଜାଣିବାକୁ କରନ୍ତି ବ୍ରହ୍ମଚର୍ଯ୍ୟ
ସେ କଥା ସଂକ୍ଷେପେ କହିବା ବୀରରାଜ ।
ଇନ୍ଦ୍ରିୟଦ୍ୱାରଯାକ କରିବ ସଂଯତ
ହୃଦୟରେ ମନକୁ କରିଥିବ ସ୍ଥିତ ।
ଆପଣାର ପ୍ରାଣକୁ ଭ୍ରୂମଧ୍ୟେ ରଖିବ
ପ୍ରଣବକୁ ସ୍ମରି ପ୍ରାଣକୁ ଛାଡ଼ିବ ।
ଏରୂପେ ଯେଉଁ ଲୋକ କରେ ଅରଜୁନ
ଉତ୍କୃଷ୍ଟ ଗତି ଟି ହୁଅଇ ତା'ର ଜାଣ ।
ଯେଉଁ ଲୋକ ଅହର୍ନିଶରେ ମୋତେ ଧ୍ୟାନ
କରଇ ମୁଁ ତାହାର ହୁଅଇ ଅଧୀନ ।
ଭଜକରି ମୋତେ ଲଭଇ ଯେଉଁ ଦେହୀ
ଆଉଥରେ ତାହାର ଜନମ ନୁହଇ ।
ବ୍ରହ୍ମଲୋକ ଯାଏଁ ଯାଇକରି ଲୋକ
ଆସୁଅଛି ଆଉ ଥରେ ଟି ମର୍ତ୍ତ୍ୟଲୋକ ।
ମୋତେ ଯେଉଁ ଲୋକ ଟି ଭକତିରେ ପାଏ
ଧରି ନ ପାରଇ ସେ ଆଉଥରେ କାୟେ ।
ସସ୍ର ଯୁଗପୂରେ ବ୍ରହ୍ମାଙ୍କ ଦିନଟିଏ
ହୁଏ ରାତ୍ର ହୋଏ ତେତିକି କାଳଯାଏ ।
ଏହା ଯେଉଁମାନେ ଜାଣନ୍ତି ଅରଜୁନ
ବୋଲନ୍ତି ଟି ସେମାନେ ସରବଜ୍ଞ ଜନ ।

ବ୍ରହ୍ମାଙ୍କର ଦିବସ ହୁଅନ୍ତେ ଆଗମ
ଅବ୍ୟକ୍ତରୁ ବ୍ୟକତ ହୁଅନ୍ତି ଜନମ ।
ବ୍ରହ୍ମାଙ୍କର ରାତି ହେଲେ ଅବ୍ୟକତ
ରୂପରେ ଯାଇ କରି ସେ ହୁଅନ୍ତି ସ୍ଥିତ ।
ବ୍ରହ୍ମାଙ୍କର ଯେବେ ହୁଅଇ ଦିନରାତି
ସେହି ଭୂତେ ଉତ୍ପତ୍ତି ସଂହାର ହୁଅନ୍ତି ।
ବ୍ୟକ୍ତରୁ ଅବ୍ୟକତ ଅଟଇ ଟି ଭିନ୍ନ
ନିତ୍ୟରେ ସେ ଅଛି ଜାଣ ହେ ଅରଜୁନ ।
ସବୁ ପ୍ରାଣୀ ନାଶରେ ନ ଯାଏ ଟି ନାଶ
ସେହି ଟି ବୋଲାଏ ହେ ଅବ୍ୟକ୍ତ ପୁରୁଷ ।
ସେହି ପୁରୁଷକୁ ପରମପୁରୁଷାର୍ଥ
କରିଣ ଶ୍ରୁତିବେଦେ କହୁଥାନ୍ତି ଅର୍ଥ ।
ସେହି ପୁରୁଷକୁ ଟି ଯେଉଁ ଲୋକ ପାଏ
ଆଉ ଥରେ ପୁନରାବୃତ୍ତିକି ସେ ନ ପାଏ ।
ସେ ପୁରୁଷ ପରମପୁରୁଷ ମୋହର
ସେହି ମୂର୍ତ୍ତି ବୋଲି ଜାଣ ପାର୍ଥ ବୀର ।
ସେ ପୁରୁଷଟିକି ଏକାନ୍ତ ଭକତିରେ
ଲଭିପାରେ ଜାଣ ହେ ମୋହ କହିବାରେ ।
ଯେଉଁ ପୁରୁଷଙ୍କର ହୃଦୟ ଭିତରେ
ରହିଅଛନ୍ତି ପ୍ରାଣୀମାନେ ନିରନ୍ତରେ ।
ସେହି ପୁରୁଷ ଟି ଏହି ଜଗତଯାକ
ବ୍ୟାପକ ଅଟନ୍ତି ହେ ନରଙ୍କ ନାୟକ ।
ଯେଉଁ କାଳେ ମଲେ ଆବୃତ୍ତି ଅନାବୃତ୍ତି
ପାଆନ୍ତି ତା ଶୁଣ ବୀରବର୍ଯ୍ୟନାଥ ।
ଜାତବେଦ ଜ୍ୟୋତି ଦିନ ଯେ ଶୁକ୍ଳପକ୍ଷ
ଉତ୍ତରାୟଣ ସମୂହର ଦେବ ମୁଖ୍ୟ ।
ଲୋକକୁ ଯୋଗୀ ଯାଇ କ୍ରମରେ ମୁକତି
ପାଉଅଛନ୍ତି ଆହେ ପାଣ୍ଡୁଙ୍କ ସନ୍ତତି ।
ଧୂମ ରାତି କୃଷ୍ଣପକ୍ଷ ଯେ ଯାମ୍ୟାୟନ
କର୍ମଯୋଗୀ ଯାଇ କରିଣ ଏହି ସ୍ଥାନ ।
କ୍ରମରେ ପୁଣି ସ୍ୱର୍ଗ ଭୋଗକୁ କରଇ
ତୁଣି ଆଉ ଥରେ ଜନମ ସେ ହୁଅଇ ।
ଯେଉଁ ଶୁକ୍ଳ କୃଷ୍ଣ ଗତିକି କହିଲଇଁ
ଜଗତରେ ଧ୍ରୁବ କାଳେ ଏ ଅଛି ରହି ।
ଶୁକଳ ଗତିରେ ଟି ମୋକ୍ଷ ଲୋକ ପାଏ
କୃଷ୍ଣ ଗତିରେ ଟି ଯେ ପୁନର୍ଜନ୍ମ ହୋଏ ।

ଏ ଦୁଇ ମାର୍ଗ ଯେବେ ଯୋଗୀଏ ଜାଣନ୍ତି ।
ଏ ସଂସାରବନ୍ଧନେ କେବେ ନ ପଡ଼ନ୍ତି ॥
ଏଣୁ ସକାଶୁଁ ସବୁ କାଳେ ଅରଜୁନ ।
ଯୋଗଯୁକ୍ତ ହୋଇ ଥାଅ ସମାଧି ମନ ॥
ବେଦ ଯଜ୍ଞ ଦାନ ତପସ୍ୟା ଫଳୁଁ ବଳ ।
ଉତ୍ତମସ୍ଥାନ ପାଏ ଯୋଗୀ ମହାବଳୀ ॥
ଭଗବତଗୀତା ମହାପୁରୁଷ ଯୋଗ ।
ନାମ ଅଷ୍ଟମାଧ୍ୟାୟ ବ୍ୟାସ ମହାଭାଗ ॥
ଶେଷ କଲେ ଏଠାରେ ବଳ୍ପ ଅତି ତୋଷ ।
କୃଷ୍ଣ ପାଦପଦ୍ମରେ ଦେଇଣ ମାନସ ॥
କହଇ କୃଷ୍ଣସିଂହ ନୃପ ଗୀତରସେ ।
ଏ ସଂସାରବନ୍ଧନୁ ତରିବା ଆଶେ ॥

—✽—

## ନବମ ଅଧ୍ୟାୟ

ଏଥୁଅନ୍ତେ ରୁକ୍ମିଣୀ ଦେବୀ ପ୍ରାଣପ୍ରିୟ ।
କହିଲେ ଅର୍ଜ୍ଜୁନଙ୍କଠାରେ ବଳ୍ପ ପ୍ରିୟ ॥
ଉପାସନା ସହିତ ଈଶ୍ୱର ଜ୍ଞାନକୁ ।
କହିବି ମୁଁ ଶୁଣ ଯେ ଦେଇଣ ମନକୁ ॥
ତାହା ଜାଣିଲେ ତୁମ୍ଭେ ଏ ସଂସାର ବନ୍ଧ ।
ଦଇବରେ କେବେ ଟି ନୋହିବ ଆବଦ୍ଧ ।
ଯେଉଁ ଜ୍ଞାନ ତୁମ୍ଭଙ୍କୁ କହିଲି ମୁଁ ଏବେ ।
ଲେଖିଛୁ ଶାସ୍ତ୍ର ଏହା ଋଷିପ୍ରେ ଜାଣିବେ ॥
ଗୁପତ ପବିତ୍ର ଟି ଅଟଇ ସେ କଥା ।
ଜାଣ ଆହେ ପାଣ୍ଡୁନନ୍ଦନ ମହାରଥୀ ॥
ପ୍ରତ୍ୟକ୍ଷଗମ୍ୟ ଧର୍ମଯୁକତ ସୁକର ।
ଅକ୍ଷୟାବ ଗୁଣର ଅଟେ ସେ ଆକର ॥
ମୋ କହିବା ଧର୍ମ ଯେ ନ କରେ ଅର୍ଜ୍ଜୁନ ।
ତାକୁ ଟି ଲଗିଥାଏ ସଂସାରବନ୍ଧନ ॥
ଅବ୍ୟକ୍ତମୂର୍ତ୍ତି ଯେ ଜଗତେ ମୁଁ ବ୍ୟାପିଛୁ ।
ଜାଣ ଆହେ କୁନ୍ତୀଦେବୀଙ୍କ ସାନବଳ୍ପ ॥
ସବୁପ୍ରାଣୀମାନେ ଅଛନ୍ତି ମୋହଠାରେ ।
ମୁହିଁ ନାହିଁ ଜାଣ ହେ ଲିପ୍ତ ଟି କାହିଁରେ ॥
ମୋ ଯୋଗବଳ ଏବେ ଦେଖ ଅରଜୁନ
ନାହାନ୍ତି ଟି ମୋର ଦେହରେ ପ୍ରାଣୀଜନ ॥
ଭୂତମାନଙ୍କୁ ମୁଁ ଯେ ପାଳନା କରୁଛି ।
ଧରି ତାଙ୍କଠାରୁ ଅଲଗା ମୁଁ ହୋଇଛି ॥

ଯେଉଁରୂପେ ପବନ ବାଜୁଛି ସବୁଠାରେ ।
ସେହିରୂପେ ସବୁ ଅଛୁ ଜାଣ ମୋହଠାରେ ॥
କଳ୍ପ କ୍ଷୟ କାଳେ ପ୍ରାଣୀଏ ମୋ ପ୍ରକୃତି ।
ଆଶ୍ରୟ କରନ୍ତି ବଶହଦାର୍ଥ୍ୟ ନାଶ ।
କଳ୍ପ ଆଦ୍ୟରେ ମୁଁ କରଇ ସରଜନ ।
ପ୍ରକୃତିକି ଜାଣ ହେ ଯେଣ ଅରଜୁନ ॥
ସର୍ଜନ ସଂହାର ପାଳନ କର୍ମ ମୋତେ ।
ବାଧି ନ ପାରଇ ହେ ଅର୍ଜ୍ଜୁନ କଞ୍ଚିତେ ॥
କର୍ମରେ ତ ମୁହିଁ ନୁହଇ ଆସକତ ।
ହୋଇଥାଏ ଏଣୁ ସେ ଉଦାସୀନ ବ୍ରତ ॥
ମୋତେ ସେ ପାଇକରି ପ୍ରକୃତି ଜଗତ ।
ସରଜନା କଥା ଟି କରୁଛି ବହୁତ ॥
ମୁଁ ଅଧିଷ୍ଠାନ ହେବା ସକାଶୁଁ ଜଗତ ।
ଥରକୁ ଥର ଲୋକ ହେଉଛି ପ୍ରସୂତ ॥
ମୂଢ଼ ଲୋକେ ମୋହର ଐଶ୍ୱର୍ଯ୍ୟ ନ ଜାଣି ।
ମନୁଷ୍ୟରେ ପାର୍ଥ ପକାନ୍ତି ମୋତେ ଗଣି ॥
ରାକ୍ଷସ ଆସୁରର ପ୍ରକୃତିକ ଧାଇ ।
ମୋତେ ନ ଜାଣନ୍ତି ଦ୍ରୁପଦ-ସୁତାସାଇଁ ॥
ଦଇବୀପ୍ରକୃତିକ ଆଶ୍ରିତ ଯେ ନର ।
ମୋତେ ଭଜନ୍ତି ସେ ପାଆନ୍ତି ମୋ ପୁର ।
ଜାଣିମା ଲୋକେ ସବୁକାଳେ ନାମ ଧରି ।
ହୁଅନ୍ତି ଟି ଅର୍ଜ୍ଜୁନ ନାନା ବ୍ରତଧାରୀ ॥
କେଉଁମାନେ ବା ମୋତେ କରି ନମସ୍କାର ।
ବୋଲୁଥାନ୍ତି ଶ୍ରୀକୃଷ୍ଣ ଅଟନ୍ତି ଆସ୍ଥିର ॥
କେଉଁମାନେ ଜ୍ଞାନଯୋଗରେ ଅବା ମୋତେ
ଉପାସନା କରୁଣ ଥାନ୍ତି ବସି ଏକଚିତ୍ତେ ॥
ଅଭେଦରେ ଭେଦ ଯେ ବ୍ରହ୍ମାଣ୍ଡ ରୂପରେ ।
ଭାବନା କରନ୍ତି ଟି ମୋତେ ପ୍ରତ୍ୟେକରେ ॥
ଅଗ୍ନିଷ୍ଟୋମ ଆଦି ଯାଗ ମୁଁ ତ ଅଟଇ ।
ପଞ୍ଚଯଜ୍ଞ ଆଦି ଯାଗ ଯେ ମୋତେ କହି ॥
ଶ୍ରାଦ୍ଧ ଔଷଧ ଟି ମନ୍ତ୍ର ଅଗ୍ନି ଘୃତ ।
ହୋମ ବୋଲି ମୋତେ ହେ ଜାଣ କୁନ୍ତୀସୁତ
ଏ ଜଗତର-ମାତା ପିତା ପିତାମହ ।
ଧାତା ବୋଲିଣ ମୋତେ ଅରଜୁନ କହ ॥
ପବିତ୍ର ବେଦ୍ୟ ଓଁକାର ନିଧାନ ପ୍ରଣବ ।
ଋକ ସାମ ଯଜୁ ରକ୍ଷକ ଯେ ପ୍ରଭବ ॥

ଗତି ପ୍ରଭୁ ସାକ୍ଷୀଟି ସୁହୃଦ ଶରଣ
ପ୍ରଳୟସ୍ଥାନ ବୀର୍ଯ୍ୟ ଅଟେ ମୁହିଁ ଜାଣ ।
କବାଟରେ ଜଗତ ତାପ ମୁଁ ସର୍ଜଇ
ଅନାବୃଷ୍ଟି ବୃଷ୍ଟିକୁ ମୁହିଁଟି କରଇ ।
ଅମୃତ ମୃତ ସତ ଅସତ ଅଟଇ
ଏହା ଜାଣି ସର୍ବେ ସେବନ୍ତି ମୋତେ ଯାଇ ।
ତ୍ରିବେଦ ଜଣା ଲୋକେ ଯାଗକୁ ଆଚରି
ନିଷ୍ପାପ ହୁଅନ୍ତିଟି ସୋମ ପାନ କରି ।
ସ୍ୱର୍ଗକୁ ପାଇ ଅପସରା ସଙ୍ଗେ ନିତି
କରନ୍ତି ଛାଡ଼ିଦେଇ କରି ମନୁ ବ୍ରୀଡ଼ା ।
ଯେତେବେଳେ ପୁଣ୍ୟ ତାଙ୍କର ସରିଯାଏ
ମର୍ତ୍ତ୍ୟଲୋକେ ଆସି ଜନମ ପୁଣି ହୋଏ ।
ଯାଗକର୍ମ କରଣ ପୁଣି ଆଉ ଥରେ
ବସନ୍ତି ସୁଖେ ଯାଇ ସ୍ୱର୍ଗରେ ସୁଖରେ ।
ଏରୂପେ କାମୀଙ୍କର ଯିବା ଆସିବାର
ହେଉଛି ଅରଜୁନ ହେ ଥରକୁ ଥର ।
ଯେଉଁମାନେ ସବୁ କାମନା ଛାଡ଼ିଦେଇ
ସେବନ୍ତି ମୋତେ ତାଙ୍କୁ ଦିଏ ସବୁ ନେଇ ।
ଆନ ଦେବତାଙ୍କୁ ପୂଜିଲେ ମୁଁ ତା ପାଏ
ବିଧିହୀନ କେବଳ ଅର୍ଜୁନ ବୋଲାଏ ।
ଭୋକ୍ତା ପ୍ରଭୁ ଅଟେ ମୁଁ ସବୁ ଯାଗଙ୍କର
ଜାଣ କହୁଅଛି ଗାଣ୍ଡୀବଧନୁର୍ଦ୍ଧର ।
ତତ୍ତ୍ୱରେ ତ ମୋତେ ଯେ ନ ଜାଣନ୍ତି କେହି
ଏଣୁ ପୁଣ୍ୟଲୋକୁଁ ପଡ଼ନ୍ତି ଚ୍ୟୁତ ହୋଇ ।
ଇନ୍ଦ୍ରାଦି ଦେବତାଙ୍କୁ ପୂଜନ୍ତି ଯେ ନର
ଇନ୍ଦ୍ରାଦି ଦେବପୁରେ କରନ୍ତି ସେ ଘର ।
ଶ୍ରାଦ୍ଧାଦି କର୍ମ ଯେ କରନ୍ତି ଶ୍ରଦ୍ଧା ବହି
ପିତୃଲୋକ ପାଆନ୍ତି ସନ୍ଦେହ ଟି ନାହିଁ ।
ବିନାୟକ ମାତୃଗଣଙ୍କୁ ଯେ ପୂଜଇ
ଭୂତଲୋକେ ଯାଇଣ ଘର ସେ କରଇ ।
ଯେଉଁମାନେ ପୂଜା କରୁଅଛନ୍ତି ମୋତେ
ମୋର ଘରେ ସେ ଯାଇ ବସନ୍ତି ସନ୍ତତେ ।
ପତ୍ର ପୁଷ୍ପ ଫଳ ଜଳ ଯେ ଭକତିରେ
ଦିଏ ମୁଁ ତାହା ଜାଣ ଘେନଇ ପ୍ରୀତିରେ ।
କରିବାର ଆହାର ହୋମ ତପ ଦାନ
ମୋତେ ସମର୍ପଣ କର ହେ ଅରଜୁନ ।
ଏରୂପେ କଲେ ଶୁଭାଶୁଭରୁ ତୁମ୍ଭଙ୍କୁ
ମୁକତି କରିବି ମୁଁ କହୁଛି ସତକୁ ।
ସନ୍ନ୍ୟାସଯୋଗେ ତୁମେ ହୋଇଲେ ଯୁକତ
ମୁହିଁ ଏକା କରିବି ତୁମ୍ଭଙ୍କୁ ମୁକତ ।
ସବୁଠାରେ ସମାନ ହୋଇ ମୁଁ ବର୍ତ୍ତଇ
ପ୍ରୀତି ଅପ୍ରୀତି ମୁଁ କାଠାରେ ନ କରଇ ।
ଯେ ମୋତେ ଭକତିରେ ଭଜଇ ଅର୍ଜୁନ
ମୁହିଁ ତା ଠାରେ ସେ ମୋଠାରେ ଥାଏ ଜାଣ ।
ଦୁରାଚାର ଲୋକ ଟି ଯେବେ ମୋତେ ଭଜେ
ଲେଖା ହୋଏ ଜାଣ ସେ ସାଧୁଙ୍କ ସମାଜେ ।
ଉତ୍ତମ କଥା ଲୋକ କଲେ ବ୍ୟବସାୟ
କେତେବେଳେ ଅର୍ଜୁନ ହୋଏ କି ଅପ୍ରିୟ ।
ମୋତେ ଯେ ଭଜଇ ସେ ଧରମଆତ୍ମାରେ
ଗଣିତ ହୁଅଇ ଟି ଜାଣ ଏ ସଂସାରେ ।
ଏହି ସକାଶରୁ ତାହାର ହୋଏ ଶାନ୍ତି
ନ ସନ୍ଦେହ ଅଛି ହେ କୁନ୍ତୀଙ୍କ ସନ୍ତତି ।
ଆହେ ଅରଜୁନ ଜାଣ ମୋର ଭକତ
ନାଶକୁ କେତେବେଳେ ନୁହନ୍ତି ଟି ଗତ ।
ନୀଚଯୋନିଗତ ଲୋକ ଟି ମୋତେ ଭଜି
ପାଆନ୍ତି ମୁକତି ସଂସାରବନ୍ଧ ତେଜି ।
କ୍ଷତ୍ର ବୃ ଦ୍ୱିଜେ ଯେବେ ଭଜିବେ ମୋତେ ମୁକ୍ତି
ହେବାର କି କହିବ ବସି ତୁମ୍ଭ କତି ।
ଏ ସୁଖକୁ ଅନିତ୍ୟ ଭାବି ଅରଜୁନ
ମୋ ଭଜନ କଥାରେ ପ୍ରବର୍ତ୍ତ ମନ ।
ମୋ ଭଜନକଥାରେ ବହି କରି ପ୍ରିୟ
ମୋର ପାଦପଦ୍ମ ସେବାରେ ମନ ଦିଅ ।
ମୋତେ ପୂଜା କରି ତୁ କର ନମସ୍କାର
ଯେବେ ମୋତେ ପାଇବା ଇଚ୍ଛା ମନେ କର ।
ଭଗବତର୍ଷିତା ଯେ ରାଜଗୁହ୍ୟଯୋଗ
ନାମ ନବମାଧ୍ୟାୟ ବ୍ୟାସ ମହାଭାଗ ।
ଏହିଠାରେ ଆଣି କରିଲେ ସମାପତି
କୃଷ୍ଣସିଂହ ନୃପତି ଚିନ୍ତି ରାଧାପତି ।
କହେ ଗାଉଥିବେ ଅଶ୍ୱିନୀ ମୋର ଦୋଷ
ଏଥିରେ ଥିଲେ ନ କରିବ ଟି ପ୍ରକାଶ ।



## ଦଶମ ଅଧ୍ୟାୟ

ଅଥଅନନ୍ତରେ ସେ ରୁକ୍ମିଣୀବିହାରୀ
ବୋଇଲେ ଶୁଣ ପାର୍ଥ ଛନ୍ଦି ସ୍ୱବିହାରୀ ।
ତୁମ୍ଭେ ତ ମୋର ସଖା ଅଟ ସବୁ ଦିନେ
ଏଥିକି ଯା କହିବି ଶୁଣିବ ତା ମନେ ।
ମୋହର ଜନ୍ମ ଭୃଗୁ ଆଦି ଋଷି ଦେବେ
ନ ଜାଣନ୍ତି ଅର୍ଜୁନ ଜାଣ ଆହେ ଲବେ ।
ଦେବତା ଋଷିଙ୍କର ମୁହିଁ ଟି କାରଣ
ଏ ସକାଶୁଁ ସବୁଙ୍କୁ ଅଟେ ମୁହିଁ ବଡ଼ ।
ଅନାଦି ଅଜେଶ୍ୱର ବୋଲି ଯେ ଜାଣଇ
ମୋତେ ଅରଜୁନ ସେ ମୁକତ ହୁଅଇ ।
ଧୀ ଜ୍ଞାନ ଅସମ୍ମୋହ କ୍ଷମା ସତ୍ୟ ଦମ
ସୁଖ ଦୁଃଖ ଉଦ୍ଭବ ଅନୁଭବ ସମ ।
ଅଭୟ ଭୟ ସାମ୍ୟ ଅହିଂସା ତୁଷ୍ଟି ଯଶ
ତପଃ ଦାନ ଅଯଶ ଆଦି ସାରଇଶ ।
ମୋହଠାରୁ ଜନମ ହୋଇ ଟି ଅଛନ୍ତି
କହିଲି ମୁଁ ଏହା ହେବାକୁ ତୁମ୍ଭ ପ୍ରୀତି ।
ମୋଠାରୁ ଜାତ ସପ୍ତଋଷି ଭୃଗୁ ଆଦି
ଏ ବାହାରେ ଟି ମଧ୍ୟ ସ୍ୱରସନକାଦି ।
ସ୍ୱୟମ୍ଭୁବ ଆଦି ମନୁଏ ସେ ମୋହର
ମନରୁ ଟି ହୋଇଣ ଅଛନ୍ତି ବାହାର ।
ଏମାନଙ୍କଠାରୁ ଟି ସମସ୍ତ ପ୍ରାଣୀଏ
ଜନ୍ମି ବ୍ୟାପିଛନ୍ତି ଜଗତେ ଅଶେଷେ ।
ସେ ମୋହର ବିଭୂତିଯୋଗକୁ ଜାଣଇ
ନିଶ୍ଚଳ ଯୋଗରେ ଅର୍ଜୁନ ସେ ରହଇ ।
ମୁଁ ସବୁର କାରଣ ମୋଠାରୁ ସମସ୍ତେ
ଜନମିଛନ୍ତି ଏହା ଜାଣିଣ ପଣ୍ଡିତେ ।
ଅହର୍ନିଶ ବସିଣ ମୋହର ଭଜନ
କରନ୍ତି ବିଷୟରୁ ନିବର୍ତ୍ତାଇ ମନ ।
ମୋହଠାରେ ଚିତ୍ତ ପ୍ରାଣକୁ ସମର୍ପି
ପଣ୍ଡିତେ ନୁହନ୍ତି ସଂସାରବନ୍ଧେ ତାପୀ ।
ମୋର ଭଜନେ ଆସକତ ଯେ ହୁଅଇ
ବୁଦ୍ଧି ଯୋଗ ତାକୁ ଦିଏ ଟି ମୁହିଁ କହି ।
କେଉଁ ବୁଦ୍ଧି ଯୋଗରୁ ମୋତେ ସେ ପାଆନ୍ତି
ତା କେତେ କହିବି ହେ କୁନ୍ତିଭୋଜନାତି ।
ତାଙ୍କୁ ଅନୁଗ୍ରହ କରିବାପାଇଁ ମୁହିଁ
ଜ୍ଞାନ-ଦୀପେ ଅଜ୍ଞାନ ତମକୁ ନାଶଇ ।
ଅରଜୁନ ବୋଇଲେ ପରମ ଆଶ୍ରୟ
ପରମବ୍ରହ୍ମ ତୁମ୍ଭେ ଦେବକୀ ତନୟ ।
ତୁମ୍ଭଙ୍କୁ ଯେ ଅଜ ବ୍ୟାପକ ବେଦବ୍ୟାସ
ନାରଦ ଦେବଳାଦି କରନ୍ତି ପ୍ରକାଶ ।
ଆପଣ ତ ମଧ୍ୟ ସେରୂପେ ମୋ ଆଗରେ
କହିବା ହେଉଛନ୍ତି କଥା ପ୍ରସଙ୍ଗରେ ।
ଏହି ସକାଶରୁ ଏ କଥା ସତ୍ୟ କରି
ମଣୁଅଛି ମୁଁ ଆହେ ରୁକ୍ମିଣୀବିହାରୀ ।
ଦେବ ଦାନବରେ ଯେ ତୁମ୍ଭର ପ୍ରଭାବ
ବ୍ୟକ୍ତ ହୋଇନାହିଁ ହେ ଗୋବିନ୍ଦ ମାଧବ ।
ଆହେ କୃଷ୍ଣ ତୁମ୍ଭର ମହିମାକୁ ତୁମ୍ଭେ
ଜାଣ ଏକା ବୋଲିଣ ଜାଣୁଅଛୁଁ ଆମ୍ଭେ ।
ଆପଣଙ୍କ ବିଭୂତି ଶୁଣିବା ଇଚ୍ଛା ମୋର
ହେଉଛି ତାହା ଏବେ ପରକାଶ କର ।
କେଉଁ ଦ୍ରବ୍ୟେ କପରି ତୁମ୍ଭଙ୍କୁ ମୁଁ ଚିନ୍ତା
କରିବି ତା ବତାଅ ହେ ଜଗତଜେତା ।
ତୁମ୍ଭର ଯୋଗବିଭୂତିକି ବିସ୍ତାରରେ
କହ ମୋର ଆଗରେ ହରି ସରାଗରେ ।
ଶ୍ରୀକୃଷ୍ଣ ବୋଇଲେ ଅର୍ଜୁନ ମୋ ବିଭୂତି
ପ୍ରଧାନରେ କହିବି ଶୁଣ ଦେଇ ମତି ।
ପ୍ରାଣୀମାନଙ୍କର ପରମଆତ୍ମା ମୁହିଁ
ଆଦି ମଧ୍ୟ ଅନ୍ତ ବୋଲିଣ ମୋତେ କହି ।
ଦ୍ୱାଦଶ ଆଦିତ୍ୟଙ୍କ ମଧ୍ୟେ ବିଷ୍ଣୁ ମୁହିଁ
ଜ୍ୟୋତିଙ୍କରେ ସୂର୍ଯ୍ୟଦେବତା ମୁଁ ଅଟଇ ।
ପବନଙ୍କରେ ମୋର ନାମଟି ମରୀଚି
ନକ୍ଷତ୍ରରେ ମୁହିଁ ବୋଲାଏ ଶୀତରୁଚି ।
ବେଦମାନଙ୍କରେ ମୁହିଁଟି ସାମବେଦ
ଦେବତାମାନଙ୍କରେ ମୁହିଁ ବାସବ ।
ଇନ୍ଦ୍ରିୟଙ୍କରେ ମୁଁ ଅଟଇଟି ମନ
ପ୍ରାଣୀମାନଙ୍କରେଟି ମୁଁ ଅଟେ ଚେତନ ।
ରୁଦ୍ରଙ୍କରେ ମୁହିଁଟି ଅଟଇ ଶଙ୍କର
ଯକ୍ଷ ରାକ୍ଷସଙ୍କେ ମୁଁ ବୋଲାଏ କୁବେର ।
ବସୁଙ୍କରେ ମୁହିଁ ଯେ ପାବକ ଅଟଇ
ଶିଖରୀଙ୍କରେ ମୁହିଁ ମେରୁଟି ବୋଲାଇ ।

ପୁରୋହିତଙ୍କରେ ଅଟେ ମୁଁ ଅଙ୍ଗିରସ
ସେନାନୀଙ୍କରେ ମୁହିଁ ଅଟଇ ଷଡ଼ାସ୍ୟ ।
ସରଙ୍କରେ ମୁହିଁଟି ସାଗର ଅଟଇ
ମହର୍ଷିଙ୍କରେ ଭୃଗୁ ମୁହିଁ ବୋଲାଇ ।
ବଚନଙ୍କରେ ମୁହିଁ ଅଟଇ ପ୍ରଣବ
ଯାଗଙ୍କରେ ମୁହିଁ ଅଟଇ ଯାଗସର୍ବ ।
ସ୍ଥାବରଙ୍କରେ ମୁହିଁ ଅଟେ ହିମାଚଳ
ବୃକ୍ଷମାନଙ୍କରେ ମୁଁ ଅଟଇ ପିମ୍ପଳ ।
ଦେବର୍ଷିଙ୍କରେ ନାରଦ ମୁଁ ଅଟଇ
ଗନ୍ଧର୍ବମାନଙ୍କରେ ଚିତ୍ରରଥ ମୁହିଁ ।
ସିଦ୍ଧଙ୍କରେ ମୁହିଁଟି କପିଳ ଅର୍ଜୁନ
ଅଶ୍ୱଙ୍କରେ ମୁହିଁଟି ଉଚ୍ଚୈଃଶ୍ରବା ଜାଣ
ହାଟଙ୍କରେ ମୁହିଁଟି ଐରାବତ ଦ୍ୱୀପ
ନରଙ୍କରେ ମୁହିଁ ଅଟଇ ନରାଧିପ ।
ଆୟୁଧଙ୍କରେ ମୁହିଁ ଅଟଇଟି ବଜ୍ର
ଧେନୁଙ୍କରେ କାମଧେନୁ ମୁଁ ସାରସାର ।
ପ୍ରଜା ଜନ୍ମ କରିବା କନ୍ଦର୍ପଟି ମୁହିଁ
ସର୍ପଙ୍କରେ ବାସୁକି ବୋଲି ମୋତେ କହ ।
ନାଗଙ୍କରେ ମୁହିଁ ଯେ ଅଟଇଟି ଶେଷ
ଜଳଚରଙ୍କରେ ଅଟଇ ପ୍ରଚେତସ ।
ପିତୃମାନଙ୍କରେ ଅର୍ଯ୍ୟମା ଅଟେ ମୁହିଁ
ପ୍ରଜା ସଂଯମରେ ଯେ ଯମ ମୁଁ ଅଟଇ ।
ପ୍ରହଲ୍ଲାଦ ମୁହିଁ ଅଟଇ ଦୈତ୍ୟଙ୍କରେ
କାଳ ଅଟେ ମୁହିଁ ଗଣନାକାରୀଙ୍କରେ ।
ମୃଗଙ୍କରେ ମୁହିଁ ଯେ ଅଟଇ କେଶରୀ
ପକ୍ଷୀଙ୍କରେ ଗରୁଡ଼ ନାମଟି ମୋହର ।
ବେଗଗାମୀଙ୍କରେ ମୁଁ ଅଟଇ ପବନ
ଶସ୍ତ୍ରଭୃତଙ୍କରେଟି ମୁଁ ରଘୁନନ୍ଦନ ।
ମତ୍ସ୍ୟମାନଙ୍କରେ ମୁହିଁ ଅଟେ ମକର
ନଦୀମାନଙ୍କରେ ମୁଁ ଏକା ଗଙ୍ଗାଧାର ।
ଆକାଶ ଆଦିଙ୍କରେ ଆଦ୍ୟ ମଧ୍ୟ ଅନ୍ତ
ମୁହିଁଟି ଆହେ ଜାଣ ଇନ୍ଦ୍ରଙ୍କର ସୁତ ।
ବିଦ୍ୟାଙ୍କରେ ବ୍ରହ୍ମବିଦ୍ୟାଟି ମୁଁ ଅଟଇ
ବାଦଲୋକମାନଙ୍କେ ବାଦ ଅଟେ ମୁହିଁ ।
ଅକ୍ଷରଙ୍କର ମଧ୍ୟେ ଅଟେ ମୁଁ ଅକାର
ସମାସଙ୍କରେ ଦ୍ୱନ୍ଦ୍ୱ ସମାସ ମୁଁ ସାର ।

କାଳଙ୍କରେ ଅକ୍ଷୟକାଳ ମୁଁ ଅଟଇ
କର୍ମଫଳ ବିଧାନେ ବିଧାତାଟି ମୁହିଁ ।
ସଂହାରକାରୀଙ୍କରେ ମୃତ୍ୟୁ ମୁଁ ଅଟଇ
ପ୍ରାଣୀମାନଙ୍କରେ ଅଭ୍ୟୁଦୟ ମୁହିଁ ।
ସ୍ତ୍ରୀମାନଙ୍କେ କୀର୍ତ୍ତି ସ୍ମୃତି ଶ୍ରୀ ଧୃତି
ମେଧା କ୍ଷମା ବାଣୀ ଏମାନେ ମୋ ବିଭୂତି ।
ସାମବେଦର ମୁଁ ଅଟଇ ବୃହତ୍ସାମ
ଛନ୍ଦମାନଙ୍କରେ ଗାୟତ୍ରୀ ମୋର ନାମ ।
ମାସଙ୍କରେ ମାର୍ଗଶୀର୍ଷ ମାସଟି ମୁହିଁ
ଋତୁଙ୍କରେ ବସନ୍ତଋତୁ ମୁଁ ଅଟଇ ।
ବଞ୍ଚାଇବାର ଲୋକମାନଙ୍କରେ ଜୁଆ
ମୁହିଁ ବୋଲି ଟି ଜାଣ ଆହେ ପାଣ୍ଡୁପୁଅ ।
ତେଜସ୍ୱୀମାନଙ୍କର ତେଜ ମୁଁ ଅଟଇ
ଜିଣିମାଲୋକଙ୍କରେ ଜୟ ମୋତେ କହ ।
ବ୍ୟବସାୟୀଙ୍କର ଅଟେ ମୁଁ ବ୍ୟବସାୟ
ସାତ୍ତ୍ୱିକଙ୍କରେ ସତ୍ତ୍ୱ ମୁହିଁ ଧନଞ୍ଜୟ ।
ବୃଷ୍ଣିମାନଙ୍କରେ ତ ବାସୁଦେବ ମୁହିଁ
ପାଣ୍ଡବେ ଅର୍ଜୁନ ନାମ ମୁଁ ଅଛୁ ବହି ।
ମୁନିଙ୍କରେ ମୁହିଁ ଅଟଇ ବେଦବ୍ୟାସ
କବିଙ୍କରେ ଶୁକ୍ର ନାମଟି ମୋ ପ୍ରକାଶ ।
ଦଣ୍ଡଦେବା ଲୋକର ଦଣ୍ଡ ମୁଁ ଅଟଇ
ଜାଣିବା ଲୋକଙ୍କର ମୌନ ମୋତେ କହ ।
ଗୁପତ କଥାଙ୍କରେ ଅଟେ ମୁଁ ମଉନ
ମୁହିଁଟି ଅରଜୁନ ତତ୍ତ୍ୱଜ୍ଞାନୀ ଜ୍ଞାନ ।
ସମସ୍ତ ଜଗତର ବୀଜ ମୁଁ ଅଟଇ
ମୋ ବିନା ଚର ଅଚରରେ ଦ୍ରବ୍ୟ ନାହିଁ ।
ମୋହ ବିଭୂତିମାନଙ୍କର ନାହିଁ ଅନ୍ତ
ସଂକ୍ଷେପରେ ମୁହିଁ କହିଲିଟି ତା ବହତ ।
ଐଶ୍ୱର୍ଯ୍ୟବନ୍ତ ଯେ ଶ୍ରୀମନ୍ତ ଉର୍ଜିତ
ମୋ ତେଜ ଅଂଶରୁଟି ହୋଇଛନ୍ତି ଜାତ ।
ଆଉ ତୁମ୍ଭ ଆଗରେ କହିବି ମୁଁ କେତେ
ଅଂଶୁଟିକେ ବ୍ୟାପିଛୁ ସମସ୍ତ ଜଗତେ ।
ଭଗବଦ୍ଗୀତା ବିଭୂତିଯୋଗ ନାମ
ଦଶମାଧ୍ୟାୟ ଶେଷ କଲେ ଦ୍ୱିଜୋତ୍ତମ ।
ବେଦବ୍ୟାସ ପରାଶରଙ୍କର ତନୟ
କହେ କୃଷ୍ଣସିଂହ ନରେଶ ବଡ଼ ପ୍ରିୟ ।

## ଏକାଦଶ ଅଧ୍ୟାୟ

ଏଥିଅନନ୍ତରେ ଅରଜୁନ କୃଷ୍ଣଙ୍କୁ
କହିଲେ ତୁମ୍ଭ ଯେନ ଗୁହ୍ୟଲ ମୋହକୁ ।
ପ୍ରଳୟ ସର୍ଜନା ହୁଅନ୍ତି ତୁମ୍ଭଠାରୁ
ବୋଲି ଏବେ ଶୁଣିଲି ତୁମ୍ଭର ମୁଖରୁ ।
ଅବିନାଶୀ ମହାତ୍ମ୍ୟଙ୍କୁ ମୋ ଆଗରେ
କହିବା ହେଲ ତ ଅତ୍ୟନ୍ତ ସରାଗରେ ।
ଆତ୍ମାର ଗୁଣ ଯା କହିବା ହେଲ ମୋତେ
ସତକରି ତାହା ଘେନିଲି ମୁହିଁ ଚିତ୍ତେ ।
ଈଶ୍ୱରରୂପ ଏବେ ତୁମ୍ଭର ଦେଖିବାକୁ
ମୋ ମନ ହେଉଛି ଦେଖାଅ ତା ଆମ୍ଭଙ୍କୁ ।
ଯେବେ ଆପଣଙ୍କ ମୁଁ ଅନୁଗ୍ରହ ପାତ୍ର
ତେବେ ତାହା ଦେଖାଇ କରାଅ ପବିତ୍ର ।
କୃଷ୍ଣ ବୋଇଲେ ଆହେ ନାନାଜାତି ବର୍ଣ୍ଣ
ସହସ୍ର ସଂଖ୍ୟାରୂପ ଦେଖ ମୋ ଅର୍ଜୁନ ।
ଆଦିତ୍ୟ ବସୁ ରୁଦ୍ର ଅଶ୍ୱିନୀକୁମାର
ମରୁତାଦି ନାନା ଆଶ୍ଚର୍ଯ୍ୟ ଦେଖ ବୀର ।
ମୋର ଦେହରେ ଚରାଚର ଜଗକୁଟି
ଏକାବେଳକରେ ଦେଖ ଆହେ କିରୀଟି ।
ଆଉ ଯା ଇଚ୍ଛା ହେଉଥିବ ଦେଖିବାକୁ
ତା ମଧ୍ୟ ଦେଖାଇବ କହୁଛି ତୁମ୍ଭଙ୍କୁ ।
ଯେହିଁ ଆଖି ଅର୍ଜୁନ ବହିଅଛ ଏବେ
କହୁଥାଇଁ ଏଥିରେ ଦେଖା ସେ ନ ଯିବେ ।
ଦିବ୍ୟଚକ୍ଷୁ ତୁମ୍ଭଙ୍କୁ ଦେଉଅଛି ମୁହିଁ
ଈଶ୍ୱର ଯୋଗ ଏବେ ଦେଖ ତୋଷ ବହି ।
ଏହିରୂପରେ କୃଷ୍ଣ କହି ଅର୍ଜୁନଙ୍କୁ
ଦେଖାଇଲେ ଆପଣା ଈଶ୍ୱର ରୂପକୁ ।
ସେରୂପରେ ଅନେକ ବଦନ ନୟନ
ପୂରି ରହିଅଛନ୍ତି ହୋଇ ଅତି ଘନ ।
ଅନେକ ଆଶ୍ଚର୍ଯ୍ୟମାନେ ତହିଁରେ ସ୍ଥିତ
ଅନେକ ଦିବ୍ୟ ଆଭରଣେ ସେ ମଣ୍ଡିତ ।
ଅନେକ ଦିବ୍ୟ ମାଲ୍ୟାମ୍ବର ଛନ୍ତି ଧରି
ବହୁ ଦିବ୍ୟ ଗନ୍ଧ ସୁବାସ ଅଛି ପୂରି ।
ଆକାଶରେ ସହସ୍ର ସୂର୍ଯ୍ୟ ଉଦେ ଶୋଭ
ତୁଳି ପ୍ରକାଶିଲା ସେ ବିଶ୍ୱରୂପ ପ୍ରଭ ।

ଜଗତଯାକ ନାନା ପ୍ରକାରେ ଭାଗ ଭାଗ
ହୋଇଛନ୍ତି ଦେଖିଲେ ପାର୍ଥ ନେତ୍ରଯୁଗ ।
ବଳେ ଅରଜୁନ ଫୁଲାଇଣ ଶରୀର
ନମସ୍କାର କରି ଅଞ୍ଜଳି କରି କର ।
କହିଲେ ଆହେ କୃଷ୍ଣ ତୁମ୍ଭର ଦେହରେ
ଦେଖିଲି ମୁଁ ସବୁ କଥାଟି ନୟନରେ ।
ବ୍ରହ୍ମା ରୁଦ୍ର ଦେବତା ଦେବଋଷି ପନ୍ତି
ସ୍ଥିର ଜାତି କୁଳରେ ପ୍ରାଣୀଏ ଅଛନ୍ତି ।
ସର୍ପମାନେ ମଧ୍ୟ ତ ଅଛନ୍ତି ଅପାର
ନାନାଜାତି ବର୍ଣ୍ଣରେ ହୋଇ ଧାରି ଧାରି
ବହୁ ନେତ୍ର ବାହୁ ଯେ ଉଦର ଅନେକ
ଦେଖୁଛି ତୁମ୍ଭଠାରେ ହେ ଦେବନାୟକ ।
ଅନ୍ତ ମଧ୍ୟ ଆଦି କେବଳ ଦେଖୁନାହିଁ
କସ ଜଣାଇବ ତୁମ୍ଭରେ କୃଷ୍ଣ ମୁହିଁ ।
କିରୀଟ ଗଦା ଚକ୍ର ତେଜରେ ଦୀପିତ
ହେବାରୁ ମୋ ନେତ୍ରକୁ କରୁଛନ୍ତି ଲୁପତ ।
ଅକ୍ଷର ପରଂବ୍ରହ୍ମ ଯାହାକୁଟି କହି
ଏବେ ସେ ତୁମ୍ଭେ ବୋଲି ଜାଣିଲି ହେ ମୁହିଁ
ଆଶ୍ରୟ ଅଟ ତୁମ୍ଭେ ବିଶ୍ୱଯାକଙ୍କର
ତୁମ୍ଭେ ଏକା ଧର୍ମ-ଗୋପତା ଚକ୍ରଧର ।
ସନାତନ ପୁରୁଷ ଅଟ ତୁମ୍ଭେ ହରି
ନିତ୍ୟ ଅବିନାଶୀ ତୁମ୍ଭଙ୍କୁ ବୋଲିପାରି ।
ଉତପତ୍ତି ସ୍ଥିତି ପ୍ରଳୟ ତୁମ୍ଭଠାରେ
ଆହେ ଲକ୍ଷ୍ମୀଈଶ ତ ସମ୍ଭବ ନ ପାରେ ।
ଚନ୍ଦ୍ର ସୂର୍ଯ୍ୟ ଦୁହେଁ ନୟନରେ ତୁମ୍ଭର
ରହିଛନ୍ତି ମହାପ୍ରଭୁ ହେ କଳ୍ପ ତର ।
ଅନନ୍ତ ବାହୁ ମୁଖ ତୁମ୍ଭର ଅଟଇ
ଜଳନ୍ତା ଅନଳକୁ ଅଛ ମୁଖେ ବହି ।
ଆପଣା ତେଜ ବିଶ୍ୱଯାକକୁ ତପତ
କରୁଛ ତୁମ୍ଭେ ଟି ଅନଳ ବୀର୍ଯ୍ୟବନ୍ତ ।
ଦଶଦିଗ ଯୋଡ଼ି ରହିଛି ତୁମ୍ଭ ରୂପ
ଏଣୁ ତିନଲୋକ ତ ଲଭୁଥାନ୍ତି ତାପ ।
ଦେବତାଏ ଦେଖି ଶରଣ ପଶୁଛନ୍ତି
କେ ଭୟରେ ଅଞ୍ଜଳି କରି ଜଣାଅନ୍ତି ।
ସିଦ୍ଧ ମହର୍ଷିମାନେ ତ ଗୋଟି ହୋଇ
ସ୍ତୁତି କରୁଛନ୍ତି ତୁମ୍ଭଙ୍କୁ ଯଦୁସାଇଁ ।

ରୁଦ୍ର ଆଦିତ୍ୟ ବସୁ ଅଶ୍ୱିନୀକୁମାର
ମରୁତ ଯକ୍ଷ ସାଧ୍ୟ ଗନ୍ଧର୍ବ ଅସୁର ।
ସିଦ୍ଧ ବିଶ୍ୱଦେବ ଯେ ପିତୃଏ ସର୍ବେ
ଆଶ୍ଚର୍ଯ୍ୟ ପାଇଣ ଦେଖନ୍ତି ତୁମ୍ଭ କାୟେ ।
ସବୁ ଲୋକ ଦେଖି ବ୍ୟଥିତ ହେଉଛନ୍ତି
ମୁହିଁ ମଧ୍ୟ ସେରୂପେ ହେଉଛି ଶ୍ରୀପତି ।
ଆକାଶକୁ ତୁମ୍ଭର ରୂପ ତ ଛୁଇଁଛି
ନାନା ବର୍ଣ୍ଣ ତେଜୋଗୁଣକୁ ବହିଅଛି ।
ସବୁ ମୁଖେ ତୁମ୍ଭେ ବିସ୍ତାରିଛନ୍ତ ପାଟି
ନେତ୍ରମାନେ କରୁଅଛନ୍ତି ଅଗ୍ନି ବୃଷ୍ଟି ।
ଏହା ଦେଖି ମୋହର ଉଡ଼ୁଛି ସାହସ
ଶାନ୍ତ ମୋ ଦେହେ ହେଉନାହିଁ ପରବେଶ ।
ଦନ୍ତମାନେ ତୁମ୍ଭର ମୁଖେ ତ କରାଳ
ଦେଖିବାରୁ ନାଶୁଛନ୍ତି ମୋ ଧୈର୍ଯ୍ୟ ବଳ ।
ଏହି ସକାଶକୁ ଦିଗ ମୁଁ ଜାଣୁନାହିଁ
ପ୍ରସନ୍ନ ହୁଅ ହେ ରୁକ୍ମିଣୀପ୍ରାଣସାଇଁ ।
ତୁମ୍ଭ ଦନ୍ତ କରାଳ ମୁଖେ ଦୁର୍ଯ୍ୟୋଧନ
ଆଦିଏ ଧାଇଁ ପଶୁଅଛନ୍ତି ବଦନ ।
ଏ ବାହାରେ ଭୀଷ୍ମ-ଦ୍ରୋଣ-ଯେ କର୍ଣ୍ଣ ଜୟ-
ଦ୍ରଥାଦି ପଶୁଛନ୍ତି ଯେତେ ନୃପଚୟ ।
ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନାଦି ମୋ ଯୋଦ୍ଧାଗଣେ
ତୁମ୍ଭ ପାଟିମଧ୍ୟକୁ ଯାନ୍ତି ଅନୁକ୍ଷଣେ ।
କେତେକ ଯୋଦ୍ଧାଙ୍କର ଗିଳିବାରେ ମୁଣ୍ଡ
ଲାଗିଛନ୍ତି ଦନ୍ତରେ ହୋଇ ଖଣ୍ଡ ଖଣ୍ଡ ।
ସମୁଦ୍ରରେ ନଦୀଏ ମିଶିବା ପରାୟେ
ଏ ମହାବୀରେ ପଶୁଛନ୍ତି ତୁମ୍ଭ କାୟେ ।
ଜଳନ୍ତା ଅଗ୍ନି ମଧ୍ୟେ ପତଙ୍ଗ ଯେରୂପେ
ପଶେ ତୁମ୍ଭ ମୁଖ ଭିତରେ ସେହିରୂପେ ।
ସବୁ ଲୋକମାନେ ପଶନ୍ତି ଯଦୁସାଇଁ
ଦେଖି ମୁଁ ରହିଲିଣି ମହାଭୟ ପାଇ ।
ସବୁ ଲୋକମାନଙ୍କୁ ଜଳନ୍ତା ବଦନେ
ଆପଣ ଗିଳି ଦେଉଅଛ ଅବହେଳେ
ତୁମ୍ଭର ଏହି ତେଜ ଜଗତରେ ବ୍ୟାପି
କରୁଅଛ ପ୍ରାଣୀମାନଙ୍କୁ ପରିତାପୀ ।
ଭୟଙ୍କର ରୂପ ଧରିଛ କେଉଁ ଲୋକ
ତୁମ୍ଭେ କହ ଆହେ ଯଦୁଙ୍କର ନାୟକ ।

ତୁମ୍ଭଙ୍କୁ ନମସ୍କାର କରୁଅଛି ମୁହିଁ
ପ୍ରସନ୍ନହୃଦୟ ମୋଠାରେ ଥାଅ ବିଭୁ ।
ତୁମ୍ଭଙ୍କୁ ଜାଣିବାକୁ ଇଚ୍ଛା କରେ ଯେତେ
ତେତିକି ଅଗୋଚର ହେଉଅଛ ମୋତେ ।
ଶ୍ରୀକୃଷ୍ଣ ବୋଇଲେ ଲୋକଙ୍କ କ୍ଷୟକର
କାଳ ଅଟଇ ହେ ଅର୍ଜୁନ ମନେକର ।
ପ୍ରାଣୀଙ୍କର ସଂହାର କରିବାର ପାଇଁ
ଇହଲୋକେ ଜାଣ ପ୍ରବର୍ତ୍ତିଅଛି ମୁହିଁ ।
ତୁମ୍ଭ ବିନା ସବୁ ଯୋଦ୍ଧାଏ ମୋର ମାୟା
ଇଚ୍ଛାରେ ଘାଣ୍ଟି ହୋଇ ଗୁଣ୍ଡହେବେ କାୟା ।
ଏବେ ଉଠ କରେ ବହିଣ ଧନୁର୍ବାଣ
ଯେତେ ଯାଅ ଜିଣିରେ ମାରି ଭୀଷ୍ମ ଦ୍ରୋଣ ।
ଅଯତ୍ନରେ ସଂଶପ୍ତଗଣଙ୍କୁ ସଂହାରି
ଭୁଞ୍ଜ ଏବେ ସୁଖେ ହସ୍ତିନାରାଜ୍ୟଶିରୀ ।
ଭୀଷ୍ମ ଆଦି ଏ ତ ପୂର୍ବରୁ ହତ ପରି
ହୋଇଛନ୍ତି ନମିଲି ହୁଅ ଧନୁର୍ଦ୍ଧାରୀ ।
ସମସ୍ତ ଯୋଦ୍ଧାଙ୍କର ପୂର୍ବେ ନେଇ ପ୍ରାଣ
ନ ଜାଣିବା ଭୟ କି ଗୁଡ଼ ହେ ଆପଣ ।
ଅର୍ଜୁନ ଏହା ଶୁଣି ପୁନଃ ପୁନଃ କରି
ନମସ୍କାର କରି କହିଲେ ଭୟେ ଥରି ।
ତୁମ୍ଭ ମାହାତ୍ମ୍ୟ କୀର୍ତ୍ତନ କରିବାରେ
ଜଗତଯାକ ହୃଷ୍ଟ ହୋନ୍ତି ନିରନ୍ତରେ ।
ରାକ୍ଷସମାନେ ତାହା ଶୁଣି ଭୟ ପାଇ
ଦଶଦିଗେ ପଳାନ୍ତି ପଛକୁ ନ ଚାହିଁ ।
ସିଦ୍ଧମାନେ କରୁଅଛନ୍ତି ନମସ୍କାର
ମହିମାକୁ ତୁମ୍ଭର ନିତି ଚକ୍ରଧର ।
ହେ ଅନନ୍ତ ଦେବେଶ ବ୍ରହ୍ମାଙ୍କ ଜନକ
ତୁମ୍ଭଙ୍କୁ ନ ନମିବ ଅବା କେଉଁ ଲୋକ ।
ସତ ଅସତ ଅନନ୍ତ ବ୍ରହ୍ମଟି ତୁମ୍ଭେ
ଆଦିଦେବ ପୁରାଣ ପୁରୁଷ ତ ତୁମ୍ଭେ ।
ବିଶ୍ୱଯାକର ଲୟସ୍ଥାନ ଅଟ ତୁମ୍ଭେ
ବିଶ୍ୱଯାକ ଜାଣିବା ଲୋକ ଅଟ ତୁମ୍ଭେ ।
ଜାଣିବାର ଯେତେକ ଦ୍ରବ୍ୟ ଅଛି ରହି
ତୁମ୍ଭେ ବୋଲି କରି ତ ତାହାକୁ କି କହି ।
ବିଷ୍ଣୁପଦ ପଦ ଯାହାର ସେ କି ତୁମ୍ଭେ
ତୁମ୍ଭର କୀର୍ତ୍ତି ଜସ ବର୍ଣ୍ଣିବୁ କି ଆମ୍ଭେ ।

ବାୟୁ ଅଗ୍ନି ବରୁଣ ଚନ୍ଦ୍ର ଜନୁପତି
ପ୍ରପିତାମହ ବୋଲି ତୁମ୍ଭଙ୍କୁ କହନ୍ତି ।
ସହସ୍ରଥର ମୂର୍ଦ୍ଧି ତୁମ୍ଭର ପାଦକୁ
କରୁଅଛୁ ହେ କୃଷ୍ଣ ଅଭିବାଦନକୁ ।
ଆଗ ପଛ ଢଗେ ତୁମ୍ଭଙ୍କୁ ନମସ୍କାର
କରୁଅଛି ମୁଁ ଆହେ କେଶବ ଈଶ୍ୱର ।
ଆହେ ଅନନ୍ତବୀର୍ଯ୍ୟ ସର୍ବବ୍ୟାପୀ ହୋଇ
ରହିବାରୁ ତୁମ୍ଭଙ୍କୁ ସର୍ବ ବୋଲି କହି ।
ତୁମ୍ଭର ମହିମାରେ ମୋହିତ ମୁଁ ହୋଇ
ସଖା ବୋଲି ତୁମ୍ଭଙ୍କୁ ଯାହାଟି ବୋଲଇ ।
ଏଥିରୁ ଅପରାଧ ହୋଇ କଥା ମୋର
ନାହିଁ ଏହା କ୍ଷମା କରିବ ଚକ୍ରଧର ।
ବିହାର ଆହାର ଶୟନ ସମୟରେ
ପରିହାସ କରେ ଯେ ସମବୟସରେ ।
ଏ ଦୋଷ କ୍ଷମା କରି ଜଗଦୀଶ ଗୋବିନ୍ଦ
କରି କର ମୋ ହୃଦ-କୁମୁଦ ଆନନ୍ଦ ।
ଚରାଚର ଲୋକଙ୍କର ତୁମ୍ଭେ ଟି ଗୁରୁ
ତୁମ୍ଭଙ୍କ ବଳ କେ ଅଛି କ ବୋଲିପାରୁ ।
ଦେହକୁ ତଳେ ଏବେ ପକାଇ ଗୋବିନ୍ଦ
କରୁଅଛି କ୍ଷମା ମୁଁ ମୋ ଅପରାଧବୃନ୍ଦ ।
ପ୍ରିୟର ଅପ୍ରିୟକୁ ସହିବାର ପ୍ରାୟ
ସହ ମୋର ଅପାଧ ହେ ଭକତପ୍ରିୟ ।
ଏ ରୂପଟି ପୂର୍ବରେ ତୁମ୍ଭର ମୁଁ ଦେଖି-
ନାହିଁ ଏଣୁ ମୋର ହେଉଛି ଭୟ ଆଖି ।
ଏବେ ନିଜ ରୂପ-ସୂର୍ଯ୍ୟଙ୍କୁ ପୀତବାସ
ଦେଖାଇ କର ମନ କମଳ ଉଲ୍ଲାସ ।
କିରୀଟ ଗଦା ଚକ୍ର ବନ୍ଧ ଜନାର୍ଦ୍ଦନ
ମୋ ନୟନ ସଦନେ କର ଆସି ସ୍ଥାନ ।
ଶ୍ରୀକୃଷ୍ଣ ବୋଇଲେ ହେ ମୋର ଏ ରୂପକୁ
ତୁମ୍ଭବିନା ଦେଖାଇନାହିଁ ମୁଁ ଆନକୁ ।
ତେଜୋମୟ ଜଗଦାତ୍ମକ ଯେ ଅନନ୍ତ
ଏ ରୂପକୁ କହନ୍ତି ତୁମ୍ଭଙ୍କର ସୁତ ।
ଦାନ ଯଜ୍ଞ ତପ ବେଦରେ ଏ ରୂପକୁ
ନାହିଁଟି ଏ ମର୍ତ୍ତ୍ୟରେ ଲୋକ ଦେଖିବାକୁ ।
ଭୟ ଛାଡ଼ିଣ ଏବେ ପ୍ରୀତମନା ହୁଅ
ପୂର୍ବରୂପକୁ ମୋର ଦେଖ କୁନ୍ତୀପୁଅ ।

ଏରୂପେ ଅର୍ଜ୍ଜୁନ ଆଗରେ କୃଷ୍ଣ କହି
ରହିଲେ ଛିଡ଼ା ହୋଇ ପୂର୍ବ ରୂପ ବହି ।
ଅର୍ଜ୍ଜୁନ ତା ଦେଖି ବୋଇଲେ ପୀତବାସ
ଏବେ ଆସି କରି ମୁଁ ହୋଇଲି ସନ୍ତୋଷ ।
ତୁମ୍ଭର ସେହି ରୂପ ଦେଖି ମୋ ପ୍ରାଣଟି
ଛାଡ଼ିଯାଉଥିଲାଟି ହୃଦୟ ଫାଟୁଟି ।
ଶ୍ରୀକୃଷ୍ଣ ବୋଇଲେ ହେ ସେ ରୂପ ଅର୍ଜ୍ଜୁନ
ଦେଖିବାକୁ ଦେବେଟି କରୁଥାନ୍ତି ମନ ।
ଭକ୍ତିବିନା ଆନ ପ୍ରକାରେ ସେ ରୂପକୁ
ନ ଦେଖାଏ ମୁହିଁ ହେ କହୁଛି ତୁମ୍ଭଙ୍କୁ ।
ମୋହର ପାଇଁ କର୍ମ କରୁଥାଇ ଯେହି
ବଇରରୁ ନିବର୍ତ୍ତାଇଟି ହୋଇ ଦେହୀ ।
ତାହାକୁଟି ମୁହିଁ ହୋଇଣ ପରସନ୍ନ
ଅନ୍ତକାଳେ ନେଇ ଦିଅଇ ମୋର ସ୍ଥାନ ।
ବିଶ୍ୱରୂପ ଦର୍ଶନ ନାମ ଭଗବତ—
ଗୀତା ଏକାଦଶ ଅଧ୍ୟାୟ ସମାପତ ।
ଏହିଠାରେ ତ ବେଦବିତ ବେଦବ୍ୟାସ
କଲେ କହଇ କୃଷ୍ଣସିଂହ ନରଈଶ ।

———

## ଦ୍ୱାଦଶ ଅଧ୍ୟାୟ

ଏଥିଅନ୍ତେ ଅର୍ଜ୍ଜୁନ ପୁଚ୍ଛିଲେ କୃଷ୍ଣଙ୍କୁ
ଭକତ ଯୋଗୀଙ୍କରେ କେ ବଡ଼ ଆମ୍ଭଙ୍କୁ ।
କହିବା ହେଉ ଆହେ ରୁକ୍ମିଣୀବଲ୍ଲଭ
ଶୁଣିବାକୁ ଯେଣୁ ସେ କଥାଟି ଦୁର୍ଲ୍ଲଭ ।
କୃଷ୍ଣ ବୋଇଲେ ଆହେ ମୋତେ ଉପାସନା
ନିତ କରନ୍ତି ସେ ବଡ଼ ମହାମନା ।
ସର୍ବବ୍ୟାପୀ କୂଟସ୍ଥ ଅଚଳ ଅନିର୍ଦ୍ଦେଶ
ଅବ୍ୟକତ ଅକ୍ଷତ ବ୍ରହ୍ମ ନାରଈଶ ।
ଇନ୍ଦ୍ରିୟ ସଂଯତରେ ତାଙ୍କୁ ଯେ ଜାଣଇଁ
ସେ ମୋତେ ଲଭଇ ସନ୍ଦେହ ଏଥି ନାହିଁ ।
ଅବ୍ୟକ୍ତ ବ୍ରହ୍ମଙ୍କେ ଆସକ୍ତ ଯାର ଚିତ୍ତ
ବହୁତ କ୍ଳେଶରେ ତା ଦେହ ହୋଏ ମୃତ ।
ଅବ୍ୟକତଗତିକ ବହୁତ ଦୁଃଖରେ
ଦେହୀମାନେ ପାଇଟି ବସନ୍ତି ସୁଖରେ ।
ଯେଉଁମାନେ ମୋଠାରେ ସମର୍ପନ୍ତି କର୍ମ
ଏକାନ୍ତ ଭକ୍ତିରେ ହେ ପୁରୁଷଉତ୍ତମ ।

ତାହାକୁ ମୁଁ ପ୍ରାପତ ଅଟୁଳେ ହୁଅଇ
କହିବାକୁ ଏଥିରେ କଥା କିଛି ନାହିଁ ।
ଏହା ଜାଣି ଥାଇ ମୋଠାରେ ମନ ଦଅ
କହୁଛି ଛାଡ଼ିଦଅ ସଂଶୟ ହୃଦୟ ।
ଏ ରୂପେ ଯେବେ ତୁମ୍ଭେ କରିବ ମୋଠାରେ
ରହିବ ଜାଣ କହୁଅଛି ନିରନ୍ତରେ ।
ଯେବେ ମନ ମୋଠାରେ ନ ପାରିବ ରଖି
ତେବେ ମୋତେ ସ୍ମରଣ କର ହୋଇ ସୁଖୀ ।
ସ୍ମରଣ କରି ଯେବେ ନ ପାରିବ ତୁମ୍ଭେ
ତେବେ ମୋ ବ୍ରତ କର କହୁଅଛୁ ଆମ୍ଭେ ।
ମୋହ ନିମିତ୍ତ କର୍ମ କଲେ ଶୁଭ ବୁଦ୍ଧି
ହୋଇ ପାରିବର ପାଇବ ତୁମ୍ଭେ ସିଦ୍ଧି ।
କିଛି ମୋ କର୍ମ କରି ନ ପାରିବ ଯେବେ
ଶରଣ ପଶି କର୍ମଫଳ ଛାଡ଼ ତେବେ ।
ଅଭ୍ୟାସ ପ୍ରତିକ ଟି ଜ୍ଞାନ ଅଟେ ଶ୍ରେୟ
ଜ୍ଞାନକୁ ଧ୍ୟାନ ଆହେ ଅଧିକ ବିଜୟ ।
ଧ୍ୟାନ କଲା ପ୍ରତିକ କର୍ମଫଳ ତ୍ୟାଗ
ବଡ଼ ଅଟଇ ଟି ହେ ଜାଣ ମହାଭାଗ ।
କର୍ମଫଳକୁ ତ୍ୟାଗ ଯେ ଜନ କରଇ
ସଂସାର ଶାନ୍ତ ଜାଣ ତା'ର ଟି ହୁଅଇ ।
ଭକ୍ତି ଥିବା ଲୋକର ପ୍ରାଣୀଠାରେ ଦ୍ୱେଷ
କରିବାର ଅର୍ଜୁନ ନୁହଇ ପ୍ରକାଶ ।
ଅହଙ୍କାର ମମତା ଦୁଇ ଯେ-ଛାଡ଼ଇ
ସମ ଦୁଃଖ ସୁଖ ହୋଇଣ ସେ ରହଇ ।
ମିତ୍ରତା ବୁଦ୍ଧି ଟି କରଇ ସବୁଠାରେ
କୃପାହୃଦୟକୁ ବହଇ ନିରନ୍ତରେ ।
ଅଳପକରେ ହେଉଥାଏ ସେ ସନ୍ତୁଷ୍ଟ
ଏ ଲୋକେ ମୋଠାରୁ ନୁହନ୍ତି କେବେ ଭ୍ରଷ୍ଟ ।
ସାବଧାନ ହୋଇଣ ଯତଆତ୍ମା ହେବ
ମୋହ ବିଷୟରେ ଯେ ବୁଦ୍ଧି ଦେଇଥିବ ।
ଏ ବାହାରେ ହୋଇବ ଯେ ଦୃଢ଼ନିଶ୍ଚୟ
ଜାଣ ଅରଜୁନ ସେ ହୁଅଇ ମୋ ପ୍ରିୟ ।
ଯାହା ସକାଶରୁ ଟି ଲୋକେ ଉଦବେଗ
ନ ପାଏ ଲୋକ ଯେଣୁ ନୁହେ ଉଦବେଗ ।
ହରଷ ଅମରଷ ଉଦ୍‌ବେଗରହିତ
ଯେଉଁ ଲୋକ ଅଛି ସେ ମୋ ପ୍ରିୟ ଭକତ ।
ଅନପେକ୍ଷ ଶୁଚି ଦକ୍ଷ ଯେ ଉଦାସୀନ
ସର୍ବାରମ୍ଭପରିତ୍ୟାଗୀ ଟି ଯେଉଁ ଜନ ।
ମୋହର ସେହୁ ପ୍ରିୟ ଭକତ ଅଟଇ
ଜାଣିଥାଅ ଆହେ ଦ୍ରୌପଦୀ-ପ୍ରାଣସାଇଁ ।
ଆନନ୍ଦ ଶୁଭାଶୁଭ ଦ୍ୱେଷ ଛାଡ଼ିଥାଏ
ଆହେ ବାବୁ ଜାଣ ସେ ମୋ ପ୍ରିୟ ହୋଇଥାଏ
ଶତ୍ରୁ ମିତ୍ର ମାନ ଯେ ଅପମାନଙ୍କରେ
ସମାନ ହୋଇ ବର୍ତ୍ତିଥାଏ ନିରନ୍ତରେ ।
ଶୀତ ଉଷ୍ଣ ଦୁଃଖ ସୁଖକୁ ଟି ସହିବ
ସବୁଥିରୁ ଆସକତିକ ଛାଡ଼ିଥିବ ।
ନିନ୍ଦା ସ୍ତୁତି ଦୁଇ ସମାନ କରି ଯେଣ
ନୋହୁଥିବ କେବେ କଥାରେ ଅଭିମାନ ।
ଅଳପକେ ସନ୍ତୋଷ ହୋଇଣ ମଉନ—
ବ୍ରତ କରୁଥିବ ଅର୍ଜୁନ ଅବଚ୍ଛିନ୍ନ ।
ଏକାଠାରେ ରହୁ ନ ଥିବ କରି ଘର
ଏରୂପେ ଯେ ଅଛି ସେ ପ୍ରିୟ ଭକ୍ତ ମୋର ।
ଯେଉଁମାନେ ମୋର ଏ କଥାକୁ ଶୁଣନ୍ତି
ସେ ମୋର ପ୍ରିୟ ଜାଣ କୁନ୍ତିଭୋଜନାତି ।
ଭଗବତଗୀତାର ଭକ୍ତିଯୋଗ ନାମ
ଦ୍ୱାଦଶାଧ୍ୟାୟ ଶେଷ ମୁନିଙ୍କ ଉତ୍ତମ ।
ବ୍ୟାସ କଲେ ଏଠାରେ ବନ୍ଧ ଅତି ତୋଷ
କହଇ କୃଷ୍ଣସିଂହ ନରକୁଳହଂସ ।

—o—

## ତ୍ରୟୋଦଶ ଅଧ୍ୟାୟ

ଏଥୁଅନ୍ତେ କୃଷ୍ଣ ବୋଇଲେ ଅରଜୁନ
ଶରୀରର କ୍ଷେତ୍ର ଟି ହୋଇ ଅଭିଧାନ ।
ଶରୀରକୁ ତ ଯେଉଁ ଲୋକଟି ଜାଣଇ
କ୍ଷେତ୍ରଜ୍ଞ ବୋଲି କରି ତାହାକୁ ଟି କହି ।
ସବୁକ୍ଷେତ୍ରଯାକରେ ମୁହିଁ ପାର୍ଥଗତ
କ୍ଷେତ୍ରଜ୍ଞ ବୋଲି ମୋତେ ଜାଣ କୁନ୍ତୀସୁତ ।
କ୍ଷେତ୍ର କ୍ଷେତ୍ରଜ୍ଞ ଏ ଯହିଁରୁ ହୋଇଛନ୍ତି
ସଂକ୍ଷେପରେ କହିବା ଶୁଣ ଦେଇ ମତି ।
କରିଣିଶ୍ରେଷ୍ଠ ଋଷିଏ ବେଦ ସୂତ୍ର ପଦେ
କହିଛନ୍ତି ଏହାଟି ନାନାଜାତି ଛନ୍ଦେ ।
ମହାଭୂତ ଅହଂକାର ଯେ ଦଶେନ୍ଦ୍ରିୟ
ମନ ବୁଦ୍ଧି ଲଜ୍ଜା ଏ ପାଞ୍ଚୋଟି ବିଷୟ ।

ଦ୍ୱେଷ ସୁଖ ଦୁଃଖ ଚେତନା ଯେ ସଂଘାତ
ଧୃତି ମିଶ୍ର ଏମାନେ ବୋଲନ୍ତି କ୍ଷେତ୍ର ।
ଅହିଂସା କ୍ଷମା ଶୌଚ ସ୍ଥୈର୍ଯ୍ୟ ଅମାନତା
ଆତ୍ମବିନଗ୍ରହ ଆର୍ଜ୍ଜବ ଅଦମ୍ଭିତା ।
ଜନ୍ମ ମୃତ୍ୟୁ ଜରା ଯେ ବ୍ୟାଧି ଦୁଃଖ ଦୋଷ—
ମାନଙ୍କର ଦର୍ଶନ ବୈରାଗ୍ୟ ଅଶେଷ ।
ବିଜନଦେଶସେବା ଅନହଙ୍କାରସକ୍ତି
ପୁତ୍ରାଦିଙ୍କରେ ଅନଭିଷ୍ୱଙ୍ଗ ଭକ୍ତି ।
ଇଷ୍ଟ ଅନିଷ୍ଟ ପ୍ରାପତରେ ସମଚିତ୍ତ
ଷବ ଅଧ୍ୟାତମଜ୍ଞାନରେ ନିତ୍ୟତ୍ତ ।
ଜନଙ୍କ ସଭରେ ବିରତ ତତ୍ତ୍ୱଜ୍ଞାନ
ଅର୍ଥ ଦରଶନ ଆସ୍ୱର୍ଯ୍ୟ ଉପାସନ ।
ଏହାକୁଟି ଅର୍ଜ୍ଜୁନ ଜ୍ଞାନ ବୋଲି କହ
ଏ ବିପରୀତ ହେଲେ ଅଜ୍ଞାନ ବୋଲଇ ।
ଯାହା ଜାଣିଲେ ଲୋକ ଲଭନ୍ତି ମୁକତ
ତା ଏକଚିତ୍ତେ ଶୁଣ କୁନ୍ତୀଭୋଜନାତି ।
ଆଦି ନାହିଁ ବ୍ରହ୍ମ ଯେ ବୋଲନ୍ତି ଜଗତେ
ସେହି ମୁହିଁ ଜାଣ ଅର୍ଜ୍ଜୁନ ମହାମତେ ।
ସତ ଅସତରୁ ସେ ଅଟନ୍ତି ବାହାର
ଯୋଗୀ ଜନା ଗୋଚର ନୁହନ୍ତି ଆନର ।
ସବୁଆଡରେ ପାଦ ପାଣି ଆଖି ମୁଖ
ତାହାଙ୍କର ଅଛି ହେ ଜାଣ ନରଶିଖ ।
ସବୁ ଇନ୍ଦ୍ରିୟଙ୍କ ଗୁଣରେ ପ୍ରକାଶିତ
ଇନ୍ଦ୍ରିୟଙ୍କରେ ଅଟନ୍ତି ସେ ବିବର୍ଜିତ ।
କାହିଁରେ ସେହୁ ନ ଲାଗନ୍ତି ସବୁ ଧର
ଅଛନ୍ତି ଜାଣ ହେ ଗାଣ୍ଡୀବ ଧନୁର୍ଦ୍ଧର ।
ନିର୍ଗୁଣ ଗୁଣ ଭୋକ୍ତା ବୋଲି ଟି ତାହାଙ୍କୁ
ଅନ୍ତ ବ୍ୟାପି ପ୍ରାଣୀ ହୃଦ ବାହାରକୁ ।
ଚର ଅଚରରେ ସେ ନୁହନ୍ତି ଟି ଜଣା
ସୂକ୍ଷ୍ମ ହେବା ନ୍ୟାୟରୁ ଜଣ ମହାମନା ।
ଦୂରରେ ଥିଲେ ପାଖେ ଅଛନ୍ତି ଟି ସେହି
ପ୍ରାଣୀଙ୍କଠୁ ଅଭିନ୍ନ ତାହାଙ୍କୁ ଟି କହି
ଅବିଭକ୍ତ ବିଭକ୍ତ ତାହାଙ୍କୁ ବୋଲନ୍ତି ।
ସରଜନା ସଂହାର ସ୍ଥିତି ସେ କରନ୍ତି
ଚନ୍ଦ୍ରାଦିତ୍ୟଙ୍କର ଅଟନ୍ତି ପ୍ରକାଶକ
ଅଜ୍ଞାନରୁ ପର ସେ କର ହେ ବିବେକ ।
ଜ୍ଞାନଗମ୍ୟ ଜ୍ଞେୟ ଯେ ସେହିଟି ବୋଲନ୍ତି
ସବୁପ୍ରାଣୀ ହୃଦେ ସଞ୍ଚାର କରୁଥାନ୍ତି ।
କ୍ଷେତ୍ର ଜ୍ଞାନ ଜ୍ଞେୟ ମୋର ଭକତ ଯେହି
ଜାଣେ ସେ ମୋତେ ପାଏ ସନ୍ଦେହଟି ନାହିଁ ।
ଅନାଦି ତ ପ୍ରକୃତିପୁରୁଷ ଏ ଦୁଇ
ବିକାର ଗୁଣ ପ୍ରକୃତିରୁ ଜନମଇ ।
କାରଣ କାର୍ଯ୍ୟ କର୍ତ୍ତା ପ୍ରକୃତି ସାରେଣ.
ସୁଖ ଦୁଃଖ ଭୋଗର ହେତୁଟି ପୁରୁଷ ।
ପୁରୁଷଟି ତ ପ୍ରକୃତିରେ ରହିଥାଏ
ପ୍ରକୃତିରୁ ଜାତ ଗୁଣକୁ ସେହୁ ପାଏ ।
ଶୁଭାଶୁଭ କର୍ମର ସକାଶୁ ପୁରୁଷ
ଭଲ ମନ୍ଦ ଯୋନରେ ହେଉଛି ପ୍ରକାଶ ।
ଦେହେ ଯେଉଁ ପୁରୁଷ ରୂପଟି ରହିଛି
ପ୍ରକୃତିରୁ ଭିନ୍ନ ସେ ବିଭଉ କହୁଛି ।
ସେହିଟି ଆହେ ଅରଜୁନ ଭୋକ୍ତା ଭର୍ତ୍ତା
ଈଶ୍ୱର ପରମାତ୍ମା ଦ୍ରଷ୍ଟା ଅନୁମନ୍ତା ।
ଏ ରୂପରେ ପ୍ରକୃତି ପୁରୁଷକୁ ଯେହି
ଜାଣଇ ତାର ପାର୍ଥ ଜନମ ନୁହଇ ।
କେଉଁମାନେ ଧ୍ୟାନରେ ଆତ୍ମାକୁ ଜାଣନ୍ତି
କେଉଁମାନେ ସାଙ୍ଖ୍ୟଯୋଗରେଟି ଚାହାନ୍ତି ।
କେଉଁମାନେଟି କର୍ମଯୋଗରେ ଆତ୍ମାକୁ
ଚାହାନ୍ତି ଅର୍ଜ୍ଜୁନ ହେ କହୁଛି ତୁମ୍ଭଙ୍କୁ ।
ଏମାନଙ୍କଠାରୁ ନ ଜାଣିମା ଲୋକେ
ଶିଖିଲେ ଆତ୍ମଜ୍ଞାନ ନ ପଡ଼ନ୍ତି ଶୋକେ ।
ପ୍ରକୃତି ପୁରୁଷର ସଙ୍ଗ ମୁଁ ସ୍ଥାବର
ଜଙ୍ଗମମାନେ ହେଉଛନ୍ତି ମନେକର ।
ସବୁଠାରେ ସମାନ ହୋଇଣ ଅଛନ୍ତି
ଦେହ ଗଲେ କେବେ ତା ନୁହଇଟି କ୍ଷତ ।
ଏ ରୂପରେ ଅର୍ଜ୍ଜୁନ ଯେ ବ୍ରହ୍ମଙ୍କୁ ଜାଣେ
ତାହାକୁ ଜ୍ଞାନୀ ବୋଲି ବଚନ ବଖାଣେ ।
ସବୁଠାରେ ଈଶ୍ୱର ଅଛନ୍ତି ବୋଲି ଜାଣି
ଯେ ନାମରେ ଜଗତ ଯାଅଇ ସେ ଜିଣି ।
ପ୍ରକୃତିଟି ସବୁ କରମ କରୁଅଛି
ଆତ୍ମା ସ୍ଥିରେ ରହିଛି ବୋଲି ଯେ ଜାଣୁଛି ।
ସେହି ଲୋକମାନେଟି ବୋଲାଅନ୍ତି ଜ୍ଞାନୀ
ମଲେ ଯାଇ ହୁଅନ୍ତି ପାର୍ଥ ମୋର ସ୍ୱାମୀ ।

ପ୍ରାଣୀଙ୍କର ଭେଦ ରହିଛି ପ୍ରକୃତରେ
ପ୍ରକୃତିରୁ ଜଗତ ବଢେ ନିରନ୍ତରେ ।
ଏମନ୍ତ ଯେଉଁ କାଳେ ଜାଣଇଁଟି ନର
ବ୍ରହ୍ମସ୍ୱରୂପକୁ ଧରଇ ତା ଶରୀର ।
ଅନାଦି ନିର୍ଗୁଣ ହେବାରୁ ପରମାତ୍ମା
କର୍ମଫଳେ ନିର୍ଲିପ୍ତ ହୋଏ ହେ ମହାତ୍ମା ।
ସବୁ ଦେହେ ଥାଇ ଆକାଶ ପରି ହୋଇ
ଆତ୍ମା ଲିପ୍ତ ନୁହେ ଅର୍ଜୁନ କହୁଥାଇଁ ।
ସୂର୍ଯ୍ୟ ସବୁ ପଦାର୍ଥ ପ୍ରକାଶିଲା ପରି
ଆତ୍ମା ସେ ରୂପେ ଦେହ ପରକାଶ କରି ।
ପ୍ରକୃତିପୁରୁଷ ଅନ୍ତର ଯେ ଜାଣଇ
ପରମପଦ ତାକୁ ଅଲକ୍ଷ୍ୟେ ମିଳଇ ।
ଭଗବତଗୀତା କ୍ଷେତ୍ର କ୍ଷେତ୍ରଜ୍ଞ ଯୋଗ
ନାମ ତ୍ରୟୋଦଶ ଅଧ୍ୟାୟ ମହାଭାଗ ।
ବ୍ୟାସ ମହାଋଷି ସାରଳେ ଏଣୁଠାରେ
କହଇ କୃଷ୍ଣସିଂହ ନରେଶ ଗୀତରେ ।

---

## ଚତୁର୍ଦ୍ଦଶ ଅଧ୍ୟାୟ

ଏଥିଅନ୍ତେ କୃଷ୍ଣ ବୋଇଲେ ଆହେ ପାର୍ଥ
କହିବା ଜ୍ଞାନୋତ୍ତମ ହେଇବ କୃତାର୍ଥ ।
ଯେଉଁ ଜ୍ଞାନକୁ ଆଶ୍ରେ କରିଟି ଯୋଗୀଏ
ଜ୍ଞାନୀ ବୋଲି ମୁକ୍ତ ଲଭନ୍ତି ଧନ୍ୟ କାୟେ ।
ଏହି ଜ୍ଞାନ ଆଶ୍ରେ କରଇ ଯା'ର କାୟ
ନ ଥାଏ ଜନ୍ମ ମରଣକୁ ତା'ର ଭୟ ।
ପ୍ରକୃତିଟି ମୋହର ଗର୍ଭାଧାନ ସ୍ଥାନ
ତହିଁରେଟି ଗର୍ଭ ମୁଁ କରଇ ଅର୍ଜୁନ ।
ଗର୍ଭାଧାନରୁଟି ବ୍ରହ୍ମାଦି ଉତପତ୍ତି
ହେଉଛନ୍ତି ଜାଣ କଟସଶର୍ଯ୍ୟ ନାତି ।
ସକଳ ଯୋନିଜାତଙ୍କରଟି ପ୍ରକୃତି
ମାତା ମୁହିଁ ପିତା ଜଗତରେ ବିଖ୍ୟାତି ।
ସତ୍ତ୍ୱ ରଜ ତମଟି ପ୍ରକୃତିରୁ ହୋଇ
ଦେହରେ ଦେହୀଙ୍କି ଟି ବାନ୍ଧିଛନ୍ତି ଦୃଢ ।
ସେ ଗୁଣମାନଙ୍କଠେ ସତ୍ତ୍ୱ ଯେଉଁ ଗୁଣ
ଅନାମୟ ପ୍ରକାଶକ ତା ବୋଲି ଜାଣ ।
ସତ୍ତ୍ୱ ଗୁଣ ଜ୍ଞାନ ସୁଖରେ ଆସକତ
ଲୋକଙ୍କୁ କରାଉଛି ଶୁଣ ହେଇ ଚିତ୍ତ ।
ରାଗ ରୂପକ ରଜ ତୃଷ୍ଣା ସଙ୍ଗ ଦୁଇ
ଜାତ କରୁଅଛି ହେ ଜାଣ କହୁଥାଇଁ ।
ରଜୋଗୁଣ ଲୋକକୁ କର୍ମେ ଆସକତ
କରୁଅଛିଟି ହେ ଦ୍ରୁପଦ-ସୁତା-କାନ୍ତ ।
ଅଜ୍ଞାନରୁ ତ ଜାତ ହୋଇକରି ତମ
ମୋହ-ମେଘ କରାଏ ଦେହୀ ନେତ୍ରଧୂମ ।
ତମୋଗୁଣଟି ଯେନ ପ୍ରମାଦ ଆଳସ୍ୟ
ନିଦ୍ରା ଦେଉଅଛି ମଧ୍ୟରେ ପରକାଶ ।
ରଜ ତମ ଦୁଇଗୁଣକୁ ଊଣା କରି
ସତ୍ତ୍ୱଗୁଣ ବଢ଼େ ଗାଣ୍ଡୀବ ଧନୁର୍ଦ୍ଧାରି ।
ସେ ରୂପେ ରଜୋଗୁଣ ସତ୍ତ୍ୱ ତମ ଦୁଇ
ଊଣା କରି ଦେଇଟି ଆପଣେ ବଢ଼ଇ ।
ତମୋଗୁଣ ସତ୍ତ୍ୱ ରଜକୁ ଊଣା କରେ
ତାହାର ଅଧିକକୁ ଅଧିକେ ବିସ୍ତାରେ ।
ଦେହଦ୍ୱାରେ ଜ୍ଞାନ ପ୍ରକାଶ ଯେବେ ହୋଏଁ
ସତ୍ତ୍ୱଗୁଣ ବଢିଲା ବୋଲି ସାରସ୍ୱେ ।
ପ୍ରବୃତ୍ତି ଲୋଭ କର୍ମଆରମ୍ଭ ଅସମ
ରଜୋଗୁଣ ବଢିଲେ ହୋଏ ସାତ୍ତ୍ୱୋତ୍ତମ ।
ତମୋଗୁଣ ବଢିଲେ ଅଜ୍ଞାନ ଓ ମୋହ
ପ୍ରମାଦ ହୁଅଇ ହେ ହୋଇ ନିଃସନ୍ଦେହ ।
ସତ୍ତ୍ୱଗୁଣ ବଢିଥିବାର କାଳେ ମଲେ
ଉତ୍ତମ ଲୋକରେ ସେ ବସେ ଯାଇ ଭଲେ ।
ରଜୋଗୁଣ ବଢିବା କାଳେ ପରଲୋକ
ହେଲେ ପୁଣି ଆସି ହୁଅଇ ନରଲୋକ ।
ତମୋଗୁଣଟି ବଢିବାରେ ଯେ ମରଇ
ପଶୁ ଆଦି ଯୋନି ଗୋଟିକେ ଜନମଇଁ ।
ସାତ୍ତ୍ୱିକକର୍ମ କରଇ ଟି ଯେଉଁ ଲୋକ
ଇହ ପର ଦୁଇରେ ନୁହଇ ତା ଶୋକ ।
ରାଜସ କର୍ମ କଲେ ଦୁଃଖ ସାର ହୋଏ
ତାମସ କର୍ମ କଲେ ଅଜ୍ଞାନକୁ ପାଏ ।
ସତ୍ତ୍ୱଗୁଣରୁ ଜ୍ଞାନ ରଜୋଗୁଣୁଁ ଲୋଭ
ତମୋଗୁଣୁଁ ଅଜ୍ଞାନ ପ୍ରମାଦ ସୁଲଭ ।
ସତ୍ତ୍ୱଗୁଣ ଲୋକ ଯାଆନ୍ତି ଉପରକୁ
ରଜୋଗୁଣରେ ଲୋକେ ଯାଆନ୍ତି ମଧ୍ୟକୁ ।
ତମୋଗୁଣରେ ଲୋକେ ଯାଆନ୍ତି ନରକ
ଜାଣ ଆହେ ପାଣ୍ଡବ ସାରଙ୍ଗ ନାୟକ ।

ଜୀବ ଯେଉଁକାଳେ ଗୁଣରୁ ପର କରି
ଆତ୍ମାକୁ ଜାଣଇଟି ଲଭଇ ମୋ ପୁରୀ ।
ଦେହୀ ଦେହଗୁଣଙ୍କୁ ଅତିକ୍ରମ କଲେ
ଜନ୍ମ ମୃତ୍ୟୁ ଦୁଃଖ ମୁକତି ଲଭେ ଭଲେ ।
ଅରଜୁନ ବୋଇଲେ କ କଲେ ଅଚ୍ୟୁତ
ତ୍ରିଗୁଣ ଜିଣନ୍ତି ମାନବେ କହ ତ ।
କେଉଁପରି ଚଳନ୍ତି ଥିଲେ ଏ ତ୍ରିଗୁଣକୁ
ଅତିକ୍ରମି ଅଛୁ ଆଣିମା ତା ମନକୁ ।
ଏହା ତୁମ୍ଭଠାରୁ ଶୁଣିବାକୁ ମୋ ମନ
ହେଉଛି କର ପ୍ରକାଶ ହେ ଜନାର୍ଦ୍ଦନ ।
ଶ୍ରୀକୃଷ୍ଣ ବୋଇଲେ ହେ ପ୍ରକାଶ ପ୍ରବୃତ୍ତି
ମୋହ ଉପସ୍ଥିତ ହୋଇଲେ ଯେ ଗୁଡ଼ନ୍ତି ।
ଏମାନେ ନିବର୍ତ୍ତିଲେ ଲୋଡ଼ା ନ କରନ୍ତି
ସୁଖ ଦୁଃଖ ଗୁଣରେ ନ ଚଳଣ ମତି ।
ଉଦାସୀନ ହୋଇ ଥାଆନ୍ତି ଭୂମି ହୋଇ
ବିଷୟ ପ୍ରବୃତ୍ତିରେ ଇନ୍ଦ୍ରିୟ ସ୍ଥିର ହୋଇ ।
ଏରୂପେ ଯେଉଁ ଲୋକ ଅଛି ଅରଜୁନ
ନିର୍ଲୋଭ ହୋଇ ଗୁଣାତୀତଟି ସେ ଜାଣ ।
ମୋତେ ଯେତି ଏକାନ୍ତ ଭକ୍ତିଯୋଗେ ସେବେ
ତ୍ରିଗୁଣ ତାହାକୁ ନ ବାଧନ୍ତି ଲବେ ।
ବ୍ରହ୍ମସ୍ୱରୂପକୁ ବନ୍ଦିବା ଯୋଗ୍ୟ ସେହି
ହୁଅଇ ହେ ବାବୁ ବତାଇ କହୁଥାଇଁ ।
ବ୍ରହ୍ମମୋକ୍ଷ ଧରମ ସୁଖର ପ୍ରତିମା
ମୁହିଁ ବୋଲି ଜାଣ ହେ ସାଉଶିଖସୀମା ।
ଭଗବତଗୀତାର ପ୍ରକୃତି ପୁରୁଷ—
ଭେଦ ନାମ ଚଉଦ ଅଧ୍ୟାୟକୁ ଶେଷ ।
ଏଣ୍ଡଠାରେ ଟି ବେଦବ୍ୟାସ କଲେ ତୋଷେ
କୃଷ୍ଣସିଂହ ନରେଶ ଗୀତରସେ ଭାଷେ ।

—o—

## ପଞ୍ଚଦଶ ଅଧ୍ୟାୟ

ଏଥୁଅନ୍ତେ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ସ୍ନେହିଁ
ବୋଇଲେ ଶୁଣ ହେ କଥାଏ କହୁଥାଇଁ ।
ଏ ସଂସାର ଅଶ୍ୱତ୍ଥ ବୃକ୍ଷ ବିଷ୍ଣୁ ମୂଳ
ବ୍ରହ୍ମା ଆଦି ଡାଳ ଯେ ବେଦମାନ ଦଳ ।
ଏହା ଯେଉଁ ଲୋକ ଜାଣଇ ଅରଜୁନ
ଜାଣଇ ସେହୁ ବେଦଅର୍ଥର ବିଧାନ ।
ବିଷୟରେ ପଲ୍ଲବିତ ସେ ବୃକ୍ଷ ହୋଇ
ତଳ ଉପରକୁ ଗୁଣରେ ଅଛି ପାଇ ।
ସବୁଆଡ଼ରେ ମୂଳମାନ ବ୍ୟାପିଅଛି
କର୍ମ ଅନୁବନ୍ଧେ ଯେ ଜନମ ହୋଇଛି ।
ସେ ଭବବୃକ୍ଷରଟି ମଧ୍ୟ ଅନ୍ତ ଜାତ
ସ୍ଥିତି କେ ନ ଜାଣନ୍ତି ପାଣ୍ଡୁଙ୍କର ସୁତ ।
ଅସଙ୍ଗ-ଶାସ୍ତ୍ରରେ ସେ ବୃକ୍ଷକୁ କାଟିବ
ତା ମୂଳେ ବ୍ରହ୍ମପଦ ବସିଣ ଖୋଜିବ ।
ଯେଉଁ ପଦ ପାଇଲେ ନ ନିବର୍ତ୍ତେ କେହି
ଏ ସଂସାରକର୍ତ୍ତା ଅଟନ୍ତି ଜାଣ ସେହି ।
ମାନ ମୋହ କାମ ସଙ୍ଗ ଦୋଷକୁ ତେଜ
ଆତ୍ମଜ୍ଞାନେ ରହନ୍ତି ଯେଉଁମାନେ ମଜ୍ଜି ।
ସୁଖ ଦୁଃଖ ଦୁଇ କଥାରୁ ମୁକ୍ତ ହୋଇ
ସେହିଟି ସେ ପଦକୁ ପାଆନ୍ତିଟି ଯାଇ ।
ସୂର୍ଯ୍ୟ ଚନ୍ଦ୍ର ଅଗ୍ନିରେ ନୋହେ ଯେ ପ୍ରକାଶ
ସେ ମୋ ଧାମ ବୋଲି ଜାଣ ହେ ପାରଷଣ ।
ମୋର ଧାମକୁ ଯିବା ଲୋକ ଏ ମର୍ତ୍ତ୍ୟରେ
ଜନମ ହୁଏ ବୋଲି ନ କର ମନରେ ।
ମୋ ଅଂଶ ଜୀବ ମନ ତୁଲେ ଇନ୍ଦ୍ରିୟଙ୍କୁ
ଘେନଯାଏ ବନ୍ଧୁଛି ଅର୍ଜୁନ ତୁମ୍ଭଙ୍କୁ ।
ଜୀବ ଯେତେବେଳରେ ଦେହରୁଟି ଯାଏ
ଇନ୍ଦ୍ରିୟଙ୍କୁ ସଙ୍ଗତରେ ସେ ଘେନଥାଏ ।
ଫୁଲବାସ ପବନ ଘେନଗଲା ପରି
ଜୀବ ନଏ ଇନ୍ଦ୍ରିୟ ଗାଣ୍ଡୀବ-ଧନୁର୍ଦ୍ଧାରି ।
ଆନ ଦେହରେ ଜୀବ ରହି ସେ ଇନ୍ଦ୍ରିୟ—
ମାନଙ୍କୁ ଆଶ୍ରେ କରି ଭୁଞ୍ଜଇ ବିଷୟ ।
ଦେହ ଛାଡ଼ି ଆନ ଦେହକୁ ଗଲାବେଳେ
ଜୀବକୁ ଯୋଗୀଏ ଦେଖନ୍ତି ଯୋଗବଳେ ।
ଯତ୍ନର ବିନା ଜ୍ଞାନୀ ଜୀବ ଯିବା କଥା
ଦେଖି ନ ପାରଇ ଅର୍ଜୁନ ମହାରଥୀ ।
ସୁକୃତଆତ୍ମା ଲୋକେ ଯତ୍ନରେ ମାନସ
କଲେ ହେଲେ ତା ଦେଖି ନ ପାରଇ ଦୃଶ୍ୟ
ସୂର୍ଯ୍ୟ ଚନ୍ଦ୍ର ଅଗ୍ନିରେ ଯେତେ ତେଜ ଅଛି
ମୋ ତେଜ ବୋଲିକରି ଜାଣ କୁନ୍ତୀବତ୍ସ ।
ପୃଥିବୀ ଭିତରେ ମୁଁ ଥାଇ ସବୁ ପ୍ରାଣୀ—
ମାନଙ୍କୁ ଧରିଅଛି ଜାଣ ସାରମଣି ।

ମୁହିଁ ଔଷଧୀଶରୂପରେ ଔଷଧର
ପୁଷ୍ଟ ବଢ଼ାଉଛୁ ହେ ବୀର ନିରନ୍ତର ।
ଜଠରାଗ୍ନି ରୂପରେ ଚତୁର୍ବିଧ ଅନ୍ନ
କରୁଅଛୁ ଧନଞ୍ଜୟ ଟି ମୁହିଁ ଜୀର୍ଣ୍ଣ ।
ସବୁରି ହୃଦୟରେ ରହିଅଛୁ ମୁହିଁ
ମୋହଠାରୁ ଜ୍ଞାନ ସ୍ମୃତି ଉପୁଜଇ ।
ବେଦମାନଙ୍କରେ ତ ଅଟଇ ମୁଁ ଜ୍ଞେୟ
କରିଅଛୁ ମୁହିଁ ବେଦାନ୍ତ ନିର୍ଣ୍ଣୟ ।
କ୍ଷର ଅକ୍ଷର ଏହି ଲୋକରେ ଦୁଇଟି
ପ୍ରବର୍ତ୍ତି ଅଛୁ ଜାଣ ପାଣ୍ଡବ କିରୀଟି ।
ସକଳ ଦେହମାନେ ବୋଲନ୍ତି ଟି କ୍ଷର
ପୁରୁଷ ଟି ଅର୍ଜ୍ଜୁନ ଅଟଇ ଅକ୍ଷର ।
ଦେହ ଜୀବରୁ ଆନ ଯେଉଁ ପୁରୁଷଟି
ସେହି ଜାଣ ଅର୍ଜ୍ଜୁନ ପରମ ଆତ୍ମା ଟି ।
ସେ ପରମ ଆତ୍ମା ପ୍ରବେଶ ତିନିଲୋକେ
ହୋଇ ବିଶ୍ୱଯାକୁ ପାଳନ୍ତି ଅଧିକେ ।
ଅକ୍ଷରକୁ ସବୁପ୍ରକାରେ ବଡ଼ ହୋଇ
କ୍ଷରକୁ ଅତିକ୍ରମ କରୁଅଛୁ ମୁହିଁ ।
ଏହି ସକାଶରୁ ଟି ଲୋକରେ ବେଦରେ
ପୁରୁଷ-ଉତ୍ତମ ବୋଲନ୍ତି ନିରନ୍ତରେ ।
ଯେଉଁ ଲୋକ ମୋତେ ପୁରୁଷୋତ୍ତମ ବୋଲି
ଜାଣଇ ଭଜଇ ଟି ମୋତେ ସେ ନ ଭୁଲି ।
ଏ ଗୁପତ ଶାସ୍ତ୍ରକୁ ଅର୍ଜ୍ଜୁନ ତୁମ୍ଭଙ୍କୁ
କହିଲି ଟି ତୁମ୍ଭେ ମୋ ସଖା ହୋଇବାକୁ ।
ଏହା ଯେଉଁ ନର ଜାଣଇଁ ହୋଏ ଜ୍ଞାନୀ
ଆଉ ଥରେ ଜନମ ନୁହଇ ଅବନୀ ।
ଭଗବତଗୀତା ପୁରୁଷୋତ୍ତମ ଯୋଗ
ନାମ ପଞ୍ଚଦଶ ଅଧ୍ୟାୟ ମହାଭାଗ ।
ବେଦବ୍ୟାସ ଗୋସାଇଁ ବର୍ଣ୍ଣି କଲେ ଶେଷ
କହଇ କୃଷ୍ଣସିଂହ ନରକୁଳ ଈଶ ।

—o—

## ଷୋଡ଼ଶ ଅଧ୍ୟାୟ

ଏଥୁଅନ୍ତେ କୃଷ୍ଣ ବୋଇଲେ ଅରଜୁନ
ଦଇବୀ ସମ୍ପତ୍ତିରେ ଜନ୍ମ ଯେଉଁ ଜନ ।
ତାହାର ଜ୍ଞାନଯୋଗ ବ୍ୟବସ୍ଥିତ ଦାନ
ଶୌଚ ସତ୍ତ୍ୱଶୁଦ୍ଧି ଅଦ୍ରୋହ ଅପୈଶୁନ ।
ଦମ ଯଜ୍ଞ ସତ୍ୟ ଯେ ଅହିଂସା ଆର୍ଜ୍ଜବ
ଅକ୍ରୋଧ ଶାନ୍ତ ଦୟା ତପ ମାର୍ଦ୍ଦବ ।
ତେଜ କ୍ଷମା ଯେ ଅଲୋଲୁପତ୍ୱ ଅଭୟ
ଅଚପଳ ଅନଭିମାନ ଯେ ସ୍ୱାଧ୍ୟାୟ ।
ଏମାନେଟି ଜାତ ହୋଇଣ ଅରଜୁନ
କରୁଥାନ୍ତି ମୋହର ନାଶରୁ ବିଧାନ ।
ଦମ୍ଭ ଦର୍ପ କ୍ରୋଧ ପାରୁଷ୍ୟ ଅଭିମାନ
ଅଜ୍ଞାନ ଆସୁରୀରେ ଜନମେ ଯେ ଜାଣ ।
ଦଇବୀସମ୍ପତ୍ତିରେ ଲୋକ ମୋକ୍ଷ ପାଏ
ଆସୁରୀ ସମ୍ପତ୍ତିରେ ସଂସାରରେ ଥାଏ ।
ଦୈବୀସମ୍ପତ୍ତିରେ ହୋଇଛ ତୁମ୍ଭେ ଜାତ
ଏ ବେନି କହୁଥାଇଁ ନୁହ ଶୋକଗତ ।
ଆସୁରୀଗୁଣ ଏବେ ବିସ୍ତାରି ତୁମ୍ଭଙ୍କୁ
କହିବା ଶୁଣ ପାର୍ଥ ଦେଇଣ ମନକୁ ।
ଆସୁର ଜନ ଯେତେ ଧର୍ମରେ ପ୍ରବର୍ତ୍ତି
ଅଧର୍ମରୁ ନିବୃତ୍ତି ଦୁଇ ନ ଜାଣନ୍ତି ।
ଆସୁରଙ୍କଠାରେ ଆଚାର ଶୌଚ ସତ୍ୟ
କଦାଚତେ ନାହିଁ ଜାଣ ହେ ପାଣ୍ଡୁସୁତ ।
ଅସତ୍ୟ ଅପ୍ରତିଷ୍ଠ ଅନୀଶ୍ୱର ବୋଲି
ଜଗତକୁ ଆସୁରମାନେ ଥାନ୍ତି ଭାଳି ।
ସ୍ତ୍ରୀ ପୁରୁଷଙ୍କର ସଙ୍ଗମରୁ ଜାତ
ହେଉଅଛୁ ବୋଲନ୍ତି ଜାଣ ଏ ଜଗତ ।
ମଦନ ହୋଇ ଯେବେ କଥାଏ ନ ଥାନ୍ତା
କାହିଁକି ପୁଅ ଝିଅ ଜନମ ହୁଅନ୍ତା ।
ଏହି ବୁଦ୍ଧି ଟି ଆଶ୍ରେ କରି ଲୋକମାନେ
ଜଗତ କ୍ଷୟ ପାଇଁ ଜନ୍ମନ୍ତି ଅବନିଲେ ।
କାମକୁ ଆଶ୍ରେ କରି ଦମ୍ଭ ମାନ ମଦ
ଅଶୁଚି ବ୍ରତାଦ୍ଧ କରନ୍ତି ବହି ମୋଦ ।
ସମ୍ପତ୍ତି ପାଇବାକୁ କ୍ଷୁଦ୍ରମନ୍ତଙ୍କରେ
ଆଶ୍ରମରେ ସେବା କରନ୍ତି ନିରନ୍ତରେ ।
ମରିବା ପର୍ଯ୍ୟନ୍ତେ କାମ ଉପଭୋଗ
ଭାବନା କରୁଥାନ୍ତି ବହୁଣ ସଭୋଗ ।
କାମ ଭୋଗ ତରିବାପାଇଁ ଧନଶ୍ରେଣୀ
ଅନ୍ୟାୟରେ ଅର୍ଜ୍ଜି ଆଣୁଥାନ୍ତି ପୁଣି ।
କାମୀ ଲୋକେ ଧନ ପାଇଲେ ପ୍ରତିଦିନ
ବୋଲନ୍ତି ମନୋରଥ ହେବ ପରିପୂର୍ଣ୍ଣ ।

ଈଶ୍ବର ଭୋଗୀ ସିଦ୍ଧ ଆଢ୍ୟ ସୁଖୀ ବୋଲି
ଆସୁରଜନ୍ମ ଲୋକେ କହୁଥାନ୍ତି ଭୁଲି ।
ମୋହ ସମାନ ଜାତି ସମ୍ପତ୍ତି ମଧ୍ୟରେ
କାହାର ନାହିଁ ବୋଲି ଭାବନ୍ତି ମନରେ ।
ଅଜ୍ଞାନରେ ହୋଇଣ ଅତି ଆସକତ
ଯାଗ କରିବାକୁ କହୁଥାନ୍ତି ମତ ।
ଦେବାକୁ ପ୍ରତିପଦନ କହୁଥାନ୍ତି ମନ
ଦେଇ ନ ପାରନ୍ତି ଜାଣ ହେ ଅରଜୁନ ।
ଏହିରୂପେ ଆସୁରଲୋକେ ଭାବନାରେ
ସାରି ଦିନ ଯାଇ ରହନ୍ତି ଯାତନାରେ ।
ଆତ୍ମସମ୍ଭାବିତ ଅନମ୍ର ଧନମାନୀ
ଲୋକଟି ଅଭିମାନ ହୃଦୟରେ ଘେନି ।
ଯାଜ୍ଞିକ ସୋମଯାଜୀ ବୋଲାଇବ ବୋଲି
ଅବିଧିରେ କପଟ ଯାଗ କରେ ଭାଳି ।
ଅହଙ୍କାର ଦର୍ପବଳ ଯେ କାମ କ୍ରୋଧ
କଥାରେ ଅହର୍ନିଶ କରି ଲୋକ ସଧ ।
ଆପଣା ପର ଦେହେ ମୋତେ ଦ୍ୱେଷ କରି
ଯାଗ କରନ୍ତି ହେ ଅର୍ଜୁନ ନ ବିଚାରି ।
ଏରୂପେ ନରାଧମମାନଙ୍କୁ ଆସୁରୀ—
ଯୋନିରେ ଜାତ କରେ ମୁଁ ଥରକୁ ଥର ।
ଆସୁର ଯୋନି ସକାଶରୁ ମୂଢ଼ ହୋଇ
ନ ପାଇ ମୋତେ ନରକେ ସେ ଯାନ୍ତି ଧାଇଁ
ଯେବେ ଜନ୍ମ ହୋନ୍ତି ମଧ୍ୟରେ ହୋଇ କୀଟ
କାଷ୍ଠ ପାଷାଣକୁ ସେବାନ୍ତି ଘଟ ରଟ ।
କାମ କ୍ରୋଧ ଲୋଭ ନରକର ଦୁଆର
ଜାଣିମା ଲୋକମାନେ କରନ୍ତି ଅନ୍ତର ।
କାମ କ୍ରୋଧ ଲୋଭରୁ ମୁକ୍ତ ଯେ ହୁଅଇ
ମୋତେ ଭଜଇ ମୁକତିକି ସେ ଲଭଇ ।
ଯେଉଁ ଲୋକ ବେଦବର୍ଜିତ କର୍ମ ଛାଡ଼ି
ସ୍ୱଇଚ୍ଛାରେ ପ୍ରବର୍ତ୍ତି ନରକରେ ପଡ଼ି ।
କାର୍ଯ୍ୟ ଅକାର୍ଯ୍ୟରେ କଥାରେ ଧର୍ମଶାସ୍ତ୍ର
ପ୍ରମାଣ ବୋଲି ଜାଣ ଆହେ କୁନ୍ତୀସୁତ ।
ଏଥି ସକାଶରୁଟି ଶାସ୍ତ୍ରବିଧି କର୍ମ
ଜାଣିକରି ଆଚର ଆପଣା ସ୍ୱଧର୍ମ ।
ଭଗବତଗୀତାର ଦଇବ ଆସୁର
ସମ୍ପଦ ବିବେକ ନାମରେ ଋଷିବର ।
ବ୍ୟାସ ଷୋଡ଼ଶାଧ୍ୟାୟ ସମ୍ପୂର୍ଣ୍ଣ ଶେଷ କଲେ
ଭଣେ କୃଷ୍ଣସିଂହ ନରେଶ ଭାବ ଭଲେ ।

—o—

## ସପ୍ତଦଶ ଅଧ୍ୟାୟ

ଏଥିଅନ୍ତେ ଅର୍ଜୁନ ବୋଇଲେ କୃଷ୍ଣଙ୍କୁ
କହିବା ହେଉ ହେ ମାଧବ ଏ କଥାକୁ ।
ଶାସ୍ତ୍ରବିଧି ଛାଡ଼ି ଯେ ପୂଜାକୁ କରଇ
ସତ୍ତ୍ୱ ରଜ ତମ ଗୁଣୀ ସେ ଅଟଇ ।
ଶ୍ରୀକୃଷ୍ଣ ବୋଇଲେ ହେ ଶ୍ରଦ୍ଧା ପ୍ରାଣୀଙ୍କର
ସତ୍ତ୍ୱ ରଜ ତମରୁ ହୋଏ ତ୍ରି ପ୍ରକାର ।
ସବୁଙ୍କର ସତ୍ତ୍ୱକୁ ଅନୁରୂପ ହୋଇ
ଶ୍ରଦ୍ଧା ହେଉଅଛି ହେ ପାର୍ଥ କହୁଥାଇଁ ।
ଶ୍ରଦ୍ଧାମୟ ପୁରୁଷ ଅଟଇ ଟି ଜାଣ
ଯାହାର ଯେ ଶ୍ରଦ୍ଧା କରଇ ଆଚରଣ ।
ସାତ୍ତ୍ୱିକ ଶ୍ରଦ୍ଧାରେ ଯେ ହୁଅଇ ଯୁକତ
ଦେବତା ପୂଜାରେ ବଳଇ ତାର ଚିତ୍ତ ।
ରାଜସ ଶ୍ରଦ୍ଧାକଲା ଲୋକେ ଯକ୍ଷ ରକ୍ଷ
ପୂଜାକୁ କରନ୍ତି ଟି କରି ଅତି ମୁଖ୍ୟ ।
ତାମସ ଶ୍ରଦ୍ଧାରେ ଯେ ଯୁକ୍ତ ହୋଇଥାଏ
ପ୍ରେତ ଭୂତମାନଙ୍କୁ ପୂଜେ ଅତିଶୟେ ।
ଦମ୍ଭ ଅହଙ୍କାରେ ଯୁକତ ହୋଇ ଯେହୁ
ଶାସ୍ତ୍ରରେ ନ ଥିବ ତପସ୍ୟା କରୁଥାଇ ।
କାମ ରାଗ ବଳରେ ହୋଇ ସମନ୍ୱିତ
ନ ଖାଇ କରେ କୃଶ ପଞ୍ଚ ମହାଭୂତ ।
ମୁଁ ତାହା ଦେଖି କରି ହେଉଥାଏ ଦୁଃଖୀ
ଅସୁର କରି ପାର୍ଥ ତାହାକୁ ଟି ଲେଖି ।
ଆହାର ଯାଗ ତପ ଦାନ ତ୍ରି ପ୍ରକାର
ହୁଅଇ ଯେଉରୂପେ କହିବା ଶୁଣ ସାର ।
ଆୟୁ ସତ୍ତ୍ୱ ବଳ ଆରୋଗ୍ୟ ସୁଖ ପ୍ରୀତି
ଏମାନଙ୍କୁ ସାତ୍ତ୍ୱିକ ଆହାରେ ବଢ଼ାନ୍ତି ।
ସେ ଆହାରେ ସ୍ୱାଦୁ ସ୍ନିଗ୍ଧ ମନୋହର
ଏମାନଙ୍କୁ ସାତ୍ତ୍ୱିକ ନାମ ଟି ତାହାର ।
ଅତ୍ୟନ୍ତ ପିତା ଉଷ୍ଣ ରାଗ ଅମ୍ଳ ରୁକ୍ଷ
ଲୁଣୀ ଆଦି ରାଜସ ଲୋକଙ୍କର ଭକ୍ଷ ।
ଯାତଯାମ ଗତରସ ଯେ ପର୍ଯ୍ୟୁଷିତ
ଉଚ୍ଛିଷ୍ଟାଦି ଭୋଜନ ତାମସ ପ୍ରୀତ ।

ଫଳକୁ ଆକାଙ୍‌କ୍ଷା ନ କରି ବିଧି ମାନ
ଯେ ଯାଗ କରେ ହୋଏ ସେ ସାତ୍ତ୍ୱିକଯ୍ଜ୍ଞ ।
ଫଳକୁ ଉଦ୍ଦେଶି ଖ୍ୟାତିରେ ଯେଉଁ ଯାଗ
କରି ରାଜସ ସେ ବୋଲାଏ ମହାଭାଗ ।
ବିଧି ମନ୍ତ୍ର ଦକ୍ଷିଣା ଅନ୍ନଦାନ ମଖ
ତାମସ ବୋଲାଏ ହେ ବୀରଙ୍କର ଶିଖ ।
ଦେବ ବ୍ରାହ୍ମଣ ଗୁରୁ ପୂଜା ଆର୍ଜବ
ଶୌଚ ବ୍ରହ୍ମଚର୍ଯ୍ୟ ଯେ ହିଂସାର ଅଭାବ ।
ଯାହାରଟି ହୁଅଇ ତାହାର ଶରୀର
ତପ ବୋଲାଏଟି ହେ ଜାଣ ବୀରବର ।
ଅନୁଦ୍ୱେଗ ସତ୍ୟପ୍ରିୟ ଯେ ହିତବଚ
ବେଦାଭ୍ୟାସ ବାଙ୍‌ମୟ ତପରେଟି ଉଚ ।
ପ୍ରସାଦ ସଉମ୍ୟତାଭାବ ଶୁଦ୍ଧ ମୌନ
ଆତ୍ମବିନଗ୍ରହ ମାନସ ତପ ଜାଣ ।
ଫଳାକାଂକ୍ଷୀ ନୋହିଣ କାୟିକ ବାଚିକ
ମାନସ ତପ କଲେ ସାତ୍ତ୍ୱିକ ସେ ଲୋକ ।
ସତ୍କାରମାନ ପୂଜା ଲଭିବାର ପାଇଁ
ତପ କଲେ ରାଜସତପ ସେ ବୋଲାଇ ।
ମୂର୍ଖପଣରେ ଦେହ ପୀଡ଼ା ଦେଇ ପର—
ଉତ୍ସାଦନରେ ଯେ କରଇ ତପ ଘୋର ।
ତାହାକୁଟି ତାମସ ତପ ବୋଲି କହି
ଆହେ ଅରଜୁନ ଜାଣ ମୁଁ କହୁଥାଇଁ ।
ଅନୁପକାରୀ ଲୋକମାନଙ୍କୁ ଯେ ଦାନ
ଦେଉଛୁ ସାତ୍ତ୍ୱିକ ବୋଲଣ ତାହା ଘେନ ।
ଦେଶକାଳ ଜାଣି ଯେ ପାତ୍ରେ ଦାନ ଦିଏ
ସେହି ମଧ୍ୟ ଅର୍ଜୁନ ସାତ୍ତ୍ୱିକ ବୋଲାଏ ।
ପ୍ରତ୍ୟୁପକାର ଆଶେ ବା ଫଳ ଉଦ୍ଦେଶ୍ୟ
ଯେ ଦାନ ଦେଉଛୁ ରାଜସ ତାକୁ ଘୋଷେ ।
ଅଦେଶରେ ଅକାଳରେ ଅପାତ୍ରରେ ଦାନ
ଦେଲେ ତାମସଟି ତାହାର ଅଭିଧାନ ।
ପ୍ରଣବ ତତ ସତ ଏ ତିନ ବ୍ରହ୍ମ ନାମ
ଏ ତିନଙ୍କି ଘେନ ହୁଅଇ ସର୍ବ କର୍ମ ।
ପ୍ରଣବ ଉଚ୍ଚାରଣ ବ୍ରହ୍ମବାଦୀ ଜନ
ଯାଗାଦି କ୍ରିୟାମାନ କରନ୍ତି ସର୍ବଦା ।
ମୋକ୍ଷାକାଂକ୍ଷୀମାନେ ଫଳକୁ ଅନୁଦ୍ଦେଶି
ତତ ଶବ୍ଦ ବୋଲି କରନ୍ତି ତପ ବସି ।
ଅସ୍ତିର ସାଧୁଭାବେ ପ୍ରଶସ୍ତ କର୍ମରେ
ସତ ଶବ୍ଦ କହନ୍ତି ବୁଧେ ନିରନ୍ତରେ ।
ଯଜ୍ଞ ତପ ଦାନରେ ନିଷ୍ଠା ହୋଇବାକୁ
ସତ ବୋଲି ଅର୍ଜୁନ କହନ୍ତି ତାହାକୁ ।
ଭଗବତ କରମ କରିବା କଥାଟି
ସତ ଶବଦରେ ଗଣନା ସେ କରନ୍ତି ।
ଏହି ସକାଶରୁ ପ୍ରଣବ ତତ ସତ
କର୍ମ ଶୁଦ୍ଧି ପାଇଁ ବୋଲିବ ପାଣ୍ଡୁସୁତ ।
ଅଶ୍ରଦ୍ଧାରେଟି ହୋମ ଦାନ ତପ ଯେତେ
କଲେ ଅସତ ସେ ବୋଲାଏ ମହାମତେ ।
ଭଗବତ ଗୀତା ଶ୍ରଦ୍ଧାବିଭାଗ ଯୋଗ
ନାମ ସପ୍ତଦଶ ଅଧ୍ୟାୟ ମହାଭାଗ ।
ବ୍ୟାସ ପରାଶର-ତନୟ ଏହିଠାରେ
ସାରିଲେ କୃଷ୍ଣସିଂହ ନୃପତି ଗୀତରେ ।
କହେ କୃଷ୍ଣ ପାଦ କମଳ ବେନି ଧ୍ୟାୟି
ଏ ସଂସାରବନ୍ଧରୁ ତରିବାର ପାଇଁ ।



## ଅଷ୍ଟାଦଶ ଅଧ୍ୟାୟ

ଏଥିଅନ୍ତେ ଅର୍ଜୁନ ବୋଇଲେ କୃଷ୍ଣଙ୍କୁ
ସନ୍ନ୍ୟାସ ତ୍ୟାଗ ତତ୍ତ୍ୱ କହ ତ ଆମ୍ଭଙ୍କୁ ।
ଶ୍ରୀକୃଷ୍ଣ ବୋଇଲେ ହେ କାମ୍ୟ କର୍ମ ନ୍ୟାସ
ପଣ୍ଡିତେ କହନ୍ତି ବୋଲାଏ ସନ୍ନ୍ୟାସ ।
ସବୁ କର୍ମମାନଙ୍କର ଯେ ଫଳତ୍ୟାଗ
ତ୍ୟାଗ ବୋଲି ତାହାକୁ ଜାଣ ମହାଭାଗ ।
ମନୀଷୀମାନେ କହନ୍ତି ଦୋଷବନ୍ତ
କର୍ମ ଛାଡ଼ିଥିବ ନ ହେଇ ଭକ୍ତି ରତ ।
ଯଜ୍ଞ ଦାନ ଯେ ତପ ପ୍ରାଣୀଙ୍କର ତ୍ୟାଜ୍ୟ
ନୁହଇ କହନ୍ତି ପଣ୍ଡିତ ସମାଜ ।
ତ୍ୟାଗର ନିଶ୍ଚୟକୁ କହିବ ହେ ମୁହିଁ
ଶୁଣ ମୋହଠାରୁ ହେ ପାର୍ଥ ମନ ଦେଇ ।
ସାତ୍ତ୍ୱିକ ରାଜସ ତାମସ ତ୍ରିପ୍ରକାର
ତ୍ୟାଗ ହୁଅଇ ତୁମ୍ଭେ ଜାଣ ଆହେ ବୀର ।
ଯଜ୍ଞ ଦାନ ତପ ଯେ ନିଷ୍ଠାବନ୍ତେ ଜନ୍ତ
ପାବନେ ଇଚ୍ଛା କରି ବୁଧେ କରୁଥାନ୍ତି ।
ଫଳ ଆସକତି ଦୁହିଙ୍କି ଛାଡ଼ିଦେଇ
କର୍ମ କରୁଥିବ ମୋ ମତ ଏ ଅଟଇ ।

ମୋହର ନିତ୍ୟକର୍ମ ଛାଡ଼ଇ ଯେ ନର
ତାମସ ବୋଲାଏ ସେ ପାର୍ଥ ମନେକର ।
ଏହା ଜାଣିଣ ନିତ୍ୟକର୍ମ ତ୍ୟାଗ କଲେ
ମହାବ୍ୟଥା ଭୋଗୁଥିବ ନରକେ ପଡ଼ିଲେ ।
କର୍ମ ଦୁଃଖ ବୋଲି ଯେ କାୟକ୍ଳେଶ ଭୟେ
ଛାଡ଼ଇ ରାଜସ ତ୍ୟାଗୀ ସେ ବୋଲାଏ ।
ଆସକ୍ତ ଫଳ ଛାଡ଼ି ଯେ କରେ କର୍ମ
ତାହାରଟି ହୁଅଇ ସାତ୍ତ୍ୱିକ ସେ କର୍ମ ।
ସତ୍ତ୍ୱବନ୍ତ ଯେ ଦୁଃଖକର କରମକୁ
କରୁଥାଏଟି ସୁଖ କରିଣ ମନକୁ ।
ସୁଖକର କର୍ମରେ ନୁହେ କିଛି ପ୍ରୀତ
ଯେଏଟି ତାକୁ ତ୍ୟାଗୀ ବୋଲି ପାଣ୍ଡୁସୁତ ।
ଦେହୀଲୋକ କର୍ମ ତ ଛାଡ଼ି ନ ପାରଇ
ଯେ କର୍ମ କରେ ଫଳ ଛାଡ଼ି ତ୍ୟାଗୀ ସେହି ।
ଯେଉଁମାନେ କର୍ମଫଳକୁ ନ ଛାଡ଼ନ୍ତି
ଅନିଷ୍ଟ ଇଷ୍ଟ ମିଶ୍ରଫଳକୁ ପାଆନ୍ତି ।
କର୍ମଫଳ-ତ୍ୟାଗୀ ସନ୍ନ୍ୟାସୀମାନଙ୍କର
ଫଳ ନୁହଇ ଆହେ ମନେକର ବୀର ।
ବେଦାନ୍ତ ସାଂଖ୍ୟେ କର୍ମସିଦ୍ଧି ହେବାପାଇଁ
କାରଣ ପାଞ୍ଚ କଥିତ ତା କହିବଇଁ ।
ଅଧିଷ୍ଠାନ କର୍ତ୍ତା ତ ଦଇବ କରଣ
ଚେଷ୍ଟା ମିଶିଣ ପାଞ୍ଚ କାରଣ ଏ ଜାଣ ।
କାୟ ବାଚ ମନରେ ଧର୍ମାଧର୍ମ କର୍ମ
କରିବା କଥାରେ ସେ ପାଞ୍ଚେ ପାର୍ଥ ମର୍ମ ।
ମୁଁ କରୁଛି କରମ ବୋଲି ଯେ ବୋଲଇ
ତାହାଠାରୁ ଅଜ୍ଞାନୀ ହୋଇ ଲୋକ ନାହିଁ ।
ଆତ୍ମ ଅଭିମାନ ଇଷ୍ଟ ଅନିଷ୍ଟ କଥା
କରମ ଆସକ୍ତ ମଣୁଥାଏ ବ୍ୟଥା ।
ସେହି ଲୋକ ଲୋକଙ୍କୁ କରେ ଯେବେ ନାଶ
ନ ଲାଗଇ ତେବେ ଅର୍ଜୁନ ତାକୁ ଦୋଷ ।
ଜ୍ଞାନ ଜ୍ଞେୟ ଜ୍ଞାତା ତିନି ଏ କରମର
ପ୍ରବର୍ତ୍ତକ ଅଟନ୍ତି ମନେ କର ବୀର ।
କରଣ କର୍ମ କର୍ତ୍ତା ତିନିହେଁ ଆଶ୍ରୟ
କର୍ମରଟି ବୋଲନ୍ତି ପାର୍ଥ ଛାଡ଼ି ମୋହ ।
ଜ୍ଞାନ କର୍ମ କର୍ତ୍ତା ଯେ ସାତ୍ତ୍ୱିକ ରାଜସ
ତାମସ ହୁଅନ୍ତି ହେ ଶୁଣ ବୀରେଶ ।

ଯେଉଁ ଜ୍ଞାନରେ ସବୁ ପ୍ରାଣୀ ଆତ୍ମା ଏକ
ଜାଣନ୍ତି ସେ ଜ୍ଞାନଟି ବୋଲାଏ ସାତ୍ତ୍ୱିକ ।
ଯେଉଁ ଜ୍ଞାନରେ ନାନା ଆତମା ଜାଣନା
ହୋଏ ରାଜସ ସେ ବୋଲାଏ ମହାମନା ।
ଏକ ମୂର୍ତ୍ତି ବା ଦେହେ ଯା ଈଶ୍ୱର ମତ
ତାମସ ଜ୍ଞାନୀ ବୋଲି ତାହାଙ୍କୁ କରନ୍ତି ।
ଫଳ ଇଚ୍ଛା ନ କରି କରି ଯେଉଁ କର୍ମ
ସାତ୍ତ୍ୱିକଟି ବୋଲାଏ ପାର୍ଥ ତା'ର ନାମ ।
ଫଳକୁ ଇଚ୍ଛା କରି ସାହଙ୍କାର ହୋଇ
ଯେଉଁ କର୍ମ କରି ସେ ରାଜସ ବୋଲାଇ ।
ଅନୁବନ୍ଧ କ୍ଷୟ ପୌରୁଷ ଅହିଂସାକୁ
ଅପେକ୍ଷା ନ କରି ଯେ କରେ କରମକୁ ।
ତା କର୍ମକୁ ଅର୍ଜୁନ ବୋଲିଟି ତାମସ
ଇଚ୍ଛାରେ ସନ୍ଦେହ ନ କର ଗୁଡ଼ାକେଶ ।
କରମ ଆସକ୍ତ ଅହଂକାର ଛାଡ଼ି
ଧୃତି ଉତ୍ସାହକୁ ଧରିଣ ହରଷଡ଼ି ।
ସିଦ୍ଧ ଅସିଦ୍ଧରେ ହୋଏ ଯେ ନିର୍ବିକାର
ସାତ୍ତ୍ୱିକ ସେ ବୋଲି ଅର୍ଜୁନ ମନେକର ।
କରମ ଫଳ ଇଚ୍ଛା କରିବା କରତା
ରାଜସ ବୋଲାଏ ହେ ଜାଣ ଧନୁର୍ବେତ୍ତା ।
ଶଠ ଅସମାହିତ ଅଳସ ପ୍ରାକୃତ
ବିଷାଦୀ ଦୀର୍ଘସୂତ୍ରୀ ସ୍ତବ୍ଧ ଅଯୁକ୍ତ ।
ଏ କର୍ତ୍ତାକୁ ତାମସ ସମସ୍ତେ ବୋଲନ୍ତି
ଜାଣ ମୋ କଥାରୁ ହେ ମହାବୀର୍ଯ୍ୟନାଥ ।
ବୁଦ୍ଧି ଧୃତିଙ୍କର ତିନି ପ୍ରକାର ଭେଦ
କହିବା ଶୁଣ ପାର୍ଥ ହୃଦେ ବହି ମୋଦ ।
କାର୍ଯ୍ୟ ଅକାର୍ଯ୍ୟ ଅଭୟ ଭୟ ବିଧି
ବନ୍ଧ ମୋକ୍ଷ ପ୍ରବୃତ୍ତି ନିବୃତ୍ତି ଯେ ବୁଦ୍ଧି ।
ଜାଣଇ ସେ ବୁଦ୍ଧିଟି ବୋଲାଏ ସାତ୍ତ୍ୱିକ
ମୋ କହିବାରୁ ଜାଣ କରିଣ ବିବେକ ।
ଧରମ ଅଧରମ କାର୍ଯ୍ୟ ଅକାର୍ଯ୍ୟ
ଯେ ସନ୍ଦେହ କରେ ସେ ରାଜସ ବୀରରାଜ ।
ଅଧର୍ମକୁ ଧର୍ମ କରି ଯେ ମନେକରେ
ଲେଖାଟି ସେ ବୁଦ୍ଧି ତାମସ ଗଣନାରେ ।
ମନପ୍ରାଣ ଇନ୍ଦ୍ରିୟ କ୍ରିୟା ଯେଉଁ ଧୃତି
ଧରିଥାଏ ସାତ୍ତ୍ୱିକ ତାହାକୁ ବୋଲନ୍ତି ।

ଧର୍ମ କାମ ଅର୍ଥକୁ ଫଳାକାଙ୍କ୍ଷୀ ହୋଇ
ଯେ ଧୃତି କରଇ ରାଜସ ସେ ଅଟଇ ।
ସ୍ୱପ୍ନ ଭୟ ବିଷାଦ ଶୋକେ ଯେବେ ଧୃତି
ନ ଛାଡ଼ନ୍ତି ତେବେ ତାକୁ ତାମସ କହନ୍ତି ।
ଏବେ ତିନି ପ୍ରକାର ସୁଖକୁ ହେ ବାବୁ
କହିବା ଏକଚିତ୍ତେ ଶୁଣ ତାହା ସବୁ ।
ଯେଉଁ ସୁଖଟି ଅଭ୍ୟାସରେ ପ୍ରବର୍ତ୍ତଇ
ଦୁଃଖ ଆଦ୍ୟକାଳେ ଅନ୍ତରୁ ସୁଖ ପାଇ ।
ଏ ସୁଖ ସାତ୍ତ୍ୱିକ ଗାଣ୍ଡୀବ ଧନୁର୍ଦ୍ଧାର
ଆଗେ ପଛେ ହୁଏ ବିଷାମୃତ ପର ।
ଯେ ଶାସ୍ତ୍ର ଲଙ୍ଘି ଇନ୍ଦ୍ରିୟ ସଙ୍ଗେ ପ୍ରବର୍ତ୍ତଇ
ଆଗ ସୁଖ ଲଭନ୍ତି ପଛେ ଦୁଃଖ ପାଇ ।
ତାହାର ସୁଖକୁଟି ରାଜସ ଅର୍ଜ୍ଜୁନ
ଭାବନା କରି କହନ୍ତି ତପୋଧନ ।
ନିଦ୍ରାଳସ୍ୟ ପ୍ରମାଦୁଁ ଯେଉଁ ସୁଖ ହୁଏ
ଆଦ୍ୟ ପ୍ରାନ୍ତ ଦୁଇରେ ମୋହକୁ ବଢ଼ାଏ ।
ତାମସଟି ତାହାକୁ ବୋଲନ୍ତି ଜଗତେ
ମୋ କହିବାରୁ ହୃଦେ ଧର ମହାମତେ ।
ତିନିଗୁଣେ ରହିତ ପ୍ରାଣୀ ତିନିଲୋକ—
ଯାକରେ ନାହିଁ କର ଅର୍ଜ୍ଜୁନ ବିବେକ ।
ଦ୍ୱିଜ କ୍ଷତ୍ରି ବୈଶ୍ୟ ଯେ ଶୂଦ୍ର ନିମିତ୍ତରେ
କର୍ମ ଭାଗ କରିଛି ଧାତା ନିରନ୍ତରେ ।
ଶମ ଦମ ତପ ଯେ ଶୌଚ କ୍ଷମା ଜ୍ଞାନ
ଆସ୍ତିକ୍ୟ ଆର୍ଜବ ସହିତେ ବିଜ୍ଞାନ ।
ବ୍ରାହ୍ମଣର ସ୍ୱାଭାବିକ ଏ କର୍ମ ଅଟେ
ଏହା କଲେ ଜାଣ ସେ ନ ପଡ଼େ ସଙ୍କଟେ ।
ଶୌର୍ଯ୍ୟ ତେଜ ଦାକ୍ଷ୍ୟ ଯୁଦ୍ଧେ ଅପଳାୟନ
ଧୈର୍ଯ୍ୟ ଦାନ ଦମନ କ୍ଷତ୍ର କର୍ମ ଜାଣ ।
କୃଷି ଗୋପାଳନ ବଣିଜ ବୈଶ୍ୟ କର୍ମ
ଜାଣ ଆହେ ବୀରମାନଙ୍କର ଉତ୍ତମ ।
ତିନିବର୍ଣ୍ଣର ସେବା ଶୂଦ୍ରର ସ୍ୱଭାବ
କର୍ମ ବୋଲି ଜାଣ ହେ ଧାନୁକୀ ଗାଣ୍ଡୀବ ।
ଆପଣା ଆପଣାର କର୍ମେ ଯେଉଁ ଲୋକ
ରତ ହୋଏ ଜାଣ ସେହୁ ଜ୍ଞାନୀ ବିବେକ ।
ସ୍ୱକର୍ମେ ରତ ହେଲେ ଯେଉଁରୂପେ ସିଦ୍ଧି
ଲଭଇ ଲୋକ ତାହା ଶୁଣ ଦେଇ ବୁଦ୍ଧି ।

ଯାହାଙ୍କ ସକାଶୁଁ ପ୍ରବର୍ତ୍ତିଛନ୍ତି ପ୍ରାଣୀ
ସର୍ବବ୍ୟାପୀ ବୋଲି ତାହାଙ୍କୁ କହେ ବାଣୀ ।
ତାହାଙ୍କୁ ଯେଉଁ ଲୋକ ସ୍ୱକର୍ମେ ପୂଜଇ
ଅଳକ୍ଷ୍ୟରେ ମହାସିଦ୍ଧିକି ସେ ଲଭଇ ।
ପରଧର୍ମ ପ୍ରତିକ ସ୍ୱଧର୍ମ ଅର୍ଜ୍ଜୁନ
ଅଧିକରେ ଶ୍ରେଷ୍ଠ ଅଟଇ ମନେ ଘେନ ।
ଆପଣା ସ୍ୱଭାବରେ କର୍ମ ଯେ କରଇ
କିଲ୍‌ବିଷକଥା ତା'ର କେହିଟି ନୁହଇ ।
ସ୍ୱାଭାବିକ କରମ ହୋଇଲେ ସଦୋଷ
ନ ଛାଡ଼ିବ କେବେହେଁ ତାକୁ ଗୁଡ଼ାକେଶ ।
ଧୂମରେ ଅଗ୍ନି ପରି କର୍ମମାନ ଦୋଷ
ଆବୃତ କରିଛନ୍ତି ଜାଣ ବୀରଈଶ ।
ଅସକତ ନୋହିଣ ଫଳ ଯେ ଛାଡ଼ଇ
ସିଦ୍ଧି ପାଏ ଅର୍ଜ୍ଜୁନ ଜାଣ କହୁଥାଇଁ ।
ନିଷ୍କାମ ସିଦ୍ଧି ପାଇଁ ଯେରୂପେ ବ୍ରହ୍ମକୁ
ପାଏ ସଂକ୍ଷେପରେ ତା କହିବା ତୁମ୍ଭଙ୍କୁ ।
ଧ୍ୟାନ ଯୋଗପର ବିଶୁଦ୍ଧ ବୁଦ୍ଧିଯୁକ୍ତ
ଶୁଦ୍ଧଦେଶସ୍ଥାୟୀ ଯେ ବୈରାଗ୍ୟ ଆଶ୍ରିତ ।
ଶବ୍ଦ ଆଦି ବିଷୟ ରାଗ ଦ୍ୱେଷ ତ୍ୟାଗୀ
ଅଲ୍ପଭୋଗୀ କାମ କ୍ରୋଧରେ ଯେ ବିରାଗୀ ।
ସେହି ଲୋକ ବ୍ରହ୍ମଙ୍କୁ ଜାଣିଟି ପାରଇ
ଏଥେଁ କହିବାକୁ ସନ୍ଦେହ କିଛି ନାହିଁ ।
ବ୍ରହ୍ମଙ୍କୁ ଯେ ଜାଣେ ନାହିଁ ତା ସୁଖ ଦୁଃଖ
ମୋହ ଭକ୍ତିରେ କେବେ ନୋହେ ସେ ବିମୁଖ
ଭକତିରେ ମୋତେ ଜାଣିଲେ ମୋର କତି
ଲଭଇ ଲୋକ ଆହେ ପାଣ୍ଡୁଙ୍କ ସନ୍ତତି ।
ସବୁ କର୍ମ କରି ମୋ ପାଦକୁ ଆଶ୍ରୟ
କଲେ ମୋକ୍ଷ ତାହାର ହୁଅଇ ଉଦୟ ।
ସବୁ କର୍ମ ମୋଠାରେ ସମର୍ପି ଅର୍ଜ୍ଜୁନ
ମୋ ଠାରେ ଚିତ୍ତ ଦେଇକରି ହରି ଭଜ ।
ମୋ ଠାରେ ଚିତ୍ତ ଦେଲେ ମୋର ପ୍ରସାଦରୁ
କ୍ଳେଶରେ ଜାଣ ତୁମ୍ଭେ ନୋହିବଟି ଘାରୁ ।
ଅହଙ୍କାରେ ଯେବେ ମୋ କଥା ନ ଶୁଣିବ
ତେବେ ପୁରୁଷାର୍ଥରୁ ପାର୍ଥ ଭ୍ରଷ୍ଟ ହେବ ।
ଅହଙ୍କାର ଆଶ୍ରେ କରି ଯା ଯୁଝିବାକୁ
ନାହିଁ କଲି ଅବଶ୍ୟ ଭଜିବ ମିଥ୍ୟାକୁ ।

ପ୍ରକୃତିର ବଳରେ ହୋଇଣ ଆବଦ୍ଧ
ଜାଣୁଛି ଧନୁ ଧରି କରିବ ହେ ଯୁଦ୍ଧ ।
ଆପଣାର କର୍ମେ ହୋଇଛ ବଦ୍ଧ ତୁମ୍ଭେ
ନ ଯୁଝିବ ନା ତୁମେ ବୋଲୁଛ ଆମ୍ଭେ
ସବୁ ହୃଦୟରେ ତ ଅଛନ୍ତି ଈଶ୍ୱର
ଭ୍ରମାଉଛନ୍ତି ଯନ୍ତ୍ରାରୂଢ଼ ପରି ନର ।
ସବୁ ଛାଡ଼ି ଈଶ୍ୱରଠାରେ ଅରଜୁନ
ଶରଣ ପଶ ହେ ପାଇବ ଭଲ ସ୍ଥାନ ।
ତୁମ୍ଭକୁ ତ ସବୁ ମୁଁ କହିଲି ବତାଇ
ଯେ ଇଚ୍ଛା ହେଉଅଛି କର ତାହା ଯାଇ ।
ସବୁ ଗୁପ୍ତ କଥାରେ ଗୁପ୍ତ ଯେଉଁ କଥା
ତା କହିବା ଶୁଣ ହେ ପାର୍ଥ ମହାରଥୀ ।
ତୁମ୍ଭେ ତ ସବୁବେଳେ ଅଟ ମୋର ପ୍ରିୟ
ଏ ଯେଣୁ କହୁଛି ମୁଁ ହୋଇଣ ସଦୟ ।
ମୋଠାରେ ମନ ଦିଅ ମୋତେ ପୂଜା କର
ମୋ ଭକତ ହୋଇଣ କର ନମସ୍କାର ।
ଏମନ୍ତ ହେଲେ ମୋତେ ପାଇବ ହେ ପାର୍ଥ
ନ କରିବ ଶଙ୍କା ତ ବେଦଶାସ୍ତ୍ର ଅର୍ଥ ।
ସବୁ ଧର୍ମ ଛାଡ଼ିଣ ମୋ ପଦେ ଶରଣ
ପଶ ସବୁ ପାପରୁ ତାରିବି ଅର୍ଜୁନ ।
ଶୋକ କରିବାର ତ ଅଟଇଟି ବୃଥା
ଆଉ ତୁମ୍ଭେ ଆଗେ ନ ବାଢ଼ କଥା ପୋଥା
ସ୍ୱଧର୍ମ ବିବର୍ଜିତ ଭକ୍ତିଶୂନ୍ୟ ଯେହୁ
ତାହାକୁ ଏହି ଶାସ୍ତ୍ର ଶୁଣାଇବ ନାହିଁ ।
ଗୁରୁଙ୍କର ସେବା ନ କରେ ଯେଉଁ ଜନ
ଏ ଶାସ୍ତ୍ର ଶୁଣିବାକୁ ଅଯୋଗ୍ୟ ସେ ଜାଣ ।
ମୋହଠାରେ ମନୁଷ୍ୟ ବୁଦ୍ଧି ଯା'ର ଥିବ
ତାହାକୁ ଏ ଶାସ୍ତ୍ରର ଅର୍ଥକୁ ନ ଦେବ ।
ଯେ ଲୋକ ମୋ ଭକ୍ତମାନଙ୍କୁ ଏହି ଶିକ୍ଷା
ଦେବ ତାହାକୁଟି କରିବି ମୁହିଁ ରକ୍ଷା ।
ମୋ ଗୀତା ଯେ ଅବଧି ମୁଖେ ଦେବ ଗାଇ
ଜଗତେ ଅତି ମୋର ପ୍ରିୟ ସେ ହୋଇବ ।
ତୁମ୍ଭ ଆମ୍ଭ ସମ୍ବାଦ ନିତି ଯେ ପଢ଼ିବ
ଜ୍ଞାନଯଜ୍ଞରେଟି ମୋତେ ସେହୁ ପୂଜିବ ।
ଗୀତା ଅର୍ଥ ନ ଜାଣି ପଢ଼ିଲେଟି ଲୋକ
ତେବେ ତାହାର ମୁଁ ନାଶଇ ଜାଣ ଶୋକ ।

ପଢ଼ୁଥିଲେ ଶ୍ରଦ୍ଧାଯୁକ୍ତରେ ଅସୂୟା
ଛାଡ଼ି ଯେ ଶୁଣେ ତାକୁ ନ ଲାଗେ ମୋ ମାୟା
ମୋ କହିବା ଗୀତା ଏକାଗ୍ର ମନେ ଶୁଣି
ଅଜ୍ଞାନ ନାଶିଲା କି କହ ଧାରମଣି ।
ଅରଜୁନ ବୋଇଲେ କୃଷ୍ଣ ବଚନରେ
ମୋହ ନ ରହିଲା ହେ କୃଷ୍ଣ ମୋ ମନରେ
ଆତ୍ମା ଅନୁସନ୍ଧାନ ପାଇଲି ତ ମୁହିଁ
ଆଜ ଯାହା ବୋଲିବ ତାହା କରିବଇଁ ।
ଏରୂପେ କୃଷ୍ଣ ଅରଜୁନଙ୍କ ସମ୍ବାଦ
ଶୁଣିଛି ଜ୍ଞାନ ଯେଣୁ ଅଛି ମୋର ହୃଦ ।
ବ୍ୟାସଙ୍କର ପ୍ରସାଦେ ଆହେ ନୃପବର
ସବୁ କଥା ମୋ ହୃଦେ ହୃଥଲ ପ୍ରବେଶ ।
କୃଷ୍ଣ ଅରଜୁନ ସମ୍ବାଦ ମୋ ମନରେ
ପଡ଼ିଲେ ରୋମାଞ୍ଚ ହୁଏ କଳେବରେ ।
କୃଷ୍ଣଙ୍କର ବିଶ୍ୱରୂପ ତ ମୁଁ ଦେଖିଛି
ଏବେ ମଧ୍ୟ ଆଖି ମୋ ବୁଜ ହେଉଅଛି ।
ଯେଉଁଠାରେ କୃଷ୍ଣ ଅର୍ଜୁନ ଛନ୍ତି ରହି
ବିଜୟଲକ୍ଷ୍ମୀ ସେଠା ଛାଡ଼ି କି ପାରଇ ।
ଭଗବତ ଗୀତା ଛତିଶପୁ ନାମ
ଅଷ୍ଟାଦଶ ଅଧ୍ୟାୟ ମୁନିଙ୍କ ଉତ୍ତମ ।
ବେଦବ୍ୟାସ ଯେ ସତ୍ୟବତୀଙ୍କର ଶିଷ୍ୟ
ମହାସଙ୍କୋଚରେ ବର୍ଣ୍ଣିଣ କଲେ ଶେଷ ।
ଆହେ ନବଜଳଦ ତମାଳବରନ
ପୀତବାସ ଯେ ଶିଖିପୁଚ୍ଛକମଣ୍ଡନ ।
ମୁରଲୀବଦନ ଗୋବୁଜଜନାକାର
ଦୁଃଖୀମାନଙ୍କର କି ଚରଣ ଈଶ୍ୱର ।
ଅର୍ଜୁନ ଜ୍ଞାନଦାତା ପ୍ରଦ୍ୟୁମନ ପିତା
ମୋ ହୃଦପଦ୍ମେ ବଢ଼ାଇ ଧାବେଜତା ।
ପଦ୍ମନାଭ ତୁମ୍ଭର ପାଦପଦ୍ମ ରସେ
ରହାଅ କୃଷ୍ଣସିଂହ ମନ-ଭୃଙ୍ଗ ତୋଷେ ।

—୦—

## ଯୁଦ୍ଧାରମ୍ଭ

ଏଥୁଅନ୍ତେ ବିଜୟ ହୋଇଲେ ସଜନ
ଅରଜୁନ କରେ ଧରନ୍ତେ ଶରାସନ ।
ସୋମକ ସୃଞ୍ଜୟ ପାଣ୍ଡବମାନେ ରଡ଼ି
କରନ୍ତେ ଗିରଶୃଙ୍ଗେ ପଡ଼ିଲେଟି ଝଡ଼ି ।

ସାଗର ମଧ୍ୟୁ ଜାତ ଯେଉଁ ଶଙ୍ଖମାନ
ଫୁଙ୍କିଲେ ତାହା ବୀରେ ଦେଇଣ ବଦନ ।
ମୃଦଙ୍ଗ ଭେରୀ ଗୋବିଷାଣଙ୍କ ଶବଦେ
କୁରୁ ସଇନଜନେ ରହିଲେ ସ୍ତବଧେ ।
ଦେବ ଯକ୍ଷ ଗନ୍ଧର୍ବ ସ୍ମରଣ ସିଦ୍ଧ ଋଷି
ଇନ୍ଦ୍ରାଦି ଦେବତାଙ୍କ ସଙ୍ଗତରେ ମିଶି ।
ଯୁଦ୍ଧଭୂମି ଆକାଶ ମଣ୍ଡଳେ ରହିଲେ
କୁରୁ ପାଣ୍ଡୁ ଦୁଇସେନାରେ ଦୃଷ୍ଟି ଦେଲେ ।
ଦୁଇପକ୍ଷ ଶୂରେ ସାଗର ସମ ଦେଖି
ଯୁଧିଷ୍ଠିର ରାଜା ତ ଆୟୁଧ ଉପେକ୍ଷି ।
ନିଜ ରଥବରରୁ ଓହ୍ଲାଇ ପଡ଼ିଲେ
ଭୀଷ୍ମଙ୍କୁ ବନ୍ଦି କର ଦୁଇକ ଯୋଡ଼ିଲେ ।
ପୂର୍ବେ ମୁଖ କରି ପାଣ୍ଡବ ବଣ୍ଟଧାରୀ
ଶତ୍ରୁସେନା ମଧ୍ୟେ ପଶିଲେ ନ ବିସ୍ମରି ।
ଯୁଧିଷ୍ଠିରଙ୍କର ଯିବାର ଅରଜୁନ
ଦେଖି ରଥବରରୁ ଓହ୍ଲାଇ ବହନ ।
ବାକି ଦେଖୁଇଙ୍କ ସଙ୍ଗତେ ବେନଲେ
ଯୁଧିଷ୍ଠିରଙ୍କର ପଛରେ ତ ଗମିଲେ ।
ନୃପତିଗଣ ବେନ ଦେବକୀ ନନ୍ଦନ
ଅରଜୁନ ପୃଷ୍ଠକୁ କଲେ ସେ ମଣ୍ଡନ ।
ପାର୍ଥ ବୋଇଲେ ହେ ପାଣ୍ଡବ କୁଳଶ୍ରେଷ୍ଠ
ସ୍ୱଳ କର୍ମା ଶତ୍ରୁ ସୈନ୍ୟକୁ ଯିବା ହୋଏ ।
ଭୀମ ବୋଇଲେ ହେ କବଚ ଆୟୁଧକୁ
ପକାଇ ଶତ୍ରୁ ସୈନ୍ୟ ମଧ୍ୟକୁ ଯିବାକୁ ।
କେଉଁ କଥା ଆମ୍ଭର ହୋଇଛୁ କି ଲୋଡ଼ା
କହ ତା ରାଜନ ହିଁକଏ ହୋଇ ଛାଡ଼ା ।
ନକୁଳ ବୋଇଲେ ହେ କେଉଁ କଥା ନୃପ
ଯାଅ କହ ହରି ଆମ୍ଭଙ୍କୁ ଅଧିକ୍ଷେପ ।
ସହଦେବ ବୋଇଲେ ଯୁଦ୍ଧକାଳେ ଏହା
କେ କରିଛୁ କେଉଁଠାରେ କୁହ କହ ତାହା ।
ଏ ରୂପେ ଭାଇଏ ପଛରୁ ପୁଚ୍ଛୁଥିଲେ
ଯୁଧିଷ୍ଠିର ନ କହି ତାହାଙ୍କୁ ଗମିଲେ ।
କୃଷ୍ଣ ପଛେ ଥାଇ ଭୀମାଦି ପାଣ୍ଡବଙ୍କୁ
କହିଲେ ଜାଣିଲି ମୁଁ ରାଜାଙ୍କ କଥାକୁ ।
ଭୀଷ୍ମ ଦ୍ରୋଣ ଶଲ୍ୟ ଯେ ଗୁରୁଜନ ପୂଜା
ଆଗ କରି ପଛେ ଯୁଝିବେ ଜାଣ ରାଜା ।
ଦୁର୍ଭେଦ୍ୟ ଭୁଣିଥାଇଁ ଗୁରୁଙ୍କୁ ନ ପୂଜ
ଯେ ଯୁଝିଲ ସମ ପୋଛଇ ତାର ପାଞ୍ଜି ।
ଶାସ୍ତ୍ରକୁ ଘୃଣି ବଡ଼ ଲୋକଙ୍କ ଆଦର
ଯୁଦ୍ଧେ କଲେ ଜୟ ହୁଅଇଟି ତାହାର ।
ଯିବାର ଦେଖି କଣ ଯୁଧିଷ୍ଠିରଙ୍କର
ପାଣ୍ଡବ ସେନାଯାକ କଲେ ହାହାକାର ।
କୁରୁସୈନ୍ୟ ଲୋକେ ତା ଦେଖି ମନେ କଲେ
ଧୃତରାଷ୍ଟ୍ରସୁତେ ଅଲଭ୍ୟ ଜୟ କଲେ ।
ବୋଲାବୋଲି ହୋଇଲେ ଦେଖ ଯୁଧିଷ୍ଠିର
ଆସୁଛନ୍ତି ହୋଇଣ ଯୁଦ୍ଧରେ କାତର ।
ଭୀଷ୍ମ ଦ୍ରୋଣଙ୍କ ବେନ ପାଦକୁ ଧରିବେ
ଅଡ଼ାଏ ଖଣ୍ଡେ ଦେଇ ରଖ ବା ବୋଲିବେ ।
ଯୁଧିଷ୍ଠିର ପରି କ୍ଷତ୍ରିୟ ସୁତ ଜାତ
ହୋଇବ ଏହା କେହି ନ କରେ ସମ୍ମତ ।
କୁଳକୁ ଅଙ୍ଗାର ଅଟନ୍ତି ଜାଣ ଏହି
ଏହେ ଡରୁଆରେ ମାନବ ଆଉ ନାହିଁ ।
ଶତ୍ରୁ ଲୋକଠାରେ ହୋଇଣ ଲଜସ୍କ
ଉଦର ପୋଷିବାର ଅଟେ ଟି ନରକ ।
କ୍ଷତ୍ରିୟ ହୋଇ ନଖଦୁଇକ ପକାଇ
ନମିଲେ ଜାଣ ମଲା ପରି କଥା ସେହି ।
ଏହି ତ ପାଣ୍ଡୁସୁତଙ୍କର ଜ୍ୟେଷ୍ଠସୁତ
ହୋଇଣ କର୍ମା ହେଲେ ଯୁଦ୍ଧକୁ ଭୟତ ।
ଏରୂପେ ଘାଇଁବାର ପ୍ରକୃତିଟି ଶ୍ରେୟ
ହୁଅନ୍ତା ଭଲ ମଲେ ରଣେ ବରି ପ୍ରିୟ ।
ପାର୍ଥ ବୃକୋଦର ନକୁଳ ସହଦେବ
ଏହାଙ୍କ କି ରୂପେ ବଳିଲା ଏଥି ଭାବ ।
ବୀର ବୋଲାଇ ତ ଜଣକୁ ମୋଡ଼ୁଥିଲେ
ଏତେବେଳେ ଏହା ତ ନିଷେଧ ନ କଲେ ।
ଧୃତରାଷ୍ଟ୍ରଙ୍କ ସୁତେ କ୍ଷଣେ ଘାଇଁବାର
ଧନ୍ୟ ଅଟଇ ହେ ସମସ୍ତେ ମନେକର ।
ଏ ରୂପେ ତତପରେ ଭୁମ୍ଭ ବୀରଯାକ
କୃପାକାଙ୍କ୍ଷୀ ହୋଇ ହୃଦରୁ ଗ୍ରୀବ ଦକ ।
ଜୟ କାନ୍ଧି ବାଡ଼ିମାନଙ୍କେ ଉଡ଼ାଇଲେ
ନଷ୍ଟନଷ୍ଟେ ଯୁଦ୍ଧ ଦାଣ୍ଡରେ ଛୁଟା ହେଲେ ।
କୁମର ସୈନ୍ୟ କେତେ କରି ସିଂହନାଦ
ଜଗିଲୁଁ ଆମ୍ଭେ ବୋଲି ଉଚ୍ଚାରିଲେ ପଦ ।

ପାଣ୍ଡୁସୁତମାନଙ୍କୁ ଧିକ ଧିକ ବୋଲି
ପକାଇଲେ ତାହାକୁ ହୋହଲ୍ଲ ସ୍ୱନ ।
ଭୀଷ୍ମ ଯୁଧିଷ୍ଠିରଙ୍କ କି କଥା ହୋଇବେ
ଶୁଣିମା ବୋଲି ମନ ବସି କଲେ ସର୍ବେ ।
ଚହୁଁ ଯୁଧିଷ୍ଠିର ଭାଇଙ୍କ ପାଇ ସାଥି
ମିଳିଲେ ଯହିଁ ଥିଲେ ଭୀଷ୍ମ ମହାରଥୀ ।
ନମସ୍କାର କରିଣ ଭୀଷ୍ମଙ୍କୁ ବଚନ
କହିଲେ ନୃପକୁଳମସ୍ତକମଣ୍ଡନ ।
ବୋଇଲେ ମୁଁ ତୁମ୍ଭଙ୍କୁ ଆସିଛୁ ପଚ୍ଚରି
ମୋ ଆଶିଷ କର ହେ ଭୀଷ୍ମ ନ ବିସ୍ମରି ।
ତୁମ୍ଭ ତୁଲେ ମୁହିଁ ତ କରିବି ସମର
ଅନୁଜ୍ଞା ଦିଅ ମୋତେ ରଥୀଙ୍କ ଶେଖର ।
ଭୀଷ୍ମ ବୋଇଲେ ଆହେ ନ ଆସନ୍ତ ଯେବେ
ଶାପେ ତୁମ୍ଭ ନାଶ କରନ୍ତି ଜାଣ ତେବେ ।
ଆହେ ଦାନ୍ତିଟି ମୋତେ ପରଲୋକ ପ୍ରାପ୍ତି
କରାଅ ଯୁଦ୍ଧ ହେ କହିଲି ଅତି ପ୍ରୀତି ।
କି ଇଚ୍ଛା ଥିଲେ ଏବେ ମାଗ ମୋତେ ବର
ଦେବି ମୁହିଁ ତୁମ୍ଭଙ୍କୁ ସନ୍ଦେହ ନ କର ।
ଅରଥର ପୁରୁଷ ଅଟେ ସିନା ଦାସ
ଅରଥ ତ ନୋହେ ଯେ ପୁରୁଷର ଦାସ ।
ଦୁର୍ଯ୍ୟୋଧନ ଅନ୍ନ ତ ଖାଇଅଛୁ ଆମ୍ଭେ
ନ ଯୁଝିବୁ ବୋଲି କି ରୂପେ କହ ତୁମ୍ଭେ ।
ନ କରି ଯୁଦ୍ଧ ବୋଲି ନ ବୋଲିବ ନାତି
ଯା ଆଉ ବୋଲିବ କରିବି ବହୁ ପ୍ରୀତି ।
ଯୁଧିଷ୍ଠିର ବୋଇଲେ ଯୁଝିବ ହେ ଯେବେ
ମୋର ହିତ ମନେ କରିବା ହେଉଥିବେ ।
ଭୀଷ୍ମ ବୋଇଲେ ହେ କରିବି କି ସାହାଯ୍ୟ
ଏହା ମୋତେ କହ ପାଣ୍ଡବକୁଳରାଜ ।
ଯୁଧିଷ୍ଠିର ବୋଇଲେ ତୁମ୍ଭଙ୍କୁ ଜିଣିବି
ଯେଉଁରୂପେ ତାହା ହୃଦରେ ଥିବ ଭାବି ।
ଏହା କଲେ ମୋର ହୋଇବ ସବୁ ଶ୍ରେୟ
ଏ ଭାରତ ଯୁଦ୍ଧରେ ପାଇବି ବିଜୟ ।
ଭୀଷ୍ମ ବୋଇଲେ ଆହେ ଯୁଝୁଥିବି ଯେବେ
ଇନ୍ଦ୍ର ହିଁ ଜିଣି ନ ପାରିବେ ଜାଣ ତେବେ ।
ଯୁଧିଷ୍ଠିର ବୋଇଲେ ଦୁର୍ଜୟ ହିଁ ତୁମ୍ଭେ
କିରୂପେ ମରିବ କହ ତା ପୁଚ୍ଛୁଁ ଆମ୍ଭେ ।

ଭୀଷ୍ମ ବୋଇଲେ ମୋର ନାହିଁ ମୃତ୍ୟୁକାଳ
ଆଉ ଥରେ ଆସ କହିବି ପାଣ୍ଡୁବାଳ ।
ଏରୂପେ ଯୁଧିଷ୍ଠିର ଭୀଷ୍ମଙ୍କଠୁଁ ଶୁଣି
ବାହାରିଲେ ସେଠାରୁ ଶିରେ ବାଣୀ ଘେନି ।
ତୁମ୍ଭ ସୈନ୍ୟଯାକ ନୟନେ ଚାହୁଁଥିଲେ
ଦ୍ରୋଣ ରଥତଳେ ପାଣ୍ଡବେ ଛୁଡ଼ାହେଲେ ।
ଦ୍ରୋଣ ଦ୍ୱିଜବରଙ୍କୁ କରି ପ୍ରଦକ୍ଷିଣ
ନମସ୍କାର କରିଣ କହିଲେ ବଚନ ।
ଯେ ରୂପରେ ଯୁଦ୍ଧେ ଜିଣିମି ଶତ୍ରୁକୁଳ
ସେରୂପେ ବାଞ୍ଛାକର ଭରଦ୍ୱାଜବାଳ ।
ଦ୍ରୋଣ ବୋଇଲେ ହେ ମୋଠାକୁ ନଆସିଲେ
ଯୁଧିଷ୍ଠିର ଶାପ ମୁହିଁ ଦିଅନ୍ତି ଭଲେ ।
ତୁମ୍ଭ ପୂଜାରେ ମୁହିଁ ମହାତୋଷ ବହି
ବୋଲୁଛି ଜୟ ପାଇ ଭୋଗ କର ମହୀ ।
ଯୁଦ୍ଧ ଛାଡ଼ି ଯାହା ହୋଇଅଛି କାଂକ୍ଷିତ
ତାହା ମାଗ ଦେବି ମୁଁ ପାଣ୍ଡୁନୃପସୁତ ।
ଦୁର୍ଯ୍ୟୋଧନର ଭାତ ଖାଉଛୁଁ ତ ଆମ୍ଭେ
ଯୁଦ୍ଧ କି ନ କରିବୁ ନ ସେଧିଲେ ତୁମ୍ଭେ ।
ଦୁର୍ଯ୍ୟୋଧନ ପାଇଁ ଯୁଝିବୁ ତୁମ୍ଭ ଜୟ
ବାଞ୍ଛୁଥିବୁ ଜାଣ ଆହେ ପାଣ୍ଡୁପୁଅ ।
ଯୁଧିଷ୍ଠିର ବୋଇଲେ ମୋ ଜୟ ଆଶଂସା
ଭାବି ଯୁଦ୍ଧ କର ହେ ଦ୍ରୋଣ ମହାଯଶା ।
ଦ୍ରୋଣ ବୋଇଲେ ହେ ଯାହାର ମନ୍ତ୍ରୀ ହରି
ବିଜୟ ନୋହିବ କି ତା'ର ବୋଲପାରି ।
ଯେଉଁଠାରେ ଧର୍ମ ରହିଛି ନିତ୍ୟ ହୋଇ
ସେଠାରେ କୃଷ୍ଣ ରହନ୍ତି ଶୁଣ କହୁଥାଇଁ ।
କୃଷ୍ଣ ଥିଲେ ହିଁ ଜୟ ଅଟଇ ଅଧୀନ
ଯାଅ ହେ ଯୁଦ୍ଧ କର ନ କହି ବଚନ ।
ଯୁଧିଷ୍ଠିର ବୋଇଲେ ଯୁଦ୍ଧରେ ତୁମ୍ଭଙ୍କୁ
କି ରୂପେ ଜିଣିମି ହେ କହ ତା ଆମ୍ଭଙ୍କୁ ।
ଦ୍ରୋଣ ବୋଇଲେ ମୁହିଁ ଯୁଝୁଥିବାଯାକ
ଜିଣି ନ ପାରିବ ହେ ପାଣ୍ଡବ ନାୟକ ।
ମୋ ସମକ୍ଷେ ସୋଦରମାନଙ୍କୁ ତ ଧରି
ଯତ୍ନ କରିବ ହେ ସ୍ୱଜନ ନ ବିସ୍ମରି ।
କହିଲେ ଯୁଧିଷ୍ଠିର କରି ନମସ୍କାର
ବଧୋପାୟ ଦୁଃଖେ ପୃଚ୍ଛଇ ବ୍ୟକ୍ତ କର ।

ଗୁରୁ ବୋଇଲେ ଶସ୍ତ୍ରତ୍ୟାଗୀ ଯୋଗଯୁକ୍ତ
ଅବସ୍ଥାରେ ମାରିବ ହୋଇଛି ଉଚିତ ।
ଶୁଣିଲେ ସତ୍ୟବାଣୀ ମୁଖରୁ ଅପ୍ରିୟ
ଛାଡ଼ିବ ଶସ୍ତ୍ର ଜାଣ ଏ ମୋର ନିଶ୍ଚୟ ।
ଦ୍ରୋଣଙ୍କଠାରୁ ସେ ହୋଇଣ ମେଲାଣି
ଗଲେ କୃପଠାରୁ ପାଣ୍ଡବ-ନରମଣି ।
କୃପଙ୍କୁ ପ୍ରଦକ୍ଷିଣ ନମସ୍କାର କରି
କହିଲେ ବଚନକୁ ବିନୟ ଉଚ୍ଚାରି ।
ଆସିଲି ମୁହିଁ ତୁମ୍ଭ ସମ୍ଭାବନା ଘେନି
ଆଜ୍ଞା ଦିଅ ଶତ୍ରୁ କୁଳକୁ ଦେବି ହାନି ।
କୃପ ବୋଇଲେ ହେ ନ ଆସି ମୋହଠାରୁ
ଯୁଦ୍ଧ କଲେ ଶାପ ମୁଁ ଦିଅନ୍ତି ତୁମ୍ଭଙ୍କୁ ।
ଦୁର୍ଯ୍ୟୋଧନର ଅନ୍ନ ଖାଇ ଅଛୁ ଯୋଗୁଁ
ଯୁଦ୍ଧ ଛାଡ଼ି ଯାହା ମାଗିବ ମୁଁ ଦେବଇଁ ।
ଯୁଧିଷ୍ଠିର ବୋଇଲେ ତୁମ୍ଭର ମରଣ
କହିଥାଅ ମୋତେ ହେ ଦ୍ୱିଜକୁଳଗଣ ।
କୃପ ବୋଇଲେ ମୁହିଁ ଅବଧ୍ୟ ଅଟଇ
ଜୟ ହେବ ତୁମ୍ଭର ଜାଣ କହୁଥାଇଁ ।
କୃପଙ୍କରଠାରୁ ତ ଶୁଣି ଏ ବଚନ
ନମସ୍କାର କରିଣ ସେଠାରୁ ଗମନ ।
ଯୁଧିଷ୍ଠିର ରାଜା ଶଲ୍ୟଙ୍କଠାରୁ ଗଲେ
ଶଲ୍ୟଙ୍କୁ ନମସ୍କାର କରିଣ କହିଲେ ।
ତୁମ୍ଭରଠାରୁ ମାମୁଁ ଆସିଅଛୁ ମୁହିଁ
ଆଜ୍ଞା ଦିଅ ଶତ୍ରୁକୁ ମାରେ ଏବେ ଯାଇ ।
ଶଲ୍ୟ ବୋଇଲେ ହେ ମୋଠାରୁ ଭଣଜା
ନ ଆସିଲେ ଶାପ ମୁଁ ଦିଅନ୍ତି ମୋ ରଜା ।
ସନ୍ତୁଷ୍ଟ ହୋଇ ଏବେ ବୋଲୁଅଛି ମୁହିଁ
କୁରୁଙ୍କୁ ଜିଣି ରଣେ ହୁଅ ନରସାଇଁ ।
ଯୁଦ୍ଧ ଛାଡ଼ିଣ ଯାହା ମାଗିବ ରାଜନ
ତା ତୁମ୍ଭଙ୍କୁ ଦେବି ସତ୍ୟ ମୋ ମନେ ଘେନ ।
ଦୁର୍ଯ୍ୟୋଧନ ମୋତେ ବହୁତ ପୂଜା କଲେ
ଏଣୁ ତାପାଇଁ ପ୍ରାଣ ଜାଣ ଦେବି ହେଲେ ।
ଯୁଧିଷ୍ଠିର ବୋଇଲେ ଯୁଦ୍ଧ ସମୟେ ମାମୁଁ
ମୋ ହିତ ନ ଛାଡ଼ିବ ଯୁଦ୍ଧେ ତମ୍ଭ ତମ୍ଭ ।
ଶଲ୍ୟ ବୋଇଲେ ମୁଁ ତୁମ୍ଭର କି ସାହାଯ୍ୟ
କରିବି ତାହା ମୋତେ କହ ମହାରାଜ ।
ଯୁଧିଷ୍ଠିର ବୋଇଲେ କର୍ଣ୍ଣର ତେଜ ବଧ
କଲେଟି ତୁମ୍ଭେ ମାମୁଁ ହୋଇବ ମୁଁ ବୋଧ ।
ଶଲ୍ୟ ବୋଇଲେ ଆହେ ବୋଲୁଅଛ ଯାହା
କରିବି ମୁଁ ତାହା ହେ ଯୁଦ୍ଧ ନରନାହା ।
ଶଲ୍ୟଙ୍କଠାରୁ ପାଣ୍ଡବ-ନରମଣି
ନିଜ ସୈନ୍ୟ ଆସିଲେ ଭାଇଙ୍କି ତ ଘେନି ।
ଶ୍ରୀକୃଷ୍ଣ ଏକା ହୋଇ କର୍ଣ୍ଣଠାରୁ ଗଲେ
ତୁମ୍ଭ କରି ତାହାର କର୍ଣ୍ଣରେ କହିଲେ ।
ଶୁଣିଲି ମୁହିଁ ଭୀଷ୍ମ ଯାଇଁ ଥିବା ଯାକ
ନ ଯୁଝିବ ତୁମେ ହେ ଧରିଣ କାର୍ମୁକ ।
ଏଥିକି କହୁଅଛୁ ପାଣ୍ଡବଙ୍କ ସୈନ୍ୟ
ଆସି ରହିଥାଅ ହେ ଅତ୍ୟନ୍ତ ସୁମନେ ।
ଭୀଷ୍ମ ମଲେ ଉତ୍ତାରୁ କରେ ଧନୁ ଧରି
ଦୁର୍ଯ୍ୟୋଧନ ସୈନ୍ୟ ମାରିବ ତୁମ୍ଭେ ଯାଇ ।
କର୍ଣ୍ଣ ବୋଇଲେ ମୁଁ ପରାଣେ ଥିଲେ ରହି
ଦୁର୍ଯ୍ୟୋଧନ ଅପ୍ରିୟ ଜାଣ କରି ନାହିଁ ।
ଶ୍ରୀକୃଷ୍ଣ ଏହା ଶୁଣି ନ କହି କର୍ଣ୍ଣକୁ
ଆସିଲେ ପାଣ୍ଡୁସୁତ ସଇନ ମଧ୍ୟକୁ ।
ଏ ଅନ୍ତେ ଯୁଧିଷ୍ଠିର ସେନା ମଧ୍ୟେ ରହି
କହିଲେ ପାଣ୍ଡୁ କୁରୁ ଦୁହେଁ ଯୁଝୁଥାଇଁ ।
ଏତେବେଳେ ମୋଠାରେ ରହିବ ଯେ ଆସି
କହୁଛି ସତ୍ୟ ତାକୁ ପୋଷିବ ମୁଁ ବେଶୀ ।
ଏହା ଶୁଣି ଯୁଯୁତ୍ସୁ କୁରୁସେନା ଆଗେ
ଛିଡ଼ା ହୋଇ କହିଣ କହିଲେ ସରାଗେ ।
ମୋତେ ଯେବେ ବୋଲ ରହିବି ପାଖେ ଯାଇ
ତୁମ୍ଭପାଇଁ କୁରୁଙ୍କ ସଙ୍ଗେ ଯୁଝିବଇଁ ।
ଯୁଧିଷ୍ଠିର ବୋଇଲେ ଯୁଯୁତ୍ସୁ ହେ ଆସ
ମର୍ଣ୍ଣ ଦୁର୍ଯ୍ୟୋଧନର ନାଶିବା ସାହସ ।
ଧୃତରାଷ୍ଟ୍ର ରାଜାଙ୍କୁ ତୁମ୍ଭେ ଦେବ ପାଣି
ଜାଣିଲୁ ଆମ୍ଭେ ଶୁଣି ତୁମ୍ଭର ଏ ବାଣୀ ।
ଯୁଧିଷ୍ଠିରଙ୍କର ବଚନେ ସୁଖୀ ହେଲେ
ଯୁଯୁତ୍ସୁ ପାଣ୍ଡୁ ସେନା ଭିତରେ ପଶିଲେ ।
ଯୁଧିଷ୍ଠିର ରାଜନ କବଚ ଲଗାଇ
ଧନୁ ଧରି ରଥେ ବସିଲେ ତୋଷେ ଯାଇ ।
ଯୋଦ୍ଧାମାନେ ସର୍ବ ଧରସ୍ପେ କରି ବ୍ୟୂହ
ରଥେ ବସି ଧନୁ ଟିଙ୍କିଲେ ବହି କୋହ ।

ଦୁନ୍ଦୁଭି ସିଂହନାଦ ଶଙ୍ଖର ଶବଦେ
ସବୁ ପ୍ରାଣୀମାନେଟି ରହିଲେ ସ୍ତବଧେ ।
ଧୃଷ୍ଟଦ୍ୟୁମ୍ନ ଆଦି ରଥୀଏ ପାଣ୍ଡବଙ୍କ
ଜଣ ଧର ଦେଖି ଛାଡ଼ିଲେ ମନୁ ଦକ ।
ଭୀଷ୍ମଙ୍କୁ ଯୁଧିଷ୍ଠିର କରିବାର ପୂଜା
ଦେଖି ସବୁ ନୃପେ ଆନନ୍ଦ କରି ମଜ୍ଜା ।
ବୋଇଲେ ପାଣ୍ଡବଙ୍କ ପରାୟେ ଧାର୍ମିକ
ଲୋକ ଉଣ୍ଡନାହିଁ ଆଉ ଏ ମର୍ତ୍ତ୍ୟଲୋକ ।
ପିତାମହ ବୋଲି ଭୀଷ୍ମଙ୍କୁ ଜାଣ ଉଭ
ଦେଖ କହି ଗଲେ ଯୁଦ୍ଧକୁ ଛାଡ଼ିକରି ।
ଏ ରୂପେ ପାଣ୍ଡୁ ସୈନ୍ୟଯାକ କୁହାଳୁଣ
ହୋଇଣ ମନେ କଲେ ମଲ୍ଲ କୁସ୍ତିସାଇଁ ।
ଦ୍ୱିଜଠାରୁଟି ମ୍ଲେଚ୍ଛ ଯାଏ ପାଣ୍ଡୁ ସୈନ୍ୟ
କାହ ଯୁଧିଷ୍ଠିରଙ୍କୁ କଲେ ଧନ୍ୟ ଧନ୍ୟ ।
ଏହା ଶୁଣିଣ ଧୃତରାଷ୍ଟ୍ର ନରସାଇଁ
ସଞ୍ଜୟ ମନ୍ତ୍ରୀବର ମୁଖକୁ ଅନାଇଁ ।
ବୋଇଲେ ଦୁଇସେନା ଲୋକରେ କେ ଆଗ
ବାନ୍ଧିଲା କାଣ୍ଡ କହ ହୃଦେ ବଳି ରାଗ ।
ସଞ୍ଜୟ ବୋଇଲେ ହେ କୁଳବୁଡ଼ା ରାଜା
କହିବି ସେ କଥାକୁ ଶୁଣ ଦେଇ ମଜ୍ଜା ।
ଯୁଧିଷ୍ଠିର ଭୀଷ୍ମଙ୍କ ଆଗରୁ ଯାଆନ୍ତେ
ଦୁର୍ଯ୍ୟୋଧନ ଗର୍ଜନ କରି କ୍ରୋଧ ଚିତ୍ତେ ।
ସୈନ୍ୟଙ୍କୁ ବୋଇଲେ ଭୀଷ୍ମଙ୍କୁ ଜଗିଥାଅ
ମାରିବେ ଖୋଜିଣ ପାଣ୍ଡୁଙ୍କ ଯେତେ ପୁଅ ।
ଏହା ଶୁଣିଣ ଦୁଃଶାସନ ଆଗ ହୋଇ
ସେନା ଘେନ ଭୀଷ୍ମେ ଜଗିଲା ରଣେ ଯାଇ ।
ପାଣ୍ଡୁସେନା ଭୀମଙ୍କୁ ଚଳାଇ ଆଗରେ
ବାହାରିଲେ ଯୁଦ୍ଧଦାଣ୍ଡରେ ସରାଗରେ ।
ଶତ ଶତ ଭେରୀ ପଣବ ଯେ ଗୋମୁଖ
କୁଳରେ ସେ କାଳେ ବାଜିଲା ଲକ୍ଷେ ଶଙ୍ଖ ।
କୁରୁ ସେନାଯାକ ସେହି ରୂପରେ ବାଦ୍ୟ
ବଜାଇଲେ ସର୍ବେଟି ହୋଇଣ ପ୍ରମୋଦ ।
ଦୁଇସେନା ରଥ ହାତୀ ଯେ ଘୋଡ଼ାଙ୍କର
ଯିବାଆତେ ଅବନୀ ହେଲା ଥର ଥର ।
ପବନରେ ଉଦ୍ଧତ ହୋଇ ଜଳରାଶି
ବେଳାକୁ ଯେଉଁ ରୂପେ ଆକର୍ଷଇ ଆସି ।

ସେହି ରୂପରେ ଦୁଇସେନା ମଧ୍ୟଦେଶ
ଭୂମିକି ସେନା ଘେନ ନ ଦେଖିଲା ଦୃଶ ।
ସେ କାଳେ ଭୀମସେନ ଫୁଲାଇଣ କାୟେ
ଛାଡ଼ିଦେଲେ ବୃଷଭ ପରି ରଡ଼ିଟାଏ ।
ସେହି ରଡ଼ିଟା ଦୁଇ ସେନାର ବାଦ୍ୟକୁ
ଅତିକ୍ରମି ଗମିଲା ଆକାଶ ମାର୍ଗକୁ ।
କୁରୁ ସୈନ୍ୟ ନରେ ତ ସେ ରଡ଼ି ଶୁଣିଲେ
ତ୍ରାସେ ମଳମୂତ୍ର ଉତ୍ସର୍ଗି ପକାଇଲେ ।
ଏହା ବାହାରେ ଯେତେ ହାତୀ ଘୋଡ଼ାରାଜ
ଥିଲେ ଥରିଲେ ସେହି ମଳମୂତ୍ର ତେଜି ।
ଭୀମ ସେକ୍ଷଣି କୁରୁ ପୁଅ ଆଗେ ଛିଡ଼ା
ହେଲେ ବହିଥିଲେ ଅଙ୍ଗରେ ଶସ୍ତ୍ରବିଡ଼ା ।
ଦୁର୍ଯ୍ୟୋଧନ ଦୁର୍ମୁଖ ଦୁଃସହ ଦୁଃଶାସନ
ସହ ଦୁର୍ମର୍ଷଣ ବିକର୍ଣ୍ଣ ଚିତ୍ରସେନ ।
ବିବିଂଶତି ଆଦି ମହାଧନୁକୁ ଧରି
ବିନ୍ଧିଲେ ବାଛି ଶର ଆଶୀବିଷପରି ।
ସେ କାଣ୍ଡମାନଙ୍କର ସକାଶୁଁ ମିହିର
କରି ପଡ଼ିବାର ନ ହୋନ୍ତୁ କଲେ ଦୂର ।
ପ୍ରତିମିତ୍ର ଜୟ ସେ ଭୌଜ ସୌମଦତ୍ତି
ଧନୁ ଧରି ରହିଲେ ଯୁଝିବା କରି ଚିତ୍ତି ।
ଦ୍ରୌପଦୀଙ୍କର ପୋଏ ଅଭିମନ୍ୟୁ କୁଳେ
ଧନୁରେ ଶର ଯୋଖି କୁରୁଙ୍କୁ ବିନ୍ଧିଲେ ।
ଧୃଷ୍ଟଦ୍ୟୁମ୍ନ ନକୁଳ ସହଦେବ ଆଦି
ସାରେ ଯୁଦ୍ଧ କଲେ ସେ ରାଜକୁ ସମ୍ବାଦି ।
ଏରୂପେ ଦୁଇ ସୈନ୍ୟ ଯୁଦ୍ଧ ସମ ହୋଇ
ପ୍ରବର୍ତ୍ତିଲା ଜାଣ ହସ୍ତିନା ମଣ୍ଡସାଇଁ ।
ଦୁଇସେନା ଧନୁଷ୍ଟଙ୍କାରରେ ଝଙ୍କାର
ପକାଇ ନ ପାରିଲେ ଶ୍ରୁତି ଯେତେ ନର ।
ମହାରଥୀମାନେ ଯୁଦ୍ଧରେ ଶ୍ରଦ୍ଧା ବହି
ଯୁଦ୍ଧ କଲେ ରାଜନ ମିଶାମିଶି ହୋଇ ।
କୁରୁ ପୁଅ ଆଜ୍ଞାରେ ସାରେ ଚୋର ହୋଇ
ଯୁଦ୍ଧଭୂମିଯାକ ଯେ ପୂରିଗଲେ ଯାଇ ।
ଯୁଧିଷ୍ଠିରଙ୍କ ଆଦେଶରେ ନୃପଗଣ
ବାହାରିଲେଟି କରିବାକୁ ଘୋର ରଣ ।
ସୈନ୍ୟପାଦ ଘାତରେ ଧୂଳି-ରାଶି ଉଡ଼ି
ସୂର୍ଯ୍ୟଙ୍କ ମଣ୍ଡଳ ରହିଲା ଯାଇ ମାଡ଼ି ।

ସେ ଧୂଳି ଅନ୍ଧାରରେ ରଥୀଙ୍କ ଶେଖର
ଭୀଷ୍ମ ଚନ୍ଦ୍ର ପରି ଦିଶିଲେ ଶୋଭାକର ।
ଚହଟିକ ଭିତରେ ପ୍ରବର୍ତ୍ତିଲା ଯୁଦ୍ଧ
ବୀରମାନଙ୍କର ଟି ହୋଇବାକୁ ବଧ ।
କୃଷ୍ଣ ପାଣ୍ଡୁଙ୍କର ସେ ସିଂହନାଦଘାତେ
ଆକାଶ ଫାଟିଗଲା ମଣିଲେ ସମସ୍ତେ ।
ତା ଶୁଣି ହାତୀ ଘୋଡ଼ା ଉଟ ଗରଜନ
କରିବାରେ ମଗ୍ନ ହୋଇଲା ପରିପୂର୍ଣ୍ଣ ।
ବୀରମାନଙ୍କର ସେ ଘୁଂଟଣି ଶବଦ
ଲୋକଙ୍କ କର୍ଣ୍ଣବେଧ କଲା ସେ ସ୍ତବଧ ।
ପତାକାମାନେ ଧପଧପ ଯିବା ଘାତେ
ଚାପ ଲକ୍ଷଣ ମଗ୍ନ କମ୍ପିଲା ନଗରେ ।
ଆୟୁଧମାନଙ୍କର ଯିବାବେଳେ ରଡ଼
ନାଦ କଲା ପ୍ରଳୟକାଳ ଘଡ଼ଘଡ଼ ।
ହାତୀମାନଙ୍କର ସେ ଘଣ୍ଟା ଟଣ ଟଣ
ଶୁଣି ଯୋଦ୍ଧାଗଣେ ବିନ୍ଧିଲେ ମାରଗଣ ।
ଏରୂପରେ ଶବଦ ପ୍ରବର୍ତ୍ତିବା କାଳେ
ରଥୀଏ ରଥଘୋଷ କରାଇଲେ ବଳେ ।
କୁରୁ ଦଳ ନୃପତିମାନେ ପାଣ୍ଡବଙ୍କୁ
ଶସ୍ତ୍ର ଧରି ଆସି ଧାଇଁଲେ ମାରିବାକୁ ।
ଭୀଷ୍ମ ସେ ତାଳବୃନ୍ତ ପରି ଧନୁ ଧରି
ଧାଇଁଲେ ପାର୍ଥ ସଙ୍ଗେ ଯୁଦ୍ଧ ଇଚ୍ଛା କରି ।
ଅର୍ଜୁନ ସେରୂପେ ଗାଣ୍ଡିବ ଧରି ହାତେ
ଯୁଝିବାକୁ ଧାଇଁଲେ ଭୀଷ୍ମଙ୍କର ସାଥେ ।
ଅନ୍ୟୋନ୍ୟରେ ଭୀଷ୍ମ ଅର୍ଜୁନ ଦୁଇ ରଥୀ
ବନ୍ଧାବନ୍ଧି ହେଲେ ନ କର୍ମି ତେଣୁ ଗ୍ଲାନି ।
ସାତ୍ୟକି କୃତବର୍ମା ଦୁଇ ମତ୍ତ ହସ୍ତୀ
ସାତ୍ୱିକ-ଦନ୍ତମୂନେ ହେଲେ କନ୍ତାକନ୍ତ ।
ଆକାଶମାର୍ଗରେ ଆସିଣ ଶରଜ
ବାଜନ୍ତେ ଦୁହିଁଙ୍କ ଦେହରେ କାଣ୍ଡବଜ ।
ବସନ୍ତରେ ପୁଷ୍ପିତ ପଳାଶ ବୃକ୍ଷକୁ
ନନ୍ଦା କଲେ ଦେଖାଇ ରକତ ପ୍ରକାଶକୁ ।
ବୃହଦ୍ବଳ ଅଭିମନ୍ୟୁଙ୍କୁ ଯୁଦ୍ଧ କରି
ଧ୍ୱଜକୁ କାଟି ପକାଇଲା କାଣ୍ଡେମାରି ।
ସାରଥିଙ୍କ ସେ ପୁଣି ବିନ୍ଧି କରି କାଣ୍ଡ
ଯୁଦ୍ଧ ଦୁଆରେ କରିଦେଲା ଦୁଇଖଣ୍ଡ ।

ସୁଭଦ୍ରାଙ୍କ ତନୟ ଆପଣା ଅପ୍ରିୟ
ଦେଖି କରଣ ହୋଇ ସକ୍ରୋଧ ହୃଦୟ ।
ନଅ କାଣ୍ଡ ବୃହଦ୍ବଳକୁ ଯୋଖି କରି
ଧନୁ ମଧ୍ୟେ ବିନ୍ଧିଲେ ଗୁଣକୁ ଉଟାରି ।
ଭଲ୍ଲକାଣ୍ଡଟିକରେ ବୃହଦ୍ବଳ ଧ୍ୱଜ
କାଟି ପକାଇଲେ ଟି ଅର୍ଜୁନ ଆତ୍ମଜ ।
ଦୁଇପାଖ ସାରଥିଙ୍କର ପ୍ରାଣ ନେଇ
ହୋଇଲେ କାହିଁପିବୁ ବୃହଦ୍ବଳ ଭାଇ ।
ଭୀମ କୁମରର ପୁଅ ଦୁର୍ଯ୍ୟୋଧନ ଭଲେ
ଯୁଦ୍ଧ କଲେ ନୃପ ଦେଖାଇ ବଳ ଭଲେ ।
ଅନ୍ୟୋନ୍ୟରେ ସେ ଦୁହେଁ ଶର ବନ୍ଧାବନ୍ଧି
ହୋଇ ସେ ଯୁଦ୍ଧଭୂମିତାଣ୍ଡ ଦେଲେ ଛନ୍ଦି ।
ଭୀମ ଦୁର୍ଯ୍ୟୋଧନଙ୍କ ଦେଖି ଯୁଦ୍ଧଟାଣ
ସବୁପ୍ରାଣୀ ବିସ୍ମିତ ହୋଇଲେ ଟି ଜାଣ ।
ନକୁଳଙ୍କୁ ସେ ମର୍ମଭେଦୀ ଦଶକାଣ୍ଡ
ଦୁଃଶାସନ ବିନ୍ଧିଲା କମ୍ପାଇ କୋଦଣ୍ଡ ।
ଦୁଃଶାସନର ଧ୍ୱଜ ଧନୁକୁ ନକୁଳ
କାଟି ପକାଇଲେ ଦେଖାଇ ଯୁଦ୍ଧେ ବଳ ।
ପଚିଶିକାଣ୍ଡେ ଦୁଃଶାସନର ଗଣ୍ଡିକ
ବିନ୍ଧିଲେ କ୍ରୋଧେ କରିବାକୁ ଟିକ ଟିକ ।
କୁରୁ ପୁଅ କ୍ରୋଧରେ କରି ଦନ୍ତଘଡ଼ା
କାଟିଲେ ନକୁଳଙ୍କ ଧ୍ୱଜ କୂଳେ ଘୋଡ଼ା ।
ଦୁର୍ମୁଖ ସହଦେବଙ୍କୁ ସେ ଶରବଜ
ବିନ୍ଧିଲେ ମହାକ୍ରୋଧେ ଗର୍ଜି ଗର୍ଜି ।
ସହଦେବ ସେ ଶିଳାଧରା କାଣ୍ଡ ମାରି
ଦୁର୍ମୁଖ ସାରଥିର ପ୍ରାଣ ନେଲେ ହରି ।
ଅନ୍ୟୋନ୍ୟରେ ଦୁର୍ମୁଖ ସହଦେବ ଦୁଇ
ମିଶାମିଶି ହେଲେ ଜୀବନ ନେବାପାଇଁ ।
ଶଲ୍ୟ ଧୃଷ୍ଟଦ୍ୟୁମ୍ନ କରନ୍ତେ ଘୋର ରଣ
ଯୁଧିଷ୍ଠିର ଧନୁ କାଟିଲା ଶଲ୍ୟବାଣ ।
ଯୁଧିଷ୍ଠିର ସେ ଆନ ଧନୁଟାଏ ଧରି
ବିନ୍ଧିଲେ ସାନ ଗଣ୍ଠି କାଣ୍ଡ ବାଛି କରି ।
ବଚନରେ ବୋଇଲେ ରହ ରହ ମାମୁଁ
ଭାଙ୍ଗିଦେବ କୁମରର ଗୁମାନ ଆଜ ମୁଁ ।
ଧୃଷ୍ଟଦ୍ୟୁମ୍ନ ଦ୍ରୋଣ ଦୁହେଁ ଟି ଆୟୋଧନ
କରନ୍ତେ ଦ୍ରୋଣ କାଟିଦେଲେ ଶରାସନ ।

କାଳଦଣ୍ଡ ପରି କାଣ୍ଡକେ ଦ୍ରୋଣ ବୃଦ୍ଧା
ବର୍ଷ କଲେ ତାଙ୍କୁ ଦେଖାଇ ଯୁଦ୍ଧପ୍ରୌଢ଼ା ।
ସେ କାଣ୍ଡର ଘାତରେ ଦ୍ରୁପଦ କୁମର
ପାଇ ପୀଡ଼ା ଧଇଲେ ଆନ ଧନୁବର ।
ଚଉଦଟି କାଣ୍ଡ ଦ୍ରୋଣଙ୍କ ଉପରକୁ
ବର୍ଷିଲେ ତାହାଙ୍କର ଜୀବନ ନେବାକୁ ।
ଭୂରିଶ୍ରବା ଭୁଲରେ ଶଙ୍ଖ କରି ରଣ
ବୋଇଲେ ମର ହେ ମୋ ହାତେ ବୀରଗଣ ।
ଭୂରିଶ୍ରବା ଯେ ତାହା ସହି ନ ପାରିଲେ
ଶଙ୍ଖଙ୍କରଟି କଣ୍ଠଦେଶକୁ ବର୍ଷିଲେ ।
ଶଙ୍ଖ ସେହି ରୂପରେ ଦକ୍ଷିଣ ଭୁଜକୁ
ଭୂରିଶ୍ରବାଙ୍କର ବର୍ଷିଲେ ସାୟକକୁ ।
ଭୃଗୁ ବାସବଙ୍କର ପରାଯ୍ୟେ ସେ ରଣ
ମଣିଲେ ଯେତେ ଚର୍ଚ୍ଚି ଥିଲେ ଯୋଦ୍ଧାଗଣ ।
ବାହ୍ଲିକ ଧୃଷ୍ଟକେତୁ ଯୁଦ୍ଧେ ନ ଆହାବ
ଆହବ କଲେ ପ୍ରାଣ ଛାଡ଼ିଦେବା ଭାବ ।
ଧୃଷ୍ଟକେତୁ କ୍ରୋଧ ହୋଇଣ ନଅ କାଣ୍ଡ
ବର୍ଷିଲେ ଲକ୍ଷ କରି ବାହ୍ଲିକଙ୍କ ପିଣ୍ଡ ।
ମଙ୍ଗଳ ବୁଧ ପରି ଦୁହେଁ ମିଶାମିଶି
ହୋଇ ଯୁଦ୍ଧ କଲେ ବଳନ ହୋଇ ବେଶୀ ।
କ୍ରୂରକର୍ମା ଯେ ଘଟୋତ୍କଚ ରାକ୍ଷସ
ଯୁଦ୍ଧ କଲା ଯାଇଣ ଅଳମ୍ବୁଷ ପାଶ ।
ନଉକାଣ୍ଡ ବର୍ଷିଣ ଘଟୋତ୍କଚ ବୀର
ଯୁଦ୍ଧଦାଣ୍ଡେ ଦେହଶୋଣିତକୁ କଲା ଚୋର ।
ଅଳମ୍ବୁଷ ସେହି ରୂପରେ କାଣ୍ଡ ବର୍ଷି
ପକାଇଲା ନିଃଶ୍ୱାସ ହୋଇ କ୍ରୋଧେ ଛନ୍ଦି ।
ଇନ୍ଦ୍ର ବଳୀ ଦୁହିଙ୍କ ଯୁଦ୍ଧକୁ ସମାନ
ହୋଇଲା ପରାଯ୍ୟେ ଜାଣ ସେ ଦୁହିଁଙ୍କ ରଣ ।
ଶିଖଣ୍ଡୀ ଅଶ୍ୱତ୍ଥାମା ଦୁହେଁ ଭେଟାଭେଟି
ହୋଇଣ ଯୁଦ୍ଧ କଲେ ଓଟାରି ଧନୁଟି ।
ଅଶ୍ୱତ୍ଥାମା କ୍ରୋଧରେ କମ୍ପାଇଣ ପିଣ୍ଡ
ବର୍ଷିଲେ ଶିଖଣ୍ଡୀକି ବାଡ଼ମୁନକାଣ୍ଡ ।
ଶିଖଣ୍ଡୀ ମଧ୍ୟ ସେହିରୂପେ କାଣ୍ଡ ବର୍ଷି
ଅଶ୍ୱତ୍ଥାମା ପିଣ୍ଡପାକଟି ଦେଲେ ଛନ୍ଦି ।
ଭଗଦତ୍ତ ବିରାଟନୃପ ହୋଇ ଭେଟ
ଯୁଦ୍ଧ କଲେ ଦୁହେଁ ଦେଖାଇ ବଳ ଆଣ୍ଟ ।
ବିରାଟ ଭଗଦତ୍ତ କାଣ୍ଡେ ପୀଡ଼ା ପାଇ
କାଣ୍ଡ ବର୍ଷି ଭଗଦତ୍ତକୁ ଦେଲେ ଘାଇ ।
ଭଗଦତ୍ତ ସେରୂପେ କରି ବିରାଟକୁ
ଗରଜନ କଲେଟି ଟଙ୍କାରି ଗୁଣକୁ ।
ବୃହତ୍କ୍ଷେତ୍ର ଯାଉଥିଲେଟି ଯୁଦ୍ଧଦାଣ୍ଡେ
ପଡ଼ିଲେ ସେହି କୃପାଚାର୍ଯ୍ୟଙ୍କର କାଣ୍ଡେ ।
ସେ ଦୁଇରଥୀ ଯୁଦ୍ଧେ ଦେଖାଇ ସାମର୍ଥ୍ୟ
ଅନ୍ୟୋନ୍ୟେ ମର୍ଦ୍ଦିଦେଲେ ଘୋଡ଼ା ଧ୍ୱଜ ରଥ
ଦୁହେଁ ଯେ ଦୁହିଁଙ୍କର ଘୋଡ଼ାକୁ ମାଇଲେ
ଦୋ ବାହାରେ ଧନୁ କଟାକଟି ହେଲେ ।
ଏରୂପେ ବିରଥୀ ହୋଇ ସେ ବୋଦ୍ଧ ବ୍ୟଥୀ
କାଢ଼ିଲେ ଖାପୁଁ ଖଣ୍ଡା ଦୁଇ ମହାରଥୀ ।
ରଥବରରୁ ଦୁହେଁ ଓହ୍ଲାଇ ପଡ଼ିଲେ
ଚଟପାଟ ଖଣ୍ଡାରେ ହଣାହଣି ହେଲେ ।
ଅଡ଼ାଅଡ଼ି ହୋଇଣ କଲେ ନାନା ଗତି
ଜୟ-ରନ୍ଧ୍ର ନେବାକୁ କରି ଦୁହେଁ ମତି ।
ଦ୍ରୁପଦ ଜୟଦ୍ରଥ ଆରମ୍ଭିଲେ ରଣ
ବର୍ଷିଲେ ଜୟଦ୍ରଥ ତିନି ମାର୍ଗଣ ।
ଦ୍ରୁପଦ ଧନୁ ମଧ୍ୟେ ମାର୍ଗଣ ବର୍ଷିଲେ
ଜୟଦ୍ରଥ ନୃପଙ୍କୁ ସେରୂପେ ବର୍ଷିଲେ ।
ଶୁକ୍ର ଅଙ୍ଗାରକ ଯୁଦ୍ଧକୁ ସେହି ଯୁଦ୍ଧ
ସମାନ ହେଲା ବୋଲି ବୋଇଲେ ବିବୁଧ ।
କୁମ୍ଭ ପୁଅ ବିକର୍ଣ୍ଣ ସୁତସୋମ ଭୁଲେ
ଯୁଦ୍ଧ କରିବାକୁ ହେ ଗଲେ ଜାଣ ଭଲେ ।
ସେ ଦୁହେଁ ତ ଯୁଦ୍ଧେ ଅଟନ୍ତି ମହାରଥୀ
କେ କାହାର ବଳକୁ ନ ପାରିଲେ ମର୍ଦ୍ଦି ।
ସୁଶର୍ମାରାଜା ଭୁଲେ ଚେକିତାନରାଜା
ଯୁଦ୍ଧ କଲେ ଆନନ୍ଦ ଧରି କଳ ମଜ୍ଜା ।
ସୁଶର୍ମା ଦୁର୍ଯ୍ୟୋଧନ ପାଇଁ ପରିଶ୍ରମୀ
ହୋଇ ଶରମାନ ବର୍ଷିଲେ ହୋଇ ଭ୍ରମୀ ।
ଚେକିତାନ ମଧ୍ୟ ସେହିରୂପେ ଗରଜନ
ସୁଶର୍ମାକୁ କରିଲେ କାଣ୍ଡରେ ଆଚ୍ଛନ୍ନ ।
କୁମ୍ଭ ଶଳା ସିଂହ ପରାଯ୍ୟେ କରି ଗତି
ପ୍ରତିବିନ୍ଧ୍ୟ ଭୁଲେ ଯୁଝିବା କଲେ ମତି ।
ଯୁଧିଷ୍ଠିର ସୁତ ନ ସହି ସେ କଥାକୁ
ଇନ୍ଦ୍ର ପରି ବର୍ଷିଲେ କରି ବିଷମକୁ ।

ଶକୁନ ପୁତ୍ରବନ୍ଧ୍ୟ ଦେହେ କରି ଲକ୍ଷ
ବିନ୍ଧିଲେ ଶାଣିକର ଉତ୍ତମ ବିଶିଖ ।
ସହଦେବଙ୍କ ସୁତ ସୁଦକ୍ଷିଣ ରଣେ
କଲେ ବାଛି ବାଛି ବିନ୍ଧଣ ମାରଣ ।
ସହଦେବଙ୍କ ସୁତ ବିନ୍ଧିବା କାଣ୍ଡକୁ
ସୁଦକ୍ଷିଣର ଯେ ନ ଆଣିଲେ ମନକୁ ।
ଅର୍ଜୁନପୁଅ ଇରାବାନ ହୋଇ ତମୀ
ଶ୍ରୁତାୟୁଙ୍କୁ ଯୋଟିଲେ ହୋଇ ଯୁଦ୍ଧକାମୀ ।
ଶ୍ରୁତାୟୁଙ୍କର ଘୋଡ଼ାଯାକ ଅର୍ଜୁନ
ନନ୍ଦନ ଖାଣ୍ଡେ ଦେଲେ ଯମଙ୍କ ସଦନ ।
ଶ୍ରୁତାୟୁ ସେହିରୂପେ ପ୍ରହାରିଣ ଗଦା
ଇରାବନ୍ତ ରଥ ଘୋଡ଼ାଙ୍କୁ କଲେ ପଦା ।
ବିନ୍ଦ ଯେ ଅନୁବିନ୍ଦ ଦୁଇ ନୃପତିଏ
କୁନ୍ତିଭୋଜ ନୃପଙ୍କୁ ବିନ୍ଧିଲେ ଗୁଡ଼ାଏ ।
କୁନ୍ତିଭୋଜ ସଇନ ହେବାଠାରେ ଏକ
ଯୁଝିଲେ ଅନୁବିନ୍ଦ ବିନ୍ଦ ଗୁଡ଼ ଦକ ।
ଅନୁବିନ୍ଦ ଗଦାଟାଏ କରରେ ଧରି
ପିଟିଲେ କୁନ୍ତିଭୋଜ ଦେହେ ଅଣ୍ଟ କରି ।
କୁନ୍ତିଭୋଜ ଅନୁବିନ୍ଦଙ୍କର ଉପରେ
ବିନ୍ଧିଲେ କାଣ୍ଡ ବାଛି ଅତ୍ୟନ୍ତ କୋପରେ ।
କୁନ୍ତିଭୋଜଙ୍କର ପୁଏ ତ ପାଖେ ଥିଲେ
ବିନ୍ଦଙ୍କ ଦେହକୁ ସାୟକ ଲକ୍ଷ କଲେ ।
ବିନ୍ଦ ଧନୁର୍ଗୁଣରେ ସାୟକକୁ ଯୋଟି
ବିନ୍ଧିଲେ କ୍ରୋଧବଶେ ଆଖିକ ତରଟି ।
କେକୟ ପାଞ୍ଚେ ପାଞ୍ଚଗାନ୍ଧାରଙ୍କ କୁଲେ
ପରସ୍ପରେ ସଇନ୍ୟ ସେନ ଯୁଦ୍ଧ କଲେ ।
ଷାରବାତ୍ସ ଉତ୍ତର ଦୁହେଁ କଲେ ରଣ
ପ୍ରହାର କରି ଦିବ୍ୟ ମୁନସଖା ବାଣ ।
ଚେଦିଦେଶ ରାଜନ ଉଲୁକ ସଙ୍ଗରେ
ବିନ୍ଧିଲେ କାଣ୍ଡମାନ ବସାଇ ରୂପରେ ।
ଉଲୁକ ଉଲୁ ପରି ଥିବା କଥା ଗୁଡ଼
ସେହି ମଧ୍ୟ ବିନ୍ଧିଲେ ଶର ଦନ୍ତ ଭିଡ଼ ।
ଏରୂପେ ଶତସଂଖ୍ୟା ମହାରଥୀଗଣ
ଦ୍ୱନ୍ଦ୍ୱଯୁଦ୍ଧ ଆରମ୍ଭ କଲେ ନରରାଣ ।
ଛଣେଯାଏ ଯୁଦ୍ଧ ଦେଖିବା ସୁଖ ହେଲା
ଦେଖ ଦେଖୁ ମହାସଙ୍କୁଳେ ପ୍ରବର୍ତ୍ତିଲା ।
ଖାଷକ ହାଣ୍ଡି ଯେ ଘୋଡ଼ାଙ୍କ କୁଲେ ଘୋଡ଼ା
ଯୁଦ୍ଧ କଲେ ଯୁଦ୍ଧମନ୍ତ୍ରେ ହୋଇ ଛୁଡ଼ା ।
ପାଇକେ ପାଇକଙ୍କୁ ଡାକହାକ କରି
ପଞ୍ଝାପଞ୍ଝି ହୋଇଲେ ଫରିକ ଝଞ୍ଜାରି ।
ବେଦବୃଷି ସ୍ୱରଣ ସିଦ୍ଧ ହୋଇ ରୁଣ୍ଡ
ଦେଖିଲେଟି ମହାଭାରତ ଯୁଦ୍ଧଖଣ୍ଡ ।
ଏମେ ପୁଣ ଯୁଦ୍ଧ ହୁଅନ୍ତେ ବିପରୀତ
ନ ରହିଲା ଯୁଦ୍ଧରେ କରିଥିବା ସତ୍ୟ ।
ପଦାତି ଗୋଟିକରେ ଦଶୋଟି ଲେଖାଏଁ
ହେଡ଼ ଅମର୍ଯ୍ୟାଦାରେ ଯୁଝିଲେ ହେ ରାୟେ
ପିତା ପୁତ୍ରଙ୍କରେ ହୋଇଲେ ମରାମରି
ଗଡ଼ିଲେ ଭାଇ ଭାଇ ହୋଇ ଧରାଧରି ।
ମାମୁଁ କୁଲେ ଭଣଜାମାନେ କଲେ ଗୋଳ
ବସିବାକୁ ଆଖଣ୍ଡଳଙ୍କର ମଣ୍ଡଳ ।
ସଖାମାନେ ସଖାଙ୍କ ହୁହୁଁ ଗୁଡ଼ ଦେଇ
ଡକାଡକ ହେଇଲେ ଯୁଝିବାର ପାଇଁ ।
ପାଣ୍ଡୁସୁତେ ଯୁଦ୍ଧରେ ହୋଇଣ ଆବିଷ୍ଟ
ଯୁଦ୍ଧ କଲେ ଦେଖାଇ ଦେହବଳ ପୃଷ୍ଠ ।
ରଥକୁ ରଥ ଲଗାଲଗି ହେବା ଘାତେ
କେତେ ରଥ ଭାଜି ଲେଟିଲେ ମହୀଗତେ ।
ରଥଙ୍କରେ ରଥ ହୁଅନ୍ତେ ଜନ୍ତାଜନ୍ତ
କେତେ ରଥ ରହିଲା ଲାଗି କରି ସ୍ଥିତ ।
ହାତୀମାନେ ଦନ୍ତ ଆଡ଼କୁ କରି ଆଡ଼
ଆରମ୍ଭିଲେ ଯୁଦ୍ଧ ଆଗକୁ କାଢ଼ି ଗୋଡ଼ ।
ଘୋଡ଼ହସ୍ତେ ଘୋଡ଼ହସ୍ତକୁ ଲଗାଇଲେ
ଦେଖାଇ ବଳ ଝିଙ୍କାଝିଙ୍କି ଯୁଦ୍ଧ କଲେ ।
ନ ପାରି କେତେ ହାତୀ ପଳାଇ ପଛକୁ
ଚକଟି ପକାଇଲେ ପଦାତି ସୈନ୍ୟଙ୍କୁ ।
ମାହୁନ୍ତେ ଯେ ତାଙ୍କୁ ଅଙ୍କୁଶମାନ ମାରି
ଆଣନ୍ତି ପୁଣ ପଳାଅନ୍ତି ଉଡ଼ କରି ।
କେତେକ ଗଜଙ୍କର ଶସ୍ତ୍ରାଘାତେ ଗଜ—
କପାଳୁଁ ମୁକୁତା ପଡ଼ିଲା ମହାରାଜ ।
ଯେଉଁରୂପେ ଘନ କରକା ବୃଷ୍ଟି କରେ
ସେରୂପେ ଲୋକ ତା ମଣିଲେ ଆଲୋକରେ ।
ହୋଇଥିଲେ ହସ୍ତିରକ୍ଷା ଯେ ମହାପାଳ
ତା ଦେଖି ଶସ୍ତ୍ର ଧରି ଆରମ୍ଭିଲେ ଗୋଳ ।

ଢେଣ୍ଡାମାନେ ଟେକ ହାଣନ୍ତେ କରେ ଫଣ୍ଡା
ମଲେ ବୀରମାନେ ସେ ଘାତେ ଚଣ୍ଡା ଗଣ୍ଡା ।
ରକତରେ ବାଡ଼ିଟି ହୁଅନ୍ତେ ଆବୃତ
ସଜଳ ଘନ ବଦୂର୍ଯ୍ୟପ୍ରଭ କ କଲା ଜାତ ।
ବୀରମାନଙ୍କର ପାଇଣ ବାହୁଚଟା
କଲେ ଅସିବରେ ସବୁର ଦେହ କଟା ।
ରଥୀଙ୍କର ଶର ଯେ ହାତୀଙ୍କର ଦନ୍ତ
ସିପାଇଙ୍କ ବର୍ଚ୍ଛି ପାଇକ ଫଣ୍ଡାଘାତ ।
ନ ପାରି ସହି କୁରୁ ପାଣ୍ଡବଙ୍କ ସେନା
ହକଟେ ରଡ଼ି କଲେ ନୃପ ମହାମନା ।
ସିପାଇକ ସିମାଇ ହୋଇ ଯୋଟାଯୋଟି
ଖଣ୍ଡାମାନଙ୍କରେ ହୋଇଲେ ପିଟାପିଟି ।
କେତେ ତର୍ଛି ସିପାଇ ଫିଙ୍ଗିଣ ବରଛି
ଭାଜିଚଡ଼ା ସର୍ପର ଶୋଭା ଦେଲେ ବାଛି ।
ସିପାଇଏ ରଥରେ ଘୋଡ଼ାକୁ ଲଗାଇ
ଚଡ଼ି ଯାଇ ରଥୀଙ୍କି ହାଣିଲେ ଝଟାଇ ।
କେତେ ରଥୀ ସିପାଇମାନେ ଖଲକାଣ୍ଡ
ବଞ୍ଚଣ କରି ପକାଇଲେ ଦୁଇଖଣ୍ଡ ।
ହାତୀମାନେ ଯେ ରଥମାନଙ୍କୁ ଚକଟି
ପିବାଘାତେ ରଥୀଏ ହୋଇଲେ ଚେଙ୍କଟି ।
କେତେ ହାତୀ ଘୋଡ଼ାଙ୍କୁ ସିପାଇ କୂଳେ ଧରି
ଘୋଡ଼ହସ୍ତେ ବେଖଇଲେ ଟି ଯମପୁରୀ ।
ଏତେ ହାତୀ ସିପାଇଙ୍କଙ୍କ ଫଣ୍ଡାଘାତ
କୁମ୍ଭେ ପାଇଣ ଦମ୍ଭ ହାରିଲେ ତୁରିତ ।
ପ୍ରାସମାନଙ୍କର ପରସ କେତେ ହାତୀ
ପାଇ ପଞ୍ଚକୂଞ୍ଚା ଯୁଦ୍ଧରେ ବେଲେ ଅତି ।
ଆଶୀବିଷ ଦୃଷ୍ଟ ଯେକାଳେ ମାରଗଣ
ବାଛୁ ବାଛୁ ବନ୍ଧହେ ଭଲ ଯୋଦ୍ଧାଗଣ ।
ଖଣ୍ଡମନ୍ତ ଲୋକମାନଙ୍କ ଖଡ୍ଗଘାତେ
ବୀରଙ୍କ ବାହୁ ଛୁଡ଼ି ପଡ଼ିଲେ ହାରତେ ।
ମୃତ୍ତ୍ରକା କଙ୍କଣରେ ହୋଇଣ ଘାପ୍ରତ
ଭୁଜଗ ବେହପ୍ରଭ କଲେ ଯେ ଗୃପତ ।
ଖଡ୍ଗଫରିଧରି ଲୋକେ ଅଙ୍ଗାଅଙ୍ଗି
ହୋଇଣ ହଣାହଣି ହେଲେ ଯୁଦ୍ଧେ ପାଞ୍ଚି ।
କେତେ ହାତୀମାନେ ରଥକୁ ଶୋଡ଼ ହସ୍ତେ
ଝିଙ୍କି ନେଲେ ତ ଦେଖୁଥିଲେ ଟି ସମସ୍ତେ
ତଥ ଘୋଡ଼ା ହାତୀ ଯେ କାଣ୍ଡ ଫଣ୍ଡା ଖଡ୍ଗ
ହାତ ପାଇ ଯୋଦ୍ଧାଏ ଗଲେ ଯମଗତ ।
ଦେଖି କେ କଟଠାରୁ ଯାଉଅଛୁ ଛୁଡ଼ି
ଘୋଡ଼ା ହୁଛୁ ଡକା ମସ୍ତରେ ସେହୁ ପଡ଼ି ।
ତା'ର ଅନ୍ତ୍ରପୃଷ୍ଠା ଦଶନ୍ତେ ବାହାରିକୁ
ମଲ୍ଲ ବୋଲି ବଳଲେ କହେ ବଚନକୁ ।
କା'ର ଭୋଗୀ ଭୋଗ ପରିପ୍ରେ ବାହୁହୁଇ
ଛୁଡ଼ିଯିବା ସକାଶୁଁ ଚଳି ନ ପାରଇ ।
କାହାର କପାଳରେ ବାଜିବାରୁ କାଣ୍ଡ
ହୋଇଲେ ସୁନାମୟ ଦିଶୁଛି ବ୍ରହ୍ମାଣ୍ଡ
କାହାର ପାଟି ହୋଇ ଯାନ୍ତେ ପାଟ ପାଟ
ପାଣି ଦିଅ ବୋଲି ଲୋକଙ୍କୁ କରେ ସ୍ତୁଟି ।
ଏରୂପେ ଭୂମି ଲୋକେ ହୋଇ ଯୁଦ୍ଧେ କ୍ଳେଶୀ
ବୋଇଲେ ଦୁର୍ଯ୍ୟୋଧନ ଅଟେ ବଡ଼ ଦୋଷୀ
ପାଣ୍ଡବଙ୍କୁ କୁଞ୍ଚା ନ ଦେଇ କରି ଭାଗ
ଆମ୍ଭଙ୍କୁ ମାରଇଲା ଡାକ ଆଣି ଆଗ ।
କେତେ ଯୋଦ୍ଧା ଶୁଣି ବୋଲନ୍ତି ଗୁଡ଼ ଶୋକ
ଯୁଦ୍ଧେ ମଲେ ଯାଇଁ ଦେଖିବା ସୁରଲୋକ ।
ଶୂରପଣେଟି ରଣ୍ଡି ଯିବାଠାରେ ଛୁଡ଼ି
ଛୁଡ଼ିଲେ ପାଣ ଫଣ୍ଡା କରଦେଶେ ଭିଡ଼ି ।
କେତେକ ଲୋକ ପରସ୍ପରେ ଚୂର୍ଣ୍ଣାକୂର୍ଣ୍ଣି
ହୋଇଣ ବୋଇଲେ ଯୁଝିବା ଭଲ ଭଲ ।
କେତେ ଲୋକ ଭୂରୁ ଲଗାଇ ଭ୍ରୂକୁଟାରେ
ଧାଇଁଲେ ଭୂମି ସ୍ୱତ ହୋଇବା ଚିନ୍ତାରେ ।
ରଥୀଏ ବିରତ ହୁଅନ୍ତେ ହାତୀପନ୍ତ
ଚକଟି ପକାନ୍ତେ ସେ କଲେ ରକ୍ତବାନ୍ତ ।
ଏରୂପେ ବୀରଚୟ ହୁଅନ୍ତେ ରାଜନ
ଚାଡ଼ିଲେ ଡରେ ଡକା ମେଲିଣ ବଦନ ।
ପାଞ୍ଚୋଟି ଚାମ୍ପଯୁକ୍ତ ରୂପାତାଳଧ୍ୱଜ
ଥିବା ରଥେ ବସିଣ ଭୀଷ୍ମ ବୀରରାଜ ।
କୁରୁସୈନ୍ୟ-ସିନ୍ଧୁରେ ଚନ୍ଦ୍ରମା ପରିପ୍ରେ
ଦିଶିଲେ ଜାଣ୍ଡନରଙ୍କେ ନଣ୍ଡି କାପ୍ରେ ।
ସେନ୍ୟକାଳକୁ ଡେଜ ଛ'ଡ଼ ହୋଇଛୁ
ଦେଖି କଣ ଭୀଷ୍ମଙ୍କୁ ଭୁମ୍ଭ ଜ୍ୟେଷ୍ଠଦାସ ।
ଦୁର୍ମୁଖ କୃତବର୍ମା କୃପ ଶଲ୍ୟ ତାକ
ବୋଇଲେ ଜଗ ଯାଇ ଭୀଷ୍ମ ବୁଢ଼ାଟିକ ।

କୃମ୍ପ ପୁଅ ବୋଲେ ସେ ଭୀଷ୍ମଙ୍କୁ ଜଗିଲେ
ଭୀଷ୍ମ ତାଙ୍କୁ ପାଇଣ ତେଜରେ ଜଳିଲେ ।
ଯେ ରୂପେ ମଧ୍ୟାହ୍ନ ସମୟେ ରବିଦେବ
ସେରୂପେ ଦିଶିଲା ଭୀଷ୍ମଙ୍କ ପ୍ରଭାବ ।
ଚେଦି କାଶୀ କରୁଷ ପାଞ୍ଚାଳ ସୈନ୍ୟରେ
ଭୀଷ୍ମ ଦୃଶ୍ୟ ହୋଇଲେ ଏକା ନୟନରେ ।
ଭୀଷ୍ମଙ୍କ ଭଲ୍ଲକାଣ୍ଡ ଧାଳେ ଯୋଦ୍ଧା ଦୃଷ୍ଟି
ମୁଣ୍ଡପଦ୍ମ ହୋଇଲା ମହୀଂଦନେ ବୃଷ୍ଟି ।
ଭୀଷ୍ମଙ୍କର କାଣ୍ଡରେ ପାଇ ଲୋକେ ପୀଡ଼ା
ପଳାଇଲେ ପଛକୁ ଛାଡ଼ି ଯୁଦ୍ଧକ୍ରୀଡ଼ା ।
ଅଭିମନ୍ୟୁ ତାହା ଦେଖି ସହି ନ ପାରିଲେ
ଭୀଷ୍ମଙ୍କ ରଥଠାକୁ ରଥ ବୁହାଇଲେ ।
ଛତିଶକାଣ୍ଡମାନ ଧନୁ ମଧ୍ୟେ ଯୋଚି
ଭୀଷ୍ମଙ୍କ ଉପରକୁ ଦେଲେ କ୍ରୋଧେ ମୁଞ୍ଚି ।
କ୍ଷେଣ କାଣ୍ଡ ଟିଏ ଭୀଷ୍ମଙ୍କ ଧ୍ୱଜକୁ
ଯୁଝିଲେ ଅଭିମନ୍ୟୁ କରି ବିକ୍ରମକୁ ।
କୃତବର୍ମା ଟଣ୍ଡିକ ଦେଖାଇଣ କାଣ୍ଡେ
କ୍ଷେଣ ଅଭିମନ୍ୟୁ ଯୁଦ୍ଧଦାଣ୍ଡେ ବୃଣ୍ଡେ ।
ଶଲ୍ୟଙ୍କୁ ବାଛି କରି ପାଞ୍ଚ ମାରଗଣ
କ୍ଷେପିଲେ ବଜାଇ ଦେଖାଇ ସାହସଣ ।
ଦୁର୍ମୁଖ ସାରଥିର ଭଲ୍ଲକାଣ୍ଡେ ପ୍ରାଣ
ନେନ ଘଲେ ସୁଭଦ୍ରା-ଦେବୀଙ୍କ ନନ୍ଦନ ।
କୃପାଚାର୍ଯ୍ୟଙ୍କର ଧ୍ୱଜ ଯେ ଧନୁ ଦୁଇ
ଭଲ୍ଲକାଣ୍ଡେ ଛେଦିଲେ ଆର୍ଜୁନି କ୍ରୋଧ ବହି ।
ଏରୂପେ ଏକା ହୋଇ ଛାଡ଼ି ମନୁଁ ଶଙ୍କା
ଯୁଦ୍ଧ କଲେ ଅର୍ଜୁନସୁତ ରଣରଙ୍କା ।
ଅଭିମନ୍ୟୁ ଲାଘବ ଦେଖି ଦେବତାଏ
ବୋଇଲେ ଧନ୍ୟ ଧନ୍ୟ ଅଟଇ ପିଲା ଏ ।
ଭୀଷ୍ମ ଆଦି ମହାରଥୀଏ ଅଭିମନ୍ୟୁ
ବିନ୍ଧିବାର ଦେଖିଣ କମ୍ପାଇଲେ ତନୁ ।
ମନେ କଲେ ଅର୍ଜୁନ ପରାୟେ ଏ ବଳୀ
ଅସାବଧାନ ହେଲେ ଦେବ ନଷ୍ଟେ ଗିଳି ।
ଅଭିମନ୍ୟୁଙ୍କ ଧନୁଘୋଷ୍ଟି ଖାଣ୍ଡୀବ
ଶବଦକୁ ସରି ହେଲା ହେ ନରଦେବ ।
ଅଲାତଚକ୍ର ପରି ବୁଲିଲା ଅନ୍ତରେ
ଛିଦ୍ର ତା'ର କେ ନ ଦେଖିଲେ ନିରନ୍ତରେ ।

ତା ଦେଖି ଭୀଷ୍ମଦେବ ନବ କାଣ୍ଡ ବେଗେ
ବିନ୍ଧି ହାତ ନେଇ ଲଢ଼ିଲେ ନଣଦେଶେ ।
ତିନିକାଣ୍ଡେ ଅଭିମନ୍ୟୁଙ୍କ ଧ୍ୱଜ କାଟି
ନେଲେ ତିନି କାଣ୍ଡରେ ସାରଥି ପ୍ରାଣଟି ।
କୃତବର୍ମା କୃପ ଯେ ଶଲ୍ୟ ସାରସଣ
ଅଭିମନ୍ୟୁ ଉପରେ ବନ୍ଧିଲେଟି ବାଣ ।
ମହାରଥୀମାନଙ୍କେ ହୁଅନ୍ତେ ଆବୃତ
ଅର୍ଜୁନତନୁଜ ବନ୍ଧିଲେ ଶରବ୍ରାତ ।
ନିଜ ଶରରେ ପର ଶରକୁ ନିବାରି
ଭୀଷ୍ମଙ୍କୁ ଯୁଦ୍ଧ କଲେ ଧନୁକୁ ଓଟାରି ।
ଭୀଷ୍ମ କ୍ରୋଧ ହୋଇ ବନ୍ଧିଲେ ଯେତେ କାଣ୍ଡ
ଅରଜୁନ ପୁଅ ତା କଲା ଦୁଇଖଣ୍ଡ ।
ଭୀଷ୍ମଙ୍କ ଧ୍ୱଜକୁ ନ' କାଣ୍ଡେ ଅଭିମନ୍ୟୁ
କାଟନ୍ତେ କମ୍ପ ଘଲା ଯୋଦ୍ଧାଙ୍କର ତନୁ ।
ଭୀଷ୍ମଙ୍କ ସୁନାମଣ୍ଡା ତାଳଧ୍ୱଜ ଛୁଡ଼ି
ଅଭିମନ୍ୟୁ କାଣ୍ଡେ ମହୀରେ ଗଲା ପଡ଼ି ।
ଅଭିମନ୍ୟୁ କାଣ୍ଡେ ଭୀଷ୍ମଙ୍କ ଧ୍ୱଜ ନାଶ
ଦେଖି ଭୀମ ଗର୍ଜିଲେ ହୋଇଣ ହରଷ ।
ଭୀଷ୍ମ ଢବ ଅସ୍ତ୍ରକୁ ପରକାଶ କରି
ଅଭିମନ୍ୟୁ ସଙ୍ଗତେ ହେଲେ ମସମରି ।
ସହସ୍ରେ କାଣ୍ଡେ ଭୀଷ୍ମ ଅଭିମନ୍ୟୁ ପିଣ୍ଡ
ଛାଇ ଦେଲେ କମ୍ପାଇ କରର କୋଦଣ୍ଡ ।
ରଖିବାପାଇଁ ଅଭିମନ୍ୟୁଙ୍କୁ ବିରାଟ
ଧୃଷ୍ଟଦ୍ୟୁମ୍ନ ଭୀମ ସାତ୍ୟକି ଘେନ ଥାଟ ।
ପାଞ୍ଚ କେକୟଙ୍କର ସଙ୍ଗତରେ ବେଗେ
ଯୁଦ୍ଧ କଲେ ଭୀଷ୍ମ ବୁଢ଼ାକୁ ଅତି ରାଗେ ।
ଭୀଷ୍ମ ତା ନ ସହି ସାତ୍ୟକି ଧୃଷ୍ଟଦ୍ୟୁମ୍ନ
ଦୁହିଁଙ୍କି ନବ ତିନି ବିନ୍ଧିଲେ ମାଗଣ ।
କ୍ଷୁର କାଣ୍ଡେ ଭୀମଙ୍କ ଧ୍ୱଜ ସାରମଣି
ଭୀଷ୍ମ ଦେଖୁ ଦେଖୁ କାଟିଲେ ସେହିକ୍ଷଣି ।
ସ୍ୱର୍ଣ୍ଣମୟ ସିଂହଧ୍ୱଜ ତ ଭୀମଙ୍କର
ଆଗେ କଲା ମହୀ ସେ ପାଇ ଭୀଷ୍ମଶର ।
ଭୀମ ତାହା ନ ସହି ଭୀଷ୍ମେ ତିନିକାଣ୍ଡ
ବନ୍ଧିଲେ କମ୍ପାଇଣ କରର କୋଦଣ୍ଡ ।
କୃପଙ୍କୁ କାଣ୍ଡେ କୃତବର୍ମାଙ୍କୁ ଆଠ ଶର
ପୁଣି ବେଗ ବହି ପେଷିଲେ ବୃକୋଦର ।

ବିରାଟଙ୍କ ସୁତ ଉତ୍ତର ହାତୀ ଚଢ଼ି
ଶଲ୍ୟ ସଙ୍ଗେ ଯୁଝିଲେ ଧନୁ କରେ ଭିଡ଼ି ।
ଶଲ୍ୟ ତାଙ୍କ ହାତୀକି ମାରଗଣ ଗଣ
ନିବାରଣ ପାଇଁ ବିନ୍ଧିଲେ ବାଛି ଜାଣ ।
ସେ ହାତୀ ଶଲ୍ୟଙ୍କର କାଣ୍ଡେ ପାଇ ପୀଡ଼ା
ମନ୍ଥି ପକାଇଲା ଶଲ୍ୟଙ୍କ ସ୍ୱରଘୋଡ଼ା ।
ଶଲ୍ୟ ମହାବଳୀ ଯେ ଅଶ୍ୱ ହତ ଦେଖି
ଆୟସିଶକ୍ତିକି ଫିଙ୍ଗିଲେ ହୋଇ ଦୁଃଖୀ ।
ସେ ଶକତି ସର୍ପର ପରାଏ ଗମିଲା
ଉତ୍ତର ହୃଦ-ବକ୍ଷେ ଯାଇଣ ପଶିଲା ।
ତହୁଁ ସେ ଉତ୍ତର କବଚ ପ୍ରାଣ ଛାଡ଼ି
ମହୀତଳେ ପଡ଼ି ବେଢ଼ାଏ ଗଲେ ଗଡ଼ି ।
ଶଲ୍ୟ ସେହିକ୍ଷଣି ପ୍ରହାର କରି ଖଣ୍ଡା
କାଟି ପକାଇଲେ ଉତ୍ତର ହାତୀ ଶୁଣ୍ଢା ।
ଯାଆନ୍ତେ ଶୁଣ୍ଢା ଛାଡ଼ି ହାତୀ କରି ରଡ଼ି
ଶିଘ୍ର ପ୍ରାଣଟିକି ଦେହରୁ ଦେଲା ଛାଡ଼ି ।
ଏରୂପେ ପରାକ୍ରମ କରି ଶଲ୍ୟ ରଥୀ
କୃତବର୍ମା ରଥେ ବସିଲେ ହୋଇ ବ୍ୟଥୀ ।
ଉତ୍ତର ଭାଇ ମୃତ୍ୟୁ ଦେଖି କରି ଶ୍ୱେତ
ମନେ ଭଲ ବେଣିବ ଶଲ୍ୟର ଆଘାତ ।
ମହତ ରୂପ କରେ ଓଁକାର ଟଙ୍କାର
ଶଲ୍ୟଠାକୁ ଧାଇଁଲେ ଜଣ ଠିଆ କରି ।
ଶ୍ୱେତ ଆସିବାର ଦେଖିଣ ରଥୀବୃନ୍ଦ
ଭୀଷ୍ମର ଆଗୁଳିଲେ କରିବାକୁ ଦ୍ୱନ୍ଦ୍ୱ ।
ଯେରୂପେ ମୃତ୍ୟୁ ଦନ୍ତେ ଯାନ୍ତି ପ୍ରାଣୀ ଭଳି
ସେରୂପେ ଶ୍ୱେତ ଆଗେ ପଶିଲେ ଭୀଷ୍ମ ବଳୀ
ଶଲ୍ୟଙ୍କ ରକ୍ଷା ପାଇଁ ବଳ ରୁକ୍ମରଥ
ବୃହଦ୍ବଳ ଜୟତ୍ସେନ ଯେ ଜୟଦ୍ରଥ ।
ଅନୁବିନ୍ଦ ସୁଦକ୍ଷିଣ ଏ ସାତ ରଥୀ
ଧାଇଁଲେ ଶ୍ୱେତ ବଳ ଭେଦିବାକୁ ଟି ମନ୍ଥି ।
ଧନୁ-ଘନ ମଧ୍ୟରୁ ଶର-ବୃଷ୍ଟି-ଧାର
ବରଷା କଲେ ନେଇ ଶ୍ୱେତ-ନଗଶିର ।
ଉତ୍ତମ କାଣ୍ଡକରେ ସାତଙ୍କର ଧନୁ
ଚଉଦଖଣ୍ଡ କଲା ବିରାଟଙ୍କ ସୁନୁ ।
ପୁଣି ସେ ସାତ ସାତ ଧନୁକୁ ଧଇଲେ
ନିମିଷକେ ଶରବୃଷ୍ଟି କି ସରଜିଲେ ।

ପୁଣି ପୂର୍ବବ ପରି ଶ୍ୱେତ ଲକ୍ଷଣରେ
ନ ରଖିଲେ ସ୍ୱପଟି ସେମାନଙ୍କ କରେ ।
ଯାନ୍ତେ ଧନୁ ଛାଡ଼ି ଭୀଷ୍ମର ରଥୀ ସାତେ
ଶକ୍ତି ସାତଘୋଟା ଧଇଲେ ବାଛି ହସ୍ତେ ।
ଏକାବେଳକରେ ସେ ସାତେ ଗରଜିଲେ
ଶ୍ୱେତଙ୍କର ରଥକୁ ଉଦ୍ଦେଶି ଫିଙ୍ଗିଲେ ।
ସେ ସାତ ଶକତିକି ଶ୍ୱେତ ନେତ୍ରେ ଦେଖି
କାଟିଣ ପକାଇଲା ହୋଇ କିଛୁ ଦୁଃଖୀ ।
ଏହା କରି ସାରି ଯେ ଶ୍ୱେତ ସାରଗଣ
ରୁକ୍ମରଥୀ ଉପରେ ବିନ୍ଧିଲେ ମାର୍ଗଣ ।
ଶ୍ୱେତଙ୍କ ବାଣେ ରୁକ୍ମରଥୀଙ୍କ ମର୍ମରେ
ବାଜନ୍ତେ ରୁକ୍ମରଥୀ ପଡ଼ିଲେ ରଥରେ ।
ରୁକ୍ମରଥୀ ମୋହ ସାରଥୀ ନେତ୍ରେ ହେରି
ସେଠାରୁ ରଥ ନେଇଗଲା ବାହ୍ୟ କରି ।
ବାକି ଛଅ ରଥୀଙ୍କ ଧ୍ୱଜ ଶ୍ୱେତ କାଣ୍ଡେ
କାଟି ପକାଇଲା ତ କରି ଦୁଇଖଣ୍ଡେ ।
ଶ୍ୱେତ ତାଙ୍କ ସାରଥି ଅଶ୍ୱେ ପୀଡ଼ାଦେଇ
ଶଲ୍ୟ ରଥ ଆଗେ ରଖିଲେ ରଥ ନେଇ ।
ଶଲ୍ୟଙ୍କଠାକୁ ଶ୍ୱେତ ଯିବା ଦେଖି ସୈନ୍ୟ
ଜନେ ମନେ କଲେ ଏ ହୋଇଲେ ନିଧନ ।
ଭୀଷ୍ମ ପ୍ରଥ ଖାଷ୍ଟଙ୍କୁ ଆଗରେ ଚଳାଇ
ଶ୍ୱେତଙ୍କୁ ଯୁଝିବାକୁ ଗଲେ ତୋଷ ହୋଇ ।
ଶ୍ୱେତ ମୃତ୍ୟୁ ଦେବତା ମୁଖରୁ ଶଲ୍ୟଙ୍କୁ
ଝଞ୍ଜାଇବାକୁ କଲେ ମନେ ବସ୍ୱରକୁ ।
ସେକାଳେ କୁରୁ ପାଣ୍ଡୁ ସୈନ୍ୟେ ଯେଉଁ ମେଳ
ହେଲା ତା ନ କହି ପାରିବ ଆଦମୂଳ ।
ଅଭିମନ୍ୟୁ ଭୀମ ସାତ୍ୟକି ଚେଦ ମତ୍ସ୍ୟ—
ମାନଙ୍କୁ ଉଦ୍ଦେଶିଣ ଶାନ୍ତନୁଙ୍କ ବତ୍ସ ।
ସାୟକ ସର୍ଜନା କରନ୍ତେ ଅତି ବେଗେ
ଗମିଲେ ସେହୁରେ ଆକାଶ ମାର୍ଗେ ।
ଧୃତରାଷ୍ଟ୍ର ବୋଇଲେ ଶ୍ୱେତ ଶଲ୍ୟଠାକୁ
ବାହାରିଲେ ରଥରେ ଯୁଦ୍ଧ କରିବାକୁ ।
କୁରୁ ପାଣ୍ଡବ ସେନା ରଥୀଏ କି କଲେ
ଏହା ମୋର ଶୁଣେ କହିବା ହେଉ ଭଲେ ।
ଖାଷ୍ଟ ଶଲ୍ୟ ରକ୍ଷା ପାଇଁକି ତୋଷ ହୋଇ
ଆସି କି କଲେ ତାହା କହ ତ ବତାଇ ।

ନିଷ୍ପ୍ରଭ ହୋଇଲେ ହେ ସପ୍ତସଂଖ୍ୟା ରଥୀ
ଭୀଷ୍ମଙ୍କ ଯିବା ଦେଖି ମନେ ହୋଇ ବ୍ୟଥୀ ।
ଶ୍ୱେତଙ୍କୁ ରଖିବାକୁ ଶିଖଣ୍ଡୀକ ସେନ
ଧାଇଁଲେ ଭୀଷ୍ମଠାକୁ ହୋଇ ଅଭିମାନୀ ।
ଭୀଷ୍ମ ତାହା ଦେଖିଣ ବର୍ଷି ମାରଗଣ
ରଥୀମାନଙ୍କର ଯେ ସେ ନେଲେ ପରାଣ ।
କାର୍ମୁକ ଧ୍ୱଜ ଛତ୍ର କୁଟିଲେ ମୁଣ୍ଡରାଜ
କାଟିଲେ ଭୀଷ୍ମ ଯୁଦ୍ଧରସ-ଜଳେ ମଜ୍ଜି ।
ସିନ୍ଧୁରକର ମସ୍ତଦେଶରୁ ସ୍ତବକ
ଛଡ଼ାଇ ଦେଲା ଏକା ଭୀଷ୍ମଙ୍କର ବାଣ ।
ସବୁବେଳେ ଭୀଷ୍ମ ବର୍ଷନ୍ତେ ଶରଗଣ
ଛାଇ ହୋଇଣଗଲା ଆକାଶଅଙ୍ଗଣ ।
ବଜ୍ରରେ ଗିରିବର ହତ ହେଲା ପ୍ରାୟେ
ପଡ଼ିଲେ ହସ୍ତୀଏ ଭୀଷ୍ମଙ୍କ ଶରଘାଏ ।
ରଥୀଏ ରଥମାନ କରି ମିଶାମିଶି
ଯୁଦ୍ଧ ଆରମ୍ଭିଲେ ଧନୁକୁ କରେ କଷି ।
କାଣ୍ଡଘାଏ ଘୋଡ଼ାଏ କରି ମୂର୍ଚ୍ଛା ମୋଡ଼ା
ରଥ ଧରି ପଛକୁ ପକାଇଲେ ଛଡ଼ା ।
କେତେକ ରଥୀ ଧନୁ ଧରିଣ ରଥରେ
ପଡ଼ିଲେ ମରି ପଡ଼ି ଶରଙ୍କ ଘାତରେ ।
ଶତ ଶତ ଯୋଦ୍ଧା କରନ୍ତ ସ୍ୱପଗଣ
ଦଉଡ଼ିବାରେ ପୂରିଲା ସେ ଯୁଦ୍ଧ ଅଙ୍ଗଣ ।
ଧାଇଁବା ପାଇକେ ସେ ଧନୁଗୁଣେ ଛନ୍ଦ
ହୋଇ ତଳେ ପଡ଼ିଲେ କରମକୁ ନିନ୍ଦ ।
ସେହିମାନଙ୍କୁ ହାତୀ ଘୋଡ଼ା ଉଟ ଦଳ
ଚକଟି ଦେଲେ ଦେଖାଇଣ ପାଦବଳ ।
ରଥୀମାନଙ୍କର କାଣ୍ଡଘାତକୁ ପାଇ
ଗିରିଶୃଙ୍ଗ ପରି ପଡ଼ିଲେ ହାତୀ ଶୋଇ ।
ପିଆଇ ଧୂଆଁ ଘୋଡ଼ା ନେଉଥିଲେ
ବାଜନ୍ତେ କାଣ୍ଡ ଖଣ୍ଡି ଧରିଣ ଅଡ଼ିଲେ ।
ଭୀଷ୍ମଙ୍କ ଧନୁରୁ ବାହାରି ବାଣଗଣ
ଚଳିଣ ଦୂରୁ ଦୂରୁ କଷଇଲା ପ୍ରାଣ ।
ସେହି ଯୁଦ୍ଧରେ ପିତା ପୁତ୍ରେ ଜଣାଜଣି
ନୋହି ହେଲେ ଖଣ୍ଡା କାତରେ ହଣାହଣି ।
କାଣ୍ଡମାନ ବାଜିଣ ଯୁଗ ଚକ୍ର ଛାଡ଼ି
ଯାଆନ୍ତେ କେତେ ରଥ ପଡ଼ିଲେ ଅଜାଡ଼ ।

ସାରଥୀ କୁଟିଲେ ଘୋଡ଼ା ମରନ୍ତେ ରଥୀ ପ୍ରାଣ
ଘେନି ଗଲା ଭୀଷ୍ମ ହାତରୁ ଫିଟି ବାଣ ।
ରଥଭଙ୍ଗା ଦେଖିଣ କେତେ ରଥୀପନ୍ତ
ପଳାଇଲେ ଭୟେଟି ଧରି ନିଜ ମତ ।
ହାତୀଙ୍କ କପାଳେ ବାଜନ୍ତେ ଭୀଷ୍ମ ବାଣ
ପଡ଼ିଲେ ଧସି ହୋଇ କୁମ୍ଭେ ମୋତିଗଣ ।
ଏରୂପେ ଭୀଷ୍ମଙ୍କର ପରାକ୍ରମ ଦେଖି
ଶ୍ୱେତ ଶରେ କୁରୁମାନଙ୍କୁ କଲେ ଦୁଃଖୀ ।
ସହସ୍ର ସଂଖ୍ୟା ରାଜପୁତ୍ର ରଥୀଗଣ
ମସ୍ତକକୁ କାଟିଲା ଯାଇ ଶ୍ୱେତ ବାଣ ।
ଶ୍ୱେତ କାଣ୍ଡେ ପତାକା ଧ୍ୱଜ ଛତ୍ରପନ୍ତ
ଛାଡ଼ି ଯୁଦ୍ଧଭୂମିକି ଶୋଭା କଲା ଅନ୍ତ ।
ବାଜନ୍ତେ ହାତୀଗଣେ ଶ୍ୱେତ ବାଣମାନ
ଛାଡ଼ିଦେଲେ ପ୍ରାଣ ସେ ହୋଇଣ ବିକଳ ।
ଆହେ ନୃପ ଶ୍ୱେତର ପରାକ୍ରମ ଦେଖି
ଲଭିଲୁ ମୁଁ ସୈନ୍ୟର ପଛେ ବୁଜି ଆଖି ।
ଶ୍ୱେତ କାଣ୍ଡ ନ ପାଇବା ସ୍ଥାନରେ ରହି
ଭୀଷ୍ମଙ୍କ ବଳକୁ ରହିଲୁ ସର୍ବେ ଚାହିଁ ।
ଏକାକୀ ଭୀଷ୍ମ ମେରୁ ପରାୟେ ଅଟଳ
ହୋଇ ଯୁଦ୍ଧଭୂମିରେ ହୋଇଲେ ପ୍ରବଳ ।
ରଥ-ଆକାଶେ ଭୀଷ୍ମ-ସୂର୍ଯ୍ୟ ଶରଘନ
ପରିଧିରୁ ଶର-କିରଣେ ଅବଚ୍ଛିନ୍ନ ।
ବାହାରି ପାଣ୍ଡବଙ୍କ ସଇନ ଲୋକଙ୍କୁ
ତାପ ଦେଇଣ ମୋଡ଼ାଇଲେ ଟି ମୁଖକୁ ।
ଅସୁରଙ୍କୁ ଇନ୍ଦ୍ର ଯେଉଁରୂପେ ମାରନ୍ତି
ପାଣ୍ଡବ ସେନାଯାକ ପ୍ରତାପଙ୍କ ନାତି ।
ସେହିରୂପେ ମାଇଲେ ବର୍ଷି ମାରଗଣ
ଜାଣ ମୋ ଜନ୍ମବାରୁ ହସ୍ତିନା ନୃପଣ ।
କୁମ୍ଭ ପୁଅ ଛତରେ ଭୀଷ୍ମ ମହାରଥୀ
ଥାଇ ପାଣ୍ଡୁ ସଇନଯାକ ଦେଲେ ମନ୍ଥି ।
ଶ୍ୱେତର ବିକ୍ରମକୁ ଦେଖି ପିତାମହ
ଦେବଦତ୍ତ ହୃଦରେ ଧରି ଅତିକୋହ ।
ଶ୍ୱେତ ରଥେ ନେଇ ରଥକୁ ମିଶାଇଲେ
ମହତ ଶରଜାଳ ସରଜନା କଲେ ।
ଶ୍ୱେତ ସେହିରୂପେ ବର୍ଷିଣ ଶରମାଳୀ
ଛାଇଦେଲେଟି ପିତାମହ ଭୀଷ୍ମ ବଳୀ ।

ବୃଷଭ ପ୍ରାଏ ଗର୍ଜି ଶର-ବର୍ଷଣରେ
ମତ୍ତମତ୍ତ ହେଲେ ନ ଡରି ମରଣରେ ।
ଦୁହେଁ ଧନୁର୍ବିଦ୍ୟାରେ ଅତ୍ୟନ୍ତ ତ ଜଣା
ଅସ୍ତ୍ରଯୁଦ୍ଧ କରିଲେ ନୋହୁ କେହୁ ଊଣା ।
ନ ଥିଲେ ଶ୍ୱେତ ଯେ ହନନ୍ତେ ଭୀଷ୍ମ ରଥୀ
ପାଣ୍ଡବ ସେନାଯାକ ହଅନ୍ତେ ଯେ ମଥି ।
ଶ୍ୱେତଙ୍କରେ ଭୀଷ୍ମ ଟି ହୁଅନ୍ତେ ବିମୁଖ
କୁନ୍ତ ପୁଅ ତଳକୁ ପୋତିଦେଲେ ମୁଖ ।
ପାଣ୍ଡୁସୁତେ ତାହା ଦେଖିଣ ସୁଖୀ ହେଲେ
ଶ୍ୱେତ ଆମ୍ଭ ମହତ୍ତ୍ୱ ରଖିବ ବୋଇଲେ ।
ଦୁର୍ଯ୍ୟୋଧନରାଜା କ୍ରୋଧରେ ଟାଣିଚୁଣି
ହୋଇଣ ଯୁଦ୍ଧ କରି ଗଲେ ସେହିକ୍ଷଣି ।
ଦୁର୍ମୁଖ କୃତବର୍ମା କୃପ ଶଲ୍ୟରଥୀ
କୁନ୍ତ ପୁଅ ବୋଲନ୍ତର ହେଲେ ଭୀଷ୍ମ ସାଥୀ
ଦୁର୍ଯ୍ୟୋଧନ ଆଦି ରଥୀଙ୍କର ବିକ୍ରମ
ଦେଖିଣ ଶ୍ୱେତ ମହାରଥୀ ବଳି ତମ ।
ଭୀଷ୍ମଙ୍କୁ ଛାଡ଼ି ଦେଇ ଶର ଶ୍ରେଣୀମୁଞ୍ଚି
ଧାଇଁଲା ଯୁଦ୍ଧ କରିବାକୁ ମନେ ପାଞ୍ଚି ।
ଯେ ରୂପେ ମହାବାତେ ଭାଙ୍ଗେ ବୃକ୍ଷଗଣ
ସେରୂପେ ସେନାପ୍ରାଣ ନେଲା ଶ୍ୱେତ ବାଣ ।
ଏରୂପେ କୌରବରଥୀଙ୍କି ଯୁଦ୍ଧେ ମୋଡ଼ି
ଦେଇ ଭୀଷ୍ମ ଆଗେ ସେ ପୁଣି ହେଲେ ଛିଡ଼ା
ବୃତ୍ରାସୁର ବାସବ ପରି ଦୁଇ ଶୂର
ସମର କଲେ ବାଞ୍ଛା କରି ସ୍ୱର୍ଗପୁର ।
ସାତୋଟି କାଣ୍ଡ ତାହୁ ବଶିଷ୍ଠକୁମର
ବିନ୍ଧିଲା ସେନମାକୁ ଜୀବନ ଭୀଷ୍ମର ।
ଭୀଷ୍ମ ତାଙ୍କର ସାତକାଣ୍ଡକୁ ଗଣନା
ନ କରି ନବାରିଲେ ନୋହିଣ ବିମନା ।
ଶ୍ୱେତ ତା ନ ସହି କୋଡ଼ିଏ ପାଞ୍ଚକାଣ୍ଡ
ବିନ୍ଧିଲେ କମ୍ପାଇଣ କରର କୋଦଣ୍ଡ ।
ଭୀଷ୍ମ ତାହା ଦେଖିଣ ଦଶକାଣ୍ଡ ବିନ୍ଧି
ଶ୍ୱେତଙ୍କର ଗଣ୍ଡ ଯାକକୁ ଦେଲେ ଛନ୍ଦି ।
ତେବେ ହେଲେ ଶ୍ୱେତ ନ କରି କିଛି ଭୟ
ଯୁଦ୍ଧ କଲା ନେବାକୁ ଯୁଦ୍ଧରେ ବିଜୟ ।
କ୍ରୋଧ ହୋଇ କ୍ଷତ୍ରିୟନନ୍ଦନ ବୈରତି
ଦେଇ କରି ଏଗଟି ଆଖିଜ ଭଗତି ।

ଆଣି କରି ଭୀଷଣ ଧନୁର ମଧ୍ୟଟି
ବିନ୍ଧିଲା ଶର ଓଷ୍ଠପ୍ରାନ୍ତ ଜଳେ ଭ୍ରୂଟି ।
ଦଶକାଣ୍ଡେ ଏଗାର ଖଣ୍ଡ କରି ଧନୁ
କାଟିଲା ଭୀଷ୍ମଙ୍କର ବସୁଙ୍କ ସୂନୁ ।
ଏ ବାହାରେ କାଣ୍ଡଗୋଟିକେ ଭୀଷ୍ମ ଧ୍ୱଜ
କାଟି ପକାଇଲା ସେ ଶ୍ୱେତ ବୀରରାଜ ।
ଭୀଷ୍ମଙ୍କର କେତୁ ଯେ ପଡ଼ିବାର ଦେଖି
ମଲେ ଭୀଷ୍ମ ବୋଲି କୁରୁଏ ହେଲେ ଦୁଃଖୀ
ପାଣ୍ଡବଙ୍କ ଯେ ଭାଏ ଶତ ଶତ ଶଙ୍ଖ
ବଜାଇଲେଟି ଆଣି କରି ଦେଇ ମୁଖ ।
ଭୀଷ୍ମଙ୍କର ଧ୍ୱଜ ଯେ ଛିଡ଼ିବାର ଜାଣି
ସୈନ୍ୟଙ୍କୁ ବରଗିଲେ କୁମ୍ଭ ଯୁଦ୍ଧମଣି ।
ବୋଇଲେ ଭୀଷ୍ମଙ୍କୁ ଯତ୍ନରେ ଜଗିଥାଅ
ନୋହିଲେ ମାରିଦେବ ବିରାଟର ପୁଅ ।
ତାହା ଶୁଣି ମହାରଥୀଏ ଗୋଟି ହୋଇ
ଭୀଷ୍ମଙ୍କ ପୃଷ୍ଠପଟେ ରହିଲେ ଶୀଘ୍ରେ ଯାଇ ।
ବାହ୍ଲିକ କୃତବର୍ମା ଶଳ ଚିତ୍ରସେନ
ବିବିଂଶତି ଶଲ୍ୟ ଦୁର୍ମୁଖ ଦୁର୍ମର୍ଷଣ ।
ଏମାନେ ତୀବ୍ର ହୋଇ କରି ଶର ବୃଷ୍ଟି
ବୁଡ଼ାଇବେ ଭାବିଲେ ଶ୍ୱେତ କୀର୍ତ୍ତିସୃଷ୍ଟି ।
ଶ୍ୱେତ କ୍ରୋଧ ହୋଇଣ ହସ୍ତର ଲାଘବ
ଦେଖାଇ ଭାଙ୍ଗିଲା ସବୁରି ଯୁଦ୍ଧଭାବ ।
ମହତ ଶରବୃଷ୍ଟି ସଜ୍ଜ ତଇରଟି
ପୁଣି ସେ କାଟିଦେଲା ଭୀଷ୍ମଙ୍କ ଧନୁଟି ।
ଆନ ଧନୁ ଧରିଣ ଶାନ୍ତନୁଙ୍କ ସୁତ
କଙ୍କପତ୍ର ବାଣ ବିନ୍ଧିଲେ ଅଗଣିତ ।
ଶ୍ୱେତ ମଧ୍ୟ ବାଣଗଣଙ୍କୁ ଟି ସରଜ
ଭୀଷ୍ମ ପ୍ରାଣନେବାକୁ ଉଠିଲା ଗରଜ ।
ଭୀଷ୍ମ ଶ୍ୱେତଙ୍କରେ ହୁଅନ୍ତେ ନିବାରିତ
ଦୁର୍ଯ୍ୟୋଧନ ରାଜା ହୋଇଲେ ଦୁଃଖିତ ।
କୁମ୍ଭର ସୈନ୍ୟଯାକ ହାହାକାର ରଡ଼ି
କରି ନିର୍ତ୍ତି ରହିଲେ ପଲକ ନ ପାଡ଼ି ।
ଶ୍ୱେତକାଣ୍ଡଘାତେ ମରିବେ ପିତାମହ
ବୋଲି ସବଜନେ କାନ୍ଦିଲେ ବହୁ ସ୍ନେହ ।
ଏହା ଶୁଣି କୁମ୍ଭର ପିତା କ୍ରୋଧ ହୋଇ
ଶ୍ୱେତକୁ ମାରିବାଣେ ଧାଇଁଲେ ଯାଇ ।

ଭୀଷ୍ମଙ୍କର କାଣ୍ଡକୁ ନିବାରି ଶ୍ୱେତ ବୀର
ପୁଣ ସେ କାଟିଦେଲା ଧନୁ ତାହାଙ୍କର ।
ଛାଡ଼ିଲା କାର୍ମୁକକୁ ପକାଇ ରଥରେ
ଆନ ଧନୁଏ ଭୀଷ୍ମ ଧରିଣ ହାତରେ ।
ଚାରି ଭଲ୍ଲକାଣ୍ଡରେ ଚାରି ଘୋଡ଼ା ପ୍ରାଣ
ନେଇ ତ ଗଲେ ଭୀଷ୍ମ ରଥୀକୁଳଗଣ ।
ଦୁଇକାଣ୍ଡେ ଶ୍ୱେତଧ୍ୱଜକୁ କାଟି ତଳେ
ପକାଇଦେଲେ ମହାରଥୀ ଭୀଷ୍ମ ବଳେ ।
ଏହା ବାହାରେ ପୁଣି ଧରି ଚାରି ବାଣ
ମୁଣ୍ଡକୁ କାଟି ନେଲେ ସାରଥିର ପ୍ରାଣ ।
ସାରଥି ଘୋଡ଼ା ଧ୍ୱଜ ଭୀଷ୍ମ କାଣ୍ଡେ ହତ
ହେବାର ଦେଖି ଶ୍ୱେତ ହୋଇଲେ ତରସ୍ତ ।
ରଥରୁ ଡେଇଁ ତଳେ ରଥୀଶିରୋମଣି
ଶ୍ୱେତ ଛିଡ଼ା ହୋଇଲେ ହୋଇ ଖଡ୍ଗପାଣି ।
ଭୀଷ୍ମ ଶ୍ୱେତପଞ୍ଜରକୁ ବଜାଇ ମାର୍ଗଣ
ବିନ୍ଧିଲେ ପ୍ରାଣ ନେବି ମନରେ ଭାବିଣ ।
ଶ୍ୱେତ ସେ ବାଣଘାତେ ଥରାଇଣ କାୟେ
ଧଇଲେ କରେ ଏକ ମହାଶକ୍ତି ଟାଏ ।
ସେ ଶକ୍ତି ମୃତ୍ୟୁଦେବତାର କି ଭଉଣୀ
ପରାଏ ମନେକଲେ ଦେଖି ନରଶ୍ରେଣୀ ।
ଭୀଷ୍ମଙ୍କର ମୁଖକୁ ଅନାଇଣ ଶ୍ୱେତ
ବୋଇଲେ ରହ ରହ ନୋହିଣ ନଷତ ।
ଏ ଶକତି ପ୍ରହାରି ଯମପୁରବାସୀ
ଏକ୍ଷଣି ତୁମ୍ଭଙ୍କୁ କରିବି ହୋଇ ରୋଷୀ ।
ଏରୂପେ ବଚନରେ ଶ୍ୱେତ ମହାମନା
କହିଣ ଅତିଶୟେ ହୋଇ କ୍ରୋଧମନା ।
ପାଣ୍ଡବଙ୍କର ଅର୍ଥ ତୁମ୍ଭର ଅନର୍ଥ
ନିଜ ପୁରୁଷାର୍ଥ ଭାବି ସେ ମହାରଥ ।
ଉଡ଼ାକେତେ ଧାଇଁଯାଇ ସେ ଶକତିକ
ଫିଙ୍ଗିଲେ ଶ୍ୱେତବୀର ଦେଖାଇ ଶକ୍ତିକ ।
ପ୍ରଳୟକାଳ ସୂର୍ଯ୍ୟ ପରି ଶକ୍ତି ଶୋଭା
ପ୍ରକାଶି ବଢ଼ାଇଲା ଶ୍ୱେତଙ୍କର ପ୍ରଭା ।
ମୃତ୍ୟୁଦଣ୍ଡ ପରି ଧାଇଁଲା ଯୁଦ୍ଧଦାଣ୍ଡେ
ପଡ଼ିବା ମନ କରି ଭୀଷ୍ମଙ୍କର ପିଣ୍ଡେ ।
ତାହା ଦେଖି ତୁମ୍ଭ ସେନାଏ ହାହାକାର
କଲେ ମଲେ ବୋଲିଣ ଭୀଷ୍ମରଥୀବର ।

ଭୀଷ୍ମ ସେ ଶକ୍ତିକି ଅନାଇ ଆଠକାଣ୍ଡେ
କାଟି କରି ପକାଇ ଦେଲେ ରଣଦାଣ୍ଡେ ।
ତୁମ୍ଭ ଲୋକମାନେ ଶକତି ଛିଡ଼ିବାର
ଦେଖି ମନେକଲେ ଯେ ଭୀଷ୍ମ ମହାବୀର ।
ଶକତି ଛିଡ଼ିବାର ବିରାଟ-ନନ୍ଦନ
ନ ସହି ପୁଣି କ୍ରୋଧେ ଥରାଇ ଅପସନ ।
ଗଦାଟାଏ ବହିଣ ମେଘ ପରି ହୋଇ
ଭୀଷ୍ମ-ଶିରବରକୁ ଘୋଟିଗଲେ ଯାଇ ।
ଭୀଷ୍ମ ସେ ଗଦାବର ଦେଖି ନୟନରେ
ରଥେ ଥିଲେ ବସିବା ଯମ-ସଦନରେ ।
ଭାବନା କରି ମନେ ଆହେ ନରମଣି
ପଡ଼ିଲେ ଡେଇଁ ରଥତଳକୁ ସେକ୍ଷଣି ।
ଶ୍ୱେତ ଭୀଷ୍ମଙ୍କର ରଥକୁ ଝାମ୍ପିଥିଲେ
ବୁଲାଇ ଗଦାବର ସେକାଳେ ପିଟିଲେ ।
ଭୀଷ୍ମଙ୍କ ସାରଥି ରଥ ସେ ଗଦା ପାଇ
ଜଳଗଲା ଆହେ ହସ୍ତିନା ନରସାଇଁ ।
ରଥୀଶ୍ରେଷ୍ଠ ଭୀଷ୍ମଙ୍କର ଏହି ଅବସ୍ଥା
ଜଗିଥିବା ରଥୀଏ ଯୁଦ୍ଧର ବ୍ୟବସ୍ଥା ।
ଦେଖି ଯାଇ ବେଢ଼ ଭୀଷ୍ମଙ୍କ ଚାରିପଟେ
ଶ୍ୱେତଙ୍କୁ କାଣ୍ଡମାନ ବିନ୍ଧିଲେ ପଟପାଟେ ।
ଏଥିଅନ୍ତରେ ଭୀଷ୍ମ ଆନ ରଥେ ଚଢ଼ି
ଶ୍ୱେତକୁ ମାରଗଣ ଘଣେ ଦେଲେ ବେଢ଼ି ।
ଏକାଳରେ ଆକାଶେ ଶୁଭିଲା ବଚନ
ଆହେ ଭୀଷ୍ମ ନେନ ଶ୍ୱେତଙ୍କ ଜୀବନ ।
ଏହାର ମୃତ୍ୟୁକାଳ ପ୍ରାପତ ହୋଇଛି
ନ କର ମନେ ଚିନ୍ତା ଶାନ୍ତନୁଙ୍କ ବହ୍ନି ।
ଏ ରୂପରେ ଆକାଶବାଣୀ ଭୀଷ୍ମ ଶୁଣି
ଶ୍ୱେତ ନାଶ ମନେ ଭାବନା କଲେ ପୁଣି ।
ଶ୍ୱେତଙ୍କର ଦେଖି ଯୁଦ୍ଧରେ କଷ୍ଟ ଦଶା
ପାଣ୍ଡୁ ସେନା ମଧ୍ୟରେ ଯେତେ ମହାଯଶା ।
ସାତ୍ୟକି ଧୃଷ୍ଟଦ୍ୟୁମ୍ନ ଭୀମାଦିଙ୍କ ଘେନ
ଧାଇଁଲେ ରଥଘାତେ କମ୍ପାଇ ମେଦିନୀ ।
ଭୀଷ୍ମ ଦ୍ରୋଣ ବଳରେ ମହାରଥୀବୃନ୍ଦ—
ମାନଙ୍କୁ ନିବାରି ଆରମ୍ଭ କଲେ ଦ୍ୱନ୍ଦ୍ୱ ।
ପାଣ୍ଡବସୈନ୍ୟ ସାହା ପାଇ ମତ୍ସ୍ୟସୂନୁ
ଖଣ୍ଡାରେ କାଟି ପକାଇଲେ ଭୀଷ୍ମଧନୁ ।

ଭୀଷ୍ମ ଦେବଙ୍କର ବଚନ ଶୁଣିଥିଲେ
ଆଉ ଧନୁ ଗୋଟାଏ ଧରି ଗୁଣ ଦେଲେ ।
ଭୀମଙ୍କୁ ଆଉ ଦେଖି ମହାରଥୀ ଭୀଷ୍ମ
ନ ଜଣେ କ୍ରୋଧରେ ହୋଇଗଲେ ଉଷ୍ମ ।
ଶ୍ୱେତଙ୍କ ରକ୍ଷା ପାଇଁ ଭୀମ ରହିଥିଲେ
ଭୀଷ୍ମ ତାଙ୍କୁ ଷାଠିଏ କାଣ୍ଡେ ନିବାରିଲେ ।
ଅର୍ଜୁନ-ପ୍ରିୟସୁତ ଅଭିମନ୍ୟୁ ବେଢେ
ବୃଣି ତିନକାଣ୍ଡ ବିନ୍ଧିଲେ ଭୀଷ୍ମ କୋହେ ।
ସାତ୍ୟକିଙ୍କି ଶହେଟି କେକୟଙ୍କୁ ପାଞ୍ଚ
ଧୃଷ୍ଟଦ୍ୟୁମ୍ନଙ୍କୁ ଯେ କୋଡ଼ିଏ ନାରାଚ ।
ବିନ୍ଧି ସବୁ ରଥୀମାନଙ୍କ ବଳ ଦଳି
ରହିଲେ ସେ ଶ୍ୱେତଙ୍କୁ ଦେବା ପାଇଁ ଗିଳି ।
କ୍ଷତ୍ରିୟମଣି ଭୀଷ୍ମ ଧନୁର୍ବେଦବେତ୍ତା
ତୁମ୍ଭ ପିତା ଶ୍ୱେତ ସକାଶୁଁ ବହୁ ଚିନ୍ତା ।
ମୃତ୍ୟୁଦଣ୍ଡ ପରି ଧନୁରେ ଶର ଥୋଇ
ବ୍ରହ୍ମଅସ୍ତ୍ରେ ତାହା ମନ୍ତ୍ରିଲେ କ୍ରୋଧ ହୋଇ ।
ସେ ଶର ଭୀଷ୍ମ ହସ୍ତୁ ଗଲା ଯେତେବେଳେ
ନିକଳିଲା ତା ଶ୍ୱେତ ବୁକୁଟିକ ଦଳେ ।
ଶ୍ୱେତ ପ୍ରାଣ-ସୂର୍ଯ୍ୟକୁ ସୂର୍ଯ୍ୟ-ଅସ୍ତଗିରି
ବୁଝାଇଲା ପ୍ରତାପରଶ୍ମି ଶାନ୍ତ କରି ।
ବଜ୍ର ବାଜଣ ଗିରି ପଡ଼ିଲା ପରାୟେ
ମହୀତଳେ ପଡ଼ିଲା ଶ୍ୱେତଙ୍କର କାୟେ ।
ତାହା ଦେଖି ପାଣ୍ଡବମାନେ ସୈନ୍ୟଶ୍ରେଣୀ
ସଙ୍କଟରେ ମୁଞ୍ଚିଲେ ନୟନରୁ ପାଣି ।
ତୁମ୍ଭ ପୁଅ କୁରୁଙ୍କ ଭୁଲେ ହୋଇ ହୃଷ୍ଟ
କରିଦେଲେ ପଣ୍ଡି ମାନଙ୍କୁ ଅତି ଧୃଷ୍ଟ ।
ଦୁଃଶାସନ ଯେ ମହାସ୍ୱନଟାଏ କରି
ନାଚିଲେ ତାତାଥେଇ ବଚନ ଉଚାରି ।
ଭୀଷ୍ମ-ହାତ ପାନ୍ତେ ଶିଖଣ୍ଡୀ ଆଦି ଜନେ
ପଳାଇଲେ ଯୁଦ୍ଧସ୍ଥାନରୁ ଛାଡ଼ିଛାଡ଼ି ।
ଧୃତରାଷ୍ଟ୍ର ବୋଇଲେ ଶ୍ୱେତ ସେନାପତି
ମରନ୍ତେ କି କଲେ ପାଣ୍ଡବେ ମହାମତି ।
ପାଣ୍ଡବଙ୍କୁ କେଉଁ ଉପାୟେ ଦୁର୍ଯ୍ୟୋଧନ
ନିବାରଣ କରି କରିଲା ଆୟୋଧନ ।
ଏହି କଥା ହୃଦମଧ୍ୟରେ ଭାବି ମୁହିଁ
ପଚାରୁଛି ତୁମ୍ଭଙ୍କୁ କହ ତା ବତାଇ ।

ମୋ ପୁଅଙ୍କର ଭୁଲେ ବିରାଟ ବଇର
ପୂର୍ବରୁ ତ କରିଥିଲେ ମନ୍ତ୍ରୀବର ।
ଏ ପାଇଁ ପୁଅଙ୍କଠାରେ ମୋ ହିଂସା ବହି
ପାଣ୍ଡୁସୁତ ଆଶ୍ରାରେ ରହି ମତ୍ସ୍ୟସାଇଁ ।
ମହତବଳ ଯୁକ୍ତ ହୋଇ ମୋ ଲୋକଙ୍କୁ
ପୀଡ଼ା ଦେଉଥିଲେ ଯେ ଘେନଣ ପୁତ୍ରଙ୍କୁ ।
କେଉଁ ରୂପରେ ଭୀଷ୍ମ ଶ୍ୱେତଙ୍କର ପ୍ରାଣ
ନେଲେ ଏ କଥା ଶୁଣି ପାଉନାହିଁ ମନ ।
ମୁହିଁ ଗାନ୍ଧାରୀ ଭୀଷ୍ମ ଦ୍ରୋଣ କୃପ ରଥୀ
ଯୁଦ୍ଧ ହୋଇବ ବୋଲି ହେଉଥିଲୁଁ ବ୍ୟଥୀ ।
ଏରୂପେ ପାଣ୍ଡବମାନଙ୍କ କୃଷ୍ଣଙ୍କର
ଯୁଦ୍ଧ ପାଇଁ କି ହେଉଥିଲା ଦୁଃଖ ଘୋର ।
ବ୍ୟାସ ପରଶୁରାମ ମୁଁ ଆଉ ବିଦୁର
ନିବାରିଲୁଁ ଟି ବସି ନ କର ସମର ।
କର୍ଣ୍ଣ ଶକୁନିର ମତେ ମୋହର ସୁତେ
ଯୁଦ୍ଧ କରିବାକୁ ଟି ମିଳିଲେ ସମସ୍ତେ ।
ଏବେ ତ ରଥୀବରଶେଖର ଶ୍ୱେତଙ୍କୁ
ମାଇଲେ ଭୀଷ୍ମ ବୋଲି କହୁଛ ଆମ୍ଭଙ୍କୁ ।
ଏହି ସକାଶରୁ ଯେ ଜାଣୁଅଛି ମୁହିଁ
କ୍ରୋଧ ହୋଇଥିବେ ପାଣ୍ଡବ ପାଞ୍ଚଭାଇ ।
ଅରଜୁନ ଗାଣ୍ଡୀବଧନୁର ବାଣକୁ
ଆଡ଼ିବାକୁ ସୈନ୍ୟେ ଅଛି କେ କହିବାକୁ ।
ଇନ୍ଦ୍ର ପରି ବିକ୍ରମ କରୁଥିବ ପାର୍ଥ
ତା ଆଗେ ରହିବାକୁ ଅଛି କେ ସାମର୍ଥ ।
ଅରଜୁନ ବଜ୍ରବ୍ୟୂହ ତ କରିଥିଲେ
ମରନ୍ତେ ଶ୍ୱେତ ଯୁଦ୍ଧ [illegible] ସେ କି କଲେ ।
ପୂର୍ବରୁ ମୋ ପୁତ୍ରେ ପାଣ୍ଡବଙ୍କ ଅପକାରୀ
ହୋଇଥିଲେ ପୁଣି ଶ୍ୱେତଙ୍କୁ ଦେଲେ ମାରି ।
ଏପାଇଁ ଜାଣୁଛି ଗାଣ୍ଡୀବ ଧନୁର୍ଦ୍ଧାରୀ
ମୋ ପୁଅଙ୍କୁ ସମରେ ଦେଉଥିବ ମାରି ।
ସଞ୍ଜୟ ବୋଇଲେ ହେ ଶ୍ୱେତର ମରଣ
ହେଲାକ୍ଷଣି ହୋଇଲା ଯେ ରୂପରେ ରଣ ।
ତାହା ତୁମ୍ଭ ଆଗେ କହିବା ଗପେ ବସି
ଶୁଣ ମୋଠାରୁ ତାହା ମାନସ ନିବେଶି ।
ପଳାଇବା ସୈନ୍ୟେ ପାଣ୍ଡବେ ଗୋଡ଼ାଇ
ଚଳାଇଲେ ଯୁଦ୍ଧଜୟରେ ମନ ଦେଇ ।

ଶଙ୍ଖ ଦେଖି ଶଲ୍ୟଙ୍କ ରହିବାର ଗତି
ଧାଇଁଲା ତାଙ୍କଠାକୁ କ୍ରୋଧ କରି ମତି ।
ସୁନାମଣ୍ଡା ମହତ ସ୍ତୂପ ଧରି କରେ
ଗଣ୍ଡା ଖଣ୍ଡା କାଣ୍ଡ ଯେ ବାନ୍ଧନ୍ତି ବେଗରେ ।
କୁନ୍ତ ରଥୀମାନେ ଶଲ୍ୟଙ୍କୁ ବେଢ଼ି ରହି
ଶଙ୍ଖ କୁଳରେ ଯୁଦ୍ଧ ଆରମ୍ଭିଲେ ଯାଇ ।
ଜଳଦ ପରି ଧୃଷ୍ଟ କରି ଗରଜନ
ଧରି କରେ ତାଳପ୍ରମାଣ ଶରାସନ ।
ଗୁଟେଣି ଭିଡ଼ିକରି ଯାନ୍ତେ ଯୁଦ୍ଧଦାଣ୍ଡେ
ଇସ୍ତୁ ଆଗ୍ରେ କଲ ପାଣ୍ଡବ ସେନା ପିଣ୍ଡେ ।
ତାହା ଦେଖି କରି ଗାଣ୍ଡୀବ ଧନୁର୍ଦ୍ଧାରୀ
ଧୃଷ୍ଟ ଭୁଜେ ଯୁଝିଲେ ମାର୍ଗଣକୁ ଧରି ।
ଯେ ରୂପରେ ତେଜରେ ମିଶିଯାଏ ତେଜ
ସେରୂପେ ଲୋକ ମଣି ହୋଇଲେ ଆଶ୍ଚର୍ଯ୍ୟ ।
ଶଲ୍ୟ ଗଦାଟାଏ କରଦେଶରେ ବହି
ଓହ୍ଲାଇଲେ ରଥରୁ ଅତି କ୍ରୋଧ ବହି ।
ଶଙ୍ଖଙ୍କର ଯେ ସ୍ୱରଘୋଡ଼ାଙ୍କର ପ୍ରାଣ
ସ୍ୱରି ଗଦାବାଡ଼ିରେ ଘେନଲେ ଆମଣ ।
ଶଙ୍ଖ ସ୍ୱରେଟି ଘୋଡ଼ାଙ୍କର ହତ ଦେଖି
ଅର୍ଜୁନ ରଥେ ବସି ହୋଇଲେ ସେ ସୁଖି ।
ଧୃଷ୍ଟଙ୍କର ଧନୁରୁ ବାହାରି ମାର୍ଗଣ
ଘୋଡ଼ାଇ ଦେଲେ ଯାଇ ଆକାଶ ଅଙ୍ଗଣ ।
ପାଞ୍ଚାଳ ମତ୍ସ୍ୟ ଯେ କେରଳ ପ୍ରଭଦ୍ରକ
ପ୍ରାଣ ନେଲେ ଧୃଷ୍ଟ ରଥୀଙ୍କ ନାୟକ ।
ଅର୍ଜୁନଙ୍କୁ ଛାଡ଼ି ଦ୍ରୁପଦ ଭୁଲେ ଭଲେ
ଯୁଝିବାକୁ ଧୃଷ୍ଟ ତ ବେଗ ହୋଇ ଗଲେ ।
ଦୁଇ ସମ୍ବନ୍ଧିଙ୍କ ହୁଅନ୍ତେ ଭେଟାଭେଟି
ବର୍ଷିଲେ ଧନୁ ଟିଙ୍କି ବାଣ କୋଟି କୋଟି ।
ଧୃଷ୍ଟଙ୍କ ଶର-ଅଗ୍ନି ତପତେ ପାଇ
ଦ୍ରୁପଦସୈନ୍ୟ-ବନ ପୋଡ଼ିଣ ନଠାଇ ।
ନଧୂମଅଗ୍ନି ଜାଣି ପ୍ରକାଶି ଭୀଷ୍ମ ତେଜ
ତେଜକୁ ତେଜ ଯୁଦ୍ଧ କଲେ ସେ ଆଶ୍ଚର୍ଯ୍ୟ ।
ପାଣ୍ଡବଙ୍କ ଯୋଦ୍ଧାଏ ଭୀଷ୍ମଙ୍କ ତେଜକୁ
ପଡଖିଲକ୍ଷଣି ନବଢ଼ାଇଲେ ଚକ୍ଷୁକୁ ।
ଭୀଷ୍ମଙ୍କର ଭୁଜପ୍ରତାପେ ହାହାକାର
ଶବଦ କଲେ ଯୁଧିଷ୍ଠିର ସୈନ୍ୟବର ।
ଭୀଷ୍ମ ମହାରଥୀ ମଣ୍ଡଳ ଧନୁ ଧରି
ବର୍ଷିଲେ ଆଶୀବିଷ ସମ ବାଣ ଧରି ।
ଭୀଷ୍ମ କାଣ୍ଡ-ନଦୀକ ପାଣ୍ଡବ ସୈନ୍ୟ-ସିନ୍ଧୁ
ପାଇକରି ବୋଇଲେ ଭୀଷ୍ମ ସାଧୁ ସାଧୁ ।
ଏଣୁ କାଳରେ ସୂର୍ଯ୍ୟ ଅସ୍ତଗିରି ଶିର
ଛୁଇଁଲେ ସ୍ନାନ କରିବେଇ ନିଜ କର ।
ତା ଦେଖି ଦୁଇ ଥାଟ ଲୋକେ ଯୁଦ୍ଧ ଛାଡ଼ି
ବାହାରିଲେ ବସାମାନଙ୍କୁ ନଣ ମୋଡ଼ି ।
ପ୍ରଥମ ଦିନ ଯୁଦ୍ଧ ଏଣୁଠାରେ ଶେଷ
କରିଲେ ବେଦବ୍ୟାସ ପରାଶର ଶିଷ୍ୟ ।
ତାହାଙ୍କର ପାଦକମଳ ମନେ ଧ୍ୟାୟି
କୃଷ୍ଣସିଂହ ନରେଶ ଏ ଗୀତ କହଇ ।

—o—

## ଦ୍ୱିତୀୟ ଦିନ ଯୁଦ୍ଧ

ଏଥୁଅନନ୍ତରେ ଯୁଧିଷ୍ଠିର ନରମଣି
ଭୀଷ୍ମଙ୍କର ପରାକ୍ରମକୁ ମନେ ଗୁଣି ।
ଆପଣାର ଯୁଦ୍ଧରେ ଜାଣି ପରାଜୟ
ହୋଇଣ ଅତିଶୟ ବିକଳ-ହୃଦୟ ।
ଭାଇଙ୍କୁ ଘେନ କୃଷ୍ଣ ପାଶକୁ ସେ ଗଲେ
କ କରିବା ହେ କୃଷ୍ଣ ବୋଲିଣ କହିଲେ ।
ଗ୍ରୀଷ୍ମକାଳେ ବନ-ଅଗ୍ନିଙ୍କ ବଢ଼ିବା
ଭଙ୍ଗି ତ ଭୀଷ୍ମଙ୍କର ପଟାନ୍ତର ଦେବା ।
ଆପଣ ତ ମଧ୍ୟ ରଥରେ ବସିଥାଇ
ଦେଖିବା ହେଉଥିଲେ କହିବ କ ମୁହିଁ ।
ଭୀଷ୍ମ-ଅଗ୍ନି ମୁଖରେ ଆମ୍ଭର ସଇନ—
ବନ ତ ଅବଚ୍ଛଳେ ହୋଇଲେ ଦହନ ।
ଏଥିକ କ ଉପାୟ କରିବ ହେ ମୁହିଁ
ଉପାୟଦାତା କୃଷ୍ଣ କହ ତା ବତାଇ ।
ବରୁଣ ଇନ୍ଦ୍ର ଯମ କୁବେର ଭୀଷ୍ମଙ୍କୁ
ଯୋଡିଲେ ନ ଜିଣିବେ ଆସୁଛି ମନକୁ ।
ଭୀଷ୍ମ-ସମୁଦ୍ରରେ ମୋ ଆଶା ବୋଇତ
ବୁଡ଼ିଗଲା ଆସି ହେ ଏବେ ତ ଅଚ୍ୟୁତ ।
ଏଣୁ ସକାଶରୁ ଟି ଭାବୁଅଛି ମୁହିଁ
ଫଳ ମୂଳ ଖାଇ ବନରେ ରହିବଇଁ ।
ଭୀଷ୍ମ-ମୃତ୍ୟୁଦେବତା ମୁଖେ ଏ ନୃପଙ୍କୁ
ବଳକରି ନ ଦେବ କହୁଛି ତୁମ୍ଭଙ୍କୁ ।

ରାଜ୍ୟ ପାଇଁକି ଭାଇମାନଙ୍କର କଷ୍ଟ
ଦେଖିଇ ଧରି ନ ପାରିବ ମୁଁ ହୃଦୟ ।
ଜୀବନ ଥାଉଁ ଥାଉଁ କରିବ ମୁଁ ତପ
ଛାଡ଼ିବ ଆହେ କୃଷ୍ଣ ମୋ ହୃଦୟତାପ ।
ଯୁଦ୍ଧ କଲେ ଜୀବନ ନ ପାରିବ ରଖି
ଦୁଃଖୀ ହେବ ବନ୍ଧୁମାନଙ୍କ ମୃତ୍ୟୁ ଦେଖି ।
ମୋ ମହାରଥୀ-ସବୁବନଙ୍କୁ ତ ମଣ୍ଡ—
ହନ୍ତୀ ହୋଇଣ ଭୀଷ୍ମ କରି ଦେଲେ ଅନ୍ତ ।
କେଉଁ କଥା କଲେ ପାଇବ ମୁଁ ଆନନ୍ଦ
ତାହା ମୋତେ ବିସ୍ତରି କହ ତ ଗୋବିନ୍ଦ ।
ଅର୍ଜୁନ ତ ଯୁଦ୍ଧରେ ମଧ୍ୟସ୍ଥ ହୋଇଛି
ଖଡ଼କେ କାଣ୍ଡଟିଏ ଝିଙ୍କିଣ ବସିଛି ।
ଏକା ଭୀମ କ୍ଷତ୍ରିୟଧର୍ମକୁ ବିଚାରି
ଯୁଦ୍ଧ କରୁଅଛି ତ କରେ ଶସ୍ତ୍ର ଧରି ।
ଗଦାରେ ଗଜଦଳ କରିଦେଇ ପଦା
ମାରୁଅଛି ମଧ୍ୟ ପଦାତି ସଦା ଗଦା ।
ଏଣେ ବରଷରେଟି ଭୀମ ମହାରଥୀ
ଜାଣୁଛି କୁରୁବଳ ନ ପାରିବେ ସହି ।
କୃଷ୍ଣ ସଖା ଅର୍ଜୁନ ଦ୍ରୋଣ ଭୀଷ୍ମ ବାଣ
ଟାଣ ଦେଖି ଆନନ୍ଦ ହେଉଛି ଦ୍ୱିଗୁଣ ।
ଭୀଷ୍ମ ଦ୍ରୋଣ ଉଦ୍ବୋଧ ଛାଡ଼ି ଦିବ୍ୟ ଅସ୍ତ୍ରେ
ଅଗ୍ନି ଲଗାଇବେ ଆମ୍ଭର ସୈନ୍ୟଗାତ୍ରେ ।
ଭୀଷ୍ମଙ୍କ ପରାକ୍ରମ ଦେଖୁଛି ମୁଁ ଯାହା
ନାହିଁ ଯୁଝିବାକୁ ହେ ତାଙ୍କୁ ଚକ୍ରବାହା ।
ଏବେ ତୁମ୍ଭେ ଅରେ ଯୁଦ୍ଧ ତ ଚକ୍ରହସ୍ତ
କେ ଅଛି ଆମ୍ଭର କରିବ ଭୀଷ୍ମ ହତ ।
ତୁମ୍ଭେ ଯେବେ କୃଷ୍ଣ ହୋଇବ ଧନୁର୍ବାହା
ତେବେ ଅବା ମୁହିଁ ହୋଇବ ନରନାହା ।
ଏରୂପେ ଯୁଧିଷ୍ଠିର କୃଷ୍ଣ ଆଗେ ବାଣୀ
କହି ନୟନରୁ ମୁଞ୍ଚିଲେ ଅଶ୍ରୁପାଣି ।
ଯୁଧିଷ୍ଠିରଙ୍କର ତ ଦେଖିଣ ଚରିତ୍ର
କହିଲେ ହସି ହସି ତାଙ୍କୁ ଚକ୍ରହସ୍ତ ।
ଆହେ ଯୁଧିଷ୍ଠିର ନ କର ତୁମ୍ଭେ ଭୟ
ଭଲ ହେବ ପାଇବ ମହତ ଉଦୟ ।
ମୋତେ ଆଦି ତ ମହାରଥୀ ନରଶ୍ରେଣୀ
ତୁମ୍ଭଙ୍କୁ ଆଶ୍ରେ କରିଛନ୍ତି ନରମଣି ।

ବୋଲିବ ଯେବେ ତୁମ୍ଭେ ଆମ୍ଭମାନଙ୍କର
ହସ୍ତେ କେଉଁ କଥା ନୋହିବ ମନେକର ।
ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନ ଦୁହେଁ ଭୀଷ୍ମ ଦ୍ରୋଣ—
ହନ୍ତା ହୋଇ ତୁମ୍ଭର ପାଖେ ଛନ୍ତି ଜାଣ ।
କୃଷ୍ଣଙ୍କ ମୁଖୁଁ ଏହା ଯୁଧିଷ୍ଠିର ଶୁଣି
ଧୃଷ୍ଟଦ୍ୟୁମ୍ନକୁଟି କହିଲେ ଏ ବାଣୀ ।
ଦେବସୈନ୍ୟ କାର୍ତ୍ତିକେୟର ରକ୍ଷା ପରି
ରଖୁଛ ଆମ୍ଭ ସୈନ୍ୟ ତୁମ୍ଭେ ଶସ୍ତ୍ର ଧରି ।
ପରାକ୍ରମ କରିଣ ମୋ ଭାଇଙ୍କ ତୁଲେ
ମାରି ଧୃତରାଷ୍ଟ୍ରସୁତଙ୍କୁ ଯୁଦ୍ଧେ ଭଲେ ।
ତୁମ୍ଭ ପଛେ ମୁହିଁ ନୃପତିଗଣ ଧରି
ରହି ତ ଥିବ କରେ ଧନୁକୁ ଟଙ୍କାରି ।
ଶୁଣି ଯୁଧିଷ୍ଠିର ମୁଖରୁ ଏ ବଚନ
କହିଲେ ହସି କରି ତାଙ୍କୁ ଧୃଷ୍ଟଦ୍ୟୁମ୍ନ ।
ଦ୍ରୋଣାନ୍ତକ କରି ପୂର୍ବରୁ ଶିବ ମୋତେ
ଜାତ କରିଛନ୍ତି ଜାଣ ହେ ମହାମତେ ।
ଭୀଷ୍ମ କୃପ ଜୟଦ୍ରଥ ଶଲ୍ୟ ଦ୍ରୋଣ ବାଣ
ଦେଖିବ କାଲି ଯୁଦ୍ଧେ କାଟିବ ନୃଗଣ ।
ଧୃଷ୍ଟଦ୍ୟୁମ୍ନଙ୍କର ଏ ବଚନ ଶୁଣି
ସିଂହନାଦ କଲେ ପାଣ୍ଡବ ନୃପଶ୍ରେଣୀ ।
ଯୁଧିଷ୍ଠିର ଭୀମେ ବୋଇଲେ ଭାଇ ଶୁଣ
ଆଜ ହେ କ୍ରୌଞ୍ଚବ୍ୟୂହ କରାଅ ଆପଣ ।
ପୂର୍ବେ ଦେବାସୁର ଯୁଦ୍ଧରେ ବୃହସ୍ପତି
ସେ ବ୍ୟୂହଟି କରାଇଥିଲେ ବହୁ ପ୍ରୀତି ।
ଏହା ଜାଣି ଭୀମ କରାଅ କ୍ରୌଞ୍ଚବ୍ୟୂହ
ହେବ ଯୁଦ୍ଧରେ କୁରୁମାନଙ୍କର ମୋହ ।
ଏହି କାଳେ ନିଶି ହୋଇଲା ଅବଶେଷ
ବାହାରିଲେ ପାଣ୍ଡବେ ଯୁଦ୍ଧେ ବହି ବେଶ ।
କ୍ରୌଞ୍ଚବ୍ୟୂହ କରିଣ ସଇନ ଆଗରେ
ରଖାଇଲେ ଅର୍ଜୁନଙ୍କୁ ସତ୍ୱରରେ ।
ଅର୍ଜୁନଙ୍କ ଧ୍ୱଜ ସୂର୍ଯ୍ୟଙ୍କ ବାଟ ଯାଏ
ବଢ଼ିଗଲା ଦେଖିଲେ ସମସ୍ତ ଯୋଦ୍ଧାଏ ।
ଗନ୍ଧର୍ବଙ୍କ ନଗର ପରାୟେ ସେ ଧ୍ୱଜ
ନଭେ ରହି କରି ଗର୍ଜିଲେ ନେତ୍ର ଓଜ ।
ଦ୍ରୁପଦରାଜା ବ୍ୟୂହ ମସ୍ତକେ ରହିଲେ
କୁନ୍ତିଭୋଜ ଶୈବ୍ୟ ଦୁହେଁ ଚକ୍ଷୁ ହୋଇଲେ ।

ଦ୍ରୋଣଭଦ୍ର ବଣାର୍ଣ୍ଣ ପ୍ରସ୍ଥାଗ କଷ୍ଟତ
କ୍ରୌଞ୍ଚର ଗ୍ରୀବାଦେଶେ ହେଲେ ଯାଇ ସ୍ଥିତ ।
ପଞ୍ଚଜର ଦୃଷ୍ଟ ଯେ ନିଷାଦଙ୍କୁ ଘେନି
ଯୁଧିଷ୍ଠିର ରାଜା ହୋଇଲେ ପୃଷ୍ଠାସ୍ଥାମୀ ।
ଶ୍ରୀମ ଧୃଷ୍ଟଦ୍ୟୁମ୍ନ କ୍ରୌଞ୍ଚପକ୍ଷୀ ପକ୍ଷୀ
ହୋଇଣ ରହିଲେ କୁରୁଙ୍କୁ ଶର ଲକ୍ଷ ।
ସାତ୍ୟକି ଅଭିମନ୍ୟୁ ପାଣ୍ଡ୍ୟ ମାତୁଳକ
ଦରଦ ପୌଣ୍ଡ୍ର କୁଣ୍ଡୀ ତଭିଳିଙ୍କି ଧେନୁକ ।
ଭଙ୍ଗଣ ବୃଷ ପରତଙ୍ଗଣ ବାହ୍ଲୀକ
ପିଶାଚ ଓଡ୍ର ଦେଶ ନରପତି ଯାକ ।
କ୍ରୌଞ୍ଚବ୍ୟୂହ ଦକ୍ଷିଣପକ୍ଷ ଆଶ୍ରେ କରି
ରହିଲେ ନାନା ଜାତି ଶସ୍ତ୍ର କରେ ଧରି ।
ଅଗ୍ନି ବୈଶ୍ୟ ମଳଦ ଶବର କୁନ୍ତଳ
ଜଗକୁଣ୍ଡ ବତ୍ସ ବାଣବାର ନାକୁଳ ।
ନକୁଳ ସହଦେବ ଆଦି ବୀରଶ୍ରେଣୀ
ବ୍ୟୂହ ବାମପାଖେ ରହିଲେ ଧନୁ ଟାଣି ।
କ୍ରୌଞ୍ଚର ଦୁଇ ପକ୍ଷେ ଅୟୁତେ ନିୟୁତେ
ମସ୍ତକରେ ରଥ ରହିଲେ ମହାମତେ ।
ପୃଷ୍ଠଦେଶେ ଅର୍ବୁଦେ ରଥ ରକ୍ଷାକାରୀ
ହେଲେ ଯୁଦ୍ଧେ କୁରୁଙ୍କୁ ମାରିବା ଦସ୍ତର ।
ପକ୍ଷଅଗ୍ରେ ପକ୍ଷମଧ୍ୟରେ କୋଟି ହାତୀ
ରହିଲେ ଦେବାପାଇଁ କୁରୁବଳ ମନ୍ଥି ।
ବିରାଟ କାଶୀରାଜ ସଇନ୍ୟ ଅୟୁତ
ଶତ ରଥଙ୍କରେ ହୋଇ କରଣ ଯୁତ ।
କ୍ରୌଞ୍ଚ ଜଙ୍ଘ ଟିକ ପାଳନା ବସି କଲେ
ଧନୁ ଖଣ୍ଡା କରରେ ଧରିଣ କଟିଲେ ।
ଏ ରୂପେ କ୍ରୌଞ୍ଚବ୍ୟୂହ କରି ପାଣ୍ଡୁସୁତେ
ରହିଲେ ହେ ରାଜନ ଯୁଦ୍ଧ ଇଚ୍ଛା ଚିତ୍ତେ ।
ନୃପତିମାନଙ୍କର ଶ୍ୱେତଛତ୍ରମାଳ
ରହିଲା ମଣ୍ଡି ହୋଇ ଆକାଶମଣ୍ଡଳ ।
ସେ ଛତ୍ରକୁ ଦେଖି ଭାବିଲ ଏହା କିମ୍ବା
ଆକାଶମଧ୍ୟରେ କି ଶୁକଳ ଚନ୍ଦ୍ରମା ।
ବନ୍ଧା ହୋଇଛି କି ହୋଇଣ ପନ୍ତି ପନ୍ତି
ପଡ଼ିକା ବ୍ୟାଜେ ମୋତିପନ୍ତି କି ଲମ୍ବନ୍ତି ।
ମାଣିକ୍ୟମଣ୍ଡା ଦଣ୍ଡେ ତାହାକୁ କି ତଳ
ଦଆ ହୋଇଅଛି କି ପଡ଼ିବାକୁ ପର ।

ଏରୂପରେ ପାଣ୍ଡବରାଜନ ସଇନ
ରଖାଇ ଯୁଦ୍ଧେ ହୋଇ ଅତି ସାବଧାନ ।
ଶତ୍ରୁ ସେନା ଉପରେ ନୟନ ନିବେଶି
ଥରେ ଥରେ ନଶ ବେଉଥାଆନ୍ତି ଶଶି ।
ଯୁଧିଷ୍ଠିର ଭଗନାଙ୍କ ଦେଖି କ୍ରୌଞ୍ଚବ୍ୟୂହ
ତୁମ୍ଭର ପୁତ୍ର ଦୁର୍ଯ୍ୟୋଧନ ବନ୍ଧୁ କୋହ ।
ଦ୍ରୋଣ ଦ୍ରୌଣି କୃପ ଯେ ଶଲ୍ୟ ସୌମଦତ୍ତି
ବିକର୍ଣ୍ଣାଦି ସଭଙ୍କି ସ୍ୱଶ୍ରି କୁରୁପତି ।
ବୋଇଲେ ତୁମ୍ଭେମାନେ ସର୍ବାଯୁଧେ ଯୁତ
ହୋଇ ପାଣ୍ଡୁ ସୈନ୍ୟ ନ କଲ ଯୁଦ୍ଧେ ହତ ।
ଜଣ ଜଣକରେ ନ ତାଙ୍କୁ ମାରିପାର
ଏକାଠି ହୋଇଅଛ ଭାଗ୍ୟରେ ମୋହର ।
ପୃଥି ସଇନ୍ୟ ସଖା ଧରିଅଛ ସଙ୍ଗେ
ଯୁଝିଲ ଜୀଇଲେ ଯା ପାଣ୍ଡବେ ରଣରଙ୍ଗେ ।
ଏହା ଦେଖି ମୁହିଁ ମଣୁଛି ଚମତ୍କାର
ଆଜ କହିବାକୁ କ କଥା ଅଛି ମୋର ।
କ୍ଷତ୍ରସେନ ବିକର୍ଣ୍ଣ କୁରୁର ସନ୍ତାନ
ମଣିଚନ୍ଦ୍ର ରେତକ ହଂସଭି ଯବନ ।
ମଦ୍ରକ ଶତ୍ରୁଞ୍ଜୟ ବିକର୍ଣ୍ଣ ଦୁଃଶାସନ
ନନ୍ଦ ଉପନନ୍ଦ ସୁବୀର ଚିତ୍ରସେନ ।
ମୋର ବଳରେ ସୈନ୍ୟ ଘେନିଣ ଭୀଷ୍ମଙ୍କୁ
ରଖନ୍ତୁ ଯୁଦ୍ଧରେ ଦେଖାଇ ବିକ୍ରମକୁ ।
ଏଥୁଅନନ୍ତରେ ଦ୍ରୋଣ ଭୀଷ୍ମ ଦୁହେଁ ମିଶି
ବ୍ୟୂହ କଲେ ଯୁଦ୍ଧରେ ହୋଇଣ ଉଲ୍ଲାସୀ ।
ମହତ ସୈନ୍ୟ ସଙ୍ଗେ ଘେନ ଦେବବ୍ରତ
ଚଳାଇଲେ ରଥକୁ ମଣ୍ଡି ମସ୍ତପଥ ।
ଦ୍ରୋଣ ଭୀଷ୍ମଙ୍କ ପଛେ ଲଗାଇ ପଦଣ
ସମର କରିବାକୁ ଗମିଲେ ଆପଣ ।
କର୍ଣ୍ଣ ପ୍ରାବରଣ ଯେ ବଣାର୍ଣ୍ଣ କୁନ୍ତଳ
ମାଗଧ ବିଦର୍ଭ ବଣାନ୍ତ ମେକଳ ।
ଗାନ୍ଧାରୀ ଶିବ ସିନ୍ଧୁ ସୌବୀରାଦ ସାରେ
ଧାଇଁଲେ ଭୀଷ୍ମ ସଙ୍ଗେ ଶସ୍ତ୍ର ଧରି କରେ ।
ଶକୁନି ସୈନ୍ୟ ଘେନି ଦ୍ରୋଣ ପୃଷ୍ଠଭାଗ
ପାଳନା କଲେ ହେ ରାଜନ ମହାଭାଗ ।
ଅଶ୍ୱାତକ ବିକର୍ଣ୍ଣ ଦରଦ କ୍ଷୁଦ୍ରକ
ଲ୍ମଳ କୋଶଳ ମାଳବଗଣ ଶକ ।

ଏହାକୁ ଦେଖ ଦୁର୍ଯ୍ୟୋଧନ ଖଳ ଭୁଲେ
ପାଣ୍ଡବଙ୍କୁ ଆଜ ମାରିବ ମନେକଲେ ।
ଭୂରିଶ୍ରବା ଶଲ୍ୟ ଶଲ୍ୟ ଯେ ଭଗଦତ୍ତ
ବନ୍ଦ ଅନୁବନ୍ଦ ଏ ଯୁଦ୍ଧେ ହୋଇ ମତ୍ତ ।
ତୁମ୍ଭର ସୈନ୍ୟବ୍ୟୂହ ବାମପାର୍ଶ୍ୱ ଜଗି
ବାହାରିଲେ ରଥ ଚଢ଼ିଣ ବେଗି ବେଗି ।
ସୌମଦତ୍ତି ସୁଶର୍ମା କାମ୍ବୋଜ ସୁଦକ୍ଷିଣ
ଶ୍ରୁତାୟୁ ଅଚ୍ୟୁତାୟୁ ଜଗିଲେ ଦକ୍ଷିଣ ।
ଅଶ୍ୱତ୍ଥାମା କୃପ ଯେ କୃତବର୍ମା ତିନ
ସୈନ୍ୟପୃଷ୍ଠେ ରହିଲେ ମହାସୈନ୍ୟ ଘେନ ।
କେତୁମାନ ଯେ ବସୁମାନ ଆଦି ନୃପ
ହେଲେ ସଜନଟି ବ୍ୟୂହର ପୃଷ୍ଠ ଗୋପ୍ୟ ।
ତୁମ୍ଭର ସୈନ୍ୟମାନେ ହୋଇ ହୃଷ୍ଟମତି
ବଜାଇ ଶଙ୍ଖ ସିଂହନାଦ କଲେ ଅତି ।
ତୁମ୍ଭ ପିତା ମଧ୍ୟ କରିଣ ସିଂହନାଦ
ବଜାଇଲେ ଶଙ୍ଖ ବଢ଼ଇଟି ବହୁ ମୋଦ ।
ପାଣ୍ଡବଙ୍କ ସୈନ୍ୟେ ପ୍ରଣବ ଶଙ୍ଖ ଭେରି
ବାଜିଲା ସଜନ ଏ ଶବ୍ଦ ଶୁଣି ଡରି ।
ଶ୍ୱେତହୟଯୁକ୍ତ ରଥେ ତ ପାର୍ଥ ଥିଲେ
ଦେବଦତ୍ତ ଶଙ୍ଖକୁ ମଧ୍ୟ ବଜାଇଲେ ।
ପାଞ୍ଚଜନ୍ୟ ଶଙ୍ଖ ଧରିଣ ଚକ୍ରପାଣି
ବଜାଇଲେ ମୁଖରେ ଭରି ପୁଣପୁଣି ।
ପୌଣ୍ଡ୍ରକ ଶଙ୍ଖ ଭୀମକର୍ମା ଭୀମସେନ
ବଜାଇଲେ ଯୁଦ୍ଧ କରିବା କରି ମନ ।
ଅନନ୍ତ ବିଜୟେ ବିଜୟ ବଡ଼ଭାଇ
ବଜାଇଲେ ଯୁଦ୍ଧେ ବିଜୟ ହେବାପାଇଁ ।
ନକୁଳ ବାଇଲେ ସୁଘୋଷ ନାମେ ଶଙ୍ଖ
ମଣି ପୁଷ୍ପକକୁ ଧରିଣ ସାରଶିଖ ।
ସହଦେବ ଫୁଙ୍କିଲେ ଅତି ଆଣ୍ଟ କରି
ନେବାକୁ ଯୁଦ୍ଧେ କୁରୁଙ୍କର ପ୍ରାଣ ହରି ।
ପାଞ୍ଚାଳାଧିପତି ବିରାଟ କାଶୀରାଜ
ଶିଖଣ୍ଡୀ ଶୈବ୍ୟ ଧୃଷ୍ଟଦ୍ୟୁମ୍ନ କରି ତେଜ ।
ସାତ୍ୟକି ଦ୍ରୌପଦୀଙ୍କ ସୁତଙ୍କ ସଙ୍ଗତେ
ଶଙ୍ଖମାନ ବଜାଇଲେ ଧରିଣ ହସ୍ତେ ।
ସବୁ ରଥୀମାନେ କରନ୍ତେ ଶଙ୍ଖ ରଡ଼ି
ମଣିଲେ ଜନେ ହେଲା ନଭ କମ୍ପା ମାଡ଼ି ।

ଏରୂପେ ଦୁଇସୈନ୍ୟ ଲୋକେ ଶଙ୍ଖ ଘୋଷ
କରିଣ ଯୁଝିବାକୁ ବଳାଇ ମାନସ ।
ସ୍ଥାନମାନ ଧରି ଯେ ଯାହାର ରହିଲେ
ଯୁଝାଯୁଝି ହୋଇବା ବୋଲି ଗରଜିଲେ ।
ଧୃତରାଷ୍ଟ୍ର ବୋଇଲେ ଦୁଇସୈନ୍ୟ ବ୍ୟୂହ
କହିଲ ତ ଏବେ ଯୁଦ୍ଧର କଥା କହ ।
କିରୂପେ ମରାମରି ହୋଇ ବୀରମାନେ
ବସିଲେ ହେ ସଞ୍ଜୟ ଯାଇ ସ୍ୱର୍ଗସ୍ଥାନ ।
ସଞ୍ଜୟ ବୋଇଲେ ଯୋଡ଼ିଏ ସିନ୍ଧୁ ପାଣି
ମିଶିବା ଶୋଭାକୁ ସେ ସୈନ୍ୟ ଶୋଭା ଜିଣି
ପକାଇଲା ସେହି କାଳରେ ହେ ସଜନ
ଶସ୍ତ୍ରଝଳ-ଝଳରେ ହୋଇ ପରିପୂର୍ଣ୍ଣ ।
ପରସ୍ପରେ ସର୍ବେ ନଷ୍ଟୁର ବୁଦ୍ଧି ଧରି
ବନ୍ଧାବନ୍ଧ ହେଲେ ଧନୁରେ କାଣ୍ଡ ଭରି ।
ରଥୀମାନେ ହାଣି ଘୋଡ଼ାକୁ କାଣ୍ଡଶ୍ରେଣୀ
ବନ୍ଧ ଶୁଣ୍ଢ଼ା ବେକକୁ ପକାଇଲେ ହାଣି ।
ସେ କାଳରେ ଭୀଷ୍ମ ଯୁଦ୍ଧରେ ଉଗ୍ର ହୋଇ
ପାଣ୍ଡବଙ୍କ ସୈନ୍ୟ ନାଶରେ ମନ ଦେଇ ।
କୈକେୟ ଧୃଷ୍ଟଦ୍ୟୁମ୍ନ ଭୀମ ଅରଜୁନ
ବିରାଟ ଆଦି ଭୂଲେ କଲେ ଆୟୋଧନ ।
ପ୍ରାବୃଟକାଳ ପରି ବର୍ଷି ଶର ଧାର
ପାଣ୍ଡବ ସୈନ୍ୟଯାକ ରକ୍ତେ କଲେ ଭୋର ।
ସେ ଯୁଦ୍ଧ ଦେଖି ବୀରଙ୍କର ଦେହ ଥରି
ଗଲା କ୍ରୋଧେ ଦୂଣି ହୋଇଲେ ମରାମରି ।
ଭୀଷ୍ମକାଣ୍ଡେ ସେନା ପାଆନ୍ତେ ସ୍ୱର୍ଗପୁରୀ
ରହିଲେ ସେନା ପାଣ୍ଡୁସୁତେ ଆଶ୍ରେ କରି ।
ଅର୍ଜୁନ କ୍ରୋଧ ହୋଇ ବୋଇଲେ କୃଷ୍ଣଙ୍କୁ
ବାହ ନଅ ରଥ ମୋ ଭୀଷ୍ମଙ୍କ ଆଗକୁ ।
ଦେଖ ଭୀଷ୍ମ ଦୁର୍ଯ୍ୟୋଧନର ପକ୍ଷେ ଥାଇ
ମୋ ସୈନ୍ୟେ ଦେଇଛନ୍ତି ଶରବୃଷ୍ଟିରେ ଦହି
ଭୀଷ୍ମଙ୍କ ରକ୍ଷିତ ହେବାରୁ କୃପ ଦ୍ରୋଣ
ବିକର୍ଣ୍ଣ ଶଲ୍ୟ ଦୁର୍ଯ୍ୟୋଧନାଦି ବିନ୍ଧି ବାଣ ।
ପାଞ୍ଚାଳ ସଇନେ ପକାଉଛନ୍ତି କାଟି
କେହି ଏହା ସହି ରହିବ ମୋ ହେତୁଟି ।
ଏଥିପାଇଁ ଭୀଷ୍ମଙ୍କୁ କରିବ ମୁଁ ରଣ
ବନ୍ଧଣ ଯେନଯିବ ଭୀଷ୍ମ ଶବାଣେ ପ୍ରାଣ ।

ଶ୍ରୀକୃଷ୍ଣ ବୋଇଲେ ଅର୍ଜୁନ ସାବଧାନ
ହୋଇ ଭୀଷ୍ମଙ୍କ କୂଳେ କର ଆୟୋଧନ ।
ଏକ୍ଷଣି ରଥ ଭୀଷ୍ମଙ୍କ ରଥ ପାଶେ
କରିବ ନେଇ ତାଙ୍କୁ ଛୁଡ଼ ଯମ ପାଶେ ।
ଏହା କହି ଗୋବିନ୍ଦ ହୋଇଣ ଆନନ୍ଦ
ବାହିଲେ ରଥଘୋଷ ଜିଣିଲା ମେଘବୃନ୍ଦ ।
ଘୋଷକୁ, ଭୀଷ୍ମଙ୍କ ରଥକୁ ରଥ ନେଇ
ଲଗାଇ ଦେଲେ ଯୁଦ୍ଧ ବୋଲି ଦେଲେ କହି ।
ବହୁତ ପତାକାରେ ଆବୃତ ବାନର—
ଧ୍ୱଜ ହୋଇଣ ଉଡ଼ କଲା ଅନ୍ତର ।
ଅର୍ଜୁନଙ୍କ ଯୁଦ୍ଧ କରିବା ମନ ଜାଣି
ଜାଣ ଆହେ ହସ୍ତିନାଦେଶ ନରମଣି ।
ଅର୍ଜୁନଙ୍କର ଦେଖି ଆସିବାର ଗତି
ସହି ନ ପାରିଣ ପ୍ରତିପକ୍ଷର ନାତି ।
ସୌବାର ସୈନ୍ଧବ ଯେ ପ୍ରାଚ୍ୟ କଇକେୟ
ସେନ ବାହାରିଲେ ହୋଇଣ ଯୁଦ୍ଧପ୍ରିୟ ।
ଅରଜୁନଙ୍କୁ ଭୀଷ୍ମ ଦ୍ରୋଣ ବିନା ଆନ
କୁମ୍ଭ ସୈନ୍ୟେ ଯୁଝିଣ ନ ପାରେ ରାଜନ ।
ସତସ୍ତରି କାଣ୍ଡ ଅରଜୁନ ଦେହକୁ
ବନ୍ଧିଲେ ଭୀଷ୍ମବୁଢ଼ା କରି ବିକ୍ରମକୁ ।
ବାଛି କରି ପଚିଶଗୋଟି ମାରଗଣ
ବନ୍ଧିଲେ ଧନୁଟିକ ଟାଣି ବୁଢ଼ା ଦ୍ରୋଣ ।
ଅର୍ଜୁନଙ୍କୁ ବନ୍ଧିଲେ ହୋଇ ଅତି ସୁଖୀ
କୃପ ବୁଢ଼ା ମଧ୍ୟ ପଚିଶ ଶର ଯୋଖି ।
ଭେଣ୍ଡିଆ ଦୁର୍ଯ୍ୟୋଧନ ହସ୍ତା କୁଣ୍ଡିଆଇ
ଅମରଷ କଆଁରେ ଦେହକୁ ପୋଡ଼ାଇ ।
ପାଣିଚଆ ଚଉଷଠି କାଣ୍ଡ ବେଗେ
ପାର୍ଥେ ବନ୍ଧି ହାତ ଲଦିଲେ କଣ୍ଠଦେଶେ ।
ଦ୍ରୌଣି ଧନୁକୁ ଧରି ହୋଇ ଅତି ଟାଣି
ଷାଠିଏ କାଣ୍ଡ ବାଛି ବନ୍ଧିଲେ ସେକ୍ଷଣି ।
ପାର୍ଥ-ସମୁଦ୍ରକୁ କୁମ୍ଭର ଶଲାଖିଳା
ତରିବାକୁ କଲେ ନଅଟି ଶରଭେଳା ।
ବିକର୍ଣ୍ଣଟି କର୍ଣ୍ଣଟି ଯାଏ ଧନୁ ଟାଣି
ଦଶକାଣ୍ଡ ବନ୍ଧିଲ ହୋଇ ଟାଣିଟଣି ।
ଚୁଟିକଟା ସୁମର ବୁଦ୍ଧ ଷେତୀ ବେଟା
ଜୟଦ୍ରଥ ବନ୍ଧିଲ ମାର୍ଗଣ ନଅଟା ।

ଅର୍ଜୁନ କୁମ୍ଭଜାନ କଥା ଗ୍ରାହ୍ୟଦେଇ
ହାତ ଲଭ ନ ସେନ କ୍ରୋଧ ମନେ ବହି ।
ଶିଳାଘଷା ପାଞ୍ଚଟି କାଣ୍ଡକୁ କଷଟୀ
ଦେଢ଼ୁଟିକ ବନ୍ଧିଲ ଧନୁ ମଧ୍ୟେ ଯୋଟି ।
ଆଭିମୁଖ ଯୁଦ୍ଧେ ହୋଇଣ ଯେ ଆଗତ
ତିନୋଟି ଶର ପାର୍ଥ ବେଢ଼େ କଲେ ଘାତ ।
ଆହେ ଧୃତରାଷ୍ଟ୍ର ଏରୂପେ କାଣ୍ଡଶ୍ରେଣୀ
ବନ୍ଧନ୍ତେ ରଥୀଏ ରଥୀଙ୍କ ଶିରୋମଣି ।
ଅରଜୁନ କାହିଁଟି ନ କରି ଗଣନା
ଗାଣ୍ଡୀବ ଗୁଣ ଥରେ କଲେ ମାରଜନା ।
ଭୀଷ୍ମଙ୍କର ଦେହକୁ ପଚିଶ ମାର୍ଗଣ
ବିନ୍ଧିଲେ ଆଣ୍ଠକରି ଦେଖାଇ ବୀରପଣ ।
କୃପଙ୍କୁ ଦଶକାଣ୍ଡ ଦ୍ରୋଣଙ୍କୁ ଷାଠିଏ
ବିକର୍ଣ୍ଣଙ୍କୁ ତିନି ବନ୍ଧିଲେ ବୀରସ୍ୱୟେ ।
ଆଭିମୁଖ ଦେହକୁ ତିନିକାଣ୍ଡ ବନ୍ଧି
ପାଞ୍ଚକାଣ୍ଡେ ଦୁର୍ଯ୍ୟୋଧନକୁ ଦେଲେ ଛନ୍ଦି ।
ସାତ୍ୟକି ଧୃଷ୍ଟଦ୍ୟୁମ୍ନ ବିରାଟ ଅଭିମନ୍ୟୁ
ଅର୍ଜୁନଙ୍କୁ ଜଗିଲେ ଯୁଦ୍ଧେ ଧରି ମନ୍ୟୁ ।
ଏ ଅନ୍ତେ ଧୃଷ୍ଟଦ୍ୟୁମ୍ନ ସେନାଙ୍କର କୂଳେ
ଦ୍ରୋଣେ ଯୁଝିବାକୁ ସତ୍ୱରେ ବାହାରିଲେ ।
ଭୀଷ୍ମ ଅଶିକାଣ୍ଡ ବନ୍ଧନ୍ତେ ଅର୍ଜୁନଙ୍କୁ
କୁମ୍ଭ ସେନାମାନେ କଲେ ଗର୍ଜନକୁ ।
କୁରୁସୈନ୍ୟଙ୍କର ଶୁଣି ଏ ଗରଜନ
କ୍ରୋଧ ହୋଇ ସହି ନ ପାରି ଅରଜୁନ ।
ସିଂହ କୁରୁରଥ-ହାତୀ ମଧ୍ୟରେ ପଶି
ବିଦାରିଲେ ବାଣ-ନଖକୁ ପରକାଶି ।
ଦୁର୍ଯ୍ୟୋଧନ ତା ଦେଖି ଦୁଃଖରେ ଭୀଷ୍ମଙ୍କୁ
ଦେଖ ହେ କୁମ୍ଭେ ଦ୍ରୋଣ ଥାଉଁଟି ଆମ୍ଭଙ୍କୁ ।
କୃଷ୍ଣଙ୍କର କୂଳରେ ପାଣ୍ଡବ କଷଟି
ଅଙ୍ଗେ ଘାତେ ଖର ପକାଉଛୁ କାଟି ।
ମୋ ହିତକାରୀ କର୍ଣ୍ଣ ବୀରଙ୍କ ଶେଖର
ତୁମ୍ଭ ନିମନ୍ତେ ଛାଡ଼ଦେଲେଣି ଏ ସମର ।
ତୁମ୍ଭେ [illegible]ଅନ୍ତ ପାଳିବ କୁରୁସେନା
ଏବେ ଆନ କମ୍ପା କରୁଛ ମହାମନା ।
ତୁମ୍ଭେ ମନ କଲେ ଅର୍ଜୁନ କେତେକର
ଏକ୍ଷଣି ଯାଇ ବସିବ ଯମପୁର ।

ଏ ବାଣୀ ଶୁଣି ଭୀଷ୍ମ କ୍ଷତ୍ରିୟ ଧର୍ମକୁ
ଧିକ୍କାର କାହାରଲେ ପାର୍ଥେ ଯୁଝିବାକୁ ।
ଭୀଷ୍ମ ଅରଜୁନ ଶର ଯେ ଲଖାଲଖି
ଦୁଅନ୍ତେ ସଜାଏ ଗର୍ଜିଲେ ହୋଇ ସୁଖୀ ।
ଦ୍ରୌଣି ଦୁର୍ଯ୍ୟୋଧନ ବିକର୍ଣ୍ଣ ତିନି ସାରେ
ଯୁଝିବାକୁ ରହିଲେ ଭୀଷ୍ମ ସଙ୍ଗତରେ ।
ପାଣ୍ଡୁସୁତେ ଯେସର ଅର୍ଜ୍ଜୁନଙ୍କୁ ବେଢ଼ି
ଆରମ୍ଭିଲେ ଯୁଦ୍ଧ ତୂଣୀରୁ ଶର କାଢ଼ି ।
ଭୀଷ୍ମ ଅର୍ଜ୍ଜୁନଙ୍କୁ ବିନ୍ଧନ୍ତେ ନବଶର
ଦଶଶର ବିନ୍ଧିଲେ ଅରଜୁନ ବୀର ।
ସହସ୍ରେ କାଣ୍ଡ ଅରଜୁନ ବେଗେ ବିନ୍ଧି
ଭୀଷ୍ମଙ୍କ ରଥ ଯିବା ମାର୍ଗ ଦେଲେ ରୁନ୍ଧି ।
ଭୀଷ୍ମ ସେହିରୂପେ ସରଳ ଶରମାଳ
କାଟି ପକାଇଲେ ଅର୍ଜ୍ଜୁନ ଶରଜାଳ ।
ଦୁହେଁ ଯୁଦ୍ଧେ ଜୟଲକ୍ଷ୍ମୀଙ୍କ ଇଚ୍ଛା କରି
ଶାୟକ ମୁନେ ଏକା ହେଲେ ମସମର ।
ଭୀଷ୍ମ ଯେତେଟି ବିନ୍ଧୁଥିଲେ ମାରଗଣ
କାଟୁଥିଲ ତାହାଟି କପୀଟିର ବାଣ ।
ଅରଜୁନ ଶରମାନଙ୍କୁ ଭୀଷ୍ମରଥୀ
ସେହିରୂପେ ଶରରେ ପକାଇଲେ ମନ୍ଥି ।
ଅର୍ଜ୍ଜୁନ ଭୀଷ୍ମଙ୍କୁ କୋଡ଼ିଏ ପାଞ୍ଚ କାଣ୍ଡ
ବିନ୍ଧିଲେ କମ୍ପାଇଣ ଗାଣ୍ଡୀବ କୋଦଣ୍ଡ ।
ଭୀଷ୍ମ ଯେ ବଂଶଦଣ୍ଡ ସର୍ପର ସଦୃଶ
ମାର୍ଗଣ ପାର୍ଥଙ୍କୁ ବିନ୍ଧିଲେ ହୋଇ ରୋଷ ।
ଅନ୍ୟୋନ୍ୟରେ ଯେ ଧ୍ୱଜ ହୟ ସୁଭଳକ
ବନ୍ଧାବନ୍ଧ ହେଲେ ହୋଇଣ ଟକାଟକ ।
ଏଥିଅନ୍ତେ ଭୀଷ୍ମ କ୍ରୋଧରେ ଜାଳି ପିଣ୍ଡ
କୃଷ୍ଣଙ୍କ ସ୍ତନାନ୍ତରେ ବିନ୍ଧିଲେ ତିନିକାଣ୍ଡ ।
ସେ ତିନି କାଣ୍ଡ କୃଷ୍ଣ ସ୍ତନାନ୍ତରେ ବାଜ
ରକତକୁ ପିଇ ଗଣ୍ଡିରେ ଗଲେ ମଜ୍ଜି ।
କୃଷ୍ଣଙ୍କର ଦେହରେ ଦେଖି କାଣ୍ଡ ଘାତ
ମହାକ୍ରୋଧ ହୋଇ ଗାଣ୍ଡୀବଧନୁହାତ ।
ଭୀଷ୍ମଙ୍କ ସାରଥିକ ତିନି ଗୋଟି ବାଣ
ବିନ୍ଧିଲେ ବାଛି କରି ନେବାକୁ ପରାଣ ।
ସେ ଦୁହିଁଙ୍କ ସାରଥି ରଥର ମଣ୍ଡଳ
କରିବାରେ ଦୁହେଁ ଯେ ନ ପାଇଲେ କାଳ ।

ଅନ୍ୟୋନ୍ୟ ଭୀଷ୍ମ ପାର୍ଥ ଜଗାଜଗି ହେଲେ
କେହି କାହାକୁ ଟି ବିନ୍ଧିଣ ନ ପାରିଲେ ।
ସେ ଦୁଇ ମହାରଥୀ କରି ଶଙ୍ଖଶବ୍ଦ
ରୂପ ଘୋଷେ ସବୁରି କର୍ଣ୍ଣ କଲେ ସ୍ତବ୍ଧ ।
ଦୁହିଁଙ୍କର ରଥର ଶବଦରେ ମହୀ
ଫାଟିଗଲା ପରି ମୁଁ ମଣିଲି ନୃସାଇଁ ।
ଦୁହିଙ୍କର ଅନ୍ତର ଦେଖିବାକୁ ନେତ୍ର
ସମର୍ଥ ନୋହିଲା ବିଚିତ୍ରବୀର୍ଯ୍ୟସୁତ ।
ରଥ ଚକ୍ରେ ଭୀଷ୍ମ ଅର୍ଜ୍ଜୁନ ଗଲେ ଜଣା
ଜାଣ ଆହେ କୁରୁରାଜନ ମହାମନା ।
ସେ ଦୁହିଙ୍କ ପରାକ୍ରମକୁ ଯୋଦ୍ଧାଗଣ
ଦେଖିଣ ଧନ୍ୟ ଧନ୍ୟ କହିଲେ ବଚନ ।
ଧର୍ମଷ୍ଠିତ ଲୋକର ପାପ ଦରଶନ
ନୋହିଲା ପରି ତାଙ୍କ ଛିଦ୍ର ହେଲା ଜାଣ ।
ଶରଜାଳ କରିଣ ଭୀଷ୍ମ ଅରଜୁନ
ଦୃଶ୍ୟ ଅଦୃଶ୍ୟକୁ ଭଜନ୍ତି ଅବିଚ୍ଛିନ୍ନ ।
ସେ ଯୁଦ୍ଧ ସ୍ୱରୂପରେ ଆନ ଲୋକଠାରେ
ସମ୍ଭବ ନ ପାରେ କହୁଛୁ ତୁମ୍ଭଠାରେ ।
ଦେବାସୁର ଗନ୍ଧର୍ବ ଯକ୍ଷ ତ ଆକାଶେ
ରହିଟି ଥିଲେ ଯୁଦ୍ଧ ଦେଖିଣ ସନ୍ତୋଷେ ।
ବୋଇଲେ ଭୀଷ୍ମ ପାର୍ଥ ଦୁହିଁଙ୍କି ସଂଶୟ
ସମ ହେବ ବୋଲି କେ କରିବ ନିଶ୍ଚୟ ।
ଭୀଷ୍ମ ଅରଜୁନ ସମସ୍ତରେ ଉତ୍କଟା
ଶରେ ପୋଡ଼ି ପାରନ୍ତି କ୍ଷିତି-ଲୁଟାଲୁଟା ।
ପାର୍ଥ ଭୀଷ୍ମ ଦୁହେଁ ଅନ୍ୟୋନ୍ୟେ ଜଣାଜଣି
ହୋଇ ନ ପାରନ୍ତି ବୋଇଲେ ଦେବଶ୍ରେଣୀ ।
ଅର୍ଜ୍ଜୁନ ଭୀଷ୍ମଙ୍କର ବିକ୍ରମର ସ୍ତୁତି
ସବୁରି ମୁଖରୁ ଟି ବନେ ହେଲା ବାନ୍ତି ।
ସେକାଳେ ମିଶାମିଶି ହୋଇ ରଥୀବୃନ୍ଦ
ମସମର ହୋଇଲେ ହୋଇଣ ଆନନ୍ଦ ।
ଧୃଷ୍ଟଦ୍ୟୁମ୍ନନଙ୍କୁ ପାଆନ୍ତେ ଗୁରୁ ଦ୍ରୋଣ
ଆରମ୍ଭିଲେ ଯୁଦ୍ଧକୁ ଟଙ୍କାରିଣ ଗୁଣ ।
ଧୃତରାଷ୍ଟ୍ର ବୋଇଲେ ଧୃଷ୍ଟଦ୍ୟୁମ୍ନ କୁଳେ
ଦ୍ରୋଣଗୁରୁ କି ରୂପେ ଯୁଝିଲେ କହ ଭଲେ ।
ପରାକ୍ରମ ପ୍ରଭୃତି କି ଦୈବ ଅଛେ ବଡ଼
ପାଣ୍ଡବେ ଯା ଲଙ୍ଘିଲେ ଭୀଷ୍ମଙ୍କର ହାଡ଼ ।

କି ଲୋକଯାକ ତ ପାରନ୍ତ ଶାସ୍ତ୍ର ମାର
କକୁପରେ ରହିଲେ ଯୁଦ୍ଧରେ ସେ ହାର ।
ଏହି କଥା ଭାବନା କରି ପ୍ରଚ୍ଛଦନ
ଶୁଣିବାକୁ ଯୁଦ୍ଧ ହେଉଛୁ ମୋର ମନ ।
ସଞ୍ଜୟ ବୋଇଲେ ଇନ୍ଦ୍ର ଦେବତାଏ
ମୋହ ହେବେ ମୁହିଁ ଅର୍ଜୁନ ଶରଘାଏ ।
ଶାସ୍ତ୍ର ବଳୀ ହେଲେ ଅଟନ୍ତି ପିନା ନର
ଅର୍ଜୁନଙ୍କୁ ଜଣି କ ପାରନ୍ତ ସମର ।
ଶୁଣ ଧୃଷ୍ଟଦ୍ୟୁମ୍ନ ଦ୍ରୋଣ ଦୁଇଙ୍କରେ
ଯେଉଁରୂପେ ଯୁଦ୍ଧ କଲେ ଭାରତ ଭୂମିରେ ।
ଦ୍ରୋଣ ଧୃଷ୍ଟଦ୍ୟୁମନଙ୍କୁ ତୀକ୍ଷଣ କାଣ୍ଡ
ପକାଇଦେଲେ ତଳେ ସାରଥିର ମୁଣ୍ଡ ।
ଚାରିକାଣ୍ଡେ ଚାରି ଘୋଡ଼ାଙ୍କୁ ପୀଡ଼ା ଦେଇ
ଧୃଷ୍ଟଦ୍ୟୁମନଙ୍କୁ ବିନ୍ଧିଲେ ନରସାଇଁ ।
ଧୃଷ୍ଟଦ୍ୟୁମ୍ନ ଦ୍ରୋଣ ବିକ୍ରମ ଦେଖିକରି
ରଥ କାହିଁ ଯିବ ବୋଇଲେ ସେ ନ ଡରି ।
ପୁଣି କ୍ରୋଧେ କମ୍ପାଇ କରର କୋଦଣ୍ଡ
ଦ୍ରୋଣଙ୍କ ଉପରେ ବିନ୍ଧିଲେ ନବକାଣ୍ଡ ।
ଦ୍ରୋଣ ଧୃଷ୍ଟଦ୍ୟୁମନ ବଧେ ଦେଇ ମନ
କାଣ୍ଡରେ କରିଦେଲେ ତାହାଙ୍କୁ ଆଚ୍ଛନ୍ନ ।
ବଜ୍ର ପରାୟେ ଆଣ୍ଠି ଯମଦଣ୍ଡ ପରି
କାଣ୍ଡ ଗୋଟାଏ ଦ୍ରୋଣ ଗୁରୁ କରେ ଧରି ।
ଧନୁ ମଧ୍ୟେ ବସାଇ ଟିଙ୍କ ବା ବେଳରେ
ହାହାକାର କଲେ ଦେଖିଣ ସବୁ ନରେ ।
ଧୃଷ୍ଟଦ୍ୟୁମ୍ନ ଦେଖି ନ ଡରି ସେ ଶରକୁ
ରହିଲେ ବୁକୁ ଆଡ଼ ଧରିଣ ଧନୁକୁ ।
ଭରଦ୍ୱାଜ ଦସ୍ତରୁ ଫିଟିଣ ସେ କାଣ୍ଡ
ଆସୁଥିଲା ମଣ୍ଡି ଜ୍ୟୋତିରେ ରଣ ଦାଣ୍ଡ ।
କାଣ୍ଡମାନଙ୍କରେ ଯେ ବୃତ୍ତର ବେଢ଼ାଟି
ପକାଇ ଦେଲେ ଯୁଦ୍ଧଭୂମି ମଧ୍ୟେ ମାଟି ।
ଦ୍ରୋଣଙ୍କୁ ଧୃଷ୍ଟଦ୍ୟୁମ୍ନ ବିନ୍ଧି ମାରଗଣ
ଲୁଚିଦେଲେ ତାଙ୍କର ସମୀପ ଗଗନ ।
ଧୃଷ୍ଟଦ୍ୟୁମନଙ୍କର ବୀରପଣ ଦେଖି
ପାଣ୍ଡବ ସୈନ୍ୟ ଗର୍ଜିଲେ ହୋଇ ଅତି ଦୁଃଖୀ
ପୁନା ବଇଡ଼ୂର୍ଯ୍ୟରେ ଭୂଷିତ ଶକତି
ଦ୍ରୋଣ ନାଶେ ଧୃଷ୍ଟଦ୍ୟୁମନ ଦେଇ ମତି ।
ଫିଙ୍ଗିଲେ କରେ ଟେକି ଜ୍ୱଳନ ପରାୟେ
ଧାଇଁଲେ ସେ ଶକ୍ତି ଲୁଚାଇ ସୂର୍ଯ୍ୟକାୟେ ।
ଦ୍ରୋଣ ସେ ଶକତିକି କାଣ୍ଡେ ହସି ହସି
କାଟିଣ ପକାଇଲେ ଦୁଇ ଖଣ୍ଡ କରି ।
ଶକତି ହତ ଦେଖି ଦ୍ରୋଣ ଝାଳି ସୃଷ୍ଟି
ବୁଡ଼ାଇବାକୁ ଧୃଷ୍ଟଦ୍ୟୁମନ ଶରବୃଷ୍ଟି ।
ସରଜନା କରିଣ ଯୁଦ୍ଧ ପ୍ରଦେଶରେ
ମଜ୍ଜିଲେ ସେହି ପୁଣି ଆନନ୍ଦ ରସରେ ।
ଦ୍ରୋଣ ଶରମାନଙ୍କୁ ନିବାରି ଶରବୃଷ୍ଟି
ପକାଇଲେ ବଜ୍ରପ୍ରତପୂତ ଧନୁ କାଟି ।
ଛିଣ୍ଡା ଧନୁ ରଣେ ପକାଇ ଧୃଷ୍ଟଦ୍ୟୁମ୍ନ
ଫିଙ୍ଗିଲେ ଗଦା ଟେକି ହୋଇ କ୍ରୋଧମନ ।
ଦ୍ରୋଣ ସେ ଗଦା ଦେଖି ଲାଘବେ ବଞ୍ଚାଇ
ରହିଲେ ରଥମଧ୍ୟେ କରେ ଧନୁ ବହି ।
ଶିଳାଘଷା ସୁବର୍ଣ୍ଣପୁଙ୍ଖ ଭଲ୍ଲ କାଣ୍ଡ
ବିନ୍ଧିଲେ କାଟିବାକୁ ଧୃଷ୍ଟଦ୍ୟୁମ୍ନ ପିଣ୍ଡ ।
ସେ ଭଲ୍ଲକାଣ୍ଡେ ଧୃଷ୍ଟଦ୍ୟୁମ୍ନ କବଚକୁ
ଖୋଳିକରି ପିଇଲେ ଦେହର ରକ୍ତକୁ ।
ଧୃଷ୍ଟଦ୍ୟୁମନ ଧରି ଆନ ଶରାସନ
ଦ୍ରୋଣଙ୍କ ଦେହକୁ ବିନ୍ଧିଲେ ପାଞ୍ଚବାଣ ।
ଅନ୍ୟୋନ୍ୟରେ ଏରୂପେ ଦୁହେଁ ମରମରି
ଦୁଅଙ୍କେ ଦେହ ମଧ୍ୟୁ ରକତ ବାହାରି ।
ଫୁଟିଥିବା ପଳାଶ-ବୃକ୍ଷ ଶୋଭା ବଢ଼ି
ଭଙ୍ଗି ପକାଇଲା ପ୍ରହାରେ ଦେଇ କ୍ରୀଡ଼ା ।
ପୁଣି ଧୃଷ୍ଟଦ୍ୟୁମନ ଦ୍ରୋଣଙ୍କ କାର୍ମୁକ
କାଟି ପକାଇଲେ ଟି ତୀକ୍ଷଣ ଶାୟକ ।
ଧୃଷ୍ଟଦ୍ୟୁମ୍ନ ଦେହ-ଗିରିକି ଶର ବୃଷ୍ଟି
ସରଜିଲା କ୍ରୋଧରେ ଆଚାର୍ଯ୍ୟ ବୁଡ଼ାଟି ।
ସାରଥିର ଭଲ୍ଲକାଣ୍ଡକରେ ଯେ ପ୍ରାଣ
ନେଲେ ଟି ଦ୍ରୋଣଗୁରୁ ରଥୀଙ୍କର ଗଣ ।
ଚାରି କାଣ୍ଡେ ଚାରି ଘୋଡ଼ାଙ୍କ ପ୍ରାଣ ନେଇ
ସିଂହନାଦ କରିଣ ବ୍ରାହ୍ମଣ ଗୋସାଇଁ ।
ଧୃଷ୍ଟଦ୍ୟୁମ୍ନଙ୍କର ଭ୍ରଜଶିହାତ ହତା
କାଟିଲେ ଭଲ୍ଲକାଣ୍ଡେ ଦ୍ୱିଜ ବ୍ରହ୍ମବେତ୍ତା ।
ଧନୁ ରଥ ସାରଥି ଦୁଅଙ୍କେ ବିନାଶ
ତେବେ ହେଲେ ଧୃଷ୍ଟଦ୍ୟୁମନ ବୀରଭାଷ ।

ନ ଗୁଢ଼ ସୂକ୍ଷ୍ମ ଗବାବର କରେ ବନ୍ଧ
ରହିଲେ ଦ୍ରୋଣ ପ୍ରାଣ ବେନ ଯିବାପାଇଁ ।
ତା ଦେଖି ଭରଦ୍ୱାଜ-ସୁତ ହସି ହସି
କାଣ୍ଡ ଟିକରେ ଦେଲେ ସେ ଗଦାକୁ ନାଶି ।
ଧୃଷ୍ଟଦ୍ୟୁମନ ତ ଅଟନ୍ତ ରଣନଙ୍କା
ଦ୍ରୋଣଙ୍କ ସେ କର୍ମେ ନ କରି କିଛୁ ଶଙ୍କା ।
ଫରି ଖଣ୍ଡା ଧରି ସଞ୍ଚାଣ ପରି ଗତି
କରି ବାହାରିଲେ ଯୁଦ୍ଧରେ ଦେଇ ମତି ।
ଯେ ରୂପେ ମତ୍ତଦ୍ୱିପ ପରେ ସିଂହ ରଡ଼ି
କରି ଝାମ୍ପେ ସେରୂପେ ପଡ଼ିଲେ ସେ ମାଡ଼ି ।
ଦ୍ରୋଣ ସେକାଳେ ବଡ଼ ଆଶ୍ଚର୍ଯ୍ୟ କର୍ମ କଲେ
କହିବା ତା ସଜନ ଶୁଣ ଏବେ ଭଲେ ।
ଏକା ହୋଇ ଶର ବୃଷ୍ଟିରେ ଧୃଷ୍ଟଦ୍ୟୁମ୍ନ
ସଙ୍ଗତେ ଦ୍ରୋଣବୁଢ଼ା କଲେ ଆୟୋଧନ ।
ଧୃଷ୍ଟଦ୍ୟୁମନ ଦ୍ରୋଣ ଶରମାଳୀ ବଳ
ନ ମାନିଲେ ନୃପ ଆଗକୁ ଟିପେ ଝୁଲ ।
ଫରିକ ନାନାଗତି କରିବା ଭଙ୍ଗୀରେ
ନ ବାଜିଲେ ଟି ବାଣ ତାଙ୍କର ଅଙ୍ଗରେ ।
ଭୀମ ତା ଦେଖି ଶଳା ସାହା ହୋଇବାକୁ
ଧୂଆଁଇଲେ ରଥ କମ୍ପାଇ ଯୋଦ୍ଧାଙ୍କୁ ।
ସାତ କାଣ୍ଡେ ଦ୍ରୋଣଗୁରୁଙ୍କ କାଣ୍ଡ ଛିନ୍ନ
ଦ୍ରୁପଦ ନନ୍ଦନର ଫିଟାଇ ଶରବନ୍ଦୀ ।
ଆପଣା ରଥବରେ ନେଇ ବସାଇଲେ
ମାରି ସୁଖେ ଦ୍ରୋଣଗୁରୁଙ୍କୁ ସେ ବୋଇଲେ
କଳିଙ୍ଗ ଦେଶ ରାଜା ଦୁର୍ଯ୍ୟୋଧନ ବୋଲେ
ସେ ଯୁଦ୍ଧେ ଭୀଷ୍ମଙ୍କର ରକ୍ଷାକାରୀ ହେଲେ ।
କଳିଙ୍ଗସେନା ଆସିବାର ଭୀମ ଦେଖି
ଯୁଦ୍ଧ କରିବାକୁ ବୁଝିଲେ ଟେକ ଆଖି ।
ଦ୍ରୋଣ ଧୃଷ୍ଟଦ୍ୟୁମ୍ନ ସଙ୍ଗରୁ ଗୁଢ଼ ରଣ
ବସନ୍ତ ଦ୍ରୁପଦଙ୍କ ଯୁଝିଲେ ଯାଇଁଣ ।
ଧୃଷ୍ଟଦ୍ୟୁମ୍ନ ଆଜ ସେଠାରେ ନ ରହିଲେ
ବାଟେ ପଡ଼ ଯୁଧିଷ୍ଠିରଙ୍କଠାକୁ ଗଲେ ।
କଳିଙ୍ଗଙ୍କ କୂଳେ ସେ ଭୀମ ମହାବଳ
ଯେ ରୂପେ ଯୁଦ୍ଧ କଲେ ଶୁଣ ମହୀପାଳ ।
ଧୃତରାଷ୍ଟ୍ର ବୋଇଲେ ଅନ୍ତକ ପ୍ରତିମ
ଅଟନ୍ତି ତ ପାଣ୍ଡୁନୃପଙ୍କ ସୁତ ଭୀମ ।

କଳିଙ୍ଗରାଜା କେନ୍ତ ତାଙ୍କ ସଙ୍ଗେ ଯୋଡି
ଯୁଦ୍ଧ କଲ କହ ତ କରି ବଟାବଟି ।
ସଞ୍ଜୟ ବୋଇଲେ ହେ କୁମ ପୁଅ ବୋଲେ
ମହତ ସୈନ୍ୟ ଘେନ କଳିଙ୍ଗ ନୃପ ଭଲେ ।
ଭୀମ ଆଗରେ କରିଥିଲେ ତ ରଥୁଟା
ନ ଯୁଝି କରନ୍ତେ ସେ କରୁଥେ ମନ ଫଟା ।
ରଥ ନାଗ ଅଶ୍ୱମାନଙ୍କୁ କରି ଆଡ଼
କଳିଙ୍ଗସେନା ଭୀମ କୂଳେ ଯୁଦ୍ଧ ବଡ଼ ।
ଆୟୁଧମାନ କରେ ଧରି ଆରମ୍ଭିଲେ
ସ୍ୱର୍ଗ ଯିବା ଭାବିଲେ ମରଣ ଲଭିଲେ ।
ଶ୍ରୁତାୟୁ କେତୁମାନ ମଧ୍ୟ ଭୀମଠାକୁ
ଆସିଲେ ଧାଇଁ ନୃପ ଯୁଦ୍ଧ କରିବାକୁ ।
ଚେଦ ମଧ୍ୟ କରୁଷ ଧରି ସଙ୍ଗେ ଥାଟ
ଜଗିଲେ ଆସି ଭୀମସେନ ଦୁଇପଟ ।
ପରସ୍ପର ସର୍ବେ ହୁଅନ୍ତେ କଟାକଟି
ପ୍ରାଣ ଛାଡ଼ି ମସ୍ତଦେଶରେ ଗଲେ ଲେଟି ।
ଇନ୍ଦ୍ର ବୃତ୍ର ଦୈତ୍ୟ ସଙ୍ଗତରେ ଯେ ଯୁଦ୍ଧ
କଲାପରି ଭୀମ ଯୁଝିଲେ ହୋଇ କ୍ରୁଦ୍ଧ ।
ସେ ସୈନ୍ୟ ଗର୍ଜିବାରେ ସିନ୍ଧୁ ଗର୍ଜନକୁ
ନ ଆଣିଲେ ଲୋକେଟି ଶୁଣିଣ କାନକୁ ।
ସଭିଙ୍କର ଦେହୁଁ ଛୁଡ଼ିଲ ମାଂସ ଖଣ୍ଡା
ବାଜନ୍ତେ ନନ୍ଦା କରି ମାଣିକ୍ୟ ଗୁନ୍ଥା ପେଣ୍ଡା
ଯୋଦ୍ଧାମାନେ ଆପଣା ପରକୁ ନ ଜାଣି
ତକାହକ ହୋଇଣ ଦେଲେ ହଣାହଣି ।
ଚେଦ କଳିଙ୍ଗର ଯେ ଏରୂପେ ସମର
ପ୍ରବର୍ତ୍ତିଲ୍ଲଟି ଆହେ ନୃପକୁଳବର ।
କଳିଙ୍ଗ ବଳେ ଚେଦବଳ ବଳ ହୋଇ
ପଳାଇଲେ ଯୁଦ୍ଧୁଁ ଭୀମକୁ ଛାଡ଼ି ଦେଇ ।
ଚେଦ ପଳାବନ୍ତେ ଯେ ଭୀମ ମହାବଳ
ରଥେ ଥାଇ ଯୁଝିଲେ ଦେଖାଇ ଦେହବଳ ।
ତୀକ୍ଷ୍ଣ କାଣ୍ଡମାନଙ୍କେ କଳିଙ୍ଗ ସେନାଟି—
ଯାକରେ ପ୍ରତି ଅଙ୍ଗ ଭୀମ ଦେଲେ କାଟି ।
କଳିଙ୍ଗ ପୁତ୍ର ଶୁକ୍ରଦେବ ଘେନି ସଙ୍ଗେ
ଭୀମଙ୍କୁ ବାଛୁ ଶର ବିନ୍ଧିଲେ ରଣରଙ୍ଗେ ।
ଧନୁ ପାଟି ଶାୟକ-ବନ୍ତକୁ ବସ୍ତାରି
ଭୀମ ଯୁଦ୍ଧ କଲେ ତା ସଙ୍ଗେ କ୍ରୋଧ କରି ।

ଶକ୍ରଦେବ ବହୁତ କାଣ୍ଡେ ଭୀମ ଘୋଡ଼ା—
ମାନଙ୍କ ପ୍ରାଣ କଲେ ଯମପୁରେ ଛଡ଼ା ।
ଏହା କରି ସାରି ସେ ଶକ୍ରଦେବ ବଳୀ
ଭୀମଙ୍କ ଉପରେ ବର୍ଷିଲେ ଶରମାଳୀ ।
ଭୀମ ଯେ ମଲା ଘୋଡ଼ା ରଥରେ ବସିଲେ
ଚଳି ଶକ୍ରଦେବଙ୍କୁ ଗଦାକୁ ଫିଙ୍ଗିଲେ ।
ଭୀମଙ୍କ ହାତୁଁ ଫିଟି କରି ଗଦାବର
ରଥ ଭଙ୍ଗି ହରିଲା ଜୀବନ ରଥୀର ।
ଶକ୍ରଦେବ ମରଣ କଳିଙ୍ଗରାଜା ଦେଖି
ଲୋତକରେ ପୂର୍ଣ୍ଣ କରିଣ ଦେନ ଆଖି ।
ଅନେକ ରଥୀ ଘେନ ଭୀମ ଯିବା ବାଟ
ଓଗାରି ରହିଲେ ଦେଖାଇ ଦେହ ଆଣ୍ଠ ।
ଭୀମ ତାହା ଦେଖିଣ ଧରି ଫରି ଖଣ୍ଡା
ପକାଇଲେ ଯେ କାଟି ସାର ଗଣ୍ଡା ଗଣ୍ଡା ।
କଳିଙ୍ଗ ଆଶୀବିଷ ସମ ଶରରାଜ
ଭୀମସେନ ଉପରେ ବର୍ଷିଲେ ଗରଜ ।
ଭୀମ ସେ କାଣ୍ଡମାନ ଦେଖି ଯୁଦ୍ଧଦାଣ୍ଡେ
ଖଣ୍ଡାବାଡ଼େ କାଟିଣ ଦେଲେ ଅଡ଼ିଖଣ୍ଡେ ।
ଚଉଦଟି ଶାବେଳ ଧରିଣ କଳିଙ୍ଗ
ଫିଙ୍ଗିଲା ଭୀମଦେହ କରିବାକୁ ଭଙ୍ଗ ।
ସେ ଶାବେଳମାନ ନ ବାଜୁଁ ଭୀମଭେଣ୍ଡା
କାଟି ପକାଇଲା ପ୍ରହାରି ମହାଖଣ୍ଡା ।
ଏହା କରି ସାରିଣ ଭାନୁମାନଠାକୁ
ଧାଇଁଲେ ଭୀମ ଧରି ଖଡ଼ଗ ଫରିକୁ ।
ଭାନୁମାନେ ଭୀମଙ୍କୁ ବର୍ଷି ମାରଗଣ
ଗରଜନେ ପୂରାଇ ଦେଲେ ଯେ ଗଗନ ।
ଭୀମ ତାହା ଶୁଣି କରନ୍ତେ ସିଂହରଡ଼ି
ବହୁ ଗିରିଶୃଙ୍ଗେ ଝଡ଼ିଲେ ତଳେ ଝଡ଼ି ।
ଭୀମ ଗରଜନେ କଳିଙ୍ଗ ସେନା ଲୋକେ
ମଲୁଁ ବୋଲି ଆମ୍ଭାକୁ ରଖିଲେ ଦକଦକେ ।
ଭୀମସାର ଖଣ୍ଡା ହାତରେ ଧରିଥିଲେ
ଭାନୁମାନ ହାତୀର ଉପରେ ବସିଲେ ।
ଭାନୁମାନ ମୁଣ୍ଡ ଖଣ୍ଡାରେ ଦୁଇଖଣ୍ଡ
କରି ପକାଇଣ ଦେଲେ ଯେ ରଣଭାଣ୍ଡ ।
ଭାନୁମାନ ସାରକୁ ଯମପୁରେ ବସା
ଏରୂପରେ ଦେଇଣ ଭୀମ ମହାଯଶା ।
ଚଢ଼ିଥିବା ହାତୀର ବେକଟିକୁ ହାଣି
ତଳେ ଛିଡ଼ା ହେଲେ ପୁଣି ସେ ସାରମଣି ।
ଫରି ଖଡ଼୍ଗ ଧରି ମାରନ୍ତେ ଭୀମସେନ
ତାଙ୍କ ଛିଦ୍ର ତାହାଙ୍କୁ ନୋହିଲା ଦର୍ଶନ ।
ଯେତେକ ଆଗେ ପଡ଼ିଥିଲେ ଘୋଡ଼ା ହାତୀ
ମାରୁଥିଲେ ଆସିଣ ପ୍ରହାରି ମାରୁତି ।
ତେବେ ହେଲେ ଗଜନ କଳିଙ୍ଗସେନାଟା
ଯୁଦ୍ଧ କଲେ ନ ମାନି ଭୀମ ଦେହ କଟା ।
ରଥୀଙ୍କ ପ୍ରାଣ ନେଇ ରଥ ଈଷା ଯୁଗ
ଦୁଇ ଭାଗ କଲେ ଭୀମ ମହାଭାଗ ।
ଭ୍ରାନ୍ତ ଉଦଭ୍ରାନ୍ତ ଯେ ଆବଦ୍ଧ ଆପ୍ଳୁତ
ସମ୍ପାତ ସମୁଦୀର୍ଣ୍ଣ ପ୍ରସୃତ ଉଡ୍ଡୀତ ।
ଏ ଗତିମାନ କରି ଭୀମ ମହାଭେଣ୍ଡା
ବାହାରିଲେ ଯୁଦ୍ଧରେ ଧରି ଫରି ଖଣ୍ଡା ।
ହାଣି ଭୀମସେନ ଯେ ହାତୀଙ୍କର କର
ଛିଣ୍ଡାନ୍ତେ କଲେ ପ୍ରିୟ ପ୍ରାଣକୁ ସେ ଦୂର ।
ପରିସ୍ତୋମ ଶିର ରୂପ ଯନ୍ତ୍ର ଯେ ତୋତ୍ର
କକ୍ଷା ଗ୍ରୈବେୟକ ଅସି ଯେ ଅଙ୍କୁଶ ।
ଅକୁଶ ଟଣ୍ଡାମୁଠି ଶକ୍ତି ତୋମର
କୁଣପ ଘଣ୍ଟା ଧ୍ୱଜ ପତାକା ତୂଣୀର ।
ଭୀମ ଯେ ଭୀମପରାକ୍ରମକୁ ବିସ୍ତାରି
ପକାଇଲେ ତଳେ ଖଣ୍ଡାରେ କାଟିକରି ।
ହାତୀମାନେ ମରନ୍ତେ ପଥର କୁଦଆ
ପ୍ରାୟେ ଦେଖି ମଣିଲା ସବୁଜନ ଭୂଆ ।
ରଥମାନଙ୍କର ଉପରେ ଭୀମ ବସି
ରଥୀଙ୍କର ମସ୍ତକ ପକାଉଲେ ନାଶି ।
ବିଚିତ୍ରମାର୍ଗମାନ କରନ୍ତେ ଭୀମସେନ
ବୁଜଣ ହୋଇଗଲା ସବୁରି ନୟନ ।
ଗୋଇଠା ମାରି କେତେ ଲୋକଙ୍କୁ ମାଇଲେ
ଗର୍ଜନରେ କେତେ ଲୋକଙ୍କୁ ସେ ତର୍ଜିଲେ
ହୃଦୟକୁ କାହାରି ହୃଦୟ ପ୍ରହାରି
ଦେଖାଇଲେ ନେଇଣ କାଳ ଦଣ୍ଡଧାରୀ ।
ଏରୂପେ ଭୀମସେନ ସଇନ ମର୍ଦ୍ଦନ
କରନ୍ତେ ଦେଖି କରି ଭୂସ୍କର ସଇନ ।
କେତେ ଲୋକ ତରସ୍ତ ହୋଇ ମରିଗଲେ
କେତେ ଲୋକେ ଦନ୍ତରେ ବସନ ଧଇଲେ ।

କଳିଙ୍ଗ ସେନାପତି ଭୀମରେ ପୀଡ଼ିତ
ହେଲେ ହେଲେ ନ ଛାଡ଼ିଲେ ସେ ଯୁଦ୍ଧ ଚିତ୍ତ ।
ଶତାୟୁର କୁଳରେ ଭୀମ ସାରଥିଙ୍କ
ଯୁଦ୍ଧ କରିବାକୁ ବଳାଇଣ ମାନସ ।
ସଞ୍ଚାଣ ପରି ଖନ୍ତ କରି ଫରି ଧରି
ନାଚିଲେ ରଣଦାଣ୍ଡେ ଚଗ ମାରିକରି ।
ଭୀମଙ୍କର ଏ ଗତି ଦେଖିଣ କାଳିଙ୍ଗ
ନ କାଣ୍ଡ ବନ୍ଧ କଲେ ଭୀମ ଦେହ ରଙ୍ଗ ।
ଯେରୂପରେ ହାତୀ ଅଙ୍କୁଶ ଘାତ ପାଇ
କ୍ରୋଧ ହୋଏ ସେରୂପେ ହେଲା ଭୀମଦେହୀ ।
ଅଶୋକ ଏଥିକାଳେ ଅଶ୍ୱ ଯୋଗ୍ୟ ରଥ
ତତକ୍ଷେ ଆଣି ତହିଁ ବସି ମହାରଥ
ଭୀମ ମହାବଳୀ କରରେ ଧନୁ ଭିଡ଼ି
କଲେ ଶତ୍ରୁ ସୈନ୍ୟ ଉପରେ ଚଳରଡ଼ି ।
ଶ୍ରୁତାୟୁ ରଣେ ଯୋଗ ପଥରଢସା ବାଣ
ଭୀମ ହୃଦୟକୁ ବିନ୍ଧିଲା କରି ଟାଣ ।
ଭୀମ ଯେ କ୍ରୋଧ ହୋଇ ସାତୋଟି କାଣ୍ଡରେ
କାଳିଙ୍ଗକୁ ନେଲେ ଯମଙ୍କର ଦାଣ୍ଡରେ ।
କ୍ଷୁରକାଣ୍ଡରେ ସତ୍ୟଦେବ ସତ୍ୟଙ୍କର
କାଟି ଦେଲେ ମୁଣ୍ଡଟି ଭୀମମହାବୀର ।
କେତୁମାନ ପ୍ରାଣକୁ କାଣ୍ଡେ ଭୀମ ନେଇ
ଦେଖାଇଦେଲେ ପ୍ରେତନଗର ଗୋସାଇଁ ।
କାଳିଙ୍ଗେ ଦୃଷ୍ଟି ରଙ୍ଗ କରି କେଣ ଆଖି
ଭୀମକୁ ଶର ବିନ୍ଧି ରହିଲେ ପାଖେ ଲକ୍ଷି ।
ଭୀମ ସେ ଶସ୍ତ୍ରବୃଷ୍ଟି ନିବାରି ଶସ୍ତ୍ରରେ
ଗଦା ଧରି ରଥରୁ ଡେଇଁଣ କ୍ରୋଧରେ ।
ସାତସେନାଙ୍କର ଯେ ଦେନ କରି ପ୍ରାଣ
ଗରଜନ ଗୋଟାଏ କଲେ ସେ ଆପଣ ।
ପୃଷ୍ଠି ଯମଦଣ୍ଡ ପରାପ୍ତେ ଗଦା ଟେକ
ସହସ୍ର ଦୁଇ କାଳିଙ୍ଗଙ୍କ ପ୍ରାଣଟିକ ।
ଯମଙ୍କର ନଗରେ ବସାଇ ସ୍ୱଗରେ
ନ ରଖିଲେ ଯୋଦ୍ଧା ଗୋଟିଏ ସେ ଆଗରେ
ଏହିରୂପେ କଳିଙ୍ଗଯାକର ମରଣ
ରଚିଲେ ନରପତି ଭୀମସେନ ଜାଣ ।
ଯେଉଁ ରୂପରେ ଘନ ଗୋଟି ହୋଇକରି
ପବନକୁ ଦେଖିଲେ ପଳାବନ୍ତି ଡରି ।

ଏହିରୂପରେ ଭୀମବଳରେ କଳିଙ୍ଗ—
ଦେଶ ହାତୀଯାକ ପାଇଲେ ରଣଭଙ୍ଗ ।
ପୌଣ୍ଡ୍ରକ ଶଙ୍ଖ ଭୀମ କରଦେଶେ ବହି
ମୁଖ ଦେଇ ଫୁଙ୍କିଲେ କ୍ରୋଧରେ କଠାଇ ।
ସେ ଶଙ୍ଖ ଶବଦରୁ ତ୍ରୁଅଙ୍କେ ଭୟ ଜାତ
କଳିଙ୍ଗ ସଇନେ ତେଜିଲେ ମଳମୂତ୍ର ।
ମହାବାତେ ସମୁଦ୍ର କ୍ଷୁଭିତ ହେଲା ପରି
ଭୀମ ବଳେ କଳିଙ୍ଗସୈନ୍ୟ ଗଲେ ଥରି ।
ଏଥିକାଳରେ ଧୃଷ୍ଟଦ୍ୟୁମନ ସେନାକୁ
ବୋଇଲେ ମାର ଯାଇ କୁରୁ ସଇନକୁ ।
ସେନାପତି ଯେ ଧୃଷ୍ଟଦ୍ୟୁମନ ବଚନେ
ଶିଖଣ୍ଡୀ ଆଦି ରଥୀ ଧାଇଁ ହୃଷ୍ଟମନେ ।
ଭୀମସେନ ପାଶରେ ରଥ କରି ଛିଡ଼ା
ଧନୁ ଧରି କରେ ମୁଞ୍ଚିଲେ ଶର ଘଡ଼ା ।
ଯୁଧିଷ୍ଠିର ଶିଖଣ୍ଡୀଙ୍କର ରକ୍ଷାକାରୀ
ହୋଇଲେ ସ୍ୱଜନ ହେ କରେ ଧନୁ ଧରି ।
ଧୃଷ୍ଟଦ୍ୟୁମ୍ନ ଭୀମଙ୍କ ପାଶରେ ରହିଲେ
କୁରୁସୈନ୍ୟ ବଢ଼ାଇ ଦେବାକୁ ଭାବିଲେ ।
ସାତ୍ୟକି ଭୀମ ଝନା ଧୃଷ୍ଟଦ୍ୟୁମ୍ନ ପ୍ରିୟ—
କାରୀ ଆଜ ନାହିଁ ଗାନ୍ଧାରୀ ଦେବୀ ପ୍ରିୟ ।
ଭୀମଙ୍କ ବଳ ଦେଖି ହୋଇ ଅତି ସୁଖୀ
ଗର୍ଜିଲେ ଧୃଷ୍ଟଦ୍ୟୁମନ ବୁଜ ଆଖି ।
ଧୃଷ୍ଟଦ୍ୟୁମନଙ୍କର କୋବଦାର ଧ୍ୱଜ
ଦେଖି ତୋଷ ହୋଇଲେ ଭୀମ ସାରଥିଜ ।
ଭୀମକୁ ତ କାଳିଙ୍ଗେ ବେଢ଼ି ଯୁଝୁଥିଲେ
ଦ୍ରୁପଦସୁତ ଦେଖି ତା ସେଠାକୁ ଗଲେ ।
ଧୃଷ୍ଟଦ୍ୟୁମ୍ନ ଭୀମ କାଳିଙ୍ଗଙ୍କର ରଣ
ଦେଖିକରି ସାତ୍ୟକି ବିନ୍ଧି ବିନ୍ଧି ବାଣ ।
ସେହିଠାରୁ ବୋଡ଼ି ରଥକୁ ବୁହାଇଲେ
ମହାରଥୀଙ୍କର ଗରବ ମରଦିଲେ ।
ସାତ୍ୟକିଙ୍କ ଯୁଦ୍ଧେ ଦାରୁଣ କର୍ମ ଦେଖି
କାଳିଙ୍ଗ ଯେ ଗଲେ ତରଟି ଦେଇ ଆଖି ।
ଭୀମଙ୍କ କାଣ୍ଡ ଖଣ୍ଡା ଘାତରେ ରକତ
ମଣିଏ କାଳିଙ୍ଗଙ୍କ ଦେହୁଁ ହେଲା ଜାତ ।
କୁମ୍ଭ ଲୋକ ଦେଖି ସ୍ୱଚରେ କଲେ ଡକା
ଭୀମ ନୁହେ କାଳଦେବତା ଟି ଏ ଏକା ।

ଭୀଷ୍ମ ଶୁଣି ଲୋକମାନଙ୍କର ବଚନ
ଆସିଲେ ଭୀମକୁ ଦେଖାଇବାକୁ ବଳ ।
ସାତ୍ୟକ ଭୀମ ଧୃଷ୍ଟଦ୍ୟୁମ୍ନ ଗୋଟି ହୋଇ
କୁଢ଼ାଟିକ କାଣ୍ଡ ବନ୍ଧିଲେ ସେ ନଠାଇ ।
କୃଷ୍ଣ ପିତା ତାଙ୍କ କାଣ୍ଡକୁ କାଣ୍ଡେ ବାର
ତିନ ତିନ କାଣ୍ଡ ତିନଙ୍କି ଦେଲେ ମାର ।
ସହସ୍ର ଶରେ ଭୀଷ୍ମ ନିବାରି ତାଙ୍କ ବଳ
ଭୀମଙ୍କର ଘୋଡ଼ାଙ୍କୁ କଲେ ଯମଆଳ ।
ଘୋଡ଼ାମାନେ ମରନ୍ତେ ଭୀମ ବୀରମଣି
ଶକତିଟାଏ ଟେକି ଫିଙ୍ଗିଲେ ସେକ୍ଷଣି ।
ସେ ଶକତି ଭୀଷ୍ମ ଦେଖିଣ ରଣଦାଣ୍ଡେ
କାଟି ପକାଇଲେ ସେ ଦ୍ୱିକାଣ୍ଡରେ ଖଣ୍ଡେ ।
ଲୁହା ଗଦାଟିଏ ଧରିଣ ଭୀମସେନ
ଡେଇଁଲେ ନିଜ ରଥବରରୁ ବହନ ।
ଧୃଷ୍ଟଦ୍ୟୁମ୍ନ ତା ଦେଖି ଭୀମେ ନିଜ ରଥେ
ବସାଇଲେ ଧରି ପକାଇ ଦୁଇ ହସ୍ତେ ।
ସାତ୍ୟକ ଭୀମଙ୍କର ପ୍ରିୟ କରିବାକୁ
ନେଲେ ଭୀଷ୍ମଙ୍କର ସାରଥିର ପ୍ରାଣକୁ ।
ସାରଥି ହତ ହେବାକ୍ଷଣି ଭୀଷ୍ମ ରଥ
ବୁଲିଲା ଅଣଆୟତ୍ତରେ ରଣ ପଥ ।
ଭୀଷ୍ମଙ୍କର ଏ ଦଶା ଦେଖି ଦ୍ରୋଣବର
ଅଗ୍ନିପରି କରିଲେ କ୍ରୋଧରେ ଶରୀର ।
କୃଷ୍ଣ ସୈନ୍ୟଯାକକୁ ପକାଇଲେ ଦଳି
କେହି ନ ଯୁଝିଲେଟି ମରିବାର ଭଳି ।
ଧୃଷ୍ଟଦ୍ୟୁମ୍ନକୁ ଛାଡ଼ିଣ ଭୀମସେନ
ଆରୋହିଲେ ଯାଇଣ ସାତ୍ୟକଙ୍କ ଯାନ ।
ସାତ୍ୟକ ବୋଇଲେ ହେ ଭୀମ ମହାବଳ
କଳିଙ୍ଗ ବଳ ଯାହା ବଳେ ଦେଲ ଦଳ ।
ଏ ଆମ୍ଭମାନଙ୍କର ଅଟେ ବଡ଼ ଭାଗ୍ୟ
ଏଣୁ ପ୍ରଶଂସାକୁ ତୁମ୍ଭେ ହୋଇଲ ଯୋଗ୍ୟ ।
ଏ ରୂପେ ଭୀମଙ୍କୁ ସାତ୍ୟକ କହି ହସି
ପକାଇଲେ ପୋଟାଳ ହୋଇଣ ଲଳସୀ ।
ଏଥିଅନ୍ତେ ଭୀମ ଯୋତ୍ରଇ ଘୋଡ଼ା ରଥେ
ଯୁଝିଲେ କୃଷ୍ଣ କୁରୁସଇନଙ୍କ ସ ଥେ ।
ଭେଟେବେଳ ସରିକ ପହରେ ତିନ ବେଳ
ହୋଇଛୁ ଆହେ ଜାଣ ହସ୍ତିନା ମଣ୍ଡପାଳ ।

ଶଲ୍ୟ କୃପ ଅଶ୍ୱତ୍ଥାମାଙ୍କ କୁଳେ ରଣ
ଆରମ୍ଭିଲେ ଦ୍ରୁପଦସୁତ ଧୃଷ୍ଟଦ୍ୟୁମ୍ନ ।
ଦଶୋଟି କାଣ୍ଡ ବିନ୍ଧି ଦ୍ରୁପଦଙ୍କ ବେଟା
ଅଶ୍ୱତ୍ଥାମା ଘୋଡ଼ାଙ୍କ ନେଇଲେ ପ୍ରାଣଟା ।
ମରନ୍ତେ ଘୋଡ଼ା ଅଶ୍ୱତ୍ଥାମା ଶଲ୍ୟ ରଥେ
ସୁସ୍ଥ ହୋଇ ବସିଲେ ଧନୁ ଧରି ହସ୍ତେ ।
ଧୃଷ୍ଟଦ୍ୟୁମ୍ନଙ୍କୁ ଯୋଖିଣ ମାରଗଣ
ବିନ୍ଧିଲେ ଅବହିଳେ ଦେଖାଇଣ ଟାଣ ।
ଅଶ୍ୱତ୍ଥାମା ଧୃଷ୍ଟଦ୍ୟୁମ୍ନ ଯୁଦ୍ଧ ଦେଖି
ଅଭିମନ୍ୟୁ ତହିଁ ଆସିଲେ ଶର ଯୋଖି ।
ଆପଣାର ହସ୍ତ ଲାଘବ ଦେଖାଇଲେ
ପଚିଶ ଖର ଶଲ୍ୟରାଜାଙ୍କୁ ବିନ୍ଧିଲେ ।
କୃପଙ୍କୁ ନବକାଣ୍ଡ ବିନ୍ଧିଣ କୋଦଣ୍ଡ
କାଟିଲେ ଅଭିମନ୍ୟୁ କ୍ରୋଧେ କାଳ ପିଣ୍ଡ ।
ଅଶ୍ୱତ୍ଥାମା ଉପରେ ଆଠ ଶର ବାଛୁ
ପ୍ରହାରିଲେ ଯୋଖି ସୁଭଦ୍ରା ଦେବୀ ବହ୍ନି ।
ଅଶ୍ୱତ୍ଥାମା ପାର୍ଥସୁତର ଶର ସାଥ ।
ପାଇ କ୍ରୋଧଭରେ ଟେକିଣ ଧନୁ ହାତ ।
ହବ୍ୟ ଅସ୍ତ୍ରମାନଙ୍କୁ ଯୋଖିକରି ଗୁଣେ
ବସାଇ ଆର୍ଜୁନିଙ୍କି ବିନ୍ଧିଲେ ଆପଣେ ।
ଶଲ୍ୟ ବାରକାଣ୍ଡ ଯେ କୃପ ତିନିକାଣ୍ଡ
ବିନ୍ଧିଲେ ମିଶି ଧରି କରରେ କୋଦଣ୍ଡ ।
କୃଷ୍ଣ ନାତି ଲକ୍ଷ୍ମଣ ଆର୍ଜୁନ ବୀରପଣ
ନ ସହି ଆସିଲେ ବିନ୍ଧିଲେ ତାଙ୍କୁ ବାଣ ।
ଅଭିମନ୍ୟୁ ଲକ୍ଷ୍ମଣ ବିନ୍ଧିବା କାଣ୍ଡ ଦେଖି
ବିନ୍ଧିଲେ ପାଞ୍ଚଶତ କାଣ୍ଡ ଗୁଣେ ଯୋଖି ।
ଲକ୍ଷ୍ମଣ ଅଭିମନ୍ୟୁ ଧରିବା ଧନୁଟି
ମୂଠାରୁ କାଣ୍ଡ ଗୋଟିକେ ଦେଲେ କାଟି ।
ଅଭିମନ୍ୟୁ ଛାଡ଼ିବା ଧନୁ ଥୋଇ ରଥେ
ଆନ ଧନୁଟାଏ ଧଇଲେ ପୁଣି ହାତେ ।
ନିମିଷ ମାତ୍ରକେ ଚଢ଼ାଇ ତହିଁ ଗୁଣ
ବଢ଼ାଇଲେ ଯୁଦ୍ଧେ ଆପଣା ବୀରପଣ ।
ଅନ୍ୟୋନ୍ୟରେ ଦୁହେଁ ନିରେଖି ଶରସଜ
ବିନ୍ଧାବିନ୍ଧି ହେଲେ ସେ ଯୁଦ୍ଧରେ ଗରଜ ।
ଦୁର୍ଯ୍ୟୋଧନ ରାଜା ପୁତ୍ରର ଦେଖି ପୀଡ଼ା—
ରଥ ଚଢ଼ି ଆର୍ଜୁନ ଆଗେ ହେଲେ ଛିଡ଼ା ।

ଦୁର୍ଯ୍ୟୋଧନ ଯିବାର ଦେଖି ରାଜାଗଣ
ଧାଇଁଲେ ପଛେ ପଛେ ଧରି ଧନୁର୍ବାଣ ।
କୁରୁ ରଥୀ-ସମୂହେ ଅରଜୁନସୁତ
ଆବୃତ ହୋଇ ଚନ୍ଦ୍ରପ୍ରାୟ କଲେ ହତ ।
ଅର୍ଜୁନ ଦେଖି କ୍ରୁଦ୍ଧ ଅଭିମନ୍ୟୁ ସୁତ
ଆସିଲେ ଧାଇଁ ସେହିଠାକୁ ବହି କ୍ରୋଧ ।
ଅର୍ଜୁନ ଯିବା ଦେଖି ଭୀଷ୍ମ ଦ୍ରୋଣ ଦୁଇ
ଆସିଲେ ଧାଇଁ ସୈନ୍ୟ ଆଗରେ ଚଳାଇ ।
ସେହିକାଳେ ଯୁଦ୍ଧଭୂମିରୁ ଉଡ଼ି ଧୂଳି
ରହିଲା ମାଡ଼ି ଯାଇ ସୂର୍ଯ୍ୟ ରଶ୍ମିମାଳୀ ।
ଅର୍ଜୁନ ବାଣପଥ ପାଇ ହାତୀଯୂଥ
କଲେ ସେ ଯୁଦ୍ଧଭୂମିଟିକି ଦେହସାଥ ।
ଶତ ଶତ ରାଜାମାନେ ଯେ କୋଟି ହୋଇ
ଥିଲେ ତ କଣଟିକ ନ ପାରିଲେ ସହି ।
ଜଳଦ ସୂର୍ଯ୍ୟ ପରି ଅରଜୁନ ତେଜ
ବୁଡ଼ାଇଲା ସବୁରି ନୟନ-ସରୋଜ ।
କୁରୁ ଯୋଦ୍ଧାମାନେ କରିଣ ଘୋର ରଡ଼ି
ପଳାଇଲେ ରାଜନ ଯୁଦ୍ଧଭୂମି ଛାଡ଼ି ।
ଦେଖାଇ ହସ୍ତ ବେଗ ପାଣ୍ଡବ ବହି ରାଗ
ବହନ୍ତେ କରେ ଧରି ଗାଣ୍ଡୀବ ମଧ୍ୟଭାଗ ।
ଆକାଶ ଦଶ ଭୂମି ନ ଦିଶିଲା କିଛି
କହିବି ମୁଁ କିସ ବିଚିତ୍ରଶୌର୍ଯ୍ୟବନ୍ତି ।
ସିପାଇମାନେ ହାହାକାର ରଡ଼ି ଛାଡ଼ି
ଧୂଆଁଇଲେ ଯେ ଘୋଡ଼ାମାନଙ୍କୁ ଉଦ୍ଦେଶି ।
ପାର୍ଥ ହାତ ଗାଣ୍ଡୀବ ଧନୁ ଶରବ୍ରାତ
ଦେହକୁ କରିଣ ବସିଲେ ଯମପଥ ।
ରଥୀମାନଙ୍କର ସାରଥି ଘୋଡ଼ାଧ୍ୱଜ
ଯାଆନ୍ତେ ଛାଡ଼ି ପଳାଇଲେ ବହି ଲଜ ।
ହାତୀ ଘୋଡ଼ା ଚଢ଼ାଏ ଅର୍ଜୁନ କାଣ୍ଡ ଘାଏ
ତେଜିଁପଡ଼ ପଳାଇଲେ ସେ ଅତି ଭୟେ ।
ଯେ ରୂପରେ ପାଚିଲେ ପଡ଼ଇ ତାଳକୁଟି
ସେରୂପରେ ଅର୍ଜୁନ ବାଣେ କୋଟି କୋଟି ।
କୁରୁ ଯୋଦ୍ଧାମାନଙ୍କ ଶିରସ୍ତ୍ରାଣ ଭୂଲେ
ମସ୍ତକେଣେ ମୁଣ୍ଡ ପଡ଼ଣ ପଡ଼ିଗଲେ ।
ଚନ୍ଦନରେ ଭୂଷିତ ବାହୁଗଣ ଛାଡ଼ି
ତାଳପରି ପଡ଼ିଲେ ତଳରେ ଅନାଡ଼ି ।

ଝଣ୍ଡାଧାରୀମାନଙ୍କ କଟିରୁ କର
ଛିଡ଼ନ୍ତେ ହୋଇଲେ ସେ ଲୋକ ଯମଙ୍କର ।
ଗଦାଧାରୀ ଭୁଜ ପଡ଼ନ୍ତେ ସଦା ଗଦା
ପଡ଼ିଲେ ଶୋଇ ଗୁଡ଼ିବେଇ ସେ ମର୍ଯ୍ୟାଦା ।
ପ୍ରାସଧାରୀମାନେ ଶରରେ ତ୍ରାସ ପାଇ
ହୋଇଲେ ଅର୍ଜୁନ ରହିରୁ ଦାସ ହୋଇ ।
ଅଙ୍କୁଶଧାରୀଙ୍କର ଅଙ୍କୁଶଧାରୀ ହାତ
ଛିଡ଼ନ୍ତେ ସେ ମସ୍ତମଧ୍ୟକୁ ହେଲେ ଗତ ।
ଅରଜୁନ ରୌଦ୍ରରୂପକୁ କ୍ରୋଧେ ଧରି
ମାରିଦେଲେ ଥିଲେ ଯେତେକ ଅସ୍ତ୍ରଧାରୀ ।
ପଣବ ମୃଦୁଙ୍ଗର ତ୍ରାସ ଉଦ୍ଭପାଳ
ନିସ୍ତ୍ରିଂଶ ପରଶ୍ୱଧ ତୋମର ଚର୍ମଜାଳ ।
ଧ୍ୱଜ ଛତ୍ର କବଚ ଚାମର ନିରନ୍ତର
ଛିଣ୍ଡି ନନ୍ଦାକାଳ କରିଲା ଗଡ଼ିବାର ।
ଏ ରୂପରେ ଅର୍ଜୁନ ଯୁଦ୍ଧରେ ସଂହାର
କରନ୍ତେ ଡରିଗଲେ କୁରୁ ଯୋଦ୍ଧାନର ।
ଏହା ଜାଣିସାରି ଟି ପାଣ୍ଡବ କଣ୍ଠୀ
ମସ୍ତକ ଉପରେ ବୁଲାଇ ଖାସୁକଟି ।
ଦେବଦତ୍ତ ଶଙ୍ଖକୁ କରିଦେଲେ ବହି
ଫୁଙ୍କିଲେ ଆଣ୍ଠକରି ସ୍ଥାନ ମାଡ଼ିରହି ।
କୁରୁ ବାବୁ ଦେଖି ଅର୍ଜୁନ ବୀରପଣ
ହସିକରି ଦ୍ରୋଣଙ୍କୁ କହିଲେ ବଚନ ।
କୃଷ୍ଣଙ୍କୁ ଘେନି ପାର୍ଥ କଲା ଆଜ ଯାହା
ଏହା କି କରିପାରେ ଷଣ୍ଢି କୁଳ ବାହା ।
କାଳଦେବ ପରି ଦିଶୁଛି ଦେଖ ରୂପ
ଯୁଝିଲେ ଆଜ ପାଇବା ଆମ୍ଭେ ତାପ ।
ସେନାଯାକ ଆମ୍ଭର ପଳାଇ ଗଲେଣି
ଏତେବେଳେ ଯୁଝିଲେ ହେବ ବଳହାନି ।
ସୂର୍ଯ୍ୟ ଆସି କିରଣମାନଙ୍କୁ କରି ସ୍ଥାନ
ଲଭିଲେଣି ଯେ ଅସ୍ତଗିରି ଶିଟସ୍ଥାନ ।
ଚାଲ ଆମ୍ଭେ ଦୁହେଁ ବାହୁଡ଼ିଣ ବସାକୁ
ଯିବାଟି କାର୍ଯ୍ୟ ନାହିଁ ଡାକିଲେ ପାର୍ଥକୁ ।
ଏରୂପେ ଭୀଷ୍ମ ଦ୍ରୋଣ କଥାବାର୍ତ୍ତା ହୋଇ
ବାହୁଡ଼ିଲେ ବସାକୁ ଜାଣ ନରସାଇ ।
କୁରୁର ଯୋଦ୍ଧାମାନେ ତାଙ୍କର ପଛରେ
ଗମିଲେ ପଦସ୍ତକୁ ଚଳାଇ ପଥରେ ।

କଥାବାର୍ତ୍ତା ହୋଇ ଅର୍ଜୁନ ବୀରପଣ
ବୋଲିବୋଲି ହେଲେ ମଣିବା ନଷ୍ଟେ ଜାଣ ।
ଆଜ ଯାହା କଲ ଟି ପାଣ୍ଡବ କିରୀଟୀ
ଦେଖିବାକ୍ଷଣି ଆଖି ଆମ୍ଭଗଲା ଫୁଟି ।
ତିନ ଲୋକରେ ଅର୍ଜୁନର ସମ ବୀର
ନାହିଁ ତ କେ କରିବ ତାହାଙ୍କୁ ସମର ।
ଦୁର୍ଯ୍ୟୋଧନ ରାଜା ଟି ରାଜ୍ୟଲୋଭୀ ହୋଇ
ଆଣି ନୃପଗୁଡ଼ାଏ ଦେଉଛି ମରାଇ ।
ସେ ଯେଉଁ ବନ ଯାଇ ପାର୍ଥ ବାଣଗଣ
ମୁଖେ ଭେଟ ହେବ ହେ ପାଇବ ମରଣ ।
ଧୃତରାଷ୍ଟ୍ର ନୃପତି ପୁତ୍ରଶୋକୀ ହୋଇ
ବନମଧ୍ୟେ ରହିବେ ଲେଖିଅଛି ବନ୍ଧ ।
ଏଥିରେ ବାଞ୍ଛିବାକୁ ଅଛି କେଉଁ କଥା
କହୁ ନ ଥାଇଁ ହେ ଏଥିରେ ଖଞ୍ଜି ଲଥା ।
ଏରୂପେ ରାଜନ କୁମ୍ଭର ସୈନ୍ୟଯାକ
ନେ ଯା'ର ବସାକୁ ଆସିଲେ ବହୁ ଶୋକ ।
କୁରୁ ଜବା ଦେଖି ପାଣ୍ଡବେ ଘେନ ସୈନ୍ୟ
ଗଲେ ଯହିଁ କରିଥିଲେ ସେ ବାସସ୍ଥାନ ।
କ୍ରମରେ ଅନ୍ଧକାର ଆସିଲ ପ୍ରବଳି
ବର୍ଜିଣ ଦେଲା ଖରଦଗଙ୍କର ଜ୍ୟୋତି ।
ଦ୍ୱିତୀୟ ଦିନ ଯୁଦ୍ଧ ସମାପତ, ବ୍ୟାସ
କହିଲେ କହେ କୃଷ୍ଣସିଂହ ନରଈଶ ।

———

### ତୃତୀୟ ଦିନ ଯୁଦ୍ଧ

ଏଥୁଅନ୍ତେ ରଜନୀ ଶେଷେ ଭୀଷ୍ମ ପିଠି
ଦଂସୂଲ କୁଳୀ ଗୁଡ଼ ବର୍ଷିଲେ ରତ୍ନେ ଉଠି ।
ସୈନ୍ୟ ସଙ୍ଗେ ଧରି ଭାରତଯୁଦ୍ଧସ୍ଥାନେ
ଗାରୁଡ଼ବ୍ୟୂହ କଲେ ଭୀଷ୍ମ ତୋଷମନେ ।
ଗାରୁଡ଼ବ୍ୟୂହ କଲେ କୁମ୍ଭର ବାବୁଟି
ଭୀଷ୍ମ ଜଗି ରହିଲେ ଧରିଣ ଧନୁଟି ।
କୃତବର୍ମା ଦ୍ରୋଣ ସେ ବ୍ୟୂହ ଚକ୍ଷୁ ଦୁଇ
ରହିଲେ ଜଗି ହେ ଦମ୍ଭିନା ନରସାଇ ।
ଅଶ୍ୱତ୍ଥାମା କୃପ କେକେୟ ମତ୍ସ୍ୟଆଦି
ଜଗିଲେ ସେ ବ୍ୟୂହମସ୍ତକ କରି ଆଣ୍ଠ ।
ଭୂରିଶ୍ରବା ଜୟଦ୍ରଥ ଯେ ସିନ୍ଧୁରାଜ
ପଞ୍ଚନଦ ସୌବୀର ଭଗଦତ୍ତ ଶଲ୍ୟ ।

ବ୍ୟୂହର ଗ୍ରୀବାଦେଶ ଜଗିଲେ ଗୋସାଇଁ
ନଣ ଦୁଇ ମୋହଣ କରରେ ଗେଷାଇ ।
ସ୍ୱଭଙ୍କ ଘେନ ଦୁର୍ଯ୍ୟୋଧନ ନରଈଶ
ପାଳନା କଲେ ଜଗି ବ୍ୟୂହପୃଷ୍ଠଦେଶ ।
ବିନ୍ଦ ଅନୁବିନ୍ଦ କାମ୍ବୋଜ ଶୂରସେନ
ଶକାଦ ଜଗିଲେ ବ୍ୟୂହର ପୁଚ୍ଛସ୍ଥାନ ।
ବାଣେରକ ମାଗଧ କାଳଙ୍ଗାଦ ବୀରେ
ଜଗିଣ ରହିଲେ ସେ ଦକ୍ଷିଣପାଶରେ ।
କରୁଷମୁଣ୍ଡ କୁଣ୍ଡୀ ବିକୁଞ୍ଜ ବୃହଦ୍‌ବଳ
ବୃଷାଦ ବୀରମାନେ ହେ ଇକଣ ମେଳ ।
ବ୍ୟୂହଟିର ବାମ ପାର୍ଶ୍ୱଟି ଜଗିଲେ
ଯୁଧିଷ୍ଠିରସେନା ମାରିବା ଇଚ୍ଛା କଲେ ।
କୁମ୍ଭର ବ୍ୟୂହ ଦେଖି ପାଣ୍ଡବ କିରୀଟୀ
କଲେ ସେ ଅର୍ଦ୍ଧଚନ୍ଦ୍ର ନାମରେ ବ୍ୟୂହଟି ।
ନାନା ନୃପତିଙ୍କ ସଙ୍ଗତରେ ଚଳାଇ
ସେ ବ୍ୟୂହ ଦକ୍ଷିଣେ ରହିଲେ ଭୀମ ଯାଇ ।
ଭୀମଙ୍କୁ ଅନୁଲକ୍ଷି ବିରାଟ ଦ୍ରୁପଦ
ରହିଲେ ଥାଟ ଘେନ ବହୁଣ ପ୍ରମୋଦ ।
ନୀଳ ନାନାଆୟୁଧମାନଙ୍କୁ ସଙ୍ଗେ ଧରି
ଦ୍ରୁପଦ ବିରାଟେ ରହିଲେ ଜଗି କରି ।
ଚେଦ୍ଧ କାଶୀ କରୁଷ ପଉରବ କୁଳେ
ଧୃଷ୍ଟକେତୁ ମାନଙ୍କ ପୃଷ୍ଠକୁ ଜଗିଲେ ।
ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନ ପାଞ୍ଚାଳ ପଭଦ୍ରକ
ସୈନ୍ୟ ମଧ୍ୟେ ରହିଲେ ବହୁଣ ଶାସ୍ୱକ ।
ଯୁଧିଷ୍ଠିରସ୍ୱଜାତି ଗଜାନୀକ ଘେନ
ହୋଇଲେ ସ୍ୱଜନ ସୈନ୍ୟର ମଧ୍ୟସ୍ଥାମୀ ।
ଯୁଧିଷ୍ଠିରଙ୍କର ପୃଷ୍ଠର ସାହା ହୋଇ
ରହିଲେ ଦ୍ରୌପଦେୟ ଅଭିମନ୍ୟୁ ଯାଇ ।
ଭଗବାନ ଯେ ଘଟଉତ୍କଚ ତାହାଙ୍କୁ
ଜଗିଲେ ଯୁଦ୍ଧେ କରିବାକୁ ଟି ରକ୍ଷାକୁ ।
କୃଷ୍ଣ ଅରଜୁନ ବ୍ୟୂହର ବାମପାଶେ
ରହିଲେ କୁରୁବଳ ବଢ଼ାଇବା ଆଶେ ।
ଏରୂପେ ବ୍ୟୂହ କରି ଯେ ପାଣ୍ଡବମାନେ
ଜଗିଲେ କୁମ୍ଭ ସେନା ସଙ୍ଗେ କୋପମନେ ।
ଦୁଇ ସେନାଯାକର ରଥ ହାତୀକୋଟି
ବାଜି କାଣ୍ଡ ଖଣ୍ଡା ମଧ୍ୟରେ ଗଲେ ଲୋଟି ।

ରଥମାନଙ୍କର ଚକର ଯିବା ଘାତେ
କମ୍ପି ଗଲା ମହୀ-ମଣ୍ଡଳ ଟି ତରନ୍ତେ ।
ଏହି ପ୍ରକାରେ ପ୍ରବର୍ତ୍ତିଲା ରଣ ଠାଣ
ପୂରିଲା ଚଟଣରେ ଆକାଶ ଅଙ୍ଗଣ ।
ଅର୍ଜ୍ଜୁନ ଏକାକେ ଗାଣ୍ଡୀବଧନୁ ଧରି
ଦେଲେ କୁରୁ ରଥୀକୁଳକୁ ସଂହାରି ।
କାଳଦେବଙ୍କ ପରି ଅର୍ଜ୍ଜୁନ ପ୍ରତାପ
ଦେଖି କୁରୁ ଯୋଏ ଲଭିଲେ ମନେ ତାପ ।
ଧନୁମାନଙ୍କର ମଧ୍ୟକୁ ଆଣ୍ଡେ ଛଡ଼ି
ପାର୍ଥ-ଅଗ୍ନି ଉପରେ ପଡ଼ିଲେ ଅଜାଡ଼ି ।
ମରିବା କଥାରୁ ଭୟକୁ ଦୂର କଲେ
ପାଣ୍ଡବଙ୍କ ରଥୀକୁଳକୁ ଦଳିଦେଲେ ।
ପାଣ୍ଡୁସେନା ଲୋକେ ତ ଅଟନ୍ତି ଆଣୁଆ
ମାଇଲେ କାଂଡ଼ ଖଂଡ଼ା କ୍ରୋଧେ ହୋଇ କଆଁ
କୁରୁ ବୃଷଙ୍କର ଅଳପ ବଳ କାଯ୍ୟେ
ଭୂମିତଳୁ ଡରରେ ଭାଜିଲେ ସବୁଏଁ ।
ସେକାଳେ ଦୁଇ ସେନା ଲୋକରେ ଭଗୁଡ଼ି
ପଡ଼ିଲା ପଡ଼ିବାରେ ରଥୀଙ୍କ ଶରଧାଡ଼ି ।
ଧୂଳିଘାତେ ସୂର୍ଯ୍ୟଦେବତା ମ୍ଳାନକର
ହୋଇଲେ ଦିବସ ଦିଶିଲା ଭୟଙ୍କର ।
ମନୁଆଟିମାନେ ଗୋଟ ଯେ ନାମ କହି
ପାଳଟି ଯୁଦ୍ଧ କଲେ ହସ୍ତିନାନ୍ୟାଇଁ ।
ଦ୍ରୋଣଙ୍କ ରକ୍ଷିତ ହେବାରୁ କୁରୁଥାଟ
ଭଙ୍ଗି ନ ପାରିଲେ ପାଣ୍ଡବଲୋକେ ଆଣ୍ଟ ।
ଅରଜୁନ ଭୀମ ଥିବାରୁ ଧନୁ ଧରି
ଦ୍ରୋଣ ନ ପାରିଲେ ସେ ସଇନ ନିବାରି ।
ଦୁଇସେନାଯାକ ଯେ ବ୍ୟୂହରୁ ବାହାରି
ହେଲେ ପୁଣି ଶସ୍ତ୍ରମାନଙ୍କେ ମରାମରି ।
ସିପାଇଏ ସିପାଇମାନଙ୍କୁ ମୂଷଳ
ପରିଘ ଘେନ ଧ୍ୱଂସ କଲେ ଦେଖ ଫାଳେ ।
ରଥୀଏ ରଥୀଙ୍କର ରଥକୁ ଲଗାଇ
ବନ୍ଧାବନ୍ଧ ହୋଇ ବସିଲେ ସ୍ୱର୍ଗେ ଯାଇ
ମାହୁନ୍ତ ମାହୁନ୍ତରେ ଭକାଭକ ହେଲେ
କରେ ଧରି ତୋମର ଟେକିଣ ଫିଙ୍ଗିଲେ ।
ପାଇକେ ପାଇକେ ମୂଷଳ ଭିନ୍ଦିପାଳ
ମାରିଣ ଶୁଆଇଲେ ରଣଭୂମିତଳ ।

ଗଜ ଯୋଦ୍ଧା ରଥୀଏ ହୋଏ ଯୋଟାଯୋଟି
ଅଇଲେ ସୁଖେ ଯମ ରାଜନକୁ ଭେଟି ।
ଅଶ୍ୱାରୋହୀ ରଥୀଙ୍କୁ ଦେଲେ ବଡ଼ ମାଡ଼
ଘୋଡ଼ାଚଢ଼ାଙ୍କୁ ରଥୀ କଲେ ଦୁଇଖଣ୍ଡ ।
ଦୁଇସେନା ପାଇକ ରଥୀ ମରାମରି
ହୋଇଲେ ମନୋବାଞ୍ଛା କରି ସ୍ୱର୍ଗପୁରୀ ।
ଗଜାରୋହୀଙ୍କ ପ୍ରାଣ ଘେନିଲେ ପାଇକେ
ପାଇକଙ୍କୁ ମାଇଲେ ଗଜାରୋହୀ ଲୋକେ ।
ଏରୂପେ ପାଇକେ ସିପାହୀ ମରାମରି
ହୋଇ ଯୁଦ୍ଧବାଂଡ଼େ ପଡ଼ିଲେ ରକ୍ତେ ମରି ।
ଧ୍ୱଜ ଛତ୍ର ପତାକା ଧନୁର୍ବାଣ ଶକ୍ତି
ପରିଘ କୁନ୍ତ ପ୍ରାସ ପଡ଼ି ଯୁଦ୍ଧକ୍ଷିତି ।
ଧାଇଥିବା ହାତୀ ଯେ ପଦାତିକଗଣ
ଚକଟି ପକାଇଲେ ଆହେ ନରସଣ ।
ହାତୀ ଘୋଡ଼ା ନରଙ୍କ ମଡ଼ାରେ ସେ ମହୀ
ସଙ୍କୁଳ ହୋଇବାରୁ ନୋହିଲା ଚଳି ଯାଇ ।
ଦୁଇ ସୈନ୍ୟର ଦେହ-ଶିରରୁ ରକତ—
ଝରଣା ସେତେକାଳେ ହୋଇ କରି ଜାତ ।
ଯୁଦ୍ଧଭୂମି ଧୂଳିକି ଓଦା କରି ଦେଇ
କେତେ ପ୍ରଦେଶରେ ସେ ମାଡ଼ିଲା ଗୋସାଇଁ ।
ହାତୀ ଘୋଡ଼ା ମନୁଷ୍ୟଙ୍କର ଅନ୍ତ ମେଦା
ବାସନା ହୋଇବାରେ ନାକ ହେଲା ପଚୁ ।
ମସ୍ତ ନାଶ ପାଇଁ କବନ୍ଧ କୋଟି କୋଟି
ନାଚିବାର ଦେଖିଲି ମୋ ଆଖି ଦଓଟି ।
ଭୀଷ୍ମ ଦ୍ରୋଣ ଜୟଦ୍ରଥ ଯେ ବୃଦ୍ଧମିତ୍ର
ଶକୁନ ଆଦି କ୍ରୋଧେ ଅସଇଣ ଗାହ ।
ପାଣ୍ଡବସଇନ୍ୟ ନାଶକୁ ଶରଶ୍ରେଣୀ
ସରଜ ସଳଖରେ ଦେଇ ଦେଲେ ହାଣି ।
ଭୀମ ଘଟୋତ୍କଚ ସାତ୍ୟକ ଚେକିତାନ
ଦ୍ରୌପଦେୟ ସୁଭଦ୍ରାଦେବୀଙ୍କ ନନ୍ଦନ ।
କରେ ଧନୁ ଧରିଣ କୁରୁର ସୈନ୍ୟଙ୍କୁ
କରାଇଲେ ଯମରାଜନ ଦର୍ଶନକୁ ।
ଅନ୍ୟୋନ୍ୟେ ଦୁଇ ଥାଟ ହୋଇ ମରାମରି
ଦ୍ୱଅନ୍ତେ ପକାଇଲେ ରକତ ଉଦ୍‌ଗାରି ।
ଯୁଦ୍ଧ-ଭୂମି ଆକାଶେ କୁରୁ ତାଙ୍କ ରଥୀ
ରହ ପରି ସୈନ୍ୟ ନଷ୍ଟ କଲେ ବ୍ୟଥୀ ।

ସହସ୍ରେ ରଥୀ ଘେନ କୁମ୍ଭ ଜ୍ୟେଷ୍ଠ ସୁତ
ଘଟୋତ୍କଚର ସଇନକୁ ହେଲେ ଗତ ।
ପାଣ୍ଡବେ ସଙ୍ଗତରେ ଘେନ ବଡ଼ ଥାଟ
ବେଢ଼ି ଗଲେ ଭୀଷ୍ମ ଦ୍ରୋଣଙ୍କ ବ୍ୟୂହପଟ ।
ଅର୍ଜୁନ ଗଣ୍ଡ ଧନୁ-ପାଟିକ ବସ୍ତ୍ରାଣ
ରଥୀବୃନ୍ଦ-ସୂର୍ଯ୍ୟ ଘୋଟିଲେ ଆସିକରି ।
ଅଭିମନ୍ୟୁ ସାତ୍ୟକି ଶକୁନି ବଳକୁ
ବନ୍ଧ ବନ୍ଧ ଗଲେ ଟି ମାର୍ଗଣଗଣକୁ ।
କୁମ୍ଭ ଲୋକଙ୍କର ପାଣ୍ଡବମାନଙ୍କର
ଏରୂପେ ଘୋର ଯୁଦ୍ଧ ହେଲା ନରବର ।
ରାଜାମାନେ ବହୁ ସହସ୍ର ରଥ କୁଳେ
ଯୁଝିବା ଇଚ୍ଛା କରି ପାର୍ଥଙ୍କୁ ବେଢିଲେ ।
ସହସ୍ର ସଂଖ୍ୟା କାଣ୍ଡ ପାର୍ଥର ଦେହକୁ
ସନ୍ଧାଣ ବନ୍ଧିଲେ କମ୍ପାଇ କୋଦଣ୍ଡକୁ ।
ଏ ବାହାରେ ପରିଘ ଶକ୍ତି ପରଶ୍ୱଧ
ମୁଦଗର ଆଦି ଫିଙ୍ଗିଲେ ବଦ୍ଧ କ୍ରୋଧ ।
ଅରଜୁନ ସେ ଶର ଶରବୃଷ୍ଟି ଶରେ ଛିନ୍ନ
ବନ୍ଧିଲେ ବାଛୁ କାଣ୍ଡ ଗୁଣମଧ୍ୟେ ସନ୍ଧି ।
ଦେବ ଯକ୍ଷ ଗନ୍ଧର୍ବ ମାନବ ଅସୁର
ତା ଦେଖି ପ୍ରଶଂସିଲେ ପାର୍ଥଙ୍କୁ ଅପାର ।
ସାତ୍ୟକି ଅଭିମନ୍ୟୁ ଶକୁନି ସୈନ୍ୟରେ
ପଶିଥିଲେ ତାଙ୍କୁ ମାଇଲେ ସୁମନରେ ।
ସଉବଳ ଲୋକେ ବଳକୁ ଦେଖାଇଲେ
ସାତ୍ୟକି ରଥୁଟିକି କାଟି ପକାଇଲେ ।
ସାତ୍ୟକି ତ ଅଟନ୍ତ ଅତି ସମରଥ
ଚଢ଼ିଲେ ସେହିକ୍ଷଣି ଅଭିମନ୍ୟୁ ରଥ ।
ଏକା ରଥକେ ସେ ଦୁଇ ରଥୀ ବସି
ସୌବଳଙ୍କ ସୈନ୍ୟ ପକାଇଦେଲେ ନାଶି ।
ଦ୍ରୋଣ ଭୀଷ୍ମ ଦୁହେଁ ହୋଇଣ ସାବଧାନ
ଘେନଲେ ଯୁଧିଷ୍ଠିର ସେନାଙ୍କ ଜୀବନ ।
ଯୁଧିଷ୍ଠିର ଯେ ସହାସାନ ଦୁଇଭାଇ
ଘେନ ଦ୍ରୋଣଠାକୁ ଆସିଲେ ବେଗେ ଧାଇଁ
ଦେବାସୁର ଯୁଦ୍ଧ ପରାୟେ ସେହି ଯୁଦ୍ଧ
ମଣିଲେ ଶୂନ୍ୟେ ଥାଇ ଦେଖିଣ ବିବୁଧ ।
ଦୁର୍ଯ୍ୟୋଧନ ଭୀମ ଯେ ଘଟୋତ୍କଚ ଆଗେ
ଧନୁ ଧରି କାଣ୍ଡ ବନ୍ଧିଲେ ଅତି ରାଗେ ।

ଘଟୋତ୍କଚ ତା ଦେଖି ହୋଇ ଅତି ତମୀ
ବାବୁଙ୍କୁ ପ୍ରତି ହେଲା ଦ୍ୱିଗୁଣ ବନ୍ଦମୀ ।
ଭୀମ କ୍ରୋଧ ହୋଇଣ ଦୁର୍ଯ୍ୟୋଧନ ହୃଦେ
କାଣ୍ଡେ ଗୁଡ଼ିଣ ରଡ଼ି କଲେ ଅତି ମୋଦେ ।
ଦୁର୍ଯ୍ୟୋଧନ ହୃଦଦେଶେ ସେ କାଣ୍ଡ ବାଜ
ଭଣ୍ଡୀଫଳ ପାଖେ ରହିଲା କେତେ ମଜ୍ଜି ।
ସେହି ଘାତରେ କୁମ୍ଭ ପୁଅଟି ଅଜ୍ଞାନ
ହୋଇଣ ରଥପରେ ବସିଲେ ବହନ ।
ମଲା ପରି ଦୁର୍ଯ୍ୟୋଧନର ଦଶା ଦେଖି
ସାରଥି ରଥ ବାହିନେଲା ବୁଜ ଆଖି ।
କୁରୁସେନାୟକ ଭାବିଲେ ଭୀମ ତ୍ରାସେ
ଭୀମ ପୃଷ୍ଠଦେଶରେ ଗୋଡ଼ାଇଲେ ରୋଷେ ।
ଯୁଧିଷ୍ଠିର ଧୃଷ୍ଟଦ୍ୟୁମ୍ନ ଦୁଇ ରଥୀ
ଭୀଷ୍ମ ଦ୍ରୋଣ ସୈନ୍ୟେ କାଣ୍ଡରେ କଲେ ବଂଥୀ
କୁମ୍ଭର ସୈନ୍ୟଯାକ ହୋଇଣ ତରସ୍ତ
ଭାଜିଲେ ବାରୁଁ ବାରୁଁ ଦ୍ରୋଣ ଦେବବ୍ରତ ।
ସାତ୍ୟକି ଅଭିମନ୍ୟୁ ବସି ଏକାରଥେ
ମାଇଲେ ଶକୁନି ସେନାକୁ ଶରପଥେ ।
ଅର୍ଜୁନ ଶରଧାର ବୃଷ୍ଟିକି ରଚନା
କଲେ କୁମ୍ଭ ସୈନ୍ୟରେ ହୋଇ କୋପମନା
ପାର୍ଥ କାଂଡ଼ କୁରୁସେନାଙ୍କ ଗଣ୍ଡ ଫୋଡ଼ା
କଲକ୍ଷଣି ପଛକୁ କାଢ଼ିଲେ ସେ ଭଡ଼ା ।
ଭୀଷ୍ମ ଦ୍ରୋଣ ଦୁର୍ଯ୍ୟୋଧନର ହିତ ପାଇଁ
ପଳାଇବା ଲୋକକୁ ଓଗାଳିଲେ ଯାଇ ।
ଦୁର୍ଯ୍ୟୋଧନ ସଭିଙ୍କି କରି ଆଶ୍ୱସନା
ବାହାରିଲେ ପୁଣି ହୋଇଣ ଯୁଦ୍ଧମନା ।
ପୁଣି ଦୁଇ ସୈନ୍ୟ-ସିନ୍ଧୁଙ୍କ ଭେଟାଭେଟି
ହେଲେ ଭୀଷ୍ମ-ଅର୍ଜୁନ-ଚନ୍ଦ୍ର ଦେଖି ଘୋଟି ।
ଦୁର୍ଯ୍ୟୋଧନ ସେକାଳେ ଭୀଷ୍ମ ପାଶେ ଯାଇ
କହିଲେ ମୋହ ପରି ଭାଗ୍ୟବନ୍ତ ନାହିଁ ।
ଧନୁ ଧରିଣ କୁମ୍ଭେ ହୋଇଅଛ ଛିଡ଼ା
ବଡ ଭଲେ ଅର୍ଜୁନ ଯୁଦ୍ଧରେ ମୋ କ୍ରୀଡ଼ା ।
କୃପ ଦ୍ରୋଣ ଦ୍ରୌଣି ଏ ମଧ୍ୟ ଜୀଇଛନ୍ତି
ଦେଖୁଛନ୍ତି ମାରୁଛି ସୁଭଦ୍ରାଙ୍କ ପତି ।
ତୁମ୍ଭେମାନେ ଯେବେ ଯୁଝନ୍ତି ମନ ଦେଇ
ପାଣ୍ଡବେ କି ସୈନ୍ୟ ପାରନ୍ତେ ଶରେ ଦହି ।

ପାଣ୍ଡବଙ୍କରଠାରେ ରଖିଣ ଉପରୋଧ
ଯୁଦ୍ଧ କରୁଅଛ ହେବାକୁ ମୋର ବୋଧ ।
ପାଣ୍ଡବଙ୍କଠାରେ ଏରୂପେ ଦୟାଶଇ
ଯେବେ ଥିଲା ତେବେ ଆଗରୁ କହିଥାନ୍ତ ।
କର୍ଣ୍ଣ ସେନ ମୂର୍ଚ୍ଛି ପାଣ୍ଡବ ପାଞ୍ଚଜଇ
ମାରନ୍ତ ମୋ ଲୋକେ ମରନ୍ତେ କାହିଁପାଇଁ ।
ଯେବେ ମୁଁ କୁନ୍ତୀ ତ୍ୟାଜ୍ୟ ନୁହଇ ହେ ପିତା
ତେବେ ବଧ ଛଡ଼ାଇ ମୋର ଯୁଦ୍ଧ ଚିନ୍ତା ।
ଏହା ଶୁଣି ଭୀଷ୍ମ କ୍ରୋଧରେ ଅପଘନ
ଘୂରାଇଣ କହିଲେ ତରଟି ନୟନ ।
ପୂର୍ବରୁ ତ କୁନ୍ତୀଙ୍କୁ କହିଛି ନରେନ୍ଦ୍ର
ପାଣ୍ଡବଙ୍କୁ ଯୁଦ୍ଧରେ ନ ଜିଣିବେ ଇନ୍ଦ୍ର ।
ବୁଢ଼ାଟାଏ ହୋଇଣ ଅଛି ତ ମୁଁ ରହି
ଜାଣିଥିବା ଯାକ ମୋ ଶକ୍ତି କରିବଇଁ ।
ଆଜ ସକଳ ପାଣ୍ଡବଙ୍କୁ ଏକା ରଣ
କରିବ ମୁଁ ରାଜନ ଦେଖ ବନ୍ଧ ବାଣ ।
ଭୀଷ୍ମଙ୍କର ଶୁଣିଣ ଏ ବଚନ କାନେ
କୁମ୍ଭର ପୋଏ ଶଙ୍ଖ ଫୁଙ୍କିଲେ ବଦନେ ।
ପାଣ୍ଡବେ ଶଙ୍ଖରଡ଼ ଶୁଣି ଫୁଙ୍କି ଶଙ୍ଖ
ରହ କାହିଁ ଯିବ ବୋଲିଣ ଦେଲେ ଡାକ ।
ଧୃତରାଷ୍ଟ୍ର ବୋଇଲେ ଦୁର୍ଯ୍ୟୋଧନ କଥା
ଶୁଣିଣ କ୍ରୋଧ ହୋଇ ଭୀଷ୍ମ ମହାରଥୀ ।
ପାଣ୍ଡବଙ୍କଠାରୁ ତ ଯୁଝି କାହାରିଲେ
କଉରୂପେ ଯୁଝିଲେ କହ ତା ମୋତେ ଭଲେ ।
ଧୃଷ୍ଟଦ୍ୟୁମ୍ନ ତ ପାଣ୍ଡବସେନା ସେନା—
ପତି ହୋଇଥିଲେ କି ସେ ତ ମହାମନା ।
ଭୀଷ୍ମଙ୍କୁ ଯୁଦ୍ଧଭାଣ୍ଡେ ପାଇ ସେ କି ଭାବେ
ଯୁଦ୍ଧ କଲେ ତା ମଧ୍ୟ କହତ ମୋ ଆଗେ ।
ସଞ୍ଜୟ ବୋଇଲେ ହେ ପଶ୍ଚିମ ଦିଗ ସୂର୍ଯ୍ୟ
ପାଇବା ସମୟରେ ଭୀଷ୍ମ ବୀରରାଜ ।
ପାଣ୍ଡବମାନଙ୍କଠାରୁ ଜୟଶ୍ରୀଯ
ସେନ ଆସିବାକୁ ମନରେ ଇଚ୍ଛା କରି ।
କୁନ୍ତୀ ପୁତ୍ରମାନଙ୍କୁ ଦେଇଣ ସଙ୍ଗତରେ
ବାହାରିଲେ ଭୀଷ୍ମ ଯୁଝିବା ମତରେ ।
କୁନ୍ତୀ ଦୁର୍ମତିରୁ ଆହେ ନରଗଣ
କଲେ ଯାଇ ପାଣ୍ଡବଙ୍କର କୁଳେ ରଣ ।

ଦୁଇଦଳ ଧନୁ ଶବଦେ ମହୀତଳ
ମଣିଲେ ଲୋକ ଗିରି ହେଲା କି ବିକଳ ।
ରହ ମୁହିଁ ରହିଲା ବନ୍ଧ ମୁଁ ବନ୍ଧୁଛି
ଏହି ଶବଦ ବିନା ନ ଶୁଭିଲା କିଛି ।
କବଚମାନେ ଛିଡ଼ି ପଡ଼ି ରଣଝଣେ
ଜଣିଗଲେ ଯୁଦ୍ଧରେ ବାଛୁବା ନଶାଣେ ।
ଭୂଷଣଧର ବାହୁ ଛିଡ଼ି କୋଟି କୋଟି
ପଡ଼ିବାରେ ଜଣିଲା ବିଜୁଳି ପ୍ରକୃତି ।
ଶିରସ୍ତ୍ରାଣ କୁଳରେ ଛିଡ଼ି ମୁଣ୍ଡମାଳ
ନନ୍ଦା ଜଣିଲା ପଡ଼ିବାର ପକ୍ୱତାଳ ।
ଧନୁକାଣ୍ଡ ଧରି ମାରିବା ଅବସ୍ଥାରେ
ରହିଲେ ଛିନ୍ନମୁଣ୍ଡ ହୋଇ କେତେ ବୀରେ ।
ଦୁଇସେନା ଶିବିର ତଟ ଦୁଇ ଭେଦ
ସେକାଳେ ବହିଗଲା ରକତର ନଦୀ ।
ପଡ଼ା କାଠମାନଙ୍କେ ହୋଇଣ ସଙ୍କୁଳ
ବୁଡ଼ାଇ ଦେଲା ଯୋଦ୍ଧାଙ୍କର ଆଶାକୂଳ ।
ହାତୀଏ ସେ ନଦୀର ପଥର ପରାୟେ
ରହିଲେ ପଡ଼ି ଯୋଦ୍ଧାଙ୍କର କାଣ୍ଡବାଏ ।
ଉଠି ତଳ ମକର ଗଦା ଗ୍ରାହ ଖଣ୍ଡା
ଧଣ୍ଡା ପର ଗମିଲେ ହୋଇ ପରଚଣ୍ଡା ।
ବୀରଙ୍କ ବାଳ ଚହିଁ ଶିଉଳି ସଦୃଶ
ଛତ୍ର-ଫୁଙ୍ଗ-ଫେନରେ ହୋଇଲା ପ୍ରକାଶ ।
ଫଣିଙ୍କ ଆବର୍ତ୍ତରେ ହୋଇଥି ଆବୃତ
କରାଇଲା ଭୟ ପ୍ରାଣୀମାନଙ୍କ ଚିତ୍ତ ।
ଢାଲ କଚ୍ଛପକୁ ତଳାଇ ଚଣ୍ଡା ଟଣ୍ଡା
ଭସାଇଲା ଦୁଇତଟରେ ବୃକ୍ଷ-ଭେଣ୍ଡା ।
ଅଙ୍ଗୁଳି କଢ଼ ଜାନୁ ନଦୀମତ୍ସ୍ୟକୁଳ
ପରାୟେ ଭାସିପଟେ ହୋଇଲେ ଚଞ୍ଚଳ ।
ଘଣ୍ଟା-ଘଙ୍ଘଙ୍କରେ ଆବଳ ସେହୁ ହୋଇ
ସବୁରି ମୁଖେ ହାସ ଦିଆଇଲା ନେଇ ।
ରଥ-ଦଣ୍ଡ ସାବେଳ-କାଠ ଘାଟ ପାଇ
ଚଢ଼ିଥିଲେ ଧ୍ୱଜ-ଅଙ୍ଗାଳେ ଭିଡ଼ା ହୋଇ ।
ସେରୂପେ ଯୁଦ୍ଧ ଆଜଯାଏ ଦେଖିବାର
ଆଉ ଶୁଣି ନାହିଁ କାନ ମୋ ନରବର ।
ଯୋଦ୍ଧାମାନେ ଯୁଦ୍ଧରେ ପଡ଼ିବାରୁ ଶୋଇ
ନ ପାରିଲା ରଥୀମାନଙ୍କ ରଥ ଯାଇ ।

କାଣ୍ଡ ଗଣ୍ଡ -ବେଶରେ ହେଲେ ହେଲେ ମଣ୍ଡି
ଧାଇଁଲେ ଯୋଦ୍ଧାମାନେ ଯୁଦ୍ଧକୁ ଦଗଣ୍ଡି ।
କେତେକ ଲୋକ ମାତା ପିତାଙ୍କୁ ସୁମରି
ଡକା ପାଡ଼ି ଯୁଦ୍ଧଭୂମିରେ ଗଲେ ମରି ।
କେତେ ଲୋକ ଡକାପାଡ଼ିବାର ଲୋକଙ୍କୁ
ବୋଇଲେ ନ ଡର ମୁଁ ଅଛୁ ତୋ ଆଗକୁ ।
କେତେ ଲୋକ ବୋଲନ୍ତ ଅନା ଅନା ନନା
ଅନାଇଲେ ବାଜୁଛୁ କାଣ୍ଡ ଅଗଣନା ।
କେତେ ଲୋକ ବୋଲନ୍ତ ମୁଣ୍ଡ ପୋତିଥିଲେ ।
ତାକୁ ଫୁଟାଇବେ ମାର୍ଗଣଗଣ ଭଲେ ।
କେତେ ଲୋକ ବୋଲନ୍ତ ଯା ଇଚ୍ଛା ତା ହେଉ
ଯୁଦ୍ଧ ଦେଖି ବୁକୁ ହେଉଛୁ ଦାଉ ଦାଉ ।
ଭୀଷ୍ମ ସେ ଯୁଦ୍ଧ ଦେଖି ହୋଇ ଅତି ସୁଖୀ
ଧନୁ ମଧ୍ୟରେ ଦିବ୍ୟ ଶରମାନ ଯୋଖି ।
ହସ୍ତବେଗ ଦେଖାଇ ପାଣ୍ଡୁ ସେନା ପରେ
ବର୍ଷିଲେ ପରତାପ ବଢ଼ାଇ କୋପରେ ।
ସବୁବେଳେ ରଥେ ନାଚିଲା ତାଙ୍କ ତନୁ
ଅଲାତଚକ୍ର ପରି କଲା କରଧନୁ ।
ପାଣ୍ଡବସେନା ସ୍ଥିରପଟେ କୋଟି କୋଟି
ବାଣ ବର୍ଷଣ ଭୀଷ୍ମ ଯାଆନ୍ତେ ଚହଟି ।
ଏ ସେନ କୋଟି ଭୀଷ୍ମ ଯୁଝିଲ ପରସ୍ପେ
ମଣିଲେ ପାଣ୍ଡୁସୈନ୍ୟ ଥିଲେ ଯେତେ ସର୍ପେ
ଭୀଷ୍ମଙ୍କର ରଥର ଲାଘବ ଗଜନ
ସେକାଳେ ଯା ହେଲା କହିବ କ ବଚନ ।
ପୂର୍ବଦିଗେ ପଶ୍ଚିମେ ଦକ୍ଷିଣେ ଉତ୍ତରେ
ଥିଲା ପରି ଭୀଷ୍ମ ଦିଶିଲେ ନିରନ୍ତରେ ।
ପାଣ୍ଡୁସୁତଙ୍କର ସେନା ତାହାଙ୍କୁ ଆଖି
କାହାରି ଟି ଗଜନ ନ ପାରିଲା ଦେଖି ।
ଭୀଷ୍ମ ଧନୁଚ୍ୟୁତ ବାଣରେ ପାଣ୍ଡୁସୁତ
ସଇନକୁ ଖୋଜ ମାଇଲେ ଅପ୍ରମିତ ।
ଯେ ଆଡ଼େ ଚାହିଁଲେ ସେ ଆଡ଼େ ଶରଧାଡ଼
ପଡ଼ଇ ରଥ ଗଜ ଉପରେ ଅଜାଡ଼ ।
ଅମାନୁଷରୂପରେ ପିତା ଦେବବ୍ରତ
କଲେ ପାଣ୍ଡୁସେନାମାନଙ୍କୁ ଶରେ ହତ ।
ଭୀଷ୍ମ ଧନୁ-ଘନୁ ବାହାରି ଶର-ଧାର
ଗର୍ଜିଲେ ପାଣ୍ଡୁସୁତ ସୈନ୍ୟ-ତିର ତୋୟ ।

ପ୍ରଳୟ ଅଗ୍ନି ପରି ଭୀଷ୍ମ ଶରବୃଷ୍ଟି
ସ୍ତରବଗରେ ଯୋଡ଼ି ବୁଜାଇଲା ଦୃଷ୍ଟି ।
ବଜ୍ରରେ ଗିରି ହତ ହେବା ପରି ଗଜ
ଭୀଷ୍ମ କାଣ୍ଡେ ପଡ଼ିଲେ କରି ପ୍ରାଣତ୍ୟାଜ ।
ପିପାଇଏ ଗୁଡ଼ିଣ ନଲଙ୍କାର ରଢ଼
ଚଢ଼ିଲେ ମସ୍ତରେ ପଡ଼ନ୍ତେ ବାଣ ମାଡ଼ ।
ପାଇକମାନଙ୍କର ଫରି ଖଣ୍ଡା ହାତ
ଛୁଡ଼ନ୍ତେ ଥସିଲେ ଭଟପ୍ଲୁ ତାଙ୍କ ଗାତ୍ର ।
ପଡ଼ିବାରୁ ମସ୍ତକ ଛୁଡ଼ି କୋଟି କୋଟି
ନ ଦିଶିଲା ଯୁଦ୍ଧପ୍ରଦେଶର ଭୂମିଟି ।
ଘୋଡ଼ ହାତ ନାକ କାନରେ ଯାଇ ବାଣ
ବାଜନ୍ତେ ଦୁଃଖୀ ହେଲେ ପାଣ୍ଡବଯୋଦ୍ଧାଗଣ ।
ଏରୂପେ ଭୀଷ୍ମ ଯୁଦ୍ଧେ ମହାକର୍ମ କରି
ଦେଲେ ପାଣ୍ଡୁସେନାଙ୍କ ମହତକୁ ସାରି ।
ପାର୍ଥ କୃଷ୍ଣ ମଧ୍ୟ ନୟନେ ଚାହିଁ ଥିଲେ
ଭାଜିଲେ ହେଲେ ସୈନ୍ୟ ଭୀଷ୍ମେ ନ ଯୁଝିଲେ ।
ଇନ୍ଦ୍ର ପରି ବିକ୍ରମ ଭୀଷ୍ମ ଥିଲେ କରି
ତାହାଙ୍କୁ କେ ଯୁଝିବ କରେ ଶସ୍ତ୍ର ଧରି ।
ରଥ ନାଗ ଅଶ୍ୱ କୁବର ଧ୍ୱଜ ନର
ଭୀଷ୍ମଙ୍କର କାଣ୍ଡେ ତ ଛୁଡ଼ିଲେ ଅପାର ।
ପାଣ୍ଡୁ ସୈନ୍ୟରେ ଯେତେ ଥିଲେ ମହାରଥୀ
ତାହା ଦେଖିଣ ପଳାଇଲେ ହୋଇ ବ୍ୟଥୀ ।
ଏ ସକାଶୁଁ ପାଣ୍ଡବସେନା ହାହାକାର
ଶବଦରେ ପୂରଇ ଦେଲେ ଦିଗନ୍ତର ।
କେ ବୋଲଇ ବାବୁ ଯାଅ ହେ ମୋତେ ଘେନ
ନୋହିଲେ ମୁହିଁ ମରି ଶୋଇବି ଅବନୀ ।
କେ ବୋଲଇ ବାପା ପଳାଉଅଛ କମା
ଗଲେ କ ହାତ ଦେବେ ତୋତେ ମାଆ ଅପା ।
କଏ ବୋଲଇ ଭାଇ ହୃଦ୍ୟାକୁ ଫୁଲାଇ
ଚାଲିବାର ଚାଲିକ ଦେଲାଟି ଭୁଲାଇ ।
କେ ବୋଲଇ ଦେଖ ହେ ଭୀଷ୍ମ କାଣ୍ଡଖଣ୍ଡି
ଘଡ଼ିକରେ ତଡ଼ନାହିଁଟି ମୋର ଗଣ୍ଡି ।
କଏ ବୋଲଇ ସ୍ଥଳ ଏଥି ଗାଗୁଡ଼ିକେ
ବାହୁଡ଼ି ପଳାଇବା ଘରକୁ ନିଃଶଙ୍କେ ।
କେ ବୋଲଇ ଏଥିରେ ଥିଲେ ଯିବା ମରି
କଏ ଦେଖିଛୁ ବସିବାର ସ୍ୱର୍ଗପୁରୀ ।

କେତେ ଯୋଦ୍ଧାଙ୍କର କବଚ ବାଣ ଫଟି
ପଡ଼ୁଥିଲ ଟଳାଇଲେ ତା ନ ସାଉଣ୍ଟି ।
କେତେକ ଯୋଦ୍ଧାଙ୍କର କରର କଙ୍କଣ
କର ଲୁଲେ ମଣ୍ଡିଲ ଯୁଦ୍ଧଭୂ-ଅଙ୍ଗଣ ।
କେତେକ ଯୋଦ୍ଧା ବାହୁମାନଙ୍କୁ ନକଟି
ଧଇଲେ ଲୁଣ୍ଠା କରି ଦନ୍ତେ ଦସନ୍ତି ।
ଅକୋପାଳ ଭାବ ପରାସ୍ତେ ପାଣ୍ଡୁସେନା
ସେକାଳେ ହେଲେ ଜାଣ ନୃପ ମହାମନା ।
ଦେବକୀସୁତ ବଳଦେବଙ୍କ ଅନୁଜ
ଇନ୍ଦ୍ରାଦି ଦେବତାଙ୍କ ଉପରେ ସେ ରାଜ ।
କହିଲେ ଅର୍ଜୁନଙ୍କ ମୁଖକୁ ଅନାଇଁ
ଭୀଷ୍ମଙ୍କଠାରେ ପ୍ରୀତି ରଖ କାହିଁପାଇଁ ।
ସେ ଭୂମ୍ପ ଅପ୍ରିୟରେ ହୋଇଲେଣି ରତ
କର ତାଙ୍କର ପ୍ରିୟ ପରାଣ ଅହିତ ।
ପୂର୍ବକାଳେ ତୁମ୍ଭେ କହିଥ ଏହା ଭଲେ
ମାରିବ ଭୀଷ୍ମ ଦ୍ରୋଣ କୁରୁସୈନ୍ୟ ତୁଲେ ।
ଏବେ ତ ସେ କଥାକୁ କରୁଅଛ ଆନ
ଧନୁ ଧରି ମୃଦୁଯୁଦ୍ଧରେ ଅରଜୁନ ।
ଦେଖ ତୁମ୍ଭର ସୈନ୍ୟ ଅରକ୍ଷିତ ପରି
ଧାଉଁଛନ୍ତି ଅସ୍ତ୍ର ପକାଇ ଦେଇକରି ।
ଅନ୍ତକ ପରି ଭୀଷ୍ମ ଶାୟକ-ପାଟିଟି
ବସ୍ତାରି ଖାଉଛନ୍ତି ତୁମ୍ଭର ସେନାଟି ।
ଅରଜୁନ ବୋଇଲେ ନ କହ ଗୋବିନ୍ଦ
ଚାଲ ଭୀଷ୍ମଙ୍କଠାକୁ କରିବି ମୁଁ ଦ୍ୱନ୍ଦ ।
ବୁଢ଼ାଟାଏ ହୋଇଣ ପିଲାପରି ଯେବେ
କଲେଣି ତାଙ୍କୁ ମୁଁ ମାରିବି ଜାଣ ତେବେ ।
ଏହା ଶୁଣିଣ କୃଷ୍ଣ ଅର୍ଜୁନ ଶୁଭକ—
ଘୋଡ଼ାଙ୍କ ଉପରେ ପିଟିଲେ ମାଡ଼ଧାଳ ।
ସେ ଘାତେ ସେ ଘୋଡ଼ାଏ ବୃନ୍ଦ ବାତଗତି
ରହିଲେ ଯାଇ କରି ଭୀଷ୍ମଙ୍କର କତି ।
ଭୀଷ୍ମଠାକୁ ଅର୍ଜୁନ ଯିବାର ଦେଖିଣ
ଧାଇଁଲେ ଯୁଧିଷ୍ଠିରଙ୍କ ସଇନ ।
ଭୀଷ୍ମ ଅରଜୁନଙ୍କ ଆସିବାର ଜାଣି
ଗରଜନ କରି ବର୍ଷିଲେ ଶରଶ୍ରେଣୀ ।
ଭୀଷ୍ମଙ୍କର କାଣ୍ଡରେ ଅରଜୁନ ଘୋଡ଼ା
ଆଗକୁ ଆଉ ପାଦେ ନ କାଢ଼ିଲେ ଭଡ଼ା ।

କୃଷ୍ଣ ସେହି କାଳରେ ଧୈର୍ଯ୍ୟ ମନେକରି
ବାହିଲେ ଅର୍ଜୁନ ରଥକୁ ଗତି କରି ।
ଅରଜୁନ ଉଦ୍ଧଣ ଗାଣ୍ଡୀବ ଧନୁଟି
ତିନକାଣ୍ଡେ ଦେଲେ ଭୀଷ୍ମଙ୍କ ଧନୁ କାଟି ।
ଆନ ଧନୁଟାଏ ଧରିଣ କୁମ୍ଭ ପିତା
ଗୁଣ ଦେଇ ଯୁଝିଲେ ଯେସନେ ଦେବତା ।
ଅରଜୁନ କ୍ଷତ୍ରିୟବିଦ୍ୟାକୁ ଜାଣନ୍ତି
ସେ ଧନୁ କାଟିଲେ ଶାୟକ ବନ୍ଧ ଅତି ।
ଦେଖି ଅରଜୁନଙ୍କ ଯୁଦ୍ଧକର୍ମ ଭୀଷ୍ମ
ପ୍ରଶଂସିଲେ ବହୁତ ପ୍ରୌଢ଼ ଯୁଦ୍ଧଜୀଷ୍ମ ।
ଏ ବାହାରେ ବୋଇଲେ କୁମ୍ଭ ବିକ୍ରମକୁ
ତୋଷିଦେଲୁ କରି ମୋ ସଙ୍ଗେ ସମରକୁ ।
ଏରୂପେ କୁମ୍ଭ ପିତା ଦେବବ୍ରତ କହି
ଅର୍ଜୁନ ରଥକୁ କାଣ୍ଡରେ ଦେଲେ ପ୍ଲାଇ ।
ଘୋଡ଼ାମାନଙ୍କର ଯେ ଗତିରେ ଗୋବିନ୍ଦ
କରାଇ ପାଣ୍ଡୁ ସୈନ୍ୟବୃନ୍ଦଙ୍କୁ ଆନନ୍ଦ ।
ଭୀଷ୍ମଙ୍କର ବଳକୁ ତରକି ଅନାଇଁ
ମହାରଙ୍ଗ କରିଦେଲେକ ଆଖି ଦୁଇ ।
ଭୀଷ୍ମ ତାହା ଦେଖିଣ କିଛି ନ ଡରିଲେ
କାଣ୍ଡରେ କୃଷ୍ଣ ଅର୍ଜୁନଙ୍କୁ ରଙ୍ଗ କଲେ ।
କୃଷ୍ଣ ଅରଜୁନଙ୍କ ଯିବାବାଟ ବାଣେ
ନବାରିଦେଲେ ଭୀଷ୍ମ ତିକ୍ଷଣ ଆପଣେ ।
ତୀକ୍ଷ୍ଣ କାଣ୍ଡମାନ ଧନୁରେ ସରଜନ
କରି ପ୍ଲାଇ ଦେଲେ କୃଷ୍ଣଙ୍କ ଅପଘନ ।
ଅର୍ଜୁନ ମୃଦୁଯୁଦ୍ଧ ଭୀଷ୍ମଙ୍କର କ୍ରୋଧ
ଦେଖିକରି ଯୁଦ୍ଧେ ନୋହିଲେ କୃଷ୍ଣ ବୋଧ ।
ମନେ କଲେ ପାର୍ଥ ସହାୟୁଁ ଯୁଧିଷ୍ଠିର
ଦଳଯାକଟି ଭୀଷ୍ମ କରିବେ ସଂହାର ।
ପ୍ରଳୟଅଗ୍ନି ପ୍ରାୟେ ଭୀଷ୍ମ ଶରବୃଷ୍ଟି
ପୋଡ଼ିବ ପାଣ୍ଡବଙ୍କ ସୈନ୍ୟ ଭୁଜାବଳି ।
ଯୁଦ୍ଧ ଯେବେ କରିବେ ଭୀଷ୍ମ ବଳବନ୍ତ
ଦିନକେ ମାରିବେ ଦାନବ ଦେବତା ।
ପାଣ୍ଡୁସୁତମାନଙ୍କୁ କରିବେ ସଂହାର
ଏକଥା ଚମତ୍କାର ହେବ କି ତାଙ୍କର ।
ଏହା ଭାବି ପୁଣି କହିଲେ ଅର୍ଜୁନଙ୍କୁ
ଦେଖ ଦେଖ ବାବୁ ଭୀଷ୍ମଙ୍କ ବିକ୍ରମକୁ ।

ପ୍ରଭଦ୍ରକ ସୋମକ ପାଞ୍ଚାଳ କୈକେୟ—
ମାନଙ୍କର ମନ୍ତ୍ରିଲେ ବନ୍ଦେ ଏ ହୃଦୟ ।
ମୋର ହୃଦୟ ଏହା ଜାଣିକରି ସନ୍ଧ—
ପାରୁ ନାହିଁ ପାର୍ଥ ଆଜ୍ଞା କ କହିବଇଁ ।
ତୁମ୍ଭେ ଭୀଷ୍ମଠାରୁ ଗୁଡ଼ିଏ ଡରିବ
କେ ବୋଲିବ ଯୁଦ୍ଧରେ କରିବ ଅଙ୍କବ ।
ସହିତେ ମହାରଥେ ବାନ୍ଧି କାଣ୍ଡେ କାଣ୍ଡେ
ବସାଇବ କୁରୁସେନାଙ୍କୁ ଯମଦାଣ୍ଡେ ।
ଯୁଧିଷ୍ଠିରଙ୍କର ଟି ସେନାନାୟକଗଣ
ଗଣ୍ଡ ଜଗିବାକୁ ଟି କରିଛ ଆପଣ ।
ମୁଁ ଥାଉଁ ଯୁଧିଷ୍ଠିର ମୁଣ୍ଡ ଟିକି ଧରି
ବସିବ କି ଆହେ ଗାଣ୍ଡୀବଧନୁର୍ଦ୍ଧାରି ।
ଏରୂପରେ କୃଷ୍ଣ କହିବା ସମୟରେ
ଭୀଷ୍ମ ଅର୍ଜୁନଙ୍କୁ ବାନ୍ଧିଲେ ବେଗରେ ।
ଭୀଷ୍ମଙ୍କର କାଣ୍ଡରେ ସୂର୍ଯ୍ୟଙ୍କ କିରଣ
ଛୁଇଁ ନ ପାରିଲା ଟି ସେ ଯୁଦ୍ଧଅଙ୍ଗଣ ।
ଦଶଦିଗଦଶରେ ରହନ୍ତେ ଶରଧାର
ଯାଇ ନ ପାରିଲେ ଟି ପକ୍ଷୀମାନେ ଉଡ଼ି ।
ବନ୍ଦ ହୋଇ ପବନ ଗୋଟାଏ ବହିଲା
ଉଡ଼ାଇ ଧୂଳି ନେତ୍ର ସବୁ ବୁଜାଇଲା ।
ବିକର୍ଣ୍ଣ ଜୟଦ୍ରଥ ଭୂରିଶ୍ରବା ଦ୍ରୋଣ
କୃତବର୍ମା କୃପ ଶ୍ରୁତାୟୁ ସୁଦକ୍ଷିଣ ।
ଅମ୍ବଷ୍ଠପତି ପ୍ରାଚ୍ୟ କ୍ଷୁଦ୍ରକ ଅନୁବିନ୍ଦ
ବସାତି ସୌବୀର ମାଳବବୀର ବୃନ୍ଦ ।
ଏମାନଙ୍କୁ ଭୀଷ୍ମ ବୋଇଲେ ଅର୍ଜୁନଙ୍କୁ
ବେଢ଼ି କରି ମାର ହେ ନ କର ଲଘୁକୁ ।
ଭୀଷ୍ମ ବୋଲେ ଉଠିବେ ପାର୍ଥଙ୍କୁ ବେଢ଼ିଲେ
ତା ସଙ୍ଗ ନପାରି ସାତ୍ୟକି କ୍ରୋଧ ହେଲେ ।
ଅର୍ଜୁନଙ୍କୁ ଯୁଦ୍ଧରେ ପୃଷ୍ଠରକ୍ଷା ହୋଇ
ରହିଲେ ସେ ଯାଇଣ ଜଳନ୍ତ ଧନୁ ବହି ।
ଭୀଷ୍ମ ଶରହାସରେ ଯୁଧିଷ୍ଠିର ବଳ
ପଳାଇବା ଦେଖି ସାତ୍ୟକି ମହାବଳ ।
ବୋଇଲେ କ୍ଷତ୍ରିୟଙ୍କ କୁଳକ ଜାତ ହୋଇ
ପିଠିଦେଇ ପଳାଉଛ ହେ କାହିଁପାଇଁ ।
ତେବେ ହେଲେ ଟି ଯୁଧିଷ୍ଠିରଙ୍କର ବଳ
ନ ରହି ପଳାଇଲେ ହୋଇଣ ବିକଳ ।

କୃଷ୍ଣ ବୋଇଲେ ହେ ସାତ୍ୟକି ହେଲ ବାଇ
ପଳାଇବା ଲୋକଙ୍କୁ ଡାକୁଛ କିପାଇଁ ।
ଯେଉଁମାନେ ଟି ରହି ଅଛନ୍ତି ଯୁଦ୍ଧରେ
କହିବଟି ସେ ମଧ୍ୟ ଯାଆନ୍ତୁ ସୁଖରେ ।
ଆଜ ମୁହିଁ ଏକା ଦେଖାଇ ବାରପଣ
ଦେବି ଟି ଭୀଷ୍ମ ଦ୍ରୋଣ କୁରୁଙ୍କୁ ମରଣ ।
ମୋ କ୍ରୋଧ-ଅନଳରେ ପତଙ୍ଗ ପରାୟେ
ପୋଡ଼ିଯିବେ କୁରୁଏ ଦେଖିବ ସର୍ବେ ।
ଆଖି ପଲକରେ ଦେଖ ଭୀଷ୍ମଙ୍କର ମୁଣ୍ଡ
କାଟି କରି ପକାଇଦେବି ରଣଦାଣ୍ଡ ।
ପଛରେ ଦ୍ରୋଣ ଦ୍ରୌଣି କୃପାଦିଙ୍କ ବାଣ-
ଗଣ ମାରି କରି ମୁଁ ସେନମି ପରାଣ ।
ଧୃତରାଷ୍ଟ୍ର ପୁଅଙ୍କ ମଡ଼ାକୁ କଢ଼ାଇ
ଦେବି ପାଣ୍ଡବଙ୍କର ପ୍ରୀତିକୁ ବଢ଼ାଇ ।
ଯୁଧିଷ୍ଠିର ରାଜାଙ୍କ ବଢ଼ାଇ ଆନନ୍ଦ
କରାଇବି ହସ୍ତିନାନଗରକେ ନରେନ୍ଦ୍ର ।
ଏହା କହି ସୂର୍ଯ୍ୟ-ଜ୍ୱଳନ ପ୍ରଭା ଚକ୍ର
ଧରିଲେ ସେ କୃଷ୍ଣଙ୍କଠାରେ ହୋଇ ବକ୍ର ।
କପିଧ୍ୱଜ ରଥ ଉପରୁ ଡେଇଁ ପଡ଼ି
ଧାଇଁଲେ ସେ ଭୀଷ୍ମ ଉପରକୁ ମାଡ଼ି ।
ଯେ ରୂପେ ସିଂହ ମତ୍ତହସ୍ତୀ ମାରିବାକୁ
ଆସେ ସେରୂପେ ସେ ଆସିଲେ ଭୀଷ୍ମଠାକୁ ।
ଯିବାବେଳେ କୃଷ୍ଣଙ୍କ କଟିପୀତପଟ
ଝଟକ ନାଶିଦେଲା ଚଞ୍ଚଳା ଚଟକ ।
କୃଷ୍ଣକର-ନାଳରେ ଚକ୍ର-ପଦ୍ମ ଭଳି
ପ୍ରକାଶିତ ହେଲା ପ୍ରତାପ ସୂର୍ଯ୍ୟ ପାଇ ।
ଯେଉଁରୂପେ ନାରାୟଣ ନାଭିପଦ୍ମ ଦଣ୍ଡେ
ସେହିରୂପେ କୃଷ୍ଣ ଚକ୍ର ପ୍ରକାଶି ପ୍ରକାଣ୍ଡେ ।
ଚକ୍ର ଧରି କୃଷ୍ଣ କରନ୍ତେ ପାଦେ ଗଳି
କୁରୁମାନେ ମନେ କଲେ ଆଜି ଭୀଷ୍ମ ।
ବୋଇଲେ ଭୀଷ୍ମ ବେନି ଏବେ କୁରୁକୁଳ
କୃଷ୍ଣଚନ୍ଦ୍ର ଧାଇଁଲେ ହୋଇବେ ନିର୍ମୂଳ ।
ଶ୍ରୀକୃଷ୍ଣ ଚାଲନ୍ତେ ମହି ଚକ୍ରଧର
ଧାଆଁନ୍ତେ ଭୀଷ୍ମ ରଥଦାଣ୍ଡ ଦେଇକରି ।
କୁରୁପ୍ରାଣୀମାନେ ଯେ ହୋଇଣ ଆରତ
ରଖ ରଖ ବୋଲି ମସ୍ତକେ ଦେଲେ ହସ୍ତ ।

ଭୀଷ୍ମ ତାହା ଦେଖି ଭସ୍ମକୁ ଦୂର କରି
ବାହାରିଲେ ଧନୁ ଶରକୁ କରେ ଧରି ।
ଗାଣ୍ଡୀବଧନୁର୍ଘୋଷ ପ୍ରାୟେ ଭୀଷ୍ମ ଧନୁ
ଘୋଷକରି କମ୍ପାଇ ଦେଲେ ନିଜ ତନୁ ।
ଦେଖି କୃଷ୍ଣ ମତ୍ତ ଯୁଦ୍ଧରେ ଅତି ଉଷ୍ମ
କହିଲେ ଏ ବଚନ ହସି କରି ଭୀଷ୍ମ ।
ଆସ ଆସ ହେ ପୀତବାସ ମୋର ପାଶ
ପ୍ରହାର ଚକ୍ର ମୋତେ ନଷ୍ଟ କୁରୁ ବାସ ।
ତୁମ୍ଭ ଚକ୍ରେ ଯେବେ ମୁଁ ପାଇବି ମରଣ
ଇହ ପର ଦୁଇକ ଜିଣିବି ମୁଁ ଜାଣ ।
ବୟସ ସକାଶୁ ତ ହେଲଣି ମୁଁ ଧଡ଼ା
ମୋର ମଧ୍ୟ କୃଷ୍ଣ ଅଛି କି ଆଉ ଲୋଡ଼ା ।
ଯେରୂପେ ସେରୂପେ ତ ଯମ ଥରେ ନେବ
ତୁମ୍ଭହସ୍ତେ ମଲେ ମୋ ମୁକତି ହୋଇବ ।
ସହଜରେ ତ ମୁହିଁ କ୍ଷତ୍ରିୟର ବେଟା
ତୁମ୍ଭ କ୍ରୋଧ ଦେଖି କି ହେବ ସଟାବଟା ।
ଯୁଦ୍ଧେ ମଲେ ଟି ଦେବେ କରନ୍ତି ଆଦର
ପୁଣି ତୁମ୍ଭ ଚକ୍ରେ ମରିବି ଚକ୍ରଧର ।
ଏଥିରୁ ଭାଗ୍ୟ ମୋର ଏ ମହୀତଳରେ ।
ନାହିଁ ହେ ମାର ମୋତେ ବୁଦ୍ଧ ଟି ବୟସରେ ।
ସବୁ ଲୋକେ ତୁମ୍ଭର ଆସିବାର ଦେଖି
ମହାବୀର ମଧ୍ୟେ ଦେଲେଣି ମୋତେ ଲେଖି ।
ଏହିକାଳେ ଅର୍ଜୁନ ଗୁଡ଼ି କପିଧ୍ୱଜ
କୃଷ୍ଣଙ୍କୁ କୋଳ କଲେ ବହି ମନେ ଲାଜ ।
କୃଷ୍ଣ ଅତିବେଗେ ବାହାରି ଯାଉଥିଲେ
ଏଣୁ ଟି ଅରଜୁନ ରଖି ନ ପାରିଲେ ।
ଦଶପାଦ ଉତ୍ତାରୁ ପାର୍ଥ ପାଦ ମାଡ଼ି
ରଖିଲେ ଶ୍ରୀକୃଷ୍ଣଙ୍କୁ ବାହୁମଧ୍ୟେ ଭିଡ଼ି ।
କୃଷ୍ଣ ପାଦବେଳରେ କରି ନମସ୍କାର
କହିଲେ କର ଯୋଡ଼ି ଅରଜୁନ ବୀର ।
କାହିଁପାଇଁ ଏରୂପେ ପଡ଼ି କ୍ରୋଧତାପେ
ଧାଇଁଛ ଚକ୍ର ଧରି କହ କୃଷ୍ଣ ଆପେ ।
ମୁହିଁ ତ କହିଅଛି ମାରିବି କୁରୁଙ୍କୁ
ତା ଆନ କରୁଅଛ ତୁମ୍ଭେ କି କଥାକୁ ।
ମୁହିଁ ତ ଏହା କିଛି ନ ପାରୁଛି ଜାଣି
କାରଣ ଥିଲେ ତା ବତାଅ ଚକ୍ରପାଣି ।

ପାଣ୍ଡବମାନଙ୍କର ଆହେ କ୍ଷିତିପତି
ତୁମ୍ଭ ବିନା ଆଉ ତ ନାହିଁ କାହିଁ ଗତି ।
ଭାଇ ପୁଅଙ୍କର ପକାଉଅଛୁ ରଣ
ଘେନିପିବି ମୁଁ କୁରୁମାନଙ୍କ ପରାଣ ।
ଏରୂପେ ଶୁଣି କୃଷ୍ଣ ଅର୍ଜୁନ ବାଣୀକୁ
ଆରୋହିଲେ ଯାଇଣ ଅର୍ଜୁନ ରଥକୁ ।
ବୋଇଲେ ରେ ଯୁଦ୍ଧେ କରିବୁ ଯେବେ ମନ
ମୁହିଁ କିପାଇଁ ଆଜ ହୋଇବି କ୍ରୋଧନ ।
ଏହା କହି ଅଶ୍ୱବଉଡ଼ି କରେ ଧରି
ପାଞ୍ଚଜନ୍ୟ ଶଙ୍ଖ ଫୁଙ୍କିଲେ ମୁଖେ ଭରି ।
ପାଇ ଶ୍ରୀକୃଷ୍ଣଙ୍କ ମୁଖରୁ ବାତଘାତ
ଦିବ ଭୁଲେ ଶବଦ ପୂରିଲା ଜଗତ ।
କୃଷ୍ଣଙ୍କର ଲେଉଟି ଯିବାର କୁରୁଏ
ଦେଖିଣ ଗର୍ଜିଲେ ଆନନ୍ଦ ଅତିଶୟେ ।
ମୃଦଙ୍ଗ ଆଦି ବାଦ୍ୟମାନଙ୍କୁ ବଜାଇ
ଘରଜନେ ଦେଲେ ଯେ ମସ୍ତକ ଅସାଇ ।
ଅରଜୁନ ଗାଣ୍ଡୀବଧନୁର ଶବଦ
ଭଙ୍ଗି ଦେଲା କୁରୁଯୋଦ୍ଧାଙ୍କ ଆନନ୍ଦ ।
ପାର୍ଥହାତ କାଣ୍ଡ ଆକାଶ ସାଥ ପାଇ
ଜଳନ୍ତା ଅନଳର ପ୍ରଭାକୁ ଛପାଇ ।
ସଳଭପକ୍ଷୀ ପରି ଗଲେ ପଲେ ପଲେ
କୁରୁର ସଇନଙ୍କୁ ଦୁଃଖ ଦେଲେ ଭଲେ ।
ଦୁର୍ଯ୍ୟୋଧନ ଯେ ଭୂରିଶ୍ରବା ଦୁହେଁ ବଳ
ଧରିଣ ବାହାରିଲେ କରିବାକୁ ଗୋଳ ।
ଭୂରିଶ୍ରବା ଅରଜୁନଙ୍କୁ ଭଲ ଶତ—
କାଣ୍ଡ ବିନ୍ଧ କ୍ରୋଧରେ ଥରାଇଲେ ଗାତ୍ର ।
ତୁମ୍ଭର ପୁଅ ଟାଣି ଟୁଣି ହୋଇ କରି
ତୋମରୁଟାଏ କାଢ଼ ଫିଙ୍ଗିଲେ ଟି ଧରି ।
ଶଲ୍ୟ ଗଦା ଯେ ଖଡ୍ଗ ଶକତକ ଆଣି
ଖୋଜ କରି ଫିଙ୍ଗିଲେ ପାର୍ଥ ହୃଦତଟେ ।
ଭୂରିଶ୍ରବାଙ୍କର ଟି ସାତ ଭଲ କାଣ୍ଡ
ଅର୍ଜୁନ ସାତଶରେ କଲେ ଖଣ୍ଡ ଖଣ୍ଡ ।
କ୍ଷୁରକାଣ୍ଡଟାଏ ଯେ ବନ୍ଧଣ କଶଟୀ
ଦୁର୍ଯ୍ୟୋଧନ ତୋମରୁଟିକ ଦେଲେ କାଟି ।
ଧାଇଁଥିଲା ଯୁଦ୍ଧବାଣରେ ଖଡ୍ଗ ଶକ୍ତି
ବଢ଼ାଇବାକୁ ଯୁଦ୍ଧେ ଖଡ୍ଗଙ୍କର ଶକ୍ତି ।

ଶଙ୍ଖ ଗଦା ଚକ୍ରକ ଉଲୂକା ପ୍ରକାରେ
ବର୍ଷୁଥିଲେ ସୁନାମ୍ନଣ୍ଡ୍ରାନ୍ତୁ ଅତିଶୟେ ।
ଅର୍ଜ୍ଜୁନ ତାହା ଦେଖି ସୁନାପୁଙ୍ଖ ଶର
ଯୋଡ଼ିଲେ ସରଭେଦ ରଚିଲେ ତାହାର ।
ଇନ୍ଦ୍ରଙ୍କ ଦେବା ଅସ୍ତ୍ର ଗାଣ୍ଡୀବରେ ଭରି
ଦୁଇହସ୍ତେ ଗାଣ୍ଡୀବଧନୁକୁ ଓଟାରି ।
କର୍ଣ୍ଣଯାଏ କଟକଟ କରି ପାର୍ଥ
ଛାଡ଼ିଲେ ଦେଖାଇ ଲାଘବ ନିଜ ହାତ ।
ସେହି ଅସ୍ତ୍ରରୁ ଶର ହୋଇଣ ବାହାରି
କରିଦେଲା ଟି କୁରୁମାନଙ୍କୁ ସଂହାର ।
କୋଟି କୋଟି ହୋଇଣ କୁରୁଥାଟେ ପଡ଼ି
ହାତୀ ଘୋଡ଼ା ଜଟଙ୍କ ପିଣ୍ଡ ଦେଲା ମୋଡ଼ି ।
କାହାର ବାହୁ ଦୁଇ କାଟି ପକାଇଲା
ନ ଥିଲା ଶାଖା ବୃକ୍ଷ ସଙ୍ଗେ ଯୋଟା ହେଲା ।
ମୁଣ୍ଡ ଗୋଡ଼ ଅଣ୍ଟା ହସ୍ତ ଅନେକ ଶରେ କାଟି
ପଡ଼ିଲେ କୁରୁ ସେନାଯାକ ମସ୍ତ ଲେଟି ।
ବଶବରେ ଅର୍ଜ୍ଜୁନ କାଣ୍ଡେ ଯାଇ ଘୋଟି
ପାଇଲେ କୁରୁଙ୍କର ନାକ କାନ ପାଟି ।
ଗାଣ୍ଡୀବ ଶବଦରେ ଦୁଇକୂଳ ବାଦ୍ୟ
ଶବଦକୁ ଘେନ ତ ନ ପାରିଲା ହୃଦ ।
ଗାଣ୍ଡୀବର ଶବଦ ହେଜଣେ ବସାଟ
ଦ୍ରୁପଦ ନୃପତି ଆସିଲେ ଘେନ ଥାଟ ।
ଯେଉଁଠାରେ ଗାଣ୍ଡୀବ କରେ ଯାଇ ରଡ଼ି
ସେଠାରୁ କୁରୁ ଲୋକେ ପଳାଇନ୍ତି ଛାଡ଼ି ।
କପାଟୀ କାଣ୍ଡରୁ ଟି ପାଇ ହାତୀ ଲେଟି
ମଲେ ତ ମେଲା ଦେଇ ପାଣି ବେନ ପାଟି ।
ପାଇକେ ଫରି ଖଣ୍ଡା ଧରିବା ଛାଡ଼ିଲେ
ଫାଙ୍କ ହୋଇଣ ଘୋଡ଼ ମଧ୍ୟରେ ପଡ଼ିଲେ ।
ଅରଜୁନ ବାଣଗଣକୁ ବକ୍ଷ ବୁଜୁ
ସଇତମାନଙ୍କର ହେଲା ଦୁରୁ ଦୁରୁ ।
ଯୋଡ଼ାମାନେ ଘୋଡ଼ ବାଡ଼ି ଯା ଆକାଶକୁ
ବ୍ୟାପିବା ଇଚ୍ଛା କରୁଥିଲେ ଗମନକୁ ।
ଅରଜୁନ କାଣ୍ଡ ବାଜନ୍ତେ ସେ କଥାକୁ
ସତ୍ୟ କରିଲେ ପ୍ରତିବନ୍ଧରେ ପ୍ରାଣକୁ ।
ପିଠିଆଇଣ ଆପେ ନିଜ୍କଡ଼ି ଉଡ଼ିଲେ
ମୋ କହିବାରୁ ଜାଣ ନଇବର ଭଳେ ।

ଇନ୍ଦ୍ରଙ୍କର ଅସ୍ତ୍ର ପ୍ରତାପରେ ରକତ
ନଦୀଟାଏ ଯୁଦ୍ଧରେ କଲେ ପାର୍ଥ ଜାତ ।
ନରମେଦ-ଫେନ ପାଇଣ ଅନ୍ତ-ପଙ୍କ
ସେ ନଦୀର ବାସନା ଚୁମ୍ବି ଦେଲା ନାକ ।
ଗଜଜନ ଘାଟେ ସେ ମସ୍ତକ ପୂରିଲ
ବାହାଣିଲା କବଚ-ଭେଳ ଚଢ଼ାଇ ।
ଯୋଦ୍ଧାମାନଙ୍କର ଯେ ମୁଖ-ପଙ୍କଜରେ
ଜୟ-ଲକ୍ଷ୍ମୀ ଟି ସେ ରଖିଲ ନିରନ୍ତରେ ।
ଭୂତ ପ୍ରେତ ଶାଗୁଣା ବଳୁଆମାନଙ୍କୁ
ଜଗାଇଲା ଗର୍ଜନବ୍ୟାଜେ ଡାକ ତାଙ୍କୁ ।
କ୍ଷୀର-ଶିଉଳରେ ଆଚ୍ଛନ୍ନ ସେତୁ ହୋଇ
ତଳକୁ ଖୋଳଦେଲା ଖଳଗଣେ ଧାଇଁ ।
ପଡ଼ିଲେ ଯାହା ଗଜ ଅଶ୍ୱ ହାଡ଼ ଛିଡ଼ି
ସେ ନଦୀଯାକରେ ସେ ହେଲେ ଜାଣ ଘୋଡ଼ି
ଏରୂପେ ଅର୍ଜ୍ଜୁନ ବଳରୁ ଅନୁରୂପ
ରକତନଦୀ କରି ବଢ଼ାଇ ପ୍ରତାପ ।
ବାହାରନ୍ତେ କୁରୁର ସେନାମଧ୍ୟେ ପଶି
ପାଣ୍ଡୁ ସେନାଯାକ ଗର୍ଜିଲେ ହୋଇ ତୋଷି ।
କୃଷ୍ଣ ଅରଜୁନ ଫୁଲାଇ ନିଜ ହୃଦ
ବଜାଇ ଶଙ୍ଖ ପୁଣି କଲେ ସିଂହନାଦ ।
ଅର୍ଜ୍ଜୁନ ଇନ୍ଦ୍ରଅସ୍ତ୍ର ପ୍ରତାପକୁ ଦେଖି
ଭୟରେ ଭୀଷ୍ମ ଦ୍ରୋଣ ବୁଜ ଦେଲେ ଆଖି
ମନେ କଲେ ଆମ୍ଭେ ଏହାଙ୍କ କୁଳେ ଆଜ
ଜନ୍ମେ ଯମ ଆମ୍ଭର ଘୋଟୁ ବେଢ଼ ପାଞ୍ଜି ।
ଏହି ସମୟରେ ସୂର୍ଯ୍ୟଦେବାନାହା
ଅସ୍ତଗିରି ଛୁଇଁଲେ ଲୁଚିଲ କର-ବାହା ।
ଭୀଷ୍ମ ଦ୍ରୋଣ ଯିବାକୁ ଥିଲେ ମନ କରି
ତା ଦେଖି ବାହାଣିଲେ ସେନା ଅବହାର ।
ଧନଞ୍ଜୟ ଜୟ-ଆଗକ କରିଦେଲେ
ବସାଇ କୃଷ୍ଣ ସଙ୍ଗେ ଉଭେ ବସି ତୋଷେ ।
ହସ ହସ ହୋଇଣ ଲଗାଇ ଗହଣି
ବାହାଣିଲେ ଶିବିରସ୍ଥାନକୁ ଆପଣ ।
କୁରୁମାନେ ଅର୍ଜ୍ଜୁନ ଯୁଦ୍ଧକର୍ମ କଥା
କଥା ହୋଇଲେ ନିଜେ ପୋତି ଦେଇ ମଥା
ବୋଇଲେ ଦୁର୍ଯ୍ୟୋଧନ ଅଟେ କେତେ ବାଇ
ପାଣ୍ଡବଙ୍କୁ ନ ବୋଲୁଅଛି କମା ଭାଇ ।

ଦେଖ ଆଜ ପ୍ରାଚ୍ୟ ଯେ ସୌବୀର କ୍ଷୁଦ୍ରକ
ମାଳବଙ୍କୁ ଦେଲେ ଅର୍ଜୁନ ଯମଲୋକ ।
ଏ ବାହାରେ ଅଯୁତେ ରଥୀ ସାତଶତ
ଗଜଙ୍କର ମଧ୍ୟଟି ଘେନଲେ ଜୀବତ ।
ବାହୁବଳ ଦେଖାଇ ଜଣ ମହାଆଜ
ଭୀଷ୍ମାଦି ରଥୀଙ୍କର ଦେଲେ ଗର୍ବ ଭଞ୍ଜି ।
ଅରଜୁନ କାଣ୍ଡକୁ ବହି କାନ୍ଧ ମୁଣ୍ଡେ
ଦେଖ ଦୁର୍ଯ୍ୟୋଧନ ଯାଆନ୍ତି ଯୁଦ୍ଧଦାଣ୍ଡେ ।
ଛତିଶାଏ ପୃଷ୍ଠି ଟେକାଇ ଯାଉଛନ୍ତି
ପାଣ୍ଡବଙ୍କୁ ନ ଜିଣି ନୃପତି ବୋଲନ୍ତି ।
ଏଥିରୁ ଉପହାସ ହୋଇ କର କଥା
ଏହି ମଣ୍ଡଳରେ ହୋଇବ କାର୍ତ୍ତି ପୋଥା ।
ଏହିରୂପରେ ପରସ୍ପରେ କଥା ହୋଇ
ହହୁଡ଼ହୁଲା ସୈନ୍ୟ ମଧ୍ୟରେ ଲଗାଇ ।
ଯେ ଯାହାର ବସାକୁ ଗଲେ ସେନାଗଣ
ନ ବାଜଥିଲା ଯାହାକୁଟି ପାର୍ଥ ବାଣ ।
ତୃତୀୟ ଦିନ ଯୁଦ୍ଧ ଏଥି ହେଲା ଶେଷ
କଲେ ସତ୍ୟବତୀନନ୍ଦନ ବହି ତୋଷ ।
ତାହାଙ୍କ ପାଦପଦ୍ମେ ବେଣେ କୃଷ୍ଣସିଂହ
ନୃପ ମନ-ଭୃଙ୍ଗ ସେବଲା ବହି ସ୍ନେହ ।

———

## ଚତୁର୍ଥ ଦିନ ଯୁଦ୍ଧ

ଏଥୁଅନ୍ତେ ରବି ଶେଷରେ ସେନାଗଣ
ବାହାରିଲେ ଭୀଷ୍ମ ଘେନଣ କରି ରଣ ।
ଦ୍ରୋଣ ଦୁର୍ଯ୍ୟୋଧନ ବାହ୍ଲିକ ଦୁର୍ମର୍ଷଣ
ଜୟଦ୍ରଥ ବିଂଶତି ଯେ ଚିତ୍ରସେନ ।
ସୈନ୍ୟ ସଙ୍ଗେ ଧରି ଭୀଷ୍ମଙ୍କ ସଙ୍ଗେ ସଙ୍ଗେ
ବାହାରିଲେ ଧନୁମାନଙ୍କ ଝିଙ୍କି ରଙ୍ଗେ ।
ମହାରଥୀମାନଙ୍କେ ଯୁତ ଦେବବ୍ରତ
ହେବାରୁ ନନ୍ଦା କଲେ ତେଜେ ପୁରୁହୂତ ।
କୁରୁସଇନ୍ୟେ ଗଜ ଶ୍ରେଣୀରେ ପତାକା
ଉଡ଼ି ଉଚେ କରିଲେ ଫଡ଼ଫଡ଼ି ଡକା ।
ସଇନ-ଆକାଶେ ଜଳଦ ଦେବବ୍ରତ
ହୁଅନ୍ତେ କରଧନୁ ନଧଲା ତଡ଼ିତ ।
ଶର-ମଶତରେ ପାଇଣ ଅତି ଶୋଭା
ବଢ଼ାଇଲାଟି କୁରୁବାହିନୀର ପ୍ରଭା ।

ସେନା-ନଦୀ ଯେ ଭୀଷ୍ମ-ଗିରିରୁ ବାହାରି
ବଢ଼ିଲା ଅତିଶୟେ ଶସ୍ତ୍ର ଜଳେ ପୂରି ।
ଅରଜୁନ ଦେଖି ନୟନେ କୁରୁଥାଟ
ଗାଣ୍ଡୀବ ଧନୁର୍ଗୁଣ କଲେ କଟକଟ ।
ମହତ ସେନାଗଣ ଘେନ ପାର୍ଥ ପାଶେ
ରହିଲେ ମେରୁପରି ଯୁଦ୍ଧ ପ୍ରତିଆସେ ।
କୁରୁମାନେ କୃଷ୍ଣ ପ୍ରସଙ୍ଗ କୂଳେ ପାର୍ଥ
ରଥ ଦେଖି ବଳରେ ଆଉଁଶିଲେ ମାଥ ।
ଅରଜୁନ ସୈନ୍ୟରେ ବ୍ୟାଳ ବ୍ୟୂହ କଲେ
ଦେଖି କୁରୁମାନେ ତ ଆଶ୍ଚର୍ଯ୍ୟ ଲଭିଲେ ।
ସେରୂପେ ବ୍ୟୂହଟାଏ ଆଜଯାଏ ମୂର୍ତ୍ତି
ଦେଖିବାରୁ ଥାଉ ହେ ନୃପ ଶୁଣିନାହିଁ ।
ଭୂରୀ ଭେରୀ ଶଙ୍ଖ ଦୁନ୍ଦୁଭି ଗରଜନ
ହୁଅନ୍ତେ ଦୁଇ ସୈନ୍ୟ ପ୍ରବୃଦ୍ଧ ହେଲା କାନ
ବୀରମାନଙ୍କର ଯେ ଧନୁର୍ଗୁଣ ରଡ଼ି
ଜଣିଗଲା ପ୍ରଳୟ କାଳ ଘଡ଼ଘଡ଼ି ।
ସୈନ୍ୟ ପାଦଘାତରେ ଧୂଳିରେ ମିହିର
ଗୁଡ଼ିଦେଲେ ଯୁଦ୍ଧଭୂମିରୁ ତାଙ୍କ କର ।
ଧୂଳି ଆକାଶରେ ଚାନ୍ଦୁଆ ପରି ହୋଇ
ରହିବାରୁ ଦେଖି ଯୋଦ୍ଧାଏ ଭୟ ପାଇ ।
ରଥୀକୁ ରଥୀ ଗଜାରୋହକୁ ଗଜାରୋହ
ସିପାଇକି ସିପାଇ ବହି ଅତି କୋହ ।
ମଦମତ୍ତ ହୋଇ ରକତ ମୁଖେ ବାନ୍ତି
କରି ପୁଷ୍ଟି ଗଲେ ଯେ ଯମଙ୍କର କତି ।
ପାଇକକୁ ପାଇକମାନେ ଡାକ ହାକ
ହଣାହଣି ହୋଇଲେ ଆଡ଼ଣ ଫରକ ।
ପ୍ରାସ ଖଡ଼ଗରେ ପାଇଣ ଅତି ତ୍ରାସ
ଘୋଡ଼ା ହାତୀ ଗଡ଼ିଲେ ପଡ଼ି ରଣଦେଶ ।
ପର୍ଶୁ ପ୍ରାସ ଖଡ଼ଗ ବାଜନ୍ତେ ଫରଗଣ
ଛିଡ଼ିପଡ଼ି ମଣ୍ଡିଲେ ସେ ଯୁଦ୍ଧ ଅଙ୍ଗଣ ।
ମହାରଥୀଙ୍କର ହାତରେ କାଣ୍ଡଘାତ
ପାଇ ରଥୀବୃନ୍ଦ ପଡ଼ିଲେ ଅଗଣିତ ।
ହାତୀ ମାଡ଼ିଗିବା ଘାତରେ ଅନ୍ୟପୂଟା
କେତେକ ଲୋକଙ୍କର ହେଲା ଭୂମିଲୋଟା ।
ଏହିକାଳରେ ଭୀଷ୍ମ ମହାରଥୀ ଶ୍ରେଣୀ
ଘେନ ଅରଜୁନଙ୍କୁ ରଚିଲେ ଆରଣି ।

ଦୁର୍ଯ୍ୟୋଧନ ନୃପେ ଯେ ଶଲ୍ୟ ଦୁଃଶଳ
ଦ୍ରୋଣ ଦ୍ରୌଣି କୃପ ଆଚାର୍ଯ୍ୟ ସୌମଦତ୍ତି ।
ଭୀଷ୍ମଙ୍କୁ ଆବୋରିଣ ଅର୍ଜୁନ ଦେହକୁ
ବିନ୍ଧିଲେ କାଣ୍ଡମାନ ମାଜିଣ ଗୁଣକୁ ।
ସୁନା କବଚକୁ ଭେଦିଣ ଦେହଦେଶେ
ତା ଦେଖି ଅଭିମନ୍ୟୁ ଧାଇଁଲେଟି ସେସେ ।
କୃଷ୍ଣର ରଥୀଙ୍କ ଅସ୍ତ୍ରକୁ ଅସ୍ତ୍ରେ କାଟି
ତେଜରେ ନନ୍ଦା କଲେ ସୂର୍ଯ୍ୟଙ୍କ ପ୍ରକୃତି ।
କୃଷ୍ଣ ପିତା ପାଣ୍ଡବ ସୈନ୍ୟଙ୍କୁ ସଂହାରି
ଯୁଝିଲେ ଅର୍ଜୁନଙ୍କୁ ଧନୁକୁ ଉଭାରି ।
ଅରଜୁନ ଭୀଷ୍ମଙ୍କ ଦେଖିଣ ବିକ୍ରମ
ଗାଣ୍ଡୀବକୁ କରେ ଧଇଲେ ଦନ୍ତ ଚମ ।
ଧନୁର୍ଦ୍ଧର ଅଗ୍ରଣୀ ଭୀଷ୍ମଙ୍କ ଶରଜାଳେ
କାଟିଣ ପକାଇଲେ ଖଣ୍ଡ ଖଣ୍ଡ ତଳେ ।
ଜ୍ୱଳି କାଣ୍ଡମାନଙ୍କୁ ଭଲ କରି ଟାଣି
ଭୀଷ୍ମଙ୍କ ଉପରକୁ ବିନ୍ଧିଲେ ସେ ପୁଣି ।
ଭୀଷ୍ମ ଅର୍ଜୁନଙ୍କ କାଣ୍ଡକୁ କାଣ୍ଡଜାଳ
ସର୍ଜି କରି କାଟି ପକାଇ ଦେଲେ ତଳ ।
ଭୀଷ୍ମ ଅରଜୁନ ତ ସମର୍ଥ ଅନନ୍ତ
ଏରୂପେ ସେ ଯୁଝିଲେ ବହୁ ଅତି ପ୍ରାନ୍ତ ।
ଦ୍ରୌଣି ଭୂରିଶ୍ରବା ଯେ ଚିତ୍ରସେନ ଶଲ
ଅଭିମନ୍ୟୁ କୂଳରେ ଆରମ୍ଭିଲେ ଗୋଳ ।
ସେ ରଥୀ ହାଙ୍ଗମାନେ ଅଭିମନ୍ୟୁ ସିଂହ—
ପିଲ୍ଲ ଆଗେ ଯୁଝିଲେ ବହୁ ଅଛ କୋହ ।
ସାତ୍ୟକ ଦନ୍ତମାନ ଦେଇଣ ପ୍ରସାରି
ହେଲେ ଅଭିମନ୍ୟୁ ସଙ୍ଗରେ ମଗ୍ନମର ।
ଅଭିମନ୍ୟୁ ବାଣ-ନଖର ବେଗ ପାଇ
ମୋଡ଼ିଦେଇ ମୁହଁ ଭାଜିଲେ ପିଠିଆଇ ।
ପୁତ୍ରର ପରାକ୍ରମ ଦେଖି ଅରଜୁନ
ତୋଷି ମେଲି ଆଣ୍ଟରେ କଲେ ଗରଜନ ।
କୃଷ୍ଣ ନାତି ଅଭିମନ୍ୟୁର କାଣ୍ଡେ ଅତି
ପୀଡ଼ା ପାଇ କୁନ୍ତ ସଇନ୍ୟେ ଚଉକତ ।
ଦେଖିଲେ, ଅଭିମନ୍ୟୁ ହୋଇଣ ନିର୍ଭୟ
ବିନ୍ଧିଲେ ଗୁଣେ ଯୋଖି ବାଛୁ କାଣ୍ଡଚୟ ।
କୃଷ୍ଣ ସେନା-ସମୁଦ୍ରେ ମକର ପରି ହୋଇ
ଝମ୍ପାଇ ପଶିଲେ ସେ ହଟାଇବା ପାଇଁ ।

ଦ୍ରୌଣିଙ୍କି କାଣ୍ଡେ ଶଲ ସାତେ ପାଞ୍ଚକାଣ୍ଡ
ବିନ୍ଧି ସଂଯାମନିପୁତ୍ର ଧ୍ୱଜ ଦ୍ୱିଖଣ୍ଡ ।
କରି ଅରଜୁନ-ତନୟ ଦେହ ତୋଗ
ପ୍ରକାଶିଲେ ପୁଣି ସରଳ ଶରଧାର ।
ଭୂରିଶ୍ରବାଙ୍କର ଫିଙ୍ଗିବା ଶକତିକ
ଅଭିମନ୍ୟୁ କଲେ କାଣ୍ଡରେ ଟିକ ଟିକ ।
ଶଲଙ୍କର କାଣ୍ଡକୁ ନିବାରି ଅର୍ଜୁନ—
ସୁତ ଶରେ ନେଲେ ତାଙ୍କ ଘୋଡ଼ା ପ୍ରାଣ
ଭୂରିଶ୍ରବା ଶଲ ସାଞ୍ଜମନ-ପୁତ୍ର ଦ୍ରୌଣି
ଆଦି ଅଭିମନ୍ୟୁଙ୍କୁ ନ ମାରିଲେ ଜିଣି ।
ତ୍ରିଗର୍ତ୍ତ କେକୟ ମଦ୍ରକ କୃଷ୍ଣ ସୁତ
ଆଜ୍ଞାରେ ଧନୁ ଧରି ଯୁଦ୍ଧକୁ ଗଲେ ତ ।
ଅରଜୁନ ଆରଜୁନଙ୍କି ରଣେ ବେଢ଼ି
ବିନ୍ଧିଲେ ବିବ୍ୟଶର ତୃଣ ମଧ୍ୟୁଁ କାଢ଼ି ।
ତାହା ଦେଖି ଦ୍ରୁପଦ-ନନ୍ଦନ ଧୃଷ୍ଟଦ୍ୟୁମ୍ନ
ଆସିଲେ ସେହିଠାକୁ ଘେନିଣ ସଇନ ।
ଧନୁର୍ଗୁଣ ଟଙ୍କାର କରିଦେଇ ଆଗେ
ବିନ୍ଧିଲେ ଶର ବାଛୁ ତ୍ରିଗର୍ତ୍ତ ମଦ୍ର ଥାଟେ ।
କୃପ ଆଚାର୍ଯ୍ୟଙ୍କୁ ଅର୍ଜୁନ ଆଗେ ଦେଖି
ଶର ତାଙ୍କ ଦେହେ ବିନ୍ଧିଲେ ମଧ୍ୟ ଯୋଖି ।
ମଦ୍ରକମାନଙ୍କୁ ସେ ସଂହାରିଣ ଆଗ
କୃତବର୍ମା ରକ୍ଷାକାରୀଙ୍କି ଯେ ଆଶୁଗ ।
ମାରି ମାରି ପକାଇ ପଉରବ-ସୁତ,
ଦମନକୁ ପୁଣି ସାଧ୍ୟକେ କଲେ ହତ ।
ସାଞ୍ଜମନ-ପୁଅ ଓଟାରିଣ ଧନୁଟି
ବିନ୍ଧିଲେ ଧୃଷ୍ଟଦ୍ୟୁମ୍ନ ଉପରେ ଦଶେଟି ।
ଧୃଷ୍ଟଦ୍ୟୁମନଙ୍କର ସାରଥିକ ବଧ—
ଶର ବିନ୍ଧି ପୁଣି ଆଉଁଶିଦେଲେ ନଶ ।
ଧୃଷ୍ଟଦ୍ୟୁମ୍ନ ସେ କାଣ୍ଡ ବିନ୍ଧା ନ ସହିଲେ
ସାଞ୍ଜମନପୁଅର ଧନୁକୁ କାଟିଲେ ।
ପଚିଶି କାଣ୍ଡ ସାଞ୍ଜମନ ପୁଅ ଦେହେ
ବିନ୍ଧିଲେ ଧୃଷ୍ଟଦ୍ୟୁମ୍ନ ସାର ଅତି କୋହେ ।
ପାର୍ଶ୍ୱରକ୍ଷ ସାରଥି ସହିତ ଘୋଡ଼ା ପ୍ରାଣ
ଘେନି ପକାଇଲେ ଦେଖାଇ ବୀରପଣ ।
ସାଞ୍ଜମନପୁଅଟି ଫଳ ଖଣ୍ଡା ହୋଇ
ଧାଇଁଲେ ଧୃଷ୍ଟଦ୍ୟୁମ୍ନ ଉପରେ ଭୟ ବହି ।

ଧୃଷ୍ଟଦ୍ୟୁମ୍ନ ରଥ ପାଖେ ତ ପାଇଗଲ
ଏଣୁ ବେଳେ ହସ୍ତରୁ ଧନୁ ଥୁଆଇଲ ।
ଧୃଷ୍ଟଦ୍ୟୁମନଙ୍କର ଘାଇ ଗଦାଘାତ
ଚେଦିପତିଙ୍କର ପାଶକୁ ହେଲ ଗତ ।
ସାଞ୍ଜମନପୁଅର ମରଣକୁ ଦେଖି
କୃଷ୍ଣ ଲୋକ ଅଶ୍ରୁରେ ପୂର୍ଣ୍ଣ କଲେ ଆଖି ।
ସାଞ୍ଜମନ ପୁଅ ମରଣ ନ ସହିଲ
ଧୃଷ୍ଟଦ୍ୟୁମନଙ୍କୁ ସେ ଆବୋରି ଯୁଝିଲ ।
ଧୃଷ୍ଟଦ୍ୟୁମନ ସାଞ୍ଜମନ ମିଶାମିଶି
ଯୁଦ୍ଧ ଦୁଇସେନା ଦେଖିଲେ ହୋଇ ତୋଷି ।
ସାଞ୍ଜମନ କ୍ରୋଧ ହୋଇ ଧୃଷ୍ଟଦ୍ୟୁମନ
ଉପରେ ତିନକାଣ୍ଡ ବିନ୍ଧିଲେ ବହନ ।
ଦ୍ରୁପଦନନ୍ଦନ ଲବଟି ଦୁଇଆଖି
ବିନ୍ଧିଲେ ସାଞ୍ଜମନ ପରେ ଶର ଯୋଖି ।
ଏଣୁ କାଳେ ଶଲ୍ୟ କ୍ରୋଧରେ ଧୃଷ୍ଟଦ୍ୟୁମ୍ନ
ବକ୍ଷସ୍ଥଳେ ଆଘାତ କଲେ ତୀକ୍ଷଣବାଣ ।
ଧୃତରାଷ୍ଟ୍ର ବୋଇଲେ ସଞ୍ଜୟ ଦେଖିବକୁ
ନ ଦେଖି ପୃଚ୍ଛସେ କାହାକୁ ବଳିବାକୁ ।
ନଷ୍ଟ କହୁଅଛ ପାଣ୍ଡବଙ୍କର ବାଣ
ପାଇ ମରୁଛନ୍ତି ମୋହର ଲୋକଗଣ ।
କେବେ ତ ପାଣ୍ଡବଙ୍କ ସଇନ ଅପାୟ
ମୋ ଆଗରେ ନ କଲ ସଞ୍ଜୟ ଉଦୟ ।
ମୋ ପୋଏ କି ଉପାୟ କଲେ ଜୟ-ଶିରୀ
ପାଇବେ ତାହା ପାଉନାହିଁ ମୁଁ ବଖାଣି ।
ସଞ୍ଜୟ ବୋଇଲେ ରାଜନ କୃଷ୍ଣ ସେନ
ମରୁଅଛନ୍ତି କୁରୁ ପାଣ୍ଡବ ସଇନ ।
ଧୃଷ୍ଟଦ୍ୟୁମ୍ନ ଶଲ୍ୟ ଶରରେ ପାଇ ପୀଡ଼ା
ପୁଣି ଯୁଦ୍ଧେ ରଚିଲେ ତାହାଙ୍କର କ୍ରୀଡ଼ା ।
ସେ ଦୁଇ ରଥୀଙ୍କ ମୁହୂର୍ତ୍ତେ ଯାଏ ରଣ
ହେଲ ହେ ରାଜନ ହୋଇଣ ଅତି ଟାଣ ।
ଦୁହେଁ ତ ଦୁହିଙ୍କର ଛିଦ୍ର ଟକାଟକ
ହୋଇ ଯୁଦ୍ଧ କଲେ ତା ନୋହିଲ ତରକ ।
ଶଲ୍ୟ ଭଲକାଣ୍ଡେ ଧୃଷ୍ଟଦ୍ୟୁମ୍ନ ଧନୁ
କାଟିଲେ ଯୁଦ୍ଧ ମଧ୍ୟେ ଧରି କରି ମନ୍ୟୁ ।
ଶରଧାର ସରଳ କ୍ରୋଧେ ଶଲ୍ୟ ପୁଣି
ଘୋଇଦେଲେ ଯୁଦ୍ଧପ୍ରଦେଶ ଅବନୀ ।

ଧୃଷ୍ଟଦ୍ୟୁମ୍ନଙ୍କର ଯୁଦ୍ଧରେ ଦେଖି ଦୁଃଖ
ଅଭିମନ୍ୟୁ ଆସିଲେ ତକ୍ଷଣ ତକ୍ଷିଖ ।
ଶଲ୍ୟଙ୍କର ରଥକୁ ପାଇ ଅଭିମନ୍ୟୁ
ଶରଜାଳାରେ ଛନ୍ନାଇଲେ ତାଙ୍କ ତନୁ ।
ଦୁର୍ଯ୍ୟୋଧନ ବିକର୍ଣ୍ଣ ଦୁଃସହ ଦୁଃଶାସନ
ବିବିଂଶତି ସତ୍ୟବ୍ରତ ଯେ ଚିତ୍ରସେନ ।
ଦୁର୍ମୁଖ ଦୁର୍ମର୍ଷଣ ପୁରୁମିତ୍ର ମିଶି
ଦଶ ରଥୀ ଶଲ୍ୟେ ଜଗିଲେ ରଣେ ଆସି ।
ଭୀମସେନ ଧୃଷ୍ଟଦ୍ୟୁମନ ଦ୍ରୌପଦେୟ
ଅଭିମନ୍ୟୁ ମାଦ୍ରୀଦେବୀଙ୍କ ତନୟ ।
କୃଷ୍ଣ ଦଶରଥୀଙ୍କ ବୁଲେ ରଣ ପାଞ୍ଚ
ଗୁଣ ମାଜ ଶାୟକଶ୍ରେଣୀ ଦେଲେ ମୁଞ୍ଚ ।
କୃଷ୍ଣ ଦୁର୍ମନ୍ତ୍ରଣାରୁ ଆହେ ନରବର
ଏମାନେ ମରିବାକୁ କଲେଟି ସମର ।
ଏ କୋଡ଼ିଏ ରଥୀଙ୍କ ସମରକୁ ଦେଖି
ସବୁ ରଥୀ ରହିଲେ ସମର ଉପେକ୍ଷି ।
ଅନ୍ୟୋନ୍ୟରେ ସମସ୍ତ ବିଦ୍ଧ ମାରଗଣ
ଦେଖାଇଲେ ଯେ ଯାହା ବାହୁବଳ ଟାଣ ।
ଦୁର୍ଯ୍ୟୋଧନ କ୍ରୋଧ ହୋଇଣ ଧୃଷ୍ଟଦ୍ୟୁମ୍ନ
ଅଙ୍ଗକୁ ସ୍ୱରକାଣ୍ଡ ବିନ୍ଧିଲେ ବହନ ।
ଦୁର୍ମର୍ଷଣ କୋଡ଼ିଏ ଚିତ୍ରସେନ ପାଞ୍ଚ
ଦୁର୍ମୁଖ ନବ ଦୁଃସହ ସାତ ନାରାଚ ।
ବିବିଂଶତି ପାଞ୍ଚ ଯେ ଦୁଃଶାସନ ତିନ
ଧୃଷ୍ଟଦ୍ୟୁମ୍ନପରେ ବିନ୍ଧିଲେ କ୍ରୋଧ ଘେନ ।
ହସ୍ତଲାଘବକୁ ଦେଖାଇ ଧୃଷ୍ଟଦ୍ୟୁମ୍ନ
କୃଷ୍ଣ ରଥୀଙ୍କର ଭାଟି ଏ କାଣ୍ଡମାନ ।
ଜଣଜଣକରେ ପଚିଶିଟି ଲେଖାଏଁ
ବିନ୍ଧ ଅଗଇଲେ କ୍ରୋଧରେ ତାଙ୍କ କାୟେ ।
ସତ୍ୟବ୍ରତ ପୁରୁମିତ୍ରକୁ ଅଭିମନ୍ୟୁ
ବିନ୍ଧିଲେ ଦଶ ଦଶ କାଣ୍ଡ ଧରି ମନ୍ୟୁ ।
ଶଲ୍ୟ ତମତମ୍ଁ ନକୁଳ ସହଦେବ
ବାଣେ କଲେ ତାଙ୍କର ବଳର ଅଭାବ ।
ଶଲ୍ୟ ଦୁଇ ଭଣଜାଙ୍କୁ କାଣ୍ଡ ବିନ୍ଧ
ସମର ସ୍ଥଳଦେଶରେ ଦେଲେ ପୁଣି ରୁନ୍ଧ ।
ଭୀମ ଦୁର୍ଯ୍ୟୋଧନଙ୍କୁ ଦେଖି କରି ଆଗେ
ଲୌହମୟ ଗଦାକୁ ଧରି କରି ବାଗେ ।

ବଞ୍ଚିଲେ ଆଜ ଦୁର୍ଯ୍ୟୋଧନର ପ୍ରାଣ
ଯେନଗଲେ ମୂର୍ଚ୍ଛି ନବଞ୍ଚିଯିବ ରଣ ।
ଭୀମ ହସ୍ତେ ଗଦା ଦେଖିଣ କୁମ୍ଭ ପୋଏ
ପଳାଇଲେ ଗଜନ ଯୁଦ୍ଧୁଁ ମହାଭୟେ ।
ଶୁଣି ସେ ଦୁର୍ଯ୍ୟୋଧନ ମାଗଧଙ୍କୁ ଡାକ
ବୋଇଲେ ମାର ହେ ପାଣ୍ଡବ ଭୀମଟିକ ।
ସହସ୍ରବଶ ହାତୀ ସେନ ଦୁର୍ଯ୍ୟୋଧନ
ମାଗଧଙ୍କ ସାହାରେ ଯୁଦ୍ଧେ କଲ ମନ ।
ଭୀମଙ୍କ ରଥପାଖେ ରଥକୁ ରଖାଇ
ବୋଇଲେ ଆଜ କାହିଁ ଯିବୁ ଭୀମଭାଇ ।
ଭୀମ ଶୁଣିଣ ଦୁର୍ଯ୍ୟୋଧନର ବଚନ
ନିଜର ରଥବରୁ ଓହ୍ଲାଇ ବହନ ।
ଗରଜନ କରିଣ ହୋଇ ଗଦାପାଣି
ଧାହାଇଲେ ଯୁଦ୍ଧଭାଣ୍ଡରେ ଦେହ ଟାଣି ।
କାଳଦଣ୍ଡ ପରି ବୁଲାଇ ଗଦାବର
କଲେ ହାତୀମାନଙ୍କ ଉପରେ ପ୍ରହାର ।
ଭୀମଙ୍କ ଗଦାବାଡ଼ି ପାଇ ହାତୀ ରଡ଼ି
କରିଣ ଦେଲେ ପ୍ରିୟପ୍ରାଣୁଟିକ ଛାଡ଼ି ।
ନକୁଳ ସହଦେବ ଦ୍ରୌପଦୀଙ୍କ ସୁତେ
ଭୀମଙ୍କ ପଛେ ପଛେ ଗମିଲେ ସମସ୍ତେ ।
କ୍ଷୁର କ୍ଷୁରପ୍ର ଅଞ୍ଜଳିକ ମାରଗଣ
ମାରି ଶତ ଯୋଦ୍ଧାଙ୍କ କାଟି ମୁଣ୍ଡଗଣ ।
ଗଜ ଯୋଦ୍ଧାମାନେ ମରଣ କୋଟି କୋଟି
ପିଇଲେ ଧୂଳି ମେଲି ଦେଇ ବେକପାଟି ।
କେତେ ଗଜ ଯୋଦ୍ଧାଙ୍କ ଛିଡ଼ିଲେଟି ମୁଣ୍ଡ
ଧାଇଁଥାଏ ହାତୀ ବହିଣ ତାଙ୍କ ପିଣ୍ଡ ।
କେତେ ହାତୀମାନଙ୍କୁ ଦ୍ରୁପଦ-ବେଟାଟି
ଧୃଷ୍ଟଦ୍ୟୁମ୍ନ ମାରି ପକାଇଦେଲେ କାଟି ।
ମାଗଧନୃପ ମହାହସ୍ତୀବର ଚଢ଼ି
ଅରଜୁନ ସୁତେ ଯୁଝିଲେ ଆଗ ବଢ଼ି ।
ସେ ହାତୀଟିକ କ୍ରୋଧେ ଅର୍ଜୁନ ପୁଅଟି
କାଣ୍ଡଟିଏ ଛନ୍ଧଣ ପକାଇଲେ କାଟି ।
ହାତୀଟି ମରିବାର ଦେଖିଣ ମାଗଧ
ପଳାଇଲ ଯୁଦ୍ଧରୁ ହେବ ବୋଲି ବଧ ।
ଅଭିମନ୍ୟୁ ରୁପାଙ୍କସ ଭଳି କାଣ୍ଡ
ହାଣି ତା ମୁଣ୍ଡ ଫିଙ୍ଗିଦେଲେ ରଣଭାଣ୍ଡ ।

ଇନ୍ଦ୍ର ଯେଉଁରୂପରେ କାଟନ୍ତି ଗିରିକ
ଭୀମ ସେ ରୂପେ କଲେ ଗଦାରେ କରୀଙ୍କି ।
କେଉଁ ହାତୀଙ୍କର ଭାଙ୍ଗିଲା ଦୁଇଦନ୍ତ
କାହାର ଛିଡ଼ିଲା ମଝିରୁ ଶୋଣ୍ଡହସ୍ତ ।
କାହାର ହେଲା ପିଠିହାଡ଼ ଦୁଇଖଣ୍ଡ
କାହାର ସ୍ୱରଆଣ୍ଠୁଠାରୁ ଗଲା ଛିଡ଼ି ।
ଏ ରୂପରେ ଭୀମ କରିଣ ମାରପଣ
ପକାଇଲେ ଶୈଳ ପ୍ରାୟେ କରିଗଣ ।
ବସା ମଜ୍ଜା ମେଦ ରକତ ଭୀମ ଦେହେ
ବହିଲେ ସେକାଳେ ସଜଳ ଅଭ୍ର ସ୍ନେହେ ।
ତେବେ ହେଲେଟି ମୁଖ ସମ୍ମୁଖେ ନ ମୋଡ଼ି
ଅବହେଳେ କରିଲେ ହାଣ ପିଟ ରଡ଼ି ।
ଭୀମ ରୁଦ୍ର ପ୍ରାୟେ ରୌଦ୍ରରୂପ ଧରି
ମାଗଧ ହାତୀ ସେନା ପକାଇଲେ ମାରି ।
ଯେତେ ହସ୍ତୀ ବଞ୍ଚିଲେ ଭୀମ ମାରଣିରୁ
ପଳାଇଲେ ସୈନ୍ୟ ମାଡ଼ି ସେ ହୋଇ ଭୀରୁ ।
ଅଭିମନ୍ୟୁ ଆଦି ଯେ ମହାରଥୀବୃନ୍ଦ
ଭୀମପୃଷ୍ଠ ଜଗିଲେ ହୋଇଣ ଆନନ୍ଦ ।
ରୁଦ୍ର କ୍ରୋଧ ହୋଇଣ ପିନାକେ ପଶୁଙ୍କୁ
ମାରିବା ପରି ଭୀମ ମାଇଲେ ସୈନ୍ୟଙ୍କୁ ।
ଗରୁଡ଼ ଗାଈଙ୍କୁ ଅଡ଼ାଇ ନେଲା ପରି
ଘଉଡ଼ିଲେ ଗଜାନୀକଙ୍କୁ ଗଦା ଧରି ।
ପବନ ଜଳଦ ଉଡ଼ାଇ ନେଲା ପ୍ରାୟେ
ଭୀମ ଉଡ଼ାଇଲେ ହାତୀଙ୍କି ଗଦାଘାଏ ।
ଛିଡ଼ା ହେଲେ ଶ୍ମଶାନଭୂମେ ରୁଦ୍ର ପରି
ଜାଣ ହେ ହସ୍ତିନାମଣ୍ଡଳ ଦଣ୍ଡଧାରି ।
ଗଜାନୀକର ହତ ଦେଖି ଦୁର୍ଯ୍ୟୋଧନ
କୁରୁସେନାଙ୍କୁ କହିଲେ ଏହି ବଚନ ।
ଭୀମଟିକ ଯୁଦ୍ଧଭୂମିରେ ବଢ଼ାଇ
ସମସ୍ତେ ହୋଇ ହଅ ସ୍ୱହୁଁଛ କପାଇଁ ।
ଏହା ଶୁଣି ସବୁ ସେନାଏ ଗୋଟା ହେଲେ
ମୋଟା ଭୀମ ବୁଲେ ଯୁଝିବା ଇଚ୍ଛା କଲେ ।
ପାଇ କରି ଦୁର୍ଯ୍ୟୋଧନର ବାଣୀ-ଇନ୍ଦୁ
ମାଡ଼ି ତ ଆସୁଥିଲେ କୁରୁସେନା-ସିନ୍ଧୁ ।
ଭୀମ ତାହାଙ୍କୁ ବେଳା ପ୍ରାୟେ ଆଗୁଳି
ସିଂହ ପରି ଉଚ୍ଚରେ ପାଡ଼ିଲେ ବୋବାଳି ।

ପବନ ପରି ଯୁଦ୍ଧଭୂମିରେ ନିଷ୍ଠୁର
ହୋଇ ଏକା ରହିଲେ ଭୀମ ମହାବଳ ।
କୁରୁସେନା କୂଳରେ ଗଦାରେ ଯେମନ୍ତି
ଭ୍ରାନ୍ତ ନୋହି ନୃପ ହୁଅନ୍ତେ ପିଟାପିଟି ।
ଧୃଷ୍ଟଦ୍ୟୁମ୍ନ ଅଭିମନ୍ୟୁ ଯେ ଦ୍ରୌପଦେୟ
ଶିଖଣ୍ଡୀ ଆଦି ଥିଲେ ଯେତେ ରଥୀଚୟ ।
ଭୀମଙ୍କର ପୃଷ୍ଠଦେଶକୁ ଜଗିକରି
ରହିଲେ ଏକା ସେ ଶାସ୍ତ୍ରକର୍ମ ଧନୁ ଧରି ।
ମୃତ୍ୟୁଦେବଙ୍କ ପରି କରେ ଗଦା ଧରି
ଭୀମ ସେ ଯୁଦ୍ଧକାଣ୍ଡଯାକରେ ସଞ୍ଚରି ।
ରଥ ଗଜ ଅଶ୍ୱ ଯେ ନର ବୃନ୍ଦ ବୃନ୍ଦ
ପିଟି ପକାଇଲେ ସେ ହୋଇଣ ଆନନ୍ଦ ।
ଭୀମ ଗଦାଘାତ-ବାତରେ କୁରୁ ସୈନ୍ୟ
ବୃକ୍ଷ ଭଳି ପଡ଼ିଲେ ହୋଇଣ ଛିନ୍ନ ଛିନ୍ନ ।
ମଜ୍ଜା ମାଂସ ବସା ଗଦାରେ କରି ବସା
ବଢ଼ାଇଲେ ଯୁଦ୍ଧରେ ଭୀମଙ୍କ ପ୍ରଶଂସା ।
ରଥ ନାଗ ଅଶ୍ୱ ଜୀବନ ନେବା କାଳେ
ସେ ଗଦା ନ ଦିଶଇ ନୟନ ଯୁଗଳେ ।
ଭୀମ ଯୁଦ୍ଧସ୍ଥାନ ମୃତ୍ୟୁର କ୍ରୀଡ଼ାସ୍ଥାନ
ସ୍ୱର୍ଗକୁ ଲଙ୍ଘି ଦେଲା ଜାଣ ହେ ରାଜନ ।
ଭୀମଙ୍କର ଗଦା ବୁଲାଇବାର ଶବ୍ଦ
ଜିଣି ପକାଇଲା ଇନ୍ଦ୍ରଙ୍କ ବଜ୍ରନାଦ ।
ମୃତ୍ୟୁଦେବତା ପରି ଭୀମର ମୂରତି
ଦେଖି ଯୁଦ୍ଧ ଛାଡ଼ିଲେ ଯୋଦ୍ଧାଏ ଶକତି ।
ଭୀମ ଯେଉଁ ଆଡ଼କୁ ଦିଅନ୍ତି ଅନାଇ
ପଳାନ୍ତି ହାତୀ ଘୋଡ଼ା ପଦାତି ନ ରହି ।
ଭୀମକର୍ମା ଭୀମଙ୍କ ଦେଖି ପରାକ୍ରମ
ଆସିଲେ ଭୀଷ୍ମ ଧାଇଁ ଯୁଦ୍ଧେ ବହୁ ତମ ।
ଭୀଷ୍ମଙ୍କର ଆସିବା ଦେଖି ଭୀମରଥୀ
ଧାଇଁଲେ ତାଙ୍କଠାକୁ ନୋହି କିଛି ବ୍ୟଥୀ ।
ସାତ୍ୟକି ଦେଖି ଭୀମ ଭୀଷ୍ମ ଯୋଟାଯୋଟି
ଧାଇଁଲେ ସେତିଠାକୁ ଝିଙ୍କିଣ ଧନୁଟି ।
କୁରୁ ସୈନ୍ୟଯାକକୁ କଣ୍ଟାଲଟା ପ୍ରାୟେ
ପୋଡ଼ିଲା ସାତ୍ୟକି ଶରାଗ୍ନି ଅଂଶୟେ ।
ଅଳମ୍ବୁଷ ବଳ ଦେଖାଇ ସାତ୍ୟକିଙ୍କି
ବିନ୍ଧିଲା ଦଶକାଣ୍ଡ ଧନୁଟିକ ଝିଙ୍କି ।

ସାତ୍ୟକି ତାକୁ ବିନ୍ଧିଦେଇ ସ୍ୱର୍ଣ୍ଣକାଣ୍ଡ
ଜଗିଲେ ଆସିଣ ଭୀମଙ୍କ ରଥଦାଣ୍ଡ ।
କୁରୁସେନା-ଭାବେ ସାତ୍ୟକି ଶରବଳ
ଗୋପାଳ ହୋଇ ଘଉଡ଼ିଲା ମହୀପାଳ ।
କୁମ୍ଭ ଯେ ଛାମାନେ ବିନ୍ଧିଲେ ହେଲେ କାଣ୍ଡ
କାଟି ନ ପାରିଲେ ସାତ୍ୟକି ଧନୁଖଣ୍ଡ ।
ମଧ୍ୟାହ୍ନ ସୂର୍ଯ୍ୟ ପ୍ରାୟେ ସାତ୍ୟକି ତେଜ ବହି
ହୋଇଲେ ରହ ରହ ନ ପଳାଅ ଭାଇ ।
ଭୂରିଶ୍ରବା ଏକାକୀ ସାତ୍ୟକିଙ୍କ ଆଗେ
ରହିଲେ ଧନୁ ଧରି ନୃପ ଜାଣ ବେଗେ ।
ଭୂରିଶ୍ରବା ଯେ ସାତ୍ୟକିଙ୍କି ନବକାଣ୍ଡ
ବିନ୍ଧିଲେ ଜାଳ ଦେଇ କ୍ରୋଧାଗ୍ନିରେ ପିଣ୍ଡ ।
ସାତ୍ୟକି ଅନ୍ତେ ତ ଅତ୍ୟନ୍ତ ଧାନୁକୀ
ଛାଇଦେଲେ କାଣ୍ଡରେ ଭୂରିଶ୍ରବାଟିକି ।
ଦୁର୍ଯ୍ୟୋଧନ ରାଜ ଭାଇଙ୍କ ଘେନି ସଙ୍ଗେ
ରହିଲେ ଧନୁ ଧରି ନୃପ ଜାଣ ବେଗେ ।
ପାଣ୍ଡୁସୁତମାନେ ସାତ୍ୟକିଙ୍କର ପାଶେ
ରହିଲେ ଜଗି ଧନୁ ଧରି କରଦେଶେ ।
ଭୀମ ଗଦା ଧରିଣ କୁମ୍ଭର ସୁତକୁ
ଡାକିଲେ ଆସ ଧାଇଁ କରିବା ଯୁଦ୍ଧକୁ ।
କୁମ୍ଭ ପୁତମାନେ ଭୀମଙ୍କୁ କଙ୍କପତ୍ର
ଶିଳାଘଷା ବିନ୍ଧିଲେ କମ୍ପାଇଣ ଗାତ୍ର ।
ତୀକ୍ଷ୍ଣକାଣ୍ଡ ନବକୋଟି କରେ ଧରି
ବିନ୍ଧିଲେ ଦୁର୍ଯ୍ୟୋଧନ ଭୀମେ ଆଣ୍ଠୁ କରି ।
ଭୀମ ତାହା ଦେଖି ଛାଡ଼ିଣ ପଦଯୁଦ୍ଧ
ନିଜ ରଥେ ବସିଲେ ବଳି ଅତି କ୍ରୋଧ ।
ବିଶୋକ ସାରଥିକି କହିଲେ ଭୀମସେନ
ବାହିବ ଟି ଘୋଡ଼ାଙ୍କୁ ହୋଇ ସାବଧାନ ।
ଧୃତରାଷ୍ଟ୍ର ପୋଏ ଆସିଅଛନ୍ତି ଧାଇଁ
ଦେଖ ହେ ଏହିକ୍ଷଣି ଦେବି ମୁଁ ବଢ଼ାଇ ।
ଏହା କହି ସାରଥି ଆଗେ ବୃକୋଦର
ବିନ୍ଧିଲେ ଦୁର୍ଯ୍ୟୋଧନ ପରେ ଦଶ ଶର ।
ନନ୍ଦକଙ୍କ ହୃଦକୁ ତିନକାଣ୍ଡ ବିନ୍ଧି
ଦେଲେ ତାଙ୍କର ପ୍ରିୟପରଣକୁ ରୁନ୍ଧି ।
ଦୁର୍ଯ୍ୟୋଧନ ଭୀମଙ୍କୁ ଷାଠିଏ ମାର୍ଗଣ
ବିନ୍ଧି ବିଶୋକକୁ ବିନ୍ଧିଲେ ତିନ ବାଣ ।

ତନକାଣ୍ଡେ ଧନୁଟି ଭୀମଙ୍କର କାଟି
ପ୍ରକାଶିଲେ ଯୁଦ୍ଧରେ ସେ ଅଦ୍ଭୁତହାସ୍ତି ।
ବିଶୋକ ପୀଡ଼ା ଧନୁ ଛିଣ୍ଡା ଦେଖି ଭୀମ
ହୃଦୟ-ପଦ୍ମ ମଧ୍ୟେ ବନ୍ଧ ଅତି ତମ ।
କରଦେଶରେ ପୁଣି ଧରିଣ କୋଦଣ୍ଡ
ଦୁର୍ଯ୍ୟୋଧନ ଧନୁକୁ କଲେ ଦୁଇଖଣ୍ଡ ।
କୁରୁ ପୁଅ ଛିଣ୍ଡା ଧନୁକୁ ତେଜି ଥୋଇ
ଆନ ଧନୁ ଧରିଣ ବେଗକୁ ଦେଖାଇ ।
ଭୀମସେନ ହୃଦଦେଶକୁ କାଣ୍ଡ ଟାଏ
ବିନ୍ଧିଲେ ସେ ପୁଣି ଓଟାରି ଅକ୍ଷୟେ ।
ସେ କାଣ୍ଡ ଟା ଭୀମଙ୍କ ହୃଦଦେଶ ପାଇ
ରହିଲା ବୁଡ଼ି ଜାଣ ଆହେ ନରସାଇଁ ।
ଭୀମ ସେ ଶରଘାତେ ହୋଇ ଥରହର
ପଡ଼ିଲେ ବୁକୁଦେଶେ ଦେଇ କରି କର ।
ଭୀମଙ୍କର ମୋହ ଦେଖିଣ ଅଭିମନ୍ୟୁ
ଆଦି ରଥୀମାନେ ହୃଦରେ ଧରି ମନ୍ୟୁ ।
କୁରୁ ପୁଅମାନଙ୍କୁ ଗର୍ଜିଣ ତରଟି
ବିନ୍ଧିଲେ ଧନୁ ଧରି ଶର କୋଟି କୋଟି ।
ଭୀମ ଏଣୁ କାଳରେ ପାଇଣ ଚେତନା
ଉଠି କରେ ଧନୁ ଧରି ସେ ମହାମନା ।
ବାଛି ଦଶକାଣ୍ଡ ଧନୁ ମଧ୍ୟରେ ସନ୍ଧି
ଦୁର୍ଯ୍ୟୋଧନ ଉପରକୁ ତା ଦେଲେ ବିନ୍ଧି ।
ସତାଇଶ କାଣ୍ଡ ବିନ୍ଧନ୍ତେ ସେ ଶଲ୍ୟଙ୍କୁ
ପଳାଇଲେ ଶଲ୍ୟ ସେଠାରୁ ଅନ୍ୟଠାକୁ ।
କୁରୁ ପୁଅ ଚଉଦଗୋଟି ହୋଇ ଗୋଟି
ଭୀମଙ୍କୁ ଯୁଦ୍ଧ କଲେ ଝିଙ୍କିଣ ଧନୁଟି ।
ସେନାପତି, ଭୀମରଥ ଯେ ସୁଲୋଚନ
ଭୀମ, ବୀରବାହୁ ଯେ ଦୁର୍ମୁଖ, ସୁଷେଣ ।
ବିବତ୍ସୁ, ଜଳସନ୍ଧ, ଦୁଷ୍ପ୍ରଧର୍ଷ ଉଗ୍ର
ବିକଟ, ଅଲୋଲୁପ, ସମ ଅତି ଉଗ୍ର ।
ହୋଇ ତ ଥିଲେ ଯୁଦ୍ଧେ ମୃତ୍ୟୁକୁ ନ ଜାଣି
ଯୁଦ୍ଧ କଲେ ଗର୍ବେ ହୋଇଣ ଧନୁଷ୍ପାଣି ।
ଭୀମ ଛାଡ଼ି ନ ସହି ବେଗରେ ତହଟି
ଦେଲେ କାଣ୍ଡେ ସେନାପତିର ମୁଣ୍ଡ କାଟି ।
ଛକାଣ୍ଡରେ ଜଳସନ୍ଧଙ୍କର ମୁଣ୍ଡ
ଗଡ଼ାଇ ଦେଲେ ଭୀମସେନ ରଣଦାଣ୍ଡ ।

ସୁଷେଣକୁ କାଣ୍ଡେକ ମୃତ୍ୟୁଦେବତାକୁ
ଭେଟାଇଲେଟି ଭୀମ ବକ୍ଷଣ ସଗକୁ ।
କୁଣ୍ଡଳରେ ମଣ୍ଡିତ ଉଗ୍ରଙ୍କର ମୁଣ୍ଡ
ଖଲକାଣ୍ଡେ କାଟିଲେ ଦେଖାଇ ପ୍ରଚଣ୍ଡ ।
ସକୁର କାଣ୍ଡେ ବୀରବାହୁ ପ୍ରାଣ ହରି
ଭୀମ ଭୀମରଥ ଦୁହିଙ୍କି ଦେଲେ ମାରି ।
ସୁଲୋଚନ ନେତ୍ରଯୁଗଳେ ସ୍ତବ୍ଧ ଥିଲେ
ଭୀମ କ୍ଷୁରକାଣ୍ଡେ ସେ ଯମକୁ ଭେଟିଲେ ।
ବାକି ଭୀମ ହାତୁଁ କୁରୁର ଯେତେ ପୁଅ
ବଞ୍ଚିଲେ ପଳାଇଲେ ଲଭି ଅତି ଭୟ ।
ଭୀଷ୍ମ ଭୀମଙ୍କର ଦେଖିଣ ବୀରପଣ
ବୋଇଲେ ଯୁଝ ସାବଧାନେ ନୃପଗଣ ।
ଧୃତରାଷ୍ଟ୍ର ପୁଅଙ୍କୁ ଦେଖୁଛ ତ ଭୀମ
କଞ୍ଚିତ ପରାକ୍ରମେ ଦେଲେ ଯମଗ୍ରାମ ।
ତୁମ୍ଭେମାନେ ଅସାବଧାନେ ଯୁଦ୍ଧ କଲେ
ସେହି ଦଶାକୁଟି ଲଭିବ ଜାଣ ଭଲେ ।
ଏହା ଶୁଣି ରାଜନ କୁରୁ ନୃପଗଣ
ସୈନ୍ୟ ଘେନ କଲେ ଭୀମଙ୍କ ସଙ୍ଗେ ରଣ ।
ଭଗଦତ୍ତ ଯେ ମତ୍ତହସ୍ତୀକି ଆରୋହି
ଭୀମେ ଯୁଝିବାକୁ ଆସିଲେ ତୋଷ ହୋଇ ।
ଶିଳାବର୍ଷା ବାଣ-ମେଘରେ ଭୀମ-ସୂର୍ଯ୍ୟ
ଆବୃତ କଲେ ହାଇ ହେଲା ସେ ଆଶ୍ଚର୍ଯ୍ୟ ।
ଭଗଦତ୍ତ ବଳକୁ ଦେଖି ଅଭିମନ୍ୟୁ
ଆଦି ମହାରଥୀଏ ଧରି ଆଣ୍ଠେ ଧନୁ ।
ହାଣ୍ଠି ଭୁଲେ ଭଗଦତ୍ତକୁ କାଣ୍ଡେ ବିନ୍ଧି
ଦେଲେ ତାଙ୍କ ଯିବା ଆସିବା ବାଟ ରୁନ୍ଧି ।
ରଥୀ ମହାରଥୀଙ୍କ ପାଇ କାଣ୍ଡଗଣ
ନେଞ୍ଜଳ ସେ ମହାଜଳକୁ ଦୁଇଗୁଣ ।
ସୂର୍ଯ୍ୟ କିରଣରେ ଜଳଦ ଭଙ୍ଗପରି
ଦିଶିଲା ହାଣ୍ଠି ଅଙ୍ଗ ରକ୍ତଧାର ଧରି ।
ଭଗଦତ୍ତ ହାଣ୍ଠି ଟିପନ୍ତେ ଅତି ଆଣ୍ଠେ
ପୁଣି ପଶିଲା ସେ ପାଣ୍ଡବସେନାଙ୍କ ଥାଟେ ।
ଭଗଦତ୍ତ ହାଣ୍ଠିର ଦେଖି ପରାକ୍ରମ
ମହାରଥୀମାନେଟି ଛାଡ଼ିଲେ ସଂଗ୍ରାମ ।
ଭଗଦତ୍ତ ଭୀମ ବକ୍ଷସ୍ଥଳରେ କାଣ୍ଡେ
ବିନ୍ଧିଲେ ଯୁଦ୍ଧଦାଣ୍ଡେ ଅତି ପରଚଣ୍ଡେ ।

ସେ କାଣ୍ଡ ଟି କାଳଦଣ୍ଡକୁ ନନ୍ଦା କରି
ଭୀମ ହୃଦ-ପଦ୍ମ ଭେଦିଲା ଭୁଜଙ୍ଗ ପରି ।
ରକତ-ମଧୁ ଭୁଜ-ମୁଖରେ ପିଇଲା
ଲଖିବାରେ ଝସିଲା ପରାଏ ପଶିଲା ।
ସେ ଶରଘାତେ ଭୀମ ଧ୍ୱଜଦଣ୍ଡ ଧରି
ରହିଲେ ଆଖିକି ଛଇଟି ଦେଇକରି ।
ଭୀମଙ୍କ ମୋହ ଦେଖି ଭଗଦତ୍ତ ରାଜା
ସିଂହନାଦ କଲେ ଆନନ୍ଦ କରି ମଜା ।
ଦେଖିଣ ତାହା ଘଟୋତ୍କଚ ମହାଯଶା
ହୃଦୟ-ପଦ୍ମେ ରୋଷ-ଭୁଜଙ୍ଗେ ଦେଇ ବସା ।
ଅନୁରାଗ-ମଧୁକୁ ତା ମୁଖେ ଚଖାଇ
ଆକାଶକୁ ଗଲା ସେ ବିକ୍ରମ ଦେଖାଇ ।
ନିମିଷକରେ ସେ ରାକ୍ଷସ ମାୟା କରି
ଆରୋହି ଇନ୍ଦ୍ରଙ୍କର ଐରାବତ କରୀ ।
ଅଞ୍ଜନ ମହାପଦ୍ମ ବାମନ ତିନି ହସ୍ତୀ
ଲାଗିଛନ୍ତି ଚଢ଼ିବା ଐରାବତ କତି ।
ଯୁଦ୍ଧବାଞ୍ଛେ ଭଗଦତ୍ତଙ୍କ ଆଗେ ଛିଡ଼ା
ହେଲେ ନ ମାନିଣ ତାହାଙ୍କ କାଣ୍ଡ ଭିଡ଼ା ।
ଭଗଦତ୍ତ ନାଗେ ଦାନବ ମହାସ୍ୱର
ଟିପିଲା ସେ ମାୟା ଗଜକୁ ଦନ୍ତ ଘାଏ ।
ଆନ ତିନି ଗଜେ ରାକ୍ଷସେ ଚଢ଼ିଥିଲେ
ତା ଦେଖି ଭଗଦତ୍ତ ନୃପପାଶେ ଗଲେ ।
ଭଗଦତ୍ତ ହସ୍ତୀ ଦେହରେ ଦନ୍ତ ମାଡ଼ି
କଲେ ସେ ଯୁଦ୍ଧସ୍ଥଳେ ଅତିଶୟେ ରଡ଼ି ।
ଭଗଦତ୍ତ ହସ୍ତୀ ସେ ଘାତେ ପାଇ ପୀଡ଼ା
ବିକଳେ ବୋବାଇଲା ଛାଡ଼ିଦେଇ କ୍ରୀଡ଼ା ।
ସେ ଗରଜନ ଶୁଣି ରାଜା ଦୁର୍ଯ୍ୟୋଧନ
ଦ୍ରୋଣଙ୍କୁ ସ୍ପର୍ଶି କରି କହିଲେ ବଚନ ।
ଦେଖ ହେ ହିଡ଼ିମ୍ବାର ସୁତ କ୍ରୋଧ ହୋଇ
ଭଗଦତ୍ତ ହସ୍ତୀକି ଦେଉଛି ବଢ଼ାଇ ।
ଭଗଦତ୍ତ ରାଜା ଅତ୍ୟନ୍ତ ବଳୀୟାର
ଓହରିବେ କେହ୍ନେ ସେ ନ କରି ସମର ।
ଚାଲ ଆମ୍ଭେ ସମସ୍ତେ ଭଗଦତ୍ତ ପାଶେ
ରହିବା ବେଢ଼ି ତାଙ୍କୁ ବଞ୍ଚାଇବା ଆଶେ ।
ନୋହିଲେ ଘଟୋତ୍କଚ-ସିଂହ ମୁଖେ କରୀ
ପରାୟେ ହେବେ ଭଗଦତ୍ତ ଦଣ୍ଡଧାରୀ ।
ଏତେବେଳରେ ଯେବେ ଭଗଦତ୍ତ ସାଥ
ନୋହିବା ପଛରେ ଧରିବା ସିନା ମାଥ ।
ଭୀଷ୍ମଙ୍କ ବଚନେ ନୃପତିଗଣ ଦ୍ରୋଣ
ଗୁରୁଙ୍କୁ ଆଗକରି ଗଲେ କରି ରଣ ।
ତାହା ଦେଖି ପାଣ୍ଡବେ ପାଞ୍ଚାଳଙ୍କୁ ଧରି
ହେଲେ ଘଟୋତ୍କଚ-ରାକ୍ଷସ ରକ୍ଷାକାରୀ ।
ଘଟୋତ୍କଚ ଆଗରେ ଦେଖି କୁରୁଥାଟ
ଗର୍ଜିଲା ତା କଣ୍ଠ ଘୋଟାକୁ ଭରି ମୋଟ ।
ଘଟୋତ୍କଚ ଗର୍ଜନ ଶୁଣି ଭୀଷ୍ମ ପୁଣି
ଦ୍ରୋଣଙ୍କ ମୁଖ ଚାହିଁ କହିଲେ ଏ ବାଣୀ ।
ଘଟୋତ୍କଚ ଭୁଜରେ ଯୁଝିବାର ମୋତେ
ଯୋଗାଉନାହିଁ ଆଜ ଜାଣ ମହାମତେ ।
ହୋଇଛି ସେ ସହାୟ ବଳବୀର୍ଯ୍ୟ-ଯୁତ
ସ୍ୱଭାବେ ଲବ୍ଧଲକ୍ଷ୍ୟ ପ୍ରହାରେ ସମର୍ଥ ।
ଏହାକୁ ବଜ୍ର ଧରି ଶଚୀଙ୍କ ବିହାରୀ
ନ ପାରିବେ ଯୁଦ୍ଧଭୂମିରେ ନାଶ କରି ।
ଆମ୍ଭ ସେନାସିନ୍ଧୁକୁ ଅଗସ୍ତି-ପାଣ୍ଡବେ
ହୋଇଣ ଶର-ମୁଖେ ପିଇବେ ଅଳ୍ପବେ ।
ବେଳକୁ ବେଳ ଆମ୍ଭେ ହୋଇଲୁଇ ଶ୍ରାନ୍ତ
ପାଣ୍ଡବଙ୍କ ବଳ ବଢ଼ୁଛି ଅପ୍ରମିତ ।
ଏତେବେଳେ ଯୁଝିଲେ ରଣ ଜୟ-ଶିରୀ
ବଳେ ଘେନି ଯିବେ ପାଣ୍ଡବ ଦଣ୍ଡଧାରୀ ।
ବାହୁଡ଼ାଇଣ ସେନା ଆସ ଘେନିଯିବା
ସେ ଘୋଡ଼ାଇ ଲଢ଼ାଇ କରନ୍ତୁ କଇବା ।
ଭୀଷ୍ମଙ୍କ ବଚନ କୁରୁଏ ଶୁଣି କାନେ
ସେନା ଘେନି ବସାକୁ ଗମିଲେ ବହନେ ।
କୁରୁମାନେ ବସାକୁ ଲେଉଟିବା ଜାଣି
ପାଣ୍ଡବେ ସିଂହନାଦ କଲେ ସେହିକ୍ଷଣି ।
ପୂର୍ବକୁ ପିଠ କରି ଗୃହେ କଲେ ମୁଖ
ତୂଣରେ ରଖି ଦେଲେ ଧନୁବା ବିଶିଖ ।
ଭୀମ ଘଟୋତ୍କଚକୁ ଆଗରେ ଚଳାଇ
ବାହାଡ଼ିଲେ ଯେ ବାଦ୍ୟ ଗୁଣିକ ଫୁଲାଇ ।
ଦୁର୍ଯ୍ୟୋଧନ ଗୃହେ ମୁହୂର୍ତ୍ତେ ଭାଇଙ୍କର
ଭୁଲେ ଲଜା ପାଡ଼ିଲେ ଧରି ନେଣେ ନୀର ।
ପୁଣି ଧୈର୍ଯ୍ୟ ହୋଇଣ ଶିବିର ପଲ୍ଲାପି
ଶୋଇଲେ ଦୁର୍ଯ୍ୟୋଧନ ହୋଇ ଖଣ୍ଡତାପୀ ।

ଏହିଠାରେ ଚତୁର୍ଥ ଦିନ ଯୁଦ୍ଧ ଶେଷ
ହୋଇଲା କହେ କୃଷ୍ଣସିଂହ ନରେଶ ।

———

## ପଞ୍ଚମ ଦିନ ଯୁଦ୍ଧ

ଏଥୁଅନନ୍ତରେ ଧୃତରାଷ୍ଟ୍ର ନରବର
ବୋଇଲେ ହେ ମନ୍ତ୍ରୀ ସଞ୍ଜୟ ବସି ଶୁଣ ।
ଭୀମ-ସୂର୍ଯ୍ୟ ଶର କରରେ ଯୋଏ ମଲେ
ମୋ ହୃଦ-କୁମୁଦ ଆନନ୍ଦ ମୁଦାଇଲେ ।
ବିଦୁର ଯାହା ମୋତେ କହୁଥିଲେ ବସି
ସେକଥା ଏବେ ମୁହିଁ ହେଉଅଛି ଦୋଷି ।
ଭୀଷ୍ମ ଆଦି ରଥୀଙ୍କି ପାଣ୍ଡବେ ବିନ୍ଧି ବାଣ
ମୋ ଦୁର୍ଯ୍ୟୋଗ ସେନ ଟି କଲେ ନିବାରଣ ।
ପଣ୍ଡୁସୁତେ କମ୍ପା ନୋହିଲେ ରଣେ ହତ
ତାହା ମୋତେ ସଞ୍ଜୟ ବତାଇ କହ ତ ।
କେଉଁ ଦେବତା ଅବା ବର ଦେଇଅଛି
ଏହା ମୋତେ କିଛି ତ ଗୋଚର ନୋହୁଛି ।
ଭୀଷ୍ମଠାରୁ ଏବେ ଶୁଣିଲେ ଭଲକରି
ଦେବ ମୋର ହୃଦ ସଂଶୟ ଦୂରକରି ।
ନର ସମୁଦ୍ର ପାର ନ ପାଇଲା ପରି
ଶୋକ-ସମୁଦ୍ର ଟି ହୋଇଲା ତ ମୋହରି ।
ପୁଅଙ୍କର ଭୀମର ହାତରେ ମରଣ
ଜାଣୁଅଛୁ ଝଞ୍ଜିଲ ଆଣି ଦେବଗଣ ।
ମୋ ପୁଅଙ୍କୁ ଯୁଦ୍ଧବେଶରେ ରଖିବାକୁ
ଗାର ବଣୁନାହିଁ ହେ ମୋର ବସ୍ତରକୁ ।
ଭୀଷ୍ମ ଦ୍ରୋଣ ଦୁର୍ଯ୍ୟୋଧନ ଯେ ଜୟଦ୍ରଥ
କୃପ ଅଶ୍ୱତ୍ଥାମା ଶକୁନି ସାମରଥ ।
ହୋଇ ମୋର ପୁତ୍ରବୃନ୍ଦଙ୍କୁ ରଖିଥିଲେ
କହ ତା ଏହା ଦେଖି କସ ବସ୍ତରଲେ ।
ସଞ୍ଜୟ ବୋଇଲେ ପାଣ୍ଡବ ଧର୍ମବଳ
ଆଗ୍ରେ କରି ନୃପ ଦଳନ୍ତେ କୁରୁ ଦଳ ।
ମାୟା ମନ୍ତ୍ର ତାହାଙ୍କ ଅନ୍ତଃକରଣ
ଜାଣିବାର ତ ଥାଉ ନ ଶୁଣଇ କାନ ।
ଧର୍ମବଳେ ରାଜନ ପାଣ୍ଡବଙ୍କ ଜୟ
ହେଉଛି ଜାଣ ସବୁ ବେଳରେ ଉଦୟ ।
କୁରୁ ପୁଅମାନେ ପାପରେ ଅଭିଭୂତ
ହେବାରୁ ହେଉଛନ୍ତି ଯୁଦ୍ଧେ ପରାଜିତ ।
କୁରୁର ଯୋଏ ଅପକାର ପାଣ୍ଡବଙ୍କୁ
କରୁଥିଲେ ଲୁଗ୍ଗଉଥାନ୍ତି ସେ ତାହାକୁ ।
ପାପକର୍ମ କରିବା ଫଳ ଦେଖ ରାୟେ
ଫଳୁଅଛି କର୍ମାଳି କରୁଅଛ ଭୟେ ।
ସୁହୃଦ ଜନ କୁଳେ ଅରଜିବା ଦୋଷ
ଫଳ ଭୁଞ୍ଜ ସୁଖେ ବସ ହେ ନରେଶ ।
ଆମ୍ଭେମାନେ ଯେତେଟି କହିଲୁଁ ବୁଝାଇ
ନ ବୁଝିଲ ଲୋଭରେ ମାନସ ରଖାଇ ।
ପୁଅଙ୍କ ମତ ଆଗ୍ରେ କରି ପାଣ୍ଡବଙ୍କୁ
ମାରି ବସୁଥିଲ ରାଇଜ ଖାଇବାକୁ ।
ପାଣ୍ଡୁସୁତମାନଙ୍କ ଜୟର କାରଣ
କହିବା ପୁଣି ଶୁଣ ତାହା ନରବର ।
କୁରୁର ପୁଅ ଦୁର୍ଯ୍ୟୋଧନ ଦୁଃଖୀ ହୋଇ
ଦିନେ ଗଲେ ରାତେ ଭୀଷ୍ମଙ୍କଠାକୁ ଧାଇଁ ।
ବୋଇଲେ ପିତାମହ କୁରୁଙ୍କୁ ଆଦି ମୋର
ରହିଛନ୍ତି ତ ମହାରଥୀଏ ଅପାର ।
ଏହାଙ୍କର ବାହୁ ମଧ୍ୟରୁ ପାଇ ପାର
ପାଣ୍ଡୁସୁତେ କରନ୍ତି ମୋ ସୈନ୍ୟ ସଂହାର ।
ଏ କଥା ଦେଖି ମୁଁ ହେଉଛି ଅତି ଦୁଃଖୀ
କହ ହେ କାରଣ ଶୁଣିଲେ ହେବି ସୁଖୀ ।
ଭଗଦତ୍ତ ବିକର୍ଣ୍ଣ ଶଲ୍ୟ କୃପ ଦ୍ରୋଣ
ଭୂରିଶ୍ରବା କୃତବର୍ମା ଦ୍ରୌଣି ସୁଦକ୍ଷିଣ ।
ଏମାନଙ୍କୁ ଇନ୍ଦ୍ରାଦି ଦେବ କୋଟି ହୋଇ
ଯୁଝିଲେ ନ ପାରିବେ ଯୁଦ୍ଧରେ ଘୁଞ୍ଚାଇ ।
ପରାଣକୁ ଛାଡ଼ି ଏ ମୋର ପାଇଁ ରଣ
କରୁଛନ୍ତି ଶକ୍ତି ଦେଖାଇ ବିନ୍ଧି ବାଣ ।
ପାଣ୍ଡୁସୁତେ କାହା ବାହୁକୁ ଆଗ୍ରେ କରି
ଏହାଙ୍କର ବଳକୁ ଦପନ୍ତି ସଂହାରି ।
ଏ କଥା ଦେଖିବା ପ୍ରତିକେ ରଥୀଗଣ
ହୁଅନ୍ତା ଶ୍ରେୟ ଭୀଷ୍ମ ହେଲେ ମୋ ମରଣ ।
ଭୀଷ୍ମେ ବୋଇଲେ ମୁହିଁ କହିଲି ବତାଇ
ମୋ କହିବା କଥା ତ ହୃଦେ କଲ ନାହିଁ ।
ପାଣ୍ଡବଙ୍କ କୁଳେ ପୀରତି କରିଥିଲେ
ମହାସୁଖେ ରାଜ୍ୟ ଭୁଞ୍ଜନ୍ତ ତୁମ୍ଭେ ଭଲେ ।
ପାଣ୍ଡବେ ହେଲେ ଯେଉଁ ସକାଶେ ଅବଧ
ତାହା କହିବା ଏବେ ଶୁଣି ହୁଅ ବୋଧ ।

ପାଣ୍ଡବମାନଙ୍କୁ ଜଣିବାପାଇଁକ ଏ ମହୀରେ
ଆଉ ତ କେହି ନାହିଁ ମୋହର ମତରେ ।
ମୁନିମାନେ ଯାହା ପୁରାଣେ କହନ୍ତି
ତା କହିବା ଶୁଣ ବଚହଆର୍ଯ୍ୟ ନାତି ।
ପୂର୍ବକାଳେ ଋଷିଏ ଦେବେ ଏକ ହୋଇ
ଭେଟିଲେ ଗନ୍ଧମାର୍ଦ୍ଦନରେ ବେଦସାଇଁ ।
ଏହିକାଳରେ କୋଟି ସୂର୍ଯ୍ୟର ସଙ୍ଗିଭ
ବିମାନ ହେଲେ ତାଙ୍କ ଦୃଶ୍ୟକୁ ଯେ ଲଭ ।
ବ୍ରହ୍ମା ଯୋଗବଳେ ବିମାନ ଗତ ଜାଣି
ନମସ୍କାର କଲେ ଯୋଡ଼ି ବେନି ପାଣି ।
ବ୍ରହ୍ମାଙ୍କର ନମସ୍କାର ଦେଖିଣ ଋଷି
ଦେବଗଣ ନମିଲେ ଆସନେ ନ ବସି ।
ଏଥିଅନ୍ତରେ ବ୍ରହ୍ମା କରିଣ ମିନତି
ଶ୍ରୀରମୁଖେ ତାଙ୍କ ପ୍ରକାଶ କଲେ ସ୍ତୁତି ।
ବିଶ୍ୱାବସୁ ବିଶ୍ୱେଶ୍ୱର ଯେ ବିଶ୍ୱମୂର୍ତ୍ତି
କରୁଛି ସ୍ତୁତି ମୁହିଁ ପିଟୁ ମୋ ଦୁର୍ଗତି ।
ବିଷ୍ୱକ୍‌ସେନ ବାସୁଦେବ ଯେ ବିଷ୍ଣୁ ତୁମ୍ଭେ
ତୁମ୍ଭପାଦେ ଶରଣ ପଶୁଅଛୁ ଆମ୍ଭେ ।
ମହାଦେବ ଯୋଗୀଈଶ୍ୱର ଜନ୍ମପ୍ରକ୍ତ
ହୋଇ କର ମୋର ଦେହକୁ ତୁମ୍ଭେ ମୁକ୍ତ ।
ପଦ୍ମନାଭ ଲୋକେଶ୍ୱର ହେ ବିଶାଳାକ୍ଷ
ଭୂତ-ଭବ୍ୟ-ଭବନ୍ନାଥ ହେ ପ୍ରାଣୀମୋକ୍ଷ ।
ଅସଂଖ୍ୟେୟ ଗୁଣ ଧାରି ସର୍ବପରାୟଣ
ଶାର୍ଙ୍ଗ ଧନୁର୍ଦ୍ଧର ବାମନ ନାରାୟଣ ।
ହେ ବିଶ୍ୱମୂରତି ହେ ଲୋକହିତୈଷିଣ
ଦେବଙ୍କ ପାଳନ ଅସୁରସଂହାରଣ ।
ଯୋଗୀଶ୍ୱର ବ୍ୟକ୍ତାବ୍ୟକ୍ତ ନିତ୍ୟ ବିଶ୍ୱବାସ
ଆତ୍ମଯୋନେ ମହାଭାଗ ହେ ହରିତ୍‌ବାସ ।
ବ୍ରାହ୍ମଣପ୍ରିୟ ସର୍ବପ୍ରଦ ମହାଭୂତ
ପ୍ରଜାପତିପତି ଅବ୍ୟୟ ଆତ୍ମଭୂତ ।
ନୈସର୍ଗ-ସୃଷ୍ଟି-ରତ କାମେଶ ଅସଂଖ୍ୟେୟ
ପରମେଶ୍ୱର ପଦ୍ମନାଭ ସତନିସ୍ୟ ।
ବିଜୟପ୍ରଦ ମନୋଜ୍ଞ ଉଦ୍ଭାବନ
ହେ ଭୂତପ୍ରଭବନ ଭୂତବିଭଞ୍ଜନ ।
ଆତ୍ମଜ୍ଞବିଜ୍ଞ ଗମ୍ଭୀର ଅମିତ-ଆହାର
ମହାବଳ ହେ କଳ୍ପସଂକ୍ଷେପ ତତ୍ପର ।
ହେ କୃତକାର୍ଯ୍ୟ କୃତପ୍ରଜ୍ଞ ଗୁହ୍ୟାତ୍ମନ
ଭୂତାତ୍ମତତ୍ତ୍ୱ ଲୋକ ଈଶ୍ୱର ଯୋଗାତ୍ମନ ।
କର୍ମାତ୍ମନ ମୁକ୍ତାତ୍ମନ ଅସୀମବିକ୍ରମ
ମହାନାଗ ମହାବାହୋ ବିଶ୍ୱମୟ ସୌମ୍ୟ ।
ଧର୍ମଜ୍ଞ ବରଦମୂର୍ତ୍ତି ହେ ଆଦିକାରଣ
ପିଙ୍ଗଳକେଶ ସଦ୍ଭାବ ଅନନ୍ତ ବ୍ରାହ୍ମଣ ।
ଧରଦେବୀ ତୁମ୍ଭର ଅଟନ୍ତି ପୟର
ଦଶଦିଶ ବାହୁ ପୁଷ୍କର ତୁମ୍ଭ ଶିର ।
ମୁହିଁ ତୁମ୍ଭର ମୂର୍ତ୍ତି ଦେବତାଏ କାୟ
ଦୁଇ ଚକ୍ଷୁ ଅଟନ୍ତି ଚନ୍ଦ୍ର ସୂର୍ଯ୍ୟ ଦ୍ୱୟ ।
ତପ ସତ୍ୟ ବଳ ତେଜ ଯେ ବୈଶ୍ୱାନର
ପବନ ଶ୍ୱାସ ଦେହ ସ୍ୱେଦ ଅଟେ ନୀର ।
ଅଶ୍ୱିନୀକୁମାରେ ଅଟନ୍ତି ତୁମ୍ଭ କାନ
ସରସ୍ୱତୀଦେବୀ ତୁମ୍ଭର ଜିହ୍ୱାସ୍ଥାନ ।
ବେଦମାନେ ତୁମ୍ଭର ଅଟନ୍ତି ସଂସ୍କାର
ଏଣୁ ତୁମ୍ଭେ ବୋଲାଅ ଜଗତ ଆଧାର ।
ଆପଣଙ୍କ ସୀମା ତେଜଃ ବଳ ଉତପତ୍ତି
ଆଜ ଯାଏ ଜାଣି ନାହିଁଟି ଆମ୍ଭ ମତି ।
ତୁମ୍ଭର ଭକତରେ ହୋଇ କରି ରତ
ହୋଇଛୁଁ ତୁମ୍ଭ ପୂଜାକଥାରେ ଆସକ୍ତ ।
ତୁମ୍ଭର ପ୍ରସାଦରୁ ଚଉଦ ଭୁବନ
ଆହେ ସୁରନାଶନ କରୁଛୁ ସର୍ଜ୍ଜନ ।
ଜଗତପତି ନେତା ମୁଖ ଅଟ ତୁମ୍ଭେ
ତୁମ୍ଭ ପ୍ରଶଂସା କ ପାରିବୁଁ କରି ଆମ୍ଭେ ।
ତୁମ୍ଭ ପ୍ରସାଦରୁ ନିର୍ଭୟ ହୋଇ ମହୀ
ଦେବଙ୍କ ତୁଲେ ଅଛୁ ଆହେ ଲକ୍ଷ୍ମୀସାଇଁ ।
ଦୁଷ୍ଟ ମାରି ସନ୍ଥ ପାଳିବାପାଇଁ ଏବେ
ଯଦୁବଂଶେ ସମ୍ଭବ ହୋଇବା ହୋଇବେ ।
ନୋହିଲେ ଏ ଜଗତ ସ୍ଥିର ହୋଇ ନାହିଁ
ହେ ଜଗତ ସ୍ୱାମି କହିବ କିସ ମୁହିଁ ।
ତୁମ୍ଭ ପ୍ରସଙ୍ଗରୁ ତୁମ୍ଭର ମହିମାଙ୍କୁ
କେତେ ଯୋଗ୍ୟ ହେଲି ମୋ ମନ ଜାଣିବାକୁ
ସଂକର୍ଷଣ ପ୍ରଦ୍ୟୁମ୍ନ ଆଦି ଅନିରୁଦ୍ଧ
ତୁମ୍ଭଠାରୁ ହୋଇଣ ହୋଇଲେ ପ୍ରସିଦ୍ଧ ।
ଅନିରୁଦ୍ଧ ବିଷ୍ଣୁଙ୍କ ପୁଅ ମୁଁ ଅଟଇ
ତୁମ୍ଭ ବୋଲେ ଏ ମହୀ ଅଛୁ ମୁଁ ଭିଆଇ ।

ଆପଣ ତ ସାକ୍ଷାତେ ଅଟ ବାସୁଦେବ
ତୁମ୍ଭଙ୍କୁ ନ ସେବିବ ଅବା କେଉଁ ଦେବ ।
ଏବେ ସ୍ୱର୍ଗଗତ ହୋଇଣ ଜନ୍ମ ହୋଇ
ମହୀଶ୍ୱର ଭର୍ଜି ବଅ ହେ କହୁଆଇଁ ।
ଆପଣଙ୍କର ନାମ ଦେବବ୍ରହ୍ମର୍ଷି
ଘୋଷି ହୋଇ ସାନ୍ତୁଅଛନ୍ତି ଅହର୍ନିଶି ।
ଆଦି ମଧ୍ୟ ଅନ୍ତ ଟି ନାହିଁ ତ ତୁମ୍ଭର
କାରଣ ତୁମ୍ଭେ ଅଟ ସର୍ବକାରଣର ।
ଏହା ଶୁଣି ଜଗତପାବନ ହସିଲେ
ଏରୂପେ ହେବ ବୋଲି ଅନ୍ତର୍ଦ୍ଧାନେ ଗଲେ ।
ବିଷ୍ଣୁଙ୍କର ଯିବା ଉତ୍ତାରୁ ଦେବଗଣ
ସ୍ପର୍ଶିଲେ ଧରି ବ୍ରହ୍ମାଦେବଙ୍କ ଚରଣ ।
ତାହାଙ୍କୁ ନମସ୍କାର କରି କଲେ ସ୍ତୁତି
ତା ପଦ ଆମ୍ଭଙ୍କୁ ବତାଇ ବେଦପତି ।
ବ୍ରହ୍ମା ବୋଇଲେ ଆହେ ଯାହାଙ୍କୁ ଈଶ୍ୱର
ବୋଲି ତାଙ୍କୁ କହୁଣ ଥିଲ ମୁଁ ଉତ୍ତର ।
ଏ ବାହାରେ ବୋଇଲି ମହୀରେ ପ୍ରକାଶି
ବଅ ହେ ପ୍ରଭୁ ମହୀଶ୍ୱରଙ୍କୁ ବିନାଶି ।
ସେ ମୋହର କଥାକୁ ସନମତ କଲେ
ନରଙ୍କୁ ଘେନ ଜାତ ହୋଇବ ବୋଇଲେ ।
ମର୍ତ୍ତ୍ୟ ମନୁଷ୍ୟେ ନରନାରାୟଣ ଋଷି
ମହିମା ନ ଜାଣନ୍ତି ବର୍ଷଶତେ ଘୋଷି ।
ତାହାଙ୍କର ପୁଅ ହୋଇ ଟି ମୁଁ ଜଗତ
ସର୍ଜନା କରୁଛି ଦେଖୁଛ ଦଇବତ ।
ନର ବୋଲି ତାଙ୍କୁ ଅବଜ୍ଞା ଯେ କରିବ
ଦୁଇଲୋକରୁ ସେ ବାହାର ହୋଇ ଯିବ ।
ପରମ ଗୁହ୍ୟପଦ ବ୍ରହ୍ମ ଯଶ ସୁଖ
ତେଜ ସତ୍ୟ ଅଟନ୍ତି ସେ ଦେବଙ୍କ ଶିଖ ।
ଅକ୍ଷର ଅବ୍ୟକ୍ତ ଶାଶ୍ୱତ ପୁରୁଷ
ତାହାଙ୍କୁ ଟି କରଇ ବଚନ ପ୍ରକାଶ ।
ଦେବର୍ଷି ଗନ୍ଧର୍ବ ଶୁଣିଲ ମୋଠାରୁ
ଭଜ ତାଙ୍କ ପାଦରେ ଲୋଟିବାକୁ ଗାରୁ ।
ବାସୁଦେବ ପଦ୍ମନାଭ ଯେ ଶ୍ରୀପତି
କିରୀଟ କଉସ୍ତୁଭଧର ପ୍ରଜାପତି ।
କୃଷ୍ଣେ ନ ଜାଣି ଯେ ଅପ୍ରାଧ ଅଚରିବ
ନରକ ବିନା ଆନ ସ୍ଥାନେ ସେ ନ ଯିବ ।

ମୋଠାରୁ ତତ୍ତ୍ୱ ଜାଣି ତତ୍ତ୍ୱରେ କୃଷ୍ଣଙ୍କୁ
ସେବା କର ଯାଇ ମୁଁ କହୁଛି ତୁମ୍ଭଙ୍କୁ ।
ଏରୂପେ ଦେବତା ଋଷିଙ୍କି ବ୍ରହ୍ମା କହି
ନିଜପୁରକୁ ଗଲେ ଅନ୍ତର୍ଦ୍ଧାନ ହୋଇ ।
ଦେବତାମାନେ ଶୁଣି ବ୍ରହ୍ମାଙ୍କ ବଚନ
ସନ୍ତୋଷ ହୋଇ ଗଲେ ଯେ ଯାହାର ସ୍ଥାନ ।
ଆହେ ଦୁର୍ଯ୍ୟୋଧନ ବ୍ୟାସ ଯେ ମାର୍କଣ୍ଡେୟ
ପର୍ଶୁରାମଠାରୁ ଶୁଣି ଏ କଥାଚୟ ।
ମନେ କଲି ଶ୍ରୀକୃଷ୍ଣ ଜଗତକରତା
ସେହି ଏକା ଆମ୍ଭମାନଙ୍କ ମାତା ପିତା ।
ଏହା ଜାଣୁ ଜାଣୁ କେଉଁ ଲୋକ ତାଙ୍କୁ
ଲଙ୍ଘିବ ଆହେ ବାବୁ କହ ତ ଆମ୍ଭଙ୍କୁ ।
ମୁହିଁ ତ ଏହା ମୁନିମାନଙ୍କ କୁଳରେ
କହୁଥିଲି ପଢ଼ିଲୁ କି କର୍ଣ୍ଣ ବୋଲରେ ।
ପାଣ୍ଡୁସୁତମାନଙ୍କୁ ମାରି ରାଜ୍ୟ ଆଣି
ଦେବୁ ବୋଲି ଭାବିଲୁ ବାବୁ ନରମଣି ।
କୃଷ୍ଣ ଅର୍ଜ୍ଜୁନରେ ଅପ୍ରାଧ କରିବାରେ
ଲେଖା ହେଲୁଣି ତୁମ୍ଭ ରାକ୍ଷସଙ୍କ ଗାରେ ।
ତୋ ବିନା ନର ନାରାୟଣଙ୍କୁ ଅପ୍ରାଧ
କରିବାକୁ ଅଛି କେ ଏରୂପେ ଦୁର୍ବୋଧ ।
କୃଷ୍ଣ ଟି ଶାସ୍ତା ତିନ ଲୋକରେ ଅଟନ୍ତି
ଚରାଚରଙ୍କ ଗୁରୁ ସେହି ଟି ହୋଇନ୍ତି ।
କର୍ତ୍ତା ପ୍ରଭୁ ସେହି ତ କାରଣ ଟି ସେହି
ତତ୍ତ୍ୱମୟ ହୋଇଣ ତାହାଙ୍କୁ ଟି କହି ।
କୃଷ୍ଣ ଥିବାଠାରେ ଧରମ ରହିଥାଏ
ଧର୍ମ ଥିଲେ ରାଜନ ଜୟ କି ନ ଥାଏ ।
ପାଣ୍ଡୁସୁତେ କଲେ ତ କୃଷ୍ଣଙ୍କୁ ଭକତି
କିରୂପେ ଆମ୍ଭେ ହେଇ ପାରିବା ବିପତ୍ତି ।
ବାସୁଦେବ ବୋଲି କହିଲି ମୁଁ ଯାହାଙ୍କୁ
ସବୁ ଲୋକ ସେ ବୋଲି ମାନନ୍ତି କୃଷ୍ଣଙ୍କୁ ।
ଗୁରୁବର୍ଣ୍ଣପାଳ ତାହାଙ୍କୁ ସେବା କରି
ସ୍ୱକର୍ମେ ହୁଅନ୍ତି ପାପର ଅପହାରୀ ।
ଦ୍ୱାପର ପ୍ରାନ୍ତ କଳିଯୁଗର ଆଦ୍ୟରେ
ବସୁଦେବ ଘରେ ଅଚ୍ୟୁତ ପ୍ରମୋଦରେ ।
ଜନମ ହୋଇଛନ୍ତି ଜଗତପାବନ
ଦେଖିବାକୁ ଅସୁରମାନଙ୍କ ମାରଣ ।

ବ୍ରହ୍ମାଙ୍କ ଦିନ ଶେଷେ ପ୍ରଳୟ କରନ୍ତି
ଦିବସ ହେଲେ ପୁଣି ପ୍ରାଣୀଙ୍କ ସର୍ଜନ୍ତି ।
ଦୁର୍ଯ୍ୟୋଧନ ବୋଇଲେ କୃଷ୍ଣ ସବୁଲୋକ—
ଯାକର ଆହେ ଭୀଷ୍ମ ଅଟନ୍ତି ନାୟକ ।
କେଉଁପରେ ତାହାର ପ୍ରତିଷ୍ଠା ବଢ଼ାଇ
କହ ଶୁଣିବାକୁ ଶ୍ରଦ୍ଧା ମୋ ଅଛି ହୋଇ ।
ଭୀଷ୍ମ ବୋଇଲେ ହେ କୃଷ୍ଣଙ୍କୁ ବଡ଼ ହୋଇ
ଦେବତା ଦୁର୍ଯ୍ୟୋଧନ ବ୍ରହ୍ମାଣ୍ଡରେ ନାହିଁ ।
ମାର୍କଣ୍ଡେୟ କୃଷ୍ଣବିଷୟେ ଚମତ୍କାର
କଥା କହିଛନ୍ତି ଶୁଣିଛି ନରବର ।
ଆଗ କୃଷ୍ଣ ସର୍ଜିଲେ ଜଳ ବାୟୁ ତେଜ
ଶୁଣ ତା ଆହେ ଦୁର୍ଯ୍ୟୋଧନ ମହାରାଜ ।
ପୃଥିବୀ ନାଶ ଦେଖି ଜଳରେ ଶୟନ
କଲେ କୃଷ୍ଣ ପୁରୁଷୋତ୍ତମ ଭଗବାନ ।
ମୁଖୁଁ ଅଗ୍ନି ପ୍ରାଣୁ ପବନ ସରସ୍ୱତୀ
ବେଦକୁ ମନରୁ ଟି କଲେ ଉତପତ୍ତି ।
ପରେ ମୃତ୍ୟୁ ଆଦି ଦେବତା ଋଷିଗଣ
ସରଜନା କରିଲେ କୃଷ୍ଣ ନାରାୟଣ ।
ଶ୍ରୀକୃଷ୍ଣ କାର୍ଯ୍ୟକର୍ତ୍ତା ପ୍ରଭୁ ଧର୍ମ କାମ
ଆଦିଦେବ ଆହେ ଜାଣ ନରୋତ୍ତମ ।
ଭୂତ ଭବତ୍ ଭବିଷ୍ୟ ସନ୍ଧ୍ୟା ଦିଗାକାଶ
କୃଷ୍ଣ ଟି କରୁଛନ୍ତି ସୃଜନ ପ୍ରକାଶ ।
ବ୍ରହ୍ମାଙ୍କୁ ନାଭିପଦ୍ମ ମଧ୍ୟ ଜାତ କରି
ସଙ୍କର୍ଷଣ ଶେଷଙ୍କୁ ସରଜିଲେ ହରି ।
ଶେଷଙ୍କର ଧରିବା ସକାଶୁଁ ଏ ଧରା
ରହିଛନ୍ତି ସୃଜନ ଅଟନ୍ତି ଟି ପରା ।
ଋଷିମାନେ ଧ୍ୟାନଯୋଗରେ ସେ କୃଷ୍ଣଙ୍କୁ
ଜାଣନ୍ତି ଦୁର୍ଯ୍ୟୋଧନ କହୁଛି ତୁମ୍ଭଙ୍କୁ ।
କୃଷ୍ଣଙ୍କ କର୍ଣ୍ଣମୂଳୁଁ ହୋଇଣ ଜନମ
ମଧୁ କୃଷ୍ଣ ହସ୍ତରେ ହୋଇଲା ନିଧନ ।
ମଧୁକୁ ମାରିବାରୁ ମଧୁସୂଦନ ଟି
ନାମ ତାହାଙ୍କର ବୋଲନ୍ତି ଜଗତ୍ତୁଟି ।
ବରାହ ନରସିଂହ ଆଦି ଅବତାର
ହେବା ଲୋକ ଜାଣ ଟି କୃଷ୍ଣ ଚକ୍ରଧର ।
ସବୁ ପ୍ରାଣୀମାନଙ୍କ ମାତା ପିତା ସେହି
ତାଙ୍କ ବିନା ଆଉ କରତା କେହି ନାହିଁ ।
ତାଙ୍କର ମୁଖ ବାହୁ ଉରୁ ପାଦୁଁ ଜାତ
ହୋଇଛି ବ୍ରାହ୍ମଣବର୍ଣ୍ଣ କହୁଛି ମୁଁ ସତ ।
ଅମାବାସ୍ୟା ପୂର୍ଣ୍ଣିମୀରେ ଯେ କୃଷ୍ଣଙ୍କୁ
ସେବା କରେ ପାଏ ସେ ପରମ ପଦକୁ ।
ଏହା ଜାଣି ହେ ଦୁର୍ଯ୍ୟୋଧନ ଗୁଡ଼ ଭ୍ରମ
ଯାହାର ହୋଇଛନ୍ତି କୃଷ୍ଣ ସେ ଉତ୍ତମ ।
ତୁମ୍ଭ ଆଗେ ମୁହିଁ କହିବା କଥାଯାକ
ଯେ ପଢ଼ଇ ତାକୁ ନ ଲାଗେ ଭୟ ଶୋକ ।
କୃଷ୍ଣଙ୍କୁ ସେବା କଲେ ଗୁଡ଼ି ଶୋକ ମୋହ
ବୈକୁଣ୍ଠ ଲଭଇ କୃତାର୍ଥ କରି ଦେହ ।
ଯୁଧିଷ୍ଠିର କୃଷ୍ଣଙ୍କ ମହିମାଟି ଜାଣି
ସେବା କରି ଅଛନ୍ତି ଘେନ ଭାଇ ଶ୍ରେଣୀ ।
ବୃହସ୍ପତି ଏବେ ଟି କହିବା ତୁମ୍ଭଙ୍କୁ
ଶୁଣ ମୋହଠାରୁ ଦେଇଣ ମାନସକୁ ।
ପୂର୍ବେ ମୋତେ ନାରଦ ଋଷି କହିଛନ୍ତି
ସାଧ୍ୟ ଦେବଙ୍କୁ ଟି କରନ୍ତି କୃଷ୍ଣ ସ୍ଥିତି ।
ଭୂତ ଭବତ୍ ଭବିଷ୍ୟ ମାର୍କଣ୍ଡେୟ ଋଷି
କୃଷ୍ଣ ବୋଲି କରି ଅଛନ୍ତି ମୋତେ ଭାଷି ।
ତପଙ୍କର ତପ ଯାଗଙ୍କର ଯେ ଯାଗ
କୃଷ୍ଣ ବୋଲି କହିଲେ ଭୃଗୁ ମହାଭାଗ ।
ବାସୁଦେବ ପୁରାଣପୁରୁଷ ରୁକ୍ମିଣୀ—
ପତି ବୋଲି କହିଅଛନ୍ତି ବ୍ୟାସ ବାଣୀ ।
ଅଙ୍ଗିରା କହିଛନ୍ତି ଦକ୍ଷପ୍ରଜାପତି
ଯଦୁବଂଶ ବର୍ଦ୍ଧନ କୃଷ୍ଣ ଟି ଅଟନ୍ତି ।
ଅବ୍ୟକ୍ତ ଶରୀରରେ ବ୍ୟକତ ମନରେ
ରହିଅଛି ତାଙ୍କର ଦେବଳ କହିଲେ ।
ଆକାଶକୁ ବୋଲି ବ୍ୟାପିଛି କୃଷ୍ଣ ଶିର
ବାହୁ ଦୁହେଁ ତାଙ୍କ ଅଟନ୍ତି ଧରାଧର ।
ଜଠର ସବୁ ପ୍ରାଣୀମାନଙ୍କର ବାସ
ଏରୂପେ ଯୋଗୀଏ କରନ୍ତି ଯୋଗେ ଦୃଶ ।
ଆତ୍ମଜ୍ଞାନୀ ରାଜଋଷି ଯେ ଧାର୍ମିକର
କୃଷ୍ଣ ଗତି ବୋଲିଣ ସନତକୁମାର ।
ଆଦି ମହାଋଷିଏ ସ୍ତୁତି କରୁଛନ୍ତି
ଶଙ୍କା ନ କର ହେ ବିଚକ୍ଷଣାର୍ଯ୍ୟନାଥ ।
କୃଷ୍ଣଙ୍କର ବିସ୍ତାର ସଂକ୍ଷେପେ ତୁମ୍ଭଙ୍କୁ
କହିଲି ତ ମୁହିଁ ଭଜ ହେ ତାହାଙ୍କୁ ।

ତୁମ୍ଭ ପୁତ୍ର ଭୀଷ୍ମ କହିବା କଥା ଶୁଣି
ମନରେ କଲେ କୃଷ୍ଣ ବିଷ୍ଣୁ ଚକ୍ରପାଣି ।
ପାଣ୍ଡୁସୁତମାନେ ତ ଅଟନ୍ତି ଅଜେୟ
ଯୁଦ୍ଧ କଲେ କରିବେ ମୋର ନଶ୍ଚେ କ୍ଷୟ ।
ଶୁଣି ଭୀଷ୍ମ କହିଲେ କୃଷ୍ଣ ଅର୍ଜୁନ
ନାରାୟଣ ବୋଲି ଜାଣ ତ ଦୁର୍ଯ୍ୟୋଧନ ।
ମୋହଠାରୁ ତୁମ୍ଭେ ଶୁଣିଲ ମନଦେଇ
ଏବେ ଟି ବିଅ ଯୁଦ୍ଧଶ୍ରଦ୍ଧାକୁ ଛଡ଼ାଇ ।
କୃଷ୍ଣ ତ ରହିଛନ୍ତି ପାଣ୍ଡବଙ୍କ ବଶେ
ଯୁଝିଲେ ଆମ୍ଭେମାନେ ଯିବା ଯମବାସେ ।
ମୋ ବୋଲରେ ପାଣ୍ଡୁସୁତଙ୍କ କୁଳେ ପ୍ରୀତି
କରି ମହାସୁଖେ ଭୁଞ୍ଜ ଏ ରାଜ୍ୟ ଭୂତି ।
ଏରୂପେ ତୁମ୍ଭ ପିତା ନାତିଙ୍କି ଛଆରି
ଶୋଇଲେ ଶେଯେ ମୁଣ୍ଡେ କର ଦେଇ କରି
ଦୁର୍ଯ୍ୟୋଧନ ଭୀଷ୍ମଙ୍କ ପାଦ ଦୁଇ ବନ୍ଦି
ବସାରେ ଆସି ଶୋଇଲେ ସେ କାନ୍ଦି କାନ୍ଦି ।
ସଞ୍ଜୟ ବୋଇଲେ ହେ ଶୁଣ ଧୃତରାଷ୍ଟ୍ର
ରାତିଶେଷେ ଦୁଇ ସେନାଏ ହୋଇ ହୃଷ୍ଟ ।
ଶଙ୍ଖ ଭେରୀ ମୃଦଙ୍ଗ ପଣବ ବାଇଲେ
କ୍ରୋଧ ହୋଇ ଯୁଦ୍ଧଭୂମିକି ଧାଇଁଗଲେ ।
ତୁମ୍ଭ ଦୁର୍ମନ୍ତ୍ରଣାରୁ ପାଣ୍ଡୁ କୁରୁ ଥାଟ
ବ୍ୟୂହ କରିଣ ଆରମ୍ଭିଲେ ଯୁଦ୍ଧ ଆଟ ।
ତୁମ୍ଭ ସୈନ୍ୟେ ଭୀଷ୍ମ ମକରବ୍ୟୂହ କରି
ରହିଲେ ଜାଗ୍ରତେ କରେ ଧନୁ ଧରି ।
ରଥ ଗଜ ଅଶ୍ୱ ପାଇକ ଅଗଣନା
ରଖିଲେ ପୃଷ୍ଠଦେଶେ ଭୀଷ୍ମ ମହାମନା ।
ପାଣ୍ଡୁସୁତେ ମକରବ୍ୟୂହ ନେତ୍ରେ ଦେଖି
ସେ ମଧ୍ୟ ଶ୍ୟେନବ୍ୟୂହ କଲେ ହୋଇ ସୁଖୀ ।
ମୁଖେ ଭୀମ ନେତ୍ରେ ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନ
ରହିଲେ କରଦେଶେ ଧରି ଶରାସନ ।
ବ୍ୟୂହର ମସ୍ତକକୁ ସାତ୍ୟକି ଜଗିଲେ
ଗ୍ରୀବାଦେଶେ ଅର୍ଜୁନ ରଥ ରଖାଇଲେ ।
ଅକ୍ଷୌହିଣୀଏ ସେନା ଘେନିଣ ଦ୍ରୁପଦ
ବାମପାଖେ ରହିଲେ ହୋଇଣ ପ୍ରମୋଦ ।
ଦକ୍ଷିଣପାଖେ କଇକେୟ ଅକ୍ଷୌହିଣୀ
ସେନା ଧରି ରହିଲେ କରେ ଧନୁ ଟାଣି ।

ଦ୍ରୌପଦେୟମାନେ ଅଭିମନ୍ୟୁଙ୍କ ତୁଲେ
ବ୍ୟୂହର ପୃଷ୍ଠଦେଶେ ରକ୍ଷାକାରୀ ହେଲେ ।
ନକୁଳ ସହଦେବ ଦୁହିଁଙ୍କି ସଙ୍ଗେ ଘେନି
ହେଲେ ଯୁଧିଷ୍ଠିର ବ୍ୟୂହର ପୁଚ୍ଛସ୍ଥାନୀ ।
କୁରୁଙ୍କର ମକରବ୍ୟୂହ ମୁଖେ ଯାଇ
କାଣ୍ଡରେ ହେଲେ ଭୀମ ଭୀଷ୍ମଦେବ ଘାଇ ।
ଭୀଷ୍ମ ତାହା ଦେଖିଣ ଦିବ୍ୟ ଅସ୍ତ୍ର ବଳେ
ପାଣ୍ଡବସେନା ମୋହ କରାଇଲେ ହେଳେ ।
ସୈନ୍ୟ ମୋହ ଦେଖି ଗାଣ୍ଡୀବ ଧନୁର୍ଦ୍ଧାରୀ
ବିନ୍ଧିଲେ ଦଶଶତ ଶର ବାଛି କରି ।
ଅର୍ଜୁନ ପରାକ୍ରମ ଦେଖି ଦୁର୍ଯ୍ୟୋଧନ
ଦ୍ରୋଣଙ୍କୁ ଧାଇଁଯାଇ କହିଲେ ବଚନ ।
ତୁମ୍ଭ ତୁଲେ ଭୀଷ୍ମଙ୍କୁ ପାଇକରି ମୁହିଁ
ଇଚ୍ଛା କରିଅଛି ହୋଇବ ମହୀସାଇଁ ।
ସମର କଲେ ତୁମ୍ଭେ ଜିଣିପାର ସୁର
ପାଣ୍ଡୁସୁତମାନେ ଅଟନ୍ତି କେତେକର ।
ତୁମ୍ଭର ପୁଅଠାରୁ ପାଇ ଟେକାଟେକ
ବାହାରିଲେ ଦ୍ରୋଣ ଯୁଦ୍ଧକୁ ଧନୁଟେକ ।
ପାଣ୍ଡବସଇନଙ୍କ ଭିତରେ ପଶିଲେ
ସାତ୍ୟକିଙ୍କ ତୁଲରେ ଯୁଦ୍ଧ ପ୍ରକାଶିଲେ ।
ସାତ୍ୟକିଙ୍କ ଦେହକୁ ଦ୍ରୋଣ ଦଶ କାଣ୍ଡ
ବିନ୍ଧିଣ କମ୍ପାଇଣ ଦେଲେ ତାଙ୍କ ପିଣ୍ଡ ।
ଭୀମ ତା ନ ସହି ଦ୍ରୋଣଙ୍କୁ କ୍ରୋଧ ହୋଇ
ଘାଇଲେ ଶର ଦ୍ରୋଣ ଦେହଘାଲେ ନେଇ ।
ଦ୍ରୋଣ ଭୀଷ୍ମ ଶଲ୍ୟ ହୋଇଣ ଅତିକ୍ରୋଧ
ଯୁଦ୍ଧ କଲେ ବସ୍ତିର ଭୀମସେନ ବଧ ।
ଦ୍ରୌପଦୀଙ୍କର ପୋଏ ଅଭିମନ୍ୟୁ ତୁଲେ
କାଣ୍ଡେ ଭୀଷ୍ମ ଦ୍ରୋଣ ଶଲ୍ୟଙ୍କୁ ଘାଇଦେଲେ
ଦ୍ରୋଣ ଭୀଷ୍ମଠାରୁ ଶିଖଣ୍ଡୀ ଯେ ଦରଣ୍ଡି
ହୋଇ ଯୁଦ୍ଧେ ଧାଇଁଲେ ଧରି ଧନୁ ଖଣ୍ଡି ।
କାଣ୍ଡଟିମାନଙ୍କରେ ସୂର୍ଯ୍ୟକିରଣଟି
ଆଚ୍ଛନ୍ନ କରିଦେଲେ ଦ୍ରୁପଦବେଟାଟି ।
ଭୀଷ୍ମ ଶିଖଣ୍ଡୀକି ତ ନ ବିନ୍ଧିଣ କାଣ୍ଡ
ପୂର୍ବକଥା ସୁମରି ପୋତିଦେଲେ ମୁଣ୍ଡ ।
ଦ୍ରୋଣ ତୁମ୍ଭ ପୁଅ ପ୍ରେରିତ ହୋଇକରି
ହୋଇଲେ ଯୁଦ୍ଧରେ ଭୀଷ୍ମଙ୍କ ରକ୍ଷାକାରୀ ।

ଶିଖଣ୍ଡୀ ଦ୍ରୋଣଙ୍କର ଦେଖି କାଣ୍ଡ ଅଣ୍ଟ
ପକାଇଲେ ଯୁଦ୍ଧରେ ନ ପାଇଣ ବାଟ ।
କୁରୁ ନୃପ ମହତ ସୈନ୍ୟ ସଙ୍ଗେ ଧରି
ଭୀଷ୍ମଙ୍କୁ ଜଗିବେଟି କାଣ୍ଡି ଇଚ୍ଛା କରି ।
ପାଣ୍ଡବେ ଅର୍ଜୁନଙ୍କୁ ଚଳାଇ ଆଗରେ
ଭୀଷ୍ମଙ୍କୁ କାଣ୍ଡମାନ ବିନ୍ଧିଲେ ବେଗରେ ।
ସେହି ଯୁଦ୍ଧଟା ଦେବାସୁରଙ୍କ ଯୁଦ୍ଧକୁ
ଉପମେୟ ହେଲା କ କହିବା କୁରୁଙ୍କୁ ।
ଭୀଷ୍ମ କୁରୁ ସୁତେ ରଖିବାପାଇଁ ବାଣ
ବର୍ଷଣ ଘୋଡ଼ାଇଲେ ଆକାଶ ଅଙ୍ଗଣ ।
ଏରୂପେ ପୂର୍ବାହ୍ଣ ସମୟେ କୁରୁ ପାଣ୍ଡୁ
ଥାଟ ପିଟାପିଟି ନୋଇଲେ ଦୋଳ ଗାଣ୍ଡୁ ।
ଯିବାବାଟେ କାଣ୍ଡଟିମାନ ଟୋଓ ଉଡ଼
ଜଣା କଲା ପ୍ରଳୟକାଳ ଝଡ଼ଝଡ଼ ।
ହାତୀ ଘୋଡ଼ା ଓଟ ଗର୍ଜନ ଜାତ ହେଲା
ଦୁଇସେନା ଲୋକଙ୍କୁ କାଳ କବଳିଲା ।
ଅନ୍ୟୋନ୍ୟରେ ସମସ୍ତେ ଜୟ ଇଚ୍ଛା କରି
ମରାମରି ହୋଇଲେ ଶସ୍ତ୍ରମାନ ଧରି ।
ପକ୍ୱତାଳ ପରି ପଡ଼ନ୍ତେ ମୁଣ୍ଡମାନ
ନ ଗଲା ଜଣା ଯୁଦ୍ଧମଣ୍ଡଳରେ ତଳ ।
କବଚ ଶିରସ୍ତ୍ରାଣ ବାହୁ ଉରୁ ଛିଡ଼ି
ଯୁଦ୍ଧଭୂମିଯାକ ହୋଇଲା ଗଡ଼ାଗଡ଼ି ।
ଧୂଳି-ମେଘରେ ଶସ୍ତ୍ର-ବିଜୁଳି ପ୍ରକାଶି
ବୁଝାଇଲା ଉଦ୍ଭ୍ରାନ୍ତ ଲୋକନେତ୍ରବର୍ଷି ।
କୁରୁ ପାଣ୍ଡବଙ୍କର ମହାଘୋର ଯୁଦ୍ଧ
ପ୍ରବର୍ତ୍ତିବା ଦେଖି ସେନା ଏ ହେଲେ ବଧ ।
ଅପ୍ସରୀମାନେ ଶୂରମାନଙ୍କୁ ବରିଷି
ସ୍ୱର୍ଗ ଯିବା କଥାରେ ହୋଇଲେ ଲାଳସୀ ।
ବୀରମାନଙ୍କର ଗ୍ରଟେଣି ଶବଦେ
ନ ଶୁଭିଲା କାହା କାନକୁ କଥାପଦେ ।
କବନ୍ଧମାନେ ବୃଣଆଡ଼େ ନୃତ୍ୟ କରି
ସବୁରି ନେତ୍ରପଥଯାକେ ଝଲେ ପୂରି ।
ଶର ଶକତି ଗଦା ତୋମର ଔଷଧ
ଅଙ୍ଗକୁ କଲେ ବାରେ କରି ସ୍ୱର୍ଗସଧ ।
ହାତୀମାନଙ୍କର ଉପରେ କାଣ୍ଡରଡ଼ି
ହୁଅନ୍ତେ ପକାଇଲେ ଯୁଦ୍ଧଭୂମି ଗୁଡ଼ି ।

ଘୋଡ଼ାମାନେ ସିପାହିଙ୍କର ବନା ବଣ—
ଦଣ୍ଡଯାକେ କୁଳଣ ହୋଇଲେ ପ୍ରକାଶ ।
ଶରଘାତେ ପୀଡ଼ା ପାଇଣ କେତେ ଘୋଡ଼ା
ମସ୍ତକ ଗତ ହେଲେ ଛୁଡ଼ି ଖୋଡ଼ ଯୋଡ଼ା ।
ଭୀଷ୍ମ ଭୀମ ଦୁହିଁଙ୍କ ସକାଶରୁ ମଡ଼ା
ପଡ଼ିବାରେ ଟି ଲୋକେ ନ କାଢ଼ିଲେ ଉଡ଼ା ।
ରଥ ହାତୀ ଘୋଟକ ନରରେ ସଙ୍କୁଳ
ହୋଇଗଲା ବଜନ ସେ ଯୁଦ୍ଧମଣ୍ଡଳ ।
ପରସ୍ପରେ ସ୍ପର୍ଦ୍ଧିୟେ ଶସ୍ତ୍ରମାନଙ୍କରେ
ମରାମରି ହୁଅନ୍ତେ ବସିଲେ ସ୍ୱର୍ଗରେ ।
କେତେମାନେ ଯୁଦ୍ଧରେ ହୋଇ ଅତି ବଳୀ
ଗଡ଼ିଲେ ତଳେ ମଲ୍ଲଯୁଦ୍ଧକୁ ଆରମ୍ଭି ।
ତାହା ଦେଖିଣ କୁରୁ ସୁତ ଦୁର୍ଯ୍ୟୋଧନ
କଳିଙ୍ଗ ସେନା ଦେଇ ଭୀମେ ଅଯୋଧନ ।
ସେହିକାଳରେ କଲେ ଅତି କ୍ରୋଧ ହୋଇ
ବଚନରେ ବୋଇଲେ ରହ ଭୀମ ଭାଇ ।
ପାଣ୍ଡବେ ସେହିରୂପେ ଦେଖିଣ ଭୀମକୁ
ଧାଇଁଲେ ଭୀଷ୍ମଙ୍କର ଜୀବନ ନେବାକୁ ।
ଭାଇମାନଙ୍କର ଟି ଦେଖିଣ ଯିବାର
ଧାଇଁଲେ ତା ପଛେ ପାଣ୍ଡୀବଧନୁର୍ଦ୍ଧର ।
ପାଞ୍ଚଜନ୍ୟ ଶଙ୍ଖ ଶ୍ରୀହରିର ନିର୍ଘୋଷ,
ଶୁଣି ଭୟ ହେଲା ହୃଦୟେ ପରକାଶ ।
ଅର୍ଜୁନଙ୍କ ଧ୍ୱଜ ପ୍ରଳୟ ଅଗ୍ନି ଶିଖା
ତେଜକୁ ମେଷ୍ଟ କାଳେ ହୋଇଗଲା ଯୋଖା ।
ଅର୍ଜୁନ ଧ୍ୱଜକୁ ଶତ୍ରୁ ଆଖିଟି
ଦେଖିଲେ ପଡ଼ପାଡ଼େ ଯାଏ ପିଲ୍ଲ ଫାଟି ।
ପାର୍ଥ-ଧନେ ବିଜୁଳି ସମୟେ ପ୍ରକାଶ
ହୋଇଲା ଜାଣି ହେ ଗାଣ୍ଡୀବ ନବଙ୍କଣ ।
ବାହାର ତହିଁ ମଧ୍ୟୁ ଶରଧାରଶ୍ରେଣୀ
ଭୀଷ୍ମ-ଗିରି ଘୋଡ଼ାଇ ଦେଲା ସେହିକ୍ଷଣି ।
ଏ ବାହାରେ ଶତ୍ରୁଭେଦକ ସବୁ ଆଖି
ପାଇଣ ଗୁର ହର ନ ପାରିଲା ଦେଖି ।
କୁରୁ ଯୋଦ୍ଧାଗଣ ହାଲୁ ଦେହ ଜ୍ଞାନ
ଧାଇଁଲେ ଭୀଷ୍ମଠାକୁ ଦେଖ ଦୁର୍ଯ୍ୟୋଧନ ।
ଭୀଷ୍ମ କୁରୁର ଯୋଦ୍ଧାମାନଙ୍କ ଶରଣ
ସେକାଳେରେ ହୋଇ ବର୍ଷିଲେ ଟାଣି ବାଣ ।

ଅରଜୁନ ତ ଭଇରବ ଅସ୍ତ୍ର ଜପିଲେ
ଧୂଆଇବା ଘୋଡ଼ାରୁ ସିପାଇ ପଡ଼ିଲେ ।
ରଥୀମାନେ ରଥକୁ ଦଣ୍ଡିକୁ ଆଜ୍ଞାଳ
ମହାଭୟ ଧରିଣ ଦେଲେ ଅଗିବୁଜ ।
ଗାଣ୍ଡୀବ ଧ୍ୱନ ଶୁଣି ଭୀଷ୍ମ ସୈନ୍ୟଗଣ
ପଳାଇଲେ ଛାଡ଼ି ଅର୍ଜୁନଠାରୁ ରଣ ।
କଳିଙ୍ଗଦେଶରାଜା ସେନ ମହାବଳ
ବାହାରିଲେ ଅର୍ଜୁନଠକୁ କରି ଗୋଳ ।
ଜୟଦ୍ରଥ ଦୁଃଶାସନକୁ ଆଗ କରି
ଶରମାନ ବର୍ଷିଲେ କରେ ଧନୁ ଧରି ।
କୁମ୍ଭର ପୁଅ ହୋଲେ ସହସ୍ରତଉଦ
ସିପାଇଏ ବାହାରିଲେ ବର୍ଷଣ ମୋଦ ।
ଅର୍ଜୁନ ସମୁଦ୍ରକୁ ଶକୁନିକ ଭେଳା
କରି ସରଜିଲେ ସଜନ ଶରମାଳା ।
ରଥ ଗଜ ଅଶ୍ୱ ପାଇକରେ ଆବୃତ
ହେବାରୁ ମହୀ ଧୂଳି ଉଡ଼ିଲା ବହୁତ ।
ଭୀଷ୍ମ ଅରଜୁନ ସମର ଯୋଡ଼ାଯୋଡ଼ି
ହୁଅନ୍ତେ ଧନୁ ଧରି ବର୍ଷିଲେ ଶର କୋଟି ।
ଅବନ୍ତ୍ୟ କାଶୀରାଜ ଆରମ୍ଭି ଯୁଦ୍ଧକୁ
ଅନ୍ୟୋନ୍ୟରେ ଇଚ୍ଛା କରିଲେ ସେ ଜୟକୁ ।
ଭୀମ ଜୟଦ୍ରଥଙ୍କ ରଥଘାତେ ମହୀ
କମ୍ପାଇ ଯୁଦ୍ଧ କଲେ ତକାତକ ହୋଇ ।
ଯୁଧିଷ୍ଠିର ଶଲ୍ୟ ମାମୁଁଙ୍କୁ ନେହେ ଦେଖି
ବର୍ଷିଲେ କାଣ୍ଡ ଯୋଖି ଧନୁମଧ୍ୟେ ରଖି ।
ବିକର୍ଣ୍ଣ ସହଦେବଙ୍କ କଲେ ଆୟୋଧନ
ଯୋଡ଼ାଯୋଡ଼ି ହେଲେ ଶିଖଣ୍ଡୀ ଚିତ୍ରସେନ
ମତ୍ସ୍ୟସୈନ୍ୟ ଘେନ ବିରାଟ ନରସ୍ୱୟେ
କମ୍ପାଇଲେ ଦୁର୍ଯ୍ୟୋଧନକୁ କାଣ୍ଡ ଘାଏ ।
ଦ୍ରୁପଦ ଚେକିତାନ ସାତ୍ୟକ ତିନ ରଥୀ
ଦ୍ରୋଣ ଅଶ୍ୱତ୍ଥାମାଙ୍କ ଯୁଝିଲେ ମୋକ୍ଷବ୍ୟର୍ଥୀ ।
କୃପାଚାର୍ଯ୍ୟ ଯେ କୃତବର୍ମା ଦୁହେଁ ମିଶି
ଧୃଷ୍ଟକେତୁ ପରେ ବର୍ଷିଲେ ଶରରାଶି ।
ସେହିକାଳରେ ମେଘ ନ ଥାଇ ବିଜୁଳି
ଆକାଶମଣ୍ଡଳେ ଗଲା ହେ ଲଘୁ ଖେଳି ।
ବଢ଼ ହୋଇ ପବନ ଘୋଟାଏ ବହିଲା
ସବୁର ନେତ୍ର-କୁମୁଦକୁ ମୁଦାଇଲା ।
କାଣ୍ଡମାନଙ୍କର ବାଜନା ଘାତେ ଛୁଡ଼ି
କବଚମାନେ ତଳେ ପଡ଼ିଲେ ଅଜାଡ଼ି ।
ମହୀ-ଆକାଶରେ ନକ୍ଷତ୍ରଙ୍କ ପରାୟେ
ଶୋଭା ପାଇଲା ସେହି କବଚ ହେ ସାୟେ ।
ଅସ୍ତ୍ରମାନଙ୍କର ଯେ ଆଲୋକ ପ୍ରକାଶ
ହେଲା ଦେଖି ନ ପାରିଲା କି ତାହା ଦୃଶ୍ୟ ।
ଫରମାନେ ସବୁଦଗରେ ଛାଡ଼ି ପଡ଼ି
ପବନଘାତେ ଗଲେ ଫରଫରେ ଉଡ଼ି ।
ଭେଣ୍ଡାମାନେ ଟେକ ହାଣନ୍ତେ କରେ ଖଣ୍ଡା
ପଡ଼ିଲେ ମୁଣ୍ଡ ଛାଡ଼ି ଭୂମେ ଗଣ୍ଡା ଗଣ୍ଡା ।
ଘୋଡ଼ା ଧ୍ୱଜ ଅଖ ଛାଡ଼ନ୍ତେ ରଥଶ୍ରେଣୀ
ଆଶ୍ରେ କଲେ ସଜନ ସେ ଯୁଦ୍ଧଧରଣୀ ।
କାଣ୍ଡମାନେ ବାଜ ଘୋଡ଼ାଏ ହୋଇ ଗେଣ୍ଡି
ପ୍ରିୟ ପ୍ରାଣୁଟିକ ଛାଡ଼ିଲେ ଦୁଃଖେ ମଜ୍ଜି ।
କେତେ ଘୋଡ଼ା ରଥକୁ ଘେନ ପଳାଇଲେ
ସାରଥି ବଳାଇଲେ ଆଗେ ନ ବଳିଲେ ।
କାହାର ହାତୀ ରଣେ ହୋଇ ଉନମତ୍ତ
ବହୁତ ହାତୀ ବେହେ କଲା ଦନ୍ତଘାତ ।
କେତେ ହାତୀ କାଣ୍ଡଘାତରେ କରି ରଡ଼ି
ମହୀତଳେ ପଡ଼ିଲେ ଦେହୁଁ ପ୍ରାଣ ଛାଡ଼ି ।
ହାତୀମାନଙ୍କର ଘାତରେ ରଥଙ୍କର
କୁବର ଭଜଗଲା ବହୁ ନରବର ।
ଏହିରୂପେ ଦୁଇ ସେନାଙ୍କର ନିଧନ
ହୁଅନ୍ତେ ଯୁଦ୍ଧଭୂମି ହୋଇଲା ଆଚ୍ଛନ୍ନ ।
ଶିଖଣ୍ଡୀ ବିରାଟଙ୍କୁ ଘେନ ଭୀଷ୍ମ କୁଳେ
ଯୁଦ୍ଧ କଲେ ବଳ ପ୍ରକାଶ କରି ଭଲେ ।
ଅରଜୁନ ଦ୍ରୋଣ କୃପ ଯେ ବିକର୍ଣ୍ଣଙ୍କୁ
ବିନ୍ଧିଲେ ଦେଖାଇଣ ଗାଣ୍ଡୀବ ପ୍ରଭାକୁ ।
ଦୁର୍ଯ୍ୟୋଧନ ଦୁଃସହ ମାତ୍ୟ ଦକ୍ଷିଣାତ୍ୟ
ଜୟଦ୍ରଥ କୁଳରେ ଘଟୋତ୍କଚତାତ ।
ଏକା ହୋଇ ବହୁତ ମାରଗଣ ମାରି
ଟଳାଇଲେ ତାଙ୍କର ବଳକୁ ନିବାରି ।
ସହଦେବ କୁଳରେ ଉଲୂକ ଶକୁନି
ଯୁଦ୍ଧ କଲେ ମାର୍ତ୍ତଣ୍ଡମୁନକୁ ନ ମାନି ।
ଯୁଧିଷ୍ଠିର ଗଜ ସଇନ ମଧ୍ୟେ ପଶି
ଶର କାଣ୍ଡେ ତାହାଙ୍କୁ ଛକାଇଲେ ନାଶି ।

ମାଦ୍ରୀପୁତ୍ର ନକୁଳ ବିଗର୍ତ୍ତ ରଥୀକୁଳ
ବଳ ପକାଇଲେ ପେଷିଣ ଶରମାଳ ।
ସାତ୍ୟକ ଚେକତାନ ଅଭିମନ୍ୟୁ ମିଶି
ଶାଲ୍ୱ କେକୟଙ୍କ ସୈନ୍ୟଙ୍କୁ ଦେଲେ ଧ୍ୱଂସି
ଧୃଷ୍ଟକେତୁ ଯେ ଘଟୋତ୍କଚ ବୀର ଦୁଇ
କୁମରର ରଥସୈନ୍ୟେ ପଶିଲେ ଝସାଇ ।
ଦ୍ରୋଣ ଧୃଷ୍ଟଦ୍ୟୁମନ ଦୁଇ ମହାଭାଗ
ବାଗକୁ ଧରି ଆଗ ବିନ୍ଧିଲେ ଆଶୁଗ ।
ମଧ୍ୟାହ୍ନସମୟେ ଏରୂପେ ଯୁଦ୍ଧ ଆଣ୍ଟ
କରି ମରମରି ହୋଇଲେ ଦୁଇ ଥାଟ ।
ପରସ୍ପର ସିଂହ ପରାୟେ ଗରଜିଲେ
ବୁଝିବା ଆଜ ବୋଲି ବାକ୍ୟେ ତରଜିଲେ ।
କ୍ରୁଦ୍ଧ ପାଣ୍ଡବଙ୍କର ପାଇ ବାଣଗଣ
ଆକାଶ ବୁଲେ ବଣ ହୋଇଲା ଆଚ୍ଛନ୍ନ ।
ଧନୁ ତୂଣ ଶକତ ଖଡ଼ଗ ତୋମର
କବଚ ଶିରସ୍ତ୍ରାଣ ବୁଲେ ଅଳଙ୍କାର ।
ଯୋଦ୍ଧାମାନଙ୍କର ଟି ଖସି ପଡ଼ିବାରେ
ସୂର୍ଯ୍ୟ ଚନ୍ଦ୍ର ପ୍ରଭାକୁ ନାଶିଲେ ଶୋଭାରେ
ଶିଳାବଦ୍ଧା ତଇଳପିଆ ବାଣ ବାଛି
ଭୀମ ପରେ ବିନ୍ଧିଲେ ଶାନ୍ତନୁଙ୍କ ବହ୍ନି ।
ଭୀମ ସେ କାଣ୍ଡମାନ ନ କରି ଗଣନା
ଫିଙ୍ଗିଲେ ଶକ୍ତିଟାଏ ସେ ତ ମହାମନା ।
ସେ ସୁନାବଣ୍ଡ ଶକ୍ତି ଗଗନେ ଝଟକ
ଆସିବା ବେଳେ ଭୀଷ୍ମ କଲେ ଟିକଟିକ ।
ଦୁର୍ଯ୍ୟୋଧନଠାରେ ଦେଖାଇ ଭଲପଣ
ଭଲକାଣ୍ଡେ କାଟିଲେ ଭୀମ ଶତ୍ରୁଗଣ ।
ଭୀଷ୍ମ ମହାରଥୀ ହୃଦରେ ଜଣ୍ଟ ବହି
ଜାଣ ମୋ କହିବାର ହସ୍ତିନାନୃସାଇଁ ।
ସାତ୍ୟକ କ୍ରୋଧ ହୋଇ ଭୀଷ୍ମଙ୍କ ଗଣ୍ଡିକ
ଭଜାଇଲେ ବିନ୍ଧି ଚଅାରମ୍ଭନୁଟିକ ।
ବେହେ କାଣ୍ଡ ଭଜ ଯିବାର ଦେଖି ଭୀଷ୍ମ
ସାତ୍ୟକଙ୍କ ଉପରେ ହୋଇ ଅତିରୁଷ୍ଟ ।
କାଣ୍ଡ ଟିକେ ସାତ୍ୟକ ସାରଥି ପ୍ରାଣୁଟି
ବେଲେ ପ୍ରେତପତିଙ୍କ ଲୋକକୁ ସେ ଯୋଟି ।
ସାରଥି ମଲାପଛି ସାତ୍ୟକଙ୍କ ଘୋଡ଼ା
ପଳାଇଲେ ଭୀଷ୍ମ ଆଗରେ ନୋହି ଛିଡ଼ା ।
ଶିନକୁଳପ୍ରବୀର ସାତ୍ୟକ ମହାଯଶା
ପାଆନ୍ତେ ଭୀଷ୍ମଙ୍କ ସକାଶୁଁ ଲୋକହସା ।
ପାଣ୍ଡବସେନାଯାକ ହାହାକାର ଧ୍ୱନି
କରିବାରେ ପୂରିଲା ସେ ଯୁଦ୍ଧ ଅବନୀ ।
ଏହି ଛିଦ୍ରେ ଭୀଷ୍ମ ପାଣ୍ଡବସେନା ଲୋକ—
ଯାକନ୍ତୁ କେତେ କଲେ ଯମଙ୍କ ସେବକ ।
ଭୀଷ୍ମ ପରାକ୍ରମକୁ ପାଞ୍ଚାଳ ସୋମକ
ଯୁଦ୍ଧ କରିଲେ ବିନ୍ଧି ପ୍ରଖର ଛତିଷ ।
ଧୃଷ୍ଟଦ୍ୟୁମନଙ୍କୁ ପାଣ୍ଡବେ ଆଗ କରି
କୁମରର ସେନା ଦେଲେ ଆଶୁଗେ କବାରି ।
କୁମ୍ଭ ପୋଏ ସେରୂପେ ଧରି ଭୀଷ୍ମ ଦ୍ରୋଣ
ଧାଇଁ ଧାଇଁ ପାଣ୍ଡୁସୁତଙ୍କୁ କଲେ ରଣ ।
ବିରାଟ ତିନକାଣ୍ଡ ଭୀଷ୍ମଙ୍କ ଘୋଡ଼ାକୁ
ବିନ୍ଧଣ ତିନକାଣ୍ଡ ବିନ୍ଧିଲେ ତାହାଙ୍କୁ ।
ଭୀଷ୍ମ ଦଶକାଣ୍ଡ ବିରାଟଙ୍କର ଦେହେ
ବିନ୍ଧିଲେ ଧନୁଗୁଣ ମାଜ ଅତି କୋହେ ।
ଅଶ୍ୱତ୍ଥାମା ଅର୍ଜ୍ଜୁନ ହୃଦୟଦେଶକୁ
ବିନ୍ଧିଲେ ମୂନ ଥିବା ଛଅଟି କାଣ୍ଡକୁ ।
କଣ୍ଟକୀ ଅଶ୍ୱତ୍ଥାମା ଧନୁଟିକ ଛେଦ
କାଣ୍ଡେ ଦେହ କାଟିଲେ ହେବାକୁ ନିର୍ବିବାଦ ।
ଅଶ୍ୱତ୍ଥାମା ପକାଇ ଛିଡ଼ା ଧନୁଖଣ୍ଡ
ପୁଣି କରରେ ଧରି ମହତ କୋଦଣ୍ଡ ।
ଅର୍ଜ୍ଜୁନଙ୍କୁ ନଅ କାଣ୍ଡରେ ଯୁଦ୍ଧବାଣ୍ଡେ
ଗ୍ଲାନିଦେଲେ ହେ ଧୃତରାଷ୍ଟ୍ର ହସ୍ତ ଦ୍ୱାରେ ।
ଶ୍ରୀକୃଷ୍ଣଙ୍କୁ ମଧ୍ୟ ସତୁରିଟି ଆଶୁଗ
ବିନ୍ଧିଲେ ଦ୍ରୌଣି ମହାଭାଗ ବହି ରାଗ ।
ଅର୍ଜ୍ଜୁନ ଅଶ୍ୱତ୍ଥାମା କାଣ୍ଡେ ପୀଡ଼ା ପାଇ
ଗାଣ୍ଡୀବ ଧନୁଟିକ କରରେ ଲୁଆଇଁ ।
କମାରଶାଳେ ଘଷା ମଜା କାଣ୍ଡମାନ
ବିନ୍ଧିଲେ ଅଶ୍ୱତ୍ଥାମା ପରେ ଅବଚ୍ଛିନ୍ନ ।
ଅରଜୁନଙ୍କ କାଣ୍ଡେ ଅଶ୍ୱତ୍ଥାମା ଗଣ୍ଡି—
ହାଣ୍ଡିର ରକତକୁ ଖାଇଲେ ବରଣ୍ଡି ।
ଦ୍ରୋଣଙ୍କ ନନ୍ଦନ ଅଟନ୍ତି ମହାରଥୀ
ନ ଛାଡ଼ିଲେ ଟିକଏ ସମର ବ୍ୟବସ୍ଥା ।
କୁରୁମାନେ ଅଶ୍ୱତ୍ଥାମାଙ୍କ ପରାକ୍ରମ
ନୟନେ ଦେଖି କରି ବୋଇଲେ ଉତ୍ତମ ।

ଅର୍ଜୁନ ଅଶ୍ୱତ୍ଥାମା ବୀରପଣ ଦେଖି
ଗୁରୁଭାଇପଣ ତାହାଙ୍କଠାରେ ଲେଖି ।
ତାଙ୍କୁ ଗୁରୁ ଆନ ରଥୀଙ୍କୁ ପ୍ରତିକୂଳ
ହୋଇ ସରଜିଲେ ଗାଣ୍ଡୀବେ ଶରମାଳ ।
ଶାଗୁଣାପକ୍ଷକାଣ୍ଡ ଦଶ ଦୁର୍ଯ୍ୟୋଧନ
ବିନ୍ଧି ଭୀମସେନଙ୍କୁ କଲେ ଆୟୋଧନ ।
ଭୀମ ଦୁର୍ଯ୍ୟୋଧନ ଉରକୁ ଦଶ କାଣ୍ଡ
ସେହିକ୍ଷଣି ବିନ୍ଧିଲେ କମ୍ପାଇ କୋଦଣ୍ଡ ।
ଦଶ କାଣ୍ଡରେ ଦୁର୍ଯ୍ୟୋଧନର ପଦକ
ଉପରେ ବାଜି ହେଲେ ତେଜେ ଜକଜକ ।
ସେ ସକାଶୁ ଲୋକେ ତା ସୂର୍ଯ୍ୟ କର ମଣି
ବୋଇଲେ କି ଆଶ୍ଚର୍ଯ୍ୟ ଦିଶନ୍ତି ନୃମଣି ।
ଦେଖ ନକ୍ଷତ୍ରେ ସୂର୍ଯ୍ୟଙ୍କୁ ବେଢ଼ିଛନ୍ତି
କରଣ ଭୁଲେ ଭ୍ରାନ୍ତି କିଛି ନ କରନ୍ତି ।
ସୁନାପଙ୍ଖ ଶିଳାଘଷା କାଣ୍ଡଙ୍କ ରାଜି
ପୁଣି ତି ଦୁର୍ଯ୍ୟୋଧନ ବିନ୍ଧିଲେ ଗରଜି ।
ଅନ୍ୟୋନ୍ୟରେ ଦୁହେଁ କରିଣ ଆୟୋଧନ
ତେଜରେ କଲେ ଦେବତାଙ୍କୁ ସେ ରଞ୍ଜନ ।
ଚିତ୍ରସେନ ପୁରୁମିତ୍ରଙ୍କୁ ଅଭିମନ୍ୟୁ ।
ଚଉଦଟି କାଣ୍ଡ ବିନ୍ଧିଲେ ହୋଇ ମନ୍ୟୁ ।
ସତ୍ୟବ୍ରତ ପରେ ସକୁଣ କାଣ୍ଡ ବିନ୍ଧି
ଯୁଦ୍ଧବାଣ୍ଡ ଯାଙ୍କ ବାଣରେ ହେଲେ ଛନ୍ଦି ।
ଚିତ୍ରସେନ ଦଶଟି ସତ୍ୟବ୍ରତ ନବ
ପୁରୁମିତ୍ର ସାତ ବିନ୍ଧିଲେ ଗୁରୁ ସ୍ତବ ।
ଅଭିମନ୍ୟୁ ସେ କାଣ୍ଡେ ପାଇଣ ପୀଡ଼ାଟି
ପକାଇଲେ ସେ ଚିତ୍ରସେନ ଧନୁ କାଟି ।
ଏ ବାହାରେ ମଧ୍ୟ କବଚକୁ ତାହାର
ପକାଇଦେଲେ କରି ଶରକୁ ପ୍ରହାର ।
କୁମରର ଯେତେ ରାଜପୁତ୍ରମାନେ ଥିଲେ
ତା ଦେଖି ଗୋଟି ହୋଇ ଅଭିମନ୍ୟୁ କୁଳେ
ପଥରଘଷା ପାଣିଦିଆ ବାଣମାନ
ପୁଣି ଗୋଟିଏ ବିନ୍ଧି କଲେ ଆୟୋଧନ ।
ଅଭିମନ୍ୟୁ ସେକ୍ଷଣ ମାର୍ଗଣଗଣେ
ସେମାନଙ୍କର ପ୍ରାଣ ଘେନିଲେ ଆପଣେ ।
କୁମର ପୁଅମାନେ ଗୋଟିଆଇ ସେନା
ଅଭିମନ୍ୟୁ ପରେ ବିନ୍ଧିଲେ ଅକଳନା ।

ଅଭିମନ୍ୟୁର ଶକ୍ତି ନ ସହି ଲକ୍ଷ୍ମଣ
ଆସିଲେ ତାଙ୍କଠାରୁ ବଳି ମାରିଗଣ ।
ଅଭିମନ୍ୟୁ ଲକ୍ଷ୍ମଣ ଦେହକୁ ଛ ଶର
ବିନ୍ଧିଲେ ଝିଙ୍କିଣ ଆପଣା ଧନୁଦ୍ୱର ।
ଏ ବାହାରେ ସାରଥିଙ୍କ ତିନୋଟି ବିନ୍ଧି
ତାଙ୍କର ପାଞ୍ଚଣକୁ ପକାଇଲେ ଛେଦି ।
ଦୁର୍ଯ୍ୟୋଧନ ପୁଅଟି ଧରିଣ କାଣ୍ଡଟି
ସୁଭଦ୍ରାତନୟଙ୍କୁ କଲେ ବାଣ ବୃଷ୍ଟି ।୫
ଲକ୍ଷ୍ମଣଙ୍କ ସାରଥି ଘୋଡ଼ାଙ୍କର ପ୍ରାଣ
ଘେନିଣ ଗଲେ ଅଭିମନ୍ୟୁ ବିନ୍ଧି ବାଣ ।
ଲକ୍ଷ୍ମଣ କ୍ରୋଧ ହୋଇ ଶକତି ଧଇଲେ
ଅଭିମନ୍ୟୁ ରଥକୁ ଉଦ୍ଦେଶି ଫିଙ୍ଗିଲେ ।
ଅଭିମନ୍ୟୁ ତିକ୍ଷଣ କାଣ୍ଡରେ ଲକ୍ଷ୍ମଣ
ଶକତିକି ଖଣ୍ଡେ କରି ତ ହେଲେ ଭଗ୍ନ ।
କୃପାଚାର୍ଯ୍ୟ ଲକ୍ଷ୍ମଣ ବିରଥକୁ ଦେଖି
ନିଜ ରଥରେ ବସାଇଲେ ହୋଇ ସୁଖୀ ।
ତୁମ୍ଭ ତାଙ୍କର ଲୋକେ ଶସ୍ତ୍ରମାନ ଧରି
ପରସ୍ପର ଗଜନ ହୋଇଲେ ମରମରି ।
କୁରୁ ସୃଞ୍ଜୟଙ୍କର ବାହୁଯୁଦ୍ଧ ଘୋଟ
ପ୍ରବର୍ତ୍ତିବା ଘାତେ ଆକାଶ ହେଲା ଫଟା ।
ଦିବ୍ୟ ଅସ୍ତ୍ରବେଳେ ସେ କାଳେ ଦ୍ରୋଣରଥୀ
ପାଣ୍ଡବସେନାଯାକ ପକାଇଲେ ମନ୍ଥି ।
ଗଜାଶ୍ୱ ପାଇକ ମଣ୍ଡାରେ ଯୁଦ୍ଧଦେଶ
ଭୂମିକି ଦେଖି ନ ପାରିଲା ସ୍ୱପ୍ନେ ଦୃଶ ।
ସାତ୍ୟକି ସେକାଳେ ଯୁଦ୍ଧକୁ ବାହାରିଲେ
ଆଶୀବିଷ ସଦୃଶ ନାରାଚ ବିନ୍ଧିଲେ ।
ଆଦାନ ସନ୍ଧାନରେ ସାତ୍ୟକିଙ୍କ ରୂପ
ବଢ଼ାଇଲା ପ୍ରଳୟ ମେଘର ସନ୍ତାପ ।
ଶିନିପ୍ରବୀରଙ୍କର ଦେଖି ବୀରପଣ
ଅଯୁତେ ରଥୀ ଆସି କଲେ ତାଙ୍କୁ ରଣ ।
ଦୁର୍ଯ୍ୟୋଧନ ତାହା ଦେଲେକ ପଠାଇ
ଜାଣ ମୋ କହିବାରୁ ହସ୍ତିନା ନୃସାଇଁ ।
ସାତ୍ୟକି ଦିବ୍ୟଅସ୍ତ୍ର ବଳରେ ଅୟୁତ—
ରଥୀଙ୍କର ବଳରେ ଘେନିଲେ ଜୀବତ ।
ଭୂରିଶ୍ରବା ଭୁଲେ ପୁଣି ସେ ମହାରଥୀ
ସାତ୍ୟକି ଯୁଦ୍ଧ କଲେ ନୋହି କିଛି ବ୍ୟଥୀ ।

ଭୂରିଶ୍ରବା ଯୁଦ୍ଧେ ତ ଅଟନ୍ତ ମନୁଆ
ଧାଇଁଲେ ରଥ ଚଢ଼ି କ୍ରୋଧେ ହୋଇ ନଆଁ
ଭୂରିଶ୍ରବା ଧନୁରୁ ବାହାର ମାର୍ଗଣ—
କ୍ଷଣ ଆଚ୍ଛାଦ କଲେ ଅବନୀ ଗଗନ ।
ଭୂରିଶ୍ରବାର କାଣ୍ଡ-ଅନଳ ସାତ୍ୟକ
ସୈନ୍ୟ-ବନ ଦହିଲ ବଢ଼ାଇ ପାର୍ତ୍ତିକ ।
ସେ ସବାଙ୍କୁ ଯୁଦ୍ଧେ ସାତ୍ୟକ ରଣରଙ୍କା
ରହିଲେ ଗଜନ ହେ ହୋଇକଣ ଏକା ।
ସାତ୍ୟକଙ୍କର ଦଶପୋଏ ହୋଇ ଗୋଟି
ଡାକଲେ ଧରି ଭୂରିଶ୍ରବାଙ୍କ ନାମଟି ।
ଆସ ଆମ୍ଭ ଦଶଙ୍କ ତୁଲେ ଯୁଦ୍ଧ କର
ପାଇବା ଇଚ୍ଛା ଯେବେ ଅଛି ସ୍ୱର୍ଗପୁର ।
ଭୂରିଶ୍ରବା ବୋଇଲେ ଯୁଦ୍ଧ ଇଚ୍ଛା ଥିଲେ
ଯୁଦ୍ଧ କର ହେ ମୂର୍ଖେ ବୋଲୁଅଛ ଭଲେ ।
ଏହା ଶୁଣି ସାତ୍ୟକଙ୍କର ଦଶପୋଏ
ବର୍ଷିଲେ ଶାୟକ କମ୍ପାଇ କ୍ରୋଧେ କାୟେ ।
ଅପରାହ୍ନ ସମୟେ ଏକା ଭୂରିଶ୍ରବା
ସେ ଦଶେ ଯୁଝନ୍ତେ ବୋଇଲେ ଆହା ଆହା
ତୁମ୍ଭ ପାଣ୍ଡୁ ସଇନ ଅନାଇ ରହିଲେ
କସ ଯୁଦ୍ଧ କରିବା ବୋଲଣ ବୋଇଲେ ।
ସାତ୍ୟକଙ୍କ ପୋଏ ବର୍ଷିଲେ ଯେତେ ଶର
କାଟନ୍ତେ ତା ନ ବାଜୁ ଭୂରିଶ୍ରବାଙ୍କର ।
ଭୂରିଶ୍ରବାଙ୍କର ଆଶ୍ଚର୍ଯ୍ୟ କର୍ମ ଦେଖି
ଦୁଇକୁଳ ଯୋଦ୍ଧାଏ ରହିଲେ ଟେକ ଆଖି ।
ସେ ଦଶମହାରଥୀ ଶରବୃଷ୍ଟି କରି
ଛାଡ଼ିଲେ ଭୂରିଶ୍ରବା ପ୍ରାଣ ନେବା ହରି ।
ଭୂରିଶ୍ରବା ସଙ୍ଗରେ ଦଶକାଣ୍ଡ ଧାପେ
କାଟିଲେ ଦଶଧନୁ ଧ୍ୱଜର ପ୍ରତାପେ ।
ପୁଣି ଦଶଟି ଭଲକାଣ୍ଡ ଗୁଣେ ଯୋଚି
ଭୂରିଶ୍ରବାଙ୍କର କୁଳଙ୍କର ଚୂଡ଼ାଟି ।
ସାତ୍ୟକଙ୍କର ଦଶପୁଅଙ୍କର ମୁଣ୍ଡ
କାଟି ପକାଇଣ ଦେଲେ ସେ ରଣଦାଣ୍ଡ ।
ସାତ୍ୟକ ପୁଅଙ୍କର ମରଣକୁ ଦେଖି
ଲୋତକରେ ପୂର୍ଣ୍ଣ କରିଣ ଦୁଇ ଆଖି ।
ବୋଇଲ ଭୂରିଶ୍ରବା ମାଇଲ ପୁଅଙ୍କୁ
ଆଜ ମୁହିଁ ଘେନଇ ତାର ଜୀବନକୁ ।
ତାର ରକତରେ ପୁତ୍ରଙ୍କ ପ୍ରେତକାର୍ଯ୍ୟ
କଲେ ସିନା ମୋତେ ବୋଲିବେ ସାରସଜ ।
ଆହେ ଧୃତରାଷ୍ଟ୍ର ଏରୂପେ ମନେ ଘେନ
ଧାଇଁଲେ ଯୁଦ୍ଧଦାଣ୍ଡେ ସାତ୍ୟକ ମହାବଳୀ
ଭୂରିଶ୍ରବା ରଥକୁ ରଥ ଲଗାଇଲେ
ଅନ୍ୟୋନ୍ୟରେ ଘୋଡ଼ାଙ୍କ ଜୀବନକୁ ନେଲେ
ଟଙ୍ଖାଣ ପରି ଛତ କରି ଦୁଇ ରଥୀ
ଫରି ଖଣ୍ଡା ଧଇଲେ ନୋହୁ କହୁ ବ୍ୟଥୀ ।
ତା ଦେଖି ଭୀମସେନ ସାତ୍ୟକଙ୍କି ରଥେ
ବସାଇ ରଥ ବୁହାଇଲେ ଅନ୍ୟପଥେ ।
ଭୂରିଶ୍ରବା ସେରୂପେ ଦୁର୍ଯ୍ୟୋଧନ ବୋଲେ
ଦୁର୍ଯ୍ୟୋଧନଙ୍କର ରଥରେ ଯେ ବସିଲେ ।
ପାଣ୍ଡୁଙ୍କ ସୁତେ ଭୀଷ୍ମ ଚୂଡ଼ାଟିକ ବେଢ଼ି
ବର୍ଷିଲେ ଦିବ୍ୟଶର ତୂଣ ମଧ୍ୟୁ କାଢ଼ି ।
ଅରଜୁନ ସେକାଳେ ପଚଶ ସହସ୍ର
ମହାରଥୀ ମାଇଲେ ମାରି ଦିବ୍ୟଅସ୍ତ୍ର ।
ଅର୍ଜୁନଙ୍କୁ ପାଣ୍ଡବ ସେନା ଆଚ୍ଛା ଆଚ୍ଛା
ବୋଲି ବୋଇଲେ ଏ ରଥୀଙ୍କେ ଗୋଟି ବଛା
ଏହି କାଳେ ସୂର୍ଯ୍ୟ ପଶ୍ଚିମ ଗିରିଶିଖ
ପାଟେ ରହିଲେ ହେ ନାଶିଣ ମୟୂଖ ।
ତୁମ୍ଭ ବାବୁ ଭୀଷ୍ମ ସଇନ ଲେଉଟାଇ
ଆଣିଲେ ସୂର୍ଯ୍ୟାସ୍ତ ଜାଣି ହେ ମହୀସାଇଁ ।
ପାଣ୍ଡବେ ସେହିରୂପେ ଚଳାଇଣ ଥାଟ
ବାହାରିଲେ ହେଜ କରିଣ ବସାବାଟ ।
ଏଠାରେ ପଞ୍ଚମଦିବସ ଯୁଦ୍ଧ ଗୀତ
ସରିଲା କହେ କୃଷ୍ଣସିଂହ ନରପତି ।

—●—

## ଷଷ୍ଠ ଦିନ ଯୁଦ୍ଧ

ଏଅନ୍ତେ ରଜନୀ ହୁଅନ୍ତେ ଅବଶେଷ
ବାହାରିଲେ ଦୁଇସେନାଏ ବନ୍ଧ ବେଷ ।
ଦୁଇସେନାଙ୍କର ଦୁନ୍ଦୁଭି ଶଙ୍ଖ ରବ
ନାଦା କଲା ପ୍ରଳୟ କାଳ ଘଡ଼ଘଡ଼ ।
ଯୁଧିଷ୍ଠିରଙ୍କର ବୋଲରେ ଧୃଷ୍ଟଦ୍ୟୁମ୍ନ
ମକରବ୍ୟୂହ କଲେ ହସ୍ତିନା ସଜନ ।

ମକର ବ୍ୟୂହ ଶିରେ ଦ୍ରୁପଦ ଅର୍ଜୁନ
ରହିଲେ କରିବାକୁ କୁରୁ ଆୟୋଧନ ।
ନକୁଳ ସହଦେବ ଚକ୍ଷୁଦେଶେ ଥାଇ
ମାଡ଼ିଲେ ଗେଷେ ଧନୁଗୁଣକୁ କଠାଇ ।
ଭୀମ ଅଭିମନ୍ୟୁ ଯେ ଦ୍ରୌପଦୀଙ୍କ ପୋଏ
ବ୍ୟୂହ କୁଣ୍ଡେ ରହିଲେ ଫୁଲାଇଣ କାୟେ ।
ସାତ୍ୟକି ଯୁଧିଷ୍ଠିର ବ୍ୟୂହ ଗ୍ରୀବାଦେଶ
ମାଡ଼ି ରହି ମୋଡ଼ିଲେ କରେ ଧରି ଶର ।
ଧୃଷ୍ଟଦ୍ୟୁମ୍ନ ବିରାଟ ସେନ କରି ଥାଟ
ରହିଲେ ଜଗି କରି ବ୍ୟୂହ ପୃଷ୍ଠଘାଟ ।
କୈକେୟ ପାଞ୍ଚଭାଇ ବ୍ୟୂହ ବାମପାଶେ
ରହିଲେ ଧନୁମାନ ବନ୍ଧି କରିବେଶେ ।
ଧୃଷ୍ଟକେତୁ ଯେ ଚେକିତାନ ଏ ଦକ୍ଷିଣ—
ପକ୍ଷର ରକ୍ଷାକାରୀ ହୋଇଲେ ରାଜନ ।
କୁନ୍ତିଭୋଜ ଯେ ଶତାନିକ ଦୁଇପାଦ
ସେ ବ୍ୟୂହକୁ ଜଗିଲେ ହୋଇଣ ପ୍ରମୋଦ ।
ସେମାନଙ୍କୁ ଘେନି ଶିଖଣ୍ଡୀ ଭଗବାନ
ବ୍ୟୂହର ଲାଙ୍ଗୁଳରେ କଲେ ଯାଇ ସ୍ଥାନ ।
ଏହିରୂପେ ପାଣ୍ଡବେ କରିଣ ବ୍ୟୂହଟି
କୁରୁଙ୍କୁ ଯୁଝିବାକୁ ଚଳାଇ ଅଟୁଟି ।
ବାହାରିଲେ ରାଜନ କ୍ରୋଧେ ଜାଳି ପିଣ୍ଡ
କରିକର ବାହୁରେ କମ୍ପାଇ କୋଦଣ୍ଡ ।
କୁରୁ ବାବୁ ମକରବ୍ୟୂହ ନେତ୍ରେ ଦେଖି
କ୍ରୌଞ୍ଚବ୍ୟୂହ କଲେ ଟି ହୋଇ ଅତି ସୁଖୀ ।
କ୍ରୌଞ୍ଚବ୍ୟୂହ କୁଣ୍ଡ ଜଗିଲେ ଦ୍ରୋଣଗୁରୁ
ନନ୍ଦା କଲେ ରହିବାରେ ସେ ଶୋଭାମେରୁ ।
ଅଶ୍ୱତ୍ଥାମା କୃପ ଯେ ଚକ୍ଷୁରେ ରହିଲେ
ମାରିବା ଆଜ ଶତ୍ରୁବଳ ମନେ କଲେ ।
କୃତବର୍ମା କାମ୍ବୋଜ ବାହ୍ଲିକ ଘେନି ଭୀଷ୍ମ
ଶିରଦେଶେ ରହିଲେ ଯୁଦ୍ଧେ ବଡ଼ ଉଷ୍ମ ।
ଶୂରସେନ କୁଳରେ ରାଜା ଦୁର୍ଯ୍ୟୋଧନ
ରହିଲେ ଯାଇ କରି ବ୍ୟୂହ ପୃଷ୍ଠସ୍ଥାନ ।
ପ୍ରାଗ୍‌ଜ୍ୟୋତିଷରାଜା ମଦ୍ରକ କୈକେୟଙ୍କୁ
ଘେନି ଯାଇ ଜଗିଲେ ବ୍ୟୂହର ଉରକୁ ।
ସୁଶର୍ମା ନିଜ ସେନା ଧରି ବାମପକ୍ଷ
ବ୍ୟୂହର ହୋଇଲେ ରାଜନ ଜାଣ ରକ୍ଷ ।
ତୁଖାର ଯବନ ଚୂଲିକ ଶକନୃପେ
ଦକ୍ଷିଣପକ୍ଷକୁ ଜଗିଲେ ଅତିକୋପେ ।
ସୋମଦତ୍ତ ଶ୍ରୁତାୟୁ ଶତାୟୁ ତିନିରଥୀ
ବ୍ୟୂହ ଜଙ୍ଘ ଜଗିଲେ ନୋହି କିଛି ବ୍ୟଥୀ ।
ଶୁଣିଲ ତ ଦୁଇ ସେନାଙ୍କର ବ୍ୟୂହର
ବିଧାନ ମୋଠାରୁ ହସ୍ତିନା ନରବର ।
ଏବେ ଟି ଯୁଦ୍ଧକଥା କହିବି ବୁଝାଇ
ଶୁଣ ତାହା ଲଗନ ମାନସ ରଖାଇ ।
ରଥୀ ହାତୀ ସିପାଇ ହୋଇ ମିଶାମିଶି
ହୋଇଲେ ମାରଗଣଗଣ କଷାକଷି ।
ଅର୍ଜୁନ ଭୀମଚନ୍ଦ୍ର ପାଣ୍ଡବ ସଇନ—
ନକ୍ଷତ୍ର ସେହିକାଳେ ଦିଶିଲେ ପ୍ରସନ୍ନ ।
ସେହିରୂପେ ଭୀଷ୍ମ ଦ୍ରୋଣ କୃପେ କୁରୁ ସେନା
ଶୋଭା ପାଇଲା ହେ ରାଜନ ମହାମନା ।
ଭୀମ ଦ୍ରୋଣଙ୍କର ଦେଖିଣ ପରକ୍ରମ
ଧୃଆଁଇଲେ ରଥ ସେଠାକୁ ବହି ତମ ।
ଆପୁସୀ ନବକାଣ୍ଡ ଭୀମଙ୍କ ହୃଦକୁ
ବିନ୍ଧିଲେ ଦ୍ରୋଣଗୁରୁ ବହିଣ ମୋଦକୁ ।
ଭୀମ ସେ କାଣ୍ଡଘାତେ ପାଇ ମହାପୀଡ଼ା
କଲେ ଦ୍ରୋଣସୁତକୁ ଯମପୁରେ ଛଡ଼ା ।
ଦ୍ରୋଣ ସେହିକାଳେ ସ ରଥି କର୍ମ କରି
ଶରେ ଦେଲେ ପାଣ୍ଡବସେନାଙ୍କୁ ନିବାରି ।
ଦ୍ରୋଣ ଭୀଷ୍ମ କାଣ୍ଡରେ କୈକେୟ ସୃଞ୍ଜୟ
ପଳାଇଲେ ଯୁଦ୍ଧରୁ କରି ମହାଭୟ ।
କୁରୁ ସୈନ୍ୟ ଭୀମ ଅର୍ଜୁନ କାଣ୍ଡେ ଖଣ୍ଡି
ଦାଣ୍ଡିକ ଫୁଟାଇଣ ଭଜିଲେ ଦବଣ୍ଡି ।
ସେ ସକାଶୁଁ ବ୍ୟୂହର ବ୍ୟବସ୍ଥା ରାଜନ
ନ ରହିଲା ମିଶିଣ କଲେ ଆୟୋଧନ ।
ଅନ୍ୟୋନ୍ୟରେ ପ୍ରତିଅସ୍ତ୍ରକୁ ସେ ପ୍ରସାରି
ହୋଇଲେ ଦୁଇଥାଟଯାକ ମରାମରି ।
ଧୃତରାଷ୍ଟ୍ର ବୋଇଲେ ମୋର ସୈନ୍ୟଯାକ
ଅଟନ୍ତି ତ ବଳ ବିକ୍ରମରେ ଅଧିକ ।
ସମସ୍ତେ ଖାଇ ପିଇ ହୋଇଛନ୍ତି ମୋଟା
କାହାରି ତ ଦେହ ନୁହଇ କ୍ଷୀଣକୁଟା ।
ପୁଣି ବୃଦ୍ଧକାଳ କରଇ ତ ବର୍ଜିତ
ଖାଉଅଛନ୍ତି ନିତି ସମସ୍ତେ ପିଷ୍ଟିତ ।

ଆସି ଗଦା ପରିଘ ତୋମର ଧନୁର୍ବାଣ
ଯୁଦ୍ଧମାନଙ୍କରେ ସେ ଅଟନ୍ତି ପ୍ରବୀଣ ।
ରଥ ଘୋଡ଼ା ଗଜ ସେ ଚଢ଼ିଣ ପାରନ୍ତି
ପବନରୁ ଅଧିକ ବେଗରେ ବୁଲନ୍ତି ।
ବୃଷ୍ଣି ମୋହଠାରୁ ପାଇଣ ବରତନ
କହୁଅଛନ୍ତି ମୋତେ ପ୍ରତିଜ୍ଞା ବଚନ ।
ମହାରଥୀବୃନ୍ଦରେ ହୋଇଣ ରକ୍ଷିତ
ନ କଲେ କିମ୍ପା କହ ଶତ୍ରୁକୁଳ ହତ ।
ଏ ସବାଙ୍କ ମୃତ୍ୟୁ ମଣୁଛି ମୋ କପାଳ
ହୋଇଅଛି ସବୁ ହେ ସଞ୍ଜୟ ଦୁର୍ବଳ ।
ମୋର ସୈନ୍ୟ-ସିନ୍ଧୁ ପାଣ୍ଡବ ଗୋଷ୍ପଦରେ
ଭଗ୍ନ ହଉଅଛନ୍ତି ପଡ଼ି ଦୁର୍ମେଦରେ ।
ଏତେ ଚମତ୍କାର ଆଜଯାଏ ମୁହିଁ
କାହାଠାରୁ ସଞ୍ଜୟ କର୍ଣ୍ଣେ ଶୁଣି ନାହିଁ ।
ପାଣ୍ଡବଙ୍କ ପାଇଁ ଯାଦବେ ହୋଇ ଗୋଟି
ପକାଉଛନ୍ତି ମୋ ସେନାର ମୁଣ୍ଡ କାଟି ।
ବିଦୁର ବଚନ ନ ଘେନି ମୋ ନନ୍ଦନ
ଇଚ୍ଛା ସୁଖେ ଆଣିଲା ମରଣ ବିଧାନ ।
ବିଦୁର ମୋତେ ଯାହା ଥିଲେଟି ବତାଇ
ଗୋଟିଏ ଚହିଁବୁଟି ଆନ ହେଲା ନାହିଁ ।
ହେବା କଥା ଅବଶ୍ୟ ହୁଅଇ ସଞ୍ଜୟ
ଏହା ଜାଣି ଛାଡ଼ିଲ ବିକଳ ହୃଦୟ ।
ସଞ୍ଜୟ ବୋଇଲେ ତୁମ୍ଭର ଦୁର୍ବୁଦ୍ଧିରୁ
ମରୁଅଛନ୍ତି ଯୁଦ୍ଧ କରି ପାଣ୍ଡୁ କୁରୁ ।
ଆପଣ ଅର୍ଜିବା ଦୋଷକୁ ପରମୁଣ୍ଡେ
ଲଦିଲେ କି ଆପଣ ନ ପଡ଼ିବ ଦାଣ୍ଡେ ।
ଏବେ ଧୈର୍ଯ୍ୟ ହୋଇଣ ଶୁଣ ନରଗଣ
ବାନ୍ଧବମାନଙ୍କର ହେବାର ମରଣ ।
ମକରବ୍ୟୂହେ ଥାଇ ଭୀମ ମହାବଳୀ
ତୁମ୍ଭ କ୍ରୌଞ୍ଚବ୍ୟୂହ ସୈନ୍ୟଙ୍କୁ ଦେଲେ ଦଳି ।
ଦୁର୍ବିସହ ଦୁଃସହ ଦୁର୍ମଦ ଦୁଃଶାସନ
ଜୟ ଜୟତ୍ସେନ ବିକର୍ଣ୍ଣ ଚିତ୍ରସେନ ।
ସୁଧର୍ମା ଚାରୁଚିତ୍ର ଦୁଷ୍କର୍ଣ୍ଣ ସୁଦର୍ଶନ
ଆଉ ରଥୀମାନଙ୍କଠାରୁ ଭୀମସେନ ।
ବାହାରିଲେ ଧନୁକୁ କରପୁଟେ ବହି
ରଥ ସାତେ ଯୁଦ୍ଧମଣ୍ଡଳକୁ ପଶଇ ।

ତୁମ୍ଭ ରଥୀମାନେ ଅଟନ୍ତି ବଳବନ୍ତ
ଧରିବାକୁ ଭୀମକୁ ବଢାଇଲେ ଚିତ୍ତ
ବହ୍ନି ଆଗେ ଜୁଳୁଜୁଳା ପୋକ ପରି
ତୁମ୍ଭ ପୋଏ ଦିଶିଲେ ଜାଣ ଦଣ୍ଡଧାରି ।
ଭୀମ ତୁମ୍ଭ ବ୍ୟୂହ ମଧ୍ୟରେ ପଶିଥିଲେ
ଇନ୍ଦ୍ର ପରି ବିକ୍ରମେ କୁରୁଙ୍କୁ ମନ୍ଥିଲେ ।
ସହସ୍ର ଶତ ରଥୀ ହୋଇ କରି ଝୁଣ୍ଡ
ଭୀମଙ୍କୁ ବଢାଇ ବିନ୍ଧିଲେ ସନ୍ଧ କାଣ୍ଡ ।
ଭୀମ ତୁମ୍ଭର ସୁତମାନଙ୍କୁ ନ ହେଜ
ମାଇଲେ ହାତୀ ଘୋଡ଼ା ଯୁଦ୍ଧରେ ସେ ମଜ୍ଜି
ତୁମ୍ଭ ପୁଅମାନଙ୍କ ଧରିବା ବିସ୍ତର
ଇଙ୍ଗୀରେ ଜାଣି ପାରି କଲା ବୃକୋଦର ।
ଭାବିଲେ ଏଥି ଧୃତରାଷ୍ଟ୍ର ପୋଏ ବାଇ
ହେଲେକ ଏହାଙ୍କୁ ମୁଁ ଦେବଟି ବଢ଼ାଇ ।
ତୁମ୍ଭ ପୋଏ କାଳ-ରଜ୍ଜୁରେ ସିନା ବନ୍ଧା
ହୋଇଥିଲେ ଏଣୁ ସବୁ ସେ କଲେ ଅନ୍ଧା ।
ଭୀମଙ୍କ ତୁଲେ ରଣଘୋର ଆରମ୍ଭିଲେ
ଭୟ ଜାତ ହେଲେ ତା ଦମ୍ଭରେ ଥମ୍ଭିଲେ ।
ଭୀମ ରୋଷ କରି ଧରିଣ ଗଦାବର
ଛୁଡ଼ାଦେଲେ ଯେରୂପେ ମତ୍ତ କରିବର ।
ରଥ ଛାଡ଼ି ମସ୍ତଦେଶରେ କରି ଘାତ
ମାରିବାକୁ ତୁମ୍ଭ ପୁଅଙ୍କୁ କଲେ ମତ ।
ଦ୍ରୁପଦସୁତ ଧୃଷ୍ଟଦ୍ୟୁମ୍ନ ଦ୍ରୋଣ ସଙ୍ଗ
ରଣରଙ୍ଗ ଛାଡ଼ି ହୃଦରେ ବହି ଖଙ୍ଗ ।
ଯେଉଁଠାରେ ଶକୁନ ଥିଲେ ରଥ ରଖି
ସେଠାକୁ ଧାଇଁଲେ ଶାୟକ ଗୁଣେ ଯୋଖି ।
ଦେଖିଲେ ବିଶୋକକୁ ଧରି ଛୁଚ୍ଛା ରଥ
ଛଡ଼ା ହୋଇଅଛି ଆହୋରି ଯୁଦ୍ଧପଥ ।
ସେକ୍ଷଣି ଧୃଷ୍ଟଦ୍ୟୁମ୍ନ ନୟନୁ ଧାର ଦୁଇ
ବହିଗଲା ହୃଦୟଦେଶକୁ ତିନ୍ତାଇ ।
ବୋଇଲେ ମୋର ପ୍ରିୟ ପ୍ରାଣ ଭୀମ ଗଲେ
କାହିଁଗଲେ ସାରଥି କହ ମୋର ଆଗେ ।
ବିଶୋକ ବୋଇଲେ ଏଠାରେ ମୋତେ ରଖି
ଭୀମ ଗଲେ ଧୃତରାଷ୍ଟ୍ରଙ୍କ ବଳ ଦେଖି ।
ମହତ ଗଦାଟାଏ ଧରିଛନ୍ତି କର
କରିଦେବେ କୁରୁଜନଙ୍କୁ ସେ ସଂହାର ।

ମୋତେ ବୋଲିଛନ୍ତି ମୁହୂର୍ତ୍ତେ ଆଜ ରଣ
ଆସିବ ଏହିକ୍ଷଣି ଯାଇକରି ମୁହିଁ ।
ପଶି ବ୍ୟୂହ ମଧ୍ୟରେ ହେଲେ ଅଦର୍ଶନ
ଶୁଣି ଧୃଷ୍ଟଦ୍ୟୁମନ ହେଲେ ଛନ୍ନମନ ।
ଭୀମ ପରି ପ୍ରାଣସଖାକୁ ଛାଡ଼ିଦେଇ
ଆଉକୁ ଯୁଝି ଯିବ କେଉଁ କହ ମୁହିଁ ।
ଏରୂପେ ଧୃଷ୍ଟଦ୍ୟୁମ୍ନ କହି ବିଶୋକକୁ
ଧାଇଁଲେ ହେଳ ଭୀମ ଯିବାର ବାଟକୁ ।
ଭୀମ ଗଦା ଘାତେ ପିଟି ତା ହସ୍ତୀକୁଳ
ପକାଇ ଦେଇଥିଲେ ଗଡ଼ୁଥିଲେ ତଳ ।
ସେହି ସକାଶୁଁ ଭୀମ ଯିବାବାଟ ତାଙ୍କୁ
ଜଣା ହୋଇଗଲା ହେ କହୁଛି ତୁମ୍ଭଙ୍କୁ ।
ଦେଖିଲେ ନୟନରେ ସେନା ବୃକ୍ଷପନ୍ତି
ପିତାଙ୍କ ପରି ନାଶୁଅଛନ୍ତି ମାରୁତି ।
ରଥ ହାଣି ପଦାତି ଭୀମଙ୍କ ଗଦାଘାତେ
ମରିବାରେ ଗଣନା ନୋହିଲା ନୃପତେ ।
ଭୀମଙ୍କ ମାରିବା ଘାତରୁ ଲୋକେ ରଡ଼ି
ଘାଡ଼ଣ ଯୁଦ୍ଧଦାଣ୍ଡ ପଳାଇଲେ ଛାଡ଼ି ।
ଏରୂପେ ଭୀମଙ୍କର ଦେଖିଣ ବିକ୍ରମ
ପୁଣି ଯୋଦ୍ଧାମାନେ ତୁମ୍ଭର ବହୁ ତମ ।
ଅସ୍ତ୍ର ଶସ୍ତ୍ରର ବୃଷ୍ଟି ସରଜନା କରି
ପାଣ୍ଡବଙ୍କୁ ଯୁଦ୍ଧ କଲେ ସେ ରଗ ଧରି ।
ଏହିକାଳେ ଧୃଷ୍ଟଦ୍ୟୁମନ ହୋଇ ରୋଷୀ
ଭୀମଙ୍କ ସମୀପକୁ ଲଗିଗଲେ ଆସି ।
ଭୀମଙ୍କର ଦେହେ ତ ବାଜିଥିଲେ ଶର
ତା କାଢ଼ି ପକାଇଲେ ଦ୍ରୁପଦ କୁମର ।
ଭୀମଙ୍କୁ କୋଳ କରି ନିଜ ରଥେ ନେଇ
ବସାଇଲେ ଅତି ସନ୍ତୋଷ-ମନ ହୋଇ ।
ତୁମ୍ଭର ଜ୍ୟେଷ୍ଠସୁତ ତାହା ଦେଖି କରି
ବୋଇଲେ ଏ ଦୁହିଙ୍କ ବେଢ଼ି ବଧ ମାରି ।
ଦୁର୍ଯ୍ୟୋଧନ ବଚନ ମାନି ତୁମ୍ଭ ସୁତେ
ଯୁଝିଲେ ଧୃଷ୍ଟଦ୍ୟୁମ୍ନ ସଙ୍ଗତେ ସମସ୍ତେ ।
ତୁମ୍ଭ ପୁଅମାନଙ୍କ କାଣ୍ଡରେ ଆବୃତ
ହୁଅନ୍ତେ ହେଲେ ଧୃଷ୍ଟଦ୍ୟୁମ୍ନ କ୍ରୋଧେ ତପ୍ତ ।
ମୋହନାସ୍ତ୍ରକୁ ଧନୁ ମଧ୍ୟରେ ବସାଇ
ତୁମ୍ଭ ପୁଅମାନଙ୍କୁ ବିନ୍ଧିଲେ ବେଗାଇ ।

ମୋହନଅସ୍ତ୍ରଘାତେ ତୁମ୍ଭ ପୁଅମାନେ
ମୋହ ହୁଦେ ଭଜ ପଡ଼ିଲେ ଯୁଦ୍ଧସ୍ଥାନେ ।
ଏହି ସମୟରେ ଦ୍ରୋଣ ବୁଢ଼ାଟି ଧାଇଁ
ଦ୍ରୁପଦଙ୍କୁ କାଣ୍ଡଟି ବିନ୍ଧିଲେ ନଠାଇ ।
ଦ୍ରୁପଦ ଦ୍ରୋଣଙ୍କ ନ ସହି ଶରଘାତ
ଭାଜିଲେ ରଖିବାକୁ ଆପଣା ଜୀବତ ।
ଦ୍ରୋଣ ଦ୍ରୁପଦଙ୍କ ପଳାଇବା ଦେଖି
ଶଙ୍ଖ ବଜାଇଲେ ହୋଇଣ ଅତି ସୁଖୀ ।
ସୋମକମାନେ ଶୁଣି ଦ୍ରୋଣ ଶଙ୍ଖନାଦ
ଭୟରେ କଂଲ ଖଣ୍ଡି ମାନଙ୍କୁ ତରସ୍ତ ।
ତୁମ୍ଭ ପୁଅମାନଙ୍କ ମୋହ ଯିବା ଶୁଣି
ଦ୍ରୋଣ ସେହିଠାକୁ ଧାଇଁଲେ ସେହିକ୍ଷଣି ।
ଦେଖିଲେ ଧୃଷ୍ଟଦ୍ୟୁମ୍ନ ଭୀମ ଏକା ରଥେ
ମାରୁଛନ୍ତି ସୈନ୍ୟ ପକାଇ ଶରପଥେ ।
ଆପଣେ ଦ୍ରୋଣ ପ୍ରଜ୍ଞା-ଅସ୍ତ୍ରକୁ ପ୍ରକାଶି
ତୁମ୍ଭ ପୁଅମାନଙ୍କ ମୋହ ଦେଲେ ନାଶି ।
ତୁମ୍ଭର ପୁଅମାନେ ମୋହ ତ ଛାଡ଼ିଲେ
ପୁଣି ସେ ଧୃଷ୍ଟଦ୍ୟୁମନଙ୍କୁ ଯୁଦ୍ଧ କଲେ ।
ଯୁଧିଷ୍ଠିର ଏହି କାଳରେ ସେ ଯୋଦ୍ଧାଙ୍କୁ
ବୋଇଲେ ଭୀମ ଧୃଷ୍ଟଦ୍ୟୁମନ ପାଶକୁ ।
ସୌଭଦ୍ର ଆଦି ବାରରଥିଏ ମୋହର
ଯାଆନ୍ତୁ ମଧ୍ୟ କରି କୁରୁଙ୍କୁ ସଂହାର ।
ତେତେବେଳକୁ ଯେ ପହର ଦୁଇ ବେଳ
ଯୁଦ୍ଧକୁ ବାହାରିଲେ ଯୁଧିଷ୍ଠିର ଦଳ ।
କୈକେୟ ଦ୍ରୌପଦେୟ ଅଭିମନ୍ୟୁ ଧୃଷ୍ଟ—
କେତୁ ଆଦି ଯେତେକ ରଥୀଙ୍କ ଗରିଷ୍ଠ ।
ସୂଚୀବ୍ୟୂହ କରିଣ କୁରୁଙ୍କ ସୈନ୍ୟରେ
ପଶିଣ ଆୟୋଧନ କଲେ ସୁମନରେ ।
ତୁମ୍ଭ ସେନା ଧୃଷ୍ଟଦ୍ୟୁମନ ଭୀମ ଘାତେ
ପୀଡ଼ା ପାଇଣ ଯୁଝିଥିଲେ ଭୟଚିତ୍ତେ ।
ଏହି ସମୟେ ରଥୀମାନଙ୍କର ବାଣ
ଟାଣ ପାଇ ଭାଜିଲେ ଜାଣ ନରେଶଣ ।
ଧୃଷ୍ଟଦ୍ୟୁମ୍ନ ଭୀମ ଆପଣା ରଥୀକୁଳ
ଦେଖି କରି ଦ୍ୱିଗୁଣ ପ୍ରକାଶିଲେ ବଳ ।
ଧୃଷ୍ଟଦ୍ୟୁମ୍ନ ଦ୍ରୋଣଗୁରୁଙ୍କୁ ଯେବେ ଦେଖି
ଯୁଦ୍ଧ କଲେ ସଙ୍ଗେ ତରଟି ବେନି ଆଖି ।

କୈକେୟଙ୍କ ରଥେ ବସିଲେ ଭୀମସେନ
କରଣ ଅକ୍ଷୟ ଦେହକୁ ପ୍ରଘଞ୍ଚ ।
ଦ୍ରୋଣ ଧୃଷ୍ଟଦ୍ୟୁମ୍ନ ଧନୁକୁ କାଣ୍ଡ ଚିକେ
କାଟି ପକାଇଲେ ତା ଦେଖୁଥିଲେ ଲୋକେ ।
ଦୁର୍ଯ୍ୟୋଧନ ଭ୍ରାତ ଦେବାଭ ସୁମନ୍ତଙ୍କେ
ପୁଣି ଦ୍ରୋଣ କାଣ୍ଡେ ତାହାଙ୍କୁ ଗ୍ରହଦେଲେ ।
ଦ୍ରୁପଦଙ୍କ ନନ୍ଦନ ଧରି ଆନ ଧନୁ
ସତ୍ତୁର କାଣ୍ଡ ବେଗେ ବିନ୍ଧିଲେ ଧରି ମନ୍ୟୁ ।
ଦ୍ରୁପଦ ବେଟାଟିର ପରାକ୍ରମ ହେରି
ବେଲେକ ଦ୍ରୋଣପୁଅ ଧନୁକୁ କଟ୍ଟୁରି ।
ସ୍ୱରକାଣ୍ଡେ ସ୍ୱରଘୋଡ଼ାଙ୍କ ପରାଣ
ଛେଦନ ସାରଥିର ଛେଦିଲେ ଜୀବନ ।
ଦ୍ରୋଣ ବ୍ରାହ୍ମଣର ବିକ୍ରମକୁ ଅନାଇଁ
ଅଭିମନ୍ୟୁ ରଣରେ ସୁସ୍ଥ ହେବାପାଇଁ ।
ଦ୍ରୁପଦଙ୍କ ନନ୍ଦନ ଯାଇଣ ବସିଲେ
କି କଲେ ଦ୍ୱିଜବୁଢ଼ା ବୋଲିଣ ଭାଷିଲେ ।
ଦ୍ରୋଣଙ୍କ କାଣ୍ଡଘାତେ ପାଣ୍ଡବଙ୍କ ବଳ
ଆହେ ମହାପାଳ ହୋଇଲେ ଟି ବିକଳ ।
ପାଣ୍ଡବଙ୍କ ମହାରଥୀଏ ସ୍ତବ୍ଧ ଥିଲେ
ପ୍ରତିକାର କରି କେହି ଟି ନ ପାରିଲେ ।
କୁରୁର ଲୋକେ ଦେଖି ଦ୍ରୋଣଙ୍କ ପ୍ରଶଂସା
ମୁଖେ ଉଚ୍ଚାରିଲେ ପ୍ରକାଶ କରି ଭାଷା ।
କୁରୁ ପୋଏ ଭୀମ ଉପରେ ଶରବୃଷ୍ଟି
ସରଜଲେ ଜାତ କରଣ ସୁଖସୃଷ୍ଟି ।
ଭୀମଙ୍କୁ ଏହିକାଳେ ବିଶୋକ ରଥରୁ
ଆଣିଦେଲା ଭୀମ ଆରୋହଣ ତାହାକୁ ।
ଧନୁର୍ଗୁଣ ମାଜଣ ନାଚତ ସରଜ
ଧାଇଁଲେ ଯୁଦ୍ଧକାଣ୍ଡେ କଣ୍ଠରେ ଗରଜ ।
ଦୁର୍ଯ୍ୟୋଧନ ଭୀମମର୍ମକୁ ତୀକ୍ଷ୍ଣକାଣ୍ଡ
ବିନ୍ଧିଲେ କମ୍ପାଇଣ କରର କୋଦଣ୍ଡ ।
ଭୀମ ଧନୁ ଧରିଣ ଦୁର୍ଯ୍ୟୋଧନ ଉରେ
ବିନ୍ଧିଲେ ତିନକାଣ୍ଡ ଅତ୍ୟନ୍ତ କ୍ରୋଧରେ ।
କୁରୁର ପୁଅ ଭୀମ କାଣ୍ଡକୁ ନ ମାନି
ରହିଲେ ଗୋଡ଼ ପୋତି ହୋଇ ଅଭିମାନୀ ।
ଦୁର୍ଯ୍ୟୋଧନ ଭୀମଙ୍କ ଦେଖି କରି ଯୁଦ୍ଧ
ଦୁର୍ଯ୍ୟୋଧନଙ୍କ ଭାଇମାନେ ହୋଇ କ୍ରୋଧ ।

ଭୀମଙ୍କୁ ମାରିବାକୁ ଭାଇ ପଣ ଧୋଟି
ରହିଲେ ବିସ୍ତାର ଶାସ୍ତ୍ରକମୁନ-ପାଟି ।
କୁରୁ ପୁତ୍ରମାନଙ୍କୁ ଦେଖି ଭୀମସେନ
ମାରିବାକୁ ଧାଇଁଲେ ଧରି ଧନୁର୍ବାଣ ।
ଚିତ୍ରସେନ ଯେ ଆଦି କୁରୁର ପୁଅଙ୍କୁ
ଗ୍ରହଦେଲେ ଭୀମ ବିନ୍ଧିଣ ମାର୍ଗଣକୁ ।
ଅଭିମନ୍ୟୁ ଆଦି ଟି ବୀର ରଥୀଗଣ
ଭୀମଙ୍କ ପୃଷ୍ଠେ ଥାଇ ଆରମ୍ଭିଲେ ରଣ ।
କୁରୁ ପୋଏ ସେ ବୀରରଥୀଙ୍କି ତ ଦେଖି
ଯୁଦ୍ଧ ଛାଡ଼ି ପଳାଇଲେ ହୋଇ ଦୁଃଖୀ ।
ଭୀମ ସେହିକାଳେ ଗୋଡ଼ାଇ କୁରୁ ପୁତ୍ର—
ମାନଙ୍କର କାଣ୍ଡରେ ଖୋଲି ଦେଲେ ଗାତ୍ର ।
ଦୁର୍ଯ୍ୟୋଧନ ଏକାକେ ମହାରଥୀବୃନ୍ଦ
ଘେନିଣ ପାଣ୍ଡବଙ୍କୁ ଆରମ୍ଭିଲେ ଦ୍ୱନ୍ଦ ।
ଏହିରୂପରେ ଅପରାହ୍ନ ସମୟରେ
ଦୁଇଥାଟ ଯୁଦ୍ଧ କରିଲେ ପରସ୍ପରେ ।
ଅଭିମନ୍ୟୁ ବିକର୍ଣ୍ଣ ଘୋଡ଼ାଙ୍କୁ ମାରିଲେ
ବିକର୍ଣ୍ଣକୁ ପଚିଶି କାଣ୍ଡ ସେ ବିନ୍ଧିଲେ ।
ବିକର୍ଣ୍ଣ ଘୋଡ଼ା ମରିବାର ନେତ୍ରେ ଦେଖି
ଚିତ୍ରସେନ ରଥେ ବସିଲେ ହୋଇ ଦୁଃଖୀ ।
ଚିତ୍ରସେନ ବିକର୍ଣ୍ଣ ବସି ଏକା ରଥେ
ଗ୍ରହଦେଲେ ଅଭିମନ୍ୟୁଙ୍କୁ ଶରପଥେ ।
ଦୁର୍ଜ୍ଜୟ ବିକର୍ଣ୍ଣ ଅଭିମନ୍ୟୁ ଦେହେ
ବିନ୍ଧିଲେ ପାଞ୍ଚ କାଣ୍ଡ ଧନୁ ଧରି କୋହେ ।
ଦୁଃଶାସନ ପାଞ୍ଚ କୈକେୟଙ୍କର ଭୂଲେ
ଏକା ହୋଇ ଗର୍ଜନ କରିଣ ଯୁଦ୍ଧ କଲେ ।
ଦ୍ରୌପଦୀ ପାଞ୍ଚ ପୋଏ ଦୁର୍ଯ୍ୟୋଧନ ଦେହେ
ତିନ ତିନ କାଣ୍ଡ ବିନ୍ଧିଲେ ଅତି କୋହେ ।
କୁରୁ ପୁଅ ପ୍ରତ୍ଯୁହଙ୍କୁ ଯେ ଧନୁ ଟାଣି
ଭଲ ଭଲ କରି ବିନ୍ଧିଲେ କାଣ୍ଡଶ୍ରେଣୀ ।
ଦୁର୍ଯ୍ୟୋଧନ ଦେହୁଁ ଦ୍ରୌପଦୀସୁତଙ୍କର
କାଣଘାତେ ରକ୍ତ ବହିଲା ନିରନ୍ତର ।
କୁରୁ ପିତା ପାଣ୍ଡବସେନା ଗାବକୁଳ
ଛଡ଼ାଇଲେ କାଣ୍ଡେ ଦେଖାଇ ଦେହବଳ ।
ସେହି ସମୟରେ ଗାଣ୍ଡୀବର ନିର୍ଘୋଷ
ଶୁଣି ପାଣ୍ଡୁସୈନ୍ୟ ଲଭିଲେ ମନେ ତୋଷ

କୁରୁ ପାଣ୍ଡୁ ସୈନ୍ୟର ମଣ୍ଡା ବହୁତଟି
ନୃତ୍ୟକଲେ ଷଣ୍ଡ ରେ ନ ବନ୍ଧ ମୁଣ୍ଡଟି ।
ବୀରମାନେ ତ ରଥ ନାଦରେ ସଇନ—
ସମୁଦ୍ରକୁ ତରିଲେ ହେ ନୃପମଣ୍ଡନ ।
ହାତ ଘୋଡ଼ା ମୁଣ୍ଡ ନ ଥାଇ ଷଣ୍ଡ ରଜ
ପଡ଼ିଲେ ମହୀରେ ଅନେକ ବାଣ ବାଜ ।
ହାଣିକୁଢ଼ ଶଇଳ ପରାୟେ ଆକୁଳ
ହଲେ ପଡ଼ିବାରେ ସେହି ଯୁଦ୍ଧମଣ୍ଡଳ ।
ଏରୂପେ ହେଲ ଠାରେ କୁମ୍ଭ ତାଙ୍କ ସେନା
ଯୁଦ୍ଧ କଲେ ରାଜନ ହୋଇ ରୋଷମନା ।
କୁମ୍ଭ ଲୋକେ ଯୁଦ୍ଧ କାରନ୍ତ ଇଚ୍ଛା କରି
ମରାମରି ହୋଇ ଶୋଇଲେ ରଣେ ମରି ।
ଦୁର୍ଯ୍ୟୋଧନ ରାଜା ସୂର୍ଯ୍ୟଙ୍କ ଅସ୍ତ ଦେଖି
ଗଲେ ଭୀମଠାକୁ ଧନୁରେ ଶର ଯୋଖି ।
ଭୀମ ବୋଇଲେ ମୂର୍ଖ ଯାହା ବାଞ୍ଛୁଥାଏ
ତା ଆଣି ଘଟାଇଲେ ଆଜ ଦେବରାୟେ ।
ଆହେ ଦୁର୍ଯ୍ୟୋଧନ ଟିକଏ ବୀରପଣ
ଦେଖାଇଲେ ଭେଟାଇବି ମୁଁ ଜନ୍ମରଣ ।
କୁନ୍ତୀ ଦ୍ରୌପଦୀଙ୍କର କ୍ଳେଶ ଅପହାରୀ
ଆଜ ମୂର୍ଖ ହୋଇବ ଜଣ ତୋତେ ମାରି ।
ଜୁଆ ଖେଳ ଯାହା ତ କହୁଥାଅ ଟାଣ
ଆଜ ତା ଦେଖାଅ ମୋ ଆଗେ ବନ୍ଧ ବାଣ ।
ଏରୂପେ ଭୀମ ଦୁର୍ଯ୍ୟୋଧନ ଆଗେ କହି
ଛବଣଟି କାଣ୍ଡ ବନ୍ଧିଲେ ହୋଧେ ଦହି ।
ଦୁର୍ଯ୍ୟୋଧନର ଧନୁ ସାରଥିକ ଦୁଇ
କାଣ୍ଡେ କାଟି ଭୀମ ପକାଇ ଦେଲେ ମହୀ ।
ଚାରିକାଣ୍ଡେ ଚାରି ଘୋଡ଼ାଙ୍କର ପରାଣ
ନେଇ ଗଲେଟି ଭୀମ ରଥୀଙ୍କର-ରଣ ।
ଯୋଡ଼ଏ କାଣ୍ଡ ବନ୍ଧି ଦୁର୍ଯ୍ୟୋଧନ ଛତ୍ର
ପୃଥିବୀ ଆଗ୍ରେ ଜଗଇଲେ ଟି ମାତ୍ର ।
ତିନ କାଣ୍ଡରେ ପୁଣି କାଟି ଧ୍ୱଜଦଣ୍ଡ
ଗରଜଲେ ମୋଟ କରି ଦେଇଣ ପିଣ୍ଡ ।
ଏରୂପେ କରି ଯାଏ ପାଣ୍ଡୁଙ୍କର ଶିଷ୍ୟ
ବନ୍ଧିଲେ ଦୁର୍ଯ୍ୟୋଧନ ଘଡେ ଶର ଦଶ ।
ଜୟଦ୍ରଥ ଅସହା ଏହି କାଳରେ ଆସି
ଦୁର୍ଯ୍ୟୋଧନନୃପେ ରଗିଲେ ଧନୁ କପି ।

କୃପବୁଡ଼ା ଦୁର୍ଯ୍ୟୋଧନଙ୍କୁ ରଥେ ନେଇ
ବସାଇ ବୋଇଲେ ଏମନ୍ତ ନରସାଇଁ ।
ଭୀମ-ସିଂହ ମୁଖେ ବଳୁଆ ପରି ତୁମ୍ଭେ
ହେବ କଳ୍ପ କାଳରେ ଜାଣୁଅଛୁ ଆମ୍ଭେ ।
ଦୁର୍ଯ୍ୟୋଧନ ଭୀମ କାଣ୍ଡରେ ବ୍ୟଥା ପାଇ
ଥିଲେ ରଥ ମଧ୍ୟେ ବସିଲେ ଶ୍ରାନ୍ତ ହୋଇ ।
ଜୟଦ୍ରଥ ରଥୀବୃନ୍ଦଙ୍କର ସଙ୍ଗତେ
ଭୀମ ରଥଦାଣ୍ଡକୁ ବାନ୍ଧିଲେ କୁରତେ ।
ଧୃଷ୍ଟକେତୁ ଅଭିମନ୍ୟୁ ଯେ ଦ୍ରୌପଦେୟ
କୈକେୟଙ୍କୁ ଘେନ ହୃଦରେ ବନ୍ଧୁ ପ୍ରିୟ ।
କୁମ୍ଭ ପୁଅମାନଙ୍କ କୂଳେ ମରାମରି
ହୋଇଲେ କରେ ଭୂପଗଣକୁ ଓଟାରି ।
ଚିତ୍ରବରଶନ ଚିତ୍ରାଙ୍ଗ ଚିତ୍ରରଥ
ଚିତ୍ରସେନ ନନ୍ଦ ଉପନନ୍ଦ ସୁଚିତ୍ର ।
ଆଦି ରଥୀ ଅଭିମନ୍ୟୁଙ୍କୁ ରଣେ ବେଢ଼ି
ବନ୍ଧିଲେ ତୂଣ ମଧ୍ୟୁ ଶରମାନ କାଢ଼ି ।
ଅଭିମନ୍ୟୁ ସେହି ରଥୀଙ୍କୁ କାଣ୍ଡେ କାଣ୍ଡେ
ବନ୍ଧିଲେ ଯୁଦ୍ଧଦାଣ୍ଡେ ନୃପ ଅତି ଚଣ୍ଡ ।
ସେ ମହାରଥୀମାନେ ହୋଇ ଏକଜୁଣ୍ଡ
ପୁଣି ଅଭିମନ୍ୟୁଙ୍କୁ ବନ୍ଧିଲେ ଯେ କାଣ୍ଡ ।
ସେ କାଣ୍ଡକୁ ନ ହେଜ ଅରଜୁନ-ସୁତ
ବନ୍ଧିଲେ ସେହି କାଣ୍ଡମାନଙ୍କୁ ବହୁତ ।
ବିକର୍ଣ୍ଣକୁ ଚଉଦ ଭଲ୍ଲକାଣ୍ଡ ବନ୍ଧି
ଯୁଦ୍ଧଦାଣ୍ଡରେ ଅଭିମନ୍ୟୁ ଦେଲେ ଛନ୍ଦି ।
ବିକର୍ଣ୍ଣର ସାରଥି ଘୋଡ଼ାଙ୍କର ପ୍ରାଣ
ଯୁଦ୍ଧରେ ଘେନ ଗଲେ ଅଭିମନ୍ୟୁ ଜାଣ ।
ଧ୍ୱଜ ଚାପ ଦୁହିଙ୍କି ପକାଇଲେ କାଟି
ଗର୍ଜିଲେ ଅରଜୁନବେଟା ମେଲି ପାଟି ।
ଶିଳାଘଷା ବାଣମାନଙ୍କୁ ବିକର୍ଣ୍ଣଙ୍କୁ
ବନ୍ଧିଲେ ଅଭିମନ୍ୟୁ ଜୀବନ ନେବାକୁ ।
ସେହି କାଣ୍ଡ ଟି ମାନେ ଆସି ଅତି ଚଣ୍ଡେ
ବିକର୍ଣ୍ଣ ପିଣ୍ଡେ ଗଳି ପଡ଼ିଲେ ଯୁଦ୍ଧଦାଣ୍ଡେ ।
ବିକର୍ଣ୍ଣଙ୍କୁ ଦେଖି କରି ଏ ଲୋକହସା
କୁମ୍ଭ ପୁଅ ନ ଛାଡ଼ି ଯୁଦ୍ଧରେ ଲାଳସା ।
ଅଭିମନ୍ୟୁ ଚକ୍ରପଟରେ ରଙ୍ଗ କରି
ବନ୍ଧିଲେ ବାଣଗଣ ଧନକୁ ଓଟାରି ।

ଦୁର୍ମୁଖ ଶ୍ରୁତକର୍ମା ଧ୍ୱଜ କାଣ୍ଡକରେ
କାଟିପକାଇଲେ ଯୁଦ୍ଧରେ ନିଃଶଙ୍କରେ ।
ସାତ କାଣ୍ଡରେ ଘୋଡ଼ାଙ୍କର ଘେନ ପ୍ରାଣ
ସାରଥିକ ଭେଟାଇଲେ ଟି ଯମଗଣ ।
ଶ୍ରୁତକର୍ମା ହତାଶ୍ୱସାରଥି ରଥେ ରହି
ଶକ୍ତିଟାଏ କ୍ରୋଧରେ ଫିଙ୍ଗିଲେ ଉଠାଇ ।
ସେ ଶକତ ଆକାଶମାର୍ଗେ କରି ଉଡ଼ି
ଦେଲା ଦୁର୍ମୁଖର ହୃଦୟମଧ୍ୟେ ଫୋଡ଼ି ।
ପୁଣି ଭୂମି ବିଦାରି ପଶିଲା ଭୂତଳେ
ଦେଖୁଥିଲେ କୁମ୍ଭର ଯୋଦ୍ଧା ନର ତୋଳେ
ସୁତସୋମ ଶ୍ରୁତକର୍ମାଙ୍କୁ ରଥେ ନେଇ
ବସାଇଲେ ତାଙ୍କର ସୁସ୍ଥ ହେବାପାଇଁ ।
ଏହି କାଳରେ ଶ୍ରୁତକୀର୍ତ୍ତି ମହାବୀର
ଜୟତ୍ସେନ ସଙ୍ଗେ ସମର କଲେ ଘୋର ।
ଶ୍ରୁତକୀର୍ତ୍ତି ଧନୁ କୁମ୍ଭର ଜୟତ୍ସେନ—
ନନ୍ଦନ କ୍ଷୁରକାଣ୍ଡେ କରି ଦେଲେ ଭଗ୍ନ ।
ଶତାନୀକ ଶ୍ରୁତକୀର୍ତ୍ତି ଭାଇର ପାଶେ
ଆସି କରି ରହିଲେ ସମର ପ୍ରବେଶେ ।
ପୁଣି ଧନୁ ଝିଙ୍କି ଦଶୋଟି ମାରଗଣ
ବିନ୍ଧିଲେ ଜୟତ୍ସେନ ପରେ କରି ଟାଣ ।
ପୁଣି ମରମଭେଦୀ କାଣ୍ଡକୁ ସନ୍ଧାନ
ଦେଲେ ଜୟତ୍ସେନର କବଚକୁ ଛେଦ ।
ଜୟତ୍ସେନ ଭାଇ ଦୁଷ୍କର୍ଣ୍ଣ ଶତାନୀକ
ଧନୁକୁ କାଟି ଦେଲେ ପ୍ରହାରି ଶାୟକ ।
ପୁଣି ଶତାନୀକ ଯେ ଆନ ଧନୁ ଧରି
ରହ କାହିଁ ଯିବୁ ବୋଲିଣ କ୍ରୋଧ କରି ।
କମାରଶାଳେ ଶାଣିତ କାଣ୍ଡମାନ
ବିନ୍ଧିଲେ ଗୁଣରେ ବସାଇ ଅବଛିନ୍ନ ।
ଦୁଷ୍କର୍ଣ୍ଣର ଧନୁକୁ କାଣ୍ଡ ଟିକେ କାଟି
ତଲକାଣ୍ଡେ ହରିଲେ ସାରଥି ପ୍ରାଣୁଟି ।
ଚାରି କାଣ୍ଡରେ ଚାରି ଅଶ୍ୱଙ୍କର ପ୍ରାଣ
ଭେଟାଇଲେ ନେଇଣ ଜଳୁଙ୍କର ଗଣ ।
ଏକ ଭଲ୍ଲ ଶରରେ ଦୁଷ୍କର୍ଣ୍ଣର ମୁଣ୍ଡ
କାଟି ଗଡ଼ାଇଣ ଦେଲେ ସେ ରଣଦାଣ୍ଡ ।
ତାଦେଖି ଦୁର୍ମୁଖ ଦୁର୍ଜୟ ଦୁର୍ମର୍ଷଣ
ଶତ୍ରୁଞ୍ଜୟ ଶତ୍ରୁସହ ଯେ ଧନୁ ବାଣ ।
କିତଦେଖେ ବହୁଣ ଶତାନୀକଠାକୁ
ଆସି ବେଢ଼ି କଲେ ସମର ନାଶିବାକୁ ।
ଏହିକାଳେ ପାଞ୍ଚ କୈକେୟ ରଥ ଚଢ଼ି
ଶତାନୀକ ରକ୍ଷାକୁ ଆସିଲେ ହୋଇ ଧାଡ଼ି ।
କୁମ୍ଭ ପାଞ୍ଚ ରଥୀଙ୍କ କଲେ ଘୋର ରଣ
ଆରମ୍ଭିଲେ ଯେ ନରଗଣ ବିନ୍ଧି ବାଣ ।
ଭୀଷ୍ମ ସେ କାଳେ କ୍ରୋଧ ହୋଇ ପାଣ୍ଡୁସେନା
ଜନଙ୍କୁ ନାଶ କଲେ ନୋହିଲା ଗଣନା ।
ଏହି ସମୟରେ ପଶ୍ଚିମ ଗିରିଶିଖ
ଛୁଇଁଲେ ନାଶ କରି ସବିତା ମୟୂଖ ।
ଭୀଷ୍ମ କୁରୁଆଟକୁ ଯିବା ବୋଲି ଡାକ
ବୁହାଇଲେ ବସାକୁ ନିଜ ରଥୁଟିକ ।
ଯୁଧିଷ୍ଠିର ଧୃଷ୍ଟଦ୍ୟୁମ୍ନ ଯେ ଭୀମଙ୍କୁ
ଘୋଟାଳ ତାଙ୍କ ମୂର୍ଦ୍ଧା କରି ଆଘ୍ରାଣକୁ ।
ସୂର୍ଯ୍ୟ ଅସ୍ତ ଦେଖି ବସାକୁ ନିଜରଥ
ବୁହାଇଲେ ମନ୍ତ୍ରାଇ ଦେଇ ମନ୍ତ୍ରପଥ ।
ଷଷ୍ଠଦିନ ଯୁଦ୍ଧ ଏହିଠାରେ ଶେଷ
କରିଲେ ଦେବବ୍ୟାସ ପରାଶରଶିଷ୍ୟ ।'
ତାହାଙ୍କର ଟି ପାଦ-କମଳକୁ ଧ୍ୟାୟି
କୃଷ୍ଣସିଂହ ନରେଶ ଏ ଗୀତ କହଇ ।

———

## ସପ୍ତମ ଦିନ ଯୁଦ୍ଧ

ଏଥୁଅନନ୍ତରେ ରଜନୀ ଅବଶେଷେ
ଉଠିଲେ ଦୁଇସେନା ସମର ଲାଳସେ ।
କୁମ୍ଭ ଜ୍ୟେଷ୍ଠସୁତ ଭୀଷ୍ମ ପାଶେ ଯାଇ
ନମସ୍କାର କରି ରହିଲେ ଚୋର ହୋଇ ।
ଭୀମ କାଲି ବ୍ୟୂହ ମଧ୍ୟରେ ମୋର ପଶି
ସବୁ ସଇନ ଯାକ ପକାଇଲା ନାଶି ।
ମୋତେ ମଧ୍ୟ ଦେଖିଣ ବିନ୍ଧିଅଛି ବାଣ
ଜତଦାନ୍ତ ହେଉଛି ମୋହର ପରାଣ ।
ଏବେ କୁମ୍ଭ ପ୍ରସାଦରୁ ମୁଁ ପାଣ୍ଡବଙ୍କୁ
ମାରିବାକୁ କହୁଅଛି ଟି ହେ ମନକୁ ।
ଭୀଷ୍ମ ଶୁଣି ଏ ବାଣୀ ଅଳ୍ପ ହସି ହସି
ବୋଇଲେ ଆହେ ରାଜା ନୃପ ମତେ ଦ୍ୱେଷୀ
କୁମ୍ଭ ପାଇଁକି ମୁହିଁ ତେଜି ପରାଣକୁ
ଶକ୍ତି ଅନୁରୂପେ ବିନ୍ଧୁଛି ଶାୟକକୁ ।

ପାଣ୍ଡବଙ୍କର ମହାରଥୀ ଜଣ ହନ୍ଦ
ଜଣିଣ ପାରନ୍ତି ବୃନ୍ଦାରକ ବୃନ୍ଦ ।
ମୁଁ ଏବେ ତୁମ୍ଭପାଇଁ ପ୍ରିୟ ପଣ୍ଗଣକୁ
ଛାଡ଼ ଦେଇ ଯୁଝିବ କହୁଛୁ ତୁମ୍ଭଙ୍କୁ ।
ଅସୁର ସୁର ନାଗ ମୋ ଆଗରେ ଗୋଟି
ହୋଇ ଯୁଦ୍ଧ କଲେ ନ ପାରନ୍ତି ଯୋଟି ।
ଦେଖ ଆଜ ପାଣ୍ଡୁସୁତଙ୍କ କୁଳେ ରଣ
କରି ତୁମ୍ଭ ପ୍ରିୟ କରିବ ମୁହିଁ ଜାଣ ।
ଏହା ଶୁଣିଣ ଦୁର୍ଯ୍ୟୋଧନ ହୃଷ୍ଟ ହୋଇ
ବାହାରିଲେ ଯୁଦ୍ଧକୁ ସଇନ ଚଳାଇ ।
ତୁମ୍ଭ ସୈନ୍ୟମାନଙ୍କ ଅସ୍ତ୍ରଙ୍କର ଝଳ
ଦେଖିଲ୍ଲକ୍ଷଣି ନେତ୍ର ଦୁଇ ହେଲ ଦଳ ।
ରଥ ଗଜ ଅଶ୍ୱ ପଦାତି ଅକଳନା
ଅଟଇ ତ ତୁମ୍ଭର ନୃପ ମହାମନା ।
ତୁମ୍ଭ ସୈନ୍ୟ ପାଦଘାତରେ ଉଡ଼ ଧୂଳି
ଲୁଚିଇଲ ଆଦିତ୍ୟଙ୍କର ରଶ୍ମିମାଳୀ ।
ପତାକାଏ ରଥରେ ଫଡ଼ଫଡ଼ ଉଡ଼
କରିଣ ଆକାଶକୁ ଯାଉଥିଲେ ଉଡ଼ ।
ତା ଦେଖିବା ଲୋକେଟି ଆହା ହୋଉଥିଲେ
ମୁହିଁ ମଧ୍ୟ ବଚନ ଶୁଣିଅଛୁ ଭଲେ ।
ତୁମ୍ଭ ରଥୀବୃନ୍ଦର ଘଣ୍ଟେଣି ଶବଦ
ହୋଇଲା ଶତ୍ରୁଜନଙ୍କର ଭୟପ୍ରଦ ।
ଯୁଗାନ୍ତ କାଳ ମେଘ ପ୍ରାୟେ ତୁମ୍ଭ ସେନା
ଗରଜନ କଲେ ହୋଇଣ କୋପମନା ।
ତୁମ୍ଭ ପୁଅ ହରଷ ଦେଖି ପିତାମହ
କହିଲେ ଏ ବଚନ ବଢାଇବାକୁ ସ୍ନେହ ।
ଦ୍ରୋଣ ଶଲ୍ୟ ବିକର୍ଣ୍ଣ ସୌବଳ କୃତବର୍ମା
ଭଗଦତ୍ତ ବାହ୍ଲିକ ମାଗଧ ଅଶ୍ୱତ୍ଥାମା ।
ତ୍ରିଗର୍ତ୍ତରାଜ ବିବିଂଶତି ଅନୁବିନ୍ଦ
ବୃହଦ୍ବଳ ଚିତ୍ରସେନ ଯେ ବୀର ବିନ୍ଦ ।
ଏମାନେ ଦେବତାଙ୍କୁ ଯୁଦ୍ଧରେ ଯୁଝାଇ
ପାରନ୍ତି କମ୍ପା ଚମ୍ପା ନର ନଲୁସାଇଁ ।
ଆହୁରି କଥାଟିଏ କହୁଛୁ ତୁମ୍ଭଙ୍କୁ
ଶୁଣ ତା ମୋହଠାରୁ ଦେଇଣ ମନକୁ ।
କୃଷ୍ଣଙ୍କ ସହାୟରୁ ପାଣ୍ଡବେ ଅଜେୟ
ହୋଇଛନ୍ତି ସବୁରି ମୁଖରେ ଉଦୟ ।

ତୁମ୍ଭପାଇଁ ମୁହିଁ ଯୁଝିବି ପାଣ୍ଡବଙ୍କୁ
ଦେବି ଛାଡ଼ ହୃଦ ମଧ୍ୟରୁ ପଣ୍ଗଣକୁ ।
ଏହା କହିଣ ଦୁର୍ଯ୍ୟୋଧନର ଦେହରେ
ଅଉଷଧି ଭୀଷ୍ମ ଯେ ବୋଳିଲେ ସ୍ନେହରେ ।
ସେ ଔଷଧି ସକାଶୁଁ ଦେହ ବ୍ୟଥା ଛାଡ଼
ଦୁର୍ଯ୍ୟୋଧନ ବାହାରିଲେଟି ଦାନ୍ତ ରଡ଼ ।
ଏଥିଅନ୍ତେ ଭୀଷ୍ମ ମଣ୍ଡଳବ୍ୟୂହ କଲେ
ଯୁଝିବା ମନେକରି ଜଣ ଆଉଁଷିଲେ ।
ଲକ୍ଷ ଲକ୍ଷ ରଥ ଯେ ହାତୀ ପଦାତିରେ
ପୂରିଲା ସେହି ବ୍ୟୂହ ଅତ୍ୟନ୍ତ ଘଞ୍ଚରେ ।
ହାତୀ ଗୋଟିକରେ ଯେ ସାତଗୋଟି ରଥ
ରହିଲେ ଜଗିକରି ହୋଇ ଧନୁର୍ହାତ ।
ରଥ ଗୋଟିକରେ ଯେ ସାତଗୋଟି ଘୋଡ଼ା
ସିପାଇଏ ଘୋଡ଼ାପଟରେ କଲେ ଛିଡ଼ା ।
ଘୋଡ଼ା ଗୋଟିକକୁ ସାତଟି ଧନୁର୍ଦ୍ଧାରୀ
ଜଗିଲେ କାଣ୍ଡ ଗୁଣମଧ୍ୟେ ଯୋଖି କରି ।
ଧାନୁକୀ ଗୋଟିକେ ସାତୋଟି ଫରିକାର
ଜଗି ଫରିମାନଙ୍କୁ କଲେ ଫରଫର ।
ସହସ୍ରଦଶ ହାତୀ ସସ୍ରଦଶ ଘୋଡ଼ା
ସସ୍ରଦଶ ରଥ ଭୀଷ୍ମଙ୍କ ପୃଷ୍ଠେ ଛିଡ଼ା ।
ହୋଇଲେ ବୀରେ ତହିଁ ବସି ଧନୁ ବହି
ପାଣ୍ଡବଙ୍କର କୁଳେ ଯୁଝିବାର ପାଇଁ ।
ଦୁର୍ଯ୍ୟୋଧନ ସାଞ୍ଜୁ ଲଗାଇ ରଥେ ବସି
ତେଜରେ ଇନ୍ଦ୍ରଙ୍କ ପ୍ରଭାକୁ ଦେଲେ ନାଶି ।
ଭେରୀ ଶଙ୍ଖ ମୃଦଙ୍ଗ ପଣବ ଶବଦ
ତୁମ୍ଭର ଯୋଦ୍ଧାମାନେ କଲେ ବହୁ ମୋଦ ।
ଭୀଷ୍ମଙ୍କର ଦେଖିଣ ମଣ୍ଡଳ ବ୍ୟୂହକୁ
ପାଣ୍ଡବେ କଲେ ବଜ୍ର ନାମରେ ବ୍ୟୂହକୁ ।
ବଜ୍ରବ୍ୟୂହକୁ ହାତୀ ରଥ ଘୋଡ଼ା ଜଗି
ଗରଜନ କଲେ ହୋଇଣ ଅତି ରାଗୀ ।
ପରସ୍ପରେ ବ୍ୟୂହ ଭେଦିବା କରି ମନ
ଲାଗିଲେଟି ଦୁଇ ସଇନରେ ଆୟୋଧନ ।
ବିରାଟ ଦ୍ରୋଣ ଦୁହେଁ ହେଲେ ଯୋଡାଯୋଡି
ଶିଖଣ୍ଡୀକି ଦ୍ରୌଣି ବିନ୍ଧିଲେ ଶର କୋଟି ।
ଦୁର୍ଯ୍ୟୋଧନ ଯେ ଧୃଷ୍ଟଦ୍ୟୁମ୍ନଙ୍କୁ କାଣ୍ଡ
ବିନ୍ଧିଲେ କମ୍ପାଇଣ କରର କୋଦଣ୍ଡ ।

ନକୁଳ ସହଦେବ ମାମୁଙ୍କୁ ରଣେ ଦେଖି
ସରଜଲେ ସାତ୍ୱକ ଜପ୍ରୋଧ ଉପେକ୍ଷି ।
ବିନ୍ଦ ଅନୁବିନ୍ଦ ସେ ଯୁଧାମନ୍ୟୁ ଭୁଟିଲେ
ଯୁଦ୍ଧ କଲେ ଶରଧା ଧରି ମନେ ଭଲେ ।
ସବୁ ରାଜାମାନେ ହୋଇଣ ଏକ ଗୋଟି
କସଣ୍ଠୀ ରଥ ଆଗେ ଦେଲେ ରଥ ଯୋଟି ।
ଭୀମସେନ ତ କୃତବର୍ମାଙ୍କୁ ଡାକିଲେ
ଧନୁର୍ଗୁଣ ମାଜିଣ ନଠାଇ ଟିଙ୍କିଲେ ।
ବିକର୍ଣ୍ଣ ଚିତ୍ରସେନ ଦୁର୍ମର୍ଷଣ କୁଳେ
ସୁଭଦ୍ରାଙ୍କ ନନ୍ଦନ ବନ୍ଧାବନ୍ଧି ହେଲେ ।
ଘଟୋତ୍କଚ ଭଗଦତ୍ତଙ୍କୁ ବିନ୍ଧି କାଣ୍ଡ
କାଣ୍ଟି ଯିବ ବୋଲନ୍ତି ନଡ଼ ଦେଲ ମୁଣ୍ଡ ।
ଅଳମ୍ବୁଷ ସାତ୍ୟକ ପ୍ରମୁଖଙ୍କୁ ଯାଇ
ବୋଇଲେ ଜଣେ ଯିବ ଯୁଝିଲେ ହେ ଭାଇ ।
ଭୁରିଶ୍ରବା ତ ଧୃଷ୍ଟକେତୁଙ୍କୁ ଯୁଝିଲେ
ଶ୍ରୁତାୟୁଙ୍କୁ ପାଣ୍ଡବରାଜନ ଡାକିଲେ ।
ଚେକିତାନ କୃପ ଆଚାର୍ଯ୍ୟ କରି ରଣ
ଦେଖାଇଲେ ଅତିଶୟରେ ଦେହଟାଣ ।
ବାକି ନୃପତିମାନେ ଭୀଷ୍ମଙ୍କୁ ଆବୋରି
ବିନ୍ଧିଲେ ମାରଗଣଗଣ ନ ବିସ୍ମରି ।
ସସ୍ରସଂଖ୍ୟା ରାଜା ତୋମର ଗଦାଟେଳ
ଅର୍ଜୁନଙ୍କୁ ମାରଣ ଆରମ୍ଭିଲେ ଯୋକ ।
ଅର୍ଜୁନ କ୍ରୋଧରେ ବୋଇଲେ କୃଷ୍ଣ ଦେଖ
ଆମ୍ଭର ପିତାମହ ଭୀଷ୍ମ ତପୀଶିଖ ।
ବ୍ୟୂହ କରିଣ ଯୁଦ୍ଧ ଆରମ୍ଭି ଅଛନ୍ତି
ମୋ ଜାଣ୍ଡ ଘାତ କରୁ ଜାଣି କ ନାହାନ୍ତି ।
ଏ ଗର୍ଭ ରାଜାଙ୍କୁ ମୁଁ ସାଇଙ୍କର କୁଳେ
ମାରିବ ଆଜ ହେ ଦେଖିବ ମେଦେ ଭଲେ ।
ଏହା କହି ଅର୍ଜୁନ ମାର ଧନୁର୍ଗୁଣ
ବିନ୍ଧିଲେ ଶତ୍ରୁ ସୈନ୍ୟ ଉପରେ ମାର୍ଗଣ ।
କୁମ୍ଭ ସେନା ନୃପେ ତ ହୋଇଥିଲେ ଗୋଟି
ବିନ୍ଧିଲେ ଅର୍ଜୁନଙ୍କୁ ଶର କୋଟି କୋଟି ।
କୃଷ୍ଣ ଯେ ଅର୍ଜୁନ ଶରରେ ଆଚ୍ଛନ୍ନ
ହେବାର ଦେଖି କେତେ ତେଜିଲେ ଭୂବନ ।
ଦେବର୍ଷି ଦେବତା ଗନ୍ଧର୍ବ ଶୂନ୍ୟେ ଥାଇ
ବୋଇଲେ ଭଲ ଯୁଦ୍ଧଟାଏ ଦେଖିଲୁଇଁ ।

କୃଷ୍ଣ ଅର୍ଜୁନଙ୍କୁ ବିନ୍ଧିଣ ମାରଗଣ
ଘୋଡ଼ାଇ ଦେଲେ ଯାହା ଭୂପେ ଯୁଦ୍ଧାଙ୍ଗଣ ।
ଅର୍ଜୁନ କ୍ରୋଧରେ ଇନ୍ଦ୍ରଙ୍କ ଅସ୍ତ୍ର କରି
ଦେଲେ ସବୁ ନୃପଙ୍କ ଶରକୁ ନିବାରି ।
ଏ ବାହାରେ ସେ ଅସ୍ତ୍ରୁଁ ଶର ହୋଇ ଜାତ
ବୁଡ଼ାଇଲ ସବୁରି ଦେହରୁ ରକତ ।
ଗାଣ୍ଡୀବ ଧନୁର୍ଗୁଣ ମଧ୍ୟେ କାଣ୍ଡ ଯୋଟି
ଜଣକେ ଦୁଇ ତିନ ବିନ୍ଧିଲେ କସଣ୍ଠୀ ।
ଏଣ୍ଡୁ ସକାଶୁଁ କୁରୁସେନାଏ ବିକଳ
ହୋଇଣ ବୋଇଲେ ହେ ରକ୍ଷ ଭଗବାନ ।
କ୍ରୋଧ ହୋଇ ଅର୍ଜୁନ ବାଣ ବିନ୍ଧୁ ବିନ୍ଧୁ
ସ୍ତବ୍ଧିତ ହୋଇଗଲେ କୁମ୍ଭ ସୈନ୍ୟ-ସିନ୍ଧୁ ।
ଏହା ଦେଖିଣ ଭୀଷ୍ମ କରେ ଧନୁ ବହି
ବାହାରିଲେ ଯୁଦ୍ଧକୁ ଅଧ ରାଗ ହୋଇ ।
କୁମ୍ଭର ଜ୍ୟେଷ୍ଠସୁତ ସେକାଳେ ନୃପଙ୍କୁ
ବୋଇଲେ ଜଗ ଯାଇ ମୋ ପିତାମହଙ୍କୁ ।
ରାଜାମାନେ ତା ଶୁଣି ଫୁଲାଇ ହୃଦୟ
ବୋଇଲେ ଭୀଷ୍ମ ହେବ ଆସନ୍ନ ବିଜୟ ।
ବିଜୟଠାରୁ ଆମ୍ଭମାନଙ୍କ କୁଳରେ
ଦେଖି ସୁଖୀ ହୋଇବା ଦେହ ଯତ୍ନଳରେ ।
କପିଧ୍ୱଜ ରଥ କରାଇ ମହାସ୍ୱନ
ଆସୁଥିଲେ ମହତା ଦେବଙ୍କ ନନ୍ଦନ ।
ଭୀଷ୍ମ ତାଙ୍କର ଶ୍ୱେତ ସ୍ୱର୍ଣ୍ଣଘୋଡ଼ା ପାଶେ
ଏହାଙ୍କ ଶ୍ୱେତ ସ୍ୱର୍ଣ୍ଣଘୋଡ଼ା କଲେ ତୋଷେ ।
ଅରଜୁନଙ୍କ ବୀର ମୂରତ୍ତିକ ଦେଖି
ଘାଡ଼ିଲେ ଡାକ କୁରୁମାନେ ବୁଜ ଆଖି ।
ମଧ୍ୟାହ୍ନ ସୂର୍ଯ୍ୟପରି ଶ୍ରୀକୃଷ୍ଣଙ୍କ ରୂପ
ଦେଖି କୁରୁ ଯୋଦ୍ଧାଙ୍କ ବଢ଼ିଲନ୍ତି ତାପ ।
ପାଣ୍ଡବ ସେନାଯାକ ଭୀଷ୍ମେ ବଧିବାକୁ
ନୋହିଲେକି ସମର୍ଥ କହୁଛି ତୁମ୍ଭଙ୍କୁ ।
ତ୍ରିଗର୍ତ୍ତାଙ୍କ ରଥୀଏ କୁମ୍ଭ ପ୍ରଭ କୁଳେ
ଗଙ୍ଗ ଦେଶଙ୍କର ପୃଥକ୍ କରିଥିଲେ ।
ଏଣୁ କାଳରେ ଭରଦ୍ୱାଜ କ୍ରୋଧ ହୋଇ
ଭଗଦତ୍ତଙ୍କୁ କାଣ୍ଡ ଯେ ବିନ୍ଧିଲେ ନଠାଇ ।
ଧ୍ୱଜ ଧନୁ ଦୁହିଙ୍କ କଣ ଦୁଇଖଣ୍ଡ
ଫୁଲାଇ ଦେଲେ ଦ୍ରୋଣ ଦ୍ୱିଜବୁଢ଼ା ପିଣ୍ଡ ।

ବିରାଟ ଆନ ଧନୁଟାଏ କରେ ଧରି
ବିନ୍ଧିଲେ ତିନିକାଣ୍ଡ ଦ୍ରୋଣେ ଅଣ୍ଟ କରି ।
ସ୍ୱର ଶରେ ଅଶ୍ୱେ ଚରକେ ରଥଧ୍ୱଜ
ବିଦ୍ଧକଲେ ଶ୍ରାଷ୍ଟଙ୍କ ଦ୍ରୁପଦ ସାରଗଜ ।
ସାରଥିକ ମଧ୍ୟ ବିନ୍ଧିଣ ପାଞ୍ଚକାଣ୍ଡ
କାଣ୍ଡି ଯିବ ବୋଲି ଦଳଇ ଦେଲେ ମୁଣ୍ଡ ।
ଦ୍ରୋଣଙ୍କର ପୁଣି ଧନୁଟିକୁ ଉଦ୍ଦେଶି
ବାଢ଼ିଥିବା କାଣ୍ଡେ ବିନ୍ଧିଲେ ହୋଇ ଦ୍ୱେଷି ।
ଦ୍ରୋଣ ତାହା ଦେଖି ହୋଇଲେ ଅତି କ୍ରୋଧ
କଲେ ବିରାଟଙ୍କର ସ୍ୱର ଘୋଡ଼ା ବଧ ।
ଆଠକାଣ୍ଡେ କାଣ୍ଡେ ସାରଥି ପ୍ରାଣ ନେଇ
ଦେଖାଇଲେ ତାହାଙ୍କୁ ପ୍ରେତପୁର ସାଇଁ ।
ବିରଥୀ ହୋଇଣ ବିରାଟ ନରଗଣ
ଶଙ୍ଖ ରଥ ଉପରେ ଚଢ଼ିଲେ ଆପଣ ।
ସେ ବାପୁ ପୁଅ ଦୁହେଁ ହୋଇ ଏକମନ
ଶରରେ କଲେ ଦ୍ରୋଣବୁଢ଼ାକୁ ଆଚ୍ଛନ୍ନ ।
ଦ୍ରୋଣ ଆଶୀବିଷ ସଦୃଶ ଶର ମାରି
ଦେଲେ ଶଙ୍ଖ ହୃଦକୁ ବେଜନଫାଳ କରି ।
ଶଙ୍ଖ ସେ ଘାତେ ରଥବରରୁ ପଡ଼ିଲେ
ଛାଡ଼ିଲେ ପ୍ରାଣ ଆଖି ଖୋଷିଦେଇ ଗଲେ ।
ପୁଅ ମୃତ୍ୟୁ ଦେଖି ବିରାଟ ନରସାଇଁ
ପଳାଇଲେ ଦ୍ରୋଣବୁଢ଼ାଟିକୁ ନ ଚାହିଁ ।
ସହସ୍ର ସଂଖ୍ୟା କାଣ୍ଡ ବିନ୍ଧି ଭରଦ୍ୱାଜ
ପାଣ୍ଡୁ ସୈନ୍ୟ ନବାର ପ୍ରକାଶିଲେ ତେଜ ।
ଶିଖଣ୍ଡୀ ଅଶ୍ୱତ୍ଥାମା ଉପରକୁ ତିନ—
କାଣ୍ଡ ବାଛୁ ବିନ୍ଧିଲେ ମନେ କ୍ରୋଧ ଘେନି ।
ଅଶ୍ୱତ୍ଥାମା-ଶିରରେ ତିନିକାଣ୍ଡ ଶୃଙ୍ଗ
ହୋଇଣ ଦେଖାଯାକ କରିଦେଲ ରଙ୍ଗ ।
ପୁଣି ମୁଦ୍ଗରକର ମାଡକରେ ଦ୍ରୋଣି
ଶିଖଣ୍ଡୀ ସୂତ ଧ୍ୱଜ ପକାଇଲେ ହାଣି ।
ଏ ବାହାରେ ଧନୁର ଭୂଲରେ ଘୋଡ଼ାକୁ
କାଟି ପକାଇଲେ ଦେଖାଇ ବଳମକୁ ।
ଶିଖଣ୍ଡୀ ଢାଲ ଖଣ୍ଡା ଧରି ସେହିକ୍ଷଣି
ରଥତଳେ ଛୁଡ଼ା ହୋଇଲେ ନରମଣି ।
ଉତ କରିବାରେ ତ ଶିଖଣ୍ଡୀ ଛିଦ୍ରକୁ
ନ ଜାଣି ଅଶ୍ୱତ୍ଥାମା ଲଭିଲେ ଲାଜକୁ ।

କ୍ରୋଧେ ଅଶ୍ୱତ୍ଥାମା ଶ ଖଣ୍ଡା ଦେଇ ଲକ୍ଷ
କରି ଧନୁ ଟାଣିଣ ବିନ୍ଧିଲେ ଶିଖି ।
ଅଶ୍ୱତ୍ଥାମାଙ୍କ ଶର ନ ବାଜୁଁ ଶିଖଣ୍ଡୀ
ଖଣ୍ଡାରେ ହାଣି କରି କଲେ ଖଣ୍ଡି ଖଣ୍ଡି ।
ନ ସହି ଅଶ୍ୱତ୍ଥାମା ପେଷି ପୁଣି କାଣ୍ଡ
କାଟିଲେ ଶିଖଣ୍ଡୀର ଢାଲ ଖଣ୍ଡା ଖଣ୍ଡ ।
ଏ ବାହାରେ ଶିଖଣ୍ଡୀ ଦେହେ ପାଞ୍ଚ କାଣ୍ଡ
ବିନ୍ଧିଲେ ଦ୍ରୋଣସୁତ କମ୍ପାଇ କୋଦଣ୍ଡ ।
ଖଣ୍ଡ ଆ ଖଣ୍ଡା ଖଣ୍ଡ ଶିଖଣ୍ଡୀ ବୁଲାଇ
ଅଶ୍ୱତ୍ଥାମାକୁ ତା ଫିଙ୍ଗିଲେ କ୍ରୋଧ ହୋଇ
ସେହି ଖଣ୍ଡିଆ ଖଣ୍ଡା ଖଣ୍ଡି ଯୁଦ୍ଧଦାଣ୍ଡେ
ପ୍ରଳୟ ଅଗ୍ନିପରି ଜଳିଲା ପ୍ରଚଣ୍ଡେ ।
ଅଶ୍ୱତ୍ଥାମାର ମୁଣ୍ଡ କାଟିବାକୁ ଧାଇଁ
ଆସୁଥିଲା ବିଜୁଳିଜ୍ୟୋତିକି ଜିଣାଇ ।
ଦ୍ରୌଣି ହସ୍ତଲାଘବ ଯୋଗୁଁ କାଟି ତାହା
ଛିନ୍ଦିଲେ ଶିଖଣ୍ଡୀଙ୍କ ହଳଇ ଦ୍ୱିବାହା ।
ଶିଖଣ୍ଡୀ ଅଶ୍ୱତ୍ଥାମା ଶରେ ପାଇ ପୀଡ଼ା
ସାତ୍ୟକିଙ୍କ ରଥେ ବସିଲେ ଧରି କ୍ରୀଡ଼ା ।
ଅଳମ୍ବୁଷ ଠାରେ ସାତ୍ୟକି ବାଣ ଛାଡ଼ି
କରିଲେ ଉଗ୍ରକ୍ରୋଧକୁ ହୃଦୟରୁ ଛାଡ଼ ।
ଅଳମ୍ବୁଷ ଯେ ଅର୍ଦ୍ଧଚନ୍ଦ୍ର ଶର ମାରି
ସାତ୍ୟକି ହାତ ଧନୁଟିକୁ ଦେଲେ ସାରି ।
ପୁଣି ଅଳମ୍ବୁଷ ରାକ୍ଷସ ଧରି ବେଶ
ମାୟାରେ ଶରବୃଷ୍ଟି କଲା ସେ ପ୍ରକାଶ ।
ଅର୍ଜୁନ ଦେବା ଐନ୍ଦ୍ର ଅସ୍ତ୍ରକୁ ମାଧବ
ବନ୍ଧିଣ କଲେ ମାୟାଅସ୍ତ୍ରର ଅଭାବ ।
ଏ ବାହାରେ ଅଳମ୍ବୁଷକୁ ଅସ୍ତ୍ର ଘାଇ
ପୀଡ଼ା ଦେଲା ଆହେ ହସ୍ତିନା ନରସାଇଁ ।
ଅଳମ୍ବୁଷ ରାକ୍ଷସ ଜୟରୁ ମାନସ
ଛାଡ଼ି ପଳାଇଲା ଦେଖାଇ ପୃଷ୍ଠଦେଶ ।
ଅଳମ୍ବୁଷ ବୀରକୁ ଜିଣିଣ ସାତ୍ୟକି
କୁରୁ ସେନା ଦେହକୁ କଲେ ଟିକି ଟିକି ।
ଏହିକାଳେ ଧୃଷ୍ଟଦ୍ୟୁମ୍ନ ବିନ୍ଧି ବାଣ
ଆଚ୍ଛାଦିଲେ ଦୁର୍ଯୋଧନର ଅପଘନ ।
କୁରୁ ପୁଅ ଧୃଷ୍ଟଦ୍ୟୁମ୍ନ କାଣ୍ଡେ ବାଧା
ନ ପାଇ କାଣ୍ଡି ଯିବୁ ବୋଇଲେ ଲଢ଼ କଥା ।

ଧୃଷ୍ଟଦ୍ୟୁମ୍ନଙ୍କୁ ଯେ ଷାଠିଏ ଶରେଣି
ଭାଣ୍ଡ ବାହୁ ବିନ୍ଧିଲେ ଯୁଦ୍ଧଦାଣ୍ଡେ ମିଶି ।
ଦ୍ରୁପଦ-ନନ୍ଦନ ତା ନ ସହି ଦୁର୍ଯ୍ୟୋଧନ
ଘୋଡାଙ୍କୁ ମାରି କରି ଧନୁ କଲେ ଭଙ୍ଗ ।
ଏ ବାହାରେ ଶଣ୍ଡିକ ସାତ କାଣ୍ଡ ବିନ୍ଧି
ଦେଲେ ଦୁର୍ଯ୍ୟୋଧନଙ୍କ ପ୍ରାଣୁଟିକ ରୁନ୍ଧି ।
କୁନ୍ତି ସୁତ ଯୁଦ୍ଧେ ପାଇଲେ ଦେଲେ ଦଶା
ନ ଛାଡ଼ିଲେ ଯୁଦ୍ଧକୁ ସେ ତ ମହାଯଶା ।
ଫଣୀ ଖଣ୍ଡା ଦୁହିଙ୍କି ଧରି କରଯୋଗେ
ଧାଇଁଲେ ଧୃଷ୍ଟଦ୍ୟୁମ୍ନ ଆରେ ମାରି ରାଗେ ।
ଶକୁନି ତାହା ଦେଖି ଧାଆଁଇ ରଥକୁ
ବସାଇଲେ ରଥରେ କୁନ୍ତିର ସୁଅକୁ ।
କୁନ୍ତି ପୁଅ ଦୁର୍ଯ୍ୟୋଧନଙ୍କୁ ରଣେ ଜିଣି
ବିନ୍ଧି ଧୃଷ୍ଟଦ୍ୟୁମ୍ନ କରେ ଶରଶ୍ରେଣୀ ।
କୁନ୍ତି ସେନାପାଳକୁ କଲେ ନିବାରଣ
ଦେଖାଇଣ ତାହାଙ୍କର ବୀରପଣ ।
କୃତବର୍ମା ଭୀମସେନଙ୍କୁ ବିନ୍ଧି ଶର
ବୋଇଲେ ଭାଙ୍ଗି ଯିବ ଆଜ ବୃକୋଦର ।
ଭୀମ ବୋଇଲେ ଆହେ ରହ ରହ ଭାଇ
ଆଜ ମୋ ବଳ ଦେଖୁ କୁନ୍ତି ଆଖି ଦୁଇ ।
ଏତେ କହି କୃତବର୍ମାଙ୍କୁ ମାରଗଣ—
ଗଣ ଗୁଣେ ଯୋଖି ବିନ୍ଧିଲେ ଗରଜଣ ।
ଭୀମ କାଣ୍ଡେ କୃତବର୍ମାଙ୍କ ଗଣ୍ଡି-ହାଣ୍ଡ
ପାଇ ରକ୍ତ ପିଇଲେ ହୋଇଣ ଦବଣ୍ଡି ।
କୃତବର୍ମାବୀର ଅତନ୍ତ ମହାରଥ
ତେବେ ହେଲେ ନ ଛାଡ଼ିଲେ ସେ ଯୁଦ୍ଧପଥ ।
ଭୀମ ତାହା ନ ସହି ସାରଥି ଅଶ୍ୱଙ୍କୁ
ତାହାଙ୍କର ନେଲେ ଯମଙ୍କ ନଗରକୁ ।
ଧ୍ୱଜକୁ ମଧ୍ୟ କାଣ୍ଡ ଚାଏ ବିନ୍ଧି କାଟି
ଫୁଟାଇଲେ କୃତବର୍ମାଙ୍କର ଗଣ୍ଡି ଟି ।
ମରନ୍ତେ ଘୋଡା କୁନ୍ତି ବୃଷଭ ଶକା ରଥ
ଆରୋହିଲେ କୃତବର୍ମାଙ୍କୁ ଧରି ସାଥ ।
ଭୀମସେନ ତ କାଳଦଣ୍ଡ ପରି କୁନ୍ତ
କୂଳ ନାଶିଲେ ସେ ବଡ଼ ହକାକାରୁ ।
ଧୃତରାଷ୍ଟ୍ର ବୋଇଲେ ପୋଏ ପଳାଇଲେ
ମଲେ ବୋଲି ନଷ୍ଟ ତ କହିବା ହୋଇଲେ ।

ପାଣ୍ଡୁନନ୍ଦନମାନଙ୍କର ତ ବଖାଣ
ବଚନେ ସଞ୍ଜୟ ହେ ନ କର ପରକାଶ ।
ସଞ୍ଜୟ ବୋଇଲେ ରାଜନ ଆମ୍ଭ ଯୋଧ
ବଳକୁ ଅନୁରୂପ କରୁଛନ୍ତି ଯୁଦ୍ଧ ।
କୁନ୍ତି ପୁଏ ମଧ୍ୟ ଯୁଝନ୍ତି କ୍ରୋଧ ହୋଇ
ଦଇବକୁ ମାଣିକ ଟି କଏ ବଳାଇ ।
ଗଙ୍ଗାଦି ନଦୀ ସମୁଦ୍ରରେ ହେଲେ ଗୋଟି
ରହି ପାରନ୍ତିକି ମଧୂର ଭାବଟି ।
ସେ ରୂପେ ପାଣ୍ଡବଙ୍କର ଭୁଜର ପ୍ରତାପେ
ପଡନ୍ତି କୁନ୍ତି ପୋଏ ନିଜ ପରିତାପେ ।
କୁନ୍ତି ଅପରାଧରୁ ଆହେ ମହୀପାଳ
ପୁଅ କୁଳେ କୁଷ୍ଟଏ ହୋଇବେ ନିର୍ମୂଳ ।
ଯମଙ୍କର ନଗର କୁନ୍ତିର ନଗର
ଲୋକଙ୍କରେ ପୂରିବ ଆହେ ନରବର ।
ପ୍ରାଣ ଛାଡ଼ ରାଜାଏ କୁନ୍ତିପାଇଁ ଯୁଝି
ଶୋଉଛନ୍ତି ନଷ୍ଟ ତ ପାଇ ରଣମଝି ।
ସପତମ ଦିନ ପୂର୍ବାହ୍ଣେ ଜନକସ୍ୱ
ଯେ ରୂପେ ହେଲା ଶୁଣ ଅମ୍ବିକାତନୟ ।
ଅବନ୍ତୀ ଦେଶ ରାଜା ବିନ୍ଦ ଅନୁବିନ୍ଦ
ଇରାବାନଙ୍କ ତୁଲେ ଆରମ୍ଭିଲେ ଦ୍ୱନ୍ଦ୍ୱ ।
ଇରାବାନ କ୍ରୋଧ ହୋଇଣ ଶର ବିନ୍ଧି
ସେ ଦୁଇ ରଥୀ ରଥଦାଣ୍ଡ ଦେଲେ ରୁନ୍ଧି ।
ସେ ଦୁହେଁ ମଧ୍ୟ ଇରାବାନ ତୁଲେ ଯୁଦ୍ଧ
ଆରମ୍ଭିଲେ ମନରେ ଘେନି ତାଙ୍କ ବଧ ।
ସେ ତିନି ଲୋକଙ୍କର ଯୁଦ୍ଧରେ ବିଶେଷ
ଜାଣି ନ ପାରିଲା ହେ କାହାରଟି ଦୋଷ ।
ଇରାବାନ ଅନୁବିନ୍ଦଙ୍କ ଚାରିଘୋଡ଼ା
ଚାରିକାଣ୍ଡରେ କଲେ ଯମପୁରେ ଛଡ଼ା ।
ଭଲ ଦୁଇକାଣ୍ଡ ବିନ୍ଧିଣ ଇରାବାନ
ଧନୁ ତୁଲେ କେତୁକୁ କରିଦେଲେ ଭଙ୍ଗ ।
ଅନୁବିନ୍ଦ ରଥ ଛାଡ଼ିଣ ବିନ୍ଦ ରଥେ
ବସି ସୁସ୍ଥ ହୋଇ ଧଇଲେ ଧନୁ ହସ୍ତେ ।
ବିନ୍ଦ ତୁଲେ ସଙ୍ଗତ ହୋଇ ମାରଗଣ—
ଗଣେ ଇରାବାନଙ୍କୁ କଲେ ସେ ଆଚ୍ଛନ୍ନ ।
ଇରାବାନ କାଣ୍ଡକୁ ବିନ୍ଧିଣ ତୁହାଇ
ବିନ୍ଦ ସାରଥିକ ଦେଲେ ସେତୁ ବଡ଼ାଇ ।

ଏ ସକାଶୁଁ ରଥ ହୋଇଣ ଅସ୍ତବ୍ୟସ୍ତ
ଏଆଡ଼େ ସେଆଡ଼େ ଗଲା ସେ ହେଲେ ତ୍ରସ୍ତ ।
ଭଗବାନ ପୌରୁଷ ଦେଖାଇଣ ରଣେ
ତୁମ୍ଭ ସେନାପାଳଙ୍କୁ ଖେଦିଦେଲେ ବାଣେ ।
ଏଣୁ ସମୟରେଟି ହୈଡ଼ମ୍ବ ରାକ୍ଷସ
ଧାଇଁଲେ ଭଗଦତ୍ତଠାରେ ବଳ ବେଶ ।
ଭଗଦତ୍ତ ରାଜା ମହତ ହାତୀ ଚଢ଼ି
ହୈଡ଼ମ୍ବର ତୁଲେ ଯୁଝିଲେ ଆଗଚଢ଼ ।
ସେ ନର ରାକ୍ଷସର ପ୍ରବର୍ତ୍ତିଲା ଯୁଦ୍ଧ
ଅନ୍ୟୋନ୍ୟରେ ବସ୍ତ୍ରର କରି ମନେ ବଧ ।
ଦେବତାଙ୍କ ତୁଲେ ଋଷିଏ ତା ଦେଖିଲେ
ଆଚ୍ଛା ଯୁଦ୍ଧ କଲେ ଏ ବୋଲି ପ୍ରଶଂସିଲେ ।
ଘଟୋତ୍କଚ ଯୁଦ୍ଧରେ ନ ପାରିଲା ରକ୍ଷି
ଭଗଦତ୍ତ କଲେ ପାଣ୍ଡବସେନା ଦୁଃଖୀ ।
ଘଟୋତ୍କଚ ବିନା ପାଣ୍ଡବକୁଳରଥୀ—
ଘାକ ହେଲେ ଭଗଦତ୍ତଙ୍କ ଶରେ ମନ୍ତି ।
ପୁଣି ପାଣ୍ଡୁ ସୈନ୍ୟ ରଥୀଏ ଧରି ଧୈର୍ଯ୍ୟ
ବାହାରିଲେ ଯୁଦ୍ଧକୁ ଧନୁ କରି ସଜ ।
ଘଟୋତ୍କଚ ଯେ ଭଗଦତ୍ତ ଶିର ଶିଖେ
ମେଘ ପରି ଶରବୃଷ୍ଟି କ କଲେ ସୁଖେ ।
ଘଟୋତ୍କଚଙ୍କରଟି ମର୍ମକୁ ଦେଖାଇ
ଭଗଦତ୍ତ ବିନ୍ଧିଲେ ଶରକୁ ନଠାଇ ।
ଗର୍ଜିଲେ ଭଗଦତ୍ତ ବିନ୍ଧ ଶରଭିଡ଼ା
ନ ପାଇ ବ୍ୟଥା ଯୁଦ୍ଧେ ରକ୍ଷ ହେଲା ଛାଡ଼ା ।
ଭଗଦତ୍ତ ଚୌଦ ତୋମର କରେ ଧରି
ଫିଙ୍ଗିଲେ ଘଟୋତ୍କଚ ପରେ ଧାଇଁ କରି ।
ରାକ୍ଷସ କାଣ୍ଡକରେ ରାକ୍ଷସସିହାଣ
ଚଉଦ ତୋମରକୁ କଲା ଛିନ୍ନ ଭିନ୍ନ ।
ସତୁରି ଶର ଭଗଦତ୍ତର ଦେହକୁ
ବିନ୍ଧିଲା ମହାବାହୁ ଦେଖାଇ ବିକ୍ରମକୁ ।
ଭଗଦତ୍ତ ଯେ ଘଟୋତ୍କଚର ଘୋଡ଼ାଙ୍କୁ
ଦେଖାଇଲେ ନେଇ ଯମଙ୍କ ନଗରକୁ ।
ହତଅଶ୍ୱ ରଥରେ ରହି ଘଟୋତ୍କଚ
କାପ୍ସାରେ କରିଦେଲା ଯୁଦ୍ଧଭୂମି ଘଞ୍ଚ ।
ପ୍ରାଗ୍ ଜ୍ୟୋତିଷ ହାଣିକ ଶକ୍ତିଟାଏ ହାତେ
ଧରିଣ ବିନ୍ଧିଲା ଅତ୍ୟନ୍ତ କୋପଚିତ୍ତେ ।

ଭଗଦତ୍ତ କାଣ୍ଡରେ ଖଣ୍ଡଖଣ୍ଡ କରି
ସେ ଶକ୍ତି ଆସିଲାବେଳକୁ ଦେଲେ ସାରି ।
ଶକତି ଛାଡ଼ା ଦେଖି ଘଟୋତ୍କଚ ମଲ୍ଲ
ଭୟ ଆଗ୍ରେ କରନ୍ତେ ସ୍ୱଜନ ଗୁଡ଼ ଲଜ୍ଜା ।
ଭଗଦତ୍ତ ହସ୍ତୀଟି ପାଣ୍ଡବ ସଇନ—
ନଳନଳୁ ରାଜନ କଲା ମରଦନ ।
ଶଲ୍ୟ ଦୁଇ ଭଣଜା ଘରେ କାଣ୍ଡ ବନ୍ଧ
ଦେଲେ ତାହାଙ୍କର ଆସିବା ବାଟ ରୁନ୍ଧ ।
ସହଦେବ ବୀର ଦେଖାଇ ବୀରପଣ
ମାମୁଙ୍କୁ ନିବାରିଲେ ବିନ୍ଧି ମାରିଗଣ ।
ଶଲ୍ୟ ତାଙ୍କର ବୀର ଶୂରପଣ ଦେଖି
ଭଗିନୀସ୍ନେହେ ତା ଘେନିଲେ ବୁଜ ଆଖି ।
ନକୁଳଙ୍କ ଚାରି ଘୋଡ଼ାଙ୍କୁ ଚାରି କାଣ୍ଡେ
ଶଲ୍ୟ ବସାଇଲେ ନେଇଣ ଯମଦାଣ୍ଡେ ।
ନକୁଳ ସହଦେବ ଭାଇମାନେ ବସି
ଧଇଲେ ଦୁଇହାତେ ନଣ ହୋଇ ରୋଷୀ ।
ଦୁଇଭାଇ ଏକମନଟି ହୋଇ ଧନୁ
ଧରିଣ ଘୋଡ଼ାଇଲେ ଶଲ୍ୟଙ୍କର ତନୁ ।
ଶଲ୍ୟ ସେହିକାଳରେ ଦେଖାଇ ହେ ଟାଣ
କଲେ ଭଣଜାଙ୍କ ଶରକୁ ନିବାରଣ ।
ସହଦେବ କ୍ରୋଧ ହୋଇଣ ମାମୁ ବୁକୁ
ଫୁଟାଇଣ କଲେ କାଣ୍ଡେ ପ୍ରାଣ ଧୁକୁଧୁକୁ ।
ସେ ସକାଶରୁ ଶଲ୍ୟ ପାଇ ମହାପୀଡ଼ା
ମୋହ ଭଲେ ବସି ପଡ଼ିଣ ଗୁଡ଼ ଛାଡ଼ା ।
ସାରଥି ଶଲ୍ୟଙ୍କର ଦେଖି ମୋହ ଦଶା
ନେଇଗଲା ରଥ ନ ମାନି ଲୋକହସା ।
ତୁମ୍ଭ ପୁଅମାନେ ତା ଦେଖି ମନ ଦୁଃଖ
କରି ପୋତି ଦେଲେ ଅଧୋଦେଶରେ ମୁଖ ।
ମାମୁଙ୍କୁ ଜିଣିକରି ଭଣଜା ଯାଉଁଟି
ବଜାଇ ଶଙ୍ଖ ରଡ଼ି କଲେ ମେଲି ପାଟି ।
ତୁମ୍ଭର ସେନାପାଳକ ସେ ରଡ଼ି ଶୁଣିଣ
ରକ୍ଷିବା ପ୍ରାଣ ବୋଲି ଛାଡ଼ିଦେଲେ ରଣ ।
ଯୁଧିଷ୍ଠିର ଶ୍ରୁତାୟୁଙ୍କୁ ନେତ୍ରରେ ଦେଖି
ଯୁଝିବାକୁ ଧାଇଁଲେ ହୋଇ ଅତି ସୁଖୀ ।
ନତପର୍ବ ନ କାଣ୍ଡ ଆପଣା ଭଳିତ
ଦେଖାଇଣ ବିନ୍ଧିଲେ ଶ୍ରୁତାୟୁଙ୍କ ପ୍ରତି ।

ଶ୍ରୁତାୟୁ ଯୁଧିଷ୍ଠିର କାଣ୍ଡକୁ ନ ସହି
ସାତକାଣ୍ଡ ବିନ୍ଧିଲେ ଗୁଣରେ ବସାଇ ।
ସେ ସାତ ଯୁଦ୍ଧଦାଣ୍ଡେ ବ୍ରଣ୍ଡରେ ଗମିଲେ
ଯୁଧିଷ୍ଠିର ଗଣ୍ଡିରୁ ପ୍ରାଣକୁ ଖୋଜିଲେ ।
ବଜ୍ରହକର୍ଣ୍ଣ କାଣ୍ଡ ପାଣ୍ଡବ ମହାବୀର
ବକ୍ଷ ଉରଦେଶ ଭେଦିଲେ ଶ୍ରୁତାୟୁର ।
ଭଲ୍ଲକାଣ୍ଡରେ ଶ୍ରୁତାୟୁଙ୍କର ଧ୍ୱଜଟି
କାଟି ପକାଇଲେ ଧର୍ମଙ୍କର ବେଟାଟି ।
ଶ୍ରୁତାୟୁ କେତୁ ପଡ଼ିବାର ନେତ୍ରେ ଦେଖି
ବିନ୍ଧିଲେ ସାତକାଣ୍ଡ ଉତ୍ପ୍ରୋଧ ଉପେକ୍ଷି ।
ଯୁଧିଷ୍ଠିର ତାହାକୁ ଦେଖିଣ ନ ସହି
କ୍ରୋଧରେ ଅଗ୍ନିପରି ଜାଳଦେଲେ ଦେହି ।
ଯୁଧିଷ୍ଠିରଙ୍କର ଟି କ୍ରୋଧରେ ଜଗତ
କମ୍ପିଲ ଅତ ହେ ଅମ୍ବିକା ଦେବୀ ସୁତ ।
ଦେବେ ଯୁଦ୍ଧ ଦେଖୁଥିଲେ ହୋଇଣ ଗୋଟି
ଦେଖି ନୃପ କ୍ରୋଧ ହୋଇଲେ ବ୍ୟାକୁଳଟି ।
ଋଷିମାନେ ମନରେ କଲେ ଚିନ୍ତ ଲୋକ
ଆଜ ନାଶ କରିବେ ପାଣ୍ଡବ ନାୟକ ।
ଏରୂପରେ ଭାବନା କରି ଲୋକସୃଷ୍ଟି
ଶାନ୍ତ ପାଇ ଜପ କରିଲେ ବୁଜ ଦୃଷ୍ଟି ।
ଯୁଗାନ୍ତ ସୂର୍ଯ୍ୟ ପରି ଯୁଧିଷ୍ଠିର ବପୁ
ଦିଶିଲା ରଣଦାଣ୍ଡେ କ୍ରୋଧେ ତାପୁ ତାପୁ ।
କୁରୁ ସୈନ୍ୟ ଜାବନେ ହୋଇଣ ନିରଖ
ତଳକୁ କରିଦେଲେ ଟେକଥିବା କଣ୍ଠ ।
ଯୁଧିଷ୍ଠିର ରାଜା ଜଗତ ପରିତାପ
ଦେଖି କରି କଲେ ଆପଣା କ୍ରୋଧ ଲୋପ ।
କାଣ୍ଡକେ ଶ୍ରୁତାୟୁର ମୁଠାରୁ ଧନୁ
କାଟି ପକାଇଲେଟି ଧର୍ମଙ୍କର ସୂନୁ ।
ସବୁ ଲୋକେ କୁନ୍ତ ନୟନେ ଚାହିଁଥିଲେ
ଶ୍ରୁତାୟୁ ହୃଦମଧ୍ୟେ ନାରଚ ବିନ୍ଧିଲେ ।
ଶ୍ରୁତାୟୁଙ୍କର ଘୋଡ଼ା ସାରଥିର ପ୍ରାଣ
ନେଇ ଗଲେ ପୁଣି ଦେଖାଇ ଦେହଟାଣ ।
ଶ୍ରୁତାୟୁ ଅଶ୍ୱ ହତ ଦେଖି ରଥ ଛାଡ଼ି
ପଳାଇଲେ ଯୁଦ୍ଧରୁ ହୋଇ ଭଡ଼ାଭଡ଼ି ।
କୁରୁ ପୁଅ ସେନା ଶ୍ରୁତାୟୁ ପଳାୟନ
ଦେଖି କରି ପଛକୁ କଲେଟି ବଦନ ।
ମେଲଘାଟି ଅଳ୍ପକ ପ୍ରାୟେ ପାଣ୍ଡୁବେଟା
ଶରଗିରେ ପୋଡ଼ିଲେ ସୈନ୍ୟ-କୁଟାଳଟା
ସାତ୍ୟକ ଧନୁ ଧରି ବଡ଼ ଅତିକୋପ
କୃପଙ୍କ ଦେହକୁ ବିନ୍ଧିଲେ ଯୋଖି କ୍ଷେପ ।
କୃପ ସାତ୍ୟକଙ୍କର କାଣ୍ଡକୁ ନିବାରି
ସେ ମଧ୍ୟ କାଣ୍ଡଟି ବିନ୍ଧିଲେ ଧନୁ ଧରି ।
ଚାଲି କାଣ୍ଡେ ସାତ୍ୟକ ସାରଥିର ପ୍ରାଣ
ନେଇଗଲେ କୃପ ଦେଖାଇ ଦେହଟାଣ ।
ଧ୍ୱଜକୁ ଯୁଦ୍ଧ ଦାଣ୍ଡେ କରି ଦୁଇଖଣ୍ଡ
କୃପାଚାର୍ଯ୍ୟ ଦ୍ୱିଜ ଛାଡ଼ିଲେ ମହାରଡ଼ ।
ଦୁଇପାଖ ସାରଥିଙ୍କି ବିନ୍ଧି ବାଣ
କୃପାଚାର୍ଯ୍ୟ ମାଇଲେ ଦେଖାଇଣ ଟାଣ ।
ସାତ୍ୟକ ଗଦା ଧରି ଧାଇଁ ଯୁଦ୍ଧଦାଣ୍ଡେ
ପିଟିଲେ କୃପଙ୍କ ସାରଥି ଅଶ୍ୱ ମୁଣ୍ଡେ ।
କୃପାଚାର୍ଯ୍ୟ ଅଶ୍ୱ ସାରଥି ମୃତ୍ୟୁ ଦେଖି
ଷୋଳକାଣ୍ଡ ବିନ୍ଧିଲେ ନୋହି କିଛୁ ଦୁଃଖୀ ।
ସେ ଷୋଳକାଣ୍ଡ ଭେଦି ସାତ୍ୟକ ଦେହକୁ
ରକତ ଧରି ମୁଖେ ପଶିଲେ ତଳକୁ ।
ସାତ୍ୟକ କ୍ରୋଧ ହୋଇ ଧରିବା ଗଦାଟି
ଫିଙ୍ଗିଲେ କୃପଙ୍କ ନେବାକୁ ଜୀବନଟି ।
କୃପ ସେ ଗଦା ଦେଖି କାଣ୍ଡେ ଦୁଇଖଣ୍ଡ
କରିଲେ କମ୍ପାଇଣ କରର କୋଦଣ୍ଡ ।
ସାତ୍ୟକ ଖାଣ୍ଡା କାଢ଼ି ତତପରେ
ଧାଇଁଲେ ମାରିବାକୁ କୃପଙ୍କ ଉପରେ ।
କୃପ ସେହିରୂପରେ କରେ ଖଣ୍ଡା ଟେକ
ଧାଇଲେ ସାତ୍ୟକଙ୍କି ହାଣିବା ପାଇଁକ ।
ସେ ଦୁହେଁ ଶାରେ ଭ୍ରି ଦେଖାଇ ପଟପାଟେ
ହଣାହଣି ହୋଇ ଲୁ ଭୂଜପଗାପଟେ ।
ସେ ସକାଣ୍ଡ ଦୁହେଁ ଭଜଣ ମହାମୋହ
ଶୋଇଲେ ଯୁଦ୍ଧଦାଣ୍ଡେ ଛାଡ଼ିଦେଇ କୋହ ।
କାଶୀଦେଶର ରଜା ସେତିକାଳେ ଆସି
ସାତ୍ୟକଙ୍କି ରଥେଥୋଇଲେ ହୋଇ ତୋଷି
କୁରୁ ଶଢ଼ା ଶକୁନ କୃପେ ଥୋଇ ରଥେ
ବୁହାଇଲେ ପୁଣି ରଥକୁ ଯୁଦ୍ଧପଥେ ।
ଧୃଷ୍ଟକେତୁ ଭୂରିଶ୍ରବାଙ୍କର ଉରକୁ
ନଉକାଣ୍ଡ ବିନ୍ଧିଲେ କରି ବିକ୍ରମକୁ ।

ସୋମଦତ୍ତସୁତ ହୃଦରେ ମାରଗଣ
ବହୁ ନନ୍ଦା କଲେ ସୂର୍ଯ୍ୟଙ୍କ ତେଜୋଗଣ ।
ଧୃଷ୍ଟକେତୁ ଅଶ୍ୱର ଭୂଲରେ ସୂତକୁ
ଭୂରିଶ୍ରବା ବେଳେ ଯମଙ୍କ ନଗରକୁ ।
ଘୋଡ଼ା ସାରଥିଙ୍କର ଚେନଣ ପବଣ
ଭୂରିଶ୍ରବା ଛାଡ଼ିଲେ ପୁଣି ଚାଣି ବାଣ ।
ଧୃଷ୍ଟକେତୁ ରଥ ଛାଡ଼ିଣ ଖଡ଼ାମାନ
ରଥକୁ ଆରୋହିଲେ ହୋଇଣ ନିଃଶଙ୍କ ।
ବିକର୍ଣ୍ଣ ଚିତ୍ରସେନ ଦୁର୍ମର୍ଷଣ ତିନ—
ଜଣ ଯାଇ ଯୁଝିଲେ ଡାକଣ ଆର୍ଜୁନ ।
ବାତ ପିତ କଫ ମିଶିଗଲ' ପରସ୍ପେ
ସେ ତିନହେଁ ଯୁଦ୍ଧରେ ମିଶିଲେ ହେ ଗପ୍ସେ
ଅଭିମନ୍ୟୁ ଭୂମ୍ବର ପୁଅଙ୍କୁ ବିରଥ
କଲେ ନ କାଟିଲେ ଧର୍ମକୁ ସ୍ମରି ମାଥ ।
ପୂର୍ବ ତ ବୋଲିଛନ୍ତି ଭୀମ ମାରିବାକୁ
କଲୁପେ ଜାଣି ଏ ଘେନନ୍ତେ ଜୀବନକୁ ।
ସେହିକାଳେ ଅର୍ଜୁନ ଯୁଦ୍ଧେ ହୋଇ ତ୍ରସ୍ତ
ବୋଇଲେ ଶୁଣ ଆହେ ମହାବାହୁ କୃଷ୍ଣ ।
ଦେଖ ଦ୍ରୋଣ କୃପଙ୍କୁ ସେନ ମୋ ପୁଅକୁ
ଯୁଝିବାକୁ ଯାଆନ୍ତି ବଳଣ ଗଗକୁ ।
ସେହିଠାକୁ ମୋ ରଥ ବାହ ହେ ଗୋବିନ୍ଦ
କରିବି ମୁଁ ଦ୍ରୋଣ ବୁଡ଼ାଙ୍କ ଭୂଲେ ଦ୍ୱନ୍ଦ ।
ଏହା ଶୁଣିଣ କୃଷ୍ଣ ବାହିଲେ ରଥୁଟି
ଯେଉଁଠାରେ ଥିଲେ ସୋଡର ଭଣଜାଟି ।
ଭୂମ୍ବର ସୈନ୍ୟଯାକ ଦେଖି ଅର୍ଜୁନଙ୍କୁ
ମଲ୍ଲିଁ ବୋଲି ଜାଣି ଜଲେ ଯିବନାକୁ ।
ଅର୍ଜୁନ ସେକାଳେ ଡାକିଲେ ସୁଶର୍ମାଙ୍କୁ
ଆସ ମୋ ଭୂଲେ ଭୂମ୍ବ ଯୁଦ୍ଧ କରିବାକୁ ।
ଆଜ ଭୂମ୍ବଙ୍କୁ ମୂର୍ଚ୍ଛି ପୂର୍ବପୁରୁଷଙ୍କୁ
ଦେଖାଇଲେ ନାଶିବ ମୋ ହୃଦ ଗଗକୁ ।
ସୁଶର୍ମା ଶୁଣି ଅରଜୁନଙ୍କ ବଚନ
ନ କହି କଥା ତାଙ୍କୁ ପୋଡିଲେ ବଦନ ।
ଭୂମ୍ବର ପୋଏ ବେଢ଼ି କରି ଅର୍ଜୁନଙ୍କୁ
ସେକାଳେ ଛାଡ଼ିଲେ ଦେଟାଇ ବିକ୍ରମକୁ ।
ପାର୍ଥ-ଗିରିବରେ ପୁଅଙ୍କ ଶରବୃଷ୍ଟି
ହୃଅନ୍ତେ ସେ ଜଗତୀ ସ୍ମରିଲେ ତଗଟି ।

ଭୂମ୍ବ ପୁତ୍ରମାନଙ୍କୁ କରି ହେଲସର
ଯୋଖିଲେ ଗାଣ୍ଡୀବର ମଧ୍ୟରେ ଆଶୁଗ ।
ଭୂମ୍ବର ପୁତ୍ରମାନଙ୍କର ଧନୁ କାଟି
ଦେଲେ ପୁଣି ମାର୍ଗଣଗଣେ ବଳକାଟି ।
ଏ ବାହାରେ ନୃପତିମାନଙ୍କର ଧନୁ
କାଟି ପକାଇଲେ କୁନ୍ତୀଙ୍କ ସାନ ସୂନୁ ।
ନୃପତିମାନଙ୍କ କବଚ ଭୂଲେ ମାଥ
କାଟି ଥରେ ନଣ ଆଉଁସି ବେଲେ ପାର୍ଥ ।
ସୁଶର୍ମା ଅର୍ଜୁନେ ଯୁଝିବା ମନ କରି
ବାହାରିଲେ ସଜନ କରେ ଧନୁ ଧରି ।
ବନ୍ଧଣ ମହାରଥୀ ସୁଶର୍ମା ପୃଷ୍ଠରକ୍ଷା
ହୋଇକରି ରହିଲେ କରି ଯୁଦ୍ଧେ କକ୍ଷା ।
କ୍ରୁଦ୍ଧ ହୋଇ ଅର୍ଜୁନ ଛାଡ଼ିଏଟି କାଣ୍ଡେ
ପୃଷ୍ଠରକ୍ଷାର ମୁଣ୍ଡ କାଟିଲେଟି ଖଣ୍ଡେ ।
ଦ୍ରୋଣେ ଯୁଝିବାକୁ ଅର୍ଜୁନ କରି ମନ
ଧୂଆଁଇଲେ ରଥବରକୁ ସେ ବହନ ।
ସୁଶର୍ମା ବନ୍ଧୁଙ୍କର ଦେଖିଣ ମରଣ
ଧାଇଁଲେ ଅର୍ଜୁନଙ୍କଠାକୁ ଛାଡ଼ି ବାଣ ।
ଶିଖଣ୍ଡୀ ଆଦ ମହାରଥୀ ଅର୍ଜୁନଙ୍କୁ
ଜଗିଲେ ଆସି ଦେଖି ସୁଶର୍ମା ନୃପଙ୍କୁ ।
ଅର୍ଜୁନ ଦୁର୍ଯୋଧନ ଜୟଦ୍ରଥ ଭୂଲେ
ଗଜାଙ୍କୁ ଯ ଜ ଯାଉ ବାଟରେ ଦେଖିଲେ ।
ମୁହୂର୍ତ୍ତେ ତାଙ୍କ ଭୂଲେ ଆରମ୍ଭିଣ ରଣ
ପୁଣି ଦ୍ରୋଣଠାକୁ କଲେ ସେହୁ ପ୍ରୟାଣ ।
ଯୁଧିଷ୍ଠିର ଶଲ୍ୟକୁ ଘୁଞ୍ଚ ଦେଇ କରି
ଧାଇଁଲେ ଦ୍ରୋଣଠାକୁ ଭାଇ ସଙ୍ଗେ ଧରି ।
ଦ୍ରୋଣ ସକଳ ପାଣ୍ଡୁସୁତଙ୍କର ବାଣ
ପାଇଲେ ଦେଲେ ସପ୍ତେ ନ ଛାଡ଼ିଲେ ରଣ ।
ଜୟଦ୍ରଥ ମହାରଥୀ ପଣଟି କରି
ବେଲେ ମହାରଥୀଙ୍କ ଧନୁକୁ କକୁରି ।
ଯୁଧିଷ୍ଠିର ନକୁଳ ସହଦେବ ବେହେ
ଦୁର୍ଯୋଧନ ବାଣ ଛାଡ଼ିଲେ ଅତି କୋହେ ।
କୃପ ଶଲ୍ୟ ଶଳ ବଳଣ ମାରଗଣ—
ଗଣକୁ ଘୁଞ୍ଚଦେଲେ ଆକାଶ-ଅଙ୍ଗଣ ।
ଦ୍ରୋଣ ଶିଖଣ୍ଡୀଙ୍କର ଧନୁଟିକ କାଟି
ଗରଜିଲେ ଆଣ କରିଣ ମେଲି ପାଟି ।

ଯୁଧିଷ୍ଠିର ବୋଇଲେ ଶିଖଣ୍ଡି ଶଳା ମୋର
ନଣବା ପ୍ରତିଜ୍ଞାକୁ କର ତ ଅନ୍ତର ।
ଦେଖ ଦେଖ ଭୀଷ୍ମ କାଟିଲେ ତୁମ୍ଭ ଧନୁ
ତୁମ୍ଭର କାଣ୍ଡେ ଏବେ ପୋଡ଼ୁ ତାଙ୍କ ତନୁ ।
ମୃଦୁ ହୋଇବାର କାଳ ଏ ହୋଇ ନାହିଁ
ତୁମ୍ଭଙ୍କୁ ଆଉ କସ କଣ୍ଟକ ବଢାଇ ।
ଭୀଷ୍ମ ଶରେ ଦେଖ ମୋ ସୈନ୍ୟ ପାଇ ପୀଡ଼ା
ପଳାଉଛନ୍ତି ଯୁଦ୍ଧଦାଣ୍ଡେ ନୋହି ଛିଡ଼ା ।
ତୁମ୍ଭେ ଥାଉ ହେଲ ପରାଏ କର ମୁଖ
ଧନୁ ତ ନାହିଁ ଆଉ କରରେ ବଶିଖ ।
ଯୁଧିଷ୍ଠିରଙ୍କର ବଚନ କର୍ଣ୍ଣେ ଶୁଣି
ଭୀଷ୍ମ ବଧେ ଶିଖଣ୍ଡୀ ମନ ଦେଇ ପୁଣି ।
କରେ ମହାକୋଦଣ୍ଡ ଗୋଟାଏ ଧଇଲେ
ନିମିଷକେ ଗୁଣ ଦେଇଣ ଟଙ୍କାରିଲେ ।
ଶଲ୍ୟ ଯେ ଶିଖଣ୍ଡୀର ଆସିବାର ଦେଖି
ଆଗ୍ନେୟ ଅସ୍ତ୍ର କଲେ ହୋଇ ଅତି ସୁଖୀ ।
ଦ୍ରୁପଦଙ୍କ ପୁତ୍ର ଶିଖଣ୍ଡୀ ଭୟ ଛାଡ଼ି
ବାରୁଣଅସ୍ତ୍ର କଲେ ଶର ମନ୍ତ୍ର ପଢ଼ି ।
ବାରୁଣ ଅସ୍ତ୍ରଘାତେ ଶଲ୍ୟ ଅଗ୍ନି-ଅସ୍ତ୍ର
ମ୍ଳାନ ହୋଇଗଲା କ୍ଷଣକେ ଭଜି ଶସ୍ତ୍ର ।
ଭୀଷ୍ମ ଯୁଧିଷ୍ଠିରଙ୍କ ରଥ ଧୂଆଁ ଦେଖି
ଧନୁ ଧ୍ୱଜ କାଟିଲେ ହୋଇ ଅତି ଦୁଃଖୀ ।
ଭୀମ ସେହି କାଳରେ କରେ ଗଦା ବହି
ଜୟଦ୍ରଥଠାକୁ ପାଦରେ ଗଲେ ଧାଇଁ ।
ଜୟଦ୍ରଥ ଭୀମଙ୍କୁ ଯମଦଣ୍ଡ ପରି
ନ କାଣ୍ଡ ଯୋଟି ଗୁଣେ ବିନ୍ଧିଲେ ଉଚ୍ଚାରି ।
ଭୀମ ଜୟଦ୍ରଥଙ୍କ କାଣ୍ଡକୁ ନ ହେଜ
ମାଇଲେ ତାଙ୍କ ଅଶ୍ୱଗଣ ଯୁଦ୍ଧେ ମଜ୍ଜି ।
ତୁମ୍ଭ ପୁଅ ଚିତ୍ରସେନ କର ଉଦ୍ୟଅସ୍ତ୍ର
ଯୁଦ୍ଧ କଲେ କ୍ରୋଧେ ଥରଇ ଦେଇ ଗାତ୍ର ।
ଭୀମ କରରେ ଗଦା ଦେଖି କୁରୁମାନେ
ପଳାଇଲେ ସମର-ଦାଣ୍ଡରୁ ବହନେ ।
ଚିତ୍ରସେନ ଭୀମଙ୍କ ହାତେ ଗଦା ଦେଖି
ପଳାଇଲେ ଆନଠାରୁ ପ୍ରାଣଟିକ ରଖି ।
କେବଳ ହସ୍ତେ ଫରି ଖଣ୍ଡା ଧରିଥିଲେ
ଧନୁ ଶର ଦୁହିଁଙ୍କି ରଥେ ଥୋଇ ଗଲେ ।

ଭୀମ ସେହିକାଳେ ଫିଙ୍ଗିଲେ ଗଦାବର
ଚିତ୍ରସେନ ଅଶ୍ୱ-ସାରଥି କଲେ ଚୂର ।
ବିକର୍ଣ୍ଣ ଦେଖି ଚିତ୍ରସେନର ବିରଥ
ବସାଇଲେ ରଥରେ ତାଙ୍କୁ ଧରି ହାତ ।
ଭୀମ ସେହିକାଳେ ଭୀଷ୍ମଙ୍କୁ ଯୁଝିବାକୁ
ଧୁଆଁ ବଳେ ଘୋଡ଼ା ଛୁରଙ୍କି ତାଙ୍କ ଠାକୁ ।
ଯୁଧିଷ୍ଠିର ମୃତ୍ୟୁମୁଖକୁ ଗତ ପରି
ହେଲେ ଭୀଷ୍ମ ଆଗରେ କରେ ଧନୁ ଧରି ।
ଶତ ଶତ ସହସ୍ର ଶର ଯୁଧିଷ୍ଠିର
ବିନ୍ଧି ଆଚ୍ଛାଦିଲେ ଭୀଷ୍ମଙ୍କ ରଥବର ।
ଯୁଧିଷ୍ଠିର ଶରଜାଳକୁ ଭୀଷ୍ମ ବୁଢ଼ା
କାଟି ପକାଇଲେ ଦେଖାଇ ଯୁଦ୍ଧ ପ୍ରୌଢ଼ା ।
ନିମିଷ ମାତ୍ରକରେ ବିନ୍ଧି ମାରଗଣ
ଘୋଡ଼ାଇ ଦେଲେ ଭୀଷ୍ମ ପାଣ୍ଡବ ନୃପଗଣ ।
ଯୁଧିଷ୍ଠିର ରାଜନ ଅତିକ୍ରୁଦ୍ଧ ହୋଇ
କାଣ୍ଡେ ଭୀଷ୍ମ ଗଣ୍ଡିକ ବିନ୍ଧିଲେ କଠାଇ ।
କ୍ଷୁରକାଣ୍ଡରେ ଭୀଷ୍ମ ଯୁଧିଷ୍ଠିର କାଣ୍ଡ
ଛେଦିଦାଣ୍ଡେ କଲେ ରାଜନ ଦୁଇ ଖଣ୍ଡ ।
ଯୁଧିଷ୍ଠିର ଛୁରଘୋଡ଼ାଙ୍କର ପ୍ରାଣଟି
ଭୀଷ୍ମକାଣ୍ଡ ପାଇ ଯମଙ୍କୁ ଗଲେ ଭେଟି ।
ଯୁଧିଷ୍ଠିର ଘୋଡ଼ାଙ୍କ ମରିବାର ଦେଖି
ନକୁଳ ରଥରେ ବସିଲେ ହୋଇ ଦୁଃଖୀ ।
ଭୀଷ୍ମ ମାଦ୍ରୀପୁତ୍ର ଦୁହିଙ୍କି ଦେଖି ବେଗେ
ବିନ୍ଧିଲେ ବାଛୁ କାଣ୍ଡମାନ ତାଙ୍କ ଗାତେ ।
ନକୁଳ ସହଦେବ ଭୀଷ୍ମ କାଣ୍ଡେ ଦୁଃଖୀ
ହୋଇ ପ୍ରାଣ ବଳକେ ବୁଜ ଦେଲେ ଆଖି ।
ମନରେ କଲେ ଭୀଷ୍ମ ପରଣ ନ ନେଲେ
ବିଜୟ-ଲକ୍ଷ୍ମୀ ନେଇ ନ ପାରିବା ଭଲେ ।
ଯୁଧିଷ୍ଠିର ସକଳ ନୃପତିଙ୍କୁ ଚାହିଁ
ବୋଇଲେ ବଡ଼ ଭୀଷ୍ମ ବୁଢ଼ାକୁ ବଢ଼ାଇ ।
ତାହା ଶୁଣିଣ ରାଜାମାନେ ରଥ ଚଢ଼ି
ବେଢ଼ିଣ ଭୀଷ୍ମଙ୍କୁ ବିନ୍ଧିଲେ କାଣ୍ଡ କାଢ଼ି ।
ତୁମ୍ଭର ବାପୁ ମହାରଥୀଙ୍କର ପ୍ରାଣ
ହେନ ପକାଇଲେ କ୍ରୀଡ଼ାରେ ବିନ୍ଧି ବାଣ ।
ସେନା-ମୃଗ ମଧ୍ୟରେ ଭୀଷ୍ମ ସିଂହଶିଶୁ
ପରାଯେ କ୍ରୀଡ଼ା କଲେ ଧରି ଧନୁ-ଇଷୁ ।

ଭରତସିଂହ ଭୀଷ୍ମ ଶରାଗ୍ନିରେ ଜଳି—
ଗଲେ ପାଣ୍ଡୁ ନରପତିଙ୍କ ସେନାବଳୀ ।
ଫଳ ତାଳ ପରି ଯୋଦ୍ଧାଙ୍କ ମୁଣ୍ଡମାନ
ଠୋ ଶବ୍ଦରେ ମଣ୍ଡିଲେ ସେ ଯୁଦ୍ଧମଣ୍ଡଳ ।
ମୁଣ୍ଡମାନ ପଡ଼ିବା ଆଘାତରେ ଧରଣୀ
କମ୍ପିଗଲା ଆହେ ହସ୍ତିନା ନରମଣି ।
କ୍ଷତ୍ରିୟମାନେ ପରସ୍ପରେ ଡକାଡକ
ହୋଇ ଯୁଦ୍ଧ କଲେ ଧନୁକୁ କରେ ଟେକ ।
ଶିଖଣ୍ଡୀ ସେହିକାଳେ ରହ ରହ ବୋଲି
ବୁହାଇଲେ ରଥ ଭୀଷ୍ମଙ୍କ ଠାକୁ ପେଲି ।
ଭୀଷ୍ମ ଶିଖଣ୍ଡୀଙ୍କି ସ୍ତ୍ରୀ ବୋଲିଣ ଜାଣି
ସୃଞ୍ଜୟଙ୍କୁ ଯୁଦ୍ଧ କରିଲେ ଧନୁ ଟାଣି ।
ସୃଞ୍ଜୟମାନେ ଭୀଷ୍ମ ଆଗେ ସିଂହନାଦ
କରିଣ ଧନୁ ଟଙ୍କାରିଲେ ବହୁ ମୋଦ ।
ସୂର୍ଯ୍ୟ ପଶ୍ଚିମକୁ ଯାଆନ୍ତେ ଦୁଇ ସେନା
ମଗମଣ ହୋଇଣ ମଲେ ଅଜଣା ।
ସାତ୍ୟକ ଧୃଷ୍ଟଦ୍ୟୁମ୍ନ ରଥକୁ ଯୋଟାଇ
ଦେଲେ କାଣ୍ଡେ କୁରୁର ସୈନ୍ୟଙ୍କୁ ଲୁଟାଇ ।
କୁରୁ ଲୋକମାନେ ସାତ୍ୟକ ଧୃଷ୍ଟଦ୍ୟୁମ୍ନ
ବାଣ ପାଇ ମନଟି ନ କଲେ ଦମନ ।
ଧୃଷ୍ଟଦ୍ୟୁମ୍ନଙ୍କର କାଣ୍ଡରେ କୁରୁ ଲୋକେ
ଆର୍ତ୍ତ ହୋଇ ନୃପ ପାଡ଼ିଲେ ଡକା ଥୋକେ ।
ବିନ୍ଦ ଅନୁବିନ୍ଦ ଯୋଦ୍ଧାଙ୍କର ବଚନ
ଶୁଣିଣ ଧାଇଁଲେ ଝମକ କରବାଳ ।
ଧୃଷ୍ଟଦ୍ୟୁମ୍ନଙ୍କର ଘୋଡ଼ାଙ୍କୁ ଶରେ ମାରି
ଦେଲେ ତାଙ୍କ ଆସିବା ଦାଣ୍ଡକୁ ନିବାରି ।
ପାଞ୍ଚାଳସୁତ ଧୃଷ୍ଟଦ୍ୟୁମ୍ନ ପାଇ ପୀଡ଼ା
ରଥ ଛାଡ଼ି ସାତ୍ୟକ ରଥେ ହେଲେ ଛିଡ଼ା ।
ଯୁଧିଷ୍ଠିର ରାଜନ ଘେନ ସେନାଗଣ
ବିନ୍ଦ ଅନୁବିନ୍ଦେ ଆରମ୍ଭ କଲେ ରଣ ।
ଦୁର୍ଯ୍ୟୋଧନ ବିନ୍ଦ ଅନୁବିନ୍ଦର ରକ୍ଷା
ପାଇଁ ଯୁଦ୍ଧେ ଧାଇଁଲେ କରି ମହାକକ୍ଷା ।
ଅର୍ଜ୍ଜୁନ କ୍ରୋଧରେ ଗାଣ୍ଡୀବଧନୁ ଧରି
ଦେଲେ କୁରୁର ଯୋଦ୍ଧାଗଣଙ୍କୁ ସଂହାରି ।
ଦ୍ରୋଣ କୁରୁ ସୁଅର ପ୍ରିୟ ମନେ ଧରି
ପାଞ୍ଚାଳ ସୈନ୍ୟଙ୍କୁ ବଧିଲେ ଲକ୍ଷ କରି ।

ଦୁର୍ଯ୍ୟୋଧନ ଆଦି କୁରୁର ସୁଅମାନେ
ଭୀଷ୍ମଙ୍କୁ ଆଗ କରି ପାଣ୍ଡବ ସଇନେ ।
ଯୁଦ୍ଧ କଲେ ଜୟ-ଲକ୍ଷ୍ମୀକି ନେବା ପାଇଁ
କହିବାକୁ ଜାଣ ତ ଆହେ ନରସାଇଁ ।
ଏହି ସମୟରେ ଆଦତ୍ୟ ଅଂରକତ—
ବର୍ଣ୍ଣ ଭଳି ପାଇଲେ ଅସ୍ତ-ପରବତ ।
ସେହିକାଳରେ ଦୁଇସେନା ଛଟ ଭେଦ
କଳ କଳ ହୋଇ ବହିଲା ରକ୍ତନଦୀ ।
ବଳୁଆ ଶାଗୁଣାଏ ତା ଦେଖି ରକତ
ପିଇକରି ଖାଇଲେ ନରଙ୍କ ପିଶିତ ।
ପିଶାଚମାନେ ରାକ୍ଷସଙ୍କୁ ସଙ୍ଗେ ଧରି
ବେଢ଼ିଲେ ସେ ନଦୀ ବିକଟ ଧ୍ୱନି କରି ।
ପାର୍ଥ ସୁଶର୍ମାଦି ରାଜାଙ୍କ ଭଙ୍ଗି ଟାଣ
ବାହାରିଲେ ବସାକୁ ଲଗାଇ ଗହଣ ।
ଯୁଧିଷ୍ଠିର ଭାଇମାନଙ୍କୁ ସଙ୍ଗେ ଧରି
ବାହୁଡ଼ିଲେ ବାହାକୁ ହୋହଲଇ କରି ।
ଭୀମସେନ ଦୁର୍ଯ୍ୟୋଧନଙ୍କୁ ଦେଇ ଦଶା
ବସାକୁ ବାହୁଡ଼ିଲେ ପାଇଣ ପ୍ରଶଂସା ।
ଦୁର୍ଯ୍ୟୋଧନ ନୃପଗଣଙ୍କୁ ଭୀଷ୍ମ କୁଳେ
ଚଳାଇ ଆଗରେ ବସାକୁ ବାହାରିଲେ ।
ଶଲ୍ୟ କୃତବର୍ମା ଯେ କୃପ ଦ୍ରୋଣ ଦ୍ରୌଣି
ସେନା ଘେନ ଗୃହେ ଗମିଲେ ଧନୁ ଟାଣି ।
ସାତ୍ୟକ ଧୃଷ୍ଟଦ୍ୟୁମ୍ନ ବସିକରି ରଥେ
ବାହାରିଲେ ହେରି କଣ୍ଟି ବସାପଥେ ।
ଏରୂପେ କୁରୁ ପାଣ୍ଡୁ ସଇନେ ବାହାରି
ଆସି ଯେଝା ବସାରେ ରହିଲେ ସୁଖ ଧରି ।
ଦେହରୁ କାଣ୍ଡମାନ କଢ଼ାକଢ଼ି ହେଲେ
ଜଳରେ ପଶି ଦେହ ରକତ ଧୋଇଲେ ।
ତଦନ୍ତେ ଶୁଖିଲା ବସ୍ତ୍ରକୁ ପହରି
ଗୀତ ବାଦ୍ୟ ରସରେ ମନ ନେଲେ ହରି ।
ଶମରେ ନିଦ୍ରା ଦେଲେ କରିଣ ଆଶ୍ରୟ
ଶୋଇଲେ ସେନାଗଣ ପାଡ଼ି ଶେଳଚୟ ।
ଏଠାରେ ସପ୍ତମ ଦିବସ ଯୁଦ୍ଧ ଗତ
ସାରିଲେ କବି ବେଦବ୍ୟାସ ମହାଯତ ।
କହଇ କୃଷ୍ଣସିଂହ ନରେଶ ଗୀତରେ
ଏ ସଂସାର-ବନ୍ଧକୁ ତରିବା ମତରେ ।

## ଅଷ୍ଟମ ଦିନ

ଏଥିଅନ୍ତେ ରଜନୀ ଅନ୍ତେ ଦୁଇସେନା
ବାହାରିଲେ ଯୁଦ୍ଧକୁ ହୋଇ କୋପମନା ।
ସିନ୍ଧୁ ଗରଜନକୁ ଦୁଇ ସେନା ମୁଖ—
ଧ୍ୱନି ହୋଇଲାଟି ସେହିକାଳରେ ଯୋଖ ।
ଭୀଷ୍ମ ଦ୍ରୋଣ ଯେ ବଳବନ୍ତ ଚିତ୍ରସେନ
ଦୁର୍ଯ୍ୟୋଧନ ବିକର୍ଣ୍ଣ ହୋଇ ଏକ ମନ ।
ପାଣ୍ଡବଙ୍କ ତୁଲେ ଯୁଝିବା ମନେକରି
ବ୍ୟୂହ କରିବାକୁ ସେ ବସିଲେ ସତ୍ୱର ।
ସେକାଳେ ପିତାମହ ହୋଇ ଅଗ୍ରସର
କଲେ ବ୍ୟୂହ ଗୋଟାଏ ତା ନାମ ସାଗର ।
ବାହନ-ଲହଡ଼ୀରେ ସେ ସାଗର ବ୍ୟୂହ
କଲା ସକଳ ପ୍ରାଣୀମାନଙ୍କର ମୋହ ।
ମାଳବ ଦାକ୍ଷିଣାତ୍ୟ ଆବନ୍ତ୍ୟଙ୍କୁ ତୁଲେ
ନେଇଣ ଭୀଷ୍ମ ରଥୀ ଆଗରେ ରହିଲେ ।
କ୍ଷୁଦ୍ରକ ପାରଦ ଯେ ପୁଳିନ୍ଦକ ନେଇ
ତାହାଙ୍କର ହୋଇଲେ ଦ୍ରୋଣ ପୃଷ୍ଠସ୍ଥାମୀ ।
ଭଗଦତ୍ତ ମାଗଧ ପିଶାଚ କାଳିଙ୍ଗ
ସଙ୍ଗତେ ଧରି ନ ଛାଡ଼ିଲେ ଦ୍ରୋଣ ସଙ୍ଗ ।
ମେକଳ ତ୍ରୈପୁର ଯେ ଚକୁଳକ ତୁଲେ
ବୃହଦ୍ବଳ ବଳକୁ ଜଗିଣ ରହିଲେ ।
ପ୍ରବର କାମ୍ବୋଜଙ୍କୁ ତ୍ରିଗର୍ତ୍ତ ନୃପତି
ଧରି ବ୍ୟୂହ ଜଗିଲେ ହୋଇ କ୍ରୋଧମତି ।
ଅଶ୍ୱତ୍ଥାମା କରିଣ ମହାଘୋର ରଡ଼ି
ତ୍ରିଗର୍ତ୍ତକୁ ଜଗିଲେ କରେ ଧନୁ ଭିଡ଼ି ।
ଦୁର୍ଯ୍ୟୋଧନ ସୋଦର ଭାଇଙ୍କର ତୁଲେ
ଦ୍ରୌଣିଙ୍କ ପୃଷ୍ଠସାହା ଯାଇଣ ହୋଇଲେ ।
ଦ୍ରୌଣିଙ୍କର ଉତ୍ତରୁ କୃପ ମୋଢ଼ ନଣ
ରହିଲେ ଧନୁ ଧରି ବହି ମନେ ରୋଷ ।
କୁମ୍ଭର ପୁତ୍ରଙ୍କର ବ୍ୟୂହ କରିବାର
ଦେଖି ନୟନରେ ନୃପତି ଯୁଧିଷ୍ଠିର ।
ଧୃଷ୍ଟଦ୍ୟୁମ୍ନଙ୍କୁ ତ ବୋଇଲେ ସାଦର—
ବ୍ୟୂହ କଲେ ଭୀଷ୍ମ ତୁମ୍ଭେ ହେ ବ୍ୟୂହ କର ।
ଦ୍ରୁପଦସୁତ ଶୁଣି ନୃପତି ଉକତି
ଶୃଙ୍ଗାଟକ ବ୍ୟୂହ କଲେ ସେ ନରବର ।

ବ୍ୟୂହ ଦୁଇ ଶୃଙ୍ଗେ ସାତ୍ୟକି ଭୀମସେନ
ରଥୀ ହାତୀ ନେଇ ରହିଲେ କରି ସ୍ଥାନ ।
ବ୍ୟୂହର ନାଭି ଦେଶେ ଦ୍ରୌପଦେୟ ପଞ୍ଚ—
ଉତ୍ତର ସଙ୍ଗତେ ରହିଲେ ଇନ୍ଦ୍ରଷ୍ଟ ।
ବିରାଟ ଆଦି ନେଇ ଅଭିମନ୍ୟୁ ତୁଲେ
ଅର୍ଜୁନଙ୍କର ପୃଷ୍ଠଦେଶକୁ ଜଗିଲେ ।
ନକୁଳ ସହଦେବ କମ୍ପାଇଣ ଧନୁ
ସାହା ହେଲେ ଅର୍ଜୁନସୂନୁ ଧରି ମନ୍ୟୁ ।
ଏରୂପେ ବ୍ୟୂହ କରି ପାଣ୍ଡବ ଶଙ୍ଖରଡ଼ି
କରି ଆକାଶକୁ ଶବଦେ ଦେଲେ ଫୋଡ଼ି ।
ପରସ୍ପରେ ସବୁ ଯୋଦ୍ଧାଏ କୁହାକୁହି
ହୋଇଲେ ମାନସରେ ଯୁଦ୍ଧଇଚ୍ଛା ବହି ।
ସେହିକାଳେ ପାଣ୍ଡବ ଥାଟଙ୍କର ତୁଲେ
କୁମ୍ଭର ଥାଟଯାକ ମରାମରି ହେଲେ ।
ପାଟି ମେଲିଥିବା ସର୍ପଙ୍କର ପରାୟେ
ଧାଇଁଲେ ମାରଗଣ ଆକାଶରେ ସରାୟେ ।
ତଇଳବୁଡ଼ା ଶକ୍ତି ସୈନ୍ୟ-ମେଘୁ ଜାତ
ହୋଇଣ ନନ୍ଦା କଲେ ତେଜରେ ବିଦ୍ୟୁତ ।
ଗଦା ଗଦା ହୋଇ ତଳରେ ପଡ଼ି ଗଦା
ଦୁଇ ଥାଟଯାକକୁ କରିଦେଲେ ପଦା ।
ଖଣ୍ଡା ମନେ ଫଣି କୁଳରେ ଶୋଭା ପାଇ
ଦେଲେ ଦସ୍ତାତ୍ରୁଙ୍କର ହୃଦୟ କମ୍ପାଇ ।
ପରସ୍ପରରେ ରଥୀ ହାତୀ ମିଶାମିଶି
ହୋଇ ହେଲେ ସକଳ ଯମପୁରବାସୀ ।
ଦନ୍ତୀମାନେ ଦନ୍ତ ମାରନ୍ତେ ଅଗ୍ନି ଜାତ
ହୋଇ ଯୁଦ୍ଧଭୂମିରେ ପଡ଼ିଲା ବହୁତ ।
ପ୍ରାସ ବାଜ ଗଜଯୋଦ୍ଧାଏ ପ୍ରାସ ପାଇ
ଶୈଳ ବୃକ୍ଷ ଭଳି ପଡ଼ିବାପରି ହୋଇ ।
ଗଜସ୍କନ୍ଧ ଉପରୁ ପଡ଼ି ମସ୍ତଦେଶେ
କପାଳଟିକୁ ଆଉଁସିଲେ ନସତେ ସେ ।
ପାଇକେ ପରସ୍ପର ହୋଇ ମରାମରି
ଘାତିମାନ କରିଲେ ହେଉ ଫେରାଫେରି ।
ଅନ୍ୟୋନ୍ୟେ ମିଶାମିଶି ହୋଇ ଦୁଇ ଥାଟ
ମରାମରି ହେଲେ ବଢ଼ାଇ ଯମରାଷ୍ଟ୍ର ।
ଭୀଷ୍ମ ସେକାଳେ ଧନୁଗୁଣକୁ ଟଙ୍କାରି
ବାହାରିଲେ ପାଣ୍ଡୁସେନାଙ୍କୁ ଯୁଦ୍ଧ କରି ।

ତାହାର ଧୃଷ୍ଟଦ୍ୟୁମ୍ନାଦି ରଥୀବୃନ୍ଦ
ଭୀଷ୍ମଙ୍କ ହାଟ ଜଗି ଆରମ୍ଭିଲେ ଦ୍ୱନ୍ଦ୍ୱ ।
ଏ ସକାଶରୁ ହାତୀ ଘୋଡ଼ାଙ୍କ ମସ୍ତୁଡ଼
ପଡ଼ିଗଲା ରଥୀଏ ହେଲେ ଶର ଗୁଡ଼ ।
ଭୀଷ୍ମ ସେକାଳେ ପାଣ୍ଡବସେନାର ସନ୍ତାପ
ବଢ଼ାଇ ରୂପେ କଲେ ଯୋଦ୍ଧାଦୃଶ୍ୟ ଲୋପ ।
ଯୁଧିଷ୍ଠିର ଆଜ୍ଞାରେ ସୈନ୍ୟ ହୋଇ ଗୋଟି
ଭୀଷ୍ମ ବୁଢ଼ା ଉପରେ କଲେ ଶରବୃଷ୍ଟି ।
ପାଞ୍ଚାଳ ସୃଞ୍ଜୟ ସୋମକ ରଥୀଗଣ
ଭୀଷ୍ମହାତ ବାଣରେ ଲଭିଲେ ମରଣ ।
କେତେକ ରଥୀଙ୍କର ବାହୁ ମୁଣ୍ଡ କାଟି
ଲୋଟାଇଲେ ଭୂମିରେ କୁରୁବର ପିତାଟି ।
ସିପାଇମାନଙ୍କର କାଟିକରି ମୁଣ୍ଡ
ମଣ୍ଡି ପକାଇଲେ ସେ ସ୍ୱର୍ଣ୍ଣେ ଯୁଦ୍ଧଭାଣ୍ଡ ।
ଭୀଷ୍ମ କାଣ୍ଡ ବାଜନ୍ତେ ହାତୀ ଘୋଡ଼ା ବସା—
ମାନେ କଲେ ଯାଇଟି ଯମପୁରେ ବସା ।
ଭୀମ ବିନା ଭୀଷ୍ମଙ୍କ ଆଗେ ଯୁଝିବାକୁ
ନ ରହିଲେ କେହି ଟି କରି ସାହସକୁ ।
ଭୀମ ଭୀଷ୍ମଙ୍କର ସେ ଭୟଙ୍କର ରଣ
ଦେଖିଣ ଯୋଦ୍ଧାମାନେ ଭାବିଲେ ମରଣ ।
ଦୁର୍ଯ୍ୟୋଧନ ସୋଦରଭାଇ ସଙ୍ଗେ ଧରି
ଧାଇଁଲେ ଭୀଷ୍ମଙ୍କର ରକ୍ଷାକୁ ସତ୍ୱରି ।
ଭୀମ ଯେ ଭୀଷ୍ମଙ୍କର ସାରଥିର ପ୍ରାଣ
ନେଇ ପକାଇଲେ ପ୍ରହାର କରି ବାଣ ।
କୁରୁବର ପୁତ୍ର ସୁନାଭଙ୍କର ମୁଣ୍ଡଟି
କାଟିଣ ବୋଇଲେ ଯମକୁ ଯାଅ ଭେଟି ।
ସୁନାଭର ମରଣ ଦେଖି କୁରୁ ସାତ—
ପୁତ୍ର ଥିଲେ କ୍ରୋଧରେ ଧସିଲେ ଗାତ ।
ଅପରାଜିତ ପଣ୍ଡିତକ ମହୋଦର
ଆଦିତ୍ୟକେତୁ ବିଶାଳାକ୍ଷ କୁଣ୍ଡଧାର ।
ବହ୍ୱାଶୀଙ୍କି ମିଶି ଏ ସାତ ମହାରଥୀ
ଭୀମଙ୍କୁ ଯୁଦ୍ଧ କଲେ ନୋହି କିଛି ବ୍ୟର୍ଥୀ ।
ମହୋଦର ନବକାଣ୍ଡ ଭୀମଙ୍କ ମୁଖେ
ବିନ୍ଧିଲେ ଧନୁର୍ଗୁଣ ମାଜି ଅତି ସୁଖେ ।
ଆଦିତ୍ୟକେତୁ ସତୁରି ବହ୍ୱାଶୀ ପଞ୍ଚ ଶରେ
ବିନ୍ଧିଲେ ଧନୁ ଟାଣି ଭୀମ ହୃଦଘରେ ।

କୁଣ୍ଡଧାର ନଅଟି ବିଶାଳାକ୍ଷ ସାତ
ପଣ୍ଡିତକ ତିନି ବହୁ ଅପରାଜିତ ।
ବୀର ଭୀମସେନ ବୋଇଲେ ଆସ ଆସ
ଫୁଙ୍କାଇଲେ ଗ୍ରନ୍ଥିକେ କୁରୁ ସବୁ ବସା ।
ଭୀମ ବାମକରରେ ଧନୁଟିକ ଟାଣି
ଶରେ ହେଲେ ଅପରାଜିତ ମୁଣ୍ଡ ହାଣି ।
କୁଣ୍ଡଳ ବୁଲେ କୁଣ୍ଡଧାରର ମୁଣ୍ଡକୁ
କାଟିଣ ଫିଙ୍ଗି ଦେଲେ ସେ ଯୁଦ୍ଧଭାଣ୍ଡକୁ ।
ପଣ୍ଡିତକକୁ ଶିଳୀମୁଖ ଭୀମ ବଳୀ
ବିନ୍ଧି ତାଙ୍କ ପ୍ରିୟପ୍ରାଣକୁ ଦେଲେ ଗିଳି ।
ବିଶାଳାକ୍ଷ ମୁଣ୍ଡକୁ ବିନ୍ଧି ତିନିକାଣ୍ଡ
ସଟୋଳୁତ ତାର କରିଲେ ଦୁଇଖଣ୍ଡ ।
ମହୋଦର ହୃଦକୁ ବିନ୍ଧିଣ ଆଶୁଗ
ନେଇଲେ ପ୍ରାଣ ହୃଦ କରିଣ ବିଭାଗ ।
ଆଦିତ୍ୟକେତୁ ମୁଣ୍ଡ ଭଲକାଣ୍ଡେ କାଟି
ଭଲ ବୋଲାଇଲେ ଧବମଦେଶାଟି ।
ବହ୍ୱାଶୀକ ସେ ଆଶୀବିଷର ସଦୃଶ
କାଣ୍ଡ ବିନ୍ଧିଣ ଦେଖାଇଲେ ପ୍ରେତବାସ ।
ଆଜ ଯେ ବାଣ କୁରୁ ପୋଏ ଦେଖୁଥିଲେ
ମରିବା ବୋଲି ମୁଣ୍ଡ ଆଉଁସିଣ ଦେଲେ ।
ଭାଇଙ୍କର ମରଣ ଦୁର୍ଯ୍ୟୋଧନ ଦେଖି
ମହାରଥୀଗଣେ ବସିଲେ ହୋଇ ଦୁଃଖୀ ।
ବୋଇଲେ ଭୀମର ପରାଣ ବିନ୍ଧ ବାଣ
ହେଳଯାଅ ଆହେ ସକଳ ନୃପଗଣ ।
ଶୁଣି ଦୁର୍ଯ୍ୟୋଧନ ବିଦୁର ବଚନକୁ
ହୃଦରେ ପକାଇ ଲଭିଲେ ବିକଳକୁ ।
କୁରୁ ହୃଦ ନେଇ ମୋହରେ ଜ୍ଞାନ ଗୁଡ଼
ଅହର୍ନିଶ ବସିବ ହସ୍ତିନାଶିରେ ଲେଡ଼ ।
ଏହି ସକାଶରୁ ଟି ଏହି ପାପଫଳ
ଫଳିଲା ଜାଣ ହେ ହସ୍ତିନାମଣ୍ଡପାଳ ।
ଦୁର୍ଯ୍ୟୋଧନ ଭୀଷ୍ମଙ୍କଠାକୁ ଧାଇଁଯାଇ ।
କାନ୍ଦିଲେ ଭାଇଙ୍କର ମରଣ ପକାଇ ।
ବଚନରେ ବୋଇଲେ ତୁମ୍ଭେ ଥାଉଁ ଥାଉଁ
ଭୀମ ନେଇ ହେଲା ମୋ ହୃଦ ଦାଉଦାଉ ।
ଏହା ଶୁଣିଣ କୁରୁ ପିତା କ୍ରୋଧ ହୋଇ
କହିଲେ ଦୁର୍ଯ୍ୟୋଧନ ମୁଖକୁ ଅନାଇଁ ।

ଧୃଷ୍ଟଦ୍ୟୁ ତ ଦ୍ରୋଣ ବଦୁର ଭୁଟଳ ବାବୁ
କହିଲ୍ଁ ନ ଦେଖିଲ୍ ଏବେ କ କହିବୁଁ ।
ଦ୍ରୋଣଙ୍କ ଭୁଜେ ମୂର୍ଚ୍ଛି ପଡ଼ିଲେ ପବଣ
ଘୁଡ଼ିବ ଭୁଟମ୍ଭ ଦଧ ପାଇବ ମରଣ ।
ଏଥି ଶଙ୍କା କିଛି ନ କର ନରପତି
ଯୁଦ୍ଧକୁ କର ଏ ତ କ୍ଷତ୍ର ଯୁଙ୍କ ଗତି ।
ଧୃତରାଷ୍ଟ୍ର ବୋଇଲେ ମୋ ପୋଏ ମରନ୍ତେ
ଶିଷ୍ଟ ଦ୍ରୋଣ ଜଳୁପ କଲେ ଜଡ଼ ମେ ତେ ।
ମୋର ପୋଏ ତ ନିଶ୍ଚ ପାଇଲେ ମରଣ
ଜାଣୁଛି ସବୁଠାରୁ ଦଇବ କାରଣ ।
ମହାରଥୀବୃନ୍ଦ ମଧ୍ୟେ ମୋ ପୋଏ ଥାଇ
ଭେଟି ଗଲେ ଶୁଣିଲି ପ୍ରେତପୁରସାଇଁ ।
ଏ ବ୍ୟଥାକୁ ବଳ ତ ଆଉ ଆନ ବ୍ୟଥା
ଉପମା ଦେବାକୁ ମୋ ବଚନାର୍ହି କଥା ।
ବିଦୁର ଶିଷ୍ଟ ଦ୍ରୋଣ ଗାନ୍ଧାରୀ ବଚନ
ନ ଶୁଣି ଦୁର୍ଯ୍ୟୋଧନ ଅର୍ଜିଲା ମରଣ ।
ସଞ୍ଜୟ ବୋଇଲେ ରାଜନ ନୃପ ବାଇ
ବିଦୁର ତ କହିଣ ଅଛନ୍ତି ବତାଇ ।
ସେ କଥାକୁ ସୁମର ଘୁଡ଼ି ହୃଦବ୍ୟଥା
ଶୁଣ ଏବେ କହିବା ବସି ଯୁଦ୍ଧ କଥା ।
ମଧ୍ୟାହ୍ନ ସମୟେ ଲୋକଙ୍କ କ୍ଷୟକର
ଯୁଦ୍ଧ ପ୍ରବର୍ତ୍ତିଲା ଦନ୍ତୀନାଦରବର ।
ଯୁଧିଷ୍ଠିର ଆଜ୍ଞାରେ ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନ
ସାତ୍ୟକି ମହାରଥୀ ଘେନିଣ ସଇନ ।
ଦ୍ରୋଣେ ମାରିବାକୁ ଧାଇଁଲେ ଯୁଦ୍ଧ ବାଞ୍ଛେ
ଥୋଇ କର ଧନୁର ମଧ୍ୟଦେଶ କାଣ୍ଡେ ।
ସୋମକଙ୍କୁ ଘେନିଣ ଦ୍ରୁପଦ ବିରାଟ
ଧାଇଁଲେ କରିବାକୁ ଦ୍ରୋଣେ ଯୁଦ୍ଧ ଆଣ୍ଟ ।
କୈକେୟ ଧୃଷ୍ଟକେତୁ କୁନ୍ତିଭୋଜାର୍ଜୁନ
ଦ୍ରୌପଦେୟ ଚେକିତାନ ଯେ କ୍ରୋଧମନ ।
ହୋଇ ଶିଷ୍ଟଠାରୁ ଆସିଲେ ନରବୟେ
ଶାୟକେ ତାଙ୍କ ପ୍ରାଣ ନେବାର ଉପାୟେ ।
ଅଭିମନ୍ୟୁ ଯେ ଭୀମ ଘଟୋତ୍କଚ କୁରୁ—
ଥାଟ ମଧ୍ୟେ ପଶିଲେ ନୋହି କିଛି ଭୀରୁ ।
ସୋମକ ସୃଞ୍ଜୟଙ୍କୁ ଦ୍ରୋଣ ମହାରଥୀ
ଶାୟକ-ଅନଳରେ କଲେ ଅତି ବ୍ୟଥୀ ।

ସୃଞ୍ଜୟମାନେ ଉଚସ୍ୱରେ ପାଡ଼ି ଡକା
ବୋଇଲେ ଦେଖ ଦ୍ରୋଣ ମାରୁଅଛି ଏକା ।
ଭୀମ ସେହିରୂପେ କୁରୁଙ୍କ କଦନ
କଲେ ଏକା ହୋଇ ବିନ୍ଧିଣ ମାରଗଣ ।
ଏହି ସକାଶୁ ଦୁଇ ଥାଟରୁ ରକତ
ବହିଁ ମହାନଦୀଟାଏ ହେଲା ଜାତ ।
ବଲ୍ଲୁଆ ଶାର୍ଙ୍ଗଣଙ୍କ ସନ୍ତୋଷ ବଢାଇ
ବହିଲା ସେହୁ ମହା-ଜାଠକୁ କୁଢ଼ାଇ ।
ଭୀମ ସେକାଳେ ପିଟିଦେଲେ ଗଜକୁଳ
ସେ ହେଲେ ସେହି ନଦୀ କୂଳର ଅଚଳ ।
ଭୀମଙ୍କର ନ ସହି କରି ବାଣ ଝଡ଼ି
ଭାଜିଲେ ହାଥିକୁଳ ଯୁଦ୍ଧଭୂମି ଛାଡ଼ି ।
ନକୁଳ ସହଦେବ ମାରି ଘୋଡ଼ାବଳ
ଦେଖାଇଲେ ନୃପ ଯୁଦ୍ଧରେ ଦେହବଳ ।
ଘୋଡ଼ାଏ ପଡ଼ିବାରେ ରକ୍ତ ସ୍ରୋତ ମଣ୍ଡି
ପାଇକରି କାଦୁଅ ହେଲା ନରସାଇଁ ।
ଅର୍ଜୁନ ମଧ୍ୟ ବିନ୍ଧିଣ ବାଣରାଜ
ରାଜାଙ୍କର ପରାଣ ଘେନିଲେ ଗରଜ ।
ରଥ ଗଜ ଅଶ୍ୱ ଚାମର ଛତ୍ର ଧ୍ୱଜ
ପଡ଼ି ମହୀ ଶୋଭା ବଢ଼ିଲା ମହାରାଜ ।
ଏ ବାହାରେ କୁଣ୍ଡଳ ଭୁଜେ ମୁଣ୍ଡଗଣ୍ଡି
ପଡ଼ିଲେ ଯୁଦ୍ଧଭୂମି ଧୂଳିକି ଦବେଣ୍ଡି ।
କବଚ ପାଗ ଖଡ୍ଗ ମୁଦ୍ରିକା କଙ୍କଣ
ଯୁଦ୍ଧଭୂମି-ଆକାଶେ ତାରା ହେଲା ଜାଣ ।
ଭୀଷ୍ମ ଦ୍ରୋଣ ଅଶ୍ୱଥାମା ଯେ କୃପ ନେହେ
ଦେଖୁଥିଲେ କୁରୁ ଧଇଲେ ଭୟ ଜାହେ ।
ଏହା ଦେଖି ଶକୁନି ଯୁଦ୍ଧରେ ଲଜସୀ
ହୋଇ ପାଣ୍ଡୁଥାଟେ ଧାଇଁଲା ହୋଇ ରୋଷୀ
ସେହି ରୂପରେ କୃତବର୍ମା ବିନ୍ଧି ବାଣ
ପାଣ୍ଡବସଇନରେ ପଶିଲେ ଆପଣ ।
କାମ୍ବୋଜ ଆରଟ୍ଟକ ସିନ୍ଧୁଦେଶଜାତ
ଅଶ୍ୱଙ୍କୁ ଇରାବାନ ଘେନିଣ ବହୁତ ।
କୁରୁ ସୈନ୍ୟ-ସିନ୍ଧୁରେ ମକର ପରା ହୋଇ
ପଶିଲେ ଅତ୍ୟନ୍ତ ସାହସେ ଉରା ବହି ।
ନାଗରାଜସୁତାଙ୍କ ଆଡ଼ରେ ଅର୍ଜୁନ
ସେହି ପୁତ୍ରକୁ କରିଥିଲେଟି ଜନନ ।

ନାଗରାଜସୁତାଙ୍କ ପନ୍ତର୍କି ଗରୁଡ
ଖାଇଥିଲେ ପୂର୍ବରେ ପାଇ ଶୋଷ ବଡ ।
ଏହା ସକାଶୁ ଐରାବତ ଦୁଃଖୀ ହୋଇ
ଅର୍ଜୁନଙ୍କୁ କନ୍ୟାକୁ ସମର୍ପିଲେ ନେଇ ।
ଏରୂପେ ତାଙ୍କ ଆତ୍ମଜ ହେଲେ ସେ ଜନନ
ମୋ କଥାରେ ସନ୍ଦେହ ନ କର ରାଜନ ।
ଇରାବାନ ପିତୃବ୍ୟ ପାର୍ଥଠାରେ ଶେଷ
କହି ଇରାବାନେ ଚେଜିଲେ ନରଈଶ ।
ଇରାବାନ ପାର୍ଥ ସ୍ୱର୍ଗକୁ ଯିବା ଶୁଣି
ସ୍ୱର୍ଗକୁ ବାହାରିଲେ ହୋଇ ଧନୁଷ୍ପାଣି ।
ବନ୍ଦନା କରି ଅରଜୁନଙ୍କ ପାଦରେ
ମୁଁ ତୁମ୍ଭ ପୁତ୍ର ବୋଲି କହିଲେ ମୋଦରେ ।
ଏ ବାହାରେ ତାଙ୍କ ଉଲୁପୀ ମାତା କହିଲେ
ଅରଜୁନ ସଙ୍ଗମ ପ୍ରେମରେ ହୋଇଲେ ।
ତାହା ମଧ୍ୟ ବତାଇ କହି ଇରାବାନ
ପରତେ କରାଇଲେ ଅରଜୁନ ମନ ।
ଅରଜୁନ ପୁତ୍ରର ଶୁଣି ସତ୍ୟ ବାଣୀ
କୋଳାଗ ପକାଇଲେ ତାଙ୍କୁ ସେହିକ୍ଷଣି ।
ବୋଇଲେ ବାବୁ ଆମ୍ଭେ କୁରୁ କୁଳେ ଯୁଦ୍ଧ
କରିବା କାଳେ ଆସି କରିବଟି ବଧ ।
ଏ ସକାଶରୁ ଇରାବାନ ଭରା ହୋଇ
ଭାରତ ସମରକୁ ଆସିଲେ ଗୋସାଇଁ ।
ତୁମ୍ଭ ଯୋଦ୍ଧାମାନଙ୍କ ଶୋଣିତ ପରଣ
ଇରାବାନ ଆଣିବା ଅଶ୍ୱେ ମନେ ଜାଣ ।
ଯୋଦ୍ଧାମାନେ ପଡ଼ନ୍ତେ ହୋଇ ଭଡ଼ଭଡ଼
ଯୋଦ୍ଧାମାନେ କରନ୍ତୁ କରିଦେଲେ ଆଡ଼ ।
ସିପାଇଏ ପରସ୍ପରରେ ମରାମରି
ହେଲେ ଯୋଦ୍ଧାମାନଙ୍କୁ ଧରାଧରି କରି ।
ଶକୁନି ଛଅପୁଅ ଗବାକ୍ଷ ବୃଷଭ
ଚର୍ମ ଶୁକ ଚରମବାନ ଆରଜବ ।
ଧାଇଁ ବାବେଳେ ତାଙ୍କୁ ବୋଇଲେ ଶକୁନି
ନୃପ ଇରାବାନ ଶରରେ ଯମସ୍ୱାମୀ ।
ତେବେ ହେଲେ ପିତାବଚନ ତାଙ୍କୁ ପିତା
ହୋଇ ଘୋଟିଥିଲ ନ ମରଣଦେବତା ।
ଇରାବାନ ଦେଖିଣ ଶକୁନିସୁତଙ୍କୁ
ବୋଇଲେ ରକ୍ଷାକର ତୁମ୍ଭର କୁଳଙ୍କୁ ।

ମର୍ତ୍ତି ତ ରହିଅଛୁ ଶର ଚାପ ଧରି
ବିକ୍ରମ ଥିବା ଲୋକ ଯିବକ ଓହରି ।
ଏହା ଶୁଣି ତୁମ୍ଭ ଶଳାର ପୁତ୍ରମାନେ
ବାନ୍ଧିଲେ କାଣ୍ଡ ଇରାବାନ ଅପଘନେ ।
ଇରାବାନ ପାଇ ଶକୁନିସୁତ ଶର—
ଘାତ ତେବେ ନ ଅଣ୍ଟାଇଲେକି ଶରୀର ।
କ୍ରୋଧ ହୋଇ ତୀକ୍ଷଣ କାଣ୍ଡେ ଅରଜୁନ
କରିଦେଲେ ସେକ୍ଷଣି ତାହାଙ୍କ ଅଙ୍ଗନ ।
ପଦାତି ହୋଇ ଧୃଣି ଧରି ଫରି ଖଣ୍ଡା
ଯୁଦ୍ଧଦାଣ୍ଡେ ଧାଇଁଲେ ଇରାବାନ ଭେଣ୍ଡା ।
ଏ ସମୟେ ଶକୁନିସୁତେ ଚେତା ପାଇ
ଇରାବାନ ଉପରେ ଧାଇଁଲେ ରୋଷାଇ ।
ଇରାବାନ ଦେଖାଇ ହସ୍ତଲାଘବକୁ
ପ୍ରହାରିଲେ ଶକୁନିଙ୍କ ଖଡ଼ଗକୁ ।
ଖଡ଼ଗଘାତେ ପାଇ ଶକୁନିଙ୍କ ସୁତେ
ଦୁଇଖଣ୍ଡ ହୋଇଣ ପଡ଼ିଲେ ସମସ୍ତେ ।
ତୁମ୍ଭ ଶଳାସୁତଙ୍କ ନିଧନ ଦେଖିଣ
ଅଳମ୍ବୁଷଙ୍କାରେ କହିଲେ ଦୁର୍ଯ୍ୟୋଧନ ।
ଦେଖ ହେ ଇରାବାନ ବଳବିକ୍ରମପଣେ
ମୋ ସୈନ୍ୟମାନଙ୍କୁ ଖଣ୍ଡା ଧରି କରି ହାଣେ ।
ତୁମ୍ଭେ ତ ସବୁ ମାୟାଅସ୍ତ୍ର ଯୁଦ୍ଧ ଜାଣ
ଯେମନ ଇରାବାନର ନାଶହେବ ପରାଣ ।
ଅଳମ୍ବୁଷ ରାକ୍ଷସ ଶୁଣି ଏହା ଚଳି
ଆସିଲା ଇରାବାନଠାକୁ ଛଳି ଉଳି ।
ସହସ୍ର ଦୁଇ ଘୋଡ଼ା ଇରାବାନ ସଙ୍ଗେ
ବାହାରିଲେ ବାହାରନ୍ତେ ସେ ଯୁଦ୍ଧରଙ୍ଗେ ।
ଇରାବାନ ଅଳମ୍ବୁଷକୁ ବହି ରୋଷ
ଧାଇଁଲେ ଦୁଇକରେ ମୋଡ଼ ଦେଇ ଦଣ୍ଡ ।
ଇରାବାନ ଆସିବା ଅଳମ୍ବୁଷ ଦେଖି
ମାୟାରେ ବୁହାଇଲା ପାଣ୍ଡୁ ସୈନ୍ୟ ରଖି ।
ସହସ୍ର ଦୁଇ ଅଶ୍ୱେ ରାକ୍ଷସ ସିପାଇ
ବସି ଇରାବାନକୁ ମାଇଲେ ରୋଷାଇ ।
ପରସ୍ପରେ ସ୍ୱାର ସହସ୍ର ଘୋଡ଼ାଯାକ
ମରାମରି ହୋଇ ଦେଖିଲେ ଯମଲୋକ ।
ସେ ଅନ୍ତେ ଇରାବାନ ଅଳମ୍ବୁଷ ଦୁଇ
ଯୁଦ୍ଧ ମନେ ରହିଲେ ପଞ୍ଚାପଞ୍ଚ ହୋଇ ।

ଅଳମ୍ବୁଷ ରାକ୍ଷସ କରେବେଗ ଧନୁ
କାଟିଲେ ଅରଜୁନସୁତ କରି ମନ୍ୟୁ ।
ଧନୁଚ୍ଛେଦା ଦେଖିଣ ଅଳମ୍ବୁଷ ବୀର
ଆକାଶେ ରହି ମାୟା ସର୍ଜିଲା ଅପାର
ଇରାବାନଟି ତାହା ଦେଖିଣ ଆକାଶ—
ମାର୍ଗେ ରହି ଶର ବର୍ଷିଲେ ବହୁ ରୋଷ ।
ଇରାବାନ କାଣ୍ଡକୁ ଅଳମ୍ବୁଷ ଖଣ୍ଡି
ବସିଲେ ହେଲେ ନ ଗୁଡ଼ିଲେ ତେଜ ଖଣ୍ଡି ।
ଇରାବାନ ଯେତେକ କାଟିଲେ ତା ଅଙ୍ଗ
ତେତେକ ରାକ୍ଷସ ଧରଇ ନୂଆ ଅଙ୍ଗ ।
ନ ସହି ତାହା ଇରାବାନ କ୍ରୋଧ ହୋଇ
ପରଶୁରେ ତା ଦେହ କାଟିବେ ନଠାଇ ।
ପରଶୁ ବଜା ଦେଖି ରାକ୍ଷସ ଉକତ—
ନଗିଣୀ ତା ଦେହ ମଧ୍ୟୁଁ କଲା ଜାତ ।
ପୁଣି କ୍ରୋଧ ହୋଇଣ ଅଳମ୍ବୁଷ ବଳୀ
ଘାଟିଲା ଇରାବାନ ବଳ ତେଜ ବଳି ।
ତାମସୀ ମାୟା ସୃଷ୍ଟି କଲା ସରଜନା
ଇରାବାନ ତା ଦେଖି ମୋହିଲେ ବିମନା ।
ଏହି ମଧ୍ୟ ସେରୂପେ ମାୟାକୁ ଲୁଆଇ
ମାତୃକୁଳଯାକକୁ ଆଣିଲେ ଡକାଇ ।
ନାଗକୁଳେ ଆବୃତ୍ତ ହୋଇ ଇରାବନ୍ତ
ଯୁଦ୍ଧମଧ୍ୟେ ବସିଲେ ଯେରୂପେ ଅନନ୍ତ ।
ସେ ସର୍ପଙ୍କିମାନଙ୍କୁ ଇରାବାନ ବଳୀ
ପ୍ରେରିଲେ ବେଗ ବୋଲି ରାକ୍ଷସଙ୍କୁ ଗିଳି ।
ଅଳମ୍ବୁଷ ଦେଖି କରି ସେ ସାପଗଣ
ଗରୁଡରୂପେ ଖାଇ ଦେଲା ସେ ଆପଣ ।
ଖଣ୍ଡା ଧରି ସନ୍ଧାଣ ପରାଏ ଚହଟି
କାଟିଲା ଇରାବାନ ମୁଣ୍ଡ ବେଗେ ଖୋଟି ।
ଇରାବାନ ମରଣ ଦେଖି କୁରୁ ସୁତ—
ମାନେ ହେଲେ ରାଜନ ଅତି ହୃଷ୍ଟଚିତ୍ତ ।
ସେହିକାଳରେ ରଥୀ ହାଣ୍ଡି ଅସ୍ତ୍ରପନ୍ତ
ମଗ୍ନମରି ହେଲେ ହୋଇଣ ଜନ୍ତାଜନ୍ତ ।
ଅର୍ଜୁନ ପୁଅର ମରଣ ନ ଜାଣି
ଭୀଷ୍ମ ସେନାଯାକ ମାଇଲେ ଧନୁ ଟାଣି ।
ସୃଞ୍ଜୟଙ୍କର ପାଇ ମାରଣଗଣ
ଭୂମି ପୃଷ୍ଠ ଯୋଦ୍ଧାଏ ଚେଜଲେ ପରାଣ ।

ଭୀଷ୍ମ ସେହିକାଳରେ କରେ ଧନୁ ବହି
ପାଣ୍ଡବସେନା ଶର ଅଗ୍ନିରେ ଦେଲେ ଦହି ।
ସାତ୍ୟକି ଧୃଷ୍ଟଦ୍ୟୁମ୍ନ ଭୀମ ବହୁ କୋପ
ଧଇଲେ ସେ ଯୁଦ୍ଧେ ରାଜନ ରୌଦ୍ରରୂପ ।
ଦ୍ରୋଣ ସେକାଳେ ମହାପରାକ୍ରମ କଲେ
କୁରୁବାନ୍ଧବମାନଙ୍କ ଆନନ୍ଦ ବଢ଼ାଇଲେ ।
ପାଣ୍ଡବସେନା ଲୋକ ବୋଇଲେ ତାହା ଦେଖି
ଭଲ ଦ୍ରୋଣବୁଢ଼ା ବର୍ଷୁଛି ଶର ଯୋଖି ।
କୁରୁ ପାଣ୍ଡୁ ଦୁଇ ସେନାଏ ତ ମଦୁଆ
ପ୍ରାୟେ ଯୁଦ୍ଧଦାଣ୍ଡେ ଯୁଝିଲେ ହୋଇ ଠିଆ ।
ସେହି ଯୁଦ୍ଧରେ ଶସ୍ତ୍ର ନ ଟେକ ଗୋଟିଏ
ନ ଥିବାର ଜଣା ନ ଗଲା ଆହେ ରାୟେ ।
ଧୃତରାଷ୍ଟ୍ର ବୋଇଲେ ଇରାବାନ ହତ
ହୁଅନ୍ତେ ପାଣ୍ଡୁସୁତେ କଲେ କି କହ ତ ।
ସଞ୍ଜୟ ବୋଇଲେ ହେ ତା କହୁଛି ମୁହିଁ
ଆହେ ନରବର ଶୁଣ ମନକୁ ଦେଇ ।
ଇରାବାନ ମରଣ ଘଟୋତ୍କଚ ଦେଖି
ଗରଜନ କଲା ଲେଉଟାଇଣ ଆଖି ।
ସେ ଶବ୍ଦେ ଦବ ସିନ୍ଧୁ କୁଳେ ଧରାଧର
କମ୍ପିଗଲେ ରାଜନ ହୋଇ ଥରହର ।
କୁରୁ ସୈନ୍ୟଯାକ ଗର୍ଜନ ଶୁଣି ପାଡ଼
ପକାଇ ରାଜନ ହେ କଲେ ଆଉଗଡ଼ ।
ଯେରୂପେ ସିଂହ ଆଗେ କମ୍ପଇ ବଳଦ
ସେରୂପେ କୁରୁ ସେନା କମ୍ପାଇଲେ ତହିଁ ।
ବିଶ୍ଵ କମ୍ପାଏ ଧରି ଘଟୋତ୍କଚ ବୀର
ବାହାରି ହେଲା ମୃତ୍ୟୁଦେବତାଙ୍କ ପରା ।
ଦୁର୍ଯ୍ୟୋଧନ ତା ଦେଖି ଆଶୀବିଷ ପରି
ଶର ଯୋଖି ଧନୁ ଧାଇଁଲେ ଯୁଦ୍ଧ କରି ।
ସହସ୍ର ଦଶ ହାତୀ ସେନ ବଙ୍ଗଦେଶ
ନରପତି ଜଗିଲେ ଦୁର୍ଯ୍ୟୋଧନ ପାଶ ।
ଘଟୋତ୍କଚ ତା ଦେଖି କାୟାକୁ ଫୁଲାଇ
ଧାଇଁଲେ ଯୁଦ୍ଧଦାଣ୍ଡେ ନୟନ ବୁଲାଇ ।
ବୋଇଲା ସୁଯୋଧନ ଭୀଷ୍ମ ଭେଦ୍ଧାପଣ
ଛଡ଼ାଇ ଦେବ ଆଜ ଯୁଦ୍ଧରେ ମରଣ ।
ମେଘପରି ଦେଖିଣ ଦୁର୍ଯ୍ୟୋଧନ ହାଙ୍କ—
ସୈନ୍ୟେ ଯୁଦ୍ଧ କଲେ ରାକ୍ଷସେ ମୋହି ବ୍ୟଥୀ ।

ଭଣ୍ଡପାଳ ପର୍ଣ୍ଣ ପଦ୍ମଚଶିଖ ଖଣ୍ଡ
ଫିଙ୍ଗିଣ ରାକ୍ଷସେ ନାଶିଲେ ହାଣ୍ଡଦଣ୍ଡ ।
ଦୁର୍ଯ୍ୟୋଧନଙ୍କ ତାହା ଦେଖିଣ ନ ସହି
ପଥରଙ୍ଗଷା କାଣ୍ଡ ବିନ୍ଧିଲେ ଟେଷାଇ ।
ତୁମ୍ଭର ପୁଅ ଦୁର୍ଯ୍ୟୋଧନଙ୍କ କାଣ୍ଡରେ
ରାକ୍ଷସେ ଗଲେ ଯମରାଜଙ୍କ ଭାଣ୍ଡରେ ।
ବଦ୍ୟୁଜ୍ଜିହ୍ୱା ମହାରୌଦ୍ର ସେ ବେଗବାନ
ପ୍ରମାଥି ଜୀବନ ଘେନିଲେ ଦୁର୍ଯ୍ୟୋଧନ ।
ପୁଣି ସେ ନିଶାଚର ଦଳକୁ ବଜାଇ
ବିନ୍ଧିଲେ କାଣ୍ଡ ଧନୁର୍ଗୁଣ ଘରଜାଇ ।
ଘଟୋତ୍କଚ ଦେଖିଣ ଦୁର୍ଯ୍ୟୋଧନ ଶକ୍ତି
ମନେ କଲା ଏହାକୁ ଦେବି ମୁଁ ଝଟତି ।
ମହତ ରୂପ କରେ ଓଟାଣ ରାକ୍ଷସ
ବିନ୍ଧିଲା ମାରଗଣ ଧାରାର ସଦୃଶ ।
ଘଟୋତ୍କଚ ବିନ୍ଧିବା ଦୁର୍ଯ୍ୟୋଧନ ଦେଖି
ବିନ୍ଧିଲେ ଶର ତାକୁ ନୋହି କିଛି ଦୁଃଖୀ ।
ଘଟୋତ୍କଚ ସେକାଳେ ଦୁର୍ଯ୍ୟୋଧନ ଆଗେ
କହିଲେ ଏ ବଚନ ହସି କଥାବାଗେ ।
ଆଜ ପିତା ଆଦିଙ୍କୁ କରିବ ଅନୃଣ
କୁରୁରାଜ ତୁମ୍ଭଙ୍କୁ ଦେଇଣ ମରଣ ।
ଯେବେ ତୁମ୍ଭେ ଯୁଦ୍ଧ ଛାଡ଼ିଣଟି ନ ଯିବ
କହୁଛି ତେବେ ଜୀବଧନକୁ ଦେଖିବ ।
ଏହା କହିଣ ଧନୁ ଓଟାଣ ସୃକ୍କଣି
ଦୁଇଶତ ପୁଣି ବିନ୍ଧିଲା ଶରଶ୍ରେଣୀ ।
ଦୁର୍ଯ୍ୟୋଧନ ସେ ବାଣମାନ ସହି ଅଙ୍ଗେ
ଯୁଦ୍ଧ କଲେ ତାକୁ ରାଜନ ଅତିରଙ୍ଗେ ।
ଆଶୀବିଷ ସଦୃଶ ଏକୋଇଶି କାଣ୍ଡ
ବିନ୍ଧିଲେ ଦୁର୍ଯ୍ୟୋଧନ କମ୍ପାଇ କୋଦଣ୍ଡ ।
ଘଟୋତ୍କଚ-ଗିରିରେ ସେ କାଣ୍ଡ ବୃକ୍ଷ ପରି
ମଣ୍ଡି ହେଲା ଜାଣ ହସ୍ତିନାଦଣ୍ଡଧାରି ।
ରକତଝରଣା ବୁହାଇ ରଣବାଣ୍ଡ
କାହୁଅ କରି ଦେଲା ରାକ୍ଷସର ପିଣ୍ଡ ।
କ୍ରୁଦ୍ଧ ଧୂଅ ନାଶେ ରାକ୍ଷସ ମତ୍ତ ହୋଇ
ମହାଶକ୍ତିଟାଏ ଧଇଲା ସେ ରୋଷାଇ ।
ଶକତି ଦେଖି ଘଟୋତ୍କଚଙ୍କର ହାତେ
ବଙ୍ଗାଧିପ ଅଙ୍କୁଶ ମାରି ଗଜମାଥେ ।

ଦୁର୍ଯ୍ୟୋଧନ ରଥ ଆଗରେ କଲେ ଛିଡ଼ା
ନୋହିବା ପାଇଁ ଦୁର୍ଯ୍ୟୋଧନଙ୍କର ପୀଡ଼ା ।
ଘଟୋତ୍କଚ ତାହାଟି ନ ପାରିଣ ସହି
ବେଗେ ବଙ୍ଗାଧିପର ହାତିକି ବଢ଼ାଇ ।
ବଙ୍ଗାଧିପ ହାତୀର ଉପରୁ ଡେଇଁଲେ
ଘଟୋତ୍କଚ ଆଗରେ ଯାଇ ଛିଡ଼ା ହେଲେ ।
ଦୁର୍ଯ୍ୟୋଧନ ସେ ବଙ୍ଗାଧିପ ହାତୀ ମୃତ୍ୟୁ
ଦେଖି ଉଜଗଲା ହୃଦର ଧୈର୍ଯ୍ୟସେତୁ ।
ପୁଣି ତୁମ୍ଭର ସୁତ କ୍ଷତ୍ରିୟ ଧରମ
ସୁମରି ମାନସରେ ଲଭିଣ ଶରମ ।
କରମରେ ଯା ଥିବ ହେବ ଭଣ୍ଡିରିଲେ
ନିଶିତ କାଣ୍ଡଯୋଡ଼ି ଧନୁ ଆମଣ୍ଡିଲେ ।
ଘଟୋତ୍କଚ ବପରେ କରି ମହାରଡ଼ି
ଦେଲେ ସେ ଶାୟକକୁ ଗୁଣମଧ୍ୟୁ ଛାଡ଼ି
ଘଟୋତ୍କଚ ସେ ବାଣମାନଙ୍କୁ ବଞ୍ଚାଇ
ଗର୍ଜିଲା ରଥ ମଧ୍ୟେ ଗଣ୍ଡିକ ନସ୍ତଇ ।
ସେ ଗର୍ଜନ ଶୁଣିଣ ଭୀଷ୍ମ ଦ୍ରୋଣଠାକୁ
ଆସି କରି ଏହା କହିଲେ ତାହାଙ୍କୁ ।
ଦୁର୍ଯ୍ୟୋଧନ ଘଟୋତ୍କଚର ସଙ୍ଗେ ଯୁଦ୍ଧ
ଆରମ୍ଭିଛନ୍ତି କଷ୍ଟେ ହୋଇବେଟି ବଧ ।
ଆପଣ ଯାଇଣ ଗାନ୍ଧାରୀବେଟାଟିକ
ରକ୍ଷା କରି ନବାର ଭୀମପୁଅଟିକ ।
ଆମ୍ଭେ ଦୁହେଁ ଥିବାଯାକ ସେ ଜୀଇଥାନ୍ତୁ
ଆମ୍ଭର ଭରସାରୁ ସେ ଅଦୃଷ୍ଟ ଭୁଞ୍ଜନ୍ତୁ ।
ଏହା ଶୁଣି ଦ୍ରୋଣ ବାହ୍ଲିକ ସୋମଦତ୍ତ
ଚିତ୍ରସେନ ଭୂରିଶ୍ରବା ଯେ ଜୟଦ୍ରଥ ।
ଶଲ୍ୟ ଅଶ୍ୱତ୍ଥାମା ବିକର୍ଣ୍ଣାଦିଙ୍କୁ ଘେନ
ଧାଇଁଲେ ଯୁଦ୍ଧଦକ୍ଷେ ହୋଇ ଧନୁଷ୍ପାଣି ।
ଏଥି ବାହାରେ କୁରୁ ମହାରଥୀବୃନ୍ଦ
ଗଲେ ଘଟୋତ୍କଚଙ୍କୁ କରିବାକୁ ବଧ ।
ଘଟୋତ୍କଚ ତୁମ୍ଭର ରଥୀଯାକ ଦେଖି
ଯୁଦ୍ଧ କଲା ରାଜନ ହୋଇ ଅତି ସୁଖୀ ।
ଘଟୋତ୍କଚଙ୍କର ଜାତିଏ ମୁଦଗର
ହିଟ୍ଟକ ଧରି କଲେ କୁରୁଙ୍କୁ ସଂହାର ।
ଧନୁମାନଙ୍କର ଶବଦ ବଂଶବନ
ପୋଡ଼ିବା କାଳପୁଷ୍ଠାମାନଙ୍କ ସମାନ ।

କବଚମାନଙ୍କରେ ଶସ୍ତ୍ରମାନ ପଡ଼ି
କେତେକ ଭୁଡ଼ି କେତେ ହେଲେ ମୂନମୋଡ଼ି ।
ତୋମରମାନେ ସାପ ପ୍ରାୟେ ଆକାଶରେ
ଉଡନ୍ତର ଗଗନ ଦିଶିଲେ ଦୃଶରେ ।
ସେହିକାଳେ ରାକ୍ଷସ ଅତି କ୍ରୁଦ୍ଧ ହେଲା
ସ୍ୱଞ୍ଚେ ଦ୍ରୋଣ ଧନୁ କାଣ୍ଡରେ ଛୁଣ୍ଡାଇଲା ।
ବାହ୍ଲିକଙ୍କ ହୃଦଦେଶକୁ ତିନକାଣ୍ଡ
ବିନ୍ଧଣ ଘଟୋତ୍କଚ ହଲାଇଲା ମୁଣ୍ଡ ।
ସୋମଦତ୍ତଙ୍କର ଧ୍ୱଜଟିକ ଯେ କାଟି
ମସ୍ତକରେ ପକାଇଲା ଭୀମଙ୍କ ବେଟାଟି ।
କୃପେ କାଣ୍ଡେ ଚିତ୍ରସେନକୁ ତିନକାଣ୍ଡ
ବିନ୍ଧିଲା ଘଟୋତ୍କଚ ହେ ଧେ ଜାଳ ପିଣ୍ଡ ।
ବିକର୍ଣ୍ଣଙ୍କଙ୍କୁ ଦେଖାଇ ଶର ଟାଣି
ବିନ୍ଧିଲା ଯେ ରାକ୍ଷସ କୁଳ ସାରମଣି ।
ବିକର୍ଣ୍ଣ ସେ ଘାତରେ ରଥର ଉପରେ
ବସିଲେ ସ୍ୱପ କରୁ ପକାଇ ଚାପରେ ।
ଭୂରିଶ୍ରବା ଦେହକୁ ପନ୍ଦରଟି କାଣ୍ଡ
ବିନ୍ଧିଲା ଘଟୋତ୍କଚ ରାକ୍ଷସ ଦୁର୍ଦ୍ଦଣ୍ଡ ।
ସେ କାଣ୍ଡ ଭୂରିଶ୍ରବା ମର୍ମେ ବାଜିଲେ
ରକତ ମୁଖେ ପିଇ ମସ୍ତକରେ ଢଳିଲେ ।
ଦୁଃଶାସନ ଅଶ୍ୱତ୍ଥାମାଙ୍କ ସାରଥିକ
ଘଟୋତ୍କଚ ଦେଲା ପ୍ରେତଙ୍କର ଘଟକ ।
ଜୟଦ୍ରଥଙ୍କର ବରାହ ଧ୍ୱଜ କାଟି
ପୁଣି ସେ କାଟିଦେଲା କାଣ୍ଡକେ ଧନୁଟି ।
ଆବନ୍ତ୍ୟକ ସ୍ୱଶ୍ୱଘୋଡାଙ୍କୁ ସ୍ୱରକାଣ୍ଡ
ବିନ୍ଧଣ ଦେଖାଇଲେ ଯମନୃମଦାଣ୍ଡ ।
ବୃହଦ୍ବଳର ଉପରକୁ ଖିଜାଘଷା
କାଣ୍ଡେ ବିନ୍ଧିଲା ରାକ୍ଷସ ମହାଯଶା ।
ସେ କାଣ୍ଡଘାତ ପାଇ ବୃହଦ୍ବଳ ବଳୀ
ବସି ରଥମଧ୍ୟେ ରହିଲେ ରାସ୍ୱେ ଢଳି ।
ଶଲ୍ୟଙ୍କ ଦେହକୁ ବଜାଇ ମାରଗଣ
ବିନ୍ଧିଲା ନେବାପାଇଁ ତାହାଙ୍କ ପରାଣ ।
ଏରୂପେ କୁରୁ ସେନା ରଥୀଙ୍କୀ ବିମୁଖ
କରିଲେ ଘଟୋତ୍କଚ ନିନ୍ଧଣ ବିଶିଖ ।
କୁରୁର ସ୍ୱଚପରେ କ୍ରୋଧମୁଖ ହୋଇ
ଧାଇଁଲା ଯୁଦ୍ଧବାଣ୍ଡେ ପ୍ରତିକ ଫୁଲାଇ ।

କୁରୁ ଲୋକମାନେ ଜାଣି ତାହାର ସ୍ୱଭ
ବନ୍ଧିଲେ କାଣ୍ଡ ଗୁଣ ଆଣି କର୍ଣ୍ଣ ଜନ୍ତ ।
ଘଟୋତ୍କଚ-ଶିରରେ ମାରଗଣଗଣ
ଧାର ପଣ ବୃଷ୍ଟି ହୋଇଲା ନରଗଣ ।
ଘଟୋତ୍କଚ ସେକାଳେ ଶୂନ୍ୟେ କରି ଉଡ
ଗର୍ଜି ପୂରାଇଲା ଗଗନ ବସୁମତୀ ।
ଯୁଧିଷ୍ଠିର ଘଟୋତ୍କଚର ଗରଜନ
ଶୁଣି ଭୀମସେନଙ୍କୁ କହିଲେ ବଚନ ।
ଘଟୋତ୍କଚ ଉପରେ ଭାର ପଡ଼ିଅଛି
ଧାଇଁ ବାବୁ ସେଠାକୁ ମୁଁ ଏବେ ବୋଲୁଛି ।
ପାଞ୍ଚାଳଙ୍କୁ ଭୀଷ୍ମ ତ ଯାଇଛନ୍ତି ମାରି
ଅର୍ଜୁନ ଜଗିଛି କରେ ଧନୁ ଧରି ।
କୁମ୍ଭେ ଏବେ କୁରୁ ପୁତ୍ରଙ୍କୁ ରକ୍ଷାକର
ନୋହିଲେ କରିବେବେ କୁରୁଏ ସଂହାର ।
ଏହା ଶୁଣିଣ ଭୀମ କରି ସିଂହନାଦ
ବାହାରିଲେ ସେଠାକୁ ବଳି ମହାମୋଦ ।
ସତ୍ୟଧୃତି ଅଭିମନ୍ୟୁ ଯେ ଶ୍ରେଣୀମାନ
ଦ୍ରୌପଦେୟ କ୍ଷତ୍ରଧର୍ମୀ ଯେ ବସୁଦାନ ।
କ୍ଷତ୍ରଦେବ ଯେ ନୀଳ ଆଦି ରଥୀଶ୍ରେଣୀ
ବୃକୋଦର ପଛେ ଧାଇଁଲେ ଧନୁ ଟାଣି ।
ଛଅ ସହସ୍ର ମଦଗଜା ମତ୍ତବନ୍ତୀ
ଲଗିଥିଲେ ସେ ରଥୀମାନଙ୍କର କନ୍ତି ।
ସିଂହନାଦ ରଥନେମିଙ୍କ ଘୋଷେ ମହୀ
କମ୍ପିଗଲା ଆହେ ହସ୍ତିନା ନରସାଇଁ ।
ଭୀମଙ୍କ ଆସିବାର ଦେଖି କୁରୁ ବଳ
ମଲାଇଁ ଏବେ ବୋଲି ହୋଇଲେ ବିକଳ ।
ଘଟୋତ୍କଚ ସଙ୍ଗରୁ ଯୁଦ୍ଧ ଛାଡ଼ିଦେଇ
ପଳାଇଲେ ପଡ଼ି ଉଠି ହେ ନରସାଇଁ ।
ପୁଣି କୁରୁ ଲୋକେ ପାଲଟି କୁରୁ ଆଠ
ଲୋକଙ୍କ କୁଳେ ମିଶି ଯୁଦ୍ଧେ କଲେ ଆଣ୍ଟ ।
ରଥୀ ହାତୀ ଆରୋହୀ ହେଲେ ମରାମରି
ମନରେ କଲେ ମଲେ ଯିବା ସ୍ୱର୍ଗପୁରୀ ।
ରଥ ହାତୀ ଘୋଡ଼ା ପଦାତି ପାଦଧୂଳି
ଲଗାଯାକ ରହିଲା ନଭ ବୃକ୍ଷ ମାଡ଼ି ।
ସେ ଯୁଦ୍ଧେ ବାପ ପୁଅ ମଝାମଝି ହେଲେ
ଧରମ ଅଧରମ ବିଚାର ନ କଲେ ।

ହାତୀ ଘୋଡ଼ାଙ୍କର ଶୁଭିଲା ଗର୍ଜନ
କରିଦେଲା ସବୁରି କର୍ଣ୍ଣ ଦୁଇ ଛିଦ୍ର ।
ଗଜ ବାଜି ମନୁଷ୍ୟମାନଙ୍କୁ ଭସାଇ
ବହିଲା ରକ୍ତନଦୀ ମସ୍ତିକ କର୍ମାଇ ।
ଗିରିଶିଖ୍ ପଥର ପଡ଼ିଲା ପରାୟେ
ଅହର୍ନିଶ ମୁଣ୍ଡ ପଡ଼ିଲା ଆହେ ରାୟେ ।
ହାତୀ ଘୋଡ଼ା ଶବେ ପୂରନ୍ତେ ଯୁଦ୍ଧଭୂମି
ଉପ୍ତାତ୍ତ ଯେ ଲାଗିଲେ ଦେଖି ନୋହି ଗମି ।
ସିପାଇଏ ସିପାଇମାନଙ୍କୁ ବଳରୁ
ଫିଙ୍ଗିଲେ ସେ ଯୁଦ୍ଧ ଉତ୍ପ୍ରୋଧ ମୂଳରୁ ।
ପାଇକେ ପାଇକଙ୍କୁ କରି ଡାକହାକ
ପାଶ୍ଚ ପାଞ୍ଚ କରି ଖଣ୍ଡାକୁ କଲେ ଟେକ ।
ହାତୀମାନେ ଅଙ୍କୁଶଘାତକୁ ନ ସହି
ମାଇଲେ ପର ହାତୀମାନ ଦନ୍ତ ନେଇ ।
ରକ୍ତଧାର ଅଙ୍ଗେ ବହି ହସ୍ତୀଗଣ
ଶୋଭା କରିଲେ ମେଘ ବିଜୁଳି ଜ୍ୟୋସ୍ନନ ।
କରି ଦନ୍ତ ଗୋଡ଼ ଛିଡନ୍ତେ କେତେ ହସ୍ତୀ
ଉଭା ପାଡ଼ିଣ ଗଲେ ଆଶ୍ରେ କରି ଷତ୍ତ ।
ଗଜାରୋହୀମାନେ ମରନ୍ତେ ହାତୀଗଣ
ନ ଥିବା ଶୃଙ୍ଗ ଗିରି ଶୋଭା କଲେ ଜାଣ ।
ସେ ହାତୀଏ ପାଇକ ବେହେ ଦେଇ ଗୋଡ଼
ଲାଗନ୍ତେ ପିଠିହାଡ଼ ଶୁଭିଲା ଲଡ଼ଲଡ଼ ।
ଗଜାରୋହ ପ୍ରାଣ ତୋମରେ ଘାତ ପାଇ
ଘୋଡ଼ାଏ ପଳାଇଲେ ବ୍ୟାକୁଳିତ ହୋଇ ।
ରଥୀମାନେ ରଥୀମାନଙ୍କ ମାରଗଣ
ଧନୁର୍ଗୁଣେ ସନ୍ଧି ବିନ୍ଧିଲେ ନରଚଣ ।
କୃଷ୍ଣର ସୈନ୍ୟଯାକ ପ୍ରତ୍ୟାସେ ବିମୁଖ
ହୋଇ ଯୁଦ୍ଧଭୂମିରେ ନ ଟେକିଲେ ମୁଖ
ସୈନ୍ୟ ହତ ଦେଖିଣ ଦୁର୍ଯ୍ୟୋଧନରାୟେ
ଭୀମଠାକୁ ଧାଇଁଲେ ଯୁଝିବା ଉପାୟେ ।
କୃପ ଯତ୍ନେ ଧରିଣ କର୍ଣ୍ଣଯାଏ ଟାଣି
ଟାଣିଟଣି ହୋଇ ବିନ୍ଧିଲେ କାଣ୍ଡଶ୍ରେଣୀ ।
ଅର୍ଦ୍ଧଚନ୍ଦ୍ରେ କାଟିଣ ଭୀମଙ୍କର ଧନୁ
ଫୁଲ୍ଲିଲେ ତନୁ ଆନନ୍ଦେ କୃଷ୍ଣ ସୂନୁ ।
ସେହି ଛିଦ୍ର ପାଇଣ କାଣ୍ଡେ ଭୀମ ଉରେ
ବିନ୍ଧିଲେ ଦୁର୍ଯ୍ୟୋଧନ ଅତ୍ୟନ୍ତ କୋପରେ ।

ସେ କାଣ୍ଡଘାତେ ଭୀମ ପାଇ ମହାପୀଡ଼ା
ଧ୍ୱଜଦଣ୍ଡ ଧରିଣ ହେଲେ ଯାଇ ଛିଡ଼ା ।
ଘଟୋତ୍କଚ ଦେଖି ପିତାର ଏ ଦଶାଟି
ଧାଇଁଲା ଦୁଇଆଖି ବେଗିଣ ତରାଟି ।
ଅଭିମନ୍ୟୁ ଆଦି ରଥୀଏ ଦୁର୍ଯ୍ୟୋଧନ
ପ୍ରାଣ ନେବା ବୋଲିଣ ଧାଇଁଲେ ବହନ ।
ଦ୍ରୋଣ ପାଣ୍ଡୁରଥୀଙ୍କ ଗତିକ ଜାଣିଲେ
କ୍ରୋଧ ହୋଇଣ କୁମ ରଥୀଙ୍କି ବୋଇଲେ ।
କିସ ଦେଖୁଅଛ ହେ ଦୁର୍ଯ୍ୟୋଧନ ପ୍ରାଣ
ଯାଉଛି କରି ପାଣ୍ଡୁ ରଥୀଙ୍କିଟି ରଣ ।
ଗୁରୁଙ୍କଠାରୁ ଗୁରୁଶିକ୍ଷା ପାଇ ନୃପେ
ଧାଇଁଲେ ଯୁଦ୍ଧହାଣ୍ଡେ ଧରି କୃପ କୃପେ ।
ସୋମଦତ୍ତର ପୁତ୍ର ଭୂରିଶ୍ରବା ଶଲ୍ୟ
କୃପ ଅଶ୍ୱତ୍ଥାମା ବିକର୍ଣ୍ଣ ବୃହଦ୍ବଳ ।
ଚିତ୍ରାଂଶତ ଚିତ୍ରସେନ ଯେ ସଲଛବ
ଚନ୍ଦ ଯେ ଅନୁବିନ୍ଦ ବହିଣ ଅଗ୍ରବ ।
ଘଟୋତ୍କଚଠାରେ ଧାଇଁଲେ କରି ରଡ଼ି
ସେ ଶବ୍ଦ ଶୁଣିଲା ପ୍ରଳୟ ଘଡ଼ଘଡ଼ି ।
ଏଣିକାଳେ ଦ୍ରୋଣ ଛତିଶି ମାରଗଣ
ବିନ୍ଧିଲେ ଭୀମର ଉପରେ କରି ରଣ ।
ଭୀମ ଯେ ଦ୍ରୋଣଙ୍କର ହାମ ପାରୁଷକୁ
ବଣକାଣ୍ଡ ବିନ୍ଧିଲେ ଦେଖାଇ ବିକ୍ରମକୁ ।
ଦ୍ରୋଣ ଦଶକାଣ୍ଡେ ହରାଇ ଚେତନ
ରଥ ମଧ୍ୟେ ବସିଲେ ହୋଇଣ ମଉନ ।
କୁରୁଙ୍କ ଏ ଦଶାକୁ ଦେଖି ଗୁରୁସୁତ
ଦୁର୍ଯ୍ୟୋଧନ ବୁଲେ ଯେଠାକୁ ହେଲେ ଗତ ।
ଅଶ୍ୱତ୍ଥାମ ଦୁର୍ଯ୍ୟୋଧନଙ୍କୁ ଭୀମ ଦେଖି
ତେଲିଁ ଗଲେ ରଥ ଉପରୁ ବୁଜି ଆଖି ।
କାଳଦଣ୍ଡ ପରି ଘେନିଣ ଗଦାବର
ଅଚଳ ପରି ଛିଡ଼ାହେଲେ ଭୀମବର ।
ଅଶ୍ୱତ୍ଥାମା ଦୁର୍ଯ୍ୟୋଧନ ଯେ ଦୁହେଁ ମିଶି
ଧାଇଁଲେ ଭୀମଠାକୁ ହୋଇ ଅତି ରୋଷୀ ।
ଭୀମ ମଧ୍ୟ ସେରୂପେ ଧାଇଁ ତାଙ୍କଠାକୁ
ଟେକିଲେ କରେ ତାଙ୍କ ମହତ ଗଦାକୁ ।
ଦ୍ରୋଣ ଆଦି ରଥୀରେ ନାନା ଅସ୍ତ୍ର ମନ୍ତ୍ରି
ବିନ୍ଧି ଭୀମ ବକ୍ଷସ୍ଥଳକୁ ପନ୍ତ ପନ୍ତ ।

ଅଭିମନ୍ୟୁ ଆଦି ଯେ ମହାରଥୀ ବୃନ୍ଦ
ତାହା ଦେଖି ଧାଇଁଲେ କରିବାକୁ ଦ୍ୱନ୍ଦ୍ୱ ।
ମାଳରାଜା ଭୀମଙ୍କ ସଖା ତ ଅତ୍ୟନ୍ତ
ଦ୍ରୌଣି ତୁଲେ ଯୁଝିଲେ ଧନୁଶର ଘେନି ।
ବପ୍ରଚଣ୍ଡ ଦାନବକୁ ଯେ ମାରିଜଣ
ଇନ୍ଦ୍ର ବନ୍ଧ ଯୁଝିବା ପରି କଲେ ରଣ ।
ମାଳରାଜା ବନ୍ଧନ ଘାତେ ଦ୍ରୋଣସୁତ
ଦେହରୁ ଜାତ କଲେ ବହୁତ ରକତ ।
ମାଳକୁ ମାରିବାକୁ ହୃଦରେ ବିଚାରି
ଧନୁକୁ ଧଇଲେ କରରେ ଆଞ୍ଜ କରି ।
କମାରଣାକମଳା ଭଲ ସ୍ୱରକାଣ୍ଡ
ବନ୍ଧ ଦେବେ ତାଙ୍କ ଘୋଡ଼ାଙ୍କୁ ଯମଦାଣ୍ଡ ।
କାଣ୍ଡକରେ ଧ୍ୱଜକୁ ପକାଇ ଛିଣ୍ଡାଇ
ବୋଇଲେ କାହିଁ ଯିବ ଆଜ ମାଳସାଇଁ ।
ମାଳଙ୍କର ବକ୍ଷସ୍ଥଳକୁ ଭଲକାଣ୍ଡେ
ବନ୍ଧନ୍ତେ ଆଉଜିଲେ ଯାଇ ରଥଦାଣ୍ଡେ ।
ମାଳରାଜା ମୋହ ଦେଖି ସେ ଘଟୋତ୍କଚ
ଧାଇଁଲ ଦ୍ରୌଣିଠାକୁ ଗର୍ଜି କରି ଉଚ ।
ଘଟୋତ୍କଚ ଆସିବା ଅଶ୍ୱତ୍ଥାମା ଦେଖି
ତା ପଛ ରାକ୍ଷସଙ୍କୁ କଲେ ଶର ଦୁଃଖୀ ।
ଘଟୋତ୍କଚ ଦେଖିଣ ନିଜ ସୈନ୍ୟ ପୀଡ଼ା
ମାୟା କରି ଦ୍ରୌଣି ଆଗରେ ହେଲ ଛିଡ଼ା ।
ରାକ୍ଷସ ମାୟାରେ ବିମୁଖ କୁରୁ ସୈନ୍ୟ
ହେଲେ କେତେ କେତେ ଦସିଲେ ଯମସ୍ଥାନ ।
ଦ୍ରୋଣ ଦୁର୍ଯ୍ୟୋଧନ ଯେ ଶଲ୍ୟ ଅଶ୍ୱତ୍ଥାମା
ଭଙ୍ଗ ଦେଲେ ତା ଦେଖି ଯୁଦ୍ଧରୁ ଗାରିମା ।
କୁରୁ ସୈନ୍ୟଯାକ କଲେ ଭାଗୁଡ଼ିଟି
ମଲୁଁ ମଲୁଁ ବୋଲିଣ ମେଲି ଦେଇ ପାଟି ।
କୁରୁ ବାବୁ କୁଳରେ ପାଡ଼ୁଥିଲେ ଡକା
ଭେବେ ସୈନ୍ୟ ଭଜିଲେ ହୋଇଣ ତାଟକା ।
ପାଣ୍ଡବେ ଜୟ ପାଇଁ ଘଟୋତ୍କଚ ତୁଲେ
ସିଂହନାଦ କରି ଫୁଙ୍କିଲେ ଶଙ୍ଖ ଭଲେ ।
ଏଣୁକାଳେ ସୂର୍ଯ୍ୟ ହୋଇଲେ ଯେସ୍ନେ ଅସ୍ତ
ଭଜିଲେ କୁରୁ ସୈନ୍ୟେ ହୋଇଣ ତ୍ରସ୍ତ ।
ଦୁର୍ଯ୍ୟୋଧନ ରାଜା ଭୀଷ୍ମଙ୍କ ପାଦ ଧରି
ଘଟୋତ୍କଚ ଜୟ କହିଲେ କାନ୍ଦ କରି ।

ଏ ବାହାରେ ବୋଇଲେ କୁରୁ ବାହୁବଳ
ଆଶ୍ରେ କରି ମଲେ ଯୁଦ୍ଧରେ ମୋର ଦଳ ।
ପାଣ୍ଡବେ ଶ୍ରୀକୃଷ୍ଣଙ୍କୁ ଆଶ୍ରା କରି ପାଇ
ଦେଖୁଛ ତୁମ୍ଭେ ହେଲେ ମୋ ସୈନ୍ୟ ବଡ଼ାଇ
ଏଗାର ଅକ୍ଷୌହିଣୀ ତୁଲେ କୁରୁ ଆଜ୍ଞା
କେତେବେଳେ କରୁନାହିଁ ତ ମୁଁ ଅବଜ୍ଞା ।
ଘଟୋତ୍କଚ ରାକ୍ଷସକୁ ଦେଖିଣ ଭୀମ
ସାରିଲ ଯୁଦ୍ଧ ଆଜ ମୋ ଉପରେ ତମ ।
ଏକଥା ଶୁଣି ମୋ ଯାଉଛି ପ୍ରାଣ ଛାଡ଼ି
ଜାଣୁଛି ପାଣ୍ଡବେ ବସିବେ ରାଜ୍ୟ ମାଡ଼ି ।
ତୁମ୍ଭେ ଯେବେ ପ୍ରସନ୍ନ ହେବ ପିତାମହ
ସାରିବ ଘଟୋତ୍କଚ ଦୈତ୍ୟ ମାରି କୋହ ।
ଭୀଷ୍ମ ବୋଇଲେ ହେ ରାଜନ କୁରୁ ଜୟ
କହିବା ଦିଅ ମୋର କଥାରେ ହୃଦୟ ।
ଯୁଧିଷ୍ଠିର ରାଜାଙ୍କ ବିନା ଆନଠାକୁ
ଯୁଝିଲେ ପାଇବ ଯମଙ୍କ ନଗରକୁ ।
ଚଢ଼ିଲେ ଦାଣ୍ଡେ କଥା କହୁଥିବ ଆଣ୍ଡେ
ବନ୍ଦୁଥିବ ଯୁଧିଷ୍ଠିରଙ୍କୁ ଛଟପାଟେ ।
କୃପ ଦ୍ରୌଣି କୃତବର୍ମା ଯେ ଶଲ୍ୟ ଦ୍ରୋଣ
ଭୂରିଶ୍ରବା ବିକର୍ଣ୍ଣ କୁରୁ ଭାଇଗଣ ।
ଏମାନଙ୍କୁ ଦେଖିଣ ଘଟୋତ୍କଚ ତୁଲେ
ଯୁଦ୍ଧ କରୁଥିବ ରାଜନ ଜାଣ ଭଲେ ।
ବୋଲିଲେ ଭଗଦତ୍ତ ରାଜାଙ୍କୁ ବରଗ
ଘଟୋତ୍କଚର ସେ ଭାଙ୍ଗିବେ ଯୁଦ୍ଧ ରାଗ ।
ଏହା ଦୁର୍ଯ୍ୟୋଧନକୁ କହି ଭଗଦତ୍ତ
ନୃପତିଙ୍କି କହିଲେ ଗଙ୍ଗାଙ୍କର ସୁତ ।
ତୁମ୍ଭେ ଏବେ ଯାଇଣ ଘଟୋତ୍କଚ ସଙ୍ଗେ
ଯୁଦ୍ଧ କରି ଶାୟକ ବିନ୍ଧ ନାନାରଙ୍ଗେ ।
ସବୁ ଅସ୍ତ୍ରଯାକ ତ କୁରୁଙ୍କୁ ଆସିଛି
କହିବାକୁ ଏଥିରେ କେଉଁ କଥା ଅଛି ।
କୁରୁ ବିନା ତାହାଙ୍କୁ ଆନ୍ତ ଥାଟେ ଲୋକ
ନାହିଁ ତ ମୁଖ ଯୋଡି ବିନ୍ଧିବ ଶାୟକ ।
ଏହା ଶୁଣିଣ ଭଗଦତ୍ତ ସିଂହନାଦ
କରିଣ ବାହାରିଲେ ହୋଇଣ ପ୍ରମୋଦ ।
ପାଣ୍ଡୁସୁତଙ୍କର ରଥୀଏ ତାଙ୍କୁ ଦେଖି
ଧାଇଲେ ତାଙ୍କଠାକୁ ଶର ଗୁଣେ ଯୋଖି ।

ସେମାନଙ୍କର ନାମମାନ ଭୂମ୍ବ ଆଗେ
କହିବ ଶୁଣ ବସି ରାଜନ ସରାଗେ ।
ଭୀମସେନ ଯେ ଅଭିମନ୍ୟୁ ସତ୍ୟଧୃତି
ସହଦେବ ଚେଦିପ ଦଶାର୍ଣ୍ଣାଧିପତି ।
ଘଟୋତ୍କଚ ଦ୍ରୌପଦେୟ ଯେ ବସୁଦାନ
ଆଦି ରଥୀଙ୍କ ସଙ୍ଗେ ଯୋଜଣ ସଇନ ।
ଭଗଦତ୍ତ ଯେ ସୁପ୍ରତୀକ ହସ୍ତୀଟିକ
ବର୍ଷିଲେ ମାର୍ଗଣ ଓଟାଇ ଧନୁଟିକ ।
ପୁଣି ଆନ ରଥୀମାନଙ୍କୁ ହାତସୁଖେ
ମାଇଲେ ରଥୀମାନ ଶରମ୍ନନ-ମ୍ନଖେ ।
ଗଜାରୋହ ଗଜାରୋହଙ୍କୁ ଡାକ ହାକ
ଯୁଦ୍ଧ କଲେ ତ ପ୍ରାସ ପରଶୁକୁ ଟେକ ।
ଦନ୍ତୀକୂଳ ଦନ୍ତୀକୂଳକୁ କରି ଆଡ
ଯୁଝନ୍ତେ ପଡ଼ିଲେ ସେ ହେଦେ ବନ୍ଧ ଖାଡ଼ ।
ଘୋଡାମାନେ ସିପାହିମାନଙ୍କ କୋରଡ଼ା
ପାଇ ସବ ଘୋଡ଼ା ମଧ୍ୟରେ ଦେଲେ ଛୁଡ଼ା ।
ପଦାତିକ ପଦାତି ଶକତି ତୋମର
ମାରଣ ଦେଖାଇଲେ ଯମଙ୍କ ନଗର ।
ରଥୀମାନେ ରଥୀଙ୍କି ନାଳିକ ନାରାଚ
ବର୍ଷ ଛଡ଼ାଇଣ ଦେଲେଟି ପୁର ମଞ୍ଚ
ଏଉକାଳରେ ଭଗଦତ୍ତ ଭୀମଠାକୁ
ଟିପିଲେ ସୁପ୍ରତୀକ ନାମରେ ଗଜକୁ ।
ସୁପ୍ରତୀକ ଉପରେ ବସି ଭଗଦତ୍ତ
ଭୀମଙ୍କୁ ଗ୍ଲାଇଦେଲେ ବର୍ଷିଣ ବହୁତ ।
ଭୀମ କ୍ରୋଧ ହୋଇ ହାତୀର ପାଦରକ୍ଷା—
ମାନଙ୍କୁ ମାରଣ ଗର୍ଜିଲେ ତାଙ୍କ କକ୍ଷା ।
ଭଗଦତ୍ତ ପୁଣି ସେ ହାତୀକ ଆଙ୍କୁଶ
ମାରି କଲେ ଭୀମସେନଙ୍କ ରଥ ନାଶ ।
ଭଗଦତ୍ତ ନୃପେ ଭୀମଙ୍କ ପାଖେ ଦେଖି
ମହାରଥିବୃନ୍ଦ ଧାଇଁଲେ ହୋଇ ଦୁଃଖୀ ।
ଭଗଦତ୍ତ ହାତୀର ଚାରିପଟେ ବେଢ଼ି
ବର୍ଷିଲେ ଦିବ୍ୟକାଣ୍ଡମାନ ତୁଣ୍ଡ କାଢ଼ି ।
ନୃପତିମାନଙ୍କଠୁ ବାଜନ୍ତେ ମାର୍ଗଣ
ହୋଇଲା ହାତୀଦେହଁ ରକତ ସ୍ରବଣ ।
ସେ ଘନ ସେ ହାତୀ ବହିଣ ମହାଶୋଭା
ଖର୍ଜିଲା ଗେରୁଧାରାମଣ୍ଡା ଗିରି ପ୍ରଭା ।

ଦଶାର୍ଣ୍ଣାଧିପ ଗିରି ପ୍ରାୟେ ଚଢ଼ି ହାତୀ
ଭଗଦତ୍ତ ହସ୍ତୀ ମାଇଲେ କ୍ରୋଧେ ମାତି ।
ବାଜନ୍ତେ ଅଙ୍ଗେ ଯାଇ ତାହଙ୍କ ଶାୟକ
ଟଳି ନ ପାରିଲା ସେ ଗଜ ସୁପ୍ରତୀକ ।
ପାଣ୍ଡବସେନା ଲୋକେ ଦଶାର୍ଣ୍ଣ ଅଧିପ
ପ୍ରତାପ ଦେଖି ଗ୍ଲାଡ଼ିଦେଲେ ମନସ୍ତାପ ।
ଭଗଦତ୍ତ ଦଶାର୍ଣ୍ଣ ଅଧିପ ହାତୀକି
ଫିଙ୍ଗିଲେ ତଉଦଟି ସାବେଳକ ଟେକ ।
ସେ ସାବେଳଯାକ ହାତୀର ମୁଖେ ବାଜ
ରହିଲା ଯାଇକରି ମସ୍ତକେଶେ ମଜ୍ଜି ।
ସେ ସବାଣୁ ଦଶାର୍ଣ୍ଣ ଅଧିପଙ୍କ ଗଜ
ପଳାଇ ସେନାଗହ୍ୱ ମଞ୍ଜିଲା ମହାରଜ ।
ପାଣ୍ଡବ ସୈନ୍ୟଲୋକେ ଭୀମେ ଆଗ କରି
ତା ଦେଖି ଧାଇଁଲେ ଯୁଦ୍ଧକୁ ରାଗ ଧରି ।
ଭଗଦତ୍ତ ରଜାଟି ହୋଇଣ ନିର୍ଭୟ
ଟିପିଲେ ତାଙ୍କ ହାତୀ ନେବାକୁ ଯୁଦ୍ଧେ ଜୟ ।
ସହସ୍ର ସଂଖ୍ୟା ରଥ ହାତୀ ପାଇକଙ୍କୁ
ମର୍ଦ୍ଦିଲା ସେ ହାତୀ ଦେଖାଇ ବିକ୍ରମକୁ ।
ପାଣ୍ଡବବଳ-ଭୁଣବନ ହାତୀବଳ
ଅନଳ ହୋଇ କଲା କ୍ଷଣକେ କବଳ ।
ଯେରୂପେ ତମ ପଡ଼ି ସାକୁଡ଼େ ବହନରେ
ସେରୂପେ ହୋଇଲେ ପାଣ୍ଡବ ସୈନ୍ୟ ନରେ ।
ଘଟୋତ୍କଚ ଯେ ମହାଶୂଳଟାଏ ଧରି
ଆସିଲା ସ୍ୱସୈନ୍ୟ ଭାଜିବା ଦେଖିକରି ।
ପାଟି ମେଲି ଅନ୍ତକ ପରାଏ ମୁଖକୁ
ଦେଖାଇଲା ରାଜନ ଭୂମ୍ବର ବଳକୁ ।
ଶୂଳ ଘଟୋତ୍କଚ ହାତୀକ କରି ଲକ୍ଷ
ଫିଙ୍ଗିଲା ହେବାକୁ ପାଣ୍ଡବ ସୈନ୍ୟ ସୁଖ ।
ସେ ଶୂଳ ଉଲ୍କାପରି ଆକାଶେ ଚହଟି
ଆସୁଥିଲା ବିଜୁଳି ପ୍ରକାଶ କରି ଲୁଟି ।
ବର୍ଷିଣ ଭଗଦତ୍ତ ଅର୍ଦ୍ଧଚନ୍ଦ୍ର ବାଣ
ଆସୁ ଆସୁ ଆକାଶମାର୍ଗେ କଲେ ଭଗ୍ନ ।
ଭଗଦତ୍ତ ତ ସୁନାଦଣ୍ଡ ଶକତିକ
ଫିଙ୍ଗି ମଲୁ ବୋଇଲେ ଭୀମ ବେଟାଟିକ ।
ସେ ଶକତି ଆକାଶ ତେଜ କରି ଯୋଟି
ଲଗଣ ଅନ୍ତକଦେବତା ମେଲି ପାଟି ।

ଆସୁଥିଲେ ନେବାକୁ ଘଟୋତ୍କଚ ପ୍ରାଣ
ତାହା ଦେଖି ହରଷ କରି ସାରଥିଣ ।
ଆକାଶର ମାର୍ଗରେ ରଥଏ ଚଳାଇ
ଶକଟକ ଧରନ୍ତି ଦୁଇକରେ ଯାଇ ।
ଗରଜନ କରି ଭେଦକରି ଅଣ୍ଡୁମାଣ୍ଡ
ଖଣ୍ଡ ଖଣ୍ଡ ପକାଇଲେ ଦୁଇ କରେ ଭଣ୍ଡ ।
ଦେଖିଣ ଘଟୋତ୍କଚ ବଳକୁ ଆନନ୍ଦ
ହୋଇଲେ ଆକାଶରେ ବୃନ୍ଦାରକବୃନ୍ଦ ।
ପାଣ୍ଡବସେନାଯାକ ସାଧୁ ସାଧୁ ବାଣୀ
ଉଚାରି ଯୁଦ୍ଧବାଣ୍ଡେ ଧାଇଁଲେ ଧନୁ ଟାଣି ।
ପାଣ୍ଡୁ ସୈନ୍ୟମାନଙ୍କ ଶୁଣି ଗରଜନ
ଭଗଦତ୍ତରଜା ହୋଇଲେ କୋପମନ ।
ମହତ ବ୍ରୁପ କରେ ଓଟାରି ବାଣ ସନ୍ଧ
ବନ୍ଧ ପାଣ୍ଡବଙ୍କ ସେନାଙ୍କୁ ଦେଲେ ଛନ୍ଦ ।
ଭୀମେ କାଣ୍ଡେ ଅଭିମନ୍ୟୁକୁ ତିନିକାଣ୍ଡ
କୈକେୟଙ୍କ ଦେହେ ବିନ୍ଧିଲେ ପାଞ୍ଚକାଣ୍ଡ ।
ଘଟୋତ୍କଚ ବଳୀକି ଶରମୁଖେ ଗିଳ
ଦେବାପାଇଁ ବିନ୍ଧିଲେ ନବକାଣ୍ଡ ଚଳ ।
କ୍ଷେତ୍ରଦେବଙ୍କଉଚିତ ଦେଖାଇ ବାହୁକୁ
ବିନ୍ଧିଲେ ଭଗଦତ୍ତ ଓଟାରି ଗୁଣକୁ ।
ସେ ଘାତେ କ୍ଷତ୍ରଦେବ ପାଇ ମହାପୀଡ଼ା
ପକାଇଲେ ଧନୁ ଶରକୁ ଛାଡ଼ି କ୍ରୀଡ଼ା ।
ଦ୍ରୌପଦେୟମାନଙ୍କୁ ପାଞ୍ଚ ମାରଗଣ
ମାରିଣ ଭଗଦତ୍ତ କଲେ ଗରଜନ ।
ଭୀମଙ୍କର ଘୋଡ଼ାମାନଙ୍କ ପ୍ରାଣ ନେଇ
ଧ୍ୱଜଟି ଛିଣ୍ଡାଇ ପକାଇଦେଲେ ମହୀ ।
ଭୀମଙ୍କ ଦେହକୁ ବଜାଇ ତିନିକାଣ୍ଡ
ବିନ୍ଧିଲେ ଭଗଦତ୍ତ କ୍ରୋଧେ ଜାଳି ପିଣ୍ଡ ।
ସାରଥିଙ୍କି ତାଙ୍କର ପାଞ୍ଚକାଣ୍ଡ ବିନ୍ଧ
ଦେଲେ ତା'ର ପ୍ରିୟ ଛତ୍ରଶୁଣ୍ଡିକି ଛିନ୍ଦ ।
ବିରଥ ହୋଇକରି ଭୀମ ମହାରଥ
ଡେଇଁଲେ ରଥୁଁ ଗଦାଧରି ଧରି ହାତ ।
ଶୃଙ୍ଗ ଥିବା ପର୍ବତ ପ୍ରାୟ ଭୀମମୂର୍ତ୍ତି
ଦେଖି ଭୟ କଲେ ଶତ୍ରୁର ସେନା ଅତି ।
ଏହିକାଳେ ଶ୍ୱେତବାହନ ବିନ୍ଧି ବାଣ
ଆସିଲେ ସେହିଠାକୁ କରିବାକୁ ରଣ ।

ଘଟୋତ୍କଚ ଭୀମ ଯେ ଭଗଦତ୍ତ ରଣ
ଦେଖିଲେ ଯୁଦ୍ଧ କରୁଛନ୍ତି କ୍ରୋଧ ହେନ ।
ଦୁର୍ଯ୍ୟୋଧନ ଜାଣି ଅର୍ଜ୍ଜୁନ ଆସିବାର
ଯେ ତାଙ୍କୁ ସ୍ମରିଣ କହିଲେ ଏ ଉତ୍ତର ।
ତୁମ୍ଭେମାନେ ଯାଇ ନରକ କୋଟିକ
ରଖ ପାର୍ଥ କାଣ୍ଡ ନ କରୁଁ ଟିକଟିକି ।
ଅର୍ଜ୍ଜୁନ ତ ବେଗେ ଧୂଆଇଁଲେ ରଥ
ମାଇଲେ କୁରୁସେନା ପକାଇ ଶରପଥ ।
ଭଗଦତ୍ତ ହସ୍ତୀକି ଧୂଆଁଇ ଯୁଦ୍ଧବାଣ୍ଡେ]
ମିଳିଲେ ଯୁଧିଷ୍ଠିର ରଜା ଆଗେ ଖଣ୍ଡେ ।
କୈକେୟ ପାଞ୍ଚାଳ ସୃଞ୍ଜୟ ଯୋଖି ବାଣ
ଭଗଦତ୍ତ ସଙ୍ଗରେ କଲେ ଯୁଦ୍ଧ ଟାଣ ।
ଭୀମ ସେକାଳେ କାନ୍ଦକରି ଅର୍ଜ୍ଜୁନଙ୍କୁ
କହିଲେ ଇରାବାନ ପାଇ ମରଣକୁ ।
ଇରାବାନ ମରଣ ଶୁଣି ଅର୍ଜ୍ଜୁନ ;
ଦୁଃଖରେ କାନ୍ଦକରି କହିଲେ ବଚନ ।
କୁରୁପାଣ୍ଡବଙ୍କର କ୍ଷୟ ହେବା ହେଲ
ପୂର୍ବୁଁ କହିଥିଲେ ବିଦୁର ବୁଦ୍ଧିଶାଳ ।;
ଏବେ ସେ କଥା ଆସି ହେଉଛି ଯଥାର୍ଥ
ମନେ ତାଙ୍କ ଅନ୍ତର ଦୃଶେ ଟେକ ହାତ ।
ଦ୍ରବ୍ୟ ପାଇଁକି ଜ୍ଞାତିକ୍ଷୟ ଆସୁ ମନ
ବର୍ଜ୍ଜିଲନ୍ତି ଆହେ ଜଗତପାବନ ।
ଏଣୁ ମୁଁ ନିନ୍ଦା କରୁଅଛି ଏ ଦ୍ରବ୍ୟକୁ
ଏହା ବାହାରେ ମଧ୍ୟ କ୍ଷତ୍ରିୟବର୍ଗ୍ୟାକୁ ।
ଜ୍ଞାତି ମାରିଣ ଧନ ଅର୍ଜିବା ପ୍ରକେ
ମଲେ ଲୋକ ପାଇବ ଉତ୍ତମ ଗତି କେ ।
ସୁଯୋଧନ କର୍ଣ୍ଣ ଶକୁନି ଦୁର୍ମନ୍ତ୍ରଣା
ସକାଶୁଁ ଆମ୍ଭେମାନେ ବୁଦ୍ଧି କରି ବଣା ।
ଭାଇ ବାନ୍ଧ ପ୍ରକୁର କୁଳେ ମରାମରି
ହେଉଥାଇଁ କୃଷ୍ଣ କରରେ ଶସ୍ତ୍ର ଧରି ।
ଯୁଧିଷ୍ଠିର ଯେ ଗ୍ରାମ ପାଞ୍ଚଖଣ୍ଡ ପାଇ
ରହିବ ବୋଲିବାର ଉତ୍ତମ ଅଟଇ ।
ଜ୍ଞାତି କୁଳେ ଯୁଝିବାକୁ ମନ ମୋର ନାହିଁ
ଛତ୍ରୁଆ ବୋଲିବାକୁ ଯୁଝୁଁଅଛୁ ମୁହିଁ ।
ଏବେ ମୋ ଘୋଡ଼ା କୁରୁ ସିନ୍ଧୁ ମଧ୍ୟେ ରଖ
ପାରି ହେବ ବାହୁବଳରେ କୃଷ୍ଣ ଦେଖ ।

ଏହା ଶୁଣି ଗୋବିନ୍ଦ ଆନନ୍ଦିତ ହୋଇ
ବାତ ପରି ଅର୍ଜୁନ ଅଶ୍ୱକୁ ଚଳାଇ ।
କୁରୁସେନା ମଧ୍ୟରେ ରଖିଦେଲ ରଥ
ବୋଇଲେ ହାତସୁଖ ସାର ଏବେ ପାର୍ଥ ।
କୁମ୍ଭର ସେନ ଯାକ ମଥାକୁ ଆଉଁଷି
ମରିବା କଥା ଦୃଢପଦେ ହେଲେ ଘୋଷି ।
କୁମ୍ଭ ପୁଅମାନେ କୁଟଙ୍କ ଭିଆଣ ଭଙ୍ଗି
ଆଗେ କରି ଧାଇଁଲେ ସମର ପାଇଁକ ।
ଭୀଷ୍ମ କୃପ ଭଗଦତ୍ତ ଯେ ସୁଶର୍ମାଙ୍କୁ
ବେଢିଣ ବାହାରିଲେ ଅର୍ଜୁନ ପାଶକୁ ।
କୃତବର୍ମା ବାହ୍ଲିକ ପାଇ ରଣମଝି
ଧାଇଁଲେ ସାତ'କଙ୍କ ପାଶକୁ ସେ ଯୁଝି ।
ଅମ୍ବଷ୍ଠ ରଜା ବଜାଇଣ ରଣବାଜା
ଅଭିମନ୍ୟୁ ସଙ୍ଗେ ଯୁଝିବା କଲେ ମଜା ।
ବାକି ମହାରଥୀଏ ପାଣ୍ଡବ ମହାରଥୀ—
ମାନଙ୍କୁ ଯୁଦ୍ଧରେ ଡାକଲେ ହୋଇ ବ୍ୟଥୀ ।
ଭୀମ ଦେଖିଣ ଦୁର୍ଯୋଧନ ହ ମୂରତି
କ୍ରୋଧ-ଅନଳରେ ଯେ ଗଲେ ବପୁ ତାତି ।
କୁମ୍ଭ ପୁଅମାନେ ସତେଜ ଶରବୃଷ୍ଟି
ଘୋଡ଼ାଇ ଭୀମସେନଙ୍କର ଦୁଇଦୃଷ୍ଟି ।
ବାଘପରି ଜଭରେ ବୁଟି ଓଷ୍ଠଚଟ
ଭୀମ କୁମ୍ଭ ପୁଏ ବୁଝିଲେ ମଟମଟ ।
ଅତିବ୍ରଣ୍ଡେ ସନ୍ଧି ବନ୍ଧିଣ କ୍ଷୁରକାଣ୍ଡ
କୁମ୍ଭ ବ୍ୟୁଢୋରସ୍କର କାଟିଦେଲେ ମୁଣ୍ଡ ।
ଭଲ୍ଲକାଣ୍ଡେ ବନ୍ଧିଣ କୁଣ୍ଡଳ ବୂଳରେ
କୁଣ୍ଡଳୀ ପୁଅ ମୁଣ୍ଡ କାଟିଲେ ବଗରେ ।
କୁମ୍ଭ ସାତ ପୁଅଙ୍କୁ ଦେଖି ଭୀମ ବଳୀ
ସାତକାଣ୍ଡ ଯୋଖିଲେ ମାରିବାକୁ ଚଳି ।
ସେ କାଣ୍ଡେ ଯୁଦ୍ଧଦାଣ୍ଡେ ଗମି ଅଷ୍ଟ ଖଣ୍ଡେ
ନ ରଖିଲେ କୁମ୍ଭ ପୁଅଙ୍କ ପ୍ରାଣ ପିଣ୍ଡେ ।
ଅନାଧୃଷ୍ଟି କୁଣ୍ଡଭେଦ ଯେ ଦୀର୍ଘବାହୁ
କନକଧ୍ୱଜ ଦୀର୍ଘଲୋଚନ ସୁବାହୁ ।
ଏଇବଟି ମିଶିଣ ସାତୋଟି ନନ୍ଦନ
ହୋଇଲେ ବପୁ ଭୀମ ବାଣରେ ନିଧନ ।
ବାକି ଯେଉଁ କୁମ୍ଭ ପୁଅଙ୍କ ପାଖେ ଥିଲେ
ଭୀମ ପରାକ୍ରମ ଦେଖିଣ ପଳାଇଲେ ।

ଦ୍ରୋଣ ସେହିକାଳେ ଦେଖାଇ ବୀରପଣ
ଭୀମଙ୍କୁ ଧନୁ ଟାଣି ବିନ୍ଧିଲେ ମାର୍ଗଣ ।
ଦ୍ରୋଣ ଯେତେକ କାଣ୍ଡ ବିନ୍ଧିଲେ ଭୀମଙ୍କୁ
ଭୀମ ତା ସବୁ ହଡ଼ାଇଲେ ସ୍ୱତେଜକୁ ।
କୁମ୍ଭ ପୁଅ-ଚ୍ଛେଦକ ଭୀମ ଶତଧାଡ଼ି
ବାଘ ପରି ବସିଲ୍ ବେକଦେଶେ ମାଡ଼ି ।
ଏହା ବାହାରେ ଦ୍ରୋଣ ଶରକୁ ନିବାରି
କ୍ରୀଡ଼ା କରଲେ ମୃଗଯୂଥେ ସିଂହପରି ।
ଭୀଷ୍ମ କୃପ ଯେ ଭଗଦତ୍ତ ଅର୍ଜୁନଙ୍କୁ
ଯୁଦ୍ଧକଲେ ବଜାଇ ଶାସ୍ତ୍ରକ-ମୁନକୁ ।
ଅର୍ଜୁନ ସେ ତିନି ଲୋକଙ୍କୁ ଘଟନା
ନ କରି ମାରିଦେଲେ ନୃପ କୁମ୍ଭ ସେନା ।
ଅମ୍ବଷ୍ଠକୁଟି ଅଭିମନ୍ୟୁ ମହାରଥ
କରିଦେଲେ ତ ଯୁଦ୍ଧଦଣ୍ଡରେ ବିରଥ ।
ଅମ୍ବଷ୍ଠ ଅଭିମନ୍ୟୁ ପରେ ଖଣ୍ଡା ଫିଙ୍ଗି
କୃତବର୍ମା ରଥେ ବସିଲେ ଯାଇ ବେଗି ।
ଅଭିମନ୍ୟୁ ସେ ଖଣ୍ଡା ବଞ୍ଚାଇ ଲାଘବେ
ରହିଲେ ରଥରେ ଯୁଝିବା ଭାବ ଗର୍ବେ ।
ପାଣ୍ଡୁ ସେନାଯାକ ନୟନେ ତାହା ଦେଖି
ଅଭିମନ୍ୟୁ ବିକ୍ରମରେ ହୋଇଲେ ସୁଖୀ ।
ଧୃଷ୍ଟଦ୍ୟୁମ୍ନ ଆଦି ଯେ ମହାରଥିଗଣ
କୁମ୍ଭ ସୈନ୍ୟମଧ୍ୟେ ପ୍ରହାର କଲେ ବାଣ ।
କୁମ୍ଭ ସୈନ୍ୟ ପାଣ୍ଡବ ସୈନ୍ୟଙ୍କ ସଙ୍ଗତେ
ଯୁଦ୍ଧ କଲେ ଆହେ ରାଜନ ମହାମତେ ।
ଅନ୍ୟୋନ୍ୟରେ ବୀର ହୁଅନ୍ତେ ମରମର
ଗରଜନ ଘାତରେ ମହୀ ଗଲ ପୂରି ।
କେତେକ ଯୋଦ୍ଧା ଧରଧରି ହୋଇ ମସ୍ତି—
କେଶରେ ଓଡ଼ାଗଡ଼ି ହେଲେ କ୍ରୋଧ ବହି ।
ଖଣ୍ଡା ବଧା ଗଦା କରି କେ ପ୍ରହାର
କଲେ ପ୍ରାଣୀମାନଙ୍କର ପ୍ରାଣକୁ ସଂହାର ।
ବାବୁ ପୁଅ ମାମୁଁ ଭଣଜା ଭାଇ ଭାଇ
ମତ୍ସର ହୋଇ ପାଇଲେ ସ୍ୱର୍ଗଭୂଇଁ ।
ଚନ୍ଦନବୋଳା ବାହୁ କଙ୍କଣ କୁଲେ ଛୁଡ଼ି
ବାଡ଼ପିଠା ସାପର ପରି ଗଲେ ଗଡ଼ି ।
ଖଡ଼ଗ ଚର୍ମ ପ୍ରାସ ଯେ ପଟ୍ଟିଶ ତୋମର
ଋଷ୍ଟି ଶକ୍ତି ମୂଷଳ ପରିଘ ମୁଦ୍ଗର ।

ଛଡପାଳ କୁଥା ହୋଇଣ ଚଣ୍ଡା ଭଣ୍ଡା
ଛୁଡ଼ି ଗଡ଼ି ଗଜନ ହେଲେ ମସ୍ତମଣ୍ଡା ।
ବୀରମାନେ କ୍ରୋଧରେ ବୁହିଁବା ପରସ୍ପେ
ତରଟି ଆଖି ପ୍ରାଣ ଗୁଡ଼ିଲେ ହେ ରସ୍ପେ ।
ଗଦାରେ କାହା ମୁଣ୍ଡ ଯାଆନ୍ତି ଫାଟି
ପିଇଲ୍ ଧୂଳି ମେଲି ଦେଇକରି ପାଟି ।
ଗଜ ବାଜମାନଙ୍କ ଅଣ୍ଟା ଦୁଇ ଖଣ୍ଡ
ହୁଅନ୍ତେ ମଞ୍ଚରେ ଗଡ଼ିଲ୍ ପିଣ୍ଡଖଣ୍ଡ ।
ମଳି ଲସି ବୋଲଣ ବୋଲିବା ବଚନ
କେବଳ ପୂରିଗଲ୍ ଯୁଦ୍ଧଭୂମି ସ୍ଥାନ ।
ମସ୍ତକ ଜାନୁ ବାହୁ ଯୋଦ୍ଧାଙ୍କୁ ଝରଜେ
ଛୁଡ଼ି ମୂରଇଲ୍ ମସ୍ତକ ନରପତେ ।
ସେକାଳରେ ସେ ଯୁଦ୍ଧଭୂମି ମହଜାର
ବାଳ ହୋଇଲେ ଚଲେ ଗଡ଼ିବା ଚାମର ।
ଅର୍ଦ୍ଧଚନ୍ଦ୍ର ନାରଚ ଅଟଇ କପାଳ
ନାଳକ-ଅଳକେ ହୋଇଛୁ କ ମଞ୍ଜଳ ।
କର୍ଣ୍ଣୀଶର ଯେ କର୍ଣ୍ଣ ଟଆର ନାକରେ
ଶୋଭା ପାଇଲ୍ ସେ ଅତ୍ୟନ୍ତ ଅଧିକରେ ।
ଚକ୍ଷୁଆଖି ରକତଲଗା ଚନ୍ଦ୍ରଆର
ଅଧରେ ଝଳ ହାସ ହେଲ୍ ନିରନ୍ତର ।
ଶଙ୍ଖ କଣ୍ଠ ସ୍ତନ ଯେ ହୋଇକରି କୁମ୍ଭ;
ଗଡ଼ିବା ବସନରେ ହୋଇଲ୍ ଆରମ୍ଭ ।
ସୁନାମୁଣ୍ଡା ପରଘ ଶକତି ମୂଷଳ
ହୋଇଲେ ମହଜାର ସେ ବାହୁଯୁଗଳ ।
ନିତମ୍ବ ଫଣ ଗଦା ଜଘେ ହେଲ୍ ଶୋଭା
ଷଢ଼ ତ୍ରାଲଯାକ ପାଇଲେ ପାଦପ୍ରଭା ।
ଖଡ଼୍ଗ ମୁଦ କୁଣ୍ଡଳ ପଡ଼ିବା ବୀରଙ୍କର
ବ୍ୟାଜେ ଭରିଅଛି ଅଙ୍ଗେ କି ଅଳଙ୍କାର ।
ମହାରଥୀମାନଙ୍କ ମନକୁ ରଞ୍ଜାଇ
ଦେବାପାଇଁ ଏରୂପେ ଦେହକୁ ଭୂଷାଇ ।
ଭୂମି-ନବକାମିନୀ ହେଉଁ ଅନୁରାଗ
କେତେ ମହାରଥୀଙ୍କି ଦେଲ୍ ଦେହସଙ୍ଗ ।
ଏରୂପେ କୁରୁ ଲୋକେ ପାଣ୍ଡବଙ୍କ ଲୋକ
ସଙ୍ଗତରେ ଯୁଝି ଲଭିଲେ ଯମଲୋକ ।
ଏହି ସମୟରେ ଅନ୍ଧାର ହେଲ୍ ଅତି
ରହିଲେ ଦୁଇ ସେନା ଯୁଦ୍ଧରୁ ନିବର୍ତ୍ତି ।
କୁରୁ ପାଣ୍ଡୁ ଦୁହିଁଏ ନିବାରି ହଁ ଥାଟ
ବାହାଣିଲେ ଗଜନ ହେଜ ବସାବାଟ ।
ଶିବିରମାନଙ୍କେ ଶୋଇଲେ ଯଥାସୁଖେ
ଯୁଦ୍ଧ କଥା କୁହାକୁହି ହୋଇଲେ ମୁଖେ ।
ଏଠାରେ ଅଷ୍ଟମ ଦିବସ ଯୁଦ୍ଧ ଶେଷ
କହିଲେ ବେଦବ୍ୟାସ ଋଷି ଚର୍ମବାସ ।
ତାହାଙ୍କ ପାଦେ ଦେଇ ଅହର୍ନିଶ ମତି
ଏ ଗୀତ କହେ କୃଷ୍ଣସିଂହ ନରପତି ।

—୦—

## ନବମ ଦିନ

ଦୁର୍ଯ୍ୟୋଧନ ଶକୁନି କର୍ଣ୍ଣ ଦୁଃଶାସନ
ଏକାନ୍ତରେ ରସ୍ପେ ହୋଇଣ ଏକାସନେ ।
କୁହାକୁହି ହୋଇଲେ ନିତ ପାଣ୍ଡୁସୁତେ
ମାଇଲେ କିପରି ତାଙ୍କୁ ଜିଣିବା କେମନ୍ତେ ।
ଦୁର୍ଯ୍ୟୋଧନ ରାଜନ ତାହାଙ୍କୁ କହିଲେ
ଦ୍ରୋଣ ଭୀଷ୍ମ କୃପ ରଥୀଏ ମୋର ଭଲେ ।
ଯୁଦ୍ଧ କରୁନାହାନ୍ତି ପାଣ୍ଡବମାନଙ୍କୁ
ଏଥିର କି କାରଣ କହତ ଆମ୍ଭଙ୍କୁ ।
ମୋ ବଳଯାକ ତ ଗଲେଣ ଯମପାଖ
ବହୁ ପାଣ୍ଡବଙ୍କର ତୀକ୍ଷଣ ବଶିଖ ।
ଦେବତାମାନଙ୍କେ ଅବଧ୍ୟ ପାଣ୍ଡୁପୁଏ
ପାରୁ ନାହିଁ ତାହାଙ୍କୁ ବଧିତ ଉପାୟେ ।
କର୍ଣ୍ଣ ବୋଇଲେ ଆହେ ନ କର ଶୋଚନା
ମାରିବି ମୁଁ କୁନ୍ତୀର ଯୁଧିଷ୍ଠିର ନନା ।
କେବଳ କହୁଅଛି ଭୀଷ୍ମଙ୍କୁ ଯୁଦ୍ଧରୁ
ନିବର୍ତ୍ତାଅ ରାଜନ ଅଟନ୍ତି ସେ ଗୁରୁ ।
ମୁଁ ଏକା ହୋଇ କାଲି ରଣମଧ୍ୟେ ପଶି
ଛେଦିବି ସବୁ ପାଣ୍ଡବମାନଙ୍କୁ ବିନାଶି ।
ନିଶ୍ଚୟ କରି ଏହା କହୁଛି ତୁମ୍ଭଙ୍କୁ
ନ କର ରସ୍ପେ କିଛି ସନ୍ଦେହ ମନକୁ ।
ନ ପାରି ଭୀଷ୍ମ କହି ପ୍ରତିଜ୍ଞା ବଚନ
କରୁଛନ୍ତି ପାଣ୍ଡବମାନେ ଆୟୋଧନ ।
ତାହାଙ୍କ ହାତେ କେଉଁ ମରିବେ ସେମାନେ
ଭାବନା କର ଅରେ ଦୁର୍ଯ୍ୟୋଧନ ମନେ ।
ଏବେ ହେ ଭୀଷ୍ମଙ୍କ ବସାକୁ ଯାଅ ଧାଇଁ
ରଖାଅ ଘରେ ତାଙ୍କୁ ଯୁଦ୍ଧୁଁ ନିବର୍ତ୍ତାଇ ।

ଭୀଷ୍ମ ଶସ୍ତ୍ର ଘାତରେ ପାଣ୍ଡୁସୁତଙ୍କର
ଜୀବନ ହେଲା ବୋଲି ଜାଣ ହେ କୁମର ।
ଦୁର୍ଯ୍ୟୋଧନ ଯେ ଦୁଃଶାସନଙ୍କୁ ଅନାଇ
ବୋଇଲେ ଚଳ ଭୀଷ୍ମଠାକୁ ଆହେ ଭାଇ ।
କର୍ଣ୍ଣଙ୍କୁ ବୋଇଲେ ଯାଉଛୁ ଭୀଷ୍ମଠାକୁ
ଲଗିଲାଣି ମିତ ମୋର ଭାର ତୁମ୍ଭଙ୍କୁ ।
ମୋ ଆସିବା ଉତ୍ତାରୁ କରି ତୁମ୍ଭେ ଯୁଦ୍ଧ
ଦୁର୍ଦ୍ଧର୍ଷ ପାଣ୍ଡବଙ୍କୁ କର ରଣେ ବଧ ।
ଏହା କହିଣ ଦୁର୍ଯ୍ୟୋଧନ ଦଣ୍ଡଧାରୀ
ଯିବାକୁ ମନ କଲେ ଭାଇ ସଙ୍ଗେ ଧରି ।
କେୟୂର ହାର ମୁକୁଟରେ ଦୁର୍ଯ୍ୟୋଧନ
ମହାଶୋଭା କରି ଅପଣା ଅପବନ ।
ଏ ବାହାରେ ଚନ୍ଦନ କର୍ପୂର ବୋଳି ହୋଇ
ବାହାରିଲେ ତ ବସାଦାଣ୍ଡରେ ଗେଲାଇ ।
ହାତୀ ଘୋଡ଼ା ଚଢ଼ି ସିପାଇ ତଳାସେହା
ରାଜା ସଙ୍ଗେ ଗଲେ ହଲାଇ ଦୁଇବାହା ।
ମାଗଧସୂତ ଭାଟ କେଳା ବାଶିପନ୍ତି
ଲଗିଅଛନ୍ତି ଦୁର୍ଯ୍ୟୋଧନଙ୍କର କନ୍ତି ।
ଜାଳିଣ ଲୋକେ ସିଂହ ସୁବର୍ଣ୍ଣ ଉଦ୍ଧୃତ
ଅନ୍ଧାର-କଣ୍ଟକ ଦେଲେଟି ଘଉଡ଼ ।
ସଇନ-ନକ୍ଷତ୍ରରେ ଚନ୍ଦ୍ରମା ପରାୟେ
ପାଇଲେ ଶୋଭା ନୃପ ଦୁର୍ଯ୍ୟୋଧନ ରାୟେ ।
ଖଞ୍ଜରୀ ବେତଧାରୀ ଆଡ଼ ଆଡ଼ କହି
ନୃପ ଆଗେ ଧାଇଁଲେ ଗେଲାଇ ଗେଲାଇ ।
ଭୀଷ୍ମଙ୍କର ବସା ପ୍ରବେଶରେ ଘୋଡ଼ାରୁ
ଓହ୍ଲିଲେ କୁମର ସୂତ ହଳକାରୁ ।
ଭୀଷ୍ମଙ୍କ ପାଦ ଧରି କରି ନମସ୍କାର
ବସି ତାଙ୍କ ପାଖରେ କୁମର ତୁମ୍ଭର ।
କାଢିଣ କହିଲେ ତୁମ୍ଭଙ୍କୁ ଆଶ୍ରେ କରି
ଇନ୍ଦ୍ରଙ୍କୁ ଜିଣିବାକୁ ଇଚ୍ଛା ଥିଲି ଧରି ।
ପାଣ୍ଡୁସୁତମାନେ ଅଟନ୍ତି କେତେକର
ଏହା କେତେ ବଚନେ କରିବ ପ୍ରହର ।
ଏବେ ମୋଠାରେ ଦୟା ବହି ପିତାମହ
କର ପାଣ୍ଡୁସୁତମାନଙ୍କଠାରେ କୋହ ।
ସୃଞ୍ଜୟ ତ କହୁଛ ପାଞ୍ଚାଳ କୈକେୟ
ସୋମକ ପାଣ୍ଡବଙ୍କୁ ଦେବ ଯମକ୍ଷୟ ।

ଏବେ ସେ କଥା ସତ୍ୟ କର ରଥୀଗଣ
ଦେଇଣ ପାଣ୍ଡୁସୁତଙ୍କୁ ମରଣ ।
ଯେବେ ପାଣ୍ଡବଙ୍କୁ ଉପ୍ରୋଧ ଅଛ ରଖି
ବୋଲ ହେ କର୍ଣ୍ଣ ମାରୁ କାଲି ହୋଇ ସୁଖୀ
ଏରୂପେ କହି ଦୁର୍ଯ୍ୟୋଧନ ନରସଣ
ଭୀଷ୍ମଙ୍କର ଆଗରେ ହୋଇଲେ ମଉନ ।
ତୁମ୍ଭ ପୁଅ ବଚନ-ଶରେ ପିତାମହ
ଦୁଃଖ ଧରି ହୃଦେ ବହିଲେ ବଡ଼ କୋହ ।
ତୁମ୍ଭ ପୁଏ ଅପ୍ରିୟ ବଚନ ନ କହି
ନାଗ ପରି ନିଃଶ୍ୱାସ ପକାଇଲେ ସେହି ।
କ୍ରୋଧରେ ଦୁଇଚକ୍ଷୁ ଦେଇ ଲେଉଟାଇ
ତୁମ୍ଭ ପୁଅ ଆଗେ କହିଲେ ପ୍ରୀତି ବହି ।
ବୋଇଲେ ଆହେ ଦୁର୍ଯ୍ୟୋଧନ ନରସାଇଁ
ଶକ୍ତି ଅନୁରୂପ ଉଦ୍ୟମ କରେ ମୁହିଁ ।
ମୋ ହୃଦ କମ୍ପାଇ ବଚନ-ଶରେ ଆସି
ଘାଣ୍ଟି ଦେଉଅଛ ହୋଇଣ ଅତି ରୋଷୀ ।
ଖାଣ୍ଡବଦହନ ଦହି ଅଗ୍ନିଙ୍କି ଅର୍ଜୁନ
ସନ୍ତୋଷ କଲା ରଣେ ଜିଣି ମଘବାନ ।
ଘୋଷଯାତ୍ରା କାଳରେ ଗନ୍ଧର୍ବ ତୁମ୍ଭଙ୍କୁ
ବାନ୍ଧି ନେଉଥିଲେ ସେ ଜିଣିଣ ତାହାଙ୍କୁ ।
ତୁମ୍ଭଙ୍କୁ ମୁକ୍ତ କରି ଆଣିଲେ ଭୂସାଇଁ
ତୁମ୍ଭରଠାରେ ଭାତୃସେନହକୁ ବହି ।
ଏକା ଥରକରେ ବିରାଟ ନଗରରେ
ଜିଣିଲେ ଯୁଦ୍ଧେ ଆମ୍ଭମାନଙ୍କୁ ସଗରେ ।
କର୍ଣ୍ଣ ଆଉ ରଥୀଙ୍କ ମୁଣ୍ଡ ପାଗ ନେଇ
ଉତ୍ତରଙ୍କୁ ସେ ଦେଲେ କୁଣ୍ଢାଇ ଖେଳାଇ ।
ଇନ୍ଦ୍ରଙ୍କର ଅଜେୟ ନିବାତକବଚ
ମଲେ ସେ ଏକା ପାଇ ଅର୍ଜୁନ ନାରାଚ ।
ଏମାନେ ତ ତୁମ୍ଭଙ୍କୁ ପ୍ରତ୍ୟକ୍ଷ ହୋଇଛି
କସ ଆଉ କନ୍ଧବ ଗାନ୍ଧାରୀଙ୍କ ବହ୍ନି ।
ଅର୍ଜୁନଙ୍କୁ ଯୁଦ୍ଧରେ ଜିଣିବାକୁ ନର
ଟୋକିଲେ ଦିଶୁ ନାହିଁ ନୟନକୁ ମୋର ।
କି ବୋଲି କି ନ ବୋଲି ଏହା ତ ତୁମ୍ଭଙ୍କୁ
ଗୋଚର ନାହିଁ ଏଣୁ କହୁଛ ଆମ୍ଭଙ୍କୁ ।
ବିପରୀତ ତୁମ୍ଭଙ୍କୁ ଦିଶୁଛି ଜଗତ
ହୋଇବାକୁ ରାଜନ ରଣମଧ୍ୟେ ହତ ।

ପାଣ୍ଡୁସୁତମାନଙ୍କୁ ଜିଣିଣ ରାଜ୍ୟଟି
ଆଣିବା ଇଚ୍ଛା କରି ହେଉଅଛ ସାଙ୍ଗି ।
ଆଜ ସେ କଥାଟିକ ଗାନ୍ଧାରୀ-ବେଟାଟି
ସଫଳ କରି ଦେବି କଣ୍ଟକିକ କାଟି ।
ନୋହିଲେ ତୁମ୍ଭେ ଯାଇ ଯମଙ୍କ ଗୃହଟି
ମାଡ଼ି ବସ ପାଇଣ ଗାଣ୍ଡୀବ ବାଣୁଟି ।
ଶିଖଣ୍ଡୀକି ଛାଡ଼ି ମୁଁ ପାଣ୍ଡବ ବଳକୁ
ମାରିବି କହୁଅଛି ତୁମ୍ଭଙ୍କୁ ସତ୍ୟକୁ ।
ସେ ଅବା ମୋତେ ମାରି ନେବେ ଯଶ-ଶିରୀ
ମୁଁ ଅବା ତାଙ୍କୁ ମାରି ଦେବି ପ୍ରିୟକାରୀ ।
ଏବେ ଶୋଇ ସୁଖରେ ରଜନୀ ପ୍ରହାଅ
କାଲି ମୋ ଯୁଦ୍ଧ ଦେଖ ଧୃତରାଷ୍ଟ୍ରସୁତ ।
ଏରୂପେ ଭୀଷ୍ମ ବାକ୍ୟ ମୁଖୁ ଦୁର୍ଯ୍ୟୋଧନ
ଶୁଣି ତାହାଙ୍କ ପାଦ କରିଣ ବନ୍ଦନ ।
ବସାକୁ ଆସି ସୁଖେ ଭୁଲି ଯେତେ ପୀଡ଼
ଶୋଇଲେ ଆହେ ମଣିସାଇଁ ଜଡ଼ ମାଡ଼ ।
ପୁଣି ରାତି ଶେଷରେ ଉଠି ଦୁର୍ଯ୍ୟୋଧନ
ଯୁଦ୍ଧକୁ ସଜ କରାଇଲେ ନିଜ ସୈନ୍ୟ ।
କହିଲେ ଆଜ ଭୀଷ୍ମ ସୋମକ ମାରିବେ
ସମରେ ଏହା ମତେ କହିଛନ୍ତି ଭାବେ ।
ଭୀଷ୍ମ ଦୁର୍ଯ୍ୟୋଧନ ବଚନ କର୍ଣ୍ଣେ ଶୁଣି
ଧିକ ମୋତେ ହେଉ ଭାବିଲେ ମନେ ଗୁଣି ।
ଦୁର୍ଯ୍ୟୋଧନ ଯେ ଦୁଃଶାସନକୁ କହିଲେ
ଆଜ ମହାରଥୀ ଭୀଷ୍ମଙ୍କୁ ଜଗ ଭଲେ ।
ଭୀଷ୍ମଙ୍କୁ ଜଗିଥିଲେ ପାଣ୍ଡବ ସଇନ
ଆଜ ଦିନ ଭିତରେ ହୋଇବେ ନିଧନ ।
କେବଳ ମୋତେ କହିଛନ୍ତି ଭୀଷ୍ମରଥୀ
ଶିଖଣ୍ଡୀକି ନ କରିବି ମୁଁ ଯୁଦ୍ଧେ ବ୍ୟଥୀ ।
ପୂର୍ବରୁ ଶିଖଣ୍ଡୀ ଅଟଇ ସ୍ତ୍ରୀଜାତି
ଏହା ଜାଣି କିରୂପେ ଦେବେ ସେ ବିପତ୍ତି ।
ଅଜାଗରୂକ ହେଲେ ଶିଖଣ୍ଡୀ-ଜଲ୍ଲୁଆ
କରିବ ଭୀଷ୍ମସିଂହ ଯନ୍ତ୍ରରେ ଠିଆ ।
ଏହାଜାଣି ମୋ ରଥୀମାନେ ସାଞ୍ଜୁ ଭରି
ଜଗିଥାନ୍ତୁ ଭୀଷ୍ମଙ୍କୁ କରେ ଧନୁଧରି ।
ଭୂପ ସୁତ ବଚନେ ମହାରଥୀ-କୁଳ
ଭୀଷ୍ମ ଚାରିପଟେ ରହିଲେ ବେଢ଼ି ବଳ ।

କୁନ୍ତୀର ପୁତ୍ରମାନେ ଯେଜଣ ଭୀଷ୍ମଙ୍କୁ
ବାହାରନ୍ତେ ପୃଥିବୀ ନଇଁଲା ତଳକୁ ।
ଦୁର୍ଯ୍ୟୋଧନ ତେବେ କହିଲେ ଯା ବଚନ
ଶୁଣ ଆହେ ଗାନ୍ଧାରୀବେଶୀ ପ୍ରାଣଧନ ।
ଯୁଧାମନ୍ୟୁ ଉତ୍ତମଉଜା ଶିଖଣ୍ଡୀରେ
ରକ୍ଷିତ ହୋଇଅଛି ପାର୍ଥ ନିରନ୍ତରେ ।
ଯେରୂପେ ଅରଜୁନ ନ ପାରିବ ଜିଣି
ସେରୂପେ ଆହେ ଭାଇ କର ଏହିକ୍ଷଣି ।
ଏ କାଳେ ଧୃଷ୍ଟଦ୍ୟୁମ୍ନ ମୁଟକୁ ଅର୍ଜୁନ
ଜନାର୍ଦ୍ଦନ କହିଲେ ଏରୂପେ ବଚନ ।
ଶିଖଣ୍ଡୀକ ରଖ ଭୀଷ୍ମ ଆଗରେ ନେଇ
ତାହାଙ୍କୁ ରଖିବା କଥାକୁ ଅଛି ମୁହିଁ ।
ସେନାମଧ୍ୟେ ଭୀଷ୍ମ ସର୍ବତୋଭଦ୍ର ବ୍ୟୂହ
କଲେ ମାନସରେ ବହିଣ ଅତି କୋହ ।
କୃପ କୃତବର୍ମା ଶକୁନ ଜୟଦ୍ରଥ
ଶୈବ୍ୟ ଆଗେ ରହିଲେ ଚଢ଼ି କରି ରଥ ।
କାମ୍ବୋଜରାଜ ସୁଦକ୍ଷିଣ ସଙ୍ଗେ ବେନି
ଭୀଷ୍ମ ମଧ୍ୟ ହୋଇଲେ ଯୁଦ୍ଧ ଅଗ୍ରଗାମୀ ।
ଦ୍ରୋଣ ଭୂରିଶ୍ରବା ଯେ ଶଲ୍ୟ ଭଗଦତ୍ତ
ହେଲେ ସେ ବ୍ୟୂହର ଦକ୍ଷିଣ ପାଶେ ସ୍ଥିତ ।
ଅଶ୍ୱତ୍ଥାମା ବିନ୍ଦ ଯେ ଅନୁବିନ୍ଦ ସୋମ—
ଦତ୍ତି ବାମପାର୍ଶ୍ୱେ ରହିଲେ ବଳି ତମ ।
ଦୁର୍ଯ୍ୟୋଧନ ତ୍ରିଗର୍ତ୍ତଙ୍କୁ ସଙ୍ଗେ ଘେନ
ବ୍ୟୂହ ମଧ୍ୟେ ରହିଲେ ହୋଇ ଧନୁଷ୍ପାଣି ।
ଅଲମ୍ବୁଷ ଶ୍ରୁତାୟୁ ବ୍ୟୂହ ପୃଷ୍ଠପାଶେ
ରହିଲେ ଧନୁଶର ବହି କରଦେଶେ ।
ଏରୂପେ କୁରୁ ଲୋକେ ଜଗି ମହାବ୍ୟୂହ
ଯୁଦ୍ଧ କରିବାକୁ ବଢ଼ାଇଲେ କୋହ ।
ଯୁଧିଷ୍ଠିର ଭୀମ ନକୁଳ ସହଦେବ
କଲେ ସୁଦୁର୍ଜ୍ଜୟ ବ୍ୟୂହ ଅଗ୍ରରେ ଠାବ ।
ଧୃଷ୍ଟଦ୍ୟୁମ୍ନ ବିରାଟ ଶିଖଣ୍ଡୀ ସାତ୍ୟକ
ଘଟୋତ୍କଚ ଯେ ଚେକିତାନ ଧନୁ ଟେକ ।
ମହତ ସୈନ୍ୟ ସଙ୍ଗେ ବେନଣ ରହିଲେ
ଥରେ ଥରେ ନଣ ଆଉଁଷି ଦେଇଥିଲେ ।
ଅଭିମନ୍ୟୁ ଦ୍ରୁପଦ ଅର୍ଜ୍ଜୁନ କେକେୟ
ବାହାରିଲେ ଯୁଦ୍ଧରେ ବଳି ମହାପ୍ରିୟ ।

ଏହିରୂପେ ପାଣ୍ଡୁ ସୈନ୍ୟ କୁରୁଙ୍କୁ ମାରିବାକୁ
ସନ୍ଧିରେ ରହିଲେ ଧରିଣ ଅସ୍ତ୍ରକୁ ।
କୁରୁ ଦଳକେ ଭୀଷ୍ମଙ୍କୁ ଆଗରେ ଚଳାଇ
ପାଣ୍ଡବ ସେନା ମଧ୍ୟେ ମିଳିଲେଟି ଯାଇ ।
ପାଣ୍ଡବେ ଆଗ କରି ଭୀମେ ଯୁଝିବାକୁ
ଭୀଷ୍ମ ସଙ୍ଗତେ ଗଲେ ବହିଣ ଚମକୁ ।
ସେକାଳେ ଭେରୀ ଶଙ୍ଖ ମୃଦଙ୍ଗ ଦୁନ୍ଦୁଭି
ନାଦେ ମହାରଥୀ ଗର୍ଜିଲେ ଭୟ ଲଭି ।
ତା ଦେଖି ବଳୁଆ ଶାଗୁଣା ହୋଇ କୋଟି
ଗରଜନ କଲେ ମେଲିଣ ଦେଇ ପାଟି ।
ସକୁଳ ଚକ୍ଷୁକୁ ଝଟିଲା ଝଡ ବାତ
ହୃଦ ମଧ୍ୟେ ଜାତ ହୋଇଲା ଭୟ ମୋହ ।
ରକ୍ତ ହାଡ଼ ମାଉଁସ ଆକାଶରୁ ପଡ଼ି
ରଞ୍ଜିଲା ଯୁଦ୍ଧଭୂମି ପ୍ରଦେଶକୁ ମାଡ଼ି ।
ବାହନମାନଙ୍କର ନୟନୁ ନେତକ
ପଡ଼ି ଉଭା କରିଲା ଯୁଦ୍ଧଭୂମିଯାକ ।
ରାକ୍ଷସମାନଙ୍କର ଗରଜତ ରଡ଼ି
ସେହିକାଳରେ ଶବ୍ଦ କଲା ବଡ଼ବଡ଼ ।
ସୂର୍ଯ୍ୟମଣ୍ଡଳକୁଟି ବାଜିଣ ଉଲ୍କା
ପଡ଼ି ମହୀଦେଶରେ ଜାତ କଲା ଦକା ।
ଦୂର ସଇନର ମୁଖର ଶବଦୁଟି
ଶବ୍ଦ କଲା ପ୍ରଳୟସିନ୍ଧୁ ଗର୍ଜନ୍ତି ।
ପିଙ୍ଗଳବର୍ଣ୍ଣ ଘୋଡ଼ା ଯୋଖି ରଥେ ବସି
ଅଭିମନ୍ୟୁ ବଳେ ବଳରେ ଗଲେ ପଶି ।
ଜଳଦ ଜଳଧାର ବୃଷ୍ଟି କଲା ପରି
ଶରବୃଷ୍ଟି କଲେ ସୈନ୍ୟରେ କ୍ରୋଧ ଧରି ।
କୁରୁର ଲୋକମାନେ ଅଭିମନ୍ୟୁ କାଣ୍ଡ
ଚାହିଣ ସାଙ୍କୁଡ଼ାଇ ଦେଲେ ନିଜ ପିଣ୍ଡ ।
ଅଭିମନ୍ୟୁ ହାତୁଁ ଯେତେଟି କାଣ୍ଡ ଛିଟି
ଧାଇଁ ଯେଣ ଗଲା ତେତେଟି ପରଶୁଟି ।
ଜ୍ୱଳିତ ଯମଦଣ୍ଡ ପରାୟେ ମାର୍ଗଣ
ଛେଦିଲେ ଅଭିମନ୍ୟୁ ଧନୁକୁ ଟାଣିଣ ।
ରଥୀଙ୍କ ରଥ ଭୁଲେ କାଣ୍ଡେ ଲେଉଟାଇ
ଚିତ୍ତ କରିଣ ଦେଲେ ମହୀରେ ଶୁଆଇ ।
ଗଜାରୋହମାନଙ୍କୁ କରି ଦୁଇଗଡ଼
କାଟି ପକାଇଲେ ହାତୀଙ୍କ ମେରୁହାଡ଼ ।

ରାଜାମାନେ ଅଭିମନ୍ୟୁର ପରାକ୍ରମ
ଦେଖି କହି ବୋଇଲେ ଏ ଯୁଦ୍ଧେ ଉତ୍ତମ ।
କୁରୁ ସୈନ୍ୟ ଭୁଜାଲୁ ଅଭିମନ୍ୟୁ ଶର—
ବାତ କଲା ସମର ଭୂମିରୁ ଅନ୍ତର ।
ଅଭିମନ୍ୟୁ ଜ୍ୱଳନ୍ତ ଅଗ୍ନିଦେବ ପ୍ରାୟେ
ଦିଶିଲେ ଯୁଦ୍ଧଦାଣ୍ଡେ କ୍ରୋଧେ ଅନ୍ତଶୟେ ।
ଅଭିମନ୍ୟୁ ଧନୁରୁ ଛିଟି କାଣ୍ଡରାଜ
ସଜଳ ଜଳଧର ତେଜ ଦେଲେ ରଞ୍ଜ ।
ଅଭିମନ୍ୟୁ ଶର-ଭ୍ରମରେ ଯୋଦ୍ଧା ହୃଦ—
ପଦ୍ମ ରକ୍ତ-ମଧୁ ପିଇଲେ ବହୁ ମୋଦ ।
କୃପ ଆଚାର୍ଯ୍ୟ ଜୟଦ୍ରଥ ଦ୍ରୌଣି ଦ୍ରୋଣ
ଏମାନଙ୍କୁ ମୋହିଲା ଅଭିମନ୍ୟୁ ବାଣ ।
ଅଲାତଚକ୍ର ପରି ଅଭିମନ୍ୟୁ ଧନୁ
ଦିଶିଣ କମ୍ପାଇଲା ଯୋଦ୍ଧାଙ୍କର ତନୁ ।
କୁରୁର ଯୋଦ୍ଧାମାନେ ଅଭିମନ୍ୟୁ ବଳ
ଦେଖିଣ ସୁମରିଲେ ଆପଣା କପାଳ ।
ମନେ କଲେ ଅର୍ଜ୍ଜୁନ ଆଜ ରୂପେ ଧରି
ହେଉଛୁ ଆସି ଆମ୍ଭମାନଙ୍କୁ ସଂହାର ।
ଅଭିମନ୍ୟୁ ଶରରେ ପାଇ ମହାପୀଡ଼ା
ପଳାଇଲେ ସଇନ୍ୟେ ଛାଡ଼ିଦେଇ କ୍ରୀଡ଼ା ।
କୁରୁ ସୈନ୍ୟ ଅଭିମନ୍ୟୁର ଶରେ ଡରି
ମଲୁଁ ବୋଲି ଡାକ ପାଡ଼ିଲେ ଉଚ୍ଚ କରି ।
ତା ଶୁଣି ଦୁର୍ଯ୍ୟୋଧନ ଡାକି ଅଳମ୍ବୁଷ
ବୋଇଲେ ଗର୍ଜିଉଅ ଅଭିମନ୍ୟୁ ସେଷ ।
ମୁଁ ମଧ୍ୟ ଭୀଷ୍ମ ଦ୍ରୋଣ ଦୁହିଁଙ୍କୁ ହେ ଧରି
ହେଉଛୁ ପଞ୍ଚପାଣ୍ଡବଙ୍କୁ ଯୁଦ୍ଧେ ମାରି ।
ଏହା ଶୁଣିଣ ଅଳମ୍ବୁଷ ମୋଡ଼ି ନଣ
ଯୁଦ୍ଧ ପାଇଁକି ଗଲା ଅଭିମନ୍ୟୁ ପାଶ ।
ଅଳମ୍ବୁଷର ମୁଖ ରଡ଼ି ପାଣ୍ଡୁସେନା
ଶୁଣିକରି କାନେ ହୋଇଲେ ଭୟମନା ।
କେତେ ଲୋକ ଛନଅଁ ହୋଇ ପ୍ରାଣ ଛାଡ଼ି
ମହୀଦେଶେ ପଡ଼ିଲେ ମୁହଁ ତଳେ ମାଡ଼ି ।
ଅଭିମନ୍ୟୁ ଧନୁ ଧରିଣ ଅତି ରାଗେ
ଛାଡ଼ିଲେ ଶର ରାଶି ଅଳମ୍ବୁଷ ଆଗେ ।
ଅଳମ୍ବୁଷ ପାଣ୍ଡବସୈନ୍ୟେ କାଣ୍ଡଧାଡ଼ି
ଛାଡ଼ି ଦେଲା ଯୁଦ୍ଧଦାଣ୍ଡରେ ବଉଡ଼ି ।

ଅଭିମନ୍ୟୁ ଆଗରେ ଟିଙ୍କି ଧନୁର୍ଗୁଣ
ପୁଣି ଶର ବିନ୍ଧିଲା ଦେଖାଇ ଯେ ଟାଣ ।
ପାଣ୍ଡୁସେନା-ନଳିନବନ ଦେଇ ମନ୍ଥି
ହାତୀପରି ଧାଇଁଲା ଯୁଦ୍ଧେ ନୋହି ବ୍ୟଥୀ ।
ଦ୍ରୌପଦୀଙ୍କର ପାଞ୍ଚସୁତେ ତାହା ଦେଖି
କ କରୁଛୁ ବୋଲି ବିନ୍ଧିଲେ ଶର ଯୋଖି ।
ପ୍ରଳୟ କାଳ ପାଞ୍ଚ ଗ୍ରହ ପରି ପାଞ୍ଚେ
ରାକ୍ଷସ-ଚନ୍ଦ୍ରମାକୁ ପୀଡ଼ା ଦେଲେ ମଞ୍ଚେ ।
ପ୍ରତିବିନ୍ଧ୍ୟ ଲୁହାକାଣ୍ଡରେ ରାକ୍ଷସକୁ
ବିନ୍ଧିଲେ ରଣବାଣ୍ଡେ ତା ହୃଦଦେଶକୁ ।
ସେ ସକାଣ୍ଡୁଁ ରାକ୍ଷସ ତନୁଛାଣି ଛୁଡ଼ି
ମହୀମଧ୍ୟରେ ଆସି ପଡ଼ିଲା ଅଜାଡ଼ି ।
ସେ ପାଞ୍ଚଭାଇ ତାହା ଦେଖିକରି ପାଞ୍ଚ
କରି ମନେ ବିନ୍ଧିଲେ ବହୁତ ନାରାଚ ।
ଅଳମ୍ବୁଷ ସେ କାଣ୍ଡେ ପାଇ ମହାବ୍ୟଥା
ମୁହୂର୍ତ୍ତେ ପର୍ଯ୍ୟନ୍ତେ ନ କହିଲା କଥା ।
ପୁଣି ଚେତା ପାଇଣ ଦ୍ରୌପଦେୟଙ୍କର
ଧ୍ୱଜ ଧନୁ କାଟିଲା ରାକ୍ଷସ-ଈଶ୍ୱର ।
ପୁଣି କ୍ରୋଧ ହୋଇଣ ପାଞ୍ଚଙ୍କ ଦେହକୁ
ସରି କରି ବିନ୍ଧିଲା ପଚାଶ କାଣ୍ଡକୁ ।
ପାଞ୍ଚଙ୍କର ଘୋଡ଼ା ସାରଥିଙ୍କର ପ୍ରାଣ
ହେନଗଲା ରାକ୍ଷସ ଦେଖାଇଣ ଟାଣ ।
ପୁଣି କ୍ରୋଧ ହୋଇ ଦ୍ରୌପଦୀଙ୍କ ସୁତଙ୍କୁ
ଛାଇଦେଲେ ବିନ୍ଧି ସେ ମାର୍ଗଣ-ଗଣକୁ ।
ଦ୍ରୌପଦୀ-ସୁତଙ୍କର ଯୁଦ୍ଧରେ ଦୁର୍ବଳ
ଦେଖି ମାରିବାକୁ ଭାବିଲା ମନେ କାଳ ।
ଏହି ସମୟରେ ଟି ଅରଜୁନ-ସୁତ
ଅଭିମନ୍ୟୁ ହୋଇଲେ ସେହିଠାକୁ ଗତ ।
ଅଭିମନ୍ୟୁ ଅଳମ୍ବୁଷର ବୃତ୍ରାସୁର
ବାସବ ପରି ହେଲା ସେଠାରେ ସମର ।
ଦୁହେଁ କ୍ରୋଧ-ଅନଳେ ଜାଳଦେଇ ଦେହୀ
ବନ୍ଧାବନ୍ଧ ହୋଇଲେ ହୋଇ ଚହାଁଚହିଁ ।
ଧୃତରାଷ୍ଟ୍ର ବୋଇଲେ ସଞ୍ଜୟ ମନ୍ତ୍ରିବର
ଅଭିମନ୍ୟୁ ଅଳମ୍ବୁଷଙ୍କର ସମର ।
କିରୂପେ ହୋଇଲା ବିସ୍ତରି କହି ମୋତେ
କହ ତ ଶୁଣିବାକୁ ଇଚ୍ଛା ଅଛି ଚିତ୍ତେ ।

ଅରଜୁନ ଭୀମ ନକୁଳ ସହଦେବ
ସାତ୍ୟକି ଧୃଷ୍ଟଦ୍ୟୁମ୍ନ ମୋ ସୈନ୍ୟ ଅଭବ ।
କେଉଁ ରୂପରେ କଲେ ତା ମଧ୍ୟ ବତାଇ
କହିବ ଯେରୂପେ ମୁଁ ପଶୋରିବ ନାହିଁ ।
ସଞ୍ଜୟ ବୋଇଲେ ହେ ଅଳମ୍ବୁଷ ଭୁଲେ
ଅରଜୁନଙ୍କ ସୁତ ଯୁଦ୍ଧ କଲେ ଭଲେ ।
ଅଳମ୍ବୁଷ ରାକ୍ଷସ ଅଟେ ମହାବଳୀ
ଧାଇଁଲା ଅଭିମନ୍ୟୁଠାକୁ କ୍ରୋଧେ ଜଳି ।
ଅଭିମନ୍ୟୁ ଉଚ୍ଚରେ କରି ଗରଜନ
ଅଳମ୍ବୁଷ ଦେହକୁ ବିନ୍ଧିଲେ ମାର୍ଗଣ ।
ସେ ଦୁଇ ରଥୀ ଦେବ ଦାନବ ପରାୟେ
ମିଶାମିଶି ହେଲେ ଲଗାଇ କାୟେ କାୟେ ।
ଅଭିମନ୍ୟୁ ଅଳମ୍ବୁଷର ମୃତ୍ୟୁ ପାଞ୍ଚ
ବିନ୍ଧିଲେ ତିନି ପାଞ୍ଚ କାଣ୍ଡ ଧନୁ ଆଞ୍ଚ ।
ଅଳମ୍ବୁଷ ଅଭିମନ୍ୟୁଙ୍କ ହୃଦୟକୁ
ନବ କାଣ୍ଡ ବିନ୍ଧି ଲଭିଲା ପ୍ରମୋଦକୁ ।
ସହସ୍ରେ କାଣ୍ଡ ନିମିଷକେ ନିଶାଚର
ବିନ୍ଧି କଲା ସମର ଦେଶକୁ ଅନ୍ଧାର ।
ଅଭିମନ୍ୟୁ ଅଳମ୍ବୁଷର ହୃଦୟକୁ
ନଅଟି ବାଣବିନ୍ଧି ଲଭିଲେ ତମକୁ ।
ରାକ୍ଷସ ହୃଦଦେଶେ ନବ କାଣ୍ଡ ଗଳି
ରାଗ ମୁଖେ ଧରି ଦେଖିଲେ ମହୀ-ଆଳୀ ।
ଅଳମ୍ବୁଷ କିଂଶୁକ ପୁଷ୍ପିତ ଗିରି ପରି
ସବୁରି ନୟନେ ଦିଶିଲା ଦଣ୍ଡଧାରି ।
ପୁଣି ଅଳମ୍ବୁଷ ଆଖି କରିଣ ରଙ୍ଗ
ଛାଇଦେଲା କାଣ୍ଡରେ ଅଭିମନ୍ୟୁ ଅଙ୍ଗ ।
ଅଳମ୍ବୁଷ କାଣ୍ଡରେ ଅଭିମନ୍ୟୁ ଚଣ୍ଡି
ଗଳ ସ୍ୱର୍ଣ୍ଣପୁଙ୍ଖେ ରହିଲେ ମଣ୍ଡି ମଣ୍ଡି ।
ସେରୂପେ ଅଭିମନ୍ୟୁ ଶରେ ତାର ଦେହ
ଗଳାଇଲେ ଯୁଦ୍ଧବାଣ୍ଡରେ ନୋହି ମୋହ ।
ପୁଣି ଅଭିମନ୍ୟୁ ଗରଳ କାଣ୍ଡରାଜ
ବିନ୍ଧି ପକାଇଲେ ତା ଦୁଃଖକୁ ସରଜ ।
ଅଳମ୍ବୁଷ ରାକ୍ଷସ କାଣ୍ଡ ମୁହଁ ମୋଡ଼ା
ରଥ ଛାଡ଼ି ବୃନ୍ଦ ସେନାରେ ହେଲେ ଛୁଡ଼ା ।
ଅଭିମନ୍ୟୁଠାରେ ବହିଣ ମହାରୋଷ
ତାମସୀ ମାୟାଟିଏ କଲା ସେ ପ୍ରକାଶ ।

ସେ ତାମସୀ ମାୟାରେ ପାଣ୍ଡବ ସେନାଙ୍କି
ଆଖି ବଉଟିକ ଅନ୍ଧାର ଗଲା ଘୋଟି ।
ପର ଆପଣାକୁ ନ ଜାଣି ପାଣ୍ଡୁଜନ
ମଲୁଁ ବୋଲିକରି ହେଲେ ଛନଛନ ।
ଅଭିମନ୍ୟୁ ସୂର୍ଯ୍ୟାସ୍ତ୍ର ଧନୁମଧ୍ୟେ ଯୋଖି
ପ୍ରହାରି ଯୁଦ୍ଧଭାଣ୍ଡେ ନ ଦେଲେ ତମ ରଖି ।
ପୁଣି କ୍ରୋଧ ହୋଇଣ ଅରଜୁନବେଟା
ଶରେ କଲେ ଅଳମ୍ବୁଷର ଦେହ କଟା ।
ସେ ରାକ୍ଷସ ମାୟାରେ ଅଟେ ବିଶାରଦ
ପୁଣି ଆନ ମାୟା ରଚିଲା ବହୁ ମୋଦ ।
ଅଭିମନ୍ୟୁ ଅସ୍ତ୍ର ବଳରେ ସବୁ ମାୟା
ନାଶି ଶରେ ଗୁଳିଦେଲେ ତାହାର କାୟା ।
ରାକ୍ଷସ ଏ ସକାଶୁଁ ଅଶକତ ହୋଇ
ନ ପାରି ଯୁଦ୍ଧଭାଣ୍ଡେ ଥିଲା ଲାଜ ପାଇ ।
ଲାଜକୁ ଭୂମ୍ନ ପିତା ପୃଷ୍ଠପଟେ ଥୋଇ
ଅଭିମନ୍ୟୁ ଭୁଲେ ଯୁଝିଲେ ଆସି ଧାଇଁ ।
ଭୂମ୍ନ ପୁତ୍ରମାନେ ଭୀଷ୍ମଙ୍କ ପାଇ ସାହା
ଅଭିମନ୍ୟୁ ଭୁଲେ ଯୁଝିଲେ ନରନାହା ।
ଅଭିମନ୍ୟୁ ତେବେ ଦେଖାଇ ବିକ୍ରମକୁ
ଯୁଝିଲେ ହର୍ଷିବାକୁ କୁନ୍ତୁଙ୍କ ଗର୍ବକୁ ।
ଅରଜୁନ ପୁତ୍ରର ଯୁଦ୍ଧ ଯେତେ ଦେଖି
ଆସିଲେ ରକ୍ଷା କରି ଦ୍ରୁତେ ଶର ଯୋଖି ।
ଭୂମ୍ନ ପିତା ଗର୍ବ ପରସ୍ପେ ଅରଜୁନ—
ସୂର୍ଯ୍ୟଙ୍କୁ ଘୋଟିକରି କଲେ ଆଯୋଧନ ।
ହାତୀ ଘୋଡ଼ା ଚଢ଼ି ଭୂମ୍ନର ପୁତ୍ରପନ୍ତ
ରହିଲେ ଜଗିକରି ଭୀଷ୍ମଙ୍କର କନ୍ତ ।
ପାଣ୍ଡବମାନେ ବେଢ଼ି ଅରଜୁନ ପାଶ
ଯୁଝିବେ ବୋଲିଣ ଟେକଲେ ଦୁଇ ହସ୍ତ ।
କୃପାଚାର୍ଯ୍ୟ ଦ୍ରୁତେ ପଚାଶି କାଣ୍ଡ ସନ୍ଧି
ଅରଜୁନ ଉପରକୁ ଦେଲେ ବିନ୍ଧି ।
ସାତ୍ୟକି ଅର୍ଜ୍ଜୁନଙ୍କ ହିତ ହେବା ପାଇଁ
କୃପଙ୍କୁ ମାରଗଣ ଗଣେ ଦେଲେ ଗୁଳ ।
କୃପ ମଧ୍ୟ ସାତ୍ୟକି ଉପରେ ମାର୍ଗଣ
ବିନ୍ଧିଲେ ବିସ୍ମରଣ ତ ହାଙ୍କ ମରଣ ।
ସାତ୍ୟକି କୃପାଚାର୍ଯ୍ୟ ପ୍ରାଣକୁ ନେବାକୁ
ଯୋଖିଲେ ଧନୁ ମଧ୍ୟେ ଉତ୍ତମ ବାଣକୁ ।

ସେ ଶରଟି ସାତ୍ୟକି ଧନୁ ମଧ୍ୟୁଁ ଫିଟି
ଆସୁଥିଲା ଯୁଦ୍ଧର କାଣ୍ଡରେ ଚହଟି ।
ମଲେ ତ ମାମୁଁ ବୋଲି ମହତକରମା
କାଟିଣ ପକାଇଲେ ତାହା ଅଶ୍ୱତ୍ଥାମା ।
ଅଶ୍ୱତ୍ଥାମା କାଣ୍ଡେ ଆପଣା କାଣ୍ଡ ହତ
ହେବା ଦେଖି କ୍ରୋଧରେ ସାତ୍ୟକଙ୍କ ସୁତ ।
ଅଶ୍ୱତ୍ଥାମାଙ୍କ ଠାକୁ ରଥ ଧୂଆଁଇଲେ
ମଲୁ ଗୁରୁପୁତ୍ର ବୋଲିଣ ଡାକ ଦେଲେ ।
ଅଶ୍ୱତ୍ଥାମା ଭାଣ୍ଡରେ ସାତ୍ୟକଙ୍କ ଧନୁ
କାଟିଣ କମ୍ପାଇଲେ ଶରେ ତାଙ୍କ ତନୁ ।
ଆନ ଧନୁ ଧରି ସାତ୍ୟକି ମହାବୀର
ଶରେ କରିଦେଲେଟି ଯୁଦ୍ଧ ଭାଣ୍ଡ ଘୋର ।
ଅଶ୍ୱତ୍ଥାମାର ବାହୁ ବକ୍ଷସ୍ଥଳେ ପଡ଼ି
ସାତ୍ୟକି ଶରଗଣ ରହିଲାଟି ବୁଡ଼ି ।
ଏଣୁ ସକଶୁଁ ଦ୍ରୌଣି ବଉଟି ଆଖିକ
ଲେଉଟାଇ ରହିଲେ ପକାଇ ଧନୁଟିକ ।
ପୁଣି ଚେତା ପାଇ ସେ ସାତ୍ୟକି ଦେହକୁ
ଛେଦିଲେ କାଣ୍ଡଟିଏ କରି ବିକ୍ରମକୁ ।
ସେହି କାଣ୍ଡଟି ବଜ୍ର ତୁଲ୍ୟକୁ ସମ୍ପାତ
ଗଲା ସାତ୍ୟକଙ୍କର ଦେହ-ଗିରି ଭେଦ ।
ହେଲକାଣ୍ଡେ ସାତ୍ୟକି ଧ୍ୱଜଟିକ କାଟି
ଗର୍ଜିଲେ ଦ୍ରୋଣସୁତ ଟାଣେ ମେଲି ପାଟି ।
ଶରଧାରେ ସାତ୍ୟକି-ଗିରିକି କରି ସଗ
ଘୋଡ଼ାଇଲେଟି ଅଶ୍ୱତ୍ଥାମା ମହାଭାଗ ।
ସାତ୍ୟକି ଦ୍ରୌଣିଙ୍କର ଶରଜାଳ ନାଶି
ଶରଜାଳେ ଦେଲେ ତାହାଙ୍କ ବଳ ଧ୍ୱଂସି ।
ସାତ୍ୟକି ଶରଜାଳେ ଦ୍ରୋଣଙ୍କର ସୁତ
କ କରିବ ବୋଇଲେ ହୋଇ ସଙ୍କୁପିତ ।
ସତ୍ତ୍ୱେ କାଣ୍ଡ ବିନ୍ଧି ସାତ୍ୟକି ମହାବୀର
କଲେ ଅଶ୍ୱତ୍ଥାମାଙ୍କ ଦେହଟିକ ଚିର ।
ଦ୍ରୌଣିଙ୍କ ଜବମଦଶାକୁ ଦ୍ରୋଣ ଦେଖି
ଧାଇଁଲେ ଯୁଦ୍ଧଭାଣ୍ଡେ ତରଟି ଉ ଆଖି ।
ସାତ୍ୟକିଙ୍କି କ୍ରୋଧେ ତୀକ୍ଷଣ ମାରଗଣ
ବିନ୍ଧିଲେ ହେବା ପାଇଁ ପୁତ୍ରର ରକ୍ଷଣ ।
ସାତ୍ୟକି ଦ୍ରୌଣି ସଙ୍ଗେ ଯୁଦ୍ଧ ହେଲ ଛାଡ଼ି
ଦ୍ରୋଣଙ୍କ ଉପରେ ମୁଞ୍ଚିଲେ ଶରକୋଡ଼ି ।

ସୈନ୍ୟ ଛାଡ଼ି ପାର୍ଥ ଧାଇଁଲେ ଦ୍ରୋଣଠାରୁ
ଭାଙ୍ଗିବାକୁ ତାଙ୍କର ଯୁଦ୍ଧ ଗରବକୁ ।
ଗୁରୁ ଶିଷ୍ୟ ପ୍ରାୟେ ସେ ଦୁଇରଥୀରୁ ମିଶି
ମହାଯୁଦ୍ଧ କରିଲେ ତେଜକୁ ପ୍ରକାଶି ।
ଧୃତରାଷ୍ଟ୍ର ବୋଇଲେ ଆହେ ମନ୍ତ୍ରିବର
ଅନ୍ୟୋନ୍ୟରେ ପ୍ରୀତି ଅର୍ଜୁନ ଦ୍ରୋଣଙ୍କର ।
କାହିଁକି ସେମାନେ ଦୁହେଁ ମିଶାମିଶି ହୋଇ
ସମସର ହୋଇଲେ ଶାସ୍ତ୍ରକ ଦେଖାଇ ।
ଏ କଥା ଶୁଣିମାକୁ ହୋଇଅଛି ମନ
ବିସ୍ତାରି ମୋର ଆଗେ କର ତ ବଖାଣ ।
ସଞ୍ଜୟ ବୋଇଲେ ବୋଲୁଛ ତୁମ୍ଭେ ଯାହା
ସତ୍ୟ ଅଟଇ ହେ ଏ କଥା ନରନାହା ।
କେବଳ ସେ କ୍ଷତ୍ରିୟ ଧର୍ମ ଆଶ୍ରେ କରି
ଗୁରୁ ଶିଷ୍ୟ ଦୁହେଁ ହୋଇଲେ ସମସରି ।
ଅରଜୁନ ବର୍ଷିଲେ ମୃନଦଷ୍ଟା ବାଣ
ନ ହେଲେ ଯୁଦ୍ଧ କରିଲେ ଦ୍ୱିଜ ବାଣ ।
ପୁଣି ଅରଜୁନ ବର୍ଷିଲେ ଶରମାଳୀ
ସେଷାନଙ୍କେ ଉଠିଲେ ଦ୍ରୋଣଗୁରୁ ଜଳି ।
ତାଙ୍କ ଧନୁ-ମେଘୁଁ ବାହାରି ଶର-ଧାର
ଅରଜୁନ ଶିରର ଭାଙ୍ଗିଦେଲ ତୋର ।
ଏକାକେ ସୁଶର୍ମାକୁ ଭୂମ୍ମର ନନ୍ଦନ
ବୋଇଲେ ଜୟ ଦ୍ରୋଣ କରନ୍ତୁ ଆୟୋଧନ ।
ପୁତ୍ର ଅତି ସୁଶର୍ମା ଅତ୍ୟ କ୍ରୋଧ ହୋଇ
ଶର ବର୍ଷଣ ଦେଲେ ଅର୍ଜୁନଙ୍କୁ ଘୋଇ ।
ସେ ଶର ପାର୍ଥ-ଫଳବୃକ୍ଷେ ପକ୍ଷୀପରି
ରହିଲେ ରାଜନ ହେ ଜାଣ ଲକ୍ଷକରି ।
ଅରଜୁନ ପୁଣି ଯେ ଉଟାର ଧନୁକୁ
ବର୍ଷିଲେ ପୁତ୍ର କୁଳେ ତ୍ରିଗର୍ତ୍ତ ନୃପକୁ ।
ପାର୍ଥ ଶରେ ତ୍ରିଗର୍ତ୍ତମାନେ ପାଇ ପୀଡ଼ା
ତେବେ ନ ଭଜନ୍ତି ଯୁଦ୍ଧରେ ହେଲେ ଛିଡ଼ା ।
ଅର୍ଜୁନ ରଥକୁ ଉଦ୍ଦେଶି ଶରବୃଷ୍ଟି
କରି ବଢ଼ାଇଲେ କୁରୁଙ୍କ ସୁଖସୃଷ୍ଟି ।
ଅରଜୁନଟି ତାହା ନ ପାରିଣ ସହି
କ୍ଷଣରେ ତାଙ୍କ ଶରଯାକ ଦେଲେ ଦହି ।
ଏକାକୀ ଅରଜୁନ ତ୍ରିଗର୍ତ୍ତମାନଙ୍କୁ
ଯୁଝିଲେ ହେ ନୃପ ଦେଖାଇ ବିକ୍ରମକୁ ।

ସେ କଥା ତାହାଙ୍କର ହେଲା ଚମତ୍କାର
ପରଶଂସା କଲେ ଦେଖିଣ ଦେବାସୁର ।
ବାୟବ୍ୟ ଅସ୍ତ୍ର ପାର୍ଥ ଧନୁରେ ବସାଇ
ପୁଣି ତାଙ୍କ ନାଶକୁ ବର୍ଷିଲେ ଦେଖାଇ ।
ସେହି ସକାଶୁଁ ମହାବାତ ହୋଇ ଜାତ
ଭାଙ୍ଗିଲା କୁମ୍ଭ ବଳ-ତରୁକୁ ବହୁତ ।
ଦ୍ରୋଣ ବାତଅସ୍ତ୍ରକୁ ଗିରିଅସ୍ତ୍ର କରି
ଦେଲେ ନିବାରି ହେ ହସ୍ତିନା ଦଣ୍ଡଧାରି ।
ଅର୍ଜୁନ ହାତେ ତ୍ରିଗର୍ତ୍ତଙ୍କ ବଳ ଭଗ୍ନା
ଦୁଃଅଙ୍କେ ଯୁଦ୍ଧହାଣ୍ଡେ କଲେ ଚୁର୍ଣ୍ଣି ବଣା ।
କୃପ, ଅଶ୍ୱତ୍ଥାମା ବାହ୍ଲିକ, ଦୁର୍ଯ୍ୟୋଧନ
ଅନ୍ୟ ଅନୁବନ୍ଦ, ଯେ ଶଲ୍ୟ ସୁଦକ୍ଷିଣ ।
ମହତ ରଥବଂଶ ସଙ୍ଗତରେ ଧରି
ଅର୍ଜୁନ ଯିବା ହାଣ୍ଡେ ଦେଲେ ସେ ନିବାରି ।
ଭଗଦତ୍ତ ଶ୍ରୁତାୟୁ ଧରି ଗଜସୈନ୍ୟ
ଭୀମ ଯିବା ବାଣ୍ଡ କରିଲେ ନରୋଧନ ।
ଭୂରିଶ୍ରବା ଶଲ୍ୟ ଶକୁନ ଏକ ହୋଇ
ରଖିଲେ ନିବାରିଣ ମାଦ୍ରୀପୁତ୍ର ଦୁଇ ।
ଭୀଷ୍ମ ଯୁଧିଷ୍ଠିର ରାଜାଙ୍କୁ ଘେନ ସୈନ୍ୟ
ଯୁଦ୍ଧ କଲେ ବୋଲାଇବାକୁ ରାସ୍ତେ ଧନ୍ୟ ।
ଭୀମ ଗଜ ସୈନ୍ୟ ଦେଖି ଗଦା ଧରି
ଧାଇଁଲେ ଯୁଦ୍ଧହାଣ୍ଡେ ରଥ ଛାଡ଼ିକରି ।
ତୁମ୍ଭର ଗଜଯୋଧମାନେ ନ ଡରିଲେ
ଭୀମଙ୍କ ଚାରିପଟେ ବେଢ଼ିଣ ମାଇଲେ ।
ମେଘ ମଧ୍ୟରେ ସୂର୍ଯ୍ୟ ଥିବା ପରି ଭୀମ
ପ୍ରକାଶିଲେ ତେଜ ବହିଣ ଅତି ତମ ।
ଗଦାଘାତେ ଗଜକୁଳକୁ ହତ କରି
ଖେଳିଲେ ଯୁଦ୍ଧ ଭୀମ ଚିରି ମାରି ମାରି ।
ହାତୀଙ୍କ ଦନ୍ତଘାତେ ଭୀମଙ୍କ ଗଣ୍ଡିଟି
ଦିଶିଲା ଫୁଟିବା ଅଶୋକ ବୃକ୍ଷଟି ।
ହାତୀମାନଙ୍କର ଉପାଡ଼ି ଭୀମ ଦାନ୍ତ
ମାରି ତୁମ୍ଭେ କଲେ ତାହାଙ୍କୁ ଭୂମିଗତ ।
ହାତୀ ରକତରେ ଭୀମଙ୍କ ଗଦା ଜଡ଼
ବୁଡ଼ାଇଲା ଦେଖିବା ଲୋକ ନେତ୍ରଯୋଡ଼ ।
ଭୟରେ ଛଳବଳ ହୋଇଣ ଆକୁଳ
ପଳାଇଲେ ତତକ୍ଷଣ କୁମ୍ଭ ସେନାକୁଳ ।

ଏକାଳକୁ ବେଳ ହୋଇଛୁ ଆଠଘଡ଼ି
କୁମ୍ଭ ଯୋଦ୍ଧାଯାକ ଭଜାଲେ ଯୁଦ୍ଧ ଛାଡ଼ି ।
ଭୀମ ସେ ସମୟରେ ସୋମକମାନଙ୍କୁ
ଡାକ କରି ବିନ୍ଧିଲେ ମାର୍ଗଣଗଣଙ୍କୁ ।
ଶତ ଶତ ସହସ୍ର ସହସ୍ର ପାଣ୍ଡୁସେନା
ମାଇଲେ ଯୁଦ୍ଧେ ଭୀମ ହୋଇ କୋପମନା ।
ଶିଖଣ୍ଡୀ ଦ୍ରୁପଦ ବିରାଟ ଧୃଷ୍ଟଦ୍ୟୁମ୍ନ
କଲେ ଯାଇ ଭୀଷ୍ମଙ୍କ ବୁଲେ ଆୟୋଧନ ।
ଭୀଷ୍ମ ଧୃଷ୍ଟଦ୍ୟୁମ୍ନ ବିରାଟଙ୍କୁ ତିନ—
ତିନ କାଣ୍ଡ ବିନ୍ଧିଲେ ହୃଦେ କ୍ରୋଧ ଘେନ ।
ପୁଣି ଭୀଷ୍ମ ଧନୁକୁ କରି ଆସ୍ଫାଳ
ଦ୍ରୁପଦଙ୍କ ହୃଦକୁ ବିନ୍ଧିଲେ ନାରାଚ ।
ସେ ଘାତରେ ପାଞ୍ଚାଳ ନରପତି ଭଲେ
ପାଦାହତ ନାଗର ପରାୟେ ହୋଇଲେ ।
ସ୍ତ୍ରୀ ବୋଲି ଏକା ଶିଖଣ୍ଡୀ ଭଣ୍ଡ ଟିକ
ନ ମାରିଲେ ପିତା କୁମ୍ଭର ଧନୁ ଟେକ ।
ଧୃଷ୍ଟଦ୍ୟୁମ୍ନ ଭୀଷ୍ମଙ୍କ ଜନ୍ତୁ ବାହୁଦେଶେ
ତିନ କାଣ୍ଡ ଯୋଖି ବିନ୍ଧିଲେ ଅତି ବେଗେ ।
ଦ୍ରୁପଦରାଜା ସେହିକାଳେ ଧନୁ ଟାଣି
ପଚିଶି ମାର୍ଗଣ ବିନ୍ଧିଲେ ଗଣି ଗଣି ।
ବିରାଟ ଦଶକାଣ୍ଡ ବିନ୍ଧି ବଳ ଆଣ
ଦେଖାଇ ଭଣ୍ଡି ଟିକ କରିଦେଲେ ମୋଟ ।
ଶିଖଣ୍ଡୀକି ଭୀଷ୍ମ ଟି ନ ବିନ୍ଧିଲେ ହେଲେ
ପଚିଶି କାଣ୍ଡ ସେ ବିନ୍ଧିଲେ ଯୋଖି ଭଲେ
ସେ ଘାତେ ଭୀଷ୍ମ ଦେହ ଫୁଟିବା ଶିମୁଳୀ
ଶୋଭିଟିକ ରଜନ ପକାଇଲେ ଦଳି ।
ହୃଦୟମଧ୍ୟେ ଭୀଷ୍ମ ଧରି ମହାମନ୍ୟୁ
ତିନ ତିନ କାଣ୍ଡ ବିନ୍ଧିଲେ ଧରି ଧନୁ ।
ଭଲ୍ଲକାଣ୍ଡେ ଦ୍ରୁପଦ ଧନୁକୁ କାଟିଲେ
କାହିଁ ଆଜ ଯିବ ହେ ବୋଲିଣ ଗର୍ଜିଲେ ।
ଆନ ଧନୁ ଧରି ଦ୍ରୁପଦ ପାଞ୍ଚବାଣ
ଭୀଷ୍ମେ ସାରଥିକ ବିନ୍ଧିଲେ ତିନ ଜାଣ ।
ଭୀମ ଦ୍ରୌପଦେୟ ଯେ କୈକେୟାଦି ଘେନ
ବିନ୍ଧିଲେ ଭୀଷ୍ମଙ୍କ ଉପରେ ଶରଶ୍ରେଣୀ ।
ଭୀଷ୍ମଙ୍କ ରକ୍ଷାରେ କୁରୁଏ ମନ ଦେଇ
ଯୁଝିଲେ ପାଞ୍ଚାଳମାନଙ୍କୁ ବେଗେ ଧାଇଁ ।

ଏହିକାଳରେ ଯମ ରାଜାଙ୍କ ନଗର
ପୂରିବା ଭଳି ହେଲା ମହତ ସମର ।
ରଥୀ ହାତୀ ସିପାଇ ହୋଇ ମରମର
ପଡ଼ିଲେ ଶୋଇ କରେ ଶସ୍ତ୍ରମାନ ଧରି ।
କେତେକ ଯୋଦ୍ଧାମାନେ ପଛକୁ କାଢ଼ି ଭଡ଼ା
ପହଣ୍ଡକେତେ ପୁଣି କଲେ ମୁହଁମୋଡ଼ା ।
ବଡ଼ ବଡ଼ ମହାରଥୀଏଟି କୁମ୍ଭର
ଭଜିଲେ ପାଣ୍ଡବଙ୍କୁ ନ କରି ସମର ।
ରଜାରେଖମାନେଟି ପାଆନ୍ତେ ମରଣ
ଛାଡ଼ି ପଳାଇଲେ ଯୁଦ୍ଧରୁ ରଜଗଣ ।
ବର୍ମ ଛତ୍ର ଚାମର ଛାଡ଼ି ଗଣ୍ଡା ଗଣ୍ଡା
ଯୁଦ୍ଧବାଣ୍ଡଯାକକୁ ନୃପ କଲେ ମଣ୍ଡା ।
ରଜାରେଖମାନେ ରଜାଙ୍କ ଧଡ଼ପଡ଼େ
ହାତୀଏ ନରକୁଳ ଚକଟିଲେ ଗୋଡ଼େ ।
ସହସ୍ରସଂଖ୍ୟା ଘୋଡ଼ା ଚଳାଇଲେ ଭଜ
ଛନ୍ତି ତାଙ୍କ ଚଣ୍ଡିରେ କାଣ୍ଡମାନ ବାଜ ।
ସିପାଇଏ ଆଖି ଚରିଟି ଛାଡ଼ି ପାଣ
ଚଢ଼ିଲେ ଘୋଡ଼ାମାନଙ୍କରେ ବସିଣ ।
ସେହିକାଳେ ରକତନଦୀ ହୋଇ ଜାତ
ଥୋଇଲା ଭୟ ନେଇ କୁରୁଙ୍କର ଚିତ୍ତ ।
ପଡ଼ିବା ହାତମାନ ଫେନକୁ ଦେଖାଇ
ବହିଲା ସେହି ମଡ଼ା-କାଠକୁ ଭସାଇ ।
କ୍ଷତ୍ରିୟମାନେ ଯୁଦ୍ଧ ଦେଖି ପାଡ଼ ତଡ଼ା
ନିନ୍ଦା କରିଲେ ଦୁର୍ଯ୍ୟୋଧନକୁଟି ଏକା ।
କୁମ୍ଭ ପୁତ୍ରମାନେ ସେ ନିନ୍ଦାବାଣୀ ଶୁଣି
ନ କହି କଥା ମୁଣ୍ଡ ପୋତିଲେ ସେକ୍ଷଣି ।
ଦୁର୍ଯ୍ୟୋଧନ ସେକାଳେ ଭୀଷ୍ମାଦିଙ୍କି ଚାହିଁ
ବୋଇଲେ ଯୁଝ ହେ ବିଳମ୍ବ ନ ଯୋଗାଇ ।
ସେକାଳରେ ପୁଣି ପାଳିଟି କରୁଥାଇ
ପାଣ୍ଡବସୈନ୍ୟ କୁଲେ କଲେ ଯୁଦ୍ଧ ଅଧ ।
ହେ ଧୃତରାଷ୍ଟ୍ର କୁମ୍ଭେ ରାଜ୍ୟଲୋଭୀ ହୋଇ
ବଡ଼ଲୋକ କଥାକୁ ଶୁଣିଲ ତ ନାହିଁ ।
ତହିଁକି ଅନୁରୂପ ଫଳୁଅଛି ଫଳ
ନ ବସ କରି ଚିନ୍ତା ଧରିଣ କପାଳ ।
ପାଣ୍ଡବଙ୍କଭ ଶର ପାଇ କୁରୁକୁଳ
ହୋଇଯିବେ ସଜନ ଜନକଟେ ନିର୍ମଳ ।

କୁମ୍ଭ ଦୁର୍ନୀତିରୁ ହେଲା ଏ ଜନକ୍ଷୟ
ଏବେ ଯୁଦ୍ଧ କଥା କହିବା ମନଦଅ ।
ପାର୍ଥ କ୍ରୋଧ ହୋଇ ସୁଶର୍ମା ମହାରଥୀ-
ମାନଙ୍କୁ କାଣ୍ଡ ବିନ୍ଧ କଲେ ଅତି ବ୍ୟଥୀ ।
ସୁଶର୍ମା ଅର୍ଜୁନଙ୍କୁ ନବ ବାଣ ମାରି
କୃଷ୍ଣଙ୍କର ଦେହକୁ ବିନ୍ଧିଲେ ସତୁରି ।
ଅର୍ଜୁନ ସୁଶର୍ମା କାଣ୍ଡକୁ କାଣ୍ଡେ ନାଶି
ସୁଶର୍ମାର ଯୋଦ୍ଧାଙ୍କୁ କଲେ ସ୍ୱର୍ଗବାସୀ ।
କାଳଦେବ ପରି ପାଣ୍ଡବ ଅରଜୁନ
ଘେନଲେ କୁମ୍ଭ ଯୋଦ୍ଧାମାନଙ୍କର ପ୍ରାଣ ।
ରଥ ଗଜ ଘୋଡ଼ା ଗୁଡ଼ଣ କୁମ୍ଭ ଲୋକେ
ପଳାଇଲେ ଯୁଦ୍ଧରୁ ଭୟେ ବକବକେ ।
ସୁଶର୍ମା ନ ପଳାଅ ବୋଲି ଡାକୁଥିଲେ
ତେବେ ହେଲେ କୁମ୍ଭର ଲୋକେ ନ ରହିଲେ
କୁମ୍ଭ ପୁଅ ଭୀଷ୍ମଙ୍କୁ ଆଗରେ ଚଳାଇ
ସୈନ୍ୟ ଘେନ ଯୁଝିଲେ ଅର୍ଜୁନଙ୍କୁ ଯାଇ ।
ଭୀଷ୍ମ କୁଳେ ଏକା ରହିଲେ ଦୁର୍ଯ୍ୟୋଧନ
ସବଲେ ହେଲେ ତେବେ କୁମ୍ଭର ସଇନ ।
ପାଣ୍ଡବେ ସେରୂପେ ମହତ ସୈନ୍ୟ ଧରି
ଭୀଷ୍ମ କୁଳେ ଆସି ହୋଇଲେ ମଗମରି ।
ଅର୍ଜୁନଙ୍କ ବଳ ଜାଣନ୍ତି କୁରୁଲୋକ
ମଲେ ଭୀଷ୍ମ ବୋଲି କାନ୍ଦିଲେ ସକ ସକ ।
ତାଳଧ୍ୱଜରଥରେ ଭୀଷ୍ମ ରଥୀ ଥାଇ
ପାଣ୍ଡବସେନାଙ୍କ ଶରରେ ଦେଲେ ଛାଇ ।
ସାତ୍ୟକ କୃତବର୍ମା ବେନି ପାଞ୍ଚ କାଣ୍ଡ
ବିନ୍ଧି ପୁଣି କାଣ୍ଡେ ଛାଇଲେ ରଣଖଣ୍ଡ ।
ଦ୍ରୁପଦ ଅଶ୍ୱତ୍ଥାମା ଦେହକୁ ସତୁରି
ବିନ୍ଧିଲେ ଧନୁର୍ଗୁଣମଧ୍ୟକୁ ଓଟାରି ।
ପ୍ରପିତାମହ ବାହ୍ଲିକଙ୍କୁ ଭୀମ ବିନ୍ଧି
ବାର ପଣ ଶରକ ଦଶ ଦେଲେ ଛିନ୍ଦି ।
ଚିତ୍ରସେନ ମାର୍ଗଣ କାଟି ଅଭିମନ୍ୟୁ
ତିନି କାଣ୍ଡେ ଭେଦିଲେ ତାହାଙ୍କର ତନୁ ।
ଚିତ୍ରସେନ ଅଭିମନ୍ୟୁ ବହୁଣ କ୍ରୋଧ
ଶନଶ୍ଚର ବୁଧ ପରାଏ କଲେ ଯୁଦ୍ଧ ।
ଚିତ୍ରସେନ ସାରଥି ଘୋଡ଼ାଙ୍କୁ ଅର୍ଜୁନ
ସୁତ ନବ କାଣ୍ଡରେ ଦେଲେ ଯମସ୍ଥାନ ।

ଚିତ୍ରସେନ ଦୁର୍ମୁଖ ରଥେ ଯାଇ ବସି
ଆହଁଷିଲେ ମଣ୍ଡକୁ ଗାଇଲଇଁ ଆସି ।
ଦ୍ରୋଣ ଦ୍ରୁପଦଙ୍କୁ ବହୁଣ ମାରଗଣ
ଘେନଲେ ଦ୍ରୁପଦଙ୍କ ସାରଥିର ପ୍ରାଣ ।
ଦ୍ରୁପଦେ ପୂର୍ବକଥା ମନରେ ପକାଇ
ପଳାଇଲେ ଯୁଦ୍ଧରୁ ପଛକୁ ନ ଚାହିଁ ।
ଭୀମ ବାହ୍ଲିକଙ୍କର ଅଶ୍ୱ ସୁତ ପ୍ରାଣ
ଘେନଗଲେ କ୍ରୋଧରେ ପେଷି ମାରଗଣ ।
ବାହ୍ଲିକ ଆପଣା ରଥରୁ ଅବତରି
ଲକ୍ଷ୍ମଣ ରଥରେ ବସିଲେ ଚଗମାରି ।
ସାତ୍ୟକ କୃତବର୍ମା କୁଳେ କରି ରଣ
ଭୀଷ୍ମଙ୍କୁ ଯୁଝି ପୁଣି ଧାଇଁଲେ ଆପଣ ।
ଭୀଷ୍ମ ସାତ୍ୟକଙ୍କି ଯେ ଫିଙ୍ଗିଲେ ଶକତି
ଧାଇଁ ଯୁଦ୍ଧଦାଣ୍ଡେ ବହିଲା ଶୋଭା ଅତି ।
ଭୀଷ୍ମଙ୍କ ଶକତି ସାତ୍ୟକ ଦେଲେ ଦେଖି
ବେଗବତରଣେ ବଞ୍ଚାଇ ହେଲେ ସୁଖୀ ।
ସେ ଶକତି ବିଫଳ ହୋଇ ଫୁଟି ତଳ
ପାଇଲା ଯାଇ କରି ନାଗରାଜ ମେଳ ।
ଏଥୁଅନ୍ତେ ସାତ୍ୟକ ଶକ୍ତି ଟାଏ ଧରି
ଭୀଷ୍ମଙ୍କ ଦେହକୁ ଫିଙ୍ଗିଲେ ଧାଇଁ କରି ।
ସେ ଶକତି ମୃତ୍ୟୁର ଭଉଣୀ ପରାୟେ
ଧାଇଁଥିଲା ତେଜରେ ଜଳି ଅତିଶୟେ ।
କ୍ଷୁରକାଣ୍ଡରେ ତାକୁ ଭୀଷ୍ମ ରଥୀବର
କାଟି ପକାଇଲେ ଦେଖିଲେ ଯୋଦ୍ଧା ନର ।
ସାତ୍ୟକଙ୍କି ପୁଣି ନବ ଶାୟକ ବିନ୍ଧି
ଦେଲେ ତାଙ୍କ ପ୍ରିୟ ପ୍ରାଣୁଟିକ ସେ ଛିନ୍ଦି ।
ପଣ୍ଡୁ ସୁତେ ରଥ ଗଜ ଅଶ୍ୱଙ୍କୁ ଘେନ
ରକ୍ଷିଲେ ଆସିଣ ସାତ୍ୟକ ପୃଷ୍ଠସ୍ଥାନ ।
ଏହିରୂପେ କୁରୁ ପାଣ୍ଡବଙ୍କର ଯୁଦ୍ଧ
ଅନ୍ୟୋଽନ୍ୟ ପ୍ରବର୍ତ୍ତିଲା ଭାବ ମନେ ବଧ ।
ଭୀଷ୍ମ ପାଣ୍ଡୁ ସୈନ୍ୟେ ଆବୃତ ହେବା ଦେଖି
ଦୁର୍ଯ୍ୟୋଧନ ରାଜନ ହୋଇ ଅତି ଦୁଃଖୀ ।
ବୋଇଲେ ଆହେ ଦୁଃଶାସନ ଦେଖ ଦେଖ
ଆମ୍ଭେ ଥାଉଁ ଭୀଷ୍ମ ତ ହୋଇଲେ ନରେଖ ।
ପାଣ୍ଡବ ରଥୀମାନେ ବ୍ୟୂହପଟେ ବେଢ଼ି
ବିନ୍ଧୁଅଛନ୍ତି ଶରମାନ ତୂଣୁ କାଢ଼ି ।

ଆଜ ତୁମ୍ଭେ ଶଲ୍ୟଙ୍କୁ ଯତ୍ନ କରି ରଖ
ମାରିବେ ପାଣ୍ଡୁସେନା ବିଚକ୍ଷଣ ବଶିଷ୍ଠ ।
ଏହା ଶୁଣିଣ ଦୁଃଶାସନ ବେଗେ ଧାଇଁ
ସୈନ୍ୟ ଘେନ ଶଲ୍ୟେ ରକ୍ଷିଲେ ସାହାହୋଇ
ସହସ୍ର ଶତ ଘୋଡ଼ା ଧରି ସଙ୍ଗତରେ
ଶକୁନି ବାହାରିଲେ ଯୁଝିବା ମତରେ ।
ନକୁଳ ସହଦେବ ଯୁଧିଷ୍ଠିର କୁଳେ
ସଙ୍ଗେ ଆଗେ ଯୁଦ୍ଧ ଶକୁନି ଆରମ୍ଭିଲେ ।
ଅଯୁତ ଘୋଡ଼ାଚଢ଼ା ଦୁର୍ଯ୍ୟୋଧନ ବୋଲେ
ଯୁଦ୍ଧ କଲେ ଆସି ପାଣ୍ଡବସୈନ୍ୟ କୁଳେ ।
ଘୋଡ଼ାମାନଙ୍କର ଖୁରୁ ଆଘାତ ପାଇ
ପୃଥିବୀ କମ୍ପିଗଲା ଥର ଥର ହୋଇ ।
ବାଉଁଶବଣ ଅଗ୍ନିଲଗା ଫୁଟା ଧ୍ୱନି—
ଟିକ ସେ ଘୋଡ଼ାଟାପୁ ଶବଦ ଗଲା ଶୁଣି ।
ଘୋଡ଼ାଙ୍କ ପାଦଧୂଳି ସୂର୍ଯ୍ୟଙ୍କ ମଣ୍ଡଳୀ
ମାଡ଼ି ବସିଲେ ହେ ନୃପତି ବୁଦ୍ଧିଶାଳୀ ।
ପାଣ୍ଡବସୈନ୍ୟ-ସରେ ହଂସ ପରି ଘୋଡ଼ା—
ମାନେ ପଶି ଯୁଦ୍ଧଭୂମିରେ ହେଲେ ଛୁଡ଼ା ।
ଯୁଧିଷ୍ଠିର ନକୁଳ ସହଦେବ ବାଣ
ବିନ୍ଧିଣ ଘୋଡ଼ାଙ୍କର ରଚିଲେ ମରଣ ।
ପାଣ୍ଡୁସୁତେ ତୀକ୍ଷ୍ଣ କାଣ୍ଡେ ସିପାଇଙ୍କ
ମୁଣ୍ଡ କାଟିଣ ଦେଖାଇଲେ ଯମଲୋକ ।
ଅବଶିଷ୍ଟ ଯୋଦ୍ଧାଏ ଭୟକୁ ପାଇଲେ
ସିଂହ ଆଗୁଁ ମୃଗ ପରାଏ ପଳାଇଲେ ।
ଏରୂପେ ଯୁଧିଷ୍ଠିର ପାନ୍ତେ ଜୟଶିରି
ବଜାଇଲେ ଲୋକେ ମୃଦଙ୍ଗ ଶଙ୍ଖ ଭେରୀ ।
ଦୁର୍ଯ୍ୟୋଧନରାଜନ କହିଲେ ଶଲ୍ୟଙ୍କୁ
ଦେଖ ଯୁଧିଷ୍ଠିର ମାଇଲେ ମୋ ଲୋକଙ୍କୁ ।
ତୁମ୍ଭର ପରି ରଥୀ ନୟନେ ଦେଖୁଛ
ମୋର ଲୋକେ କରୁଅଛନ୍ତି ଗୋଡ଼ ପଛ ।
ତୁମ୍ଭ ବଳ ମୁଁ ତ ପୂର୍ବରୁ ଶୁଣିଛି
ତାହା ଦେଖାଅ ଏବେ ମଦ୍ରନୃପବରି ।
ତୁମ୍ଭ ପୁଅ ବଚନ ଶଲ୍ୟ ଶୁଣି କାନେ
ଯୁଧିଷ୍ଠିରଠାକୁ ଧାଇଁଲେ କ୍ରୋଧମନେ ।
ଶଲ୍ୟଙ୍କ ଆସିବାର ଦେଖି ଯୁଧିଷ୍ଠିର
ପ୍ରହାରି ବାଣ ତାଙ୍କୁ କଲେ ସେ ନିବାର ।

ଶଲ୍ୟଙ୍କ ବକ୍ଷସ୍ଥଳେ ଦଶକାଣ୍ଡ ବିନ୍ଧି
ଯୁଧିଷ୍ଠିର ଦେଲେ ଶଲ୍ୟଙ୍କ ପ୍ରାଣ ଛନ୍ଦି ।
ନକୁଳ ସହଦେବ ତିନି ତିନି କାଣ୍ଡ
ବିନ୍ଧିଲେ ଶଲ୍ୟଦେହେ କ୍ରୋଧେ ଜାଳ ପିଣ୍ଡ ।
ଶଲ୍ୟ ଯେ ତିନି ଭଣଜାଙ୍କୁ ତିନି ତିନି
ବିନ୍ଧିଲେ କାଣ୍ଡ ହୋଇ ଯୁଦ୍ଧେ ଅଭିମାନୀ ।
ଯୁଧିଷ୍ଠିର ରାଜାଙ୍କୁ ସାଠିଏ ମାର୍ଗଣ
ବିନ୍ଧିଲେ ଶଲ୍ୟ ପୁଣି ଦେଖାଇଣ ଟାଣ ।
ସୋଦର ଭଣଜାକୁ ମାରି ଦୁଇ ଦୁଇ
ଧନୁର୍ଗୁଣ ଥରେ ଟି ମାଜିଲେ ବୁହାଇ ।
ଯୁଧିଷ୍ଠିର ଶଲ୍ୟଙ୍କର ଦେଖିଣ ରଣ
ଭୀମ ସେଠାକୁ ଧାଇଁ ଆସିଲେ ଆପଣ ।
ସେକାଳେ ପଶ୍ଚିମ ଦିଗକୁ ସୂର୍ଯ୍ୟ ଯାଇ
ରହିଲେ ଲୁଚି ପାଣ୍ଡୁ ଯୁଝିଲେ ନଠାଇ ।
ଶଲ୍ୟ କ୍ରୋଧ ହୋଇ ଭୀମଙ୍କୁ ବାରକାଣ୍ଡ
ସନ୍ଧି ସାତ୍ୟକଙ୍କି ବିନ୍ଧିଲେ ନବକାଣ୍ଡ ।
ନକୁଳେ ତିନି ସହଦେବେ ସାତ ବିନ୍ଧି
ବାର ଶରେ ବାହୁ ବକ୍ଷସ୍ଥଳକୁ ଭେଦି ।
ଯୁଧିଷ୍ଠିରଙ୍କର ଯେ ଧୃଷ୍ଟଦ୍ୟୁମ୍ନଙ୍କୁ
ବାଣେ ବିନ୍ଧି କରିଣ କଲେ ଗର୍ଜନକୁ ।
କ୍ରୋଧେ ବାର ନକୁଳ ସାତ୍ୟକ ତିନିକାଣ୍ଡ
ସହଦେବ ସତୁରି ପାର୍ଥ ନବକାଣ୍ଡ ।
ଭୀମସେନ ସାତ ସତୁରି ଧୃଷ୍ଟଦ୍ୟୁମ୍ନ
ଯୁଧିଷ୍ଠିର ବିନ୍ଧିଲେ ବାରଟି ମାର୍ଗଣ ।
ଦ୍ରୋଣ ଭୀମ ସାତ୍ୟକଙ୍କି ଯେ ପାଞ୍ଚ ପାଞ୍ଚ
ଗୁଣେ ଯୋଖି ବିନ୍ଧିଲେ ରାଜନ ନାରାଚ ।
ସେ ଦୁହେଁ ତିନି ତିନି ବିନ୍ଧିଲେ ଆଶୁଗ
ଧରି କ୍ରୋଧ ଜଳିଲେ ପାଦାହତ ନାଗ ।
ସଉବୀର ମାଳବ ଉଦ୍ଧତ୍ୟ ବଶାତି
ବାଜିଲେ ନୁହେଁ କାଣ୍ଡ ନ ଗୁଢ଼ ଶଲ୍ୟ କତି ।
କରେ ଧନୁ ଧରି ପାଣ୍ଡବଙ୍କର କୁଳେ
ରଣଘୋର ଆରମ୍ଭିଲେଟି ସମସ୍ତେ ଭଲେ ।
ଏହା ବାହାରେ ଆନ ଦେଶ ନୃପଗଣ
ପାଣ୍ଡବ ସୈନ୍ୟଙ୍କୁ ବିନ୍ଧିଲେ ବେଢ଼ି ବାଣ ।
ପାଣ୍ଡବସେନାଯାକ ବେଢ଼ିଣ ଭୀଷ୍ମଙ୍କୁ
ମାଇଲେ ଶର ଶକ୍ତି ତୋମର ମୁଷଳକୁ ।

ସାଷ୍ଟ ପାଣ୍ଡୁରଥୀଙ୍କ ପାଇ ବାଣରଜ
ଯୋଧାଗଣେ କଳଣ ଉଠିଲେ ଗରଜ ।
ସ୍ୱର୍ଣ୍ଣପୁଙ୍ଖକାଣ୍ଡମାନଙ୍କୁ ସନ୍ଧି ଗୁଣେ
ବିନ୍ଧିଲେ ପାଣ୍ଡୁସେନା ହେଡ଼େ ଭୀଷ୍ମ ଟାଣେ ।
ଦେଲେ ତ ଭୀଷ୍ମ ବୁଢ଼ା ବାଣେ କାଟି କାଟି
ରଥୀମାନଙ୍କର ଯେ ଧ୍ୱଜ କୋଟି କୋଟି ।
ଏହି ସକାଶୁଁ ରଥମାନେ ମୁଣ୍ଡାଛାଳ
ଜଢ଼ା କଲେ, ରଥୀଏ ନିନ୍ଦିଲେ କପାଳ ।
ହାତୀ ଯୋଦ୍ଧାମାନଙ୍କୁ ଯମପୁରେ ବସା
ଦେଲେ ତ ଖୋଜ ଖୋଜ ଭୀଷ୍ମ ମହାଯଶା ।
ବଜ୍ରପରି ଭୀଷ୍ମଙ୍କ ଧନୁର୍ଗୁଣ ରଡ଼ି
ଶୁଣନ୍ତେ ପାଣ୍ଡୁସେନା ଗଲେ ଯୁଦ୍ଧ ଛାଡ଼ି ।
ଭୀଷ୍ମ-ଚାପଚ୍ୟୁତ ହୋଇଲେ ଯେତେ ଶର
ନେଲେଟି ପ୍ରାଣ ତେତେ ଯୋଦ୍ଧାମାନଙ୍କର ।
ବଜୁଳି ପରି ଭୀଷ୍ମ ସୈନ୍ୟ-ଘନ ମଧ୍ୟେ
ତଡ଼ିତ କାଣ୍ଡ ବଜ୍ର ମାଇଲେ ଯେ କ୍ରୋଧେ ।
ରଥୀମାନେ ରଥରେ ପଡ଼ନ୍ତି ମରି
ତେବେ ଦେଲେ ଘୋଡ଼ାଏ ନଅନ୍ତ ଓଟାରି ।
ଚେଦି କାଶୀ କରୁଷ ସହସ୍ର ଚଉଦ
ମହାରଥୀ ଥିଲେ ଭୀଷ୍ମ ବଧିଲେ ମୋଦ ।
ମାରଗଣ ଗୁଣରେ ଯୋଖିଣ ପ୍ରହାରି
ସବୁଙ୍କୁ ତାଙ୍କର ନେଲେ ଯୁଦ୍ଧ ହରି ।
ଶତ ଶତ ସହସ୍ର ସହସ୍ର ସଂଖ୍ୟା ରଥ
ଚକ ଅଖ ଭାଜନ୍ତେ ଲୋଟିଲେ ଭୂପଥେ ।
ରଥ ଧ୍ୱଜ ଯୁପ କବଚ ଯେ ଘଣ୍ଟଣି
ଶର ଶକ୍ତି ଗଦା ତ ତୋମର କମ୍ପଣୀ ।
ଫଶି ଢାଲ ଖଣ୍ଡା ଆଦି ଯେ ଅସ୍ତ୍ରରାଜି
ଛାଡ଼ି ମହୀସ୍ଥଳରେ ପଡ଼ିଲେ ଗରଜି ।
ଏ ବାହାରେ ଧାନୁଷ୍କମାନଙ୍କ ତୂଣୀର
ପଡ଼ି ମହୀଦେଶରେ ଗଡ଼ିଲା ଅପାର ।
ଅଶ୍ୱାରୋହ ଗଜାରୋହ ଭୀଷ୍ମଙ୍କ ବାଣେ
ଭଳ ଭଳ ପଡ଼ିଲେ ଯେ ଯୁଦ୍ଧପ୍ରାଙ୍ଗଣେ ।
ପାଣ୍ଡବକୂଳ ମହାରଥୀ ଗୋଟି ହୋଇ
ଭୀଷ୍ମଙ୍କୁ ଶରମାନ ବିନ୍ଧିଲେ ବୁହାଇ ।
ତେବେ ହେଲେ ଭୀଷ୍ମଙ୍କ ବାଣ ଉଦୁବଳ
ହେଲା ପାଣ୍ଡୁସେନାଯାକରୁ ସପ୍ତେ ଦଳ ।

ଭୀଷ୍ମଙ୍କର ତ ଇନ୍ଦ୍ର ସମାନ ବିକ୍ରମ
ଦେଖି ପାଣ୍ଡୁରଥୀଏ ଛାଡ଼ି ଯୁଦ୍ଧ ଭ୍ରମ ।
ମନେ କଲେ ଆଜ ଏହାଙ୍କ ସଙ୍ଗେ ଆଜ
କରିଲେ ଯମ ଘୋଟୁ ଦେବ ଅସ୍ତ୍ର ପାଞ୍ଜି ।
ଏହିକାଳେ ପାଣ୍ଡୁସେନାଏ ବାବୁ ମାଆ
ସୁମରି ପଳାଇଲେ ଯୁଦ୍ଧେ ନୋହି ଠିଆ ।
ବୋଇଲେ କାଳ ପରି ଭୀଷ୍ମ ମହାରଥୀ
ଶର-ପାଟି ମେଲି ଆମ୍ଭଙ୍କୁ କଲେ ବ୍ୟଥୀ ।
ଏହିକାଳରେ ବାବୁ ପୁଅ ସଖା ମିତ
ଜଣାଜଣି ନୋହି କମ୍ପାଇ କ୍ରୋଧେ ଗାତ୍ର ।
ଦୃଢ଼ କରିଣ ଦେହ କଟାକଟି ହେଲେ
ମହୀଦେଶେ ଲୋଟି ଯମକୁ ଭେଟିଲେ ।
ପାଣ୍ଡବସେନା ଜନେ ଶସ୍ତ୍ର ପକାଇ
ଫିଟାଇ ବାଳ ପଳାଇଲେ ଭୟ ହୋଇ ।
ବୋଇଲେ ଆଜ ଖାଇଥିଲେ କାଲି ରଣ
କରି ଅରଜୁନ ନେବେ ଭୀଷ୍ମପ୍ରାଣ ।
ଆମ୍ଭେମାନେ ତା ଦେଖି ଗୁଡ଼ିକ ଫୁଲାଇ
କୁରୁଙ୍କୁ ମାରି ପିବା ଘରେ ତୋଷ ବହି ।
ଭୀଷ୍ମକାଣ୍ଡ-ଭଉଡ଼ ପାଣ୍ଡୁସେନା-ଭାଇ—
ମାନଙ୍କୁ ଯୁଦ୍ଧବାଣ୍ଟେ ତଡ଼ିଲା ଭୟ ହୋଇ ।
ପାଣ୍ଡବସେନାଙ୍କର ନବମଦଶା ଦେଖି
ପାର୍ଥଙ୍କୁ କହିଲେ ସରସିରୁହଆଖି ।
ପୂର୍ବରୁ ତ ବିରାଟନଗରେ ଆମ୍ଭଙ୍କୁ
କହିଛ ମାରିବ ମୁଁ ସମରେ ଭୀଷ୍ମଙ୍କୁ ।
ଏ ବାହାରେ ମଧ୍ୟ ବୋଲିଛ କୁରୁକୁଳ
ଶାୟକ-ଅନଳରେ କରିବ ନିର୍ମୂଳ ।
ଏବେ ସେ କାଳ ଆସି ପ୍ରାପତ ହୋଇଛି
ମାଉନା ପରି କମ୍ପା ରହ କୁନ୍ତୀବତ୍ସି ।
କ୍ଷାତ୍ରସ୍ୱଧର୍ମ ଆଶ୍ରେ କରି ମହାବୀର
କର ହେ ପିତାମହ ଭୀଷ୍ମଙ୍କୁ ସଂହାର ।
ଏହା ଶୁଣି ପାର୍ଥ ତଳକୁ ମୁଣ୍ଡ ପୋତି
ଚକ୍ରୁନ୍ତ ମନେ ହେଳ କଲେ ଏ ଯୁକତି ।
ଭୀଷ୍ମଙ୍କୁ ମାରି ଯାହା ଭୁଞ୍ଜିବି ମୁଁ ରାଜ୍ୟ
ମଲେ ମୋର ସାର ହୋଇବ ଜାଣ ଆଜ ।
ବନେ ଥିଲେ ମୋହର ଶ୍ରେୟ ହେବା ପରି
ପାଉଛି ମନକୁ ହେ ଜାଣ ନରହରି ।

ଯେବେ ତୁମ୍ଭେ ବୋଲୁଅଛ ଆହେ ଗୋବିନ୍ଦ
ନ କରିବ ମୁଁ ଜନ କୁମ୍ଭର ଆନନ୍ଦ ।
ବାହ ଭୀଷ୍ମଙ୍କଠାକୁ ରଥ ଏବେ ବେଗେ
ମାରିବି ମୁହିଁ ତାଙ୍କୁ ଗାଣ୍ଡୀବ ଆଶୁଗେ ।
ଏହା ଯେଉଁଦଣ୍ଡିଟି ବସୁଦେବ-ସୁତ
ଶୁଣିଲେ ରଥବର ବାହିଲେ ତୁରିତ ।
ପାଣ୍ଡବଙ୍କ ଦଳ ପଳାଇଥିଲେ ଯାହା
ଅର୍ଜୁନଙ୍କୁ ଦେଖିଣ ହୋଇଗଲେ ବାହା ।
ଭୀଷ୍ମ ବୁଢ଼ାଟିର ଯେ ପରାଣ ନେବାକୁ
ଧାଇଁଲେ ଯୁଦ୍ଧଭାଣ୍ଡେ କରିଣ ବଗକୁ ।
ଭୀଷ୍ମ ସିଂହପରି ଗର୍ଜନ୍ତିଟାଏ କରି
ଅର୍ଜୁନ ରଥ ଛାଇଲେ ଶର ମାରି ।
ଭୀଷ୍ମଙ୍କ ଶରଘାଏ କୃଷ୍ଣ ଅର୍ଜୁନ
ରୂପକୁ ନ ଦେଖିଲ କାହାରି ନୟନ
ଅର୍ଜୁନ ଗାଣ୍ଡୀବ ଧନୁକୁ ଉଟାରି
ଦେଲେ କାଣ୍ଡେ ଭୀଷ୍ମଙ୍କ ଧନୁକୁ କତୁରି ।
ଭୀଷ୍ମ ନିମିଷକେ ଧରିଣ ଆନ ଧନୁ
ଗୁଣ ଦେଇ ରହିଲେ ଯୁଦ୍ଧେ ହେଇ ମନ୍ୟୁ ।
ଅର୍ଜୁନ ସେ ଧନୁଟି ମୁଠିଠାରୁ କାଟି
ଯୁଦ୍ଧଭାଣ୍ଡରେ ଦେଖାଇଲେ ବିକ୍ରମଟି ।
ଅର୍ଜୁନଙ୍କର ପରାକ୍ରମ ଦେଖି ଭୀଷ୍ମ
ଛାଡ଼ିଦେଇଣ ମାନସରୁ ଯୁଦ୍ଧତୃଷ୍ଣ ।
ବୋଇଲେ ଅର୍ଜୁନ ବହୁତ କାଳ ଜୀଇ
ଥାଅ ତୁମ୍ଭ ପରି କ୍ଷତ୍ରିୟ କେହି ନାହିଁ ।
ପୁଣି ଭୀଷ୍ମ ଆନ ଧନୁକୁ ଧରି କରେ
ପାର୍ଥ ରଥପଥକୁ ଛାଇଦେଲେ ଶରେ ।
କୃଷ୍ଣଙ୍କ ବାହୁବା ଭାଙ୍ଗିଲେ ଭୀଷ୍ମ ଶର—
ଯାକ ବ୍ୟର୍ଥ ହୋଇଲ ଜାଣ ନରବର ।
ଅର୍ଜୁନ କୁହାଇ କୁହାଇ ମାର୍ଗଣ
ବିନ୍ଧ ଭୀଷ୍ମ ବୁକରେ କଲେ ଆୟୋଧନ ।
ଭୀଷ୍ମ-କ୍ରୋଧାନଳେ ପ୍ରଳୟ ସୂର୍ଯ୍ୟ ପରି
ଦହି ପାଣ୍ଡୁ ସେନାଯାକକୁ ଦେଲେ ମାରି ।
ତାହା ଦେଖି କୃଷ୍ଣ ନ ଲଭି କିଛି ସୁଖ
ଭୀଷ୍ମଙ୍କଠାରେ କରିଣ ମହାଦୁଃଖ ।
ସ୍ବରି ଘୋଡ଼ାଙ୍କର ବାଗ ରଥରେ ଥୋଇ
ବାହାରିଲେ ପାଞ୍ଚଣ ବାଡ଼ି ହାତେ ବହି ।
ସିଂହ ପରି ଗର୍ଜନ୍ତିଟାଏ ଉଚ୍ଚେ କଲେ
ପାଦେ ବଳେ କରନ୍ତେ ମହୀ କମ୍ପାଇଲେ ।
ନୟନ ଦୁଇ ଆରକତ ବର୍ଣ୍ଣ କରି
ବସୁଦେବସୁତ ଧାଇଁଲେ ରଗ ଧରି ।
କୃଷ୍ଣ-ରାହୁ ଭୀଷ୍ମ-ସୂର୍ଯ୍ୟଙ୍କୁ ଗ୍ରାସିବାକୁ
ଯୋଡ଼ିଲେ ଯୁଦ୍ଧଭାଣ୍ଡେ ଆକାଶ ମାର୍ଗକୁ ।
ଏହା ଦେଖି କୁରୁ ସେନାଏ ଉଚ୍ଚେ ରଡ଼ି
କଲେ ଭୀଷ୍ମ ମଲେ କୃଷ୍ଣଙ୍କ କ୍ରୋଧେ ପଡ଼ି ।
କୃଷ୍ଣଙ୍କର ଦେଖି ମହରେ ଶୂରପଣ
ପଳାଇଲେ ସୈନ୍ୟ କୁମ୍ଭର ନରଗଣ ।
ଯିବାବେଳେ ପବନ କଟୀ ପୀତପଟ
ଉଡ଼ୁ ଶୁଭୁଥିଲା ଗଗନ ପଟପଟ ।
କୃଷ୍ଣଙ୍କ ଆସିବାର କୁରୁ ପିତା ଜାଣି
ରହିଲେ ଯୁଦ୍ଧଭାଣ୍ଡେ କରେ ଧନୁ ଟାଣି ;
ବୋଇଲେ ଆହେ କୃଷ୍ଣ ବିଳମ୍ବ ନ କର
ମୁଁ ପାପୀକି ଶ୍ରୀହସ୍ତେ ମାରି ବେଗେ ତାର ।
ତୁମ୍ଭ ହସ୍ତେ ଆଜ ମୁଁ ପାଇବେ ମରଣ
ଦୂଜବେ ମୋତେ ହେ ଇନ୍ଦ୍ରାଦି ଦେବଗଣ ।
ତିନଲୋକଯାକେ ଅଟେ ମୁଁ ଏକ ଶ୍ରିବାର
ମୋତେ ମାରି ଯାହା ଆସୁଛ ଚକ୍ରଧର ।
ଏକାଳେ ଅର୍ଜୁନ ରଥରୁ ଡେଇଁ ପଡ଼ି
ଧାଇଁ ଯାଇ କୃଷ୍ଣଙ୍କୁ ପୋଟାଳିଲେ ଭିଡ଼ି ।
ବଣପଦଯାଏଟି ରାଜୀବଲୋଚନ
କୃଷ୍ଣ ଘେନିଣ ଗଲେ ଅର୍ଜୁନଙ୍କୁ ଜାଣ ।
ପୁଣି ଅର୍ଜୁନ ଭୂମିରେ ପାଦ ମାଡ଼ି
ରଖିଲେ ଶ୍ରୀକୃଷ୍ଣଙ୍କୁ ଟିକେହେଁ ନ ଛାଡ଼ି ।
କହିଲେ ଆହେ ନରହରି ମଧୁହାରି
ନହେଁ ଭୀଷ୍ମଠାରୁ ମୋର ବୋଲ କରି ।
ତୁମ୍ଭେ ତ ବୋଲିଅଛ ପୂର୍ବରୁ ମୋ ଆଗେ
ନ ମାରିବ କାହାକୁ ମୁହିଁ ରଣରଙ୍ଗେ ।
ଏବେ ସେ କଥାକୁ ଅନ୍ୟଥା କରିଦେଇ
ଧାଇଁଛ ଭୀଷ୍ମ ବଧେ ମାନସ ବଳାଇ ।
ଏଣୁ ଏ କଥା ହେଉ ନାହିଁ ଅନୁରୂପ
ଛାଡ଼ ହେ ଗୋବିନ୍ଦ ଭୀଷ୍ମଙ୍କଠାରୁ ତାପ ।
ଏବେ ମୁଁ ସତ୍ୟ କରି ତୁମ୍ଭଙ୍କୁ କହୁଛି
ଭୀଷ୍ମଙ୍କୁ ମାରିବି ହେ ଦେଖ ଶିଖଣ୍ଡି ।

କୃଷ୍ଣ ଶୁଣିଣ ଅରଜୁନଙ୍କ ବଚନ
କ୍ରୋଧ ଗୁଡ଼ ରଥରେ ବସିଲେ ବହନ ।
ଭୀଷ୍ମ କୃଷ୍ଣାର୍ଜୁନ ଦୁହିଙ୍କି ନେହେ ଦେଖି
ଦିବ୍ୟଶର ବାଛୁ ବନ୍ଧିଲେ ଗୁଣେ ଯୋଖି ।
ଗ୍ରୀଷ୍ମକାଳେ ସୂର୍ଯ୍ୟ ଜଳ ନେଲା ପରି
ଯୋଦ୍ଧାଙ୍କ ପ୍ରାଣ ନେଲେ ଭୀଷ୍ମ ଶସ୍ତ୍ରଧାରୀ ।
କୁରୁ ବାପେ ପାଣ୍ଡବ ସଇନ ମରଣ
ରଚିଲେ ସବୁ ହେଲେ ବନ୍ଧ ମାରଗଣ ।
ମଧ୍ୟାହ୍ନ ସୂର୍ଯ୍ୟ ପରି ଭୀଷ୍ମ ତେଜ ବଶେ
ଚାହିଁ ନ ପାରିଲେ ତାହାଙ୍କୁ କେହି ତୁଷେ ।
ପ୍ରଳୟ ମେଘର ପରି ଘଡ଼ଘଡ଼
ରଡ଼ କରି ଭୀଷ୍ମେ ବନ୍ଧିଲେ ଶରଧାଡ଼ ।
ପାଣ୍ଡବସେନାଙ୍କ ସେ କାଳେ କେହି ତ୍ରାତା
ନୋହିଲା ହେଣ୍ଡୁ ବୃଦ୍ଧ ହେଲେ କୁରୁ ପିତା ।
ଏହିକାଳେ ସୂର୍ଯ୍ୟ ପଶ୍ଚିମଗିରି ଶିର
ଚୁମ୍ବିଲେ ଆସି କ୍ଷୀଣ କରି ନିଜ କର ।
ଯୁଧିଷ୍ଠିର ରାଜା ସେନାର ପରାଭବ
ଦେଖିଣ ହୃଦମଧ୍ୟେ ବହିଣ ଅଗ୍ରବ ।
ମୁଣ୍ଡ ଗୋଟିଏ ଆଉଁଷି ସେନା ବାହୁଡ଼ାଇ
ଶୋକଜଳେ ନିଜର ମାନସ ବୁଡ଼ାଇ ।
ନିଜର ଶିବିରକୁ ଯୁଧିଷ୍ଠିର ରାଣ
ଯାଇଣ ମୁଣ୍ଡପୋତି ବସିଲେ ଆପଣ ।
କୁରୁ ସେନା ମହାରଥୀଏ ଯେତ୍ୟା ବସା
ମଧ୍ୟରେ ବସି କଲେ ଭୀଷ୍ମଙ୍କ ପ୍ରଶଂସା ।
ପାଣ୍ଡବେ ଭୀଷ୍ମଙ୍କର ପରାକ୍ରମ ଶୁଣି
ଗ୍ରହଣ କଲେ ହୃଦୟରୁ ସୁଖଶ୍ରେଣୀ ।
ଯୁଧିଷ୍ଠିର ବୃଷ୍ଣିମାନଙ୍କୁ ସଙ୍ଗେ ଘେନ
କଥାବାର୍ତ୍ତା ହୋଇଲେ ହୋଇ କୁନତାନ ।
କୃଷ୍ଣଙ୍କୁ ବୋଇଲେ ଦେଖୁ ତ ଥିଲ ତୁମ୍ଭେ
ଭୀଷ୍ମ କାଣ୍ଡଘାତେ ବିମୁଖ ହେଲୁ ଆମ୍ଭେ ।
ଯେରୂପେ ଘଞ୍ଚ ବନ ମନ୍ଥେ ମତ୍ତହସ୍ତୀ
ସେରୂପେ ସେନା କଲେ ପ୍ରତିପକ୍ଷ ନାସ୍ତି ।
ଆଶୀବିଷ ସଦୃଶ ଭୀଷ୍ମଙ୍କ ମାର୍ଗଣ
ଯା ଦେହରେ ବାଜିଲା କଲା ତା ମରଣ ।
ଭୀଷ୍ମଙ୍କର ଯା ଠାରେ ପଡ଼ଇଟି ଦୃଷ୍ଟି
ସେକ୍ଷଣି ଯାଏ ସେ ଜ କହ ଯମ ଭେଟି ।

ଇନ୍ଦ୍ର ଯମ କୁବେର କରନ୍ତେ ଯେବେ ରଣ
ଭୀଷ୍ମ ବିନା ତାଙ୍କୁ ଜିଣିବେ ନାରାୟଣ ।
ଭୀଷ୍ମଙ୍କରଟି ସାର ଶୂରପଣ ଦେଖି
ଲାଗୁଛି ଫୁଟି କଥା ନ ଗଲା ମୋ ଆଖି ।
ବନେ ପଶି ଥିଲେ ହୋଇବ ମୋର ଶ୍ରେୟ
ଯୁଦ୍ଧରେ ଶ୍ରେୟ ନାହିଁ ଜାଣ ଲକ୍ଷ୍ମୀପ୍ରିୟ ।
ଭୀଷ୍ମ-ଅଗ୍ନି ମୁଖରେ ପତଙ୍ଗ ପରାୟେ
ମଲେଣି ସୈନ୍ୟ ଲୋକ ନଷ୍ଟେ ଯଦୁରାୟେ ।
ମୋ ଲାଗିଏ ମୋ ଘେନ ପାଇଲେ ବନେ ଦୁଃଖ
ଏବେ ହେଲେ ଭୀଷ୍ମଙ୍କ ବାଣିରେ ନିରେଖ ।
ପାଞ୍ଚପତି କରିଲାଠାରେ ଦ୍ରୌପଦୀଙ୍କ
ନାଶ ନୋହିଲା ଆହେ ଗୋବିନ୍ଦ ଆତଙ୍କ ।
ଏବେ ତୁମ୍ଭେ ବୋଲ ଭାଇଙ୍କି ଘେନି ବନେ
ରହିକରି ତପସ୍ୟା କରିବି ସୁମନେ ।
ଯୁଦ୍ଧ କଲେ ଭୀଷ୍ମକାଣ୍ଡ ମୋ ଜୀବନକୁ
ନେଇଣ ଦେବ ସିନା ପ୍ରେତ ଦେବତାଙ୍କୁ ।
ରାଜଶିରୀ କିଛି ନୋହିବ ମୋର ଭୋଗ
ଏଣୁ ଭଲ ହେବ କଲେ ମୁଁ ବଇରାଗ ।
ଶ୍ରୀକୃଷ୍ଣ ବୋଇଲେ ହେ ଯୁଧିଷ୍ଠିର ରାୟେ
ବୃଥା ବସି ଶୋକରେ ନ ବୁଡ଼ାଅ କାୟେ ।
ତୁମ୍ଭ ଭାଇମାନେ ଅଟନ୍ତି ବଳୀୟାର
ମନେକଲେ ଜିଣି ଆଣିବେ ସ୍ୱର୍ଗପୁର ।
ମୋତେ ଏବେ ବୋଲ ରାଜନ ଭୀଷ୍ମ ମାରି
କାଲି କରିବି ମୁଁ ତୁମ୍ଭଙ୍କୁ ଦଣ୍ଡଧାରୀ ।
ଅର୍ଜୁନ ଆଲୁ ଘରେ ଘରବୁଡ଼ା ହୋଇ
ଯୁଦ୍ଧଭାଣ୍ଡରେ ପ୍ରୀତି ଦେଖାଉଛି ମୁହିଁ ।
ଇନ୍ଦ୍ରପରି ମୋର ବିକ୍ରମ ଆଜ ଦେଖ
ଦେବ ଯୁଦ୍ଧ ଭାଣ୍ଡରେ ଭୀଷ୍ମଙ୍କୁ ମୁଁ ଦୁଃଖ ।
ତୁମ୍ଭର ଯେ ଶତ୍ରୁ ମୋହର ଶତ୍ରୁ ସେହି
ଏ କଥାରେ ନୃପ ସନ୍ଦେହ କିଛି ନାହିଁ ।
ମୋର ଧନ ଜୀବନ ଅଟଇ ତୁମ୍ଭର
ତୁମ୍ଭ ପାଇଁ ମୋହର କରିବା ହେଲାର ।
ତୁମ୍ଭ ପାଇଁ ଅରଜୁନଟି ମିତ୍ର ମୋର
ଏ ବାହାରେ ମଧ୍ୟ ଅଟନ୍ତି ଶିଷ୍ୟବର ।
ଅର୍ଜୁନଙ୍କର କାର୍ଯ୍ୟ ପଡ଼ିବ ରାୟେ ଯେବେ
ମାଂସ କାଟିଦେଇ କରିବି ଜାଣ ତେବେ ।

ସେ ମଧ୍ୟ ମୋ ଘ ପାଇଁ ପତ୍ନଙ୍କୁ ଗ୍ରୁଡ଼
ପଡ଼ିଲେ କଥାକଣ୍ଡ ଯିବେ ଷଣ ମୋଡ଼ ।
ଅର୍ଜୁନ କହିଛନ୍ତି ପୂର୍ବରୁ ମୋ ଆଗେ
ଭୀଷ୍ମଙ୍କୁ ମାରିବି ମୁଁ ଶରେ ଯୁଦ୍ଧେ ବେଗେ ।
ସେହି କଥା ରକ୍ଷା ହୃଦଗ୍ରଧତଉ ହୋଇ
ତୁମ୍ଭଙ୍କୁ କହୁଅଛି ମୃତ୍ୟୁ ନରସାଇଁ ।
ତୁମ୍ଭେ ଏବେ ତୁମ୍ଭର ଘାଇଙ୍କ ପସ୍ତର
ବୋଇଲେ କରିବ ମୁଁ ଭୀଷ୍ମଙ୍କୁ ସମର ।
ପାର୍ଥ ଯେବେ ଯୁଦ୍ଧେ କରିବେ ମନ କ୍ଷଣେ
ଭୀଷ୍ମ ତ ବେଢିଯିବେ ଯମଙ୍କୁ ଆପଣେ ।
ଅରଜୂନ ଜିଣିପାରେ ତ ଶଚୀସାଇଁ
ଭୀଷ୍ମଠାରେ ନଜର ତାହାଙ୍କର ନାହିଁ ।
ଭୀଷ୍ମ ଆସିଣ ହୋଇଲେନ ଗତସତ୍ତ୍ୱ
ସାରୁଅଛନ୍ତି ତାଙ୍କ ମୁଖେ ମେ ମହତ୍ତ୍ୱ ।
ଯୁଧିଷ୍ଠିର ବୋଇଲେ କହୁତ ଯା ହରି
ଏକଥା ନୋହେ ବୋଲି ଆମ୍ଭେ ବୋଲିପାରି ।
ଆପଣ ଯେବେ ରକ୍ଷା କରିଥିବ ମୋତେ
ଭୀଷ୍ମଙ୍କ ଜୀବନ ମୁଁ ନେଇବ ତୁରିତେ ।
ପୂର୍ବରୁ ତ ତୁମ୍ଭେ କହିଛ ନ ଯୁଝିବ
ତ ଜାଣି କ ରୂପେ ତୁମ୍ଭଙ୍କୁ ଯୁଝାଇବ ।
ଏବେ ମୁଁ କହୁଅଛି ନ ଯୁଝି ଗୋବିନ୍ଦ
ବଢ଼ାଅ ଯୁଦ୍ଧକାଣ୍ଡେ ମୋହର ଆନନ୍ଦ ।
ଭୀଷ୍ମ ତ କହିଛନ୍ତି ତୁମ୍ଭ ପାଇଁ ପ୍ରାଣ
ଛାଡ଼ିବ ମୁଁ ଯୁଝିଲେ ହେଲେ ନରଗଣ ।
ଏବେ ଚାଲ ହେ ତୁମ୍ଭେ ଆମ୍ଭେ ମିଶି ଯିବା
କିରୂପେ ମରିବେ ଭୀଷ୍ମଙ୍କୁ ପଚାରିବା ।
ଭୀଷ୍ମ ଯେଉଁରୂପରେ କହିବେ ଆମ୍ଭଙ୍କୁ
ସେରୂପେ କରି ଆମ୍ଭେ ମାରିବା ତାହାଙ୍କୁ ।
ବାବୁ ମରଗଲେ ଆମ୍ଭେମାନେ ତ ପିଲା
ହୋଇଥିଲୁ ହେଲୁ ଯା ଯେବେ ଅଲଅଳା ।
ସେ ଭୀଷ୍ମଙ୍କ ସକାଶୁଁ ଆହେ ନାରାୟଣ
ମୋ କଷ୍ଟବାରୁ ଏବେ ଭଲ କରି ଜାଣ ।
ତାଙ୍କୁ ଯାହା ଏବେ ମାରିବା ଲାଗିଥାଇଁ
ଏଥିରୁ ଅଧରମ ହୋଇ କଥା ନାହିଁ ।
ଏ ସକାଶୁଁ କହୁଛି ଶସ୍ତ୍ରଧାରୀ ଲୋକ ।
ଜୀଇଥିବାର ହେ ଅଟଇ ଧିକ ଧିକ ।

ଶ୍ରୀକୃଷ୍ଣ ବୋଇଲେ ଏ କଥା ମୋ ମନକୁ
ପାଇଲା ଚାଲ ଯିବା ଭୀଷ୍ମେ ପୃଚ୍ଛିବାକୁ ।
ଅବଶ୍ୟ ସେ ତୁମ୍ଭଙ୍କୁ କହିବେ ମରଣ
ସେହି ଛିଦ୍ରେ ମାରିବା ତାଙ୍କୁ ବନ୍ଧି ବାଣ ।
ଏରୂପେ ପାଣ୍ଡବେ ଛାଡ଼ାଇ ବସ୍ତ୍ରରକୁ
ଅସ୍ତ୍ର ଛାଡ଼ିଣ ଗଲେ ଭୀଷ୍ମଙ୍କ ପାଖକୁ ।
ଭୀଷ୍ମଙ୍କର ପାଦରେ କରି ନମସ୍କାର
ଛିଡ଼ା ହେଲେ ପାଣ୍ଡବମାନେ ଯୋଡ଼ି କର ।
ଭୀଷ୍ମ ତାହା ଦେଖିଣ ବୋଇଲେ ତାହାଙ୍କୁ
କାହିଁକି ଆସିଅଛ ବାବୁ ମୋହଠାକୁ ।
କେଉଁ କାର୍ଯ୍ୟ ତୁମ୍ଭର ପଡ଼ିଅଛି ଏବେ
କହିଲେ ତାହା ମୁହିଁ କରିଦେବ ତେବେ ।
ଯୁଧିଷ୍ଠିର ବୋଇଲେ କିରୂପେ ହେ ରାଜ୍ୟ
ପାଇବୁ କହ ଆମ୍ଭେ ଭୀଷ୍ମ ଗାରବଜ ।
ଆପଣ ତ, ଆମ୍ଭର ଦେଲ ସେନା ମାରି
ତୁମ୍ଭଙ୍କୁ ତ ଆମ୍ଭେ ରହିଲୁଁ ରଣେ ହାରି ।
ଏବେ କେଉଁ ରୂପରେ କଲେ ଆମ୍ଭେ ରଣ
କହ ପିତା ହେବ ତୁମ୍ଭର ମରଣ ।
ତୁମ୍ଭର ଧନୁ ସବୁବେଳରେ ମଣ୍ଡଳ—
ଆକାରକୁ ଦେଖିଲା ନୟନ ଯୁଗଳ ।
ଟିକଏ ଛିଦ୍ର ଆମ୍ଭେ ପାଇଥାନ୍ତୁ ଯେବେ
ଏତେବେଳ ଯାଏଁ ତ ନ ଥାଆନ୍ତ ତେବେ ।
ରଥ-ଆକାଶରେ ତ ମେଘ ପରି ଘୋଟି
ଧନୁ-ବିଦ୍ୟୁ ଧରିଣ ଧାରା ଶର ବୃଷ୍ଟି ।
କରୁଥିଲେ ତୁମ୍ଭଙ୍କୁ ଆମ୍ଭ ଯୋଦ୍ଧାଗଣ
କି ରୂପରେ ପାରିବେ କରି ନିବାରଣ ।
ଭୀଷ୍ମ ବୋଇଲେ ମୁଁ କହୁଛି ସତ୍ୟ କରି
ମୁଁ ଜୀଇଥିଲେ ଜୟ ନାହିଁଟି ତୁମ୍ଭରି ।
ତୁମ୍ଭଙ୍କୁ ମୁଁ ଏବେ ବୋଲୁଛି ଆଗ୍ରହରେ
ହରି ନିଅ ଜୀବନ ମୋହର ବେଗରେ ।
ଯୁଧିଷ୍ଠିର ବୋଇଲେ ଯମଙ୍କ ପରାୟେ
ରୂପ ତ ଧରିଥାଅ ଯୁଦ୍ଧେ ଅତିଶୟେ ।
ଏଣୁ ମାରିବାକୁ ନ ପାଏ ଆମ୍ଭ ବଳ
ପୁଣି ତ ତୁମ୍ଭ ରଥୀମାନଙ୍କେ ପ୍ରବଳ ।
ଭୀଷ୍ମ ବୋଇଲେ ଏ ଅଟଇ ବାବୁ ସତ
ଇନ୍ଦ୍ର ନ ପାରନ୍ତି ନେଇ ମୋର ଜୀବତ ।

ମୁଁ ଯେତେବ ଧନୁଶର କରେ ଥିବ ଧରି
ମୋତେ ଯୁଝିବାକୁ କେ ନାହିଁ ମର୍ତ୍ତ୍ୟପୁରି ।
ଅସ୍ତ୍ର ଛାଡ଼ିଲେ ମୁହିଁ ମହାରଥୀ ବାଣ
ଖାଇଲେ ବାବୁ ଜାଣ ପାଇବ ମରଣ ।
ବିମୁକ୍ତ-ଧ୍ୱଜ-ବର୍ମ ଗଳିତ ଶସ୍ତ୍ରହୀନ
ସ୍ତ୍ରୀ ସ୍ତ୍ରୀନାମ ଯେ ଭୟବନ୍ତ ଜନ ।
ମୁଁ ତୋହର ବୋଲିବ ଯଦିଲେ ରକ୍ଷିବ
ନୋହିଲେ ବା ଯୁଦ୍ଧ ଭୂମିରୁ ପଳାଇବ ।
ଏମାନଙ୍କୁ ଆହେ ପାଣ୍ଡବ ଦଣ୍ଡଧାରୀ
ନ ମାରଇ ଏ ସତ୍ୟ ଅଛି ଟି ମୋହର ।
ଶିଖଣ୍ଡୀ ତ ଅଛନ୍ତି ତୁମ୍ଭର ସଇନେ
ସ୍ତ୍ରୀପୂର୍ବା ବୋଲି ତାଙ୍କୁ ଜାଣନ୍ତି ତ ଜନେ ।
ତାହାଙ୍କୁ ଅରଜୁନ ରଥ ଆଗେ କରି
ହେଉ ଯୁଦ୍ଧଦାଣ୍ଡେ କାଣ୍ଡେ ମୋ ପ୍ରାଣ ସାରି
କୃଷ୍ଣ ଅରଜୁନଙ୍କ ବିନା ଆନ ଜନ
ନ ପାରେ କରି ମୋତେ ଯୁଦ୍ଧରେ ନିଧନ ।
ଆଜ ଅରଜୁନ ତ ଶିଖଣ୍ଡୀକି ଆଗେ
କରି ମୋତେ ମାରନ୍ତୁ ଉତ୍ତମ ଆଶୁଗେ ।
ଏହା କହି ବୋଇଲେ ହେଲାଣ ତ ରାତି
ଯାଅ ବାବୁ ଶୋଇବ ନିଦ୍ରା ମାଡ଼େ ଅତି ।
ପାଣ୍ଡବେ ନମସ୍କାର କରି ପ୍ରମୋଦରେ
ପରବେଶ ହେଲେ ଆପଣା ଶିବିରରେ ।
ଅରଜୁନ ବସାରେ ଲାଜ ଲାଜ ହୋଇ
କହିଲେ ଏ ବଚନ କୃଷ୍ଣଙ୍କୁ ଅନାଇଁ ।
ପିତାମହ ଭୀଷ୍ମଙ୍କ କୋଳରେ କିରୂପେ
କରିବି ମୁଁ ଯୁଦ୍ଧ କହ ତ କୃଷ୍ଣ ଆପେ ।
ପିଲାଦିନେ ଖେଳ ଧୂଳିରେ ଘାଣ୍ଟି ହୋଇ
ଭୀଷ୍ମଙ୍କର କୋଳରେ ବସଇ ମୁଁ ଯାଇ ।
ପିତା ବୋଲି ତାଙ୍କୁ ଡାକଇ ମୁହିଁ ଯେବେ
ମୁଁ ତୋ ପିତା ପିତା କହନ୍ତି ମୋତେ ତେବେ
ଏରୂପେ ଯେଉଁ ଭୀଷ୍ମ ତାଙ୍କୁ ଈଷା କରି
କେଉଁରୂପେ ଦେଖାଇବ କାଳ ଦଣ୍ଡଧାରୀ ।
ମୋ ହାତରେ ନୋହିବା କଥା ଏ ଗୋବିନ୍ଦ
ପଶିବ ମୁଁ ବନରେ ନ କରିବ ଦ୍ୱନ୍ଦ୍ୱ ।
ଭିକ୍ଷା କରି ପରଙ୍କେ ଉଦର ପୋଷିବ
ଭୀଷ୍ମ ପରି ଲୋକର ପରାଣ ନ ନେବ ।

ଶ୍ରୀକୃଷ୍ଣ ବୋଇଲେ ହେ ପାର୍ଥ କିସ କହ
କହିଲେ ହେଲେ ଛାଡ଼ ନାହିଁ ତୁମ୍ଭ ମୋହ ।
ପୂର୍ବରୁ ତ କହିଛ ମାରିବ ଭୀଷ୍ମଙ୍କୁ
ଏବେ ନାହିଁ କଲେ ଛାଡ଼ିବ କେ ତୁମ୍ଭଙ୍କୁ ।
କ୍ଷତ୍ରିସ୍ୱଧର୍ମ ଆଶ୍ରେ କରି କର ଯୁଦ୍ଧ
କରିବଅ ଭୀଷ୍ମଙ୍କୁ ରଣଦାଣ୍ଡେ ବଧ ।
ଭୀଷ୍ମ ଥାଇଥିଲେ ତୁମ୍ଭର ଦୁଃଖଦଶା
ଯାଇ ନାହିଁ ମଧ୍ୟ ପାଇବ ଲୋକହସା ।
ଦେବଭାଏ ମଧ୍ୟ ଶାସ୍ତ୍ରରେ ଲେଖିଛନ୍ତି
ତୁମ୍ଭ ହସ୍ତରେ ଭୀଷ୍ମ ଯିବେ ଯମକତ ।
ତୁମ୍ଭ ବିନା ଭୀଷ୍ମଙ୍କ ଆନ ରଥୀ ବାଣ
ବାଜିଲେ ହେଲେ ସେନ ନ ଯାରେ ପରାଣ ।
ବୃହସ୍ପତି ମଧ୍ୟ ଇନ୍ଦ୍ରଙ୍କୁ କହିଛନ୍ତି
ଆତତାୟୀ ହେଲେ ମାରିବ ଦ୍ୱିଜପତି ।
ଭୀଷ୍ମ ହୋଇଛନ୍ତି ଯୁଦ୍ଧେ ଆତତାୟୀ
ମାରି ତାଙ୍କୁ ଦୋଷ ଏଥିରେ କିଛି ନାହିଁ ।
ପାଳି ପ୍ରଜା ଯାଗଯଜ୍ଞେ ଦେଇକରି ମଜ୍ଜା
ନାଶିଲେ ପରବଳ କ୍ଷତ୍ରି ପାଏ ପୂଜା ।
ଅର୍ଜୁନ ବୋଇଲେ ଶିଖଣ୍ଡୀ ଭୀଷ୍ମହନ୍ତା
ହୋଇ ତ ଜନମିଛି ଜଗତକରତା ।
ତାହାକୁ ଆଗକରି କାଲି ଯୁଦ୍ଧେ ମୁହିଁ
ଭୀଷ୍ମେ ମାରିଦେବ ଅଙ୍ଗୀକି ତାଙ୍କୁ ଦେଇ ।
ଏ ବାହାରେ ଭୀଷ୍ମଙ୍କ ପାଇଁ ଯେତେ ରଥୀ
ଯୁଝୁଛନ୍ତି ଦେବ ତାହାଙ୍କୁ ଶରେ ମଥି ।
ଏରୂପେ ଅରଜୁନ ଶ୍ରୀକୃଷ୍ଣ ଈଶ୍ୱର
କରିଣ ଆନନ୍ଦରେ ପୁଲକି ଶରୀର ।
ଯେଝା ବସାଟିକରେ ଶେଯକୁ ପକାଇ
ଶୋଇଲେ ମୁଣ୍ଡଟିକୁ ସୁନ୍ଦାଣୁଟି ଦେଇ ।
ଏହିଠାରେ ନବମଦିନ ଯୁଦ୍ଧ ଶେଷ
କଲେ ସତ୍ୟବତୀ ନନ୍ଦନ ବେଦବ୍ୟାସ ।
ତାହାଙ୍କର ପଦ୍ମପାଦରେ କୃଷ୍ଣସିଂହ
ନରେଶ ମନୋଭୃଙ୍ଗ ହେବେ ବନ୍ଧି ସ୍ନେହ ।

—୦—

## ଦଶମ ଦିନ ଯୁଦ୍ଧ

ଏଥୁଅନନ୍ତରେ ଧୃତରାଷ୍ଟ୍ର ନରମଣି
ସଞ୍ଜୟଙ୍କୁ ବୋଲିଣ ପୁଚ୍ଛିଲେ ଏ ବାଣୀ ।

ପାଣ୍ଡୁସୁତେ ଶିଖଣ୍ଡୀକି ଆଗରେ କରି
କିରୂପେ କହ କଲେ ଭୀଷ୍ମଙ୍କୁ ସଂହାର ।
ସଞ୍ଜୟ ବୋଇଲେ ହେ ରାଜ ଶେଷେ ରାତ୍ରେ
ଶୋଇବା ଶେଯ ଛାଡ଼ି ପାଣ୍ଡୁରାଜାପୋଏ ।
ସୂର୍ଯ୍ୟଉଦୟରୁ ତିଆରି କରି ସୈନ୍ୟ
ଧାଇଁଲେ ଯୁଦ୍ଧବାନ୍ତେ ଯୁଝିବେ ବୋଲି ମନ ।
ଶିଖଣ୍ଡୀ ରଥ ଚଢ଼ି ସଇନ ଆଗରେ
ବାହାରିଲେ ଧରିଣ ଧନୁକୁ ରଙ୍ଗରେ ।
ପାଣ୍ଡବେ ଯେଉଁ ବ୍ୟୂହ ଯୁଦ୍ଧ ବାନ୍ତେ କଲେ
ସେ ବ୍ୟୂହର ଆଗରେ ଶିଖଣ୍ଡୀ ରହିଲେ ।
ଶିଖଣ୍ଡୀ ଚକ୍ରରକ୍ଷା ଭୀମ ଅର୍ଜୁନ
ସେହିଦିନ ହେଲେ ହେ ନରପତି ଜାଣ ।
ଦ୍ରୌପଦେୟ ସୌଭଦ୍ର ଶିଖଣ୍ଡୀ ପୃଷ୍ଠରକ୍ଷା
ହୋଇଲେ ଭୀଷ୍ମ ମାରିବାରେ କରି କକ୍ଷା ।
ସାତ୍ୟକି ଚେକିତାନ ଗୋପତା ହୋଇଲେ
ଧୃଷ୍ଟଦ୍ୟୁମ୍ନର ସେନା ଘେନିଣ ଜଗିଲେ ।
ଯୁଧିଷ୍ଠିର ନକୁଳ ସହଦେବ ଦୁଇ—
ଭାଇଙ୍କି ଘେନିକରି ଥିଲେ ଚୋଷ ବନ୍ଧ ।
କଇକେୟ ବିରାଟ ଘେନ ସଙ୍ଗେ ଥାଟ
ରହିଲେ ସେ ଆକ୍ରୋଶ ନୃପ ଯୁଦ୍ଧ ବାଟ ।
କୁରୁ ସେନାମାନେ ଭୀଷ୍ମଙ୍କୁ ଆଗେ କରି
ବାହାରିଲେ ଯୁଦ୍ଧକୁ ମନେ ଇଚ୍ଛା ଧରି ।
ଦ୍ରୋଣ ଦ୍ରୌଣି ସେ ଭଗଦତ୍ତ ହାତୀ ସୈନ୍ୟ
ଘେନିଣ ଜଗିଲେ ବ୍ୟୂହର ପୃଷ୍ଠସ୍ଥାନ ।
କୁରୁ ପୁଅମାନେ ତାହାଙ୍କୁ ଅନୁଗତ
ହୋଇକରି ରହିଲେ ହୋଇ ଧନୁହସ୍ତ ।
କୃପ କୃତବର୍ମା ସେ କାମ୍ବୋଜ ରାଜନ
ସୁଦକ୍ଷିଣ ସୌବଳ ମାଗଧ ଜୟସେନ ।
ଆଉ କୁରୁ ମହାରଥୀଏ ଯୋଡ଼ ହୋଇ
ବ୍ୟୂହର ଜଘନଦେଶ ପାଳିଲେ ନୃସାଇଁ ।
ଅନ୍ୟୋନ୍ୟରେ କୁରୁ ପାଣ୍ଡବଙ୍କ ଯୁଦ୍ଧ
ହୁଅନ୍ତେ ବୀରମାନେ ବହୁ ହେଲେ ବଧ ।
ଅର୍ଜୁନ ଆଉ ପାଣ୍ଡୁସୁତେ ଶିଖଣ୍ଡୀକି
ଆଗ କରି ହାଣିଲେ ଧନୁ କରେ ଟେକି ।
ଭୀମକାଣ୍ଡ ପାଇ କୁରୁର ସେନାଗଣ
ପାଇଲେ ପରଲୋକ ଯିବା ଆଚରଣ ।

ନକୁଳ ସହଦେବ ସାତ୍ୟକି କାଣ୍ଡ ଘାତେ
କୁରୁ ସେନାମାନେ ବିକଳ ହେଲେ ଚିତ୍ତେ ।
କୁରୁର ଲୋକମାନେ ଯୁଦ୍ଧରେ ବିମୁଖ
ହୁଅନ୍ତେ ବନ୍ଧି ନ ପାରିଲେ ସେ ବିଶିଖ ।
କୁରୁ ମହାରଥୀଏ ସେକାଳରେ ହାତା
ସୈନ୍ୟର ନୋହିଲେ ହେ ଦୁର୍ଯ୍ୟୋଧନପିତା
ଧୃତରାଷ୍ଟ୍ର ବୋଇଲେ ରଥୀଏ ଦେଖି ତାହା
କି କଲେ କହ ହୋଇଥିଲେ ଧନୁବାହା ।
ସଞ୍ଜୟ ବୋଇଲେ ହେ ଶୁଣ ନୃପବର
ଏ ଅନ୍ତେ ପିତା କଲେ ଯେଉଁରୂପେ ରଣ ।
ପାଣ୍ଡବମାନେ ହୃଷ୍ଟ ହୋଇ କୁରୁ ସେନା
ମୁଖେ ବାଣମାନ ବିନ୍ଧିଲେ ଅକଳନା ।
ତାହା ଦେଖି ଭୀଷ୍ମ ହୋଇଲେ ଅତି ରୋଷୀ
ବାମକରେ ଆଣେ ଧଇଲେ ଧନୁ କଷି ।
ପାଣ୍ଡବ ସୈନ୍ୟନାଶ ଚିତ୍ତରେ ବାଢ଼ିଲେ
ଅକ୍ଷୟଶର ବାଛି ତୂଣୀରୁ ସେ କାଢ଼ିଲେ ।
ନାରାଚ ବତ୍ସଦନ୍ତ ଅଞ୍ଜଳିକ କାଣ୍ଡ—
ମାନଙ୍କେ ଭୀଷ୍ମ ଖୋଳି ପକାଇଲେ ପିଣ୍ଡ ।
ଗଜାରୋହମାନେ ଗଜପୃଷ୍ଠରୁ ଛାଡ଼ି
ଭୀଷ୍ମ କାଣ୍ଡ ବାଜନ୍ତେ ଭୂମେ ଗଲେ ପଡ଼ି ।
ରଥରେ ଥିବା ଲୋକେ ହୋଇ ଦୁଇ ଖଣ୍ଡ
ଗଡ଼ିକି ପକାଇଲେ ଆଣି ଯୁଦ୍ଧକାଣ୍ଡ ।
ସିପାଇ ଘୋଡ଼ାଧୂପା ମାରିବା ପାଇଁ ଛାଡ଼ି
ପକାଇଲେ ଘୋଡ଼ା ମୁଖରେ ପିଟି ବାଢ଼ି ।
ଆହା ଆହା ବୋଲି ପାଇକେ ଦୁଃଖେ ମଜ୍ଜି
ଫରିକ ସେ ଷଗଇ ଯୁଦ୍ଧୁ ଗଲେ ଭାଜି ।
ବଜ୍ର ପରି ଭୀଷ୍ମଙ୍କର ଯେ କାଣ୍ଡଗଣ
ବାଛିଣ ଯୋଦ୍ଧାଙ୍କର ଘେନିଲା ପରାଣ ।
ମଣ୍ଡଳାକାର କରେ ଦିଶିଲା ଭୀଷ୍ମ ଧନୁ
ଅଗ୍ନିପରି ଦିଶିଲେ ଶାନ୍ତନୁଙ୍କ ସୁନୁ ।
କୁରୁର ପୁଅମାନେ ଜୟକୁ ବିଚାରି
ଭୀଷ୍ମଙ୍କୁ ସ୍ତୁତି କଲେ ତାହା ଦେଖିକରି ।
ପାଣ୍ଡୁସୁତମାନେ ଭୀଷ୍ମଙ୍କୁ ଯୁଦ୍ଧବାନ୍ତେ
ନିବାରି ନ ପାରିଲେ ଗୋଟିଏଟି କାଣ୍ଡେ ।
ଶିଖଣ୍ଡୀର ସେନାଗଣକୁ ଭୀଷ୍ମ କାଣ୍ଡ
ସେକାଳରେ ଯାଇ ବହୁତ ଦେଲା ଦଣ୍ଡ ।

ଶିଖଣ୍ଡୀ ତିନକାଣ୍ଡ ଭୀଷ୍ମଙ୍କ ହୃଦକୁ
ବିନ୍ଧିଲା ଧନୁ ଟାଣି କରି ଗର୍ଜନକୁ ।
ଭୀଷ୍ମ ଶିଖଣ୍ଡୀକି ଅନାଇଁ ହସି ରଙ୍ଗେ
ଏ ବଚନ ନୃପ ଭାଷିଲେ ତାଙ୍କ ଆଗେ ।
ତୋ ମନକୁ ଯେତେ ଆସୁଛି ବିନ୍ଧ କାଣ୍ଡ
ମୁଁ କରୂପେ ବିନ୍ଧିବି ତୁ ପୁରୁଷ ଷଣ୍ଢ ।
ଶିଖଣ୍ଡୀ ବୋଇଲେ ମୁଁ ତୁମ୍ଭଙ୍କୁ ଜାଣଇ
ଆଜ ଜାଣିଛି ବେଢ ସମରେ ବଢ଼ାଇ ।
ଏହା କହି ଶିଖଣ୍ଡୀ ଧନୁକୁ ଉଟାଳି
ଭୀଷ୍ମଙ୍କୁ ପାଞ୍ଚ ମାରଗଣ ଦେଲେ ମାରି ।
ଅର୍ଜୁନ ଭୀଷ୍ମଙ୍କର ମୃତ୍ୟୁକାଳ ଜାଣି
ଶିଖଣ୍ଡୀ ମୁହିଁ ସ୍ୱହିଁ କହିଲେ ଏ ବାଣୀ ।
ଭୀଷ୍ମଙ୍କ କାଣ୍ଡଯାକ କାଟୁଛି ମୁଁ ଶଳା
ମାରି ଭୀଷ୍ମବୁଢ଼ାକୁ ନ କର ହେ ହେଳା ।
ଆଜ ଯେବେ ତୁମ୍ଭେ ଭୀଷ୍ମଙ୍କୁ ନ ମାରିବ
ତୁମ୍ଭ ଆମ୍ଭ ସାମର୍ଥ୍ୟ ହାସ୍ୟେ ଉଡ଼ିଯିବ ।
ଦ୍ରୋଣ ଅଶ୍ୱତ୍ଥାମା ଯେ କୃପ ଦୁର୍ଯ୍ୟୋଧନ
ବିକର୍ଣ୍ଣ ଜୟଦ୍ରଥ ମାଗଧ ଚିତ୍ରସେନ ।
ସୁଦକ୍ଷିଣ ଅଳମ୍ବୁଷ ଯେ ଅନୁବିନ୍ଦ
ସୁଶର୍ମା ଭୂରିଶ୍ରବା ଭଗଦତ୍ତ ବିନ୍ଦ ।
ଏମାନେ ମୋ ହାତେ ରହିଲେ ଜାଣ ଆଜ
ମାରି ତୁମ୍ଭେ ଭୀଷ୍ମଙ୍କୁ କର ମହାଆଜ ।
ଧୃତରାଷ୍ଟ୍ର ବୋଇଲେ ସଞ୍ଜୟ ମନ୍ତ୍ରୀବର
ଶିଖଣ୍ଡୀ କେଉଁରୂପେ କଲେଟି ସମର ।
କେଉଁମାନେ ତାଙ୍କର ରକ୍ଷାକାରୀ ହେଲେ
ଏହା ମୋତେ କହିବା ହେଉ ଏବେ ଭଲେ ।
ଭୀଷ୍ମଙ୍କର ରଥ କୋଦଣ୍ଡକୁ ଶିଖଣ୍ଡୀ
କରିଲଟିକ କହ ଯୁଦ୍ଧରେ ବିଖଣ୍ଡି ।
ସଞ୍ଜୟ ବୋଇଲେ ଭୀଷ୍ମଙ୍କ ଧନୁ ରଥ
କାଟି ନାହିଁ ଜାଣ ଶିଖଣ୍ଡୀ ନରନାଥ ।
ଭୀଷ୍ମଙ୍କୁ ଆଗକରି ତୁମ୍ଭ ରଥିବୃନ୍ଦ
ପାଣ୍ଡବସେନା ସଙ୍ଗେ ଆରମ୍ଭିଲେ ଦ୍ୱନ୍ଦ୍ୱ ।
ଭୀଷ୍ମଙ୍କର କାଣ୍ଡର ପ୍ରତାପକୁ ଦେଖି
ପାଣ୍ଡବ ସେନାଯାକ ହୋଇଗଲେ ଦୁଃଖୀ ।
ପାଞ୍ଚାଳମାନେ ତାହା ନ ସହି କୋଦଣ୍ଡ
କମ୍ପାଇ ଆବୋରିଲେ ଆସି ଯୁଦ୍ଧକାଣ୍ଡ ।
ପାଣ୍ଡବମାନେ ମହାବଳେ ହେଲେ ଗୋଟି
ନ ପାରିଲେ ଭୀଷ୍ମଙ୍କ ରଣମଧ୍ୟେ ଯୋଟି ।
ଅର୍ଜୁନ ଗାଣ୍ଡୀବକୁ ଟାଣି ଦୁଇ ଭୁଜେ
ବିନ୍ଧିଲେ ଶର ତୁମ୍ଭ ସଇନ-ସମାଜେ ।
ଅର୍ଜୁନ କାଣ୍ଡ-ସିଂହ ତୁମ୍ଭ ସୈନ୍ୟ କରୀ—
ମାନଙ୍କୁ ମୃତ-ମୁଖେ ପକାଇଲେ ମାରି ।
ଦୁର୍ଯ୍ୟୋଧନ ସୈନ୍ୟର ଦେଖି ପରାଭବ
ଭୀଷ୍ମ ଆଗେ କହିଲେ ବହି ଗଦଗଦ ।
ମୋ ସୈନ୍ୟଯାକ ଦେଖ ପାର୍ଥ-କାଳାନଳ
କରୁଅଛି ଶରର ମୁଖରେ କବଳ ।
ଅଭିମନ୍ୟୁ ସାତ୍ୟକି ଭୀମ ଆଦି ରଥୀ
ଏ ତ ଗୋଟି ହୋଇ କରନ୍ତି ମୋତେ ବ୍ୟଥୀ ।
ତୁମ୍ଭର ବଳ ଆନ ଗତ ଥିଲା ପରି
ମୋତେ ରକ୍ଷାନାହିଁ ହେ ଭୀଷ୍ମ ଦଣ୍ଡଧାରୀ ।
ଏହା ଶୁଣି କହିଲେ ଭୀଷ୍ମ ଅସ୍ତ୍ରବେତ୍ତା
କହିଲେ ଦୁର୍ଯ୍ୟୋଧନ ଆଗେ କରି ଚିନ୍ତା ।
ପୂର୍ବରୁ କହିଛି ସହସ୍ର ଦଶ ରଥୀ
ମାରି ପାଣ୍ଡବଙ୍କୁ କରିବି ରଣେ ବ୍ୟଥୀ ।
ତହିଁରୁ କି କିଛି ହୋଇଲା ଏବେ ଊଣା
କହ ତା କରିବି ରାଜନ ମହାମନା ।
ଆଜ ଦେଖ ପାଣ୍ଡବମାନଙ୍କୁ ମୁଁ ଯୁଝି
ପଡ଼ିବ ଶୋଇ ପାଇକଣ ରଣ ମଝି ।
ତୁମ୍ଭ ଅନ୍ନ ଖାଇବା କଥା ଶୁଝିବେବ
ପରଲୋକେବସିଣ ସୁଖରେ ମଜ୍ଜିବ ।
ଏହା କହିଣ ଆଶୀବିଷର ସଦୃଶ
ମାରଗଣ ବିନ୍ଧିଲେ ଭୀଷ୍ମ ଗାଙ୍ଗେୟଶ ।
ପାଣ୍ଡୁସୁତେ ଦେଖି ଭୀଷ୍ମଙ୍କ ବାଣ ଟାଣ
ତାକହାକ କହିତା ଅରମ୍ଭିଲେ ରଣ ।
ସେହି କାଳରେ ଭୀଷ୍ମ କାଳ ପରି ହେଲେ
ଲକ୍ଷେ ପ୍ରାଣୀ କାଳ ଶାୟକଜାଳେ କଲେ ।
ପାଞ୍ଚାଳ ସୃଞ୍ଜୟରେ ଯେତେ ରାଜପୁତ୍ର
ଥିଲେ ତାହାଙ୍କର ଖେଳିଲେ ଶରେ ଗାତ୍ର ।
ସହସ୍ର ଦଶ ହସ୍ତୀ ଅଯୁତ ସିପାଇ
ମାରିଲେ ଭୀଷ୍ମ କର କୋଦଣ୍ଡ କମ୍ପାଇ ।
ଏହା ବାହାରେ ପତ୍ତି ଅଯୁତ କୋଡ଼ିଏ
ମଲେ ଟି ରଙ୍ଗେ ଭୀଷ୍ମଙ୍କର ଶରଘାଏ ।

ପାଣ୍ଡବମାନେ ତା ଦେଖନ୍ତି ନେତ୍ର ଦୁଇ
ଫେଇ ଦେଖୁଥିଲେ ରକ୍ଷଣ ମୃଦୁ ହୋଇ ।
ସୃଞ୍ଜୟମାନେ ଶୁଣି ବନ୍ଧନ କର୍ଣ୍ଣସ୍ଥ
ଗୁଣ ଭୀଷ୍ମ ପରେ ବିନ୍ଧିଲେ ଶରଚୟ ।
କୁରୁ ପୁଅ ବହୁତ ସୈନ୍ୟ ଗୋଟିଆଇ
କୁମର ବାବୁଟିକ ରକ୍ଷା କଲେ ଯାଇ ।
ଅର୍ଜ୍ଜୁନ ଭୀଷ୍ମଙ୍କର ପରାକ୍ରମ ଦେଖି
ଶିଖଣ୍ଡୀକି ବୋଇଲେ ମାର ଶର ଯୋଖି ।
ଦେଖ ଏକ୍ଷଣି ମୁଁ ଭୀଷ୍ମଙ୍କର ଗଣ୍ଡି
ବନ୍ଧ ମାରଗଣ କରିବି ଖଣ୍ଡ ଖଣ୍ଡି ।
ଏହା ଶୁଣି ଶିଖଣ୍ଡୀ କଷେ ଦେଇ କର
ବୋଇଲ ଥାଅ ତୁମ୍ଭେ ହୋଇ ସାହା ମୋର
ସୌଭଦ୍ର ବିରାଟ ଦ୍ରୁପଦ ଯୁଧିଷ୍ଠିର
ଧୃଷ୍ଟଦ୍ୟୁମ୍ନ ନକୁଳ ସହଦେବ ବୀର ।
କୁନ୍ତିଭୋଜ ଆଦି ରଥୀଏ ଗୋଟିହୋଇ
ଧାଇଁଲେ ଭୀଷ୍ମଙ୍କର ପ୍ରାଣ ନେବାପାଇଁ ।
ଚିତ୍ରସେନ ଚେକିତାନଙ୍କ ଠାକୁ ଗଲେ
ଯୁଝିବା ଆସ ବୋଲି ତାହାଙ୍କୁ ଡାକିଲେ ।
କୃତବର୍ମା ଧୃଷ୍ଟଦ୍ୟୁମ୍ନର ଠାକୁ ଯାଇ
ବୋଇଲେ କାହିଁ ଆଜ ଯିବ ଆହେ ଧାଇ ।
ଭୀମ ଭୀଷ୍ମଙ୍କଠାକୁ ଯାଉଁ ଯୁଦ୍ଧ ଦାଣ୍ଡେ
ଭୂରିଶ୍ରବା ବିନ୍ଧିଲେ ତାଙ୍କ ତୀକ୍ଷ୍ଣ କାଣ୍ଡେ ।
ବିକର୍ଣ୍ଣ ନକୁଳଙ୍କ କର୍ଣ୍ଣଯାଏ ଟାଣି
ବିନ୍ଧିଲେ ହେ ରାଜନ ବାଛୁ ଶରଶ୍ରେଣୀ ।
ସହଦେବ ଭୀଷ୍ମଙ୍କଠାକୁ ଯାଉଥିଲେ
କୃପ ତାହାଙ୍କୁ କାହିଁ ଯାଉଛ ବୋଇଲେ ।
ଦୁର୍ମୁଖ ଘଟୋତ୍କଚ ଉପରେ ମାର୍ଗଣ—
ଗଣ ବିନ୍ଧ କୋପରେ ଧଇଲେ ଘରଜନ ।
ଅଳମ୍ବୁଷା ସାତ୍ୟକି ଦୁହେଁ ଯୁଦ୍ଧ କଲେ
ସୁଦକ୍ଷିଣ ଯେ ଅଭିମନ୍ୟୁଙ୍କୁ ଡାକିଲେ ।
ବିରାଟ ଦ୍ରୁପଦଙ୍କ ଦ୍ରୋଣଙ୍କ କୁମର
ବୋଇଲେ ରହ ରହ କରିବା ସମର ।
ଦ୍ରୋଣବୁଢ଼ା ଦେଖାଇ ଯୁଦ୍ଧଦାଣ୍ଡେ ପ୍ରୀତି
ଯୁଧିଷ୍ଠିର ନୃପେ ବିନ୍ଧିଲେ ଶର କାଢ଼ି ।
ଅରଜୁନଙ୍କ ଦୁଃଶାସନ ଜେମାମଣି
କୁମର ଆଗୁଳି ବିନ୍ଧିଲେ ଶରଶ୍ରେଣୀ ।

ଏ ବାହାରେ କୁମର ମହାରଥିକୁଳ
ଯେ ଥିଲେ ଆନ ରଥୀ ସଙ୍ଗେ କଲେ ଗୋଳ
ଧୃଷ୍ଟଦ୍ୟୁମ୍ନ ସେକାଳେ ବୋଇଲେ ସୈନ୍ୟଙ୍କୁ
ଧାଅଁ ହେ ଆଜ ମାରିଦେବାଟି ଭୀଷ୍ମଙ୍କୁ ।
ଦେଖ ଅରଜୁନ ଆସୁଛନ୍ତି ବେଗେ
ସେ ଥିଲେ ଭୀଷ୍ମ ବଳ ନ ପାଇବ ଲେଶେ ।
ଅର୍ଜ୍ଜୁନଙ୍କୁ ଇନ୍ଦ୍ର ଯୁଝିଲେ ଯିବେ ହାରି
ଭୀଷ୍ମେ ଅବା ଅଟନ୍ତି କେତେ ଧନୁର୍ଦ୍ଧାରୀ ।
ଏହା କହିଣ ସେନାପତି ଧୃଷ୍ଟଦ୍ୟୁମ୍ନ
ଧୂଆଇଁଲେ ରଥ ଦେଇ ଯୁଦ୍ଧରେ ମନ ।
ପାଣ୍ଡବ ମହାରଥୀକୁଳ ସିଦ୍ଧପ୍ରାୟ
ଆସୁଥିଲେ କୁମର ସେନାଏ ନ ଡରି ।
ତାହାଙ୍କ କୁଳେ ଘୋର ଯୁଦ୍ଧ ଆରମ୍ଭିଲେ
ଚଳେ ସ୍ୱର୍ଗପୁରେ ବସିବା ମନେ କଲେ ।
ଦୁଃଶାସନ ଅର୍ଜ୍ଜୁନ ଗଣ୍ଡି କି ଭୁଷାଇ
ତୀକ୍ଷ୍ଣ ଶାୟକ ମାରି ଗୁଣରେ ବସାଇ ।
ସେକାଳେ କୁନ୍ତୀ ପୁଅ ବାରପଣ କଲେ
ଅର୍ଜ୍ଜୁନଙ୍କ ବାଣଗଣେ ଯା ଉଦାରିଲେ ।
ଦୁଃଶାସନ ଅରଜୁନଙ୍କୁ ତିନ କାଣ୍ଡ
ବିନ୍ଧ କାହିଁ ଯିବୁ ବୋଇଲେ ଲଢ଼ ମୁଣ୍ଡ ।
ଶ୍ରୀକୃଷ୍ଣଙ୍କୁ ପୁଣି ଯେ ସତୁରିଟି କାଣ୍ଡ
ବିନ୍ଧିଲେ ତୁମ୍ଭ ପୁଅ କମ୍ପାଇ କୋଦଣ୍ଡ ।
ଅର୍ଜ୍ଜୁନ କ୍ରୋଧ ହୋଇ ଶଏକାଣ୍ଡ ବାଛି
ବିନ୍ଧିଲେ ଯହିଁ ରହିଥିଲେ ତୁମ୍ଭ ବଂଶୀ ।
ଦୁଃଶାସନ ଗଣ୍ଡିରେ ପାର୍ଥ କାଣ୍ଡ ବାଜି
ପିଇଲେ ତା ଦେହର ରକ୍ତ ସୁଖେ ମଜ୍ଜି ।
ଦୁଃଶାସନ ଅର୍ଜ୍ଜୁନ ଲଲାଟକୁ ପାଞ୍ଚ
ନାରାଚ ବିନ୍ଧିକରି କାମ୍ଭ କଲେ ଉଚ୍ଚ ।
ଅରଜୁନ ସେ ପାଞ୍ଚ କାଣ୍ଡକୁ କପାଳେ
ଧଇଲେ ହେ ରାଜନ ଶୁଣ ଯୁଦ୍ଧ ଖେଳେ ।
କ୍ରୋଧରେ ଅରଜୁନ ଦୁଃଶାସନ ପୀଡ଼ା
ସଞ୍ଚିଲେ ଯୁଦ୍ଧଦାଣ୍ଡେ ସଜ ଶରଭିଡ଼ା ।
ତେବେ ହେଲେ ତୁମ୍ଭର ଜେମାମଣି ସୁତ
ନ ଡରି କଙ୍କପତ୍ର ବିନ୍ଧିଲେ ବହୁତ ।
ଅରଜୁନ ଯେ ଦୁଃଶାସନର ଧନୁଟି
କାଣ୍ଡଟିରେ ଦେଲେ ଯେ ମୁଠିଠାରୁ କାଟି ।

ଦୁଃଶାସନ ଆନ ଧନୁକୁ ତ ଧଇଲେ
ପଚାଶ ମାରଗଣ ପାର୍ଥକୁ ବିନ୍ଧିଲେ ।
ଅର୍ଜୁନ ଯମଦଣ୍ଡ ପ୍ରାୟେ କାଣ୍ଡେ ସନ୍ଧ
ବଢିଲେ ନେବାପାଇଁ ତାଙ୍କ ପ୍ରାଣ ଛନ୍ଦ ।
ସେହି କାଣ୍ଡଟିମାନ ନ ବାଜୁ ଦେହରେ
ଦୁଃଶାସନ କାଟିଦେଲେ ତା କୋହରେ ।
ପୁଣି ଅରଜୁନଙ୍କୁ ତୀକ୍ଷଣ କାଣ୍ଡମାନ
ବିନ୍ଧି ଦୁଃଶାସନ ଛୁଇଲେ ଅପଘନ ।
ପୁଣି ଅରଜୁନ କ୍ରୋଧରେ ଧନୁ ଟାଣି
ଦୁଃଶାସନ ଦେହେ ବିନ୍ଧିଲେ ଶରଶ୍ରେଣୀ ।
ପାର୍ଥ ହାତ ବେଗ ପାଇ ସେ ଶର ବେଗେ
ବସିଲେ ବୁଡ଼ି ଦୁଃଶାସନ ଦେହଭାଗେ ।
କୁମ୍ଭ ପୁଅ ସେ ଘାଏ ପାଇ ଅତି ପୀଡ଼ା
ପଳାଇଲେ ଯୁଦ୍ଧରୁ ଛାଡ଼ିଦେଇ କ୍ରୀଡ଼ା ।
ପୁଣି ଧୈର୍ଯ୍ୟ ଧରି କୁମ୍ଭର ସୁତ ବଳୀ
ଅର୍ଜୁନଙ୍କୁ ଯୁଝିଲେ ବାଟରେ ଆଗୋଳି ।
ଅରଜୁନ ତାଙ୍କର ବଢ଼ିବା କାଣ୍ଡକୁ
ନ ହେଳି ଧୁଆଁଇଲେ ଆପଣା ରଥକୁ ।
ସାତ୍ୟକିଙ୍କି ସେ ଅଳମ୍ବୁଷ ଶରଶ୍ରେଣୀ
ବିନ୍ଧିଲେ ଯୁଦ୍ଧଭାଣ୍ଡେ କ୍ରୋଧେ ଧନୁ ଟାଣି ।
ସାତ୍ୟକି କ୍ରୁଦ୍ଧହୋଇ ଅଳମ୍ବୁଷ ଅଙ୍ଗ
କରିଦେଲେ ନବ କାଣ୍ଡରେ ସ୍ୱୟେ ରଙ୍ଗ ।
ଅଳମ୍ବୁଷ ସାତ୍ୟକି ଦେହକୁ ତୀକ୍ଷଣ
କାଣ୍ଡ ବିନ୍ଧି ଗର୍ଜନ କଲା ଅତି ଟାଣ ।
ସାତ୍ୟକି ସେହି ବେଳେ ବିନ୍ଧିଣ ତାହାକୁ
ଧୈର୍ଯ୍ୟ ଧରି ମଧ୍ୟ ସେ କଲେ ଗର୍ଜନକୁ ।
ଭଗଦତ୍ତ ଅଳମ୍ବୁଷର ପାଖେ ଥାଇ
ସାତ୍ୟକିଙ୍କି କାଣ୍ଡ ସେ ବିନ୍ଧିଲେ ବେଗାଇ ।
ସାତ୍ୟକି ଛାଡ଼ିଦେଇ ଅଳମ୍ବୁଷ ପାଶ
ଭଗଦତ୍ତ ସଙ୍ଗେ ଯୁଝିଲେ ବହୁ ବେଶ ।
ଭଗଦତ୍ତ ଭଲ୍ଲକାଣ୍ଡରେ ମାଧବଙ୍କ
କାଟିଲେ ଧନୁଟିକ ଛାଡ଼ି ମନୁ ବକ ।
ଆନ ଧନୁ ଧରିଣ ବୃଷ୍ଣି ବୀରମଣି
ବିନ୍ଧିଲେ ଭଗଦତ୍ତ ପରେ ଖରଶ୍ରେଣୀ ।
ଭଗଦତ୍ତ ଧରିଣ ଶକତି ଗୋଟାଏ
ମାଇଲେ ଲଢ଼ାକେତେ ଯାଇ ଜାଣ ସ୍ୱୟେ ।

ସେ ଶକତି ଦେଖିଣ ଶନପାର ନାତି
କାଣ୍ଡରେ କାଟି ଆଗ୍ରେ କରାଇଲେ ଖଣ୍ଡ ।
କୁମ୍ଭ ପୁଅ ଶକତି ହତ ଦେଖି ବେଗେ
ବିନ୍ଧିଲେ ଶରମାନ ଧରି ଧନୁ ବାଗେ ।
ତା ଛଡ଼ା ଭାଇଙ୍କି ବୋଇଲେ ସାତ୍ୟକିଙ୍କି
କେଡ଼ି ମାରି ବାବୁ ହେ କରେ ଧନୁ ଟେକି
ସାତ୍ୟକି ମଲେ ପାଣ୍ଡବଙ୍କ ବଳ ଊଣା
ହେବ ଯୁଦ୍ଧଭାଣ୍ଡେ ସେ ହେବେ ବୁଦ୍ଧି ହଣା ।
କୁମ୍ଭର ଜ୍ୟେଷ୍ଠସୁତ ବୋଲରେ ଜନସ୍ତ
ସୁତେ ଗୋଟି ହୋଇ ବିନ୍ଧିଲେ ହୋଇ ହୃଷ୍ଟ ।
କାମ୍ବୋଜରାଜ ସୁଦକ୍ଷିଣ ଅଭିମନ୍ୟୁ
ଯୁଦ୍ଧ କଲେ ନୃପ ଉଭାରି କରେ ଧନୁ ।
ଚଉଷଠି କାଣ୍ଡ ସୁଦକ୍ଷିଣର ଦେହେ
ଅଭିମନ୍ୟୁ ବିନ୍ଧିଲେ ନୃପ ଅତି କୋହେ ।
ସୁଦକ୍ଷିଣ ଅଭିମନ୍ୟୁଙ୍କୁ ପାଞ୍ଚ କାଣ୍ଡ
ବିନ୍ଧି ସାରଥିଙ୍କି ବିନ୍ଧିଲେ ନବକାଣ୍ଡ ।
ବିରାଟ ଦ୍ରୁପଦଙ୍କୁ ଦ୍ରୋଣଙ୍କ ନନ୍ଦନ
ଦେଲେ ଦିବ୍ୟ ଶରମାନଙ୍କେ ଆଯୋଧନ ।
ବିରାଟ ଦଶକାଣ୍ଡ ଦ୍ରୁପଦ ତ୍ରିକାଣ୍ଡ
ବିନ୍ଧିଣ ଛୁଇଦେଲେ ଅଶ୍ୱତ୍ଥାମା ପିଣ୍ଡ ।
ବିରାଟ ଦ୍ରୁପଦଙ୍କୁ ଦ୍ରୌଣି ଦଶଶର
ଧନୁ ମଧ୍ୟେ ଯୋଖି ବିନ୍ଧିଲେ ନରବର ।
ସେ ଦୁଇ ଜଣ ଅଶ୍ୱତ୍ଥାମା କାଣ୍ଡ କାଟି
ଗରଜି ପୂରାଇଲେ ସେ ଯୁଦ୍ଧ ଭାଣ୍ଡଟି ।
ସହଦେବ କୂଳରେ କୃପାଚାର୍ଯ୍ୟ ରଣ
କଲେ ବୁଢ଼ାକାଳେ ଦେଖାଇ ଭେଣ୍ଡାପଣ ।
କୃପ ସହଦେବ ସକୁରି କାଣ୍ଡ ବିନ୍ଧି
ଗରଜନରେ ଦଶଦିଶ ଦେଲେ ଛନ୍ଦି ।
କୃପାଚାର୍ଯ୍ୟଙ୍କ ଧନୁଟିକ ସହଦେବ
କାଟି ତାଙ୍କ ଦେହେ ବିନ୍ଧିଲେ କାଣ୍ଡ ନବ ।
କୃପାଚାର୍ଯ୍ୟ ପୁଣି ଧରିଣ ଆନ ଧନୁ
ବିନ୍ଧିଲେ ଦଶକାଣ୍ଡ କମ୍ପାଇ କ୍ରୋଧେ ତନୁ ।
ସହଦେବ କୃପଙ୍କ ଉପରେ ଦଶ କାଣ୍ଡ
ବିନ୍ଧି ଯୁଦ୍ଧଭାଣ୍ଡେ ଜାଳିଲେ କ୍ରୋଧେ ପିଣ୍ଡ ।
ନକୁଳେ ବିକର୍ଣ୍ଣ ଷାଠିଏ କାଣ୍ଡ ମାରି
ଗୁଣକୁ ଦପିଦେଲେ ଥରେ ଆଣ୍ଟ କରି ।

ନକୁଳ କ୍ରୋଧ କରି ସପ୍ତୁଟ କାଣ୍ଡ
ବିନ୍ଧିଣ ବିକର୍ଣ୍ଣର ଗୁଡ଼ାଇଲେ ପିଣ୍ଡ ।
ଦୁର୍ମୁଖ ଘଟୋତ୍କଚ ସୁଷେଣଙ୍କୁ ଯୋଡ଼ି
ଧନୁରେ ଶର ଦେ ବିନ୍ଧିଲେ କୋଟି କୋଟି ।
ଭୀମସେନସୁତ ତା ସହି ନ ପାରିଲେ
ନଅକାଣ୍ଡ ଦୁର୍ମୁଖ ଦେହକୁ ବିନ୍ଧିଲେ ।
ଦୁର୍ମୁଖ ସେହୁକ୍ଷଣେ ସୁପୁଙ୍ଖ କାଣ୍ଡଗଣ
ବିନ୍ଧିଲେ ଜୀବ ଘଟୋତ୍କଚର ମରଣ ।
ଧୃଷ୍ଟଦ୍ୟୁମ୍ନଙ୍କ ସଙ୍ଗରେ କୃତବର୍ମା
ଯୁଝିଲେ ଦେଖାଇଣ ଆପଣା ଗରିମା ।
ପାଞ୍ଚଗୋଟି କାଣ୍ଡ ଯେ ଧୃଷ୍ଟଦ୍ୟୁମ୍ନଙ୍କୁ
ବିନ୍ଧିଲେ କୃତବର୍ମା ଜୀବନ ନେବାକୁ ।
କୃତବର୍ମା ଦେହକୁ ଧୃଷ୍ଟଦ୍ୟୁମ୍ନ ବୀର
ବାଛିଣ ତୂଣୀରୁ ବିନ୍ଧିଲେ ନବଶର ।
ବୃଦ୍ଧ ଇନ୍ଦ୍ରପ୍ରସ୍ଥ ସେ ଦୁହିଙ୍କର ଯୁଦ୍ଧ
ଦେଖି ଜଣ ମଣିଲେ ସକଳ ବିବୁଧ ।
ଭୀମେ ଭୂରିଶ୍ରବା ନବାର ଯୁଦ୍ଧ ଭାଣ୍ଡେ
ମାଉଗଣଜଣ ବିନ୍ଧିଲେ ଅତିଚଣ୍ଡେ ।
ଭୀମ କ୍ରୁଦ୍ଧ ହୋଇ ବିନ୍ଧିଲେ ତୀକ୍ଷ୍ଣ ଶର
ସେ ଦୁହିଙ୍କର ଯୁଦ୍ଧ ହେଲା ଘୋରତର ।
ଦ୍ରୋଣ କରି ଯୁଧିଷ୍ଠିରଙ୍କୁ ନିବାରଣ
କ୍ରୋଧରେ କଲେ ଅତି ଅଣ୍ଡେ ଗରଜନ ।
ଦ୍ରୋଣଙ୍କର ଧ୍ୱନି ଶୁଣିଣ ପ୍ରଭଦ୍ରକ—
ମାନେ ହୃଦମଧ୍ୟେ ଧଇଲେ ଭୟତକ ।
ଦ୍ରୋଣଙ୍କର ମାଡ଼ିବା ଯେନ ପାଣ୍ଡୁସେନା
ନ ପାରିଲେ ଯାଇ ଆଗକୁ ମହାମନା ।
ଚେକିତାନ ଚିତ୍ରସେନ ଦୁହିଁ ଯୋଧୀ
ଭେଟାଭେଟି ହୋଇଲେ ହେଲେ କନ୍ଧାକନ୍ଧି ।
ଅର୍ଜୁନ ଦୁଃଶାସନ ସେନା ଜିଣି ତହିଁ
ଭୁମ୍ବ ସେନାପାଳକୁ ଉଡ଼ାଇଲେ ବାଣେ ।
ଦୁଃଶାସନ ମାରିଲେ ହେଲେ ଅର୍ଜୁନଙ୍କୁ
ନ ଗୁଡ଼ିଲେ ଯୁଦ୍ଧଭାଣ୍ଡେରେ ଶରମକୁ ।
ଧନୁ ଧରିଣ ଦ୍ରୋଣ ଦ୍ରୌଣି ମହାବଳୀ
ଦଳିଲେ ପାଣ୍ଡୁସୈନ୍ୟ-ପଦ୍ମବନ ଦଳି ।
ଦ୍ରୋଣ ଦେଖିଣ ମନ୍ଦ ଅମିତ୍ର ଲକ୍ଷଣ
ଡାକ କରି ବୋଇଲେ ଆରେ ପୁତ୍ର ଶୁଣ ।
ଭୀଷ୍ମ ଅରଜୁନଙ୍କ ହାତରେ ନିଧନ
ହୋଇବା କାଳ ଆଜ ହେଲା ରେ ନନ୍ଦନ ।
କାଣ୍ଡମାନେ ବଳେ ତୂଣରୁ ବାହାରନ୍ତି
ଧନୁ ମଧ୍ୟରେ କରେ ଆଇଣ କମ୍ପନ୍ତି ।
ମୋହର ବୁଦ୍ଧି ହୋଇଯାଉଛି ନଷ୍ଟ ର
କୁଚ୍ଛା ରୋମୋଦ୍ଗମ ହେଉଅଛି ଶରୀର ।
ସ୍ୱଭାବରେ ମୃଗପକ୍ଷୀଏ ହୋଇ ଜୋଟି
ସବ୍ୟପୃଷ୍ଠେ ରଡ଼ି କରନ୍ତି ମେଲି ପାଟି ।
ଗଲୁଆ ଶାଗୁଣାଏ ହୋଇ ଏକମେଳ
ଆମ୍ଭ ସେନା ମଧ୍ୟରେ ଆରମ୍ଭନ୍ତି ଗୋଳ ।
ସର୍ଯ୍ୟଙ୍କର କିରଣ ଦିଶୁଅଛି ଊଣା
ଦେଖିକୁ ବେଳ ବୁଝି ହେଉଅଛି ବଣା ।
ଯେଉଁଆଡ଼େ ସ୍ୱର୍ଗିଲେ ରକ୍ତମୟ ବାବୁ
ଦିଶୁଛି ଭୂମି ମୋତେ ଆଉ କ କହିବୁ ।
ଆଦିତ୍ୟମଣ୍ଡଳକୁ ବାଜିଣ ଉଲ୍କା
ପଡ଼ ଜନ ହୃଦେ ଥୋଇଛି ଏକା ଦକା ।
ଚନ୍ଦ୍ର ସୂର୍ଯ୍ୟ ଦୁଇ ଦେବଙ୍କରେ ମଣ୍ଡଳ
ପଡ଼ିଅଛି ମାରିବାକୁ କି କୁଳକୁଳ ।
କୁଳକୁଳେ କେତେ ଦେବତା ତନ୍ତ ରଣ
କମ୍ପ ସ୍ୱେଦ ହାସରେ ମୁହଁଅଛି ବେଷ୍ଟ ।
ନିସ୍ତେଜଙ୍କ ହୋଇ ହୋଇଛି ଚନ୍ଦ୍ରୋଦୟ
ହୋଇଛି ଲଗି ଗ୍ରହମାନଙ୍କ ଉଦୟ ।
ଧୃତରାଷ୍ଟ୍ର ପୋଏ ଚନ୍ଦନ ଫୁଲ ବେଶ
ହେଲେ ହେଲେ ହେଉଛି ମଳିନ ପ୍ରକାଶ ।
ଦେଖ ଦୁଇ ସେନାଙ୍କ ସ୍ୱରପଟ ମାଡ଼ି
ଶୁଭୁଅଛି ଅର୍ଜୁନ ରଥ ଧନୁ ରଡ଼ି ।
ଏ ବାହାରେ କୃଷ୍ଣଙ୍କ ଶଙ୍ଖର ଶବଦ
ବାଜି ହେଉଅଛି ହୃଦୟର ପ୍ରମୋଦ ।
ଏ ସକଳ ଜାଣୁଛି ଉତ୍ତମାସ୍ତ୍ରେ ପାର୍ଥ
ଆଜ କାଟିଦେବକି ଭୀଷ୍ମଙ୍କର ମାଥ ।
ଭୀଷ୍ମ ଅରଜୁନଙ୍କ ସମାଗମ ଦେଖି
ଆହେ ବାବୁ ବୁଜ ହେଉଛି ମୋର ଆଖି ।
ଭୀଷ୍ମ ତ କହୁଛନ୍ତି ଶିଖଣ୍ଡୀକି ମୁହିଁ
ନ ମାରିବ ପୂର୍ବରୁ ଅଟେ ସ୍ତ୍ରୀ ସେହି ।
ସେ ତ ହୋଇଅଛି ରଣ ଦାଣ୍ଡରେ ଆଗ
ପାରିବ କି ଭୀଷ୍ମ ଉପରେ ପୂର୍ବ ଗଗ ।

ପୁଣି ଭୀମ ଅର୍ଜୁନ ଚକ୍ରରକ୍ଷା ହୋଇ
ଅଛନ୍ତି ଶିଖଣ୍ଡୀର ଦୁଇପାଖେ ରହି ।
ଏ ସେନ ଆଜ ଭୀଷ୍ମ ଘାତ ଲକ୍ଷିବାକୁ
ଯୁଦ୍ଧରେ ନ ଦେଖେ ମୁଁ କୁରୁରେ ବୀରଙ୍କୁ ।
ମନସ୍ୱୀ ବଳବନ୍ତ ଶୂର ଦୁରନ୍ତ
ବୋଲି ଅର୍ଜୁନଙ୍କୁ ଟି ସମସ୍ତେ କହନ୍ତି ।
ଇନ୍ଦ୍ରାଦି ଦେବଙ୍କେ ଅଜେୟ ଧନଞ୍ଜୟ
ଅଲ୍ପକ କଥା ତାଙ୍କୁ ଭୀଷ୍ମଙ୍କର ଜୟ ।
ଅର୍ଜୁନଙ୍କୁ ଗ୍ରହଣ ଆନ ରଥୀ ଭୁଲେ
ମୋ ବୋଲ କର ବାବୁ ଯୁଝା ଯାଇ ଭଲେ ।
ଅରଜୁନ କାଣ୍ଡ ବାଜନ୍ତେ କୋଟି କୋଟି
କୁରୁସେନାଯାକ ପଡ଼ନ୍ତି ମସ୍ତ ଲୋଟି ।
କବଚ ଧ୍ୱଜ ଛତ୍ର ଚାମର ମୁଷଳ
ଶର ଶକ୍ତି ଗଦାରେ ପୂରୁଅଛି ତଳ ।
ରଥ-ବୋଇତକୁ ଆରୋହଣ ସଂଗ୍ରାମ—
ସିନ୍ଧୁ ତରୁଅଛି ଅର୍ଜୁନ ବୀରୋତ୍ତମ ।
ଯୁଧିଷ୍ଠିର ରଜା ତ ଧାର୍ମିକ ଅତ୍ୟନ୍ତ
ତାଙ୍କ ଅନୁରୂପ ହୋଇ ପାଇଛନ୍ତି ।
ବସୁଦେବଙ୍କ ସୁତ ଶ୍ରୀଦେବକୀ-ଆନନ୍ଦ—
ବରଧନ ମହାଶୟ ଅନନ୍ତ ଗୋବିନ୍ଦ ।
ଯାଅ ତୁମ୍ଭେ ଶିଖଣ୍ଡୀର ସଙ୍ଗତେ ଯୁଝି
ମୁଁ ଯାଉଛି ଯୁଧିଷ୍ଠିରଙ୍କ ବଳ ବୁଝି ।
ସାତ୍ୟକି ଅଭିମନ୍ୟୁ ନକୁଳ ସହଦେବ
ଧୃଷ୍ଟଦ୍ୟୁମ୍ନ ଆଦି ବୀର ମନେ ଭାବ ।
ଯୁଧିଷ୍ଠିର ରଜାଙ୍କୁ ଜଗି ରହିଛନ୍ତି
ଆଜ ତାଙ୍କୁ ଦେବି ମୁଁ ଯୁଦ୍ଧରେ ବିପତ୍ତି ।
ଭୀଷ୍ମ ଦେଖି ଧରିଣ କାଳାନ୍ତକ ରୂପ
କରୁଛନ୍ତି ପାଣ୍ଡବସୈନ୍ୟଯାକ ଲୋପ ।
ଭଗଦତ୍ତ କୃପ ଶଲ୍ୟ ଯେ ଚିତ୍ରସେନ
କୃତବର୍ମା ଜୟଦ୍ରଥ ଯେ ଦୁର୍ମର୍ଷଣ ।
ବିନ୍ଦ ଅନୁବିନ୍ଦ ହେ ବିକର୍ଣ୍ଣକୁ ମିଶି
ଦଶ ରଥୀ ଘୋଟେଣିରେ ଗୁଣକୁ ଘଷି ।
ଭୀମଙ୍କୁ ହଳକାଣ୍ଡ ଦଶ ଦଶଙ୍କରେ
ଘୋଟେଇ ଜଣକୁ ଧଇଲେ ହାତରେ ।
ବିନ୍ଦ ଯେ ଅନୁବିନ୍ଦ ପୁଣି ପାଞ୍ଚ ପାଞ୍ଚ
ଗୁଣେ ଯୋଖି ବିନ୍ଧିଲେ ଉତ୍ତମ ନାରାଚ ।

ଦୁର୍ମର୍ଷଣ ପୁଣି ସେ ଧନୁଟିକି ଟାଣି
କୋଡ଼ିଏଟି କାଣ୍ଡ ବିନ୍ଧିଲେ ଥିଲ ପାଣି ।
ଭୀମ କ୍ରୁଦ୍ଧର ଦଶରଥଟି ଯାକକୁ
ବିନ୍ଧିଲେ ମାରଗଣ ଓଟାରି ଧନୁକୁ ।
ଶଲ୍ୟକୁ ପାଞ୍ଚଶନ ମାରଗଣ ବିନ୍ଧି
ଦେଲେ କୃତବର୍ମାଙ୍କୁ ଆଠକାଣ୍ଡେ ରୁନ୍ଧି ।
କୃପାଚାର୍ଯ୍ୟଙ୍କର ସେ କାଟିଣ ଧନୁଟି
କାଣ୍ଡରେ ଫୁଟାଇଲେ ତାଙ୍କର ଦେହଟି ।
ପୁଣି ଭୀମ ଯେ ଦୁର୍ମର୍ଷଣକୁ ସତୁରି
କାଣ୍ଡ ବାଛି ବିନ୍ଧିଲେ ଗୁଣ ମାଜ କରି ।
ଚିତ୍ରସେନ ଦେହକୁ ବଜାଇଣ ଦଶ—
କାଣ୍ଡ ବିନ୍ଧଣ୍ଟି ଭୀମ ଆଉଁଷିଲେ ନଖ ।
ବିକର୍ଣ୍ଣକୁ ମଧ୍ୟ ବିନ୍ଧିଣ ଦଶବାଣ୍ଡ
ଦେଲେ ଜୟଦ୍ରଥକୁ ଆଠକାଣ୍ଡେ ଦଣ୍ଡ ।
କୃପ କୋପ-ହୁତରେ ଦଶ ରୋପ ସନ୍ଧି
ବୃକରେ ଯୁଦ୍ଧବାଣ୍ଡେ ଦେଲେ ଧାପେ ରୁନ୍ଧି ।
ତା ଦେଖି ଭୀମସେନ ହଲଇଣ ମୁଣ୍ଡ
କାହିଁ ଯିବ ବୋଲି ବିନ୍ଧିଲେ ବାଛି କାଣ୍ଡ ।
ଜୟଦ୍ରଥର ଘୋଡ଼ା ସାରଥିକ ତିନ—
କାଣ୍ଡ ବିନ୍ଧିଣ କଲେ ଯମପୁରଗାମୀ ।
ରଥରୁ ଡେଇଁପଡ଼ି ଜୟଦ୍ରଥ ବୀର
ବିନ୍ଧିଲେ ଭୀମ ଦେହେ କାଣ୍ଡ ମାରି ତୀର ।
ଭୀମ ଜୟଦ୍ରଥଙ୍କ ଚିର ତାକ ହାକ
ନ ସହି କାଟିଦେଲେ କରର କାର୍ମୁକ ।
ଜୟଦ୍ରଥ ଚିତ୍ରସେନ ରଥରେ ବସି
ଗାଳିଲ ବୋଲି କରେ ଦେଲେ ମୁଣ୍ଡ ଘଷି ।
ଶଲ୍ୟ ସତୁରି ଗୋଟି କାଣ୍ଡ ଭୀମ ଦେହେ
ବିନ୍ଧି ରହ ରହ ବୋଇଲେ ଅତି କୋହେ ।
ବିନ୍ଦ ଅନୁବିନ୍ଦ ବିକର୍ଣ୍ଣ ଚିତ୍ରସେନ
ଆଦି ମଧ୍ୟ କ୍ରୋଧେ ଥିଲେ ଅପଘନ ।
ଭୀମଙ୍କୁ ଦିବ୍ୟକାଣ୍ଡମାନ ଗୁଣେ ସନ୍ଧି
ବିନ୍ଧି ଯୁଦ୍ଧବାଣ୍ଡେ ରଜନ ଦେଲେ ରୁନ୍ଧି ।
ଭୀମ କ୍ରୁଦ୍ଧ ରଥୀମାନଙ୍କୁ ପାଞ୍ଚ ପାଞ୍ଚ
ବିନ୍ଧି ଶଲ୍ୟ ଦେହକୁ ବିନ୍ଧିଲେ ନାରାଚ ।
ଶଲ୍ୟ ଭୀମ ଦେହକୁ ନଅଟି ମାର୍ଗଣ
ବିନ୍ଧିଲେ ବାଛି କରି ଧନୁକୁ ଟାଣିଣ ।

ଭୀମଙ୍କର ସାରଥି କାନର ମୂଳକୁ
ବିନ୍ଧିଲେ କାଢ଼ି ଖଣ୍ଡେ କାଣ୍ଡ ଟିମାନଙ୍କୁ ।
ସାରଥିର ପୀଡ଼ା ନ ସହି ଭୀମସେନ
ଶଲ୍ୟଙ୍କୁ ତିନିକାଣ୍ଡ ବିନ୍ଧିଲେ ବହନ ।
ଏ ପ୍ରକାରେ କୁରୁର ମହାରଥିକୁଳ—
ମାନଙ୍କୁ ତିନି ତିନି ବିନ୍ଧିଲେ ମହାବଳ ।
ଭୀମ ସେ ଯୁଦ୍ଧେ ଦେବଦଳଙ୍କୁ ଦେଖାଇ
ରହିଲେ ପଞ୍ଚଶରେ ଗ୍ରୀବା ଫୁଲାଇ ।
ପୁଣି ସବୁ ରଥୀଏ ହୋଇ ଏକ ଗୋଟି
ଭୀମ-ବୃଷଭକୁ ଯେ ଶାୟକ ଗୁଣ୍ଠି ।
ହୋର କଲେ ଧନୁମୁଠି ଉଚ୍ଚ ରାଗେ
କହିଲେ ନାନାଜାତି କଥାମାନ ବାଗେ ।
ଭୀମ ସେ କାଣ୍ଡକରେ ନ ପାଇଣ ବାଧା
ବୋଇଲେ କାଟିଦେବି ଆଜ କୁରୁ ମଥା ।
ଶଲ୍ୟଙ୍କୁ ତିନି ଭଗଦତ୍ତେ ଶଏ କାଣ୍ଡ
ବିନ୍ଧିଲେ ଭୀମସେନ ଜାଳି କ୍ରୋଧେ ପିଣ୍ଡ ।
କ୍ଷୁରକାଣ୍ଡରେ କୃତବର୍ମାଙ୍କ ଧନୁଟି
କାଟିଲେ କୁନ୍ତୀଙ୍କର ମଧ୍ୟମ ସୁନୁଟି ।
କୃପାଙ୍କୁ ବିନ୍ଧିଲେ ପୁଣି ଦୁଇ ଦୁଇ
ଭୀମ ମହାବଳୀ ଯୁଦ୍ଧରେ କ୍ରୁଦ୍ଧ ହୋଇ ।
ଶଲ୍ୟେ ନବ କୃତବର୍ମାଙ୍କୁ ଆଠ ଶର
ଭଗଦତ୍ତଙ୍କରେ ମାଇଲେ ତିନି ଶର ।
ରଣ ସହି କୁରୁର ମହାରଥିକୁଳ
ଭୀମେ ଧନୁ ଟିଙ୍କି ବିନ୍ଧିଲେ ଶରଜାଳ ।
କୁରୁ ସବୁ ମହାରଥଙ୍କି ଏକା ଭୀମ
ତୃଣ ପରି ମଣି ଯୁଝିଲେ ବହୁ ଶ୍ରମ ।
ସବୁ ରଥୀଙ୍କର ସହସ୍ର ସଂଖ୍ୟା କାଣ୍ଡ
ମୁନକୁ ଲକ୍ଷ ହେଲା ଏକା ଭୀମପିଣ୍ଡ ।
ଭଗଦତ୍ତ ସୁନାଦଣ୍ଡ ଶକ୍ତିଟାଏ
ଫିଙ୍ଗିଲେ ପ୍ରାଣ ନେବା ପାଇଁ ଭୀମକାୟେ ।
କୃପ ତ ଶତଘ୍ନିକ କରପୃଷ୍ଠେ ବହି
ଭୀମ ହୃଦୟକୁ ଫିଙ୍ଗିଲେ ନଠିଆଇ ।
ଆଉ ଯେ ରଥୀମାନେ ପାଞ୍ଚ ପାଞ୍ଚ କାଣ୍ଡ
ବିନ୍ଧିଲେ ଭୀମ ତା କାଣ୍ଡରେ ଖଣ୍ଡ ଖଣ୍ଡ ।
କରି ପୁଣି କୁରୁ ରଥୀଙ୍କି ତିନି ତିନି
ବିନ୍ଧିଲେ କ୍ରୁଦ୍ଧ ହୋଇ ଯୁଦ୍ଧରେ ପାବନ ।
ଅରଜୁନ ସେହିଠାକୁ ଚଢ଼ିଣ ରଥ
ଆସିଲେ ବେଗେ ଧାଇଁ ହୋଇ ଧନୁର୍ଦ୍ଧର ।
ଅର୍ଜୁନଙ୍କୁ ଦେଖିଣ ଭୀମ ପାଖେ କୁରୁ
ରଥୀମାନେ ଛାଡ଼ିଲେ ବେଢ଼େ ଥିବା ବନ୍ଧ ।
ସେ କାଳେ ସବ୍ୟସାଚୀ ଧନୁକୁ ଆମନ୍ତ୍ରି
ବିନ୍ଧିଲେ କାଣ୍ଡ ଯୁଦ୍ଧେ ଜୟ ନେବା ପାଇଁ ।
ତହୁଁ ସୁଶର୍ମାକୁ ବୋଇଲେ ଦୁର୍ଯ୍ୟୋଧନ
ଯାଇ ଯେଣେ ଭୁଞ୍ଜେ ଅର୍ଜୁନଙ୍କ ଜୀବନ ।
ସୁଶର୍ମା କୁରୁ ପୁତ୍ର ବୋଲରେ ଧାଇଁଲେ
ସୈନ୍ୟ ଘେନି ଅର୍ଜୁନ ଭୀମଙ୍କୁ ବେଢ଼ିଲେ ।
ତ୍ରୈଗର୍ତ୍ତଙ୍କ କୁଳରେ ଅରଜୁନ ଯୁଦ୍ଧ
ପ୍ରବର୍ତ୍ତିଲା ହୋଇଲେ ବହୁ ବୀର ବଧ ।
ଅରଜୁନ ଶଲ୍ୟଙ୍କୁ କାଣ୍ଡରେ ଘୋଡ଼ାଇ
ସୁଶର୍ମାଙ୍କୁ ତିନି ବିନ୍ଧିଲେ ରୋଷ ବହି ।
କୃପ ଭଗଦତ୍ତ ବିକର୍ଣ୍ଣ ଜୟଦ୍ରଥ
ଚିତ୍ରସେନ ଆଦିଙ୍କି ବିନ୍ଧିଲେ ତ ପାର୍ଥ ।
ଜୟଦ୍ରଥ ଅରଜୁନଙ୍କୁ କାଣ୍ଡଧାଡ଼ି
ଛାଡ଼ିଦେଲେ ଯୁଦ୍ଧଦାଣ୍ଡରେ କରି ରଡ଼ି ।
ଶଲ୍ୟ କୃପ ଦୁହେଁ ହୋଇଣ ଏକମନ
ଅର୍ଜୁନଙ୍କୁ କଲେ ଶାୟକ ସରଜନ ।
ଚିତ୍ରସେନ ଆଦି କୁରୁର ପୁତ୍ରମାନେ
ବିନ୍ଧିଲେ ଶର ଦୁଇ ଭାଇ ଅପଘନେ ।
ରଥୀଙ୍କର ମଣ୍ଡନ ଭୀମ ଅରଜୁନ
ଯୁଦ୍ଧ କଲେ ତ୍ରୈଗର୍ତ୍ତ-ଗରବ-ମର୍ଦ୍ଦନ ।
ସୁଶର୍ମା ଅର୍ଜୁନଙ୍କୁ ତୀକ୍ଷ୍ଣ କାଣ୍ଡ ବିନ୍ଧି
ଗର୍ଜନ କରିଦେଲେ ଯୁଦ୍ଧଦାଣ୍ଡେ କ୍ରୁଦ୍ଧି ।
ଆନ ରଥୀମାନେଟି ଭୀମ ଅର୍ଜୁନଙ୍କୁ
ବିନ୍ଧିଲେ ବେଗେ ମଧ୍ୟ ତୀକ୍ଷଣ କାଣ୍ଡକୁ ।
କୁରୁର ରଥିକୁଳ-କଲ୍ଲୋଳିଙ୍କ ମେଳେ
କଲ୍ଲୋଳ ପରି ଭୀମାର୍ଜୁନ ବିହରିଲେ ।
ନାଗତ-ସ୍କନ୍ଧ ବଦନରେ ମନ ଚୋପି
ଦେଲେ ତାଙ୍କର ସେ ଗର୍ଜନ ହସି ହସି ।
ଏ ପ୍ରକାରେ କାଟିଲେ ସବୁଙ୍କର ଧନୁ
ଭେଦିଲେ ଶରମୁନେ କାମ ପରି ତନୁ ।
ଶତ ଶତ ରଥୀ ହାଣି ସେ ଦୁଇ ଭାଇ
ମାରି ଯୁଦ୍ଧଦାଣ୍ଡେ ଧାଇଁଲେ ରୋଷ ବହି ।

ସିପାହିମାନେ ଗୁଡ଼ ଦେଇ ଘୋଡ଼ାଧୂଳା
ଧାଇଁବେ ସମଠାକୁ ଯେନ ଯୁଦ୍ଧଜୟା ।
ଛତ୍ର ଧ୍ୱଜ ଚାମର ଛତ୍ର କୋଟି କୋଟି
ଧୂଳି ହୋଇ ଗଲେ ମସ୍ତକରେ ଲେଟି ।
ଚନ୍ଦନବୋଳା ବାହୁଗଣ ମାରଗଣ
ଛିଣ୍ଡା ସଜପ ପଣ ଚେଷ୍ଟା କଲେ ଜାଣ ।
ଗଦା ଶୂଳ ପରଶୁ ଶକ୍ତି ଗଦା ଖଣ୍ଡା
ପଡ଼ିଲ ସୈନ୍ୟମୁଣ୍ଡ ହୋଇଯାଇଛି ପତା ।
କୃଷ୍ଣ ପୁଷ୍ଟ ଭୀମ ଅର୍ଜୁନ ପରାକ୍ରମ
ଦେଖିଣ ହୃଦଦେଶେ ବଳ୍ଗ ମହାତମ ।
କୃଷ୍ଣ ବାବୁ ପାଶକୁ ଧାଇଁଣ ଆସିଲେ
କ ଯୁଦ୍ଧ ପିତାମହ ବୋଲିଣ ଭାଷିଲେ ।
ଦେଖ ଏବେ ଭୀମ ଅର୍ଜୁନ କ୍ରୋଧ ହୋଇ
ମୋ ସଇନ୍ୟାକୁ ଦେଲେଣି ତଡ଼ାଇ ।
କୃପ କୃତବର୍ମା ଯେ ବନ୍ଦ ଅନୁବନ୍ଦ
ଜୟଦ୍ରଥ ଆଦ ଅରଜୁନଙ୍କୁ ଦ୍ୱନ୍ଦ୍ୱ ।
କରି ଯୁଦ୍ଧଦାଣ୍ଡରେ କରେ ଧନୁ ବନ୍ଧ
ରକ୍ଷିଲେ ଗଜନ କୃଷ୍ଣର ସ୍ୱତ ଧାଇ ।
କୁରୁସେନା-ଖଣ୍ଡିକୁଳକୁ ଭୀମାର୍ଜୁନ
କାଣ୍ଡଖ ଡ଼-ଦଣ୍ଡେ ଖେଦିଲେ ସମ୍ପୂର୍ଣ୍ଣ ଜାଣ ।
ତେବେ ହେଲେ କୃଷ୍ଣ ଯୋଦ୍ଧାଏ ହୋଇ ଗୋଟି
କଣ୍ଟାଳିକ ବାଣ ଖଞ୍ଜିଲେ କୋଟି କୋଟି ।
ପାର୍ଥ କୃଷ୍ଣ ଯୋଦ୍ଧାକାଣ୍ଡକୁ କାଣ୍ଡକୁଢ
ସେମିତି ନିବାରଣ ପେଷିଲେ ଯମଆଳ ।
ଶଲ୍ୟ ଅରଜୁନଙ୍କ ହୃଦୟକୁ ଭଲ
ଭଲ ଭଲ୍ଲକାଣ୍ଡ ବିନ୍ଧିଲେ ପଳ ପଳ ।
ଅରଜୁନ ପାଞ୍ଚକାଣ୍ଡରେ ଧନୁହତା
ଶଲ୍ୟଙ୍କର କାଟିଲେ ସେ ତ ଧନୁବେଗ ।
ଆନ କୋଦଣ୍ଡ ଧରି ମଦ୍ରଦେଶାଧିଶ
କୃଷ୍ଣ ଅର୍ଜୁନଙ୍କୁ ବିନ୍ଧିଲେ ଯେ ଷ ବାଣ ।
ଭୀମଙ୍କର ହୃଦ ବାହୁକୁ ନବକାଣ୍ଡ
ବନ୍ଧ ଶଲ୍ୟ ରଡ଼ିରେ ପୂରାଇଲେ ଦାଣ୍ଡ ।
ଦୁର୍ଯ୍ୟୋଧନ ବୋଲେ ମଗଧଦେଶ ନୃପ
ଦ୍ରୋଣଗୁରୁ ସଙ୍ଗେ ଆସିଲେ ଧରି ଚାପ ।
ଆଠକାଣ୍ଡ ଭୀମସେନଙ୍କର ଜଣ୍ଡିକ
ବିନ୍ଧିଲେ ସେ ଅଣ୍ଡ ଉତ୍ତମ ଧାନୁକ ।

ଭୀମ ଜୟତ୍ସେନକୁ ବିନ୍ଧି ଦଶକାଣ୍ଡ
ସାତକାଣ୍ଡେ କାଟିଲେ ସାରଥିର ମୁଣ୍ଡ ।
ସାରଥି ବିନା ଜୟତ୍ସେନ ଘୋଡ଼ାମାନେ
ଏଆଡ଼େ ସେଆଡ଼େ ଧାଇଁଲେ ଯୁଦ୍ଧସ୍ଥାନେ ।
ଦ୍ରୋଣ ଭୀମ ଦେହକୁ ପଞ୍ଚଷଠି କାଣ୍ଡ
ବିନ୍ଧିଣ ଜାଳ ଦେଲେ ହଳଇଣ ମୁଣ୍ଡ ।
ଭୀମ ଅଣସ୍ତରି କାଣ୍ଡ ଦ୍ରୋଣ ଦେହେ
ବିନ୍ଧିଲେ ପ୍ରାଣ ନେବା ପାଇଁ ଅତିକୋହେ ।
ଅର୍ଜୁନ ସୁଶର୍ମାବୀରକୁ ଶରେ ଛନ୍ଦି
ଧାଇଁଲେ ପୁଣି ସୈନ୍ୟଜନେ ଶରେ ବିନ୍ଧି ।
ଭୀଷ୍ମ ଯେ ବୃଦ୍ଧଭଜ କୌଶଲ୍ୟ ଗଜନ
କ୍ରୋଧ ହୋଇ ଯାଇ ଭେଟିଲେ ଫାଲଗୁନ ।
ପାଣ୍ଡବେ ଧୃଷ୍ଟଦ୍ୟୁମ୍ନବୀର ସଙ୍ଗେ ଧରି
ଭୀଷ୍ମ କୂଳେ ଯାଇ ହୋଇଲେ ମତ୍ତମରି ।
ଶିଖଣ୍ଡୀ ଧନୁଖଣ୍ଡି ଧରି କରପୁଟେ
ଧାଇଁଲେ ଭୀଷ୍ମଠାକୁ ମାରିବାକୁ ଆଗେ ।
ଯୁଧିଷ୍ଠିର ଆଦ ପାଣ୍ଡବେ ଶିଖଣ୍ଡୀକି
ଦେଖିଣ ଆନନ୍ଦରେ ଧନୁ କରେ ଟେକି ।
ବୁଢ଼ା ଭୀଷ୍ମ ଦେହୁଁ ପ୍ରାଣଟି କାଢ଼ିବାକୁ
ଆବୋରିଲେ ଯାଇଣ ଶିଖଣ୍ଡୀ ପଛକୁ ।
କୃଷ୍ଣ ରଥୀମାନେ ଭୀଷ୍ମଙ୍କୁ ଆଗକରି
ପାଣ୍ଡୁସୁତଙ୍କୁ ଯୁଦ୍ଧ କଲେ ରାଗ ଧରି ।
କୁରୁ ପାଣ୍ଡବଙ୍କର ପ୍ରବର୍ତ୍ତିଲା ରଣ
ଅନ୍ୟୋନ୍ୟରେ ବନ୍ଧାବନ୍ଧ ଯେ ହେଲେ ଜାଣ ।
ସେକାଳେ ଧୃଷ୍ଟଦ୍ୟୁମ୍ନ ବୋଇଲେ ସୈନ୍ୟଙ୍କୁ
ବନ୍ଧ ହେ ବେଢ଼ି ଭୀଷ୍ମ ବୁଢ଼ାକୁ କାଣ୍ଡକୁ ।
ସେନାପତି ବଚନ ଶୁଣି ପାଣ୍ଡୁସେନା
ଭୀଷ୍ମେ କାଣ୍ଡଖଣ୍ଡା ମାଇଲେ ଅକଳନା ।
ଧୃତରାଷ୍ଟ୍ର ବୋଇଲେ ଉତ୍ତମ ଉଦସ
କିରୂପେ ଯୁଦ୍ଧ କଲେ ଭୀଷ୍ମ ବୀରଈଶ ।
ତାହା ମୋର ଆଗରେ ବିଶେଷି ବିଶେଷି
କହ ଆହେ ସଞ୍ଜୟ ମନ୍ତ୍ରିବର ବସି ।
ସଞ୍ଜୟ ବୋଇଲେ ହେ କୁରୁପାଣ୍ଡୁ ରଣ
କରୁଅଛୁ ତା କୃଷ୍ଣ ଆଗରେ ବଖାଣ ।
ପୁଣି ମୋତେ ତାହା ପସ୍ତୁଅଛ ଯାହା
କହୁଛୁ ମନ ଦେଇ ଶୁଣ ନରନାହା ।

ତୁମ୍ଭ ମହାରଥୀଙ୍କୁ ପାର୍ଥ କାଣ୍ଡଗଣ
ବର୍ଷାଇଲ ପରଲୋକରେ ପୂଜା ଜାଣ ।
କ୍ରୁଦ୍ଧ ହୋଇ ଭୀଷ୍ମ କରନ୍ତେ ଘୋର ଯୁଦ୍ଧ
କଲେ ପାଣ୍ଡୁସେନା ଅନେକ ସହସ୍ର ବଧ ।
ଏ ବାହାରେ ପାଞ୍ଚାଳ ସୃଞ୍ଜୟମାନଙ୍କୁ
ବାନ୍ଧିଲେ ଟି ଭୀଷ୍ମ ଦେଖାଇ ବିକ୍ରମକୁ
ଅଯୁତସଂଖ୍ୟା ଯୋଦ୍ଧାଙ୍କୁ ଯେ ଭୀଷ୍ମ ବାଣ
ଭେଟଇଲ ନେଇଣ ପ୍ରେତକୁଳଗଣ ।
ଭୀଷ୍ମଙ୍କ କାଣ୍ଡେ ଯେତେ ରଥୀ ଗଲେ ମରି
ନାହିଁ ନାମ ଗୋତ୍ର ଗଣନ ତାହାଙ୍କରି ।
ଭୀଷ୍ମ ଟି ତାହା ଶୁଣି ହୋଇଲେ ନର୍ବେଦ
ଛାଡ଼ିଦେଲେ ଟି ଯୁଦ୍ଧକଥାରୁ ପ୍ରମୋଦ ।
ଯୁଧିଷ୍ଠିରରାଜାଙ୍କୁ ଅନାଇଁ କହିଲେ
ମୋତେ ବେଗେ ମାର ମୁଁ କହୁଅଛୁ ଭଲେ
ବହୁତ ପ୍ରାଣୀଙ୍କର କଲି ତ ମୁଁ ନାଶ
ମୋ ଜୀବନରେ ଆଉ ନାହିଁ ପ୍ରତିଆଶ ।
ତା ଶୁଣି ସୃଞ୍ଜୟମାନଙ୍କୁ ଯୁଧିଷ୍ଠିର
ବୋଇଲେ ନ ପଳାଇ ଭୀଷ୍ମେ ବେଢ଼ି ମାର
ଅର୍ଜୁନ ତ ତୁମ୍ଭଙ୍କୁ ଅଛି ସହା ହୋଇ
ଭୀଷ୍ମଙ୍କର ଶରକୁ ଡରୁଛ କପାଇଁ ।
ଭୀଷ୍ମ ଧୃଷ୍ଟଦ୍ୟୁମନ କରିବେ ପାଳନ
ତୁଚ୍ଛା ଯୁଦ୍ଧଦାଣ୍ଡରେ ନୁହ ହେ ବିମନ ।
ଶୁଣି ନୃପମୁଖରୁ ଏରୂପେ ବଚନ
ଯୁଦ୍ଧ କଲେ ଭୀଷ୍ମଙ୍କୁ ପାଣ୍ଡବ ସଇନ ।
ସେ ରୂପେ ତୁମ୍ଭ ପୁଅ କୃପ ଦ୍ରୋଣ ଦ୍ରୌଣି
ସୈନ୍ୟ ଘେନ ଭୀଷ୍ମଙ୍କୁ ଜଗିଲେ ନୃମଣି ।
ଶିଖଣ୍ଡୀର କୂଳରେ କଲେ ଆୟୋଧନ
ପାଣ୍ଡୁସୁତେ ଦେଖି ବାନ୍ଧିଲେ ତୀକ୍ଷ୍ଣ ବାଣ ।
ଚେଦି ଯେ ପାଞ୍ଚାଳଙ୍କୁ ସଙ୍ଗତରେ ଧରି
ଧାଇଁଲେ ପାର୍ଥ ଭୀଷ୍ମ ଯୁଦ୍ଧବାଟ ହେରି ।
ଅଶ୍ୱତ୍ଥାମା ସାତ୍ୟକି ସଙ୍ଗେ ଯୁଦ୍ଧ କଲେ
ଧୃଷ୍ଟକେତୁ ପଉରବ ଯେ ଗୋଳ ହେଲେ ।
ଅଭିମନ୍ୟୁ ଯେ ଦୁର୍ଯ୍ୟୋଧନ କ୍ରୋଧ ହୋଇ
ବୋଲବୋଲି ହେଲେ ଯୁଝି କେହ ନ ପଳାଇ
ବିରାଟ ସହାନକ ଜୟଦ୍ରଥ ତୁଲେ
ଶାୟକମ୍ପନେ ବେଗେ ମସମରି ହେଲେ ।
ଶଲ୍ୟ ଯୁଧିଷ୍ଠିର ହୁଅନ୍ତ ଭେଟାଭେଟି
ଧନୁ ମଧ୍ୟରେ କାଣ୍ଡମାନ ଦେଲେ ଯୋଡ଼ି ।
ସୋଦରଙ୍କୁ ଘେନିଣ ଧୃଷ୍ଟଦ୍ୟୁମ୍ନ ବୀର
ଦ୍ରୋଣଗୁରୁ କୂଳରେ କଲେ ସେ ସମର ।
ବୃହଦ୍‌ବଳ ଯେ ଅଭିମନ୍ୟୁଟିକ ଦେଖି
ବାନ୍ଧିଲେ ତାଙ୍କ ଦେହେ ଶାୟକକୁ ଯୋଖି ।
ତୁମ୍ଭ ପୁଅମାନେ ଅର୍ଜୁନ ଶିଖଣ୍ଡୀକି
ଯୁଦ୍ଧ କଲେ ହେ ସହସ୍ର କଲରେ ଧନୁ ଟେକି
ଏରୂପେ ଦ୍ୱିସେନା କରନ୍ତେ ଯୁଦ୍ଧଟାଣ:
କମ୍ପିଗଲେ ହେ ସହସ୍ର ମହୀ ଗିରି ବନ ।
ସବୁ ଆଡ଼େ ଶଙ୍ଖ ଦୁନ୍ଦୁଭି ଭଉଜନ
ଶୁଣା ଆଉ ନ ଶୁଭିଲାଟି ଆନ କାନ ।
ରଥୀ ହାତୀ ସିପାଇ ପାଇକେ ମରମରି
ଅନ୍ୟୋନ୍ୟରେ ହୋଇ ପଡ଼ିଲେ ମଡ଼ା ପରି ।
ଭୀଷ୍ମ-ଆମିଷକୁ ନେବାକୁ ଦୁଇ ସେନା
ଟଣାଣ ଯୁଦ୍ଧ କଲେ ହୋଇ କୋପମନା ।
ଅଭିମନ୍ୟୁ ସେନା ଧରିଣ ମହାମତେ
ଯୁଦ୍ଧ କଲେ ତୁମ୍ଭର ପୁଅଙ୍କ ସଙ୍ଗତେ ।
ଦୁର୍ଯ୍ୟୋଧନ ଦେହକୁ ଅର୍ଜୁନ ତନୟ
ନବକାଣ୍ଡ ବାନ୍ଧିଣ ଫୁଟାଇଲେ ଦେହ ।
ପୁଣି ଶକ୍ତିଟାଏ ଧରିଣ କରଦେଶେ
ଅଭିମନ୍ୟୁ ଫିଙ୍ଗିଲେ ଯୁଦ୍ଧେ ଅତି ରୋଷେ ।
ସେ ଶକତିଟି ଆସୁଁ ଆସୁଁ ଜ୍ୟେଷ୍ଠବେଟା
ତୁମ୍ଭର କାଟିଦେଲେ ବାନ୍ଧି କାଣ୍ଡ ଗୋଟା ।
ଶକତି ହତ ଦେଖି ତିନୋଟି ମାର୍ଗଣ
ଅଭିମନ୍ୟୁ ବାନ୍ଧିଲେ ଧନୁକୁ ଟାଣିଣ ।
ଦୁର୍ଯ୍ୟୋଧନ ହୃଦୟଦେଶକୁ ଲକ୍ଷାଇ
ଦଶକାଣ୍ଡ ବାନ୍ଧିଲେ ଆର୍ଜୁନି ରୋଷ ହୋଇ ।
ଏରୂପେ ଦୁହିଙ୍କର ପ୍ରବର୍ତ୍ତିଲେ ରଣ
ସାଧୁ ସାଧୁ ବୋଇଲେ ଦେଖି ସୈନ୍ୟଗଣ ।
ଅଶ୍ୱତ୍ଥାମା ସାତ୍ୟକି ବକ୍ଷକୁ ନାରାଚେ
ବାନ୍ଧିଲେ ତାହାଙ୍କର ପ୍ରାଣ ନେବା ପାଞ୍ଚେ ।
ସାତ୍ୟକି ଅଶ୍ୱତ୍ଥାମା ମରମକୁ ନବ—
ଶରକୁ ବାନ୍ଧି ଦେଲେ ନେବା ପାଇଁ ଜୀବ ।
ଅଶ୍ୱତ୍ଥାମା ସାତ୍ୟକି ବାହୁ ବକ୍ଷସ୍ଥଳେ
ଯୋଡ଼ଏଟି କାଣ୍ଡ ବାନ୍ଧିଲେ ସହସ୍ର ହେଳେ ।

ମାତ୍ସ୍ୟେ ଛକାଣ୍ଡ ଦ୍ରୋଣ ନନ୍ଦନଙ୍କ
ବିନ୍ଧିଲେ ପୁଙ୍ଖବାଣ୍ଡେ କରି ଉତ୍ତମଙ୍କୁ ।
ଧୃଷ୍ଟକେତୁ ପଉରବଙ୍କ କରି ରଣ
ବିନ୍ଧାବିନ୍ଧି ହୋଇଲେ ନାନାବାଣ ଜାଣ ।
ଧୃଷ୍ଟକେତୁ ପଉରବଙ୍କ ସେ ତେତିଶି
କାଣ୍ଡକୁ ବିନ୍ଧିଦେଲେ ଏକ ଥରେ ଘପି ।
ପଉରବ ଧୃଷ୍ଟକେତୁଙ୍କର ଧନୁଟି
କାଟି ଗରଜିଲେ ମେଳଦେଇ ପାଟି ।
ଆନ ଧନୁ ଧରି ଧୃଷ୍ଟକେତୁ ବୀର
ବିନ୍ଧିଲେ ପଉରବ ଉପରକୁ ଶର ।
ସେ ଦୁଇରଥୀ ହୋଇ ଅନ୍ୟୋନ୍ୟେ ସାରଥୀ
ତେବେ ଯୁଦ୍ଧ କଲେ ନୋହୁଣ କିଛି ବ୍ୟଥୀ ।
ଫରି ଖଣ୍ଡା ଧରି କରି ସେ ଦୁଇଜଣ୍ଡା
ହଣାହଣି ହୋଇ ରଣରେ ହେଲେ ମଣ୍ଡା ।
ପଉରବ ଧୃଷ୍ଟକେତୁଙ୍କ ଖଲଦେଶେ
ହାଣି ରଥ ରଥ ବୋଇଲେ ତାଙ୍କ ରୋଷେ ।
ଧୃଷ୍ଟକେତୁ ପଉରବଙ୍କ ଯକୃତଦେଶେ
ହାଣିଲେ ଆହେ ନୃପ ଅତ୍ୟନ୍ତ ନରେଶେ ।
ଏରୂପେ ସେ ଦୁହେଁ ହୋଇଣ ହଣାହଣି
ଆଶ୍ରେ କଲେ ଆସି ଟି ଯୁଦ୍ଧର ଧରଣୀ ।
ଭୂମ୍ନର ପୁଅ ଜୟସେନ ପଉରବ
କରି ଧରି ତାଙ୍କ ରଥରେ ହେଲେ ଠାବ ।
ଧୃଷ୍ଟକେତୁଙ୍କ ହାତ ସହଦେବ ଧରି
ରଥରେ ବସାଇଲେ ଆଶ୍ୱାସନା କରି ।
ଚିତ୍ରସେନ ସୁଶର୍ମାଙ୍କୁ ଯେ ଅଣସ୍ତୁରି
ମାରଗଣ ବିନ୍ଧିଲେ ବାଛି ବାଛି କରି ।
ସୁଶର୍ମା ଭୂମ୍ନର ପୁଅଙ୍କ ଦଶ ଦଶ
ବିନ୍ଧିଣ ଥରେ କରେ ସିପିଦେଲେ ନଶ ।
ଚିତ୍ରସେନ ସୁଶର୍ମା ଦେହକୁ କୋଡ଼ିଏ
ବିନ୍ଧିଲେ ଅତିଶୟ ଥରଇଣ କାୟେ ।
ଅଭିମନ୍ୟୁ ବୃହଦଦେଶରେ ଧରି ମନ୍ୟୁ
ଗ୍ରହଦେଲେ ଶରରେ ବୃହଦଳ ତନୁ ।
ବୃହଦଳ ଅଠତିରିଶିଯୋଟି କାଣ୍ଡ
ବିନ୍ଧି ଅଭିମନ୍ୟୁଙ୍କ ଦଳିଇଲେ ମୁଣ୍ଡ ।
ଅଭିମନ୍ୟୁ ବୃହଦଳଙ୍କର ଧନୁଟି
କାଟି ତାଙ୍କ ବିନ୍ଧିଲେ ବାଣ ତିରିଶଟି ।
ବୃହଦ-ବାଳ ଆନ ଧନୁଟି ଧରି
ନବକାଣ୍ଡ ଅଭିମନ୍ୟୁଙ୍କୁ ଦେଲେ ମାରି ।
ସେ ଦୁହିଁଙ୍କର ଯୁଦ୍ଧ ହୋଇଲା ସମାନ
ଦେଖି ହୃଷ୍ଟ ତୁଷ୍ଟ ହୋଇଲେ ଯୋଦ୍ଧାଜନ ।
ଭୀମସେନ ଭୂମ୍ନର ଗଜସୈନ୍ୟ ପଶି
ଗଦାଘାତରେ ମେଲେ ଗଜପ୍ରାଣ ନାଶି ।
ଭୀମ ଗଦାଘାତେ ହାସ୍ତିଏ ଦେଇ ରଡ଼ି
ପଦଚରଙ୍କ ପରି ପଡ଼ିଗଲେ ଗଡ଼ି ।
ଯୁଧିଷ୍ଠିର ଶଲ୍ୟ ଉପରେ ଶରଭିଡ଼ା
ସରଜନା କରି ରଚିଲେ ତାଙ୍କ ପୀଡ଼ା ।
ଶଲ୍ୟ ଧରମନନ୍ଦନଙ୍କୁ କ୍ରୋଧ ହୋଇ
ମାରଗଣଗଣକୁ ବିନ୍ଧି ଦେଲେ ଗ୍ରହି ।
ଜୟଦ୍ରଥ ବିରାଟ ଦେହକୁ ତିରିଶି
ସନ୍ଧି ନବକାଣ୍ଡ ବିନ୍ଧିଲେ ହୋଇ ରୋଷୀ ।
ଜୟଦ୍ରଥର ବକ୍ଷସ୍ଥଳକୁ ବିରାଟ
ଯୋଖି ବିଂଶ ଶର ବିନ୍ଧିଲେ କରି ଆଣ୍ଟ ।
ଧନୁ ଥୋଇ ଖଣ୍ଡା ଧରି ସେ ବେଳବାରେ
ହଣାହଣି ହୋଇଲେ ସମରବାଣ୍ଡରେ ।
ଦ୍ରୋଣ ଧୃଷ୍ଟଦ୍ୟୁମ୍ନ ହୋଇ ମିଶାମିଶି
ହୋଇଲେ ଦେହେ ଶରମାନ କଷାକଷି ।
ଦ୍ରୋଣ ଧୃଷ୍ଟଦ୍ୟୁମ୍ନଙ୍କର କାଟି ଧନୁ
ପଞ୍ଚାଶ କାଣ୍ଡେ ଗ୍ରହିଦେଲେ ତାଙ୍କ ତନୁ ।
ଦ୍ରୁପଦଙ୍କ ନନ୍ଦନ ଗୁଣ୍ଡା ଧନୁ ଥୋଇ
ଆନ ଧନୁ ଧରି ବିନ୍ଧିଲେ କ୍ରୁଦ୍ଧ ହୋଇ ।
ଦ୍ରୋଣ ଧୃଷ୍ଟଦ୍ୟୁମ୍ନ କାଂଡକୁ ଶରେ ବାରି
ଧୃଷ୍ଟଦ୍ୟୁମ୍ନଙ୍କୁ ବିନ୍ଧିଲେ କ୍ରୋଧ ଧରି ।
ତା ନ ଅନ୍ତ ଧୃଷ୍ଟଦ୍ୟୁମ୍ନ ମହାବୀର
ଫିଙ୍ଗିଲେ ଗଦାଟାଏ ରଥେ ମାରି ଚିର ।
ଦ୍ରୋଣ ଯେ ପଞ୍ଚଶତି କାଣ୍ଡରେ ଗଦାଟି
କାଟିକରି ମଂଡ଼ିଲେ ସେ ଯୁଦ୍ଧବାଂଡ଼ୁଟି ।
ଗଦା ଛୁଂଡ଼ା ଦେଖିଣ ଲୁହା ଶକ୍ତିଟାଏ
ଫିଙ୍ଗିଲେ ଧୃଷ୍ଟଦ୍ୟୁମ୍ନ ଥରଇଣ କାୟେ ।
ଦ୍ରୋଣ ସେ ଶକତିକ ନବକାଂଡ଼େ କାଟି
ବିନ୍ଧିଲେ ଧୃଷ୍ଟଦ୍ୟୁମ୍ନ ଦେହେ କାଂଡ଼ ଯୋଟି ।
ଏରୂପେ ଦ୍ରୋଣ ଧୃଷ୍ଟଦ୍ୟୁମ୍ନ ଦୁହିଙ୍କର
ଅନ୍ୟୋନ୍ୟ ବଧ ଭାବ ହୋଇଲା ସମର ।

ଅର୍ଜୁନ ଭୀଷ୍ମଙ୍କ ରଥକୁ ଭଗ୍ନ କରି
ଘୋଟାଇ ଦେଇ ଯୁଦ୍ଧ କଲେ ବିଶେଷ ବନ୍ଧ ।
ଭଗଦତ୍ତ ଗିରି ପର୍ବତେ ମତ୍ତହସ୍ତୀ
ଆରୋହଣ ଆସିଲେ ଯୁଦ୍ଧେ ଦେଇ ମତି ।
ଅର୍ଜୁନ ଦେଖିଣ ଭଗଦତ୍ତ ହାତୀ
ଯତ୍ନ କରି ରହିଲେ ଯୁଦ୍ଧେ ହୋଇ ବ୍ୟଥୀ ।
ଭଗଦତ୍ତ ତ ନାଗଗତ ହୋଇଥିଲେ
ଅର୍ଜୁନଙ୍କ ଉପରେ ଶର ବୃଷ୍ଟି କଲେ ।
ଅର୍ଦ୍ଧକାଣ୍ଡେ ଭଗଦତ୍ତ ହାତୀ ଦେହ
ଖୋଳିଦେଲେ ପାର୍ଥ ଯୁଦ୍ଧରେ ଧରି କୋହ ।
ଶିଖଣ୍ଡୀକି ବୋଇଲେ ନ କର ହେଳା ଶଙ୍କା
ଦଅ ହେ ଶରେ ଭୀଷ୍ମଙ୍କର କାଟି ଗଳା ।
ଭଗଦତ୍ତ ରାଜା ଛାଡ଼ି ଅର୍ଜୁନଙ୍କୁ
ଆଗୁଳିଲେ ଯାଇଣ ଦ୍ରୁପଦ ରାଜାଙ୍କୁ ।
ଅର୍ଜୁନ ଶିଖଣ୍ଡୀକି ଆଗରେ ଚଳାଇ
ଭୀଷ୍ମଙ୍କୁ ଦେଲେ ମାରଗଣ ଗଣେ ଛାଇ ।
କୁମ୍ଭ ପୁତ୍ରମାନେ ତା ଦେଖି ଶୂରପଣ
ହୃଦରେ ଧରି ଅର୍ଜୁନଙ୍କୁ କଲେ ରଣ ।
ଏହା ଦେଖି ଗାଣ୍ଡୀବଧର କଲେ କ୍ରୋଧ
କଲେ କାଣ୍ଡେ କୁମ୍ଭ ସଇନଯାକ ବଧ ।
ଶିଖଣ୍ଡୀ ଧନୁଟି ହାଲଇ ମୁଣ୍ଡଟିକ
ଲକ୍ଷ କରି ଡାକିଲେ ଭୀଷ୍ମ ବୁଢ଼ାଟିକ ।
ଆଜ ତୁମ୍ଭେ ମୋହର ପାଇ ମାରଗଣ—
ଗଣକୁ ଭେଟିବିକ ଯମରାଜ୍ୟେ ଜାଣ ।
ସୋମକ ଆତଙ୍କ ବଢ଼ାଇ କୁମ୍ଭ ପିତା
ମାରିବା ଆଜ ବୋଲି ମନ୍ତ୍ର ଛାଡ଼ି ଚିନ୍ତା ।
ଭୀଷ୍ମଙ୍କର ଅସ୍ତ୍ରଘାତରେ ରଥ ଗଜ
ଅଶ୍ୱ ନରସ୍ଥାନ ବହିଲା ନରରଜ ।
ଭୀଷ୍ମଙ୍କ ଧନୁ ରଡ଼ି ଛାଡ଼ୁ ଘଡ଼ଘଡ଼
ଶବଦକୁ ଶୁଣି ଦେଲେ କି ଘଡ଼ଘଡ଼ ।
ତାହା ଶୁଣି ପାଣ୍ଡୁ ସଇନ ସେନାଯାକ
ମଲାପରି ବୋଲିଣ ହୋଇଲେ ଚକିତ ।
ରଥୀ ହାତୀ ଯେ ଅଶ୍ୱାରୋହୀଏ ମରଣ
ପାଆନ୍ତେ ପୂରିଲା ମଢ଼ାରେ ଯୁଦ୍ଧାଙ୍ଗଣ ।
ଚେଦି କାଶୀ କରୁଷ ଦେଶର ତଉଦ
ସହସ୍ରଲୋକ ଗଲେ ସ୍ୱର୍ଗେ ବନ୍ଧ ମୋଦ ।

ତ ବାତରେ ଭୀଷ୍ମଙ୍କ କାଣ୍ଡମାନେ ଯେତେ
ଖଣ୍ଡ ଥିଲା ଯମକୁ ଭେଟିଥିଲା ସେତେ ।
ଅର୍ଜୁନ ଶିଖଣ୍ଡୀ ଦନା ସେ କାଳରେ
ଘନାଇଲେ ଟି ଆନ ଯୋଦ୍ଧାଏ ଡରରେ ।
ଶିଖଣ୍ଡୀ ଭୀଷ୍ମଙ୍କ ଦେହକୁ ବଣ ଭଲି—
କାଣ୍ଡ ବିନ୍ଧି ରଥକୁ ବୁହାଇଲେ ପେଲି ।
ଶିଖଣ୍ଡୀକି ଦୃଷ୍ଟି ବୋଲିଣ ଭୀଷ୍ମ ବୀର
ଜାଣି କରେ ସ୍ପର୍ଶିଲେ ନ ଦକ୍ଷିଣ ଶର ।
ପାର୍ଥ ଶିଖଣ୍ଡୀକି ବୋଇଲେ ତୋଷ ହୋଇ
ଦେଖ ତୁମ୍ଭେ ଆଉ ଅଛନ୍ତି ଭୀଷ୍ମ ଜୀଇ ।
ମୋତେ ତ ଆଜ କଥାଗୁଡ଼ାଏ ନ କହ
ଭୀଷ୍ମଙ୍କର ଉପରେ ମୋର ବେଢ଼ କୋହ ।
ଭୀଷ୍ମଙ୍କୁ ମାରିବାକୁ ଯୁଧିଷ୍ଠିର କହେ
ତୁମ୍ଭ ବିନା କାହାକୁ ନ ଦେଖେଁ ମୁଁ ତୋଳେ
ଅର୍ଜୁନଙ୍କ ମୁଖରୁ ଶୁଣିଏ ବଚନ
ଶିଖଣ୍ଡୀ କଲେ ଭୀଷ୍ମଦେହେ ଲକ୍ଷ ବାଣ ।
କୁମ୍ଭ ପିତା ଶିଖଣ୍ଡୀ କାଣ୍ଡକୁ ନ ମାନ
ଅର୍ଜୁନଙ୍କୁ କାଣ୍ଡ ବିନ୍ଧିଲେ ଧନୁ ଘେନ ।
ପାଣ୍ଡୁ ସେନାଯାକକୁ ଖଣ୍ଡିଣ ମାରଗଣ
ବିନ୍ଧି ଭୀଷ୍ମ ରଚିଲେ ତାହାଙ୍କ ମରଣ ।
ପାଣ୍ଡବେ ପୁଣି ସୈନ୍ୟଯାକ ଗୋଟିଆଇ
ଦେଲେ ଭୀଷ୍ମ ଦେହକୁ ଶରଜାଳେ ଛାଇ ।
ଭୀଷ୍ମ ସେତିକାଳେ ଦେଖାଇ ଦେହବଳ
ପୋଡ଼ିଦେଲେ ସେନାଙ୍କୁ ବନ୍ଧି ବାଣାନଳ ।
ଦୁଃଶାସନ ଜେନାମଣିର ପୌରୁଷ
ଦେଖିଲୁଁ ଅର୍ଜୁନଙ୍କୁ ଯାହା କଲେ ରଣ ।
ଜେନାମଣି ଯେତେ ବିନ୍ଧିଲେ ଝିଙ୍କି କାଣ୍ଡ
ହାତୀ ଘୋଡ଼ାଙ୍କର ସେ କାଟିଲେଟି ମୁଣ୍ଡ ।
ପାଣ୍ଡବ ଯୋଦ୍ଧାମାନେ ଦୁଃଶାସନ ବଳ
ଦେଖିକରି ହୋଇଲେ ହୃଦରେ ବିକଳ ।
ବୋଇଲେ ଆଜ ଭୀମ ଅଛନ୍ତି କାହିଁ ରହି
ନ ମାରନ୍ତି ଏହାକୁ ଜନ୍ମା କ୍ରୋଧ ବହି ।
ଅର୍ଜୁନ ଦୁଃଶାସନର ଦେଖି ଯୁଦ୍ଧ
ଯୋଖିଲେ ଶର ବାଛି ଗାଣ୍ଡୀବଧନୁ ମଧ୍ୟ ।
ତାହା ଦେଖି କରି ସେ ଦୁଃଶାସନ ବଳୀ
ପଳାଇଲେ ଯୁଦ୍ଧେ ମରିବ ବୋଲି ଭଲି ।

ପୁଣି ଭୀଷ୍ମ ବାହ୍ଲୀକ ଅଶ୍ରାନ୍ତ ପାଇ ଦୁଃଶା
ସାନ ପୁତ୍ର କୁମ୍ଭର ଯୁଦ୍ଧେ କରି ଆଶା ।
ଅରଜୁନଠାକୁ ଆସିଲେ ବେଗେ ଧାଇଁ
ବୋଇଲେ ରହ ଭାଇ ଯିବୁ ଆଜ କାହିଁ ।
ଶିଖଣ୍ଡୀ ଭୀଷ୍ମଙ୍କ ଗଣ୍ଡିକ କରି ଲକ୍ଷ
ବିନ୍ଧିଲେ ବାଛି ବାଛି ଉତ୍ତମ ବିଶିଖ ।
ଶିଖଣ୍ଡୀ କାଣ୍ଡ ପାଇ ଭୀଷ୍ମ ଗଣ୍ଡି-ଦାଣ୍ଡି
ମୁନ ମୋଡ଼ି ଶର ହୋଇଲା ଦୁଇ ଖଣ୍ଡି ।
କୁମ୍ଭର ପୁଅ ସବୁ ଯୋଦ୍ଧାଙ୍କୁ ବୋଇଲେ
ମାର ଅରଜୁନଙ୍କୁ ବେଢ଼ି କରି ଭଲେ ।
ଭୀଷ୍ମ ରହନ୍ତ କୁମ୍ଭଙ୍କୁ ରଖିବାକୁ
ଡରୁଅଛ କୁମ୍ଭରେ ସିନା ଅର୍ଜୁନକୁ ।
ତିନ ଲୋକଯାକ ଯୁଝିଲେ ହୋଇ ଗୋଟି
ଭୀଷ୍ମ ପକାଇବେ ଜାଣ ଶରରେ କାଟି ।
ନିଷାଦ ସୌବୀର କଳିଙ୍ଗ ଦାସେରକ
ଶୂରସେନ ମାଳବ ବଶାତି ବାହ୍ଲିକ ।
ଶାଲ୍ୱ ତ୍ରିଗରତ ଯେ ବରବ ବଦେହ
କେକୟ ଶିବ ପ୍ରାଚ୍ୟ ଉଦୀଚ୍ୟ ଅଭିଷାହ ।
ଏମାନେ କରେ ଧନୁ ଧରି ଅର୍ଜୁନଙ୍କୁ
ବିନ୍ଧିଲେ ବାଛି ବାଛି ଭଲ ମାଗଣକୁ ।
ଅରଜୁନ ଶର-ଅନଳରେ ପତଙ୍ଗ
ପ୍ରାୟେ ପ୍ରାୟେ କଲେ ଦଗ୍ଧ ତାଙ୍କ ଅଙ୍ଗ ।
ଦିବ୍ୟଅସ୍ତ୍ରବଳରେ ପାଣ୍ଡବ କିରୀଟୀ
ବେଢ଼ିବା ସେନାଙ୍କର ଦେଲେ ମୁଣ୍ଡ କାଟି ।
ଅର୍ଜୁନ କାଣ୍ଡେ ମହୀ ହେଲା ତ ଆବୃତ
ଯୁଝିବାକୁ କାହାରି ନ ପାଇଲା ଚିତ୍ତ ।
ଗଜ ଆରୋହେ ଅଶ୍ୱାରୋହେ ଗଜ ଘୋଡ଼ା
ଧରି ବାଣ ବାଜି ଭୂମିରେ ଦେଲେ ଗଡ଼ା ।
ଏରୂପେ କୁମ୍ଭ ସେନାପାଳକୁ ଅର୍ଜୁନ
ମାରି ଦୁଃଶାସନକୁ କଲେ ଆୟୋଧନ ।
ପାର୍ଥ ହାତ କାଣ୍ଡ ଦୁଃଶାସନର ଗଣ୍ଡି
ଭଳି ତ ରକତରେ ହେଲା ମହୀ ମଣ୍ଡି ।
ଦୁଃଶାସନର ଘୋଡ଼ା ସାରଥିଙ୍କ ପ୍ରାଣ
ଘେନଗଲେ ଅର୍ଜୁନ ବିନ୍ଧି ତୀକ୍ଷ୍ଣ ବାଣ ।
କୋଡ଼ଏ କାଣ୍ଡ ବିନ୍ଧି ବଂଶକୃତ ଧ୍ୱଜ
ରଥ ଅଶ୍ୱ କାଟିଲେ ପାର୍ଥ ସାରଥିକ ।

କୃପ ଶଲ୍ୟ ଯେ ବିକର୍ଣ୍ଣଙ୍କୁ ଏହି ଦଶା
କଲେ ରଣହାଣ୍ଡେ ଅର୍ଜୁନ ମହାଯଶା ।
କୁମ୍ଭର ରଥୀଯାକ ହୋଇଣ ବିରଥୀ
ପଳାଇଲେ ପାଦଘାତରେ ସେନା ମନ୍ଥି ।
ଅରଜୁନ ସେକାଳେ ଅଗ୍ନି ପରି ତେଜ
ପ୍ରକାଶି ଗାଣ୍ଡୀବେ ଧଇଲେ କରି ସଜ ।
ଏହା ଦେଖିଣ ଆନ ମହାରଥୀମାନେ
ଆହା ଆହା ବୋଲିଣ ଭାଜିଲେ ବଚନେ ।
ରଥଅଖ ପାର୍ଥ କାଣ୍ଡରେ ଦୁଇ ଗଡ଼
ହୁଅନ୍ତେ ରଥମାନେ ପଡ଼ିଲେ ଅଜାଡ଼ି ।
ହାତୀ ଘୋଡ଼ାଙ୍କର ଛିଡ଼ନ୍ତେ ଖୁରି ଗୋଡ଼
ଜାତ କଲେ ପଡ଼ି ଶବଦ ଉଡ଼ୁଉଡ଼ ।
ଶ୍ୟେନ କାକ ବିଲୁଆ ଗୃଧ୍ର ହୋଇ ଜୋଟି
ଗିଳିଲେ ନରମାଂସ ମେଲଦେଇ ପାଟି ।
ବୀରଙ୍କ ସୁନାମାଳାମାନ ତଳେ ପଡ଼ି
ନଦିଲା ସଜନ ହାରିଦ୍ର୍ୟ ଫୁଲବାଡ଼ି ।
ଭୀଷ୍ମ ଦିବ୍ୟଅସ୍ତ୍ର ଧରି ଅରଜୁନଙ୍କୁ
ମାରିବାକୁ ଗମିଲେ ବନ୍ଧଣ ସଜକୁ ।
ଶିଖଣ୍ଡୀ ତାହା ଦେଖି ଭୀଷ୍ମଙ୍କୁ ଆଗୁଳି
କାହିଁ ଯିବ ବୋଲିଣ ପାଡ଼ିଲା ବୋବାଳି ।
ଭୀଷ୍ମ ଦିବ୍ୟଅସ୍ତ୍ର ଧନୁରେ ଯୋଚିଥିଲେ
ଶିଖଣ୍ଡୀକି ଦେଖି ତାହାକୁ ନ ମୁଞ୍ଚିଲେ ।
ଏହି କାଳେ ଅର୍ଜୁନ ଦେଖାଇ ବିକ୍ରମ
କୁମ୍ଭ ସୈନ୍ୟଯାକ ମାଇଲେ ବହି ତମ ।
ଦୁଇ ସେନାଯାକ ବ୍ରହ୍ମଲୋକକୁ ଇଚ୍ଛା
କରି ଯୁଦ୍ଧ ଭଜନ କଲେ ମହାକକ୍ଷା ।
ଅମର୍ଯ୍ୟାଦା ହୋଇଛି ହୋଇଲା ସମର
ବସିବାକୁ ଯାଇଛି ଆଖଣ୍ଡଳପୁର ।
କୁମ୍ଭ ତାଙ୍କ ଦୁଇ ଯୋଦ୍ଧାଙ୍କ ବଳ ଗୁଣ
ଖୋଜିବାରେ ମୋ ନେତ୍ର ହେଲେ ସ୍ୱପ୍ନେ ବଣା ।
ଶଲ୍ୟ କୃପ ଚିତ୍ରସେନ ଯେ ଦୁଃଶାସନ
ବିକର୍ଣ୍ଣ ଆଦି ରଥ ଚଢ଼ି ବିନ୍ଧି ବାଣ—
ହାତରେ ପାଣ୍ଡୁସେନା ବୃକ୍ଷକୁ କମ୍ପାଇ
ଦେଲେ ଜାଣ ଆହେ ହସ୍ତିନା ନରସାଇଁ ।
ନାବ ଯେହ୍ନେରୂପେ ପବନଘାତେ ଭ୍ରମେ
ସେରୂପେ ପାଣ୍ଡୁସେନା ବୁଲିଲେ ସଂଗ୍ରାମେ ।

ଭୀଷ୍ମ କାଣ୍ଡ ଶତେ ପାଣ୍ଡବ-ସେନା ଗାଢ—
ରୂଢ ତେଲେ ଦେହମାନଙ୍କୁ ସେ କମ୍ପାଇ ।
ତାହା ଦେଖି କରଣ ଆଖଣ୍ଡଳ ବାଳ
ମାଇଲେ କୁମ୍ଭ ରଥ ଅଶ୍ୱଗଜକୁଳ ।
ସହସ୍ରସଂଖ୍ୟା ଗଜ କରି ଘୋରରଡ଼
ଅରଜୁନ କାଣ୍ଡରେ ପକାଇଲେ ଗୁଡ଼ ।
କେୟୂର କୁଳେ ଛୁଡ଼ ଚନ୍ଦନବୋଳା ବାହୁ
କଲ ଯୁଦ୍ଧଭୂମିଯାକରୁ ବାଜଦାରୁ ।
କୁମ୍ଭ ପିତା ଅର୍ଜୁନ ପର ପରାକ୍ରମ
କରି ଯୁଦ୍ଧ କଲେଟି ନ ଗୁଡ଼ ସଂଗ୍ରାମ ।
ତେବେ କୁମ୍ଭ ତାଙ୍କର ସେନାଏ ଯୁଝନ୍ତି
ନ ଗୁଡ଼ ବର୍ଷିଲେ ଶାୟକ କୋଟି କୋଟି ।
ପାଣ୍ଡୁ ନନ୍ଦନ ଧନୁ ଶାୟକେ ବସାଇ
ବର୍ଷିଲେ କୁମ୍ଭ ପୁଅମାନଙ୍କୁ ରୋଷାଇ ।
ମନେକଲେ ଏହାଙ୍କୁ ମାଇଲେ ହସ୍ତିନା
ସୁଖେ ଭୋଗ କରିବେ ଯୁଧିଷ୍ଠିର ନନା ।
ଆମ୍ଭେମାନେ ତ ଭାଇଭାଗ ବାଣ୍ଟି ଖାଇ
ବାହାରିବା ଦାଣ୍ଡରେ ଗୁନ୍ତିକ ପୁଲଇ ।
ଏ ପାପେ ଦେଇଛନ୍ତି ଆମ୍ଭଙ୍କୁ କି କଷ୍ଟ
ଆଜ ଆଜ ମଧ୍ୟେ ନ କଲେ ପ୍ରାଣଭ୍ରଷ୍ଟ ।
ଆମ୍ଭର କେତେବେଳେ ସୁଖ ହୋଇ ନାହିଁ
ଏରୂପେ ବର୍ଷିଣ ଯୁଝିଲେ ନରସାଇଁ ।
ତେବେ ଧୃଷ୍ଟଦ୍ୟୁମ୍ନ ବୋଲରେ ସେନାଗଣ
ଭୀଷ୍ମଙ୍କର କୁଳରେ କଲେ ଆୟୋଧନ ।
ଭୀଷ୍ମ ତାହା ନ ସହି ବର୍ଷି ମାରଗଣ
ଘେନଗଲେ ସୃଞ୍ଜୟମାନଙ୍କ ପରାଣ ।
ପର୍ଶୁରାମ ଦେବା ବିଦ୍ୟାକୁ ଆଗେ ଜାଣି
ଅପୂର୍ବ ରଥୀ ଜନ୍ତ ଦ୍ୟନ୍ତ ଭୀଷ୍ମ ମାରି ।
ଦଶମ ଦିନେ ପୁଣି ମାଇଲେ ଯେତେକ
ଶୁଣ ତା ମୋହଠାରୁ ଦର୍ପିନାନାୟକ ।
ସହସ୍ର ପଞ୍ଚ ରଥୀ ଧଏ, ଚତୁର୍ଦ୍ଦଶ
ପଦାତିଙ୍କି ଦେଲେ ଯେ ଯମପୁରେ ବାସ ।
ହାତୀ ଘୋଡ଼ା ମରିବାର ଯେ ଏତେ ଏତେ
କହି ନ ପାରିବ ସ୍ୱଜନ ମହାମତେ ।
ବିରାଟପ୍ରିୟ ଭ୍ରାତା ଶତାନିକ ରଣି
ତଳାନ୍ତେ ପଡ଼ିଲ୍ସ ସେ ଧୂଳିକ ଦଣ୍ଡି ।

କଳିକାଣ୍ଡରେ ଭଲ ଭଲ ରାଜସୁତ—
ମାନଙ୍କ ମୁଣ୍ଡ କାଟି ଘେନଲେ ଜାହ୍ନବତ ।
ଗାଣ୍ଡୀବଧାରୀ ଅସ୍ତ୍ରା ପାଇ ରକ୍ତ ଲେକ
ରଖି ନ ପାରିଲେ ଟି ବେହରେ ସବେକ ।
ଭୀଷ୍ମଙ୍କର କାଣ୍ଡ ପ୍ରଳୟ ଅଗ୍ନି ଜାଣି
ଏଣୁ ଦଗ୍ଧ ହେଲେ ସେ ଜାଣ ନରମଣି ।
ତତକ୍ଷଣେ ସଉଡ଼ ପାଣ୍ଡବସେନାଙ୍କୁ
ଛୁଡ଼ା ହେଲେ ଭୀଷ୍ମ ଫୁଲଭଣ ଦେହକୁ ।
ଭୀଷ୍ମଙ୍କର ଦେହକୁ ବୃଷ୍ଟିବାକୁ ଜନ—
ମାନେ ନୋହିଲେଟି ହେ ସଜନ ସ୍ୱଜନ ।
ଇନ୍ଦ୍ର ଦୈତ୍ୟସେନା ମାରିବାର ପରାୟେ
ପାଣ୍ଡୁସେନା ମାଇଲେ କୁମ୍ଭ ପିତା ରୟେ ।
ଶ୍ରୀକୃଷ୍ଣ ତା ଦେଖି ବୋଇଲେ ଅରଜୁନ
ନ ଘେନଅନ୍ତ କମ୍ପା ଭୀଷ୍ମଙ୍କ ଜୀବନ ।
ଭୀଷ୍ମ ଥାଇଁଥିଲେ ଆମ୍ଭଙ୍କୁ ଜୟଶିରୀ
ଆସିବା କଥାଟିକ ବିସ୍ତର ନ ପାରି ।
ଦେଖ କୁମ୍ଭର ସୈନ୍ୟ ଭୀଷ୍ମବାଣେ ଫାଟି
ଯାଉଛନ୍ତି ରଖ ଏହାଙ୍କୁ କରି ଗୋଟି ।
କୃଷ୍ଣଙ୍କ ବଚନେ ଗାଣ୍ଡୀବଧନୁ ବାଗେ
ଧରି ଅରଜୁନ ଝିଙ୍କିଲେ ଅତି ରାଗେ ।
ଭୀଷ୍ମଙ୍କ ରଥଧ୍ୱଜ ଅଶ୍ୱକୁ ମାର୍ଗଣ—
ଗଣରେ ଗୁଳଦେଲେ ଗାନ୍ଧାରୀରମଣ ।
ଦ୍ରୁପଦ ଧୃଷ୍ଟକେତୁ ସାତ୍ୟକ ନକୁଳ
ସହଦେବ ଅଭିମନ୍ୟୁ ଯେ ମହାବଳ ।
ଶିଶୁପାଳସୁତ ଭୀମ ଯେ କଇକେୟ
ଧୃଷ୍ଟଦ୍ୟୁମନ ଘଟୋତ୍କଚ ଦ୍ରୌପଦେୟ ।
କୁନ୍ତିଭୋଜ ଶିଖଣ୍ଡୀ ସୁଶର୍ମା ବିରାଟ
ଭୀଷ୍ମ ବାଣେ ଖୋଜଲେ ପଳାଇବା ବାଟ ।
ଶିଖଣ୍ଡୀ ଧନୁ ଧରି ଭୀଷ୍ମ ଅଭିମୁଖେ
ପାର୍ଥ ସହା ପାଇ ଧାଇଁଲେ ମନସୁଖେ ।
ଅର୍ଜୁନ ଭୀଷ୍ମଙ୍କ ଅନ୍ତରଭଣେ
ମାରି ଭୀଷ୍ମ ଉପରେ ପ୍ରହାରିଲେ ବାଣ ।
ସାତ୍ୟକ ଚେକତାନ କେକୟ ଅଭିମନ୍ୟୁ
ଦ୍ରୌପଦେୟ ଆଦି ଦ୍ରୁପଦେ ଧରି ମନ୍ୟୁ ।
ବିରାଟ ଦ୍ରୁପଦଙ୍କୁ ଆଗରେ ଚଳାଇ
ଭୀଷ୍ମବୁଢ଼ାଟିକ ବେଢ଼ିଲେ ସେହୁ ଯାଇ ।

ଏ ବାହାରେ ନକୁଳ ସହଦେବ ଦୁଇ
ଘାଇ ଭୀଷ୍ମ ଦେହକୁ ବିନ୍ଧିଲେ ବେଗାଇ ।
ଏ ସବୁ ରଥୀଙ୍କ କାଣ୍ଡକୁ ଭୀଷ୍ମ ରଥୀ
ଛତ୍ୟ ଅସ୍ତ୍ରବଳରେ ପକାଇଲେ ମନ୍ଥି ।
ପାଣ୍ଡବଙ୍କର ବଳ ମଧ୍ୟରେ ପଶିଲେ
ଆଣ୍ଟରେ ଧନୁ ଝିଙ୍କି କାଣ୍ଡକୁ ବିନ୍ଧିଲେ ।
ଏକା ଶିଖଣ୍ଡୀକି ସେ ସ୍ତ୍ରୀ ବୋଲି କରି
ନ ମାଇଲେ ଗଙ୍ଗନ ଭୀଷ୍ମ ଶସ୍ତ୍ର ଧରି ।
ଦ୍ରୁପଦଙ୍କ ସଇନରୁ ଯେ ସାତ ରଥୀ—
ମୁଣ୍ଡ କାଟି ତାଙ୍କ ସେନାକୁ ଦେଲେ ମନ୍ଥି ।
ମତ୍ସ୍ୟ ଚେଦ ପାଞ୍ଚାଳ କଳକଳାନାଦେ
କୁରୁଏ ପଛକୁ ଗମିଲେ ପଦେ ପଦେ ।
ପାଣ୍ଡବରଥୀଙ୍କର ପାଇ ବାଣଜାଳ
ଭୀଷ୍ମଙ୍କର ଲୁଚିଲା ଦେହ ରଶ୍ମିମାଳ ।
ଏ ବାହାରେ ଯେ ନର ଅଶ୍ୱ ରଥ କୋଟି
ରକ୍ଷିଲେ ଭୀଷ୍ମ ଗୁରୁପଟେ ହୋଇ ଗୋଟି ।
ଶିଖଣ୍ଡୀକି ଆଗରେ ଚଳାଇ ପାଣ୍ଡବ
ଭୀଷ୍ମ ଉପରେ ବିନ୍ଧିଲେ ଝିଙ୍କି ଗାଣ୍ଡୀବ ।
ପଟ୍ଟିଶ ପରିଘ ମୂଷଳ ପ୍ରାସ ଶର
ଖଡ୍ଗ ଶକ୍ତି ଶତଘ୍ନି ନାରାଚ ତୋମର ।
ଭୁଷୁଣ୍ଡୀ ବଜ୍ରଦଣ୍ଡ ମୁଦ୍ଗର ଆଦି
ମାରିଲେ ଭୀଷ୍ମ ଦେହେ କ୍ରୋଧକୁ ସମ୍ପାଦି ।
ଭୀଷ୍ମଙ୍କର ମରମେ ବାଜନ୍ତେ ଏମାନ୍ତି
କେବେ ହେଲେ ଯୁଦ୍ଧରେ ନୋହିଲେ ବିମନ
ଯୁଗାନ୍ତକାଳଅଗ୍ନି ପ୍ରାୟେ ତେଜେ ଜଳି
ଭୀଷ୍ମ ପାଣ୍ଡୁ ସେନାଯାକୁ ଦେଲେ ଜାଳି ।
ମଣ୍ଡଳାକାରେ ବୁଲାଇଣ ଭୀଷ୍ମ ରଥ
ମଣ୍ଡି ଦେଲେ ଶରରେ ସବୁ ଯୁଦ୍ଧପଥ ।
ପାଞ୍ଚାଳନରପତି ସଇନ ମଧ୍ୟରେ
ରଖାଇଲେ ରଥ ସେ ଅତ୍ୟନ୍ତ କ୍ରୋଧରେ
ଭୀମାର୍ଜୁନ ସାତ୍ୟକି ବିରାଟ ଦ୍ରୁପଦ
ଧୃଷ୍ଟଦ୍ୟୁମ୍ନ ଆଦି ରଥୀଙ୍କୁ ବନ୍ଧ ମୋଦ ।
ମାରଗଣଅନ୍ତକୁ ଗୁଣରେ ବସାଇ
ବିନ୍ଧିଲେ ରଥେ ଘୋଡ଼ା ଆଗକୁ ବସାଇ ।
ସେ ସଉରଥୀ ଭୀଷ୍ମ ବାଣ କରି ନାଶ
ବିନ୍ଧିଲେ ଭୀଷ୍ମରେ ଖାସ୍ତ୍ର ଦଶ ଦଶ ।

ଶିଖଣ୍ଡୀ ମାର୍ଗଣେ ଗଳାଇ ଭୀଷ୍ମ ଚଣ୍ଡ
ଗରଜନେ ନାଦିଲେ ମେଘ କଳାହାଣ୍ଡି ।
ଅର୍ଜୁନ ଶିଖଣ୍ଡୀକି ରଖି ରଥ ଆଗେ
ଭୀଷ୍ମ ଧନୁଟିକି ଯେ କାଟିଦେଲେ ରାଗେ ।
ପୁଣି ଭୀଷ୍ମଦେହକୁ ବିନ୍ଧି ଦଶ ଶର
ଧ୍ୱଜଙ୍କ କାଣ୍ଡକେ କାଟିଲେ ମହାବୀର ।
ଭୀଷ୍ମଙ୍କ ସାରଥି ଦେହକୁ ଦଶ ବିନ୍ଧି
ଦେଲେକି ତାର ପ୍ରିୟପ୍ରାଣୁଟିକ ଛିନ୍ଦି ।
ଆନ ଧନୁ ଧରନ୍ତେ ଭାଗୀରଥିସୁତ
କାଣ୍ଡରେ ତାହା ପାର୍ଥ କରିଦେଲେ ହତ ।
ପୁଣି ପୁଣି ଭୀଷ୍ମ ଯେ ଧରୁଥାନ୍ତି ଧନୁ
କାଟି ଦେଉଥାନ୍ତି ତା ଇନ୍ଦ୍ରଙ୍କର ସୂନୁ ।
ଭୀଷ୍ମ ଅର୍ଜୁନଙ୍କୁ ନ ଯୋଟିପାରି ଯୁଦ୍ଧେ
ଯୁଦ୍ଧଦାଣ୍ଡେ କେବଳ ରହିଲେ ସେ କ୍ରୋଧେ ।
ଭୀଷ୍ମ ଦୁଃଶାସନର ମୁଖକୁ ଅନାଇ
ବୋଇଲେ ଦେଖ ପାର୍ଥ ମୋ ସଙ୍ଗେ ଯୁଝଇ ।
ଆଜ ଏହାର ହାତ ଶରପଥଯମ
ପାଇଲେ ପ୍ରାଣେ ଆଉ ନ କରିବ ପ୍ରେମ ।
ଦେବ ଦୈତ୍ୟ ଦାନବ ବେଳ ସୁରପତି
ଯୁଝିଲେ ଜିଣିବେ ହତସବାର୍ଯ୍ୟନାଶ ।
ମୋତେ ଆଜ ଆଜନ୍ମେ ଜିଣିବେ ଅର୍ଜୁନ
ହେ ଦୁଃଶାସନ ତୁମ୍ଭେ ସନ୍ଦେହ ନ ଘେନ ।
ଏକାଳେ ଅର୍ଜୁନ ଶିଖଣ୍ଡୀ ପଛେ ଥାଇ
ଭୀଷ୍ମଙ୍କୁ ପୁଣି ମାରଗଣେ ଦେଲେ ଛାଇ ।
ଭୀଷ୍ମ ସେହି କାଣ୍ଡେ ପାଇଣ ଅତି ପୀଡ଼ା
କହିଲେ ପୁଣି ଦୁଃଶାସନେ ଗୁଡ଼ ବ୍ରୀଡ଼ା ।
ବଜ୍ରାଶନି ସମାନ ପାର୍ଥ ବାଣଗଣ
ମୋ ପିଣ୍ଡେ ବାଜି ଖୋଜୁଛନ୍ତି ମୋ ମରଣ ।
ବ୍ରହ୍ମଦଣ୍ଡ ପରି ଯେ ଅର୍ଜୁନ କାଣ୍ଡ
ବେଳକୁ ବେଳ ହଏ ମୋ ପିଣ୍ଡକୁ ଖଣ୍ଡ ।
ଆଶୀବିଷପରି ହୋଇ ମୋ ଦେହ-ବଳେ
ପାର୍ଥ ବାଣେ ଦେଖ ନେହ ପଶୁଛନ୍ତି ହେଳେ ।
ଯମଦୂତ ପରି ଅର୍ଜୁନ ବାଣରାଶି
ଆସୁଛି ମୋ ଜୀବନ ନେବ ହୋଇ ବେଶୀ ।
ଏହି ପ୍ରକାରରୁ ଜାଣୁଛି ଦୁଃଶାସନ
ନିଶ୍ଚେଟି ପାର୍ଥ ଆଜ ନେବ ମୋ ଜୀବନ ।

ଶିଖଣ୍ଡୀର ଏତେକ ବଳ ଯେବେ ଥାନ୍ତା
ଦ୍ରୁପଦ ମସ୍ତ କମ୍ପା ଦ୍ରୋଣର ହୁଅନ୍ତା ।
ମୋ ମରଣ ଶିଖଣ୍ଡୀ ଯେନ ହେବ ଜାଣି
ତାଙ୍କୁ ଯେନ ଯୁଦ୍ଧେ ଗାଣ୍ଡୀବଧନୁଷ୍ପାଣି ।
ମରଣ ପାତକେ ନମିଭ୍ର ମହାରଥୀ
ଶିଖଣ୍ଡୀ ହେଳ ପାର୍ଥ ଚ୍ଛେଦବ ମୋ ମଥା ।
ଅରଜୁନ ବିନା ହେ ଶକଳେକେ ଗୋଟି
ହେଲେ ଭଙ୍ଗା କରିବେ ନାହିଁ ମୋ ତ୍ରୁଟି ।
ଏହା କହଣ ଫରିଖଣ୍ଡା ଧରି ଖ୍ୟାତ୍
ରଥୁ ଡେଇଁ ପଡ଼ିବା କାଳେ ହୋଇ ଭ୍ରଷ୍ଟ ।
ଅର୍ଜ୍ଜୁନ ଖଡ଼୍ଗ ଫରି ପକାଇଲେ କାଟି
ଘେନିବା ପାଇଁ ବୁଢ଼ା ଖ୍ୟାତଙ୍କ ପ୍ରାଣୁଟି ।
ଏହା କରି ସାରି କୁନ୍ତୀଙ୍କ ସାନପୁଅ
ଗରଜନ କରଣ କଲେ ମସ୍ତ ଉଠ ।
ସୈନ୍ୟଙ୍କୁ ବୋଇଲେ ନ ଡର ତୁମ୍ଭେ କେହି
ମାରି ଭୀଷ୍ମ ବୁଢ଼ାକୁ ମୁଁ ସାହା ଅଛଇ ।
ଏହା ଶୁଣି ସଇନ ଜନେ ନାନା ଅସ୍ତ୍ର
ପ୍ରହାରିଲେ ଖୋଳିବା ପାଇଁ ଭୀଷ୍ମ ଗାତ୍ର ।
ପାଣ୍ଡବସେନାଯାକ ଜଲେ ସିଂହ ରଡ଼ି
ତା ଶୁଣି କୁନ୍ତ ପୋଏ ଦେଲେ ଧୈର୍ଯ୍ୟ ଗ୍ରଡ଼ି
ମନେ କଲେ ଆଜ ଅର୍ଜ୍ଜୁନ ବାଣ-ସିଂହ
ଖ୍ୟାତ୍-କଗଣ୍ଟିକ ଖାଇବ କରି କୋହ ।
ଏଥି ପ୍ରନ୍ତକାର ପାରିବା ଯେବେ କର
ତେବେ ହେ ବୋଲିଇବା ପିନା ଧନୁଧାରୀ ।
ଏତେ ଭାବ ରହିଲେ ଖ୍ୟାତ୍ ସ୍ଥିରପଟେ
ବନ୍ଧ ପାଣ୍ଡୁସେନାମାନଙ୍କୁ ଘଟପାଟେ ।
ମସ୍ତିଦେଶୀ ବୁହାଇ ରକ୍ତ-ମହାନଦୀ
ବିଷମକୁ ସମରେ ଆଣିଲେ ସମ୍ପାଦ ।
ପାର୍ଥ କାଣ୍ଡରେ ଖ୍ୟାତ୍ ଛୁଡ଼ାନ୍ତେ ମରମ
ରହିଲେ ଯୁଦ୍ଧବାଣ୍ଡେ ସୁମରି କରମ ।
କୁରୁସୈନ୍ୟ ମଧ୍ୟରେ ଅରଜୁନ ପଶି
ଖେଉଦିଲେ ତାହାଙ୍କୁ ବନ୍ଧ ବାଣରାଶି ।
ଆମ୍ଭେମାନେ ମଧ୍ୟ ସୁମରି ଅଦୃଷ୍ଟକୁ
ଉଜାଇଲୁ ତକ୍ଷଣ ସମରେ ପାର୍ଥଙ୍କୁ ।
ମାଳବ ଅଶ୍ୱସାହ କତବ ପ୍ରତିଚ୍ୟ
ଶାଲ୍ୱ ତ୍ରିଗର୍ତ୍ତ ବିଗଭି ଅମ୍ବଷ୍ଠ ଉଦୀଚ୍ୟ ।
ଶୂରସେନ ପ୍ରାଚ୍ୟ ଯେ ଶିବ ବଶସାର
ଭଜିଲେ ପାର୍ଥକାଣ୍ଡେ ନ କରି ସମର ।
ଏ ସକାଶୁ ଖ୍ୟାତ୍ ବୁଢ଼ାଟା ଏକା ହୋଇ
କଗଟୀ ଯୋଝିଲେ ସମରମୁଖେ ଯାଇ ।
ମାରି ଧରି ପିଟ ଯେ ହାଣ ବାନ୍ଧ କାଟ
ଭୀଷ୍ମେ ବୋଲିବାରେ ପୂରିଲା ରଣବାଟ ।
ଶତ୍ରୁଙ୍କର କାଣ୍ଡରେ ଭୀଷ୍ମର ଦେହଟି
ମାଉଁସଯାକ ଲଗି ରହିଲା ହୋଇ କାଟି ।
ଭୀଷ୍ମ ସେହି କାଳରେ କରେ ଧରି ଧନୁ
ଟେକୁଁ ଟେକୁଁ କାଟିଲେ ଇନ୍ଦ୍ରଙ୍କର ସୂନୁ ।
ଦ୍ରୋଣ କୃତବର୍ମ୍ମ ହେ ଜୟଦ୍ରଥ ଶଳ
ଭୂରିଶ୍ରବା ବି ଭଗଦତ୍ତ ମଦ୍ରପାଳ ।
କ୍ରୋଧ ହୋଇ ଅର୍ଜ୍ଜୁନ ଆଗକୁ ଧାଇଁଲେ
ଧନୁରେ ଦିବ୍ୟକାଣ୍ଡ ଯୋଖିଣ ମାଇଲେ ।
ଅର୍ଜ୍ଜୁନଙ୍କୁ ବୋଇଲେ ଅଟ ବଡ଼ ଦୁଷ୍ଟ
ପିତାମହଙ୍କ ପ୍ରାଣ କରିବାକୁ ଭ୍ରଷ୍ଟ ।
ଯୁଦ୍ଧେ ତୁଷ୍ଟ ହୋଇ ଷଣ୍ଢ୍ର ମାରଗଣ
ବଖାଣିଲେ ତୁମ୍ଭ ନୁହେ ଏ ଭଲପଣ ।
ପାଣ୍ଡବରଥୀଏ ଅର୍ଜ୍ଜୁନ ପୃଷ୍ଠଦେଶେ
ଲଗି ଭୀଷ୍ମ ଦେହେ ବନ୍ଧିଲେ ବାଣ ରୋଷେ ।
ସେହି କାଳରେ ଯୁଦ୍ଧ କୁରୁ ପାଣ୍ଡୁଙ୍କର
ସମାନ ହୋଇଲା ହେ ଜାଣ ନରବର ।
ଦେବତା ଦାନବଙ୍କ ସମରକୁ ଭୋଟି
ଲୋକେ ବୋଇଲେ ହେ ବଳିଲା ଏ ଯୁଦ୍ଧଟି ।
ଭୀଷ୍ମଙ୍କୁ ଦଶକାଣ୍ଡ ବନ୍ଧଣ ଶିଖଣ୍ଡୀ
ପୂରାଇଲେ ପାଟି ଖଦଦେ ବାଣ୍ଡଖଣ୍ଡି ।
ସାରଥିଙ୍କ ସେ ଦଶକାଣ୍ଡ ବନ୍ଧଦେଇ
ଦେଲଟି ଧ୍ୱଜଟିକ କାଣ୍ଡକେ ପକାଇ ।
ତା ଦେଖି ଆନ ଧନୁ ନେଲେ ଗଙ୍ଗାସୁତ
ପାର୍ଥ ସେ କାଣ୍ଡ କାଟିଦେଲା ତା ତ୍ୱରିତ ।
ତୁମ୍ଭ ପିତା ଯେତୋଟି ଧନୁକୁ ଧଇଲେ
ଗଣି ଗଣି ପୃଥୁସ୍ୱ ତେତେଟି କାଟିଲେ ।
ଧନୁ ଛୁଡ଼ିବାର ଦେଖିଣ ଭୀଷ୍ମ ବଳୀ
ଧଇଲେ ଶକ୍ତିଟାଏ କରପୃଟେ ତୋଳି ।
ସେ ଶକତ ଯେ ମୃତ୍ୟୁଭଗିନୀ ଉଗ୍ରେ
ଭୀଷ୍ମ ହାତୁଁ ଫିଟି ଧାଇଁଲା ଅତିବେଗେ

ଅର୍ଜୁନ ଜ୍ୱଳକାଣ୍ଡ ପାଞ୍ଚୋଟିଯେ ତାଙ୍କୁ
କାଟିଣ ମଣ୍ଡି ଦେଲେ ସେ ଯୁଦ୍ଧରସାକୁ ।
ଶକତ ଛୁଡ଼ା ଦେଖି ଭୀଷ୍ମ କ୍ରୋଧ ହୋଇ
ବୋଇଲେ ପାଣ୍ଡୁ ସୈନ୍ୟ ମାରଇଁ ମୁଁ ଦଣ୍ଡ
ଜଗତପତି କୃଷ୍ଣ ଦେବକୀଙ୍କ ସୁତ
ଜାଳୁ ତ ଛନ୍ତି ବସି ପାଣ୍ଡବଙ୍କ ହିତ ।
ମେ ମତରେ ମୂର୍ଚ୍ଛିତ ହେଲେ ମୁଣ୍ଡ ଲଡ଼ି
କିଛୁ ନ କର ମୁଁ ମରିବ ଶୋକେ ବୁଡ଼ି ।
ପୁଣି ପାଣ୍ଡୁସୁତେ ତ ଅଟନ୍ତି ଅବଧ
ଯୁଦ୍ଧ କଲେ ସେ ଜିଣିପାରନ୍ତି ବିବୁଧ ।
ଏ ବାହାରେ ଶିଖଣ୍ଡୀ ସ୍ତ୍ରୀ ଶିଷ୍ଟାଏ ହୋଇ
ଆଗରେ ରହିଅଛି ଧନୁଶର ବହି ।
ଏଣୁ ଜନ କଥାକୁ ଦେଖି କରି ମୁହିଁ
ଜାଣୁଅଛି ଯୁଦ୍ଧରେ ମୋର ଜୟ ନାହିଁ ।
ସତ୍ୟବତୀ ବିଭାକାଳରେ ତୋଷତଭେ
ସ୍ୱଇଚ୍ଛା ମରଣକୁ ପିତା ଦେଲେ ମୋତେ ।
ଏଣୁ ଯୁଦ୍ଧେ ମୋତେ କେ ନ ପାରନ୍ତି ମାରି
ତେବେ ତ କାଳ ଆସି ହୋଇଲା ମୋହରି ।
ଏକାଳେ ଋଷିଗଣ ରହି ଆକାଶରେ
ବୋଇଲେ ଭୀଷ୍ମ ଧନୁ ନ ଧର ହାତରେ ।
କାଳ ଆସି ହେଲାଣି ତୁମ୍ଭର ପ୍ରାପତ
ତୁମ୍ଭର ତ ମଧ୍ୟ ହେଲାଣ ତହି ତଉ ।
ଏହିକାଳେ ପବନ ମନ୍ଦ ମନ୍ଦ ହୋଇ
ବହିଣ ଫୁଲାଇଲା ପ୍ରାଣୀଙ୍କର ଦେହି
ଆକାଶେ ଥାଇ ଦେବେ କରି ପୁଷ୍ପବୃଷ୍ଟି
ଦୁନ୍ଦୁଭି ଶବଦରେ ପୂରିଇଲେ ସୃଷ୍ଟି ।
ଆକାଶର ବଚନ ଭୀଷ୍ମଙ୍କର ତୁଲେ
ମୁଁ ଏବା ଶୁଣିଛି ବଚନ ଜାଣ ଭଲେ ।
ଏରୂପେ ଶୁଣି ଭୀଷ୍ମ ଦେବଙ୍କ ବଚନ
ଯୁଦ୍ଧଉତ୍ସାହକୁ କରିଲେ ସେ ନିଉନ ।
ଅର୍ଜୁନ ତ କାଳଦେବଙ୍କ ପରି ଯୋଟି
ଆଗରେ ରହିଥିଲା ନ ପାରିଲେ ଯୋଟି ।
ଏହିକାଳେରେ ପାର୍ଥ କାଳଦଣ୍ଡ ପରି
ଶର କଲେ ଭୀଷ୍ମେ କଦମ୍ବଫୁଲ ପରି ।
ଅର୍ଜୁନ କାଣ୍ଡ-ଭ୍ରମର ଭୀଷ୍ମ ଦେହ-ପଦ୍ମ
ରକ୍ତ-ମଧୁ ପିଇ କରନ୍ତେ ତହିଁ ସଦ୍ମ ।
ଅଙ୍ଗକୁ ମଣ୍ଡନକରି ଭୀଷ୍ମ ମହାରଥୀ
ରଥୁ ଖସି ପଡ଼ନ୍ତେ ତଳେ ହୋଇ ବ୍ୟଥୀ ।
କୁନ୍ତି ପୁଅମାନେ ଯେ ହାହାକାର ରଡ଼ି
କଲେ ନେତ୍ରଯୁଗେ ଲୋତକ ଜଳ ବାଢ଼ି ।
ଏହା ଦେଖି ଆତ୍ମ ହୃଦୟୁ ଧୈର୍ଯ୍ୟ-ଗିରି
ଭୟ-ବଜ୍ର ବାଜ ହୋଇଣ ଗଲା ଚୂରି ।
ସବୁ ଧନୁଷ୍ମାନମାନଙ୍କର ଯେ କେତୁ
କୁରୁ ପିତା ଭୀଷ୍ମ ପଡ଼ନ୍ତେ ଖସି ହେତୁ ।
ଅନ୍ତରୀକ୍ଷ ବାଣୀ ଶୁଭିଲା ତେତେବେଳେ
ନ ଛାଡ଼ ଭୀଷ୍ମ ପ୍ରାଣ ଦକ୍ଷିଣାୟନ କାଳେ ।
ଭୀଷ୍ମ ଦେବବାଣୀ ଶୁଣିଣ ଜ୍ଞାନ ପାଇ
ମନେ କଲେ ଏକାଳେ ମରି ନ ଯୋଗାଇ ।
ରଖିଛି ପ୍ରାଣ ବୋଲି କହି ଦେବତାଙ୍କୁ
ଆଶ୍ରେ କଲେ ଆସି ସେ ଧରଣୀ ମଧ୍ୟକୁ ।
କେବଳ ମୁଣ୍ଡ ଗୋଡ଼ ପିଠି ଯେ ତାହାଙ୍କର
ନ ଛୁଇଁଲା ମହୀକି ଜାଣ ହେ ନରବର ।
ଖଟ ପରି ଶରଶେଯରେ ଭୀଷ୍ମ ପଡ଼ି
ଶୋଇ ଶାନ୍ତଭାଏ ହୋଇଲେ ମୋଡ଼ାମୋଡ଼ି
ତାଙ୍କ ମାତା ଗଙ୍ଗାଙ୍କ ବୋଲେ ଋଷିଶ୍ରେଣୀ
ହଂସରୂପେ ଆସିଲେ ସେ ଯୁଦ୍ଧ-ଧରଣୀ ।
ଭୀଷ୍ମଙ୍କୁ ପ୍ରଦକ୍ଷିଣ କରି କଥାବାର୍ତ୍ତା
ଅନ୍ୟୋନ୍ୟେ ପକାଇଲେ ଦକ୍ଷିଣାୟନ ଚିନ୍ତା
ତାହା ଜାଣିଣ ଭୀଷ୍ମ କହିଲେ ତାହାଙ୍କୁ
ଉତ୍ତରାୟଣ ହେଲେ ଛାଡ଼ିବି ପ୍ରାଣକୁ ।
ବାପଙ୍କ ବରେ ମୁଁ ପାଇଛି ଇଚ୍ଛାମୃତ୍ୟୁ
ଏଣୁ ମୋତେ ଛୋଟି ନ ପାରେ କାଳେ ମୃତ୍ୟୁ
ଏହିରୂପେ ଯେ ଭୀଷ୍ମ ହଂସରୂପୀ ମୁନି
ଆଗେ ଋଷି ବାଣୀ ରହିଲେ ହୋଇ ତୁନି ।
ହଂସରୂପୀ ମୁନିଏ ଦକ୍ଷିଣକୁ ମୁଖ
କରି ଗଲେ ଯେ ଯାହା ସ୍ଥାନେ ବହି ସୁଖ ।
କୁରୁ-ସୂର୍ଯ୍ୟ ଯେ ଭୀଷ୍ମ ବାଣ-ଅସ୍ତଗିରି
ପାଇ ଅସ୍ତ ହୁଅନ୍ତେ ସେନାଏ ତୁମ୍ଭରି ।
ବସ୍ତ୍ରରଲେ ଆସ୍ତେ କରିହା ଏବେକସ
ଆଜଠାରୁ ଗଲାଟି ଜୀବନର ଆଶ ।
ପାଣ୍ଡୁସୁତେ ଯେ ଭୀଷ୍ମ ବୁଢ଼ାଙ୍କୁ ତଳରେ
ଶୁଆଇ ତହୁଁ ମାରି ଢେର୍ଲିଲେ ଭେଲରେ ।

ଶଙ୍ଖମାନ ବଜାଇ କଲେ ସିଂହନାଦ
ସେ ଶବଦେ ପଡ଼ିଲେ ଗିରିଶୃଙ୍ଗ ଝଡ଼ି ।
ଭୀମସେନ ବାହୁ ମୋଡ଼ିଣ ଦନ୍ତ ଓଷ୍ଠ
ମାର କରିଦେଲେ ସେ ଗର୍ଜ୍ଜି ଟିକ ମୋଠ ।
ଦୁଇସୈନ୍ୟ ଲୋକେ ଶସ୍ତ୍ରକୁ ଥୋଇଦେଇ
ଆହା ଭୀଷ୍ମ ମଲେଟି ବୋଇଲେ ବୋବାଇ ।
କେତେ ଲୋକ ବୋଇଲେ ଧିକ ଏ କ୍ଷତ୍ରିୟ
କୁଳରେ ହୋଇବାର ଜନମ ତନୟ ।
ପିତୃ ବଶିକୁଳ ତ ଯୁଦ୍ଧ ଦେଖୁଥିଲେ
ଭଲ ଥିଲେ ଭୀଷ୍ମ ବୋଲିଣ ପ୍ରଶଂସିଲେ ।
କୁରୁନାଥ ବୋଇଲେ କୁଳେ ବୁଢ଼ାହୋଇ
ଥିଲେ ଭୀଷ୍ମ ଏବେ ଗଲେ ସେ ପ୍ରେତ ହୋଇ
ଜଳତର୍ପଣ ମନେ କରି ଗଙ୍ଗାସୁତ
ଯୋଗ ଆସ୍ଥା କରିଲେ ରହିଣ ଜାଗ୍ରତ ।
ଧୃତରାଷ୍ଟ୍ର ବୋଇଲେ ଭୀଷ୍ମ ମଲ ଶୁଣି
କଲଣି ମୁଁ ମନେ ମଲେ ମୋ ପୁତ୍ରଶ୍ରେଣୀ ।
ସ୍ଥିର ହୋଇ ଭୀଷ୍ମରେ କରୁଥିଲେ ମୋ ଲୋକ
ରହିଲେ ଯୁଦ୍ଧେ କହ ମନ୍ତ୍ରୀଙ୍କ ତିଳକ ।
ପିତା ମରିବାର ଶୁଣି ଯା ମୁଁ ଜୀଇଛି
ସବୁ ଦୁଃଖ ଭୁଞ୍ଜିବ ଏଣିକ ଜାଣୁଛି ।
ପଥରୁ କଠୋର ହୋଇଛି ମୋ ହୃଦୟ
ଫାଟୁନାହିଁ ଶୁଣିଲେ ପିତା ମୃତ୍ୟୁଷୟ ।
ଭୀଷ୍ମ ଶରତଲ୍ପେ ଥାଇଣ କସ କଲେ
ଏହା ମନ୍ତ୍ରିବର ହେ ମୋତେ କହ ଭଲେ ।
ଯାହାଙ୍କୁ ପର୍ଶୁରାମ ନାହାନ୍ତି ପାରି
ତାଙ୍କୁ ମାରିଗଲା ଶିଖଣ୍ଡୀ ହୋଇ ସ୍ତ୍ରୀ ।
ସଞ୍ଜୟ ବୋଇଲେ ହେ ଶରଶେଯେ ଭୀଷ୍ମ
ଶୁଅନ୍ତେ ଦୁଇକୁଳ ଯୋଦ୍ଧା ଯୁଦ୍ଧ ଭସ୍ମ ।
ଛାଡ଼ିଦେଲେ ସେ ମହାଦୁଃଖକୁ ଭାବିଲେ
ଗାରକ୍ଷୟ ବନ୍ଧୁ ବନ୍ଧନ ମନେକଲେ ।
ଛନ୍ଦା-ଅନ୍ଧକାରେ ପଡ଼ିଣ ଦୁଇଦଳ
ଭୀଷ୍ମ-ଚନ୍ଦ୍ର ବନା ହୋଇଲେ ସେ ବକଳ ।
ଭୀଷ୍ମ ପରି ମହାନେ ପୃଥ ଆଜ ନାହିଁ
ପିତାମାତା ଛାଡ଼ି ଅଛନ୍ତି ଯେହ୍ନ ମସ୍ତ ।
ଏ ବାହାରେ ପୃଷି ନ କରିଲେ ସେ ହାର
ହେଲେ ପୃଥ ହୋଇବ ବୋଲି ନରବର ।

ଏଥି ଭ୍ରମରେ ସିଦ୍ଧ ସ୍ମରଣ କରନ୍ତେ
ଦ୍ୱିଜ ମେନାଏ ମିଶି ପ୍ରଶଂସିଲେ ଗବେ ।
ଭରତବଂଶ ପିତା ପାନ୍ତେ ଅସ୍ତ୍ର ଦଶା
କୃଷ୍ଣ ପୃଷେ ବୋଇଲେ ହେଲାଇଁ ଲେକହସା
କର୍ଣ୍ଣ ଦୁର୍ଯ୍ୟୋଧନ ଯେ ପକାଇ ନିଃଶ୍ୱାସ
ବୋଇଲେ ଗଲା ତ ରେ ଏବେ ଆସି ନାଶ ।
ଦୁର୍ଯ୍ୟୋଧନ ବୋଲଇ ଦୁଃଶାସନ ବୀର
ବାହାଣଲା ଦ୍ରୋଣଙ୍କୁ ପଶ୍ଚିମ ବସ୍ତର ।
କୁରୁମାନେ ତାହା ଦେଖିଣ ଗୋଟି ହୋଇ
ବେଢ଼ିଲେଟି ଦୁଃଶାସନକୁ ସର୍ବେ ଯାଇ ।
ମନେ କଲେ ଦ୍ରୋଣଙ୍କୁ କହିବେ ଏ କସ
ଶୁଣିବା ଆମ୍ଭେ ଥିଲେ ଏହାଙ୍କର ପାଶ ।
ଦୁଃଶାସନ ଯାଇଣ ଦ୍ରୋଣଙ୍କର ପାଶେ
ବୋଇଲେ ଭୀଷ୍ମ ମଲେ ଅର୍ଜ୍ଜୁନଙ୍କ ଶେଷେ ।
ଦ୍ରୋଣ ଶୁଣିଣ ଆହା ଭୀଷ୍ମ ବୋଲି ରଡ଼
ଛାଡ଼ି ଧନୁ ଥୋଇ ରଥରେ ଗଲେ ପଡ଼ ।
ପୁଣି ଧୈର୍ଯ୍ୟ ପାଇ ଉଠିଣ ଦ୍ରୋଣଗୁରୁ
ସୈନ୍ୟଙ୍କୁ ବୋଇଲେ ଯେ ଭୀଷ୍ମ ହତକାରୁ
ଯୁଦ୍ଧରେ ପଡ଼ିଲେଣ ନ କର ସମର
କରିଲେ ପ୍ରାଣରକ୍ଷା ନାହିଁଟି କୁମର ।
ଏରୂପେ ଶୁଣି ଦ୍ରୋଣଗୁରୁଙ୍କ ବଚନ
ଯୁଦ୍ଧବଧ ହେଲଗଲେ କୁମ୍ଭ ସେନାଜନ ।
ଗୁରୁଙ୍କର ଜବୁଭି ପାଣ୍ଡୁ ପାଞ୍ଚଭାଇ
ଜାଣି ସଇନକୁ ଆଣିଲେ ଲେଉଟାଇ ।
ସବୁ ରାଜାମାନେ କାଢ଼ିଣ କବଚକୁ
ମୁଞ୍ଚ ନେହଳକ ଆସିଲେ ଭୀଷ୍ମଠାକୁ ।
କୁରୁମାନଙ୍କର ଭୂଲରେ ଯେ ପାଣ୍ଡବେ
ଭୀଷ୍ମଙ୍କୁ ସଙ୍ଗେ ନେଲେ ଆସିଲେ ସର୍ବେ ।
ଭୀଷ୍ମଙ୍କ ପାଦରେ କୁରୁ ପାଣ୍ଡୁ ଦୁଇ
ନମସ୍କାର କରି ରହିଲେ ଛିଡ଼ା ହୋଇ ।
ଭୀଷ୍ମ ବୋଇଲେ ହେ ଆସିଲଟିକ ଭଲେ
ତୁମ୍ଭଙ୍କୁ ଦେଖି ହୃଦ ହୃଷ୍ଟେ ମୋର ଫୁଲେ ।
ଦେଖ ମୋହର ମୁଣ୍ଡ ଲମ୍ବୁଛି ତଳକୁ
ସିନ୍ଥାଣ ଖଣ୍ଡେ ଦିଅ ଲଦବ ତାହାକୁ ।
ତା ଶୁଣି କୁମ୍ଭ ନୃପ ହଂସୂଲ୍ମ ତୁଳୀମାଣ୍ଡି
ଆଣିଲେ ବସାମାନଙ୍କରୁ ଯେ ବସ୍ତ୍ର ।

ଭୀଷ୍ମ ବୋଇଲେ ଏ ନୃପତି ଏ କାଳକୁ
ମାଣ୍ଡିସରେ ସାଇତ ରଖ ନେଇ ସ୍ୱାକୁ ।
ଏହା କହିଣ ନୃପତିଙ୍କ ବୃଦ୍ଧ ପିତା
ଅର୍ଜୁନଙ୍କୁ ବୋଇଲେ ଆହେ ଧନୁର୍ବେଦ ।
ସିନ୍ଥଣଟିଏ ଶେଯ ଅନୁରୂପେ କରି
ଦିଅ ବାବୁ କହିବା ବାକ୍ୟ ମନେ ଧରି ।
ଏହା ଶୁଣି ଅର୍ଜୁନ ନୟନ ଯୁଗଳେ
ଲୋତକ ଭରି ତାଙ୍କୁ କହିଲେ ବଚନେ ।
କସ ଆଜ୍ଞା ମୋତେଟି ଦେଲେ ପିତାମହ
କହିବ ତାହା ମୋତେ ଭଲ କରି କହ ।
ଭୀଷ୍ମ ବୋଇଲେ ମୁଁ କହିଲି ଆଗ ଯାହା
ନ ବସ୍ତ୍ର ବାବୁ ହେ କର ବେଗେ ତାହା ।
ବୁଦ୍ଧିବଳେ ବୁଝେ ତ ଗୁହ୍ୟ ଶୁଦ୍ଧ ପର
କୁମ୍ଭଙ୍କୁ କହିବାକୁ ଅଛୁ କ ମୋହର ।
ଅରଜୁନ ଏହା ଶୁଣିଣ ତୋଷମନ
ହୋଇ କରେ ଧଇଲେ ଗାଣ୍ଡିବ ବହନ ।
ବିଶର ବନ୍ଧିଲେ ମୁଗୁର ପୋତି ହୋଇ
ବେକତଳେ ମୁନ ରହିଲା ଲାଗି ଯାଇ ।
ଶେଯ ଅନୁରୂପେ ମୂଚ୍ଛନା ଗଙ୍ଗାସୁତ
ପାଇଣ ପ୍ରଶଂସିଲେ ପାର୍ଥଙ୍କୁ ବହୁତ ।
ବୋଇଲେ ଆଜ ସ୍ୱା ନ କଲେ ପାର୍ଥ ତୁମ୍ଭେ
ସତ୍ୟ ମୁଁ କହୁଛି ଦିଅନ୍ତି ଶାପ ଆମ୍ଭେ ।
ପୁଣି ନୃପତିଙ୍କୁ ବୋଇଲେ ଭୀଷ୍ମ ସ୍ୱାମି
ଉତ୍ତରାୟଣ ଯାଏ ରହିଛି ମୁଁ ଆଇଁ ।
ମୋ ପାଖେ ଜଣଟିଏ ଥଅ ହେ ଖୋଜାଇ
ସୂର୍ଯ୍ୟଙ୍କୁ ଉପାସନା କରୁଥିବ ମୁହିଁ ।
ଆହେ କୁରୁ ପାଣ୍ଡବେ ମୋର ବୋଲ କରି
ଛାଡ଼ିଦିଅ ହେ ଆଜଠାରୁ ମରାମରି ।
ତୁମ୍ଭ ପୁଅ ସଙ୍ଗରେ ବେନ ବଇଦକୁ
ଆସିଲେ ଭୀଷ୍ମ ଦେହୁଁ କାଣ୍ଡ କାଢ଼ିବାକୁ ।
ଗଙ୍ଗାସୁତ ଦେଖି ବୋଇଲେ ଏ କି କଥା
ଛାଡ଼ିଦିଅ ବାବୁ ହୃଦକୁ ମୋର ବ୍ୟଥା ।
ବଇଦକୁ ବସ୍ତ୍ର ଯେ ଅଳଙ୍କାର ଦେଇ
ଦିଅ ପଠାଇ ତୁମ୍ଭଙ୍କୁ କହୁଥାଇଁ ।
ଏ କାଣ୍ଡ ଲାଗି ମୁଁ ହୋଇବ ଯେବେ ପୋଡ଼ା
ସ୍ୱର୍ଗ ମୋ ଆଉସ ବେତେ ହୋଇଥିବ ଛଡ଼ା ।

ଦୁର୍ଯ୍ୟୋଧନ ବୈଦ୍ୟଙ୍କୁ ଧନ ରତ୍ନ ଦେଇ
ବୋଇଲେ ଯାଅ ଭୀଷ୍ମ କରୁଛନ୍ତି ନାହିଁ ।
ଭୀଷ୍ମଙ୍କ ସର୍ବ ସ୍ୱଧର୍ମରେ ବୁଦ୍ଧି ଦେଖି
ସବୁ ରାଜାମାନେ ହୋଇଲେ ଅତି ସୁଖୀ ।
କୁରୁ ପାଣ୍ଡୁ ଦୁହେଁ ଜଗାଇ ତାଙ୍କ ଲୋକ
ଏ ଅନ୍ତେ ଗଲେ ବସାଠାକୁ ଧରି ଶୋକ
କୃଷ୍ଣ ଯୁଧିଷ୍ଠିରେ ବୋଇଲେ ବଡ଼ ଭାଗ୍ୟ
ହେଲା ଆଜ ମଲେ ଯା ଭୀଷ୍ମ ମହାଭାଗ ।
ଦେବଯକ୍ଷ ଦାନବେ ଅଜେୟ ଟି ସେହି
ପାର୍ଥ ବିନା ତାଙ୍କୁ ଜିଣିବ କାର ନାହିଁ ।
ଯୁଧିଷ୍ଠିର ବୋଇଲେ ତୁମ୍ଭ ଥିବାଠାରେ
ବଡ଼ ହୋଇବା କେ ଭୀଷ୍ମଙ୍କୁ ମାରିବାରେ ।
କୃଷ୍ଣ ବୋଇଲେ ହେ କହିଲ ଯାହା ରାଜା
ଶୁଣି ରଙ୍ଗେ କରି ତୁମ୍ଭଙ୍କୁ ମନେ ପୂଜା ।
ସେହି ଦିନ ରଜନୀ ଶେଷରେ ପାଣ୍ଡବେ
କୁରୁଏ ଗଲେ ଭୀଷ୍ମ ସମୀପକୁ ସବେ ।
ଭୀଷ୍ମଙ୍କର ପାଦରେ କରି ନମସ୍କାର
ରହିଲେ ଛିଡ଼ା ହୋଇ ଯୋଡ଼ି ବେନି କର ।
ସହସ୍ରସଂଖ୍ୟା କନ୍ୟା କର୍ପୂର ଚନ୍ଦନ
ସିଞ୍ଚିଲେ ନେଇଣ ଭୀଷ୍ମଙ୍କ ଅପଘନ ।
ଏହା ବାହାରେ ଲିଆମାନଙ୍କୁ ଆଣ୍ଡୋଳ
କରି ଭୀଷ୍ମଦେହରେ ପକାଇଲେ ବାଳୀ ।
କୁରୁକ୍ଷେତ୍ରେ ଯେତେକ ବାଳ ବୃଦ୍ଧ ଥିଲେ
ସନ୍ତୋଳିବାକୁ ତୁମ୍ଭ ପିତାଙ୍କୁ ଆସିଲେ ।
ନଟେ ନାଟ ଭୀଷ୍ମଙ୍କ ଆଗରେ ଆଚରି
ନେଲେ ଧନ ରତନ ବସ୍ତ୍ର ମାଗିକରି ।
ଗାୟକେ ସେହିରୂପେ ଗାଇକରି ଗୀତ
କୁଟୁମ୍ବ ପୋଷି ବାକୁ ଘେନ ଗଲେ ବହୁ ।
ଭୀଷ୍ମ କାଣ୍ଡ ମୁନ ବାଡ଼ରେ ଦୁଃଖ ହୋଇ
ମାଗିଲେ ପାଣି ନୃପତି ମୁଖ ଚାହିଁ ।
ଏହା ଶୁଣି ରାଜାଏ ଭକ୍ଷ୍ୟ ସାମଗ୍ରୀ
ତୂଳରେ ଅଣାଇଲେ ସୁବାସିତ ବାରି ।
ଭକ୍ଷ୍ୟ ପାଣି ଦେଖିଣ ଭୀଷ୍ମ ମହାବାହୁ
ବୋଇଲେ ଲୋଡ଼ା ନାହିଁ ଯେଣିପିବା ହେଉ
ଅର୍ଜୁନଙ୍କୁ କେବଳ ଅଣାଅ ଡକାଇ
ଅରେ ତାର ମୁଖକୁ ଦେଖିବଇଁ ମୁହିଁ ।

ଅର୍ଜୁନ ତ ଭୀଷ୍ମ ପାଖରେ ରହିଥିଲେ
ନମସ୍କାର କରି ଆଗରେ ଛିଡ଼ା ହେଲେ ।
କିସ ଆଜ୍ଞା ମୋତେ କରିବ ପିତାମହ
କରିବି ତାହା ଏବେ ଭଲକରି କହ ।
ଭୀଷ୍ମ ବୋଇଲେ ଆରେ ଦେଖ ବାବୁ ଦେହ
ତୋ କାଣ୍ଡ ବାଜବାରେ ହେଉଛି କଡ଼ଦାହ ।
ଏହାର ଶାନ୍ତ ହେବା ପାଇଁ ମୋତେ ପାଣି
ଦଅ ବେଗେ ଆଣି ଗାଣ୍ଡୀବଧନୁଷ୍ପାଣି ।
ଦେବ ପାଣି ବୋଲି ଭୀଷ୍ମଙ୍କ କହି ବୀର
ଆରୋହିଲେ ସେ କପିଧ୍ୱଜରଥବର ।
ଗାଣ୍ଡୀବଧନୁ ଥରେ ଟଙ୍କାରି ଦଅନ୍ତେ
କମ୍ପିଗଲେ ତୁମ୍ଭ ସମସ୍ତ ନରପତେ ।
ବଜ୍ରରୁ ନିସ୍ବ ର ଗାଣ୍ଡୀବଧନୁଧ୍ୱନ
କେ ଶୁଣି ତା ନୃପ ନୋହିବ ଭୟପ୍ରାଣ ।
ଏ ଅନ୍ତରେ ବୁଲିଲେ କରି ପ୍ରଦକ୍ଷିଣ
ମନ୍ତ୍ରିକ ପାର୍ଜନ୍ୟାସ୍ତ୍ର ବୀର ଫାଲଗୁନ ।
ସେ ଅସ୍ତ୍ର ମନ୍ତ୍ର ଭେଦ ଭୀଷ୍ମଙ୍କ ଦକ୍ଷିଣ—
ପାଖରୁ ଜଳଧାର ଜାତ କଲି ଜାଣ ।
ଭୀଷ୍ମ ସେ ଜଳ ଦେଖି ଅତି ତୋଷ ହୋଇ
ପିଇ ସିକ୍ତହେଲେ ହସ୍ତିନା ନରସାଇଁ ।
ତୁମ୍ଭର ରାଜାମାନେ ଅର୍ଜୁନ ବିକ୍ରମ
ଦେଖି ମନେ କଲେ ଏ ଆଶ୍ଚର୍ଯ୍ୟ କରମ ।
ପାଣ୍ଡୁସେନାମାନେ ତ ପାଖେ ରହିଥିଲେ
ତାହା ଦେଖି ଶଙ୍ଖ ଦୁନ୍ଦୁଭି ବଜାଇଲେ ।
ଭୀଷ୍ମ ବୋଇଲେ ହେ ଅର୍ଜୁନ ତୁମ୍ଭଠାରେ
ଏହା ଆମ୍ଭେ ବଡ଼ ବୋଲିବା କି ରୂପରେ ।
କୃଷ୍ଣଙ୍କ ସହାୟେ ଉତ୍ତମ କର୍ମମାନ
କରି ତୁମ୍ଭେ ତୋଷିବ ନିଜ ବନ୍ଧୁଜନ ।
ମୋତେ ପୂର୍ବେ ଯଥା ନାରଦ କହିଛନ୍ତି
ସେରୂପେ ତୁମ୍ଭ ଗତି ଦେଖୁଛି ମୁଁ ନିତି ।
ଚକ୍ଷୁଷ୍ମଦେ ଗାଈ ତେଜରେ ଦିବାକର
ଜଙ୍ଗଲରେ ମନୁଷ୍ୟ ସରିତେ ସାଗର ।
ଗିରିରେ ହିମାଳୟ ପକ୍ଷୀରେ ଗରୁଡ଼
ଜାତି ଦ୍ୱିଜ ଧାନୁଷ୍କରେ ତୁମ୍ଭେ ବଡ଼ ।
ଦ୍ରୋଣ କୃଷ୍ଣ ସଞ୍ଜୟ ବିଦୁର ବଚନ
ନ ଶୁଣିଲା ପାପ ବର୍ବର ଦୁର୍ଯ୍ୟୋଧନ ।

ଏ ସକାଶୁ ଜାଣୁଛି ଭୀମ ପରାଘାତ
ପାଇ ନିକଟେ ସେ ମସ୍ତକ ହେବ ଗତ ।
ଏହା ଶୁଣିଣ ଦୁର୍ଯ୍ୟୋଧନ ନରସାଇଁ
ଦେଲେକ ଆପଣାର ମୁଖକୁ ଶୁଖାଇ ।
ପୁଣି ଦୁର୍ଯ୍ୟୋଧନେ ବୋଇଲେ ନୃପ କ୍ରୋଧ
ଛାଡ଼ ନୋହିଲେ ଟି ନିକଟେ ହେବ ବଧ ।
ପାର୍ଥ ଜଳଧାର ସର୍ଜନା କଲା ଯାହା
ଦେଖିତ ହେଲେ ନୃହନ୍ତା କାହା ହାତେ ଏହା
ବୈଷ୍ଣବ୍ୟ ବାୟବ୍ୟ ବାରୁଣ ପାଶୁପତ
ଆଗ୍ନେୟ ସୌମ୍ୟ ଐନ୍ଦ୍ର ବ୍ରାହ୍ମ ପ୍ରାଜାପତ୍ୟ ।
ଧାତ୍ର ତ୍ୱାଷ୍ଟ୍ର ସାବିତ୍ର ଆଦି ଅସ୍ତ୍ରଗଣ
ବିଧିରେ ଚଳିଛନ୍ତି ପାର୍ଥଠାରେ ଜାଣ ।
ଏ ବାହାରେ କୃଷ୍ଣଙ୍କଠାରେ ରହିଛନ୍ତି
ଅପରେ ଜାଣିମା ଥାଉ ଶୁଣି ତ ନାହାନ୍ତି ।
ପାଣ୍ଡବଙ୍କୁ ଜିଣିବା କରିଛ ଯା ମନ
ଏହା ଜାଣି ତା ଛାଡ଼ିଦିଅ ଦୁର୍ଯ୍ୟୋଧନ ।
ଏବେ ତ ଭାଇ ପୁଅ ଲୋକେ ଗାଉଛନ୍ତି
କର ଯାଇ ପାଣ୍ଡୁସୁତଙ୍କ ତୁଲେ ପ୍ରୀତି ।
ଭୀଷ୍ମ ଅନ୍ତ ହୋଇ ନିବର୍ତ୍ତୁ ଏବେ ଯୁଦ୍ଧ
ନୁହ ବାବୁ ପାଣ୍ଡବଙ୍କର ହାତେ ବଧ ।
ପାଣ୍ଡବଙ୍କୁ ରାଜ୍ୟରୁ ଅଧେ ଦେଇ ସୁଖେ
ହସ୍ତିନା ଭୋଗ କର ନ ପଡ଼ିଣ ଦୁଃଖେ ।
ବାବୁ ପୁଅ ମାମୁ ଭଣଜା ଭାଇ ଭାଇ
ନିଅନ୍ତୁ ବନ ଏବେ ଏକମନ ହୋଇ ।
ଏହା କହି ସାରିଣ ରଥୀଙ୍କ ଶେଖର
ଭୀଷ୍ମ ତୁନି ହୋଇଲେ ନ କହି ଉତ୍ତର ।
ଭୀଷ୍ମ ତୁନି ହେବା ପାଣ୍ଡବମାନେ ଜାଣି
ଯେ ଯାହାର ବସାକୁ ଗଲେ ସେହିକ୍ଷଣି ।
ଭୀଷ୍ମଙ୍କ ପଡ଼ିବାର ଶୁଣି ଆଧିରଥୀ
କର୍ଣ୍ଣ ଧାଇଁ ଆସିଲେ ଭୟେ ହୋଇ ବ୍ୟଥୀ ।
ଭୀଷ୍ମଙ୍କର ପାଦରେ କରି ନମସ୍କାର
ବୋଇଲେ କର୍ଣ୍ଣ ମୁଁ ଜାଣ ହେ ଭୀଷ୍ମବୀର ।
ତୁମ୍ଭଠାରେ ମୁହିଁ ଅପ୍ରାଧ କରିଅଛି
ନ ସେନ ତାହା ମନେ ଶାନ୍ତନୁଙ୍କ ବଶ୍ଚି ।
ଭୀଷ୍ମ ତାହା ଶୁଣିଣ ମନ୍ଦ ମନ୍ଦ ସ୍ମରି
କର୍ଣ୍ଣଙ୍କୁ ଝିଙ୍କି ହୃଦେ ଲଗାଇଲେ ନେଇ ।

ବୋଇଲେ ବାବୁ ଯେବେ ନ ଆସନ୍ତ ଅଜ
ପାଶକୁ ଶାପ ମୁଁ ଦଅନ୍ତି ଦୁଃଖେ ମର୍ଜି ।
ସୂର୍ଯ୍ୟ ତୁମ୍ଭର ପିତା କୁନ୍ତୀ ତୁମ୍ଭ ମାତା
କହିଛନ୍ତି ମୋତେ ନାରଦ ଦେବଦର୍ଶୀ ।
ଏ ବାହାରେ ବ୍ୟାସ କୃଷ୍ଣ କହିଅଛନ୍ତି
ଏ ଭେଦ ମୋ ନାହିଁ ତୁମ୍ଭଙ୍କୁ ଦ୍ୱେଷମତି ।

ବୃଥା ପାଣ୍ଡବଙ୍କର ବୋଲିବାରୁ ତୁମ୍ଭେ
ତୁମ୍ଭର ତେଜହାନି କରିଥାଉଁ ଆମ୍ଭେ ।
ତୁମ୍ଭ ବଳ ବୀର୍ଯ୍ୟ ଶଉର୍ଯ୍ୟ ମୁଁ ଜାଣଇଁ
ତୁମ୍ଭର ପରି ଏକା ତୁମ୍ଭେ ଅଟ ମହି ।
ଧନୁଶର ବିଦ୍ୟାରେ କୃଷ୍ଣାର୍ଜୁନ ସମ
ଅଟ ଆହେ କର୍ଣ୍ଣ ବୀରଙ୍କର ଉତ୍ତମ ।
ପୂର୍ବେ ତୁମ୍ଭେ ଏକା ହୋଇ ନୃପଶ୍ରେଣୀ
ଜିଣି ଦୁର୍ଯ୍ୟୋଧନକୁ କନ୍ୟା ଦେଲ ଆଣି ।

ଜରାସନ୍ଧ ତୁମ୍ଭର ସଙ୍ଗତେ ସମର
କରି ଯୁଦ୍ଧଦାଣ୍ଡେ ଛାଡ଼ିଲା କ୍ରୋଧ ତାର ।
ବ୍ରାହ୍ମଣ୍ୟ ସତ୍ୟବାଦୀ ତୁମ୍ଭଙ୍କୁ କି କହି
ସୂର୍ଯ୍ୟପରି ତେଜ ବହଇ ତୁମ୍ଭ ଦେହି ।
ତୁମ୍ଭଠାରେ ଯେଉଁ କ୍ରୋଧ ମୁଁ ଥିଲି ଧରି
ଆଜ ସେ କ୍ରୋଧ ଦେଲି ହୃଦୁଁ ଦୂର କରି ।
ଦଇବ ଯାହା କରିଥାଏ ହୋଏ ତାହା
ବଶ୍ୱର କର ମନେ କର୍ଣ୍ଣ ବୀରନାହା ।
ପାଣ୍ଡୁସୁତମାନେ ତ ତୁମ୍ଭର ସୋଦର
ତାଙ୍କ ତଳେ ପ୍ରୀତି ଏବେ ମୋ ବୋଲ କର
ସବୁ ରାଜା ମାନେ ରହନ୍ତୁ ସୁଖୀ ହୋଇ
ନ ମରନ୍ତୁ ବୃଥା ସେ ଯୁଦ୍ଧଦାଣ୍ଡେ ଧାଇଁ ।
କର୍ଣ୍ଣ ବୋଇଲେ ମୁଁ କୁନ୍ତୀଙ୍କ ପୁଅ ବୋଲି
ପୂର୍ବରୁ ଜାଣିଛି ହେ ଭୀଷ୍ମ ମହାବଳୀ ।
ଦୁର୍ଯ୍ୟୋଧନ ଅନ୍ନ ଖାଇଣ ମୁଁ ବଢ଼ିଛି
ଏଣୁ ତାଙ୍କୁ କେବେ ମୁଁ ନ ପାରେ ମୁଞ୍ଚିଛି ।
କହିଛି ଦୁର୍ଯ୍ୟୋଧନ ପାଇଁ ମୁଁ ପରାଣ
ଛାଡ଼ିବେକ ଏ କଥା ସତ୍ୟ ମୋର ଜାଣ ।
ଦୁର୍ଯ୍ୟୋଧନ ରଜାର ହେବ ଯେଉଁ ଦଶା
ମୋର ସେ ଜାଣ ଆହେ ଭୀଷ୍ମ ମହାଯଶା ।

ଆପଣେ ପୂଛୁବେ କହିଛ ମହା କ୍ଷୟ
ହେବ ବୋଲି ଏବେ ତା କର ହେ ହୃଦୟ ।
କୃଷ୍ଣ ଅର୍ଜୁନ ତ ଅଟନ୍ତି ଅଜେୟ
ବୋଲି ଜାଣିଅଛି ମୋ ହୃଦୟ ନିଶ୍ଚୟ ।
ତେବେ ହେଲେ ତାଙ୍କୁ ମୁଁ ଯୁଝିବି ଜାଣଇଁ
ତହିଁ ପିତାମହ ଅନୁଜ୍ଞା ମୁଁ ମାଗଇଁ ।
ଦୁଷ୍ଟବୁଦ୍ଧିରେ ମୁଁ ତୁମ୍ଭର ଅପାକାର
କରିଅଛି ଯେତେକ ତାହା କ୍ଷମାକର ।

ଭୀଷ୍ମ ବୋଇଲେ ହେ କହିଲି ସିନା ମୁହିଁ
ନ ଶୁଣିଲ ଯେବେ ତା ଯୁଦ୍ଧ କରି ଯାଇ ।
ଅର୍ଜୁନ କାଣ୍ଡାଗ୍ନିରେ ଦେହକୁ ତୁମ୍ଭର
ଦିଅ ଧରି ହୋମ କରି ହେ କର୍ଣ୍ଣବୀର ।
ଛଅ ସୁକୁ ଲେଖିଛି ଧର୍ମଯୁଦ୍ଧ ମୃତ୍ୟୁ
କର ଯୁଦ୍ଧ ଏହି କଥାକୁ କରି ହେତୁ ।
ଯାଇଁ ଥିଲା ଯାକ କହିଲି ମୁଁ ଓଆର
ହେଉଥିଲ ତୁମ୍ଭେ ତାହା ଦୂର କରି ।
ଏବେ ମଲାବେଳକୁ ଦେଲି ଧର୍ମଶିକ୍ଷା
ତେବେ ହେଲେ ନ ଛାଡ଼ିଲ କି ଯୁଦ୍ଧକାଂକ୍ଷା ।

ତୁମ୍ଭ ଅଦୃଷ୍ଟରେ ଅଛି ଏ କଥା ଗୋଟି
ଖାଇବେ ତୁମ୍ଭ ମାଂସ ବିଲୁଆ ମେଳି ପାଟି ।
ମୁଁ ବୋଲିବାକୁ ଆଉ ଅଛି କେଉଁ କଥା
ତୁମ୍ଭଙ୍କୁ କହି କହି କଲିନି ପାଟି ବ୍ୟଥା ।
ଧାର୍ମିକ ଲୋକଙ୍କର ହେଉଛି ବିଜୟ
ଅଧାର୍ମିକ ଲୋକଙ୍କ ହେଉଛି ଅଜୟ ।
ଏହି କଥାଟି ଭାବ କରୁଥିବ ଯୁଦ୍ଧ
ନ ହେବ ଏହା ଛାଡ଼ ହେଲେ ରଣେ କ୍ରୋଧ

ଏହା ଶୁଣି ରାଧାନନ୍ଦନ ତୋଷ ହୋଇ
ବନ୍ଦନା କରି ଭୀଷ୍ମଙ୍କର ପାଦ ଦୁଇ ।
ନିଜ ରଥବର ଆରୋହି ଦୁର୍ଯ୍ୟୋଧନ—
ନରପତି ପାଶକୁ କଲେ ସେ ଗମନ ।

ଭୀଷ୍ମପର୍ବ ଦଶ ଦିବସ ଯୁଦ୍ଧାନଳ
ଏହିଠାରେ ଲିଭିଲା ପାଇ ଶେଷ ଜଳ ।
ଏ ପର୍ବେ ଜ୍ଞାନଯୁକ୍ତ କଥାମୃତ ଗୋଟି
ହୋଇଛି ବହୁ ବୀରଙ୍କର ବାରତ୍ତେ କି ।

ସାଧୁଜନେ ଏହା ଜାଣିଣ କଷ୍ଟ ପାଟି
ହେଲଣ ପିଅ ପିବ ପାପ-ତୃଷ୍ଣା ତୁଟି ।
ସତର ଛତିଶ ଶକାବ୍ଦ ଏ କାଳକୁ—
ଗଣି ଆଣିଅଛନ୍ତି ଗଣକେ ମନକୁ ।
ରାମଚନ୍ଦ୍ର ସିଂହ ନୃପଙ୍କର ତନୟ
ତନୟ କୃଷ୍ଣସିଂହ ମୋ ନାମ ଉଦୟ ।

ଧରାକୋଟମଣ୍ଡଳେ ହୋଇଣ ମୁଁ ରାଜା
ଅଧରମ କଥାରେ ବଳାଇଲି ମଜା ।
ହିତ ହୋଇବେ ବୋଲି ରଖି ଅସାଧୁଙ୍କୁ
ଛାଡ଼ିଦେଲି ମୁଁ ସାଧୁସଙ୍ଗମମାର୍ଗକୁ ।
ହରିକଥା ଘନେ ଟି ନ କଲି କୀର୍ତ୍ତନ
ବଳାଇଲି ନର୍ତ୍ତନ ଗୀତ ବାଦ୍ୟେ ମନ ।
ଧନ ଜନ ବଦନ ସ୍ୱରସାରେ ପ୍ରୀତି
କରି ହରିନେଲି ବସିଣ ଅହୋରାତି ।
ଦୁଷ୍କୃତ କର୍ମମାନଙ୍କୁ ଆଦରିଲି
ସୁକୃତ କରୁପେ ସ୍ୱପ୍ନେ ନ ଦେଖିଲି ।

ମୋ ମତରେ ମୁଁ ହୋଇଣ ଜାଣିବାର
କଲିଟି ସବୁ ପାପକଥାକୁ ମୋହର ।
ଏ ବାହାରେ ପଣ୍ଡିତପଣେ ଢଙ୍ଗ ବନ୍ଧ
ଶ୍ରୀମହାଭାରତକୁ ଗୀତରେ କହିଲି ।
ବିଚାରିଲେ ଏ କଥା ବଡ଼ ଉପହାସ
ମୂର୍ଖପଣେ ମୋହର ବଳିଛି ସାହସ ।
ବୋଲୁଅଛୁ ତ ପ୍ରବନ୍ଧନ ଅବିରତ
ଲକ୍ଷେ ଗ୍ରନ୍ଥଯାକକୁ କରିବ ମୁଁ ଗୀତ ।
ବାଲି ଫିଙ୍ଗି ହାତରେ ବାନ୍ଧିବା ନଦୀକି
ବସିଲେ ବାନ୍ଧ ବନ୍ଧା ସେ ହୋଇ ଯାଏ କି ।

ସେହିରୂପେ ମୋହର ବୋଲିବା ବଚନ
ଭାବନା କର ଆହେ ବସି ବିଜ୍ଞଜନ ।
ଯାହାକୁ କଷ୍ଟାକ୍ଷରେ ରଚିଲେ ବେଦବ୍ୟାସ
ତା ବୁଦ୍ଧି କେତେ ହେବ ସାଂତେ ପ୍ରବେଶ ।

ଏହା ଜାଣି ତାଙ୍କର ପାଦପଦ୍ମ ବେଶେ
ମୋ ମାନସ-ଭୃଙ୍ଗକୁ ରଖାଉଛି ତୋଷେ
ଛେଦେଟି ଷଟପଦ-ମଧୁରେ ବାଇ ହୋଇ ।
ବାହାର ସେ ଆସୁଛି ମୋତେ ବଳଆଇ ।

ଦ୍ରମଦା ହେମଲତା ସୁରତ ପ୍ରେମବେଶ
କରିବାରେ କେବଳ ବନେ ଅନୁରାଗ ।
ଏ ସକାଶୁଁ ଜାଣୁଛୁ ବେଦ ଗୀତ ଗୁଢ଼
ଗଲେ ହେବ ନରକ ବସନକୁ ଘୋଡ଼ ।
ଅହେ ରାଧାଧବ ମାଧବ ତମାଳ—
ଦଳକଣା କଳେବର ନନ୍ଦବାଳ ।
ବୃନ୍ଦାବନବାଳୁଗଚର ବ୍ରଜପାଳ
ତାଳବନ ଧେନୁକାମର ଖିଆତାଳ ।

ତୁମ୍ଭେ ଯୋଗିଜନମାନଙ୍କର ମରାଳ
ତୁମ୍ଭଙ୍କୁ ଭଜି କାଟୁଛନ୍ତି ମାୟାଜାଲ ।
ଗୋପଣତର୍ମ୍ବିମାବସ୍ତ୍ରେଶ ହର
ରାଧାଚନ୍ଦ୍ରମୁଖୀଙ୍କ ରହଅପହାରୀ ।
ବୃନ୍ଦାବନବନ-ଗହନହ୍ମଧାରୀ
ବକଅଣ୍ଟତରା କଦମ୍ବକେଳିକାରୀ ।
ତୁମ୍ଭେ ଏକା ବୋଲାଅ ପାତକଉଦ୍ଧାରୀ
ତୁମ୍ଭଙ୍କୁ ନ ଜାଣେ ଯେ ନ ପାରଇ ତରି ।

ଯଶୋଦାଦେବୀଙ୍କର ପ୍ରେମର ନିବାସ
ରାସବିନୋଦିଆ ଅସୁର ମୁରଧ୍ୱଂସ ।
କଳାପୀ-ପିଛଚୂଡ଼ା ଗୋପାଳ-ଲଳସ
ଯଦୁ ବୃଷ୍ଣି ଅନ୍ଧକୁବଂଶଅବତଂସ ।
ପ୍ରାଣୀଏ ସେବି ତୁମ୍ଭ ଚରଣ-ସାରସ
ଏ ସଂସାରବନ୍ଧକୁ କରୁଛନ୍ତି ନାଶ ।
ଯାହାଠାରେ ତୁମ୍ଭର ନେତ୍ର-ଅରବିନ୍ଦ
ପଡ଼ୁଛି ଭାଗ୍ୟବନ୍ତେ ଲେଖା ସେ ଗୋବିନ୍ଦ ।

ମୋହର ତ ବୁଦ୍ଧି ଅଟଇ ଅତି ମନ୍ଦ
ତାକୁ ନ ଯୋଗାଏ ତୁମ୍ଭର ପାଦଦ୍ୱନ୍ଦ୍ୱ—
ସେବା, ହେ ଜଗତନିବାସ ଆନନ୍ଦକନ୍ଦ
ଏଥିକି ମୋଠାରେ ନ କର ହୁଟେ ଛନ୍ଦ ।
ତୁମ୍ଭର ମହିମାକୁ ଜାଣି ସୁରଇନ୍ଦ୍ର
ଶଚୀ ରତିସୁଖରେ ମନ କଲେ ସାନ୍ଦ୍ର ।
ବ୍ରହ୍ମା ବତ୍ସା ବାଳକ ନେଲେ କରି କେନ୍ଦ୍ର
ତମତମେ ଆଚ୍ଛନ୍ନ କଲେ ଭକ୍ତ-ଚନ୍ଦ୍ର ।

ତୁମ୍ଭର ନାମ ଧରି ବାଣାସୁର ଉଗ୍ର
ସେ ତ ତୁମ୍ଭ ସଙ୍ଗତେ ଯୁଦ୍ଧ କଲେ ରୌଦ୍ର ।

ମୁଁ ଅବା କେତେଢର ଅଟେ ମହାବାହୁ
ତୁମ୍ଭ କଥାରେ ମୋ ବିବେକ ହେବ କାହୁଁ ।
ଏ କାରଣ ତୁମ୍ଭର ଜଗତରେ ରହୁ
ରଖ ମୋ ମାଥ ଥରେ ଦେଇ ତୁମ୍ଭ ବାହୁ ।
ଜଣାଉଅଛୁ ମାତ୍ର ତୁମ୍ଭେ ସାହା ନୋହୁ
ଯାବ ଭଲେ ନର୍କେ ପାଇବ ଦୁଃଖ ବହୁ ।

ତୁମ୍ଭେ ତ ଏକା ତିନ ଜଗତର ନାଥ
ତୁମ୍ଭେ ଯାହା କରୁଛ ସେ ସବୁରି ପଥ ।
ତୁମ୍ଭଙ୍କୁ ପାଏ ଲୋକ କରି ସାଧୁ ସାଥ
ପୁରାଣ ଅର୍ଥ ଶୁଣି ସେବା କଲେ ପାର୍ଥ ।
ଅନାଥ କୃଷ୍ଣସିଂହ ନୃପର ହୋଇ ନାଥ
କୃପା କର ଆହେ ଶଙ୍ଖଚକ୍ରହାତ ।

ସ ମା ପ୍ତ



ମୁଦ୍ରଣ—ପୁସ୍ତକ ପ୍ରିଣ୍ଟିଂ ପ୍ରେସ, ଅଲିଶା ବଜାର, କଟକ-୨

ରାଜା କୃଷ୍ଣ ସିଂହ କୃତ

# ମହାଭାରତ

## ଦ୍ରୋଣ ପର୍ବ

(ନୂତନ ମୁଦ୍ରଣ)

ସନ : ୨୦୦୨

ପ୍ରକାଶକ :

ଧର୍ମଗ୍ରନ୍ଥ ଷ୍ଟୋର

ପ୍ରାପ୍ତିସ୍ଥାନ :

ଧର୍ମଗ୍ରନ୍ଥ ଷ୍ଟୋର

ପରିଚାଳକ :

ଶ୍ରୀ ବିଦ୍ୟାଧର ସାହୁ

ଅଲିଶାବଜାର, କଟକ - ୨,

ଫୋନ୍ : ୬୦୮୨୯୬, ୬୦୭୯୨୨

ମୂଲ୍ୟ - ଆଦି ପର୍ବରେ ଦେଖନ୍ତୁ ।

## ରାଜା କୃଷ୍ଣସିଂହ ମହାଭାରତ ଦ୍ରୋଣପର୍ବର

# ସୂଚୀପତ୍ର



- ଦ୍ରୋଣ ପର୍ବର ସୂଚୀପତ୍ର ସମାପ୍ତ -

# ମହାଭାରତ

## ଦ୍ରୋଣ ପର୍ବ

ନାରାୟଣଂ ନମସ୍କୃତ୍ୟ ନରଂ ଚୈବ ନରୋତ୍ତମଂ
ଦେବୀଂ ସରସ୍ୱତୀଂ ବ୍ୟାସଂ ତତୋଜୟେ ମୁଦିରୟେତ୍ ।
ଭୀଷ୍ମଦ୍ରୋଣତଟା ଜୟଦ୍ରଥଜଳା ଗାନ୍ଧାର ନୀଳୋତ୍ପଳା
ଶଲ୍ୟଗ୍ରାହବତୀ କୃପେଣ ବିହଗା କର୍ଣ୍ଣେନ ବେଳାକୁଳା ।।
ଅଶ୍ୱତ୍ଥାମାବିକର୍ଣ୍ଣଘୋରମକରା ଦୁର୍ଯ୍ୟୋଧନାବର୍ତ୍ତିନୀ ।
ସୋତ୍ତୀର୍ଣ୍ଣା ଖଳୁ ପାଣ୍ଡବୈଃ କୁରୁନଦୀ କୈବର୍ତ୍ତକଃ କେଶବଃ ।।

ଜୟ ଶୀରାମ କୃଷ୍ଣ ଜଗତନିବାସ
ରାବଣଖରଙ୍କ ସକେଶୀପ୍ରାଣଧ୍ୱଂସ ।
ଜୟ ରାମ କୃଷ୍ଣ ହେ ସୀତା ରାଧା ଧବ
ପ୍ରକାଶିତ ଭୁବନ ତ୍ରିତୟ ବିଭବ ।
ଜୟ ରାମ କୃଷ୍ଣ କୋଦଣ୍ଡ ଚକ୍ରଧର
ତରଣି କଳାକରବଂଶ ସମୁଦ୍ଧାର ।
ଜୟ ହେ ରାମ କୃଷ୍ଣ କୁମ୍ଭକର୍ଣ୍ଣ ବାଣ
ଯୁଗଳ କଳେବର ବିରୂପ କାରଣ ।
ଜୟ ରାମ କୃଷ୍ଣ ଦୂର୍ବାଦଳ ଘନ-
ବର୍ଣ୍ଣ ଜଟା ପୁଚ୍ଛ ମସ୍ତକ ମଣ୍ଡନ ।
ଜୟ ହେ ରାମ କୃଷ୍ଣ କୋଶଳ ଦେବକ-
ତନୟା ହୃଦୟ କୁମୁଦ ଜୈବାତୃକ ।
ଜୟ ରାମ କୃଷ୍ଣ ହେ ଜନକ ବସନ
ଭକ୍ତଜନ ଘୋର ସଙ୍କଟ ବିଧ୍ୱଂସନ ।
ଜୟ ରାମ କୃଷ୍ଣ ଅହଲ୍ୟା କୁବ୍‌ଜା ନାରୀ-
ନିସ୍ତାରଣ ଦଣ୍ଡକ ମଥୁରା ବିହାରୀ ।
ତୁମ୍ଭ ପ୍ରସାଦରୁ ଅଠର ପର୍ବ ଗୀତ
କରି ହରିବଂଶ କଲି ମୁଁ ସମାପତ ।
ଜ୍ୟେଷ୍ଠ ପିତାଟି ଜୟସିଂହାନରମଣି
ଦ୍ରୋଣପର୍ବ ଗୀତାଟି କରିବାର ଶୁଣି ।
ଦ୍ରୋଣପର୍ବକୁ ମୁଁ ନ କରିଥିଲି ଗୀତ
କୁଳର ମର୍ଯ୍ୟାଦାକୁ ଡରିବାରୁ ଚିତ୍ତ ।
କର୍ଣ୍ଣପର୍ବେ ଏହା ମୁଁ ମଧ୍ୟ ଅଛି କହି
ଏବେ ଦ୍ରୋଣପର୍ବ କରୁଛି ପ୍ରୀତି ବହି ।
ସକଳ ପ୍ରାଣୀମାନେ ବୋଲିବାରୁ ମୋତେ
ଅଠର ପର୍ବ ପୂର୍ଣ୍ଣ କଲି ଲକ୍ଷ୍ମୀପତେ ।
ତୁମ ପ୍ରସାଦରୁ ଭାରତ - ସମୁଦ୍ରକୁ
ପାରିହେଲି ଆଉ କି କହିବି ତୁମ୍ଭଙ୍କୁ ।
ତୁମ୍ଭ ପାଦ କମଳ ମକରନ୍ଦ ପାନେ
ରଖାଅ କୃଷ୍ଣସିଂହ ମନ ଅବିଚ୍ଛିନ୍ନେ ।
ଜନ୍ମେଜୟ ବୋଇଲେ ବଇଶମ୍ପାୟନ
ହୁଅନ୍ତେ ଦେବବ୍ରତ ସମରେ ନିଧନ ।
ଧୃତରାଷ୍ଟ୍ର ରାଜା କେଉଁ ଚେଷ୍ଟାଟି କଲେ
ତା ମୋତେ ବିସ୍ତାରି କହିବା ହେଉ ଭଲେ ।
ମହାସତ୍ତ୍ୱ ମହାବଳ ଯେ ପରାକ୍ରମ
ମାନଙ୍କର ଭୀଷ୍ମ ଦେହ ତ ଅଟେ ଧାମ ।

ସେ ଭୀଷ୍ମ ଶିଖଣ୍ଡିର କାଣ୍ଡଘାତ ପାଇ
ଫୁଟାଇ ଗଣ୍ଡି ତଳେ ଶୋଇଲେ ଦଣ୍ଡା ହୋଇ ।
ଭୀଷ୍ମ ଦ୍ରୋଣ ବଳରେ ଦୁର୍ଯ୍ୟୋଧନ ରାଜା
ବୋଲୁଥିଲେ ପାଳିବି ଏ ମଣ୍ଡଳ ପ୍ରଜା ।
ଭୀଷ୍ମଙ୍କୁ ଦେଖି ସେ ପଶ୍ଚିମ ଅବସ୍ଥାକୁ
କି ବିଚାର କଲେ ସେ କହ ତ ଆମ୍ଭଙ୍କୁ ।
ବଇଶମ୍ପାୟନ ବୋଇଲେ ଜନ୍ମେଜୟ
ହୁଅନ୍ତେ ପିତା ଦେବବ୍ରତ ଯୁଦ୍ଧେ କ୍ଷୟ ।
ଧୃତରାଷ୍ଟ୍ର ରାଜା ଚିନ୍ତାରେ ମୋଟା ଗଣ୍ଡି
କ୍ଷୀଣ କରନ୍ତେ ତା ନିନ୍ଦିଲା କୁଟା ଖଣ୍ଡି ।
ଏହି ସମୟରେ ସଞ୍ଜୟ ମନ୍ତ୍ରିବର
ଭେଟନ୍ତେ ଆସି ନିଜ ନୃପଙ୍କୁ ତାଙ୍କର ।
ସେ ସରିକି ରଜନୀ ହୋଇଛି ପ୍ରବେଶ
ହେଉଅଛି ନୃପତି ଦୃଶ୍ୟକୁ ଅଦୃଶ୍ୟ ।
ସଞ୍ଜୟ ଆସିବାର ଧୃତରାଷ୍ଟ୍ର ଜାଣି
ପାଡ଼ିଲେ ଉଚ୍ଚେ ଡକା ନେତ୍ରୁ ମୁଞ୍ଚି ପାଣି ।
ବୋଇଲେ ହେ ସଞ୍ଜୟ କାଳରେ କ୍ଷୋଭିତ
ହୋଇଛି କୁରୁଙ୍କ ତୁଳରେ ମୋର ସୁତ ।
ଭୀଷ୍ମଙ୍କ ପରା ରଥୀ ପାଆନ୍ତେ ମରଣ
କି କଲା ମୋ ସୁତ ମୋ ଆଗେ ତା ବଖାଣ ।
କୁରୁଏ ତ ଶୋକ -ସମୁଦ୍ରେ ଗଲେ ବୁଡ଼ି
କହ ହେ ତହୁଁ ନେଲା ନୌକା ହୋଇ କାଢ଼ି ।
ମୋହର ସୈନ୍ୟ ମନେ କଲେ ତିନି ଲୋକ
ହୃଦୟରେ ଥୋଇପାରନ୍ତି ମହାଦକ ।
ପାଣ୍ଡବେ ଅଳପ ସୈନ୍ୟରେ ଅଧିକାରୀ
ତାହାଙ୍କ ଭୟକୁ ସେନ ପାରନ୍ତି କରି ।
କୁରୁକୁଳ ମଣ୍ଡନ ଭୀଷ୍ମ ରଥିରାଣ
ମରନ୍ତେ ରାଜାମାନେ କି କଲେ ବଖାଣ ।
ସଞ୍ଜୟ ବୋଇଲେ ହେ ଧୃତରାଷ୍ଟ୍ର ରାଜା
ପୁଚ୍ଛୁଅଛ କେତେ ମୁଖରୁ ତେଜି ଲଜ୍ଜା ।
ମୋ କହିବା ବଚନ ଏକମନ ହୋଇ
ଶୁଣ ହେ ହସ୍ତିନାନଗର ନରସାଇଁ ।
ମରନ୍ତେ ଭୀଷ୍ମ ତୁମ୍ଭ ପୁତ୍ର କଲେ ଯାହା
ତା ମଧ୍ୟେ କହିବି ଗାନ୍ଧାରୀଦେବୀ ନାହା ।
ଭୀଷ୍ମ-ଅଗ୍ନି ଶିଖଣ୍ଡୀ- ଜଳ ପାଇ ଶାନ୍ତି
ହୁଅନ୍ତେ ତୂର ସେନା ଚିନ୍ତା ଧରି ମତି ।
କ୍ଷତ୍ରିୟ ଧରମକୁ ନ କରିଣ ବନ୍ଦା
ଦୁଇ ସେନା ଲୋକେ ପ୍ରକାଶ କଲେ ନିନ୍ଦା ।
ଦୁଇକୁଳ ଲୋକେ ଭୀଷ୍ମଙ୍କୁ ନମସ୍କାର
କରିଣ ଶଯ୍ୟା କରିଦେଲେ ତାଙ୍କୁ ଶର ।
ମୁଚୁଳା କରି ମଧ ଦେଲେ କାଣ୍ଡ ତିନି
ନିନ୍ଦା କରୁଅଛି ସେ ଜ୍ୱଳନ୍ତା ଅଗିନି ।
ଏରୂପେ ଭୀଷ୍ମଙ୍କୁ ରାଜାଏ ଦୁଇକୁଳ
କଲେ ହେ ହସ୍ତିନା ଅବନୀ ମହୀପାଳ ।
ପୁଣି ଯୁଦ୍ଧ କରିବା ଇଚ୍ଛା ମନେ କଲେ
ଭଲ ମନ୍ଦ କାହାକୁ କେହି ନ ପୁଚ୍ଛିଲେ ।
ଭୀଷ୍ମଙ୍କୁ ପ୍ରଦକ୍ଷିଣ କରି ଦୁଇକୁଳ
ବାହାରିଲେ କରିବାକୁଟି ମହାରୋଳ ।
ଶରଶଯ୍ୟା କାଳେ ଭୀଷ୍ମଙ୍କ କହିବାର
ବଚନକୁ କରି ସମସ୍ତେ ଅନାଦର ।
ଶଙ୍ଖ ଭେରୀ ମୃଦଙ୍ଗ ପଣବ ବାଇଲେ
ସେ ଶବଦେ ଯୁଦ୍ଧ ଭୂମିକି କମ୍ପାଇଲେ ।
ତୁମ୍ଭ ପୁତ୍ରର ମୋହ ଭୀଷ୍ମଙ୍କର ବଧ
ସକାଶରୁ ସମସ୍ତ କୁରୁଏ ଦୁର୍ବୋଧ- ।
ହୋଇଣ ନାନାଜାତି ଶସ୍ତ୍ରମାନ ଟେକି
ରହିଲେ ନୃପତିଙ୍କି ଘେନି ଯୁଦ୍ଧ ଟାକି ।
ମୃତ୍ୟୁ ତ ତାହାଙ୍କର ହରିଅଛି ବୁଦ୍ଧି
କେ ଲଙ୍ଘି ନ ପାରେ କରି ଯା ଥାଏ ବିଧି ।
ଭୀଷ୍ମ ନ ଥିବାରୁ ତୁମ୍ଭର ସେନାକୁଳ
ହୋଇଲେ ଅଗୋପାଳ ଗୋରୁଙ୍କର ତୁଲ ।
ନକ୍ଷତ୍ରହୀନାକାଶ ଶସ୍ୟହୀନା ମହୀ
ଅସଂସ୍କୃତ ବଚନ ଜଳହୀନ ନଈ ।
ବ୍ୟାଘ୍ରରୁଦ୍ଧ ମୃଗୀ ଶରଭାହତ ସିଂହ
କନ୍ଦରା ପରି ସେନା ଦିଶିଲେ ନୃସିଂହ ।
ପତିହୀନା ନାରୀ ଶୋଭାକୁ ତୁମ୍ଭ ସେନା
ଶୋଭା ବଳି ପଡ଼ିଲା ଜାଣ ମହାମନା ।
ସମୁଦ୍ର ମଧ୍ୟେ ନାବ ବାତରେ ଆହତ
ହେଲେ ଯେଉଁ ରୂପେ କୂଳକୁ ନୋହେ ଗତ ।
ସେହି ପରାୟେଟି କୁରୁସେନାଙ୍କ ମନ
ଭରମି ଭୟ ଜାତ କଲା ଅବିଚ୍ଛିନ୍ନ ।
ବଳୀ ପାଣ୍ଡବଙ୍କ ବଳରେ ଦଳି ହୋଇ
ରହିଥିଲେ ତୁମ୍ଭ ସେନାଏ ନରସାଇଁ ।
ଭୀଷ୍ମଙ୍କୁ ପୃଷ୍ଠାସାହା କରି ନ ପାରିଲେ
ତେଣୁକରି ସର୍ବେ କର୍ଣ୍ଣଙ୍କୁ ଚିନ୍ତା କଲେ ।
ଯେ ରୂପେ ଧର୍ମସ୍ଥିତ ଲୋକ ଅତିଥିଙ୍କି
ଆକାଂକ୍ଷା କରିଥାଏ ଲଭିଣ ପ୍ରୀତିକି ।
ସେହିରୂପେ ତୁମ୍ଭର ସେନାଏ ବିପତ୍ତି
ପାଆନ୍ତେ କର୍ଣ୍ଣଠାରେ ନିବେଶିଲେ ମତି ।
ଆହେ କର୍ଣ୍ଣ ରଖ ବୋଲିଣ ତୁମ୍ଭ ସେନା
ପାଡ଼ିଲେ ଉଚ୍ଚେ ଡକା ହୋଇଣ ବିମନା ।

ଏ ବାହାରେ ବୋଇଲେ ଦଶଦିନ ଯୁଦ୍ଧ
ନ କଲ, କରିଥିଲେ ନୁହନ୍ତେ ଭୀଷ୍ମ ବଧ ।
ତୁମ୍ଭଠାରେ ଏ ଦୋଷ ଦେବାରେ ଆମ୍ଭର
ଉଚିତ ନୁହେ ଆହେ କର୍ଣ୍ଣ ମନେ କର ।
ମହାରଥିଙ୍କରେ ତ ଗଙ୍ଗାଙ୍କର ସୁତ
ନ ଗଣିଲେ ତୁମ୍ଭଙ୍କୁ ତୁମ୍ଭ କି ଆୟତ୍ତ ।
ଏହି ଘେନି ତୁମ୍ଭେ ତାଙ୍କର ଥିବା ଯାକ
ନ ବିନ୍ଧିଲ ପାଣ୍ଡବ ସେନାଙ୍କୁ ଶାୟକ ।
ଦୁର୍ଯ୍ୟୋଧନ ନୃପେ କହିଲ ଦେବବ୍ରତ
ରଥୀ ହୋଇ ପାଣ୍ଡୁସୁତଙ୍କୁ କଲେ ହତ ।
ନିଷ୍କଣ୍ଟକ ହୋଇ ତ ଅବନୀ ତୁମ୍ଭର
ହେବ ବନେ ଯାଇ ଜରିବି ରାୟେ ଘର ।
ଏ ନୋହିଲେ ଏକାଶରରେ ପାଣ୍ଡବଙ୍କୁ
ମାରି ଦେବି ହସ୍ତିନାନଗର ତୁମ୍ଭଙ୍କୁ ।
ଏ ରୂପେ କହି ଦୁର୍ଯ୍ୟୋଧନ ସନମତେ
ନ କଲ ଦଶଦିନ ଯୁଦ୍ଧ ମହାମତେ ।
ଏବେ ତ ଭୀଷ୍ମଙ୍କର ହୋଇଲା ମରଣ
ରଖ ଆମ୍ଭ ପ୍ରାଣ ହେ ଧରି ଧନୁର୍ବାଣ ।
ଆହେ କୁରୁକୁଳ ନୃପତିଙ୍କ ଶେଖର
ଏରୂପେ କୁହାକୁହି ହୋଇ ସେନାନର ।
ପାଡ଼ିଲେ ଉଚ୍ଚେ ଡକା ଆହେ କର୍ଣ୍ଣରଥି
ରଖ ଆମ୍ଭମାନଙ୍କୁ ନୋହି କିଛି ବ୍ୟଥି ।
ପାଣ୍ଡବଙ୍କ ସକାଶୁଁ ଆମ୍ଭମାନଙ୍କର
ମନ ତ କର୍ଣ୍ଣଙ୍କ ସମୀପେ କଲା ଘର ।
ଇନ୍ଦ୍ରାଦି ଦେବଙ୍କୁ ଗୋବିନ୍ଦ ରକ୍ଷା କଲା
ପରି କର୍ଣ୍ଣ ରଖିବେ ସବୁରି ଚିତ୍ତ ହେଲା ।
ସଞ୍ଜୟଙ୍କ ମୁଖରୁ ଏ ବଚନ ଶୁଣି
କହିଲେ ଧୃତରାଷ୍ଟ୍ର ରାଜା ତାଙ୍କୁ ବାଣୀ ।
ତୁମ୍ଭମାନଙ୍କର ଭାବିବା ସମୟରେ
ଆସିଲେଟି କି କର୍ଣ୍ଣ କହ ମୋ ଆଗରେ ।
ତୁମ୍ଭର ଆରତକୁ ଫେଇ ମୋର କୁଳ
ରଖିଲେଟି କି କର୍ଣ୍ଣ ଦେଖାଇଣ ବଳ ।
ମୋହର ପୁତ୍ର ଜୟ ଆଶାକୁ ସମ୍ପୂର୍ଣ୍ଣ
କଲେଟି କି କହ ତ ରଥିବର କର୍ଣ୍ଣ ।
ସଞ୍ଜୟ ବୋଇଲେ ହେ ଭୀଷ୍ମଙ୍କର ହତ
ଜାଣିକରି ତୁମ୍ଭର କର୍ଣ୍ଣ ସୂତସୁତ ।
ବିଚାରିଲେ କୁରୁମାନଙ୍କ ଆଶା ନାବ
ପାଣ୍ଡବ ଜଳେବଳେ ହେଲା ତ ଅଭାବ ।
ଏତେବେଳରେ ମୁହିଁ ଧନୁଶର ହସ୍ତ
ହୋଇ ସାହା ନୋହିଲେ ହେବେ ସର୍ବେ ହତ ।

ଏରୂପେ ଅନେକ ବିଚାରି ସୂତବେଟା
ଗଣ୍ଡ ଟିକି କ୍ରୋଧରେ କରିଦେଇ ମୋଟା ।
ସୋଦର ଭାଇ ପରି ଦୁର୍ଯ୍ୟୋଧନଙ୍କର
ପଶିଲେ ସେନା ମଧ୍ୟେ ଆସିଣ ତୁମ୍ଭର ।
ଯେଉଁରୂପେ ପୁଅ ଆସଇ ବାବୁଠାକୁ
ସେ ରୂପେ କର୍ଣ୍ଣଟି ଆସିଲେ ସେନାଠାକୁ ।
ଧନୁଶର ତାଙ୍କର ଦୁଇ କରେ ଥାଇ
ଦେଲା ସେ ଜ୍ୱଳନ ଜଳିବା ପ୍ରଭା ଦହି ।
କର୍ଣ୍ଣ ତୁମ୍ଭର ସେନାମାନଙ୍କୁ ଅନାଇଁ
କହିଲେ ଯା ବଚନ ଶୁଣ ନରସାଇଁ ।
ପରାକ୍ରମ ବୁଦ୍ଧି ସତ୍ୟ ଯେ ଯଶ ଧୃତି
ବୀରପଣ ଦିବ୍ୟାସ୍ତ୍ର ସନ୍ନତି ଲଜ୍ଜା ସ୍ମୃତି ।
ଅନସୂୟା ପ୍ରିୟବଚନ ଭୀଷ୍ମଙ୍କର-
ଠାରେ ତ ଅହର୍ନିଶି କରିଥିଲା ଘର ।
ସେ ଏବେ ଶିଖଣ୍ଡୀର କାଣ୍ଡଘାତ ପାଇ
ଶୋଇଲେ କୁରୁଏ ମରିବେ ଜାଣୁଥାଇଁ ।
ଇହଲୋକ ପାଇଲେ ଲୋକର ପରଲୋକ
ହେଉଛି, ଏଥିକି କରିବା କେତେ ଶୋକ ।
ଆଜ ରାତ୍ରଶେଷେ କାଲି ଯେ ପାଣ୍ଡବଙ୍କୁ
ଯୁଝିବ ପୁରୁଷରେ ଗଣିବା ତାହାକୁ ।
ବସୁଙ୍କ ଅଙ୍ଗୁ ଜାତ ବସୁ ପରି ବଳ
ଯେଉଁ ଭୀଷ୍ମ ସେ ତ ଲଭିଲେ ବସୁଆଳ ।
ଏହି ସକାଶରୁ ଟି କହୁଅଛି ମୁହିଁ
ବସୁପୁତ୍ର ବସୁନ୍ଧରାରେ କାର୍ଯ୍ୟ ନାହିଁ ।
ଶୁଣ ହେ ନୃପ କର୍ଣ୍ଣ କହି ଏ ବଚନ
ପାଡ଼ିଲେ ଉଚ୍ଚେ ଡକା ନେତ୍ରୁଁ ତେଜି ବନ ।
କର୍ଣ୍ଣଙ୍କର ଏ ରୀତି ଦେଖି ତୁମ୍ଭ ସେନା
ଦୁର୍ଯ୍ୟୋଧନ ଆଦି ହୋଇଲେ ବିମନା ।
ମନେ କଲେ ଭୀଷ୍ମ ହେଲେନି ଯେବେ ହତ
ନିଶ୍ଚେ କୁରୁସେନାଟି ହେଲେ ଅରକ୍ଷତ ।
ସୈନ୍ୟଙ୍କ ବିକଳ ଦେଖିଣ ବୀର କର୍ଣ୍ଣ
ଆଶ୍ୱାସି ତାହାଙ୍କୁ କହିଲେ ଏ ବଚନ ।
ଏ ଜଗତ ଅନିତ୍ୟ ବୋଲି ତ ଜାଣୁଛି
ରଥିଏ ଥିଲାଠାରେ ମଲେ ଗଙ୍ଗାବସି ।
ଅରଜୁନ ଗାଣ୍ଡୀବ ଶରାଗ୍ନିରେ ଭୀଷ୍ମ
ଗିରି ତ ଜଳିଗଲେ ଛାଡ଼ି ଯୁଦ୍ଧ ଉଷ୍ମ ।
ତୁମ୍ଭେମାନେଟି ତାହା ପାରିବାକୁ ସହି
ଯୋଗ୍ୟ ହେବ ବୋଲି ମୋ ମନ ପାଉ ନାହିଁ ।
ଏମନ୍ତ ହେଲେ ମୁହିଁ ତେଜି ଆଜି ପ୍ରାଣ
ପାଳିବି କୁରୁସେନା କରି ଘୋର ରଣ ।

ଭୀଷ୍ମ ମଲାପରେ ମୋଠାରେ ଯୁଦ୍ଧଭାର
ପଡ଼ିଲା ତ ଡରି କି ଛାଡ଼ିବି ସମର ।
ପାଣ୍ଡବଙ୍କୁ ମାରି କୀରତି ରଖାଇବି
ନୋହିଲେ ସେ ମାଇଲେ ସ୍ୱର୍ଗକୁ ପାଇବି ।
ଯୁଧିଷ୍ଠିରଙ୍କଠାରେ ଧୃତି ମତି ଧାମ
ସତ୍ୱ ସତ୍ୟ ରହିଛି ହୋଇ ଅନୁପମ ।
ଅୟୁତେ ଗଜ ବଳ ବହେ ଭୀମ ଦେହ
ଅର୍ଜୁନ ତ ଯୁବା ଧନୁକିକୁଳସିଂହ ।
ଏହି ସକାଶରୁଟି ଜାଣୁଅଛି ମୁହିଁ
ଅମରେ ଯୁଦ୍ଧକଲେ ମରିବେ ସେ ନାହିଁ ।
ଯମ ପରି ଯାମଳ ପାଣ୍ଡୁ ଦୁଇ ସୁତ
ପୁଣି ତ ସାହା ହୋଇଅଛନ୍ତି ଅଚ୍ୟୁତ ।
ତାଙ୍କ ପାଇଁ ସାତ୍ୟକି ବାନ୍ଧିଛନ୍ତି ଖଣ୍ଡା
ତାଙ୍କୁ କେ ଯୁଝିବ ଆମ୍ଭର ଅଛି ଭେଣ୍ଡା ।
ତପସ୍ୟା କଲେ ତପ ଫଳକୁ ପାଇବା-
ପରି ଯୁଦ୍ଧ କଲେ ବା ଜୟକୁ ପାଇବା ।
ଦୁର୍ଯ୍ୟୋଧନ ରାଜା ଅଟନ୍ତି ମୋର ମିତ
ତାଙ୍କ ବିପତ୍ତିରେ କି ହେବି ମୁଁ ନିସତ ।
ପ୍ରାଣ ଥିବା ଯାକ ଦୁର୍ଯ୍ୟୋଧନର କାର୍ଯ୍ୟ
କରୁଥିବି ମୋର ଦେଖାଇ ବଳଓଜ ।
ସମ୍ପତ୍ତିରେ ମିତ୍ର ଅମିତ୍ର ନୋହେ ଚିହ୍ନା
ବିପତ୍ତି ହେଲେ ସିନା ହୋଏ ସେ କଳନା ।
ପଡ଼ିଅଛି ତ କୁରୁନୃପଙ୍କୁ ବିପତ୍ତି
ମୋ ପରା ଲୋକର ହେବ କି ଭୟମତି ।
କୁରୁଙ୍କୁ ରକ୍ଷା କରି ମାରିବି ପାଣ୍ଡବଙ୍କୁ
ଦେବି ଦୁର୍ଯ୍ୟୋଧନରାଜାଙ୍କୁ ହସ୍ତିନାକୁ ।
ଏହା କହିଣ ସୂତନନ୍ଦନ ସୂତକୁ
ବୋଇଲେ ଆଣ ସାଜୁ ଟୋପର ସଜକୁ ।
ଦିବ୍ୟ ଧନୁ ଦିବ୍ୟ ଗଦା ଯେ ଦିବ୍ୟ ଶକ୍ତି
ରଖ ରଥେ ଯୁଦ୍ଧେ ଦେଖିବ କାଲି ଶକ୍ତି ।
ଶୁକ୍ଳ ବସନେ ସାଜି ମୋ ନାଗକକ୍ଷା
ରଖ ରଥେ ଯୁଦ୍ଧେ ତ କଲିଣି ମୁଁ କକ୍ଷା ।
ସୁବର୍ଣ୍ଣରେ ଚିତ୍ରିତ ମୋ ନାଭିଶଙ୍ଖକୁ
ରଖ ନେଇ ରଥରେ ମଣ୍ଡିଣ ରଥକୁ ।
ମନ୍ତ୍ରପୂତ ପାଣ୍ଡୁର ଅଶ୍ୱେ ସୁବର୍ଣ୍ଣରେ
ମଣ୍ଡାଇଣ ବାନ୍ଧ ମୋ ରଥେ ସୁମନରେ ।
ଯୁଦ୍ଧଯାତ୍ରା ଆଜି ତ କରିବଇଁ ମୁହିଁ
ଯେ ଉଚିତ ସାମଗ୍ରୀ ଅଣାଅ ତା ଯାଇ ।
ଶୁକ୍ଳ ପୁଷ୍ପମାଳା ଦେଇଣ ମସ୍ତକେ
ବୋଲ ଭେରୀ ମୃଦଙ୍ଗ ବଜାଅନ୍ତୁ ଲୋକେ ।
ଯେଉଁଠାରେ ପାଣ୍ଡବେ ପାଞ୍ଚଭାଇ ଥିବେ
ସେଠାକୁ ମୋର ରଥ ବାହିବା ହୋଇବେ ।
ତାଙ୍କୁ ନ ମାଇଲେ ବାହୁଡ଼େ ନାହିଁ ମୁହିଁ
ସତ କରି କହୁଛି ଜାଣିଥାଅ ତୁହି ।
ପାଣ୍ଡବେ ଯେବେ ମୋର କରିବେ ସଂହାର
ଯିବି ମୁଁ ଭୀଷ୍ମପାଶେ ନିଶ୍ଚୟ ମୋହର ।
କୃଷ୍ଣ ଅରଜୁନଟି ଯେଉଁ ବଳ ରକ୍ଷା
କରିବେ ମଘବା ହାରିବେ କଲେ କକ୍ଷା ।
ମୃତ୍ୟୁ ମିତ୍ର ହୋଇଣ ଅର୍ଜୁନଙ୍କୁ ଯେବେ
ରଖିବେ ମାରିବି ମୁଁ ତାଙ୍କୁ ଜାଣ ତେବେ ।
ନୋହିଲେ ଅରଜୁନ ଅବା ମୋତେ ମାରୁ
ତହିଁକି ମୁଁ କିଛି ହେଉ ନାହିଁ ଭୀରୁ ।
ଯୁଦ୍ଧକୁ ମୁଁ ଏବେ କରୁଛି ଅନୁକୂଳ
ନ ଆସନ୍ତୁ ମୋହର ସଙ୍ଗରେ ଦୁର୍ବଳ ।
ମିତ୍ରଦ୍ରୋହୀ କୃତଘ୍ନ ନାସ୍ତିକ ଯେତେକ
ନ ଆସନ୍ତୁ ମୋ ସଙ୍ଗେ କହୁଛି ତେତେକ ।
ଏହା କହି କୁରୁଙ୍କୁ ତୁମ୍ଭ ଅଧିରଥି
ଆରୋହିଲେ ନିଜ ରଥକୁ ନୋହି ବ୍ୟଥୀ ।
ସେ ରଥେ ହୋଇଅଛି ଯୋଚା ଦିବ୍ୟ ଘୋଡ଼ା
ପବନର ସଙ୍ଗେ ପାରନ୍ତି ହୋଇ ଯୋଡ଼ା ।
ଦିବ୍ୟ ପତାକାରେ ହୋଇଅଛି ଭୂଷିତ
କରୁଛି ପର ଜନ ହୃଦେ ଭୟ ଜାତ ।
କୁରୁମାନଙ୍କର ପୂଜିତ କର୍ଣ୍ଣ ହୋଇ
ଗଲେ ଯହିଁ ଥିଲେ ତୁମ୍ଭର ପିତା ଶୋଇ ।
ଆଧିରଥି ରଥକୁ ଧୂଆଇଁବା ଘାତେ
ଧାଇଁଲେ ତାଙ୍କ ସଙ୍ଗେ କୁରୁ ଏ ସମସ୍ତେ ।
ଦେଖିଲେ ଶରତଳ୍ପେ ଶୋଇଛନ୍ତି ଭୀଷ୍ମ
ଛାଡ଼ି ଦେଇକରି ହୃଦରୁ ଯୁଦ୍ଧ ଉଷ୍ମ ।
ସବୁ କ୍ଷତ୍ରିଙ୍କର ଅନ୍ତକ ପର୍ଶୁରାମ
ତାଙ୍କୁ ତ ଜିଣିଥିଲେ କରିଣ ସଂଗ୍ରାମ ।
ଯେଉଁ ଭୀଷ୍ମ ତାହାଙ୍କ ପଶ୍ଚିମ ଅବସ୍ଥା
ଦେଖି କୁରୁମାନେ ପାଇଲେ ପୁଣି ବ୍ୟଥା ।
ଅର୍ଜୁନଙ୍କ କାଣ୍ଡରେ ଭୀଷ୍ମଙ୍କର ଗଣ୍ଡି
ଝିଙ୍କ ଦେହ ଶୋଭାକୁ ପକାଉଛି ଖଣ୍ଡି ।
ମଇନାକ ପର୍ବତ ପଡ଼ିଲା ପରାଏ
ପଡ଼ି ଭୀଷ୍ମ ତେଜେ ମଣ୍ଡନ୍ତି ନିଜ କାୟେ ।
ସୂର୍ଯ୍ୟ ତଳେ ପଡ଼ିବା ପ୍ରାୟେ ତୁମ୍ଭ ତାତ
ଦିଶୁଥିଲେ ଜାଣ ଗାନ୍ଧାରୀଦେବୀକାନ୍ତ ।
ବୃତ୍ରାସୁରେ ଜିତ ଇନ୍ଦ୍ରଙ୍କର ରୂପକୁ
ସମାନ କଲେ ଲୋକେ ସେକାଳେ ଭୀଷ୍ମଙ୍କୁ ।

ଯୁଦ୍ଧରେ ଭୀଷ୍ମଙ୍କର ପଡ଼ିବାର କଥା
ସବୁ ପ୍ରାଣିମାନଙ୍କ ଜାତ କଲା ବ୍ୟଥା ।
ଅରଜୁନ ଶରରେ ପାଇଣ ପୀଡ଼ାକୁ
ପଡ଼ିଅଛନ୍ତି ଭୀଷ୍ମ ହରାଇ ଜ୍ଞାନକୁ ।
ଶରତଳପେ ଶର ସମସ୍ଥାନ କରି
ଶୋଇଅଛନ୍ତି କର୍ଣ୍ଣ ନୟନରେ ହେରି ।
ରଥରୁ ଅବତରି ଭୀଷ୍ମ ପାଶେ ଗଲେ
ନୟନ ଲୋତକରେ ମୁଖକୁ ଧୋଇଲେ ।
କର୍ଣ୍ଣ ମୁଁ ବୋଲିକରି କରି ନମସ୍କାର
କହିଲେ ମୋର ଭଦ୍ର ହୃଦରେ ବିଚାର ।
ଥରେ ମୋତେ ତୁମ୍ଭେ ଅବଲୋକନ କଲେ
ମୋର ସବୁ କଥା ହୋଇବ ଭଲେ ।
ଇହଲୋକେ ସୁକୃତ କଲେ ଫଳ ନାହିଁ
ତୁମ୍ଭ ପରା ଲୋକ ଶୋଇଲ ରଣଭୂଇଁ ।
ତୁମ୍ଭ ବିନା କୁରୁଙ୍କ ମଧ୍ୟେ ବ୍ୟୁହ କରି
ଅଛି କେ ଯୁଝିବଟି ଧନୁକୁ ଉଭାରି ।
କୌରବମାନଙ୍କର ଧନ ତ ଅକ୍ଷୟ
ହୋଇଥିଲା ତୁମ୍ଭେ ଗଲାରୁ ହେବ କ୍ଷୟ ।
ଯୁଦ୍ଧେ ମହା ମହା ଯୋଦ୍ଧାଙ୍କୁ କରି ଯୁଦ୍ଧ
କରିଅଛ ସନ୍ତତ ପର୍ବକାଣ୍ଡେ ବଧ ।
ତୁମ୍ଭର ପ୍ରାନ୍ତଦଶା ଦେଖିଣ ପାଣ୍ଡବେ
ଯୁଦ୍ଧରେ ବହପିଣ ଆମ୍ଭକୁ ମାରିବେ ।
ଥାଉ ଯୁଦ୍ଧ ଅର୍ଜ୍ଜୁନ ଧନୁଘୋଷ ଶୁଣି
ତରସ୍ତ ହୋଇ ଆଜି ଯିବେ କୁରୁଶ୍ରେଣୀ ।
ଧୃତରାଷ୍ଟ୍ରସୁତଙ୍କୁ ତୃଣବନ ପରି
ପୋଡ଼ିବେ ଶରାନଳେ ଖାଣ୍ଡବଦାହକାରୀ ।
ପାଞ୍ଚଜନ୍ୟ ଶଙ୍ଖ ଯେ ଗାଣ୍ଡୀବ ନିର୍ଘୋଷ
ଶୁଣିଲେ ଆଜି ଯିବ ଜିଣିମା ପ୍ରତ୍ୟାଶ ।
କପିଧ୍ୱଜ ରଥଘୋଷକୁ ତୁମ୍ଭ ବିନା
ସହିବ ନାହାନ୍ତି ଖୋଜିଲେ ଆମ୍ଭ ସେନା ।
ତୁମ୍ଭରୁ ଆନ ଲୋକ ପାର୍ଥ ତୁଲେ ଆଜି
କଲେ ଯମ ତାହାର ପୋଛିଦେବ ପାଞ୍ଜି ।
ଯେଉଁ ଅରଜୁନଟି ଅମାନୁଷ ରଣ
ଶିବଙ୍କ ତୁଲେ କଲେ ଛାଡ଼ିଦେଇ ପ୍ରାଣ ।
ଶିବ ତାଙ୍କ ଯୁଦ୍ଧରେ ସନ୍ତୋଷ ହୋଇଲେ
କେହି ନ ପାଇବା ବରଟି ତାଙ୍କୁ ଦେଲେ ।
ତୁମ୍ଭ ପରା ଲୋକ ନ ଜିଣି ଅର୍ଜ୍ଜୁନଙ୍କୁ
ଶୋଇଲେ ଶରଶେଯେ ହରାଇ ପ୍ରାଣକୁ ।
ଦିଶୁ ତ ନାହିଁ ଲୋକ ଅର୍ଜ୍ଜୁନଙ୍କୁ ଯୋଟ
ଯୁଦ୍ଧରେ କରିବାକୁ ଶାନ୍ତନୁଙ୍କ ଚାଟ ।
କ୍ଷତ୍ରିୟ ଅନ୍ତକର ଦେବତା ଦୈବତ-
ମାନଙ୍କେ ପର୍ଶୁରାମ ଅଟନ୍ତି ପୂଜିତ ।
ତେଡ଼େ ଭଳି ବୀରେ ପକାଇ ଯୁଦ୍ଧେ ଜିଣି
ଅର୍ଜ୍ଜୁନଙ୍କୁ ହାରିଣ ଶୋଇଲେ ଧରଣୀ ।
ତୁମ୍ଭେ ଯେବେ ଆଜ୍ଞା କରିବ ମୋତେ ଆଜି
କରିବି ମୁଁ ଯାଇ ଅର୍ଜ୍ଜୁନ ସଙ୍ଗେ ଆଜି ।
କର୍ଣ୍ଣଙ୍କର ବଚନ କର୍ଣ୍ଣଦେଶେ ପୁଣି
ଭୀଷ୍ମ ମହାରଥୀ ଯେ ରଥିଶିରୋମଣି ।
ଦେଶ କାଳ ବିଭାଗ କେତେ ସେ ଜାଣନ୍ତି
ବୋଇଲେ ଶୁଣ ଅଧିରଥଙ୍କ ସନ୍ତତି ।
କହିଲ ଯାହା ଆଜ୍ଞା ଘେନୁଅଛୁଁ ଆମ୍ଭେ
କୁରୁଙ୍କୁ ତାରିବାକୁ ଏକା ଅଛ ତୁମ୍ଭେ ।
ଯେ ରୂପେ ସମୁଦ୍ର ରଖନ୍ତି ନଦୀଗଣ
ସେହିରୂପେ କୁରୁଙ୍କୁ ରଖ ହେ ଆପଣ ।
ଇନ୍ଦ୍ରଙ୍କୁ ଦେବେ ଅନୁଗତ ହେଲା ପରି
ତୁମ୍ଭଙ୍କ ସେବି ଦୁଃଖ ହୋନ୍ତୁ କୁରୁ ପାରି ।
ଶତ୍ରୁଙ୍କୁ ମାନହାନୀ ମିତ୍ରଙ୍କର ମାନ
ବର୍ଦ୍ଧନ କରି ହୁଅ କୁରୁଙ୍କ ମଣ୍ଡନ ।
ବିଷ୍ଣୁ ଦେବତାଙ୍କୁଟି ରଖିବାର ପରି
ରଖ କର୍ଣ୍ଣ କୁରୁଙ୍କୁ କରେ ଶସ୍ତ୍ର ଧରି ।
ଗୁରୁ ବଜ୍ରବାସୀ ନରପତି ଉତ୍କଳ
ହିମାଳୟବାସୀ କିରାତ ଯେ ମେକଳ ।
କାମ୍ବୋଜ ଅମ୍ବାଷ୍ଠ ବିଦେହ ପୌଣ୍ଡ୍ରକ
ତ୍ରିଗର୍ତ୍ତ କଳିଙ୍ଗ ଯେ ନିଷାଦ ବାହ୍ଲିକ ।
ଏମାନଙ୍କୁ ଦୁର୍ଯ୍ୟୋଧନଙ୍କ ହିତରେ
ଜିଣିଅଛ ତୁମ୍ଭେ ଯୁଦ୍ଧରେ କିଞ୍ଚିତରେ ।
ଦୁର୍ଯ୍ୟୋଧନ ପରି କୁରୁଙ୍କୁ ତୁମ୍ଭେ ପାଳି
ଦିଅ ଶତ୍ରୁସେନା ଲୋକଙ୍କ ବଳ ଦଳି ।
ଯେଉଁରୂପେ ଆମ୍ଭର ଦୁର୍ଯ୍ୟୋଧନ ରାଜା
ସେହିରୂପେ ଆମ୍ଭର ଅଧିରଥ ପ୍ରଜା ।
ପିତା ପରି ଆମ୍ଭେ ତ ଧର୍ମରେ ତୁମ୍ଭର
ଘେନା ଘେନି ନୁହଇ ଏହା କହିବାର ।
ବନ୍ଧୁ ସମ୍ବନ୍ଧଙ୍କୁ ସାଧୁଙ୍କ ସମ୍ବନ୍ଧ
ଅଧିକ ବୋଲନ୍ତି ସଂସାର ଜନବୃନ୍ଦ ।
ଦୁର୍ଯ୍ୟୋଧନ ବଳକୁ ନିଜ ବଳ ପରି
ପାଳନା କରି ସତ୍ୟ ରଖ ହେ ତୁମ୍ଭରି ।
ଏହିରୂପେ କହନ୍ତେ ଭୀଷ୍ମ ବଚନକୁ
ସୂତସୁତ ତୁମ୍ଭ ହଲାଇ କୁଣ୍ଡଳକୁ ।
କହିଲେ ଆହେ ପିତାମହ ଭୀଷ୍ମରଥି
ଯାଉଛି ମୁଁ ଶତ୍ରୁ ସୈନ୍ୟକୁ ଦେବି ମଥି ।

ତୁମ୍ଭ ଅନୁଜ୍ଞାକୁ ଆକାଂକ୍ଷା କରିଥିଲି
ପାଇଲି ତ ଅନୁଜ୍ଞା ସନ୍ତୋଷ ହୋଇଲି ।
ଏହିରୂପେ କହିଣ ଅଧିରଥସୁତ
ଯୁଦ୍ଧଭୂମି ମଣ୍ଡଳକୁଟି ହେଲେ ଗତ ।
କର୍ଣ୍ଣଙ୍କୁ ଦେଖି ଯୁଦ୍ଧଦାଣ୍ଡେ ତୁମ୍ଭ ସେନା
ଦୁର୍ଯ୍ୟୋଧନ ଆଦି ହୋଇଣ ତୋଷମନା ।
ଭେରୀ ଶଙ୍ଖ ମୃଦଙ୍ଗ ତୁଳେ ଧନୁଘୋଷ
କରିଣ ପୂରାଇଲେ ଯୁଦ୍ଧଭୂମି ଦେଶ ।
କର୍ଣ୍ଣଙ୍କୁ ନୟନେ ରଥରେ ତୁମ୍ଭ ସୁତ
ଦେଖିକରି କହିଲେ ବଚନ ଏମନ୍ତ ।
ଆହ କର୍ଣ୍ଣ ତୁମ୍ଭଙ୍କୁ ପାଇ ନାଥ ବତ
ହେଲେଷି ସୈନ୍ୟ ମୋର ଦେଖ ହେ ଉସତ ।
ଏବେ ମୋହର ହିତ ହେବ କେଉଁ କଥା
ତାହା ବର୍ଷି କର ହେ କର୍ଣ୍ଣ ମହାରଥା ।
କର୍ଣ୍ଣ ବୋଇଲେ ଆହେ ତୁମ୍ଭେ ସିନା ରାଜା
ଯା କହିବ କରିବୁଁ ତା ଆମ୍ଭର ମଜା ।
ଦୁର୍ଯ୍ୟୋଧନ ବୋଇଲେ ହେବାରୁ ବୟୋବୃଦ୍ଧ
ଭୀଷ୍ମଙ୍କୁ ଆଗକରି କରିଥିଲି ଯୁଦ୍ଧ ।
ସେ ମୋ ପାଇଁ ଯୁଦ୍ଧେ ମହତ କର୍ମ କରି
ହେଲେ ଶିଖଣ୍ଡୀର କାଣ୍ଡରେ ପ୍ରାଣହାରୀ ।
ଭୀଷ୍ମଙ୍କର ସ୍ୱର୍ଗଲୋକଟି ହେଲା ଗତ
ସେନାପତି କରିବା କାହାକୁ କହ ତ ।
ଯେ ରୂପରେ ନାବଟି ନାଉରିଆ ବିନା
ସେ ରୂପେ ସେନାପତିହୀନ ହେଲେ ସେନା ।
ମୋ ଲୋକରେ ଅଛନ୍ତି ଯେତେ ବଳିୟାର
ପାଏ ମନ ଯାକୁ ନାୟକ ତାଙ୍କୁ କର ।
ତୁମ୍ଭ ମନକୁ ଯେହୁ ପାଇବ ତାହାକୁ
କରିବୁଁ ସେନାପତି ନ ପୁଛି କାହାକୁ ।
କର୍ଣ୍ଣ ବୋଇଲେ ହେ ଆମ୍ଭର ସେନାରଥି-
ମାନେ ଯୁଦ୍ଧେ ଇନ୍ଦ୍ରେ ପାରନ୍ତି କରି ବ୍ୟଥୀ ।
ସମସ୍ତେ ସବୁ ଶସ୍ତ୍ର ଅସ୍ତ୍ରରେ ନିପୁଣ
ପୁଣି କୁଳେ ଜନମିଛନ୍ତି ନରରାଣ ।
ସମସ୍ତଙ୍କୁ ସେନାପତି କରିଣ ଯୁଦ୍ଧ
କରିବାର କଥା ତ ନୁହଇ ପ୍ରସିଦ୍ଧ ।
ସବୁ ଗୁଣଙ୍କରେ ଅଧିକ ଯେ ହୋଇବ
ତାହାକୁ ସେନାପତି କରିବା ନୃଦେବ ।
ରାଜାମାନଙ୍କରେ ଜଣଙ୍କୁ ସେନାପତି
କଲେ ମନ ଫାଟିଯିବ ହେ ମହାମତି ।
ସବୁ ଯୋଦ୍ଧାଙ୍କର ଅଟନ୍ତି ଯେ ଆଚାର୍ଯ୍ୟ
ଯୁଦ୍ଧ କରି ମଧ୍ୟ ପାରନ୍ତି ଯେ ଆଶ୍ଚର୍ଯ୍ୟ ।
କ୍ଷତ୍ରିୟଙ୍କୁ ପ୍ରତିକୂଳରେ ଯେ ଅଧିକ
ଦ୍ରୋଣଙ୍କୁ ସେନାପତି କରିବା ହେ ଡାକ ।
ଦ୍ରୋଣ ଥାଉ ଥାଉ ଆନକୁ ସେନାପତି
କଲେ ଲୋକ ନିନ୍ଦା ପାଇବା ଆମ୍ଭେ ଅତି ।
ଗୁରୁ ବୋଲି ଦ୍ରୋଣଙ୍କୁ ସବୁ ନୃପତିଏ
ଅନୁଗତ ହେବେ ଜାଣ ହେ କୁରୁରାୟେ ।
ସକଳ ଶସ୍ତ୍ରଭୃତମାନଙ୍କରେ ବର
କୁଳ- ଗୁରୁ ଦ୍ରୋଣ ବୋଲିଟି ମନେ କର ।
ଦେବସୈନ୍ୟରେ କାର୍ତ୍ତିକେୟ ସେନାପତି
ହେଲା ପରି ହୁଅନ୍ତୁ ଦ୍ରୋଣ ତ ଦ୍ୱିଜଜାତି ।
କର୍ଣ୍ଣଙ୍କ ଏ ବଚନ ଘେନି ଦୁର୍ଯ୍ୟୋଧନ
ସେନା ମଧ୍ୟେ ଦ୍ରୋଣେ କହିଲେ ଏ ବଚନ ।
ଶ୍ରେଷ୍ଠବର୍ଣ୍ଣ ଶାସ୍ତ୍ର ବୟସ ଅଧ୍ୟୁଷିତ
ଚାତୁର୍ଯ୍ୟ ଅର୍ଥଜ୍ଞାନ ଜୟ କୃତଜ୍ଞତ୍ୱ ।
ବୁଦ୍ଧି ବୀର୍ଯ୍ୟ ନୈପୁଣ୍ୟ ତୁମ୍ଭଠାରେ ସ୍ଥିତି
କରିଅଛି ତ ଆହେ ଦ୍ରୋଣ ମହାମତି ।
ଦେବଙ୍କୁ ଇନ୍ଦ୍ର ରକ୍ଷାକଲା ପ୍ରାୟେ ତୁମ୍ଭେ
ଆମ୍ଭଙ୍କୁ ରକ୍ଷାକର ବୋଲୁଅଛୁଁ ଆମ୍ଭେ ।
ତୁମ୍ଭେ ଆମ୍ଭମାନଙ୍କେ ହେଲେ ସେନାପତି
ଦେବୁଁଟି ପାଣ୍ଡବଙ୍କୁ ଯୁଦ୍ଧରେ ବିପତ୍ତି ।
ବସୁଙ୍କରେ ପାବକ ରୁଦ୍ରଙ୍କ ଶରୀର
ଦେବଙ୍କରେ ବାସବ ଯକ୍ଷଙ୍କେ କୁବେର ।
ପିତୃରେ ଧର୍ମରାଜ ତେଜରେ ଭାସ୍କର
ଦୈତ୍ୟଙ୍କରେ ଶୁକ୍ର ନକ୍ଷତ୍ରେ କଳାକାର ।
ଯାଦବଙ୍କରେ କୃଷ୍ଣ ବିପ୍ରରେ ବଶିଷ୍ଠ
ସେହିପରି ସେନାପତିରେ ତୁମ୍ଭେ ଶ୍ରେଷ୍ଠ ।
ଏହି ସକାଶରୁଟି ଆହେ ଦ୍ରୋଣଗୁରୁ
ସେନାପତି ହୋଇଣ ରଖ ଏ ଭୟରୁ ।
ତୁମ୍ଭଙ୍କୁ ଆଗେ ଦେଖି ଦିବ୍ୟ ଅସ୍ତ୍ରଜ୍ଞାତା
ଅର୍ଜୁନ ଯୁଦ୍ଧରେ କରିବ ମହାଚିନ୍ତା ।
ତୁମ୍ଭେ ସେନାପତି ହୋଇଲେ ସବାନ୍ଧବ
କରି ଯୁଧିଷ୍ଠିରଙ୍କ କରିବି ଅଭାବ ।
ଦୁର୍ଯ୍ୟୋଧନ ମୁଖରୁ ଶୁଣି ଏ ବଚନ
ହୃଷ୍ଟ ହେଲେ ତୁମ୍ଭର ଯେ ପକ୍ଷ ରାଜନ ।
ସିଂହନାଦ କରିଣ ଗରଜନ କଲେ
ମନରେ ପାଣ୍ଡୁସୁତେ ମଲେ ବିଚାରିଲେ ।
ତୁମ୍ଭ ସେନାମାନେ କରିବା ବୋଲି ଯୁଦ୍ଧ
କହିଲେ ଦୁର୍ଯ୍ୟୋଧନ ଆଗେ ବହି ସଧ ।
ଦ୍ରୋଣ ବୋଇଲେ ଆହେ ଦୁର୍ଯ୍ୟୋଧନ ନୃପ
ଛାଡ଼ି ମୁଁ କହୁଛି ହୃଦରୁ ଭୟ ତାପ ।

ଷଡ଼ଙ୍ଗଙ୍କ ତୁଲେ ବେଦକୁ ମୁଁ ଜାଣଇଁ
ମନ୍ତ୍ର ଅର୍ଥ ବିଦ୍ୟା ମୋ ହୃଦେ ଅଛି ରହି ।
ମହାଦେବଙ୍କର ଅର୍ଥ ମୁହିଁ ଜାଣଇଁ
ଏ ବାହାରେ ସମସ୍ତ ଗୁଣ ଅଛି ବହି ।
ପାଣ୍ଡବଙ୍କ ତୁଲେ କରିବି ନିଷ୍ଟେ ରଣ
ନ ନେବି ଏହା ଧୃଷ୍ଟଦ୍ୟୁମନ ପରାଣ ।
ମୋର ବଧ ପାଇଁ ସେ ଜାତ ହୋଇଛନ୍ତି
ଜାଣି ତାଙ୍କୁ ଦେବି କି ମରଣ ବିପତ୍ତି ।
ସୋମକମାନଙ୍କୁ କରିବି ରଣେ ନାଶ
ପାଣ୍ଡବେ ମୋ ଯୁଦ୍ଧେ ପାଇବେ ମହାତ୍ରାସ ।
ଦ୍ରୋଣଙ୍କ ଏ ବଚନ ଶୁଣି ତୁମ୍ଭ ସୁତ
କଲେ ତାଙ୍କୁ ସେନା ମଧରେ ଅଭିଷିକ୍ତ ।
ସେନାପତି ହୁଅନ୍ତେ ତୁମ୍ଭର ବାହିନୀ
ଦ୍ରୋଣ ବାହାର ହେଲେ ସଙ୍ଗତରେ ଘେନି ।
ଜୟଦ୍ରଥ ବିକର୍ଣ୍ଣ କଳିଙ୍ଗ ତ୍ରିବାରେ
ରହିଲେ ଦ୍ରୋଣଙ୍କ ଦକ୍ଷିଣ ପାରୁଶରେ ।
ଗାନ୍ଧାରଙ୍କୁ ଧରିଣ ତୁମ୍ଭର ଶକୁନି
ବାହାରିଲେ ଯୁଦ୍ଧକୁ ମନେ ତୋଷ ଘେନି ।
କୃତବର୍ମା ବିବିଂଶତି ଯେ ଚିତ୍ରସେନ
ଦୁଃଶାସନ କୃପ ସଙ୍ଗତେ ଘେନି ସୈନ୍ୟ ।
ଦ୍ରୋଣଙ୍କର ବାମ ପାରୁଶରେ ରହିଲେ
ଯୁଝିବା ପାଣ୍ଡବଙ୍କୁ ବୋଲି ବିଚାରିଲେ ।
ସୁଦକ୍ଷିଣ କାମ୍ବୋଜ ଯବନ ଧରି ସେନା
ଘୋଡ଼ା ଚଢ଼ି ବାହାରିଲେ ହେ ମହାମନା ।
ତ୍ରିଗର୍ତ୍ତ ଅମ୍ବଷ୍ଠ ପ୍ରତୀଚ୍ୟ ଶୂରସେନା
ସଉବୀର ମାଳବ ମଦ୍ରା ଶିବିଗଣ ।
ମଳଦ ଦାକ୍ଷିଣାତ୍ୟ ଉଦିଚ୍ୟ କିରାତ
ଏମାନେ ଦୁର୍ଯ୍ୟୋଧନ ପଛେ ଧନୁହସ୍ତ-
ହୋଇ କର୍ଣ୍ଣଙ୍କର ପୃଷ୍ଠରେ ବାହାରିଲେ
ପାଣ୍ଡବଙ୍କୁ ମାରିବା ବୋଲି ମନେକଲେ ।
ତୁମ୍ଭ ମତେ ଧାନୁକୀ ଶିରୋମଣି କର୍ଣ୍ଣ
ହସାଇଣ ସେନାଙ୍କୁ ରସାଇଲେ ମନ ।
କର୍ଣ୍ଣଙ୍କ ହସ୍ତୀକକ୍ଷା ଧ୍ୱଜ ସୂର୍ଯ୍ୟଜ୍ୟୋତି
ଭାଙ୍ଗି ପକାଇଲେ ସେକାଳେ ମହାମତି ।
କର୍ଣ୍ଣଙ୍କର ତେଜ ଓଜକୁ ଦେଖି ରାଜା-
ମାନେ ତୋଷହେଲେ ମନରେ କରି ପୂଜା ।
ବୋଲାବୋଲି ହେଲେ ପାଣ୍ଡବ ସେନାଗଣ
ମରିବେ ଆଜି ପାଇ କର୍ଣ୍ଣ ହାତ ବାଣ ।
କର୍ଣ୍ଣଙ୍କୁ ତ ଦେବତାମାନେ ହାରିଯିବେ
ପାଣ୍ଡବେ ଯୁଦ୍ଧ କଲେ ବର୍ତ୍ତି କି ପାରିବେ ।

ଏ ଅନ୍ତେ ତୁମ୍ଭ ସେନା ମଧ୍ୟେ ଗୁରୁ ଦ୍ରୋଣ
ଶକଟ ବ୍ୟୂହକୁ କଲେଟି ସେ ଭିଆଣ ।
ପାଣ୍ଡବେ ତାହା ଦେଖି କ୍ରୌଞ୍ଚବ୍ୟୂହ କଲେ
ଯୁଧିଷ୍ଠିର ନୃପତି ଯହୁଁ ଆଜ୍ଞା ଦେଲେ ।
ବ୍ୟୂହ ଆଗରେ କୃଷ୍ଣ ଅରଜୁନ ଦୁଇ
କପିଧ୍ୱଜ ରଥେ ରହିଲେ ନରସାଇଁ ।
ଅର୍ଜ୍ଜୁନଙ୍କ ବାନରଧ୍ୱଜରେ ପ୍ରଭାବ
ଭାଙ୍ଗି ପକାଇଲା ସୂର୍ଯ୍ୟଙ୍କର ଗରବ ।
ଚକ୍ରରେ ସୁଦର୍ଶନ ଧନୁରେ ଗାଣ୍ଡୀବ
ରଥିରେ ଅରଜୁନ ସୂତେ ବାସୁଦେବ ।
ଶ୍ରେଷ୍ଠ ଅଟନ୍ତି ଏ ଚାରିଙ୍କି କପିଧ୍ୱଜ
ରଥ ବହିଣ ପ୍ରକାଶିଲା ମହାତେଜ ।
କାଳଚକ୍ରପରି ସେ କପିଧ୍ୱଜ ରଥ
ଦେଖି କୁରୁମାନେ ଭାଙ୍ଗିଲେ ମନୋରଥ ।
ଅନ୍ୟୋନ୍ୟରେ ସେ କର୍ଣ୍ଣ ଯେ ଅରଜୁନ ଦୁହେଁ
ସୈନ୍ୟ ଆଗେ ରହିଲେ ଧନୁ ଧରି କୋହେ ।
କଟାକ୍ଷରେ ମାତ୍ରକ ହେଲେ ତୁହାଁ ତୁହିଁ
ଦିବ୍ୟ ଅସ୍ତ୍ରରେ ବିନ୍ଧାବିନ୍ଧି ହେବାପାଇଁ ।
ଦ୍ରୋଣଙ୍କର ଯିବାର ଦେଖି ତୁମ୍ଭ ସୈନ୍ୟ
ସିଂହନାଦ କରନ୍ତେ କମ୍ପିଲା ଭୁବନ ।
ଏଥୁଅନ୍ତେ ପବନ ବହିବାରେ ଧୂଳି
ରହିଲା ରାଜନ ଆକାଶ ଯାକ ମାଡ଼ି ।
ଅସ୍ଥି ତୁଲେ ମାଂସ ରକତ ବରଷିଲା
କୁରୁଙ୍କ ଦେହଯାକ ରଙ୍ଗ ତହିଁ କଲା ।
ବକପନ୍ତି କାକ କଙ୍କ ଯେ ଗୃଧ୍ର ଶ୍ୱେନ
ଉଡ଼ିବାରେ ଆକାଶ କରିଦେଲେ ଛନ୍ନ ।
ବିଲୁଆଏ ଦକ୍ଷିଣପଟରେ ସେନାର
ରହିଣ ଡକା କଲେ କରି ଅତି ଘୋର ।
ତୁମ୍ଭର ଯୋଦ୍ଧାମାନଙ୍କର ଚାରିପଟେ
ଆକାଶୁଁ ଉଲ୍‌କା ପଡ଼ିଲା ପଟପାଟେ ।
ଅଶ୍ୱତ୍ଥାମା ପିତା କୃପଙ୍କର ଭିଣୋଇଁ
ଯୁଦ୍ଧ କରିବାକୁ ଯାଆନ୍ତେ ତ୍ୱରା ହୋଇ ।
ସୂର୍ଯ୍ୟ ଦେବତାଙ୍କୁଟି ବେଢ଼ିଣ ପରିଧି
ରହିଲା ବକୁଳିକି ଘେନି ନିରବଧି ।
ଏହି ରୂପରେ ନାନା ଜାତି ଉତପାତ
ହୋଇଲା ତୁମ୍ଭ ସୈନ୍ୟ ହୋଇବାକୁ ହତ ।
ତହୁଁ ଦୁଇସେନା ଜୟକୁ ହୃଦେ ଡାକି
ଯୁଦ୍ଧ କଲେ ରାଜନ କରେ ଅସ୍ତ୍ର ଟେକି ।
ଅନ୍ୟୋନ୍ୟରେ ପ୍ରହାର କରି ଶସ୍ତ୍ରଗଣ
ହରାଇଲେ ଯୁଦ୍ଧରେ ଦୁଇ ସେନା ପ୍ରାଣ ।

ଦ୍ରୋଣ ସେହି କାଳରେ ବିନ୍ଧି ବିନ୍ଧି କାଣ୍ଡ
ରୁନ୍ଧିଲେ ପାଣ୍ଡବଙ୍କ ଆସିବା ଯୁଦ୍ଧକାଣ୍ଡ ।
ଦ୍ରୋଣଙ୍କ ବିନ୍ଧିବା ପାଣ୍ଡବେ ନେତ୍ରେ ଦେଖି
ସଞ୍ଜୟଙ୍କୁ ଘେନି ବିନ୍ଧିଲେ ହୋଇ ସୁଖୀ ।
ଦ୍ରୋଣଙ୍କ ଶର-ବାତ ପାଇଣ ପାଞ୍ଚାଳ
ସୈନ୍ୟ ଘେନି ପଳାଇଲେ ହେ ମହୀପାଳ ।
ଏହା କରି ସାରିଣ ଭରଦ୍ୱାଜ-ସୂନୁ
କମ୍ପାଇଲେ ସଞ୍ଜୟ ପାଣ୍ଡବଙ୍କ ତନୁ ।
ଆପଣାର ଯେ ବଳ ପାଣ୍ଡବସଇନ
ହତ ଦେଖିକରିଣ ଦ୍ରୁପଦନନ୍ଦନ ।
ନିଜ ଧନୁ ଉଭାରି ଦ୍ରୋଣଙ୍କ ସୈନ୍ୟକୁ
ଜଳଧାରା ପରିଟି ମୁଞ୍ଚିଲେ ଶରକୁ ।
ଏ ବାହାରେ ଦ୍ରୋଣ ବିନ୍ଧିବା ଶରଯାକ
କୋଟି କରି କାଟିଲେ କୁରୁଙ୍କର ବେକ ।
ଦ୍ରୋଣ ନିଜ ସୈନ୍ୟ ପାଳନା ଯୁଦ୍ଧେ କରି
ପର ସୈନ୍ୟ ପୀଡ଼ା ବିହିଲେ ଧନୁ ଧରି ।
କ୍ରୋଧେ ଜଳି ଉଠି ଜ୍ୱଳନ ପରି ଶର
ବିନ୍ଧିଲେ ଧୃଷ୍ଟଦ୍ୟମ୍ନପରେ ଗୁରୁବୀର ।
ଦ୍ରୋଣଙ୍କ କାଣ୍ଡରେ ପାଣ୍ଡବ ସୈନ୍ୟ ଗଣ୍ଡି-
ହାଣ୍ଡି ଗଳିଯାଆନ୍ତେ ଭାଜିଲେ ଦରାଣ୍ଡି ।
ଅଲାତଚକ୍ର ପରି ପାଣ୍ଡବଙ୍କ ସୈନ୍ୟେ
ଦ୍ରୋଣ ରଥ ବୁହାଇଲେ ହେ ଅବିଚ୍ଛିନ୍ନେ ।
ଗନ୍ଧର୍ବଙ୍କ ନଗର ପ୍ରାୟେ ରଥବର
ଦ୍ରୋଣଙ୍କର ଦିଶୁଅଛି ତ ମନୋହର ।
ବିଧିମନ୍ତ ହୋଇ ହୋଇଛି ସେ ନିର୍ମିତ
ପତାକାରେ ମୋହୁଛି ସବୁଜନ ଚିତ୍ତ ।
ସ୍ଫଟିକ ପରି କେତୁ ଦିଶୁଛି ନିର୍ମଳ
କରୁଛି ସେ ଶତ୍ରୁଙ୍କ ହୃଦ କଲବଲ ।
ଦ୍ରୋଣ ଧନୁ ଧରି ମାରନ୍ତେ ପାଣ୍ଡବଙ୍କୁ
ନିବାରି ନ ପାରିଲେ ପାଣ୍ଡବେ ତାହାଙ୍କୁ ।
ଯୁଧିଷ୍ଠିର ରାଜା ତ ଦେଖି ଅର୍ଜ୍ଜୁନଙ୍କୁ
କହିକରି କହିଲେ ସେ ଧୃଷ୍ଟଦ୍ୟୁମ୍ନକୁ ।
ବଡ଼ ଯତ୍ନ କରି ନିବାର କୁମ୍ଭଯୋନି
ନୋହିଲେ ମରିବେଟି ଆମ୍ଭର ସଇନି ।
ଅର୍ଜ୍ଜୁନ ଧୃଷ୍ଟଦ୍ୟୁମ୍ନ ଯୁଧିଷ୍ଠିର କଥା
ଘେନିକରି ଅଙ୍ଗୀକାରେ ସେ ପୋତି ମଥା ।
ସଇନକୁ ଘେନିଣ ବେଢ଼ିଲେ ଦ୍ରୋଣଙ୍କୁ
ନାଶିବାକୁ ତାଙ୍କର ଯୁଦ୍ଧ ଗରବକୁ ।
ଭୀଷ୍ମସେନ ସାତ୍ୟକି ସୌଭଦ୍ର ଦ୍ରୌପଦେୟ
ଧୃଷ୍ଟକେତୁ ଦ୍ରୁପଦଆତ୍ମଜ କୈକେୟ ।
ଚେକିତାନ ଯୁଯୁତ୍ସୁ ମତ୍ସ୍ୟ ଯୁଧିଷ୍ଠିର
ନକୁଳ ସହଦେବ ଘଟୋତ୍କଚ ବୀର ।
କୁଳକୁ ଅନୁରୂପ କର୍ମମାନ କରି
ବେଢ଼ିଲେ ଦ୍ରୋଣ ପ୍ରାଣ ନେବାକୁ ଧନୁ ଧରି ।
ପାଣ୍ଡବଙ୍କ ବଳ ଦେଖାଇ ଦେହବଳ
ଏରୂପେ ଦ୍ରୋଣଙ୍କୁ ବେଢ଼ନ୍ତେ ନରପାଳ ।
ଦ୍ରୋଣ ଦୁର୍ଦ୍ଧ ଚକ୍ଷୁଟି ଆରକତ କରି
ଚାହିଁଦେଲେ ଥରେ କୋଦଣ୍ଡ କାଣ୍ଡ ଧରି ।
ପବନରେ ଘନ ତ ଉଡ଼ିଲା ପରାୟେ
ପାଣ୍ଡୁ ସୈନ୍ୟ ଉଡ଼ିଲେ ଦ୍ରୋଣ ଶରବାୟେ ।
ବୃଦ୍ଧା ହେଲେ ଯୁବା ପରାୟେ କରି ଗତି
ମାଇଲେ ଦ୍ରୋଣଗୁରୁ ଅଶ୍ୱ ଗଜପନ୍ତି ।
ଦ୍ରୋଣଙ୍କ ରଙ୍ଗ ଚାରିଅଶ୍ୱେ ନୋହି ଶାନ୍ତ
ଜିଣି ପକାଇଲେ ସେକାଳେ ମହାବାତ ।
ପାଣ୍ଡୁସେନା ଭାବିଲେ ଦ୍ରୋଣରୂପେ ଅବା
ଅନନ୍ତ ମାରୁଅଛି ଆଉ କି ଯୁଝିବା ।
ଏରୂପେ ବିଚାର ଛିଣ୍ଡାଇ ପାଣ୍ଡୁସେନା
ପଳାଇଲେ କାଉଳି ହୋଇ ମହାମନା ।
ଦ୍ରୋଣ ସେକାଳେ ରୌଦ୍ର ବପୁ ଧରି ରୁଦ୍ର-
ପରି ଯୁଦ୍ଧ କଲେଟି ବାହୁ ଦ୍ରୁମ ଭଦ୍ର ।
ଧ୍ୱଜା ବାହୁ ମୁଣ୍ଡ କାଟନ୍ତେ ବାଣେ ଦ୍ରୋଣ
ଶବଦରେ ପୂରିଲା ସେ ଯୁଦ୍ଧ ଅଙ୍ଗଣ ।
ଦ୍ରୋଣଙ୍କ ଶରଧାରା ପାଇ ପାଣ୍ଡୁ ସେନା
ଗାବ ପରି ଗଲେ ହେ ହୋଇଣ ବିମନା ।
ଦ୍ରୋଣଙ୍କର ରଥ ଯେ ଧନୁଘୋଷ ରଡ଼ି
ରହିଲା ଆକାଶମଣ୍ଡଳ ଯାକ ମାଡ଼ି ।
ଦ୍ରୋଣଙ୍କ ଧନୁରୁ ବାହାରି ଶରରାଜି
ସରୋବରରେ ହଂସ ପରାୟେ ଗଲେ ମଜ୍ଜି ।
ଏହା ଦେଖି ପାଞ୍ଚାଳେ ଘେନି ପାଣ୍ଡବଙ୍କୁ
ଆସିଲେଟି ଦ୍ରୋଣଗୁରୁଙ୍କୁ ଯୁଝିବାକୁ ।
ଦ୍ରୋଣଙ୍କର ସକାଶୁଁ ରକ୍ତ ମାଂସ ବସ
ମଣ୍ଡିଲେ ମହୀଦେବୀଟିକି ସେ ବିଶେଷ ।
ଜ୍ୱଳନ୍ତା ଅଗ୍ନି ପରି ଦ୍ରୋଣ କାଣ୍ଡରାଜି
ଚାରିଦିଗୁଁ ପଡ଼ିଲେ କରନ୍ତେ ସେ ଆଜି ।
ପାଣ୍ଡୁ ସୈନ୍ୟ ଘେନେ ବିଜୁଳି ଲତା ପରି
ଚହଟିଲେ ଏକାଟି ଦ୍ରୋଣ ଶସ୍ତ୍ରଧାରୀ ।
ପାଞ୍ଚାଳିନୃପଙ୍କୁ କୈକେୟ ତୁଲେ ଦ୍ରୋଣ
ନିବାରି ଯୁଧିଷ୍ଠିର ବାହିନୀକି ବାଣ ।
ବିନ୍ଧିଲେ ନିଜେ ଓଷ୍ଠ ପୁଟକୁ ଥରାଇ
ଭାରତ ଯୁଦ୍ଧ ମଧ୍ୟେ ଜୟ ନେବା ପାଇଁ ।

ଭୀମସେନ ପାର୍ଥ ସାତ୍ୟକି କାଶୀପତି -
ଶିବ ଶୈବାମ୍ବଜ ଯେ ଦ୍ରୁପଦ ସନ୍ତତି ।
ଏମାନେ ଧନୁ ଧରି ସର୍ଜି ଶରଧାଡ଼ି
ଗରଜି ଯୁଝିଲେ ଦ୍ରୋଣଙ୍କୁ ଝାମ୍ପ ପଡ଼ି ।
କାଞ୍ଚନଚିତ୍ରପୁଙ୍ଖ ଶରେ ଦ୍ରୋଣଙ୍କର
ଧନୁ ମଧ୍ୟଦେଶରୁ ହୋଇଣ ବାହାର ।
ଗଜ ଅଶ୍ୱ ଗଣ୍ଡା ଗିଳିଣ ମହୀ ଗଳି
ଦିଶିଲେ ସୁନାପୁଙ୍ଖ ସୋରିଷ ଫୁଲ ପରି ।
ଅଶ୍ୱ ଗଜ ଯେ ନର ପଡ଼ିବାରେ ମହୀ
ଅଣୁମାତ୍ର ନ ଦିଶିଲେ ହେ ନରସାଇଁ ।
ଭୀମ ଅରଜୁନ ନକୁଳ ସହଦେବ
ସାତ୍ୟକି ଆଦିଙ୍କର ଭାଙ୍ଗିଣ ଗରବ ।
ତୁମ୍ଭ ପୁତ୍ରର ହିତ ଇଚ୍ଛା କରି ଦ୍ରୋଣ
ଦେଖାଇଲେ ଅତିଶୟରେ ବହୁ ଟାଣ ।
କାଳଦେବଙ୍କ ପରି ପ୍ରାଣୀଙ୍କର କାଳ
ପୂରାଇ ଶୁଦ୍ଧଦାଣ୍ଡେ ଭରଦ୍ୱାଜ ବାଳ ।
ପଶ୍ଚିମ ଅବସ୍ଥାକୁ ପାଇବାର ପାଇଁ
ଦ୍ରୋଣ- ସୂର୍ଯ୍ୟ ପଶ୍ଚିମ ଗିରିଶିଖ ଛୁଇଁ ।
ଶାୟକ କିରଣକୁ କରିଣ ନିଉନ
ମଲେ ଅସ୍ତ୍ର ମାରନ୍ତେ ସେ ଧୃଷ୍ଟଦ୍ୟୁମନ ।
କିଛି ଅଧିକରେଟି ଅକ୍ଷୌହିଣୀ ସେନା
ନାଶ କଲେ ଶରରେ ଦ୍ରୋଣ ମହାମନା ।
ଦେଖି ଗୁରୁଗଣ ଦ୍ରୋଣଙ୍କ ମରଣକୁ
ପୂରାଇଲେ ଆଶା ଶବଦେ ଆକାଶକୁ ।
ଦେବ ପିତୃ ଯେତେକ ଯୁଦ୍ଧ ଦେଖୁଥିଲେ
ଯୁଦ୍ଧରେ ମରିବାର ଦ୍ରୋଣଙ୍କୁ ଦେଖିଲେ ।
ପାଣ୍ଡୁସୁତମାନେ ଦ୍ରୋଣଙ୍କୁ କରି କ୍ଷୟ
ସିଂହନାଦ କରିଲେ ବହି ମହାପ୍ରିୟ ।
ସେ ଶବ୍ଦେ ଅବନୀମଣ୍ଡଳ ଗଲା କମ୍ପି
କୁରୁମାନେ ତା ଶୁଣି ହେଲେ ପରିତାପୀ ।
ଏହା ଶୁଣିଣ ଧୃତରାଷ୍ଟ୍ର ମହାରାଜା
ଭୟବଶେ ଥରାଇଦେଲେ ନିଜ ମଜ୍ଜା ।
ବୋଇଲେ ସଞ୍ଜୟ ହେ କି କହୁଛ ମୋତେ
ପାଣ୍ଡବେ ଦ୍ରୋଣଙ୍କୁ ମାଇଲେ କହ ସତେ ।
ପ୍ରଥମେ ବ୍ରାହ୍ମଣ ଦ୍ୱିତୀୟେ ଯାଗପୂତ
ତୃତୀୟରେ ଷଡ଼ଙ୍ଗ ବେଦ ତୁଲେ ଯୁତ ।
ଚତୁର୍ଥରେ ସମସ୍ତ ପ୍ରାଣୀଙ୍କର ଗୁରୁ
ପଞ୍ଚମେ କ୍ଷତ୍ରିୟ ବିଦ୍ୟାରେ ହନ୍ତକାରୁ ।
ପୁଣି ତ ବୟସେ ଅଟନ୍ତି ଅତି ବୃଦ୍ଧ
ମାଇଲେ ପାଣ୍ଡୁସୁତେ କରି କେହିଁ କ୍ରୋଧ ।
ବୃଦ୍ଧା ହେଲେ ଯୁବା ପରାୟେ ତାଙ୍କ ଗତି
କେହି କରି ନ ପାରେ ତାଙ୍କ କରାମତି ।
ଏହି ସକାଶରୁ ବିଚାରୁଅଛି ମନେ
ଦ୍ରୋଣରଥ ଭାଜିଗଲା କି ପାଣ୍ଡୁସୈନ୍ୟେ ।
ଧନୁଶର ଅବା ପଡ଼ିଲା କରୁ ଖସି
ଥିଲେ ତାହାଙ୍କୁ କେହି ନ ପାରନ୍ତେ ନାଶି ।
ନୋହିଲେ ଅବା ବୁଦ୍ଧିବଣା କରି ଯୁଦ୍ଧ
କରିବାରୁ ଆମ୍ଭ ଆଚାର୍ଯ୍ୟ ହେଲେ ବଧ ।
ସୁନାଚିତ୍ରଧନୁ ଧରିଣ ଦ୍ରୋଣ ଗୁରୁ
ଅଟନ୍ତି ତ ଚିତ୍ର ଯୁଦ୍ଧରେ ସେହି ଗୁରୁ ।
ବହୁତ ଦୂରକୁ ସେ ବିନ୍ଧି ତ ପାରନ୍ତି
ସକଳ ଅସ୍ତ୍ର ଶସ୍ତ୍ରମାନଙ୍କୁ ଜାଣନ୍ତି ।
ସୂର୍ଯ୍ୟ ପରି ତେଜକୁ ବହିଥାନ୍ତି ଅଙ୍ଗେ
କି ରୂପେ ଧୃଷ୍ଟଦ୍ୟୁମ୍ନ ମାଇଲା ରଣରଙ୍ଗେ ।
ଏହି ସକାଶରୁ ତ କହୁଅଛି ମୁହିଁ
ଦ୍ରୋଣଙ୍କର ମରଣ ଆଶ୍ଚର୍ଯ୍ୟ ଲାଗଇ ।
ଦ୍ରୋଣ ମରିବାର କର୍ଣ୍ଣରେ ଶୁଣୁଅଛି
କହତ ଜୀବନକୁ କିପାଁ ନ ଛାଡୁଛି ।
ଧିକ ହେଉ ମୋହର ବୁଦ୍ଧିଟି ସଞ୍ଜୟ
ପଥରଠାରୁ ଆଣ୍ଟ ହେଲା ମୋ ହୃଦୟ ।
ଯେଉଁ ଦ୍ରୋଣଗୁରୁଙ୍କୁ ଏ ମଣ୍ଡଳ ଜନ
ନିତି ବସି କରୁଥାଆନ୍ତି ଉପାସନ ।
ସେହି ଦ୍ରୋଣଙ୍କୁ ଧୃଷ୍ଟଦ୍ୟୁମ୍ନ କେହିଁ ଖଣ୍ଡା
ପ୍ରହାରିଣ ପକାଇଦେଲା ଦେଲା କରି ଦଣ୍ଡା ।
ସମୁଦ୍ର ଶୁଖିଯିବା ପ୍ରାୟେ ଦ୍ରୋଣଙ୍କର
ମରିବାର ମଣୁଅଛି ମୁଁ ମନେ କର ।
ସୂର୍ଯ୍ୟପରି ମହୀରେ ଅଶ୍ୱଥାମାତାତ
ପଡ଼ିଥିଲେ ଶର-କିରଣ କରି ହତ ।
ଆହା ଦଇବରେ କି ଶୁଣାଇଲୁ ମୋତେ
ଅଛି ବଳେ ଏହା କଲେ ତ ପାଣ୍ଡୁସୁତେ ।
ଦୁଷ୍ଟ ନିବାରିଣ ଧାର୍ମିକ ରକ୍ଷା କରି
ଶୋଇ ତ ଛନ୍ତି ଦ୍ରୋଣ ଜୀବନକୁ ହାରି ।
ମୋ ପୁତ୍ରମାନଙ୍କର ଜୟ ହେଲା ଧ୍ୱଂସ
ସେ କର୍ମ ଅନୁରୂପ ଫଳୁ ଗଲେ ନାଶ ।
ବଢ଼ ଆରକତ ପବନ ପରି ଗତି
ମହାକାୟ ଯେ ମହାବଳ ବହିଥାନ୍ତି ।
ଦୁନ୍ଦୁଭି ଶଙ୍ଖଘୋଷ ଆଦି ବାଦ୍ୟମାନ
ସହିଅଛିଟି ତାହାଙ୍କର ବେନିକାନ ।
ଏମନ୍ତ ଯେଉଁ ଦ୍ରୋଣଙ୍କର ଚାରିଘୋଡ଼ା
ହେଲା କି କହ ତାଙ୍କ ଯୁଦ୍ଧେ ଗୋଡ଼ ଯୋଡ଼ା ।

ଦ୍ରୋଣ-ଜଳଧିକି ପାଇ ମୋ ସେନାକୁଳ
କହ ନ ବୁଡ଼ାଇଲେ କି ସେ ପାଣ୍ଡୁକୁଳ ।
ରୌଦ୍ରକର୍ମା ଦ୍ରୋଣଙ୍କ ଭଦ୍ରକୁ ବିଚାରି
କେତେ ରଥୀ ଆମ୍ଭ ରଥୀରେ ଧନୁର୍ଦ୍ଧାରୀ ।
ସୁନାରଥରେ ବସିକରି ଦିବ୍ୟ-ଅସ୍ତ୍ର
କମ୍ପାଇଥିଲେ ଦ୍ରୋଣ ପରଜନ ଗାତ୍ର ।
ପାଣ୍ଡୁସୁତେ ତା ଦେଖିଣ କି ମନେ କଲେ
ଏହା ତ ସଞ୍ଜୟ କହିବା ହେଉ ଭଲେ ।
ଯୁଧିଷ୍ଠିର ସହାନୁଗତ ହୋଇ ତାଙ୍କୁ
ବେଢ଼ିକରି ଥିବା ହେ କଲେ ସଂହାରକୁ ।
ନୋହିଲେ ଧୃଷ୍ଟଦ୍ୟୁମ୍ନ ପାଞ୍ଚାଳଙ୍କ ତୁଲେ
ଦ୍ରୋଣକୁ ବେଢ଼ କରି ଯୁଦ୍ଧରେ ମାଇଲେ ।
ଅରଜୁନ ସଇନଗଣକୁ ଆବୋରି
ଯୁଝିଲା ଧୃଷ୍ଟଦ୍ୟୁମ୍ନ ଦେଲା କି ତାଙ୍କୁ ସାରି ।
ଅର୍ଜ୍ଜୁନେ ପାଳିତ ହେବାରୁ ଧୃଷ୍ଟଦ୍ୟୁମ୍ନ
ଘେନିଲା ସିନା ଦ୍ରୋଣଗୁରୁଙ୍କ ଜୀବନ ।
ପିମ୍ପୁଡ଼ିରେ ସର୍ପ ବ୍ୟାକୁଳ ହେଲାପରି
ପାଣ୍ଡୁସେନା ମଧ୍ୟରେ ଦ୍ରୋଣ ଅଧିକାରୀ ।
ବ୍ୟାକୁଳ ହେଉଥିବା ବାଳେ ଧୃଷ୍ଟଦ୍ୟୁମ୍ନ
ମାରିଥିବ ପରା ହେ ପାଉଛି ମୋ ମନ ।
ଦେବଙ୍କେ ଶଚୀପତି ନରେ ଦ୍ରୋଣଯତି
ବଡ଼ ବୋଲିକରି ହେ ସମସ୍ତେ ବୋଲନ୍ତି ।
ସେ ଦ୍ରୋଣ ମହାମତ୍ସ୍ୟ ପରି ମେ ସୈନ୍ୟସିନ୍ଧୁ
ମଧ୍ୟରେ ଚହଟିଣ ଥୁଅନ୍ତେ ମୋ ବନ୍ଧୁ ।
କ୍ଷୁଦ୍ରମତ୍ସ୍ୟ ପାଣ୍ଡୁସୁତେ ଆହେ ସଞ୍ଜୟ
କି ରୂପେ କଲେ କହ ତାହାଙ୍କର କ୍ଷୟ ।
କ୍ଷିପ୍ରହସ୍ତ ଯେ ଦୃଢ଼ଧନ୍ୱା ଯେଉଁ ଦ୍ରୋଣ
ତାଙ୍କୁ ମୁଖେ ପଡ଼ିଲେ ହାରେ ଶତ୍ରୁ ପ୍ରାଣ ।
ଜୀବ ଥିବାଯାକ ଜ୍ୟାଘୋଷ ବେଦଘୋଷ
ବୋଲନ୍ତି ଲୋକେ ନ ଛାଡ଼ନ୍ତି ଦ୍ରୋଣ ପାଶ ।
ଅଦୀନ ଲଜ୍ଜାବନ୍ତ ଶ୍ରୀମନ୍ତ ପରାଜିତ
ଶରଭ ସିଂହ ଦନ୍ତୀ ଗୁଣର ତ ତାତ ।
ଆମ୍ଭ କୁଳଶ୍ରେଷ୍ଠ ରଥିଏ ଚାହୁଁଥିଲେ
ସେ ଦ୍ରୋଣକୁ ଧୃଷ୍ଟଦ୍ୟୁମନ ତ ମାଇଲେ ।
ଦ୍ରୋଣଙ୍କର ପାଇଁ କଲେ କେ ଆଗ ଯୁଦ୍ଧ
ଦ୍ରୋଣଙ୍କ ପୃଷ୍ଠ କେ ରଖିଲେ ବହି ସଧ ।
ଦ୍ରୋଣଙ୍କର ଦକ୍ଷିଣ ସବ୍ୟଚକ୍ର ଦୁଇ
ରକ୍ଷାକଲେ କେ ଥିବା କହ ତା ବଢ଼ାଇ ।
କେଉଁମାନେ ଦ୍ରୋଣଙ୍କ ଧୈର୍ଯ୍ୟ ବଢ଼ାଇଲେ
ଏହା ମୋତେ ସଞ୍ଜୟ କହନ୍ତୁ ହେ ଭଲେ ।

ଦ୍ରୋଣଙ୍କର ପାଇଁ କେ ହରାଇଲେ ପ୍ରାଣ
କରି ପାଣ୍ଡୁସୁତଙ୍କ ସଙ୍ଗେ ମହାରଣ ।
ଯୁଦ୍ଧେ ଦ୍ରୋଣଗୁରୁ ପଳାଇ ପଡ଼ି ଉଠି
ପାଣ୍ଡବଙ୍କୁ ଦେଖାଇ ନାହାନ୍ତି କି ପିଠି ।
ଏହା କହି କହିଲେ ଶୁଣ ଆହେ ସୁତ
ହେଉଛି ମୋ ହୃଦୟେ ମହାମୋହ ଜାତ ।
କ୍ଷଣେ ତୁନି ହୋଇଣ ରହ ଛାଡ଼ି କଥା
ମୋ ହୃଦୟରୁ ଯିବାଯାଏ ମୋହ ବ୍ୟଥା ।
ଏହି ରୂପରେ କହୁଁ କହୁଁ ଧୃତରାଷ୍ଟ୍ର
ପଡ଼ିଲେ ମହୀମଧ୍ୟେ ଜ୍ଞାନ କରି ଭ୍ରଷ୍ଟ ।
ଧୃତରାଷ୍ଟ୍ରଙ୍କର ମୋହକୁ ନେତ୍ରେ ଦେଖି
ବିଞ୍ଚିଲେ ଲୋକେ ଧରି ବିଞ୍ଚଣା ହୋଇ ଦୁଃଖୀ ।
ଚନ୍ଦନରେ ବାସିତ ଜଳକୁ ସିଞ୍ଚିଲେ
କି କରିବା ବୋଲି କଥାବାର୍ତ୍ତା ହୋଇଲେ ।
ଅନ୍ତଃପୁର ନାରୀଏ ଧୃତରାଷ୍ଟ୍ରଙ୍କର
ମୋହ ଶୁଣି ଆସିଲେ ହୋଇଣ କାତର ।
ଆଶ୍ୱାସନା କରି ପାଣିରେ ପାଣି ଧରି
ମୁଖେ ପାଣି ସିଞ୍ଚି ବସାଇ ଧୀର କରି ।
ଧୃତରାଷ୍ଟ୍ର ରାଜା ପାଇଣ ଦେହଜ୍ଞାନ
ପୁଣି ସଞ୍ଜୟଙ୍କୁ କହିଲେ ଏ ବଚନ ।
ଯୁଧିଷ୍ଠିର ଯୁଦ୍ଧେ ତ ଦ୍ରୋଣଙ୍କର ପୀଡ଼ା
ରଚୁଥିଲେ ସରଜି କରି ଶରଭିଡ଼ା ।
ତାହାଙ୍କୁ କେ ଆମ୍ଭର କଲା ନିବାରଣ
ଜାଣିଥିଲେ ତାହା ମୋ ଆଗରେ ବଖାଣ ।
ମତ୍ତହସ୍ତୀ ପରାୟେ ଯୁଧିଷ୍ଠିର ରାଜା
ତାଙ୍କୁ କେ ଯୁଝିଲା ନ ଧରି ଭୟ ମଜ୍ଜା ।
ଯୁଧିଷ୍ଠିର ଯେବେ ଚାହିଁବେ କ୍ରୋଧ ହୋଇ
ମୋ ସେନାଯାକକୁ ତ ପାରନ୍ତି ସେ ଦହି ।
ସବୁ ଲୋକମାନଙ୍କେ ଅଟନ୍ତି ଅଧୃଷ୍ୟ
ପାଇ ତ ଅଛି ପୁଣି ସେ ଯୁବାବୟସ ।
ତାଙ୍କୁ କେଉଁ ଲୋକ ମୋହର ବଳ-ଟାଣ-
ଦେଖାଇ ଯୁଝିଲା ଧନୁରେ ଗୋଟି ବାଣ ।
ମହାକାୟ ମହାଉତ୍ସାହ ମହାବଳ
ଯେଉଁ ଭୀମ ତାଙ୍କୁ କଲା କେ ମୋର ରୋଳ ।
ରଥ-ଆକାଶମଧ୍ୟରେ ଅର୍ଜ୍ଜୁନ-ସୂର୍ଯ୍ୟ
ଧନୁ ମଣ୍ଡଳରେ ଶୋଭିତ କରି ତେଜ ।
ଶର-କିରଣକୁ ତ ପରକାଶ କରି
ଆସିବା ବେଳେ ମୋର ସୈନ୍ୟବଳ ମାରି ।
ଆମ୍ଭ ବୀର-ଘନମଧ୍ୟରୁ ଶରଧାରା
ବାହାରି ଭାଙ୍ଗିଲା କି ଅର୍ଜ୍ଜୁନର ତୋରା ।

ପରବଳମର୍ଦ୍ଦନ କ୍ଷତ୍ରିୟ ମଣ୍ଡନ
ପାଣ୍ଡୁ ନୃପତିଙ୍କର ମଧ୍ୟମ ନନ୍ଦନ ।
କାଳକେୟ ନିବାତକବଚ ପ୍ରାଣହନ୍ତା
ଅଗ୍ନି ଦେବତାଙ୍କୁ ଖାଣ୍ଡବ ବନଦାତା ।
ତ୍ରିଭୁବନ ବିଜୟୀଙ୍କର ଯେହୁ ସଖା
ଏତେ ତେତେ ବଳ ଯାହାର ନାହିଁଲେଖା ।
ସେ ଅର୍ଜ୍ଜୁନ ସଙ୍ଗତେ ଗୋଟିକରି ବାଣ
ବିନ୍ଧିଲେ କି ମୋ ଯୋଦ୍ଧାଗଣ ତା ବଖାଣ ।
ଆମ୍ଭର ଯୋଦ୍ଧାମାନେ ଧନୁ କରି ନୁଆଁ
ଅର୍ଜ୍ଜୁନଙ୍କୁ ଯୁଝିଲେ ହୋଇ କି ମନୁଆଁ ।
ଏକା ରଥରେ ଭୋଜ କୁରୁବଳ ଯାକ
ଗୋଗ୍ରହରେ ଜିଣିଲା ବିନ୍ଧିଣ ଶାୟକ ।
ଏହା ଜାଣୁଁ ଜାଣୁଁ ପୁତ୍ରସ୍ନେହରେ ମୁହିଁ
ବୋଲୁଅଛି ଜୟଟି ମୋର ହେବ ମହୀ ।
ଏ ଜଗତର ସ୍ଥିତି ସଂହାରକରତା
ଅଟନ୍ତି ତ ଋଷି ଦେବଙ୍କର ଭରତା ।
ହୋଇଛନ୍ତି ସାରଥି ଅରଜୁନଙ୍କର
କରୁଛନ୍ତି ମୋହର ଅହିତ ବିଚାର ।
ଅରଜୁନ ପରାୟେ ରଥୀ ଧନୁ ଧରି
ଯୁଝିଛି କେ ଯୁଝିଲ ଯିବ ଦେହ ଧରି ।
ସୁକୁମାର ଯୁବା ଧୀମନ୍ତ ସତ୍ୟବନ୍ତ
ନକୁଳକୁ ଯୁଝିଲା କିଏ ସେ କହତ ।
ଆର୍ଯ୍ୟାବର୍ତ୍ତେ ଅପରାଜିତ ସହଦେବ
ତାହାକୁ ଯୁଦ୍ଧ କଲା ମୋ କେଉଁ ମାନବ ।
ସଉବୀର ରାଜାମାନଙ୍କ ବଳ ମନ୍ଥି
ଆଣିଛନ୍ତି କନ୍ୟାକୁ ସାତ୍ୟକୀ ମହାରଥୀ ।
ସତ୍ୟ ଧୃତି ଶୌର୍ଯ୍ୟ ଯେ ବ୍ରହ୍ମଚର୍ଯ୍ୟ ଆଦି
ଅଛି ତ ସାତ୍ୟକିଙ୍କ ଦେହକୁ ସମ୍ପାଦି ।
କୃଷ୍ଣଙ୍କର ପରିତ ଯୁଦ୍ଧ ତାହାଙ୍କର
ଅର୍ଜ୍ଜୁନ ପ୍ରାୟେ ଅଟନ୍ତି ଧନୁର୍ଦ୍ଧର ।
ବୃଷ୍ଣିମାନଙ୍କରେ ଯେ ଅଟନ୍ତି ପ୍ରବର
ଜାଣିଅଛନ୍ତି ବ୍ରହ୍ମଶର ଆଦି ଶର ।
କୃଷ୍ଣଙ୍କଠାରେ ତିନିଲୋକ ଥିବା ପ୍ରାୟେ
ଗୁଣମାନ ଅଛନ୍ତି ସାତ୍ୟକିଙ୍କ କାୟେ ।
ଦେବତାମାନଙ୍କରେ ଅଟନ୍ତି ଅଧୃଷ୍ୟ
କେ ଯୁଝିଲା ଆମ୍ଭର ତାଙ୍କୁ ମୋଡ଼ି ନିଶ ।
ମୋ ଅନର୍ଥରେ ତ ଅର୍ଜ୍ଜୁନ ରଥେ ଯୁତ
ଉତ୍ତମଓଜାଙ୍କୁ କେ ଯୁଝିଲା କହ ତ ।
ଧୃଷ୍ଟକେତୁ ଶିଖଣ୍ଡୀ କେତୁମାନ ବୀର
ଦ୍ରୋଣ ନାଶ ପାଇଁ ତ ଧରି ଧନୁଶର ।

କରିଥିବେ ଯୁଦ୍ଧ ଆମ୍ଭର କେଉଁ ଲୋକ
ଯୁଦ୍ଧ କଲା ତାଙ୍କୁ ହୃଦରୁ ଛାଡ଼ି ଦକ ।
ଅର୍ଜ୍ଜୁନଙ୍କର ସୁତ କୃଷ୍ଣଙ୍କ ଭଣଜା
କୃଷ୍ଣାର୍ଜ୍ଜୁନ ପରି ଅଟନ୍ତି ମହାତେଜା ।
ବୁଦ୍ଧିରେ ବୃହସ୍ପତି ଶୁକ୍ରଙ୍କ ସମାନ
ଯେଉଁ ଅଭିମନ୍ୟୁ ସେ ଧରି ଶରାସନ ।
ଯମପରି ପାଟି ବିସ୍ତାରି ଯୁଦ୍ଧଦାଣ୍ଡେ
ଧାଇଁଥିଲା ତାକୁ କେ ବାରିଲା ହେ କାଣ୍ଡେ ।
ତରୁଣବୟସିୟା ଅଟେ ଅଭିମନ୍ୟୁ
ସେ ପୁଣି ଧାଇଁଥିବ କରେ ଧରି ଧନୁ ।
ତାହାଦେଖି ତୁମ୍ଭର ହେଲା ମନେ କିସ
ସତ କରି ସଞ୍ଜୟ ମୋ ଆଗେ ପ୍ରକାଶ ।
ସମୁଦ୍ର ମଧ୍ୟେ ନଦୀ ପଶିଲା ପରାୟେ
ଯୁଦ୍ଧେ ତ ଧାଇଁଥିବେ ଦ୍ରୌପଦୀଙ୍କ ପୋଏ ।
ତାଙ୍କୁ କେଉଁ ବୀର ଆମ୍ଭର କଲା ଯୁଦ୍ଧ
ନୋହିକରି ତାଙ୍କର କାଣ୍ଡ ମୁନେ ବଧ ।
କ୍ଷତ୍ରଧର୍ମା କ୍ଷତ୍ରଦେବ ଯେ କ୍ଷତ୍ରଞ୍ଜୟ
ଏ ତିନିହେଁ ଧୃଷ୍ଟଦ୍ୟୁମ୍ନଙ୍କ ତନୟ ।
ବ୍ରହ୍ମଚର୍ଯ୍ୟ କରି ଭୀଷ୍ମଙ୍କ ପାଶେ ରହି
ଅସ୍ତ୍ର ଶସ୍ତ୍ର ବିଦ୍ୟା ତ ଅଛନ୍ତି ସେ ପାଇ ।
ତାହାଙ୍କୁ କେ ଆମ୍ଭର ଦ୍ରୋଣଙ୍କ ସମ୍ମୁଖେ
ଯୁଦ୍ଧ କଲା କହ ନ ପଡ଼ି ଯମମୁଖେ ।
ଚେକିତାନ ବୀରେ ଡରନ୍ତି ବୃଷ୍ଣିଗଣ
ଆମ୍ଭର କେ ତାହାଙ୍କୁ କଲା ଯାଇ ରଣ ।
ବୃଦ୍ଧକ୍ଷେମ ପୁତ୍ର ଯେ ଅନାଧୃଷ୍ଟ ବୀର
ରାଜାମାନଙ୍କୁ ସେ କରିଣ ଅନାଦର ।
କଳିଙ୍ଗ ଦେଶୁଁ କନ୍ୟା ଆଣିଥିଲା ବଳେ
ରହିଲା କେ ଆମ୍ଭର ତାଙ୍କ ସଙ୍ଗେ ରୋଳେ ।
ପାଣ୍ଡବମାନଙ୍କ ମାଉସୀପୁଅ ଭାଇ
ପାଞ୍ଚ କୈକେୟଙ୍କୁ କେ ଯୁଝିଲା ହେ ଯାଇ ।
ବାରୁଣାବନ୍ତେ ରାଜାମାନେ ଯୁଯୁତ୍ସୁଙ୍କୁ
ଛ ମାସ ଯୁଝି ହାରିଗଲେ ସେ ଘରକୁ ।
ତାହା ତ ହୋଇଅଛି ତୁମ୍ଭଙ୍କୁ ଗୋଚର
ତାକୁ କେ କଲା କହ ଆମ୍ଭର ସମର ।
କାଶୀକ୍ଷେତ୍ରେ କାଶୀରାଜାଙ୍କ ପୁଅ ମୁଣ୍ଡ
କାଟିଥିଲେ ଧୃଷ୍ଟଦ୍ୟୁମ୍ନ ତ ବିନ୍ଧି କାଣ୍ଡ ।
ଦ୍ରୋଣକୁ ମାରିବାକୁ ହୋଇଥିଲେ ଜାତ
ଭାବୁଥାନ୍ତି ନିତି ସେ ପାଣ୍ଡବଙ୍କ ହିତ ।
ପୁଣି ତ ଦ୍ରୋପଦୀଙ୍କ ଅଟନ୍ତି ସେ ଭାଇ
ଯୁଝି ତ ଥିବେ ଦ୍ରୋଣ ପ୍ରାଣ ନେବା ପାଇଁ ।

ତାଙ୍କୁ କେ ଆମ୍ଭର ଧନୁରେ ଶର ସନ୍ଧି
ହୋଇଲେ ହେ କହ ତ ଯୁଦ୍ଧେ ବିନ୍ଧାବିନ୍ଧି ।
ଶିଖଣ୍ଡୀଙ୍କର ସୁତ କ୍ଷତ୍ରଦେବ ତୁଲେ
କେଉଁମାନେ ଆମ୍ଭର ବାହାରି ଯୁଝିଲେ ।
ଉଶୀନର ନାତି ଯେ ଶିବିରାଜ ସୁତ
ଶୈବ୍ୟ ତୁଲେ କଲା କେ ଆହବ କହ ତ ।
ବିରାଟଙ୍କ ରଥକୁ ଆମ୍ଭର କେ ରଥୀ
ନିବାରିଲା କହ ତ ଯୁଦ୍ଧେ ନୋହି ବ୍ୟଥୀ ।
ମହାକାୟ ଯେ ମହାବଳ ଘଟୋତ୍କଚ
ମନ କଲେ କ୍ଷଣକେ ପାରେ ଜିଣି ମଞ୍ଚ ।
ଯମ ପରି ପାଟି ବିସ୍ତାରି ଯୁଦ୍ଧ ଦାଣ୍ଡ-
ମଣ୍ଡିଥିବ ସହିଲା ଆମ୍ଭର କେ ତା କାଣ୍ଡ ।
ଘଟୋତ୍କଚ ଆଦିଟି ଯେତେକ ଲୋକଙ୍କୁ
କହିଲି ହେ ସଞ୍ଜୟ ଆଜି ମୁଁ ତୁମ୍ଭଙ୍କୁ ।
ଏମାନେ ପାଣ୍ଡବଙ୍କ ପାଇଁ ପ୍ରାଣ ତ୍ୟାଗ
କରି ଯୁଝୁଥିବେ କେ ନ ଯିବ ସମଭାଗ ।
ପୁରୁଷଙ୍କ ଶ୍ରେଷ୍ଠ ଶାରଙ୍ଗ ଧନୁର୍ଦ୍ଧାରୀ
ଆମ୍ଭଠାରେ ଅଛନ୍ତି ଆସି ରଣ କରି ।
ଲୋକମାନଙ୍କର ତ ଅଟନ୍ତି ସେ ଗୁରୁ
ଧଇର୍ଯ୍ୟରେ ତାହାଙ୍କୁ ଉଣା ହେବ ମେରୁ ।
ସନାତନ ଅବେଦ୍ୟ ଦିବ୍ୟ ଦିବ୍ୟାତ୍ମକ
ବୋଲନ୍ତି ରୁକ୍ମିଣୀ ଦେବୀଙ୍କର ନାୟକ ।
ତାହାଙ୍କ ଦିବ୍ୟ କର୍ମମାନ ମୁଁ ଜାଣିଛି
କହିବି ହେ ଶୁଣ ସଞ୍ଜୟ ସୂତବଶି ।
ଗୋକୁଳରେ ବାଳକ ସମୟରେ ସେହି
ଦେଲେ କେଶୀ ଘୋଡ଼ାକୁ ମାରିଟି ଶୁଆଇ ।
ଉଚ୍ଚୈଃଶ୍ରବା ସମାନ ବଳଟି କେଶିର
ଦେଖିଲେ ଗତି ଭୟ ହୁଏ ପବନର ।
ଯମୁନାଙ୍କ ତୀରେ ସେ କରିଥାଏ ବସା
ତା ବଳକୁ ଦେବେ କରନ୍ତି ପରଶଂସା ।
ଅରିଷ୍ଟର ରିଷ୍ଟକୁ ଗୋଷ୍ଠ ମଧ୍ୟେ ହରି
ସମ୍ପାଦି ନେଲେ ଗୋପୀ ଗୋପାଳ ମନ ହରି ।
କଂସ ପରା ରାଜାର କରେ ଧରି ବାଳ
ପୂରାଇଲେ ମଞ୍ଚା ତଳରେ ତାର କାଳ ।
ଅକ୍ଷୌହିଣୀ ସଇନ ଧରିଣ ସୁନାମା
ରାମ କୃଷ୍ଣ ଘେନି ଦେଖିଲା ଯମସୀମା ।
ପ୍ରଳମ୍ବ ଅସୁରେ ମୁଷ୍ଟିରେ ବଳରାମ
ପ୍ରହାରି ଦେଖାଇଲେ ଯମରାଜା ଗ୍ରାମ ।
ନରକ ପୀଠ ମୁର ଜୟ ହୟଗ୍ରୀବ
ପ୍ରାଣ ନେଲେ ଯୁବାକାଳେଟି ବାସୁଦେବ ।

ଦୁର୍ବାସାଙ୍କୁ ଭାରିଜା ତୁଲେ ସେବା କରି
ତାଙ୍କଠାରୁ ବରଟି ପାଇଛନ୍ତି ହରି ।
ରାଜାମାନଙ୍କର ଦଳି ବଳରେ ମଜ୍ଜା
ହେଲେ ଗାନ୍ଧାରଙ୍କ ସୁତାର ମନରଞ୍ଜା ।
ସେ ସ୍ୱୟମ୍ବରେ କୃଷ୍ଣ କଲେ ଯେଉଁ କର୍ମ
କହିଲେ କ୍ଷତ୍ରିୟେ ପାଇବେ ମହାଶ୍ରମ ।
ଘୋଡ଼ାପରି ପୃଷ୍ଠେ ପାଞ୍ଚଣ ବାଡ଼ି ପିଟି-
ବାରୁ ରାଜାମାନେ ଭାଜିଲେ ପଡ଼ି ଉଠି ।
ଅସ୍ତ୍ରରେ କୃଷ୍ଣ ସଙ୍ଗେ ଯୁଦ୍ଧ କରିବାକୁ
ନୃପତିରେ କାହାକୁ ନ ଆଣେ ମନକୁ ।
ଅକ୍ଷୌହିଣୀଙ୍କର ଈଶ୍ୱର ଜରାସନ୍ଧ
କୃଷ୍ଣଙ୍କ ମାୟାରେ ହୋଇ ସେ ବୁଦ୍ଧି ଅନ୍ଧ ।
ଭୀମ ମହାବଳର ବାହୁବଳ ପାଇ
ବସିଲା ଯମପୁରେ ଦେହକୁ ଫଟାଇ ।
ଯୁଧିଷ୍ଠିର ଯାଗରେ ଚେଦିରାଜା ମୁଣ୍ଡ
କଲେ କୃଷ୍ଣ ଚକ୍ରପାତରେ ଦୁଇ ଖଣ୍ଡ ।
ଶିବଙ୍କର ବରେ ଅଜେୟ ସୌଭପୁର
ଜୟ କଲେ ତା ଶଲ୍ୟ ସହ ଚକ୍ରଧର ।
ଅଙ୍ଗ ବଙ୍ଗ କଳିଙ୍ଗ କୋଶଳ ଆବନ୍ତ୍ୟ
କାଶୀ ବାହ୍ୟ କୂର୍ମ କରୁଷ ଦକ୍ଷିଣାତ୍ୟ ।
ପୌଣ୍ଡ୍ର କାଶ୍ମୀରକ ପିଶାଚ ଦାଶେରକ
ପାର୍ବତୀୟ ଦରଦ କାମ୍ବୋଜ ଔସରିକ ।
ଚୋଳ ପାଣ୍ଡ୍ୟ ତ୍ରିଗର୍ତ୍ତ ମାଳବ ବାଟଧାନ
ଯବନ ଶକଙ୍କ ଭାଙ୍ଗିଲେ ସେ ଗୁମାନ ।
ସମୁଦ୍ରରେ ପଶିଣ ବରୁଣ ଦେବଙ୍କୁ
ଜିଣି ପକାଇଲେ ତ ବରଷି ଶରକୁ ।
ମାରଣ ପଞ୍ଚଜନ ପାଞ୍ଚଜନ୍ୟ ଶଙ୍ଖ
କରି ତାର ଅସ୍ଥିକି ଫୁଙ୍କିଲେ ବହି ସୁଖ ।
ଅର୍ଜ୍ଜୁନଙ୍କୁ ଘେନି ଖାଣ୍ଡବ ବନ ଦହି
ଅଗ୍ନିଠାରୁ ଚକ୍ର ଆଣିଲେ ପ୍ରୀତି ବହି ।
ଗରୁଡ଼ ଆରୋହି ସ୍ୱର୍ଗକୁ କୃଷ୍ଣ ଗଲେ
ଇନ୍ଦ୍ରଙ୍କୁ ଜିଣି ପାରିଜାତକ ଆଣିଲେ ।
କୃଷ୍ଣଙ୍କର ଅଜୟ ହୋଇ କଥା ଅଛି
ବୋଲି କାନ ଆଜଯାଏଁଟି ନ ଶୁଣୁଛି ।
ମୋର ସଭାରେ ବିଶ୍ୱରୂପ ଧରି ଯାହା
କଲେ ତାହା ଦେଖି ତ ଭାଙ୍ଗିଲା ଉତ୍ସାହ ।
କୃଷ୍ଣଙ୍କଠାରେ ମୁହିଁ ହୁଅନ୍ତେ ପ୍ରସନ୍ନ
କୃଷ୍ଣ ଦେଲେ ମୋତେ ସାକ୍ଷାତେ ଦରଶନ ।
ଏଣୁ କୃଷ୍ଣ କଥା ମୁଁ ଜାଣଇ ସଞ୍ଜୟ
କୃଷ୍ଣ ମୋହର ଜାଣ ହୃଦୟର ପ୍ରିୟ ।

କୃଷ୍ଣଙ୍କର କରମ ଅନ୍ତ ପାଇବାକୁ
ଏ ମହୀରେ ସଞ୍ଜୟ ନ ଦେଖେ କାହାକୁ ।
ଗଦ ଶାମ୍ବ ବିଦୁରଥ ଯେ ପ୍ରଦ୍ୟୁମନ
ଅଗାବହ ଝିଲ୍ଲୀ ଯେ ନିଶଠ ସାରଣ ।
ଉଲ୍ମୁକ ଚାରୁଦେଷ୍ଣ ଅରିମେଜୟ ପୃଥୁ
ଅନିରୁଦ୍ଧ ବଭ୍ରୁ ଯେ ସମୀକ ବିପୃଥୁ ।
ଏହାଙ୍କୁ ଘେନି କୃଷ୍ଣ କଲେଟି ଯୁଦ୍ଧକୁ
କୁରୁଏ ବଞ୍ଚି ନିକି ଆସିବେ ଘରକୁ ।
ଅୟତେ ନାଗବଳ ପ୍ରଳମ୍ବ ବଇରୀ
ହଳ ମୂଷଳକୁ ଥାଆନ୍ତି କରେ ଧରି ।
କୃଷ୍ଣଙ୍କର ପାଶ ସେ ନ ଛାଡ଼ନ୍ତି କ୍ଷଣେ
କେ ବଞ୍ଚିଯିବ ତାଙ୍କ ମୁଖୁଁ କହ ରଣେ ।
ପାଣ୍ଡବଙ୍କ ପାଇଁକି ଅକର୍ତ୍ତବ୍ୟ କଥା
କର୍ତ୍ତବ୍ୟ କରିବେଟି କୃଷ୍ଣ ମହାରଥା ।
କୃଷ୍ଣ ପ୍ରତି କି ଯୋଦ୍ଧା ହୋଇଣ ଜଗତ
ମଧ୍ୟେ କାହିଁ କୁରୁଏ ପାଇବେ କହ ତ ।
କୁରୁମାନେ ଜିଣିଲେ ପାଣ୍ଡବମାନଙ୍କୁ
କୃଷ୍ଣ ଦେଖାଇବେଟି କୁରୁଙ୍କୁ ଯମଙ୍କୁ ।
ରାଜାମାନଙ୍କର ତୁଲରେ କୁରୁକୁଳ
କୃଷ୍ଣବଳରେ କରି ଦେଇଣ ନିର୍ମୂଳ ।
ପାଣ୍ଡବ ନ ଥିଲେ କୁନ୍ତିଙ୍କି ଦେଇ ମହୀ
ବୋଲିବେ ଭୋଗ କର ମୋ ବଳ ସାହାପାଇ ।
ଅର୍ଜୁନ ରଥୀ କୃଷ୍ଣ ସାରଥୀ ଯେ ରଥେ
ସେ ରଥକୁ ବାରିବା ଆମ୍ଭେ କେଉଁ ରଥେ ।
କେଉଣସି ଉପାୟେ କୁରୁଙ୍କର ଜୟ
ହେଲା ପରି ମନକୁ ନ ଆସେ ସଞ୍ଜୟ ।
ଯୁଦ୍ଧକଥା ଶୁଣିବାକୁ ତ ଶ୍ରଦ୍ଧା ଅଛି
ଏଣୁ ମୁଁ ସଞ୍ଜୟ ତୁମ୍ଭଙ୍କୁ ପଚାରୁଛି ।
କୃଷ୍ଣ ଅର୍ଜୁନ ତ ଅଟନ୍ତି ଏକ ଅଙ୍ଗ
କୀର୍ତ୍ତି ଜୟ କରିଛି ତାଙ୍କ ପୃଷ୍ଠସଙ୍ଗ ।
କେଉଣସି ଲୋକରେ ଅଭିମନ୍ୟୁ ପିତା
ନୁହନ୍ତି ହେ ଜାଣ ଯୁଦ୍ଧଦାଣ୍ଡରେ ଜିତା ।
ମୋହରେ ତ ମୋହର ସୁତ ଦୁର୍ଯ୍ୟୋଧନ
ନ ଜାଣି କଲା କୃଷ୍ଣାର୍ଜୁନେ ଆୟୋଧନ ।
କୃଷ୍ଣ ଅରଜୁନ ଯେ ନର ନାରାୟଣ
ଋଷିମାନେ କରି ତ ଅଛନ୍ତି ବଖାଣ ।
ନା ଜାଣି ମୋର ସୁତ ଦୁର୍ଯ୍ୟୋଧନ ଭେଣ୍ଡା
ତାହାଙ୍କର ତୁଲେ ବାନ୍ଧିଲା ବସି ଖଣ୍ଡା ।
ସେ ଦୁହେଁ ମନେ ବିଚାରିଲେ କୁରୁକୁଳ
ନ କରି ଯୁଦ୍ଧ ହୋଇଯିବେଟି ନିର୍ମୂଳ ।
ନର ଦେହ ଧରିବାରୁ ସେ ଦୁଇଲୋକ
କରିନାହାନ୍ତିଟି ଏରୂପେ କଥାଯାକ ।
ଭୀଷ୍ମ ଦ୍ରୋଣଙ୍କ ବଧ ଯୁଗ ଲେଉଟିବା
କଥାକୁ ହେ ସଞ୍ଜୟ ପଟାନ୍ତର ଦେବା ।
ନିତ୍ୟକ୍ରିୟା ବିଦ୍ୟାଧ୍ୟୟନରେ ମୃତକୁ
ଜିଣିଛନ୍ତି ପ୍ରାଣୀଏ ନ ଦେଖି କାହାକୁ ।
ଭୀଷ୍ମ ଦ୍ରୋଣଙ୍କୁ ପରା ଦୁହିଁଙ୍କି ହରାଇ
ଜୀଇଁଛି ଯା ସଞ୍ଜୟ ଏଥୁ କଷ୍ଟ ନାହିଁ ।
ଯୁଧିଷ୍ଠିରଙ୍କଠାରେ ଅସୂୟା କରିବାରୁ
ମଲେଟି ଭୀଷ୍ମ ଦ୍ରୋଣ ହୋଇ ମୋର ଗୁରୁ ।
ମୋ ଘେନି କୁରୁକୁଳ ହୋଇଲେ ନିର୍ମୂଳ
ବୁଢ଼ା ହେଲାଠାରେ ତ ଲୋଭ କଲି ମୂଳ ।
ଅନନ୍ତ ଅଇଶ୍ୱର୍ଯ୍ୟ ଲୋକେ ଯୁଧିଷ୍ଠିର
ପାଇଲେ କରି ଭୀଷ୍ମ ଦ୍ରୋଣଙ୍କୁ ସଂହାର ।
ଅଧର୍ମ ନିକି ଆମ୍ଭ ମନେ ହେଲା ସାହା
ଏ ଘେନି ଜାଣୁଛୁଁ ଯା ବୋଇଲେ ତୁଣ୍ଡ ଆହା ।
ଦୈବ ଯାହା କରୁଥାଏ ସେ ହୋଇଯାଏ
ଲୋକ ଚିନ୍ତା କଲାର ବ୍ୟର୍ଥଟି ବୋଲାଏ ।
ଅପରିହାର୍ଯ୍ୟ କଷ୍ଟ ହୁଅନ୍ତେ ପ୍ରାପତ
କି କଲେ ସୂତପୁତ୍ର ସଞ୍ଜୟ କହ ତ ।
ସଞ୍ଜୟ କହିଲେ ହେ ମରିବାର ଦ୍ରୋଣ
ଯେ ରୂପେ ଦେଖିଛି ମୁଁ ସେ ରୂପେ ବଖାଣ ।
କରିବି ତୁମ୍ଭ ଆଗେ ଶୁଣ ବସି ତାହା
ଯେବେଟି ଶୁଣିବାକୁ ହେଉଛି ଉତ୍ସାହ ।
ହୁଅନ୍ତେ ତୁମ୍ଭ ସେନା ମଧ୍ୟେ ସେନାପତି
ଦ୍ରୋଣଗୁରୁ ଭରଦ୍ୱାଜଙ୍କର ସନ୍ତତି ।
ଦୁର୍ଯ୍ୟୋଧନ ଆଗେ କରିଲେ ଏ ଯୁକତି
ଭୀଷ୍ମ ଅନ୍ତେ ମୋତେ କଲ ତ ସେନାପତି ।
କେଉଁ ମନୋରଥ ହୋଇଛି ତୁମ୍ଭର
ତାହା ମାଗ କରିବୁଁ ଏ ଚିତ୍ତ ଆମ୍ଭର ।
ଏହା ଶୁଣିଣ ଦୁର୍ଯ୍ୟୋଧନ ହୋଇ ହୃଷ୍ଟ
ନିଜର ଗଣ୍ଡିଟିକି କରିଦେଇ ପୁଷ୍ଟ ।
କର୍ଣ୍ଣ ଆଦୀ ରଥୀଙ୍କ ତୁଇରେ ବିଚାର
ଛିଣ୍ଡାଇ କହିଲେ ଶୁଣ ହେ ଦ୍ୱିଜବର ।
ରହିଥିବେ ଜୀବେ କୁନ୍ତୀଙ୍କ ଜ୍ୟେଷ୍ଠବତ୍ସ
ମୋତେ ଆଣି ଦେବେ ମୁଁ ଏ ବର ମାଗୁଛି ।
ଦ୍ରୋଣ ଏହା ଶୁଣି ବୋଇଲେ ଦୁର୍ଯ୍ୟୋଧନ
ଯୁଧିଷ୍ଠିର ରାଜା ଅଟନ୍ତି ମହାଧନ୍ୟ ।
ବଧ ଛାଡ଼ି ତାଙ୍କ ବନ୍ଧନ ଯାହା ମୋତେ
ମାଗିଲ ଏଣୁ ଏହା ଘେନିଲି ମୁଁ ଚିତ୍ତେ ।

କିମ୍ବା ତାଙ୍କ ବଧେ ନୋହିଲା ତୁମ୍ଭ ଇଚ୍ଛା
ଏହା ମୋତେ କହ ହେ ଧୃତରାଷ୍ଟ୍ର ବତ୍ସା ।
ଯୁଧିଷ୍ଠିର ଅଜାତଶତ୍ରୁ ତ ବୋଲାନ୍ତି
ଏଣୁ ତାଙ୍କ ଜୀବ ରଖିଲ କି ନୃପତି ।
ପାଣ୍ଡବଙ୍କୁ ଜିଣିଣ ରାଜ୍ୟ ସୁମନରେ
ଦେଇ ତାଙ୍କୁ ରଖିବ ଅବା ହେ ପାଶରେ ।
ଦ୍ରୋଣ ଏହା କହନ୍ତେ ହସି ଦୁର୍ଯ୍ୟୋଧନ
କଲେ ଦ୍ରୋଣ ଆଗେ ବଖାଣ ଏ ବଚନ ।
ଯୁଧିଷ୍ଠିର ନୃପେ ମରାନ୍ତି ଯେବେ ମୁହିଁ
ଅର୍ଜ୍ଜୁନ ଆଗକୁ ଆମ୍ଭର ରଥୀ କାହିଁ ।
କ୍ରୋଧ ହୋଇ ଗାଣ୍ଡିବଧନୁରେ ଯୋଚି ବାଣ
ଘେନି ପକାଇବେ ସେ କୁରୁଙ୍କର ପ୍ରାଣ ।
ଦେବତାରେ ଅଯୟ ଅଟନ୍ତି ପାଣ୍ଡବେ
ଆମ୍ଭେ କେହିଁ ବୋଲିବା ଆମ୍ଭରେଜୟ ହେବେ
ପାଣ୍ଡବରୁ ଜଣେଟି ଜୀଇଁଲେ ନିଃଶେଷ
ଆମ୍ଭଙ୍କୁ କରିବେ ହେ ଭରଦ୍ୱାଜ ଶିଷ ।
ଯୁଧିଷ୍ଠିର ରାଜାଙ୍କୁ ଦେଲେ ତୁମ୍ଭେ ଧରି
ପୁଣି ଜୁଆ ଖେଳିବି ବିଚାର ମୋହରି ।
ଜୁଆରେ ତ ମୋତେ ସେ ହାରିବେ ଅବଶ୍ୟ
ବନର ମଧ୍ୟେ ତାଙ୍କୁ କରାଇବି ବାସ ।
ବହୁତ କାଳ ଏହି ସକାଶୁଁ ତ ଯିବ
ନିଷ୍କଣ୍ଟକ ହୋଇ ପୃଥିବୀ ମୋର ହେବ ।
ଯୁଧିଷ୍ଠିର ନୃପେ ମାଇଲେ କାର୍ଯ୍ୟ ନାହିଁ
ଏହା ଭାବି ଏ ବର ମାଗିଲିଟି ମୁହିଁ ।
ଦ୍ରୋଣ ଦୁର୍ଯ୍ୟୋଧନଙ୍କ କୂଟ ଅଭିପ୍ରାୟ
ଜାଣିପାରି ଅନ୍ତର ରଖିଣ ହୃଦୟ ।
ବୋଇଲେ ଆହେ ରାଜା ଅର୍ଜ୍ଜୁନ ନ ଥିଲେ
ଯୁଧିଷ୍ଠିରଙ୍କୁ ମୁଁ ଆଣିବି ବାନ୍ଧି ଭଲେ ।
ଅର୍ଜ୍ଜୁନରେ ପାଳିତ ହେଲେ ଯୁଧିଷ୍ଠିର
ଏ କଥା କରି ନ ପାରନ୍ତି ଶଚୀବର ।
ତରୁଣ ଶୂର ଧନୁର୍ଦ୍ଧରେ ମୋର ତହୁଁ
ଅଧିକ ଅଟେ ହେ ଅର୍ଜ୍ଜୁନ ମହାବାହୁ ।
ଇନ୍ଦ୍ର ରୁଦ୍ର ଯକ୍ଷ କୁବେର ଯେ ବରୁଣ
ତାଙ୍କୁ ଯାଚି ଦେଇଅଛନ୍ତି ଅସ୍ତ୍ରଗଣ ।
କୌଣସି ଉପାୟେ ଯୁଦ୍ଧରେ ବିଜୟକୁ
ଜିଣି ନ ପାରିବ ହେ କହୁଛି ତୁମ୍ଭଙ୍କୁ ।
ଅର୍ଜ୍ଜୁନଙ୍କର ଭାଇ ଯୁଧିଷ୍ଠିର ବନ୍ଦୀ-
କଲେଟି ବସିବେ ସ୍ତିରୀଏ ଘରେ କାନ୍ଦି ।
ଏରୂପେ ଚିକ୍କଣ କରିଣ ଯେ ବଚନ
କହନ୍ତେ ସେନା ମଧ୍ୟେ ଦ୍ରୋଣ ତପୋଧନ ।

ତୁମ୍ଭ ସୁତ ଉତ୍ତମ ବାଇ ତ ଅଟନ୍ତି
ବୁଝି ନ ପାରି ଲଭିଲେ ଅତି ପ୍ରୀତି ।
ପାଣ୍ଡବଙ୍କଠାରେ ଦ୍ରୋଣଙ୍କ ସ୍ନେହଯାକ
ଜାଣନ୍ତି ଦୁର୍ଯ୍ୟୋଧନ ଅବନୀନାୟକ ।
ଏହି ସକାଶରୁ ଦ୍ରୋଣଙ୍କ ପ୍ରତିଜ୍ଞାଟି
ଦୁର୍ଯ୍ୟୋଧନ କହିଲେ ସର୍ବେ ମେଳି ପାଟି ।
ଯୁଧିଷ୍ଠିର ନୃପେ ଧରିବେ ଗୁରୁ ଦ୍ରୋଣ
ଏହା ଶୁଣିକରିଟି ତୁମ୍ଭ ସେନାଗଣ ।
ତାଳ ଶଙ୍ଖ ଭେରୀ ମୃଦଙ୍ଗ ବଜାଇଲେ
ପାଣ୍ଡବେ ଆମ୍ଭ ବଶ ହେଲେ ମନେ କଲେ ।
ଯୁଧିଷ୍ଠିର ଦ୍ରୋଣ କହିବା ପ୍ରତିଜ୍ଞାକୁ
ଚାର ମୁଖରୁ ପାଇକରି ବାରତାକୁ ।
ସବୁ ଭାଇମାନଙ୍କୁ ଡକାଇ ଆଣିଲେ
ଦ୍ରୋଣଙ୍କ କରିବାର ପ୍ରତିଜ୍ଞା କହିଲେ ।
ଏ ବାହାରେ କହିଲେ ଆହେ ଅରଜୁନ
ଶୁଣିଲ ତ ଦ୍ରୋଣଙ୍କ ପ୍ରତିଜ୍ଞା ବଚନ ।
ଯେଉଁରୂପେ ମୋତେ ସେ ନ ପାରିବେ ଧରି
ସେ ରୂପେ କରିବ ଗାଣ୍ଡୀବ ଧନୁର୍ଦ୍ଧାରୀ ।
ତୁମ୍ଭେ ଯେବେ ମୋହ ପାଖରେ ଯୁଝୁଥିବ
ଜାଣୁଛି ଦୁର୍ଯ୍ୟୋଧନ ସକାମ ନୋହିବ ।
ଅର୍ଜ୍ଜୁନ ବୋଇଲେ ଦ୍ରୋଣଙ୍କୁ ମାରିବାର
ଇଚ୍ଛା ନାହିଁ ମୋର ଜାଣ ହେ ଯୁଧିଷ୍ଠିର ।
ପ୍ରାଣନିକି ମୁହିଁ ଛାଡ଼ିବି ଯୁଦ୍ଧଦାଣ୍ଡେ
ନ ମାରିବି ଦ୍ରୋଣଗୁରୁଙ୍କୁ ମୁହିଁ କାଣ୍ଡେ ।
ତୁମ୍ଭଙ୍କୁ ମୋ ପାଶରୁ ଯୁଦ୍ଧେ ଛାଡ଼ିବାକୁ
ନାହିଁ ମୋ ଶକତି କହିବି କି ତୁମ୍ଭଙ୍କୁ ।
ପୃଥ୍ୱୀ ସିନା ଦ୍ୱିଖଣ୍ଡ ହୋଇ ଫାଟିଯିବ
ମୁଁ ଜୀଇଁଥିଲେ ଦ୍ରୋଣ ଧରି ନ ପାରିବ ।
ବିଷ୍ଣୁ ରୁଦ୍ର ଇନ୍ଦ୍ରଟି ଦ୍ରୋଣଙ୍କୁ ସହାୟ
ହେଲେ ମୁଁ ଥିଲେ ନେଇ ନାହାନ୍ତି ସେ ଜୟ ।
ମୁଁ ଜୀଇଥିବାଯାକ ଦ୍ରୋଣଠାରୁ ଭୟ
କହୁଛି ଥିଲେ ନୃପଶିଖ ଛାଡ଼ିଦିଅ ।
କାହାକୁ ମୁଁ ଯୁଦ୍ଧରେ ନୃପ ନାହିଁ ହାରି
ହୋଇନାହିଁ ମିଥ୍ୟା ବଚନେ ଅଧିକାରୀ ।
ତୁମ୍ଭଙ୍କୁ କହିବାର କଥା ମୋର ମିଥ୍ୟା
ନୁହଇ ହେ ନୃପତି ଛାଡ଼ିଦିଅ ବ୍ୟଥା ।
ଏରୂପେ ଅର୍ଜ୍ଜୁନ- ବଚନ ପାଣ୍ଡୁସେନା
ଜନେ ଶୁଣି କାନରେ ହୋଇ ତୋଷମନା ।
ଶଙ୍ଖ ଭେରୀ ପଣବ ଗୋମୁଖ ଆନେକ
ବଜାଇ ପୂରାଇଲେ ସେ ଶବଦେ ନାକ ।

ବୀରମାନେ ବାହାସ୍ଫୋଟ ଯେ ଧନୁର୍ଘୋଷ
କରିଣ ସିଂହନାଦ କଲେଟି ବିଶେଷ ।
ପାଣ୍ଡବଙ୍କର ବାଦ୍ୟ ଶୁଣି ତୁମ୍ଭ ସେନା-
ମାନେ ବାଦ୍ୟ ବଜାଇ ହେଲେ ମହାମନା ।
ଏଥୁ ଅନ୍ତେ ଦୁଇସେନା ହୋଇ ଭେଟାଭେଟି
ପଞ୍ଚାପାଞ୍ଚ୍ ହେଲେ ଧନୁରେ ଶର ଯୋଚି ।
କୁରୁ ପାଣ୍ଡୁ ତୁଲେ ପାଞ୍ଚାଳ ଦ୍ରୋଣଙ୍କର
ପ୍ରବର୍ତ୍ତିଲାଟି ଅତିଶୟରେ ସମର ।
ଦ୍ରୋଣଙ୍କରେ ପାଳିତ ହୁଅନ୍ତେ ସୃଞ୍ଜୟ-
ମାନେ ଦ୍ରୋଣ ସୈନ୍ୟରେ ନ ପାଇଲେ ଜୟ ।
ସେ ରୂପେ ଅର୍ଜ୍ଜୁନେ ପାଳିତ ପାଣ୍ଡୁସେନା
ହେବାରୁ ନ ପାଇଲେ ନୃପ ତୁମ୍ଭ ସେନା ।
ଦ୍ରୋଣ ଅର୍ଜ୍ଜୁନରେ ରକ୍ଷିତ ଦୁଇସେନା
ହେଲେ ହାର ଜିଣା ନ ଗଲା ରାୟେ ଜଣା ।
ଦୁଇ ସେନା ସମୁଦ୍ର ଯୁଦ୍ଧଭୂମି ବେଳା
ଲଙ୍ଘି ନ ପାରିଲେ ଅମ୍ବିକାଦେବୀ- ବଳା ।
କନକରଥେ ଥାଇ ଏକା ଦ୍ରୋଣଗୁରୁ
ବିହରିଲେ ସେନାରେ ନୋହି କିଛି ଭୀରୁ ।
ଏକାଦ୍ରୋଣଗୁରୁଙ୍କୁ ଅନେକ ନରମଣି
ରହିଲେ ଡରି ଯୁଦ୍ଧେ ପାଣ୍ଡୁସେନା ଶ୍ରେଣୀ ।
ଦ୍ରୋଣ କାଣ୍ଡ ବିନ୍ଧି ପାଣ୍ଡବସେନା ରୁନ୍ଧି
କେତେ ଯୋଦ୍ଧାଙ୍କର ବେକୁକ ଦେଲେ ଛେଦି ।
ମଧ୍ୟାହ୍ନ ସୂର୍ଯ୍ୟପରି ତେଜ ବହି ଦ୍ରୋଣ-
ଆଚାର୍ଯ୍ୟ ଯୁଝିଲେ ଦେଖାଇ ବାହୁ ଟାଣ ।
ଦ୍ରୋଣଙ୍କୁ ଚାହିଁବାକୁ ପାଣ୍ଡବ ସେନାରେ
ନ ଦେଖିଲୁ ନୃପ କାହାକୁ ନୟନରେ ।
ଏରୂପେ ପାଣ୍ଡୁସେନାମାନଙ୍କର ମୋହ
କରାଇ ହୃଦମଧ୍ୟେ ଧରି ମହାକୋହ ।
ଧୃଷ୍ଟଦ୍ୟୁମନ ବୀର ସେନାଙ୍କ ଉପରେ
ବିନ୍ଧିଲେ ସେ ନିଶିତ କାଣ୍ଡକୁ ସଧୀରେ ।
ଧୃଷ୍ଟଦ୍ୟୁମ୍ନଙ୍କର ସେନାକୁ ଶରେ ରୁନ୍ଧି
ଆସିଲେ ଧୃଷ୍ଟଦ୍ୟୁମ୍ନଠାରୁ ଦ୍ରୋଣ ଯୋଧୀ ।
ସାକ୍ଷାତେ ଅଗ୍ନିପରି ଦ୍ରୋଣଙ୍କର ଶର
ଦେଲା ହେ ଯୁଦ୍ଧେ ପୋଡ଼ି ପାଣ୍ଡୁସେନା ନର
ତାହା ଦେଖି ସୃଞ୍ଜୟମାନେ ଥରଥର-
ହୋଇ ମନେ ଭାବିଲେ ମଲାଇଁ ଏଥର ।
ବଜ୍ରପରି ସବୁ ଆଡ଼ରେ ଧନୁର୍ଘୋଷ
ଶୁଭନ୍ତେ ଦ୍ରୋଣଙ୍କୁ ପାଇଲେ ଜନେ ତ୍ରାସ ।
କ୍ଷିପ୍ରହସ୍ତ ଦ୍ରୋଣ ଦେଖା ଶୀଘ୍ରହସ୍ତ
ବିନ୍ଧନ୍ତେ ରଥୀ ହାତୀ ହେଲେ ଯୁଦ୍ଧେ ଅସ୍ତ ।

ଯେଉଁରୂପେ କରକା ଘନେ କରେ ବୃଷ୍ଟି
ସେରୂପେ ଶରେ ଦ୍ରୋଣ ପୂରାଇଲେ ସୃଷ୍ଟି ।
ପାଣ୍ଡୁସେନା ଦ୍ରୋଣଙ୍କୁ ମଣିଲେ ଦେବତା
ନୋହିଲେ ମନୁଷ୍ୟ କି ଏ ରୂପେ ମାରନ୍ତା ।
ରଥ- ଘନେ ଦ୍ରୋଣଙ୍କ ସ୍ୱର୍ଣ୍ଣମଣ୍ଡା ଚାପ
ଖଣ୍ଡି ପକାଇଲା ସୁଭଦ୍ରାଙ୍କର ରୂପ ।
ସେକାଳେ ରକତରେ ନଦୀଟାଏ ଦ୍ରୋଣ
ଭିଆଇଲେ ଯୁଦ୍ଧ ଭୂମିରେ ନରରାଣ ।
ହାଦୀ ଘୋଡ଼ା ଓଟ ଯେ ରଥ ଆବରତ
ମେଦ ମଜ୍ଜା ବୋଲି କବଚ ଭେଳାବ୍ରାତ ।
ମାଉଁସ ପଙ୍କ ଅସ୍ଥି ଗୋଡ଼ି ପାଗ ଫେନ
ଶରବେଗ ପ୍ରବାହ ଶ୍ରୋଣିତ ଜୀବନ ।
ଶରଖଣ୍ଡି ମତ୍ସ୍ୟ ଯେ ଚିକୁର ଶିଆଳି
ଛତି ହଂସ ଗଦାଟି କୁମ୍ଭୀର ଆବଳୀ ।
ମୁକୁଟ ପକ୍ଷୀମୁଣ୍ଡ ଶୀଳା ଚକ୍ର କୂର୍ମ
ଭାସୁଛନ୍ତି ତହିଁରେ ବୀରଙ୍କ ଗଣ୍ଡିଦ୍ରୁମ ।
ଶୂରଙ୍କରେ ହୃଷର ଭୀରୁଙ୍କ ହସ୍ତର
ବୋଲିକରି ନୃପ ସେ ନଦୀ ମନେକର ।
କାକ ଗୃଧ୍ର ବିଲୁଆ କୁକ୍କୁରେ ସେବିତ
ହୋଇ ଭୂତ ପ୍ରେତଙ୍କ ଉଲ୍ଲାସିଲା ଚିତ୍ତ ।
ଦ୍ରୋଣଙ୍କର ଏରୂପେ କରମକୁ ଦେଖି
କି କଲା ବୁଢ଼ାଦ୍ୱିଜ ବୋଲି ହୋଇ ଦୁଃଖୀ ।
ଯୁଧିଷ୍ଠିରରାଜାଙ୍କୁ ଆଗରେ ଚଳାଇ
ଦ୍ରୋଣ ବୁଢ଼ାଟିକି ବେଢ଼ିଲେ ରାୟେ ଯାଇ ।
ପରଲୋକେ ଆବୃତ ହୋନ୍ତେ ଗୁରୁ ଦ୍ରୋଣ
ତୁମ୍ଭ ଲୋକମାନେ ଦେଖାଇ ବହୁଟାଣ ।
ପାଣ୍ଡବସେନାଙ୍କର ରହି ଚାରିପଟେ
ବିନ୍ଧିଲେ ଶର ତାଙ୍କ ଦେହେ ପାଟପାଟେ ।
ଶତମାୟା ଆବୃତ ଗାନ୍ଧାରୀଙ୍କ ଭାଇ-
ଶକୁନି ଗଲା ସହଦେବଠାକୁ ଧାଇଁ ।
ସାରଥି ରଥ ଗଜ ସହଦେବଙ୍କର
ଘୋଡ଼ାଇଲେ ଶରରେ ଶକୁନି ତୁମ୍ଭର ।
ସହଦେବ ନ ସହି ଶକୁନି ବିକ୍ରମ
ହୃଦୟରେ ଅତିଶୟରେ ବହି ତମ ।
ଧ୍ୱଜ ଧନୁ ସାରଥି ଅଶ୍ୱେ ଶରେ କାଟି
ଶକୁନିକି ଷାଠିଏ ବିନ୍ଧିଲେ ଶର ଯୋଚି ।
ବିରଥ ହୋଇ ତୁମ୍ଭ ଶଳା ଗଦା ଧରି
ସହଦେବ ସାରଥି ପ୍ରାଣ ନେଲେ ହରି ।
ସହଦେବ ସେରୂପେ ଧରି କରେ ଗଦା
ବୋଇଲେ ଶକୁନି କରିବି ମୁଣ୍ଡ ପଦା ।

ନାନାଜାତି ମଣ୍ଡଳମାନ ଦୁହେଁ କରି
ପିଟାପିଟି ହୋଇଲେ କରେ ଗଦା ଧରି ।
ଦ୍ରୁପଦ ଦ୍ରୋଣ ଦୁହେଁ ହେଲେ ଭେଟାଭେଟି
ଦୁହେଁ ଦଶ ଦଶ ବିନ୍ଧିଲେ ମେଲି ପାଟି ।
ତଦଅନ୍ତେ ଦ୍ରୋଣ ଦେଖାଇ ଦେହଟାଣ
ଘୋଡ଼ାଇଲେ ଦ୍ରୁପଦ ନୃପେ ବିନ୍ଧି ବାଣ ।
ଭୀମ ବିବିଂଶତିକି ବିଂଶ କାଣ୍ଡ ବିନ୍ଧି
ନ ପାରିଲେ ତାଙ୍କର ଯୁଦ୍ଧଦାଣ୍ଡ ରୁନ୍ଧି ।
ଭୀମଙ୍କର ଧ୍ୱଜ ଧନୁକୁ ବିବିଂଶତି
କାଣ୍ଡେ କାଟି ମାଇଲେ ଅଶ୍ୱେ ବହି ପ୍ରୀତି ।
ତୁମ୍ଭର ସେନାଯାକ ବିବିଂଶତି ବଳ
ଦେଖିକରି ଆନନ୍ଦେ କଲେ କୋଳାହଳ ।
ପାଆନ୍ତେ ଭୀମ ଯୁଦ୍ଧ ପରଜନେ ହିଂସା
ହୃଦୟରେ ମହାକ୍ରୋଧଟି କଲା ବସା
ବିବିଂଶତି ଘୋଡ଼ାମାନଙ୍କୁଟି ଗଦାରେ
ପିଟିଣ ପ୍ରାଣ ନେଲେ ସେ ରଣଦାଣ୍ଡରେ ।
ବିବିଂଶତି ନ ସହି ଘୋଡ଼ାଙ୍କ ମରଣ
ଫରି ଖଣ୍ଡା ଧରି ଭୀମଙ୍କୁ କଲେ ରଣ ।
ନକୁଳଙ୍କୁ ଦେଖିଣ ଶଲ୍ୟ ମହାତେଜ୍
ବିନ୍ଧିଲେ କାଣ୍ଡେ ଅଛି ଥରାଇ କ୍ରୋଧେ ମଜ୍ଜା ।
ଶଲ୍ୟଙ୍କର ଧ୍ୱଜ ଛତ୍ର ଯେ ଧନୁ ଆଗ
କାଟିକରି କାଣ୍ଡେ ନକୁଳ ମହାଭାଗ ।
ଘୋଡ଼ା ସାରଥିର ପ୍ରାଣକୁ ରଣେ ହରି
ବଜାଇଲେ ମୁଖଦେଶରେ ଶଙ୍ଖ ଭେରୀ ।
ଧୃଷ୍ଟକେତୁ କୃପଙ୍କ ଶରଯାକ କାଟି
ସତୁରି କାଣ୍ଡ ବିନ୍ଧି ଗର୍ଜି ମେଲି ପାଟି ।
ପଛେ ତିନି କାଣ୍ଡ ବିନ୍ଧିଣ କୃପଧ୍ୱଜ
କାଟି ପକାଇଲେଟି ଦେଖାଇଣ ଓଜ ।
କୃପାଚାର୍ଯ୍ୟ ଯୁଦ୍ଧକୁ ଆଚରି ଆଚରି
ଶରରେ ଦେଲେ ଧୃଷ୍ଟକେତୁକୁ ନିବାରି ।
ସାତ୍ୟକି କୃତବର୍ମା ହୃଦୟ ମଧକୁ
ନାରାଚଟିଏ ବିନ୍ଧି ସଜରେ ଧନୁକୁ ।
ଧରିଣ କରପୁଟେ ବାଛି କରି କାଣ୍ଡ
ସତୁରି ବିନ୍ଧିଲେ ହଲାଇ ପୁଣି ମୁଣ୍ଡ ।
କୃତବର୍ମା ତା ଦେଖି ସତସ୍ତରୀ ଶର
ବିନ୍ଧିଲେ ସାତ୍ୟକି ଉପରେ ନରବର ।
ସାତ୍ୟକି ସେ ଶରକୁ ନ କରି ଗଣନା
ରହିଲେ ଛାଡ଼ି ଆଜି ଜାଣ ମହାମନା ।
ପର୍ବତରେ ବାତ ବାଜିଗଲା ପରାୟେ
ସାତ୍ୟକି ଅଙ୍ଗେ ବାଜି ବ୍ୟର୍ଥ ହେଲା ରାୟେ ।

ଦ୍ରୁପଦସୁତ ଧୃଷ୍ଟଦ୍ୟୁମ୍ନ ସୁଶର୍ମାର
ମରମକୁ ଖେଳିଲେ ବିନ୍ଧି ତୀକ୍ଷ୍ଣ ଶର ।
ସୁଶର୍ମା ତା ନ ସହି ତୋମରୁଟି ଧରି
ଫିଙ୍ଗିଲେ ତାଙ୍କ କନ୍ଧଦେଶ ଲକ୍ଷ୍ୟ କରି ।
କର୍ଣ୍ଣଙ୍କର ତୁଲେ ବିରାଣ କଲେ ରଣ
ସସୈନ୍ୟ ହୋଇ ଜାଣ ଆହେ ନରରାଣ ।
ସୂତଙ୍କର ପୁଅକୁ ପ୍ରଶଂସିଲେ ଲୋକେ
ବିରାଟ ସୈନ୍ୟଙ୍କୁ ଯା ବାରିଲେ ଶାୟକେ ।
ଦ୍ରୁପଦ ଭଗଦତ୍ତ କଲେ ମହାରଣ
ଆଶ୍ଚର୍ଯ୍ୟ ପାଇଲେ ତା ଦେଖି ଯୋଦ୍ଧାଗଣ ।
ଭଗଦତ୍ତ ଦ୍ରୁପଦ ସାରଥି ଧ୍ୱଜକୁ
ବିନ୍ଧିଲେ ବାଛିକରି କାଣ୍ଡଟିମାନଙ୍କୁ ।
ସେହିରୂପେ ଦ୍ରୁପଦ ହୋଇ ମହାକ୍ରୋଧ
ଯୁଦ୍ଧ କଲେ ବିଚାରି ଭଗଦତ୍ତ ବଧ ।
ଗଣ୍ଠି ସାନକାଣ୍ଡ ଭଗଦତ୍ତର ଉରେ
ପାଞ୍ଚାଳଦେଶ ନୃପ ବିନ୍ଧିଲେ ରୋଷରେ ।
ଭୂରିଶ୍ରବା ଶିଖଣ୍ଡୀ ଉଭୟଙ୍କର ଯୁଦ୍ଧ
କଲେଟି ଅନ୍ୟୋନ୍ୟରେ ବିଚାରିଣ ବଧ ।
କାଣ୍ଡମାନ ବିନ୍ଧିଣ ଭୂରିଶ୍ରବା ରଥୀ
ଶିଖଣ୍ଡୀର ଦେହ ବଳକୁ ଦେଲେ ମନ୍ଥି ।
କ୍ରୋଧରେ ଶିଖଣ୍ଡୀ ବିନ୍ଧନ୍ତେ ବଡ଼ କାଣ୍ଡ
ତା ଦେଖି କମ୍ପିଗଲା ଭୂରିଶ୍ରବା ପିଣ୍ଡ ।
ଘଟୋତ୍କଚ ଅଳମ୍ବୁଷ ଦୁଇଟି ବୀରେ
ଲକ୍ଷ୍ୟାଲକ୍ଷ୍ୟ ହୋଇଣ ଯୁଝିଲେ ରୋଷରେ ।
ଦୁହେଁ ତ ଶତମାୟାଙ୍କରେ ବିଶାରଦ
ଲୁଚାଇ ଦେହ ଯୁଦ୍ଧ କଲେ ବହି ମୋଦ ।
ଚେକିତାନ ଅନୁବିନ୍ଦ କଲେଟି ଦ୍ୱନ୍ଦ
ହେଲା ଯୁଦ୍ଧ ବଳି ଶତ୍ରୁଙ୍କ ଯୁଦ୍ଧଛନ୍ଦ ।
କ୍ଷତ୍ରଦେବ ତୁଲରେ ଲକ୍ଷ୍ମଣକୁମାର
ତୁମ୍ଭର ଯୁଝନ୍ତେ ଡାକିଲେ ମାର ମାର ।
ପଉରବ ରାଜାଟି ରଥକୁ ଧୁଆଇଁ
ଆବୋରିଲେ ଯାଇଣ ବିରାଟ ଜୁଆଇଁ ।
ସେ କୃଷ୍ଣଙ୍କ ଭଣଜା ଅର୍ଜ୍ଜୁନଙ୍କ ପ୍ରଜା
ନାମ ଅଭିମନ୍ୟୁ ବୋଲନ୍ତି ମହାତେଜା ।
ପଉରବ ରାଜା କରିଣ ଘୋର ରଡ଼ି
ଅଭିମନ୍ୟୁ ପରେ ରଚିଲେ ଶରଧାଡ଼ି ।
ଅଭିମନ୍ୟୁ କାଣ୍ଡରେ ଧନୁ ଧ୍ୱଜ ଛତ୍ର
କଟାଇଲେଟି ପଉରବ ରାଜପୁତ୍ର ।
ପଉରବ ଗରବ ଭାଙ୍ଗିବା ପାଇଁକି
ବିନ୍ଧିଲେ ପାଞ୍ଚ ପାଞ୍ଚ ଘୋଡ଼ା ସାରଥିକି ।

ପୁଣି ତାଙ୍କ ଦେହକୁ ବିନ୍ଧି ସାତ ଶର
କଲେ ସିଂହନାଦକୁ ସୁଭଦ୍ରାକୁମର ।
ପଉରବ ଭାରିଯା ହୋଇବାକୁ ରାଣ୍ଡ
ଆର୍ଜୁନି ଯୋଖିଲେ ଧନୁରେ ବାଛି କାଣ୍ଡ ।
କୃତବର୍ମା ତା ଜାଣିପାରି ଦୁଇ କାଣ୍ଡେ
ଶର ତୁଳେ ଧନୁ କାଟିଲେ ଅତି ଚାଣ୍ଡେ ।
ଛିଡ଼ିଯିବା ଧନୁ ପକାଇ ଅଭିମନ୍ୟୁ
ଧଇଲେ ଢାଲ ଖଣ୍ଡା ଧରି ହୃଦେ ମନ୍ୟୁ ।
ଛଞ୍ଚାଣ ପରି ଗତି କରି ସେ ସମରେ
ବସିଲେ ଝାମ୍ପି ପଉରବଙ୍କ ରଥରେ ।
ପଉରବଙ୍କର ଧରିଣ କରେ ବାଳ
କାଟିଲେ ତାଙ୍କ ଧ୍ୱଜ ପେଷି କରବାଳ ।
ସାରଥିକି ଗୋଇଠାଘାତରେ ପକାଇ
ତଳରେ ହେଲେ ଦଣ୍ଡାକରି ସେ ଶୁଆଇ ।
ପଉରବ ଗରବ ନାଶି ରଥତଳେ
ବାଳ ଧରି ଝିଙ୍କିଲେ ଦେଖିଲୁଟି ଡୋଳେ ।
ସେକାଳେ ଜୟଦ୍ରଥ ସିନ୍ଧୁ ଦେଶନାଥ
ଗଲେ ଢାଲ ଖଣ୍ଡାକୁ ଧରି ଦୁଇ ହାତ ।
ଜୟଦ୍ରଥ ନୃପଙ୍କୁ ଉତ୍ତରା- ବିହାରୀ
ଦେଖି ନେତ୍ରେ ଧାଇଁଲେ ପୁଣି ଶ୍ୟେନ ପରି ।
ପଚୀଶ ପ୍ରାସ ଖଡ୍‌ଗ ଫିଙ୍ଗନ୍ତେ ତୁମ୍ଭ ସେନା
କାଟିଲେ ଖଡ୍‌ଗ ଅଭିମନ୍ୟୁ ମହାମନା ।
ଖଡ୍‌ଗ ଦନ୍ତ ନଖ କିରିଣ ପ୍ରହାର
ସିଂହ ପରି ଯୁଝିଲେ ସେ ତ ମହାବୀର ।
ଆଡ଼ିବା ଯୁଝିବାରେ ଦୁହିଙ୍କ ଅନ୍ତର
ନୟନକୁ କାହାର ନୋହିଲା ଗୋଚର ।
ଫରି ଖଣ୍ଡା ଧରି ଗତି ତ ଦୁହେଁ କଲେ
ପକ୍ଷ ଥିବା ପର୍ବତ ପରି ସେ ଦିଶିଲେ ।
ଅଭିମନ୍ୟୁ ଢ଼ାଲ ଚକିରେ ଜୟଦ୍ରଥ
ଖଣ୍ଡା ବାଜିଣ ଭାଜି ହେଲା ଭୂମିସାଥ ।
ଆପଣା ଖଣ୍ଡା ଭାଜିବାର ନେତ୍ରେ ଦେଖି
ସିନ୍ଧୁଦେଶ ନୃପତି ନୋହି କିଛି ସୁଖୀ ।
ଛ'ପାହୁଣ୍ଡ ପଛକୁ ଘୁଞ୍ଚି ନିଜ ରଥ
ଆରୋହିଣ ନିଶରେ ଦେଲେ ଦୁଇ ହାତ ।
ନିଜ ରଥେ ଜୟଦ୍ରଥଙ୍କୁ ତୁମ୍ଭ ସେନା
ଦେଖି ବେଢ଼ି ରହିଲେ ହୋଇ ତୋଷମନା ।
ଅଭିମନ୍ୟୁ ଜୟଦ୍ରଥଙ୍କୁ ନେତ୍ରେ ଦେଖି
ଗର୍ଜିଲେ ଢାଲ ଖଣ୍ଡା ବୁଲାଇ ହୋଇ ସୁଖୀ ।
ଜୟଦ୍ରଥ ସେନାମାନଙ୍କୁ ପୁଣି ତାପ
ଦେଲେ ଯେ ବୋଲାଇବେ ପରୀକ୍ଷିତ ବାପ

ଅଭିମନ୍ୟୁ ଉପରେ ଦେଖାଇ ଶକତି
ଶକତିଏ ଧରିଣ ହୋଇ କୋପମୂର୍ତ୍ତି ।
ଫିଙ୍ଗିଲେ ମଦ୍ରଦେଶ ନୃପ ବହି ରୋଷ
ଧାଇଁଲା ସେହୁ ମୃତ୍ୟୁଭଗିନୀ ସଦୃଶ ।
ତା ଦେଖି ଅଭିମନ୍ୟୁ ଉପରକୁ ଡେଇଁ
ଧଇଲେ ଶକତିକି ଶକତି ଦେଖାଇ ।
ଆକାଶୁଁ ପଡ଼ିବା ସର୍ପକୁ ଖଗପତି
ଧରିବା ପରି ତା ଭାବିଲେ ଲୋକ ମତି ।
ଅଭିମନ୍ୟୁ ବିକ୍ରମ ଦେଖି ପାଣ୍ଡୁସେନା
ସିଂହନାଦ କରିଲେ ହୋଇଣ ସୁମନା ।
ପୁଣି ସେ ଶକତିକି ସୁଭଦ୍ରାତନୟ
ଫିଙ୍ଗିଲେ ସେ ଶଲ୍ୟଙ୍କୁ ହୋଇବାକୁ କ୍ଷୟ ।
ସେ ଶକ୍ତି ଶଲ୍ୟଙ୍କ ସାରଥି ପ୍ରାଣ ନେଲା
ରଥତଳେ ନେଇ ପକାଇ ତାକୁ ଦେଲା ।
ଧୃଷ୍ଟକେତୁ ବିରାଟ ଦ୍ରୁପଦ ଯୁଧିଷ୍ଠିର
କଇକେୟ ସାତ୍ୟକି ଧୃଷ୍ଟଦ୍ୟୁମ୍ନ ବୀର ।
ଶିଖଣ୍ଡୀ ଭୀମ ଯେ ନକୁଳ ସହଦେବ
ଦ୍ରୌପଦେୟ ଆଦି ହୃଦରେ ବହି ଭାବ ।
ସୁଭଦ୍ରାତନୟକୁ ବହୁ ପ୍ରଶଂସିଲେ
ଏ କର୍ମ ଆନ ହାତେ ନୋହିବ ବୋଇଲେ ।
ଅଭିମନ୍ୟୁ ସନ୍ତୋଷ ହେବା ପାଇଁ ଶଙ୍ଖ
ପାଣ୍ଡବ ବଜାଇଲେ ଘେନି ମହାସୁଖ ।
ତୁମ୍ଭ ପୁଅମାନେ ନ ପାରି ତାହା ସହି
ଅଭିମନ୍ୟୁ-ଗିରିକି ଘନପରି ହୋଇ ।
ଶାୟକର ଧାରା କରିଣ ବରଷଣ
ଘୋଡ଼ାଇଦେଲେ ଅଭିମନ୍ୟୁଙ୍କୁ ହେ ଜାଣ ।
ଶଲ୍ୟ ସାରଥିର ମରଣଟି ନ ସହି
ଅଭିମନ୍ୟୁ ପାଶେ ଆସିଲେ ରୋଷେ ଧାଇଁ ।
ଧୃତରାଷ୍ଟ୍ର ବୋଇଲେ ନୋହିଥିଲେ ଅନ୍ଧ
ଦେଖନ୍ତି ହେ ସଞ୍ଜୟ ଯାଇ ଯୁଦ୍ଧଦ୍ୱନ୍ଦ୍ୱ ।
ଶୁଣିଲେ ନ ଶୁଣିଲା ପ୍ରାୟେ ଚିତ୍ତ ମୋର
ହେଉଅଛି ହେ କୁରୁ ପାଣ୍ଡୁଙ୍କ ସଞ୍ଚାର ।
ପୃଥିବୀ ଥିବାଯାକ ଆଶ୍ଚର୍ଯ୍ୟ ପରାୟେ
କଥାବାର୍ତ୍ତା ହେବେ ବସି ଏ ଯୁଦ୍ଧ ରାୟେ ।
ଆର୍ତ୍ତାୟନିଟି ଆର୍ତ୍ତ ହୋଇଲା କି ନାହିଁ
ଅଭିମନ୍ୟୁ ଯୁଦ୍ଧରେ କହ ତା ବତାଇ ।
ସଞ୍ଜୟ ବୋଇଲେ ହେ ପୁଚ୍ଛିଲ ଯା ରାଜା
କହିବା ତାହା ଶୁଣ ହୋଇ ଏକ ମଜା ।
ରଥରୁ ଡେଇଁ ଶଲ୍ୟ ଧରି ଗଦାଟାଏ
ଅର୍ଜୁନିଙ୍କଠାକୁ ଧାଇଁବାର ସମୟେ ।

ଭୀମସେନ ଦେଖିଣ ଗଦ ହସ୍ତ ହୋଇ
ଧାଇଁଲେ ଶଲ୍ୟଠାକୁ ଆହେ ନରସାଇଁ ।
ବୃଷଭ ପରି ଶଲ୍ୟ ବୃକୋଦର ଦୁଇ
ଗଦା-ବିଷାଣରେ ଯୁଝିଲେ ନରସାଇଁ ।
ଭୀମ ଶଲ୍ୟଙ୍କର ସେ ଯୁଦ୍ଧରେ ସମାନ
ବଳ ହୋଇଲା ହେ ରାଜନ ମନେ ଘେନ ।
ଭୀମଙ୍କ ଗଦାଘାତ ପାଇ ଶଲ୍ୟଙ୍କର
ଗଦାରୁ ଅଗ୍ନିଜ୍ୱାଳା ହୋଇଲା ବାହାର ।
ରାତ୍ରରେ ଖଦ୍ୟୋତ ଆବୃତ ବୃକ୍ଷ ପରି
ଭୀମ କରେ ଗଦା ଦିଶିଲା ଦଣ୍ଡଧାରୀ ।
ଦୁହେଁ ଏକାବେଳେ ବୁଲାଇ ଗଦାବର
ଫିଙ୍ଗାଫିଙ୍ଗି ହୋଇଲେ କମ୍ପାଇ ଶରୀର ।
ସେ ଦୁଇ ଗଦା ଅଗ୍ନିଜ୍ୱାଳା କରି ଜାତ
ହୋଇଲେ ଭୀମ ଶଲ୍ୟ ଦେହକୁ ସେ ଗତ ।
ଦୁହିଁଙ୍କର ଦେହରୁ ରକତ ବୋହିଲା
ଫୁଟିଥିବା କିଂଶୁକପ୍ରଭାକୁ ନାଶିଲା ।
ସେ ଦୁହିଁଙ୍କ ଗଦାଶବଦ ବଜ୍ରଧ୍ୱନି
ଜିଣି ସ୍ତବଧ କଲା ସବୁରି କର୍ଣ୍ଣ ବେନି ।
ଶଲ୍ୟଙ୍କ ଗଦା ଭୀମ ସବ୍ୟ ଦକ୍ଷିଣରେ
ବାଜିଲେ ହେଲେ ନ କମ୍ପିଲେ ସେ ଯୁଦ୍ଧରେ ।
ଭୀମଙ୍କ ଗଦାଘାତ ହୁଅନ୍ତେ ଦେହେ ଶଲ୍ୟ
ତେବେ ହେଲେ ନ କମ୍ପିଲେ ହୋ ରାୟେ ଶଲ୍ୟ
ସେ ଦୁଇବୀରେ ଗଦା କରପୁଟେ ଟେକି
ମଣ୍ଡଳମାନ କଲେ ହୋଇ ଡକାଡକି ।
ପହଣ୍ଡ ଆଠଯାଁଏ ଆଗକୁ ଡେଇଁ ଦୁହେଁ ।
ପିଟାପିଟି ହୋଇଲେ ଗଦାମାନ ଦେହେ ।
ଇନ୍ଦ୍ରଧ୍ୱଜ ପଡ଼ିବା ପ୍ରାୟେ ଶଲ୍ୟ ଭୀମ
ପଡ଼ିଲେ ଗଦାପାତ ଭେଦନ୍ତେ ମରମ ।
ଶଲ୍ୟଙ୍କ ମୋହ ଦେଖି ମହତକରମା
ଆସିଲେ ତାଙ୍କଠାକୁ ଧାଇଁ କୃତବର୍ମା ।
ଶଲ୍ୟଙ୍କୁ ନିଜ ରଥେ ବସାଇ ଯୁଦ୍ଧରୁ
ଘେନିଗଲେ ସେ କୃତବର୍ମା ହନ୍ତକାରୁ ।
ଭୀମ ଜ୍ଞାନ ପାଇଣ ଗଦା କରେ ଟେକି
ଛିଡ଼ାହେଲେ ଶଲ୍ୟଙ୍କୁ ଯୁଝିବା ପାଇଁ ଡାକି ।
ଶଲ୍ୟଙ୍କ ଭାଜିବାର ଦେଖି ତୁମ୍ଭ ସୁତେ
ମଲାଇଁ ବୋଲିଟି ଧଇଲେ ଭୟ ଚିତ୍ତେ ।
ପାଣ୍ଡୁ ସେନା-ବାତଘାତରେ ତୁମ୍ଭ ସୈନ୍ୟ
ଘନ ପଳାଇଲେ ହୋଇଣ ଛିନ୍ନ ଭିନ୍ନ ।
ସିଂହନାଦ ଶଙ୍ଖ ଯେ ମୃଦଙ୍ଗ କାହାଳି
ଶବଦେ ପାଣ୍ଡୁସୈନ୍ୟ ପଡ଼ିଲା ଉଛୁଳି ।

ତୁମ୍ଭ ବଳେ ସେକାଳେ ଏକା ବୃଷସେନ
କଲେ ପାଣ୍ଡୁ ସେନାମାନଙ୍କୁ ଆୟୋଧନ ।
ବୃଷସେନ କାଣ୍ଡରେ ନର ବାଜି ଦନ୍ତୀ
ପଡ଼ିଲେ ଯୁଦ୍ଧ-ଦାଣ୍ଡେ ହୋଇ ପନ୍ତି ପନ୍ତି ।
ଗ୍ରୀଷ୍ମକାଳ ସୂର୍ଯ୍ୟଙ୍କ କିରଣ ପରାଏ
ଦିଶିଲା ବୃଷସେନ କାଣ୍ଡେ ନରରାୟେ ।
ରଥୀ ହାତୀ ଯେ ଘୋଡ଼ାମାନଙ୍କର ମୁଣ୍ଡ
ଛିଣ୍ଡାଇ ପକାଇଲା ବୃଷସେନ କାଣ୍ଡ ।
ଏକା ହୋଇଣ ବୃଷସେନ ଯୁଝିବାର
ଦେଖିକରି ତୁମ୍ଭ ସକଳ ନରବର ।
ଧନୁ ଧରି ବୃଷସେନକୁ ସାହା ହେଲେ
ମାର ପାଣ୍ଡବଙ୍କୁ ବୋଲିଟି ଗରଜିଲେ ।
ନକୁଳଙ୍କର ସୁତ ଶତାନିକ ବୀର
ବିନ୍ଧିଲେ ବୃଷସେନ ପରେ ଦଶ ଶର ।
ଶତାନିକ ଏ କର୍ମ ନ ସହି ବୃଷସେନ
କାଟିଲେ ତାହାଙ୍କର ଧ୍ୱଜ ଶରାସନ ।
ତା ଦେଖି ଦ୍ରୌପଦୀଙ୍କ ସୁତମାନେ ଧାଇଁ
ଆସି ବୃଷସେନଙ୍କୁ ବିନ୍ଧିଲେ ରୋଷାଇ ।
ବୃଷସେନ ଦ୍ରୌପଦୀସୁତଙ୍କରେ ପୀଡ଼ା
ପାଇଲେ ହେଲେ ଯୁଦ୍ଧ କଲେ ହୋଇ ଛିଡ଼ା ।
ଦ୍ରୌପଦୀସୁତଙ୍କର ଦେଖି ପରାକ୍ରମ
ଅଶ୍ୱତ୍ଥାମା ଆଦି ରଥିଏ ବହି ତମ ।
ଧନୁ-ଘନୁ-ଶର-ଧାରାକୁ ଯେ ବରଷି
ଦ୍ରୌପଦେୟ ଗିରିକି ଘୋଡ଼ାଇଲେ ତୋଷି ।
ପୁତ୍ରେ ରଖିବାକୁ ଥରାଇ କ୍ରୋଧ ଗାତ୍ର
ଆସିଲେ ସେହିଠାକୁ ପାଣ୍ଡୁ ପାଞ୍ଚ ପୁତ୍ର ।
ପାଣ୍ଡବଙ୍କ ଆସିବା ଜାଣି ତା ସୃଞ୍ଜୟ
ଘୋଡ଼ାଇଲେଟି ମତ୍ସ୍ୟ ପାଞ୍ଚାଳ କୈକୟ ।
ଦେବତା ଦାନବ ଦୁହିଁଙ୍କ ଯୁଦ୍ଧ ଛଟା -
ପରି ହେଲା ରାଜନ ଜାଣ ହେ ଯୁଦ୍ଧଟା ।
ପରସ୍ପର ଦୁଇ ସେନାଏ ପାଟି ଭିଡ଼ି
ତୁହାଁତୁହିଁ ହୋଇ ଯୁଝିଲେ ଶସ୍ତ୍ର ଛାଡ଼ି ।
ପ୍ରଳୟକାଳ ସୂର୍ଯ୍ୟ ପ୍ରାୟେ ରଥିଙ୍କର
ଶାୟକେ ଯୁଦ୍ଧଦାଣ୍ଡ ଦିଶିଲା ସୁନ୍ଦର
ଯୁଦ୍ଧରେ ଯୁଧିଷ୍ଠିର ରାଜାଙ୍କର ବଳ
ବେଳକୁ ବେଳ ପ୍ରକାଶନ୍ତେ ମହାବଳ ।
ତୁମ୍ଭ ସେନାଯାକ ତା ସହି ନ ପାରିଲେ
ପଛଘୁଞ୍ଚା ଦେଇଟି ଛାଡ଼ି ପଳାଇଲେ ।
ଦ୍ରୋଣ ତାହା ଦେଖିଣ ବୋଇଲେ ସୈନ୍ୟଙ୍କୁ
ନ ପକାଅ ଗୋଡ଼ ବେ ଯୁଦ୍ଧରେ ପଛକୁ ।

ମଲେ ନାକ, ମାଇଲେ କୀରତି ଅଧିକ
ହୋଇବ ମନେ କର ଏତେକ ବିବେକ ।
ଦ୍ରୋଣ ବାଣୀ ଶୁଣିବାରୁ ତୁମ୍ଭର ଲୋକ -
ଯାକ ରହିଣ ପୁଣି ବିନ୍ଧିଲେ ଶାୟକ ।
ଦ୍ରୋଣରଥ ପାଣ୍ଡବସଇନ -ଜଳରେ
ଦିଶିଲା ନାବ ପରି ଦେଖିଲୁ ଡୋଳାରେ ।
ପତାକା -ଆହୁଲା ତ ଭିଡ଼ା ହୋଇଥିଲା
ଦ୍ରୋଣ ଧନୁଶର -କାତରେ ସେ ଚଳିଲା ।
ସ୍ରୋତରେ ମତ୍ସ୍ୟ ପରି ଦ୍ରୋଣଚାର୍ଯ୍ୟଙ୍କର
ହୟ ଗତି କଲେ ଜାଣ ହେ ନରବର ।
ଯେଉଁଠାରେ ଯୁଧିଷ୍ଠିର ଥିଲେଟି ରହି
ସେଠାକୁ ବୋଲି କରି ଦ୍ରୋଣ ଗଲେ ଧାଇଁ ।
ଯୁଧିଷ୍ଠିର ଦ୍ରୋଣଙ୍କୁ ଶିଳାଘଷା ଶର
ଧନୁ ମଧରେ ଯୋଖି ବିନ୍ଧିଲେ ଅପାର ।
ଦ୍ରୋଣ ଯୁଧିଷ୍ଠିର ଶରକୁ ଆଶୁଗରେ
କାଟିକରି ଧନୁକୁ କାଟିଲେ ରାଗରେ ।
ଯୁଧିଷ୍ଠିରଙ୍କର ସମୀପକୁ ତ ଧାଇଁ
ଆସିଲେ ଧରି ନେବି ବୋଲି ନରସାଇଁ ।
ଦ୍ରୁପଦଙ୍କ କୁମର ନାମେ ତା କୁମର
ସେ ତ ଚକ୍ରରକ୍ଷକ ପାଣ୍ଡବ ନୃପଙ୍କର ।
ଦ୍ରୋଣଙ୍କର ଯୁଦ୍ଧରୀତିକି ଜାଣିପାରି
ଯୁଝିଲେ ଯୁଧିଷ୍ଠିର ନୃପଙ୍କୁ ଆବୋରି ।
କୁମାର ବଳେ ଦ୍ରୋଣରଥ ଯୁଧିଷ୍ଠିର
ପାଶକୁ ଯାଇ ନ ପାରିଲା ମନେକର ।
ଦ୍ରୋଣଙ୍କ ବକ୍ଷସ୍ଥଳେ ଦ୍ରୁପଦଙ୍କ ବଳା
କୁମାର ଶର ବିନ୍ଧି ଗର୍ଜିଲା ମେଲି ଗଳା ।
ଦ୍ରୋଣ ତ ଦିବ୍ୟଅସ୍ତ୍ର ଯୋଦ୍ଧାଙ୍କରେ ସାର
କାଟିଲେ କୁମାର ବେକକୁ ବିନ୍ଧି ଶର ।
ସୈନ୍ୟମଧରେ ପଶି ଅଶ୍ୱଥମା ତାତ
ଶିଖଣ୍ଡୀ ଦେହେ କଲେ ବାରଶରଘାତ ।
ନକୁଳଙ୍କୁ ପାଞ୍ଚଟି ଉତ୍ତମ ଓଜାଙ୍କୁ
କୋଡ଼ିଏ ବିନ୍ଧିଲେ ଦେଖାଇ ବିକ୍ରମକୁ ।
ସାତ ସହଦେବଙ୍କୁ ବିନ୍ଧି ମାରଗଣ
ଯୁଧିଷ୍ଠିର ନୃପେ ବିନ୍ଧିଲେ ବାର ବାଣ ।
ଦ୍ରୌପଦେୟମାନଙ୍କୁ ତିନି ତିନି କାଣ୍ଡ
ବିନ୍ଧି ସେ କମ୍ପାଇଣ ଦେଲେ ତାଙ୍କ ପିଣ୍ଡ ।
ସାତ୍ୟକିଙ୍କି ପାଞ୍ଚ ଯେ ବିରାଟଙ୍କୁ ଦଶ
କାଣ୍ଡ ବିନ୍ଧି ଖରେ ଆଉଁସିଦେଲେ ନିଶ ।
ଏରୂପେ ସମସ୍ତଙ୍କୁ ବିନ୍ଧି ଶର ମୁନେ
ଧାଇଁଲେ ଯୁଧିଷ୍ଠିର ପାଶକୁ ସୁମନେ ।

କ୍ରୋଧରେ ଅନ୍ଧ ହୋଇ ଯୁଗନ୍ଧର ବୀର
କଲାଟି ଦ୍ରୋଣଙ୍କର ସଙ୍ଗତେ ସମର ।
ଦ୍ରୋଣ ଯୁଧିଷ୍ଠିରେ ରୁନ୍ଧିଲେ ବିନ୍ଧି ବାଣ
ଭାଲି କାଣ୍ଡରେ ନେଲେ ଯଗନ୍ଧର ପ୍ରାଣ ।
ଏହା ଦେଖି ବିଣାଟ ଦ୍ରୁପଦ କେକୈୟ
ସାତ୍ୟକି ବ୍ୟାଘ୍ରଦତ୍ତ ଶିବଙ୍କ ତନୟ ।
ସିଂହସେନ ଆଦି ରଥିଏ ହୋଇ ଗୋଟି
ଯୁଦ୍ଧ କଲେ ଦ୍ରୋଣଙ୍କୁ ଭିଡ଼ି ଓଷ୍ଠ ପାଟି ।
ବ୍ୟାଘ୍ରଦତ୍ତ ଦ୍ରୋଣଙ୍କୁ ବିନ୍ଧିଲେ ପାଞ୍ଚ ଶ
କାଣ୍ଡ ଲୋକ ଦେଖି ପାଇଲେ ମହାତ୍ରାସ ।
ବ୍ୟାଘ୍ରଦତ୍ତର ପରି ବିନ୍ଧି ସିଂହସେନ
ରଥିଙ୍କର ହୃଦରେ ଭୟକୁ ଦେଇ ସ୍ଥାନ ।
ତୁମ୍ଭେ ସେନାମାନଙ୍କୁ ଚାହିଁ ମନ୍ଦହସା
ଦେଇ ମନେ ମନେ ସେ ନେଲେ ପରଶଂସା
ଦ୍ରୋଣ ତାହା ନ ସହି ଧନୁର୍ଗୁଣ ମାଜି
ଯୁଝିବା ଆଜି ବୋଲି ଉଠିଲେ ଗରଜି ।
ବ୍ୟାଘ୍ରଦତ୍ତଙ୍କି ସିଂହାସେନଙ୍କର ମୁଣ୍ଡ
ଭାଲିକାଣ୍ଡେ ଗଡ଼ାଇ ଦେଲେ ରଣଦାଣ୍ଡ ।
ପାଣ୍ଡବ ମହାରଥୀମାନଙ୍କୁ କରି ପୀଡ଼ା
ଦେଲେ ଦ୍ରୋଣ ପ୍ରକାଶ କରି ଶର ଭିଡ଼ା ।
ଅନ୍ତକ ପରି ପାଟି ମେଲି ଯୁଧିଷ୍ଠିର -
ରାଜାଙ୍କୁ ଘୋଟିଣ ରହିଲେ ଦ୍ରୋଣବୀର ।
ଯୁଧିଷ୍ଠିର ରାଜାଙ୍କ ସମୀପେ ଦ୍ରୋଣଙ୍କୁ
ଦେଖିଣ ପାଣ୍ଡୁସେନା ପାଇ ଆତଙ୍କକୁ ।
ପାଡ଼ିଲେ ଉଚ୍ଚେ ଡକା ନୃପତିଶେଖର
ଯୁଧିଷ୍ଠିର ମଲେ କେ ଅଛି ରକ୍ଷା କର ।
ତୁମ୍ଭର ସେନାମାନେ ଦେଖିଣ ଉତ୍ସାହ।
ଧରି ହୃଦେ ବୋଇଲେ ଭାନୁମତୀନାହା ।
ଦୁର୍ଯ୍ୟୋଧନ ଆଜି ପାଇବେ ହସ୍ତିନାକୁ
ଦ୍ରୋଣଙ୍କ ବଳେ ଜିଣି ପାଣ୍ଡବମାନଙ୍କୁ
ଏକାଳେ ଅର୍ଜୁନ ଧୂଆଁଇଁ କପିଧ୍ୱଜ
କହିଲେ ବଚନ ପ୍ରକାଶ କରି ଓଜ ।
ଦ୍ରୋଣ ଘେନି କେହି ନ କରି ଭୟ ଜାତ
ଜିଣିବେ କି ମୋତେ ସେ ସମରେ କହ ତ ।
ଏତେ ବୋଲି ଗାଣ୍ଡିବଧନୁକୁ ଉଭାରି
ରଚିଲେ ଶରଧାଡ଼ି ଜଳଧାରା ପରି ।
ଦ୍ରୋଣଙ୍କର ସେନାରୁ ରକ୍ତନଦୀ ଜାତ
କଲେ ଯୁଦ୍ଧ ଦାଣ୍ଡେ ପୃଥାଙ୍କ ସାନ ସୁତ ।
ସନ୍ଧିବା ବିନ୍ଧିବାର ଅର୍ଜୁନର କେହି
ଜାଣି ନ ପାରିଲେ ରାଜନ କହୁଥାଇଁ ।

ଆକାଶ ତୁଲେ ଦଶ ଦିଶ ଆମ୍ଭ ଦୃଶ୍ୟ
ଦେଖି ନ ପାରିଲା ଗାନ୍ଧାରୀ-ପ୍ରାଣଈଶ ।
ସବୁ ଆଡ଼େ ଚାହିଁଲେ ପାର୍ଥ ଶରଧାଡ଼ି
ରହିଲାଟି ଯୋଦ୍ଧାଙ୍କ ଚାରି ପଟ ମାଡ଼ି ।
ପାର୍ଥ ଶରଘାତେ ଆକାଶେ ପକ୍ଷୀକୁଳ
ଯାଇ ନ ପାରିଣ ହୋଇଲେ ଆକୁଳ ।
ସୂର୍ଯ୍ୟଙ୍କ କର ନ ଛୁଇଁଲା ମହୀଆଳୀ
ରହିଲା ତ ଅର୍ଜ୍ଜୁନ ଶରକାଶେ ମିକି ।
ଏହିକାଳେ ସୂର୍ଯ୍ୟ ପଶ୍ଚିମ ଗିରିଶିଖ
ଛୁଇଁ ଅସ୍ତ ହୋଇଲେ ନାଶିଣ ମୟୁଖ ।
ଶତ୍ରୁ ମିତ୍ର କାକୁ ନୋହିଲେ ଯହୁଁ ଜାଣ
ହେଲା ତହୁଁ ସବୁ ପ୍ରାଣୀଙ୍କ ବୁଦ୍ଧି ବଣା ।
ଦ୍ରୋଣ ଦୁର୍ଯ୍ୟୋଧନ ସୂର୍ଯ୍ୟଙ୍କ ଅସ୍ତ ଜାଣି
ବାହାରିଲେ ବସାକୁ ଛାଡ଼ିଣ ଆରଣି ।
ଅର୍ଜ୍ଜୁନ ଦ୍ରୋଣଙ୍କର ଭୟ ଜାଣିପାରି
ବାହୁଡ଼ିଲେ ବସାକୁ ସୈନ୍ୟ ସଙ୍ଗେ ଧରି ।
ପାଣ୍ଡୁସେନାଯାକ ଅରଜୁନଙ୍କୁ ସ୍ତୁତି
କରୁଥିଲେ ଅର୍ଜ୍ଜୁନ ବହି ମହାପ୍ରୀତି ।
ସୈନ୍ୟଙ୍କ ପଛରେ ଚଳାଇ ନିଜ ରଥ
ବାହାରିଲେ ଯୁଦ୍ଧେ ଅରଜି ପୁରୁଷାର୍ଥ ।
ଇନ୍ଦ୍ରନୀଳ ସ୍ଫଟିକ ପୋହଳା ସୁନା ତୁଲେ
ଅର୍ଜ୍ଜୁନଙ୍କ ରଥରେ ମଣ୍ଡା ହୋଇଥିଲେ ।
ନକ୍ଷତ୍ର ପ୍ରାୟେ ତ ଅର୍ଜ୍ଜୁନ ଚନ୍ଦ୍ର ଜ୍ୟୋତି
ପ୍ରକାଶ କରୁଥିଲେ ଜାଣ ମହାମତି ।
ଯୁଦ୍ଧକଥାଯାକ ତ କଥାବାର୍ତ୍ତା ହୋଇ
ରହିଲେ ଦୁଇ ସେନା ବସାମଧ୍ୟେ ଯାଇ ।
ଦ୍ରୋଣପର୍ବ ପ୍ରଥମ ଦିନ ଯୁଦ୍ଧ ଶେଷ
କଲେ ପରାଶର ତନୟ ବେଦବ୍ୟାସ ।
ତାହାଙ୍କର ପାଦକମଳ ମନେ ଧାୟୀ
କୃଷ୍ଣସିଂହ ନୃପତି ଏ ଗୀତ କହଇ ।

•

## ଦ୍ୱିତୀୟଦିନ ଯୁଦ୍ଧ

ଏଥିଅନ୍ତେ ସଞ୍ଜୟ ମନ୍ତ୍ରିକୁଳମଣି
କହିଲେ ଧୃତରାଷ୍ଟ୍ର ମୁଖ ଚାହିଁ ବାଣୀ ।
ତୁମ୍ଭ ସେନା ଯୁଦ୍ଧରେ ଶରଭଙ୍ଗା ହୋଇ
ବସାରେ ଖାଇ ପିଇ ପଡ଼ିଲେ ହେ ଶୋଇ ।
ଅରଜୁନର ଯୁଦ୍ଧ ପରାକ୍ରମ ଗୁଣି
ପୁହାଇଲେ ରଥି ଏ ତୁମ୍ଭର ରଜନୀ ।
ରାତ୍ର ଶେଷରେ ଉଠି ଅଶ୍ୱଥ୍ୱମା ତାତ
ସ୍ନାନ ସନ୍ଧ୍ୟା ଦୁହିଙ୍କି ସାରିଲେ ତୁରିତ ।
ଦୁର୍ଯ୍ୟୋଧନ ରାଜାଙ୍କ ମୁଖକୁ ଅନାଇଁ
କହିଲେ ଏ ବଚନ ଲାଜ ଲାଜ ହୋଇ ।
ଯୁଧିଷ୍ଠିର ନୃପ ଧରନ୍ତି କାଲି ମୁହିଁ
ନ ଆସିଲେ ଯୁଦ୍ଧେ ସୁଭଦ୍ରାଦେବୀ ସାଇଁ ।
ତୁମ୍ଭଙ୍କୁ ତ ପୂର୍ବୁ କହିଛି ସତ୍ୟ କରି
ନ ଥିଲେ ଅର୍ଜ୍ଜୁନ ଆଣନ୍ତି ତାଙ୍କୁ ଧରି ।
କୃଷ୍ଣ ଅରଜୁନ ତ ଅଟନ୍ତି ଅଜେୟ
ଯୁଦ୍ଧରେ ତାଙ୍କୁ ମୁଁ ନ ପାରେ କରି କ୍ଷୟ ।
କୌଣସି ଉପାୟେ ଯୁଦ୍ଧରୁ ଅର୍ଜ୍ଜୁନଙ୍କୁ
ଘେନିଯାଅ ମୁହିଁ ତ କହୁଛି ତୁମ୍ଭଙ୍କୁ ।
ଅର୍ଜ୍ଜୁନ ରକ୍ଷିତ ନୋହିଲେ ଯୁଧିଷ୍ଠିର
ବାନ୍ଧି କରି ତାଙ୍କୁ ଆଣିବି ମନେ କର ।
ଅର୍ଜ୍ଜୁନର ନାମ ତ ଅଟଇ ବିଜୟ
ନ ଛାଡ଼ଇ ଯୁଦ୍ଧ ସେ ନ ପାଇଲେ ଜୟ ।
ସେ ସକାଶୁଁ ପାର୍ଥେ ଯୁଝିଲେ ରଣେ ଡାକି
ଆଣିବି ମୁଁ ଯୁଧିଷ୍ଠିରଙ୍କୁ ଛିଦ୍ର ଟାକି ।
ଅରଜୁନ ନଥାଇ ଯୁଧିଷ୍ଠିର ରଣ -
କଲେ ମୋ ସଙ୍ଗେ ବନ୍ଧାହେଲେ ବୋଲି ଜାଣ
ଦ୍ରୋଣଙ୍କର ଶୁଣି ଏ ପ୍ରତିଜ୍ଞା ବଚନ
ଭାଇଙ୍କର ତୁଲରେ ତ୍ରିଗର୍ତ୍ତରାଜନ ।
ଦୁର୍ଯ୍ୟୋଧନ ନୃପେ କହିଲେ ଉଚ କରି
ଅର୍ଜ୍ଜୁନ ତ ଅଟଇ ଆମ୍ଭର ବଇରୀ ।
ବିନା ଅପରାଧରେ ଆମ୍ଭଙ୍କୁ ସେ ଦଣ୍ଡ
ଦେଇଛି ତା ସୁମରି ଜଳେ ଆମ୍ଭ ପିଣ୍ଡ ।
ଅର୍ଜ୍ଜୁନଙ୍କୁ ମାଇଲେ ତୁମ୍ଭ ଆମ୍ଭ ସୁଖ
ହୋଇବ ଆହେ ଜାଣ ନରକୁଳଶିଖ ।
ଯୁଦ୍ଧରେ ଆଜି ସେ ପଡ଼ିବେ ଆମ୍ଭ ମୁଖେ
ଦେବୁଁ ତାଙ୍କୁ ବସାଇ ଯମରାଜା ପାଖେ ।
ତ୍ରିଗର୍ତ୍ତ ଅରଜୁନ ଶୂନ୍ୟ ଅବା ମହୀ
ହେବ ଆଜି ଜାଣ ହସ୍ତିନା ନରସାଇଁ ।
ସତ୍ୟ କରି ଏ କଥା ଘେନ ହେ ରାଜନ
ବୃଥା ନୁହଇଟି ଆମ୍ଭର ଏ ବଚନ ।
ଏହା କହିଣ ସତ୍ୟରଥ ସତ୍ୟବର୍ମା
ସତ୍ୟକର୍ମା ସତ୍ୟଶ୍ରବା ଯେ ସତ୍ୟନାମା ।
ତ୍ରିଗର୍ତ୍ତେ କହିବାର ପରାୟେ ସେ କହି
ଅୟୁତେ ରଥ ଘେନି ସାଥେ ନରସାଇଁ ।
ଯୁଦ୍ଧ କରିବାକୁଟି ବାହାରି ପଡ଼ିଲେ
ସବୁ ଯୋଦ୍ଧାମାନେ ତୁମ୍ଭର ଚାହୁଁଥିଲେ ।

ମାଳବ ତୁଣ୍ଡିକେର ଅୟୁତ ତ୍ରିରଥ
ଘେନି ସୁଶର୍ମାର ସଙ୍ଗକୁ ହେଲେ ଗତ ।
ଏ ବାହାରେ ଯେତେକ ରଥି ଏ ତୁମ୍ଭର
ଶପଥ କରିବାକୁ କଲେ ସେ ବିଚାର ।
ସେ ରଥୀମାନେ ଏକାଠାରେ ଗୋଟି ହୋଇ
ହୋମ କଲେ ଜଣଜଣକେ ନରସାଇଁ ।
କୁଶରେ ବୁଣା ହେବା ବସ୍ତ୍ରକୁ ପିନ୍ଧିଲେ
ଘିଅ ବୋଲିହୋଇ ସାଞ୍ଜୁକୁ ପହରିଲେ ।
ମୂର୍ବାଗୁଣ ଗୁଡ଼ିଏ କୁଟୀରେ ତାଙ୍କର
ମେଖଳା କରି କଲେ ଜାଣ ନରବର ।
ଶତ ଶତ ଦକ୍ଷିଣା ଯେହ୍ନୁ ଦ୍ୱିଜ କରେ
ଦେଇଛନ୍ତି ରାଜନ ଯାଗମାନଙ୍କରେ ।
ବ୍ରହ୍ମଚର୍ଯ୍ୟ କରିଣ ଯେଉଁ ଲୋକ ଲୋକ -
ପାଏ ଯୁଦ୍ଧେ ପାଇବା ଭାବିଲେ ସେ ଲୋକ
ଯୁଦ୍ଧକୁ ଯିବା ବୋଲି ବ୍ରାହ୍ମଣ ଡକାଇ
ସୁନା ଗାଈ ବସ୍ତ୍ର ଦେଲେ ସେ ପ୍ରୀତି ବହି ।
ହୋମଅଗ୍ନି ଛୁଇଁ କରିଣ ସେ ନିୟମ -
କଲେ ଅର୍ଜ୍ଜୁନକୁ ପେଷିବା ଯମଗ୍ରାମ ।
ବ୍ରହ୍ମଘାତୀ ମଦ୍ୟପୀ ନ୍ୟାସ ଅପହାରୀ
ମାତୃ ଅଗ୍ନି ଯେ ପିତୃତ୍ୟାଗୀ ପାପକାରୀ ।
ଗୁରୁଦାରରତ ଯେ ଦାନବିଘ୍ନକାରୀ
କ୍ଳୀବ ଯୋଦ୍ଧା ନାସ୍ତିକ ବ୍ରହ୍ମସ୍ୱାପହାରୀ ।
ସ୍ୱଭାର୍ଯ୍ୟାରତୁ ।ଳଗାମୀ ମିଥ୍ୟାଭାଷୀ
ଆତ୍ମଘାତୀ ଗୃହଦାହୀ ଯେ ଗୋ-ବିନାଶୀ ।
ରାଜଦ୍ରୋହୀ ନୀଚଜନର ଅନୁସାରୀ
ଶରଣାଗତତ୍ୟାଗୀ ସକଳାପକାରୀ ।
ଏ ଲୋକମାନଙ୍କର ହୁଏ ଯେଉଁ ଗତି
ଭାଜିଲେ ଯୁଦ୍ଧୁଁ ଆମ୍ଭେ ପାଇବୁ ସେ ଗତି ।
ଆମ୍ଭଙ୍କୁ ଯୁଦ୍ଧରେ ବା ଅରଜୁନ ମାରୁ
ନୋହିଲେ ବା ଆମ୍ଭେ ଯୁଦ୍ଧରେ ତାକୁ ମାରୁ ।
ଦୁଷ୍କର କର୍ମ କରି ଯୁଦ୍ଧେ ସ୍ୱର୍ଗଲୋକ
ପାଇବୁ ଆମ୍ଭେମାନେ ଛାଡ଼ି ଭୂମିଲୋକ ।
ଏହିରୂପେ ଶପଥ କରି ସଂଶପ୍ତକେ
ପୂରାଇଲେ ଅବନୀଯାକ ସିଂହଡାକେ ।
ଅର୍ଜ୍ଜୁନକୁ ବୋଇଲେ ଦକ୍ଷିଣ ଦିଗେ ଚାଲ
କରିବୁଁ ଯୁଦ୍ଧଟି ଦେଖିବ ଆମ୍ଭ ବଳ ।
ଏହା ଶୁଣି ଅରଜୁନ ଯେ ତ୍ୱରା ହୋଇ
ଗଲେ ଯହିଁ ରହିଟି ଥିଲେ ଜ୍ୟେଷ୍ଠଭାଇ ।
ନମସ୍କାର କରିଣ କହିଲେ ତାହାଙ୍କୁ
ସଂଶପ୍ତକେ ଡାକୁଅଛନ୍ତିଟି ଯୁଦ୍ଧକୁ ।
ମୁଁ ତ ବ୍ରତ କରିଅଛି ହେ ନରସାଇଁ
ଯେ ଡାକିବ ତାକୁ ଯୁଝିବି ଆଗ ଯାଇ ।
ଭାଇଙ୍କ ତୁଲରେ ସୁଶର୍ମା ମହାରଥ
ଡାକୁଛି ଯୁଝିବାକୁ ଚଢ଼ିକରି ରଥ ।
ମୋହ ପରା ରଥୀ ସହିବି ଏହା କେହିଁ
ଆଜ୍ଞା ଦେଲେ ତାହାଙ୍କୁ ମାରି ଆସିବଇଁ ।
କାଳ ତାଙ୍କର ବାଳ ଧରିବାରୁ ବାହେ
ମୋତେ ଡାକୁଛନ୍ତିଟି ଯୁଦ୍ଧକୁ ସେ କୋହେ ।
ଯୁଧିଷ୍ଠିର ବୋଇଲେ ଆହେ ଧନଞ୍ଜୟ
ଗୋଚର ତ ହୋଇଛି ଦ୍ରୋଣ ଅଭିପ୍ରାୟ ।
ତହିଁକି ଜାଗରୁକ ହୋଇ ଯେଉଁ କଥା
କରିବାର ହେବ ତା କର ମହାରଥା ।
କ୍ରତାସ୍ତ୍ର ଜିତଶ୍ରମ ଅଶ୍ୱଥମାତାତ
ତୁମ୍ଭ ବିନା ତାଙ୍କୁ କେ ଯୁଝିବ କହ ତ ।
ନ ଥିଲେ ତୁମ୍ଭେ ଧରିନେବେ ବୋଲି ମୋତେ
ପ୍ରତିଜ୍ଞା କରିଛନ୍ତି ଦ୍ରୋଣ ମହାମତେ ।
ଅର୍ଜ୍ଜୁନ ବୋଇଲେ ପାଞ୍ଚାଳରାଜାସୁତ
ଅଛନ୍ତି ତ ତୁମ୍ଭର ପାଶେ ସତ୍ୟଜିତ ।
ସେ ଥିଲେ ଦ୍ରୋଣଙ୍କର କରିବା କାମନା
ଭାଙ୍ଗି ପକାଇବେ ରାଜନ ମହାମନା ।
ଦଇବରେ ସତ୍ୟଜିତଙ୍କ ଦ୍ରୋଣ ପ୍ରାଣ
ନେଲେ ଭାଜିବଟି ନକରି ତାଙ୍କୁ ରଣ ।
ଯୁଧିଷ୍ଠିର ଏହା ଶୁଣିଣ ତୋଷ ହୋଇ
ପ୍ରଶଂସା କଲେ ଅର୍ଜ୍ଜୁନଙ୍କୁ କୁଣ୍ଡିଆଇ ।
ବୋଇଲେ ସଂଶପ୍ତକମାନ ମାରିବାକୁ
ତୋ ବିନା ଏ ମହୀରେ ନ ଦେଖେଁ କାହାକୁ
ଯୁଧିଷ୍ଠିରଠାରୁ ପାଇଣ ଏ ଅନୁଜ୍ଞା
ଅର୍ଜ୍ଜୁନ ମହାରଥୀ କରିଣ ପ୍ରତିଜ୍ଞା ।
ସଂଶପ୍ତକମାନଙ୍କୁ ମାରିବାର ପାଇଁ
କପିଧ୍ୱଜ ରଥେ ବସିଲେ ତ୍ୱରା ହୋଇ ।
ଯେଉଁଆଡ଼ରେ ସଂଶପ୍ତକେ ରହିଥିଲେ
ସେ ଆଡ଼କୁ ଅର୍ଜ୍ଜୁନ ରଥ ବୁହାଇଲେ ।
ଅର୍ଜ୍ଜୁନଙ୍କ ଯିବାର ଦୁର୍ଯ୍ୟୋଧନ ସେନା
ଦେଖି କରି ଧାଇଁଲେ ହୋଇ ହୃଷ୍ଟମନା ।
ଅନ୍ୟୋନ୍ୟେ ଦୁଇସେନା ସରଯୁ ଗଙ୍ଗାପ୍ରାୟେ
ବାହାରି ମିଶିଗଲେ ଜାଣ ନରକାୟେ ।
ଏହା ଦେଖିକରିଣ ସଂଶପ୍ତକଗଣ
ଅର୍ଜ୍ଜୁନଙ୍କୁ କରିବା ବୋଲି ମହାରଣ ।
ସମତଳଭୂମିରେ ରହିଲେ ଗୋଟି ହୋଇ
ଅର୍ଦ୍ଧଚନ୍ଦ୍ରବ୍ୟୁହ କରି ହେ ନରସାଇଁ ।

ନେତ୍ରପଥେ ଦିଶନ୍ତେ ଅର୍ଜ୍ଜୁନର ରଥ
ଗରଜିଲେ ପାଇବା ପରି ମନୋରଥ ।
ସେ ଗର୍ଜନ ଚାରି ଦିଗରେ ଗଲା ବ୍ୟାପି
ହେଲେ ପାଣ୍ଡୁସେନା ତା ଶୁଣି ପରିତାପୀ ।
ଅର୍ଜ୍ଜୁନ ତାହାଙ୍କର ଦୁଷ୍ଟ ଗର୍ଜନକୁ
ଶୁଣିକରି ହସିଣ କହିଲେ କୃଷ୍ଣଙ୍କୁ ।
ମଲାବେଳେ ଦେଖ ହେ ସଂଶପ୍ତକମାନେ
ଗରଜୁ ଅଛନ୍ତିଟି କୃଷ୍ଣ ହୃଷ୍ଟମନେ ।
ସ୍ୱର୍ଗଲୋକ ପାଇବୁଁ ବୋଲି ହୃଷ୍ଟ ହୋଇ
ଗରଜୁଛନ୍ତି କି ହେ ରୁକ୍ମିଦେବୀ ସାଇଁ ।
ଏହା କହି କୃଷ୍ଣଙ୍କୁ ଅର୍ଜ୍ଜୁନ ଯୁଦ୍ଧବେତ୍ତା
ସେ ଗର୍ଜନ ଶୁଣି ନ କରି କିଛି ଚିନ୍ତା ।
ଦେବଦତ୍ତ ଶଙ୍ଖକୁ ମୁଖଦେଶେ ଭରି
ଫୁଙ୍କିଲେ ଯୁଦ୍ଧଦାଣ୍ଡେ ଅତି ଆଣ୍ଟ କରି ।
ଅର୍ଜ୍ଜୁନର ଶଙ୍ଖଶବଦେ ଦଶଦିଶ
ଆକାଶ ଭୂମି ପୂରିଗଲା ହେ ନରେଶ ।
ସେ ଶଙ୍ଖଶବଦେ ତ୍ରିଗର୍ତ୍ତେ ମୋହ ଗଲେ
ଘୋଡ଼ା ହାତୀ ପୁରୀଷ ମୂତ୍ର ଉସର୍ଗିଲେ ।
ପୁଣି ଜ୍ଞାନ ପାଇଣ ସଂଶପ୍ତକମାନେ
ଅର୍ଜ୍ଜୁନଙ୍କୁ ଆଚ୍ଛାଦି ନେଲେ କାଣ୍ଡମୁନେ ।
ଅରଜୁନ ବିନ୍ଧିଣ ପନ୍ଦରଟି କାଣ୍ଡ
କଲେ ତାଙ୍କ ଶରମାନଙ୍କୁ ଦୁଇଖଣ୍ଡ ।
ସଂଶପ୍ତକମାନେ ଯେ ଧଳମୁଷ୍ଟି ଭିଡ଼ି
ଦଶ ଦଶ କାଣ୍ଡ ସମସ୍ତେ ଦେଲେ ଛାଡ଼ି ।
ସଂଶପ୍ତକମାନଙ୍କୁ ଜଣକେ ତିନି ତିନି
ମାରଗଣ ବିନ୍ଧିଲେ କ୍ରୋଧେ ଫାଲ୍ଗୁନି ।
ପୁଣି ସେ ସଂଶପ୍ତକେ ଆମଞ୍ଚି ଧନୁକୁ
ଜଣକେ ପାଞ୍ଚ ପାଞ୍ଚ ବିନ୍ଧିଲେ ଅର୍ଜ୍ଜୁନଙ୍କୁ ।
ସଂଶପ୍ତକମାନଙ୍କୁ ଦୁଇ ଦୁଇ କାଣ୍ଡ
ବିନ୍ଧିଲେ ଅର୍ଜ୍ଜୁନ ଥରାଇ କ୍ରୋଧେ ପିଣ୍ଡ ।
ପୁଣି ସଂଶପ୍ତକେ ରଚିଣ ଶରଧାର
ଭାଙ୍ଗିଲେ କୃଷ୍ଣ ଅର୍ଜ୍ଜୁନଙ୍କ ଗିରି ତୋରା ।
ଅର୍ଜ୍ଜୁନଙ୍କ ଦେହରେ ସସ୍ରସଂଖ୍ୟା କାଣ୍ଡ
ପଡ଼ିଲା ଚାରିପଟୁଁ ହୋଇକରି ଗୁଣ୍ଡ ।
ତିରିଶିଟି କାଣ୍ଡ ସୁବାହୁ କିରୀଟିର
କିରୀଟିକୁ ବିନ୍ଧିଲେ ଗାନ୍ଧାରୀ ଦେବୀବର ।
ସେ କାଣ୍ଡମାନଙ୍କରେ ଅର୍ଜ୍ଜୁନ ମୁକୁଟ
ମଣ୍ଡିହୋଇ ଦିଶିଲା ଶୋଭାରେ ଝଟଝଟ ।
ସୁବାହୁ ପରାକ୍ରମ ନ ସହି ଅର୍ଜ୍ଜୁନ
କାଟିଲେ ତାଙ୍କ ହସ୍ତ-ହସ୍ତାକୁ ବହନ ।

ସୁବାହୁ ପିଣ୍ଡକୁ ଅର୍ଜ୍ଜୁନ କାଣ୍ଡେ ମଣ୍ଡି
ଧଇଲେ ଭିଡ଼ି ଆଣ୍ଟେ ଗାଣ୍ଡୀବ ମଧ ଖଣ୍ଡି ।
ସୁକ୍ଷରମା ସୁରଥ ସୁଧର୍ମା ସୁରଥ ସୁବାହୁ
ସୁଧନ୍ୱା ଆଦି ରଥୀ ହୋଇ ଧନୁର୍ବାହୁ ।
ରୋଷବଶେ ଦେହକୁ କରି ଥରଥର
ଅର୍ଜ୍ଜୁନକୁ ବିନ୍ଧିଲେ ଦଶ ଦଶ ଶର ।
ଅର୍ଜ୍ଜୁନ ପ୍ରତ୍ୟେକରେ ବିନ୍ଧିଣ ନାରାଚ
କାଟି ତାଙ୍କ ଧ୍ୱଜକୁ ପକାଇଲେ ମଞ୍ଚ ।
ସୁଧନ୍ୱାଙ୍କ ଧନୁ କାଟିଣ ଯେ କିରୀଟି
କଲେ ତାଙ୍କ ଚାରିଘୋଡ଼ାଙ୍କ ପ୍ରାଣ ଲୁଟି ।
ଶିରସ୍ତ୍ରାଣ ତୁଲେ ସୁଓନ୍ୱାଙ୍କର ମୁଣ୍ଡ
କାଟିକରି ଗଡ଼ାଇଦେଲେ ରଣଦାଣ୍ଡ ।
ମରନ୍ତେ ସଂଶପ୍ତକଗଣରୁ ସୁଧନ୍ୟୁ
ପଳାଇଲେ ତା ସୈନ୍ୟ ଛାଡ଼ି ହୃଦ ମନ୍ୟୁ ।
ଅର୍ଜ୍ଜୁନ ଶର -ସୂର୍ଯ୍ୟେ ସଂଶପ୍ତକ୍ ବଳ -
ଅନ୍ଧାର ଫାଟିଲା ହସ୍ତିନା ମହୀପାଳ ।
ଅର୍ଜ୍ଜୁନ କ୍ରୋଧରେ ତ୍ରିଗର୍ତ୍ତେ ଗଲେ କମ୍ପ
କି କରିବା ବୋଲି ହୋଇଣ ପରିତାପୀ ।
ପାର୍ଥ ହାତୁ ଶରଟି ଚୋର ପରି ଫିଟି
କଲେ ସଂଶପ୍ତକ ପରାଣ - ଧନ ଲୁଟି ।
ଏ ଯୋଗୁଁ ସେ ଲୋକେ କରିବା ନିୟମକୁ
ପୃଷ୍ଠଦେଶେ ପକାଇ ଭାଜିଲେ ପଛକୁ ।
ତ୍ରିଗର୍ତ୍ତ ରାଜା ତାହା ସହି ନ ପାରିଲେ
ନ ପଳାଅ ନିୟମ କରି ହେ ବୋଇଲେ ।
ଦୁର୍ଯ୍ୟୋଧନରାଜାଙ୍କ ମୁଖକୁ ଅନାଇଁ
କି କହିବା ଏହା ମୁଁ କିଛି ଜାଣୁ ନାହିଁ ।
ଉପହାସ୍ୟ ପାଇ ଲୋକରେ ବୀଇଁବାର -
ପ୍ରତିକି ଭଲ କଥା ଯୁଦ୍ଧେ ମରିବାର ।
ମୋ ବୋଲକରି ଏବେ ଆସ ହେ ଲେଉଟି
ବିନ୍ଧିବା ଅର୍ଜ୍ଜୁନ ଗଣିକି କାଣ୍ଡଗୋଟି ।
ଅରଜୁନ ଏବେ ତ ଯୁଝୁଛନ୍ତି ଏକା
ମାରିବା ହାତସୁଖେ ଛାଡ଼ ଯୁଦ୍ଧେ ଦକା ।
ତ୍ରିଗର୍ତ୍ତରାଜାଙ୍କର ଏ ବଚନ ଶୁଣି
ନ ପଳାଇ ରହିଲେ ସଂଶପ୍ତକ ଶ୍ରେଣୀ ।
ଶଙ୍ଖମାନ ବଜାଇ କରି ତରଜନ
ବୋଇଲେ ଆସ ଯୁଦ୍ଧ କରିବା ଅର୍ଜ୍ଜୁନ ।
ସଂଶପ୍ତକମାନଙ୍କ ଡାକହାକ ଶୁଣି
କହିଲେ କୃଷ୍ଣଙ୍କୁ ଗାଣ୍ଡିବ-ଧନୁଷାଣି ।
ସଂଶପ୍ତକମାନଙ୍କଠାକୁ ମୋର ରଥ
ବାହ ଆଜ ବୁଝିବି ସେ କେଡ଼େ ସମର୍ଥ ।

ଆଜି ମୋ ବାହୁବଳ ଦେଖିଣ ଗୋବିନ୍ଦ
କାନ୍ଦିବ ବସି ଆଜ ଦୁର୍ଯ୍ୟୋଧନ ମନ୍ଦ ।
ଅର୍ଜୁନ ଏ ବଚନ ଶୁଣି ହୃଷୀକେଶ
ହସି କଲେ ରଥ ତ୍ରିଗର୍ତ୍ତ ରାଜା ପାଶ ।
ସୈନ୍ୟ ଆକାଶରେ ଯେ ତରଣି ପରାୟେ
ଦିଶିଲା ପାର୍ଥରଥ ମଣିରତ୍ନ ରାୟେ ।
ଇନ୍ଦ୍ରଙ୍କ ରଥ ପରି ଅର୍ଜୁନଙ୍କ ରଥ
ବାହିଲେ ଯୁଦ୍ଧଦାଣ୍ଡେ ଜଗଜ୍ଜନନାଥ ।
ନାରାୟଣ ବଳ ତା ଦେଖି କ୍ରୋଧ ହୋଇ
ଦେଲେ ଶରରେ ପାର୍ଥ ରଥକୁ ଘୋଡ଼ାଇ ।
ନ ସହିପାରି ତା ଅର୍ଜୁନ ଗୁଣ ମାଜି
ଦିଅନ୍ତେ କ୍ରୋଧେ ଗଲେ ଆଖି ରଙ୍ଗ ଭଜି ।
ଭ୍ରୂକୁଟିକି ଲଗାଇ ତେରଛି ଚାହିଁଲେ
ତ୍ୱଷ୍ଟା ପ୍ରଜାପତି ଅସ୍ତ୍ରକୁ ନିଯୋଜିଲେ ।
ସେ ଅସ୍ତ୍ର ପ୍ରଭାବରେ ଅର୍ଜୁନଙ୍କ ରୂପ
ସବୁଆଡ଼ରେ ଦେଖାଗଲା ହେ ଅମାପ ।
ଅର୍ଜୁନ ମନେ କରି ତୁମ୍ଭ ସେନା ନରେ
ଅନ୍ୟୋନ୍ୟେ ମରାମରି ହୋଇ ହତ ହେଲେ
କେତେ ଯୋଦ୍ଧା ଶର ବିନ୍ଧିଲେ ଧନୁ ଧରି
ସେମାନଙ୍କୁ ସେ ଅସ୍ତ୍ରେ ପକାଇଲେ ମାରି ।
ସଂଶପ୍ତକମାନଙ୍କ ବୁଦ୍ଧିବଣା ଯୁଦ୍ଧ
ଦେଖି ଅରଜୁନ ହସିଲେ ବହି ସଧ ।
ତ୍ରିଗର୍ତ୍ତ ମାଲ୍ଲବକ ଲଳିଖ ମାଳବ -
ଆଦି ଯୋଦ୍ଧାମାନଙ୍କୁ ଅର୍ଜୁନ ଗାଣ୍ଡୀବ ।
ଶରେ ତାଙ୍କ ଗଣ୍ଡିକି ପକାଇଲେ ମଣ୍ଡି
ଦେଇଣ ଯୁଦ୍ଧେ କପିଧ୍ୱଜ ରଥ ଦାଣ୍ଡି ।
ସଂଶପ୍ତକମାନେଟି କାଳରେ ପ୍ରେରିତ
ହୋଇଥିଲେ ଯେଣୁଟି ହେଲେ କ୍ରୋଧଚିତ୍ତ ।
ମାରଗଣଗଣରେ ଅର୍ଜୁନଙ୍କୁ ଛାଇ
ଦେଇ ତାଙ୍କ ଶରକୁ ନ ଦେଲେ ବଞ୍ଚାଇ ।
ହୁଅନ୍ତେ କୃଷ୍ଣାର୍ଜୁନ ଶରରେ ଆଚ୍ଛନ୍ନ
ନ ଦେଖିଲା ତାହାଙ୍କୁ କାହାରି ନୟନ ।
ତୁମ୍ଭ ସେନାମାନେଟି ମହାହୃଷ୍ଟ ହୋଇ
ଉଡ଼ାଇଲେ ବସନ ଟାଳିକି ପକାଇ ।
ମୃଦଙ୍ଗ ଭେରୀ ଶଙ୍ଖ ଆନକ ଗୋମୁଖ
ବଜାଇଣ ଯୁଦ୍ଧେ ଲଭିଲେ ମହାସୁଖ ।
ସଂଶପ୍ତକମାନଙ୍କ ଶରେ ପୀଡ଼ା ପାଇ
ଦେହରୁ ଝାଳ କୃଷ୍ଣ ଦେଇଣ ବୁହାଇ ।
ଅର୍ଜୁନଙ୍କୁ ଡାକିଲେ କେଉଁଠାରେ ଅଛ
ଜୀଇଁଛ କି ନାହିଁ ହେ କହ କୁନ୍ତୀବତ୍ସ ।
କୃଷ୍ଣଙ୍କ ବଚନେ ଅର୍ଜୁନ ତ୍ୱରାହୋଇ
ବାୟବ୍ୟ ଅସ୍ତ୍ର ଧନୁ ମଧ୍ୟରେ ବସାଇ ।
କର୍ଣ୍ଣଯାଏ ଟାଣି ବିନ୍ଧନ୍ତେ ଅରଜୁନ
ସଂଶପ୍ତକ ଶର ସେ କରି ଛିନ୍ନଭିନ୍ନ ।
ସଂଶପ୍ତକମାନଙ୍କୁ ରଥୀ ହାତୀ ତୁଳେ
ସେ ବାୟବ୍ୟଅସ୍ତ୍ର ଉଡ଼ାଇ ଘେନିଗଲେ ।
ପୁଣିଟି ତ୍ୱରା ହୋଇ ଅରଜୁନ ବୀର
ସହସ୍ର ସହସ୍ର ମାଇଲେ ଅଶ୍ୱ ନର ।
କୁଣ୍ଡଳମଣ୍ଡା ମୁଣ୍ଡ ଅରଜୁନ ଭେଣ୍ଡା
କାଟି ଯୁଦ୍ଧେ ଗଡ଼ାଇହେଲେ ଗଣ୍ଡା ଗଣ୍ଡା ।
କଙ୍କଣ ତୁଳେ ବାହୁ କାଟନ୍ତେ କିରୀଟି
ପଡ଼ି ତଳେ ଶଶିଶୋଭାକୁ କଲେ ଲୁଟି ।
କେଉଁମାନଙ୍କର ଗୋଡ଼କୁ କାଟି କାଣ୍ଡେ
ଲୟକରି ଶୁଆଇଦେଲେ ରଣଦଣ୍ଡେ ।
କେତେ ଯୋଦ୍ଧାଙ୍କର ଯେ ପିଡି ନାକ କାନ
କାଟି ପକାଇଲେ କାଣ୍ଡରେ ଅରଜୁନ ।
କୁଆଳୀତୁଳେ ରଥଖମ୍ଭକୁ କାଟନ୍ତେ
ଇନ୍ଦ୍ରଧ୍ୱଜପରି ପଡ଼ିଲେ ମହୀଗତେ ।
କେତେ ଯୋଦ୍ଧାଙ୍କରଟି ଧ୍ୱଜ ଧନୁ ତୂଣ
ପଡ଼ିଲା ଛିଡ଼ି ପାଇ ଅରଜୁନ ବାଣ ।
ବଜ୍ରରେ ହତ କେବା ଗିରିପ୍ରାୟେ ହୋଇ
ପଡ଼ିଲେ ହସ୍ତିକୁଳ ଭୂମେ ଶୋଇ ଶୋଇ ।
ଅଶ୍ୱ ତୁଳେ ଅଶ୍ୱାରୋହୀଙ୍କ ଦେହେ କାଣ୍ଡ
ବାଜନ୍ତେ ଛେଚି ହୋଇ ମଣ୍ଡିଲେ ରଣଦାଣ୍ଡ
ଛିନ୍ନବର୍ଣ୍ଣା ହୋନ୍ତେ ପଦାତି ହୋଇ ଚିତି
ପଡ଼ିଲେ ହେ ରାଜନ ଦୁଇଗୋଡ଼ ପାତି ।
ଢାଲ କାଣ୍ଡ ଶକତି ତୋମର ପରିଘ
ଛିଡ଼ିଲେ ଅର୍ଜୁନର ପାଇ ବାଣସଙ୍ଗ ।
ସଂଶପ୍ତକମାନେ ଯେ ଅର୍ଜୁନର ବାଣ
ପାଇ କରି ଏରୂପେ ହୋନ୍ତେ ନରରାଣ ।
ରୁଦ୍ରଙ୍କ କ୍ରୀଡ଼ାଭୂମି ପାୟେ ଯୁଦ୍ଧଭୂମି
ଦିଶିଲା ଅରଜୁନ ହୋଇବାରୁ ଚମୀ ।
ଯୋଦ୍ଧାଙ୍କ ପାଦଘାତେ ରେଣୁ ଉଡୁଥିଲା
ରକତ ବୃଷ୍ଟିରେ ସେ ଶାନ୍ତି ହୋଇଗଲା ।
ଶତ ଶତ କବନ୍ଧେ ସଙ୍କୁଳ ମହୀଦେବୀ
ହୋନ୍ତେ ଯୋଦ୍ଧା ବାଟ ଖୋଜିଲେ ଯିବା ଭାବି
ଅରଜୁନ ଯାନକୁ ତୁମ୍ଭ ଯୋଦ୍ଧାମାନେ
ଯୁଝିବା ଥାଉ ନ ଦେଖିଲେଟି ନୟନେ ।
ଅର୍ଜୁନ ମୁଖରେ କଲେ ଯେ ଯାଇ ରଣ
ପୂଜା କଲେ ତାକୁ ଶଚୀଦେବୀରାଣ ।

ଏହି ସମୟରେ ରାଜନ ଦ୍ରୋଣାଚାର୍ଯ୍ୟ
ଦେଖାଇବାକୁ ତାଙ୍କ ବଳକୁ ଆଶ୍ଚର୍ଯ୍ୟ ।
ଅର୍ଜୁନ ସୈନ୍ୟେ ନ ଥିବାର ତ ଜାଣିଲେ
ସୈନ୍ୟ ଘେନି ଯୁଧିଷ୍ଠିରଙ୍କଠାକୁ ଗଲେ ।
ଦ୍ରୋଣ ଆସିବାର ପାଣ୍ଡବ ସେନାକୁଳ
ଦେଖିଣ ଜଗିଲେ ପାଣ୍ଡବ ନରପାଳ ।
ଗରୁଡ଼ ବ୍ୟୂହ ଦ୍ରୋଣ କରନ୍ତେ ସୈନ୍ୟରେ
ମଣ୍ଡଳାର୍ଦ୍ଧ ବ୍ୟୂହ କରିଲେ ପାଣ୍ଡୁନରେ ।
ଗରୁଡ଼ବ୍ୟୂହ ମୁଖେ ରହିଲେ ଗୁରୁ ଦ୍ରୋଣ
ଧରି କରେ ଉତ୍ତମ କରି ଧନୁର୍ବାଣ ।
ଭାଇଙ୍କି ଘେନି ତୁମ୍ଭ ଦୁର୍ଯ୍ୟୋଧନ ସୁତ
ସେ ବ୍ୟୂହର ଶିରକୁ କଲେ ସେ ରକ୍ଷିତ ।
ଚକ୍ଷୁ ଦୁଇଙ୍କରେ ଯେ କୃପ କୃତବର୍ମା
ରହିଲେ ଦେଖାଇଣ ଯୁଦ୍ଧରେ ଗାରିମା ।
କରକାକ୍ଷ କଳିଙ୍ଗ ସିଂହଳ ଭୂତଶର୍ମା
ପ୍ରାଚ୍ୟଗଣ ଯବନ କାମ୍ବୋଜ କ୍ଷେମଶର୍ମା ।
ହଂସପଥ ଶୂରସେନ ଯେ ଦାଶେରକ
କେକୟାଭୀର ଶକ ଦରକ ମଦ୍ରକ ।
ଏମାନେ ହାତୀ ଘୋଡ଼ା ପଦାତି ସଇନ୍ୟ
ଘେନି ସେ ବ୍ୟୂହ ଗ୍ରୀବାଦେଶେ କଲେ ସ୍ଥାନ
ଭୂରିଶ୍ରବା ଶଲ୍ୟ ବାହ୍ଲିକ ସୋମଦତ୍ତ
ଅକ୍ଷୌହିଣୀ ସେନାରେ ହୋଇଣ ଆବୃତ୍ତ ।
ବ୍ୟୂହର ଦକ୍ଷିଣ ପାରୁଶରେ ରହିଲେ
ଆସିଲେ ପାଣ୍ଡୁସେନା ମାରିବା ମନେ କଲେ ।
ସୁଦକ୍ଷିଣ ବିନ୍ଦ ଯେ ଅନୁବିନ୍ଦ ତିନି
ଦ୍ରୋଣଙ୍କର ତନୟକୁଟି ସଙ୍ଗେ ଘେନି ।
ବ୍ୟୂହର ବାମପାଶେ ଆବୋରିଲେ ଯାଇ
ଆଣ୍ଟ କରି ଧନୁଗୁଣକୁ ମାଜିଦେଇ ।
ମାଗଧ ପୌଣ୍ଡ୍ର ପ୍ରାଚ୍ୟ କଳିଙ୍ଗ ଆମ୍ବଷ୍ଠ
ପାର୍ବତୀୟ ବଶାତି ଶକୁନ ଧନୁଶ୍ରେଷ୍ଠ-
ମାନଙ୍କୁ ଧରି କରେ ସେ ବ୍ୟୂହର ପୃଷ୍ଠ
ଜଗିଲେ ହେ ଜାଣ ହସ୍ତିନାର ଶ୍ରେଷ୍ଠ ।
ପୁଚ୍ଛଦେଶେ ଜ୍ଞାତ ପୁତ୍ରଙ୍କୁ ସଙ୍ଗେ ଧରି
ଆବୋରିଲେ ତୁମ୍ଭର କର୍ଣ୍ଣ ଶସ୍ତ୍ରଧାରୀ ।
ଜୟଦ୍ରଥ ସମ୍ପାତି ରଷୀଭ ଭୀମରଥ
ଭୂମିଞ୍ଜୟ ବୃଷ ନୈଷଧ ଜୟତ୍ରାଥ ।
ଏମାନେ ବ୍ୟୂହ ଚାରିପଟେ ରକ୍ଷାକାରୀ
ହୋଇଲେ ନାନା ଜାତି ଶସ୍ତ୍ରକୁ ଉଭାରି ।
ପବନେ ଉଚ୍ଛୁଳିବା ସମୁଦ୍ର ଉପମ
ହୋଇଲେ ହେ ସେ ବ୍ୟୂହ ଜାଣ ନୃପୋତ୍ତମ

ଯୋଦ୍ଧାଙ୍କ ପାଦଧୂଳି ଶୁଦ୍ଧ-ଭୂମି -ନାରୀ
ବସ୍ତ୍ର ପରି ଅଙ୍ଗେ ପିନ୍ଧିଛି ତପଧାରୀ ।
ଛୁରି କାତି ନେତ୍ରରେ ହୋଇଛି ରଚିତ
ଧନୁ ଭ୍ରୂରେ ସେ ମୋହୁଅଛି ଚିତ୍ତ ।
ଶସ୍ତ୍ରଙ୍କ ଝଳିରେ ପ୍ରକାଶି ମନ୍ଦହାସ
ଉଲ୍ଲାସ କଲା ତହିଁ ଯୋଦ୍ଧାଙ୍କ ମାନସ ।
ଉଦୟଗିରି-ହସ୍ତୀ ଉପରେ ଭଗଦତ୍ତ
ବସିବାରୁ ଦିଶିଲେ ସୂର୍ଯ୍ୟଙ୍କ ସମ ତ ।
ଶ୍ୱେତପତ୍ର ମସ୍ତକେ ହୋଇଛି ତ ଟେକା
ନାଶିଲା ସେ ପୌର୍ଣ୍ଣମୀଚନ୍ଦ୍ର ଶୋଭା ଏକା ।
ସେ ବ୍ୟୂହ ଆକାଶ ମଧ୍ୟରେ ଭଗଦତ୍ତ
ଥାଇଣ ଗ୍ରହ ପରି ଦିଶିଲେ ଦୀପତ ।
ଭଗଦତ୍ତ-ହସ୍ତ ଗଣ୍ଡରୁ ମଦବାରି
ବହିଣ ଦିଶିଲା ଯେସନ ଘନବାରି ।
ନୃପତି -ଦେବଙ୍କରେ ଭଗଦତ୍ତ ରାଜା
ପ୍ରକାଶ କଲେ ଶୋଭା ଯେସନେ ବିଡ଼ୋଜା
ଶତ୍ରୁମାନଙ୍କରେ ଅଜେୟ ତୁମ୍ଭ ବ୍ୟୂହ
ଦେଖି ଯୁଧିଷ୍ଠିର ହୃଦରେ ବହି ମୋହ ।
ଡାକି କରି ଧୃଷ୍ଟଦ୍ୟୁମ୍ନକୁ ସେ କହିଲେ
ଯତ୍ନ କରି ଜଗିଥିବଟି ମୋତେ ଭଲେ ।
ଯେଉଁରୂପେ ଗୁରୁ ନ ଧରିବେଟି ମୋତେ
ସେରୂପେ ଯୁଦ୍ଧରେ କରିବ ମହାମତେ ।
ଏହା ଶୁଣିଣ ଧୃଷ୍ଟଦ୍ୟୁମ୍ନ ମନ୍ଦ ହସା
ଦେଇ କହିଲେ ହେ ରାଜନ ମହାଯଶା ।
କାହିଁକି ଦ୍ରୋଣଠାରେ କରୁଅଛ ଭୟ
ଯୁଦ୍ଧରେ ତ ମୁହିଁ ହେ ହୋଇ ନାହିଁ କ୍ଷୟ ।
ମୋ ବାଣରୁ ବଳିଣ ଦ୍ରୋଣ ମହାବଳ
ତୁମ୍ଭଠାକୁ ନ ଆସିବେ ହେ ମହୀପାଳ ।
ଯୁଧିଷ୍ଠିର ରାଜାଙ୍କୁ ଏହିରୂପେ କହି
ଦ୍ରୋଣଙ୍କଠାକୁ ଗଲେ ଯୁଝିବାକୁ ଧାଇଁ ।
ଧୃଷ୍ଟଦ୍ୟୁମ୍ନକୁ ଆଗରେ ଦ୍ରୋଣ ଦେଖି
ହୃଷ୍ଟମନା ନୋହି ହୋଇଲେ କିଛି ଦୁଃଖୀ ।
ତୁମ୍ଭ ପୁଅ ଦୁର୍ମୁଖ ଦ୍ରୋଣଙ୍କ ପ୍ରିୟ ସାଇଁ
ଯୁଦ୍ଧ କଲେ ଧୃଷ୍ଟଦ୍ୟୁମ୍ନକୁ ସେହୁ ଯାଇ ।
ଦୁହେଁ ତ ଯୁଦ୍ଧକାଣ୍ଡେ ଅଟନ୍ତି କୁଶଳ
ଘୋର ଯୁଦ୍ଧ କଲେ ଦେଖାଇ ଦେହବଳ ।
ଦୁର୍ମୁଖକୁ ଶରଜାଳରେ ଧୃଷ୍ଟଦ୍ୟୁମ୍ନ
ଆଚ୍ଛାଦି କଲେ ଦ୍ରୋଣ ସଙ୍ଗେ ଆୟୋଧନ ।
ଦୁର୍ମୁଖ ତା ନ ସହି ବିନ୍ଧି ନାନା ଶର
କରିଲେ ଧୃଷ୍ଟଦ୍ୟୁମ୍ନ ସଙ୍ଗତେ ସମର ।

ଦୁହେଁ ତ କ୍ଷତ୍ରିୟର କୁଳେ ଅବତରି -
ଅଛନ୍ତି ଏଣୁ ଯୁଦ୍ଧ କଲେ ସେ ନ ଡରି ।
ଦ୍ରୋଣଙ୍କର ଧନୁରୁ ବାହାରିଣ ଶର
କଲା ପାଣ୍ଡୁସେନାକୁ ରକତେ ଜର୍ଜର ।
ପବନରେ ମେଘ ଯେ ଉଡ଼ିବା ପରାୟେ
ଭାଜିଲେ ପାଣ୍ଡୁସେନା ଦ୍ରୋଣ ଶରବାୟେ ।
ମୁହୂର୍ତ୍ତେଯାଏ ଧର୍ମଯୁଦ୍ଧ ପ୍ରବର୍ତ୍ତିଲା
ଦେଖୁ ଦେଖୁ ସେ ଯୁଦ୍ଧ ସଂକୁଳ ହୋଇଲା ।
ସେ ଯୁଦ୍ଧରେ ପର ଆପଣା ଜଣାଜଣି
ନୋହିବାରୁ ମରିଲେ ହୋଇ ହଣାହଣି ।
ନାମ ଗୋତ୍ର ଉଚ୍ଚାରି ଯେଉଁମାନେ ଯୁଦ୍ଧ -
କଲେ ସେମାନେ ହେଲେ ଶତ୍ରୁ ହାତେ ବଧ
ଯୋଦ୍ଧାଙ୍କ ଦେହେ ଥିବା ମଣି ରତ୍ନରାଜି
ନକ୍ଷତ୍ର ପରି ରାୟେ ଦିଶିଲା ବିରାଜି ।
ରଥୀହାତୀ ଘୋଡ଼ା ଆରୋହି ଯେ ପାଇକ
ପରସ୍ପରେ ଯୁଝିଲେ ଛାଡ଼ି ହୁରୁଁ ଦକ ।
ଦୁଇ କୁଳ ଦନ୍ତିଏ କରି ଦନ୍ତ ଆଡ଼
ଯୁଝନ୍ତେ ଭାଜିଗଲେ ଦନ୍ତ ଭଡ଼ଭଡ଼ ।
ଦନ୍ତରୁ ଅଗ୍ନିକଣା ବୃଷ୍ଟି ଯେ ହୋଇଲା
କେତେ ଜଣଙ୍କର ବସନ ପୋଡ଼ିଗଲା ।
ରକ୍ତ ପଡ଼ିବାରୁ କେବଳ ସେ ବସନ
ସମଗ୍ରେ ପୋଡ଼ି ନ ପାରିଲେ ହେ ବହନ ।
ହାତୀମାନଙ୍କର ଯେ ଗଣ୍ଡଦେଶେ ବାଣ
ବାଜନ୍ତେ ବିଞ୍ଝି ହୋଇ ପଡ଼ିଲେ ମୋତିଗଣ ।
ଏହି ସକାଶୁଁ ହାତୀକୁଳ କଲେ ରଡ଼ି
ପଳାଇଲେ ଦୁଇସେନାକୁ ରାୟେ ମାଡ଼ି ।
ତୋମରରେ ଆହତ ହୁଅନ୍ତେ ମାହୁନ୍ତେ
ଚିତିହୋଇ ମହୀରେ ପଡ଼ିଲେ ମହୀପତେ ।
ମାହୁନ୍ତେ ଯା ହାତୀ ଉପରେ ବସି ମଲେ
କେତେକଙ୍କୁ ହାତିଏ ଘେନି ପଳାଇଲେ ।
ଯୋଦ୍ଧାଙ୍କର ହାତବାଣରେ କେତେ ହାତୀ
ମରିକରି ହୋଇଲେ ଭୂମିଦେବୀ ସାଥି ।
ହାତୀମାନଙ୍କର ଯେ ରକ୍ତ ମାଉଁସରେ
ମହୀ ପୂର୍ଣ୍ଣ ହୋଇଗଲା ସେ ସମୟରେ ।
ହାତୀମାନଙ୍କର ପାଇଣ ଦନ୍ତଘାତ
ରଥ ଯେ ରଥୀଏ ଭୂମିରେ ହେଲେ ଗତ ।
ଅଶ୍ୱାରୋହୀଙ୍କର ଯେ ଅଶ୍ୱମାନେ ହୀନ
ହୁଅନ୍ତେ ପଳାଇଲେ ହୋଇ ଛିନ୍ନଭିନ୍ନ ।
ପାଇକଙ୍କର ଛିଡ଼ିଯାନ୍ତେ ଫରି ଖଣ୍ଡା
ପଳାଇଲେ ପଛକୁ ହୋଇ ଗଣ୍ଡା ଗଣ୍ଡା ।
ହାତୀଙ୍କର ଭାଗୁଡ଼ି କହିବି ତା କିସ
ରଥୀଏ ଘୁଞ୍ଚିଲେ ନ ସହି ଯୁଦ୍ଧତ୍ରାସ ।
ସେ ଯୁଦ୍ଧେ ବାବୁଏ ନ ଜାଣି ଓଷ୍ଠ ପାଟି
ଭିଡ଼ିଣ ସୁତମୁଣ୍ଡ ପକାଇଲେ କାଟି ।
ପୁଏ ସେରୂପେ ବାବୁଙ୍କର ଧରି ବାଳ
ହାଣିଲେଟି ନ ଜାଣି ଟେକି କରତାଳ ।
ଯୁଦ୍ଧଦାଣ୍ଡ ରକ୍ତନଦୀରେ ଯୋଦ୍ଧା ଭେଣ୍ଡା-
ମାନଙ୍କର ବୁଡ଼ି ଗଲା ଅଣ୍ଟା ଖଣ୍ଡା ।
ଯେଉଁମାନଙ୍କର ରକତ ବଳାଗଣ୍ଠି -
ଯାଏଁ ହେଲା ସେମାନେ ଭାଜିଲେ ପଡ଼ିଉଠି
ସେ ଯୁଦ୍ଧରେ ଯୋଦ୍ଧାଙ୍କ ଶୁକଳବସନ
ଦେଖି ନ ପାରିଲାଟି ଆମ୍ଭର ନୟନ ।
ରଥଚରଣରେ ସେ ଚତୁରଙ୍ଗସେନା
ପଡ଼ିଲେ, କେତେ ଭାଗି ଗଲେ ମହାମନା ।
ଯେତେକ ଥିଲେ ପର ଆପଣାରେ ଯୋଦ୍ଧା-
ମାନେ ହୃଦୟରେ ବହିଣ ମହାଶ୍ରଦ୍ଧା ।
ରଥ ବୋଇତକୁ ଆରୋହି ଧନୁ ଶର
ଟାଣିମାରେ ଟାଣିଲେ ଅଝାଳ ନିନ୍ତର ।
ଜୟ ରତ୍ନ ଆଣିବା ଆଶାରେ ଦୁଇସେନା -
ସିନ୍ଧୁ ମଧ୍ୟେ ପଶିଲେ ହୋଇ ସୁପ୍ରସନ୍ନା ।
ଯୁଦ୍ଧ ଅନ୍ଧକାରେ ସେ ବାଣଉଡୁଗଣ
ପରାୟେ ଝଟକିଲା ଗାନ୍ଧାରୀରମଣ ।
ପରଜନେଟି ଭୟଙ୍କର ଯୁଦ୍ଧ କରି
ବାହାରିଲେ ଦ୍ରୋର ବ୍ରାହ୍ମଣ ଶସ୍ତ୍ରଧାରୀ ।
ଯେଉଁଠାରେ ଯୁଧିଷ୍ଠିର ରାଜା ଥିଲେ
ସେଠାକୁ ଯାଇ ଘୋର ସଂଗ୍ରାମ ସେ କଲେ
ଦ୍ରୋଣଙ୍କୁ ଦେଖିକରି ଯୁଧିଷ୍ଠିର ବଳ
କି କରିବା ଶବଦେ କଲେ କୋଳାହଳ ।
ସତ୍ୟଜିତ ବୀର ତ ଯୁଧିଷ୍ଠିରଙ୍କର
ଆଗେ ଥିଲେ କଲେ ଦ୍ରୋଣଙ୍କୁ ଯାଇ ରୋଳ
ଇନ୍ଦ୍ର ବୈରୋଚନ ଯୁଦ୍ଧକୁ ଦୁହିଙ୍କର
ହୋଇଲା ହେ ରାଜନ ଯୁଦ୍ଧ ପଟାନ୍ତର ।
ଦୁହେଁ ଦୁଇ ସେନାକୁ ଶରମୁନେ ଖେଦି
ଯୁଦ୍ଧ କଲେ ରାଜନ ହେବାକୁ ନିର୍ବିବାଦୀ ।
ସତ୍ୟଜିତଙ୍କର ଯେ ପାଞ୍ଚକାଣ୍ଡ ପାଇ
ଦ୍ରୋଣଙ୍କ ସାରଥି ପଡ଼ିଲା ମୋହ ଯାଇ ।
ଦ୍ରୋଣଙ୍କର ଚାରି ଘୋଡ଼ାକୁ ଦଶ କାଣ୍ଡ
ବିନ୍ଧିଣ ସତ୍ୟଜିତ ହଳାଇଲେ ମୁଣ୍ଡ ।
ଦ୍ରୋଣଙ୍କର ସାରଥିକି ଯେ ଦଶ ଦଶ
ବିନ୍ଧି ସତ୍ୟଜିତ ମୋଡ଼ିଲେ ଦୁଇ ନିଶ ।

ନାନା ଜାତି ମଣ୍ଡଳମାନ ଆଚରିଲେ
ଦ୍ରୋଣଙ୍କର ଧନୁକୁ କାଟି ପକାଇଲେ ।
ଦ୍ରୋଣ ସତ୍ୟଜିତଙ୍କ ଦେଖି ପରାକ୍ରମ
କାଳକୁ ଅନୁରୂପ ଧରି ହୃଦେ ତମ ।
ସତ୍ୟଜିତଙ୍କର ଯେ ଧନୁଶର କାଟି
ବିନ୍ଧିଲେ ସତ୍ୟଜିତ ଦେହକୁ ଦଶୋଟି ।
ସତ୍ୟଜିତ ପୁଣିଟି ଆନ ଧନୁ ଧରି
ବିନ୍ଧିଲେ ତିରିଶଟି ଶର ବାଛିକରି ।
ସତ୍ୟଜିତ-ରାହୁରେ ଦ୍ରୋଣ-ଚନ୍ଦ୍ର ଗ୍ରାସ
ହୁଅନ୍ତେ ତାଙ୍କ ଭାଇ ବୃକ ହୋଇ ରୋଷ ।
ତୀକ୍ଷଣ୍ ଶତ ଶରମାନଙ୍କୁ ପ୍ରହାରି
ବୋଇଲେ ପକାଇବି ଦ୍ରୋଣଙ୍କୁ ମୁଁ ମାରି ।
ଶରଙ୍କରେ ଦ୍ରୋଣ ଯେ ନ ଦିଶିଲେ ଯହୁଁ
ପାଣ୍ଡୁସେନା ଅସ୍ତ୍ର ଉଡ଼ାଇଲେଟି ତହୁଁ ।
ବୋଲା ବୋଲି ହେଲେ ମରିବେ ଦ୍ରୋଣଗୁରୁ
ଯୁଧିଷ୍ଠିର ରାଜାଙ୍କ ଗଲା ହୃଦ ଭୀରୁ ।
ବୃକ ବେକ ଟେକି ଦ୍ରୋଣଙ୍କ ହୃଦୟକୁ
ଷାଠିଏ ବିନ୍ଧିଲେ ଦେଖାଇ ବିକ୍ରମକୁ ।
ଦ୍ରୋଣ କ୍ରୋ ଧ ହୋଇଣ ସତ୍ୟଜିତ ବୃକ
ଦୁହିଙ୍କର କାଟିଲେ ଶାୟକେ କାର୍ମୁକ ।
ଛ କାଣ୍ଡରେ ସାରଥୀ ଚାରି ଘୋଡ଼ା ପ୍ରାଣ
ନେଇଣ ଦେଲେ ମଧ ବୃକଙ୍କୁ ମରଣ ।
ଏହା ଦେଖି ସତ୍ୟଜିତ ହୋଇଲେ ତ୍ୱରା
କଲେ କାଣ୍ଡେ ଦ୍ରୋଣଙ୍କ ଧ୍ୱଜ ଘୋଡ଼ା ତ୍ୱରା
ଏ ବାହାରେ ଦ୍ରୋଣଙ୍କୁ ସାରଥି ତୁଲରେ
ବିନ୍ଧିଣ ରଥ ବୁହାଇଲେ ସେ ଗେଲରେ ।
ସତ୍ୟପରାକ୍ରମ ଯେ ଦ୍ରୋଣ ସତ୍ୟଜିତ
ଉପରକୁ ବିନ୍ଧିଲେ ଶର ଅଗଣିତ ।
ସତ୍ୟଜିତଙ୍କର କାଟିଲେ ଶର ଧନୁ
ଆଶ୍ଚର୍ଯ୍ୟ ଯୁଦ୍ଧ କରି ଆଚାର୍ଯ୍ୟ ଧରି ମନ୍ୟୁ ।
ସତ୍ୟଜିତ ଯେତେକ ଧନୁ ଧରିଥିଲେ
ଦ୍ରୋଣ ତାଙ୍କୁ ଶରେ ତ ଧରାଇ ନ ଦେଲେ ।
ସତ୍ୟଜିତ ପରମ ଅସ୍ତ୍ରେ ତ କୁଶଳ
ଆରମ୍ଭିବାକୁ ଦ୍ରୋଣ ସଙ୍ଗେ ଅସ୍ତ୍ର ରୋଳ ।
ଦ୍ରୋଣ ଜାଣିପାରିଣ ଅର୍ଦ୍ଧଚନ୍ଦ୍ର କାଣ୍ଡେ
ସତ୍ୟଜିତ ମୁଣ୍ଡ କାଟିଲେ ରଣଦାଣ୍ଡେ ।
ମହାରଥ ଏ ସତ୍ୟଜିତଙ୍କର ହତ
ଦେଖିକରି ଯୁଦ୍ଧରେ ଧର୍ମଙ୍କର ସୁତ ।
ପବନ ପରି ଗତି ଘୋଡ଼ାଙ୍କୁ ଆରୋହି
ପଳାଇଲେ ଯୁଦ୍ଧରୁ କ୍ଷଣେ ହେଁ ନ ରହି ।

ପାଞ୍ଚାଳ ମସ୍ୟ ଚେଦି କାରୁଷ କେକୟ
କୋଷ୍ଟକାଦି ନୃପେ ଏ ଦ୍ରୋଣଙ୍କର କ୍ଷୟ ।
ଭାବି ଯୁଧିଷ୍ଠିରଙ୍କ ରକ୍ଷା ହେବା ପାଇ
ଦ୍ରୋଣଙ୍କୁ ଆଗୋଳିଣ ଯୁଝିଲେ ହେ ଯାଇ ।
ପାଣ୍ଡୁସେନା-ତୂଳାକୁନ୍ଦକୁ ଦ୍ରୋଣ ଶର
ଅନଳ ପରି ଦଗଧ କଲା ନରବର ।
ଶତାନିକ ତାହା ନ ସହି ଶତ ଶର
ସନ୍ଧି ବିନ୍ଧି କରିଲେ ଦ୍ରୋଣଙ୍କୁ ସମର ।
କମାଣରେ ମାରିଣ ଶର ଗୋଟି ଚାରି
ବିନ୍ଧିଲେ ଦ୍ରୋଣଙ୍କର ଘୋଡ଼ାକୁ ବାଛିକରି ।
ଦ୍ରୋଣ ତାହା ନ ସହି ବିନ୍ଧି କ୍ଷୁରକାଣ୍ଡ
ଗଡ଼ାଇଦେଲେ ଯୁଦ୍ଧେ ଶତାନିକ ମୁଣ୍ଡ ।
ବିରାଟ ଥାଟ ତାହା ଦେଖି ଭୟ କଲେ
ମଲେ ତ ରାଜା ଭାଇ ବୋଲି ପଳାଇଲେ ।
ମସ୍ୟ ଚେଦି କାରୁଷ କେକୟମାନଙ୍କୁ
ଜିଣିଲେ ଯୁଦ୍ଧେ ଦ୍ରୋଣ ଦେଖାଇ ବିକ୍ରମକୁ ।
ଦ୍ରୋଣଙ୍କର ଦେଖିକରି ଯେ ସୁନାରଥ
ସୃଞ୍ଜୟଙ୍କ କମ୍ପିଲା ହୃଦ ତୁଲେ ହାତ ।
ଦ୍ରୋଣଙ୍କ ଧନୁର୍ଘୋଷ ପାଣ୍ଡବଙ୍କ ସେନା
ଚାରିପଟେ ଶୁଭିଲା ଜାଣ ମହାମନା ।
ଘୋଡ଼ା ଗଜାରୋହୀ ପାଇକ ରଥ ରଥୀ
କାଣ୍ଡରେ ଦେଲେ ଦ୍ରୋଣ ଯୁଦ୍ଧଦାଣ୍ଡେ ମଛି ।
ବସନ୍ତ କାଳେ ଘନ ଯେରୂପେ କରକା
ବର୍ଷେ ସେରୂପେ ସେ ବିନ୍ଧିଲେ ଶର ଏକା ।
ଦ୍ରୋଣ ସୁନାରଥ ଆକାଶେ ବିଦ୍ୟୁ ପ୍ରାୟେ
ଚହଟିଲା ଦ୍ରୋଣଙ୍କ ଚାପ ନରରାୟେ ।
ହିମବନ୍ତ ଶିଖର ଶୋଭାକୁ ସମ୍ପାଦି
ଆସିଲା ସେ କାଳେ ଦ୍ରୋଣଙ୍କ ଧ୍ୱଜବେଦି ।
ବିଷ୍ଣୁ ଦୈତ୍ୟ ହତ କରିଲା ପ୍ରାୟେ ଦ୍ରୋଣ
ଘେନିଗଲେ ପାଣ୍ଡୁସେନାଙ୍କର ପରାଣ ।
ଦ୍ରୋଣ ଶରଘାତ ସକାଶୁଁ ଯେ ରକତ
ବହି ଯୋଦ୍ଧାଙ୍କର ମହୀକି ହେଲା ଗତ ।
ପୁଣି ସେ ବହିଗଲା ଖଳ ଖଳ ହୋଇ
ବଢ଼ିଥିବା ନଦୀ ପରାୟେ ଶୋଭା ବହି ।
ପାଣ୍ଡୁ ସେନାମାନଙ୍କ କୀର୍ତ୍ତି କୂଳ ହେଲେ
ବୁଡ଼ାଇଲା ସେ ନଦୀ ବହିଣ ପ୍ରବଳେ ।
କବଚ ଲହରୀରେ ହୁଅନ୍ତେ ଶୋଭିତ
ହେଲେ ଧ୍ୱଜମାନେ ସେ ନଦୀରେ ଆବର୍ତ୍ତ ।
ଗଦା ଶକ୍ତି କୁମ୍ଭୀର ପରାୟେ ଚହଟି
ବାହାରିଲେ ସେ ନଦୀ ମଧ୍ୟଯାକ ଘୋଟି ।

ହାତୀ ଘୋଡ଼ା ସେ ନଦୀ ତୁଠର ପଥର
ପ୍ରାୟେ ନୟନକୁ ଦିଶିଲା ମନୋହର ।
ଦ୍ରୋଣଙ୍କ ଶର-ସ୍ରୋତ ହୋଇ ସେ ନଦୀର
ଘେନିଗଲା ବୀର-କାଠକୁ ନିରନ୍ତର ।
କୁଣ୍ଢ-କାତି-ମଧ୍ୟରେ ସଂକୁଳ ହୋଇଛି
କଚ୍ଛପ ପରି ଢାଲରାଜି ବିରାଜୁଛି ।
ପାଗ-ଫେନ ଅସ୍ଥି-ସିଆଳୀ ମାଂସ-ପଙ୍କ
ହୋଇ ବଢ଼ାଇଲା ଯେ ସବୁରି ଆତଙ୍କ ।
ହୁଅନ୍ତେ ପ୍ରାଣୀଅନ୍ତ ଅନ୍ତପୂଟା ସର୍ପ
ମୁଣ୍ଡ ଗଣ୍ଡିପରି କରିଛି ଜ୍ଞାନ ଲୋପ ।
ଭୂତ ପ୍ରେତ ପିଶାଚ ବିଲୁଆଙ୍କ ମନ
ତୋଷିବ ରାଜନ ସେ ନଦୀ ଅବିଛିନ୍ନ ।
ଭୀରୁମାନେ ତାହାଟି ନ ପାରିଲେ ତରି
ତରିଲେ ଶୂରେ ଧନୁ ଭେଳା ଆଶ୍ରେ କରି ।
ଦ୍ରୋଣଙ୍କର ଏ ରୀତି ନ ସହି ପାଣ୍ଡବେ
ଯୁଧିଷ୍ଠିର ରାଜାଙ୍କୁ ଆଗେ କରି ସର୍ବେ ।
କାହିଁ ଯିବୁ ବ୍ରାହ୍ମଣବୁଢ଼ା ବୋଲି ଡାକି
ଯୁଦ୍ଧ କଲେ ନାନାଜାତିର ଅସ୍ତ୍ର ଟେକି ।
ତୁମ୍ଭର ନୃପତିଏ ଆବୋରି ଦ୍ରୋଣକୁ
ଯୁଦ୍ଧ କଲେ ଯାଇଣ ପାଣ୍ଡବମାନଙ୍କୁ ।
କ୍ଷତ୍ରଧର୍ମା ବିଂଶତି କ୍ଷତ୍ରଦେବ ସାତ
ବସୁଦାନ ପାଞ୍ଚ ସତ୍ୟକସୁତ ଶତ ।
ଉତ୍ତମୌଜା ତିନି ଯେ ଦଶ ଧୃଷ୍ଟଦ୍ୟୁମ୍ନ
ଯୁଧାମନ୍ୟୁ ଆଠ ଯେ ତିନି ଚେକିତାନ ।
ଯୁଧିଷ୍ଠିର ବାର ଶିଖଣ୍ଡୀ ପାଞ୍ଚ ରୋପ
ବିନ୍ଧିଲେ ଏ ସମସ୍ତେ ଦ୍ରୋଣେ କରି କୋପ ।
ଏମାନଙ୍କୁ ଯେ ଦ୍ରୋଣ ଅତିକ୍ରମ କରି
କାଣ୍ଡରେ ନେଲେ ପାଣ୍ଡୁସେନା ପ୍ରାଣ ହରି ।
ନ କାଣ୍ଡରେ କ୍ଷେମରାଜାଙ୍କୁ ଯମପାଶେ
ବସାଇଲେ ତୁମ୍ଭର ଗୁରୁ ମହାରୋଷେ ।
ହୋଇଥିଲେ ତୁମ ସଇନ ଅରକ୍ଷକ
ଏକା ଦ୍ରୋଣ ବଳେ ସେ ହୋଇଲେ ରକ୍ଷକ
ଶିଖଣ୍ଡୀକି ଯେ ବାର ଉତ୍ତମଓଜାଙ୍କୁ
କୋଡ଼ିଏ ବିନ୍ଧିଲେ ଦେଖାଇ ବିକ୍ରମକୁ ।
ବସୁଦାନ ବୀରକୁ ବିନ୍ଧି ଧାରକାଣ୍ଡ
ବସାଇଦେଲେ ନେଇ ଯମରାଜା ଦାଣ୍ଡ ।
କ୍ଷତ୍ରଧର୍ମା ବୀରକୁ ଉଦ୍ଦେଶି ଅଶିଏ -
ଶର ତାଙ୍କୁ ମାଇଲେ ଦ୍ରୋଣଗୁରୁ ରାୟେ ।
ସୁଦକ୍ଷିଣ ଜୀବନ ଛବିଶି ମାର୍ଗଣ
ବିନ୍ଧି କରି ଘେନିଲେ ଦ୍ରୋଣଟି ଆପଣ ।

ଭାଲି କାଣ୍ଡରେ କ୍ଷତ୍ରଦେବଙ୍କୁ ରଥରୁ
ପକାଇଦେଲେ ହେଳେ ଯୁଦ୍ଧେ ଦ୍ରୋଣଗୁରୁ ।
ଚଉଷଠି କାଣ୍ଡରେ ଯୁଧାମନ୍ୟୁ ଯୁଦ୍ଧ
କରିବାରେ ଭାଙ୍ଗିଣଦେଲେ ଦ୍ରୋଣ ସଧ ।
ସତ୍ୟପରାକ୍ରମ ଯେ ସାତ୍ୟକି ବୀରଙ୍କୁ
ବିନ୍ଧିଲେ ବାଛିକରି ତିରିଶି ଶରକୁ ।
ଏରୂପେ ପାଣ୍ଡବ ରଥିଙ୍କି ଦେଇ ଦଶା
ମିଳିଲେ ଯୁଧିଷ୍ଠିର ପାଶେ ମହାଯଶା ।
ଯୁଧିଷ୍ଠିର ଦ୍ରୋଣଙ୍କୁ ଦେଖିଣ ପାଶରେ
ଅକର୍ମ ବଡ଼ ହେଲା ବୋଲିଣ ଦୁଃଖରେ ।
ବେଗୁଁଆର ଘୋଡ଼ା ଯୋଚା ରଥରେ ବସି
ଯୁଧିଷ୍ଠିର ନୃପତି ପଳାଇଲେ ଖସି ।
ପାଣ୍ଡବସେନାରୁ ପାଞ୍ଚାଲ୍ୟ ନାମେ ରଥୀ
ବାହାରିଣ ଦ୍ରୋଣଙ୍କୁ କରାଇଲେ ବ୍ୟଥୀ ।
ଦ୍ରୋଣ କ୍ରୋଧ ହୋଇ ସାରଥି ତୁଳେ ଘୋଡ଼ା
ପାଞ୍ଚାଲ୍ୟଙ୍କୁ କରିଲେ ଯମପୁରେ ଛିଡ଼ା ।
ପାଞ୍ଚାଲ୍ୟଙ୍କ ମୃତ୍ୟୁ ପାଞ୍ଚାଳମାନେ ଦେଖି
ମାରିବାକୁ ଦ୍ରୋଣେ ଧାଇଁଲେ ଶର ଯୋଖି ।
ମାର ହାଣ ବୋଲି କରନ୍ତେ ଉଚ୍ଚେ ଡକା
ତା ଶୁଣି ଭୟାଳୁଏ ହୋଇଲେ ତାଟକା ।
ଏକା ହୋଇ ଦ୍ରୋଣ ପାଞ୍ଚାଳବଳ ମାରି
ବୁଲାଇଲେ ଶାୟଳ ଶିରପରେ ଧରି ।
ସାତ୍ୟକି ଚିତ୍ରସେନ ଶିଖଣ୍ଡୀ ଚେକିତାନ
ବାର୍ଦ୍ଧକ୍ଷେମି ସେନାବିନ୍ଦୁ ଯେ ଧୃଷ୍ଟଦ୍ୟୁମ୍ନ ।
ଏମାନଙ୍କ ବଳ ଯୁଦ୍ଧରେ ଦ୍ରୋଣ ଗଞ୍ଜି
ବୋଇଲେ ଖାଇଯାଅ ଘରକୁ ହେ କାଞ୍ଜି ।
ତୁମ୍ଭ ଲୋକମାନେ ଦ୍ରୋଣଙ୍କ ବାହା ସାହା -
ପାଇ ଯୁଦ୍ଧ କରି ଚାଲିଲେ ମୋଡ଼ି ବାହା ।
ଧୃତରାଷ୍ଟ୍ର ପୁଚ୍ଛିଲେ ପାଞ୍ଚାଳ କେକୟ -
ମାନେ ପଳାଇଲେ ଯୁଦ୍ଧରେ ଲଭି କ୍ଷୟ ।
ପାଣ୍ଡବଙ୍କ ସେନାରୁ ବାହାରି ଦ୍ରୋଣଙ୍କୁ
ଯୁଝିଲା କେ ସଞ୍ଜୟ କହ ତା ଆମ୍ଭଙ୍କୁ ।
ମର୍ତ୍ତ ମାତଙ୍ଗ ପରି ପ୍ରକାଶିଲା ବଳ
ଦ୍ରୋଣ କରୁଥିଲେ ମୋ ପୁଅ ହିତେ ରୋଳ ।
କୃତଜ୍ଞ ସତ୍ୟସନ୍ଧ ଅଟନ୍ତି ତ ସେହି
ବୋଲନ୍ତି ଯାହା ତାହା ବ୍ୟର୍ଥ ହେବ କେହିଁ ।
ଯୁଧିଷ୍ଠିର ନୃପଙ୍କୁ ଧରିବାକୁ ସତ୍ୟ
କରି ତ ଥିଲେ ପୂର୍ବୁଁ ଦ୍ରୋଣ ସତ୍ୟବ୍ରତ ।
ସୃଞ୍ଜୟ ପାଞ୍ଚାଳଙ୍କୁ ଦେଲେ ଶରେ ରୁନ୍ଧି
ନ ଆଣିଲେ ପାଣ୍ଡବନ୍ନନେ କିପାଁ ବାନ୍ଧି ।

ଏହି ଘେନି ହୋଇଛି ସନ୍ଦେହ ହୃଦୟ
କହିକରି ସଞ୍ଜୟ ଫିଟାଇ ତା ଦିଅ ।
ସଞ୍ଜୟ ବୋଇଲେ ହେ ପାଣ୍ଡବଙ୍କ ବଳ
ପଳାତେ ତୁମ୍ଭ ବଳ ହୋଇ ଉତଫୁଲ ।
ମର୍ଦ୍ଦଳ ଭେରୀ ଶଙ୍ଖ ମୃଦଙ୍ଗ ବାଇଲେ
ଦ୍ରୋଣଙ୍କ ଚାରିପଟେ ବେଢ଼ିଣ ରହିଲେ ।
ସୈନ୍ୟ ମଧରେ ଥାଇ ଦୁର୍ଯ୍ୟୋଧନ ରାଜା
ମନେ ମନେ ଦ୍ରୋଣଗୁରୁଙ୍କୁ କରି ପୂଜା ।
କର୍ଣ୍ଣକୁ ବୋଇଲେ ହେ ଦେଖ କିନା ମିତ ।
ପାଣ୍ଡବସୈନ୍ୟ ଶିଶୁ ମୃଗର ସମିତ
ହୋଇଣ ଦ୍ରୋଣ -ସିଂହ ଆଗରୁ ପଳାନ୍ତି
ରହ ରହ ଯୁଝିବା ବୋଇଲେ ନ ରହନ୍ତି ।
ଦ୍ରୋଣ ଶରବାତ ପାଣ୍ଡବସେନା ମୁଖ୍ୟ -
ମାନେ ପଡ଼ିଛନ୍ତି ଯେସନେ ମହାବୃକ୍ଷ ।
ଆଜି ଏ ମାଡ଼କେ ପାଣ୍ଡବ ସେନାଜନ
ନ ଯୁଝିବେ ଆଉ ପାଞ୍ଚୁଛି ମୋର ମନ ।
ପାଣ୍ଡୁସେନା ରକ୍ତ-ମଧୁକୁ ଦ୍ରୋଣ ଶର
ଭ୍ରମର ପରି କରୁଅଛନ୍ତି ଆହାର ।
ସୃଞ୍ଜୟ ପାଞ୍ଚାଳରେ ହେବାରୁ ବିହୀନ
ଭୀମେ ଦେଖ ଲୋକେ କରନ୍ତି ଆୟୋଧନ
ଦ୍ରୋଣମୟ କରିଟି ବୀର ଭୀମସେନ
ମଣୁଛନ୍ତି ସବୁଙ୍କି ପାଉଛି ମୋ ମନ ।
କର୍ଣ୍ଣ ବୋଇଲେ ହେ କି ବୋଲ ଦୁର୍ଯ୍ୟୋଧନ
ପାଣ୍ଡବେ ନ ସହିବେ ପର ଅପମାନ ।
ଭୀମ କି ପର ସିଂହରଡ଼ି ସହିକରି
ରହିବ ଯା ତୁମ୍ଭେ କହୁଛ କଥା କରି ।
ପୂର୍ବେ ଯେତେ ତାହାଙ୍କୁ ଦେଇ ଥାଇଁ କ୍ଲେଶ
ତେତେକ ସୁମରି ଯୁଝିବେ ବହି ରୋଷ ।
ଲେଉଟିଲେ ମାରିବେ ତୁମ୍ଭର ଯୋଦ୍ଧାଙ୍କୁ
ଦେଖାଇବେ ରାଜନ କହୁଛି ଯମଙ୍କୁ ।
ଭୀମଙ୍କ ପଛେ ଏବେ କେକୟ ପାଞ୍ଚାଳ
ଧାଡ଼ି ଲାଗିଛନ୍ତି କରିବେ ମହାରୋଳ ।
ପାଣ୍ଡୁସେନାର ଲୋକେ ମହାବଳବନ୍ତ ।
କରିଛନ୍ତି କୀରତି ଜଗତର ଖ୍ୟାତ।
ଭୀମେ ଆଗ କରି ଅବଶ୍ୟ ଦ୍ରୋଣଙ୍କର
ପୀଡ଼ା ରଚିବେ ହେ ରାଜନ ମନେ କର ।
ଦ୍ରୋଣଙ୍କୁ ଅତିଭାର ପଡ଼ିଲା ନୃସାଇଁ
ଚାଲ ଆମ୍ଭେ ଯିବା ଦ୍ରୋଣଙ୍କ ରକ୍ଷା ପାଇଁ ।
କର୍ଣ୍ଣଙ୍କରଠାରୁ ଶୁଣିଣ ଏ ବଚନ
ଭାଇଙ୍କି ଘେନି ସଙ୍ଗତରେ ଦୁର୍ଯ୍ୟୋଧନ ।

ଦ୍ରୋଣଙ୍କର ପାଶରେ ଯାଇଣ ରହିଲେ
ସେନାଙ୍କ ସିଂହାନାଦେ ମହୀ କମ୍ପାଇଲେ ।
ସେହିରୂପେ ପାଣ୍ଡବମାନେ ଦ୍ରୋଣଠାକୁ
ଆସି ପୂରାଇଲେ ଗର୍ଜନେ ଆକାଶକୁ ।
ଧୃତରାଷ୍ଟ୍ର ବୋଇଲେ ଦ୍ରୋଣେ ଯୁଝିବାକୁ
ଆସିଲେ ତ ପାଣ୍ଡବେ ଘେନିଣ ଯୋଦ୍ଧାଙ୍କୁ ।
ସେ ଯୋଦ୍ଧାଙ୍କ ଘୋଡ଼ାମାନଙ୍କ ଚିହ୍ନ ମୋତେ
କହିବା ହେଉ ହେ ସଞ୍ଜୟ ମହାମତେ ।
ସଞ୍ଜୟ ବୋଇଲେ ହେ ଶୁର ନୃପବର
ମୃଗବର୍ଣ୍ଣ ଅଶ୍ୱ ଅଟଇ ଭୀମଙ୍କର ।
ରୂପା ପରି ସାତ୍ୟକିଙ୍କର ଚାରି ଘୋଡ଼ା
ପବନ ତୁଲେ ସେ ପାରନ୍ତି ହୋଇ ଯୋଡ଼ା
ଶାରଙ୍ଗପକ୍ଷୀ ପରି ଯୁଧାମନ୍ୟୁ ବାଜି
ପାରା ପରି ଧୃଷ୍ଟଦ୍ୟୁମ୍ନଙ୍କ ଘୋଡ଼ାରାଜି ।
ଧୃଷ୍ଟଦ୍ୟୁମ୍ନ ସୁତ ଯେ କ୍ଷତ୍ରଧର୍ମାଙ୍କର
ରକ୍ତବର୍ଣ୍ଣ ଅଶ୍ୱ ଅଟେ ହେ ନରବର ।
ପ୍ରଦ୍ମପତ୍ର ପରିଟି ଶିଖଣ୍ଡୀ ସନ୍ତତି -
କ୍ଷତ୍ରଦେବ ଅଶ୍ୱଙ୍କର ଏ ଅଟେ ଜ୍ୟୋତି ।
କାମ୍ୱୋଜଦେଶ ଜାତ ଶୁଆପକ୍ଷୀ ପରି
ବର୍ଣ୍ଣ ନକୁଳଙ୍କ ଘୋଡ଼ାଏଦଣ୍ଡଧାରି ।
ଉତ୍ତମଓଜଙ୍କର ଚାରିଗୋଟି ଅଶ୍ୱ
ଦିଶୁଥିଲେ ରାଜନ ମେଘର ସଦୃଶ ।
ସହଦେବଙ୍କର ତ ଘୋଡ଼ାର ବରନ
ତିତ୍ତିରିପକ୍ଷୀ ଶୋଭା କରେ ମରଦନ ।
ଅଞ୍ଜନ ପରି କଳା ପୁଚ୍ଛବଳଯାକ
ଶୁକଳରେ ଦନ୍ତକୁ ହୋଇବ ଅଧିକ ।
ଏମନ୍ତ ଯେ ଚାରିଘୋଡ଼ା ସେ ଯୁଧିଷ୍ଠିର
ରଥେ ଯୋଚା ହୋଇଅଛନ୍ତି ନରବର ।
ଯୁଧିଷ୍ଠିର ନୃପତି ଆସନ୍ତେ ଯୁଦ୍ଧକୁ
ମଣ୍ଡିଲେ ଯେତେ ସେନା ତାଙ୍କର ପୃଷ୍ଠକୁ ।
ସେହିମାନେ ନାନା ରତନରେ ଭୂଷିତ
ହେବାରୁ ସୂର୍ଯ୍ୟକର ହେଉଅଛି ଲୁପ୍ତ ।
ଯୁଧିଷ୍ଠିର ରାଜା ଯୁଦ୍ଧକୁ ଯିବା ଦେଖି
ବାହାରିଲେ ଦ୍ରୁପଦ ରାଜା ହୋଇ ସୁଖୀ ।
ନାନ ଅଳଙ୍କାର ଭୂଷିତ ହୋଇଛନ୍ତି
ତେଜରେ ଦିବାକର ପରାୟେ ଦିଶନ୍ତି ।
ଦ୍ରୁପଦଙ୍କ ପଛରେ ଲଗାଇ ଗହଣ
ବାହାରିଲେ ମତ୍ସ୍ୟଦେଶର ନରରାଣ ।
ଧୃଷ୍ଟକେତୁ ଶିଖଣ୍ଡୀ କୈକେୟଙ୍କ ତୁଲେ
ବିରାଟନୃପଙ୍କ ସଙ୍ଗତେ ବାହାରିଲେ ।

ବିରାଟନୃପଙ୍କ ରଥର ଚାରି ବାଜି
ପାଟଳ ପୁଷ୍ପଶୋଭା ଦେଉଛନ୍ତି ଗଞ୍ଜି ।
ବିରାଟନୃପତିଙ୍କ ପୁତ୍ର ଘୋଡ଼ା ଚାରି
ଅଟନ୍ତି ରାଜନ ହାରିଦ୍ରବର୍ଣ୍ଣଧାରୀ ।
କୈକେୟ ପାଞ୍ଚାଳଙ୍କ ଅଶ୍ୱେ ଇନ୍ଦ୍ରଗୋପ -
ରୂପରେ ତାଙ୍କ ରୂପ କରୁଥିଲେ ଲୋପ ।
ଉତ୍ତମଓଜାଙ୍କ ଘୋଡ଼ାଙ୍କ କଞ୍ଚ ହାଣ୍ଡି -
ବରନ ବହିଥିଲେ ମହା ମହା ଗଣ୍ଡି ।
ଶିଖଣ୍ଡୀଙ୍କର ଘୋଡ଼ାମାନଙ୍କ ବରନ
କରୁଥିଲା ତମ୍ୱାରୂପକୁ ମରଦନ ।
ଶିଶୁପାଳସୁତଙ୍କ ଘୋଡ଼ାଙ୍କ ବରନ
ଶାରଙ୍ଗ ପକ୍ଷୀ ପରି ଦିଶୁଥିଲା ଜାଣ ।
ପଲାଲଧୂଆଁ ପରି ବୃହଦ୍‌କ୍ଷତ୍ରଙ୍କର
ଘୋଡ଼ାଙ୍କର ବରନ ବୋଲି ମନେ କର ।
ବାହ୍ଲିକଦେଶ ଜାତ ପଦ୍ମ ପରି ବର୍ଣ୍ଣ
ମଲ୍ଲିଫୁଲ ପରିଟି ଅଟଇ ନୟନ ।
ଏରୂପେ ଯେ ଚାରି ଘୋଡ଼ା ସେ କ୍ଷତ୍ରଦେବ
ରଥେ ଯୋଚିଥିଲେଟି ପାଇ ଯୁଦ୍ଧଭାବ ।
ପାଟଲୁଗା ପରିଟି ସେନାବିନ୍ଦୁ ଘୋଡ଼ା
ସୁନ୍ଦର ଦିଶୁଥିଲେ ରାଜନ ଦ୍ୱିଯୋଦ୍ଧା ।
କାଶୀଦେଶନୃପ ଯା ନାମ ସୁକୁମାର
କ୍ରୋଞ୍ଚପକ୍ଷୀ ବର୍ଣ୍ଣ ଅଟଇ ବାଜି ତାର ।
ପ୍ରତିବିନ୍ଧ୍ୟ ଘୋଡ଼ାଙ୍କର ଗ୍ରୀବାଟି କଳା
ଦେହଯାକ ଶୁକଳପୁଷ୍ପ ପରି ଧଳା ।
ମାଷ କୁସୁମକୁଟି ସୁତ ସୋମ ବାଜି-
ମାନଙ୍କର ବରନ ସେଇଥିଲା ଗଞ୍ଜି ।
ଧାନଫୁଲ ପରି ନାକୁଳି ରଥେ ଘୋଡ଼ା
ଯୋଚା ହୋଇଅଛି ରାଜନ ଦୁଇ ଯୋଡ଼ା ।
ମୟୂରଗ୍ରୀବା ପରି ଶ୍ରୁତକର୍ମାଙ୍କର
ଘୋଡ଼ା ଦୁଇ ରୂପ ଜାଣ ହେ ନରବର ।
ଚାସପତ୍ର ପରାୟେ ଶ୍ରୁତକୀର୍ତ୍ତିଙ୍କର
ଚାରି ଘୋଡ଼ା ବର୍ଣ୍ଣ ଦିଶଇ ମନୋହର ।
ପିଙ୍ଗଳବର୍ଣ୍ଣ ଘୋଡ଼ା ଅଭିମନ୍ୟୁ ରଥେ
ଯୋଚା ହୋଇଥିଲେ ଦେଖିଲୁ ଯୁଦ୍ଧପଥେ ।
ମହାକାୟ ଯେ ମହାବଳ ଘୋଡ଼ାଚାରି
ଯୁଯୁତ୍ସୁ-ରଥ ବହି ଚାଲନ୍ତି ବାତ ପରି ।
ବାର୍ଦ୍ଧକ୍ଷେମି ମହୀପାଳଙ୍କ ଘୋଡାଜାଳ
ପଲାଳ ପରି ବର୍ଣ୍ଣ ଅଟେ ମହୀପାଳ ।
ଶୁକଳପାଦ ଘୋଡ଼ା ସଉଚିତ୍ତ ରଥ -
ଘୋଡ଼ା ବୋଲିକରି ଜାଣ ହେ ନରନାଥ ।
ଶ୍ରେଣୀମାନ ଘୋଡ଼ା ଦେହକୁ ଶାଢ଼ୀପାଟ
ଯୋଖାଇଲେ ରାଜନ ହୋଇବ ନିଅଣ୍ଟ ।
ଶଶାରକ୍ତ ପରି ଆନ୍ତ ଅଶ୍ୱକୁଳ
ଯୋଚିଥିଲେ ରଥରେ କାଶୀମହୀପାଳ ।
ଅରୁଣବର୍ଣ୍ଣ ଘୋଡ଼ା ସତ୍ୟଧୃତି ରଥେ
ଯୋଚି ରଥ ଧୂଆଉଥିଲେ ଯୁଦ୍ଧପଥେ ।
ପାରାଙ୍କ ବର୍ଣ୍ଣ ଅଶ୍ୱ ରଥେ ଯୋଚି ଚାରି
ବାହାରିଲେ ଧୃଷ୍ଟଦ୍ୟୁମନ ଧନୁ ଧରି ।
ସତ୍ୟଧୃତି ଶ୍ରେଣିମାନ ଯେ ପ୍ରଭଦ୍ରକ
ଥିଲେ ଧୃଷ୍ଟଦ୍ୟୁମ୍ନଙ୍କ ସଙ୍ଗେ ଏତେ ଲୋକ ।
ଏ ବାହରେ ପାଞ୍ଚାଳ ସୌଚିତ୍ତ ବସୁଦାନ
ଗୋଡ଼ାଇଥିଲେ ସଙ୍ଗେ ଚଢ଼ି ଘୋଡ଼ାମାନ ।
କପିଳବର୍ଣ୍ଣ ଘୋଡ଼ା ଚେକିତାନ ରଥେ
ଯୋଚାଇ ଦେଇଥିଲେ ହାତ ଦେଇ ମାଥେ ।
କୁନ୍ତିଙ୍କର ଭାଇଟି କୁନ୍ତିଭୋଜ ସୁତ
ଯାହାଙ୍କର ନାମ ଅଟଇ ପୁରୁଜିତ ।
ଇନ୍ଦ୍ରଧନୁ ପରି ଘୋଡ଼ାଙ୍କୁ ଯୋଚି ରଥେ
ବାହାରିଥିଲେ ଯେ ସେନାଙ୍କୁ ଧରି ପଥେ ।
ରୋଚମାନ ବୀର ତ ଗଣା ସାମରଥେ
ଆକାଶବର୍ଣ୍ଣ ଘୋଡ଼ା ଯୋଚାଇଲେ ରଥେ ।
ନାନା ବରନିଆ ଘୋଡ଼ାଙ୍କୁ ଜରାସନ୍ଧି
ରଥରେ ତାହାଙ୍କର ଯୋଚିଥିଲେ ବାନ୍ଧି ।
ପଦ୍ମନାଡ଼ବର୍ଣ୍ଣ ସୁଦାମା ଘୋଡ଼ା ଚାରି
ଗତି ତାହାଙ୍କର ବାତକୁ ହେବ ସରି ।
ସିଂହାସନେ ଘୋଡ଼ାଏ ଶଶାର ରୁଧିର -
ବରନକୁ କରୁଣ ଥିଲେଟି ଧିକ୍‌କାର ।
ସୋରିଷଫୁଲ ବର୍ଣ୍ଣ ଅଶ୍ୱେ ଇନ୍ଦ୍ରେଜୟ
ରାଜା ଯୋଚିଥିଲେ ଗାନ୍ଧାରୀ ଦେବୀ-ପ୍ରିୟ
ମାଷ ପରି ବର୍ଣ୍ଣଟି ବହିକରି ପୃଷ୍ଠ
ଚନ୍ଦ୍ରଙ୍କ ପରି ମୁଖମାନଙ୍କେ ବରିଷ୍ଠ ।
ଏପରି ଯେଉଁ ଘୋଡ଼ା ଚାରି ସେ ପାଞ୍ଚାଲ୍ୟ
ରଥରେ ଥାଇ ବହିଥିଲେ ହେମମାଲ୍ୟ ।
ପଦ୍ମ କିଞ୍ଜଳକ ବରନ ଶ୍ୱେତ ଖୁରା
ଅଶ୍ୱେ ଦାଣ୍ଡଧାର ରଥଟି ଦିଶେ ତୋରା ।
ଗଧକାନ୍ତି ମୂଷାପୃଷ୍ଠ ଯେ ବାଜି ଚାରି
ବ୍ୟାଘ୍ରଦତ୍ତ ରଥ ବହନ୍ତି ଦଣ୍ଡଧାରୀ ।
ଚିତ୍ରମାଲ୍ୟ ଭୂଷିତ କଳା ହୟଙ୍କରେ
ସୁଧନ୍ୱା ବସିଥିଲେ ଯୋଚି ରଥବରେ ।
ବକ୍ରୁର ପରି ଆଣ୍ଟଇନ୍ଦ୍ର ଗୋପବର୍ଣ୍ଣ
କଦିଦେଶେ ହୋଇଛନ୍ତି ଉତପନ୍ନ ।

ଚିତ୍ରାୟୁଧ ରଥଟି ଏହି ଘୋଡ଼ା ଚାରି
ବହିଥିଲେ ଯୁଦ୍ଧରେ ଭୟ ନ ବିଚାରି ।
କୋଶଳାଧିପଙ୍କ ସୁକ୍ଷତ୍ର ନାମେ ଚାଟ
ରଥକୁ ବହିଥିଲେ ଚକ୍ରବାକପେଟ ।
ପରାୟେ ଯେଉଁ ଘୋଡ଼ା ସେ ଘୋଡ଼ାରୁ ଚାରି
ମୋ କହିବାରୁ ଜାଣ ନୃପ ନ ବିଚାରି ।
ନାନାବର୍ଣ୍ଣ ଘୋଡ଼ାଏ କ୍ଷେମଙ୍କ ରଥକୁ
ବହି ନେଉଥିଲେ ଦେଖାଇ ବିକ୍ରମକୁ ।
ଘୋଡ଼ା ରଥ ଧ୍ୱଜ ଯେ କବଚ ଶୁକଳ
ଅଟଇ ହେ ଜାଣ ଯାର ନାମ ଶୁକଳ ।
ସମୁଦ୍ରସେନ ପୁଅ ଇନ୍ଦ୍ରସେନଙ୍କର
ଶୁକଳଘୋଡ଼ା ଯୋଚା ରଥ ମନେ କର ।
ଶିବି ସୁତ ଚିତ୍ରରଥଙ୍କର ରଥରେ
ଯୋଚା ଘୋଡ଼ା ନୀଳଉତ୍ପଳ ବରନରେ ।
ଚଣା ଫୁଲ ପରିଟି ରଥସେନଙ୍କର
ରଥରେ ଯୋଚା ଚାରି ବାଜିଙ୍କ ଶରୀର ।
ପଟଚରହନ୍ତାକୁ ଶୁକ୍ଳବର୍ଣ୍ଣ ବାଜି
ବହି କରି ବାହାରିଥିଲେ ସେ ଗରଜି ।
କିଂଶୁକ ବରନ ଘୋଡ଼ାଏ ଚିତ୍ରାୟୁଧ
ରଥ ବହି ବଢ଼ାଉଥିଲେ ତାଙ୍କ ସଧ ।
ନୀଳରାଜାଙ୍କର କବଚ ଘୋଡ଼ା ଧ୍ୱଜ
ନୀଳବର୍ଣ୍ଣ ବୋଲିଣ ଜାଣ ହେ ମହାରାଜ ।
ଚିତ୍ର ରାଜାଙ୍କର ଘୋଡ଼ା ସେ ଧ୍ୱଜ ସାଞ୍ଜୁ
ଚିତ୍ର ହୋଇବାରୁ ଦିଶଇ ଅତି ମଞ୍ଜୁ ।
ରୋଚମାନ ପୁଅ ଯା ନାମ ହେମବର୍ଣ୍ଣ
ତାଙ୍କର ଚାରି ଘୋଡ଼ା ପୁଷ୍କର ବରନ ।
କୁକୁଡ଼ାଡ଼ିମ୍ବ ପରି ଯେଉଁ ଘୋଡ଼ା ଜ୍ୟୋତି
ସେହି ଘୋଡ଼ାଏ ଦଣ୍ଡକେତୁକୁ ବହନ୍ତି ।
କୃଷ୍ଣଙ୍କର ହାତରେ ବାପଙ୍କ ମରଣ
ହୋଇଲା ଯେବେ ତେବେ ପାଣ୍ଡ୍ୟ ନରଗଣ ।
ପରଶୁରାମ ଭୀଷ୍ମ ଦ୍ରୋଣ କୃପଠାରୁ
ଧନୁର୍ବିଦ୍ୟା ଶିଖିଲେ କରି ତାଙ୍କୁ ଗୁରୁ ।
ତାଙ୍କ ପରି ମହୀରେ ଏକା ସେ ମହାରଥ
ବଇରୀ ଛାଡ଼ି ଦେଲେ କୃଷ୍ଣଙ୍କର ସାଥ ।
ଭାରତ ଯୁଦ୍ଧେ ଦ୍ରୋଣ ବୃନ୍ଦେ ମାରିବାକୁ
ଧୁଆଁଇଲେ ରଥଟି ଦେଖିଲୁଁ ତାହାକୁ ।
ସେ ପାଣ୍ଡ୍ୟ ରାଜାଙ୍କର ଘୋଡ଼ାମାନଙ୍କର
ରୂପ ନିନ୍ଦୁଥିଲେ ପୂର୍ଣ୍ଣ କଳାକର ।
ସେ ପାଣ୍ଡ୍ୟଙ୍କ ସଙ୍ଗତେ ଚଉଦ ଅୟୁତ
ରଥୀ ଥିଲେ ଜାଣ ଅମ୍ବିକାଦେବୀସୁତ ।

ସେ ରଥୀମାନଙ୍କର ଘୋଡ଼ାଙ୍କର କାନ୍ତି
ଭାଙ୍ଗୁଥିଲା ବାସଙ୍ଗ ଫୁଲଙ୍କର ଜ୍ୟୋତି ।
ନାନାରୂପ ନାନାମୁଖ ଯେ ଘୋଡ଼ାଙ୍କର
ଯୋଚା ହୋଇଥିଲେଟି ଘଟୋତ୍କଚ ବୀର ।
ଅରଟଙ୍କ ଯୋଦ୍ଧା ବୃହତ ରଥ ବୋହି
ବାହାରିଥିଲେ ଯୁଦ୍ଧଭୂମିକି କମ୍ପାଇ ।
ଏମାନଙ୍କ ଆଗରେ ଯୁଧିଷ୍ଠିର ରାଜା
ନିନ୍ଦା କରୁଥିଲେଟି ଯେସନେ ବିଡ଼ୋଜା ।
ଏ ରଥୀମାନଙ୍କରେ ଦ୍ରୋଣ ମହାରଥ
ଶୋଭାରେ ବଳିଣ ମଣ୍ଡିଲେ ନେତ୍ରପଥ ।
ସୁବର୍ଣ୍ଣ କମଣ୍ଡଳୁ ଦ୍ରୋଣଙ୍କର ଧ୍ୱଜ-
କୃଷ୍ଣାଜିନେ ଘୋଡ଼ା ହୋଇଛି ମହାରାଜ ।
ଭୀମଙ୍କ ଧ୍ୱଜ ତ ରୁପାର ସିଂହଟାଏ
ହୋଇଛି ବଇଦୂର୍ଯ୍ୟ ଭୂଷିତ ତା କାୟେ ।
ଯୁଧିଷ୍ଠିର ରାଜାଙ୍କ ମୃଦଙ୍ଗ ଯୋଡ଼ାଏ
ସୁବର୍ଣ୍ଣ ଚନ୍ଦ୍ରଟାଏ ଧ୍ୱଜ ମହାରାୟେ ।
ନକୁଳଙ୍କ ରଥରେ ସୁନାର ଶରଭ
ଧ୍ୱଜ ହୋଇ କରୁଅଛି ସେ ମନୋଲଭ୍ୟ ।
ରଜତରେ ହଂସ ତ ସହଦେବ ଧ୍ୱଜ
ଦେଖିଲେ ପରଜନେ ହୁଅନ୍ତି ଆଶ୍ଚର୍ଯ୍ୟ ।
ଦ୍ରୌପଦେୟଙ୍କର ତାତଙ୍କ ପାଞ୍ଚତାତ
ପ୍ରତିମା ରୂପେ ହୋଇଛନ୍ତି ଧ୍ୱଜ ଖ୍ୟାତ ।
ଅଭିମନ୍ୟୁ ରଥେ ଶାରଙ୍ଗ ପକ୍ଷୀଟାଏ
ସ୍ୱର୍ଣ୍ଣେ ଧ୍ୱଜ ହୋଇ ତେଜରେ ଜଳେ କାୟେ ।
ଏଥିକି ଅନୁରୂପ ରଥୀଙ୍କର ଧ୍ୱଜ
ବୋଲିକରି ଜାଣ ହେ ଅମ୍ବିକା ଆତ୍ମଜ ।
ଏରୂପେ ପାଣ୍ଡବଙ୍କ ଅଶ୍ୱ ଧ୍ୱଜ ପନ୍ତି
ଦେଖି ଦ୍ରୋଣ ସେନାଏ ଲଭିଲେ ବିପତ୍ତି ।
ଅଚଳ ପରାୟେ ସେ ନ ପାରିଲେ ଚଳି
ରହିଲେ ନ ପକାଇ ପଲକ ଆବଳି ।
କହିଲି ତ ନୃପମାନଙ୍କ ନାମ ଗୋତ୍ର
ଏବେ ଯୁଦ୍ଧ ଶୁଣ ହେ ସ୍ଥିରକରି ଗାତ୍ର ।
ଧୃତରାଷ୍ଟ୍ର ବୋଇଲେ ପାଣ୍ଡବ ରଥୀଏ
ମନ କଲେ ଜିଣିପାରନ୍ତି ଦେବ ରାୟେ ।
ଯୁଧିଷ୍ଠିର ରାଜା ତ ଫଳ ମୂଳ ଖାଇ
ବନେ ରହିଥିଲେ ସମସ୍ତେ ଜାଣିଥାଇଁ ।
ସେ ଯେବେ ଏତେ ସୈନ୍ୟ ଗୋଟିଆଇ ରଣ
କଲେନି ମୋର ପୁତ୍ର ପାଇବେ ମରଣ ।
ଦଇବ ଯାହା କରୁଅଛି ତା ହେଉଛି
ବିଚାରିଲେ ଆଉ କେଉଁ କାର୍ଯ୍ୟଟି ଅଛି ।

ପୂର୍ବେ ଦୁର୍ଯ୍ୟୋଧନ ତ କହୁଥିଲେ ମୋତେ
ରାଜାମାନେ ସମସ୍ତେ ଛନ୍ତି ମୋର ମତେ ।
ନିଷ୍କଣ୍ଟକ ହୋଇ ହୋଇଲା ମୋର ମହୀ
ଏ କଥାରେ ତାତ ସନ୍ଦେହ କର ନାହିଁ ।
ଏବେ ତୁ ଶୁଣୁଥାଇଁ ପାଣ୍ଡବ ସଇନ
ସାହା ପାଇ କଲେଟି ଦ୍ରୋଣଙ୍କୁ ନିଧନ ।
ଏଣୁ ମୁଁ ଜାଣୁଅଛି ଦଇବକୁ ବଳି
ନ ପାରଇ ଲୋକ ହେଲେ ହେଁ ମହାବଳୀ ।
ଭୀଷ୍ମ ଦ୍ରୋଣ ମରିବା ଶୁଣି ମୁଁ ଜୀବନ
ନ ପାରିବି ରଖି ସଞ୍ଜୟ ମନେ ଘେନ ।
ବିଦୁରଙ୍କର କହିବାର କଥାଯାକ
ଆସୁଛି ତ ହିତକୁ ହେଉଛି ବିବେକ ।
ଜ୍ୟେଷ୍ଠସୁତ ଦୁର୍ଯ୍ୟୋଧନକୁ ଛାଡ଼ିଥିଲେ
ସବୁ ସୁତେ ମୋହର ରହିଥାନ୍ତେ ଭଲେ ।
ଗୋଟିଏ ସୁତ ଘେନି ଅନେଶ୍ୱତ ସୁତ
ହେଉଛନ୍ତି ଯୁଦ୍ଧଦାଣ୍ଡରେ ମୋର ହତ ।
ଧର୍ମ ଛାଡ଼ିଣ ଅର୍ଥଲୋଭୀ ହେଲେ ନର
ଜାଣୁଛି ବିପତ୍ତିରେ ଯାଏ ଦିନ ତାର ।
ମରନ୍ତେ ଦ୍ରୋଣ ହତୋତ୍ସାହ ହୋଇ ବୀରେ
ରହିଥିବେ ମୋହର ଜାଣୁଛି ଯୁଦ୍ଧରେ ।
ସବୁ ପ୍ରାଣୀଙ୍କରେ ଅଧୃଷ୍ୟ ଭୀଷ୍ମ ଦ୍ରୋଣ
ସେ ମଲେନି ମୋହର କେ କରିବ ରଣ ।
ବିସ୍ତାରିଣ ମୋତେ କହ ତ ଏବେ ଯୁଦ୍ଧ
ଶୁଣିବାକୁ ମୋହର ବଳିଅଛି ସଧ ।
କେଉଁମାନେ ଯୁଝିଲେ କେଉଁମାନେ ମଲେ
କେଉଁମାନେ ଯୁଦ୍ଧରୁ ପଳାଇ ଆସିଲେ ।
ଅରଜୁନ ଯୁଦ୍ଧରେ କଲେ ଯାହା ଯାହା
ବତାଇ କହିବ ସଞ୍ଜୟ ମୋତେ ତାହା ।
ଭୀମଙ୍କୁ ସବୁଦିନେ ଡରି ମରୁଥାଏଁ
ସେ ତ ଲେଉଟି କ୍ରୋଧରେ ଜାଳି କାୟେ ।
ତୁମ୍ଭମାନଙ୍କର ହୋଇଲା ମନ କିସ
ସତ କରି ସଞ୍ଜୟ କର ତ ପ୍ରକାଶ ।
ପାଣ୍ଡବଙ୍କ ଶୂରକୁ ମୋ ଲୋକେ କେ ଶୂର
ହୋଇଣ ନିବାରିବେ କଲେ ହେ ସମର ।
ଏମାନ ଶୁଣିବାକୁ ମୋର ଇଚ୍ଛା ଅଛି
ଏଣୁ ତୁମ୍ଭଙ୍କୁ ହେ ସଞ୍ଜୟ ପଚାରୁଛି ।
ସଞ୍ଜୟ ବୋଇଲେ ହେ ପାଣ୍ଡବ ରାଜନ
ଆସନ୍ତେ ଯୁଦ୍ଧଦାଣ୍ଡେ ଘେନି ସଙ୍ଗେ ସୈନ୍ୟ ।
ଆମ୍ଭର ହେଲା ହୃଦେ ମହାଭୟ ଜାତ
କେବଳ ପଡ଼ିନାହିଁ କଚ୍ଛାରେ ମଳ ମୂତ ।

ଯୁଧିଷ୍ଠିର ରାଜାଙ୍କ ସୈନ୍ୟ ପାଦଧୂଳି
ରହନ୍ତେ ମାଡ଼ିକରି ଆକାଶମଣ୍ଡଳି ।
ସୂର୍ଯ୍ୟଙ୍କର ଦେହର ତେଜ ଛାଡ଼ିଗଲା
ଦଶଦିଗ ନୟନକୁଟି ନ ଦିଶିଲା ।
ଏହି ସକାଶରୁ ମଣିଲୁ ଆମ୍ଭେମାନେ
ନୋହୁଁ ଯୁଦ୍ଧ ଗଲେ କି ଦ୍ରୋଣ ଯମସ୍ଥାନେ ।
ଏହିକାଳେ ତୁମ୍ଭର ଦୁର୍ଯ୍ୟୋଧନ ଛାଟ
ସୈନ୍ୟକୁ ବୋଇଲେ ଧନୁରେ ଶର ଯୋଟ ।
ଦେଖ ପାଣ୍ଡୁ ସେନାଏ ଆସୁଛନ୍ତି ମାଡ଼ି
ବଳ ଅନୁରୂପ ସରଜି ଶରଧାଡ଼ି ।
ଏହା ଶୁଣି ତୁମ୍ଭର ଦୁର୍ମର୍ଷଣ ସୁତ
କଲେ ଭୀମ ଦେହକୁ ତୀକ୍ଷ୍ଣ ଶରଘାତ ।
ଭୀମ ମନରେ ମହା ଅମରଷ ବହି
ସରସ ଶର ତାକୁ ବିନ୍ଧିଲେ ନୃସାଇଁ ।
ଦିଅନ୍ତେ ଆଜ୍ଞା ଦୁର୍ଯ୍ୟୋଧନ ନରପାଳ
ମୃତ୍ୟୁ ଭୟ ଛାଡ଼ି ଯୁଝିଲେ ତୁମ୍ଭ ବଳ ।
ତୁମ୍ଭ ପାଇଁକି କୃତବର୍ମ୍ମା ମହାମତି
ଡାକିଣ ଯୁଦ୍ଧକଲେ ଶିନିଙ୍କ ଯେ ନାତି ।
ସାତ୍ୟକି ତ ବୀରମାନଙ୍କରେ ପ୍ରବର
କଲେ କୃତବର୍ମାକୁ ବିଦ୍ଧ ବିନ୍ଧି ଶର ।
କୃତବର୍ମା ସାତ୍ୟକି ଶାୟକ ବିଷାଣ
ପାତି ମତ୍ତହସ୍ତୀ ପରାୟେ କଲେ ରଣ ।
ଦ୍ରୋଣଙ୍କଠାକୁ କ୍ଷତ୍ରଧର୍ମ୍ମା ତ ଆସୁଥିଲେ
ଜୟଦ୍ରଥ ଶତପଥରେ ସେ ରହିଲେ ।
କ୍ଷତ୍ରଧର୍ମ୍ମା କାଣ୍ଡରେ ଜୟଦ୍ରଥ ଧ୍ୱଜ
ଧନୁ ତୁଳେ କାଟି ଦେଖାଇ ବଳ ଓଜ ।
ପୁଣି ନାନାଜାତିର ଶରମାନଙ୍କରେ
ଜୟଦ୍ରଥ ମରମକୁ ସେ ଖୋଳିଦେଲେ ।
ଜୟଦ୍ରଥ ରାଜା ଅଟନ୍ତି ସାମରଥ
ଆନ ଧନୁଟାଏ ସେ ଧରିକରି ହାତ ।
ଆୟସ-ଶରେ କିଛି ଆୟାସ ନ ପାଇ
ଦେଲେ କ୍ଷତ୍ରଧର୍ମ୍ମାକୁ ଯୁଦ୍ଧରେ ବଢ଼ାଇ ।
ତୁମ୍ଭ ସୁତ ଯୁଯୁତ୍ସୁ ପାଣ୍ଡବହିତକାରୀ
ସୁବାହୁକୁ ଯୁଝିଲେ ଧନୁକୁ ଉଭାରି ।
ସୁବାହୁଙ୍କ ଦୁଇ ଭୁଜକୁ ଦୁଇ କାଣ୍ଡ
ବିନ୍ଧିଲେଟି ଯୁଯୁତ୍ସୁ ଲୁଆଇଁ କୋଦଣ୍ଡ ।
ସମୁଦ୍ରକୁ ବେଳାଟି ନିବାରିବା ପ୍ରାୟେ
ବାରିଲେ ଯୁଧିଷ୍ଠିର ନୃପେ ମଦ୍ରରାୟେ ।
ଶଲ୍ୟଙ୍କର ମରମ ଭେଦିବାକୁ ଶର
ବାଛି କରି ବିନ୍ଧିଲେ ବହୁ ଯୁଧିଷ୍ଠିର ।

ଶଲ୍ୟଙ୍କ ମଧ୍ୟୁଁ ଯୁଧିଷ୍ଠିରଙ୍କୁ ଚଉଷଠି
ଶର ବିନ୍ଧି ଯୁଦ୍ଧରେ ଗରଜିଲେ ଉଠି ।
ଶଲ୍ୟ ଗର୍ଜନ ନ ସହି ଯୁଧିଷ୍ଠିର
କାଟିଲେ କାଣ୍ଡେ ଧନୁ ଧ୍ୱଜ ତାହାଙ୍କର ।
ବାହ୍ଲିକ ଦ୍ରୁପଦଙ୍କୁ ବିନ୍ଧିଣ ଶାୟକ
ଯୁଦ୍ଧରେ ଦେଖିକରି ବାଇଲେ ଆନକ ।
ମତ୍ତହସ୍ତୀ ପରାୟେ ସେ ଦୁଇ ବୁଢ଼ାଏ
ଯୁଝିଲେ ଶାୟକ ବିଷାଣଘାତେ ରାୟେ ।
ଇନ୍ଦ୍ର ଅଗ୍ନି ବଳିଙ୍କି ଯୁଝିଲା ପରାୟେ
ବିନ୍ଦ ଅନୁବିନ୍ଦ ଥରାଇ କ୍ରୋଧେ କାୟେ ।
ମତ୍ସ୍ୟଦେଶ ନୃପତି ବିରାଟଙ୍କୁ ଡାକି
ଯୁଦ୍ଧକଲେ ରାଜନ ଧନୁ କରେ ଟେକି ।
ତୁମ୍ଭ ଆଡ଼ କେକୟ ବିରାଟଙ୍କ ଥାଟ
ସଙ୍ଗେ ଯୁଦ୍ଧ କଲେ ଦେଖାଇ ବଳ ଆଣ୍ଟ ।
ଭୂତକର୍ମ ନକୁଳ ସୁତ ଶତାନୀକ
ସଙ୍ଗତେ ଯୁଦ୍ଧ କଲେ ଘେନିଣ ଶାୟକ ।
ଭୂତକର୍ମାଙ୍କର ବାହୁକୁ ଯେ ମୁଣ୍ଡକୁ
କାଟିଲେ ଶତାନୀକ ବିନ୍ଧି ମାର୍ଗଣକୁ ।
ସୁତସୋମ ସଙ୍ଗତେ ବିବିଂଶତି ରଣ
କଲେ ଧନୁ ମଧରେ ଯୋଖିକରି ବାଣ ।
କ୍ରୋଧରେ ସୁତସୋମ ତୁମ୍ଭର ସୁତଙ୍କୁ
ଛାଇ ଦେଲେ ରାଜନ ବିନ୍ଧି ଶାୟକକୁ ।
ଭୀମରଥ କାଣ୍ଡେ ସାରଥି ଘୋଡ଼ାତୁଲେ
ଶାଲ୍ୱ ସ୍ୱର୍ଗରେ ମାଲ ପହଁରି ବସିଲେ ।
ଶ୍ରୁତକର୍ମା ଚିତ୍ରସେନି ଯେ ଭେଟାଭେଟି
ହୁଅନ୍ତେ ଯୁଦ୍ଧ କଲେ ଭିଡ଼ି ଦଣ୍ଡପାଟି ।
ତୁମ୍ଭ ସୈନ୍ୟ ପାଣ୍ଡବମାନଙ୍କର ସୈନ୍ୟ
ହୃଦେ ଜୟ ଭାବି କଲେ ସେ ଦୁହେଁ ରଣ ।
ଅଶ୍ୱତ୍ଥମା ପ୍ରତିବିନ୍ଧ୍ୟକୁ ତ ନିବାରି-
ଦେଲେ ନାନା ଜାତିର ଅସ୍ତ୍ରମାନ ମାରି ।
ପ୍ରତିବିନ୍ଧ୍ୟ ସେ ରୂପେ ବିନ୍ଧି ମାରଗଣ
ଅଶ୍ୱତ୍ଥମା ରଥକୁ କଲେ ନିବାରଣ ।
ମହାକ୍ରୋଧ ହୋଇଣ ଦ୍ରୌପଦୀଙ୍କ ବେଟା
ବିନ୍ଧନ୍ତେ ଶରେ ହେଲେ ଧାନବୁଣା ଛଟା ।
ଅର୍ଜୁନଙ୍କର ସୁତ ଶ୍ରୁତକୀର୍ତ୍ତି ତୁଲେ
ଦୁଃଶାସନ ତୁମ୍ଭର ଯାଇ ଯୁଦ୍ଧ କଲେ ।
ଧ୍ୱଜ ଧନୁ ସାରଥି ତିନି କାଣ୍ଡେ କାଟି
ସରଜିଲେ ସେ ଦୁଃଶାସନିର ପୀଡ଼ାଟି ।
ପଟ୍ଟଚରହନ୍ତାକୁ ଲକ୍ଷ୍ମଣକୁମାର
ଯୁଦ୍ଧ କରି ସୈନ୍ୟ ବୋଇଲେ ମାର ମାର ।
ଦୁଇ ସେନା ମଧରେ ପଟ୍ଟଚରହନ୍ତା
ଅଟଇଟି ରାଜନ ମହାବଳବନ୍ତା ।
ଲକ୍ଷ୍ମଣକୁମାରଙ୍କ ଧନୁଧ୍ୱଜ ଦୁଇ
ପଟ୍ଟଚରହନ୍ତା କାଟିଲେ ନରସାଇଁ ।
ବିକର୍ଣ୍ଣ ଶିଖଣ୍ଡୀଙ୍କ ହୋନ୍ତେ ଘୋର ରଣ
ନିନ୍ଦି ପକାଇଲେ ସେହୁ ମତ୍ତ ବାରଣ ।
ଅଙ୍ଗଦ ଉତ୍ତମୌଜା ସଙ୍ଗେ ମରାମରି
ହେଲେ ଧନୁଶର କରଦେଶରେ ଧରି ।
ସେ ଦୁହିଙ୍କର ଯୁଦ୍ଧେ ଦେଖି ଦୁଇ ସେନା
ସୁଖ ପାଇ ପ୍ରଶଂସିଲେ ହେ ମହାମନା ।
ତୁମ୍ଭ ପୁଅ ଦୁର୍ମୁଖ ପୁରୁଜିତ ତୀର
ଦେହକୁ ପ୍ରହାରିଲେ ବଜ୍ରଦନ୍ତ ଶର ।
ପୁରୁଜିତ ଦୁର୍ମୁଖ ଦେହକୁ ନାରାଚ
ବିନ୍ଧିଣ ଡାକିଲେ ଛାଡ଼ିବ ଆଜି ମଞ୍ଚ ।
ଦୁର୍ମୁଖ ଭୃରୁମଧେ ବହନ୍ତେ ବିଶିଖ
ନିନ୍ଦିଲା ନାଡ଼ ଥିବା ପଙ୍କଜକୁ ମୁଖ ।
ପାଞ୍ଚକୈକୟଙ୍କୁ ତୁମ୍ଭର କର୍ଣ୍ଣ ଭେଣ୍ଡା
ଯୁଦ୍ଧ କଲେ ଏକା ପ୍ରହାରି କାଣ୍ଡ ଖଣ୍ଡା
କର୍ଣ୍ଣଙ୍କର ପାଞ୍ଚ କୈକୟ ତୁଲେ ରଣ
ହୋଇଲା ବଡ଼ ଚମତ୍କାର ନରରାଣ ।
ଦୁଇକୁଳର ସେନାଲୋକେ ସେ ଛଅଙ୍କୁ
ନ ଦେଖିଲୁଁ, ଦେଖିଲୁଁ ଏକା ମାର୍ଗଣକୁ ।
ନୀଳ କାଶି ଜୟଙ୍କ ଦୁର୍ଜୟ ବିଜୟ
ଜୟ ନିବାରିଲେ ନେବା ପାଇଁଟି ଜୟ ।
ସିଂହ ବ୍ୟାଘ୍ର ମହିଷ ସଙ୍ଗତରେ ଯୁଦ୍ଧ
କଲା ପରି ଛଏ ଯୁଝିଲେ ବହି କ୍ରୋଧ ।
କ୍ଷେମଧୂର୍ତ୍ତ ବୃହତ ସାତ୍ୱତକୁ ଶର-
ବାତରେ ନିବାରିଲେ, ନୃପ ମନେ କର ।
ଚେଦିନୃପ ଅମ୍ବଷ୍ଠନୃପେ କଲେ ରୋଳ
ଦୁହେଁ ତ ବୋଲାନ୍ତି ଯୋଦ୍ଧାଙ୍କେ ମହାବଳ ।
ଅମ୍ବଷ୍ଠଙ୍କ କାଣ୍ଡରେ ଗଣ୍ଡିକି ଗଳାଇ
ଚେଦିନୃପ ତଳେ ପଡ଼ିଲେ ଚିତି ହୋଇ ।
ବୃଦ୍ଧକ୍ଷେମସୁତ ବାର୍ଷ୍ଣେୟକୁ ଯେ କୃପ
ଯୁଦ୍ଧେ ନିବାରିଲେ ବହିଣ ମହାତାପ ।
କୃପ ବାର୍ଷ୍ଣେୟଙ୍କ ଯୁଦ୍ଧକୁ ନୃପେ ଦେଖି
ରହିଲେ ଛକିତରେ ନ ପିଛାଡ଼ି ଆଖି ।
ଭୂରିଶ୍ରବା ମଣିମାନଙ୍କୁ ହସ୍ତୀ ମଣି
ରାୟେ ଯୁଦ୍ଧ କଲେ ଧନୁରେ ବାଣ ଟାଣି ।
ଦ୍ୱରା ହୋଇଣ ଭୂରିଶ୍ରବା ମହାବୀର
କାଟିଲେ ଧ୍ୱଜ ଛତ୍ର ମଣିମାନଙ୍କର ।

ଏ ବାହାରେ କାଣ୍ଡେ ସାରଥି ପ୍ରାଣ ହରି
ପକାଇଦେଲେ ତଳେ ବିଳମ୍ବ ନ କରି ।
ରଥରୁ ଡେଇଁପଡ଼ି ମଣିମାନ-ରଥେ
ବସି ଭୂରିଶ୍ରବା ହାଣିଲେ ଖଣ୍ଡା ମାଥେ ।
ସେ ଘାତରେ ରକ୍ତଝରଣାକୁ ବୁହାଇ
ମଣିମାନ ପଡ଼ିଲା ରଥତଳେ ଶୋଇ ।
ମାରି ମଣିମାନଙ୍କୁ ଭୂରିଶ୍ରବା ବୀର।
ନିଜ ରଥେ ବସିଲେ ପୃଷ୍ଟେ ମାରି ଚିରା ।
ପାଣ୍ଡବ ସୈନ୍ୟସିନ୍ଧୁ ମଧ୍ୟେ ଗ୍ରାହା ପରି
ପଶି ଯୋଦ୍ଧା-ମତ୍ସ୍ୟଙ୍କୁ ଦେଲେ ଗ୍ରାସ କରି ।
ବୃଷସେନ ଶାୟକେ ପାଣ୍ଡବସେନାଙ୍କୁ
ନିବାରିଣ ବୋଇଲେ ଯିବ କି ଘରକୁ ।
ପରିଘ ଗଦା ପ୍ରାସ ତୋମର ନିସ୍ତ୍ରିଂଶ
ପରଶ୍ୱଧ ଭୂଷଣ୍ଡ ମୁଦ୍‌ଗର ପଚାଶ ।
ଶାୟକ ଭିନ୍ଦିପାଳ ପ୍ରସ୍ତରାସ୍ତ୍ର ଚକ୍ର
ଏମାନଙ୍କେ ଯୋଦ୍ଧାଏ ମୁଖ କଲେ ବକ୍ର ।
ଏ ବାହାରେ ଧୂଳି ଘାତ ଯେ ଅଗ୍ନି ବଳ
ସରଜନା କରିଟି କଲେ ମହାରୋଳ ।
ତୁମ୍ଭ ସେନାଯାକଙ୍କୁ ମହାଭୟ ଦେଇ
ଘଟୋତ୍କଚ ଆସିଲା ଦ୍ରୋଣଠାକୁ ଧାଇଁ ।
ତା ଦେଖି ଆମ୍ଭେମାନେ ବିଚାରିଲୁଁ ମନେ
ଦ୍ରୋଣ ଗଲେଟି ନିଶ୍ଚେ ଯମଙ୍କ ସଦନେ ।
ତୁମ୍ଭ ପକ୍ଷେ ଅଳମ୍ବୁଷ ତ ରହିଥିଲା
ଘଟୋତ୍କଚ ରୀତି ସେ ସହି ନ ପାରିଲା ।
ନାନାଜାତି ଆୟୁଧ କରଦେଶେ ଧରି
ହେଲା ଘଟୋତ୍କାଚ ସଙ୍ଗତେ ମରାମରି ।
ଅମର ରାଜାଙ୍କ ଶମ୍ବର ଯୁଦ୍ଧ ପରି
ମଣିଲେ ସେ ଯୁଦ୍ଧ ସେରୂପେ ଦଣ୍ଡଧାରୀ ।
ଏହିରୂପରେ ତୁମ୍ଭ ତାଙ୍କର ସେନାଏ
ଯୋଡ଼ି ଯୋଡ଼ି ହୋଇଟି ଯୁଦ୍ଧ କଲେ ରାୟେ ।
ଦ୍ରୋଣଙ୍କ ଅଭାବରେ ଭାବରେ ଦ୍ୱିସେନା
ମନ ଦେଇ ଯୁଝିଲେ ହୋଇ କୋପମନା ।
ଅତି ଭୟଙ୍କର ଦିଶିଲା ସେହି ଯୁଦ୍ଧ
ହୋଇଥିବାରୁ ବହୁତ ସେନାମାନେ ବଧ ।
ଧୃତରାଷ୍ଟ୍ର ବୋଇଲେ ପାଣ୍ଡବେ ଲେଉଟି
ଯୁଦ୍ଧ କଲେ ଯୁଦ୍ଧଦାଣ୍ଡରେ ମେଲି ମାଟି ।
ମୋର ସୈନ୍ୟଯାକ ତା ଦେଖି କିସ କଲେ
ଏହା ମୋତେ କହିବା ହେଉ ସୂତ ଭଲେ ।
ସଂଶପ୍ତକମାନଙ୍କୁ ଯୁଦ୍ଧେ ଅରଜୁନ
କି କଲେ ଏହା ନ ଶୁଣିଲା ମୋର କାନ ।
ନୋହିଲେ ଅବା ମୋର ସଂଶପ୍ତକ ବଳେ
ଅରଜୁନଙ୍କୁ ମାରି ପକାଇଲେ କଳେ ।
ଏହି କଥାମାନଙ୍କେ ଅଛି ଯେ ବିଶେଷ
ପ୍ରକାଶ କରି ମୋର ସଞ୍ଜୟକୁ ଧ୍ୱଂସ ।
ସଞ୍ଜୟ ବୋଇଲେ ହେ ପଚାରିଲ ଯାହା
କହିବା ଏକମନେ ଶୁଣ ନୃପ ତାହା ।
ତୁମ୍ଭର ସୁତ ଦୁର୍ଯ୍ୟୋଧନ ହାତୀ ସୈନ୍ୟ
ସଙ୍ଗେ ଘେନି କଲେ ଭୀମଙ୍କ ଆୟୋଧନ ।
ଯେରୂପେ ବୃଷଭ ଯୁଝିଲେ ବୃଷଭକୁ
ସେହିରୂପେ ଯୁଝିଲେ ସେ ଯାଇ ଭୀମଙ୍କୁ ।
ଭୀମ ଦୁର୍ଯ୍ୟୋଧନଙ୍କୁ ହାତୀ ସୈନ୍ୟ ପାଖେ
ରହି ଲାଖ କରି ବିନ୍ଧିଲେ ତାଙ୍କୁ ସୁଖେ ।
ପୃଥାସୁତ କାଣ୍ଡରେ ବୃଦ୍ଧ ହାତୀକୁଳ
ନ ଦେଖାଇ ବଳ ବସିଲେ ଯମ ଆଳ ।
ଭୀମ-ସୂର୍ଯ୍ୟ ଶଣ କିରଣେ ହାତିକୁଳ
ହୃଦୟକୁ ତତାଇ ଦେଲେ ନରପାଳ ।
ଦୁର୍ଯ୍ୟୋଧନ ତାହା ସହିତ ନ ପାରିଲେ
ହସିକରି ନିସିତ ଶର ବରଷିଲେ ।
ଭୀମ ଦୁଇ ଆଖିକି କରିଣ ରକତ
କଲେ ଦୁର୍ଯ୍ୟୋଧନଙ୍କ ଅଙ୍ଗେ ଶରାଘାତ ।
ସେ ଶରମାନଙ୍କେ ପାଇଲେ ହେଲେ ପୀଡ଼ା
ବିନ୍ଧିଲେ ତୁମ୍ଭ ସୁତ ଭୀମେ ଶର ଭିଡ଼ା ।
ଭୀମ ଦୁଇ ଭାଲି କାଣ୍ଡରେ ଧନୁ ଧ୍ୱଜ
ଦୁହିଙ୍କି କାଟିଲେ ହେ ଜାଣ ମହାରାଜ ।
ଦୁର୍ଯ୍ୟୋଧନଙ୍କର ଏହି ଦଶାକୁ ଦେଖି
ଅଙ୍ଗଦେଶର ରାଜା ନୋହି କିଛି ସୁଖୀ ।
ମହତ ହାତୀଟାଏ ଚଢ଼ି ରହିଥିଲେ
ଅଙ୍କୁଶ ମାରି ଭୀମ ପାଶକୁ ଆସିଲେ ।
ଭୀମ ଅଙ୍ଗଦେଶର ହାତୀର କୁମ୍ଭକୁ
ବିନ୍ଧିଲେ ବଜାଇ ଗୋଟିଏ ନାରାଚକୁ ।
ସେ ନାରାଚ ହାତୀର ଗଣ୍ଡ ମଧ୍ୟେ ବାଜି
ଗଣ୍ଡି ଦେଇ ନିକିଳି ରହିଲା ମହୀ ମଜି ।
ବଜ୍ରରେ ହତ ହେଲା ପରାୟେ ଅଚଳ
ପ୍ରାଣ ଛାଡ଼ିଣ ହାତୀ ଆଶ୍ରେ କଲା ତଳ ।
ଅଙ୍ଗଦେଶ ନରେଶ ପଡୁଁ ପଡୁଁ ତଳେ
କାଟିଲେ ଭଲ୍ଲ କାଣ୍ଡେ ମୁଣ୍ଡ ତାର ହେଳେ ।
ଏହା ଦେଖିଣ ହାତୀ ଘୋଡ଼ା ସେନାକୁଳ
ପଳାଇଲେ ପଛକୁ ହୋଇଣ ଆକୁଳ ।
ସଇନ ଭାଗିବାର ଚାହିଁ ଭଗଦତ୍ତ
କ୍ରୋଧରେ ଦୁଇ ନେତ୍ର କରି ଆରକତ ।

ଅଇରାବତବଂଶ ହାତୀକି ଆରୋହି
ବାତ ପରି ଆସିଲେ ଭୀମଠାକୁ ଧାଇଁ ।
ଭଗଦତ୍ତର ହସ୍ତୀ ଭୀମଙ୍କୁ ଚରଣ
ଶୁଣ୍ଡରେ ମଛି ଦେଲା ପ୍ରାୟେ କଲା କାଣ ।
ତୁମ୍ଭର ସୈନ୍ୟଯାକ ଭୀମଙ୍କ ବଳକୁ
ଧିକ୍କାରିଲେ କରିଚି ଉଚ୍ଚରେ ରାବକୁ ।
ପାଣ୍ଡବ ସେନାଯାକ ଭୀମଙ୍କୁ ଧିକ୍କାର-
ଶବଦକୁ ଶୁଣିଣ ହୋଇଲେ କାତର ।
ଭୀମଙ୍କ ସମୀପକୁ ଆସି ହୋଇ ଗୋଟା
ପଚାରିଲେ ଜୀଇଁଛନ୍ତି କି ବାତବେଟା ।
ଯୁଧିଷ୍ଠିର ନୃପତି ଭୀମ ମଲେ ଜାଣି
ପାଞ୍ଚାଳ ସଇନକୁ ସଙ୍ଗତରେ ଘେନି ।
ଭଗଦତ୍ତ ରାଜାଙ୍କ ରହି ଚାରିପଟେ
ବିନ୍ଧିଲେ ପାଣ୍ଡୁସେନା କାଣ୍ଡ ପଟପାଟେ ।
ଭଗଦତ୍ତ ରାଜା ତ ଅଟନ୍ତି ମନୁଆଁ
ନ ସହି ତାହା କ୍ରୋଧେ ହୋଇଗଲେ ନିଆଁ ।
ଅଙ୍କୁଶେ ସେନାଙ୍କ କାଣ୍ଡକୁ କାଟିଦେଇ
ପକାଇଲେ ହାତୀ ଗୋଡ଼ରେ ଚକଟାଇ ।
ଭଗଦତ୍ତ ବୁଢ଼ାଙ୍କ ଏ ଆଶ୍ଚର୍ଯ୍ୟ କଥା
ଦେଖି ମହାରଥି ନ କହିଲେ କଥା ।
ଏହା ଦେଖି ଦଶାର୍ଣ୍ଣଦେଶ ନରପତି
ପରବତ ପ୍ରାୟେ ଆରୋହି ମତ୍ତହସ୍ତୀ ।
ଭଗଦତ୍ତ ରାଜାଙ୍କ ଆଗକୁ ଆସିଲେ
ଯୁଝିବା ତୁମ୍ଭେ ଆମ୍ଭେ ବୋଲିଣ ଭାଷିଲେ ।
ପକ୍ଷ ଥିବା ପର୍ବତ ଯୁଝିବା ପରାୟେ
ଯୁଝିଲେ ସେ ଦୁଇ ହାତୀ ହେ ନରରାୟେ ।
ଭଗଦତ୍ତ ନାଗ ପଛକୁ ଘୁଞ୍ଚିଗଲା
ଦଶାର୍ଣ୍ଣାଧିପ ହାତୀ ଦେହକୁ ମାଇଲା ।
ସେ ଘାତ ନ ସହି ଦଶାର୍ଣ୍ଣାଧିପ ହାତୀ
ମହୀତଳେ ପଡ଼ିଲା ହୋଇକରି ଛିଡି ।
ସେ କାଳେ ଭଗଦତ୍ତ ସାତୋଟି ତୋମର
ଫିଙ୍ଗିପ୍ରାଣ ନେଲେ ଦଶାର୍ଣ୍ଣାଧିପଙ୍କର ।
ଯୁଧିଷ୍ଠିର ବହୁତ ରଥୀ ସଙ୍ଗେ ଧରି
ଯୁଦ୍ଧ କଲେଟି ଭଗଦତ୍ତକୁ ଆବୋରି ।
ହାତୀ-ଗିରିପରେ ଥିଲେ ତ ଭଗଦତ୍ତ
ଶୋଭାରେ କଲେ ଦାବାନଳକୁ ଲୁପତ ।
ରଥିମାନଙ୍କର ବାଇନ୍ତେ ଶରରାଜି
ବୁଲିଲା ହାତୀ ଚାରିପଟରେ ଗରଜି ।
ସାତ୍ୟକିଙ୍କର ରଥଠାରୁ ଭଗଦତ୍ତ
ଟିପନ୍ତେ ସେ ହାତୀ ହୋଇଲା ଉପଗତ ।
ରଥ ସହିତରେ ଶୁଣ୍ଡାରେ ସାତ୍ୟକିଙ୍କି
ଫିଙ୍ଗିଦେଲା ସେ ହାତୀ ଉପରକୁ ଟେକି ।
ପଡ଼ନ୍ତେ ରଥ ତଳେ ଯୁଯୁଧାନବୀରା
ପଳାଇଲେ ରଥରୁ ମାରିଦେଇ ଚିରା ।
ସାରଥି ସୁସ୍ଥ ହୋଇ ଉଠାଇ ଘୋଡ଼ାକୁ
ଚଢ଼ାଇଲା ରଥେ ସାତ୍ୱତପ୍ରବରଙ୍କୁ ।
ଏରୂପେ ସାତ୍ୟକିଙ୍କି ଦେଲା ଯୁଦ୍ଧେ ଦଶା
ଭଗଦତ୍ତ ନାଗ ନାଗଙ୍କେ ମହାଯଶା ।
ଯେତେ ରଥୀ ରଥ ଉପରେ ବସିଥିଲେ
ସେମାନଙ୍କୁ ଶୁଣ୍ଡାରେ ଫିଙ୍ଗିଦେଲା ହେଳେ ।
ନୃପତି ଭଗଦତ୍ତଙ୍କର ହାତୀ ଘାତ -
ପାଇକରି ଯୁଦ୍ଧରେ ହୋଇଣ ନିସତ ।
ମନରେ କଲେ ଶତ ଶତ ହାତୀ ବେଢ଼ି
ମାରୁଛନ୍ତି ଅବା ଆମ୍ଭଙ୍କୁ ଦନ୍ତ କାଢ଼ି ।
ଅଇରାବତ ପରେ ବସି ଶଚୀପତି
ଯେଉଁରୂପେ ଦାନବମାନଙ୍କୁ ଖେଉଁଦନ୍ତି ।
ସେରୂପେ ଭଗଦତ୍ତ ଚଢ଼ିକରି ହାତୀ
ପାଣ୍ଡବଙ୍କ ରଥୀଙ୍କି ପକାଇଲେ ମଛି ।
ପାଣ୍ଡବଙ୍କ ସେନାଏ ହୋଇଣ ଆକୁଳ
ରକ୍ଷାକର ବୋଲି ଡାକିଲେ ଛାଡ଼ି ରୋଳ ।
ଏହା ଶୁଣିଣ ଭୀମ ଅତି ତ୍ୱରା ହୋଇ
ରଖିଲେ ପଥ ଭଗଦତ୍ତ ପାଖେ ନେଇ ।
ଭଗଦତ୍ତ ହାତୀ ଭୀମଙ୍କର ଘୋଡ଼ାକୁ
ଫିଙ୍ଗିଲା ଶୁଣ୍ଡାପାଣି କରି ବିକ୍ରମକୁ ।
ଭୀମଙ୍କ ଘୋଡ଼ାଏ ହାତୀର ଶୁଣ୍ଡାପାଣି
ପାଆନ୍ତେ ରଥ ଘେନି ଭାଜିଲେ ତୃମଣି ।
ଆକୃତିଙ୍କର ସୁତ ରୁଚିପର୍ବା ବୀର
ଭଗଦତ୍ତରାଜାଙ୍କୁ ବିନ୍ଧିଲେ ତୀକ୍ଷ୍ଣ ଶର ।
ଭଗଦତ୍ତରାଜା କ୍ରୋଧରେ ହୋଇ ନିଆଁ
କଲେ ରୁଚିପର୍ବାଙ୍କୁ ଯମପୁରେ ଠିଆ ।
ତାହା ଦେଖି ତୁମ୍ଭ ରଥୀଏ ଗୋଟି ହୋଇ
ଭଗଦତ୍ତ ହାତୀକି ଶରେ ଦେଲେ ଛାଇ ।
ପାଦାଙ୍ଗୁଷ୍ଠ-ଅଙ୍କୁଶରେ ଯେ ଭଗଦତ୍ତ
ସେହି ସମୟରେ ହାତୀକି କଲେ ଘାତ ।
ହାତୀ ଭଗଦତ୍ତଙ୍କ ଯୁଦ୍ଧରୀତି ଜାଣି
ପ୍ରସାର କରିଦେଲା ଶୁଣ୍ଡାକୁ ସେକ୍ଷଣି ।
ଯୁଯୁତ୍ସୁଙ୍କର ଘୋଡ଼ା ଉପରେ ଦେଇ ଗୋଡ଼
ମାଇଲା ସାରଥିକି ଭାଙ୍ଗି ପିଠି ହାଡ଼ ।
ସାରଥି ହତ ଦେଖି ଯୁଯୁତ୍ସୁ ତ୍ୱରା ହୋଇ
ଡେଇଁପଡ଼ି ରଥୁଁ ଭାଜିଲେ ନରସାଇଁ ।

ଅଭିମନ୍ୟୁଙ୍କର ରଥରେ ଯେ ବସିଲେ
କି କଲା ଆହେ ହାତୀ ବୋଲିଣ ଭାଷିଲେ ।
ସେ ସମୟରେଟି ଯୁଧିଷ୍ଠିର ସେନା
ବିନ୍ଧିଲେ ସେ ହାତୀକି ଶର ଅକଳନା ।
ଯୁଯୁତ୍ସୁବୀର ଦଶ ଅଭିମନ୍ୟୁ ବାର
ଦ୍ରୌପଦେୟ ବିନ୍ଧିଲେ ତିନି ତିନି ଶର ।
ଏ ବାହାରେ ଧୃଷ୍ଟକେତୁ ଯେ ତିନି କାଣ୍ଡ
ବିନ୍ଧି ଗରଜିଲେ ଫୁଲାଇଦେଇ ପିଣ୍ଡ ।
ପର୍ବତେ ସୂର୍ଯ୍ୟରଶ୍ମି ପଡ଼ିବା ପରାୟେ
ଦିଶିଲା ରାଜନ ସେ କାଣ୍ଡ ହାତୀକାୟେ ।
ହାତୀ ତାହା ନ ସହି ରଥୀକୁଳଯାକ
ଫିଙ୍ଗିଲା ଶୁଣ୍ଡାରେ ହୃଦରୁ ଛାଡ଼ି ଦକ ।
ଗାଈକୁଳ ଗଉଡ଼ ଖେଉଦିଲା ପ୍ରାୟେ
ସେ ହାତୀ ଦେଖିଲା ପାଣ୍ଡବ ବଳ ରାୟେ ।
ଚାରିପଟେ ସେ ହାତୀ ଧାଆନ୍ତେ ଚହଟି
ରହିଲେ ପାଣ୍ଡୁସେନାଯାକ ହୋଇ ଗୋଟି ।
ସଞ୍ଚାଣରେ ଆହତ ହେଲେ କୁଆ ରଡ଼ି
କରିବା ପରି ଲୋକେ ପକାଇଲେ ରଡ଼ି ।
ପକ୍ଷ ଥିବା ପର୍ବତ ପ୍ରାୟେ ଭଗଦତ୍ତ
ହାତୀ ଯୁଦ୍ଧ କଲା ହୋଇଣ ଉନମତ୍ତ ।
ହାତୀ ରଥ ଘୋଡ଼ା ଯେ ଚଢ଼ିଣ ରାଜାଏ
ପଳାନ୍ତେ ଭଗଦତ୍ତଙ୍କର ହାତୀ ଭୟେ ।
ସେହି ସକାଶୁଁ ମହାଧୂଳି ହୋଇ ଜାତ
ହେଲାଟି ଦିଗ ବିଦିଗରେ ସେ ପୂରିତ ।
ଭଗଦତ୍ତ ରାଜା ଯୁଦ୍ଧରେ ହୋଇ ତୋଷୀ
ମାଇଲେ ପାଣ୍ଡ ସେନା ମଧ୍ୟେ ପଶି ପଶି ।
ଧୂଳି-କୁହୁଡ଼ିରେଟି ଦୁଇସେନା-ଗିରି
ସେ କାଳରେ ରାଜନ ନ ପାରିଲୁ ବାରି ।
ସେ ମହାଧୂଳି କି ତ ଅର୍ଜୁନ ଦେଖିଲେ
ଏ ବାହାରେ ହାତୀର ଗର୍ଜନ ଶୁଣିଲେ ।
ମନେ କଲେ ଯେ ଭଗଦତ୍ତ ଯୁଝୁଅଛି
ଦେବ ଆଜି ଆଜିରେ ଆମ୍ଭ ସେନା ପୋଛି ।
ଏହିରୂପେ ଅନେକ ବିଚାରି ଅର୍ଜୁନ
ବୋଇଲେ ଶୁଣ ଆହେ ପୂତନାସୂଦନ ।
ଭଗଦତ୍ତ ହାତୀର ଗର୍ଜନ ଶୁଭୁଛି
ମହାଯୁଦ୍ଧ ହେଲା କି ଏବେ ମୁଁ ମଣୁଛି ।
ହସ୍ତୀ ଯୋଦ୍ଧାଙ୍କରଟି ଭଗଦତ୍ତ ରାଜା
ସମାନ ହେବେ ଅବା ଜାଣ ହେ ବିଦ୍ରୋଜା ।
ଭଗଦତ୍ତର ହାତୀ ଭଗଦତ୍ତ ପରି
ଏ ମହୀରେ ଦେଖୁନାହିଁ ମୁଁ ଚକ୍ରଧାରୀ ।
ତୁମ୍ଭ ଆମ୍ଭ ବିନାଟି ଭଗଦତ୍ତ ହାତୀ
ତୁଲେ ଯେ ଯୁଝିବ ସେ ତାକୁ ଦେବ ମଛି ।
ଏକା ଭଗଦତ୍ତଟି ଚଢ଼ି କରୀବର
ଯୁଝିଲେ ମାରି ଯିବ ସଇନ ଆମ୍ଭର ।
ଏହା ଜାଣି ଆହେ ରୁକ୍ମିଣୀଦେବୀନାହା
ଚାଲ ଯୁଧିଷ୍ଠିରଙ୍କ ହେବା ଆମ୍ଭେ ସାହା ।
ମିତବାପା ମୋର ଅଟନ୍ତି ଭଗଦତ୍ତ
ଆଜି ମୋ କାଣ୍ଡେ ତାଙ୍କୁ ପୂଜନ୍ତୁ ପୁରୁହୂତ ।
ଯୁଦ୍ଧରେ ସେ ବଡ଼ ଗର୍ବିତ ହୋଇଛନ୍ତି
ଦେଖିବ ମୋ କାଣ୍ଡେ ସେ ହୋଇଯିବେ ଶାନ୍ତି
ଅରଜୁନ ବଚନେ ବାହିଲେ କୃଷ୍ଣ ରଥ
ଭଗଦତ୍ତ ସମୀପକୁ ହେ ନରନାଥ ।
ଅରଜୁନ ଯୁଦ୍ଧକୁ ଛାଡ଼ି ଯିବା ଦେଖି
ସଂଶପ୍ତକମାନେ ତରାଟି ଦେଇ ଆଖି ।
ଡାକିଲେ ଅରଜୁନ ଯାଉଅଛ କାହିଁ
ଯୁଦ୍ଧକର ଆମ୍ଭେମାନେ ତ ଅଛୁଁ ଜୀଇଁ ।
ଆହେ ନୃପଶେଖର ସଂଶପ୍ତକ ଯେତେ
ଡାକିଲେ ତାଙ୍କ ସଂଖ୍ୟା ଶୁଣ ମହାମତେ ।
ନାରାୟଣ ବଳଟି ତ୍ରିଗର୍ତ୍ତରୁ ଅଷ୍ଟ-
ବିଂଶତି ସହସ୍ର ଯେ ବାହାରିଣ ଥାଟ ।
ଡାକିଲେଟି ଅରଜୁନଙ୍କୁ ଯୁଦ୍ଧ ପାଇଁ
ମୋ କହିବାରୁ ଜାଣ ଗାନ୍ଧାରୀ ପ୍ରାଣସାଇଁ ।
ଅର୍ଜୁନ ସଂଶପ୍ତକ ବଚନ ଶୁଣିଲେ
ସନ୍ଦେହ ଚିତ୍ତ ହୋଇ ଟିକିଏ ରହିଲେ ।
ମନେ କଲେ ଯୁଧିଷ୍ଠିରଙ୍କୁ ପଛେ ରକ୍ଷା
କରିବି ଆଗ ଭାଙ୍ଗିଦେବି ଯାଙ୍କ କକ୍ଷା ।
କୃଷ୍ଣଙ୍କୁ ବୋଇଲେ ହେ ଲେଉଟାଅ ରଥ
ଦେଖ ସଂଶପ୍ତକ ଡାକନ୍ତି ଟେକି ହାତ ।
ଅର୍ଜୁନଙ୍କ ବଚନ ଘେନିଣ ମନରେ
ଲେଉଟାଇ ରଥ ବାହିଲେ କୃଷ୍ଣ ଖରେ ।
ସଂଶପ୍ତକମାନେ ତ ଲକ୍ଷ ଲକ୍ଷ କାଣ୍ଡ
ବିନ୍ଧିଲେ ଡିଆଁ ମାରି ଲୁଆଇଁ କୋଦଣ୍ଡ ।
ସଂଶପ୍ତକମାନଙ୍କ କାଣ୍ଡେ କୃଷ୍ଣାର୍ଜୁନ
ଅଦୃଶ୍ୟ ହୋଇଗଲେ ହୁଅନ୍ତେ ଆଚ୍ଛନ୍ନ ।
ସଂଶପ୍ତକ ଶରେ ଦେହରୁ ଝାଳ ଗଳି
ପଡ଼ନ୍ତେ ରଥେ ଝୁମି ରହିଲେ ବନମାଳୀ ।
ଅରଜୁନ ଜାଣିଣ କୃଷ୍ଣଙ୍କର ମୋହ
ହୃଦୟର ମଧ୍ୟରେ ଧରି ମହାକୋହ ।
ବ୍ରହ୍ମଅସ୍ତ୍ର କରିଣ ସଂଶପ୍ତକ ପ୍ରାଣ
ଘେନିପକାଇଲେ ଦେଖାଇ ବାହୁଟାଣ ।

ଧ୍ୱଜ ଘୋଡ଼ା ହାତୀ ଯେ ଧନୁଧରା ହାତ
କାଟିଲେ ଯୁଦ୍ଧଦାଣ୍ଡେ ବର୍ଷିଶର ପାର୍ଥ ।
ହାତିଚଢ଼ାମାନେଟି ହାତୀଙ୍କର ତୁଲେ
ତଳେ ପଡ଼ି ଯମରାଜାଙ୍କୁ ପ୍ରାଣ ଦେଲେ ।
ସିପାହିଏ ଘୋଡ଼ାଙ୍କ ଯୋଡ଼ାଇବା ଛାଡ଼ି
ବାଜି କାଣ୍ଡ ତଳେ ପଡ଼ିଲେ ଜିଭ କାଢ଼ି ।
ମୁଦଗର ପର୍ଶୁ ତୋମର ଭିନ୍ଦିପାଳ
ଛାଡ଼ି ତଳେ ପଡ଼ିଲା ପାନ୍ତେ ଶରଜାଳ ।
ଯୋଦ୍ଧାଙ୍କର ମୁଖପଦ୍ମରେ ଯୁଦ୍ଧ ସୃଷ୍ଟି
ମଣ୍ଡିହୋଇ ନୃପ ଦେଖିଛି ଆମ୍ଭ ଦୃଷ୍ଟି ।
ସଂଶପ୍ତକ ତୃଣବନକୁ ଅରଜୁନ
ଶର-ଦାବଅନଳ କଲାଟି ଦହନ ।
ସେନା-ପଦ୍ମବନକୁ ପାର୍ଥ ଗଜ ପ୍ରାୟେ
ପଶିକରି ମଛିଲେ ଶର-ପ୍ରାଦଘାଏ ।
କୃଷ୍ଣ ତାହା ଦେଖିଣ ହୋଇ ଅତି ହୃଷ୍ଟ
ଆନନ୍ଦରେ ନିଜ ଦେହକୁ କରି ପୁଷ୍ଟ ।
କର ଦୁଇ ଯୋଡ଼ି କହିଲେ ଅର୍ଜୁନଙ୍କୁ
ତୁମ୍ଭପରି ବୀର ମୁଁ ନ ଦେଖେ କାହାକୁ ।
ଆଜି ଯାହା କଲା ତା କୃତାନ୍ତ କୁବେର
ଇନ୍ଦ୍ର କରିପାରିବେ ନାହିଁ ମନେ କର ।
ଏକାବେଳକେ ତ ସହସ୍ର ସଂଖ୍ୟା ହୋଇ
ରଥୀ ମରିବାର ଯୁଦ୍ଧେ ମୁଁ ଦେଖି ନାହିଁ ।
ଏହିରୂପେ କୃଷ୍ଣ କହନ୍ତେ ଅର୍ଜୁନକୁ
ଅର୍ଜୁନ ସୁଖ କରି ଆଣିଲେ ମନକୁ ।
କୃଷ୍ଣଙ୍କୁ ବୋଇଲେ ହେ ଯୁଧିଷ୍ଠିରଠାକୁ
ବାହା ରଥ ଯୁଝିବା ପର୍ବତ ନୃପକୁ ।
କୃଷ୍ଣ ତାଙ୍କ ବୋଲରେ ଲେଉଟାଇ ଯାନ
ବାହାନ୍ତେ ସଂଶପ୍ତକେ ସୁଶର୍ମା କୋପମନ ।
ହୋଇ ଭାଇମାନଙ୍କ ସଙ୍ଗତରେ ଧରି
ଗୋଡ଼ାଇଲେ ପାର୍ଥ ପୃଷ୍ଠରେ ଦଣ୍ଡଧାରୀ ।
ଅର୍ଜୁନ ତାହା ଜାଣି କହିଲେ କୃଷ୍ଣଙ୍କୁ
ସୁଶର୍ମା ଦେଖ ପଛେ ଡାକୁଛି ଯୁଦ୍ଧକୁ ।
ଉତ୍ତରଦିଗସୈନ୍ୟ ପଳାଉଅଛନ୍ତି
ଭଗଦତ୍ତଠାରୁ ପାଇଣ ସେ ବିପତ୍ତି ।
କେଉଁକଥା କଲେ ଆମ୍ଭର ଶ୍ରେୟବେ
ତାହାକୁ କର ଆହେ ଭାବିଣ କେଶବେ ।
କୃଷ୍ଣ ଅର୍ଜୁନଙ୍କର ବଚନକୁ ଶୁଣି
ଲେଉଟାଇ ରଥକୁ ବାହିଲେ ସେକ୍ଷଣି ।
କ୍ରୋଧ ହୋଇ ଅର୍ଜୁନ ସୁଶର୍ମାକୁ ସାତ-
କାଣ୍ଡକୁ ବିନ୍ଧିଲେ ଦେଖାଇ ବେଗ ହସ୍ତ ।
କ୍ଷୁରକାଣ୍ଡେ ତାହାର ଧ୍ୱଜ ଧନୁ କାଟି
ଦିଅନ୍ତେ ପଡ଼ିଲା ସେ ମହୀମଧେ ଲୋଟି ।
ସାରଥି ଘୋଡ଼ା ତୁଲେ ଛକାଣ୍ଡେ ଅର୍ଜୁନ
ତ୍ରିଗର୍ତ୍ତର ଭାଇର ଘେନିଲେ ଜୀବନ ।
ଆୟସ ଶକତି ସୁଶର୍ମା କରେ ଧରି
ଫିଙ୍ଗିଲେ ଅର୍ଜୁନଙ୍କୁ ଧାଇଁ ଭଡ଼ା ଚାରି ।
କୃଷ୍ଣଙ୍କର ଦେହକୁ ବଜାଇ ତୋମର
ଫିଙ୍ଗି କରି କଲେ ତ ଗରଜନ ଘୋର ।
ଛକାଣ୍ଡେ ଅର୍ଜୁନ ଶକତି ତୋମରକୁ
କାଟିଣ ଦେଖାଇଲେ ଅବନୀମଧକୁ ।
ଅର୍ଜୁନଙ୍କ ଶର ସୁଶର୍ମା ଉର ମାଥେ
ବାଜି ଧନୁ କାଟି ଶୁଆଇଦେଲେ ରଥେ ।
ଲେଉଟାଇଣ ଯାନ ଯୁଧିଷ୍ଠିରଠାକୁ
ବୁହାଇଲେ ଭଗଦତ୍ତକୁ ମାରିବାକୁ ।
ଇନ୍ଦ୍ରଙ୍କ ପରି ଶରଧାରା କରି ବୃଷ୍ଟି
ଆସନ୍ତେ ଅର୍ଜୁନ ତୁମ୍ଭରି ଯୋଦ୍ଧା ସୃଷ୍ଟି ।
ଦୃଷ୍ଟି ଦେଇଥିଲେ ସେ ଆଗକୁ ପହଣ୍ଡ
କାଢ଼ି କେହି ବିନ୍ଧିଟି ନ ପାରିଲେ କାଣ୍ଡ ।
ତୁମ୍ଭର ମହାରଥିମାନଙ୍କର ମାଥ
କାଟିପକାଇଲେ ଗାଣ୍ଡୀବ ଧନୁହାତ ।
ଅଗ୍ନିଜ୍ୱାଳାପରି ତ ଅର୍ଜୁନଙ୍କ ବାଣ
ତା ନ ସହି ଭାଜିଲେ ତୁମ୍ଭ ରଥିଗଣ ।
ଭଗଦତ୍ତ-ସର୍ପକୁ ଗରୁଡ଼ ପରାୟେ
ପଡ଼ିଲେ ଯୁଦ୍ଧେ ଝାମ୍ପି ପାର୍ଥ ବୀରରାୟେ ।
ପଥରରେ ବାଜି ଫାଟିଲା ପରି ନାବ
ତୁମ୍ଭ ସେନା ଫାଟିଲେ ଯୁଦ୍ଧୁଁ ଛାଡ଼ି ଭାବ ।
ଅର୍ଜୁନଙ୍କର କାଣ୍ଡ ଚାଣ୍ଡକୁ ନ ସହି
ଆଉ କି ଗୁଡ଼ାଏ କହିବି ନରସାଇଁ ।
ସହସ୍ରଦଶ ରଥୀ ସେନାର ତୁମ୍ଭର
ବାହାରି ଏକା କଲେ ପାର୍ଥକୁ ସମର ।
ଅର୍ଜୁନ ତୁମ୍ଭର ସେ ରଥୀ-ସରସୀରେ
ପଶିଲେ ମତ୍ତହସ୍ତୀ ପରି ସେ ସରରେ ।
ଶର-ଥୋଡ଼ହସ୍ତଟି କରି ପ୍ରସାରକୁ
ମଛିଲେ ଯୋଦ୍ଧାମୁଣ୍ଡ-ନଳିନ ବନକୁ ।
ଭଗଦତ୍ତ ତାହା ତ ସହି ନ ପାରିଲେ
ହାତୀକି ଟିପି ଅରଜୁନ ଆଗେ କଲେ ।
ଅର୍ଜୁନ ସେ ହାତୀ ଆଗରେ ରଥ ନେଇ
ରଖାଇଲେ ରଥକୁ ନ ପାରିଲା ଡେଇଁ ।
ରଥ ଗଜ ଦୁହେଁ ହୁଅନ୍ତେ ମିଶାମିଶି
ବିନ୍ଧିଲେ ଶର ଭଗଦତ୍ତ ହୋଇ ରୋଷୀ ।

ଅରଜୁନ ନିବାରି ଭଗଦତ୍ତ ଶର
କଲେ ଭଗଦତ୍ତକୁ ଶାୟକ ପ୍ରହାର ।
ଅର୍ଜୁନଙ୍କ କାଣ୍ଡ ନିବାରି ଭଗଦତ୍ତ
କୃଷ୍ଣଅରଜୁନେ ବିନ୍ଧିଲେ ଅଗଣିତ ।
ଶର ଜାଳେ କୃଷ୍ଣ ଅରଜୁନ ଆଚ୍ଛନ୍ନ
ହୁଅନ୍ତେ ଭଗଦତ୍ତ ହୋଇ କୋପମନ ।
କୃଷ୍ଣ ଅରଜୁନଙ୍କୁ ମାରିବାର ପାଇଁ
ହାତୀକି ଗୋଡ଼େ ଟିପି ଦେଲେ ନରସାଇଁ ।
ମୃତ୍ୟୁଦେବ ପରି ହାତୀକି ଦେଖି ଆଗେ
ରଥକୁ ବୁଲାଇଣ ଦେଲେ କୃଷ୍ଣ ବେଗେ ।
ହାତୀ ପଛ ଦେଇ ଲେଉଟି ଯିବା କାଳେ
ନ ମାଇଲେ ଧର୍ମ ବିଚାରି ହୃଦସ୍ଥଳେ ।
ଭଗଦତ୍ତର ହାତୀ ଯିବାକାଳେ ରଥ
ହାତୀ ଘୋଡ଼ାମାନେ ଲଭିଲେ ମହାସାଥ ।
ଅର୍ଜୁନ ତାହା ଦେଖି ହୋଇ ମହାକ୍ରୋଧ
ଭାବିଲେ କରିଦେବା ହାତୀଟିକି ବଧ ।
ଭଗଦତ୍ତ ହାତୀକି କୃଷ୍ଣ ଅରଜୁନ
ଯୁଝନ୍ତେ ମଲେ ବୋଲି ଭାବିଲେ ତୁମ୍ଭ ସୈନ୍ୟ ।
ହାତୀ କାନ୍ଧେ ଥାଇଣ ଭଗଦତ୍ତ ରାଜା
କଲେ ଶର ବୃଷ୍ଟି ଯୁଦ୍ଧରେ ଦେଇ ମଜା ।
ସୁନା ପୁଙ୍ଖେ ମଣ୍ଡିତ ଲୁହାକାଣ୍ଡରାଜି
କୃଷ୍ଣଙ୍କୁ ଭଗଦତ୍ତ ବିନ୍ଧିଲେ ଗରଜି ।
ସେ କାଣ୍ଡମାନେ କୃଷ୍ଣ ଦେହରୁ ନିକିଳି
ରହିଲେ ସେ ଯାଇଟି ମହୀ ମଧେ ଗଳି ।
ଅରଜୁନ ତାହା ଦେଖିଣ ଭଗଦତ୍ତ
ଧନୁ ବର୍ମ ଦୁହିଙ୍କି କାଟିଲେ ତୁରିତ ।
ଚଉଦଟି ତୋମର ଭଗଦତ୍ତ ବାଛି
ଫିଙ୍ଗିଲେ ଡାକି ମଲୁ ବୋଲି କୁନ୍ତିବଛି ।
ଅର୍ଜୁନ ସେ ଚଉଦ ତୋମରକୁ କାଣ୍ଡ
ବିନ୍ଧି କଲେ ରାଜନ ବୟାଳିଶ ଖଣ୍ଡ ।
ଏ ଅନ୍ତେ ସେ ହାତୀର କବଚକୁ କାଟି
ଦିଅନ୍ତେ ପଡ଼ିଲା ମହୀ ମଧେ ଲୋଟି ।
ବିକବଚ ହୁଅନ୍ତେ ହସ୍ତୀ ଭଗଦତ୍ତ
ନିନ୍ଦିଲା ଦେହ ଗେରୁମଣ୍ଡା ପରବତ ।
ତାହା ସହି ନପାରି ଭଗଦତ୍ତ ବୀର
ତୋମରୁଟି ଧରି ଫିଙ୍ଗିଲେ ଧାତିକାର ।
ସେ ଶକତି ନ ଆସୁଁ ପାର୍ଥ ଶରେ ଖଣ୍ଡ-
ଖଣ୍ଡ କରି ଗଡ଼ାଇଦେଲେ ରଣଦାଣ୍ଡ ।
ପୁଣି ଭଗଦତ୍ତର ମୁକୁଟ ତୂଣୀର
ତୁଳେ କାଟିଦେଲେ ବିନ୍ଧିଣ ଦୁଇ ଶର ।

ଭଗଦତ୍ତ ଅର୍ଜୁନ ଶରେ ପୀଡ଼ା ପାଇ
ଅଙ୍କୁଶକୁ ଧଇଲେ ସଂଯୁତ ସେ ହୋଇ ।
ନାରାୟଣମନ୍ତ୍ରରେ ମନ୍ତ୍ରି ଅଙ୍କୁଶକୁ
ଫିଙ୍ଗିଲେ ସେ ଅର୍ଜୁନ ହୃଦୟ ସ୍ଥଳକୁ ।
ତାହା ଦେଖି କୃଷ୍ଣ ଅରଜୁନ ଆଗରେ
ଛିଡ଼ା ହେଲେ ଉଠିଣ ଅତ୍ୟନ୍ତ ବେଗରେ ।
ସେ ଅସ୍ତ୍ର କୃଷ୍ଣଙ୍କର ହୃଦୟକୁ ପାଇ
ପଡ଼ିଲା ଆହେ ବୈଜୟନ୍ତିମାଳା ହୋଇ ।
ଏହା ଦେଖି ଅର୍ଜୁନ କରି ମହାଦୁଃଖ
ବୋଇଲେ ମୋ ବଚନ ଶୁଣ ପଦ୍ମମୁଖ ।
ନ ଯୁଝିବି ବୋଲି ପ୍ରତିଜ୍ଞା ଥିଲି କରି
ଅନ୍ୟଥା ଏବେ କଲ କହ କି ବିଚାରି ।
ମୁଁ ଯେବେ ସେ ଅସ୍ତ୍ରକୁ ନିବାରି ନ ପାରି
ଅଶକତ ହୋଇ ରହନ୍ତି ଧନୁ ଧରି ।
ତେବେ ସିନା ତୁମ୍ଭ ଏ କର୍ମ କରିବାର
ଉଚିତ ହୁଅନ୍ତା ହେ ଯଦୁକୁଳବୀର ।
ମୋ ହାତେ ଧନୁଶର ଥିଲେ ମୁହିଁ ହାରି-
ନାହିଁ, ତିନିଲୋକେ ପାରଇଁ ଯୁଦ୍ଧେ ମାରି ।
ଏ କଥା ତ ତୁମ୍ଭଙ୍କୁ ହୋଇଛି ବିଦିତ
ଆଉ କିସ ଗୁଡ଼ାଏ କହିବି ଅଚ୍ୟୁତ ।
କୃଷ୍ଣ ବୋଇଲେ ଆହେ ଶୁଣ ମୋର କଥା
କାହାକୁ ଗୋଚର ସେ ନାହିଁ ମହାରଥା ।
ପ୍ରାଣୀମାନଙ୍କର ତ ହିତ ହେବା ପାଇଁ
ମୋ ଦେହ ଚାରିମୂର୍ତ୍ତି କରିଅଛି ମୁହିଁ ।
ମୂର୍ତ୍ତିଏ ନର ନାରାୟଣଙ୍କ ରୂପରେ
ତପସ୍ୟା କରୁଛନ୍ତି ଗନ୍ଧମାଦନରେ ।
ମୂର୍ତ୍ତିଏ ଅନ୍ତର୍ଯ୍ୟାମୀ ରୂପରେ ସବୁରି
ହୃଦୟରେ ରହି ଅଛନ୍ତି ଘର କରି ।
ମୂର୍ତ୍ତି ଏ ତ ନର ଲୋକରେ ବହି ଧର୍ମ
କରୁଛନ୍ତି ହେବାକୁ ପ୍ରାଣିଙ୍କ ଧର୍ମ କର୍ମ ।
ଜଳରେ ରହି ମୋ ମୂର୍ତ୍ତିଏ ଦଶ ଶତ
ବରଷ ଶୁଅନ୍ତି ହେ ପୁରୁହୂତସୁତ ।
ଯେଉଁ ମୂର୍ତ୍ତି ମୋର ଜଳରେ ଶୋଇଥାନ୍ତି
ଯେ ଯାହା ମାଗଇ ସେ ତାହାକୁ ଦିଅନ୍ତି ।
ନରକ ପାଇଁ ମୋର ଶୋଇବା ମୂର୍ତ୍ତିକି
ମାଗିଲେ ପୃଥ୍ୱୀବର ବହିଣ ପ୍ରୀତିକି ।
ନାରାୟଣ ଅସ୍ତ୍ର ମୋ ସୁତେ ତୁମେ ଦିଅ
ଦେବ ଦାନବଙ୍କରେ ସେ ହେଉ ଅଜେୟ ।
ପୃଥ୍ୱୀଙ୍କ ବଚନେ ମୁଁ ପୀରତି ହୋଇଲି
ଅମୋଘ ବଇଷ୍ଣବ ଅସ୍ତ୍ରକୁ ମୁଁ ଦେଲି ।

କହିଲି ପୃଥିବୀକି ତୋ ସୁତ ନରକ
ଏ ଅସ୍ତ୍ରରେ ଅଜେୟ ହେବ ଛାଡ଼ି ଦକ ।
ପୃଥ୍ୱୀ ମୋ ଅସ୍ତ୍ର ପାଇ କୃତକାମ ହୋଇ
ସେ ଅସ୍ତ୍ରକୁ ଦେଲେଟି ନରକଙ୍କୁ ନେଇ ।
ନରକ ସେ ଅସ୍ତ୍ରବଳରେ ଦୁର୍ଦ୍ଧରସ
ହୋଇ ବୀରମାନଙ୍କୁ କଲା ଯୁଦ୍ଧେ ନାଶ ।
ନରକାସୁରଠାରୁ ସେ ଅସ୍ତ୍ର ଭଗଦତ୍ତ
ପାଇଥିଲେ ଜାଣ ହେ ଅଭିମନ୍ୟୁତାତ ।
ଇନ୍ଦ୍ରରୁଦ୍ର ଦେହେ ମୋର ଅସ୍ତ୍ର ବାଜିଲେ
ନ ଜୀଇଁବେ ପାର୍ଥ ହେ କହୁଛି ମୁଁ ଭଲେ ।
ତୁମ୍ଭଙ୍କୁ ସେ ଅସ୍ତ୍ର ମାଇଲା ଭଗଦତ୍ତ
ହୃଦୟ ପାତି ତା କରି ମୁଁ ଦେଲି ଅସ୍ତ ।
ଏବେ ସେ ଅସ୍ତ୍ର ତାହା ହାତୁଁ ଗଲା ଫିଟି
ପକାଅ ଯୁଦ୍ଧେ ତୁମ୍ଭେ ତାର ମୁଣ୍ଡ କାଟି ।
ଏହା ଶୁଣି ଅର୍ଜ୍ଜୁନ ହୋଇ କରି ତୋଷ
ବିନ୍ଧିଲେ ଶର ବାଜି ଭଗଦତ୍ତ ନାଶ ।
ଅସମ୍ଭ୍ରାନ୍ତ ହୋଇଣ ନାରାଚ ଧନୁରେ
ବସାଇଲେଟି ସବ୍ୟସାଚୀ ଅତି ଖରେ ।
କର୍ଣ୍ଣଯାଏ ଗୁଣକୁ କଟ କଟ କରି
ଓଟାରିଣ ଆଣିଲେ ସୁଭଦ୍ରାବିହାରୀ ।
ଭଗଦତ୍ତ ହସ୍ତର ଗଣ୍ଡକୁ ଦେଖାଇ
ବିନ୍ଧିଲେ ନାରାଚ ଧାଇଁଲା ବେଗ ହୋଇ ।
ବଜ୍ରପରି ଧ୍ୱନି କରିଣ କରୀଗଣ୍ଡ-
ମଧ୍ୟରେ ପୁଙ୍ଖ ତୁଲେ ବୁଡ଼ିଲା ସେ କାଣ୍ଡ ।
ସେ ଘାତେ ଭଗଦତ୍ତ ହାତୀ ପୀଡ଼ା ପାଇ
ଛାଡ଼ିଲା ପ୍ରାଣ ଦାନ୍ତ ଭୂମେ ମାଡ଼ିଦେଇ ।
ମଲେ ହେଲେ ସେ ହାତୀ ହୋଇଥିଲା ଠିଆ
ତା ଦେଖି କମ୍ପିଗଲା ଯୋଦ୍ଧାଙ୍କର ହିଆ ।
ବୟସରେ ଅତି ବୃଦ୍ଧ ତ ଭଗଦତ୍ତ
ଚକ୍ଷୁ ତ ହୋଇଥାଏ ଚର୍ମରେ ଆବୃତ ।
ଏ ସକାଶୁଁ ସେ ଚର୍ମ ଟେକି ନରରାୟେ
ବାନ୍ଧିଥାନ୍ତି କପାଳେ ପଟକା ଗୋଟିଏ ।
ସେ ପଟକା ଅର୍ଜ୍ଜୁନ ପକାନ୍ତେଣ କାଟି
ରହିଲେ ଅନ୍ଧ ହୋଇ ନରକ ବେଟାଟି ।
ଯୁଦ୍ଧ କରିବାକୁ ତାହାଙ୍କର ଆୟତ
ନୋହିବାରୁ ଶର ନୋହିଲା କରଗତ ।
ଏହା ଜାଣିପାରି ଅର୍ଜ୍ଜୁନ ତ୍ୱରା ହୋଇ
ଅର୍ଦ୍ଧଚନ୍ଦ୍ର ବାଣକୁ ଧନୁରେ ବସାଇ ।
ଭଗଦତ୍ତଙ୍କର ହୃଦୟକୁ ଶରରେ
ଫଟାଇ ବସାଇଲେ ଯମଙ୍କ ନଗରେ ।
ଧନୁ କାଣ୍ଡ ପକାଇ ଭଗଦତ୍ତ ରାଜା
ପଡ଼ିଲେ ହାତୀପରୁ ନିନ୍ଦିଣ ବିଡ଼ୋଜା ।
ହାତୀ ଗିରି ଉପରୁ ସେ ନୃପତି-ଶୃଙ୍ଗୀ
ପଡ଼ି ତାଙ୍କ ଗଣ୍ଡିରେ ମଣ୍ଡିଲେ ରଣରଙ୍ଗୀ ।
ମାରି ଭଗଦତ୍ତେ ଧାନୁକୀଶିରୋମଣି
ଅରଜୁନ ପୁଣି ଗାଣ୍ଡୀବ ଧନୁ ଟାଣି ।
ତୁମ୍ଭ ଯୋଦ୍ଧାମାନଙ୍କୁ ପେଷି ତୀକ୍ଷ୍ଣ କାଣ୍ଡ
ଗଡ଼ାଇଦେଲେ ମୁଣ୍ଡ କାଟି ରଣଦାଣ୍ଡ ।
ସଇନର ଦକ୍ଷିଣ ପଟକୁ ଆବୋରି
ରହିଲେ ଆହେ ଯାଇ ସୁଭଦ୍ରାବିହାରୀ ।
ଗାନ୍ଧାର ନୃପ ସୁତ ବୃଷକ ଅଚଳ
କଲେଟି ଯାଇ ପାର୍ଥ ସଙ୍ଗତରେ ରୋଳ ।
ପାର୍ଥ ଆଗ ପଛେ ରହି ସେ ଦୁଇବୀରେ
ବିନ୍ଧିଲେ ସେ ଧନୁମାନଙ୍କୁ ଝିଙ୍କ ଖରେ ।
ବୃଷକଙ୍କର ଧନୁ ଧ୍ୱଜ ଛତ୍ର ହୟ
କାଟି ତିଳପରି ସୁଭଦ୍ରା ଦେବୀପ୍ରିୟ ।
ନାନା ଶସ୍ତ୍ରମାନ ଅର୍ଜ୍ଜୁନ ପ୍ରହାରିଲେ
ସେନା ତୁଲେରେ ବୃଷକଙ୍କୁ ପୀଡ଼ା ଦେଲେ ।
ଏ ବାହାରେ ଗାନ୍ଧାର ସୈନ୍ୟ ପାଞ୍ଚଶତ
ଯୋଦ୍ଧା ମାରିଣ ବସାଇଲେ ଯମସାଥ ।
ବିରଥ ହୋଇଣ ବୃଷକ ମହାବଳ
ଭାଇ ରଥେ ଚଢ଼ି ସେ ପୁଣି କଲେ ରୋଳ ।
ଏକାଥରକରେଟି ବୃଷକ ଅଚଳ
ବସିଣ ଯୁଦ୍ଧେ ଦେଖାଇଲେ ଦେହବଳ ।
ନିଦାଘ ବରଷାର ମଧ ବୃଷ୍ଟିପରି
ହର୍ଷିଲେ ସେ ଦୁହେଁ ପାର୍ଥକୁ ଶର-ବାରି ।
ତୁମ୍ଭର ଦୁଇଶଳା ଏକା ରଥେ ଥାଇ
ଯୁଝୁଥିଲେ ପାର୍ଥକୁ ଆଗପଛ ହୋଇ ।
ଅର୍ଜ୍ଜୁନ ଏକା କାଣ୍ଡକରେ ଦୁହିଙ୍କର
ଏଣୁ ନେଲେ ପ୍ରାଣ ରାଜନ ମନେକର ।
ରଥ-ଆକାଶରୁଟି ଅମର ପରାୟେ
ସେ ଦୁହେଁ ପଡ଼ିଲେ ହେ ମହୀତଳେ ରାୟେ ।
ତୁମ୍ଭର ପୋଏ ଦୁଇ ମାମୁଙ୍କ ନିଧନ
ଦେଖିକରି ନଷ୍ଟନୁ ପକାଇଲେ ବନ ।
ଦୁଇ ଭାଇ ମରଣ ନ ସହି ଶକୁନି
କଲା ଅର୍ଜ୍ଜୁନଙ୍କର ସଙ୍ଗତେ ଆରଣି ।
ଶତ ଶତ ମାୟାରେ ଅଟେ ବିଶାରଦ
ଏଣୁ ଯୁଦ୍ଧ କଲା ସେ ବହିଣ ପ୍ରମୋଦ ।
ପ୍ରାସ ମୁଦଗର ଯେ ଶକତି ତୋମର
ଭିନ୍ଦିପାଳ ଗଦା ମୂଷଳ ନାନା ଶର ।

ଶକୁନି ମାୟାରେ ଏ ଆଦି ଅସ୍ତ୍ରମାନେ
ପଡ଼ିଲେ ଯାଇ ଅରଜୁନ ଅପଘନେ ।
ଏ ବାହାରେ ଖର ସିଂହ ଯେ ବ୍ୟାଘ୍ର ଓଟ
ଗୟଳ ଭାଲୁ ଗୃଧ୍ର ରାକ୍ଷସ ମର୍କଟ ।
ଏମାନେ ଯୁଦ୍ଧଦାଣ୍ଡେ ପଡ଼ିଣ କିରୀଟୀ-
ଠାକୁ ଧାଇଁଗଲେଟି ମେଲିଦେଇ ପାଟି ।
ଅର୍ଜୁନ ଶକୁନିର ମାୟାକୁ ନ ହେଜି
ବିନ୍ଧିଲେ ସେମାନଙ୍କୁ ବାଛି କାଣ୍ଡରାଜି ।
ଅର୍ଜୁନଙ୍କ କାଣ୍ଡରେ ପାଇ ମହାପୀଡ଼ା
ଭାଜିଲେ ସେ ଶକୁନି ମାୟାଜନ୍ତୁ ଭିଡ଼ା ।
ପୁଣି ତୁମ୍ଭ ଶଳା ମାୟାରେ ଅର୍ଜୁନର
ରଥକୁ ଘୋଟିକରି ରହିଲା ଅନ୍ଧାର ।
ସେ ଅନ୍ଧାର ମଧ୍ୟରେ ଦୃଶ୍ୟ ନୋହି କେହି
ଅରଜୁନଙ୍କୁ ଗାଳିଦେଲେ ରୋଷ ବହି ।
ଅର୍ଜୁନ ଜ୍ୟୋତି ଅସ୍ତ୍ର କରିଣ ପ୍ରକାଶ
ଶକୁନିର ମାୟା ଅନ୍ଧାର କଲେ ଧ୍ୱଂସ ।
ଅନ୍ଧାର ନାଶ ଦେଖି ଗାନ୍ଧାରୀଙ୍କ ଭାଇ
ସରଜିଲେ ମାୟାରେ ଜଳ ନରସାଇଁ ।
ଅରଜୁନ ତା ଦେଖିକରି ହସି ହସି
ଦିବାକର ଅସ୍ତ୍ରେ ସେ ଜଳ ଦେଲେ ଗ୍ରାସି ।
ଏରୂପେ ଅନେକ ଶକୁନି ମାୟା ରାଜି
ଅରଜୁନ ଅସ୍ତ୍ରବଳରେ ଦେଲେ ଗଞ୍ଜି ।
ଯୁଦ୍ଧରେ ତ ନ ପାରି ଅର୍ଜୁନଙ୍କୁ ଯୋଟି
ଭୟରେ ପଳାଇଲେ ତୁମ୍ଭର ଶଳାଟି ।
ତୁମ୍ଭ ଶଳା ଭାଗୁଡ଼ି ଦେଖି ଅରଜୁନ
କଲେ ତାଙ୍କ ସେନା ଗରବ ମରଦନ ।
ଅରଜୁନ କାଣ୍ଡରେ ପୀଡ଼ା ପାଇ ସେନା
ଦୁଇଭାଗ ହୋଇ ଗଲେ ହେ ମହାମନା ।
ଦ୍ରୋଣ ଦୁର୍ଯ୍ୟୋଧନର ସମୀପକୁ ଗଲେ
ରକ୍ଷାକର ଆମ୍ଭଙ୍କୁ ଯୁଦ୍ଧରେ ବୋଇଲେ ।
ସେହି କାଳେ ଧୂଳିରେ ସଇନ ଆବୃତ
ହୁଅନ୍ତେ ଅର୍ଜୁନଙ୍କୁ ନ ଦେଖିଲା ନେତ୍ର ।
ଦକ୍ଷିଣ ଦିଗେ ମାତ୍ର ଗାଣ୍ଡୀବ ଶବଦ
ଶୁଣି ତୁମ୍ଭ ସୈନ୍ୟଙ୍କ କଲା ଅପ୍ରମାଦ ।
ଦୁଇକୁଳ ବାଦ୍ୟକୁ ବଳିଣ ଗାଣ୍ଡୀବ
ଧ୍ୱନିଟି କଲା ଏକା ଆକାଶରେ ଠାବ ।
ଏହି ସମୟରେ ମୁଁ ଗଲି ଦ୍ରୋଣଠାକୁ
ଦେଖିବାକୁ ଯୁଦ୍ଧେ ଦ୍ରୋଣଙ୍କ ବିକ୍ରମକୁ ।
ଯୁଧିଷ୍ଠିର ସେନାଏ ପାର୍ଥ ବଳ ପାଇ
ତୁମ୍ଭ ସେନାଯାକ ମାଇଲେ ନରସାଇଁ ।

ଇନ୍ଦ୍ରପରି ଅର୍ଜୁନ ବିକ୍ରମ ଦେଖାଇ
ଯୁଝିଲେ ତୁମ୍ଭ ସେନା ଯାକେ ମହୀସାଇଁ ।
ତୁମ୍ଭର କେହି ତାଙ୍କୁ ନିବାରି ନ ପାରି
ରହିଥିଲେ ଧନୁଶର ମାତ୍ରକ ଧରି ।
ଅର୍ଜୁନ କାଣ୍ଡରେ ହରାଇ ଦେହ ଜ୍ଞାନ
ପଳାଇଲେ କରିଣ ସପକ୍ଷ ନିଧନ ।
ପାର୍ଥଙ୍କ ହାତକାଣ୍ଡ ପତଙ୍ଗ ପରାୟେ
ଦିଶିଲା ଯୁଦ୍ଧଭୂମି-ନଭେ କୁରୁରାୟେ ।
ହାତୀ ଘୋଡ଼ା ପାଇକମାନଙ୍କୁ ନିକିଳି
ଅରଜୁନ କାଣ୍ଡ ରହିଲେ ମହୀ ଚଳି ।
କାଣ୍ଡକରୁ ଦିକାଣ୍ଡ କାକୁ ବାଚି ନାହିଁ
ମରି ତୁମ୍ଭ ଯୋଦ୍ଧା ଭେଟିଲେ ପ୍ରେତସାଇଁ ।
ଗୃଧ୍ର କାକ ବକ ଯେ ବିଲୁଆ ଆନନ୍ଦ
କଲା ଏକା ରାଜନ ଅର୍ଜୁନ ସେ ଦ୍ୱନ୍ଦ୍ୱ ।
ପ୍ରାଣ ରକ୍ଷଣରେ ସମସ୍ତେ ବୁଦ୍ଧି ଧରି
ପଳାଇଲେ ବାପେ ପୁଅକୁ ଛାଡ଼ିକରି ।
ପୁଅ ସେହିରୂପରେ ଛାଡ଼ିଣ ବାପକୁ
ବାହାରିଗଲା ଯା ଜୀବନ ରଖିବାକୁ ।
ଧୃତରାଷ୍ଟ୍ର ବୋଇଲେ ଶୁଣ ହେ ସଞ୍ଜୟ
ଶୁଣିଲ ତ ଯୁଦ୍ଧରେ ବିଜୟର ଜୟ ।
ତୁମ୍ଭେ ସେ ଯୁଦ୍ଧ ଦେଖି କି ବିଚାର କଲ
ଏହା ମୋତେ କିଛି ଫିଟାଇ ନ କହିଲ ।
ଭାଜିବା ସଇନକୁ ଲେଉଟାଇ ଆଣି
କରିବାର କଷ୍ଟ ତ ଅଟଇ ଆରଣି ।
ସଞ୍ଜୟ ବୋଇଲେ ତୁମ୍ଭର ପ୍ରିୟ ଇଚ୍ଛା
କଲେ ଯେତେ ଥିଲେ କ୍ଷତ୍ରିୟକୁଳବଚ୍ଛା ।
କରପୁଟରେ ଧନୁ ଶରମାନ ଧରି
ଧାଇଁ ଯୁଦ୍ଧ ହେଲେ ଦ୍ରୋଣଙ୍କ ରକ୍ଷାକାରୀ ।
ସାତ୍ୟକି ଧୃଷ୍ଟଦ୍ୟୁମ୍ନ ଭୀମ ସମୀପକୁ
ଆସିଲେ ତୁମ୍ଭ ସେନା ଯୁଦ୍ଧ କରିବାକୁ ।
ପାଞ୍ଚାଳମାନେ ଦ୍ରୋଣ ବୃନ୍ଦେ ମାର ମାର
ବୋଲିକରି ସରଜିଲେ ସେ ଯୁଦ୍ଧେ ଶର ।
ତୁମ୍ଭ ପୁଅମାନଙ୍କ ସେନାରେ ଦ୍ରୋଣଙ୍କୁ
ରଖ ରଖ ବୋଲି ଶୁଣିଲୁ ବଚନକୁ ।
ଏହିରୂପେ କୁରୁ ପାଣ୍ଡବ ଦୁଇ ସେନା
ଦ୍ରୋଣ ରକ୍ଷା ନାଶରେ ହୋଇ କୋପମନା ।
ମହତ ସଙ୍କୁଳରେ ଯୁଦ୍ଧ ଆରମ୍ଭିଲେ
ମାରିବା କଥାଟି ହୃଦରୁ ଛାଡ଼ିଦେଲେ ।
ଯେଉଁ ଯେଉଁଠାରେ ପାଞ୍ଚାଳ ରଥଜାଳ
ନାଶକଲେ ଦ୍ରୋଣ ପେଷିଣ ଶରମାଳ ।

ସେହି ସେହିଠାକୁ ଧୃଷ୍ଟଦ୍ୟୁମନ ବୀର
ଧାଇଁଯାଇ କରନ୍ତି ଦ୍ରୋଣଙ୍କୁ ସମର ।
ଅମର୍ଯ୍ୟାଦା ହୋଇଣ ପ୍ରବର୍ତ୍ତନ୍ତେ ରଣ
ପାଇଲେ ଦୁଇକୁଳ ସେନାଏ ମରଣ ।
ଯୁଦ୍ଧେ ତୁମ୍ଭ ସେନାଏ ବୁଦ୍ଧିବଶା ହୋଇ
ପାଣ୍ଡବଙ୍କୁ ଯୁଝିଲେ ଜୟ ନେବା ପାଇଁ ।
ପାଣ୍ଡବେ ତ କରିଲେ ପ୍ରାଣଛଡ଼ା ଯୁଦ୍ଧ
କରିବାକୁ କୁରୁମାନଙ୍କୁ ରଣେ ବଧ ।
ଏ ସକାଶୁଁ କୁଆପଥର ପରି ବୃଷ୍ଟି
ହୁଅନ୍ତେ ଶର ପୂରିଗଲା ଯୁଦ୍ଧ ସୃଷ୍ଟି ।
ବୃଦ୍ଧମାନେ ସେ ଯୁଦ୍ଧ ଦେଖି ପ୍ରଶଂସିଲେ
ଏରୂପେ ଯୁଦ୍ଧ ଦେଖିନାହୁଁ ସେ ବୋଇଲେ ।
ହାତୀ ଘୋଡ଼ା ମରି ପଡ଼ିବାରେ ଏ ମହୀ
ଚଳିଲା ପରାୟେ ଦିଶିଲା ନରସାଇଁ ।
ସପ୍ତସଂଖ୍ୟା ସୈନ୍ୟ ପାଣ୍ଡବମାନଙ୍କର
ତୀକ୍ଷଣରେ ଗୁରୁ ମାଇଲେ ତୁମ୍ଭର ।
ସେହିକାଳେ ଧୃଷ୍ଟଦ୍ୟୁମନ ମହାରଥ
ଯୁଦ୍ଧକଲେ ଦ୍ରୋଣଙ୍କୁ ହୋଇ ଧନୁ ହାତ ।
ଦ୍ରୋଣ ଧୃଷ୍ଟଦ୍ୟୁମ୍ନ ଦୁହିଁଙ୍କର ରଣକୁ
ପଟାନ୍ତର ନାହିଁ କରିବା କି ତୁମ୍ଭଙ୍କୁ ।
ଅନଳ ପରି ଶର ବିନ୍ଧି ନୀଳସାଇଁ
କୁରୁ ସେନାଯାକକୁ ନୃପ ଦେହେ ଦହି ।
ନୀଳଙ୍କର ଦେଖି ଏରୂପ ପରାକ୍ରମ
ହସିଲେ ଅଶ୍ୱଥାମା ଦେହେ ବହି ତମ ।
ପୂର୍ବୁଁ ତ ତାଙ୍କ ସଙ୍ଗେ ଯୁଝିବାକୁ ମନ
ଥାଏ ତ ତାଙ୍କୁ ଦେଖି ନୋହିଲେ ବିମନ ।
ବୋଇଲେ ହେ ନୀଳ ତୁମ୍ଭର ଯେତେ ବଳ
ଦେଖାଅ ଧରି ଧନୁଶର କରତଳ ।
ପ୍ରାକୃତଲୋକ ନାଶ କଲେ କି ଯୁଦ୍ଧେ ଲୋକ
ବୋଲାଇବ କହ ତ ବୀରଙ୍କ ନାୟକ ।
ଏହା ଶୁଣି ନୀଳ ଧନୁରେ ଶର ଯୋଚି
ଅଶ୍ୱଥାମାଙ୍କର ଦେହକୁ ଦେଲେ ମୁଞ୍ଚି ।
ନୀଳଙ୍କରେ ବିଦ୍ଧ ହୁଅନ୍ତେ ଅଶ୍ୱଥାମା
ଅଟନ୍ତି ତ ସେ ଯୁଦ୍ଧେ ମହତକରମା ।
ତିନି ଭାଲକାଣ୍ଡରେ ଧନୁ ଧ୍ୱଜ ଛତ୍ର
ପକାଇଲେ ତଳେ ଥରାଇ କ୍ରୋଧେ ଗାତ୍ର ।
ଢାଲ ଖଣ୍ଡା ଧରି ଡିଅନ୍ତେ ନୀଳରାଜା
ଦ୍ରୋଣଙ୍କ ସୁତ ଅଶ୍ୱଥାମା ମହାତେଜା ।
ଭାଲିକାଣ୍ଡରେ ନୀଳ ରାଜାଙ୍କର ମୁଣ୍ଡ
କାଟିକରି ପକାଇଦେଲେ ରଣଦାଣ୍ଡ ।

ଅଶ୍ୱଥାମା କଲରେ ନୀଳ ବିତିହୋତ୍ର
ଯାଆନ୍ତେ ଲଭି ପାଣ୍ଡୁ ସେନା ଭୟେ ଗାତ୍ର ।
ଥରାଇଣ ଯୁଦ୍ଧ ମଧରୁ ପଳାଇଲେ
ତ୍ରାଣକାରୀ ଯୁଦ୍ଧେ କାହାକୁ ନ ଦେଖିଲେ ।
ପାଣ୍ଡବମାନଙ୍କର ଯେତେ ମହାରଥ
ଥିଲେ ସେ ଯୁଦ୍ଧେ ସୁମରିଲେ ମନେ ପାର୍ଥ ।
ସୈନ୍ୟଙ୍କ ବିକଳ ନ ସହି ଭୀମବଳୀ
ବିନ୍ଧିଲେ ବାହ୍ଲିକେ ଷାଠିଏ କାଣ୍ଡ ଚଳି ।
କର୍ଣ୍ଣଙ୍କର ଦେହକୁ କରି ମହାକୋପ
ବିନ୍ଧିଲେ ବାଛି ଭୀମ ଦଶଗୋଟି ରୋପ ।
ଭୀମଙ୍କର ପ୍ରାଣଟି ଦ୍ରୋଣ ନେବା ଭାଳି
ମର୍ମକୁ ବିନ୍ଧିଲେ ଚବିଶକାଣ୍ଡ ଚଳି ।
ସେ ସମୟେ ଭୀମଙ୍କୁ ତୁମ୍ଭ ସୁତ ସୃନୁ
ଦୁହେଁ ଦଶକାଣ୍ଡ ବିନ୍ଧିଲେ ଧରି ଧନୁ ।
ଦୁର୍ଯ୍ୟୋଧନ ଛକାଣ୍ଡ ଅଶ୍ୱଥାମା ସାତ-
କାଣ୍ଡ ଯୁଦ୍ଧେ ବିନ୍ଧିଲେ ହେବାକୁ ଭୀମ ଅସ୍ତ ।
ଭୀମ ଏ କାଣ୍ଡମାନ ଅଙ୍ଗରେ ବହିଲେ
ପଚାଶଗୋଟି କାଣ୍ଡ ଦ୍ରୋଣଙ୍କୁ ବିନ୍ଧିଲେ ।
ଦୁର୍ଯ୍ୟୋଧନ ରାଜାଙ୍କୁ ବିନ୍ଧିଲେ ଦ୍ୱାଦଶ
ଦଶ ବିନ୍ଧିଣ ବିଚାରିଲେ କର୍ଣ୍ଣ ନାଶ ।
ଦ୍ରୋଣୀଙ୍କର ଦେହକୁ ଆଠକାଣ୍ଡେ ମଣ୍ଡି
ଗରଜିଲେ ଭୀମ ଫୁଲାଇଦେଇ ଗଣ୍ଡି ।
ଭୀମସେନ ରଥକୁ ରଥୀଏ ଆବୃତ-
ହେବା ଦେଖି ଯୁଧିଷ୍ଠି ହୋଇଣ ତରସ୍ତ ।
ଯୋଦ୍ଧାଙ୍କୁ ବୋଇଲେ ଭୀମଙ୍କୁ ଜଗ ଯାଇ
କିସ ଯୁଦ୍ଧ ଆଉ କରୁଛ ଏଥି ରହି ।
ଯୁଧିଷ୍ଠିର ରାଜାଙ୍କ ଶୁଣି ଏ ବଚନ
ନକୁଳ ସହଦେବ ସତ୍ୟକନନ୍ଦନ ।
ସଙ୍ଗତରେ ଧରିଣ ଯୋଦ୍ଧାଙ୍କର ତୁଲେ
ଭୀମଙ୍କୁ ଯୁଦ୍ଧେ ରଖିବାକୁ ବାହାରିଲେ ।
ରଥୀ- ସମୁଦ୍ରରେ ଦ୍ରୋଣଙ୍କ ଜଳ-ବଳ
ହୋଇ ତ ଥିଲେ ଶସ୍ତ୍ର ସଙ୍ଗରେ ସଙ୍କୁଳ ।
ରଥ-ବୋଇତକୁ ଆରୋହିଣ ସାତ୍ୟକି
ପ୍ରବେଶ ହେଲେ ଧନୁଶର-କାତ ଟେକି ।
ନକୁଳ ସହଦେବ ଦୁହେଁ ଧରି ସୈନ୍ୟ
ମଣ୍ଡିଥିଲେ ସାତ୍ୟକିଙ୍କର ପୃଷ୍ଠସ୍ଥାନ ।
ଦ୍ରୋଣ ସାତ୍ୟକାଦି ରଥିଙ୍କି ସେ ନ ଡରି
ଯୁଦ୍ଧ କରିଲେ କରେ ଧନୁକୁ ଉଭାରି ।
ପ୍ରତ୍ୟେକେ ପାଇକ ସିପାହୀ ରଥୀ ହାତୀ
ଯୁଦ୍ଧ କଲେ ଅନ୍ୟୋନ୍ୟେ ନେବେ ବଳ ମଛି ।

ପର୍ଶୁପ୍ରାସ ଦୁହେଁ ବାଜନ୍ତେ.ଯୋଦ୍ଧାଙ୍କର
ନ ପାଇ ପ୍ରାଣ ଯୁଦ୍ଧ କଲେ ନିରନ୍ତର ।
ଶକତିଧରାମାନେ ଶକତି ଦେଖାଇ
ମରାମରି ହୋଇଲେ ଜୟ ନେବାପାଇଁ ।
କାଣ୍ଡ ବାଜିଣ ହାତୀ ପଡ଼ନ୍ତେ ଗରଜି
ତା ଦେଖି ବଳେ ନେତ୍ର ହୋଇଗଲା ବୁଜି ।
ପୁଣ୍ୟହୀନେ ଆକାଶୁ ପଡ଼ିଲା ପରାୟେ
ପଡ଼ିଲେ ଅଶ୍ୱ-ଆକାଶରୁ ସିପାହିଏ ।
ପାଇକଙ୍କର ମରିବାର ତ କଳନା
ନ ଗଲା ସେ ଯୁଦ୍ଧରେ ଜାଣ ମହାମନା ।
ଘାଉଥା ହୋଇ ଯେତେ ହାତୀ ଥିଲେ ଶୋଇ
ତେତେକକୁ ହାତୀ ଚକଟି ଦେଲେ ଯାଇ ।
ବିଷାଣରେ ଯେ ରଥିମାନଙ୍କର ଅନ୍ତ
କାଢ଼ିଲେ ଯେ ହାତୀରେ ଥିଲେ ବଳବନ୍ତ ।
ଅଶ୍ୱ ରଥ କୁଞ୍ଜର ପାଇକମାନଙ୍କୁ
ଚକଟିଲେ ହାତୀଏ ଧରି ବିକ୍ରମକୁ ।
ବାବୁ ପୁଅ ମାମୁଁ ଭଣଜା ଯେ ଜୁଆଁଇ
ମରାମରି ହୋଇ ଶୋଇଲେ ରଣଭୂଇଁ ।
ଧ୍ୱଜ ଛତ୍ର ଅଖ ଚାମର ଯେ ଅନେକ
ପଡ଼ିଣ ରାଜନ ମଣ୍ଡିଲା ତଳଯାକ ।
ଛାଡ଼ିଯାନ୍ତେ ଜୋତା ଯୁଆଳି କାନ୍ଧେ ବାହି
ଘୋଡ଼ାମାନେ ରଥୁଁ ଭାଜିଲେ ଭୟ ପାଇ ।
କୁଣ୍ଡଳ ତୁଲେ ମୁଣ୍ଡ ଶଣ୍ଢା ତୁଲେ ଭୁଜ
ଛିଡ଼ି କରି ତଳେ ପଡ଼ିଲା ମହାରାଜ ।
କେତେ ହାତୀମାନେ ରଥକୁ ଦେଇ ଟେକି
ତଳରେ ଛେଚିକରି କଲେ ଟିକିଟିକି ।
ରଥୀମାନଙ୍କର ବାଜନ୍ତେ ଯେ ନାରାଚ
ହାତୀମାନଙ୍କର ଛିଡ଼ିଲା ଗୋଡ଼ ମଞ୍ଚ ।
ବାଜିଙ୍କର ଦେହରେ ଗଜଦନ୍ତ ବାଜି-
ଯାଆନ୍ତେ ଘୋଡ଼ାମାନେ ପଡ଼ିଲେ ଗରଜି ।
ଘୋଡ଼ାଙ୍କ ପିଠିରେ ସିପାହୀ ଯେତେ ଥିଲେ
ମାହୁନ୍ତଙ୍କ କୁନ୍ତରେ ଅନ୍ତ କଢ଼ାଇଲେ ।
ନିମର୍ଯ୍ୟାଦା ହୋଇ ତ ଯୁଦ୍ଧେ ପ୍ରବର୍ତ୍ତିଲେ
ଏଣୁ ପର ଆପଣା ଜାଣି ନ ପାରିଲେ ।
ବାବୁ ଭାଇ ମିତ ମଉଳା ଯେ ଶ୍ୱଶୁର-
ମାନଙ୍କର ନାମ ଧରିଣ ଯୋଦ୍ଧା ନର ।
ପାଡ଼ିଲେ ଉଚ୍ଚେ ଡକା ରଖ ରଖ ବୋଲି
କେତେ ମଲେ ଡାକୁ ଡାକୁଟି ପାଟି ମେଲି ।
ରକତରେ ଓଦା ହେଲା ତ ରଣପଦା
ତା ଦେଖି ଭୟାଳୁ ଭାଜିଲେ ଗଦା ଗଦା ।
ମିଶାମିଶି ହୋଇଣ ଯୁଝନ୍ତେ ଯୋଦ୍ଧାଏ
ବହୁତ ଯୋଦ୍ଧା ତହିଁ ମଲେ ଗଦାଘାଏ ।
କେତେ ଯୋଦ୍ଧା ତହିଁ ଦେଖାଇ ବୀରପଣ
ଧରାଧରି ହୋଇ ଭେଟିଲେ ଯମରାଣ ।
କେତେ ଯୋଦ୍ଧାଟି ଚୋବା ଚୋବି ଛିଣ୍ଡାଛିଣ୍ଡି
ହୋଇଣ ରଣଦାଣେ ପଡ଼ିଲେ ଦରାଣ୍ଡି ।
ଅଙ୍କୁଶ ଶର ଧନୁ ଶକତି ଖଡ୍‌ଗ-
ମାନଙ୍କରେ ଛିଡ଼ନ୍ତେ କାହା ଭୁଜଭାଗ ।
ବାଡ଼ିବଜା ଭୋଗୀ ଯେ ଭୋଗର ଚେଷ୍ଟାକୁ
ନିନ୍ଦିଲେ ହେ ରାଜନ ଆଣ ସେ ମନକୁ ।
ଡକାଡ଼କି ହୋଇଣ କେତେ ଯୁଦ୍ଧ କଲେ
କେତେ ଯୋଦ୍ଧା ଯୁଦ୍ଧ ଦେଖିଣ ପଳାଇଲେ ।
କେ କାହାର ଗଳାକୁ ମାରି କରବାଳ
କାଟି ପକାଇଲା ଧରିଣ କରି ବାଳ ।
ଯୁଦ୍ଧ ଶବଦକୁ ଶୁଣି କେ ପଳାଇଲେ
ନ ଚିହ୍ନି କେ ଆପଣା ଲୋକଙ୍କୁ ମାଇଲେ ।
ନଦୀତଟ ଅତଡ଼ା ପଡ଼ିଲା ପରାୟେ
ଗିରିଶୃଙ୍ଗ ପରି ପଡ଼ିଲେ ହସ୍ତୀରାୟେ ।
ଶରମାନଙ୍କର ଯେ ପ୍ରହାରକୁ ଦେଖି
ଭୟାଳୁମାନେ ଭୟେ ବୁଜିଦେଲେ ଆଖି ।
ପାଦଧୂଳିରେ ଯେଣୁ ସଇନ ଆବୃତ
ହୋଇଲା ଏଣୁ କିଛି ନ ଦିଶିଲା ନେତ୍ର ।
ଧୃଷ୍ଟଦ୍ୟୁମନ ଯେ ସେ ଯୁଦ୍ଧରେ ଦ୍ରୋଣଙ୍କୁ
ଦେଖିକରି କହିଲେ ପାଣ୍ଡବମାନଙ୍କୁ ।
ଆମ୍ଭ କାଳ ଦେବତା ଦ୍ରୋଣଟି ଅଟଇ
ଚାଲ ତା ବାଳ ଧରି ହାଣିମା ବେଗେ ଯାଇ ।
ତା ଶୁଣି ପାଣ୍ଡବେ ଦ୍ରୋଣଙ୍କ ରଥଠାକୁ
ଧିଆଁଇଲେ ଯେ ଯାହା ରଥର ଘୋଡ଼ାକୁ ।
ସରସୀରେ ଯେମନ୍ତ ପଶେ ଆସି ହଂସ
ପଶିଲେ ପାଣ୍ଡୁ ସୁତେ ଜାଣ ସେ ସଦୃଶ ।
ଦ୍ରୋଣଙ୍କ ରଥ ପାଶେ ମାର ଧର ଧ୍ୱନି
ସ୍ତବ୍ଧ କରିଦେଲା ସବୁରି କର୍ଣ୍ଣବେନି ।
କୃପ କର୍ଣ୍ଣ ଅଶ୍ୱଥାମା ଯେ ଜୟଦ୍ରଥ
ବିନ୍ଦ ଅନୁବିନ୍ଦଟି ଶଲ୍ୟ ମହାରଥ ।
ଏହି ଧନୁ ଧରି ପାଣ୍ଡବ ପାଞ୍ଚାଳଙ୍କୁ
ନିବାରିଲେ ବରଷି ମାର୍ଗଣଗଣଙ୍କୁ ।
ପାଣ୍ଡବ ପାଞ୍ଚାଳେ ସେ ମାର୍ଗଣକୁ ଭୟ-
ନ କରି ଯୁଦ୍ଧ କଲେ ସେ ତ ଯୁଦ୍ଧପ୍ରିୟ ।
ଦ୍ରୋଣ ତା ନ ସହି ଚେଦି ପାଞ୍ଚାଳଙ୍କୁ
ବାଣ ବିନ୍ଧି କରି ରଚିଲେ ଆରତକୁ ।

ଦ୍ରୋଣଙ୍କ ଜ୍ୟାଘୋଷ ଶୁଭନ୍ତେ ବଜ୍ରପରି
ନ ପାରିଲେ ପାଣ୍ଡୁ ସେନାଏ ଶସ୍ତ୍ର ଧରି ।
ଏହି ସମୟରେ ଯେ ସଂଶପ୍ତକ ଗଣ-
ମାନଙ୍କୁ ଅରଜୁନ ଯୁଦ୍ଧରେ ମାରିଣ ।
ଦ୍ରୋଣଙ୍କ ଯୁଝୁଥିବା ପାଶ ହେଜି ହେଜି
ଆସିଲେ ହେ ରାଜନ ସୃଜି କାଣ୍ଡରାଜି ।
ଅର୍ଜୁନଙ୍କ ବାନରଧ୍ୱଜ ଜଳିଉଠେ
ଦେଖାଇଲେ ଶତ୍ରୁସେନାଙ୍କର ଯେ ପିଠି ।
ସଂଶପ୍ତକ ସିନ୍ଧୁକୁ ଯୁଗାନ୍ତ ଅର୍କପରି
ଅର୍ଜୁନ ଶରରେ ତ ଥିଲେ ଗ୍ରାସ କରି ।
ପୁଣି ଦ୍ରୋଣସେନା-ସିନ୍ଧୁକୁ ସେହିରୂପେ
ଶୁଖାଇଦେବା ବୋଲି ଆସିଲେ ଆପେ ।
ପ୍ରଳୟଅଗ୍ନି ପରି ଅଟେ ତାଙ୍କ ତେଜ
ପୁଣି ତ ଯୁଦ୍ଧ କରିପାରନ୍ତି ଆଶ୍ଚର୍ଯ୍ୟ ।
ଗାଣ୍ଡୀବରୁ ବାହାର କରି ଶରାନଳ
ପୋଡ଼ିଦେଲେ-ରାଜନ ତୁମ୍ଭ ସୈନ୍ୟ ବଳ ।
କିରୀଟୀର କାଣ୍ଡରେ ହାତୀ ଘୋଡ଼ାକୁଳ
ମରନ୍ତେ ପୁରିଗଲା ଯମଙ୍କର ଆଳ ।
ଯୋଦ୍ଧାଏ ତୁମ୍ଭର ରାଜନ ଅତି ଆର୍ତ୍ତେ
ପଡ଼ିଲେ ଶୋଇ ଶୋଇ ରଥଯିବା ଗର୍ତ୍ତେ ।
ଅରଜୁନ ତା ଦେଖି ଦୟାହୃଦ ହେଲେ
ତଳେ ଶୋଇପଡ଼ିବା ଲୋକେ ନ ମାଇଲେ ।
ଏ ବାହାରେ ଯେତେକ ଲୋକ କଲେ ପିଠି
ତାହାଙ୍କୁ ନ ବିନ୍ଧିଲେ ଧରି ଧନୁମୁଷ୍ଟି ।
କୁରୁମାନେ ତୁମ୍ଭର ହୋଇଣ ତାଟକା
ରଖ କର୍ଣ୍ଣ ବୋଲି ପାଡ଼ିଲେ ଉଚ୍ଚେ ଡକା ।
କର୍ଣ୍ଣ କୁରୁମାନଙ୍କ ଡାକ କର୍ଣ୍ଣେ ଶୁଣି
ବାହାରିଲେ ହୋଇଣ ଶରଚାପପାଣି ।
କୁରୁଙ୍କୁ ବୋଇଲେ ହେ ନ ପଳାଅ ତୁମ୍ଭେ
ଅର୍ଜୁନଙ୍କୁ ଯୁଝିବାକୁ ତ ଅଛୁଁ ଆମ୍ଭେ ।
ଏହା କହି ଆଗ୍ନେୟ ଅସ୍ତ୍ର କର୍ଣ୍ଣ ବୀର
ବିନ୍ଧିଲେ କରିବାକୁ ପାର୍ଥଙ୍କୁ ସଂହାର ।
ଅର୍ଜୁନ ସେ ଆଗ୍ନେୟ ଅସ୍ତ୍ର କରେ ଶାନ୍ତି
କରି ବଢ଼ାଇଲେ ଆପଣାର କୀରତି ।
କର୍ଣ୍ଣକୁ ବଜାଇଣ ବହୁତ ବିଶିଖ
ବିନ୍ଧିଲେ ପାର୍ଥ ଧନୁର୍ଦ୍ଧରଙ୍କର ଶିଖ ।
କର୍ଣ୍ଣ ଅର୍ଜୁନଙ୍କ ବାଣକୁ ସେ ନିବାରି
ଅର୍ଜୁନଙ୍କୁ ବରଷିଲେ ସେ ଶରବାରି ।
ଏ ସମୟେ ଭୀମ ସାତ୍ୟକି ଧୃଷ୍ଟଦ୍ୟୁମ୍ନ
ବିନ୍ଧିଲେ ତିନି ତିନି କର୍ଣ୍ଣକୁ ବହନ ।
କର୍ଣ୍ଣ କର୍ଣ୍ଣଯାଏ ଓଟାରିଣ ଧନୁକୁ
କାଟି ପକାଇଲେ ସେ ତିନିଙ୍କ ଚାପକୁ ।
ସେ ତିନିହେଁ ଛିଡ଼ା ଧନୁକୁ ରଥେ ଥୋଇ
ଫିଙ୍ଗିଲେ ତିନିଗୋଟି ଶକ୍ତି କ୍ରୋଧ ହୋଇ ।
ଆକାଶେ ସର୍ପ ପରି ଶକତିଏ ଚାଣ୍ଡେ
ଆସନ୍ତେ କର୍ଣ୍ଣ ତା କାଟିଲେ ଭାଲି କାଣ୍ଡେ ।
ଗରଜନ କରି ଯୁଦ୍ଧରେ କର୍ଣ୍ଣ ଭେଣ୍ଡା
ଅର୍ଜୁନଙ୍କୁ କାଣ୍ଡ ବିନ୍ଧିଲେ ଗଣ୍ଡା ଗଣ୍ଡା ।
ଅରଜୁନ କର୍ଣ୍ଣଙ୍କୁ ବିନ୍ଧି ସାତ କାଣ୍ଡ
ତିନି କାଣ୍ଡେ କାଟିଲେ କର୍ଣ୍ଣଭାଇ ମୁଣ୍ଡ ।
ଛ କାଣ୍ଡରେ ଶତ୍ରୁଞ୍ଜୟର ପ୍ରାଣ ନେଲେ
ବିପାଠ ଶିରକୁ କାଟିଲେ ଭଲ୍ଲ ଭାଲେ ।
କର୍ଣ୍ଣଙ୍କ ତୁଲେ ତୁମ୍ଭ ପୁଅମାନେ ଏହା
ଦେଖୁଚି ଥିଲେ ଯୁଦ୍ଧ ହୋଇ ଧନୁର୍ବାହା ।
ଖଣ୍ଡା ଧରି ଭୀମ ରଥରୁ ଅବତରି
କର୍ଣ୍ଣପକ୍ଷୁ ପନ୍ଦରଜଣ ଦେଲେ ମାରି ।
ପୁଣି ରଥେ ବସିଣ ଆନ ଧନୁ ଧରି
ବିନ୍ଧିଲେ ଦଶ କାଣ୍ଡ କର୍ଣ୍ଣେ ବାଛି କରି ।
କର୍ଣ୍ଣଙ୍କ ସାରଥି ଘୋଡ଼ାକୁ ପାଞ୍ଚ କାଣ୍ଡ
ଭୀମ ଯେ ବିନ୍ଧିଲେ କମ୍ପାଇ କ୍ରୋଧେ ପିଣ୍ଡ ।
ଢାଲ ଖଣ୍ଡା ଧରିଣ ଦ୍ରୁପଦନନ୍ଦନ
ରଥୁଁ ଅବତରି କରନ୍ତେ ଆୟୋଧନ ।
ଚର୍ମବର୍ମା ବୃହତକ୍ଷେତ୍ର ପଉରବ
ଏ ତିନିଙ୍କି ଦେଲେ ଯମଙ୍କ ପୁରେ ଠାବ ।
ପୁଣି ରଥେ ବସିଣ ଧୃଷ୍ଟଦ୍ୟୁମ୍ନ ଭେଣ୍ଡା
ଅଣ୍ଟାଖାପ ମଧରେ ପକାଇଣ ଖଣ୍ଡା ।
ଧନୁଟାଏ ଧରିଣ କର୍ଣ୍ଣଙ୍କର ପିଣ୍ଡ
କାଟିବାକୁ ବିନ୍ଧିଲେ ତେସ୍ତରୀଟି କାଣ୍ଡ ।
ସାତ୍ୟକି ଛିଡ଼ା ଧନୁ ରଥରେ ପକାଇ
ଅପର ଧନୁଟାରେ ଗୁଣକୁ ଚଢ଼ାଇ ।
ଗଣି ଗଣି କରି ଚଉଷଠିଟି କାଣ୍ଡ
ବିନ୍ଧିଲେ କର୍ଣ୍ଣକୁ ମଣ୍ଡିଲା ଯୁଦ୍ଧଦାଣ୍ଡ ।
ଭାଲି କାଣ୍ଡରେ କର୍ଣ୍ଣଙ୍କର ଧନୁ କାଟି
ବିନ୍ଧିଲେ ତାଙ୍କ ବକ୍ଷସ୍ଥଳକୁ ତିନୋଟି ।
ସାତ୍ୟକି ସମୁଦ୍ରରେ କର୍ଣ୍ଣଙ୍କ ମଗନ-
ହେବାର ଦେଖିଲେ ହେ ଦୁର୍ଯ୍ୟୋଧନ ଦ୍ରୋଣ ।
ଜୟଦ୍ରଥ ମଧରେ ହୋଇଥିଲା ସାହା
ମୋ କଥାରୁ ଜାଣ ହସ୍ତିନାନରନାହା ।
ମଲେ କର୍ଣ୍ଣେ ବୋଲି ସେନାଏ ଗୋଟି ହୋଇ
ଧାଇଁଲେ କର୍ଣ୍ଣଠାକୁ ଅତି ତ୍ୱରା ହୋଇ ।

ଧୃଷ୍ଟଦ୍ୟୁମନ ରାମ ସୌଭଦ୍ର ଅର୍ଜ୍ଜୁନ
ନକୁଳ ସହଦେବ ଆଦି ରଥିଜନ ।
ମାନେ ଧନୁ ଧରି ଆବୋରି ସାତ୍ୟକିଙ୍କି
ଯୁଦ୍ଧ କରିବାକୁ ରହିଲେ ରାୟେ ଟାକି ।
ହୋଇବାକୁ ରାଜନ କୁରୁ ପାଣ୍ଡୁ କ୍ଷୟ
ହୋଇଲା ଏହି ରୂପେ ଯୁଦ୍ଧଟା ଉଦୟ ।
ପରସ୍ପରେ ଯୁଦ୍ଧକୁ ଚତୁରଙ୍ଗ ସେନା
କରନ୍ତେ ନେଲେ ଯମ କରି ସମ୍ଭାବନା ।
ବିଲୁଆଏ ଯେ ହୁଆ ହୁଆ ଧ୍ୱନି କରି
ଆସିଲେ ଯୋଦ୍ଧାଙ୍କ ଶବକୁ ହେରି ହେରି ।
ଗଜଙ୍କରେ ଗଜ ଯେ ରଥିଙ୍କରେ ରଥୀ
ହୟଙ୍କରେ ହୟ ମଲେଟି ହୋଇ ବ୍ୟଥୀ ।
ପାଇକକୁ ପାଇକମାନେ ଖଣ୍ଡା ଟେକି
ହାଣିକରି ଛିଣ୍ଡାଇଦେଲେ ମୁଣ୍ଡଟିକି ।
ପରସ୍ପରେ ଦୁଇ ସେନାଏ ପିଟାପିଟି
ହୁଅନ୍ତେ ସେ ଯୁଦ୍ଧେ ପଡ଼ିଲେ ଭୂମି ଲୋଟି ।
ଚକଟି ଯାନ୍ତେ ହସ୍ତୀ କାହାର ପେଟ ଅନ୍ତ
ବାହାରି ଦିଶୁଅଛି ହୋଇଣ ବ୍ୟକତ ।
କାହାର ନାକ କାନ ଯାଇଅଛି ଛିଡ଼ି
ବାଜିବାରୁ ରଥୀମାନଙ୍କ ଶରଧାଡ଼ି ।
କାହାର ଘୋଡ଼ାଙ୍କର ଟାପୁଘାତ ପାଇ
ଅଣ୍ଟାହାଡ଼ଟି ଯାଇଅଛି ଦଳି ହୋଇ ।
କାହାର ଆଖି କାନେ ବାଜିଅଛି କାଣ୍ଡ
ରକତରେ କାହାର ହୋଇଛି ରଙ୍ଗ ତୁଣ୍ଡ ।
ଯକ୍ଷ ରାକ୍ଷସଙ୍କର ପ୍ରମୋଦନ ଯୁଦ୍ଧ
ହୁଅନ୍ତେ ଯୁଝିଲେ ଯୋଦ୍ଧାଏ ବହି କ୍ରୋଧ ।
ଏରୂପେ ଯୁଦ୍ଧ କରି ଦୁଇ ସେନାଯାକ
ଛକିତରେ ରହିଲେ ନ ବିନ୍ଧି ଶାୟକ ।
ଶ୍ରମ ତ ଦେହେ ଆସି ହେଲା ଉପଗତ
ଏଣୁ ଯୁଦ୍ଧେ କାହାରି ତ ବଳିଲା ଚିତ୍ତ ।
ଅସ୍ତ ଗିରିଶିଖରେ ଛାୟା ଦେବୀସାଙ୍ଗେ
ରହିଲେ ତ କରମାନଙ୍କୁଟି ଲୁଚାଇ ।
ଏହା ଦେଖି ସେନାଏ ନ ପୁଛି କାହାକୁ
ଲେଉଟିଲେ ଯେ ଯାହା ବସାଟିମାନଙ୍କୁ ।
ଗାଣ୍ଡୀବ ଧନୁଙ୍କର ପାଇ ଶରଜାଳ
ବିମୁଖ ତ ହୋଇଥିଲେଟି ରଥିକୁଳ ।
ଏ ବାହାରେ କବଚଯାକ ଥିଲା ଛିଡ଼ି
ବାଜିବାରୁ ପାଣ୍ଡବଙ୍କର ଶରଧାଡ଼ି ।
ଦ୍ରୋଣ ଯୁଧିଷ୍ଠିର ରାଜାଙ୍କୁ ଧରିବାକୁ
ପ୍ରତିଜ୍ଞା କରିଥିଲେ ଲଭିଲେ ବିଫଳକୁ ।
ଏ ସକାଶୁଁ ଦ୍ରୋଣ ସେନାକୁ ଲେଉଟାଇ
ଆଣିଲେ ତାଙ୍କ ମନ ଜାଣି ନରସାଇଁ ।
ପାଣ୍ଡବ ସେନାଯାକ ତା ଦେଖି ହସିଲେ
କୃଷ୍ଣ ଅରଜୁନଙ୍କୁ ବହୁ ପ୍ରଶଂସିଲେ ।
କୁରୁଏ ଯିବା ଅନ୍ତେ ଆସି ଶିବିରକୁ
ଭୋଜନ ସ୍ନାନ ସାରି ପାରିଲେ କଡ଼କୁ ।
କୁରୁଏ ସେରୂପେ ଭୋଜନ ସ୍ନାନ ସାରି
ବସାମାନଙ୍କରେ ଶୋଇଲେ ଶେଯ ପାରି ।
କ୍ରମଶରେ ରଜନୀ ହୁଅନ୍ତେ ବହୁଳ
ନିଦ୍ରାକୁ ଆଶ୍ରେ କଲା ସବୁରିଙ୍କ ଡୋଳ ।
ଦ୍ୱିତୀୟ ଦିନ ଯୁଦ୍ଧ ହେଲା ସମାପତି
ହୃଦୟମଧ୍ୟେ ଭାବି ବସି ପଣନାତି ।
କୃଷ୍ଣସିଂହ ନରେଶ କହେ ଗୀତରସେ
ଏ ସଂସାର-ସିନ୍ଧୁ ତରିବା ପ୍ରତିଆସେ ।

•

## ଦ୍ରୋଣଙ୍କ ତୃତୀୟ ଦିନ ଯୁଦ୍ଧ

ଏଥୁ ଅନନ୍ତରେ ରଜନୀ ହେଲା ଶେଷ
ଧ୍ୱନି କଲେ ଗୃହରେ ବସିଣ ବାୟସ ।
ଉଦୟଦିଗ ନାରୀ ଭାଲରେ ସବିତା
ଦିଶିଲେ ଥିଲା ପରି ସିନ୍ଦୂରର ଚିତା ।
ଏହା ଜାଣିପାରି ଉଠିଲେ ଦୁଇ ସେନା
ଯୁଦ୍ଧରେ ତ ହୋଇଥିଲେ ସେ କ୍ରୋଧମନା ।
ଯେ ଯାହାର ସ୍ନାନ ଯେ ସନ୍ଧ୍ୟାକୁ ସାରିଲେ
ଧନୁ ସାଞ୍ଜୁ ଟୋପର ବୋହି ବାହାରିଲେ ।
ଏହିକାଳରେ ଦୁର୍ଯ୍ୟୋଧନ ଦଣ୍ଡଧାରୀ
ସ୍ନେହ ଥାଇ ଦ୍ରୋଣଙ୍କୁ ଅଭିମାନ କରି ।
କହିଲେ ଆହେ ଗୁରୁ ଯୁଧିଷ୍ଠିର ପାଖେ
ପଡ଼ି ତ ଥିଲେ ଧରିଥାନ୍ତ ଅତି ସୁଖେ ।
ଦୟା କରି ତାଙ୍କୁ କାଲି ଯା ନ ଧଇଲ
ଜାଣୁଛୁଁ ବାଞ୍ଛ ନାହିଁ ତୁମ୍ଭେ ଆମ୍ଭ ଭଲ ।
ଯେବେ ତୁମ୍ଭର ଶତ୍ରୁପକ୍ଷ ହେଲୁଁ ଆମ୍ଭେ
ଫିଟାଇ କହୁଅଛୁଁ ଦଣ୍ଡ ଦିଅ ତୁମ୍ଭେ ।
ଦେବରେ ରକ୍ଷିତ ପାଣ୍ଡବେ ହେବେ ଯେବେ
ତୁମ୍ଭ ଦୃଷ୍ଟିପଥୁଁ ନ ଯିବେ ବଞ୍ଚି ତେବେ ।
ଆଗ ମୋତେ ବରଟି ଦେଇ ଅନୁରାଗ
ପଛେ କଲ ପାଣ୍ଡବଙ୍କୁ ହେ ମହାଭାଗ ।
ଉତ୍ତମ ଲୋକଙ୍କର ନୁହଇ ଏ ମାର୍ଗ
ଭାଜିଲେ ସତ୍ୟ ପାଇ ନ ପାରନ୍ତି ସ୍ୱର୍ଗ ।
ଦ୍ରୋଣ ବୋଇଲେ ଆହେ ଲକ୍ଷ୍ମଣଙ୍କ ତାତ
ନ ବୋଲ ଏହା ବିଚାରୁଛି ତୁମ୍ଭ ହିତ ।

ଅସୁର ସୁର ଯକ୍ଷ ହେବେ ଯେବେ ଗୋଟି
ଯୁଦ୍ଧରେ ନ ପାରିବେ ଅର୍ଜ୍ଜୁନଙ୍କୁ ଯୋଟି ।
ଅର୍ଜ୍ଜୁନରେ ପାଳିତ ହେଲେ ଯୁଧିଷ୍ଠିର
କି କରିବି ବଳ ତ ନ ପାଇଲା ମୋର ।
ବିଶ୍ୱସରଜ୍ଜନ ବିଶ୍ୱକସେନ ହରି
କୃଷ୍ଣ ରହିଛନ୍ତି ସାରଥି ହୋଇ କରି ।
ଅର୍ଜ୍ଜୁନ ଧାନୁକୀମାନଙ୍କରେ ଦୁର୍ଲ୍ଲଭ
କେ ତାଙ୍କୁ ଯୁଦ୍ଧେ ଜିଣି କରିବ ଜୟଲାଭ ।
ଶିବ ତ ଏକା ମନ କଲେ ସେ ଦୁହିଙ୍କି
ପାରନ୍ତି ଯୁଦ୍ଧ କରି ଶିବଧନୁ ଟେକି ।
ଆଜି ଯୁଦ୍ଧେ ପାଣ୍ଡୁ ସେନାରୁ ମହାରଥ
ଜଣଙ୍କର ଭୂମିରେ ଲୋଟାଇବି ମାଥ ।
ସତ୍ୟ କରିଣ ଏହା କହୁଅଛି ମୁହିଁ
ଜାଣିଥାଅ ଆହେ ହସ୍ତିନା ନରସାଇଁ ।
ଯେଉଁ ବ୍ୟୂହ ଆଜି କରିବି ଦୁର୍ଯ୍ୟୋଧନ
ନ ଭେଦିବେ ଦେବେ ତା କଲେ ଆୟୋଧନ ।
କେଉଣସି ଉପାୟରେଟି ଅର୍ଜ୍ଜୁନଙ୍କୁ
ଘେନିଯାଅ କହୁଅଛି ମୁଁ ଆନଠାକୁ ।
ଅର୍ଜ୍ଜୁନରେ ଅସାମି ହୋଇକରି କଥା
ଯୁଦ୍ଧରେ ନାହିଁଟି ହେ ସେ ତ ମହରଥା ।
ଯୁଦ୍ଧରୀତିଯାକ ଗୋଚର ଅର୍ଜ୍ଜୁନଙ୍କୁ
ଅର୍ଜ୍ଜୁନରୁ ଅଧବକ ନ ଆସେ କାହାକୁ ।
ଦ୍ରୋଣଙ୍କର ମୁଖରୁ ଶୁଣି ଏ ବଚନ
ସଂଶପ୍ତକମାନେ ହୋଇଣ ଏକ ମନ ।
ଅର୍ଜ୍ଜୁନେ ଦକ୍ଷିଣ ଦିଗକୁ ଘେନିଗଲେ
ଅର୍ଜ୍ଜୁନ ଚାରିପଟେ ଥାଇ ଯୁଦ୍ଧ କଲେ ।
ସଂଶପ୍ତକମାନଙ୍କ ଅର୍ଜ୍ଜୁନଙ୍କ ରଣ
ପ୍ରବର୍ତ୍ତିଲା ଅତିଶୟରେ ହୋଇ ଟାଣ ।
ସେ ଯୁଦ୍ଧ ଆଜିଯାଏ କାର ଦେଖା ନାହିଁ
ଆଉ କି ଗୁଡ଼ାଏ କହିବି ରାୟେ ମୁହିଁ ।
ଦ୍ରୋଣ ଯେଉଁ ବଡ୍ୟହଟି ସେନାରେ ତୁମ୍ଭର
କଲେ ସେ ସୂର୍ଯ୍ୟପରି ହେଲା ପଟାନ୍ତର ।
ଥାଉ ଭେଦିବାର ସେହି ବ୍ୟୂହକୁ କେହି
ପର ଯୋଦ୍ଧାଏ ନ ପାରିଲେଟି ଚାହିଁ ।
ଯୁଧିଷ୍ଠିରଙ୍କର ବଚନେ ଅଭିମନ୍ୟୁ
ଛେଦିଲେ ସେ ବ୍ୟୂହଟି କରେ ଧରି ଧନୁ ।
ସହସ୍ର ସଂଖ୍ୟାରେ ତୁମ୍ଭର ରଥିକୁଳ
ଏକା ହୋଇ ମାଇଲେ ଅର୍ଜ୍ଜୁନଙ୍କ ବାଳ ।
ଛ ରଥୀରେ ବିରଥ ହୋଇ ସେ ମହାରଥ
ମଲେ ଯୁଦ୍ଧ କରି ଦୁଃଶାସନର ସାଥ ।

ଅଭିମନ୍ୟୁ ଗୁଣଗତକୁ ହୃଦେ ବନ୍ଦି
ବାହାରିଲେ ପାଣ୍ଡବେ ବସାକୁ କାନ୍ଦି କାନ୍ଦି ।
ଆମ୍ଭେମାନେ ସମସ୍ତେ ହୋଇ ମହାହୃଷ୍ଟ
ବାହୁଡ଼ିଲୁ ବସାକୁ ଛାଡ଼ିଦେବ କ୍ରୁଷ୍ଟ ।
ଧୃତରାଷ୍ଟ୍ର ବୋଇଲେ ପୁରୁଷସିଂହ ସୁତ
ଯୁଦ୍ଧରେ ତ ଅଭିମନ୍ୟୁ ହୋଇଲେ ହତ ।
ଏହା ଭାବିବାରେ ସଞ୍ଜୟ ମୋ ହୃଦଟି
ଲାଗୁଅଛି ତ ଆହେ ଗଲା ପରି ଫାଟି ।
କ୍ଷତ୍ରୀୟ ଧର୍ମଠାରୁ ନିଷ୍ଠୁର ଧରମ
କହିଛି ନାହିଁ ଜାଣ ମନ୍ତ୍ରଙ୍କ ଉତ୍ତମ ।
ରାଜ୍ୟଲୋଭୀ ହୋଇଟି ମହାରଥୀକୁଳ
ବେଢ଼ିକରି ମାଇଲେ ଅଭିମନ୍ୟୁ ବାଳ ।
କିରୂପେ ହେଲା ଅଭିମନ୍ୟୁଙ୍କ ମରଣ
ବିସ୍ତାରି ତ ସଞ୍ଜୟ ମୋ ଆଗେ ବଖାଣ ।
ସଞ୍ଜୟ ବୋଇଲେ ହସ୍ତିନାନରପତି
କହିବି ଅଭିମନ୍ୟୁ ମୃତ୍ୟୁ ଦିଅ ମତି ।
ବ୍ୟୂହ ଭେଦିଣ ମହାରଥୀ ସଂହାର
କରି ଅଭିମନ୍ୟୁ ଲଭିଲେ ସ୍ୱର୍ଗପୁର ।
ଅଭିମନ୍ୟୁ - ଦାମାଗ୍ନିରେ ଯେ ବନବାସୀ -
ପରାୟେ ତୁମ୍ଭ ସେନା ହେଲେ ଆର୍ତ୍ତଭାଷୀ ।
ଦେବତାରେ ଅଜେୟ କୃଷ୍ଣ ପାଣ୍ଡୁ ସୁତେ
ଜିଣିବେ ସେ ଜଗତ ଯୁଦ୍ଧରେ କିଞ୍ଚିତେ ।
ସତ୍ୟ ଧର୍ମ ଅନ୍ୟାୟ ବୃଦ୍ଧି କୀର୍ତ୍ତି ଯଶ
ଶ୍ରୀକୃଷ୍ଣଙ୍କର ପରି ନାହିଁଟି ପୁରୁଷ ।
ସତ୍ୟଧର୍ମ ବ୍ରାହ୍ମଣ୍ୟ ଯୁଧିଷ୍ଠିର ରାଜା
ସବୁବେଳେ ତାହାଙ୍କୁ ମାନନ୍ତି ବିଡ୍ରୋଜା ।
ଅନ୍ତକ ପର୍ଶୁରାମ ସମ ଭୀମସେନ
ବହି ତ ଥାଏ ବଳ ତାଙ୍କ ଅପଘନ ।
ପ୍ରତିଜ୍ଞା ପାଳନରେ ଅର୍ଜ୍ଜୁନଙ୍କ ପରି
ନାହାନ୍ତି ତିନିଲୋକେ ନୃପ ଧନୁର୍ଦ୍ଧାରୀ ।
ଧୈର୍ଯ୍ୟ ଶୌର୍ଯ୍ୟ ବିନୟ ଦମ ସୌନ୍ଦର୍ଯ୍ୟରେ
ନକୁଳଙ୍କର ପରି ନକୁଳ ମହୀରେ ।
ଗାମ୍ଭୀର୍ଯ୍ୟ ରୂପ ସତ୍ୱ ଶାସ୍ତ୍ରଜ୍ଞ ବିକ୍ରମ-
ମାନଙ୍କେ ସହଦେବ ଅଶ୍ୱିନୀଙ୍କ ସମ ।
କୃଷ୍ଣ ପାଣ୍ଡବଙ୍କର ଗୁଣଯାକ ଯେତେ
ଅଭିମନ୍ୟୁଠାରେ ରହିଅଛିଟି ତେତେ ।
ଚରିତ୍ରେ ଚକ୍ରଧର କ୍ରମେ ଭୀମସେନ
ରୂପ ଶ୍ରୁତ ବିକ୍ରମ ରତେ ଅରଜୁନ ।
ବିନୟରେ ନକୁଳ ସହଦେବ ବୀର
ଧୈର୍ଯ୍ୟେ ଯୁଧିଷ୍ଠିର ପରି ସେ ମନେକର ।

ଆଚାର୍ଯ୍ୟ ତ ଆଶ୍ଚର୍ଯ୍ୟ ଚକ୍ରବ୍ୟୂହ କଲେ
ତହିଁ ମଧ୍ୟରେ ରାଜାମାନଙ୍କୁ ରଖିଲେ ।
ସେ ରାଜାମାନେ ବଳ ବିକ୍ରମରେ ଯୁତ
ମନେ କଲେ ଜିଣିପାରିବେ ପୁରୁହୂତ
ସେ ଚକ୍ରବ୍ୟୂହ ଅବସ୍ଥାନଙ୍କେ ନୃପତି -
ସୁତଙ୍କୁ ରଖାଇଲେ ବହି ଅତି ପ୍ରୀତି ।
ସେ ସମସ୍ତେ ନାନାଦି ଭୂଷଣ ଲଗାଇ
ବାରୁ ସୂର୍ଯ୍ୟ କିରଣ ଦେଉଛନ୍ତି ବୋଲି
ଅଗରୁ ଚନ୍ଦନକୁ ହୋଇଛନ୍ତି ବୋଳି ।
ଲଗାଇଛନ୍ତି ଗଳଦେଶେ ଫୁଲମାଳୀ
କେତେକ ନୃପତିଏ ରକତଚନ୍ଦନ
ବୋଳିହୋଇ ଲୁଚାଉଛନ୍ତି ଅପଘନ ।
ପାଟବସ୍ତ୍ରମାନ କେ ପିନ୍ଧିଛନ୍ତି ବାଛ
କାହାର ଶିରେ ରତ୍ନ ମୁକୁଟ ଶୋଭୁଛି ।
ଏହିରୂପେ ତୁମ୍ଭର ନୃପତିମଣ୍ଡଳ
ବାହାରିଲେ ଅଭିମନ୍ୟୁକୁ କରି ରୋଳ ।
ତୁମ୍ଭର ନାତି ଲକ୍ଷ୍ମଣଙ୍କୁ କରି ଆଗେ
ଅୟୁତେକ ରଥୀ ରହିଲେତାଙ୍କ ସଙ୍ଗେ ।
ଅନ୍ୟୋନ୍ୟରେ ସର୍ବେ ଯୁଦ୍ଧରେ ଶ୍ରଦ୍ଧା ବହି
ରହିଲେ ଯୁଝିବାକୁ ତୁମ୍ଭ ହିତ ଧ୍ୟାଇ ।
କର୍ଣ୍ଣ ଦୁଃଶାସନ କୃପଙ୍କରେ ଆବୃତ
ହୋଇକରି ତୁମ୍ଭର ଦୁର୍ଯ୍ୟୋଧନ ସୁତ ।
ଶ୍ୱେତ ଛତ୍ର ଟେକାଇ ପକାଇ ଚାମର
ରହିଲେ ସେନାମଧ୍ୟେ ଧରି ଧନୁଶର ।
ସୈନ୍ୟ ପ୍ରମୁଖରେ ଦ୍ରୋଣ ଯେ ଜୟଦ୍ରଥ
ରହିଲେଟି ଯାଇଣ ଚଢ଼ିକରି ରଥ ।
ତୁମ୍ଭ ସୁତଙ୍କରୁ କୋଡ଼ିଏ ଦଶ ଜଣ
ଘେନିଣ ସଙ୍ଗେ ଅଶ୍ୱଥାମାଟି ଆପଣ ।
ରହିଲେ ଜୟଦ୍ରଥ ପାଖରେ ସେ ଯାଇ
ସମସ୍ତେ ଧନୁଶରବାହା ଥିଲେ ହୋଇ ।
ଶଲ୍ୟ ଭୂରିଶ୍ରବା ଯେ ସଉବଳ ତୁଲେ
ଜୟଦ୍ରଥ ପିଠି ପାଖରେ ରହିଥିଲେ ।
ଏ ରୂପେ ତୁମ୍ଭ ରଥୀମାନେ ରହିକରି
ହେଲେ ପାଣ୍ଡୁସେନା ସଙ୍ଗତେ ମରାମରି ।
ସାତ୍ୟକି ଚେକିତାନ ଦ୍ରୁପଦ ଅଭିମନ୍ୟୁ
ଧୃଷ୍ଟଦ୍ୟୁମ୍ନନ କୁନ୍ତିଭୋଜ ଯୁଧାମନ୍ୟୁ ।
କ୍ଷେତ୍ରଧର୍ମା ବୃହତକ୍ଷେତ୍ର ଦ୍ରୌପଦେୟ
ଶିଖଣ୍ଡୀ ଧୃଷ୍ଟକେତୁ ବିରାଟ କେକୟ ।
ନକୁଳ ସହଦେବ ସୃଞ୍ଜୟ ଉତ୍ତମୌଜା
ଏ ସମସ୍ତେ ଯୁଦ୍ଧେ ଅଟନ୍ତି ମହାତେଜା ।

ଭୀମଙ୍କୁ ଆଗକରି ଦ୍ରୋଣଠାକୁ ଧାଇଁ
ଆସନ୍ତେ ରଥଘାତେ କମ୍ପିଗଲା ମହୀ
ଏମନ୍ତେ ଦେଖିଣ ଭରଦ୍ୱାଜ ବାଳ
ଅସମ୍ଭ୍ରାନ୍ତ ହୋଇ ଯୁଝିଲେ ମହୀପାଳ ।
ଦ୍ରୋଣଙ୍କ କାଣ୍ଡକୁ ପାଣ୍ଡବ ସେନା ବଳି -
ମାନେ ଯୁଦ୍ଧେ ନା ପାରିଲେଟି ରାୟେ ଚଳି ।
ଯେଉଁରୂପେ ଜଳ ପ୍ରବାହ ପରବତ
ନ ପାରେ ଲଙ୍ଘ ସେହିରୂପେ ଶରବ୍ରାତ ।
ଦ୍ରୋଣଙ୍କର ପାଇ ପାଣ୍ଡବ ରଥୀଗଣ
ଆସି ନ ପାରିଲେ ଦେଖାଇ ବାହୁଟାଣ ।
ଦ୍ରୋଣ ଚାପାବୃତ୍ତ ଶରରେ ପୀଡ଼ା ପାଇ
ଦ୍ରୋଣ ଆଗେ ପାଣ୍ଡବେ ନା ପାରିଲେ ରହି ।
ଦ୍ରୋଣଙ୍କର ବିକ୍ରମ ଦେଖି ଯୁଧିଷ୍ଠିର
କ୍ଷୀଣ କରି ଦେଇଟି ଚିନ୍ତାରେ ଶରୀର ।
ଅଭିମନ୍ୟୁ ସୁତଙ୍କୁ ଅନାଇଁ ବୋଇଲେ
ବାବୁ ଆଜ ଆଜିଭାରକୁ ବହ ଭଲେ ।
ଅର୍ଜୁନ କୃଷ୍ଣ ପ୍ରଦ୍ୟୁମ୍ନନ ତୁମ୍ଭଠାରେ
ଚକ୍ରବ୍ୟୂହ ଭେଦିବା ସମ୍ଭବଟି ପାରେ ।
ଚକ୍ରବ୍ୟୂହଟି ଭେଦିବାର ତ ଆମ୍ଭଙ୍କୁ
ଗୋଚର ନାହିଁ କିସ କହିବି ତୁମ୍ଭଙ୍କୁ ।
ଯେବେ ଆମ୍ଭେ ଚକ୍ରବ୍ୟୂହକୁ ନ ଭେଦିବା
ଅରଜୁନଠାରୁଟି ନିନ୍ଦାକୁ ପାଇବା ।
ଏଥିକି ଯେ ଉଚିତ ହୋଇବ ବିଚାର -
କରିଟି ଅଭିମନ୍ୟୁ କୁମର ଆଚର ।
ମାଗିକରି ବାବୁ କହୁଛି ହେ ତୁମ୍ଭଙ୍କୁ
ଭେଦ ଚକ୍ରବ୍ୟୂହ ଘେନି ମୋର ବୋଇଲକୁ ।
ଅସ୍ତ୍ର-ଅନଳରେଟି ଦ୍ରୋଣ ସୈନ୍ୟ ତୃଣ -
ବନକୁ ପୋଡ଼ିଦେଇ ଦିଅ ହେ ମରଣ ।
ଅଭିମନ୍ୟୁ ବୋଇଲେ ଆହେ ଜ୍ୟେଷ୍ଠପିତା
ଦ୍ରୋଣ ବ୍ୟୂହ ଭେଦିବି ନ କର ହେ ଚିନ୍ତା ।
ବ୍ୟୂହ ଭେଦିବାର ଶିଖାଇଛନ୍ତି ତାତ
ଆସି ନ ପାରିବି ବେଢ଼ିବେ ବଳବନ୍ତ ।
ଯୁଧିଷ୍ଠିର ବୋଇଲେ ବ୍ୟୂହକୁ ଭେଦିଲେ
ଆମ୍ଭେବାନେ ରହି ତ ଥିବୁ ତୋର ତୁଲେ ।
କୁରୁଙ୍କୁ ଘେନି କିପାଁ ତୋହର ବିପତ୍ତି
ହେବ ବାବୁ ଛାଡ଼ିଦିଅ ଏ ଦୁଃଖମତି ।
ଏଥୁଅନ୍ତେ ଭୀମ ଅଭିମନ୍ୟୁଙ୍କ ମୁଖ
ଚାହିଁକରି ବୋଇଲେ ଶୁଣ ପୁତ୍ରଶିଖ ।
ତୁ ବ୍ୟୂହ ଭେଦିଲେ ସୃଞ୍ଜୟ ପାଞ୍ଚାଳଙ୍କୁ
ଘେନି ତୋ ସଙ୍ଗେ ଯାଇ ମାରିବୁ କୁରୁଙ୍କୁ ।

ସାତ୍ୟକି ଧୃଷ୍ଟଦ୍ୟୁମ୍ନ ମୋ ସଙ୍ଗତେ ଥିବେ
କୁରୁଏ ତାଙ୍କୁ ଯୁଦ୍ଧେ ଜିଣି କି ପାରିବେ ।
ଅଭିମନ୍ୟୁ ବୋଇଲେ ଶୁଣ ଜ୍ୟେଷ୍ଠତାତା
ତୁମ୍ଭ କଥାଯାକ ମୁଁ କରି ହୃଦଗତ ।
ପିନ୍ଧୁଛି ଆଜି ଆଜିରେ ଦ୍ରୋଣାନୀକ -
ଅନଳରେ ପଶିଟି ବିନ୍ଧିଣ ଶାୟକ ।
ପୁତୃକୁଳ ଯେ ମାତୃକୁଳଟି ମୋହର
ସୁନ୍ଦର ହୋଇ କର୍ମ କରିବି ମନେ କର ।
ମାମୁଁ ମୋହର କୃଷ୍ଣ ପିତା ମୋ ବିଜୟ
ମୋହର ହେବ କିପାଁ ରଣରେ ଅଜୟ ।
ଆଜି ମୋ ଯୁଦ୍ଧକର୍ମ ଶୁଣି ମାମୁ ପିତା
ପ୍ରଶଂସିବେଟି ମୋତେ ବୋଲିଣ ଦେବତା ।
ସିଂହ ଶିଶୁ ପରିଟି କୁରୁ -ମୃଗକୁଳ
କ୍ଷେଉଥିବି କାଣ୍ଡେ ଦେଖାଇ ଦେହବଳ ।
ଏହା ଶୁଣି ଯୁଧିଷ୍ଠିର ମହାରାଜା
ମନେ ମନେ ଅଭିମନ୍ୟୁକୁ କରି ପୂଜା ।
ବୋଇଲେ ଆହେ ସୁତ ପିଲା ହୋଇ ତୁମ୍ଭେ
କହୁଛ ଯା ଶୁଣି ତାଟକା ହେଲୁଁ ଆମ୍ଭେ ।
ସିଦ୍ଧ ରୁଦ୍ର ବାୟୁ ଅଗ୍ନି ଯେ ଆଦିତ୍ୟରେ
ସାଧ ନୋହେ ଦ୍ରୋଣ ସେନା ମୋର ମତରେ
ସେ ସେନାକୁ ଯାହାଟି ମାରିବି ବୋଇଲ
ଏଣୁ ବାବୁ ତୋହର ହେଉ ସବୁ ଭଲ ।
ଏରୂପେ ଅନେକ ମଙ୍ଗଳ ଯୁଧିଷ୍ଠିର
ବାଞ୍ଛନ୍ତେ ଶୁଣି କର୍ଣ୍ଣେ ଅର୍ଜ୍ଜୁନ କୁମର ।
ସାରଥିକି ବୋଇଲେ ବାହା ମୋର ରଥ
ଯେଉଁଠାରେ ଅଛନ୍ତି ଦ୍ରୋଣ ମହାରଥ ।
ଆଜି ମୁଁ ତାଙ୍କ ସଙ୍ଗେ କରିବି ଲଢ଼ାଇ
ଦେବି ତାଙ୍କ ହୃଦୟ ଗରବ ଛଡ଼ାଇ ।
ଅଭିମନ୍ୟୁ ବଚନ ସୁମିତ୍ର ସାରଥି
କର୍ଣ୍ଣେ ଶୁଣି କହିଲା ହୋଇ ଅତି ବ୍ୟଥୀ ।
ବଡ଼ବାବୁ ଦାଦିଏ ଯୁଦ୍ଧେ ମହାଭାର
ତୁମ୍ଭଙ୍କୁ ଦେଲେ ତୁମ୍ଭେ ବିଚାରି ତା କର ।
ଦ୍ରୋଣ ତ ଶୀଘ୍ରଅସ୍ତ୍ର ଅସ୍ତ୍ରରେ କୁଶଳ
ଜାଣନ୍ତି ତ ସବୁ ଯୁଦ୍ଧରେ ସେହୁ କଳ ।
ତୁମ୍ଭେ ତ ସୁଖ ପାଇ ବଢ଼ିଅଛ ଘରେ
କି ରୂପେ ଯୁଝିବେଟି ଦ୍ରୋଣଙ୍କ ସଙ୍ଗରେ ।
ଭାରତ ଯୁଦ୍ଧ ବିନା ଆଜି ଯାଏ ଯୁଦ୍ଧ
କରି ତ କାହାକୁ ହେ କରି ନାହିଁ ବଧ ।
ଏହି ସକାଶରୁ ଟି କହୁଅଛି ମୁହିଁ
ଦ୍ରୋଣଙ୍କୁ ଯୁଝିବାକୁ ମନ ପାଉ ନାହିଁ ।

ଏହା ଶୁଣିଣ ଅଭିମନ୍ୟୁ ହସିଦେଲେ
କି କହୁଅଛ ଆହେ ସାରଥି ବୋଇଲେ ।
ଦ୍ରୋଣ ତ ବୁଢ଼ା ଦ୍ୱିଜ ସଦ୍ଧ କେତେକର
ଜିଣିପାରଇ ମୁଁ ଯୁଦ୍ଧରେ ଶଚୀବର ।
କୁରୁ ସୈନ୍ୟଯାକ ମୋ କଳା ଗୋଟିକକୁ
ସମାନ ନୁହନ୍ତି କହିଲି ମୁଁ ତୁମ୍ଭକୁ ।
ମାମୁ ବାପ ବଳରେ ତ୍ରିଭୁବନ ଜନ -
ମାନଙ୍କୁ ମୁଁ ଜିଣିବି କରି ଆୟୋଧନ ।
ଏହା ଶୁଣି ସାରଥି ବହୁ ଦୁଃଖ କଲା
ତିନିବରଷୀୟା ଘୋଡ଼ାକୁ ସେ ବାହିଲା ।
ଯେଉଁଠାରେ ଦ୍ରୋଣଙ୍କ ସେନା ଥିଲେ ରହି
ସେହିଠାରେ ରଥକୁ ରଖିଲା ସେ ନେଇ ।
ଅଭିମନ୍ୟୁ ସଙ୍ଗେ ପାଣ୍ଡବ ମହାରଥ -
କୁଳ ଲାଗିଥିଲେ ହେ ଚଢ଼ି କରି ରଥ ।
କର୍ଣ୍ଣିକାର ଧ୍ୱଜରଥରେ ଅଭିମନ୍ୟୁ
ଥାଇଣ କରପୁଟେ ଭିଡ଼ିକରି ଧନୁ୍ୟ ।
ସିଂହଶିଶୁଟି ହସ୍ତିଯୁଥରେ ପଶିବା -
ପରାୟେ ସେ ପଶିଲେ ଆଉ କି କହିବା ।
ଦ୍ରୋଣଙ୍କର ରଥୀଏ ବ୍ୟୂହରୁ କୋଡ଼ିଏ
ପାହୁଣ୍ଡ ବାହୁଡ଼ି ଆସିଲେ ନରରାୟେ ।
ନାନା ଜାତି ଆୟୁଧ କରପୁଟେ ଟେକି
ପ୍ରହାରିଲେ ଯୁଦ୍ଧେ ଅର୍ଜ୍ଜୁନସୁତଟିକି ।
ଅର୍ଜ୍ଜୁନସୁତ ତାହା ନ କଲେ ଗଣନା
ଅନାଇଁ ତ ଥିଲେ ସେ ଦ୍ରୋଣ ମହାମନା ।
ତୁମ୍ଭ ରଥୀଯାକକୁ ଯୁଦ୍ଧେ ବଳୀଥାଇ
ବ୍ୟୂହ ଭିତରକୁ ସେ ଗଲେ ନରସାଇଁ ।
ବ୍ୟୂହ ମଧ୍ୟେ ପଶନ୍ତେ ଅରଜୁନ ସୁତ
ହାତୀ ରଥୀ ଘୋଡ଼ାଏ ବେଢ଼ିଲେ ବହୁତ ।
ସିଂହନାଦ କରି ବାଦ୍ୟକୁ ବଜାଇଲେ
ମଲୁ ଅଭିମନ୍ୟୁ ବୋଲିଣ ଗରଜିଲେ ।
କେତେ ଯୋଦ୍ଧା ବୋଇଲେ ଆସ ଅଭିମନ୍ୟୁ
ଯୁଝିବା ଧରିଛ ତ କରପୁଟେ ଧନୁ ।
ଏହା ଶୁଣି ଅର୍ଜ୍ଜୁନସୁତ କ୍ରୋଧ ହୋଇ
ବିନ୍ଧିଲେ କାଣ୍ଡ ହସ୍ତ ଲାଘବ ଦେଖାଇ ।
ମଲେ ହେଲେ ଯୋଦ୍ଧାଏ ଶଲଭ ପରାୟେ
ଅଭିମନ୍ୟୁ ଅଗ୍ନିରେ ପଡ଼ିଲେଟି ରାୟେ ।
ସୁଭଦ୍ରାତନୟ ଯୁଝନ୍ତେ ହୋଇ ତମୀ
ଶବଙ୍କରେ ପୂରି ରହିଲା ଯୁଦ୍ଧଭୂମି ।
ଅଭିମନ୍ୟୁ କାଣ୍ଡରେ ସୁନାମଣ୍ଡା ଭୁଜ
ଗଣ୍ଡା ଗଣ୍ଡା ଛିଡ଼ି ପଡ଼ିଲା ମହାରାଜ ।

ଧନୁ କାଣ୍ଡ ଖଡ୍‌ଗ ଚରମ ଅଙ୍କୁଶ
ଋଷ୍ଟି ପରଶ୍ୱଧ ଯେ ତୋମର ପଚ୍ଚୀଶ ।
ଭିନ୍ଦିପାଳ ପରିଘ ପ୍ରତୋଦ କମ୍ପନ
ଶଙ୍ଖ କୁନ୍ତ ପ୍ରାସ ଯେ ମୁଦ୍‌ଗର କ୍ଷେପଣ ।
ଏମାନଙ୍କୁ ଯେଉଁମାନେଟି ଧରିଥିଲେ
ତାହାଙ୍କ ବାହୁ ମଧ କାଟି ପକାଇଲେ ।
ବାଜନ୍ତେ ବାଡ଼ି ସର୍ପେ ଛଟପଟ ହୋଇ
ମଲା ପରି ବାହୁ ଦିଶିଲା ଯୁଦ୍ଧଭୂଇଁ ।
ଅମୃତାଳନଳିନ ପ୍ରାୟେ ଯୋଦ୍ଧା ମୁଣ୍ଡ
କାଟିଲେ ଅରଜୁନସୁତ ବିନ୍ଧି କାଣ୍ଡ ।
ଗନ୍ଧର୍ବ ନରର ଆକାର ରଥକୁଳ
ଧ୍ୱଜ ଈଷା ତୁଲେ କାଟିଲେ ପାର୍ଥବାଳ ।
ଘଣ୍ଟ ତୁଲରେ ହସ୍ତୀମାନଙ୍କ ବେକକୁ
କାଟନ୍ତେ ଦେଖିଲେ ସେ ଯମ ନଗରକୁ ।
ବାହ୍ଲିକ ବାନାୟୁଜ କାମ୍ବୋଜ ପାର୍ବତୀୟ
ଏମାନଙ୍କରେ ଜାତ ଯେଉଁ ଘୋଡ଼ାଚୟ ।
ସେ ଘୋଡ଼ାଙ୍କୁ ଭୂଷଣ ସହ ଅଭିମନ୍ୟୁ
କାଟିଲେ କାଣ୍ଡେ ଖଣ୍ଡ ଖଣ୍ଡ  କରି ତନୁ ।
ଏକା ହୋଇ ତୁମ୍ଭ ସେନାକୁ ଅରଜୁନ -
ସୁତ କଲେଟି ଶରଅଗ୍ନିରେ ଦହନ ।
ତୁମ୍ଭ ପୁଅମାନେ ତା ଦେଖି ନିରୁତ୍ସାହା
ହୋଇଲେ ଧନୁଧରି ନ ପାରିଲେ ବାହା ।
ଅଭିମନ୍ୟୁ ସଙ୍ଗତେ ଯୁଝିବା ଆଶାକୁ
ଛାଡ଼ିଦେଇ ଭାବିଲେ ଯିବାକୁ ବସାକୁ ।
ଗୋତ୍ର ନାମ ଧରିଣ ଡକାଡ଼କି ହୋଇ
ହାତୀମାନଙ୍କର ଯେ ପିଠିରେ ଆରୋହି ।
ଯୋଦ୍ଧାମାନେ ତୁମ୍ଭର ଛାଡ଼ିଣ ଯୁଦ୍ଧକୁ
ପଳାଇଲେ ଯୁଦ୍ଧରୁ ଛାଡ଼ିଣ ଭୟକୁ ।
ଶିବ ବିଷ୍ଣୁପରି କରମ କରି ଖ୍ୟାତ
ମାଇଲେ ତୁମ୍ଭ ବଳ ସୁଭଦ୍ରାଙ୍କ ସୁତ ।
ଅଭିମନ୍ୟୁ କରରେ ନିଜ ସେନା ଅସ୍ତ
ଦେଖି ଦୁର୍ଯ୍ୟୋଧନ ଥରାଇ କ୍ରୋଧେ ଗାତ୍ର ।
ଧନୁଶର ଧରି ଅଭିମନ୍ୟୁଙ୍କ ଠାକୁ
ଧାଁଇଁଲେ ରଥଟି ଯୁଦ୍ଧ କରିବାକୁ ।
ଦୁର୍ଯ୍ୟୋଧନର ଲେଉଟିବା ଜାଣି ଦ୍ରୋଣ
ବୋଇଲା ଶୁଣ ଆହେ ନରପତିଗଣ ।
ରହ ଏବେ ଯାଇଟି ଦୁର୍ଯ୍ୟୋଧନ ପାଖ
ନ ବାଜୁ ଅଙ୍ଗେ ତାଙ୍କ ଆର୍ଜୁନି ବିଶିଖ ।
ଏହା ଶୁଣିଣ ଅଶ୍ୱଥ୍ୱାମା ବୃହବଳ
ଭୁରି ଭୁରିଶ୍ରବା ଯେ‚କର୍ଣ୍ଣ କୃପ ଶଳ ।

ପଉରବ ଯେ ମଦ୍ରରାଜ ଆଦି ବୀରେ
ରହିଲେ ଯାଇ ଦୁର୍ଯୋଧନଙ୍କ ଆଗରେ ।
ସେ ରଥିମାନେ ତୁମ୍ଭ ସୁତ ହିତ ପାଇଁ
ବିନ୍ଧିଲେ ମାରଗଣ ଗୁଣରେ ବସାଇ ।
ଅଭିମନ୍ୟୁ-ସଞ୍ଚାଣ ଆଗେ ତୁମ୍ଭ ସୁତ
ଆମିଶ ପରି ହୋଇଥିଲେ ଉପଗତ ।
ରଥିଏ ତ ତାହାଙ୍କୁ ଯୁଝିଲେ ଆବୋରି
ଏ ସକାଶରୁ ଅଭିମନ୍ୟୁ କ୍ରୋଧ ଧରି ।
ଧନୁ ଘନ ମଧ୍ୟରୁ ଶାୟକ ବରଷି
ବିମୁଖ କରିଦେଇ ତୁମ୍ଭ ରଥିରାଶି ।
ସିଂହ ପରି ଗରଜି ଅରଜୁନ ସୁତ
ଅଶ୍ୱ ତୁଲେ କାଟିଲେ ସାରଥିଙ୍କ ମାଥ ।
ତା ଦେଖି ଦ୍ରୋଣ କର୍ଣ୍ଣ ‌ରଥି ଗୋଟି ହୋଇ
ଶରରେ ଦେଲେ ଅଭିମନ୍ୟୁଙ୍କୁ ଘୋଡ଼ାଇ ।
କ୍ରୋଧରେ ଆରଜୁନି ବିନ୍ଧି ତୀକ୍ଷ୍ଣ କାଣ୍ଡ
ରଥିଙ୍କର ଶାୟକ କଲେ ଖଣ୍ଡ ଖଣ୍ଡ ।
ପୁଣି ସେ ରଥୀଙ୍କର ଗଣ୍ଡିକୁ ବଜାଇ
ବିନ୍ଧିଲେ କାଣ୍ଡ ବାଛି ଧନୁରେ ବସାଇ ।
ତେବେ ହେଲେ ତୁମ୍ଭର ରଥୀଏ ଯୁଦ୍ଧକୁ
ନ ଛାଡ଼ି ଯୁଝିଲେଟି ଅର୍ଜ୍ଜୁନ ସୁତକୁ ।
ତୁମ୍ଭ ବଳ ସିନ୍ଧୁକୁ ବେଳା ପରି ହୋଇ
ଆଗୁଳି ରଖିଲେ ଆର୍ଜୁନି ନରସାଇଁ ।
ଅଭିମନ୍ୟୁ ତୁଲେ ତୁମ୍ଭର ରଥୀଙ୍କର
ସମାନ ଯୁଦ୍ଧ ପ୍ରବର୍ତ୍ତିଲା ମନେକର ।
ବୃହଦ୍‌ବଳ ଆଠବାର ଯେ ଦୁଃଶାସନ
ଅଶ୍ୱଥିମା ସାତଟି ତିନି ଦୁର୍ଯ୍ୟୋଧନ ।
ବିବିଂଶତି ସତୁରି ସାତ କୃତବର୍ମା
ଦୁଃସହ ନବ ଛଅ ଶଲ୍ୟ ମହାକର୍ମା ।
କୃପାଚାର୍ଯ୍ୟ ତିନି ଯେ ଭୁରିଶ୍ରବା ତିନି
ସପ୍ତଦଶ ଦ୍ରୋଣ ଦୁଇଟି ଶକୁନି ।
କାଣ୍ଡ ଏକାବେଳକେ ଅଭିମନ୍ୟୁ ଦେହେ
ବିନ୍ଧିଲେ ଧନୁମାନ ଝିଙ୍କି ମହାକୋହ ।
ତିନି ତିନି ତୁମ୍ଭ ରଥୀଙ୍କି ଅରଜୁନ -
ସୁତ ରଣେ ବିନ୍ଧିଲେ ଝିଙ୍କି ଶରାସନ ।
ଶିକ୍ଷାବଳ ଦେହରେ ବଳକୁ ଦେଖାଇ
ଯୁଝିଲେ ଅଭିମନ୍ୟୁ ନାଚିଲା ପରା ହୋଇ ।
ଅଶ୍ମକ ସୁତ ଘୋଡ଼ାଙ୍କୁଟି ବୁହାଇଲେ
ଅଭିମନ୍ୟୁ ଦେହକୁ ଦଶୋଟି ବିନ୍ଧିଲେ ।
ଅଭିମନ୍ୟୁ ଦଶକାଣ୍ଡରେ ବାହୁ ଶିର
ଧ୍ୱଜ ହୟ ସୂତକୁ ନାଶିଲେ ତାହାର ।

ଅଶ୍ୱକସୁତ ଯହୁଁ ହେଲେ ପଣେ ହତ
ସୈନ୍ୟ ତାର ଭାଜିଲେ ହୋଇଣ ତରସ୍ତ ।
କର୍ଣ୍ଣ କୃପ ଦ୍ରୋଣ ଯେ ଅଶ୍ୱତ୍ଥାମା ଶଳ
ଶଲ୍ୟ ଭୂରିଶ୍ରବା ସୁଷେଣ ଯେ ସୌବଳ ।
କ୍ରାଥ ସୋମଦତ୍ତ ପ୍ରବାହୁ ପ୍ରତର୍ଦ୍ଦନ
ବିବିଂଶତ କୁଣ୍ଡଭେଦୀ ଯେ ବୃଷସେନ ।
ବୃନ୍ଦାରକ ଦୀର୍ଘଲୋଚନ ଦୁର୍ଯ୍ୟୋଧନ
ଏମାନେ କଲେ ଅଭିମନ୍ୟୁକୁ ଆୟୋଧନ ।
ରଥୀମାନଙ୍କର କାଣ୍ଡରେ ଅଭିମନ୍ୟୁ
ମହତ ପୀଡ଼ା ପାଇ ଧରି ହୃଦେ ମନ୍ୟୁ ।
କର୍ଣ୍ଣଙ୍କର ଦେହକୁ ବଜାଇଣ କାଣ୍ଡ
ବିନ୍ଧିଲେ ଧନୁ ଝିଙ୍କ ନିରାଶେ ପ୍ରଚଣ୍ଡେ ।
ବ୍ରଜ ପରି ଧ୍ୱନି କରି ସେ କାଣ୍ଡ ଗଲା
କର୍ଣ୍ଣ ଗଣ୍ଡି ନିକିଳି ମହୀରେ ଗଳିଲା ।
ସେ କାଣ୍ଡର ଘାଏ କର୍ଣ୍ଣଙ୍କ କବଚ ଟୁଟି
ରଣଝଣ ହୋଇ ପଡ଼ିଲା ମହୀ ଲୋଟି ।
ମହତ ପୀଡ଼ା ପାଇ ତୁମ୍ଭ କର୍ଣ୍ଣ ବୀର
ମଲି ବୋଲି ଭାବନ୍ତେ ଥିରିଲା ଶରୀର ।
କୁଣ୍ଡଭେଦୀ ଦୀର୍ଘଲୋଚନ ସୁଷେଣଙ୍କୁ
ତିନି କାଣ୍ଡରେ ଦେଖାଇଲେ ସେ ଯମଙ୍କୁ ।
କୃତବର୍ମା ସାତଟି କର୍ଣ୍ଣ ପଞ୍ଚବିଂଶ
ଅଶ୍ୱତ୍ଥାମା ବିଂଶ ବିନ୍ଧିଲେ ବହି ରୋଷ ।
ଅଭିମନ୍ୟୁ ସେ କାଣ୍ଡମାନ ନେତ୍ରେ ଦେଖି ।
ରକ୍ତ କରିଦେଲେ ତାଙ୍କର ଦୁଇ ଆଖି ।
ଶଲ୍ୟେ ଶରବୃଷ୍ଟି କରି ସେ ମହା ବୀର
ଗରଜି ଜାତ କଲେ ଭୟ କୁରୁଙ୍କର ।
ଅଭିମନ୍ୟୁ କାଣ୍ଡରେ ଶଲ୍ୟ ମହାଭେଣ୍ଡା
ମୁଣ୍ଡ ଧରି ଶୋଇଲେ ରଥେ ହୋଇ ଦଣ୍ଡ ।
ଶଲ୍ୟଙ୍କ ମୋହ ଦେଖି ଦ୍ରୋଣ ନକୁଳ
ପଳାଇଲେ ଯୁଦ୍ଧରୁ ହୋଇଣ ଆକୁଳ ।
ପିତୃଦେବ ଗନ୍ଧର୍ବ ଯକ୍ଷ ମୁନିଗଣ
ପ୍ରଶଂସିଲେ ଦେଖି ଅଭିମନ୍ୟୁର ରଣ ।
ଧୃତରାଷ୍ଟ୍ର ବୋଇଲେ ମୋର କେଉଁ ଲୋକ
ଯୁଦ୍ଧ କଲା ଅଭିମନ୍ୟୁକୁ ଛାଡ଼ି ଦକ ।
କହ ତ ହେ ସଞ୍ଜୟ ମନ୍ତ୍ରୀକୁଳମଣି
ଶୁଣିବା ଇଚ୍ଛା କରୁଛି ମୋ କର୍ଣ୍ଣ ବେନି ।
ସଞ୍ଜୟ ବୋଇଲେ ହେ ଦ୍ରୋଣରେ ରକ୍ଷିତ
ହେଲେ ମଧ୍ୟ ସେନାଏ ହେଲେ ଅରକ୍ଷିତ ।
ଆରଜ୍ଜୁନି କାଣ୍ଡ ତ ବାଡ଼ାବାଗ୍ନି ପରି
ପୋଡ଼ିଦେଲା ତୁମ୍ଭର ସୈନ୍ୟ ସିନ୍ଧୁବାରି ।

ଶଲ୍ୟ ମୋହ ଦେଖି ଶଲ୍ୟଙ୍କ ଭାଇ ରୋଷେ
ବିନ୍ଧି ବିନ୍ଧି ଆସିଲେ ଅଭିମନ୍ୟୁ ପାଶେ ।
ଦଶୋଟି କାଣ୍ଡ ବାଛି ସାରଥି ଘୋଡ଼ାକୁ
ବିନ୍ଧି କରି ବିନ୍ଧିଲେ ସେ ଅଭିମନ୍ୟୁକୁ ।
ରହ ରହ ବୋଲିଟି କଲେ ଯେଉଁ ଡକା
ତା ଶୁଣି ଆମ୍ଭେମାନେ ହୋଇଲୁ ତାଟକା ।
ଅଲାତଚକ୍ର ପରି ପାର୍ଥସୁତ ଚାପ
ଯୁଦ୍ଧେ ଦେଉଥିଲା ଯୋଦ୍ଧାଙ୍କୁ ପରତାପ ।
ଶଲ୍ୟଙ୍କ ସାନଭାଇ ନ ପାରି ସାହସ
କରି ସୌଭଦ୍ରାଙ୍କୁ ଯୁଝିଲେ ମୋଡ଼ି ନିଶ ।
ଶଲ୍ୟଙ୍କ ଭାଇଙ୍କର ଶିରପାଦ ଭୁଜ
ଛତ୍ର ଚକ୍ର ସାରଥି ଯୁଗ ଇଷା ଧ୍ୱଜ ।
ଧନୁ ଅଶ୍ୱ କାଟିଣ ଚକ୍ରରକ୍ଷା ମାରି
ଦେଲେ ତା ନେତ୍ର ନ ଦେଖିଲାଟି କାହାରି ।
ପବନ ବାଜି ବୃକ୍ଷ ପଡ଼ିଲା ପରାୟେ
ପଡ଼ିଲେ ତଳେ ଶୋଇ ଶଲ୍ୟଭାଇ ରାୟେ ।
ମରନ୍ତେ ଶଲ୍ୟଭାଇ ଶଲ୍ୟ ଲୋକଯାକ
ପଳାଇଲେ ପଛକୁ କାନ୍ଦି ସକ ସକ ।
ଅର୍ଜ୍ଜୁନସୁତର ମହତ କର୍ମ ଦେଖି
ଯୁଦ୍ଧେ ପ୍ରଶଂସିଲେ ଯୋଧାଏ ହୋଇ ସୁଖୀ ।
ଶଲ୍ୟଙ୍କର କୁଳୀନ ଲୋକ ଯେତେ ଥିଲେ
ସେ ଏକା ରହି ଅଭିମନ୍ୟୁକୁ ଯୁଝିଲେ ।
କେଣେ ଯୋଦ୍ଧାମାନେ ବୋଇଲେ ଯେ ଗରଜି
ଆଜି ଯମ ପୋଛିଦେବଟି ତୁମ୍ଭ ପାଞ୍ଜି ।
କେତେ ଯୋଦ୍ଧା ଗୁଣ ଟଙ୍କାରି ଦାନ୍ତ ଭିଡ଼ି
ଅଭିମନ୍ୟୁ ପରେ ସର୍ଜିଲେ ଶରଧାଡ଼ି ।
କେତେ ଯୋଦ୍ଧା ବୋଇଲେ ପିଲାହୋଇ ଏକା
ପଶିଛି ମରିଯିବ ହୋଇଣ ତାଟକା ।
କେତେ ଯୋଦ୍ଧା ବୋଇଲେ ଆହେ ଅଭିମନ୍ୟୁ
କାଣ୍ଡ ଖଣ୍ଡାରେଟି କାଟିବୁଁ ତୁମ୍ଭ ତନୁ ।
ଏହା ଶୁଣି ନିବାତକବଚବଇରୀ -
ସୁତ ହସି ତାଙ୍କୁ ଯୁଝିଲେ ମୃଦୁ କରି ।
ଅସ୍ତ୍ର ଦେଖାଇବାକୁ ଥିଲା ତାଙ୍କ ମନ
ଏଣୁ ସେ ନ ନେଲେଟି ତାଙ୍କର ଜୀବନ ।
କୃଷ୍ଣ ଅର୍ଜ୍ଜୁନଙ୍କଠାରୁ ସେ ଯେତେ ଅସ୍ତ୍ର
ଶିଖିଥିଲେଟି ଗାତ୍ର କରିଣ ପବିତ୍ର ।
ସେହି ଅସ୍ତ୍ର ସେ ଯୁଦ୍ଧେ ପ୍ରୟୋଗ ସେ କରି
ବିହରିଲେ ସେନା ମଧ୍ୟରେ ସିଂହ ପରି ।
ସୂର୍ଯ୍ୟଙ୍କ ମଣ୍ଡଳ ପରାୟେ ତାହାଙ୍କର
ଦିଶିଲାଟି ଧନୁମଣ୍ଡଳ ମନେ କର ।

ଶତହ୍ରଦା ପରି ଅଟଇ ଧନୁ ଜ୍ୟୋତି
ଚାହିଁଲେ ନେତ୍ର ବୁଜିଯାଏ ପାଇ ତାତି ।
ଅଭିମନ୍ୟୁ ଗୁଣର ଛାଟେଣି ଶବଦ
ଚଡ଼କଠାରୁ ବଳି ଶୁଭିଲା ସେ ନାଦ ।
କୁରୁବଳ ଘନ କାଳକୁ ପାଇକରି
ଅଭିମନ୍ୟୁ ମୃଦୁ ହୁଅନ୍ତି ସୂର୍ଯ୍ୟ ପରି ।
କେତେବେଳେ ଶରଦକାଳ ଦିବାକର-
କର ପରି ଦିଶନ୍ତି ବିନ୍ଧନ୍ତେ ଦିବ୍ୟ ଶର ।
କ୍ଷୁରପ୍ର ବତ୍ସଦନ୍ତ ବିପାଠ ନାରାଚ-
ଆଉ ଶର ବିନ୍ଧନ୍ତେ କମ୍ପିଗଲା ସଞ୍ଚ ।
ଦ୍ରୋଣ ଚାହୁଁଥିଲେ ତୁମ୍ଭର ସୈନ୍ୟଭିଡ଼ା
ପଳାଇଲେ ଯୁଦ୍ଧରୁ ପାଇ ମହାପୀଡ଼ା ।
ଧୃତରାଷ୍ଟ୍ର ବୋଇଲେ ଅଭିମନ୍ୟୁ ଯୁଦ୍ଧ
ଶୁଣି ମୋହର ବଢ଼ୁଅଛି ଲାଜ କ୍ରୋଧ ।
ଏ ବାହାରେ ମଧ୍ୟ ସନ୍ତୋଷ ବଢ଼ୁଅଛି
ସେତ ମୋହର ନାତି ସୁଭଦ୍ରାଙ୍କ ବହି ।
ଏହି ସକାଶରୁଟି ଅଭିମନ୍ୟୁ ଯୁଦ୍ଧ
ବିସ୍ତାରି କହିଣ କର ମୋ ମନ ବୋଧ ।
ସଞ୍ଜୟ ବୋଇଲେ ହେ ଜାଣ କୁରୁବଳ
ଯେ ରୂପରେ ବେଢ଼ିଣ କଲେ ରାୟେ ଗୋଳ ।
ସେ ରୂପେ ତୁମ୍ଭ ଆଗେ କରିବା ପ୍ରକାଶ
ଶୁଣିଲେ ମୋହଠାରୁ ହୋଇବ ସନ୍ତୋଷ ।
ଶଲ୍ୟ କୃପ କର୍ଣ୍ଣ ଯେ ଅଶ୍ୱତ୍ଥାମା ଦ୍ରୋଣ
ଭୋଜ ବୃହଦ୍ବଳ ଶକୁନି ଦୁର୍ଯ୍ୟୋଧନ ।
ଭୂରିଶ୍ରବା ଆନ ନୃପତିକୁଳଯାକ
ବେଢ଼ି ଅଭିମନ୍ୟୁକୁ ବିନ୍ଧିଲେ ଶାୟକ ।
ଅଭିମନ୍ୟୁଙ୍କର ଦୁଷ୍କର କର୍ମ ଦେଖି
ତୁମ୍ଭ ସୈନ୍ୟ ଭୟରେ ବୁଜିଦେଲେ ଆଖି ।
ଅଲାତଚକ୍ର ପରି ଅରଜୁନ ସୂନୁ
କରଦେଶେ ଦେଖିଲୁଁ ନୃପ ଏକା ଧନୁ ।
ଏକା ଅଭିମନ୍ୟୁ ଯୁଝନ୍ତେ ଯୋଦ୍ଧାସୃଷ୍ଟି
ଚାରିଆଡ଼େ ଦେଖି ମଣିଲେ କୋଟି କୋଟି ।
ଦ୍ରୋଣ ତାହା ଦେଖି କୃପଙ୍କୁ ସେହିକ୍ଷଣି
କହିଲେ ତୁମ୍ଭ ପୁତ୍ର ମର୍ମଭେଦ ବାଣୀ ।
ପିତୃ ମାତୃକୁଳର ବଢ଼ାଇ ଆନନ୍ଦ
ଦେଖ ହେ ଅଭିମନ୍ୟୁ କରୁଛନ୍ତି ଦ୍ୱନ୍ଦ ।
ମନ କଲାକ୍ଷଣି ତ କୁରୁବଳ ମାରି
ଦେବେ ତ ଏ କିପାଇଁ ଅଛନ୍ତି ନ ମାରି ।
ଏହି କଥା ମୁହିଁ ମଣୁଛି ଚମତ୍କାର
ଯାଙ୍କ ପରି ନାହିଁ ମହୀରେ ଧନୁର୍ଦ୍ଧର ।

ଦ୍ରୋଣଙ୍କ ବାଣୀ ଶୁଣି ଦୁର୍ଯ୍ୟୋଧନ ରାଜା
କ୍ରୋଧବଶେ ଥରାଇଦେଲେ ନିଜ ମଜା ।
କର୍ଣ୍ଣ ଆଦି ରଥୀଙ୍କି ଅନାଇଁ ରହିଲେ
ଦ୍ରୋଣ ଯାହା କହିଲେ ଶୁଣିଲଟି ଭଲେ ।
ଦ୍ରୋଣ ମନେ କଲେ କି ଅଭିମନ୍ୟୁ ସୁତ
ଜୀଇଣ ଥାନ୍ତା କି ହେ ବିଚାରି କହ ତ ।
ଯମହେଲେ ଦ୍ରୋଣଗୁରୁଙ୍କୁ ଯୁଦ୍ଧେ ଯୋଟ
କରିଣ ଜୀଇଁବାର ହେବ ବଡ଼ କଷ୍ଟ ।
ଅର୍ଜ୍ଜୁନ ତ ତାଙ୍କ ଅଟନ୍ତି ପ୍ରିୟ ଶିଷ୍ୟ
ତା ସୁତ ବୋଲିଣ ଯୁଝନ୍ତି ଛାଡ଼ି ରୋଷ ।
କହୁଅଛନ୍ତି ଆମ୍ଭମାନଙ୍କୁ ଡରାଇ
କି କରିବା ଗୁରୁ ତ ହୋଇଲେନି ବାଇ ।
ଦ୍ରୋଣ ରଖିଥିବାରୁ ଅଭିମନ୍ୟୁ ବଳୀ
ହୋଇଟି ଆମ୍ଭ ବଳ ଦେଉଅଛି ଦଳି ।
ଏବେ ତ ସବୁ ରଥୀମାନେ ଯତ୍ନକର
ଏହିକ୍ଷଣି ଦେଖାଅ ଯମଙ୍କ ନଗର ।
ଦୁର୍ଯ୍ୟୋଧନ ବଚନେ ତୁମ୍ଭର ରଥୀଏ
ଅର୍ଜ୍ଜୁନ ପୁତ୍ରଠାକୁ ଧାଇଁଲେ ହେ ରାୟେ ।
ଦୁଃଶାସନ ବୋଇଲେ ଥାନ୍ତୁ ସବୁ ରଥୀ
ଦେଉଛି ଯୁଦ୍ଧେ ଅଭିମନ୍ୟୁକୁ ମୁଁ ମଥି ।
ପାଣ୍ଡବବଳ-ନକ୍ଷତ୍ରଙ୍କୁ ଲଘି ରାୟେ
ଅଭିମନ୍ୟୁ-ଚନ୍ଦ୍ର ଗ୍ରାସିବି ରାହୁ ପ୍ରାୟେ ।
ଅଭିମନ୍ୟୁ ମରଣ ଶୁଣି କୃଷ୍ଣାର୍ଜ୍ଜୁନ
କରିବେ ଶୋକେ ଯମନଗରେ ସଦନ ।
କୃଷ୍ଣାର୍ଜ୍ଜୁନ ତୁଲରେ ପାଣ୍ଡୁଙ୍କର ସୁତେ
ଆମ୍ଭ ସଙ୍ଗେ ଯୁଝିଲେ ମରିବେ କିଞ୍ଚିତେ ।
ଏବେ ମୋତେ ଆଜ୍ଞା ଦେଇଣ ନୃପବର
ହୃଦୟରେ ମୋହର ଭଲ ବାଞ୍ଛା କର ।
ଏରୂପେ ଦୁଃଶାସନ ଭାଇ ଆଗେ କହି
ବିନ୍ଧିଲେ ଅଭିମନ୍ୟୁ ଦେହେ ତ୍ୱରା ହୋଇ ।
ଅଭିମନ୍ୟୁ ଛବିଶ ଶର ଦୁଃଶାସନ-
ଦେହକୁ ଲାଖକରି ବିନ୍ଧିଲେ ରାଜନ ।
ମତ୍ତହସ୍ତୀ ପରି ସେ ଦୁଃଶାସନ ଭେଣ୍ଡା
ପ୍ରହାର କଲେ ଯୁଦ୍ଧରେ ସେ କାଣ୍ଡ ଖଣ୍ଡା ।
ସବ୍ୟ ଦକ୍ଷିଣରେ ମଣ୍ଡଳଟି ଦେଖାଇ
ଯୁଝିଲେ ଦୁଇ ବୀରେ ଶିକ୍ଷା ଥିଲେ ପାଇ ।
ଦୁହିଙ୍କ ଯୁଦ୍ଧ ଦେଖି ପଣବ ଝର୍ଝର
ମରଦଳ ମୃଦଙ୍ଗ ବଜାଇଲେ ନର ।
ଏକାଳେ ଅଭିମନ୍ୟୁ ଦେହେ ଶର ଭିଡ଼ା
ଦେଖିଲେ ବାଜିଅଛି ରଚିବାକୁ ପୀଡ଼ା ।

ନ ସହି ତାହା ଦୁଃଶାସନଙ୍କୁ ତୁମ୍ଭର
ବୋଇଲେ ଦୁଷ୍ଟ ଆଜି ଯିବୁ ଯମପୁର ।
ଯୁଧିଷ୍ଠିର ରାଜାଙ୍କୁ ଭୀମ ତୁଲେ ଗାଳି
ଦେବା ଫଳ ଆଜି ଯୁଦ୍ଧରେ ଯିବ ଫଳି ।
ଲୋଭ ମୋହ କ୍ରୋଧରେ ଆମ୍ଭ ରାଜ୍ୟହର୍ତ୍ତା
ହୋଇ ତୁମ୍ଭେ ବୋଲାଉଅଛ ବଳବନ୍ତା ।
ଆଜି ତୁମ୍ଭର ମୁଣ୍ଡ କାଟି ମହାରୋଳେ
ଆନନ୍ଦାଶ୍ରୁ ରଖିବି ମୋ ପିତୃଙ୍କ ଡୋଳେ ।
ତୁମ୍ଭଙ୍କୁ ମାଇଲେ ମୁଁ ପିତୃଋଣ ମୁକ୍ତ-
ହୋଇ ତୋଷ କରିବି ମୋ ଦ୍ରୌପଦୀ ମାତ ।
ଯୁଦ୍ଧରୁ ପଳାଇଲେ ଜୀଇଁବ ବା ତୁମ୍ଭେ
ଯୁଦ୍ଧ କଲେ ପ୍ରାଣ ନେବୁଟି ଜାଣ ଆମ୍ଭେ ।
ଏହିରୂପେ ଅନେକ ଅରଜୁନ ସୁତ
କହି ଧନୁ ସଜରେ କରି କରଗତ ।
କାଳାନଳ ପରି ବାଛିଣ ବାଣଟାଏ
ଦୁଃଶାସନ ହୃଦକୁ ବିନ୍ଧିଲେ ହେ ରାୟେ ।
ଦୁଃଶାସନ ହୃଦ-ବିଳରେ ସେହୁ ଶର
ପଶିଲା ସର୍ପପରି ଧ୍ୱନି କରି ଘୋର ।
ପୁଣି କର୍ଣ୍ଣଯାଏ ଓଟାରିଣ ଧନୁକୁ
ବିନ୍ଧିଲେ ସେହି ପଞ୍ଚବିଂଶତି ଶରକୁ ।
ଅଭିମନ୍ୟୁ କାଣ୍ଡରେ ପାଇ ମହାବ୍ୟଥା
ଦୁଃଶାସନ ବସିପଡ଼ିଲେ ପୋତି ମଥା ।
ଦୁଃଶାସନର ମୋହ ସାରଥି ଅନାଇଁ
ବାହିଲା ସେ ଯୁଦ୍ଧରୁ ରଥ ଲେଉଟାଇ ।
ପାଞ୍ଚାଳ କଇକେୟ ମତ୍ସ୍ୟଦେଶ ଥାଟ
ଅଭିମନ୍ୟୁ ବଳକୁ ଦେଖି ହୋଇ ହୃଷ୍ଟ ।
ସିଂହନାଦ କରିଣ ବଜାଇଲେ ବାଦ୍ୟ
ବଢ଼ାଇଲେ ଅଭିମନ୍ୟୁଙ୍କର ପ୍ରମୋଦ ।
ଦୁଃଶାସନ ପରାଜୟ ନେତ୍ରରେ ଦେଖି
ଦ୍ରୌପଦେୟ ପାଣ୍ଡୁ ସୁତେ ହୋଇଲେ ସୁଖୀ ।
କେକେୟ ପାଞ୍ଚାଳ ସାତ୍ୟକି ଦ୍ରୌପଦେୟ
ଧୃଷ୍ଟଦ୍ୟୁମ୍ନ ପାଣ୍ଡୁନୃପଙ୍କ ପୁତ୍ରଚୟ ।
ଶିଖଣ୍ଡୀ ଆଦିରଥୀଙ୍କୁ ଯେ ସଙ୍ଗେଧରି
ଧାଇଁଲେ ଦ୍ରୋଣ ବ୍ୟୂହ ଭେଦିବା ଇଚ୍ଛା କରି ।
ପାଣ୍ଡୁସେନା ତୁମ୍ଭ ସେନାର ଘୋର ଯୁଦ୍ଧ
ହୁଅନ୍ତେ ଅନ୍ୟୋନ୍ୟରେ ହେଲେ ରାୟେ ବଧ ।
ସେକାଳେ ଦୁର୍ଯ୍ୟୋଧନ କହିଲେ କର୍ଣ୍ଣଙ୍କୁ
ଦେଖ ଦୁଷ୍ଟଅଭିମନ୍ୟୁର ବିକ୍ରମକୁ ।
ପିଲା ହୋଇ ଦୁଃଶାସନର ବଳ ଧ୍ୱଂସି
ଯୁଝୁଅଛି ଆମ୍ଭଙ୍କୁ ଦେବାପାଇଁ ନାଶି ।
ପଛେ ତାର ଦେଖ ପାଣ୍ଡବ ରଥିକୁଳ
କଲେଣି ଆମ୍ଭ ସେନା ସଙ୍ଗେ ମହାରୋଳ ।
ଏଥିକି ଚାହିଁ ଅନୁରୂପ ଯେଉଁ କଥା
ହେବ ତାହା କର ହେ କର୍ଣ୍ଣ ମହାରଥା ।
ଏହାଶୁଣି କର୍ଣ୍ଣ ତୁମ୍ଭର ହିତପାଇଁ
ସରଜିଲେ ଶରଧାରା ଯୁଦ୍ଧରେ ଧାଇଁ ।
ତେଣ୍ଡରି କାଣ୍ଡେ ବିନ୍ଧି ତୁମ୍ଭର କର୍ଣ୍ଣକୁ
କରିଣ ଅଭିମନ୍ୟୁ ଗଲେ ଦ୍ରୋଣଠାକୁ ।
ଦ୍ରୋଣଙ୍କଠାରୁ ତାକୁ ନିବର୍ତ୍ତାଇ ଆଣି
ଯୁଝିବାକୁ ଡରିଲେ ତୁମ୍ଭ ବୀରଶ୍ରେଣୀ ।
ମାନୀ କର୍ଣ୍ଣ ଏକାଟି ଦିବ୍ୟ ଅସ୍ତ୍ରବଳ
ଘାତେ ଅଭିମନ୍ୟୁକୁ ବିନ୍ଧିଲେ ଶରଜାଳ ।
କର୍ଣ୍ଣ କ୍ରୋଧ ହୋଇ ରଚିଲେ ଶରଭିଡ଼ା
ଏ ଘେନି ଜାତ ହେଲା ଅଭିମନ୍ୟୁ ପୀଡ଼ା ।
ଅଭିମନ୍ୟୁ ତେବେ ହେଲେଟି ଯୁଦ୍ଧ ଛାଡ଼ି
ନ ରହି ଯୁଦ୍ଧ କଲେ ଓଷ୍ଠକୁ କାମୋଡ଼ି ।
ଆନତପର୍ବ ଭାଲିକାଣ୍ଡେ ଯୋଦ୍ଧାଙ୍କର
ଧନୁଯାକ କାଟିଣ ଅର୍ଜ୍ଜୁନ କୁମର ।
କର୍ଣ୍ଣଙ୍କର ଠାକୁ ଆସିଲେ ସେହୁ ଧାଇଁ
ବିନ୍ଧିଲେ ତାଙ୍କ ଧନୁ ଛତ୍ରକୁ ରୋଷାଇ ।
ଏ ବାହାରେ ସାରଥି ଘୋଡ଼ାଙ୍କର ପ୍ରାଣ
ନେବା ପାଇଁ ବିନ୍ଧିଲେ ମୁନଘଷା ବାଣ ।
କର୍ଣ୍ଣେ ଯେତେ କାଣ୍ଡ ସୁଭଦ୍ରା କୁମରକୁ
ବିନ୍ଧିଲେ କାଟିଲେ ଦେଖାଇ ବିକ୍ରମକୁ ।
ମୁହୂର୍ତ୍ତ ଭିତରେ କର୍ଣ୍ଣଙ୍କ ଧ୍ୱଜ ଧନୁ
କାଣ୍ଡରେ କାଟିଲେ ସୁଭଦ୍ରା ଦେବୀ ସୂନୁ ।
କର୍ଣ୍ଣଙ୍କର ଯୁଦ୍ଧରେ ବଳହୀନ ଦେଖି
କର୍ଣ୍ଣ ଭାଇ ଧାଇଁଲେ ଚାପ ଶର ଯୋଖି ।
ପାଣ୍ଡୁ ସେନାମାନେଟି ଉତ୍ତମ ଉତ୍ତମ
ବୋଇଲେ ଦେଖି ଅଭିମନ୍ୟୁ ଯୁଦ୍ଧକର୍ମ ।
ବାଦ୍ୟ ନାଦଘାତେ କମ୍ପାଇ ମହୀଆଳି
ବୋଇଲେ କର୍ଣ୍ଣ ଭଲା ବୋଲନ୍ତି ବଳଶାଳୀ ।
କର୍ଣ୍ଣ ଭାଇ କର୍ଣ୍ଣ ଆଗରେ ନେଇ ରଥ
ରଖିଲେ ସେ ଦେଖାଇ ନିଜ ସାମରଥ ।
ସାରଥି ଧ୍ୱଜ ଘୋଡ଼ାମାନଙ୍କୁ ବଜାଇ
ବିନ୍ଧିଲେ ଦଶକାଣ୍ଡ କର୍ଣ୍ଣଙ୍କର ଭାଇ ।
ସେ କାଣ୍ଡ ତ ଅଭିମନ୍ୟୁଙ୍କୁ ପୀଡ଼ା ଦେଲେ
ତା ଦେଖି ତୁମ୍ଭ ସେନା ଆନନ୍ଦେ ହସିଲେ ।
ଅଭିମନ୍ୟୁ ତାହା ନ ସହି ବିନ୍ଧି କାଣ୍ଡ
ଛିଣ୍ଡାଇଦେଲେ ଯୁଦ୍ଧେ କର୍ଣ୍ଣଭାଇ ମୁଣ୍ଡ ।

ଭାଇ ମରିବାର କର୍ଣ୍ଣ ନେତ୍ରରେ ଦେଖି
ମୁଞ୍ଛିଲେ ସେ ନୟନରୁ ପାଣି ହୋଇ ଦୁଃଖୀ ।
କର୍ଣ୍ଣଙ୍କୁ ବିଶିଖେ ବିମୁଖ ଅଭିମନ୍ୟୁ
କରି ଆନ ରଥୀଙ୍କ କାଟିଲେଟି ତନୁ ।
ଏହା ଦେଖି ତୁମ୍ଭର ରଥ ଗଜ ଘୋଡ଼ା-
ଚଢ଼ାଏ ପଳାଇଲେ ଯୁଦ୍ଧେ ନୋହି ଛିଡ଼ା ।
କର୍ଣ୍ଣ ରଥରେ ଚେଗୁଆର ଅଶ୍ୱ ଯୋଚି
ପଳାଇଲେ ଯୁଦ୍ଧୁଁ ମରିବା ବୋଲି ପାଞ୍ଚି ।
ଅଭିମନ୍ୟୁ ଶରରେ ନୟନକୁ ଦୃଶ୍ୟ
ନୋହିଲା ଭୂମି ତୁଲେ ରାଜନ ଆକାଶ ।
କେବଳ ଜୟଦ୍ରଥ ରଥକୁ ଆରୋହି
ରହିଲେ ସେ ଯୁଦ୍ଧରେ ଧନୁହାତ ହୋଇ ।
ଅଭିମନ୍ୟୁ ଶଙ୍ଖ ବଜାଇ ସେନା ମଧେ
ପଶିଗଲେ ନୃପ ଯୁଝିବା ଭାବି ସଧେ ।
ତୁମ୍ଭ ସୈନ୍ୟ ତୃଣବନରେ ଅଗ୍ନି ପରି
ତେଜ ଘେନି ଜଳିଲେ ଉତ୍ତରାବିହାରୀ ।
ଶତଶତ କବନ୍ଧରେ ସେ ରଣସ୍ଥଳ
ହୋଇଲା ଆହେ ଅତିଶୟରେ ସଙ୍କୁଳ ।
ଅଭିମନ୍ୟୁ କାଣ୍ଡରେ ସୈନ୍ୟ ତ ଭାଜିଲେ
ଯେ ପଡ଼ିଲେ ତାକୁ ଚକଟି ଦେଇଗଲେ ।
ଅଭିମନ୍ୟୁ ଯେତେକ ବିନ୍ଧିଲେ ବିପାଠ
ପଢ଼ାଇଲେ ଯୋଦ୍ଧାକୁଳକୁ ସେ ପାଠ ।
ଗଦା ଶକ୍ତି ତୋମର ଖଣ୍ଡା ଫରି ଧରି
ଯୋଦ୍ଧାଙ୍କ ବାହୁତଳେ ପଡ଼ିଲା ଛିଡ଼ିକରି ।
କୁଣ୍ଡଳ ତୁଲେ ମୁଣ୍ଡ ପଡ଼ିଲା ଗଣ୍ଡା ଗଣ୍ଡା
ପ୍ରହାରନ୍ତେ କାଣ୍ଡକୁ ଅଭିମନ୍ୟୁ ଭେଣ୍ଡା ।
ରଥ ଧ୍ୱଜ ଇଷା ଯେ ଚକ ଅଖରାଜି
ପଡ଼ି ଗଡ଼ିଲେ ହେ ଅର୍ଜ୍ଜୁନି କାଣ୍ଡେ ଭାଜି ।
ଏ ସକାଶୁଁ ଯିବା ଆସିବାର ସଞ୍ଚାର
ଯୁଦ୍ଧରେ ଛାଡ଼ି ଦେଲେ ତୁମ୍ଭ ଯୋଦ୍ଧାନର ।
ବାଜନ୍ତେ କାଣ୍ଡ ରାଜପୁତ୍ରମାନେ ମରି-
ଶୋଇଲେ ବାବୁ ଭାଇ ବୋଲି ଡକା ପାରି ।
ସେ ଡକା ଶୁଣି ତୁମ୍ଭ ସେନାଏ ତାଟକା-
ହୋଇକରିଟି ଝାଳ ବୁହାଇଲେ ଏକା ।
ଶର-କିରଣରେ ସେ ସେନା-ସିନ୍ଧୁ ବାରି
ଶୁଖାଇ ଦିଶିଲେ ପ୍ରଳୟସୂର୍ଯ୍ୟ ପରି ।
ବାସବଙ୍କ ନାତି ବାସବ ସମ ବଳ
ପ୍ରକାଶି କଲେ ତୁମ୍ଭ ସୈନ୍ୟ କଲବଲ ।
ଧୃତରାଷ୍ଟ୍ର ବୋଇଲେ ସୁନ୍ଦର ସୁକୁମାର
ବଳବନ୍ତ ପଣରେ ନିନ୍ଦଇ କୁମର ।

ଯେଉଁ ଅଭିମନ୍ୟୁ ଯୁଝିଲା ଆସି ଏକା
ସେନା ମଧରେ ପଶି ଛାଡ଼ିଦେଇ ଦକା ।
ଭୀମାଦି ପାଣ୍ଡବରଥୀଏ ତାଙ୍କ ସାହା
ହେଲେ କି ନୋହିଲେ ତା କହ ମନ୍ତ୍ରୀନାହା ।
ସଞ୍ଜୟ ବୋଇଲେ ଶିଖଣ୍ଡୀ ଯୁଧିଷ୍ଠିର
ଭୀମସେନ ନକୁଳ ସହଦେବ ବୀର ।
ଏମାନେ ଏକା ହୋଇ ରଥରୁ ଧୂଆଇଁ
କାଟିଣ ନିବାରିଲେ ତେଡ଼େ ସେନା ଯାଇ ।
ଯେ ରୂପେ ବନରୁ ବାହାରେ ମତ୍ତଗଜା
ସେରୂପେ ବାହାରିଲେ ଜୟଦ୍ରଥରାଜା ।
ଶାୟକଦଣ୍ଡେ ପାଣ୍ଡୁ ସେନାନାୟକଙ୍କୁ
ପ୍ରହାରକଲେଟି ଦେଖାଇ ବିକ୍ରମକୁ ।
ଧୃତରାଷ୍ଟ୍ର ବୋଇଲେ ମୋହର ଜୁଆଇଁ
ଏଡ଼େ ବଳୀ ବୋଲି ମୁହିଁ ତ ଜାଣି ନାହିଁ ।
ଏକା ହୋଇ ପାଣ୍ଡୁ ସେନାଙ୍କୁ କଲେ ରଣ
କାଟିଲେ ତାଙ୍କ ବାଣ ଦେଖାଇଣ ଟାଣ ।
କି ତପ କରିଥିଲେ ମୋ ଦୁଃଶଳାବର
କହତ ହେ ସଞ୍ଜୟ ନୋହିଛି ଗୋଚର ।
ସଞ୍ଜୟ ବୋଇଲେ ପାଣ୍ଡବେ ବନବାସ
କଲାକାଳେ ତୁମ୍ଭ ଜୁଆଇଁ ବହି ତୋଷ ।
ପାଣ୍ଡବଙ୍କ ନ ଥିବା ସମୟେ ବସାକୁ
ଯାଇଣ ଧଇଲେ ଦ୍ରୁପଦନନ୍ଦନାକୁ ।
ବଳେ ଦ୍ରୌପଦୀଙ୍କି ସେ ରଥରେ ବସାଇ
ଘେନି ବାହାରିଲେ ଘରକୁ ତ୍ୱରା ହୋଇ ।
କୁରରୀ ପକ୍ଷୀ ପରି ଦ୍ରୁପଦହୋଦିତୀ
ପାଡ଼ିଲେ ଉଚ୍ଚେ ଡକା ଚିନ୍ତା ଧରି ମତି ।
ଏହି ସମୟରେ ପାଣ୍ଡବ ପାଞ୍ଚ ଭାଇ
ପାଇଗଲେ ବସାରେ ସିଂହପରି ଧାଇଁ ।
ଦେଖିଲେ କୃଷ୍ଣାଙ୍କୁ ନେଉଛି ଜୟଦ୍ରଥ
ଶାୟକ ନାୟକରେ କାଟିବାକୁ ମାଥ ।
ବିଚାରନ୍ତେଟି ତାହା ଯୁଧିଷ୍ଠିର ନାହିଁ
କରିବାରୁ ଭୀମ ମାନସେ କ୍ରୋଧ ବହି ।
ଜୟଦ୍ରଥଙ୍କର ତ ଚୁଟିକି କାଟିଲେ
ଗୋଡ଼ତଳେଗଲାଛ ଯାବୋଲି ପେଲିଦେଲେ
ମହତ ଅଭିମାନ ପାଇ ଜୟଦ୍ରଥ
ଭାବିଲେ ଯୁଦ୍ଧେ କିମ୍ପା ନ ଗଲା ମୋ ମାଥ ।
ଜୀଇଁକରି ଏବେ ଘରକୁ ମୁହିଁ ଯାଇ
କହିବି କାହାକୁ ମୁଁ କିସ ମୁହଁ ଚାହିଁ ।
ଏରୂପେ ଅନେକ ବିଚାରି ଜୟଦ୍ରଥ
ସେବା କରିଲେ ଯାଇକରି ପଞ୍ଚମାଥ ।

ଷଡ଼ଋତୁ ଯାକ ଦେହରେ ଭୋଗ କଲେ
କ୍ଷୁଧା ତୃଷ୍ଣା ଦୁହିଙ୍କି ମନୁ ପାଶୋରିଲେ ।
ଶିବ ତା ସେବାରେ ସୁପ୍ରସନ୍ନ ହୋଇ
ବୋଇଲେ ବର ମାଗ ସିନ୍ଧୁ କୁଳସାଇଁ ।
ଜୟଦ୍ରଥ ବୋଇଲେ ଯୁଦ୍ଧେ ପାଣ୍ଡୁ ପୁଅ-
ମାନଙ୍କୁ ନିବାରିବି ଏହି ବର ଦିଅ ।
ଶିବ ବୋଇଲେ ତୁହି ଅର୍ଜ୍ଜୁନ ନ ଥିଲେ
ଚାରିପାଣ୍ଡବଙ୍କୁ ତ ନିବାରିବୁ ଭଲେ ।
ତୋତେ ବଳିଆଇ ଆସିବା ସାମରଥ
ନୋହିବ ତାଙ୍କରି ଜାଣ ହେ ଜୟଦ୍ରଥ ।
ଆହେ ନୃପଶେଖର ଶିବଙ୍କର ବଳେ
ପାଣ୍ଡବଙ୍କୁ ବାରିଲେ ଜୟଦ୍ରଥ ରୋଳେ ।
ନୋହିଲେ ଜୟଦ୍ରଥ ହାତେ ଏଡ଼େ କଥା
କେବେ ନୁହନ୍ତାଟି ରାଜନ ମହାରଥା ।
ଜୟଦ୍ରଥ ଧନୁଘୋଷରେ ପାଣ୍ଡୁସୈନ୍ୟ-
ଯାକ ଯୁଦ୍ଧ ଛାଡ଼ି ହୋଇଲେ ଛନ୍ନ ଛନ୍ନ ।
ତୁମ୍ଭ ସେନା ତା ଦେଖି ଉଡ଼ାଇ ପତାକା
ଟିରାମାନ ପକାଇ ଉଚ୍ଚେ କଲେ ଡକା ।
ଜୟଦ୍ରଥ ରାଜାଙ୍କ ସମୀପକୁ ଗଲେ
ଦୁର୍ବୁଦ୍ଧି ପାଣ୍ଡବେ ହେ ବୋଲିଣ ବୋଇଲେ ।
ବରାହ କେତୁରଥେ ଜୟଦ୍ରଥ ଥାଇ
ଯୁଝିଲେ ପାଣ୍ଡବଙ୍କୁ ଧନୁହାତ ହୋଇ ।
ସାରଥି ବାହିବାରେ ଜୟଦ୍ରଥ ରଥ
ଗତିରେ ମଣ୍ଡିଦେଲା ଯୁଦ୍ଧଭୂମି ପଥ ।
ଶ୍ୱେତଛତ୍ର ଶ୍ୱେତଚାମର ଜୟଦ୍ରଥ
ମାଥ ମଣ୍ଡିଦେଲା ସବୁରି ଦୃଷ୍ଟିପଥ ।
ଅଭିମନ୍ୟୁ ଯୁଦ୍ଧରେ ଯୋଦ୍ଧାଏ ପଳାଇ
ଯିବାରୁ ଯୁଦ୍ଧଭୂମି ଥିଲା ପଦା ହୋଇ ।
ସେ ଭୂମିଯାକରେ ରଖାଇ ତୁମ୍ଭ ବଳ
ଜୟଦ୍ରଥ ନୃପତି କଲେଟି ସଙ୍କୁଳ ।
ସାତ୍ୟକିଙ୍କି ତିନି ଯେ ଶିଖଣ୍ଡୀକି ଦଶ
କେକୟମାନଙ୍କୁଟି ଶର ପଞ୍ଚବିଂଶ ।
ଭୀମଙ୍କୁ ଆଠ ପାଞ୍ଚ ଦ୍ରୁପଦ ନୃପଙ୍କୁ
ତିନି ତିନି ଦ୍ରୌପଦୀଦେବୀଙ୍କ ସୁତଙ୍କୁ ।
ଧୃଷ୍ଟଦ୍ୟୁମନଙ୍କୁ ଷାଠିଏ ଗୋଟି ଶର
ବିନ୍ଧି ବିରାଟଙ୍କୁ ବିନ୍ଧିଲେ ଦଶ ଶର ।
ଏ ବାହାରେ ଯୁଧିଷ୍ଠିର ନରପତିଙ୍କି
ସତୁରିଟି ଶର ବିନ୍ଧିଲେ ଧନୁ ଝିଙ୍କି ।
ଏଥିରୁ ଆନ ରଥୀ ଯେତେ ପାଣ୍ଡବଙ୍କ
ତାଙ୍କର ମଧ୍ୟ କାଣ୍ଡେ ରଚିଲେ ଆତଙ୍କ ।

ଯୁଧିଷ୍ଠିର ରାଜା ତାହା ଦେଖି ହସିଲେ
ଜୟଦ୍ରଥ ଧରିବା ଧନୁକୁ କାଟିଲେ ।
ନିମିଷ ମାତ୍ରକରେ ଆନ ଧନୁଟାଏ
ଧରିଣ ଗୁଣ ଦେଲେ ଜୟଦ୍ରଥ ରାୟେ ।
ଯୁଧିଷ୍ଠିର ରାଜାଙ୍କୁ ଦଶ କାଣ୍ଡେ ରୁନ୍ଧି
ତିନି ତିନି କାଣ୍ଡ ସବୁଙ୍କୁ ଦେଲେ ବାନ୍ଧି ।
ଜୟଦ୍ରଥ ଲାଘବ ଦେଖି ବାତପୁତ୍ର
କାଟିଲେ ଜୟଦ୍ରଥ ଧନୁ ଧ୍ୱଜ ଛତ୍ର ।
ପୁଣି ଧନୁଟାଏ ଧରିଣ କରପୁଟେ
ଜୟଦ୍ରଥ ନୃପତି ଝିଙ୍କି ଅଛି ଆଣ୍ଟେ ।
ଭୀମଙ୍କର ଧ୍ୱଜ ଧନୁକୁ କାଟିଦେଲେ
ଘୋଡ଼ାଙ୍କୁ କାଣ୍ଡେ ଯମଦାଣ୍ଡେ ବସାଇଲେ ।
ମରନ୍ତେ ଅଶ୍ୱ ଭୀମ ରଥରୁ ଓହ୍ଲାଇ
ସାତ୍ୟକିଙ୍କ ରଥେ ବସିଲେ ଡେଇଁ ଯାଇ ।
ଜୟଦ୍ରଥ ତୁମର ମହତ କର୍ମ କରି-
ବାରୁ ସ୍ତୁତି କଲେ ସକଳ ଦଣ୍ଡଧାରୀ ।
ଅଭିମନ୍ୟୁ ଗଜ ମାରିଣ ବ୍ୟୂହ ଭେଦି
ଯିବା ବାଟ ନିରୋଧି ଦେଲେ ସେ ସମ୍ପାଦି ।
ଜୟଦ୍ରଥ ରହିଥିଲେ ତ ରଥ ଚଢ଼ି
ଏଣୁ ପାଣ୍ଡୁ ସେନାକୁ ନ ଦେଲେ ସେ ଛାଡ଼ି ।
ଯେଉଁ ଯେଉଁ ରଥୀଙ୍କ ଜୟଦ୍ରଥ ରଣ
କଲେ ସେ ହାରିଲେ ଶିବଙ୍କ ବରେ ଜାଣ ।
ନିରୋଧନ୍ତେ ପାଣ୍ଡୁ ସେନାକୁ ଜୟଦ୍ରଥ
ମହତ ଯୁଦ୍ଧ ପ୍ରବର୍ତ୍ତିଲା ନରନାଥ ।
ଅରଜୁନ ସୁତ- ମକର ଚହଟି-
ବାରୁ ତୁମ୍ଭର ସେନା-ସିନ୍ଧୁ ହେଲେ ଘାଣ୍ଟି ।
ଅଭିମନ୍ୟୁଙ୍କର ଦେଖିଣ ଏହି ବଳ
ଯୁଝିଲେଟି ତୁମ୍ଭ ପ୍ରଧାନ ରଥୀକୁଳ ।
ଅଭିମନ୍ୟୁ ତୁମ୍ଭ ରଥୀଙ୍କି ହୋଇ କ୍ରୋଧ
ବିନ୍ଧନ୍ତେ ପରସ୍ପରେ ପ୍ରବର୍ତ୍ତିଲା ଯୁଦ୍ଧ ।
ରଥ ସମୂହରେ ଯେ ଅଭିମନ୍ୟୁ ରୁନ୍ଧି
ହୁଅନ୍ତେ କାଣ୍ଡଟିଏ ଧନୁ ମଧ୍ୟେ ସନ୍ଧି ।
ଆଗ ବୃଷସେନର ଧ୍ୱଜକୁ କାଟିଲେ
ପଛେ ତାର ଧନୁକୁ କାଟି ପକାଇଲେ ।
ପୁଣି ବାଛି ବୃଷସେନର ଚାରି ହୟ
ଦେହେ ଅଭିମନ୍ୟୁ ବିନ୍ଧିଲା କାଣ୍ଡଚୟେ ।
ଏ ସକାଶରୁ ବୃଷସେନର ଘୋଡ଼ାଏ
ରଥୀ ରଥ ଘେନି ପଳାଇଗଲେ ରାୟେ ।
ବୃଷସେନ ପଳାଇବାର ବାଟେ ରଥ
ବୁହାଇଲେଟି ଅଭିମନ୍ୟୁ ମହାରଥ ।

ତୁମ୍ଭର ରଥୀମାନେ ଏ କର୍ମକୁ ଦେଖି
କି କଲେ ଏ ବୋଲି ବୁଜିଲେ ସୁଖେ ଆଖି ।
ବଶାତୀୟ ରାଜା ଥରାଇ କ୍ରୋଧେ ମଜ୍ଜା
ଯୁଦ୍ଧରେ ଆବୋରିଲେ କୃଷ୍ଣଙ୍କ ଭଣଜା ।
ଷାଠିଏ ଗୋଟି କାଣ୍ଡ ଧନୁ ମଧେ ଯୋଚି
ଗଣି ଗଣି ଅଭିମନ୍ୟୁଙ୍କୁ ଦେଲେ ମୁଞ୍ଚି ।
ବଚନରେ ବୋଇଲେ ଜୀଇଁଥିଲେ ମୁହିଁ
ଜୀବ ଘେନି ତୁମ୍ଭେ ଯୁଦ୍ଧରୁ ଯିବ ନାହିଁ ।
ଏହା ଶୁଣିଣ ଅଭିମନ୍ୟୁ କ୍ରୋଧ ହେଲେ
ବଜାଇ କାଣ୍ଡ ବକ୍ଷସ୍ଥଳକୁ ବିନ୍ଧିଲେ ।
ସେ କାଣ୍ଡ ବଜ୍ରପରି ଧ୍ୱନିଟାଏ କଲା
ବଶାତୀଶ ରାଜାର ଉରକୁ ଭେଦିଲା ।
ପ୍ରାଣ ସଙ୍ଗେ ଧରି ପଡ଼ନ୍ତେ ମହୀତଳ
ପ୍ରକାଶ କଲା ତହିଁ ଅଭିମନ୍ୟୁ ବଳ ।
ବଶାତୀୟ ରାଜାଟି ମରନ୍ତେ କ୍ଷତ୍ରିୟ
ଚୟ ବେଢ଼ି ବିନ୍ଧିଲେ ଅଭିମନ୍ୟୁ କାୟ ।
ଅଭିମନ୍ୟୁ ତାହା ନ ସହିଟି ବିନ୍ଧିଲେ
ନୃପଙ୍କ ଧ୍ୱଜ ଧନୁ ଛତ୍ରକୁ କାଟିଲେ ।
କୁଣ୍ଡଳ ତୁଲେ ମୁଣ୍ଡ ଖଡ଼୍‌ଗ ତୁଲେ ବାହୁ
କାଟିଲେ ଅଭିମନ୍ୟୁ ରଥି-ଚନ୍ଦ୍ର-ରାହୁ ।
ଏ ବାହାରେ ଚରମ ବରମ ମୁକୁଟ
ରଥୀଙ୍କର କାଟିଲେ ଅରଜୁନ ଚାଟ ।
କେୟୁର ହାର ଶକ୍ତି ପରିଘ ତୋମର
କାଟିଲେ କେତେ ତା କହିବି ନରବର ।
କାଟନ୍ତେ ରଥମାନେ ମହୀଦେଶେ ଭାଜି
ପଡ଼ନ୍ତେ କର୍ଣ୍ଣ ସ୍ତବ୍ଧ କଲେ ସେ ଗରଜି ।
ପ୍ରକାଶନ୍ତେ ଅଭିମନ୍ୟୁ ଦେହର ବଳ
ଏ ସକାଶୁଁ ଅଗମ୍ୟ ହେଲା ଯୁଦ୍ଧସ୍ଥଳ ।
ଅଭିମନ୍ୟୁ ସକଳ ଦିଗରେ ଚହଟି
ଯୁଝିଲେ ନ ଦେଖିଲୁଁ ଆମ୍ଭେ ସେ ରୂପଟି ।
କେବଳ ଧନୁ ଶବ୍ଦ ତାଙ୍କର ଗୋଚର
ହୋଇଲା ଏକମାତ୍ର କର୍ଣ୍ଣକୁ ନୃବର ।
ଯମ ଦେବ ପରି ବିସ୍ତାରି ଧନୁ ପାଟି
ଗିଳିଲେ ଅଭିମନ୍ୟୁ ତୁମ୍ଭ ସେନା କୋଟି ।
ଅଭିମନ୍ୟୁ ବଳରେ ସେନାଏ ମୋହକୁ
ପାଆନ୍ତେ ଚାରିପଟେ ଦେଖିଲେ ତାହାଙ୍କୁ ।
ସତ୍ୟଶ୍ରବା-ମୃଗକୁ ଅଭିମନ୍ୟୁ-ସିଂହ
ଧଇଲେ ଝାମ୍ପିପଡ଼ି ଧରି ମହାକୋହ ।
ତାହା ଦେଖି ତୁମ୍ଭ କ୍ଷତ୍ରିୟ ହୋଇ ଗୋଟି
ଅଭିମନ୍ୟୁ ଦେହେ ବିନ୍ଧିଲେ କୋଟି କୋଟି ।

କ୍ଷତ୍ରିୟ-ନଦୀ ଅଭିମନ୍ୟୁ-ସିନ୍ଧୁ ପାଇ
ରହିଲେ ମଜ୍ଜି ଜାଣ ଆହେ ନରସାଇଁ ।
ବାତାହତ ବୋଇତ ଜନଙ୍କ ପରାୟେ
ତା ଦେଖି ଥରି ଗଲେ ତୁମ୍ଭ ସେନା ରାୟେ ।
ଶଲ୍ୟପୁଅ ରୁକ୍ମରଥ ଏ ସମୟରେ
କହିଲେ ତୁମ୍ଭ ସେନାମାନଙ୍କ ଆଗରେ ।
ମୁଁ ଥାଉଁ ଅଭିମନ୍ୟୁ ସକାଶରୁ ଭୟ
ନ ପାଅ ଏକ୍ଷଣି କରିବି ତାଙ୍କୁ କ୍ଷୟ ।
ଏହିରୂପେ ପ୍ରତିଜ୍ଞା ରୁକ୍ମରଥ କରି
ବାହାରିଲେ ସୁଭଦ୍ରା ତନୟକୁ ମାରି ।
ଅଭିମନ୍ୟୁର ଦୁଇ ବାହୁ ବକ୍ଷସ୍ଥଳ
ତିନିଙ୍କି ଲାଖ କରି ବିନ୍ଧିଲେ ଶରଜାଳ ।
ଅଭିମନ୍ୟୁ ତାହା ନ ସହି ବିନ୍ଧି ଶର
ଭୁଜ ଧନୁ ତୁଲେ କାଟିଦେଲେ ଶିର ।
ରୁକ୍ମରଥ ପାଶେ ସମ୍ପୃକ୍ତ ରାଜପୁତ୍ର
ଥିଲେ ତାହା ଦେଖି ଥରାଇ କ୍ରୋଧେ ଗାତ୍ର ।
ତାଳମାତ୍ର ପ୍ରମାଣ ଧନୁ କରେ ଧରି
ଧାଇଁଲେ ଅଭିମନ୍ୟୁଠାକୁ ଦଣ୍ଡଧାରୀ ।
ବେଢ଼ି ଅଭିମନ୍ୟୁକୁ ରାଜପୁତ୍ରଗଣ
ବିନ୍ଧି ଶର କ୍ରୋଧେ ଦେଖାଇ ଦେହଟାଣ ।
ମନେ କଲେ ଏକ୍ଷଣି ଯମନଗରକୁ
ଯିବ ଅଭିମନ୍ୟୁ ନ କରି ବିକ୍ରମକୁ ।
ତୁମ୍ଭ ପକ୍ଷରେ ରାଜପୁତ୍ରଙ୍କର କାଣ୍ଡ
ସେକାଳେ ଛାଇଦେଲା ନୃପ ଯୁଦ୍ଧକାଣ୍ଡ ।
ସେ ଘେନି ଅରଜୁନସୁତଙ୍କୁ ଯୋଦ୍ଧାଏ
ଯୁଦ୍ଧରେ ଦେଖି ନ ପାରିଲେ ନରରାୟେ ।
ଝିଙ୍କପକ୍ଷୀ ପରାୟେ ଅଭିମନ୍ୟୁ ରଥ
ଅଶ୍ୱ କାଣ୍ଡେ ମଣ୍ଡି ଦେଲେ ହେ ନରନାଥ ।
ଅଭିମନ୍ୟୁ ତାହା ସହିଟି ନ ପାରିଲେ
ପାର୍ଥ ଶିଖାଇବା ଗାନ୍ଧର୍ବ ଅସ୍ତ୍ର କଲେ ।
ଗାନ୍ଧର୍ବାସ୍ତ୍ରେ କୁରୁରଥୀଙ୍କି ମୋହ କରି
ଦିଶିଲେ ଅଭିମନ୍ୟୁ ସହସ୍ରେ ରଥୀ ପରି ।
ଯେତେ ରାଜପୁତ୍ର ତାହାଙ୍କୁ ବେଢ଼ିଥିଲେ
ଦେହ ତଳେ ଥୋଇ ଯମଙ୍କୁ ପ୍ରାଣ ଦେଲେ ।
କୋମଳ ବୟସୀୟା ଶଏ ରାଜପୁତ୍ର
ଅଭିମନ୍ୟୁ ସଙ୍ଗତେ ଯୁଝି ହେଲେ ହତ ।
ତୁମ୍ଭର ସୁତ ଦୁର୍ଯ୍ୟୋଧନ ତାହା ଦେଖି
ମହାଭୟ ପାଇ ବୁଜିଲେ ବେନି ଆଖି ।
ହାତୀ ରଥୀ ଘୋଡ଼ା ଅଭିମନ୍ୟୁଙ୍କ ବାଣ
ପାଇକରି ଯାକ ଭେଟିଲେ ଯମରାଣ ।

ଦୁର୍ଯ୍ୟୋଧନ ତାହା ସହିଟି ନ ପାରିଲେ
ଯୁଝିବାକୁ ଅଭିମନ୍ୟୁଙ୍କୁ ଧାଇଁ ଗଲେ ।
ଅଭିମନ୍ୟୁ ସଙ୍ଗତେ କ୍ଷଣେ ପାଇ ଯୁଦ୍ଧ
କରି ପଳାଇଲେ ହୁଅନ୍ତେ ପ୍ରାଣ ରୁଦ୍ଧ ।
ଧୃତରାଷ୍ଟ୍ର ବୋଇଲେ କୁରୁ ବେଢ଼ିକରି
ଏକା ଜଣକୁ ତ ରହିଲେ ଯୁଦ୍ଧେ ହାରି ।
ଏଣୁଟି ଅଚିନ୍ତ୍ୟ ଆର୍ଜ୍ଜୁନି ପରାକ୍ରମ
ଜାଣ ଆହେ ସଞ୍ଜୟ ମନ୍ତ୍ରିଙ୍କ ଉତ୍ତମ ।
ଧର୍ମରେ ଥିବାରୁଟି ଦେଖ ପାଣ୍ଡୁପୁତ୍ରେ
ଯୁଝୁଛନ୍ତି ଭୟକୁ ନ ଧରିଣ ଗାତ୍ରେ ।
ବିଚାରୁଛନ୍ତି ଯାହା କରୁଛନ୍ତି ତାହା
ଅଧର୍ମ୍ମ ଆମ୍ଭେ ବୋଲୁଅଛୁ ଆହା ଆହା ।
ଶଏଟି ରାଜପୁତ୍ର ହୋଇଲେ ନିଧନ
ପଳାଇଲା ଯୁଦ୍ଧରୁ ମୋ ଜ୍ୟେଷ୍ଠ ନନ୍ଦନ ।
ମୋ ଲୋକରେ ଅଭିମନ୍ୟୁଙ୍କୁ କେ ଆଗୁଳି
ଯୁଦ୍ଧ କଲା କହ ସଞ୍ଜୟ ମନ୍ତ୍ରି ଭାଳି ।
ସଞ୍ଜୟ ବୋଇଲେ ତୁମ୍ଭର ଲୋକଯାକ
ଅଭିମନ୍ୟୁ ଶାୟକେ ଲଭିଲେ ମହାଦକ ।
ଭାଇ ପୁତ୍ର ମିତ୍ର ଯେ ବନ୍ଧୁଙ୍କୁ ଛାଡ଼ିଲେ
ପଛକୁ ମୁହଁ କରି ସମସ୍ତେ ଭାଜିଲେ ।
ସଇନ ଭଗ୍ନ ଦେଖି ଦ୍ରୋଣ ଅଶ୍ୱତ୍ଥାମା
ବୃହଦ୍‌ବଳ ଦୁର୍ଯ୍ୟୋଧନ ଯେ କୃତବର୍ମା ।
କର୍ଣ୍ଣ ସଉବଳ କୃପାଦି ରଥିକୁଳ
ଧାଇଁଲେ କରିବାକୁ ଆର୍ଜ୍ଜୁନିକି ରୋଳ ।
ତୁମ୍ଭର ଏ ରଥୀଏ ଅଭିମନ୍ୟୁ କାଣ୍ଡେ
ବିମୁଖ ହୋଇ ମୁଖ ମୋଡ଼ିଲେ ରଣଦାଣ୍ଡେ ।
ତୁମ୍ଭ ନାତି ଲକ୍ଷ୍ମଣ ଦୁର୍ଯ୍ୟୋଧନ ସୁତ
ପିଲାପଣ କରିଟି ହୋଇ ଧନୁ ହାତ ।
ଆର୍ଜ୍ଜୁନିକି ଯାଇଣ ଆଗୁଳନ୍ତେ ଏକା
ତା ଦେଖି ଦୁର୍ଯ୍ୟୋଧନ ଛାଡ଼ି ଯୁଦ୍ଧ ଦକା ।
ପୁତ୍ରସ୍ନେହେ ରହିଲେ ପୁତ୍ର ପୃଷ୍ଠବେଗେ
ତା ଦେଖି ନୃପେ ଜଗିଲେ ଯେ ତାଙ୍କ ପାଶେ ।
ରଥୀଙ୍କର ଧନୁ-ଘନରୁ କାଣ୍ଡ-ଧାରା
ବାହାରି ଭାଙ୍ଗିଲେ ଅର୍ଜ୍ଜୁନି ଗିରି ତୋରା ।
ସୁଭଦ୍ରା ସୁତଙ୍କର ଶରବ୍ରାତ ବାତ-
ପରି ହୋଇ ସେ ଶରଧାରା କଲା ହତ ।
ଏକା ତୁମ୍ଭ ନାତି ତରୁଣ ବୟସୀୟା
ରହିଲେ ରଥେ ଧନୁ ଧରି ହୋଇ ଠିଆ ।
ଦୁର୍ଯ୍ୟୋଧନ ରାଜା ଥିଲେ ତାଙ୍କର କତି
ଅଭିମନ୍ୟୁ ତୁଲେ ଯୁଝିବା କରି ମତି ।

ଅଭିମନ୍ୟୁ ତାହାଟି ତରକି ପାରିଲେ
ଲକ୍ଷ୍ମଣକୁମାର ସମୀପେ ରଥ କଲେ ।
ଅଭିମନ୍ୟୁଙ୍କର ତ ଉର ବାହୁ ଦୁଇ
ତୀକ୍ଷ୍ଣକାଣ୍ଡେ ଦେଲେ ତୁମ୍ଭ ନାତି ଛାଇ ।
ଆଘାତିତ ସର୍ପର ପରି ଅଭିମନ୍ୟୁ
ସେ ଶରେ ପୀଡ଼ା ପାଇ ଧରି ହୃଦେ ମନ୍ୟୁ ।
କହିଲେ ତୁମ୍ଭର ବନ୍ଧୁର ବନ୍ଧୁଙ୍କୁ ଦେଖିଥାଅ
ଦେଖିବଟି ଏକ୍ଷଣି ଯାଇ ସୂର୍ଯ୍ୟପୁଅ ।
ପାଣ୍ଡୁନୃପତିଙ୍କ ନାତି ଏରୂପେ କହିଲେ
ଭଲ ଭାଲିକାଣ୍ଡଟି ଧନୁରେ ଯୋଚିଲେ ।
ଦୁର୍ଯ୍ୟୋଧନ ଆଗରେ ତୁମ୍ଭ ନାତି ମୁଣ୍ଡ
କାଟି କରି ଗଡ଼ାଇ ଦେଲେ ରଣଦାଣ୍ଡ ।
ତୁମ୍ଭ ନାତି ମରଣ ଦେଖି ରଥିଗଣ
ନୟନ-ନଳିନରୁ ତେଜିଲେ ହେ ବନ ।
ଦୁର୍ଯ୍ୟୋଧନ ନୃପତି ପୁତ୍ର ହତ ଦେଖି
କ୍ରୋଧ ହୋଇ ତରାଟିଦେଇ ଦୁଇ ଆଖି ।
ସଇନକୁ ବୋଇଲେ ଅଭିମନ୍ୟୁ ପ୍ରାଣ
ବେଗେ ଘେନି ପକାଅ ବିନ୍ଧି ମୁନବାଣ ।
ଦୁର୍ଯ୍ୟୋଧନଙ୍କର ଏ ବଚନକୁ ଶୁଣି
ବେଢ଼ିଲେ ଅଭିମନ୍ୟୁ ବୀରେ ଦ୍ରୋଣ ଦ୍ରୋଣି ।
କୃପ ବୃହଦ୍‌ବଳ ଯେ କୃତକର୍ମା କର୍ଣ୍ଣ
ଏମାନେ ତ ବେଢ଼ି ବିନ୍ଧିଲେ ଅତିପୂର୍ଣ୍ଣ ।
ଏ ଛ ରଥିବଳ ଅର୍ଜ୍ଜୁନି ଦେଇ ମଛି
ଧାଇଁଲେ ଜୟଦ୍ରଥ ବଳେ ନୋହି ବ୍ୟଥି ।
କ୍ରାଥପୁତ୍ର କଳିଙ୍ଗ ନିଷାଦ ରାଜସୈନ୍ୟ
ଧରିଣ ବାଟ ରୁନ୍ଧି କଲେ ଆୟୋଜନ ।
ଅଭିମନ୍ୟୁ ଶରବ୍ରାତ-ବାତକୁ ପାଇ
ହାତୀଏ ଘନ ପରି ଉଡ଼ିଲେ ନୃସାଇଁ ।
କ୍ରାଥପୁତ୍ର କ୍ରୋଧେ ଥରାଇ ଅପଘନ
କଲେ ଆରଜୁନି ସଙ୍ଗତେ ଆୟୋଧନ ।
ତୁମ୍ଭର ରଥୀମାନେ କ୍ରୋଧ କେ ମନୁଆଁ-
ପଣ କରି ଶୁଣି ଯୁଝିଲେ ହୋଇ ଠିଆ ।
ଆରଜୁନି ରଥୀମାନଙ୍କୁ ନିବାରିଲେ
କ୍ରାଥପୁତ୍ର ଦେହକୁ ବଳାଇ ବିନ୍ଧିଲେ ।
କାଟି ଧ୍ୱଜ ଛତ୍ର ସାରଥି ଅଶ୍ୱ ପ୍ରାଣ-
ଘେନି ମୁଣ୍ଡ କାଟିଲେ କ୍ରାଥେ ବିନ୍ଧି ବାଣ ।
କୁଳ ଶୀଳ ଯେ ବଳବୀର୍ଯ୍ୟର ସହିତ
କ୍ରାଥପୁତ୍ର ହୁଅନ୍ତେ ଯୁଦ୍ଧଦାଣ୍ଡେ ହତ ।
ତୁମ୍ଭ ଯୋଦ୍ଧାମାନେ ତା ଦେଖି ଭୟ କଲେ
ଅଭିମନ୍ୟୁଙ୍କ ପାଖ ଛାଡ଼ି ପଳାଇଲେ ।

ଧୃତରାଷ୍ଟ୍ର ବୋଇଲେ କୁଳ ଅନୁରୂପ
କର୍ମ କରିଥିଲେ ଅର୍ଜୁନି ଝିଙ୍କି ଚାପ ।
ତିନି ବରଷିଆ ତାଙ୍କର ଘୋଡ଼ା ଚାରି
ଗତିକି ଯୋଚିଲେ ରହିବ ବାତ ହାରି ।
ପୁଣି ତ ହୋଇଅଛି ତରୁଣ ବୟସ
ହୋଇ ନାହିଁ ମଧ୍ୟ ତାଙ୍କର ଦୁଇନିଶ ।
ଏ ରୂପେ ଅଭିମନ୍ୟୁ ବାଳକୁମରକୁ
ଆଉ କେ ଯୁଦ୍ଧକଲା ତା କହ ଆମ୍ଭଙ୍କୁ ।
ସଞ୍ଜୟ ବୋଇଲେ ହେ ତୁମ୍ଭ ସୈନ୍ୟେ ପଶି
ଯୁଝିଲେ ଆରଜୁନି ହୋଇଥିଲେ ରୋଷୀ ।
ପାଇ ଅଭିମନ୍ୟୁଙ୍କ ସଳଙ୍କ ବିଶିଖ
ତୁମ୍ଭ ପକ୍ଷ ନୃପେ ରହିଲେ ଆଡ଼ି ମୁଖ ।
ବୃହଦଳ କର୍ଣ୍ଣ କୃପ ଯେ ଦ୍ରୋଣ ଦ୍ରୋଣି
କୃତବର୍ମା ମିଶି ଛ ରଥୀ ଚାପ ଟାଣି ।
ଧପଧାପେ ଘୋଡ଼ାମାନଙ୍କୁ ଧୁଆଁଇଲେ
କୋପକରିଚି ରୋପ ଅମାପ ବିନ୍ଧିଲେ ।
ସେନାଯାକ ତୁମ୍ଭର ଜୟଦ୍ରଥଠାକୁ
ଧାଇଁଲେ ଏକା ଦେଖି ଯୁଦ୍ଧରେ ତାହାଙ୍କୁ ।
ଜୟଦ୍ରଥଙ୍କର ହୋଇଣ ପୃଷ୍ଠ ସାହା
ଯୁଝିଲେ ପାଣ୍ଡବଙ୍କୁ ହୋଇ ଧନୁର୍ବାହା ।
ଏକା ଅଭିମନ୍ୟୁ ତୁମ୍ଭର ରଥୀଯାକ
ନିବାରି ପକାଇଲେ ବିନ୍ଧିଣ ଶାୟକ ।
ରୁକ୍ମ ଶିଳାଘଷା ସଲଖ ବିଶିଖକୁ
ବିନ୍ଧିଲେ ପାଞ୍ଚଷଟି ଦ୍ରୋଣ ଆଚାର୍ଯ୍ୟଙ୍କୁ ।
ବୃହଦ୍‌ବଳ ଦେହକୁ କୋଡ଼ିଏଟି ଶର
ଗଣି ଗଣି ବିନ୍ଧିଲେ ଅଭିମନ୍ୟୁ ବୀର ।
କୃପ କୃତକର୍ମାକୁ ଷାଠିଏ ଅଶିଏ
କ୍ରମରେ ବିନ୍ଧିଲେ ସେ ନିର୍ଦ୍ଦୟ ହୃଦୟେ ।
ଅଶ୍ୱତ୍‌ଥାମା ମରମ ସ୍ଥାନକୁ ଲଖାଇ
ଦଶ ଶର ବିନ୍ଧିଲେ ଆର୍ଜୁନି କ୍ରୋଧ ହୋଇ ।
କର୍ଣ୍ଣଙ୍କ କର୍ଣ୍ଣକୁ କର୍ଣ୍ଣିକା କାଣ୍ଡ ବାଛିଛି
ବିନ୍ଧିଲେ ଅଭିମନ୍ୟୁ ସୁଭଦ୍ରାଙ୍କ ବଛି ।
ଦୁଇ ପାର୍ଷ୍ଣି ସାରଥି ତୁଲେ କୃପଙ୍କର
ଘୋଡ଼ାଙ୍କ ପ୍ରାଣ ନେଇ ଅଭିମନ୍ୟୁ ବୀର ।
କୃପଙ୍କର ଦେହକୁ ରୁକ୍ମ ପୁଂଙ୍ଖ ଶର
ଦଶଗୋଟି ବିନ୍ଧିଲେ ହେବାକୁ ସଂହାର ।
ବୃନ୍ଦାରକ ବୀରଙ୍କୁ ବୃନ୍ଦାରକ ପୁର-
ଦେଖାଇଲେ ଯୁଦ୍ଧରେ ଅଭିମନ୍ୟୁ ବୀର ।
ସାନ ସାନ କାଣ୍ଡେ କୋଡ଼ିଏ ଦ୍ରୋଣସୁତ
ଅଭିମନ୍ୟୁ ଦେହକୁ ବିନ୍ଧିଲେ ତୁରିତ ।

ସେହିରୂପେ ଅଭିମନ୍ୟୁ କାଣ୍ଡରାଜି
ଅଶ୍ୱଥାମା ଦେହକୁ ବିନ୍ଧିଲେ ଗରଜି ।
ଷାଠିଏ ଗୋଟି କାଣ୍ଡ ଦ୍ରୋଣଙ୍କ ନନ୍ଦନ
ବିନ୍ଧିଲେ ଭାବି ଅଭିମନ୍ୟୁଙ୍କ ନିଧନ ।
ମୈନାକ ପର୍ବତ ପରାୟେ ଅଭିମନ୍ୟୁ
ଦିଶିଲେ ସେ କାଣ୍ଡ ବୃକ୍ଷରେ ମଣ୍ଡି ତନୁ ।
ବାସ୍ତଗୋଟି କାଣ୍ଡ ଅଶ୍ୱଥାମା ଦେହେ
ଝିଙ୍କି ଧନୁ ବିନ୍ଧିଲେ ଅଭୀମନ୍ୟୁ କୋହେ ।
ପୁତ୍ର ସ୍ନେହେ ଦ୍ରୋଣ ବିନ୍ଧିଲେ ଶଏ ଶର
ଅଶ୍ୱଥାମା କଲେ ଷାଠିଏଟି ପ୍ରହାର ।
କର୍ଣ୍ଣ ଦେଲେ ଦ୍ୱାବିଂଶ ଭାଲି ଶର ବିନ୍ଧି
କୃତବର୍ମା ବିନ୍ଧିଲେ ଚୌଦ ଶର ସନ୍ଧି ।
ବୃହଦ୍ଧଳ ପଞ୍ଚାଶ କୃପାଚାର୍ଯ୍ୟ ଦଶ
ନାରାଚକୁ ବିନ୍ଧିଲେ ମୋଡ଼ିଦେଇ ନିଶ ।
ଏମାନଙ୍କୁ ଏକାକୀ ଅଭିମନ୍ୟୁ ରଥୀ
ଦଶ ଦଶ ଶର ବିନ୍ଧିଲେ ନୋହି ବ୍ୟଥୀ ।
ଅଭିମନ୍ୟୁ କାଣ୍ଡରେ ତୁମ୍ଭ ରଥିବୃନ୍ଦ
ପୀଡ଼ାପାଇ ଯୁଝିଲେ ନୋହିଣ ଆନନ୍ଦ ।
ବୃହଦ୍ଧଳ କର୍ଣ୍ଣି ନାରଚ ଅଭିମନ୍ୟୁ
ଦେହକୁ ବଜାଇ ବିନ୍ଧିଲେ ଧରି ମନ୍ୟୁ ।
ଅଭିମନ୍ୟୁ ତାହା ସହିଟି ନ ପାରିଲେ
ଘୋଟକ ଧ୍ୱଜ ସୂତ ଚାପକୁ କାଟିଲେ ।
ବିରଥ ହୋଇଣ କୋଶଳ ଦେଶ ରାଜା
ଧଇଁଲେ ଖଡ଼୍‌ଗ ଚର୍ମ ଯୁଦ୍ଧେ ଦେଇ ମଜ୍ଜା ।
ଅର୍ଜୁନି ବାଣ ବୃହଦ୍ ବଳଙ୍କ ହୃଦୟ-
ଭେଦିଣ ଦେଖାଇଲେ ଯମଙ୍କ ଆଳୟ ।
ଏହା କହିସାରି ସହସ୍ରଦଶ ନୃପ-
ମାନଙ୍କ ମୁଣ୍ଡ କାଟିଦେଲେ ବିନ୍ଧି ରୋପ ।
ମରନ୍ତେ ବୃହଦ୍‌ବଳ ଗର୍ଜି ଅଭିମନ୍ୟୁ
କମ୍ପାଇଲେ କାଣ୍ଡରେ ଯୋଦ୍ଧାଙ୍କର ତନୁ ।
କର୍ଣ୍ଣଙ୍କ କର୍ଣ୍ଣକୁ କର୍ଣ୍ଣିକାଶର ବିନ୍ଧି
ଦେଲେ ତାଙ୍କୁ ପୁଣି ପଞ୍ଚାଶ ଶରେ ରୁନ୍ଧି ।
କର୍ଣ୍ଣ ମଧ୍ୟ ତ ଅଭିମନ୍ୟୁଙ୍କୁ ବିନ୍ଧିଲା-
ପରାୟେ ବିନ୍ଧି ଯୁଦ୍ଧେ ବୋଲାଇଲେ ଭଲା ।
ରକତେ ଜରଜର କର୍ଣ୍ଣଙ୍କର ତନ୍ୟୁ
କଲେଟି କାଣ୍ଡ ବିନ୍ଧି ଏକା ଅଭିମନ୍ୟୁ ।
କର୍ଣ୍ଣ ସେହିରୂପେ ଆର୍ଜୁନିଙ୍କ ଶରୀର
କାଣ୍ଡ ବିନ୍ଧି କଲେ ରକତେ ଜରଜର ।
ଦୁହିଙ୍କ ଦେହୁଁ ତ ରକତ ବହିଗଲେ
ଫୁଟିଥିବା କିଂଶୁକ ବୃକ୍ଷେ ନିନ୍ଦା କଲେ ।

ସାରଥି ଅଶ୍ୱ ଧ୍ୱଜ ତୁଲେ କର୍ଣ୍ଣଙ୍କର
ମନ୍ତ୍ରୀ ପ୍ରାଣ ନେଲେ ଆରଜୁନି ବୀର ।
ଏହା କରିସାରିଟି ଦଶ ଦଶ କାଣ୍ଡ
ପ୍ରତ୍ୟେକ ବିନ୍ଧିଲେ ଫୁଲାଇକ୍ରୋଧେ ପିଣ୍ଡ ।
ଛକାଣ୍ଡେ ଅଶ୍ୱ ସୂତ ତୁଲେ ଅଶ୍ୱକେତୁ
ଇହ ଛାଡ଼ି ପରଲୋକକୁ କଲେ ହେତୁ ।
ମାର୍ତ୍ତକାବତ ଭୋଜି କୁଞ୍ଜରକେତନ
ଯୁଦ୍ଧଦାଣ୍ଡେ ଦେଖିଲେ ଯମନିକେତନ ।
ଦୁଃଶାସନର ପୁଅ ରଥିଙ୍କ ମଧ୍ୟରୁ
ବାହାରି ଯୁଦ୍ଧ କଲା ନୋହି କିଛି ଭୀରୁ ।
ଅଭିମନ୍ୟୁ ଚାରି ଘୋଡ଼ାଙ୍କୁ ଚାରି ଶର
ବିନ୍ଧି ସାରଥିଙ୍କ କରିଣ ସେ ପ୍ରହାର ।
ଦଶକାଣ୍ଡରେ ଅଭିମନ୍ୟୁଙ୍କୁ ବିନ୍ଧିଲା
ଅଭିମନ୍ୟୁ ଯୁଝିବା ଦାଣ୍ଡକୁ ରୁନ୍ଧିଲା ।
ଅଭିମନ୍ୟୁ ଦୁଃଶାସନିକ ବିନ୍ଧି ସାତ
ବୋଇଲେ ଆଜି ଯୁଦ୍ଧେ ମଲ ନିଶ୍ଚେ ଭ୍ରାତ ।
ଜନକ ତୁମ୍ଭର ତ ହାରିଗଲେ ମୋତେ
ତୁମ୍ଭେ ଯୁଝି ଆସିଛ ବଳ ଅବା କେତେ ।
ଏହିରୂପେ କହିଣ ଶାଣଦିଆ କାଣ୍ଡ
ଅଭିମନ୍ୟୁ ବିନ୍ଧିଲେ ଝିଙ୍କିର କୋଦଣ୍ଡ ।
ସେ ନାରାଚକୁ ଦେଖି ଦ୍ରୋଣ ବଳବନ୍ତା
ତିନିକାଣ୍ଡେ କାଟିଲେ ଛାଡ଼ି ହୃଦଚିନ୍ତା ।
ଅଭିମନ୍ୟୁ ଅଶ୍ୱଥାମାର ଧ୍ୱଜ କାଟି
ବିନ୍ଧିଲେ ତିନି କାଣ୍ଡ ଶଲ୍ୟେ ଗୁଣ ଯୋଚି ।
ଅସମ୍ଭ୍ରାନ୍ତ ହୋଇଣ ନବଗୋଟି ଶର
ବିନ୍ଧିଲେ ଅଭିମନ୍ୟୁ ଦେହେ ମଦ୍ରେଶ୍ୱର ।
ଶଲ୍ୟଙ୍କର ଦୁଇପାର୍ଶ୍ୱରେ ସାରଥିଙ୍କି
ଦେଲେ ଆରଜୁନି ପ୍ରେତରଙ୍କ ପତିଙ୍କି ।
ଏ ବାହାରେ ଧନୁଟି କାଟି ପକାଇଲେ
ମଲ ହେ ଶଲ୍ୟ ବୋଲି ଛକାଣ୍ଡ ବିନ୍ଧିଲେ ।
ଅଭିମନ୍ୟୁ ଶରରେ ଶଲ୍ୟ ପୀଡ଼ା ପାଇ
ପଳାଇଲେ ପଛକୁ କ୍ଷଣେ ହେ ନ ରହି ।
ଚନ୍ଦ୍ରକେତୁ ସହାମେଘ ଯେ ଶତ୍ରୁଞ୍ଜୟ
ସୁବର୍ଚ୍ଚା ସୂର୍ଯ୍ୟଆଭାସକୁ କରି କ୍ଷୟ ।
ଶକୁନିକି ଅଭିମନ୍ୟୁ ଯେ ଯୁଦ୍ଧ କଲେ
ଶକୁନି ତିନି କାଣ୍ଡ ତାହାଙ୍କୁ ବିନ୍ଧିଲେ ।
ଦୁର୍ଯ୍ୟୋଧନ ରାଜାଙ୍କୁ କହିଲେ ଅନାଇ
ବଢ଼ାଇଦେବା ଅଭିମନ୍ୟୁଙ୍କୁ ବେଢ଼ାଇ ।
ଜଣ ଜଣକରେ କରିବା ନେବେ ଯୁଦ୍ଧ
ଏ ପିଲାଟି ଆମ୍ଭଙ୍କୁ କରିଦେବ ବଧ ।

କର୍ଣ୍ଣ ସେହିକାଳରେ କହିଲେ ଦ୍ରୋଣଙ୍କୁ
ଡରୁଅଛୁ ଦେଖି ଏ ପିଲା ବିକ୍ରମକୁ ।
ସକଳ କଥାରେ ତ ତୁମ୍ଭେ ପାରଙ୍ଗମ
ହେ ଏ କିରୂପେ ଦେଖିବ ଯମଗ୍ରାମ ।
ଦ୍ରୋଣ ବୋଇଲେ ଯେ ଗୋଟିଏ ଛିଦ୍ର ମୁହିଁ
ଅଭିମନ୍ୟୁଙ୍କ ଯାହା ଦେଖିଛି କହିବଇଁ ।
ବାବୁ ତ ଆସି ସାହା ହେବାକୁ ଅନାଇଁ
ଆମ୍ଭଙ୍କୁ ଯୁଝୁଛନ୍ତି ଜାଣ ଅଙ୍ଗସାଇଁ ।
ସବୁବେଳରେ ଅଭିମନ୍ୟୁଙ୍କର ଧନୁ
ମଣ୍ଡଳ ଆକାର ଦିଶୁଛି ସୂତସୂନୁ ।
ଅଭିମନ୍ୟୁ ଯୁଦ୍ଧ ଦେଖି ମୋ ଭୟ ସ୍ନେହ
ବଢ଼ି ବଢ଼ାଉଅଛି ମଧ ହୃଦେ ମୋହ ।
ଅରଜୁନ ପରି ଏହାର ଯୁଦ୍ଧ ରୀତି
ବିଶେଷାବିଶେଷକୁ ନ ଜାଣୁଛି ମତି ।
ଏକାଳେ ଅଭିମନ୍ୟୁ ବିନ୍ଧନ୍ତେ ଶର ଭିଡ଼ା
କର୍ଣ୍ଣ ମହାରଥୀ ପାଇଲେ ମହାପୀଡ଼ା ।
ବହିଲେ ଆହେ ଦ୍ରୋଣ ଅଭିମନ୍ୟୁ ବାଣ
ଭାଙ୍ଗି ପକାଇଲାଣି ଆମ୍ଭ ଯୁଦ୍ଧ ଟାଣ ।
କ୍ଷତ୍ରିୟ ହୋଇ କରେ ଧନୁ ଧରିଥାଇଁ
କିରୂପେ ଯୁଦ୍ଧ ଛାଡ଼ି ଯିବାଟି ପଳାଇ ।
ବୟସେ ତରୁଣ ହେଲେହେ ଅଭିମନ୍ୟୁ
ଶର ନିନ୍ଦା କରୁଛି ଜ୍ୟେଷ୍ଠ ମାସ ଭାନୁ ।
ଦ୍ରୋଣ ବୋଇଲେ ଆହେ ଅଭେଦ୍ୟ କବଚ
ରହିଛି ଅଭିମନ୍ୟୁ ଦେହେ ହୋଇ ଘଞ୍ଚ ।
ଏ କବଚ ପୂର୍ବେ ଅର୍ଜ୍ଜୁନଙ୍କୁ ଦେଇ-
ଥିଲି ସେ କବଚ ତାଠାରୁ ଅଛି ପାଇ ।
ଧନୁ ଗୁଣ ହୟ ଯେ ପାଷ୍ଣି ସାରଥିଙ୍କି
ପାରିବା ଯେବେ କରି କାଣ୍ଡେ ଟିକି ଟିକି ।
ତେବେ ଅବା ଅଭିମନ୍ୟୁଙ୍କର ମରଣ
ପାରିବା କେ ସବୁ ରଥୀ ବିନ୍ଧି ବାଣ ।
ଅଭିମନ୍ୟୁ ହାତରେ ଯେବେ ଧନୁ ଥିବ
ତେବେ ଯୁଦ୍ଧେ ସୁର ଅସୁର ସେ ଜିଣିବ ।
ଗୁରୁଙ୍କ ଏ ବଚନ କର୍ଣ୍ଣଙ୍କ କାନରେ
ପଶନ୍ତେ ସନ୍ତୋଷ ହୋଇଣ ସେ ମନରେ ।
ଅଭିମନ୍ୟୁ ବିନ୍ଧିବା ସମୟେ ଧନୁକୁ
କାଟି ପକାଇଲେ ଦେଖାଇ ବିକ୍ରମକୁ ।
କୃତବର୍ମାଙ୍କ ଚାରି ଘୋଡ଼ାଙ୍କର ପ୍ରାଣ
ସେ ସମୟେ ଘେନିଲେ ବିନ୍ଧି ମାରଗଣ ।
ଅଭିମନ୍ୟୁଙ୍କ ଦୁଇପାଖର ସାରଥି
ପ୍ରାଣ ନେଲେ ତୁମ୍ଭର କୃପ ମହାରଥୀ ।

ଏହା ଦେଖି ତୁମ୍ଭ ଯୋଦ୍ଧାଏ ବିନ୍ଧି ବାଣ
ଗୋଡ଼ାଇ ଅଭିମନ୍ୟୁ ସଙ୍ଗେ କଲେ ରଣ ।
ଯୁଦ୍ଧଧରମ ଛାଡ଼ି ତୁମ୍ଭ ରଥିକୁଳ
ବିରଥ କରି ସୌଭଦ୍ରଙ୍କୁ କଲେ ରୋଳ ।
ବିରଥ ହେବାକ୍ଷଣି ଅରଜୁନସୁତ
ଢାଲ ଖଣ୍ଡା ଦୁହିଁଙ୍କି କରି କରଗତ ।
ଆକାଶରେ ଗରୁଡ଼ ପରାୟେ ଉଡ଼ିଲେ
ତୁମ୍ଭ ବଳକୁଳ ଧର୍ପକୁ ଉଡ଼ାଇଲେ ।
ଅରଜୁନସୁତର ନଭ ଗତି ଦେଖି
ବିନ୍ଧିଲେ ଯୋଦ୍ଧାକୁଳ ଧନୁ ଟେକି ଆଖି ।
ଅଭିମନ୍ୟୁଙ୍କର କରର ଖଣ୍ଡା ଚାଣ୍ଡେ
ମୁଷ୍ଟିଠାରୁ କାଟି ଦେଲେଟି ଦ୍ରୋଣ କାଣ୍ଡେ ।
କର୍ଣ୍ଣ ଅଭିମନ୍ୟୁ ଢାଲକୁ ସେ ସମୟେ
କାଟି ପକାଇଲେ ବରଷି କାଣ୍ଡ ରାୟେ ।
ଖଣ୍ଡା ଯେ ଢାଲ ଛିଡ଼ି ଯାଆନ୍ତେ ନ ଡରି
ଖସିଲେ ଆକାଶୁ ବିଚିତ୍ର ଗତି କରି ।
ରଥରେ ଥୋଇଥିବା ଚକ୍ରକୁ ଧଇଲେ
ମାରିବାକୁ ଦ୍ରୋଣଙ୍କ ସମୀପକୁ ଗଲେ ।
ସେକାଳେ କୃଷ୍ଣ ପରି ଅଭିମନ୍ୟୁ ରୂପ
ଦେଖି ଆମ୍ଭ ନେତ୍ର ପାଇଲା ମହାତାପ ।
ଛତ୍ର କରେ ଧରି ନୟନ ରଙ୍ଗ କରି-
ଥିଲେ ତ ଝାଳ ଦେହଯାକ ଥିଲା ପୂରି ।
ଧାର ଧାର ହୋଇ ଯେ ବହିଣ ରକତ
କରୁଥିଲା ବିଜୁଳି ପ୍ରଭାଟିକି ହତ ।
ପବନରେ କେଶ ଉଡ଼ିଣ ଫରଫର
ଧିକ୍କାର କରୁଥିଲା ନବ ଜଳଧର ।
ସବୁ ରଥୀମାନେ ଅଭିମନ୍ୟୁଙ୍କ ହାତ
ଚକ୍ର ଦେଖି ଭାବିଲେ ଗଲା କି କାନ୍ଧୁ ମାଥ ।
ଏ ସମୟେ ସମସ୍ତେ ଏକମନା ହେଲେ
ଅଭିମନ୍ୟୁ ହାତ ଚକ୍ରକୁ କାଟିଦେଲେ ।
ଚକ୍ରହତ ଦେଖି ଆର୍ଜୁନି ତୋରାହୋଇ
ଗଦା ଧରି ଦ୍ରୋଣଙ୍କଠାକୁ ଗଲେ ଧାଇଁ ।
ଜ୍ୱଳନ୍ତ ବଜ୍ରପରି ଗଦା ଆର୍ଜୁନିର
ତାହାକୁ ଦେଖିକରି ଅଶ୍ୱତ୍ଥାମା ବୀର ।
ପହଣ୍ଡ ତିନି ରଥ ମଧ୍ୟରୁ ଘୁଞ୍ଚିଲେ
ଆର୍ଜୁନି ସେ ଗଦାରେ ଘୋଡ଼ାଙ୍କୁ ମାଇଲେ ।
ଏ ବାହାରେ ପାର୍ଷ୍ଣି ସାରଥିଙ୍କର ପ୍ରାଣ
ଯେ ଗଦା ପିଟି ନେଲେ ଆରଜୁନି ଜାଣ ।
ଅନୁଚର ସତସରୀ ଜଣଙ୍କ ତୁଲେ
ସୁବଳପୁତ୍ର କାଳିକେୟଙ୍କୁ ମାଇଲେ ।

ବଶାତୀୟ ଦେଶରୁ ଦଶଜଣ ରଥୀ
ମାଇଲେ ଆର୍ଜୁନି ଗଦାରେ କରି ବ୍ୟର୍ଥୀ ।
କୈକେୟରୁ ସାତଜଣକୁ ଗଦାବର
ପ୍ରହାରି ଦେଖାଇଲେ ଯମଙ୍କ ନଗର ।
ଏହା କରିସାରି ସେ ଗଦାକୁ ପ୍ରହାରି
ଦଶୋଟି ମତ୍ତହସ୍ତୀ ପକାଇଲେ ମାରି ।
ଦୁଃଶାସନ ରଥର ସମୀପକୁ ଗଲେ
ଗଦାରେ ରଥ ଭାଙ୍ଗି ଅଶ୍ୱଙ୍କୁ ମାଇଲେ ।
ବିରଥ ହୋଇ ଦୁଃଶାସନ ଗଦା ଧରି
ଧାଇଁଲେ ଆର୍ଜୁନି ପାଖକୁ ଆଗକରି ।
ଦୁହେଁ ତ ଗଦାଯୁଦ୍ଧେ ଅଟନ୍ତି କୁଶଳ
ଯୁଝିଲେ ଗଦାଧରି ଦେଖାଇଣ ବଳ ।
ଅନ୍ୟୋନ୍ୟରେ ହୁଅନ୍ତେ ଗଦା ପିଟାପିଟି
ପଡ଼ିଲେ ଇନ୍ଦ୍ରଧ୍ୱଜ ପ୍ରାୟେ ମହୀ ଲୋଟି ।
ତୁମ୍ଭର ନାତି ଦୁଃଶାସନି ଚେତା ପାଇ
ଉଠିଲେ ଆଗ ଗଦା ଧରି ନରସାଇଁ ।
ଅର୍ଜୁନସୁତ ଉଠୁଁ ଉଠୁଁ ରାଗ ଧରି
ପିଟିଲେ ମୁଣ୍ଡେ ଗଦାବରକୁ ହୁଙ୍କାରି ।
ଯୁଦ୍ଧଶ୍ରମ ଗ୍ରାସି ତ ଆର୍ଜୁନିଙ୍କି ଥିଲା
ପୁଣି ତା ମସ୍ତକରେ ଗଦାଘାତ ହେଲା ।
ଏଣୁଟି ବିଚେତା ହୁଅନ୍ତେ ମହାବଳ
ପ୍ରାଣକୁ ଘେନିଗଲେ ପ୍ରେତଲୋକପାଳ ।
ପର୍ବତ ବୃକ୍ଷରାଜି ଭାଙ୍ଗି ମହାବାତ
ନିବର୍ତ୍ତିବା ପ୍ରାୟେ ସେ ହେଲେ ରଣେ ହତ
ତପତ କରି ମହୀ ସୂର୍ଯ୍ୟ ଅସ୍ତ ହେଲା
କଥାକୁ ଅଭିମନ୍ୟୁ ମରିବା ଗଛିଲା ।
ଅଭିମନ୍ୟୁ ମତ୍ତହସ୍ତୀଟି କୁରୁସେନା-
ନଳିନୀକି ଦଳନ୍ତେ ହୋଇ ତୋଷମନା ।
ଦୁଃଶାସନି ସିଂହର ଗଦାନଖ ପାଇ
ପଡ଼ିଲେ ଯୁଦ୍ଧାନ୍ତ - ସରସୀ ତଟେ ଶୋଇ ।
ସୈନ୍ୟତୃଣ - ବନକୁ ଦାବାନଳ ପରି
ଶରଜ୍ୱାଳାଙ୍କରେ ଦେଇଣ ଗ୍ରାସ କରି ।
ଦୁଃଶାସନିର ବଳ - ଜଳକୁ ପାଆନ୍ତେ
ନ ଜଳି ନିବର୍ତ୍ତି ରହିଲେ ମହାମତେ ।
ପଡ଼ିବା ଭୂଷଣେ - ନକ୍ଷତ୍ରେ ହୋଇ ମଣ୍ଡି
ଚନ୍ଦ୍ରପରି ଦିଶୁଥିଲାଟି ମୁଖ ଖଣ୍ଡି ।
ରହି ତ ଥିଲ ତାଙ୍କ ମୁଣ୍ଡେ କାଙ୍କପକ୍ଷ
କଳଙ୍କ ତୁଲରେ ସେ ହୋଇଥିଲା ଲକ୍ଷ୍ୟ ।
ପବନରେ ଆହତ ନଳିନ ପରାୟେ
ଲେଉଟିଥିଲା ତାଙ୍କ ଚକ୍ଷୁ ଦୁଇ ରାୟେ ।

ସମରରେ ମରନ୍ତେ ଅମର ପରି ତନୁ
ଦିଶି ନିନ୍ଦା କରୁଥିଲାଟି ତେଜେ ଭାନୁ ।
ଏହା ଦେଖି ତୁମ୍ଭ ମନୁଆମନେ ଗୋଟି
ହୋଇ ସ୍ତୁତି କଲେ ରାଜନ ମେଲି ପାଟି ।
ଭୟାଳୁ ଭୟ ଛାଡ଼ି ହୃଦରୁ ବୋଇଲେ
ଭଲ ହେଲା ଅଭିମନ୍ୟୁ ଯୁଦ୍ଧରେ ମଲେ ।
ଯୋଦ୍ଧାଏ ତୁମ୍ଭର କରନ୍ତେ ସିଂହରଡ଼ି
ପର୍ବତ ଶୃଙ୍ଗମାନେ ପଡ଼ିଲେ ହେ ଝଡ଼ି ।
ତୁମ୍ଭର ମହାରଥିବୃନ୍ଦ ଯେତେ ଥିଲେ
ହରଷରେ ଜଳେ ସରସେ ମଜ୍ଜିଗଲେ ।
ପାଣ୍ଡବଙ୍କ ରଥୀଏ ଆର୍ଜୁନି ଗୁଣ ବନ୍ଦି
ପକାଇଲେ ନୟନୁ ଜଳ କାନ୍ଦି କାନ୍ଦି ।
ଆକାଶେ ଯେତେ ପ୍ରାଣୀ ଯୁଦ୍ଧ ଦେଖୁଥିଲେ
ରଥୀଙ୍କି ସେ ତୁମ୍ଭର ବହୁ ନିନ୍ଦା କଲେ ।
ଏକା ହୋଇ ଅଭିମନ୍ୟୁ ତ ଯୁଝୁଥିଲେ
ବେଢ଼ି ତ ସବୁ ରଥୀ ତାହାଙ୍କୁ ମାଇଲେ ।
ଏଣୁ ସବୁ ପ୍ରାଣୀ ବୋଲନ୍ତେ ଧିକ ଧିକ
ପାଇଲେ ନିନ୍ଦା ତୁମ୍ଭ କୁରୁରଥୀଯାକ ।
କୁଣ୍ଡଳ ତୁଲେ ମୁଣ୍ଡ ପତାକା ଚାମର
ବସ୍ତ୍ର ଖଡ୍‌ଗ ଚାପ ବିଶିଖ ଅଳଙ୍କାର ।
ରୁଷ୍ଟି ପ୍ରାସ ପଟ୍ଟିଶ ତୋମର ଶକତି
ଏମାନଙ୍କେ ପୂରି ରହିଛି ଯୁଦ୍ଧକ୍ଷିତି ।
ମୁଖ ଦେଇ ରକ୍ତ ପକାଇ ଉଦଗାରି
ଶୋଇଛନ୍ତି ଏରୂପେ ବହୁ ମରି ମରି ।
ଅଙ୍କୁଶକୁ ଧରି ମାହୁନ୍ତେ ଚଢ଼ି ହାତୀ
ଝୁମି ରହିଛନ୍ତି ମରି ହେ ନରପତି ।
ସାରଥି ରଥୀ ପତ୍ତି ମଡ଼ାରେ ସଂଗ୍ରାମ-
ଭୂମି ହୋଇଅଛି ହେ ରାଜନ ଅଗମ୍ୟ ।
ସେ ଯୁଦ୍ଧରେ ପାଣ୍ଡବମାନଙ୍କର ବ୍ୟଥା
ଜନ୍ମିଲା ମରନ୍ତେ ଆର୍ଜୁନି ମହାରଥା ।
ପଡ଼ନ୍ତେ ଯୁଦ୍ଧେ ଅଭିମନ୍ୟୁ ମହାରଥୀ
ପଳାଇଲେ ପାଣ୍ଡବ ଯୋଦ୍ଧା ହୋଇ ବ୍ୟଥୀ ।
ଯୁଧିଷ୍ଠିର ରାଜା ନୟନେ ଚାହୁଁଥିଲେ
ନିବାରି କାହାକୁ ହେ ରଖି ନ ପାରିଲେ ।
ପୁଣି ଧୈର୍ଯ୍ୟ ଧରିଣ ଯୁଧିଷ୍ଠିର ନୃପ
ସୈନ୍ୟକୁ ବୋଇଲେ ଶତ୍ରୁଙ୍କୁ କରି କୋପ ।
ଅଭିମନ୍ୟୁ ମରି ତ ସ୍ୱର୍ଗ ପାଇଛନ୍ତି
କାହିଁକି ପଳାଉଛ ତୁମ୍ଭେ କରି ଭୀତି ।
ରାଜପୁତ୍ର ଦଶ ସହସ୍ର ରଥୀ ପ୍ରାଣ
ଘେନିଲେ ଦେଖିଲେ ପ୍ରହାରି ମୁନ ବାଣ ।

ଶତ ଶତ ସହସ୍ର ସଂଖ୍ୟା ହାତୀ ରଥୀ
ଘୋଡ଼ା ପଦାତିକ କରିଟି ଯୁଦ୍ଧେ ବ୍ୟଥୀ ।
ଯମଙ୍କର ନଗରେ ନେଇ ବସାଇଲେ
କୁଳ ଅନୁରୂପେ କରମ କରି ମଲେ ।
ତାହାଙ୍କୁ ଶୋକ କରିବାର ତ ଆମ୍ଭର
ଉଚିତ ନୁହଇ ଯୋଦ୍ଧାଏ ମନେକର ।
ଧର୍ମରାଜା ଯୁଧିଷ୍ଠିରଙ୍କ ଏ ବଚନ
ଶୁଣି ଭୟ ଶୋକ ଛାଡ଼ିଲେ ଯୋଦ୍ଧାଗଣ ।
ଆମ୍ଭେମାନେ ଅଭିମନ୍ୟୁଙ୍କ କାଣ୍ଡ ପାଇ
ରକତ ଝରଣାକୁ ଦେହରୁ ବୁହାଇ ।
ନ ଦେଖିଲା ସୂର୍ଯ୍ୟ କିରଣ ଯହୁଁ ଦୃଷ୍ଟି
ଆସିଲୁଁ ହେ ରାଜନ ବସାକୁ ଲେଉଟି ।
କ୍ରମଶରେ ଆସି ହୋଇଲା ଅନ୍ଧକାର
ପଶ୍ଚିମ ଦିଗ- ନାରୀ ନେଲେ ଦିବାକର ।
ଶିବାଏ ମହତ ଅଶିବ ଧ୍ୱନି କରି
ଭୟଙ୍କର ହେଲେ ସେ ରାଜନ ଆମ୍ଭରି ।
ମୃତକାଳେ ହାତୀ ଗର୍ଜନ ଯା ଶୁଣିଲୁଁ
ମହୀ ଗରଜିବା ପରାୟେ ତା ମଣିଲୁଁ ।
ଗନ୍ଧର୍ବନଗର ଆକାର ରଥକୁଳ
ଭାଜିବାରେ ପୃଥିବୀ ହୋଇଛି ସଂକୁଳ ।
ଘୋଡ଼ାମାନେ ତ ଜିଭମାନ ହାତେ କାଢ଼ି
ପଡ଼ିଥିଲେ ରାଜନ ଯୁଦ୍ଧଭୂମି ମାଡ଼ି ।
କେଉଁ ପାଇକର ବାହାରିଅଛି ଅନ୍ତ
କିଏ ପଡ଼ିଛି ମରି ଛୋଡ଼ି ଦେଇ ଦାନ୍ତ ।
ମଡ଼ାଙ୍କ ବୁକୁରେ ବିଲୁଆ ବସିକରି
ପିଉଛନ୍ତି ରକତ ଶର୍ଙ୍ଗିନଳା ଧରି ।
ରାକ୍ଷସେ ତୋଷେ ମାଂସ ମଜ୍ଜା ଖାଇକରି
ଦିଶୁଥିଲେ ରାଜନ କାଳଦେବ ପରି ।
ଏ ବାହାରେ ଦେଖିଲୁଁ ରକ୍ତ ନଦୀଟାଏ
ଅତି ଭୟଙ୍କର ସେ ହୋଇଅଛି ରାୟେ ।
ଯୋଦ୍ଧାଙ୍କ ବାଳଶିଆଳିରେ ସେ ଆବିଳ
ହୋଇକରି ବହିଯାଉଛି ଖଳ ଖଳ ।
ରଥ ଭେଳା ତୁଠ ପଥର ବୀର ମୁଣ୍ଡ
ହୋଇଅଛି ମାଉଁସ - ପଙ୍କ ତହିଁ ରୁଣ୍ଡ ।
ଭୀରୁଙ୍କର ଭୟ ବୀରଙ୍କର ସନ୍ତୋଷ
କରୁଛି ସେ ରୁଧିର ନଦୀଟି ବିଶେଷ ।
କୁକୁରଙ୍କ ତୁଲରେ ବିଲୁଆ ରାକ୍ଷସେ
ସେ ନଦୀରେ ଗାଧୋଇ ପିଉଛନ୍ତି ତୋଷେ ।
କବନ୍ଧେ ସଂକୁଳ ହେବାରୁ ଯୁଦ୍ଧଭୂଇଁ
ରୁଦ୍ରଙ୍କ କ୍ରୀଡ଼ାସ୍ଥାନ ପ୍ରାୟେ ଥିଲା ହୋଇ ।

ତା ଦେଖି ତୁମ୍ଭର ଡରୁଆ ଯୋଦ୍ଧାକୁଳ
ଧଡ଼ପଡ଼େ ପଳାଇଲେ ହେ ମହୀପାଳ ।
ସେ ରଣଯୋଗେ ସଭାସଦ ମଡ଼ାତନୁ
ଯାଗକର୍ତ୍ତା ପରି ଦିଶନ୍ତି ଅଭିମନ୍ୟୁ ।
ବିଲୁଆ କୁକୁରଙ୍କ ଧ୍ୱନି ବେଦଧ୍ୱନି
ପରାଯେ ଶୁଭିଲା ଆମ୍ଭର କର୍ଣ୍ଣବେନି ।
ରାକ୍ଷସଙ୍କର ମାଂସ ଭକ୍ଷିବା ହୁଙ୍କାର
ହୋଇଥିଲା ହୋମାଗ୍ନି ଜଳିବା ପ୍ରକାର ।
ଏରୂପେ ରଣଭୂମି ଦେଖି ନରସାଇଁ
ଆସିଲୁଁ ହେ ବସାକୁ ଭକ୍ଷ ନିଦ୍ରା ପାଇଁ ।
ତୃତୀୟ ଦିନ ଯୁଦ୍ଧ ନ କଲି ସମାପନ
କହିବି ତା ବାହୁଡ଼ିବାର ଅରଜୁନ ।
ଏବେ ଶୁଣ ପାଣ୍ଡବମାନଙ୍କ ବିଧାନ ।
ଆହେ କୁରୁକୁଳର ନିର୍ମୂଳକାରଣ ।
ମରନ୍ତେ ଅଭିମନ୍ୟୁ ନୃପ ଯୁଧିଷ୍ଠିର
କଲେ ପାଣ୍ଡୁ ସେନାକୁ ଯୁଦ୍ଧୁଁ ଅବହାର ।
ବସା ମଧ୍ୟେ ଯାଇ ହୋଇଲେ ପରବଶ
ଚିନ୍ତାରେ ଦେହ କରିଦେଲେ ଅତି କୃଶ ।
ପାଣ୍ଡବଙ୍କର ପଟ ଯେତେ ଦଣ୍ଡଧାରୀ
ଯୁଦ୍ଧସଜ ରଖିଲେ ଉତୁରାଇ କରି ।
ଯୁଧିଷ୍ଠିରଙ୍କର ସମୀପକୁ ଯେ ଗଲେ
ମୁଖକୁ ପୋତି ଚାରିପଟରେ ବସିଲେ ।
ନୃପତିମାନଙ୍କର ମୁଖଚନ୍ଦ୍ର ଦେଖି
କାନ୍ଦି ଯୁଧିଷ୍ଠିର କହିଲେ ହୋଇ ଦୁଃଖୀ ।
ଅଭିମନ୍ୟୁ କୁମର ମୋର ବୋଲ କରି
ଏକାରେ ଗଲା ଦ୍ରୋଣସଇନକୁ ମାରି ।
ସିଂହ ପରି ଯୁଦ୍ଧରେ କରି ପରାକ୍ରମ
ଦେଖାଇଲା ନରପତିଙ୍କି ଯମଗ୍ରାମ ।
ଯେତେକ ମହାରଥୀ ଯୁଦ୍ଧ ତାକୁ କଲେ
ବିରଥ ହୋଇ ରଥ ଆଗ ତା ନ କଲେ ।
ଇବକୁ ବଳି ନ ପାରି ଅଭିମନ୍ୟୁ
ଛାଡ଼ିଲେ ଦୁଃଶାସନି ଗଦାଘାତେ ତନୁ ।
କି ରୂପରେ ମୁହିଁ ଅର୍ଜୁନଙ୍କ ମୁଖ
ଚାହିଁଣ କହିବି ତ ସୁତ ମଲା ଦୁଃଖ ।
ସୁଭଦ୍ରାଙ୍କୁ ଅବା କହିବି କିସ ଯାଇ
ଦେଲେଟି ପୁତ୍ରଟିକି ତାଙ୍କର ହଣାଇଁ ।
ଅଭିମନ୍ୟୁ ଶ୍ରୀକୃଷ୍ଣଙ୍କରଟି ଭଣଜା
କି କହିବି କହ ତ ତାଙ୍କୁ ଛାଡ଼ି ଲଜ୍ଜା ।
ଜୟାକାଂକ୍ଷୀ ହୋଇଣ କୃଷ୍ଣ ଅରଜୁନ
ସୁଭଦ୍ରାଙ୍କର ମୁହିଁ ରଚିଲି କଦନ ।
ଲୋଭ ମୋହ କରିବାରୁ ମୋ ଏତେ ଫଳ
ହୋଇଲା ହାରଇଲି ଅରଜୁନବାଳ ।
ତରୁଣବୟସୀୟା ଅଭିମନ୍ୟୁ ବାଳ
ହୋଇ ତ ଥିଲା ଖାଇ ଖେଳିବାର କାଳ ।
ତାକୁ ଏକା କରି ଯୁଦ୍ଧେ ଯା ବରଗଲି
କେଉଁ ଦୁଷ୍କରମ କଥାଟି ମୁଁ ନ କଲି ।
ଯୁଝିବା ବୟସ ତାହାର ନୋହିଥିଲା
ଏଣୁ ସିନା ଅଭିମନ୍ୟୁ ଯୁଦ୍ଧରେ ମଲା ।
ଆମ୍ଭେ ଯେବେ ସମସ୍ତ ଯୁଦ୍ଧେ ମରନ୍ତାଇଁ
ଅଭିମନ୍ୟୁ ତୁଲେ ସ୍ୱର୍ଗକୁ ପାଆନ୍ତାଇ ।
ଯାହା ଜୀଇଁ ଅରଜୁନର କୋପାନଳେ
ଦହନ ହୋଇଯିବା ତୃଣପରି ହେଲେ ।
ଅଲୁବ୍ଧ ମତିମନ୍ତ ହ୍ରୀମନ୍ତ ଶ୍ରୀମନ୍ତ
କ୍ଷମାବନ୍ତ ବଳବନ୍ତ ଯେ ମାନବନ୍ତ ।
ସତ୍ୟପରାୟଣ ଅଟନ୍ତି ଅରଜୁନ
କରିଛନ୍ତି ନିବାତକବଚ ନିଧନ ।
ଏ ବାହାରେ କାଳକେୟାଦିମାନଙ୍କର
ପରାଣକୁ ଦେଖାଇଛନ୍ତି ଯମପୁର ।
ହିରଣ୍ୟପୁରବାସୀଙ୍କୁ ସେ ମାରିଛନ୍ତି
ଇନ୍ଦ୍ର ପରି ବିକ୍ରମ କରିଣ ଯେ ଖ୍ୟାତି ।
ପର ଅପରଙ୍କର ଭୟ ପ୍ରିୟକାରୀ
ଅଟନ୍ତି ମହୀରେ ଗାଣ୍ଡୀବ ଧନୁର୍ଦ୍ଧାରୀ ।
ତାଙ୍କୁ ଏବେ ଆମ୍ଭେ ଦେଲାଇ ସୁତଭୟ
କି ରୂପରେ ରହିବା ହୋଇଟି ନିର୍ଭୟ ।
କଉରବମାନଙ୍କ ହେବ ମୃତ୍ୟୁ କାଳ
ସେ କି ସହିପାରିବେ ଗାଣ୍ଡୀବଧନୁ ଜ୍ୱାଳ ।
ଅର୍ଜୁନଙ୍କ ଅପ୍ରିୟ କରି ଏ ମହୀରେ
ରହିବ ଜୀବ ଘେନି ନ ଦେଖଇ ନରେ ।
ଅତି ଦୁର୍ବଳ ତ ଅଟନ୍ତି ଦୁର୍ଯ୍ୟୋଧନ
ଅର୍ଜୁନଙ୍କୁ ଦେଖିଲେ ହୋଇବେ ନିଧନ ।
ହେଲେ ତ ଅଭିମନ୍ୟୁ ଯମପୁରେ ଛିଡ଼ା
କହୁଛି ମୁଁ ଜାଣ ନାହିଁ ମୋ ରାଜ୍ୟ ଲୋଡ଼ା ।
ସ୍ୱର୍ଗଲୋକେ ବସିବା ଇଚ୍ଛା ମୋର ନାହିଁ
ଯିବି ମୁଁ ଅଭିମନ୍ୟୁ ସଙ୍ଗତେ ଗୋଡ଼ାଇ ।
ଏରୂପେ ଯୁଧିଷ୍ଠିର ନୃପତିଙ୍କି କହି
କାନ୍ଦୁଥିଲେ ରାଜନ ଶୋକାକୁଳ ହୋଇ ।
ଏହି ସମୟରେ ଆସିଲେ ବେଦବ୍ୟାସ
କଟିରେ ପିନ୍ଧିଛନ୍ତି ମୃଗଚର୍ମ ବାସ ।
ଯୁଧିଷ୍ଠିର ନୃପତି ବ୍ୟାସଙ୍କୁ ଅନାଇଁ
ଉଠିଣ ଆସନରେ ବସାଇଲେ ନେଇ ।

ବିଧିମନ୍ତ କରି ପୂଜା ତାହାଙ୍କୁ କଲେ
କାନ୍ଦିକରି ଏହା ସେ ବ୍ୟାସଙ୍କୁ କହିଲେ ।
ଦେଖ କୁରୁ ମହାରଥୀଙ୍କର ଅଧର୍ମ
ବେଢ଼ି ଅଭିମନ୍ୟୁକୁ କରିଣ ସଂଗ୍ରାମ ।
ଯମଙ୍କର ନଗରେ ନେଇ ବସାଇଲେ
ଏ କଥା କି ଲେଖା କରିବା ଋଷି ଭଲେ ।
ଆଗ କରି ଯୁଦ୍ଧରେ ମୁଁ ଅଭିମନ୍ୟୁକୁ
ପେଷିଲି ଦ୍ରୋଣ ଚକ୍ରବ୍ୟୂହ ଭେଦିବାକୁ ।
ଅଭିମନ୍ୟୁ ତ ବ୍ୟୂହ ଭେଦିବାକୁ ଗଲେ
ରହିଲି ବ୍ୟୂହ ଦ୍ୱାରେ ଭାଇଙ୍କର ତୁଲେ ।
ଜୟଦ୍ରଥ ରାଜା ଆମ୍ଭଙ୍କୁ କଲେ ଯୁଦ୍ଧ
ନ ପାରିଲୁ ତାହାଙ୍କୁ ଯୁଦ୍ଧେ କରି ବଧ ।
ଏ ସକାଶୁ ଅଭିମନ୍ୟୁଟି ଏକା ହୋଇ
କୁରୁ ରଥମାନଙ୍କେ ମଲେ ହେ ଗୋସାଇଁ ।
ଦେଖି ପିଲାଟିକୁ ଦ୍ରୋଣାଦି ରଥିକୁଳ
ବେଢ଼ିଣ ମାଇଲେ ଦେଖାଇ ଦେହବଳ ।
ଏ କଥା ଭାବିବାରୁ ହେଉଛି ତାଟକା
ବୋହି ଯାଉଅଛି ମୋ ଦେହୁ ଝାଳ ଏକା ।
ବ୍ୟାସ ବୋଇଲେ ଆହେ ସବୁ ଶାସ୍ତ୍ରଯାକ
ଜାଣିଅଛ ତ ଆହେ ପାଣ୍ଡବ ତିଳକ ।
ବିପତ୍ତିରେ କିମ୍ପା ଅଧୈର୍ଯ୍ୟ ହୋଇଅଛ
ଏ ସଂସାର ବନ୍ଧ ତ ଜାଣିଅଛ ମିଛ ।
ଅବାଳକ କର୍ମଟି ଅଭିମନ୍ୟୁ କରି
ସ୍ୱର୍ଗରେ ସେ ବସିଅଛନ୍ତି ଇନ୍ଦ୍ର ପରି
ମୃତ୍ୟୁକୁ ତ ବଳିଆର ନୁହଇ ନର
କରିଛି ତ ଦଇବ ଦୈତ୍ୟକୁ ସଂହାର ।
ଯୁଧିଷ୍ଠିର ବୋଇଲେ ମୃତ୍ୟୁ ହୋଇ କେହିଁ
କଥା ହେଲା ତାହା କହ ହେ ଋଷିସାଇଁ ।
ପୁତ୍ର ମିତ୍ର ଭାରିଯା ଧନେ ଦେଇ ଚିତ୍ତ
ହେଉଅଛନ୍ତି ଦେଖୁଥାଇଁ ଲୋକେ ହତ ।
ରାଜାମାନେ ଏବେଟି ଜୟ ଇଚ୍ଛା କରି
ଭାରତ ଯୁଦ୍ଧେ ଦେଖ ଶୋଇଛନ୍ତି ମରି ।
ମୃତ୍ୟୁଟି କେଉଁଠାରୁ ହୋଇଲା ହେ ଜାତ
ମଲାଲୋକେ କାହିଁକି ବୋଲାଇଲେ ମୃତ ।
ଏମାନଙ୍କେ ବିଶେଷା ବିଶେଷ ଯା ଅଛି
କହ ବ୍ୟାସ ଗୋସାଇଁ ଶୁଣିବି ବୋଲୁଛି ।
ବ୍ୟାସ ବୋଇଲେ ହେରାଜନ ଯୁଧିଷ୍ଠିର
ଅକମ୍ପନ ନୃପେ ନାରଦ ଋଷିବର ।
ପୁତ୍ର ଶୋକ ନାଶ ହେବାକୁ କହିଛନ୍ତି
ମୃତ୍ୟୁଙ୍କ ସମ୍ଭବ ଶୁଣ ତା ଦେଇ ମତି ।

ଧନ ଆୟୁର୍ବର୍ଦ୍ଧନ ଶତ୍ରୁ ବିନାଶନ
ପବିତ୍ର ମଙ୍ଗଳଟି ମୃତ୍ୟୁଙ୍କ ଆଖ୍ୟାନ ।
ଏହା ପ୍ରାତଃକାଳୁ ଶୁଣିବେ ନୃପତିଏ
ବୋଲିଟି କହିଛନ୍ତି ସେ କାଳେ ଋଷିଏ ।
ଯେଉଁମାନେ ପୁତ୍ର ଆୟୁଷ ଯଶ ଶିରୀ
କରିବେ ଇଚ୍ଛା ଏହା ଶୁଣିବେ ବସିକରି ।
ଅକମ୍ପନ ନାମରେ ସତ୍ୟଯୁଗ ରାଜା
ହୋଇ ଧରମରେ ପାଳନା କଲେ ପ୍ରଜା ।
ସେ ନୃପତିଙ୍କର ହରି ନାମରେ ସୁତ
ହରି ପରି ହେଲେ ପରାକ୍ରମରେ ଖ୍ୟାତ ।
ପର ସୈନ୍ୟେ ଆବୃତ ହୋଇ ସେ ସମରେ
ମରନ୍ତେ ପୂଜା କଲେ ତାହାଙ୍କୁ ଅମରେ ।
ଯୁଦ୍ଧରେ ସେ ବହୁତ କରିଥିଲେ ହତ
ଏଣୁ ତାଙ୍କୁ ଆଦର କଲେ ପୁରୁହୂତ ।
ପୁତ୍ର ହତ ଶୁଣିଣ ଅକମ୍ପନ ରାଜା
ଶୋକଜଳେ ବୁଡ଼ାଇଦେଇ ନିଜ ମଜ୍ଜା ।
ପ୍ରେତକାର୍ଯ୍ୟ ଯାକଟି ପୁତ୍ରର ସେ କଣେ
ମୃତ ଲୋକର ପରି ଘରରେ ରହିଲେ ।
ଅକମ୍ପନ ରାଜାଙ୍କ ପୁତ୍ରଶୋକ ଜାଣି
ଆସିଲେ ସେଠାକୁ ନାରଦ ଋଷିମଣି ।
ନାରଦଙ୍କୁ ଯଥାବିଧିରେ କରି ପୂଜା
ବସାଇ ଆସନରେ ଅକମ୍ପନ ରାଜା ।
କହିଲେ ଆହେ ଋଷି ଇନ୍ଦ୍ର ବିଷ୍ଣୁ ସମ
ମୋର ପୁତ୍ର ହରି ଯେ ବୀରଙ୍କ ଉତ୍ତମ ।
ଯୁଦ୍ଧରେ ବହୁତ ଶତ୍ରୁଙ୍କୁ କରି ହତ
କଲା ନେଇ ପ୍ରାଣ ଯମଙ୍କ କରଗତ ।
ମୃତ୍ୟୁ ହୋଇ ଏ କିସ କିସ ତାର ବଳ
ଜାଣିଥିଲେ ମୋ ଆଗେ କହ ବ୍ରହ୍ମବାଳ ।
ଅକମ୍ପନ ରାଜାଙ୍କ ଶୁଣି ଏ ବଚନ
କହିଲେ ପୁତ୍ରଶୋକ ନାଶ ଏ ଆଖ୍ୟାନ ।
ବ୍ରହ୍ମା ଯେଉଁକାଳରେ ସୃଷ୍ଟି ସରଜିଲେ
ସେ କାଳେ ତ ପ୍ରାଣୀଏ ଧର୍ମରେ ବଢ଼ିଲେ ।
ଦଇବେ ତ ପ୍ରଥମେ ହୋଇଥିଲା ସୃଷ୍ଟି
ନ ଜାଣନ୍ତି ତ କେହି ଅଧର୍ମ କଥାଟି ।
ପ୍ରାଣୀଏ ବଢ଼ିବାର ବ୍ରହ୍ମା ନ ସହିଲେ
ତାଙ୍କ ନାଶ ପାଇଁକି ବସି ଚିନ୍ତା କଲେ ।
ଚିନ୍ତା କରୁଁ କରୁଁ ବ୍ରହ୍ମାଙ୍କ ମୁଖ ଦେଇ
ବାହାରିଲେଟି ଜ୍ୱାଳା ଭୟଙ୍କର ହୋଇ ।
ସେ ଜ୍ୱାଳା ସବୁ ଦିଗଯାକରେ ବ୍ୟପିଲା
ଏ ଭୁବନ ପ୍ରାଣିମାନଙ୍କୁ ପୋଡ଼ିଦେଲା ।

ଶିବ ଏ ଜଗତର ଅଶିବ ଦେଖିଲେ
ବ୍ରହ୍ମାଙ୍କୁ ଆସିଣ ଶରଣାପନ୍ନ ହେଲେ ।
ପ୍ରଜା-ହିତ ପାଇଁ ଆସିବା ଜାଣି ଶିବ
କହିଲେ ତାହାଙ୍କୁ ସାବିତ୍ରୀ-ପ୍ରାଣଧବ ।
କେଉଁ ପ୍ରାଣୀ ତୁମ୍ଭର କରିବଇଁ ମୁହିଁ
ହେ ପୁତ୍ର ତୁମ୍ଭେ ମୋତେ କହ ହେ ବତାଇ ।
ଶିବ ବୋଇଲେ ଆହେ ବ୍ରହ୍ମ ପରମେଷ୍ଠୀ
ବହୁତ କଷ୍ଟ ପାଇ ସରଜିଲ ସୃଷ୍ଟି ।
ଏବେ ତୁମ୍ଭ କ୍ରୋଧାଗ୍ନି ତାଙ୍କୁ ପୋଡ଼ିଦେଲା
ତା ଦେଖି ପ୍ରାଣୀଙ୍କଠାରେ ମୋ ଦୟା ହେଲା
ଏହି ସକାଦରୁଟି କହୁଅଛି ମୁହିଁ
ପାଳ ପ୍ରାଣିମାନଙ୍କୁ ଅକ୍ରୋଧ ନ ହୋଇ ।
ବ୍ରହ୍ମା ବୋଇଲେ ମୁହିଁ କ୍ରୋଧ ହୋଇ ନାହିଁ
ଗୁହାରୀ କଲେ ମେଦେ ମହାଭାର ପାଇଁ ।
ତାହାଙ୍କ ହିତ ମୁଁ ଭାବନା କରୁଁ କରୁଁ
ଜାତ ହେଲା କ୍ରୋଧ ମୋହର ହୃଦୟରୁ ।
ରୁଦ୍ର ବୋଇଲେ ଆହେ ନୁହ ଆଉ କ୍ରୋଧ
ତୁମ୍ଭ କ୍ରୋଧେ ହେଲେଣି ବହୁ ପ୍ରାଣୀ ବଧ ।
ତୁମ୍ଭ ପ୍ରସାଦରୁ ଅତୀତ ଅନାଗତ
ବର୍ତ୍ତମାନ ରହିଅଛି ଏହି ଜଗତ ।
ଯେଉଁ କ୍ରୋଧ-ଅଗ୍ନି ସରଜିବା ହୋଇଲେ
ଜଳି ଗିରି ତୁଲେ ପ୍ରାଣୀଙ୍କି ପୋଡ଼ିଦେଲେ ।
ଏହି ସକାଶରୁଟି ମାଗୁଛି ଏହି ବର
ଆହେ ପିତା ତୁମ୍ଭ କ୍ରୋଧକୁ ଶାନ୍ତି କର ।
ଏ ଅଗ୍ନିଜ୍ୱାଳା ତୁମ୍ଭେ ଦେହେ ଲୀନ କଲେ
ଯେ ଅଛନ୍ତି ସେ ରହିପାରିବେ ହେ ଭଲେ ।
ଏରୂପେ ଶିବଙ୍କ ବଚନ କର୍ଣ୍ଣେ ଶୁଣି
ସଂହରିଲେ ତେଜକୁ ବ୍ରହ୍ମା ସେହିକ୍ଷଣି ।
ରୁଦ୍ରଙ୍କୁ ସେ ନିବୃତ୍ତି ପ୍ରବୃତ୍ତି ମାରଗ
କହିଲେଟି ବତାଇ କରି ଅନୁରାଗ ।
ବ୍ରହ୍ମଅଗ୍ନି ସଂହାରିବା କାଳରେ ନାରୀ -
ଜଣେ ତାଙ୍କ ଦେହୁଁ ଜନ୍ମିଲେ ସଣ୍ଡଧାରୀ ।
କଳାମେଘ ପରି ଦିଶୁଅଛି ଶରୀର
ରକ୍ତିମା ଦିଶୁଛି ହାତ ପାଦାଧର ।
ପିଙ୍ଗଳ କେଶ ରଙ୍ଗ ଲୋଚନକୁ ପାଇ
ଅତିଶୟ ଭୟଙ୍କର ସେ ଅଛି ହୋଇ ।
ସେ ନାରୀ କର୍ଣ୍ଣଦେଶେ ଥାଇଣ କୁଣ୍ଡଳ
ଝମ୍ପିବାରେ ମଣ୍ଡୁଥିଲା ଯେ ଗଣ୍ଡସ୍ଥଳ ।
ଦୁଇ ବିଶ୍ୱେଶ୍ୱରଙ୍କୁ ଦେଖି ସେ ହସିଲା
ତାହାଙ୍କର ଦକ୍ଷିଣ ପାରୁଶେ ରହିଲା ।

ବ୍ରହ୍ମା ସେ ନାରୀଟିକି ମୃତ୍ୟୁ ନାମ ଦେଇ
ବୋଇଲେ ନାଶ କର ପ୍ରଜାଙ୍କୁ ହେ ଯାଇ ।
ଧାର୍ମିକ ଅଧାର୍ମିକ ସ୍ଥାବର ଜଙ୍ଗମ -
ମାନଙ୍କର ସମାନ ଘେନ ତୁ ଜୀବନ ।
ମୋର ନିଯୋଗେ ଏହା କଲେ ତୋ ଅଶ୍ରେୟ
ନୋହିଣ ଶ୍ରେୟ ହେଉଥିବଟି ଉଦୟ ।
ଏହା ଶୁଣି ଯେ ମୃତ୍ୟୁ-ନାରୀ ଡକାପାରି
ବୋଇଲେ ଏହାଟି ନ ବୋଲ କୁଶଧାରୀ ।
ମୃତ୍ୟୁଙ୍କର ନୟନ ଲୋତକକୁ କରେ
ଧରିଲେ ପିତାମହ ବ୍ରହ୍ମା ସରାଗରେ ।
ମୃତ୍ୟୁ ନମ୍ର ହୋଇଣ କହିଲେ ବ୍ରହ୍ମାଙ୍କୁ
ତୁମ୍ଭଠାରୁ ଜନ୍ମି ମୁଁ ମାରିବି ପ୍ରଜାଙ୍କୁ ।
ଏ ଅଧର୍ମ ସକାଶୁ ଭୟ ମୁଁ ପାଉଛି
ପ୍ରସନ୍ନ ହୁଅ-ମୋତେ ଏତେକ କହୁଛି ।
ପୁଅ ଭାଇ ଭାରିଯା ସମ୍ବନ୍ଧୀ ବାନ୍ଧବ -
ମାନଙ୍କୁ ଲୋକଙ୍କର କଲେ ମୁଁ ଅଭାବ ।
ସେ ମୋତେ ନିନ୍ଦାକରି ଦେଉଥିବେ ଗାଳି
ଏହି କଥା ଭାବି ମୁଁ ବସିଅଛି ଭାଳି ।
ଏ ସକାଶୁଁ ଥରକୁ ଥର ମୁଁ ତୁମ୍ଭଙ୍କୁ
ବୋଲୁଅଛି ମାରିବି ନାହିଁ ମାନବଙ୍କୁ ।
କରୁଣା ହୃଦେ ଯେବେ ବୋଲିବ ହେ ପିତା
କରିବି ମୁଁ ତପସ୍ୟା ଛାଡ଼ି ମନ୍ଦ ଚିନ୍ତା ।
ଧେନୁକ ଆଶ୍ରମରେ ଯାଇ ମୁଁ ରହିବି
ଆହେ ତାତ ତୁମ୍ଭଙ୍କୁ ବସି ଆରାଧିବି ।
ବ୍ରହ୍ମା ବୋଇଲେ ହେ ପ୍ରଜାଙ୍କୁ ମାରିବାକୁ
ସର୍ଜନା ତ ଆମ୍ଭେ କରିଅଛୁଁ ତୁମ୍ଭଙ୍କୁ ।
ନାହିଁ କଲେ ନାହିଁ ବୋଲିବୁ ଆମ୍ଭେ କେହିଁ
ଯାଅ ମାର ପ୍ରଜାଙ୍କୁ ତୋଷଚିତ୍ତ ହୋଇ ।
ମୋ ବଚନ କଲେ ତୁମ୍ଭର ନିନ୍ଦା କିଛି
ନୋହିବ ଏହି ବର ତୁମ୍ଭଙ୍କୁ ଦେଉଛି ।
ବ୍ରହ୍ମାଙ୍କର ମନକୁ ସେ ଜାଣିପାରିଲେ
ଦୁଃଖରେ ଉପରକୁ ଚାହିଁଣ ରହିଲେ ।
ବ୍ରହ୍ମା ମଧ୍ୟ ତାହାଙ୍କୁ ନ କହିଣ କିଛି
ପ୍ରସନ୍ନମନରେ ରହିଲେ କୁନ୍ତିବସି ।
ଜଗତକୁ ହସି ଚାହାଁନ୍ତେଣ କୁଶଧର
ଗିରିପରି ବଢ଼ିଲେ ସ୍ଥାବର ତୁଲେ ନର ।
ମୃତ୍ୟୁ ପ୍ରଜା ନିଧନେ ମାନସ ନ ଦେଇ
ଧେନୁକ ଆଶ୍ରମରେ ତପ କଲେ ଯାଇ ।
ଏକା ଗୋଡ଼କରେଟି ଏକବିଂଶ ପଦ୍ମ -
ବରଷ ତପ କଲେ ଛାଡ଼ି ହୃଦଛଦ୍ମ ।

ତ୍ରୟୋବଂଶ ପଦ୍ମ ଯେ ଆର ଗୋଡ଼େ ପୁଣି
ଛିଡ଼ା ହୋଇ ତପସ୍ୟା କଲେ ନାରୀମଣି ।
ଏକପଦ୍ମ ଅୟୁତ ବର୍ଷ ମୃଗ ତୁଲେ
ସଙ୍ଗୀ ହୋଇଣ ବନ ମଧ୍ୟରେ ବୁଲିଲେ ।
ନନ୍ଦାର ଜଳେ ପଶି ଆନନ୍ଦିତ ହୋଇ
ସହସ୍ର ଆଠ ସମ୍ବତ୍ସର ନେଲେ ତହିଁ ।
ପୁଣି କଉଶିକୀ ନଦୀକି ସେହୁ ଗଲେ
ପବନ ପାଣି ପିଇ ରହି ତପ କଲେ ।
ପଞ୍ଚଗଙ୍ଗ ବେତସ ତୀର୍ଥରେ ସେ ରହି
ତପସ୍ୟା କରି କ୍ଷୀଣ କରିଦେଲେ ଦେହୀ ।
ମେରୁତଟେ ଗଙ୍ଗାଙ୍କ ତୀରେ ଶିଳା ପରି
ରହିଲେ କେତେକାଳ ଆହେ ଦଣ୍ଡଧାରୀ ।
ନିଖର୍ବ ପରିଯନ୍ତେ ହିମାଳୟ ଶିଖେ
ଅଙ୍ଗୁଷ୍ଠରେ ରହି ସେ ତପ କଲେ ଦୁଃଖେ ।
ନୈମିଷ ପୁଷ୍କର ଯେ ଗୋକର୍ଣ୍ଣ ମଳୟ -
ପର୍ବତେ ତପକଲେ କରି କାୟ କ୍ଷୟ ।
ବ୍ରହ୍ମାଙ୍କ ବିନା ଆନ ଦେବଙ୍କୁ ସେ ମନେ
ନ ପକାଇ ତାଙ୍କୁ ସେବିଲେ ଅବିଚ୍ଛିନେ ।
ମୃତ୍ୟୁଙ୍କର ତପସ୍ୟା ଦେଖି ପିତାମହ
ସନ୍ତୋଷରେ କହିଲେ କିସ ଇଚ୍ଛା କହ ।
ମୃତ୍ୟୁ ବୋଇଲେ ମୁହିଁ ନ ମାରିବି ପ୍ରଜା
ବୋଲି ତପ କରୁଛି ଜାଣ ଲୋକଅଜା ।
ଅଧର୍ମରୁ ରହିତ ହେବାକୁ ତୁମ୍ଭଙ୍କୁ
ମାଗୁଛି ଦିଅ ବର କରିବି ତପକୁ ।
ବ୍ରହ୍ମା ବୋଇଲେ ଗୋ ପ୍ରଜାଙ୍କୁ ମାରିବାକୁ
ପୂର୍ବୁତ ଜାତ କରିଅଛି ମୁଁ ତୁମ୍ଭଙ୍କୁ ।
ତୁମ୍ଭେ ଏହା ନାହିଁ କଲେଟି କିସ ହେବ
ମୁଁ ଯାହା ବୋଲିଅଛି ତାହା ସିନା ହେବ ।
ମୋ ବୋଲରେ ଧରମ ତୁମ୍ଭଙ୍କୁ ପବିତ୍ର
କରିବେ ତୁମ୍ଭେ ଭୟେ ନ ଥରାଅ ଗାତ୍ର ।
ଯମ ବ୍ୟାଧି ତୁଲରେ ଦିଗପାଳେ ସାହା
ତୁମ୍ଭଙ୍କୁ ହୋଇବେ ଗୋ ନୁହ ନିରୁତ୍ସାହା ।
ଦେବ ତୁମ୍ଭେ ପ୍ରାଣୀମାନଙ୍କ ତୋଟି ଚିପି
ସେ ପାପ ଯିବ ମୋ ବୋଲେ ସେକ୍ଷଣି ତୁଟି ।
ମୃତ୍ୟୁ ବୋଇଲେ ହେ ମୋ ବିନା ଯେବେ ମୃତ୍ୟୁ
ନୋହିବ ପ୍ରାଣିଙ୍କ କହୁଛ କରି ହେତୁ ।
ଲୋଭ କ୍ରୋଧ ଅସୂୟା ଈର୍ଷା ଦ୍ରୋହ ମୋହ
ଏମାନଙ୍କୁ ପ୍ରାଣୀ କରିବେ ବୋଲ ସ୍ନେହ ।
ଏହି ଅଧର୍ମରେ ସେମାନେ ନାଶଯିବେ
ମୋତେ ଆଉ ଦୋଷ ସେ ଦେଇ ନ ପାରିବେ
ବ୍ରହ୍ମା ବୋଇଲେ ଗୋ ମାଗିଲ ମୃତ୍ୟୁ ଯାହା
ହୋଇବ ମୁଁ ବୋଲୁଛି ସେହିରୂପେ ତାହା ।
ତୁମ୍ଭର ଅଶ୍ରୁ ବିନ୍ଦୁ ଧରିଛି ତ ମୁହିଁ
ସେ ବ୍ୟାଧି ହେଉଥିବେ ପ୍ରାଣୀଦେହେ ରହି ।
କାଳ ହୋଇଲେ ତୁମ୍ଭେ ଧରି ତାଙ୍କ ବାଳ
ମାରିବ କହୁଛି ପାଇଁ ସେ ବ୍ୟାଧିବଳ ।
ପ୍ରାଣୀଏ ଯିବେ ଯେଝା ଅଧର୍ମରେ ନାଶ
କହେଁ ନ ଲାଗିବ ତୁମ୍ଭଙ୍କୁ ହତ୍ୟା ଦୋଷ ।
ବ୍ରହ୍ମାଙ୍କଠାରେ ଏରୂପେ ବାଣୀ ଶୁଣି
ଭୟରେ ମୃତ୍ୟୁ ତାଙ୍କୁ ନ କହିଟି ବାଣୀ ।
ବୋଇଲେ ଆହେ ପିତା ଆଜ୍ଞା ଦେଲ ଯାହା
ନିଃସନ୍ଦେହ କରି କହିବି ମୁହିଁ ତାହା ।
ସେହି ଦିନରୁ ମୃତ୍ୟୁ କୋଟି କୋଟି ପ୍ରାଣୀ
ନାଶ କଲେ ନିତି ହେ ଜାଣ ନରମଣି ।
ଏବେ ତ ମୃତ୍ୟୁଙ୍କର ଶୁଣିଲ ଚରିତ
ବୃଥା ଶୋକ ଭୟରେ ନ କମ୍ପାଅ ଗାତ୍ର ।
ତୁମ୍ଭର ପୁଅ ଅଭିମନ୍ୟୁ ଦୁଃଖ ଛାଡ଼ି
ବସିଛନ୍ତି ରାଜନ ସ୍ୱର୍ଗପୁର ମାଡ଼ି ।
କାଳ ପ୍ରାପ୍ତ ହୋଇଲେ ମାରୁଅଛି ମୃତ୍ୟୁ
ଛାଡ଼ିଦିଅ ଶୋକ ଏ କଥା କରି ହେତୁ ।
ଏହା ଜାଣି ପଣ୍ଡିତ ଜନଟି ମରଣ
କଥାକୁ ନ କରନ୍ତି କେବେହେଁ କାରୁଣ୍ୟ ।
ଏହା କହି ଯୁଧିଷ୍ଠିରଙ୍କୁ ବ୍ୟାସଦେବ
କହିଲେ ଏହିରୂପେ ନାଦ ପ୍ରକାଶ -
କରନ୍ତେ ଅକମ୍ପନ ଆଗେ ମୃତ୍ୟୁ କଥା
ଅକମ୍ପନ ଛାଡ଼ିଦେଇଣ ହୃଦୁଁ ବ୍ୟଥା ।
କହିଲେ ଆହେ ଋଷିକୁଳଙ୍କ ତିଳକ
ତୁମ୍ଭ କଥା ଶୁଣି ମୋ ଛାଡ଼ିଗଲା ଶୋକ ।
ନାରଦ ରାଜାଙ୍କ ଆନନ୍ଦ ମନ ଜାଣି
ନନ୍ଦନ ବନକୁ ହେ ଗଲେ ସେହିକ୍ଷଣି ।
ଏ ଆଖ୍ୟାନ ଶୁଣିଲେ ଶୁଣାଇଣେ ନର
ଯା ଶିରୀ ପୁଣ୍ୟଟି ବଢ଼ଇ ଅପାର ।
ଏହା କହିଣ ବ୍ୟାସ ଋଷିଙ୍କ ତିଳକ
ବୋଇଲେ ଶୁଣ ଆହେ ପାଣ୍ଡବନାୟକ ।
ଶୂରପଣ କରିଣ ଶୂରଙ୍କୁ ସଂହାରି
ଅଭିମନ୍ୟୁ ତୁମ୍ଭର ଗଲେ ସ୍ୱର୍ଗପୁରୀ ।
ଚନ୍ଦ୍ରଙ୍କ ସୁତ ଅଭିମନ୍ୟୁ ହୋଇଥିଲେ
ଯୁଦ୍ଧରେ ମରି ସୋମ ଲୋକକୁ ସେ ଗଲେ ।
ଏବେ ଧୈର୍ଯ୍ୟ ହୋଇଣ ଯୁଦ୍ଧ ଯାଇ କର
ଶତ୍ରୁକୁ ମାରି ଭୋଗ କର ଏ ନଗର ।

ଯୁଧିଷ୍ଠିର ବୋଇଲେ ମୃତ୍ୟୁଙ୍କ ଚରିତ
କହିଲ ତ ମୋତେ ହେ ବ୍ୟାସ ତପୋବନ୍ତ ।
ଏ ମହୀରେ ବହୁ ଧାର୍ମିକ ତପୋବନ୍ତ
ହୋଇଥଲେ ତ ଶୁଣିଥାଉଁ ମହୀକ୍ଷିତ ।
ସେମାନଙ୍କର ଧର୍ମ କର୍ମ ଯମ ଦାନ
କହି ମୋର ସନ୍ତୋଷ କର ଋଷି ମନ ।
ବ୍ୟାସ ବୋଇଲେ ଆହେ ଶୁଣ ଯୁଧିଷ୍ଠିର
ପୂର୍ବେ ଶ୍ୱିତ ନାମେ ହେଲେ ନରବର ।
ତାହାଙ୍କର ପୁଅ ଯେ ସୃଞ୍ଜୟ ହୋଇଲେ
ପର୍ବତ ନାରଦଙ୍କୁ ସଖା ସେହୁ କଲେ ।
ଦିନେ ସୃଞ୍ଜୟଙ୍କୁଟି ପର୍ବତ ନାରଦ
ଦେଖିବାକୁ ଗଲେ ହୃଦରେ ବହି ମୋଦ ।
ସୃଞ୍ଜୟ ନୃପ ଦେଖି ନାରଦ ପର୍ବତଙ୍କୁ
ବସାଇ ବିଧିମତେ ପୂଜିଲେ ତାହାଙ୍କୁ ।
ଏହି ସମୟରେ ତ ସୃଞ୍ଜୟ ଦୁହିତା
ଅନ୍ତଃପୁରୁ ବାହାରି ଭେଟିଲେ ଆସି ପିତା ।
ପିତା ଦୁହିତାର ମୁଖକୁ ଅନାଇଲେ
ଅତିଶୟ ଆନନ୍ଦଜଳରେ ଭାସିଲେ ।
ପର୍ବତ ସେ କନ୍ୟାକୁ ଦେଖି ସୃଞ୍ଜୟଙ୍କୁ
ପଚାରିଲେ ଏ କନ୍ୟା କହ କେ ଆମ୍ଭଙ୍କୁ ।
ଅଗ୍ନିଙ୍କର ଶିଖା ଯେ ପ୍ରଭା ସୂର୍ଯ୍ୟଙ୍କର
ଚନ୍ଦ୍ରଙ୍କ କାନ୍ତି ପ୍ରାୟେ ଦିଶୁଛି ଶରୀର ।
ଲଜ୍ଜା ଶିରୀ ଧୃତି ଯେ ପୁଷ୍ଟି କୀର୍ତ୍ତି ସିଦ୍ଧି
ରମା ଉମାଙ୍କ ପରି ହେଉଛି ମୋ ବୁଦ୍ଧି ।
ସୃଞ୍ଜୟ ବୋଇଲେ ହେ ମୋହର ଦୁହିତା
ଏହାକୁ ବର ଖୋଜୁଛି ମୁଁ କରି ଚିନ୍ତା ।
ନାରଦ ଏହା ଶୁଣି ବୋଇଲେ କନ୍ୟାକୁ
ମୋତେ ଦିଅ ରାଜନ ଦେବ ହେ କାହାକୁ ।
ସୃଞ୍ଜୟ ବୋଇଲେ ନାରଦ ତପୋବନ୍ତ
ଦେବି ତୁମ୍ଭେ ହେବ ମୋ ଦୁହିତାର କାନ୍ତ ।
ପରବତଟି ତାହା ସହି ନ ପାରିଲେ
ନାରଦ ଋଷି ବାଇ ହେଲ କି ବୋଇଲେ ।
ଆଗୁଁ ମୁଁ ବିଚାରିଛି ନେବି ଏ କନ୍ୟାକୁ
ତୁମ୍ଭେ କିପାଁ ନ ବିଚାରିଲ ଏ କଥାକୁ ।
ଏହି ସକାଶରୁଟି ମୋ ଶାପ ନାରଦ
ଘେନି ତୁମ୍ଭେ ସ୍ୱର୍ଗରେ ନ ପକାଅ ପାଦ ।
ନାରଦ ହୋଇଲେ କନ୍ୟାକୁ ଦେଖି ଲୋଭା
ହୋଇଣ ମନେ ମନେ ହୋଇଥିଲେ ବିଭା ।
ଏତେକେ କନ୍ୟା ନିକି ହୋଇଲା ତୁମ୍ଭର
ସାକ୍ଷାତେ ବିଭା ହୋଇ ନାହିଁ ଋଷିବର ।

ମୁହିଁ ତ ମଧ କନ୍ୟା ବିଭା ହୋଇ ନାହିଁ
ତୁଚ୍ଛା ଶାପ ମୋତେ ଦେଲ ହେ କାହିଁ ପାଇଁ ।
ଏଣୁ ମୋହରି ଶାପ ଘେନି ହେ ପର୍ବତ
ମୋ ବିନା ସ୍ୱର୍ଗ ଗତି ତୁମ୍ଭ ହେବ ଚ୍ୟୁତ ।
ଏହିରୂପେ ପରସ୍ପରରେ ଶାପ ଦେଇ
ବାସ କରି ରହିଲେ ସେଠାରେ ନୃସାଇଁ ।
ଏଥୁଅନ୍ତେ ପୁତ୍ରାର୍ଥୀ ହୋଇଣ ସୃଞ୍ଜୟ
ସେବିଲେ ବ୍ରାହ୍ମଣଙ୍କୁ ଦେଇ ଭକ୍ଷ୍ୟ ପେୟ ।
ବ୍ରାହ୍ମଣେ ନିତି ଖାଇବାରେ ତୋଷ ହୋଇ
ନାରଦ ଋଷିଙ୍କି କହିଲେ ସେହୁ ଯାଇ ।
ସୃଞ୍ଜୟ ଆମ୍ଭଙ୍କୁ ପୁତ୍ରାର୍ଥୀ ହୋଇ କରି
ସେବୁଛନ୍ତି ପୁତ୍ର କରାଅ ଏହାଙ୍କରି ।
ବ୍ରାହ୍ମଣଙ୍କ ବଚନ ନାରଦ ଘେନିଲେ
ସୃଞ୍ଜୟ ନୃପତିଙ୍କି ଏରୂପେ କହିଲେ ।
ବ୍ରାହ୍ମଣେ ତ ଆମ୍ଭଙ୍କୁ ତୁମ୍ଭ ପୁତ୍ର ଇଚ୍ଛା
ଅଛି ବୋଲି କହନ୍ତି ମାଗ ରାୟେ ବଛା ।
ତା ଶୁଣି ମାଗିଲେ ସୃଞ୍ଜୟ ନୃପବର
ଗୁଣବନ୍ତ ଯଶସ୍ୱୀ ଏକର କୁମର ।
ନାରଦ ସେହିରୂପେ ହେଉ ହେ ବୋଇଲେ
ଯଥାକାଳେ ତାଙ୍କର ପୁତ୍ର ଜାତ ହେଲେ ।
ମଳ ମୂତ୍ର ହେବାରୁ ସେ ପୁତ୍ରର ସୁନା
ସୁବର୍ଣ୍ଣଷ୍ଠୀବୀ ନାମ ଦେଲେ ମହାମନା ।
ସେ ସୁବର୍ଣ୍ଣ ବଳେ ସେ ବହୁ ଯାଗ ଦାନ
କରିସଜାଡ଼ିଲେ ଦେବଙ୍କ ଆୟତନ ।
ଘର ଦ୍ୱାର ପାତ୍ର ମଧ କରିଲେ ସୁନା
ମିଳିଲା ପଦୁଁ ସୁନା ତାଙ୍କୁ ଅକଳନା ।
ସୁବର୍ଣ୍ଣଷ୍ଠୀବୀ ସୁନା ସ୍ୱରୂପ ବୋଲି ଜାଣି
ବିଚାରିଲେ ବସି ଏକାନ୍ତେ ଚୋର ଶ୍ରେଣୀ ।
ଚାଲ ଆମ୍ଭେଟି ଯିବା ସୃଞ୍ଜୟ ଘରକୁ
ଚୋରାଇଣ ଆସିବା ତାଙ୍କର ପୁତ୍ରକୁ ।
ସବୁ ଚୋର ଏହା ବିଚାର ଛିଣ୍ଡାଇଲେ
ସୃଞ୍ଜୟ ପୁତ୍ରକୁ ଚୋରାଇ ଘେନିଗଲେ ।
ବନ ମଧରେ ରଖି ସୁବର୍ଣ୍ଣଷ୍ଠୀବୀକି
ହାଡ଼ ଗଣ୍ଠି ମାଉଁସ କଲେ ଟିକି ଟିକି ।
ଦେଖିଲେ ତାଙ୍କ ପେଟୁ ନୋହିଲା ଜାତ ସୁନା
ଗନ୍ଧାଅନ୍ତେ ଅନ୍ତ ଦେଲେଟି ନାକେ କନା ।
ବରଦାନ ନାଇଁ ପୁରୀଷ ମୂତ୍ର ଝାଳ
ତାଙ୍କର ସିନା ସୁନା ଅଟେ ନରପାଳ ।
ମାଉଁସ ତ ତାଙ୍କର ସୁବର୍ଣ୍ଣ ନୁହଇ
ମରନ୍ତେ ସେ କଥା ଗଲାଟି ବ୍ୟର୍ଥ ହୋଇ ।

ପରସ୍ପରେ ଚୋର ହୋଇ କଳିଗୋଳ
ମରାମରି ହୋଇ ଦେଖିଲେ ଯମଆଳ ।
ଯମ ସେ ଚୋରଙ୍କର ଦୁଷ୍ଟରୀତି ଜାଣି
ନରକରେ ପକାଇଲେଟି ସେହିକ୍ଷଣି ।
ପୁତ୍ରହତ ଶୁଣିଣ ସୃଞ୍ଜୟ ବିଳାପ
କରନ୍ତେ ଧୋଇଦେଲା ହୃଦ ନେତ୍ରଆପ ।
ନାରଦ ସେଠାରେ ଆସି ସେ ନୃପଠାକୁ
ବୋଇଲେ କାହିଁପାଇଁ କରୁଛ ଶୋକକୁ ।
ସବୁ ପ୍ରାଣୀଙ୍କର ବାଳକୁ କାଳ କାଳେ
ଧରିକରି ମାରିବ ଜାଣ କରତଳେ ।
ଅବିକ୍ଷିତସୁତ ମରୁତ ନୃପବର
ମରିକରି ଦେଖିଅଛନ୍ତି ଯମପୁର ।
ବୃହସ୍ପତିଙ୍କର ସମ୍ବର୍ତ୍ତ ନାମେ ଭାଇ
ଥିଲେ ବୃହସ୍ପତିଙ୍କଠାରେ ହିଂସା ବହି ।
ମରୁତ ନୃପତିଙ୍କି କରାଇଲେ ଯାଗ
ସବୁ ଦେବେ ଖାଇଲେ ବାଣ୍ଟି ହବିଭାବ ।
ସାକ୍ଷାତରେ ଦେବେ ଯେ ଯାହା ରୂପ ଧରି
ବସିଲେଟି ସମ୍ବର୍ତ୍ତ ଯାଗଶାଳା ପୂରି ।
ସେ ଯାଗରେ ସୁବର୍ଣ୍ଣପାତ୍ର ବିନା ଆନ
ପାତ୍ର ଥିଲା ପରି ଶୁଣିନାହିଁଟି କାନ ।
ଭକ୍ଷ୍ୟ ଭୋଜ୍ୟ ପେୟ ଯେ ସୁବର୍ଣ୍ଣ ବସନ
ମରୁତ ଦେଇ ତାଙ୍କୁ କଲେ ତୋଷମନ ।
ଏରୂପେ ଯାଗ କରି ପାଇଲେ ମହାଯଶ
ହାରି ରହିଲେଟି ତାହାଙ୍କୁ ସୁରଈଶ ।
ପୁତ୍ର ପରି ପରଜାମାନଙ୍କୁ ପାଳିଲେ
ସହସ୍ରେ ବର୍ଷ ପରିଯନ୍ତେ ରାଜ୍ୟ କଲେ ।
କାଳବଶେ ପୁଣି ପାଇଲେ ପରଲୋକ
ତୁମ୍ଭ ପୁତ୍ର ପିଲା କରୁଛ କିପାଁ ଶୋକ ।
ଯାଗ କରି ଦକ୍ଷିଣା ଦେଇ ନାହିଁ କିଛି
କି ଘେନି ବା ଯମ ତା ଦେଲା ପାଞ୍ଜି ପୋଛି ।
ସୁହୋତ୍ର ନାମେ ପୂର୍ବେ ନୃପତିଏ ଥିଲେ
ଧର୍ମରେ ସେହୁ ପ୍ରଜାମାନଙ୍କୁ ପାଳିଲେ ।
ମନ୍ତ୍ରୀ ପୁରୋହିତ ଯା ଦିଅନ୍ତି ଉପଦେଶ
କରନ୍ତି ସେହୁ ତାହା ଭାବିଣ ମାନସ ।
ବଳରେ ଦେଲେ ପରଜନ ଗର୍ବ ଗଞ୍ଜି
ଧରମରେ ହୋଇଲେ ବ୍ରାହ୍ମଣଙ୍କ ସଙ୍ଗୀ ।
ମ୍ଳେଚ୍ଛ ଆଟବିକ ଦେଶକୁ ସାଧକରି
ହେଲେ ସେ ଚକ୍ରବର୍ତ୍ତୀ ନାମେ ଦଣ୍ଡଧାରୀ ।
ସେ ନୃପହିତ ଭାବି ଶଚୀପତି ସୁନା
ବରଷେ ବରଷିଲେ ହୋଇ ତୋଷମନା ।
ସେ ସକାଶୁଁ ସୁବର୍ଣ୍ଣମୟ ହେଲା କ୍ଷିତି
ଦେଖିବା ଥାଉ ମାଟି ନ ଭାବଲା ମତି ।
ନଦୀମାନେ ମଧ ତ ସୁବର୍ଣ୍ଣ ବହିଲେ
ମତ୍ସ୍ୟ କଚ୍ଛପାଦି ସୁବର୍ଣ୍ଣବର୍ଣ୍ଣ ହେଲେ ।
ବାମ୍ଫି କୂପ ଯେତେକ ତହିଁରେ ସୁବର୍ଣ୍ଣ
ବରଷନ୍ତେ ସେମାନେ ସ୍ୱର୍ଣ୍ଣେ ହେଲେ ପୂର୍ଣ୍ଣ ।
ସୁବର୍ଣ୍ଣ ବହୁତ ପାଇଲେ ସେ ନୃପତି
ସହସ୍ରେ ଅଶ୍ୱମେଧ କଲେ ବହି ପ୍ରୀତି ।
ଏହା ବାହାରେ ଶଏ ବାଜପେୟ କଲେ
ବ୍ରାହ୍ମଣଙ୍କୁ ଦକ୍ଷିଣା କରି ସୁନା ଦେଲେ ।
କାମ୍ୟ ନିତ୍ୟ ନଇମିତ୍ତିକ ଯାଗଯାକ
କରି ସେ ନୃପବର କାଳେ କରି ନାକ ।
ତୁମ୍ଭ ପୁଅ ଅବା ଅଟନ୍ତି କେତେକର
କରି ତ ନାହାନ୍ତି ଏ ଦ୍ୱିଜେ ନମସ୍କାର ।
ତୁମ୍ଭେ ତହିଁ ପାଇଁ କରୁଛ କିମ୍ପା ଶୋକ
ହସିବେଟି ଏହା ଶୁଣିଣ ରାୟେ ଲୋକ ।
ପୌରବ ନାମେ ପୂର୍ବେ ଜଣେ ରାଜା ହେଲେ
ଅଶ୍ୱମେଧରେ ଦଶଲକ୍ଷ ଘୋଡ଼ା ଦେଲେ ।
ସେ ଘୋଡ଼ାମାନଙ୍କର ବରନ ଶୁକଳ
ହୋଇବ ସେ ଚନ୍ଦ୍ର ତୁଲରେ ସମତୁଲ ।
ବେଦବିଦ ପଣ୍ଡିତ ଦ୍ୱିଜେ ହୋଇ ଗୋଟି
ଆସିଥିଲେ ତାଙ୍କ ଯାଗକୁ କୋଟି କୋଟି ।
କିନ୍ନରଙ୍କୁ ଘେନିଣ ଅପସରାକୁଳ
ହୋଇଥିଲେ ଆସିଟି ସେ ଯାଗାରେ ଠୁଳ ।
ଲକ୍ଷେ ହାତୀ ଲକ୍ଷେ କନ୍ୟା ଯେ ଲକ୍ଷେ ରଥ
ଲକ୍ଷେ ଗାଇ ଦକ୍ଷିଣା ଦେଲେ ନରନାଥ ।
ଏହା ବାହାରେ ଦାସ ଦାସୀ ଉଟ ଗଧ
ଦେଇ ଦ୍ୱିଜଙ୍କର ମନକୁ କଲେ ବୋଧ ।
ଏଥିକି ଅନୁରୂପ ସୁବର୍ଣ୍ଣ ରତନ
ଦେଇକରି ସନ୍ତୋଷ କଲେ ଦ୍ୱିଜଜନ ।
ଏ ଯାଗ ଅନ୍ତେ ସର୍ବକାମ ଭୋଗକଲେ
କାଳେ ଯମ ଅଙ୍ଗରୁ ପ୍ରାଣ ଘେନିଗଲେ ।
ତୁମ୍ଭ ପୁଅ ପାଇଁ କରୁଛ କିମ୍ପା ଡକା
ଖେଳିବାର କଥା ସେ ଜାଣେ ସିନା ଏକା ।
ଉଶୀନରଙ୍କର ପୁତ୍ର ଶିବି ହୋଇଲେ
ଅଦ୍ରି ଦ୍ୱୀପ ତୁଲେ ମହୀକି ବଶକଲେ ।
ନାନା ପ୍ରକାରରେ କରିଣ ସେହୁ ଯଜ୍ଞ
ଅର୍ଜିଲେ ମହାଭାଗ୍ୟ ଶିବିନୃପ ବିଜ୍ଞ ।
ଅଶ୍ୱମେଧଯାଗ କରି ସେ ନରପତି
ଦ୍ୱିଜେ ଦେଲେ ସୁନା କୋଟିଏ ବହି ପ୍ରୀତି ।

ହସ୍ତୀ ଅଶ୍ୱ ପାଚକ ରତ୍ନ ବସ୍ତ୍ର ତୁଳେ
ଶିବି ଏ ମଣ୍ଡଳ ଦ୍ୱିଜଙ୍କୁ ଦେଇଥିଲେ ।
ବରଷାଧାରା, ସିନ୍ଧୁବାଲି ପରି ଶିବି
ଦେଲେ ଦ୍ୱିଜମାନଙ୍କୁ ଗାଈ ଭଲ ଭାବି ।
ଶିବି ପରି ରାଜା ଅତୀତ ଅନାଗତ
ବର୍ତ୍ତମାନ ନାହିଁ ହେ ଜାଣ ମହୀକ୍ଷିତ ।
ଏପରି ତ ରାଜା ପରାଣ ହରାଇଲେ
ତୁମ୍ଭ ପୁତ୍ର ପାଇଁ ନ ଭାସ ଶୋକଜଳେ ।
ରାମ ତ ହେଲେ ଦଶରଥଙ୍କ ନନ୍ଦନ
ବାପଙ୍କ ନିଯୋଗେ ଛାଡ଼ିଲେ ରାଜାସନ ।
ଭାର୍ଯ୍ୟା ଭାଇ ଘେନି ଦଣ୍ଡକାବନେ ରହି
ଦେଲେ ସେ ବନେ ରାକ୍ଷସଙ୍କୁ ବଢ଼ାଇ ।
ସେ ବନରେ ତପସ୍ୱୀମାନଙ୍କୁ ପାଳିଲେ
ଅଯୋଧ୍ୟା କଥା ଆଉ ମନେ ନ ଭାଳିଲେ ।
ଏହା ଶୁଣି ରାବଣ ରାକ୍ଷସ ଆସିଲା
ସେ ନ ଥିବା ବେଳେଟି ତାଙ୍କ ଭାର୍ଯ୍ୟା ନେଲା ।
ସୁରାସୁରେ ଅବଧ୍ୟ ଅଟଇ ରାବଣ
ବଧକଲେ ତାଙ୍କୁ ସେ ଭାର୍ଯ୍ୟା ପାଇଁ ଜାଣ ।
ବନବାସ ଅନ୍ତରେ ରାଜ୍ୟକୁ ଆସିଲେ
ରାଜା ହୋଇ ପ୍ରଜାମାନଙ୍କୁ ରଞ୍ଜାଇଲେ ।
ଶଏ ଅଶ୍ୱମେଧ କରିଲେ ରାମରାଜା
ଧମରରେ ଅହର୍ନିଶି ଦେଇଣ ମଜ୍ଜା ।
କ୍ଷୁଧା ତୃଷା ଦୁଇ ଜିଣିଲା ତାଙ୍କ ଦେହ
ଅଧର୍ମକୁ ବଳାଇ ନ ପାରିଲେ ମୋହ ।
ରାମ ରାଜା ହୁଅନ୍ତେ ପ୍ରଜା ହୋଇ ସୁଖୀ
ଅଧରମ ଶୁଣି ବୁଜିଲେ କାନ ଆଖି ।
ଦେବତାଏ ସ୍ୱରଗ ଛାଡ଼ିଣ ଆସିଲେ
ସ୍ୱର୍ଗ ମଣି ଅଯୋଧ୍ୟା କଟକେ ରହିଲେ ।
ଅକାଳରେ ପରାଣ ନ ଗଲା କାହାର
ପାଳନ୍ତେ ଦଶରଥ ରାଜାଙ୍କ କୁମର ।
ଦେହୀ ଦେହେ ବହିଣ ତେଜଟି ବିଶେଷ
ଧରମରେ ହୋଇଲେ ସର୍ବେ ଦୀର୍ଘାୟୁଷ ।
ଚାରିବେଦ ପ୍ରାପତ ହବ୍ୟ କବ୍ୟ ଖାଇ
ଦେବେ ଦେଲେ ଗଣ୍ଡିଟିମାନଙ୍କୁ ଫୁଲାଇ ।
ଅଗ୍ନି ଜଳ ସର୍ପ ଯେ ବ୍ୟାଘ୍ର ମୂଷା ମଶା
ଭୟ ହୃଦେ କାହାର ନ କଲାଟି ବସା ।
ଅଧାର୍ମିକ ଲୁବ୍ଧ ରୋଗୀ ମୂର୍ଖଜନ-
ମାନଙ୍କରେ ମହୀ ହୋଇଲା ବିବର୍ଜନ ।
ତିନି ବର୍ଣ୍ଣ ଯାକଟି ତିନି ଯୋଗ କଲେ
ଧନ ରତ୍ନ ଦେଇଣ ଦ୍ୱିଜଙ୍କୁ ତୋଷିଲେ ।
ସମସ୍ତ ପ୍ରାଣୀ ହେଲେ ସସ୍ରେ ପୁତ୍ରବନ୍ତ
ଆୟୁଷ ହେଲା ମଧ୍ୟେ ସସ୍ରେ ପରିମିତ ।
ଜ୍ୟେଷ୍ଠ ଯେ କନିଷ୍ଠକୁ ନ ଦେଲେଟି ପିଣ୍ଡ
କନିଷ୍ଠେ ପିଣ୍ଡ ଦେଇ ତୋଷିଲେ ଜ୍ୟେଷ୍ଠପିଣ୍ଡ ।
ଏକାଦଶସହସ୍ର ରାମ ରାଜ୍ୟ କଲେ
ସହସ୍ର ପ୍ରାଣୀମାନଙ୍କର ପ୍ରିୟ ହେଲେ ।
ରାମଙ୍କ କଥା ବିନା ଜନେ ଆନ କଥା
ନୋହିଲେ ମହୀରେ ସୃଞ୍ଜୟ ମହାରଥା ।
ଚାରିଜାତି ପ୍ରାଣିଙ୍କି ସଙ୍ଗତରେ ଧରି
ଅନ୍ତେ ରାମ ଦେଖିଲେ ଇନ୍ଦ୍ରଙ୍କର ପୁରୀ ।
ତୁମ୍ଭର ପୁଅ ଯାଗଦକ୍ଷିଣାରେ ହୀନ
ତାଙ୍କୁ କରିବାର ଉଚିତ କି ଶୋଚନ ।
ଭଗୀରଥ ରାଜା ହୁଅନ୍ତେ ଇନ୍ଦ୍ର ପରି
ଯାଗ କଲେ ଗଙ୍ଗାତଟରେ ବସିକରି ।
ଦଶଲକ୍ଷ କନ୍ୟା ସେ ମଣ୍ଡି ରତନରେ
ବସାଇଲେ ତାଙ୍କ ରଥୁଟିମାନଙ୍କରେ ।
ରଥଟିକେ ଥାଆନ୍ତେ ଶଏଗୋଟି ଗଜ
ଗଜକେ ଥାଆନ୍ତେ ସହସ୍ରେ ବାଜିରାଜ ।
ବାଜିଗୋଟିକରେ ଥାଆନ୍ତି ଶଏ ଗାଈ
ଗାଈଟିକେ ପାଞ୍ଚୋଟି ମେଣ୍ଢା ଥାନ୍ତି ରହି ।
ଏହିରୂପେ ଦାନ ଦେଇଣ ଭାଗୀରଥ
ଅରଜିଲେ ଯିବାକୁ ସୁଖେ ସ୍ୱର୍ଗପଥ ।
ଭଗୀରଥ ଦାନ ପାଣିରେ ଗଙ୍ଗା ପୂରି-
ରହନ୍ତେ ତୋଷରେ ମାନୁଷୀରୂପ ଧରି ।
ଭଗୀରଥଙ୍କର ଯେ କୋଳରେ ବସିଲେ
ମୁଁ ତୁମ୍ଭ ଝିଅ ହେଲି ବୋଲିଣ ଭାଷିଲେ ।
ଭଗୀରଥରାଜାଙ୍କୁ ଯେ ଯାହା ମାଗିଲେ
ଭଗୀରଥ ଯାଗରେ ତାହାଙ୍କୁ ତା ଦେଲେ ।
ଭଗୀରଥ ନୃପେ ସେବିଲେ ଯେତେ ରାଜା
ନ ରହିଲା ପାପରେ ତାହାଙ୍କର ମଜ୍ଜା ।
ନ ସାଧିଣ ଯୋଗ ସଙ୍ଗରେ କେତେ ଗଲେ
କେତେ ଲୋକ ସ୍ୱରଗ ପୁରରେ ବସିଲେ ।
ତେଢ଼େ ରାଜାଙ୍କଉ ତ ହୋଇଅଛି ମୃତ୍ୟୁ
ଛାଡ଼ ପୁତ୍ରଶୋକ ହେ ନୃପ କରି ହେତୁ ।
ଦିଲ୍ଲୀପ ରାଜା ହୋଇ କଲେ ଶଏ ଯାଗ
ଯାଗଯୂପଙ୍କରେ ମଣ୍ଡିଲେ ମହୀଭାଗ ।
ତାଙ୍କ ଯାଗବଟ ସୁବର୍ଣ୍ଣେ ହେଲା ବନ୍ଧା
ଏଣୁ ଯିବାଲୋକ ମାନସ ହେଲା ଧନ୍ଦା ।
ଇନ୍ଦ୍ରାଦି ଦେବତାଏ ଘେନି ଦେବଋଷି
ଦିଲ୍ଲୀପଙ୍କ ଯୋଗେ ରହିଲେ ରାୟେ ଆସି ।

ଅସଂଖ୍ୟେୟ ବ୍ରାହ୍ମଣ ସେ ଯାଗରେ ଖାଇ
ଯାଆନ୍ତି ଘରକୁ ବାଟେ ଶୋଇ ଶୋଇ ।
ଦିଲ୍ଲୀପ ଜଳେ ପଶି ବିନ୍ଧନ୍ତେ ଶାୟକ
ସ୍ଥଳରେ ଥିଲା ପରି ଦିଶେ ରଥଚକ ।
ଦିଲ୍ଲୀପଙ୍କୁ ଯେତେକ ଲୋକ ଦେଖିଛନ୍ତି
ମୁକ୍ତପାପ ହୋଇ ସେ ସ୍ୱର୍ଗେ କଲେ ସ୍ଥିତି ।
ବେଦଧ୍ୱନି ଦାନଧ୍ୱନିଟି ଧନୁର୍ଧ୍ୱନି
ହୋଇଥିଲା ଯେ ଦିଲ୍ଲୀପଙ୍କ ପୁରସ୍ଥାନୀ ।
ଥାଉ ଏକା ହେବେ ତୁମ୍ଭଙ୍କୁ ଚାରିଗୁଣ
ଅଧିକଟି ଦିଲ୍ଲୀପ ନରପତି ଜାଣ ।
ଏଢ଼େ ରାଜା ପ୍ରାଣ ତ କାଳେ କାଳଦେବ
ଘେନି ପକାଇଲେ ଆନ କିଏ ଜୀଇଁବ ।
ଯୁବନାଶ୍ୱଙ୍କ ସୁତ ମାନ୍ଧାତା ହୋଇଲେ
ଯୁଦ୍ଧରେ ଦେବାସୁର ନରଙ୍କୁ ଜିଣିଲେ ।
ଏକଦିନେ ସେ ଯୁବନାଶ୍ୱ ନରପତି
ମୃଗୟା କରି ବନେ ତୃଷାର୍ତ୍ତ ହେଲେ ଅତି ।
ନିକଟେ ଯଜ୍ଞଧୂମ କରି ନିରୀକ୍ଷଣ
ପ୍ରବେଶି ଯଜ୍ଞ ପୃଷଦାଜ୍ୟ କଲେ ପାନ ।
ସେହି ହେତୁ ତାଙ୍କର ହୋଇଲା ଜଠର
ତାହା ଦେଖିଣ ଦୁଇ ଅଶ୍ୱିନୀକୁମର ।
ଯୁବନାଶ୍ୱ ନୃପେ ପ୍ରସବ କରାଇଲେ
ବେଦବିଦ୍ୟା ଆଶ୍ଚର୍ଯ୍ୟ ଦୁହେଁ ଦେଖାଇଲେ ।
ଯୁବନାଶ୍ୱଙ୍କର କୋଳରେ ସେହି ସୁତ
ଦେଖିକରି ବିଚାର କଲେ ଦଇବତ ।
ଯୁବନାଶ୍ୱଙ୍କର ତ ସ୍ତନକ୍ଷୀର ଶକ୍ତି
ଦେବାର ନାହିଁ କିସ ଖାଇ ହେବେ ତୃପ୍ତି ।
ଇନ୍ଦ୍ର ବୋଇଲେ ମୋର ଅଙ୍ଗୁଳିରୁ କ୍ଷୀର
ପାନ କରି ଜୀଇଁବଟି ଏହି କୁମର ।
ଏହା ଶୁଣି ଦେବେ ସନ୍ତୋଷ ହୋଇଲେ
ଇନ୍ଦ୍ର ନିଜ ଅଙ୍ଗୁଳି ପିଲା ମୁଖେ ଦେଲେ ।
ଇନ୍ଦ୍ରଙ୍କ ଅଙ୍ଗୁଳିକି କରିବାରୁ ପାନ
ନାମ ଦେଲେ ମାନ୍ଧାତା ସେ ପାକଶାସନ ।
ବାରଦିନରେ ବରବରଷ ସମାନ
ବଳକୁ ବହିଲେଟି ଜାଣ ସେ ନନ୍ଦନ ।
ଧର୍ମବନ୍ତ କୃତଜ୍ଞ ସତ୍ୟସନ୍ଧ ହେଲେ
ଦିନକେ ସେ ପୃଥ୍ୱୀ ମଣ୍ଡଳ ବଶ କଲେ ।
ଜନ୍ମେଜୟ ସୁଧନ୍ୱା ଅସିତ ବୃହଦବଳ
ପୁରୁ ରାୟ ପରି ସେ ହେଲେ ମହୀପାଳ ।
ଉଦୟଗିରିଠାରୁ ଅସ୍ତଗିରିଯାଏ
ଭୋଗକଲେ ମାନ୍ଧାତା ହୋଇ ନରରାୟେ ।
ଶଏ ଅଶ୍ୱମେଧ ଶଏଟି ରାଜସୂୟ
ଯାଗ କଲେ ମାନ୍ଧାତା ହୋଇ ସ୍ୱର୍ଗପ୍ରିୟ ।
ଯୋଜନ ଦଶ ଦୀର୍ଘ ଯୋଜନେ ଓସାର
ମତ୍ସ୍ୟଟିଏ ଦ୍ୱିଜଙ୍କୁ ଦେଲେ ସେ ସୁନାର ।
ଅନ୍ନ ପର୍ବତକୁ ବେଢ଼ିଣ ମହୁ କ୍ଷୀରେ
ନଦୀତଟେ ବହିଲା ସେ ଯାଗେ ନିରନ୍ତରେ ।
ମୁଗଡିଅଣକୁ ସେ ନଦୀଙ୍କର ପଙ୍କ
ପରି ଜନେ ମଣିଲେ ହୋଇଣ ନିଃଶଙ୍କ ।
ଦଧି-ଫେନ ଯେ ଘୃତ ହ୍ରଦଙ୍କରେ ଶୋଭା
ହୁଅନ୍ତେ ସେ ହୋଇଲା ସବୁ ଜୀବ ଲୋଭା ।
ପିଠା ପଥରକୁ ପାଇଣ ତୁଠ ପରି
ଜୀବଆତ୍ମା ସନ୍ତୋଷ ହେଲ ସ୍ନାନ କରି ।
ଦେବଋଷି ରାଜର୍ଷି ଉରଗ ଗନ୍ଧର୍ବ
ଯକ୍ଷ ଅପସରା କିନ୍ନର ଭଳମିଦେବ ।
ଏ ସମସ୍ତେ ସେ ମହାଯାଗେ ହୋଇ ଗୋଟି
ପ୍ରଶଂସିଲେ ଯୁବନାଶ୍ୱଙ୍କର ବେଟାଟି ।
ସମୁଦ୍ର ସହିତେ ଦ୍ୱିଜଙ୍କୁ ପୃଥ୍ୱୀ ଦେଇ
କାଳବଶେ ପୁଣି ମରିଲେ ଶୁଣିଥାଇ ।
ତୁମ୍ଭ ପୁତ୍ରଙ୍କର ତ ଏ ଗୁଣରୁ ଗୁଣ
ଗୋଟିଏ ତ ନାହିଁ ହେ ନ କର କାରୁଣ୍ୟ ।
ନହୁଷଙ୍କ ପୁଅ ଯଯାତି ରାଜା ହେଲେ
ଶତ ଶତ ରାଜସୂୟ ଯାଗ ଯେ କଲେ ।
ପୌଣ୍ଡରିକ ସହସ୍ରେ ଅଶ୍ୱମେଧ ଶତ
ଶଏ ବାଜପେୟ ସହସ୍ର ଅତିରାତ୍ର ।
ଏହା କରି ମହୀକି ଚାରଭାଗ କଲେ
ଦ୍ୱିଜଙ୍କୁ ସେ ଦକ୍ଷିଣା କରି ତାହା ଦେଲେ ।
ଦେବାସୁର ଯୁଦ୍ଧରେ ଦେବଙ୍କ ସହାୟ
ହୋଇକରି ଛିଣ୍ଡାଇ ଆଣିଲେ ସେ ଜୟ ।
ଧର୍ମରେ ଦେବଜାନି ଶର୍ମିଷ୍ଠା ଆଡ଼ରେ
ପୁତ୍ର ଜାତ କଲେ ସେ ଦେବତା ପରିରେ ।
ଦେବତା ତନୁ ଧରି ଭାରିଯାକୁ ଧରି
ବିହାର କଲେ ଶଚୀ-ଇନ୍ଦ୍ର ଦେବ ପରି ।
କାମ ଅନ୍ତ ନ ପାଇ ଯଯାତି ନୃବର ।
ହୃଦୟରେ ଏହା କରିଲେ ସେ ବିଚାର ।
ପଶୁ ଗାଈ ଧନ ଯେ ଧାନ୍ୟ ସ୍ତିରୀଜନ
ମିଳୁଥିଲେ ପ୍ରବର୍ତ୍ତିଥାଏ ନିତି ମନ ।
ଏମାନ ଏ ମହୀରେ ଯେତେକ ଅଛନ୍ତି
ଜଣେ ଭୋଗ କରିଲେ ନୁହଇ ତୃପତି ।
ଏହି ସକାଶରୁ କାମର ନାହିଁ ଅନ୍ତ
ଭୋଗୀ ଲୋକ ହୃଦୟ ନୁହଇ ତ ଶାନ୍ତ ।

ଏ ରୂପେ ବିଚାରି ପୁରୁଙ୍କୁ ରାଜ୍ୟ ଦେଇ
ବନମଧ୍ୟେ ରହିଲେ ଯଯାତି ନୃସାଇଁ ।
କାଳରେ ସେ ଯାଇ ଲଭିଲେ ସ୍ୱର୍ଗଆଳ
ପୂଜାକଲେ ତାହାଙ୍କୁ ଦେଖି ଆଖଣ୍ଡଳ ।
ତୁମ୍ଭ ପୁଅ ଯଯାତି ପରି ତ ନୁହନ୍ତି
ତାଙ୍କୁ ଶୋକ କରିବା ଯୁକ୍ତି କି ଭାବ ମତି ।
ନାଭାଗ ନୃପସୁତ ଅମ୍ବରୀଷ ରାଜା
ହୋଇ ଧରମରେ ପାଳନ କଲେ ପ୍ରଜା ।
ଦଶଲକ୍ଷ ରାଜାଙ୍କ ତୁଲେ ସେ ଯୁଝିଲେ
ଯୁଦ୍ଧରେ ତାଙ୍କ ଅଶ୍ୱ ଧ୍ୱଜକୁ କାଟିଲେ ।
ବିରଥ ହୋଇକରି ଦଶଲକ୍ଷ ନୃପ
ସାଞ୍ଜୁ ତୁଳେ ପକାଇଦେଇ କରଚାପ ।
ବୋଇଲେ ଆଜ୍ଞୁଟି ଅଧୀନ ହେଲୁଁ ଆମ୍ଭେ
ଆଉ କିଛି ଆମ୍ଭଙ୍କୁ ନ ପଚାର ତୁମ୍ଭେ ।
ଏହିରୂପେ ମହୀମଣ୍ଡଳ ନୃପକୁଳ
ବଶ କରିଲେ ଅମ୍ବରୀଷ ମହୀପାଳ ।
ବିଧିମନ୍ତ କରିଣ ଶଏ ଯାଗ କଲେ
ଦ୍ୱିଜଙ୍କୁ ଦିବ୍ୟ ଅନ୍ନମାନ ଭୁଞ୍ଜାଇଲେ ।
ସେହି ଯାଗାରେ ଫଳମୂଳ ଖଜା କ୍ଷୀରି -
ପିଠା ଖାଇ ସର୍ବେ ବସିଲେ ମୋଦ ଧରି ।
କ୍ଷତ୍ରିୟମାନେ ମଦ ପୂର୍ଣ୍ଣକୁମ୍ଭ ଥୋଇ
ପିଇଲେ ସେ ଯାଗରେ ଉନମତ୍ତ ହୋଇ ।
ଅମ୍ବରୀଷ ନୃପଙ୍କ କୀର୍ତ୍ତି ଗାନ କଲେ
ଏରୂପେ ଅମ୍ବରୀଷ ଯାଗ ଶେଷ କଲେ ।
ଯାଗ ଅନ୍ତେ ଲକ୍ଷେ ନୃପତି ସୁନାରଥେ
ବସାଇ ଦାନ ଦେଲେ ଦ୍ୱିଜଙ୍କର ହାତେ ।
ସୁବର୍ଣ୍ଣ ସାଞ୍ଜୁ ଯେ ସମସ୍ତେ ଥିଲେ ଭରି
ଶୁକଳଛତ୍ର ଟେକା ମୁଣ୍ଡେ ସବୁଙ୍କରି ।
ଏଥିକି ଅନୁରୂପ ଆଉ କଥାମାନ
ଥିଲା ବୋଲି କରି ସୃଞ୍ଜୟ ମନେ ଘେନ ।
ଏ ବାହାରେ ଦଶଅୟୁତ ଦେଲେ ଅଶ୍ୱ
ଭଣ୍ଡାରଘର ଶଏ ଦେଲେ ବହି ତୋଷ ।
ଅମ୍ବରୀଷ ନୃପତି ଯାଗ କଲା ପରି
କାନରେ କାହା ଶୁଣା ନାହିଁ ଦଣ୍ଡଧାରି ।
ଏଡ଼େ ଧରମବନ୍ତ ବଳବନ୍ତ ହୋଇ
ସେହି ନୃପତି ମୃତ୍ୟୁ ଜିଣିଲେଟି ନାହିଁ ।
ତୁମ୍ଭର ସୁତ ପିଲା ହୋଇ ହେଲା ମୃତ
ତାହାକୁ କାନ୍ଦିବାର ନୁହଇ ଉଚିତ ।
ଶଶବିନ୍ଦୁ ନାମେ ତ ହେଲେ ଯେଉଁ ରାଜା
ବାଛିକରି କଲେ ସେ ଲକ୍ଷେକ ଭାରିଜା ।

ଗୋଟି ଗୋଟିକରେ ସହସ୍ର ପରିମିତ
ଶଶବିନ୍ଦୁ ନୃପତି ପୁତ୍ର କଲେ ଜାତ ।
ସେ ପୁତ୍ରମାନେ ହେଲେ ମହାବଳବନ୍ତ
କରିଲେ ଅଶ୍ୱମେଧଯାଗ ଶତ ଶତ ।
ଶଶବିନ୍ଦୁ ଯେତେକ ଅଶ୍ୱମେଧ କଲେ
ସେ ପୁଅଟିମାନଙ୍କୁ ଦ୍ୱିଜେ ସମର୍ପିଲେ ।
ଶଏ ଶଏ କନ୍ୟାଟି ଅଳଙ୍କୃତ କରି
ଜଣ ଜଣକେ ସେହୁ ପୁତ୍ର ଥିଲେ ଧରି ।
ପୁତ୍ର ଗୋଟିକରେ ଯେ ଥିଲେ ଶଏ ରଥ
ଶଏ ଘୋଡ଼ା ଲେଖାରେ ରଥେ ହେଲେ ସାଥ
ଘୋଡ଼ା ଗୋଟିକରେ ଶଏ ଗଜ ବେଢ଼ି
ରହିଥିଲେ ଦାନ୍ତମାନଙ୍କୁ ଦେଇ କାଢ଼ି ।
ଗଜ ଗୋଟିକରେ ସେ ସହସ୍ରେ ଲେଖାରେ
ଗାଈ ଥିଲେ ମେଷ ତ ଦେଲେ ଅଲେଖାରେ ।
କାଠଯୂପ ଯେତେ ତେତିକି ସୁନାଯୂପ
ସେ ଯାଗାରେ ପୋତିଲେ ଶଶବିନ୍ଦୁନୃପ ।
ଅନ୍ନ ପାନ ସାମଗ୍ରୀ କୋଶେ ପରିଯନ୍ତେ
ରଖିବାରୁ ଆସ ଯା ନ ହେଲା ନିରତେ ।
ଅଶ୍ୱମେଧ ଯାଗ ହୁଅନ୍ତେ ସମାପତି
ସବୁ ପ୍ରାଣୀମାନେ କରିଲେ ତାଙ୍କୁ ସ୍ତୁତି ।
ଏଡ଼େ ଧର୍ମ ତାଙ୍କର ପ୍ରାଣରକ୍ଷାକାରୀ
ନୋହିଲା କାଳରେ ସେ ଶୋଇଲେଟି ମରି ।
ତୁମ୍ଭର ପୁତ୍ର କରି ନାହାନ୍ତି ତ ତପ
ସେ ମରିବା କଥାରେ ଛାଡ଼ ହୃଦତାପ ।
ଗୟରାଜା ଶଏବରଷ ଯାଏ ହୋମ
ଅବଶେଷ ଖାଇ ପାଳିଲେ ରାଜ୍ୟ ଗ୍ରାମ ।
ଅଗ୍ନି ସେ ହୋମଶେଷ ଖାଇବାର ଦେଖି
ଯାଚିଲେ ପ୍ରସନ୍ନରେ ବର ହୋଇ ସୁଖୀ ।
ଗୟରାଜା ବୋଇଲେ ବର ଯେବେ ଦେବ
ବୋଲ ମୋ ବ୍ରହ୍ମଚର୍ଯ୍ୟ ବେଦପାଠ ହେବ ।
ସ୍ୱଧର୍ମରେ ଶତ୍ରୁଙ୍କୁ କରିବି ମୁଁ ଜୟ
ଅର୍ଜିବା ବିତ୍ତ ମୋ ନୋହିବ କେବେ କ୍ଷୟ ।
ବ୍ରାହ୍ମଣମାନଙ୍କୁ ମୁଁ ଆଣିଣ ଡକାଇ
ଦେଉଥିବିଟି ଅନ୍ନ ଶ୍ରଦ୍ଧାବନ୍ତ ହୋଇ ।
ଧର୍ମପତ୍ନୀ ଆଡ଼ରେ ହେବ ମୋର ସୁତ
ନିତିଦିନ ଧର୍ମରେ ଥିବ ମୋର ଚିତ୍ତ ।
ଯେବେଟି ଧର୍ମକାର୍ଯ୍ୟ କରୁଥିବି ମୁହିଁ
ଅବିଘ୍ନରେ ଯାଉଥିବ ସେ ସିଦ୍ଧ ହୋଇ ।
ଅଗ୍ନି ସେ ନୃପଙ୍କର ବଚନ ଘେନିଲେ
ହେଉ ବୋଲି ଅନ୍ତର୍ଦ୍ଧାନ ସେ ହୋଇଗଲେ ।

ଅଗ୍ନିଙ୍କଠାରୁ ବର ପାଇ ଦଣ୍ଡଧାରୀ
ଧର୍ମଯୁଦ୍ଧେ ଶତ୍ରୁଙ୍କୁ ରଖିଲେ ବଶକରି ।
ଦଶ ପୌର୍ଣ୍ଣମାସ ଯେ ଚାତୁର୍ମ୍ମାସ୍ୟ ଇଷ୍ଟି
କରି ସେ ଦେବଙ୍କର କଲେ ଦେହ ପୁଷ୍ଟି ।
ଏ ବାହାରେ ଶଏସହସ୍ର ଗାଇ ସୁନା
ଘୋଡ଼ା ଦେଲେ ଦ୍ୱିଜଙ୍କୁ ହୋଇ ପ୍ରେମମନା
ଶଏ ସମ୍ବତ୍ସରି ଯେ ଅବଧି ପୂରନ୍ତେ
ଏଥିରୁ ବିବର୍ତ୍ତି ରହିଲେ ମହାମତେ ।
ନକ୍ଷତ୍ରମାନଙ୍କରେ ଲେଖିଥିବା ଦ୍ରବ୍ୟ
ସେ ଜାଗେ ଦେଇ ସେ ଅର୍ଜ୍ଜିଲେ ମହାଭାଗ୍ୟ
ଅଶ୍ୱମେଧ ଯାଗରେ ସ୍ୱର୍ଣ୍ଣ ରତ୍ନେ ମହୀ -
ସଜାଡ଼ି ଦ୍ୱିଜଙ୍କୁ ସେ ଦେଲେ ଶୁଣିଥାଇଁ ।
ଗୟଙ୍କର ଯାଗରେ ଯେତେ ଯୂପ ଥିଲେ
ସୁବର୍ଣ୍ଣ ରତ୍ନେ ସେ ଜ୍ୱଳନ ପରି ହେଲେ ।
ଯାଗାନ୍ତେ ସେ ଯୂପମାନଙ୍କୁ ବ୍ରାହ୍ମଣଙ୍କୁ
ଦେଇ ଦେଲେ ଦକ୍ଷିଣା ତୋଷ ହୋଇବାକୁ ।
ଦୁଇଟି ସୁନାବେଦୀ ମୁକ୍ତା ହୀରା ଖଞ୍ଜା
ହୋଇଥିଲା କରାଇଦେଲେ ଗୟରାଜା ।
ଛତିଶି ଯୋଜନ ସେ ବେଦୀଙ୍କ ବିସ୍ତାର
ତିରିଶିଯୋଜନ ପ୍ରମାଣ ଲମ୍ବ ତାର ।
ଯାଗ ଅନ୍ତେ ସେ ବେଦୀମାନଙ୍କୁ ବ୍ରାହ୍ମଣ -
ଜନଙ୍କୁ ଦେଇ ଦେଲେ ବସ୍ତ୍ର ଆଭରଣ ।
ସମୁଦ୍ର ନଦ ନଦୀ ବନ ପରବତ
ନଗ୍ର ରାଷ୍ଟ୍ର ସ୍ୱର୍ଗ ଆକାଶ ତଳ ମର୍ତ୍ତ୍ୟ ।
ଏମାନଙ୍କେ ଯେତେକ ପ୍ରାଣୀମାନେ ଥିଲେ
ଗୟଙ୍କର ଯାଗ ଦେଖିଣ ପ୍ରଶଂସିଲେ ।
ଯାଗ ଅନ୍ତରେ ଅନ୍ନପର୍ବତ ପଚିଶି
ହୋଇଲା ସେହିଠାରେ ଭସ୍ମରାଶି ।
ବସ୍ତ୍ର ଅଳଙ୍କାର ଯେ ସୁବାସ ଚନ୍ଦନ
ବଳିଲା ଏତେ ତେତେ କହିବ କେ ଜନ ।
ଗୟଙ୍କ ପ୍ରଭାବୁଁ ଅକ୍ଷୟବଟ ପୁଣ୍ୟ
ହେଲା ବ୍ରହ୍ମଶର ତୁଲରେ ମନେ ଘେନ ।
ଏଡ଼େ ରାଜାଟାକୁ ତ କାଳେ ନେଲା କାଳ
ତୁମ୍ଭ କୁମର ତ ଅଟନ୍ତି ଅତି ବାଳ ।
ଆଗେ ଦେବନାମରେ ଥିଲେ ନରସାଇଁ
ପ୍ରଜାଙ୍କଠାରୁ କର ଆଣିଣ ରସାଇ ।
ଦୁଇଲକ୍ଷ ସୁପକାର ସେ ରାଜା କଲେ
ନିତି ଅଭ୍ୟାଗତମାନଙ୍କୁ ଅନ୍ନ ଦେଲେ ।
ବିଧିମତେ ବେଦକୁ ଅଧ୍ୟୟନ କରି
ଦେବତା ପିତୃଙ୍କର ହେଲେ ତୋଷକାରୀ ।

କରିବେ ସେହୁ ନୃପବର ବୋଲି ଯାଗ
ଆସିଲେ ତାଙ୍କଠାକୁ ପଶୁଏ ବହି ଭାବ ।
ରନ୍ତିଦେବ ଯେବେ ଗୋମେଧଯାଗ କଲେ
ଗାଇଚର୍ମରେ ନଦୀଟାଏ ବୁହାଇଲେ ।
ଆଜି ଚର୍ମଣ୍ୱତୀ ନାମକୁ ସେହୁ ବହି
ଯାଉଛନ୍ତି ବହି ହେ ସର୍ବେ ଦେଖୁଥାଇଁ ।
ଏକାଦିନକରେ ଯେ କୋଟି ସଂଖ୍ୟା ନିଷ୍କ
ଦିଅନ୍ତି ରନ୍ତିଦେବ ନୃପତି ତିଳକ ।
ଜଣେ ଟେକିକରି ନ ଦେଲେ ଦାନ ପାଣି
କି ହେଲା ବୋଲିଣ ପକାନ୍ତି ନେତ୍ର ପାଣି
ସ୍ୱର୍ଣ୍ଣଭୂଷା ସବତ୍ସା ଶଏ ଗାଇ ଦାନ -
ଦେଲେ ବରଷେ ପରିଯନ୍ତେ ପ୍ରତିଦିନ ।
ସୁବର୍ଣ୍ଣରେ ନାନାଜାତିର ପାତ୍ରବୃକ୍ଷ
କରାଇ ତା ଦେଲେ ସେ ବୁଝି ଦ୍ୱିଜମୁଖ୍ୟ ।
ଘର ମଧ୍ୟେ ସୁବର୍ଣ୍ଣ ରତ୍ନରେ ନିର୍ବାହ
କରି ଦେଲେ ଦ୍ୱିଜଙ୍କୁ ହୃଦେ ବହି ସ୍ନେହ ।
କୁବେରଙ୍କୁ ଅଧିକ ରନ୍ତିଦେବଙ୍କର
ଧନ ହେଲା ବୋଲି ବୋଲନ୍ତେ ସବୁ ନର ।
ପ୍ରତିଦିନ ପିତୃ ଦେବତା ହବ୍ୟ କବ୍ୟ
ଖାଇ ପ୍ରଶଂସିଲେଟି ତାଙ୍କୁ ବୋଲି ଭବ୍ୟ ।
ତେଡ଼େ ରାଜା ମଲେ ବୋଲି ତ ଶୁଣିଥାଇଁ
ପୁତ୍ର ମରିବାରୁ ନ କାନ୍ଦ କହୁଥାଇଁ ।
ଜନ୍ମ ହେଲେ ମରଣ ଅଟଇଟି ମୂଳ
ଲାଗିଛି ସବୁଙ୍କୁ ଏ କଥା ନରପାଳ ।
ଶକୁନ୍ତଳା ଗର୍ଭରୁ ଦୁଷ୍ମନ୍ତଙ୍କ ସୁତ
କଣ୍ୱଙ୍କର ଆଶ୍ରମେ ହୋଇଲେ ତ ଜାତ ।
ବ୍ୟାଘ୍ର ଭାଲୁ ସିଂହ ଗଇଳ ଗଣ୍ଡା କରୀ
ଖେଳିଲେ କଉତୁକେ ଗଣ୍ଡା ଚଣ୍ଡା ଧରି ।
ତାଙ୍କର ଏହି କର୍ମ ଦେଖି ଋଷିଜନ
ନାମ ଦେଲେ ତାହାଙ୍କୁ ସରଦବମନ ।
ଶକୁନ୍ତଳା ନିବାରି ରଖିବାର ଦିନୁ
ଛାଡ଼ିଲେ ଜନ୍ତୁ ଧରା ଦୁଷ୍ମନ୍ତଙ୍କ ସୂନୁ ।
ଯେଉଁ କାଳେ ଭରତ ପାଇଲେ ଯୌବନ
ଦୁଷ୍ମନ୍ତ ଦେଲେ ତାଙ୍କୁ ରାଜସିଂହାସନ ।
ଯମୁନାରେ ଶଏ ଯେ ଗଙ୍ଗାରେ ଚାରିଶ
ସରସ୍ୱତୀଙ୍କରେ କରିଲେ ସେ ତିନିଶ ।
ଅଶ୍ୱମେଧ ଯାଗକୁ ଭରତ ନୃପତି
ମୋ କହିବାରୁ ଜାଣ ସୃଞ୍ଜୟ ନୃପତି ।
ଏ ବାହାରେ କଲେ ସହସ୍ରେ ଅଶ୍ୱମେଧ
ଭରତ ନୃପତି ହୃଦରେ ବହି ସଧ ।

ଶଏ ରାଜସୁତ ସହସ୍ର ବାଜପେୟ
କରି ଶକୁନ୍ତଳା ଦେବୀଙ୍କର ତନୟ ।
ଅଗ୍ନିଷ୍ଟୋମ ଯେ ଅତିମାତ୍ର ବିଶ୍ୱଜିତ
ଯାଗ ଆଦି କରି ତୋଷିଲେ ଦ୍ୱିଜଚିତ୍ତ ।
କଣ୍ୱଙ୍କୁ ଗଣି ଭାରତ ମହାମନା
ଦକ୍ଷିଣା କରି ଦେଲେ ସହସ୍ରେ ପଦ୍ମ ସୁନା ।
ଶତବ୍ୟାମ ପରିମିତଟି ଯାଗ ରୂପ
ସୁବର୍ଣ୍ଣରେ କଲେ ଭରତ ନରାଧିପ ।
ସେ ଯୂପଙ୍କୁ ତାଙ୍କ ଆଗରେ ଇନ୍ଦ୍ର ଆଦି
ଦେବେ ଟେକି ପୋତିଲେ ହୋଇ ନିବବାଦୀ
ଅଶ୍ୱ ଗଜ ମହିଷ ଉଟ ମେଣ୍ଢା ଛେଳି
ଦାସୀ ଦାନ ଧନ ଯେ ଧାନ୍ୟ ଗ୍ରାମବଳି ।
ସବତ୍ସା ପୟଃସ୍ୱିନୀ ଗୃହ ବସୁନ୍ଧରା
ଦାନଦେଲେ ଦ୍ୱିଜେ ସୁବର୍ଣ୍ଣ କରି ତୋରା ।
ତେଢ଼େ ରାଜାଙ୍କୁ ତ କାଳରେ ନେଲା ଯମ
ତୁମ୍ଭର ସୁତ କେତେକର ପରାକ୍ରମ ।
ପୃଥୁନାମେ ନରଙ୍କୁ ମହୀରେ ନୃପତି
କଲେ ପୂର୍ବକାଳରେ ବସି ସବୁ ଯତି ।
ସବୁ ପ୍ରାଣୀମାନଙ୍କୁ ପ୍ରାଭବ ସେ ଦେଲେ
ଏଣୁ ପୃଥୁନାଥ ଜଗତେ ବୋଲାଇଲେ ।
କ୍ଷତରୁ ରକ୍ଷାକଲା ସକାଶୁଁ କ୍ଷତ୍ରିୟ
ବୋଇଲେଟି ତାହାଙ୍କୁ ଜାଣ ହେ ସୃଞ୍ଜୟ ।
ପ୍ରଜାଙ୍କୁ ରଞ୍ଜାଇବା ସକାଶରୁ ରାଜ
ବୋଇଲେଟି ମହୀରେ ପୃଥୁ ମହାତେଜା ।
ପୃଥୁରାଜା ହୁଅନ୍ତେ ଭୂମେ ପଡ଼ି ବୀଜ
ଚାଷ ବିନା ବୋହିଲେ ସେ ଫଳ ସମାନ ।
ସବୁ ଗାଈମାନେଟି ମାଠିଆରୁ ଊଣା
କରି ଦୁଧ ନ ଦେଲେ ଜାଣ ମହାମନା ।
ପ୍ରତି ଗଛଙ୍କରେ ରହିଲେ ମହୁମାଛି
ମହୁ ମିଳିବାରେ ନୋହିଲା ସଂଖ୍ୟା କିଛି ।
ସୁବର୍ଣ୍ଣର ସମ୍ବନ୍ଧ ହେଲା ବୃକ୍ଷରାଜି
ସେ ବକଳ ପିନ୍ଧିଲେ ପ୍ରାଣୀଏ ସୁଖେ ମଜ୍ଜି ।
ଅମୃତ ପରି ଫଳମୂଳ ଉପୁଜିଲେ
ଯେ ଯାହାର ଖାଇଣ ଦିନକୁ ବଞ୍ଚିଲେ ।
ବୃକ୍ଷମୂଳରେ ଗୁହା ଭିତରେ ଆରୋଗ୍ୟ -
ହୋଇ ଜନେ ରହିଲେ ଛାଡ଼ି ଭୟରୋଗ ।
ସେକାଳେ ଘରଦ୍ୱାର ନ ଥିଲା କାହାରି
ଏଣୁ ଗିରିଗୁହାରେ ରହିଲେ ଘର କରି ।
ସମୁଦ୍ରକୁ ଯେବେ ଯାଆନ୍ତି ପୃଥୁରାଜା
ନ ଲାଗି ଜଳ ତାଙ୍କୁ କରନ୍ତିଟି ପୂଜା ।
ପର୍ବତମାନେ ମଧ୍ୟ ମାର୍ଗ ତାଙ୍କୁ ଦେଲେ
ତାଙ୍କ ରଥରେ କଣ୍ଟା ଲଟା ନ ଲାଗିଲେ ।
ବନସ୍ପତି ଶୈଳ ଯେ ଦେବାସୁର ନର
ସପ୍ତଋଷି ଯକ୍ଷ ଉରଗ ପିତର ।
ଗନ୍ଧର୍ବ ଅପସରାମାନେ ହୋଇ ଗୋଟି
କହିଲେ ସେ ପୃଥୁନୃପଙ୍କୁ ମେଳି ପାଟି ।
ଆହେ ପୃଥୁରାଜା ଆମ୍ଭର ପିତା ତୁମ୍ଭେ
ସମ୍ପୂର୍ଣ୍ଣ କର ଆମ୍ଭ ମନ ବୋଲୁ ଆମ୍ଭେ ।
ପୃଥୁ ସେମାନଙ୍କର ମନକୁ ଜାଣିଣ
ଧରଇ ଟେକି ଅଜଗବ ଶରାସନ ।
ଆଶୀବିଷ ପରାୟେ ଶରକୁ ପୂରାଇ
କହିଲେ ପୃଥୁ କ୍ରୋଧେ ମହୀକି ଅନାଇଁ ।
ଆହେ ପୃଥ୍ୱୀ ତୁମ୍ଭେ ପ୍ରାଣୀଙ୍କି ଦିଅ କ୍ଷୀର
ନୋହିଲେ ସୁଖ ହୋଇ ନାହିଁଟି ମୋହର ।
ପୃଥ୍ୱୀ ବୋଇଲେ ଆହେ ପୃଥୁ ମୋତେ ଝିଅ
କରି ପ୍ରାଣୀମାନଙ୍କୁ ମୋଠୁଁ କ୍ଷୀର ଦିଅ ।
ପୃଥୁ ସେ କଥାକୁ କରିଣ ଅଙ୍ଗୀକାର
ଝିଅ କଲେ ପୃଥ୍ୱୀଦେବୀଙ୍କି ତାହାଙ୍କର ।
ପୃଥ୍ୱୀ ତ ଗାଈରୂପେ ଝିଅ ହୋଇଥଲେ
ଆଗ ବନସ୍ପତି ଦୁହିଁଟି ବାହାରିଲେ ।
ସବୁ ବନସ୍ପତିଏ କରିଣ ବିଚାର
ଶାଳଗଛ ବାଛୁରୀ କଲେ ତାହାଙ୍କର ।
ପ୍ଲକ୍ଷଗଛ ଗଉଡ଼ ଉଦୁମ୍ବର ପତ୍ର
କରି ଦୁଧ ଦୁହିଁଲେ କଅଁଳିଆ ପତ୍ର ।
ପର୍ବତ ମେରୁକୁ ଗଉଡ଼ କରି ସ୍ଥାପି
ଉଦୟଗିରିକି କରିଲେ ବତ୍ସାରୂପୀ ।
ପଥରପାତ୍ରେ ରତ୍ନ ଅଉଷଧି ଦୁଧ
କରି ଦୁହିଁ ପର୍ବତମାନେ ହେଲେ ବୋଧ ।
ଦେବେ ସୂର୍ଯ୍ୟଦେବଙ୍କୁ ବାଛୁରୀଟେ କଲେ
ହାରିଦ୍‌ମୟ ପାତ୍ର ଗୋଟିଏ ଭିଆଇଲେ ।
ଇନ୍ଦ୍ର ଦେବତାଙ୍କୁଟି କରିଣ ଗୋପାଳ
ଅମୃତକୁ ଦୁହିଁଲେ କରିଣ ସେ ବଳ ।
ଅସୁରେ କରି ବିରୋଚନଙ୍କୁ ବାଛୁରୀ
ଗଉଡ଼ କଲେ ଦ୍ୱିମୂର୍ଦ୍ଧାଙ୍କୁ ବାଛିକରି ।
ଆମ୍ରପାତ୍ରେ ମାୟାକୁ ଦୁହିଁଲେ କରି ଦୁଧ
ତାକୁ ପାଇ ସବୁ ଅସୁରେ ହେଲେ ବୋଧ ।
ନରେ ସ୍ୱୟମ୍ଭୁବ ମନୁଙ୍କୁ ବତ୍ସା କଲେ
ତାହା ଦେଖି ଗଉଡ଼ ପୃଥୁରାଜା ହେଲେ ।
ପୃଥୁ ତଳ ପାତ୍ରରେ ଦୁହିଁଲେ ସେ ଶସ୍ୟ
ତାହା ଖାଇ ସମସ୍ତେ ହୋଇଲେ ସନ୍ତୋଷ ।

ଉରଗେ ରାଗ ଧରି ବାଛୁରୀ ତକ୍ଷକଙ୍କୁ
କରି କଲେ ଗଉଡ଼ ସେ ଧୃତରାଷ୍ଟ୍ରଙ୍କୁ ।
ଲାଉପାତ୍ରେ କେବଳ ବିଷକୁ ଦୁହିଁଲେ
ନିଶ ଧରି ସର୍ବେ ଯେ ଯାହା ଘରେ ଗଲେ ।
ସାତ ଋଷି ଚନ୍ଦ୍ରଦେବଙ୍କୁ ବତ୍ସା କଲେ
ବୃହସ୍ପତି ଋଷିଟି ଗଉଡ଼ ହୋଇଲେ ।
ଛନ୍ଦପାତ୍ରେ ବେଦଙ୍କୁ ଦୁହନ୍ତେ କରି ଦୁଧ
ହୋଇଲା ଜାଣ ତାଙ୍କ ମନ ତହିଁ ବୋଧ ।
ପୁଣ୍ୟଜନେ ଶିବଙ୍କୁ କରିଣ ବାଛୁରୀ
କୁବେରଙ୍କୁ କରିଲେ ଗଉଡ଼ ବିଚାରି ।
ଆମ୍ରପାତ୍ରରେ ଅନ୍ତର୍ଦ୍ଧାନକୁ ଦୁହିଁଲେ
ପୂର୍ଣ୍ଣକାମ ହୋଇଣ କରି ସେ ରହିଲେ ।
ଗନ୍ଧର୍ବ ଅପସରା ଏକଥା ହୋଇଲେ
ପୃଥିବୀକି ଦୁହିଁବା ମନେ ବିଚାରିଲେ ।
ବାଛୁରୀ କରି ଚିତ୍ରରଥକୁ ବିଶ୍ୱରୁଚି
ଗନ୍ଧର୍ବଙ୍କୁ ଯେ କଲେ ଗଉଡ଼କୁ ପାଞ୍ଚି ।
ପଦ୍ମପାତ୍ରରେ ଯେତେ ଦୁହିଁଲେ ସୁଗନ୍ଧି
ଆଜି ସେ ସୁବାସେ ହେଉଛି ନାକ ବୁନ୍ଧି ।
ପିତୃମାନେ ଯମକୁ କଲେ ବାଛି ବସ୍ତ
ଗଉଡ଼ ହେଲେ ମୃତ୍ୟୁ ହୃଦ କରି ସ୍ୱଚ୍ଛ ।
ରୂପାପାତ୍ରରେ ପିତୃଭୋଜ୍ୟକୁ ଦୁହିଁଲେ
ଯେ ଯାହାର ସ୍ଥାନକୁ ସୁଖରେ ସେ ଗଲେ ।
ଏହିରୂପେ ଯେ ଯାହା ବୃତ୍ତିକି ଅନାଇଁ
ଅନୁ ରୂପରେ ଦୁଧ ଦୁହିଁଲେ ସେ ଯାଇ ।
ଏଥୁ ଅନ୍ତରେ ପୃଥୁ ନାନାରୂପେ ଯାଗ
କରି ଅରଜିଲେ ମହୀରେ ପୂର୍ଣ୍ଣଯାଗ ।
ଛଅଷଠୀ ସହସ୍ର ସ୍ୱର୍ଣ୍ଣେ ହାତୀ କଲେ
ରତ୍ନରେ ମଣ୍ଡି ତାଙ୍କୁ ଦ୍ୱିଜେ ଦାନ ଦେଲେ ।
ସ୍ୱର୍ଣ୍ଣ ମଣି ରତ୍ନେ ଭୂଷିତ କରି ମହୀ
ଦ୍ୱିଜଙ୍କୁ ମଧ ତାହା ଦେଲେ ପ୍ରୀତି ବହି ।
ଯେଉଁ ପୃଥୁ ନାମରେ ପୃଥିବୀ ହୋଇଛି
ସେ ପୃଥୁଙ୍କ ପାଞ୍ଜିତ ଯମ ଦେଲା ଗୋଛି ।
ତୁମ୍ଭର ପୁତ୍ର ମରିବାରୁ କେତେ ଶୋକ
କରୁଛ ହେ ରାଜନ ଛାଡ଼ିଣ ବିବେକ ।
ଭୃଗୁ ବଂଶରେ ଯମଦଗ୍ନି ଉପୁଜିଲେ
ତାହାଙ୍କ ସୁତ ପର୍ଶୁରାମ ବୋଲାଇଲେ ।
ମହୀ ଜିଣି ମହୀକି ନ କଲେ ସେ ଭୋଗ
ନୋହିଲା ଯେଣୁ ତାଙ୍କ ତହିଁ ଅନୁରାଗ ।
କାର୍ତ୍ତବୀର୍ଯ୍ୟ ମାରନ୍ତେ ତାଙ୍କର ବାପାଙ୍କୁ
ମାଇଲେ କାର୍ତ୍ତବୀର୍ଯ୍ୟ ତୁଲେ କ୍ଷତ୍ରିୟଙ୍କୁ ।

ଚଉଷଠୀ ସହସ୍ର ଅଯୁତ କ୍ଷତ୍ରିୟ
ଯୁଦ୍ଧରେଟିକି ରାମ କରିଦେଲେ କ୍ଷୟ ।
ମୂଷଳ ଗଦା ଶକ୍ତି ଖଡ଼୍ଗ ପରଶୁ
ପ୍ରହାରିଣ କ୍ଷତ୍ରିୟଙ୍କର ନେଲେ ଅଂଶୁ ।
ନ ସହି ଯୁଦ୍ଧ ପର୍ଶୁରାମ ଦ୍ୱିଜଙ୍କର
ପଶିଲେ ଯେ ଶରଣ ନ ହେଲେ ସଂହାର ।
କାଶ୍ମୀର ଶିବି କୁନ୍ତି ମାଳବ ଅଙ୍ଗ ବଙ୍ଗ
ଦରଦ ତାମ୍ରଲିପ୍ତ ବିଦେହ କଳିଙ୍ଗ ।
ମାର୍ତ୍ତିକାମତ ବୀତିହୋତ୍ର ତ୍ରଗରତ
ଏ ଦେଶଙ୍କେ ଥିବା ନୃପତି ନୃପସୁତ -
ମାନଙ୍କୁ ତ ଯେ ପର୍ଶୁରାମ ବୀରମଣି
ଲକ୍ଷ ଲକ୍ଷ ସହସ୍ର ସହସ୍ର ଦେଲେ ହାଣି ।
ସେ ରକ୍ତ-ଜଳରେଟି ପଞ୍ଚସରୋବର
ପୂର୍ଣ୍ଣ କରିଲେ ରାମ ଦ୍ୱିଜଙ୍କ ଶେଖର ।
ଏ ବାହାରେ ଅଠର ଦ୍ୱୀପୁଁ ରତ୍ନ ନେଲେ
ସେ ବଳେ ଶତ ଶତ ଯାଗ ବସି କଲେ ।
ଆଠନଳ ଉନ୍ନତ ସ୍ୱର୍ଣ୍ଣ ବେଦୀଟାଏ
ରତ୍ନରେ ଯୁତ କରି କଲେ କ୍ଷତ୍ରିରାୟେ ।
ସେ ବେଦୀ ତୁଲେ ବନ ପରବତ ମହୀ
ଦାନ ଦେଲେ କଶ୍ୟପଋଷିଙ୍କି ସେ ରାଇ ।
ଲକ୍ଷେ ହାତୀ ସୁନା ଭୂଷଣ କରାଇଲେ
ଜଶ୍ୟପଙ୍କ ପ୍ରୀତି ନିମନ୍ତେ ତାହା ଦେଲେ ।
କଶ୍ୟପ ସତଦ୍ୱୀପ ପୃଥ୍ୱୀ ପ୍ରତିଗ୍ରହ
କରି ପର୍ଶୁରାମେ କହିଲେ ଛାଡ଼ି ସ୍ନେହ ।
ପୃଥ୍ୱୀଯାକ ତ ମୋତେ ଦାନ ଦେବା ହେଲେ
ଏ ପୃଥ୍ୱୀରେ ନ ରହ ବୋଲୁଛି ମୁଁ ଭଲେ ।
ପର୍ଶୁରାମ ଏହା ଶୁଣିଣ ଚଳେ ସହି
ସମୁଦ୍ରଙ୍କ ତୀରେ ପ୍ରବେଶ ହେଲେ ଯାଇ ।
ସେଠାରୁ ଯିବାକୁ ତ ବାଟ ନ ଦେଖିଲେ
ସିନ୍ଧୁକୁ କୋପେ ରୋପ ଅନେକ ବିନ୍ଧିଲେ ।
ସେ ସକାଶୁଁ ସମୁଦ୍ର ବାଟ ଛାଡ଼ିଦେଲେ
ସେ ପଥ ଦେଇ ପର୍ଶୁରାମ ଦ୍ୱିଜ ଗଲେ ।
ସମୁଦ୍ରଙ୍କ ଭିତରେ ମହେନ୍ଦ୍ର ପର୍ବତ
ଥିଲେ ତହିଁ ରହିଲେ ଯମଦଗ୍ନି ସୁତ ।
ଏହି ରୂପରେ ଶତଗୁଣର ଆକାର
ପରଶୁରାମ ଦ୍ୱିଜକୁଳଙ୍କ ଶେଖର ।
ମରିଛନ୍ତି ସେହି ତ ବୋଲି ଶୁଣିଥାଇଁ
ପିଲାଟାଏ ମଲା କାନ୍ଦୁଛ କାହିଁପାଇଁ ।
ତୁମ୍ଭଙ୍କୁ ପ୍ରତି ଦଶଗୁଣେ ବଡ଼ ରାଜା -
ମାନେ ମରି ତ ପାଇଛନ୍ତି ସ୍ୱର୍ଗେ ପୂଜା ।

ତୁମ୍ଭ ମଧ୍ୟ ରାଜନ ପାଇବ ମରଣ
ବୃଥା ମଥା ପୋତି ନ କର ହେ କାରୁଣ୍ୟ ।
ଷୋଡ଼ଶ ରାଜକୀୟ ନାରଦ ମୁଖୁଁ ଶୁଣି
ତୁନି ହେଲେ ସୃଞ୍ଜୟ ନୃପକୁଳମଣି ।
ତୁନି ହେବା ଦେଖି ନାରଦ ମହରଷି
ପୁଣି ନୃପତିଙ୍କି କହିଲେ ହସି ହସି ।
ଷୋଡ଼ଶ ରାଜକୀୟ କହିଲି ତୁମ୍ଭଙ୍କୁ
ନ ଆଣିଲ କ ଆହେ ତୁମ୍ଭେ ତା ମନକୁ ।
ସୃଞ୍ଜୟ ବୋଇଲେ ଷୋଡ଼ଶ ରାଜକୀୟ
ଶୁଣି ମୋହର ପୁତ୍ରଶୋକ ହେଲା କ୍ଷୟ ।
ମୋ ଦେହ ପାପ -ତୃଣରାଶିକି ଷୋଡ଼ଶ
ରାଜକୀୟ ଅନଳ ନାରଦ କଲା ଧ୍ୱଂସ ।
ଏବେ କେଉଁ କଥା କହିବି ହେ ଗୋସାଇଁ
ତା ମୋତେ ହୃଦୟ ଫଟାଇ ଦିଅ କହି ।
ନାରଦ ବୋଇଲେ ହେ ଯା ବାଞ୍ଛା କରିଛ
ମାଗ ତା ଦେବି ମୋର କଥା ନୋହି ମିଛ ।
ସୃଞ୍ଜୟ ବୋଇଲେ ପ୍ରସନ୍ନ ମୋତେ ଋଷି
ଦେବାରୁ ତୁମ୍ଭେ ଏବେ ହୋଇଲି ମୁଁ ତୋଷି ।
ଏଥିରୁ ଆଉ ମୋ ଦୁର୍ଲ୍ଲଭ ହୋଇ କଥା
ଥିଲେ ସିନା ମାଗନ୍ତି ଯିବାରୁ ହୃଦବ୍ୟଥା
ନାରଦ ବୋଇଲେ ଦସ୍ୟୁରେ ହତ ହୋଇ
ତୁମ୍ଭ ପୁତ୍ରେ ନରକେ ପଡ଼ିଛନ୍ତି ଯାଇ ।
ତାହାଙ୍କୁ ଜୀଆଇଁ ଆଣିବି ନରପାଳ
ଦେଖିବ ତୁମ୍ଭେ ମୋର ତପସ୍ୟାର ବଳ ।
ନାରଦ ମହର୍ଷି ବୋଲନ୍ତେ ଏହିରୂପେ
ସୁବର୍ଣ୍ଣଷ୍ଠୀବ ଦେଖାଦେଲେ ପୂର୍ବରୂପେ ।
ପୁଅକୁ ଦେଖି ନେତ୍ରୁ ପୋଛିଦେଇ ପାଣି
ଘରକୁ ଘେନିଗଲେ ସୃଞ୍ଜୟ ନୃପମଣି ।
ନାରଦ ମହାଋଷି ମେଲାଣି ହୋଇଲେ
ସୃଞ୍ଜୟକୁ କଲ୍ୟାଣ କରି ସ୍ୱର୍ଗେ ଗଲେ ।
କେତେଦିନ ଉତ୍ତାରୁ ସୃଞ୍ଜୟ ନୃପବର
ପୁତ୍ରକୁ ଘେନି କଲେ ସେ ଯାଗ ଅପାର ।
ଅଯଜ୍ୱା ଅନପତ୍ୟ ଦସ୍ୟୁଙ୍କରେ ହତ
ହେବାରୁଟି ଜୀଇଁଲେ ସୃଞ୍ଜୟଙ୍କ ସୁତ ।
ଯଜ୍ୱାଶୁର କୃତାସ୍ତ୍ର ଭାରିଯା ସଙ୍ଗତି
ପାଇଛନ୍ତି ତୁମ୍ଭର ଅର୍ଜ୍ଜୁନ ସନ୍ତତି ।
ପୁଣି ମତ୍ତହସ୍ତୀ ପରାୟେ କୁରୁସେନା -
ନଳିନକୁ ଦଳିଲେ ହୋଇ କୋପମନା ।
ମହାରଥିମାନଙ୍କ ଗରବ କରି ଚ୍ୟୁତ
ହେଲେ ମହାରଥିମାନଙ୍କରେ ସେ ମୃତ ।

ଏହି ସକାଶରୁଟି ତୁମ୍ଭ ପୁତ୍ରରାଟି
ବସିଛନ୍ତି ସ୍ୱର୍ଗରେ ଧରିଣ ମୁଣ୍ଡୁଟି ।
ବ୍ରହ୍ମଚର୍ଯ୍ୟ ବ୍ରତ କରିଣ ଆଗେ ଯାହା
ପାଇଛନ୍ତି ଲୋକେ ପାଇଲେ ସେହୁ ତାହା ।
ବିଦ୍ୟାବନ୍ତ ଲୋକେ ସ୍ୱରଗ ପାଇବାକୁ
ତପ କରୁଅଛନ୍ତି ଶୁଖାଇ ଦେହକୁ ।
ସ୍ୱର୍ଗ ଲୋକରେ ମର୍ତ୍ତ୍ୟ ପାଇବାକୁ ତପ
କରିଛନ୍ତି କାହିଁ ହେ ଶୁଣିଛ କି ନୃପ ।
ତୁମ୍ଭ ପୁଅ ମରି ତ ସ୍ୱର୍ଗେ ବସିଛନ୍ତି
ତୁମ୍ଭଠାରେ ତାଙ୍କର ହେବ କିମ୍ପା ପ୍ରୀତି ।
ମରିବାକୁ ଲୋକକୁ ଆହେ ନରପତି
ଶୋକ ନ କରିବ ଋଷିଏ କହିଛନ୍ତି ।
ଶୋକ କଲେ କେବଳ ଦୁଃଖ ହୁଏ ଜାତ
ଜୀଇଁ ତ ନ ଆସେ ଯେ ହୋଇଯାଏ ମୃତ ।
ଏହି ସକାଶରୁ ଶୋକକୁ ଛାଡ଼ିଦେଇ
ପାଇବ ଶ୍ରେୟ ଯୁଦ୍ଧ କର ରାୟେ ଯାଇ ।
ମୃତ୍ୟୁ ଦେବଙ୍କର ତପସ୍ୟା ଜନମକୁ
କହିଲି ତ ରାଜନ ବତାଇ ତୁମ୍ଭଙ୍କୁ ।
ଏହା ବାହାରେ ସବୁ ପ୍ରାଣିଙ୍କି ସମାନ -
ଭାବେ ମୃତ୍ୟୁ ନେବାର ଶୁଣିଲ ରାଜନ ।
ବଡ଼ ବଡ଼ ନୃପତିମାନଙ୍କର କଥା
କହିଲା ତା ଘେନି ଛାଡ଼ି ହେ ହୃଦବ୍ୟଥା ।
ଏବେ ମୁଁ ଯାଉଅଛି ମୋର ଆଶ୍ରମକୁ
ଅରଜ ରାଜ୍ୟ ଯୁଦ୍ଧେ କରି ବିକ୍ରମକୁ ।
ଆହେ ଧୃତରାଷ୍ଟ୍ର ଏରୂପେ ବ୍ୟାସଋଷି
ଧର୍ମ ଜାଣି ଧର୍ମରାଜାଙ୍କ ଆଗେ ଭାଷି ।
ସେହିଠାରେ ଦେହକୁ ଲୁଚାଇ ସେ ଦେଲେ
ବିଗତ ଶୋକ ଯୁଧିଷ୍ଠିର ନୃପ ହେଲେ ।
ଅର୍ଜ୍ଜୁନଙ୍କୁ କିସ କହିବି ବୋଲି ଡରି
ଭାଳିଲେ ମନେ ଯୁଧିଷ୍ଠିର ଦଣ୍ଡଧାରୀ ।
ଅର୍ଜ୍ଜୁନ ସଂଶପ୍ତକମାନଙ୍କୁ ଶାୟକ -
ମୁନେ ମାରି ତାହାଙ୍କୁ ଦେଖାଇଲେ ନାକ ।
ସୂର୍ଯ୍ୟ ଅସ୍ତ ହେବାରୁ ରଥ ଲେଉଟାଇ
ବାହାରିଲେ ବସାକୁ ମନ୍ଦ ମନ୍ଦ ହୋଇ ।
ଅଦଭୁତେ ଅର୍ଜ୍ଜୁନ ସ୍ୱର ଗଦ ଗଦ
ହୋଇ ବାହାରନ୍ତେ ସେ ହୋଇ ଅପ୍ରମାଦ ।
କୃଷ୍ଣଙ୍କୁ କହିଲେ ହେ କିପାଁ ମୋର ସ୍ୱର
ଗଦଗଦେ ବାହାରୁଅଛି ଚକ୍ରଧର ।
ସବୁ ଅଙ୍ଗଯାକ ମୋହର ଡେଉଁଅଛି
ହୃଦୟେ ମହାଭୟ ହେଉଛି ଉପୁଜି ।

ଦେଖୁ ଦେଖୁ ଦେହ ଯାଉଛି ହୋଇ କ୍ଷୀଣ
ଉତପାତ କରୁଛି ମୋ ନେତ୍ର ଦର୍ଶନ ।
ଏହି ସକାଶରୁ କହୁଛି କୃଷ୍ଣ ମୁହିଁ
ଯୁଧିଷ୍ଠିର ରାଜା ଥାଆନ୍ତୁ ଭଲ ହୋଇ ।
ଶ୍ରୀକୃଷ୍ଣ ବୋଇଲେ ହେ ଯୁଧିଷ୍ଠିରଙ୍କର
ମଙ୍ଗଳ ହୋଇଅଛି ବୋଲି ମନେ କର ।
ଆଉ କେଉଁ ଅନିଷ୍ଟ ପଡ଼ିଛି ତୁମ୍ଭଙ୍କୁ
ତୁମ୍ଭ କଥା ଶୁଣି ପାଉଛି ମୋ ମନକୁ ।
ଏରୂପେ କଥାବାର୍ତ୍ତା କୃଷ୍ଣାର୍ଜୁନ ହୋଇ
ହୁଅନ୍ତେ ସନ୍ଧ୍ୟା ବାଟେ ସନ୍ଧ୍ୟା କଲେ ରହି ।
ବସା ନିକଟରେ ପୁଣି ସେ ଦୁଇ ବୀରେ
ରଥ ଚଢ଼ି ପରବେଶ ହୋଇଲେ ଖରେ ।
ସେହିଠାରେ ଅର୍ଜୁନ କହିଲେ କୃଷ୍ଣଙ୍କୁ
ଶୁଣିଲ ତ ନାଇଁ ସଇନ ଚହଳକୁ ।
ବୀଣାରବ ମୃଦଙ୍ଗ ଉପାଙ୍ଗ ଆଦି ବାଦ୍ୟ
ବଜାଉ ତ ନାହାନ୍ତି ହୋଇଣ ପ୍ରମୋଦ ।
ବନ୍ଦିଏ ଯୁଧିଷ୍ଠିର ରାଜାଙ୍କର କୀର୍ତ୍ତି
ବନ୍ଦି ମୁଖରେ କରୁନାହାନ୍ତି ତ ସ୍ତୁତି ।
ଯୋଦ୍ଧାମାନେ ତ ମୋତେ ଅନାଇଣ ମୁଣ୍ଡ
ପୋତୁଛନ୍ତି ଆଜି ବା ପଡ଼ିଛି କି ଦଣ୍ଡ ।
ଏ ସକାଶୁଁ ମୁହିଁ ପୁଚ୍ଛୁଛି ଭାଇମାନେ
ଭଲେ ଛନ୍ତିଟିକି ମୋହର ସନ୍ନିଧାନେ ।
ସ୍ୱଜନମାନଙ୍କର ଦେଖିଣ ଆକୁଳ
ମୋ ହୃଦ ମଧ କୃଷ୍ଣ ହେଉଛି ବିକଳ ।
ବିରାଟ ଦ୍ରୁପଦାଦି ରାଜାଙ୍କ ସୁଲଭ
ହୋଇଥିଲେ କୃଷ୍ଣ ହେ ମୋର ସବୁ ଲାଭ ।
ସଙ୍ଗତେ ଅଭିମନ୍ୟୁ ଘେନି ଭାଇରାଜି
ମୋତେ ତ ନେଇ ନ ଆସିଲେ କିପାଁ ଆଜି ।
ଏରୂପେ ଦୁଇ କୃଷ୍ଣ କଥାବାର୍ତ୍ତା ହେଲେ
ବସାମଧେ ଯାଇଣ ପ୍ରବେଶ ହୋଇଲେ ।
ଦେଖିଲେ ଚାରିଭାଇ ହାରି ଦେହ ଜ୍ଞାନ
ପଡ଼ିଛନ୍ତି ଅଶ୍ରୁରେ ମୁଖ କରି ପୂର୍ଣ୍ଣ ।
ଭାଇ ପୁତ୍ର ସେ ବନ୍ଧୁ ବାନ୍ଧବଙ୍କୁ ଦେଖି
ନ ଦେଖି ଆର୍ଜୁନିକି ପାର୍ଥ ହୋଇ ଦୁଃଖୀ ।
କହିଲେ ଆଜ ମୁଁ ଶୁଣିଛି ଚକ୍ରବ୍ୟୂହ
ଦ୍ରୋଣ କରିଥିଲେ ଯୁଦ୍ଧରେ ବହି କୋହ ।
ସେ ବ୍ୟୂହ ଭେଦିବାର ଜାଣେ ମୋ କୁମର
ତା ବିନା ଆନକୁଟି ନୁହଇ ଗୋଚର ।
ତାହାକୁ ତ ତୁମ୍ଭେ ହେ ବ୍ୟୂହ ଭେଦିବାକୁ
ବରଗି ନାହିଁ ଟିକି ପୁଚ୍ଛୁଛି ତୁମ୍ଭଙ୍କୁ ।

ବ୍ୟୂହ ଭେଦିବାକୁ ବରଗିଥିବ ଯେବେ
ଜାଣିଛି ଅଭିମନ୍ୟୁ ମରିଥିବ ତେବେ ।
ଲୋହିତାକ୍ଷ ମହାବାହୁ ଯେ ସୁକୁମାର
କୃଷ୍ଣ ସମ ବଳ ତ ପ୍ରିୟ ପିତୃଙ୍କର ।
ସିଂହପରାକ୍ରମ ମହତ ତ ଧନୁର୍ଦ୍ଧର
ଅଭିମନ୍ୟୁ ଯୁଦ୍ଧେ କି ହୋଇଲେ ସଂହାର ।
ଦ୍ରୁପଦାତ୍ମଜା କୁନ୍ତୀ ସୁଭଦ୍ରା ଚକ୍ରଧର
ଅଭିମନ୍ୟୁ ପ୍ରିୟ ତ ଅଟେ ଏହାଙ୍କର ।
ତାହାଙ୍କୁ କେଉଁ ଲୋକ କାଳେ ହୋଇ ବାଇ
ମାଇଲା ହୃଦୟରୁ ଭୟ ଛାଡ଼ିଦେଇ ।
କୃଷ୍ଣଙ୍କର ପ୍ରିୟଟି ବୋହରେ ଲାଳିତ
ହୋଇଣ ବଢ଼ିଥିଲା ଅଭିମନ୍ୟୁ ସୁତ ।
କୁଞ୍ଚିତ ମୃଦୁଦେଶ କୋମଳ ନୟନ
ମତ୍ତହସ୍ତୀ ପରାୟେ ବିକ୍ରମ ଗମନ ।
ଭେଣ୍ଡୀଆ ଶାଳଗଛ ପରାୟେ ଉନ୍ନତ
ଇଷିତ ହାସ୍ୟଭାଷୀ ଗୁରୁବାକ୍ୟେ ରତ ।
ଅବାଳକ କର୍ମା ଯେ ମାତ୍ସର୍ଯ୍ୟରହିତ
ପ୍ରିୟବାକ୍ୟ ବକ୍ତା ତ ମହୋତ୍ସାହବନ୍ତ ।
କୃତାସ୍ତ୍ର ମହାବୀର୍ଯ୍ୟ ଭକ୍ତି ଅନୁସାରୀ
କୃତଜ୍ଞ ଅନୁବୃତ୍ତି ଶତ୍ରୁ ଦୁଃଖକାରୀ ।
ପିତୃଜାୟାକାଂକ୍ଷୀ ଯେ ଅପୂର୍ବ ପ୍ରହର୍ତ୍ତା
ଜ୍ଞାନବନ୍ତ ସ୍ୱଜନଙ୍କର ହିତକର୍ତ୍ତା ।
ଯୁଦ୍ଧରେ ଅସମ୍ଭ୍ରାନ୍ତ ପ୍ରଦ୍ୟୁମ୍ନ ପ୍ରିୟଶିଷ୍ୟ
ମହାରଥ ସୁନ୍ଦର ଲଲାଟ ନାସା ଆସ୍ୟ ।
ଯେଉଁ ଅଭିମନ୍ୟୁ ସେ ଯେବେ ହେଲା ହତ
ନ ଦେଖିଲେ ତାହାକୁ ଦେଖିବି କୃତାନ୍ତ ।
ମୋ ଗୁଣ ଚାରିଭାଗୁଁ ତିନିଭାଗ ଗୁଣ
ମାନଙ୍କରେ ହୋଇଥିଲା ସେହୁ ନିପୁଣ ।
ଅଭିମନ୍ୟୁଙ୍କର ଯେ ବୀଣାଜୀଣା ବାଣୀ
ନ ଶୁଣିଲେ ମୁହିଁ ମରିବି ଏହିକ୍ଷଣି ।
ବେଦ ଗର୍ଭ ପରି ତ ଅଟେ ମୋ ନନ୍ଦନ
ତା ରୂପ ନ ଦେଖିଲେ ଛାଡ଼ିବି ଜୀବନ ।
ଖଟ ଶେଯ ଛାଡ଼ିଣ ଭୂମିତଳେ ଶୋଇ -
ଥିବା ଏହା ଶୁଣିଲି ଆହା ବାବୁ ଭାଇ ।
ଶୋଇବାକାଳେ ତୋତେ ସେବନ୍ତି ସ୍ତିରୀଏ
ଏବେ ସେବୁଥିବେ ବେଢ଼ିଣ ବିଲୁଆଏ ।
ମାଗଧସୁତ ଯାକୁ ଉଠାନ୍ତି କରି ସ୍ତବ
ତାଙ୍କୁ ଏବେ ଶ୍ୱାନ ବୋବାଇ ଉଠାଇବ ।
ଯେଉଁ ବଦନକୁଟି ଟେକୁଥାନ୍ତି ଛତି
ସେ ବଦନରେ ଧୂଳି ପଡ଼ିଥିବ ଅତି ।

ଆଜି ଯେ ସଞ୍ଜୀବନୀ ପତିଙ୍କର ସଭା
ତାକୁ ପାଇଣ ହୋଇଥିବ ମନଲୋଭା ।
ଏହିରୂପେ ଅଭିମନ୍ୟୁଙ୍କ ଗୁଣ ବନ୍ଦି
ବିକଳ ହେଲେ ଅରଜୁନ କାନ୍ଦି କାନ୍ଦି ।
ଯୁଧିଷ୍ଠିର ରାଜାଙ୍କୁ ପୁଛିଲେ ମୋର ସୁତ
ମାରିଣ ଶତ୍ରୁ କୁଳ ହେଲା ଟିକି ହତ ।
ଦ୍ରୋଣ ଦ୍ରୌଣି କୃପ ଯେ କର୍ଣ୍ଣଙ୍କର ଶରେ
ପୀଡ଼ା ପାଇଥିବ ଯେବେ ସେହୁ ସମରେ ।
ତେବେ ମୋତେ ସୁମରିଥିବ ମୋର ସୁତ
କି କଲା ଆଣି ମୋତେ ବିଧାତା ଦୈବତ ।
ନାସ୍ତିକ କୁରୁଏ ତ ଗୋଟି ହୋଇଥିଲେ
ଏକା ଦେଖି ମୋହର ପିଲାକୁ ମାଇଲେ ।
ମୁଁ ଥିଲେ ଏଡ଼େ କଥା ପାରନ୍ତେ କି କରି
ଦିଅନ୍ତି କୁରୁକୁଳଯାକକୁ ସଂହାରି ।
ସଂଶପ୍ତକମାନଙ୍କୁ କହିବାର ରଣ
ବିଚାରିଲେ ଏବେ ହୋଇଲା ଅକାରଣ ।
କୃଷ୍ଣଙ୍କର ଭଣଜା ମୋର ବୀର୍ଯ୍ୟୁଁ ଜାତ
ହୋଇଥିଲା ମୋହର ଅଭିମନ୍ୟୁ ସୁତ ।
ସେ କି ପାଇଁ ମୋତେ ସୁମରିଥିବ ଚିତ୍ତେ
ବୋଲୁଅଛି ପୁତ୍ରଶୋକେ ମୁଁ ମୋର ମତେ ।
ବଜ୍ରରୁ ଆଣ୍ଟ ମୋର ହୋଇଲା ହୃଦୟ
ରହିଛି ହେଲାଠାରେ ଅଭିମନ୍ୟୁ କ୍ଷୟ ।
ବାଳକକୁ ଏକାକୀ ଦେଖିକରି ବେଢ଼ି
ମାଇଲେ ଯା କୁରୁଏ ଅଧିକ ତାକୁ ପ୍ରୌଢ଼ି ।
ଭାରତଯୁଦ୍ଧେ ଶତ୍ରୁକୁଳ କରି କ୍ଷୟ
ନିତି ମୋତେ ପାଛୋଟି ନିଏ ମୋ ତନୟ ।
ଆଜି ବସାଘରେ ପଶିଲେ ହେଲେ ମୁହିଁ
ମୋଳତେ ତ ଅଭିମନ୍ୟୁ ଦେଖା ଦେଉ ନାହିଁ ।
ଏ ସକାଶୁ ଜାଣୁଅଛି ମୋର କୁମର
ମରିଥିବ କୁରୁଙ୍କୁ କରିଣ ସମର ।
ଆକାଶରୁ ତପନ ପଡ଼ିଲା ପରାୟେ
ଦିଶୁଥିବ ରଣଭୂମିରେ ତାର କାୟେ ।
ସୁଭଦ୍ରାଙ୍କୁ ଏବେ କି କହିବି ମୁଁ ଯାଇ
ମଲେ ପୁଅ ଶୁଣିଲେ ଜୀଇବେ ସେ ନାହିଁ ।
ଦ୍ରୌପଦୀଙ୍କି ଆଉ କହିବି ମୁଁ କିସ ,
ହେଲା ତ ବୀର ପ୍ରିୟପୁତ୍ର ମୋର ନାଶ ।
ଉତ୍ତରାର ପତିହତରେ ହୃଦ କ୍ଷୟ
ହାଣ୍ଡି ଉପୁଜିବନି ମୋହର ସନ୍ଦେହ ।
ଏ ରୂପେ ଶୋକାକୁଳ ହୋଇ ଅରଜୁନ
କହିଲେ ଚାହିଁ କରି ପୂତନାସୂଦନ ।

ଅଭିମନ୍ୟୁ ମରିବା ସମୟେ କୁରୁଙ୍କ
ସିଂହନାଦ ଶୁଣି ପାଇଥିଲି ଆତଙ୍କ ।
ଏହା ବାହାରେ ମଧ ଯୁଯୁତ୍ସୁ କୋପରେ
ଉଚ୍ଚେ କହିଥିଲେ ବଚନ ଏରୂପରେ ।
ନ ପାରି ଅର୍ଜୁନଙ୍କୁ ମାରିଣ ପିଲାକୁ
ଗର୍ଜୁଅଛ କିପାଇଁ ଲଭି ହରଷକୁ ।
ବିରସକାଳ ବିଚାରିଲେ ଏ ତୁମ୍ଭର
ନାଶ ଯିବ ପାଇଲେ ଅର୍ଜୁନ ସମର ।
ପାପକରମ କରି ହେଉଛଟି ଟାଣି
କିରୀଟୀ ଜାଣିଲେଟି ପକାଇବେ ହାଣି ।
ଆହେ କୃଷ୍ଣ ତୁମ୍ଭେ ତା ମଧ ଶୁଣିଥିଲ
ମୋର ସାହା ହୋଇ କାହିଁକି ନ କହିଲ ।
ଯେବେ ମୋତେ ତୁମ୍ଭେ ବତାଇ କହିଥାନ୍ତ
କୁରୁ ଏ ଥାଆନ୍ତେ କି ଘେନିଣ ଜୀବିତ ।
କୃଷ୍ଣ ବୋଇଲେ ଆହେ ଯୁଯୁତ୍ସୁଙ୍କ ବାଣୀ
କିଛି ମୋହର କର୍ଣ୍ଣ ବେନି ନାହିଁ ଶୁଣି ।
ଶୁଣିଥିଲେ ତୁମ୍ଭଙ୍କୁ କହି କି ନ ଥାନ୍ତି
ଛାଡ଼ିଦିଅ ହେ ହୃଦୟରୁ ଶୋକମତି ।
ଯୁଦ୍ଧରେ ମରିବାର ଶୂରଙ୍କର ଧର୍ମ
ସୁରପୁରେ ବିକାଶ ହୁଅଇ ତା କର୍ମ ।
ଅଭିମନ୍ୟୁ ଯେ ଶୂରପଣ କରି ମରି
ବସିଛନ୍ତି ସ୍ୱର୍ଗରେ ପୁଣ୍ୟଲୋକ ଧରି ।
ସୁରପୁର ସ୍ତିରୀ ଭୋଗକୁ ମନେ ଧରି
ମରନ୍ତିଟି ଯୋଦ୍ଧାଏ ଶୂରପଣ କରି ।
ତୁମ୍ଭ ସୁତ ତ ଅତିଶୂର ବଳବନ୍ତ
ନ କରି ଶୋକ ଯୁଦ୍ଧେ ହୋଇବାରୁ ହତ ।
ବ୍ରହ୍ମଚର୍ଯ୍ୟ ତପରେ ପାଆନ୍ତି ଯା ନରେ
ତା ପାଆନ୍ତି ଯୁଦ୍ଧରେ ମରନ୍ତି ଯେ ନରେ ।
କ୍ଷତ୍ରିୟର ରଣରେ ମରିବାର କଥା
ବଡ଼ ହୋଇଛି ହେ ଶୁଣିଛ ମହାରଥା ।
ତୁମ୍ଭ ଶୋକ ଦେଖି ତୁମ୍ଭର ଭାଇକୁଳ
ଭେଟିବଟି ରାଜନ ଯାଇ ପ୍ରେତଆଳ ।
ଏବେ ଭାଇମାନଙ୍କୁ ଆଶ୍ୱାସନା କରି
ରଖ ନିଜ ପ୍ରାଣ ଗାଣ୍ଡୀବ ଧନୁର୍ଦ୍ଧାରୀ ।
ତୁମ୍ଭେ ଯେବେ ଶୋକେ ଭାଇଙ୍କି ଘେନି ହତ
ଦେବ ଦୁର୍ଯ୍ୟୋଧନ ଯେ ହୋଇବ ଉଷତ ।
ଏହି ତ ବୀର ଲୋକ ମାରଗ ନୁହଇ
ପୁତ୍ର ସ୍ନେହେ ତାହାକୁ ମାର ଆଗେ ଯାଇ ।
ପଛେ ପଛକରେ କରିବ ପୁତ୍ରଶୋକ
ଆଗ ନାଶିଦିଅ ତୁମ୍ଭର ଶତ୍ରୁଯାକ ।

ଏହିରୂପରେ କୃଷ୍ଣ କହନ୍ତେ ଆଶ୍ୱାସି
ଶୁଣି ପାର୍ଥ କେତେକ ଶୋକ ଦେଲେ ନାଶି ।
ଯୁଧିଷ୍ଠିର ଭୀମାଦି ଭାଇଙ୍କି ଚାହିଁଣ
ଶୋକାକୁଳେ ପୁଣି ପୁଚ୍ଛିଲେ ଅରଜୁନ ।
ସୁଦୀର୍ଘବାହୁ ଦୀର୍ଘନୟନ ନନ୍ଦନ
ମୋହର କି ରୂପରେ ହୋଇଲା ନିଧନ ।
ମୋ ପୁଅକୁ ମାରିଅଛନ୍ତି ଯେଉଁମାନେ
ଦେଖିବ ତ ସେ ଯିବେ ଯମଙ୍କ ସଦନେ ।
ମୋ ବାହୁ ବେନି ବଳ ବଳି ଏ ମହୀରେ
ବଳୀ ଥିବା ପରି ନ ଦେଖେ ନୟନରେ ।
କାଲି ମୋର ପୁତ୍ରହନ୍ତାକୁ ଖଣ୍ଡ ଖଣ୍ଡ
କାଟି କାଣ୍ଡେ କରିବି ମାଇପକୁ ରାଣ୍ଡ ।
ଅସ୍ତ୍ର ଯୁଦ୍ଧେ କୁଶଳ ଅଟ ତୁମ୍ଭେମାନେ
ଯୁଦ୍ଧ କରିଲେ ଇନ୍ଦ୍ର ହାରିଯିବେ ରଣେ ।
ତୁମ୍ଭେମାନେ ଯେବେ ଯୁଝନ୍ତ କରି କକ୍ଷା
ମୋ ପୁଅ କିପାଁ ନୁହନ୍ତା ପ୍ରାଣ ରକ୍ଷା ।
ଏଡ଼େ ଅସମର୍ଥ ବୋଲି ମୁହିଁ ତୁମ୍ଭଙ୍କୁ
ଜାଣିଥିଲେ ରଖିଥାଆନ୍ତି ମୋ ପୁତ୍ରକୁ ।
ପଉରୁଷ ପରାକ୍ରମ ହୀନ ହେ ତୁମ୍ଭେ
ଆଉ କି ଗୁଡ଼ାଏ ବୋଲିବୁ ଚଳି ଆମ୍ଭେ ।
ତୁମ୍ଭଙ୍କୁ ରଖି ଯାହ ସଂଶପ୍ତକ ମାରି
ଏକା ଗଲି ମୁହିଁଟି ଏ ନିନ୍ଦା ମୋହରି-
ବୋଲି ଯେବେ ଥାଆନ୍ତ ମାରି ସଂଶପ୍ତକ
ଭେଦିଥାନ୍ତି ଆସି ମୁଁ ଚକ୍ରବ୍ୟୂହ ଯାକ ।
ନ ପାରିକରି ପରତୁଲରେ ଆରଣି
କହୁଥାଅ ସଭାରେ ହୋଇ ଟାଣି ଟୁଣି ।
ଅଳଙ୍କାର ପରି ତ ବହିଛ କବଚ
ଧିକ ହେଉ ତୁମ୍ଭର ଜନ୍ମ ହେବା ମଞ୍ଚ ।
ଏରୂପରେ ଭାଇମାନଙ୍କୁ ପାର୍ଥ କହି
ରହିଲେ ସେହୁ ଧନୁଶରପାଣି ହୋଇ ।
ଯୁଗାନ୍ତ କାଳଦେବ ପରାୟେ ଦିଶିଲେ
କେହି ତାଙ୍କୁ ଭରଷି କରି ନ ଭାଷିଲେ ।
ଯୁଧିଷ୍ଠିର କୃଷ୍ଣ ବିନାରେ ତାଙ୍କ ରୂପ
ଯେ ଦେଖିଲା ସେ ଭୟ ଲଭିଲା ଅମାପ ।
ପୁତ୍ର ଶୋକେ ଅର୍ଜୁନ ହୋଇଥିଲେ କ୍ରୋଧ
କହିଲେ ଯୁଧିଷ୍ଠିର ହେବାକୁ ତ ବୋଧ ।
ତୁମ୍ଭେ ତ ଗଲ ସଂଶପ୍ତକ ବଳ ମାରି
ମୋତେ ଧରିନେବାକୁ ଦ୍ରୋଣ ଶସ୍ତ୍ରଧାରୀ ।
ଚକ୍ରବ୍ୟୂହଟା ସେ ସୈନ୍ୟ ମଧ୍ୟେ କଲେ
ସେ ବ୍ୟୂହ ଭେଦି ତ ନ ଜାଣୁ ଆମ୍ଭେ ଭଲେ ।

ବହୁତ ଯୁଦ୍ଧ ତାଙ୍କ ସଙ୍ଗେ ଆମ୍ଭେ କଲୁଁ
ଦ୍ରୋଣଙ୍କର ବଳକୁ ବଳି ନ ପାରିଲୁ ।
ଥାଉଟି ଚକ୍ରବ୍ୟୂହ ଭେଦିବାର କଥା
ଦେଖିଲେ ସେ ବ୍ୟୂହକୁ ଜାତହେଲା ବ୍ୟଥା ।
ଏ ସକାଶୁଁ ସମସ୍ତେ ହୋଇ ଏକା ଗୁଣ୍ଡ
ବୋଇଲୁଁ ଅଭିମନ୍ୟୁ ଭେଦ ବ୍ୟୂହଖଣ୍ଡ ।
ଆମ୍ଭମାନଙ୍କର ବଚନ ମୁଣ୍ଡେ ଘେନି
ତୁମ୍ଭର ସୁତ ବାହାରିଲେ ସେହିକ୍ଷଣି ।
ସମୁଦ୍ରରେ ନଦୀ ଯେଉଁରୂପେ ପଶଇ
ସେ ରୂପେ ସେ ପଶିଲେ ସୈନ୍ୟ ମଧ୍ୟେ ଯାଇ ।
ଅଭିମନ୍ୟୁ କରିଗଲେଟି ଯେଉଁ ବାଟ
ସେହିବାଟେ ଆମ୍ଭେ ଯାଆନ୍ତେ ଘେନି ଥାଟ ।
ଶିବଙ୍କର ବଳରେ ଜୟଦ୍ରଥ ବଳୀ
ହୋଇ ଯୁଦ୍ଧ କଲେ ସେ ଆମ୍ଭଙ୍କୁ ଆଗୋଳି ।
ସେ ସକାଶୁଁ ଆମ୍ଭର ନୋହିଲା ଆୟତ
ଏକା ହୋଇଣ ଯୁଦ୍ଧ କଲେ ତୁମ୍ଭ ସୁତ ।
ଦ୍ରୋଣ ଦ୍ରୌଣି କୃପ ଯେ ଶଲ୍ୟ କୃତବର୍ମା
କର୍ଣ୍ଣ ଆଦି ରଥିଏ ବହିଣ ଗାରିମା ।
ତୁମ୍ଭ ପିଲାଟିକି ବିରଥି ଯୁଦ୍ଧେ କଲେ
ଦୁଃଶାସନ- ସୁତ ହାତରେ ମରାଇଲେ ।
ସସ୍ତ୍ର ଆଠ ରଥ ନ ଶତ ମତ୍ତଦନ୍ତୀ
ସହସ୍ର ଦୁଇ ରାଜପୁତ୍ର ବୀରପନ୍ତି ।
ସିପାହୀ ଘୋଡ଼ା ଦୁଇ ସହସ୍ର କରି ହତ
ମାରି ରଣେ ବୃହଦ୍‌ବଳଙ୍କୁ ତୁମ୍ଭ ସୁତ ।
ସ୍ୱର୍ଗପୁରେ ଯାଇ ବସିଲେ ଇନ୍ଦ୍ର ପାଶେ
ବିରସ ଲଜ୍ଜା ଧୋଇ ଆମ୍ଭ ମୁଖଦେଶେ ।
ଯୁଧିଷ୍ଠିର ରାଜାଙ୍କ ମୁଖୁଁ ଏହା ଶୁଣି
ଧନୁଶର ପକାଇଦେଇ ସେହିକ୍ଷଣି ।
ଆହା ପୁତ୍ର ମଲୁ ବୋଲିଣ ଉଚ୍ଚେ ଡକା
ପଡ଼ିଲେ ଅରଜୁନ ହୋଇଣ ତାଟକା ।
ଅର୍ଜୁନଙ୍କୁ ଅନାଇବାରେ ନୃପରାଣ
ଅନିମିଷ କରିଲେ ତାଙ୍କର ଇକ୍ଷଣ ।
ପୁଣି ଚେତା ପାଇ ଉଠନ୍ତେ ଅରଜୁନ
ପୂର୍ଣ୍ଣ କରି ଦେଲେଟି ଅଶ୍ରୁରେ ବଦନ ।
ହାତେ ହାତ ପେଷି ଚୋବାଇ ଓଷ୍ଠପୁଟ
କହିଲେ ଜୟଦ୍ରଟ ନୃପେ କରି ରୁଷ୍ଟ ।
ରାତ୍ରଶେଷରେ ଜୟଦ୍ରଥର ମରଣ
କରାଇବେଟି ଗାଣ୍ଡୀବରୁ ଯାଇ ବାଣ ।
ଆହେ ମହାରାଜ ତୁମ୍ଭର ପାଦେ ଯେବେ
ପଶିବ ଶରଣ ମୁଁ ନ ମାରିବି ତେବେ ।

କୃଷ୍ଣଙ୍କର ଠାରେ ପଶିଲେ ଶରଣ
କହୁଅଛି ତାହାର ନୋହିବ ମରଣ ।
ଧୃତରାଷ୍ଟ୍ର ପୁଅଙ୍କୁ ଯେବେ ଯିବ ଛାଡ଼ି
ମାରିବି ତାହାକୁ ମୁଁ ତେବେ ଖୋଜି ଲୋଡ଼ି ।
ଯୁଦ୍ଧେ ଥିଲେ କାଲି କାଟିବି ତାର ମାଥ
ସୌଭଦ୍ରା ମରଣ କାରଣ ଜୟଦ୍ରଥ ।
କୃପା ଦ୍ରୋଣ ଦ୍ରୌଣି ଯୁଝିଲେ ତାର ପାଇଁ
ଦେବି ତାହାଙ୍କୁ ମୁହିଁ ଶରରେ ଘୋଡ଼ାଇ ।
ଯେବେ ଜୟଦ୍ରଥର ମାଥ ନ କାଟିବି
କହୁଛି ପୁଣ୍ୟକୃତ୍ୟ ଲୋକକୁ ନ ଯିବି ।
ମାତୃହତ୍ୟାକାରୀ ଯେ ପିତୃବିଘାତକ
ଗୁରୁଦାରରତ ଗଚ୍ଛିତହାରକ ।
ସାଧୁଜନାସୂୟକ ଭକ୍ତ ସ୍ତ୍ରୀ ନିନ୍ଦକ
ଗୃହଦାହୀ ଓ ନଗ୍ନସ୍ନାନବିଧାୟକ ।
ଜଳରେ ମୂତ୍ର ଶ୍ଳେଷ୍ମ ପୁରୀଷ କ୍ଷେପକ
ମିଥ୍ୟା କଥା କୁହା ଯେ ବିଶ୍ୱାସଘାତକ ।
ପାଦରେ ଦ୍ୱିଜ ଧେନୁ ଅଗ୍ନି ପ୍ରହାରକ
ବୈଦିକ ବୃଦ୍ଧ ସାଧୁ ଗୁରୁଙ୍କ ନିନ୍ଦକ ।
ନ କରଇ ଅତିଥିସତ୍କାର ଯେ ଲୋକ
ଭୃତ୍ୟପୁତ୍ରଦୂଷିତ ମିଥ୍ୟାଭିସଂଜ୍ଞାକ ।
ଲାଞ୍ଚୁଆ ବ୍ରହ୍ମଘାତୀ ଧେନୁ ବିନାଶକ
ନ ଦେଇ କ୍ଷୀରୀ ପିଠା ଖେଚେଡ଼ି ଭକ୍ଷକ ।
ଶ୍ରାଦ୍ଧ କର୍ମେ ସମୀପ ବ୍ରାହ୍ମଣ ତ୍ୟଜକ
ଅଯୋଗ୍ୟ ପାତ୍ର ପିତୃଶ୍ରାଦ୍ଧେ ନିମନ୍ତ୍ରକ ।
କୃତଘ୍ନ ମଦ୍ୟପ ଯେ ଭ୍ରାତୃବିନିନ୍ଦକ
ଏମାନଙ୍କ କହୁଛି ହୁଏ ଯେଉଁ ଲୋକ ।।
ସେହି ଲୋକ ମୋହର ହୋଇବ ପ୍ରାପତ
ନ କାଟିଲେଟି କାଲି ଜୟଦ୍ରଥ ମାଥ ।
କାଲି ଯେ ସୂର୍ଯ୍ୟ ଅସ୍ତଗିରିକି ରଙ୍ଗରେ
ନ ଛୁଇଁ ତାହାକୁ ମୁଁ ମାରିବି ସମରେ ।
ଯେବେ ଜୟଦ୍ରଥଙ୍କୁ ନ ମାରିବି କାଲି
ମରିବି ମୁଁ କହୁଛି ତହିଁ ଅଗ୍ନି ଜାଳି ।
ସୁରାସୁର ଉରଗ ପକ୍ଷୀପତି ନର
ରାକ୍ଷସ ବ୍ରହ୍ମ ଋଷି ଦେବର୍ଷି ଚରାଚର ।
ଏମାନେ ଯେବେ ଜୟଦ୍ରଥ ରକ୍ଷାକାରୀ
ହୋଇବେ ତେବେ ମଧ ପକାଇବି ମାରି ।
ରସା ରସାତଳ ଯେ ଆକାଶ ଅମର-
ପୁରେ ରହିଲେ ମୁହିଁ କରିବି ସଂହାର ।
ଏହା କହି ଅର୍ଜ୍ଜୁନ ଦୁଇହାତେ ଧନୁ
ଓଟାରି ଟଙ୍କାରିଲେ ଧରି ହୃଦେ ମନ୍ୟୁ ।
ସେ ଶବଦେ ଦିଶି ଆକାଶ ଗଲା ପୂରି
ରହିଲେ କୁରୁଏ ତା ଶୁଣି ଭୟକରି ।
ଅର୍ଜ୍ଜୁନଙ୍କ ପ୍ରତିଜ୍ଞାକାଳେ ବସୁଦେବ-
ସୁତ ବଜାଇଲେ ଶଙ୍ଖକୁ ବହି ଭାବ ।
ଅର୍ଜ୍ଜୁନ ମଧ କ୍ରୋଧ ହୋଇ ଶଙ୍ଖଧରି
ବଜାଇଲେ ଆଣ୍ଠ କରିଣ ମୁଖେ ଭରି ।
କୃଷ୍ଣଙ୍କ ଶଙ୍ଖ ଶବ୍ଦ ନଭ ମହୀ ପୂରି
ସ୍ତବଧ କରିଦେଲା କର୍ଣ୍ଣକୁ ସବୁରି ।
ଫାଟିଗଲା ପ୍ରାୟେ ମଣିଲେ ପରବତ
ଯେତେ ଜନ କର୍ଣ୍ଣକୁ ହେଲା ଶବ୍ଦ ଗତ ।
ସହସ୍ରସଂଖ୍ୟା ଯୋଦ୍ଧାମାନେ ସିଂହନାଦ
କଲେ ହୃଦ ଦେଶରେ ବହିଣ ପ୍ରମୋଦ ।
ପାଣ୍ଡୁସେନା ବାଦ୍ୟନାଦରେ ମହୀଆଳୀ
ପଡ଼ିବ ତଳେ ବୋଲି କହିଲେ ହେ ଭାଳି ।
ତୃତୀୟ ଦିନ ଯୁଦ୍ଧ ଏଥୁଁ କଲେ ଶେଷ
ସତ୍ୟବତୀ ଆନନ୍ଦ ବର୍ଦ୍ଧନ ବେଦବ୍ୟାସ ।
ସେହି ବ୍ୟାସଙ୍କରଟି ପାଦପଦ୍ମ ଯୁଗ
କୃଷ୍ଣସିଂହ ନରଈଶ ମାନସଭୃଙ୍ଗ ।
ଭାବିଣ ହୃଦୟରେ କହଇ ଏ ଗୀତ
ହୋଇବାକୁ ତୋଷ ସୁଜନଙ୍କର ଚିତ୍ତ ।

•

## ଦ୍ରୋଣଙ୍କର ଚତୁର୍ଥ ଦିନ ଯୁଦ୍ଧ

ଏଥୁଅନ୍ତେ ପାର୍ଥ କରିବା ପ୍ରତିଜ୍ଞାକୁ
ଦୂତେ ଯାଇ କହିଲେ ଦୁଃଶଳା ବରକୁ ।
ଜୟଦ୍ରଥ ଶୁଣିଣ ଅର୍ଜ୍ଜୁନ ପ୍ରତିଜ୍ଞା
ମଲଇଁ ବୋଲି ଛାଡ଼ିଦେଲେ ଦେହସଂଜ୍ଞା ।
ଟିକିଏ ଗଲାକ୍ଷଣି ଚେତା ଦେହେ ବହି
ଉଠିଲେ ମୁଣ୍ଡ ହେଉଥିଲାଟି ବୁଲାଇ ।
ଧଇର୍ଯ୍ୟ ହୋଇ କୁରୁସଭାକୁ ଆସିଲେ
ଅର୍ଜ୍ଜୁନଙ୍କ ପ୍ରତିଜ୍ଞା ବଚନ ଭାଷିଲେ ।
ଆହେ ନୃପତିଏ ପାଣ୍ଡୁଙ୍କ ପରି କାନ୍ତ
ଥାଉଁ କୁନ୍ତୀ ପରପୁରୁଷେ ଦେଇ ଚିତ୍ତ ।
ଇନ୍ଦ୍ର ଦେବତାଙ୍କୁ ଟି ଦେହଭୋଗ ଦେଲେ
ଅରଜୁନ ନାମରେ ପୁତ୍ର ଜାତ କଲେ ।
ସେ ଅର୍ଜ୍ଜୁନ ଏବେଟି ପୁତ୍ରଶୋକୀ ହୋଇ
ମାରିବ ମୋତେ ଯେ ପ୍ରତିଜ୍ଞା ଅଛି ବହି ।
ତୁମ୍ଭମାନଙ୍କରଟି ହୋଇଥାଉ ଭଲ
ପ୍ରାଣ ଭୟେ ମୁଁ ତ ହେଉଛି କଲବଲ ।
ଯାଉଛି ମୋହର ଘରକୁ ଦିଅ ଆଜ୍ଞା
ଦୁଷ୍ଟପଣେ ଅର୍ଜ୍ଜୁନ କଲାନି ପ୍ରତିଜ୍ଞା ।

ନୋହିଲେ ଯେବେ ତୁମ୍ଭ ବଳ ପାଉଅଛି
ଯୁଝିବ ଅର୍ଜୁନକୁ କହ ମୁଁ ଗହୁଛି ।
ଦ୍ରୋଣ ଦୁର୍ଯ୍ୟୋଧନ ବାହ୍ଲିକ କର୍ଣ୍ଣ କୃପ
ଶଲ୍ୟ ଦୁଃଶାସନତ ଧରିଥିଲେ ଚାପ ।
ମୃତ୍ୟୁ ହେଲେ ଦୂରୁଁ ରହିବି ଅପସରି
ଅରଜୁନ କିପାଇଁ ନ ଯିବେ ଯେ ହାରି ।
ନ ଜାଣି ବଳ ମୋତେ ଦୁର୍ବୁଦ୍ଧିପଣ କରି
ବୋଲୁଛି ମାରିବି ଗାଣ୍ଡୀବ ଧନୁଦ୍ଧାରୀ ।
ଯେବେ ତୁମ୍ଭେମାନେ ହେ ନ ପାରିବ ରଖି
ବୋଲ ଯିବି ଘରକୁ ହୋଇ ମହାସୁଖୀ ।
ଯୁଦ୍ଧେ ଥିଲେ ମୋତେ ତ ସେ ଦେବ ବଢ଼ାଇ
କାଣୁ କାଣୁ ମୁହିଁତ ମରିବି କିପାଇଁ ।
ନ ବାଜୁଁ ଅରଜୁନ କାଣ୍ଡ ମୋର ଅଙ୍ଗେ
ଦେଖ ପ୍ରାଣ ଯିବାକୁ ଭାବେ ପ୍ରେତ ସଙ୍ଗେ ।
ଚାରିଦିଗ ମୋତେ ଦିଶୁଛି ଶୂନ୍ୟମୟ
ସ୍ଥିର ହୋଇ ରହୁ ନାହିଁ ମୋର ହୃଦୟ ।
ତୁଣ୍ଡ ଶୁଖି ବାଚୂ ବାହାରି ପଡୁଅଛି
କହିବାକୁ ଏଥିରେ କେଉଁ କଥା ଅଛି ।
ଦେବାସୁର ଯକ୍ଷ କିନ୍ନର ହୋଇ ଗୋଟି
ଯୁଝିଲେ କାଲି ମୋତେ ମାରିବ କିରୀଟୀ ।
ତୁମ୍ଭମାନଙ୍କର ହେ ବଳ ତ ଅଳପ
ସହି ନିକି ଶୁଝି ପାରିବ ତାର କୋପ ।
ପାଣ୍ଡୁସୁତେ ଯୁଦ୍ଧକୁ ନ ଆସୁ ମୁଁ ଲୁଚି
ପଳାଇବି ଏହି କଥାଟି ଅଛି ପାଞ୍ଚି ।
ଅର୍ଜୁନ ପ୍ରତିଜ୍ଞାକୁ ନ କରି ଅବଜ୍ଞା
ଯିବି ମୁଁ ଯାଅ ବୋଲି ଦିଅ ମୋତେ ଆଜ୍ଞା ।
ଏହିରୂପରେ ନୃପତିଙ୍କ ଆଗେ କହି
ପାଡ଼ିଲେ ଡକା ମଲି ବୋଲି ବାବୁ ଭାଇ ।
ଦୁର୍ଯ୍ୟୋଧନ ତ ତାହା ନ ପାରିଣ ସହି
ବୋଇଲେ ହେ କୁଆଇଁ ହୋଇଲ କି ବାଇ ।
ଆମ୍ଭେମାନେ ଯୁଦ୍ଧେ ତ ରଖିବୁ ତୁମ୍ଭଙ୍କୁ
ଡରୁଛ କିମ୍ପା ପାର୍ଥ ତାହାର କାଣ୍ଡକୁ ।
କର୍ଣ୍ଣ ଚିତ୍ରସେନ ଯେ ବିବିଂଶତି ଶଳ
ଭୂରିଶ୍ରବା ବୃସେନ ଯେ ମହାବଳ ।
ଶଲ୍ୟ ପୁରୁମିତ୍ର ନ ଜୟ ସୁଦକ୍ଷିଣ
କାମ୍ବୋଜ ଭୋଜ ସତ୍ୟବ୍ରତ ଦ୍ରୋଣିଦ୍ରୋଣ
ଦୁର୍ମୁଖ ବିନ୍ଦ ଅନୁବିନ୍ଦ ଦୁଃଶାସନ ।
ଏମାନେ ତୁମ୍ଭ ପାଇଁ କରିବେ ଆୟୋଧନ
ବଜ୍ରଧରି ଇନ୍ଦ୍ର ଦେବତା କଲେ ଯୁଦ୍ଧ ।
କରି ନ ପାରିଲେ ଯୁଦ୍ଧରେ ତୁମ୍ଭ ବଧ
ଉତ୍ତମ କୁଳରେ ତ ହୋଇଛ ଉତ୍ପତ୍ତି
ଶୂରପଣେ ବିଖ୍ୟାତ କରିଅଛ କୀର୍ତ୍ତି ।
କାହିଁପାଇଁ ଅରଜୁନଙ୍କୁ ଡରୁଅଛୁ
ତା ପ୍ରତିଜ୍ଞାବଚନ କାଲି ହେବ ମିଛୁ ।
ମୋହର ତ ସଇନ ବହୁତ ଅଛନ୍ତି
ଏଥି ମଧ୍ୟରେ କାଲି ରହ କରି ସ୍ଥିତି ।
ପାଣ୍ଡବ ସଇନ ତ ଅଟନ୍ତି ଅଳପ
କହୁଛି ଭାଜିଯିବ ତାଙ୍କ ସଂକଳପ ।
ଏରୂପେ ଦୁର୍ଯ୍ୟୋଧନ କହନ୍ତେ ହସି ଭାଷ
ଜୟଦ୍ରଥ ନୃପତି ହୋଇ କେତେ ତୋଷ ।
ଦୁର୍ଯ୍ୟୋଧନ ରାଜାଙ୍କୁ ସଙ୍ଗତେ ଘେନିଣ
ଏକାନ୍ତେ ଦ୍ରୋଣ ଥିଲେ ଯାଇଁଣ ଭେଟିଲେ ।
ଦ୍ରୋଣଙ୍କୁ ନମସ୍କାର କରି ଦୁଇ ବୀରେ
ବସିଲେ ପାଶେ ଦ୍ରୋଣ ଦ୍ୱିଜଙ୍କ ଆଜ୍ଞାରେ ।
ସେହିକାଳରେ ଜୟଦ୍ରଥ ଯୋଡ଼ି କର
ବୋଇଲେ ଶୁଣ ଗୁରୁ ଦ୍ୱିଜକୁଳବର ।
ଲାଖ ବିନ୍ଧିବାରେ ଦୂରକୁ ବିନ୍ଧିବାରେ
ଦୃଢ଼କରି ମୁଷ୍ଟି ବିନ୍ଧିବା ଲାଘବରେ ।
ଅର୍ଜୁନ ମୋହର ବିଶେଷା ବିଶେଷ
ଯା ଜାଣିଛ ଗୁରୁ କର ତା ପରକାଶ ।
ଦ୍ରୋଣ ବୋଇଲେ ହେ ଦୁହିଁଙ୍କ ଗୁରୁ ମୁହିଁ
ମୋଠାରୁ ତୁମେ ଦୁହେଁ ଅଛ ଶିକ୍ଷା ପାଇ ।
ଏ ବାହାରେ ବହୁତ ଅସ୍ତ୍ର ଅରଜୁନ
ଶିଖିଛି ତୁମ୍ଭଙ୍କୁ ଅଧିକ ହେବ ଜାଣ ।
ପାର୍ଥଙ୍କ ସକାଶୁଁ ନ କର ଯୁଦ୍ଧେ ଭୟ
ଦେଉଅଛି ଯାଚି ମୁଁ ତୁମ୍ଭଙ୍କୁ ଅଭୟ ।
ମୋ ବାହୁବଳେ ତୁମ୍ଭେ ହୋଇଲେ ରକ୍ଷିତ
ମାରି ନ ପାରିବେ ତୁମ୍ଭଙ୍କୁ ଦଇବତ ।
ଯେଉଁ ବ୍ୟୂହ କାଲି କରିବି ଯୁଦ୍ଧେ ମୁହିଁ
ଅରଜୁନ ବଳେ ସେ ଭେଦ ହେବ ନାହିଁ ।
ପିତୃ ପିତାମହଙ୍କ ମାର୍ଗକୁ ଆଚରି
ଯୁଦ୍ଧ କର ରାଜନ କରେ ଶସ୍ତ୍ର ଧରି ।
ଚାରିବେଦ ପଢ଼ି କରିଛ ଯାଗଦାନ
କରୁଛ କିମ୍ପା ପ୍ରାଣ ରଖିବାରେ ମନ ।
ଭୁଜବୀର୍ଯ୍ୟେ ଅର୍ଜିବା ଲୋକ ତୁମ୍ଭେ ପାଇ
ବସିବ ସ୍ୱର୍ଗେ ଏଥି ସନ୍ଦେହ ହେ ନାହିଁ ।
କୁରୁ ପାଣ୍ଡୁ ବୃଷ୍ଣି ପୁଅ ତୁଲରେ ମୋର
କାଳ ହେଲେ ମୃତ୍ୟୁ ହୋଇବ ମନେ କର ।
ଏହା ଜାଣିକରି ମରିବା କଥା ମୂଳ
କରି ଅରଜୁନ ସଙ୍ଗତେ କର ରୋଳ ।

ତପ କରିଣ ଲୋକମାନେ ଯା ପାଆନ୍ତି
ଅଲଭ୍ୟେଟି କ୍ଷତ୍ରିୟେ ଯୁଦ୍ଧେ ତା ପାଆନ୍ତି ।
ଦ୍ରୋଣଠାରୁ ଏରୂପେ ପାଇ ଆଶ୍ୱାସନା
ଜୟଦ୍ରଥ ରାଜନ ହେଲେ ଯୁଦ୍ଧମନା ।
ଜୟଦ୍ରଥଙ୍କର ଜାଣିଣ ଯୁଦ୍ଧମନ
କୁରୁସଇନ୍ୟ ନରେ ହୋଇଣ ପ୍ରସନ୍ନ ।
ବଜାଇଣ ମୃଦଙ୍ଗ କାହାଳି ଫୁଙ୍କିଲେ
ଅର୍ଜ୍ଜୁନଙ୍କୁ କିଛି ମନରେ ନ ଶଙ୍କିଲେ ।
ଆହେ ଧୃତରାଷ୍ଟ୍ର ନୃପତିଙ୍କ ଶେଖର
ଏ ଅନ୍ତେ ଶୁଣି କୃଷ୍ଣ ଅର୍ଜ୍ଜୁନ ବିଚାର ।
ଏକାନ୍ତେ ଅର୍ଜ୍ଜୁନଙ୍କୁ କହିଲେ ମୁରାରି
ବଡ଼ ପ୍ରତିଜ୍ଞା ତ କଲ ହେ ନ ବିଚାରି ।
ତୁମ୍ଭ ଏ ପ୍ରତିଜ୍ଞା ବଚନ ଶୁଣି ଭଲେ
ଭାଇଙ୍କର ତୁଲେ ସେନାଏ ହୃଷ୍ଟ ହେଲେ ।
ବିଚାରିଲେ ତୁମ୍ଭର ପ୍ରତିଜ୍ଞା ବଚନ
ରାଜାଙ୍କର ପୁଅ ବୋଲି ପାଉଅଛି ମନ ।
କାଲି ଜୟଦ୍ରଥ ନ ମାଇଲେ ତୁମ୍ଭେ
ମରିବ ଅଗ୍ନି ଜାଳି ଜାଣିଅଛୁଁ ଆମ୍ଭେ ।
ମୋ ତୁଲରେ କିପାଇଁ ନ କରି ବିଚାର
କାହିଁକି ଅର୍ଜ୍ଜୁନ ବହିଲ ଏଡ଼େ ଭାର ।
ଯେବେ ହେ ଭାଇ ଶାନ୍ତି ନ ପାରିବ କରି
ହସିବାରେ କୁରୁଏ ଆମ୍ଭେ ଯିବା ମରି ।
ଦୁର୍ଯ୍ୟୋଧନ ବସାକୁ ପେଷିଥିଲି ଦୂତ
ସେ ଯାହା କହିଲା ତା ଶୁଣ ଦେଇ ଚିତ୍ତ ।
ପ୍ରତିଜ୍ଞା କଲାବେଳେ ତୁମ୍ଭେ ଯୋଦ୍ଧାଗଣେ
ଶଙ୍ଖ ବାଦ୍ୟ ଧ୍ୱନିଟି କରି ଅତି ଟାଣେ ।
ହୃଷ୍ଟ ହୋଇ ସମସ୍ତେ କଲେ ସିଂହରଡ଼ି
ତା ଶୁଣି କୁରୁଯାକ ଭୟେ ଗଲେ ସଢ଼ି ।
ଏ ରାତ୍ରେ ଯୁଦ୍ଧ ହେବ ବୋଲି ମନେ କଲେ
କୁରୁଏ ଜାଗରୁକ ହୋଇଣ ରହିଲେ ।
ତୁମ୍ଭେ ଜୟଦ୍ରଥେ ମାରିବା ପ୍ରତିଜ୍ଞାକୁ
ପଛେ ଶୁଣି ଭୟରେ କମ୍ପାଇ ଗାତ୍ରକୁ ।
ଯୁଥବଣା ଏଣିକ ପ୍ରାୟେ ନେତ୍ରେ କଲେ
ସଢ଼ାଇ ଶରୀର ବଢ଼ାଇ ଛାଡ଼ି ଦେଲେ ।
ଜୟଦ୍ରଥ ନୃପତି ଭୟରେ ଆକୁଳ
ହୁଅନ୍ତେ ତାଙ୍କ ଫିଟିଗଲା ମୁଣ୍ଡବାଳ ।
ଦୁର୍ଯ୍ୟୋଧନ ରାଜାଙ୍କୁ ଅନାଇଁ କହିଲେ
ମରିବି ମୁଁ ପ୍ରତିଜ୍ଞା ପାର୍ଥ ଯେବେ କଲେ ।
ଦେବ ଯକ୍ଷ ଗନ୍ଧର୍ବ ଉରଗ ରାକ୍ଷସ
ନ ପାରିବେ ପାର୍ଥ ପ୍ରତିଜ୍ଞା କରି ନାଶ ।

ଯେରୂପେ ମୋତେ ହେ କରିବ ଯୁଦ୍ଧେ ରକ୍ଷା
ସେ ରୂପେ ଯୁଦ୍ଧକର ବୀର କରି କକ୍ଷା ।
ନୋହିଲେ ଅର୍ଜ୍ଜୁନ କାଲି ମୋ ଯୁଦ୍ଧେ ମୁଣ୍ଡ
କାଟି ତା ଭଉଣୀକି କରିବଟି ରାଣ୍ଡ ।
ଯେବେଟି ଅର୍ଜ୍ଜୁନଙ୍କୁ ବଳ ପାଉ ନାହିଁ
ତେବେ ବୋଲ ଘରକୁ ପଳାଇବି ମୁହିଁ ।
ଜୟଦ୍ରଥ ମୁଖରୁ ଶୁଣି ଏ ବଚନ
ମୁଣ୍ଡପୋତି ତଳକୁ ରହିଲା ଦୁର୍ଯ୍ୟୋଧନ ।
ଦୁର୍ଯ୍ୟୋଧନଙ୍କର ଏହି ରୀତିକି ଜାଣି
ପୁଣି ଜୟଦ୍ରଥ କହିଲେ ତାଙ୍କୁ ବାଣୀ ।
ଆହେ ଦୁର୍ଯ୍ୟୋଧନ ତୁମ୍ଭର ରଥିଯାକ
ନିବାରି ନ ପାରିବେ କିରୀଟୀ ଶାୟକ ।
କୃଷ୍ଣ ସହାୟରେ ଗାଣ୍ଡୀବ ଧନୁର୍ଦ୍ଧାରୀ
ଇନ୍ଦ୍ରଙ୍କୁ ହେ ଯୁଦ୍ଧେ ପାରିବେଟି ମାରି ।
ଯୁଦ୍ଧରେ ଅର୍ଜ୍ଜୁନକୁ ହୋଇଣ ସନ୍ତୋଷ
ବର ଦେଇଛନ୍ତି ପାର୍ବତୀଦେବୀଈଶ ।
ଏକା ଥରକେ ନିବାତକବଚକୁ
ଦେଖାଇଲେ ନେଇ ଯମଙ୍କ ନଗରକୁ ।
କୃଷ୍ଣଙ୍କରେ ରକ୍ଷିତ ହୋଇଛି ଅର୍ଜ୍ଜୁନ
ଜିଣିବ ତ୍ରିଲୋକ କିସ ଏ କୁରୁସୈନ୍ୟ ।
ଯେବେ ପୁତ୍ରତୁଲରେ ଅର୍ଜ୍ଜୁନଙ୍କୁ ଯୁଦ୍ଧ
କରିବେ ଦ୍ରୋଣ ମୋର ନୋହିବ ବା ବଧ ।
ଆଉ ରଥିମାନଙ୍କେ ନ ଯାଉଛି ମନ
ନୁହନ୍ତି ତ ସେ କେହି ଅର୍ଜ୍ଜୁନ ସମାନ ।
ଏହା ଶୁଣିଣ ଦୁର୍ଯ୍ୟୋଧନ ମହାରଥ
ରଥିଙ୍କରେ ଯେତେ ଅଟନ୍ତି ସାମରଥ ।
ସୈନ୍ୟ ତୁଲେ ଦ୍ରୋଣଙ୍କୁ କହିଲେ ସେ ଯାଇ
ଜୟଦ୍ରଥଙ୍କର ରକ୍ଷଣେ ମନ ଦେଇ ।
ଦ୍ରୋଣ ଯାହା କହିଲେ ତାହା ତୁମ୍ଭେ
ଦୂତ ମୁଖୁ ସବୁତ ଶୁଣିଅଛୁଁ ଆମ୍ଭେ ।
କର୍ଣ୍ଣ ଭୂରିଶ୍ରବା ଦ୍ରୌଣି ବୃଷସେନ
କୃପ ମଦ୍ରରାଜ ଏ ଷଡ଼ ରଥିଜନ ।
ସୈନ୍ୟଙ୍କୁ ଜଗି କାଲି ଆଗ ଏ ରହିବେ
ଯୁଦ୍ଧରେ ଏ ତୁମ୍ଭ ବିପତ୍ତି ସମ୍ପାଦିବେ ।
ଦ୍ରୋଣ କାଲି ଶକଟ ବ୍ୟୂହେ ପଦ୍ମବ୍ୟୂହ
କରିବେ ତୁମଠାରୁ ଛାଡ଼ିଦେଇ ସ୍ନେହ ।
ପଦ୍ମବ୍ୟୂହ କେଶର ମଧ୍ୟେ ସୂଚୀବ୍ୟୂହ
ହେବ ତହିଁ ବସିବ ସିନ୍ଧୁ ନୃପସିଂହ ।
କୃପ ଆଦି ରଥିଏ ଜଗିବେ ଶୁଣୁଛି
କି ରୂପେ ଜୟଦ୍ରଥ ମରିବ ପୁଚ୍ଛୁଛି ।

ଦୁର୍ଯ୍ୟୋଧନଙ୍କର ଯେ ଛଅ ରଥିଯାକ
ମନେ କଲେ ଜିଣିପାରନ୍ତି ସେହୁ ନାକ ।
ଧନୁଶର ଯେ ଗଦା ଖଡ଼୍‌ଗ ଯୁଦ୍ଧରେ
କୁଶଳ ବୋଲି ତାଙ୍କୁ ବୋଲନ୍ତି ତ ନରେ ।
ଏମାନଙ୍କୁ ଯେବେ ନ ଜିଣି ଅରଜୁନ
ନ ପାର ନେଇ ଜୟଦ୍ରଥର ଜୀବନ ।
ଜଣ ଜଣକରେ ସେ କେଡ଼େ ବଳୀୟାର
ବିଚାର ମନରେ ଘେନି ମୋ କହିବାର ।
ହିତ ମନ୍ତ୍ରୀମାନଙ୍କୁ ଡକାଇ ଆଣିବା
ଯେ ବିଚାର ଛିଡ଼ିବ ତାହା ଆଚରିବା ।
ଏହା ଶୁଣି ଅର୍ଜୁନ ବୋଇଲେ ହେ ହରି
କହୁଛି ମୁଁ ତୁମ୍ଭ ମନକୁ ଜାଣିପାରି ।
ଯେ ଛଅ ରଥୀଙ୍କି କହୁଛ ଟେକିକରି
ମୋ ବଳର ଅଧକୁ ନୁହନ୍ତି ସେ ସରି ।
ମୋ ଅସ୍ତ୍ର ସୂର୍ଯ୍ୟ ଆଗେ ଛ ରଥୀ ଅସ୍ତ୍ରଯାକ
ଦେଖିବ ହୋଇଯିବେ ଜୁଳଜୁଳା ପୋକ ।
ଚାହୁଁଥିବେ ଦ୍ରୋଣ ହୋଇଣ ଧନୁହାତ
କାଟି ପକାଇବି ମୁଁ ଜୟଦ୍ରଥ ମାଥ ।
ସାଧ ରୁଦ୍ର ବସୁ ଯେ ଅଶ୍ୱିନୀ କୁମାର
ସୁପର୍ଣ୍ଣ ବିଶ୍ୱଦେବ ମହେନ୍ଦ୍ର ପିତର ।
ସାଗର ସ୍ୱର୍ଗାକାଶ ଗନ୍ଧର୍ବ ମରୁତ
ଦିଗ ଗ୍ରାମ ଅରଣ୍ୟ ଚରାଚର ଭୂତ ।
ଏମାନେ ଯେବେ ଜୟଦ୍ରଥ ପାଇଁ ଯୁଦ୍ଧ
କରିବେ ନିଶ୍ଚେ ତାଙ୍କୁ କରିବି ମୁଁ ବଧ ।
ଆୟୁଧ ଛୁଇଁକରି କହୁଅଛି ମୁହିଁ
କାଲି ଜୟଦ୍ରଥର ପ୍ରାଣ ରହିନାହିଁ ।
ଦ୍ରୋଣ ଜୟଦ୍ରଥ ଗୋପତା ଯେବେ ହେବେ
ଶରେ ତାଙ୍କୁ ଘୋଡ଼ାଇଦେବି ଜାଣ ତେବେ ।
କୁରୁସେନାଙ୍କର ଯେତେକ ମହାବଳ
ସର୍ବେ କାଲି ମରି ଦେଖିବେ ଯମଆଳ ।
ଗାଣ୍ଡୀବରୁ ମୋର ବାହାରି ଶରରାଜି
ହାତୀ ଘୋଡ଼ା ଦେହରେ କାଲି ଯିବେ ମଜ୍ଜି ।
ମୋ ଶରଘାତ ପାଇ ରକ୍ତ କରି ବାନ୍ତି
ପଡ଼ିବେ ହାତୀ ଘୋଡ଼ା ହୋଇ ପନ୍ତି ପନ୍ତି ।
ଇନ୍ଦ୍ର ରୁଦ୍ର ଯମ ଯେ କୁବେର ବରୁଣ-
ଠାରୁ ମୁଁ ପାଇଅଛି ଯେତେ ଅସ୍ତ୍ରଗଣ ।
ସେ ଅସ୍ତ୍ରକୁ କାଲି ଯୁଦ୍ଧରେ ବିନ୍ଧିବଇ
ଦେଖିବତ କୃଷ୍ଣ ହ ମୋ ରଥରେ ଥାଇଁ ।
ବ୍ରହ୍ମ ଅସ୍ତ୍ର ବଳେ ଖେଦଇ ଗଜକୁଳ
ପୁରାଇବି ସୈନ୍ଧବରାଜାର ମୁଁ କାଳ ।
ମୋ ଆଶୁଗ ବେଗେ ନୃପଙ୍କ ମୁଣ୍ଡବ୍ରତ
ହେବ କାଲି କୃଷ୍ଣ ହେ ମହୀରେ ସଙ୍ଗତ ।
ବିଲୁଆକୁ ରକତ ମାଉଁସେ ତୋଷିବି
ସୁହୃଦମାନଙ୍କର ସୁଖ ବଢ଼ାଇବି ।
ଶତ୍ରୁଙ୍କୁ ବଳେ ଦଳି କରାଇ ସନ୍ତାପ
ହେବି ଜୟଦ୍ରଥର କାଳ ଦଇବତ ।
ପାପଦେଶେ ଜନ୍ମ ହେବାରୁ ପାପକାରୀ
ଅଟଇ ସେହୁ ଜୟଦ୍ରଥ ଦଣ୍ଡଧାରୀ ।
ନ ଜାଣି ବଡ଼ ବାବୁ ଆମ୍ଭର ତାହାକୁ
ବିଭା କରିଦେଲେ ସେ ଦୁଃଶଳା ଝିଅକୁ ।
ସିନ୍ଧୁଦେଶେ ଯେତେକ ଜନ୍ମ ହୋଇଛନ୍ତି
ଦୁରାଚାର ହୋଇଣ ଦିନକୁ ସାରନ୍ତି ।
ସବୁ କ୍ଷୀରଯାକ ତ କରନ୍ତି ଭୋଜନ
ଅଘୃଣୀରେ ଲେଖା ତ ସିନ୍ଧୁ ଦେଶ ଜନ ।
କାଲି ମୋ ଯୁଦ୍ଧ ଦେଖି ଦୁର୍ଯ୍ୟୋଧନ ରାଜା
ଅତି ଭୟେ ଥରାଇ ଦେଇକରି ମଜ୍ଜା ।
କରିବେ ମନେ ମହୀ ମଧ୍ୟେ ଧନୁଶର-
ମାନଙ୍କେ ଅର୍ଜୁନ ଅଟନ୍ତି ଅଗ୍ରଗାର ।
ମୋ ପରି ଯୋଦ୍ଧାଏ ଗାଣ୍ଡୀବଧନୁକୁ ଧରି
ଯୁଝୁଥିବ ଶତ୍ରୁଙ୍କୁ ଦେବାକୁ ସଂହାରି ।
ସାରଥି ହୋଇ ତୁମ୍ଭେ ବସିଥିବ ରଥେ
କେଉଁ କଥା ଅସାଧ ହେବ ମୋର ହାତେ ।
ତୁମ୍ଭେ ଯେବେ ପ୍ରସନ୍ନ ହୁଅ ମୋତେ ହରି
ଅସାଧ କଥା ଯାକ ଦେବି ସାଧ କରି ।
ଚନ୍ଦ୍ରଙ୍କରେ କଳଙ୍କ ଜଳରେ ଶୀତଳ
ଥିଲାପରି ପ୍ରତିଜ୍ଞାସତ୍ୟ ମୋ ଲୋକପାଳ ।
ମୋହର ବାହୁବଳ ଧନୁ ଅସ୍ତ୍ରକୁଳ-
ମାନଙ୍କୁ ହରି କେବେ ନ ବୋଲି ଦୁର୍ବଳ ।
ଯୁଦ୍ଧେ ଆଜଯାଏ କାହାକୁ ନାହିଁ ହାରି
କିପାଇଁ ନ ପାରିବି ସିନ୍ଧୁନୃପ ମାରି ।
ସାଧୁଠାରେ ବିନତି ବ୍ରାହ୍ମଣରେ ସତ୍ୟ
କୁଶଳରେ ଲକ୍ଷ୍ମୀ ଯେଉଁ ରୂପରେ ନିତ୍ୟ ।
ସେ ରୂପେ ତୁମ୍ଭଠାରେ ଜୟ ଅଛି ରହି
ତୁମ୍ଭେ ଥିଲାଠାରେ ଅଜୟ ହେବ କାହିଁ ।
ଏହା କହି କୃଷ୍ଣଙ୍କୁ ଅରଜୁନ ବୀର
ବୋଇଲେ ରଥ କରିଥିବଟି ତିଆର ।
ବଡ଼କାର୍ଯ୍ୟ ମୋହର ପଡ଼ିଅଛ ହରି
ସୂର୍ଯ୍ୟ ଉଦୟକୁ ଯୁଝିବା ଇଚ୍ଛା କରି ।
ଏ ରୂପେ କଥାବାର୍ତ୍ତା କୃଷ୍ଣାର୍ଜୁନ ହେଲେ
ଶୋକ ଦୁଃଖେ ସେ ରାତ୍ରି ନିଦ୍ରାକୁ ଭଜିଲେ ।

ନର ନାରାୟଣଙ୍କ କ୍ରୋଧ ଜାଣ ଦେବେ
କି କରିବା ବୋଲି ବସିଲେ ଭାଳି ସର୍ବେ ।
ଏହି କାଳେ ଦାରୁଣ ହୋଇଲେ ପବନ
ବହି ଚାରିଦିଗେ ହୋଇଲେ ପରିପୂର୍ଣ୍ଣ ।
କବନ୍ଧ ତୁଲେ ସୂର୍ଯ୍ୟ ମଣ୍ଡଳେ ପରିଧି
ସେ ରାତ୍ରିରେ ଦିଶିଲା ଜାଣ ନୃପନିଧି ।
ମେଘ ବିନା ବିଜୁଳି ଯାଆନ୍ତେ ଚହଟି
ପଡ଼ିଲା ହେ ରାଜନ ବ୍ରଜ କୋଟି କୋଟି ।
ବନ ପରବତ ତୁଲରେ ମହୀଦେବୀ
ଅତିଶୟେ ଥରିଗଲେ ହେ ଭୟ ଭାବି ।
ସମୁଦ୍ରମାନ ସ୍ତବ୍ଧ ହୋଇଣ ରହିଲେ
ନଦୀମାନେ ପଶ୍ଚିମ ମୁଖରେ ବହିଲେ ।
ମଳମୂତ୍ର ଉତ୍ସର୍ଗି ଗଜ ବାଜିକୁଳ
ପୂରାଇଲେ ନୟନଯୁଗଳରେ ଜଳ ।
ତୁମ୍ଭ ସଇନ୍ୟ ଯାକ ହୋଇଣ ତାଟକା
ଛାନିଆ ହୋଇ ଝାଳବୁହାଇଲେ ଏକା ।
ଏଥୁଅନ୍ତେ ଅର୍ଜ୍ଜୁନ କହିଲେ କୃଷ୍ଣଙ୍କୁ
ଯାଅ ତୁମେ ଆପଣ ଭଗ୍ନୀ ସମୀପକୁ ।
ଉତ୍ତରା ମଧ୍ୟ ପତି ଦୁଃଖେ ଦୁଃଖୀ ହୋଇ
କାନ୍ଦୁଛନ୍ତି ତାହାଙ୍କୁ ପ୍ରବୋଧିବା ଥାଇ ।
ଏହା ଶୁଣି ଶ୍ରୀକୃଷ୍ଣ ବଡ଼ ଦୁଃଖ କରି
ପରବେଶ ହୋଇଲେ ଅରଜୁନ ପୁରୀ ।
କହିଲେ ଗୋ ଭଗ୍ନୀ ବହୁଙ୍କ ତୁଲେ ଶୋକ
ନ କରି ଧୈର୍ଯ୍ୟ ହୁଅ ବହିଣ ବିବେକ ।
ସବୁ ପ୍ରାଣୀମାନଙ୍କୁ କାଳ ଜାଣି କାଳ
ନେବାରଟି ଭଗ୍ନି ହୋଇଅଛି ଏ୍ ମୂଳ ।
ପିତୃ ପରି ପରାକ୍ରମ କରିଣ ସୁତ
ତୁମ୍ଭର ଆଜି ଯୁଦ୍ଧେ ଯୋଦ୍ଧା କରି ହତ ।
ମହାରଥିଙ୍କୁ ସେ ବିମୁଖ କରାଇଲେ
ଉପର ଅରଜିବା ଲୋକଙ୍କୁ ପାଇଲେ ।
ବୀରମାତା ବୀରପତ୍ନୀ ଯେ ବୀର ସୁତା
ହୋଇ କିମ୍ପା ମନରେ କରୁଅଛ ଚିନ୍ତା ।
ବୀରମାନଙ୍କରତ ଯୁଦ୍ଧରେ ମରଣ
ହେବା ଭଲ ବୋଲି ବୋଲନ୍ତି ଲୋକେ ଜାଣ ।
ବଳଘାତୀ ଜୟଦ୍ରଥର କାଲି ମାଥ
କଟାଇ ଭୂମିକି କରିବି ଦେହସାଥ ।
ସ୍ୱର୍ଗ ମର୍ତ୍ତ୍ୟ ପାତାଳେ ରଖିଲେ ଯେ ତାକୁ
ମାରିବେ ଅର୍ଜ୍ଜୁନ ଆସୁଛି ମୋ ମନକୁ ।
ଯେଉଁ ଗତି ମୋହର ଭାବୁଅଛି ମନ
ସେ ଗତିକି ପାଇଲେ ତୁମ୍ଭର ନନ୍ଦନ ।

ତୁମ୍ଭେ କାହିଁପାଇଁ କରୁଅଛ ସନ୍ତାପ
ନୟନ - ନଳିନରୁ ପକାଇଣ ଆପ ।
ପିତୃ ମାତୃ କୁଳ ଅନୁରୂପରେ ଗୁଣ
କରି ତୁମ୍ଭର ପୁତ୍ର ପାଇଲେ ମରଣ ।
ଏଥିକି ତୁମ୍ଭେ ଯେବେ କରିବ ଶୋଚନା
ଜାଣିବା ଲୋକେ ନିନ୍ଦା କରିବେ ହେ ସିନା ।
ବହୁଙ୍କୁ ଏବେ ତୁମ୍ଭେ ପ୍ରବୋଧନା କରି
କର ହୃଦଶୋକ ଦୂର ଗୋ ବରନାରୀ ।
ପୁତ୍ରକୁ ମରାଇବା ଲୋକ ଜୟଦ୍ରଥ
ବୋଲି ତ କ୍ରୋଧ ତାକୁ ହୋଇଛନ୍ତି ପାର୍ଥ ।
ଯୁଦ୍ଧରେ ସେ ପାଆନ୍ତେ ମରଣ ଅନର୍ଥ
ଶୁଣିବତ ତୁମ୍ଭେ ଅର୍ଜ୍ଜୁନ ପୁରୁଷାର୍ଥ ।
ସୁରାସୁର ପିଶାଚ ଉରଗ ରକ୍ଷକ
ହେଲେ ଜୟଦ୍ରଥର କାଟିବେ ପାର୍ଥ ବେକ ।
କୃଷ୍ଣଙ୍କ ମୁଖୁଁ ଯହୁଁ ଏ କଥା ଶୁଣିଲେ
ହା ପୁତ୍ର ମଲୁ ବୋଲି ସୁଭଦ୍ରା କାନ୍ଦିଲେ ।
ତୋ ମୁଖ ମଣ୍ଡଳକୁ ଆଜିଟି ସୁଧାଂଶୁ
ସମ ନୋହିବେଟି ପଡ଼ିଲେ ହେଲେ ପାଂଶୁ ।
ଆରେ ଅଭିମନ୍ୟୁ ତୋ ଚଞ୍ଚଳ ନେତ୍ର ଦୁଇ
ବାତାହତ କମଳପତ୍ର ଥିବ ବହି ।
ଯେ ଗଣ୍ଡବେନି ତୋ ଦର୍ପଣ ପରି ଝଳି
ସେ ଗଣ୍ଡରେ ହୋଇଥିବୁଟି ଧୂଳି ବୋଳି ।
ତୋ ନାସାକୁ କୀରନାସା ଯା ବୋଲେ ଭାଳି
ସେ କଥାକୁ ପାଳିଲୁ ରକ୍ତେ ନାସା ବୋଳି ।
ଦେଖିଲେ ହେଲେ ତୋ ମୁଖପଦ୍ମ ମ୍ଳାନ
କାକପକ୍ଷୀ ଅଳିଏ ନ ଛାଡ଼ିବେ ସ୍ଥାନ
କରୀକର ପରି ତୋହର ବାହୁ ବେନି
ଏବେ ଆଶ୍ରେ କଲା ମରନ୍ତେ ତୁ ଅବନୀ ।
ଅତି ବିଶାଳ ତୋ ଅଟଇ ବକ୍ଷ ସ୍ଥଳ
ତହିଁରେ ତୁ ଲଗାଇଥାଉ କେତେ ମାଳ ।
ତୁ ମରନ୍ତେ ତୋହର ହୃଦତଟ ଗିରି
ମଣ୍ଡିଥିବେ ଝଳି ଦାବାଗ୍ନି ଜ୍ୟୋତି ପରି ।
ରଣଭୂମି ଆକାଶେ ସୂର୍ଯ୍ୟଦେବ ପରି
ପଡ଼ିଥିବୁ ଶରକିରଣେ ଦେହ ହାରି ।
ସେବତୀପାଖୁଡ଼ି ବିଛାଇ ପଲଙ୍କରେ
ଶୋଆଇଲେ ନ ଶୋଉ ଶୋଇଲୁ ଭୂମିରେ
ତୁ ଶୋଇବା ବେଳେ ଥାଆନ୍ତି ଜଗି ନାରୀ
ଏବେ ବିଲୁଆ ଜଗନ୍ତି ସେହି ପରି ।
ତୋ ମାଉଁସ ଖାଇବା ଲୋଭରେ ଶ୍ୱାପଦେ
ତୋ ପାଶେ ରହୁଥିବେ ମୋଦ ବହି ହୃଦେ ।

ପାଣ୍ଡବ ପାଞ୍ଚାଳଙ୍କୁ ଘେନି କୃଷ୍ଣ ସାହା
ହୋଇ ତ ଥିଲେ ତୋର ହୋଇ ଚକ୍ରବାହା ।
ତୁ ତ ମହାରଥିମାନଙ୍କରେ ମଣ୍ଡନ
କାହି ପାଇଁ ବାବୁରେ ହାରିଲୁ ଜୀବନ ।
ଯେଉଁଆଡ଼େ ଚାହିଁଲେ ସେ ଆଡ଼େ ତୁ ମୋତେ
ଦିଶୁଛୁ ନିଅ ମୋତେ ତୋହର ସଙ୍ଗତେ ।
ତୋତେ ଛାଡ଼ିଣ କ୍ଷଣେ ସ୍ୱର୍ଗ ପରି ପୁର
ପାଇଲେ ହେଲେ ମନ ନୋହିବ ମୋ ଧୀର ।
ଦେଖାଦେଇ କିପାଇଁ ନ କହୁଛୁ କଥା
ଲାଗୁ କି ନାହିଁ ବାବୁ ତୋତେ ମୋର ବ୍ୟଥା ।
ଧିକ୍ ହେଉ ଶ୍ରୀକୃଷ୍ଣ ଅର୍ଜୁନଙ୍କ ବଳ
ସେ ଥାଉଁ ଯାହା ତୋ ଧଇଲା ବାଳ କାଳ ।
ପାଞ୍ଚାଳ କୟିକେୟମାନେ କି ଯୁଝିଲେ
ପିଲାଟିକି ମୋହର ରଖି ନ ପାରିଲେ ।
ଦେଢ଼ଶୁର ଭୀମ ଯେ ବୋଲାବନ୍ତି ବଳୀ
ସେ ଥାଉ ତୁ ହୋଇଲୁ ରଣଧୂଳି ବୋଳି ।
କୃଷ୍ଣଙ୍କର ଭଣଜା ଅର୍ଜୁନର ସୁତ
ବୋଲାଇ ତ ଯୁଦ୍ଧରେ ହେଲୁ ଅରକ୍ଷିତ ।
ସ୍ୱପ୍ନଧନ ପରି ବାବୁ ହେଲୁ ତୁ ମୋତେ
ଆଉ ମୋତେ ଆଣିଦେବ କିଏ ତୋତେ ।
ଉତ୍ତରାର ହୃଦହାଣ୍ଡିରୁ ଶୋକକ୍ଷୀର
ଉତୁରୁଛି ତାକୁ କେ କରିବ ନିବାର ।
ତରୁଣ ବୟସରେ ଛାଡ଼ିଣ ତରୁଣୀ
ସ୍ୱର୍ଗପୁରେ ଗଲୁ କି କରିଣ ଆରଣି ।
ଜାଣୁଛି ତୋତେ ମୁହିଁ ସୁରସ୍ତିରୀ ରତି
ମିଳିବ ଉତ୍ତରା ପାଇବଟି ବିପତ୍ତି ।
ପିଲାକାଳୁଁ ବଢ଼ାଇ ହୁଅନ୍ତେ ଯୁବାକାଳ
ଛାଡ଼ିଗଲୁ ନିଷ୍ଠୁର ହୃଦ କରି ବାଳ ।
ସବୁ ପ୍ରାଣିମାନେ ତ କାଳର ଅଧୀନ
ଜାଣିଲେ ହେଲେ ଶୋକେ ଛାଡ଼ିବ ଜୀବନ ।
ଯଜ୍ଞା ଦାନଶୀଳ କୃତାତ୍ମା ବ୍ରହ୍ମଚାରୀ
କୃତଜ୍ଞ ଦାତା ପୁଣ୍ୟତୀର୍ଥ ସ୍ନାନକାରୀ ।
ଗୁରୁସେବା ସହସ୍ର ଦକ୍ଷିଣାପ୍ରଦାତା
ଅଗ୍ନି ଦ୍ୱିଜ ପିତୃ ଯେ ମାତୃ ସେବାକର୍ତ୍ତା ।
ଅତିଥିମନୋରଥକାରୀ ମହାଶୂନ୍ୟ
ସୁଚରିତ୍ର ରାଜନ ବିପତ୍ତିରେ ଧୀର ।
ଦଣ୍ଡହୀନ ଚାରି ଆଶ୍ରମବର୍ଣ୍ଣ ଜନ
ସ୍ୱଭାର୍ଯ୍ୟାରତ ଦୀନ ଦୟାଳୁ ଅପିଶୁନ ।
ଶରଣାପନ୍ନ ଦ୍ୱିଜ ଅଭୟ ବିଧାତା
ଏକ ପତ୍ନୀପତି ଯୋଗେ ସହସ୍ରଦାତା ।
ଧର୍ମଶୀଳ ଯେ ଅନ୍ନ ଦେଇଣ ଭୁଞ୍ଜଇ
ଶତ୍ରୁକୁ ମାରି ଯେଉଁ ଲୋକଟି ମରଇ ।
ପରଉପକାରୀ ଯେ ତ୍ୟାଗୀ କ୍ଷମାବନ୍ତ
ମଧୁ ଯେ ମାଂସ ମଦ୍ୟ ଅନୃତ ନିବୃତ ।
ସମଦର୍ଶୀ ଯେ ଜିତେନ୍ଦ୍ରିୟ ସାଧୁଜନ
ଏଲୋକମାନଙ୍କର ହୁଏ ଯେଉଁ ସ୍ଥାନ ।
ସେ ସ୍ଥାନ ଅଭିମନ୍ୟୁ ପାଅ ମୁଁ ବୋଲୁଛି
ଗଲୁନି ତ ମୋହର ପାଖରୁ ମୃତୁଛି ।
ଏହିରୂପେ ସୁଭଦ୍ରା ଡକା ପାଡୁଥିଲେ
ସଙ୍ଗତରେ ଉତ୍ତରା ବଧୂ ମାତ୍ର ଥିଲେ ।
ଏକା ହୋଇଣ କୃଷ୍ଣା ସେଠାକୁ ଆସିଲେ
କି କରିବା ସୁଭଦ୍ରେ ବୋଲିଣ କାନ୍ଦିଲେ ।
ସେ ତିନିଙ୍କର ଶୋକ ହୁଅନ୍ତେ ପ୍ରବଳ
ଦେହ ଆଶ୍ରେ କଲାଟି ଯାଇ ଧରାତଳ ।
କୃଷ୍ଣ ସେମାନଙ୍କ ମୁଖରେ ସୁବାସିତ-
ଜଳକୁ ସିଞ୍ଚିଲେ ହେବାକୁ ଜ୍ଞାନପ୍ରାପ୍ତ ।
ସେ ସକାଶୁଁ ସେ ତିନି ନବୀନା ଚେତନା
ପାଇକରି କାନ୍ଦିଲେ ହୋଇ ଦୁଃଖମନା ।
କୃଷ୍ଣ ବୋଇଲେ ଆଗୋ ସୁଭଦ୍ରା ପାଞ୍ଚାଳି
ନ କାନ୍ଦ ପୁତ୍ର ମରିବାର ମନେ ଭାଳି ।
ବଧୂଙ୍କୁ ଆଶ୍ୱାସନା କରି ଏବେ ବସ
କି କରିବା ବିହି ଭାଙ୍ଗିଲା ପୁତ୍ର ଆଶ ।
ଅଭିମନ୍ୟୁ ଆଜି ପାଇଲେ ଯେଉଁ ଗତି
ସେ ଗତି ଇଚ୍ଛା କରୁଅଛି ଆମ୍ଭ ମତି ।
ଏ ବାହାରେ ଯେତେ କ୍ଷତ୍ରିୟ- ପୁଙ୍ଗବ
ହୋଇଅଛନ୍ତି ଆମ୍ଭ କୁଳରେ ସମ୍ଭବ ।
ସେମାନେ ମଧ୍ୟ ଅଭିମନ୍ୟୁଙ୍କର ପରି
ମରିବାକୁ ଇଚ୍ଛା ଗୋ ମନେ ଛନ୍ତି କରି ।
ଏରୂପେ ଦ୍ରୌପଦୀ ସୁଭଦ୍ରା ଉତ୍ତରାଙ୍କୁ
ଆଶ୍ୱାସନା କରି କହିଣ ବଚନକୁ ।
କୃଷ୍ଣ ଅର୍ଜୁନଙ୍କର ସମୀପକୁ ଗଲେ
ଅର୍ଜୁନଙ୍କୁ ସମସ୍ତ ବୃତ୍ତାନ୍ତ କହିଲେ ।
ନରପତିମାନଙ୍କୁ ଦେଇଣ ମେଲାଣି
ଅର୍ଜୁନଙ୍କ ପୁରକୁ ଗଲେ ଚକ୍ରପାଣି ।
ଅର୍ଜୁନଙ୍କ ପୁରରେ କରି ଆଚମନ
ବାଲିବେଦୀ ଗୋଟିଏ କଲିଣ ବହନ ।
ତହିଁରେ କୁଶ ବିଡ଼ାକେତେ ପକାଇଲେ
ପୁଷ୍ପ ଗନ୍ଧ ଚନ୍ଦନ ଲାଜରେ ମଣ୍ଡିଲେ ।
ଆୟୁଧଟିମାନଙ୍କୁ ଦେଇ ଘଷି ପୋଛି
ରଖିଲେ ସେହି ବେଦୀପାଖରେ ଶ୍ରୀବତ୍ସି ।

ଏ ଅନ୍ତେ ଅର୍ଜୁନ କରନ୍ତେ ଆଚମନ
ତୋରା ହୋଇ ତାଙ୍କର ଯେ ସେବକ ଜନ ।
ସେମାନେ ଶିବଙ୍କର ବଳି ସାମଗିରି
ଆଣିଦେଲେ ପାର୍ଥେ ସମୟ ଜାଣି କରି ।
ଅର୍ଜୁନ ନିତି ଶୁଦ୍ଧ କରି ନିଜ ଗାତ୍ର
ଶିବେ ବଳିଦେଲେ ପୁଆନ୍ତି ଶୋଇ ରାତ୍ର ।
ଅରଜୁନ ସେ ଦିନ ଶିବଙ୍କୁ ନ ଦେଇ
କୃଷ୍ଣଙ୍କୁ ବଳି- ଦେଇ ପୂଜିଲେ ନୃସାଇଁ ।
କୃଷ୍ଣ ଅରଜୁନଙ୍କଠାରୁ ପାଇ ପୂଜା
ଅର୍ଜୁନଙ୍କ ମଙ୍ଗଳ ବାଞ୍ଛିଲେ ହେ ରାଜା ।
ଅରଜୁନଙ୍କଠାରୁ ମେଲାଣି ହୋଇଲେ
ଶୁଅ ତୁମ୍ଭେ ବସାକୁ ଯାଉଛି ବୋଇଲେ ।
ଅର୍ଜୁନଙ୍କର ବସା ଯୋଦ୍ଧାଙ୍କୁ ଜଗାଇ
ଦାରୁକଙ୍କୁ ଘେନି ବସାରେ ହେଲେ ଯାଇ ।
ଶେଯ ପକାଇଣ ସେ ବସାରେ ଶୋଇଲେ
ଅର୍ଜୁନ ତେଜୋଦ୍ୟୁତି ବୃଦ୍ଧି ବିଚାରିଲେ ।
ଯେଉଁ ହରି ପ୍ରାଣୀଙ୍କ- ଈଶ୍ୱର ଈଶ୍ୱର
ସେ ଭାବନା କରିଲେ ହିତ ଅର୍ଜୁନର ।
ଯୋଗ ଆଶ୍ରେକରି ରହିଲେ ଦଣ୍ଡଧାରୀ
ଏଥିରୁ ଚମତ୍କାର କାହିଁ ତିନିପୁରୀ ।
ପାଣ୍ଡବଙ୍କ ବସାରେ ଉଜାଗର ହୋଇ
ଏହି କଥାବାର୍ତ୍ତା ହୋଇଲେ ନରସାଇଁ ।
ଜୟଦ୍ରଥ ରାଜା ତ ମହାବଳୀୟାର
କି ରୂପେ ପାର୍ଥ କାଲି କରିବେ ସଂହାରି ।
ପୁତ୍ରଶୋକସନ୍ତପ୍ତ ହୋଇଣ ମହତ-
ଭାର ପାର୍ଥ ବହିଲେ କରିବା କହ ତ ।
ଦୁର୍ଯ୍ୟୋଧନରାଜା ତ ମହାରଥୀବୃନ୍ଦ
ଜଗାଇବେ ତାହାଙ୍କୁ ହୋଇଣ ଆନନ୍ଦ ।
ସେମାନେ ତ ସମସ୍ତେ ଅସ୍ତ୍ରରେ ପ୍ରସିଦ୍ଧ
ହାରିବେ ପରା କାଲି ପାର୍ଥ କଲେ ଯୁଦ୍ଧ ।
ଜୟଦ୍ରଥ ରାଜାଙ୍କୁ ନ ପାରିଲେ ମାରି
ପଶିବେ ଅଗ୍ନିରେ ଗାଣ୍ଡୀବଧନୁର୍ଦ୍ଧାରୀ ।
ଯୁଧିଷ୍ଠିର ରାଜା ଯେ ମାରିଣ ବଇରୀ
ପାଉନାହିଁ ମନଟି ରାଜା ହେବା ପରି ।
ଆମ୍ଭମାନଙ୍କର ତ ସୁକୃତକୁ ପାଇ
ଦିଅନ୍ତୁ ଯୁଦ୍ଧେ ଜୟଦ୍ରଥକୁ ବଢ଼ାଇ ।
ନ ମଲେ ଜୟଦ୍ରଥ ଆମ୍ଭର ମଙ୍ଗଳ
କରି ନ ପାରନ୍ତି ସକଳ ଲୋକପାଳ ।
ଏହିରୂପରେ ଲୋକେ ହୋଇ କଥାବାର୍ତ୍ତା
ପୁଆଇଲେ ରଜନୀ ଧରି ମହାଚିନ୍ତା ।

ସେହି ରାତି ଭିତରେ ଦାରୁକଙ୍କୁ ରାଇ
କହିଲେ କୃଷ୍ଣ ହୃଦେ କିଛି ଶଙ୍କା ଥାଇ ।
ଅରଜୁନ ତ ପୁତ୍ରଶୋକରେ ପ୍ରତିଜ୍ଞା
କଲେ କାରୁରଥିଙ୍କି କରିଣ ଅବଜ୍ଞା ।
ସେହି ପ୍ରତିଜ୍ଞା ଦୁର୍ଯ୍ୟୋଧନ ରାଜା ଶୁଣି
ଜଣାଇବେ ଜୟଦ୍ରଥଙ୍କୁ ରଥିଶ୍ରେଣୀ ।
ପୁତ୍ର ଘେନି ଦ୍ରୋଣ ରଖିବେ ଜୟଦ୍ରଥ-
ରାଜାଙ୍କୁ ତାର କେ ପାରିବ କାଟି ମାଥ ।
ସୂର୍ଯ୍ୟ ଅସ୍ତ ନୋହୁଁଣୁ ସିନ୍ଧୁଦେଶସାଇଁ
ଯେଉଁରୂପେ ମରିବ କରିବି ତା ମୁହିଁ ।
ଅର୍ଜୁନଙ୍କର ପରି ଜ୍ଞାତି ମିତ୍ର ଭାର୍ଯ୍ୟା-
ଠାରେ ମୋର ଜାଣ ନୁହଇ ସୁଖ ମଜ୍ଜା ।
ଅରଜୁନ ବିନାଟି ମୁହୂର୍ତ୍ତେ ଏ ମହୀ-
ମଧ୍ୟେ ମୁଁ ନ ରହିବି ବ୍ରତ ଅଛି ବହି ।
ଅର୍ଜୁନଙ୍କ ପାଇଁ କର୍ଣ୍ଣାଦି ରଥିକୁଳ
ବଳ ତୁଲେ ତାଙ୍କର ପୂରାଇବି କାଳ ।
କୁରୁ କରି ଗୋଟିଏ ରଖିବି ମୁଁ ନାହିଁ
ଦେବି ଯୁଧିଷ୍ଠିର ନୃପଙ୍କୁ ଏହି ମହୀ ।
କାଲି ତିନିଲୋକ ମୋହର ପରାକ୍ରମ
ଦେଖିବେ ପାର୍ଥ ପାଇଁ କରନ୍ତେ ସଂଗ୍ରାମ ।
ଅର୍ଜୁନଙ୍କଠାରେ ତ ସୁହୃଦତା ମୁହିଁ
ଦେଖାଇବି ଦୁର୍ବୃତ୍ତମାନଙ୍କୁ ବଢ଼ାଇ ।
ରଥ ହାତୀ ଘୋଡ଼ା ଯେ ଯୋଦ୍ଧାପନ୍ତିନର-
ମାନଙ୍କ ଅନ୍ତକ ହୋଇବ ମୋର ଶର ।
ଅର୍ଜୁନର ଯେ ଦୋଷୀ ସେ ମୋହର ଦୋଷ
ଅର୍ଦ୍ଧପ୍ରାଣ ଅର୍ଜୁନ ଅଛି ତ ମୁଁ ଭାଷି ।
ଅର୍ଜୁନଠାରୁ ପ୍ରିୟ ହୋଇ ମୋର କେହି
ଏ ମହୀରେ ନାହିଁ କହୁଛି ସତ୍ୟ ମୁହିଁ ।
ଶୁଣିଲ ତ ମୋଠାରୁ ବେଗେ ଯାଇ ତୁମ୍ଭେ
ତିଆର କର ରଥ ବୋଲୁଅଛୁଁ ଆମ୍ଭେ ।
କୌମୋଦକୀ ଯେ ଶକ୍ତି ଚକ୍ର ଧନୁଶର
ଥୋଇଥିବ ରଥରେ କହୁଛି ମୋହର ।
ଛତ୍ର ମଧ୍ୟେ ମୋ ରଥେ ଥିବଟି ରଖାଇ
ଗରୁଡ଼ଙ୍କୁ ଧ୍ୱଜ ଯେ କରାଇବ ନେଇ ।
ବଳାହକ ଶୈବ୍ୟ ସୁଗ୍ରୀବ ମେଘପୁଷ୍ପ
ଘୋଡ଼ାଙ୍କୁ ମଣ୍ଡିକରି ସୁବର୍ଣ୍ଣେ ଅମାପ ।
ମୋ ରଥରେ ତାଙ୍କୁ ଯୋଚିଥିବ ନେଇ
ତୁମ୍ଭେ ଥିବ କବଚ ଲଗାଇଣ ରହି ।
ଋଷଭସ୍ୱରେ ପାଞ୍ଚଜନ୍ୟ ଶଙ୍ଖ ଯେବେ
ବଜାଇବି ମୋ ଠାକୁ ଆସିବ ହେ ତେବେ ।

କ୍ଷଣକେ ହୋଇ ମୁଁ ଅର୍ଜୁନ ଶୋକହନ୍ତା
ଯୁଧିଷ୍ଠିର ରାଜାଙ୍କୁ ଛଡ଼ାଇବି ଚିନ୍ତା ।
ଅରଜୁନ ଯେବେ ମାରିବେ ଜୟଦ୍ରଥ
ପୂର୍ଣ୍ଣ ହୋଇବତ ଆମ୍ଭର ମନୋରଥ ।
ଅରଜୁନ କୀରତି ଘୋଡ଼ାଙ୍କୁ ବୁଝାଇ
କାହିଁପାଇଁ ଆମ୍ଭେ କରିବା ଯୁଦ୍ଧ ଯାଇ ।
ଦାରୁକ ବୋଇଲେ ହେ ବିଜୟ ଅଜୟ
ପାଇବା ପରି ପାଉନାହିଁ ମୋ ହୃଦୟ ।
ଆପଣ ତ ସାରଥି ହୋଇଛ ତାଙ୍କରି
ସେ କିମ୍ପା ନ ପାରିବେ ଜୟଦ୍ରଥ ମାରି ।
ମୋତେ ଯେଉଁରୂପରେ ଆଜ୍ଞା ଦେବା ହେଲେ
ସେହିରୂପେ ମୁଁ ଯାଇ କରୁଅଛି ଭଲେ ।
ଏହା କହି ଦାରୁକ ହୋଇଲେ ମେଲାଣି
ରଖିଲେ ମନେ କହିବାର ଚକ୍ରପାଣି ।
ଅରଜୁନ ଆପଣା ପ୍ରତିଜ୍ଞା ସୁମରି
ମୋହବଶେ ଶୋଇପଡ଼ିଲେ ଦଣ୍ଡଧାରୀ ।
ଅରଜୁନଙ୍କର ଯେ ଏ ରୀତିକି ଜାଣି
ସ୍ୱପନେ ଆସି ଦେଖା ଦେଲେ ଚକ୍ରପାଣି ।
କୃଷ୍ଣଙ୍କ ଆସିବାର ଦେଖି ଅରଜୁନ
ବସାଇଲେ ତାହାଙ୍କୁ ଦେଇଣ ଆସନ ।
ପୂର୍ବପରି ଆନନ୍ଦ ନ ଧରି ସେ ମନେ
ରହିଲେ ଦାସପରି କୃଷ୍ଣ ସନ୍ନିଧାନେ ।
କୃଷ୍ଣ ବୋଇଲେ ଆହେ ଅର୍ଜୁନ ବିଷାଦ
ଛାଡ଼ିଦେଇ ହୃଦରେ ବହି ମହାମୋଦ ।
କାଳକୁ ତ କେହି ହେ ଜାଣିପାରି ନାହିଁ
କାଳକୁ ଜାଣି ଶୋକ ଦୁଃଖଟି ହୁଅଇ ।
ଶୋକ କରିଲେ ନାଶ ଯାଏଟି ବିବେକ
ଏହା ଜାଣି ପଣ୍ଡିତେ ଛାଡ଼ିଥାନ୍ତି ଶୋକ ।
ହୀନବୁଦ୍ଧି ଲୋକେ ଶୋକରେ ଦୁଃଖୀ ହୋଇ
ହରାଇ ବିବେକ କହନ୍ତି ହୋଇ ବାଇ ।
ଅର୍ଜୁନ ବୋଇଲେ ଦୁରାତ୍ମା ଜୟଦ୍ରଥ
ରାଜାର କାଲି ମୁହିଁ କାଟିବାକୁ ମାଥ ।
ମହତ ପ୍ରତିଜ୍ଞା ଅଛି ମୁଁ କୃଷ୍ଣ କରି
ଭାବୁଛି ସେ ପ୍ରତିଜ୍ଞା ହୋଇବାକୁ ପାରି ।
ମୋ ପ୍ରତିଜ୍ଞା ନାଶ ପାଇଁ କି ସୁଯୋଧନ
ସୈନ୍ୟ ପଛେ ରଖିବ ତାକୁ ଜନାର୍ଦ୍ଦନ ।
ଏଗାର ଅକ୍ଷୌହିଣୀ ସେନା ତ ତାହାର
ପାରନ୍ତି ଇନ୍ଦ୍ର ତୁଲେ କରି ସେ ସମର ।
ସେମାନଙ୍କୁ ନ ଜିଣି ସିନ୍ଧୁନୃପ ମୁଣ୍ଡ
ଗଡ଼ାଇ କେ ପାରିବ କାଲି ରଣଦାଣ୍ଡ ।

ଏହି ସକାଶରୁଟି ଭାବୁଅଛି ମୁହିଁ
ମୋର ପ୍ରତିଜ୍ଞା ଅବା ଯିବ ବ୍ୟର୍ଥ ହୋଇ ।
ପ୍ରତିଜ୍ଞାହୀନ ହୋଇ ମୋର ପରି ଲୋକ
ସଭାରେ ବସି ଦେଖାଇବ ମୁଖ ନାକ ।
ହୋଇଛି ତ କୃଷ୍ଣ ଦକ୍ଷିଣାୟନକାଳ
ରାତ୍ର ପରି ଦିବସ ନୁହଇ ପ୍ରବଳ ।
ସୂର୍ଯ୍ୟ ଅସ୍ତ ନୋହୁଣୁ ମାରିବାର କଥା
ବଡ଼ କଷ୍ଟ ହେବ ହେ କୃଷ୍ଣ ମହାରଥା ।
ଅର୍ଜୁନଙ୍କର ଶୋକ ଶୁଣି ଯଦୁସାଇଁ
ଆଚମନ କରିଲେ ପୂର୍ବମୁଖ ହୋଇ ।
କହିଲେ ଅରଜୁନ ଅସ୍ତ୍ର ପାଶୁପତ।
ଜାଣିଥିଲେ କରିବ ଜୟଦ୍ରଥ ହତ ।
ଯେବେ ସେ ଅସ୍ତ୍ର ପାର୍ଥ ଗୋଚର ହେ ନାହିଁ
ଶିବଙ୍କୁ ମନେ ମନେ ଭଜ କହୁଥାଇଁ ।
ତାଙ୍କ ପ୍ରସାଦରୁ ପାଇ ସେ ଅସ୍ତ୍ରବର
କରିବ ଜୟଦ୍ରଥ ରାଜାଙ୍କୁ ସଂହାର ।
ଅର୍ଜୁନ କୃଷ୍ଣଙ୍କର ବଚନ ଘେନିଲେ
ଦେହ ଶୁଦ୍ଧ କରି ଶିବଙ୍କୁ ସୁମରିଲେ ।
ସେ ସରିକି ରାତିଟି ହେଲାଣି ପାହାନ୍ତି
କୃଷ୍ଣଙ୍କର ତୁଲରେ ଇନ୍ଦ୍ରଙ୍କ ସନ୍ତତି ।
ଆକାଶରେ ପବନ ପ୍ରାୟେ ଉଡ଼ିଗଲେ
ହିମାଳୟ ଆଦି ପର୍ବତ ଲଙ୍ଘିଲେ ।
କୃଷ୍ଣରେ ଗୃହୀତ ଦକ୍ଷିଣଭୁଜ ହୋଇ
ଅଛି ପାର୍ଥ ଉତ୍ତରଦିଗେ ହେଲେ ଯାଇ ।
ଶ୍ୱେତପର୍ବତକୁ କରନ୍ତେ ଦରଶନ
ଦେଖିଲେ ତହିଁ କୁବେରଙ୍କର ଯେ ସ୍ଥାନ ।
ପଦ୍ମ ଯେ ନୀଳୋତ୍ପଳ ଭୁଲରେ ଶୋଭିତ
ହୋଇ ତହିଁ ବହିଯାଆନ୍ତି ଜହ୍ନୁ ସୁତ ।
ତହିଁ ତଟବୃକ୍ଷରେ ପୁଷ୍ପଫଳ ଭାର-
ପାଇ ଆଶ୍ରେକରି ଅଛନ୍ତି କେତେ ବୀର ।
ହଂସ ହଂସରାଳୀ ହୋଇଣ ପନ୍ତି ପନ୍ତି
ଗଙ୍ଗା ବରଜଳରେ ପଡ଼ି ଭାସୁଛନ୍ତି ।
ଦେବ ଯକ୍ଷ କିନ୍ନର ଗନ୍ଧର୍ବ ଋଷିକୁଳ
ରହିବାରେ ତଟ ହୋଇଅଛି ସଂକୁଳ ।
ଗଙ୍ଗା ପାରି ହୋଇଣ ମନ୍ଦର ପ୍ରଦେଶ
ଦେଖିଲେ କୃଷ୍ଣ ତୁଲେ ପାର୍ଥ ବୀରଈଶ ।
ସେ ମନ୍ଦର ପର୍ବତେ ରହିଣ କିନ୍ନରୀ
ଗୀତ ଗାଉଅଛନ୍ତି କିନ୍ନରଙ୍କୁ ଧରି ।
ସୁନାରୂପା ମଣି ଯେ ରତ୍ନରେ ନିର୍ମିତ
ହୋଇଣ ଶୃଙ୍ଗମାନେ ଅଛନ୍ତି ବହୁତ ।

ମନ୍ଦାର ପୁଷ୍ପଙ୍କରେ ଅନ୍ଧାର ଆତଙ୍କ
ଛଡ଼ାଇ ପ୍ରଭା ବଢ଼ାଉଛି ସେ ଦିଗଙ୍କ ।
ଏ ରୂପରେ ଯେହୁ ମନ୍ଦାର ମହାଗିରି
ତାହାକୁ ଦୁଇ କୃଷ୍ଣ ଯାନ୍ତେ ଡେଇଁ କରି ।
ଅଞ୍ଜନ ପରି ବର୍ଣ୍ଣ ଯେଉଁ ପରବତ
ତାହାର ସମୀପକୁ ହୋଇକରି ଗତ ।
ବ୍ରହ୍ମତୁଙ୍ଗ ଆଦିଟି ନଦୀ ଦେଶଗଣ
ଅଶ୍ୱଶିର ଅଥର୍ବଣ ନାମରେ ସ୍ଥାନ ।
ସୁଶୃଙ୍ଗ ଶତଶୃ ବୃଷଦଂଶ ଗିରି
ହୋଇଣ କୃଷ୍ଣାର୍ଜ୍ଜୁନ ନିମିଷକେ ପାରି ।
ମହାମନ୍ଦରଙ୍କ ସମୀପେ ଯାଇ ହେଲେ
ଆକାଶ ମହୀତୁଲେ ସମୁଦ୍ର ଦେଖିଲେ ।
ଏ ବାହାରେ ଦେଖିଲେ କିନ୍ନର ଅପସରୀ
ଗନ୍ଧର୍ବେ ରହିଛନ୍ତି ମନ୍ଦରଗିରି ପୂରି ।
ଅଗ୍ନି ଚନ୍ଦ୍ର ସୂର୍ଯ୍ୟ ନକ୍ଷତ୍ର ପରି ତେଜ
ବହି ଅଛନ୍ତି ଜାଣ ସେ ପର୍ବତରାଜ ।
ସେ ପର୍ବତ ଅଗ୍ରରେ ସସ୍ର ସୂର୍ଯ୍ୟ ତେଜ
ଧରି ବସିଅଛନ୍ତି ଶିବ ଦେବରାଜ ।
ହୋଇଅଛି ବକଳ କଟୀ ମଧ ବାସ
କୃଷ୍ଣାଜିନ ତ ପଡ଼ିଅଛି କନ୍ଧଦେଶ ।
ଚନ୍ଦ୍ର ତୁଲେ ଜଟାମଣ୍ଡଳ ପାଇ ଶୋଭା
ମନନୟନର ତ କରୁଅଛି ଲୋଭା ।
ସମୀପରେ ପାର୍ବତୀ ଦେବୀ ବସିଛନ୍ତି
ପ୍ରକାଶ କୋଟିଚନ୍ଦ୍ର ଜିଣା ମୁଖକାନ୍ତି ।
କରପୁଟେ ଧରିଅଛନ୍ତି ଯେ ତ୍ରିଶୂଳ
ଜ୍ୱଳନପ୍ରାୟେ ସେ ଜାଜ୍ୱଲ୍ୟ ମହୀପାଳ ।
ପଡ଼ିଛି ଯେଉଁ ସର୍ପ ହୋଇ ହୃଦହାର
କରୁଛି ସେ ବିଷକୁ ମୁଖେ ଉଦଗାର ।
ପ୍ରମଥ ଗଣମାନେ ବେଢ଼ି ଚାରିପାଶେ
ଗୀତ ବାଦ୍ୟ ନୃତ୍ୟ କରୁ ଅଛନ୍ତି ତୋଷେ ।
ବ୍ରହ୍ମଋଷିମାନେ ପଢ଼ିଣ ଦିବ୍ୟ ସ୍ତବ
ସ୍ତୁତି କରୁଛନ୍ତି ହେବାକୁ ତାଙ୍କ ଭାବ ।
ସବୁ ଲୋକଙ୍କର ଗୋ ପିତା ସେ ଅଟନ୍ତି
ତାହାଙ୍କୁ ଦେଖି ନେତ୍ରେ ଅର୍ଜ୍ଜୁନ ଶ୍ରୀପତି ।
ଭୂମେ ପଡ଼ି ଦଣ୍ଡପ୍ରଣାମ ଦୁଇ ବୀରେ
କଲେ ସେ ରୁଦ୍ରଦେବତାଙ୍କର ପୟରେ ।
ଲୋକାଦି ବିଶ୍ୱକର୍ମା ଅବ୍ୟୟ ଈଶାନ
କାଳରୂପୀ ମନର ପରମ କାରଣ ।
ଆକାଶ ବାୟୁ ଜ୍ୟୋତିମାନଙ୍କର ସ୍ଥାନ
ମହାତ୍ମା ଅଜ ବାରିଧରା ସରଜନ ।

ଚରାଚର ପ୍ରାଣୀଙ୍କ କାରକ ନାଶନ
ପରମବ୍ରହ୍ମରୂପେ ପୃଥିବୀ ନିଦାନ ।
ଦେବ ଯକ୍ଷ ଦାନବ ମାନବ ପୂଜିତ
ସୂର୍ଯ୍ୟ ଚନ୍ଦ୍ର ଦୁହିଙ୍କ ପରି ଚଣ୍ଡ ଶୀତ ।
ଜ୍ଞାନିମାନଙ୍କରଟି ଜ୍ଞାନରେ ବିଦିତ
ଯେଉଁ ଶିବ ତାହାଙ୍କୁ ବାସୁଦେବସୁତ ।
କୃଷ୍ଣ ନମ୍ର ହୋଇଣ ପଶିଲେ ଶରଣ
ତାହାଙ୍କର ମହିମା କରିଣ ବଖାଣ ।
ଅରଜୁନ ନମିଲେ ପୁନଃ ପୁନଃ କରି
ଭୂତ ଭବ୍ୟ ଭବ ହେତୁ ଏ ଜାଣିପାରି ।
ନର ନାରାୟଣଙ୍କ ଆସିବାର ଦେଖି
ମନରେ ମହାହୃଷ୍ଟ ହୋଇ ତିନିଆଖି ।
ହସିକରି ବୋଇଲେ ଉଠ ଉଠ ବତ୍ସ
କି କାର୍ଯ୍ୟରେ ଆସିଛ କର ତା ପ୍ରକାଶ ।
ଉତ୍ତମ ହୋଇ ବାଟେ ଆସିଲ କି ତୁମ୍ଭେ
ପଚାରୁଛୁଁ ଆଗ କହ ତ ଶୁଣୁ ଆମ୍ଭେ ।
ହରଙ୍କ ଏ ବଚନେ ହର୍ଷମନ ହେଲେ ।
ଛିଡ଼ା ହୋଇଣ ବେନି କୃଷ୍ଣ ସ୍ତୁତି କଲେ ।
ଭବ ସର୍ବ ରୁଦ୍ର ବରଦ ପଶୁପତି
କପର୍ଦ୍ଦୀ ଉଗ୍ର ମହାଦେବ ଭୀମ ଶାନ୍ତି ।
ଈଶାନ ତ୍ର୍ୟମ୍ବକ ଭଗଘ୍ନାନ୍ଧକଘାତୀ
କୁମାରଗୁରୁ ନୀଳଗ୍ରୀବ ବିଶ୍ୱପତି ।
ପିନାକୀ ବେଦସ୍ପତି ସତ୍ୟ ବିଲୋହିତ
ଧୂମ୍ର ବ୍ୟାଧିରୂପ ସରବଦେବ ସ୍ତୁତ ।
ମହଦ୍‌ପତି ବିଭୁ ବୃଷଭଧ୍ୱଜ ପୂର୍ଣ୍ଣ-
ବ୍ରହ୍ମଣ୍ୟ ପ୍ରଜାପତି ଜଳତପ୍ୟମାନ ।
ବିଶ୍ୱଆତ୍ମା ବିଶ୍ୱସୃଜ ଯେ ବିଶ୍ୱବ୍ୟାପୀ
ସେବ୍ୟ ଭୂତପ୍ରଭୁ ଯେ ବ୍ରହ୍ମ ବକ୍ତ୍ରରୂପୀ ।
ଶଙ୍କର ସର୍ବ ଶିବ ଅଚିନ୍ତ୍ୟ ବସୁରେତା
ବ୍ରହ୍ମଚାରୀ ହବି ତ୍ରିନେତ୍ର ହର୍ତ୍ତା ଗୋପ୍ତା ।
ଅସଂଖ୍ୟେୟକର୍ମା ଯେ ହିରଣ୍ୟବରନ
ଅମ୍ବିକାଭର୍ତ୍ତା ଶୂଳୀ ଭକ୍ତାନୁକମ୍ପନ ।
ହିରଣ୍ୟବର୍ମା ଦଶଶତ ପାଦ ନେତ୍ର
ସହସ୍ର ଶିର ଭୁଜ ସସ୍ର କ୍ରୋଧଗାତ୍ର ।
ଏମନ୍ତଟି ଯେ ତୁମ୍ଭେ ତୁମ୍ଭଙ୍କୁ ପ୍ରଣତି
କରୁଛୁଁ କର ଆମ୍ଭ କାମନା ନୃପତି ।
ଅର୍ଜ୍ଜୁନ ରାତ୍ରେ ଯାହା ଦେଇ ପୂଜୁଥିଲେ
କୃଷ୍ଣଙ୍କୁ ତାହା ଶିବ ସମୀପେ ଦେଖିଲେ ।
ମନେ ମନେ ହରି ହରଙ୍କୁ ଅରଜୁନ
ପୂଜାକରି ହରଙ୍କୁ କହିଲେ ବଚନ ।

ଦିବ୍ୟ ଅସ୍ତ୍ର ଇଚ୍ଛାରେ ଆସିଅଛୁ ଆମ୍ଭେ
ଆଉ କିସ କହିବୁଁ ନ ଜାଣ କି ତୁମ୍ଭେ ।
ଅର୍ଜ୍ଜୁନଙ୍କ ବଚନ ଶୁଣି ଉମାସାଇଁ
ବୋଇଲେ ଜାଣିଲି ହେ ତୁମ୍ଭ ମନ ମୁହିଁ ।
ଯହିଁପାଇଁ ତୁମ୍ଭେ ଆସିଛ ମୋହଠାକୁ
ତା ଦେଉଛି ନିଅ ଲଭିଣ ହରଷକୁ ।
ମୋ ପାଖରେ ଯେଉଁ ଅମୃତସର ଅଛି
ତହିଁରେ ଧନୁଶର ଦୁହିଁଙ୍କି ରଖିଛି ।
ଦାନବମାନଙ୍କୁ ମୁଁ ସେ ଶରେ ସଂହାର
କରିଅଛି ପୂରୁବକାଳରେ ଅପାର ।
ଏବେ ମୋ ବୋଲେ ପଶି ସରେ ଧନୁଶର
ଆଣ ହେ ପୂର୍ଣ୍ଣକାମ ହେବ ଦୁହିଁଙ୍କର ।
ଏହା ଶୁଣିଣ ବେନି କୃଷ୍ଣ ସହିକଲେ
ଶିବଙ୍କ ପାରିଷଦମାନଙ୍କୁ ଘେନିଲେ ।
ହୁଅନ୍ତେ ପରବେଶ ସେ ସର ସମୀପ
ଦେଖିଲେ ସର ସୂର୍ଯ୍ୟମଣ୍ଡଳ ସ୍ୱରୂପ ।
ପୁଣି ଦୁଇ ସର୍ପେ ସହସ୍ରେ ଶିର ଥାଇ
ରହିଅଛନ୍ତି ମୁଖେ ଅଗ୍ନିଜ୍ୱାଳା ବହି ।
କୃଷ୍ଣ ଅରଜୁନ ଯେ ଆଚମନ କଲେ
ପାର୍ବତୀବଲ୍ଲଭଙ୍କ ପାଦରେ ନମିଲେ ।
ସେହି ସର୍ପଦ୍ୱୟଙ୍କୁ ଶତରୁଦ୍ରେ ସ୍ତୁତି-
କରି ପୁଣି ତାହାଙ୍କୁ କଲେ ସେ ପ୍ରଣତି ।
ଶିବଙ୍କୁ ମହାତମ୍ୟେ ସେ ଦିଓଟି ସର୍ପ
ସେହିକ୍ଷଣି ହୋଇଣ ଗଲେ ଶର ଚାପ ।
କୃଷ୍ଣ ଅରଜୁନ ତା ଦେଖି ପ୍ରୀତ ହେଲେ
ଦୁହେଁ ସେ ଧନୁଶର ଯାଇଣ ଧଇଲେ ।
ଶିବଙ୍କୁ ନେଇ ତାହା ସମର୍ପଣ କଲେ
ଦୁଇ କୃଷ୍ଣ ତୁନିଟି ହୋଇଣ ରହିଲେ ।
ଶିବଙ୍କ ପୃଷ୍ଠଆଡୁଁ ଗୋଟିଏ ବ୍ରହ୍ମଚାରୀ
ବାହାରିଲେ ପିଙ୍ଗଳଚକ୍ଷୁ ଛନ୍ତି ଧରି ।
ବଳିମାନଙ୍କେ ସେ ଅଟନ୍ତି ବଳୀୟାର
ନୀଳ ରକ୍ତ ଦିଶୁଛି ଦେହର ଆକାର ।
କୃଷ୍ଣ ଅରଜୁନ ଆଣିବା ଧନୁଶର
ଧରି କର୍ଣ୍ଣଯାଏ ଝିଂକିଲେ କରି ଧୀର ।
ତାହାଙ୍କର ରହିବା ଠାଣି ଝିଙ୍କିବାର
ଶିକ୍ଷା କଲେ ଅନାଇଁ ସୁଭଦ୍ରାର ବର ।
ଶିବ ସେକାଳେ ମନ୍ତ୍ର ଦେଲେ ଅର୍ଜ୍ଜୁନଙ୍କୁ
ଅର୍ଜ୍ଜୁନ ତା ଶିଖି ବହିଲେ ସରାଗକୁ ।
ବ୍ରହ୍ମଚାରୀ ଶର ବିନ୍ଧିନ୍ତେ ତ ସେ ସର-
ମଧ୍ୟରେ ଯାଇଣ ରହିଲା କରି ଘର ।

ତା ଦେଖି ବ୍ରହ୍ମଚାରୀ ଧନୁ କରେ ବହି
ସେ ସରେ କ୍ରୀଡ଼ା କଲେ ସହରଷ ହୋଇ ।
ଅରଣ୍ୟକ ପର୍ବରେ ପାଶୁପତ ଅସ୍ତ୍ର
ଘେନି ତ ଥିଲେ ପାର୍ଥ ଶୁଦ୍ଧକରି ଗାତ୍ର ।
ସେ କଥା ଅରଜୁନ ସୁମରଣା କଲେ
ଯେ ସନ୍ଦେହ ଥିଲା ତା ହୃଦରୁ ଛାଡ଼ିଲେ ।
ଶିବ ଅର୍ଜ୍ଜୁନଙ୍କର ମତ ଜାଣିପାରି
ଦେଲେ ପାଶୁପତ ଅସ୍ତ୍ରଟି ବର କରି ।
ସେରୂପେ ଦୁଇଥର ପାଶୁପତ ଅସ୍ତ୍ର
ପାଇଲେ ହେ ପାର୍ଥ ଅମ୍ବିକାଦେବୀପୁତ୍ର ।
ବେନି କୃଷ୍ଣ ନମିଣ ଶିବଙ୍କ ପୟରେ
ଅନୁଜ୍ଞା ପାଇ ଆସି ରହି ... ବସାରେ ।
ଏ ଅନ୍ତରେ ରଜନୀ ହେଲା ଅବଶେଷ
କାକଙ୍କ ଡାକହାକ ହୋଇଲା ବିଶେଷ ।
ଉଲୁକକୁଳ ମୂକ ହୋଇଣ ରହିଲେ
ଲୋକେ ତୁଣ୍ଡଚହଳ କରିଣ ଉଠିଲେ
ଯୁଧିଷ୍ଠିର ରାଜାଙ୍କୁ ଉଠାଇବା ପାଇଁ
ବେଣୁ ବୀଣାଟି ବଜାଇଲେ କେହୁ ଯାଇ ।
ଗାୟକେ ରାଗରେ ଗାଇଲେ ଗୀତମାନ
ଭାଟ କରିଲେ ସ୍ତୁତିମାନଙ୍କୁ ପଠନ ।
ନର୍ତ୍ତକେ ତାହା ଦେଖି ମାଦଳ ବାଇଲେ
ଯୁଧିଷ୍ଠିରଙ୍କ ଉଠିବାକୁ ନୃତ୍ୟ କଲେ ।
ଅତି ମଧୁରରେ ଶୁଭନ୍ତେ ଶଙ୍ଖରଡ଼ି
ଯୁଧିଷ୍ଠିରରାଜା ବସିଲେ ଶଯ୍ୟା ଛାଡ଼ି ।
ବାହ୍ୟକ୍ରିୟା ଆଦି କରମକୁ ସାରିଲେ
ସ୍ନାନଘରେ ଯାଇଣ ପ୍ରବେଶ ହୋଇଲେ ।
ପୂର୍ବୁଁ ଶଏଅଷ୍ଟଉତ୍ତର ଭୃତ୍ୟଜନ
ଶୁକଳ ବସ୍ତ୍ର ପିନ୍ଧିଥିଲେ କରି ସ୍ନାନ ।
ସୁବର୍ଣ୍ଣ ମାଠିଆରେ ପାଣିମାନ ଧରି
ଆସିଲେ ସେହିଠାକୁ କାଳ ଜାଣିପାରି ।
ତା ଦେଖି ଯୁଧିଷ୍ଠିର ବସି ଭଦ୍ରାସନେ
ବୋଳାଇଲେ ଚନ୍ଦନ ଅତର ଅପଘନେ ।
ଯତନରେ ବାସିତ ମନ୍ତ୍ରପୂତ ଜଳ
କରାଇ ସ୍ନାନ କଲେ ପାଣ୍ଡବ ମହୀପାଳ ।
ସରୁ ଲୁଗାଟିଏ ତ ମସ୍ତକେ ବାନ୍ଧିଲେ
ମସ୍ତକଜଳ ଦେହଜଳ ପୋଛିଦେଲେ ।
ଶୁକଳ ପାଟବସ୍ତ୍ର ଦେଇଣ ପିନ୍ଧାଇ
ଦେଲେ ଯେ କୁଞ୍ଚ ପାଞ୍ଚ ଆଗକୁ ଲମ୍ବାଇ ।
ସୁବାସିତ ଚନ୍ଦନ ଅଙ୍ଗରେ ବୋଳିଲେ
ଅମୂଲ୍ୟ ଫୁଲମାଳ ଗଳେ ଲମ୍ବାଇଲେ ।

ଦିବ୍ୟ ଅଳଙ୍କାରମାନଙ୍କୁ ଦେଲେ ଭରି
ଦିଶିଲେ ସେ ଉଦୟ ସୂର୍ଯ୍ୟଦେବ ପରି ।
ଯୁଧିଷ୍ଠିରରାଜା ଯେ ସଜଡ଼ା ଦୋଷଡ଼ା
ପକାଇ କାନ୍ଧେ ଏ ଅନ୍ତରେ ହୋଇ ଛିଡ଼ା ।
ପୂର୍ବକୁ ମୁଖ କରି ବସି ସନ୍ଧ୍ୟା କଲେ
ପଇତାରେ ହାତକୁ ଦେଇଣ ଜପିଲେ ।
ସନ୍ଧ୍ୟା କରି ଅଗ୍ନି ଘରକୁ ନୃପ ଯାଇ
ହୋମ କଲେ ଅଗ୍ନିରେ ସମିଧ ପକାଇ ।
ହୋମ ସାରି ଦ୍ୱିତୀୟ ଦ୍ୱାରକୁ ସେ ଗଲେ
ବେଦବିଦ ଦ୍ୱିଜମାନଙ୍କୁଟି ଦେଖିଲେ ।
ଗଣତିରେ ସହସ୍ରେ ଆଠଟି ସେ ଦ୍ୱିଜ
ବହିଛନ୍ତି ସୂର୍ଯ୍ୟପରାୟେ ଦେହ ତେଜ ।
ଅକ୍ଷତ ଫୁଲ ତାଙ୍କୁ ଦେଇଣ ନୃପତି
କରାଇଲେ ସ୍ୱସ୍ତିବାଚନ ବହି ପ୍ରୀତି ।
ଏହା ବାହାରେ ବହୁ ଅର୍ଘ୍ୟ ସମର୍ପିଲେ
ଜଣ ଜଣଙ୍କର ସୁନିଆଁଟିଏ ଦେଲେ ।
ବସ୍ତ୍ର ଅଳଙ୍କାର ତୁଲରେ ଶଏ ଘୋଡ଼ା
ଦେଲେ ଯୁଧିଷ୍ଠିର ଦ୍ୱିଜଙ୍କୁ ହୋଇ ଛିଡ଼ା ।
ହେମଶୃଙ୍ଗ ଯେ ରୌପ୍ୟଖୁରା ଶଏ ଗାଈ
ସବତ୍ସା କରି ଦେଲେ ଦ୍ୱିଜ ହାତେ ନେଇ ।
ରତ୍ନସୁବର୍ଣ୍ଣରେ ନିର୍ମିତ ବର୍ଦ୍ଧମାନ
ନନ୍ଦ୍ୟାବର୍ତ୍ତ ସ୍ୱସ୍ତିକ ଆଦି ପାତ୍ରମାନ ।
ମାଲ୍ୟ ଜଳକୁମ୍ଭ ଯେ ଜ୍ୱଳନ୍ତାଦହନ
ଦଧି ଘୃତ ମହୁ ମଙ୍ଗଳ ପକ୍ଷିଗଣ ।
ଗୋରଚନାରେ ଅଳଂକୃତ କନ୍ୟାକୁଳ
ନୟନେ ଦେଖି ଯୁଧିଷ୍ଠିର ନରପାଳ ।
ସଭା ମଧ୍ୟେ ପ୍ରବେଶ ହେଲେ ଯୁଧିଷ୍ଠିର
ଦେଇ ସେବକଙ୍କ ହାତରେ ହାତଭାର ।
ପଡ଼ିଅଛି ସଭାରେ ଯେଉଁ ଭଦ୍ରାସନ
ବିଶ୍ୱକର୍ମା କୃତ ଅଟଇ ଷଡ଼ବର୍ଣ୍ଣ ।
ଅଷ୍ଟ ରତନରେ ତ ହୋଇଛି ମଣ୍ଡିତ
ଦେଖିଲେ ହରୁଅଛି ଜନଙ୍କର ଚିତ୍ତ ।
ମହୁମୂଲ୍ୟ ତୂଳି ଯୋଡ଼ିଏ ତା ଉପରେ
ପଡ଼ିଛି ସିଆଁ ହୋଇ ନାନା ବିଚିତ୍ରରେ ।
ସେ ଆସନେ ବସନ୍ତେ ଦିଶିଲେ ଯୁଧିଷ୍ଠିର
ସୁଧର୍ମା ସଭାମଧ୍ୟେ ଯେହ୍ନେ ପୁରନ୍ଦର ।
ପରିକରେ ଲମ୍ୱାଇ ଦିଅନ୍ତେ ମୋତିମାଳା
ସେ ନିନ୍ଦାକଲା ମେରୁଶୃଙ୍ଗ ଜଳାଧାରା ।
ସୁନାଦଣ୍ଡଲଗା ଦୁଇଗୋଟି ଚାମର
ପକାଇଲେ ଦୁଇପଟରେ ପରିକର ।

ମାଗଧସୁତବୃନ୍ଦ ସଙ୍ଗେ ଘେନି ବନ୍ଦୀ
ପଢ଼ିଲେ ସ୍ତୁତି ଯୁଧିଷ୍ଠିର କୀର୍ତ୍ତି ବନ୍ଦି ।
ସେକାଳେ ହାତୀ ଘୋଡ଼ା ନର ପାଦରଡ଼ି
ଶୁଭନ୍ତେ ମହୀଦେବୀ ରହିଲେ ଧୈର୍ଯ୍ୟ ଛାଡ଼ି ।
ଯୁଧିଷ୍ଠିର ରାଜାଙ୍କ ସମୟକୁ ଜାଣି
ବାହାରିଲେ ସଭା ମଧ୍ୟକୁ ଚକ୍ରପାଣି ।
ଦୁଆରୀ ଦୂରୁଁ ଦେଖି ପାଡ଼ି ଜାନୁଦୁଇ
ପଡ଼ିଲା କୃଷ୍ଣପାଦେ କୁଣ୍ଡଳ ହଲାଇ ।
ସେକ୍ଷଣି ଉଠି ମୁଣ୍ଡେ ପଟୁକା ବାନ୍ଧିଲା
ଆଗ ପାଞ୍ଚ ପଛଆଡ଼କୁ ଖୋସିଦେଲା ।
ପାଟଖଣ୍ଡୁଆଏ ଅଣ୍ଟାରେ ଦେଇକରି
ବାନ୍ଧିଲେ ସେ ଝାତି ତୁଲରେ ଆଣ୍ଟକରି ।
କରପୁଟରେ ଧରିକରି ପାଟଖଣ୍ଡା
ଜଣାଇଁ ବାହାରିଲା ସେ ଦୁଆରୀ ଭେଣ୍ଡା ।
ଦୂରୁ ଦେଖି ରାଜାଙ୍କୁ ନମସ୍କାର କଲା
ହାତ ଯୋଡ଼ି ନରନାଥଙ୍କୁ ଜଣାଇଲା ।
ହେ ନୃପ କୁମୁଦଚନ୍ଦ୍ରମା ଯୁଧିଷ୍ଠିର
ଆସୁଛନ୍ତି ତୁମ୍ଭ ଛାମୁକୁ ଚକ୍ରଧର ।
ତାହା ଶୁଣିଣ ଯୁଧିଷ୍ଠିର ଆଜ୍ଞାଦେଲେ
ପୂଜାକରି ଦୁଆର ଛାଡ଼ିଦିଅ ଭଲେ ।
ଦୁଆରି ନୃପତିଙ୍କ ଆଜ୍ଞାକୁ ଘେନିଲା
ଲେଉଟି ଆସି କୃଷ୍ଣ ଛାମୁରେ ମିଳିଲା ।
ବିଧିମନ୍ତ କରିଟି କଲା ସତକାର
ଛାଡ଼ିଦେଲାଟି ଯାଅ ବୋଲିଣ ଦୁଆର ।
କୃଷ୍ଣ ଯୁଧିଷ୍ଠିର ସମୀପେ ପରବେଶ
ହୋଇକରି ନମିଲେ ତାଙ୍କ ପାଦଦେଶ ।
ଯୁଧିଷ୍ଠିରଙ୍କର ଆଜ୍ଞାରେଟି ଆସନେ
ବସିଲେ ତ୍ରିଲୋକମୋହନ ତୋଷମନେ ।
ଯୁଧିଷ୍ଠିରରାଜା ଯେ କୃଷ୍ଣଙ୍କୁ ସ୍ୱାଗତ
ପଚାରିଲେ ଅତି ଉଲ୍ଲାସ କରି ଚିତ୍ତ ।
ସୁଖରେ ଆଜ ନିଶି ଦେଲେ କି ପୁଆଇ
ପଚାରୁଛୁଁ କୃଷ୍ଣ ହେ କହ ତ ବତାଇ ।
ଯୁଧିଷ୍ଠିର ପୁଚ୍ଛିବା କଥା ସହିକରି
ପଚାରିଲେ କୁଶଳ ତାହାଙ୍କୁ ମୁରାରି ।
ପୁଣି ଆଉଥରେ ଆସିଣ ସେ ଦୁଆରୀ
କହିଲା ଯୁଧିଷ୍ଠିର ନୃପେ ପୂର୍ବ ପରି ।
ସବୁ ଲୋକମାନେ ଆସିଲେ ଦୁଆରକୁ
ଆଜ୍ଞାଦେଲେ ଆସି କରିବେ ଦର୍ଶନକୁ ।
ଯୁଧିଷ୍ଠିର ତା ଶୁଣି ବୋଇଲେ ଦୁଆରୀ
ଦୁଆର ଛାଡ଼ିଦିଅ ବିଳମ୍ୱ ନ କରି ।

ନୃପତି ଆଜ୍ଞାରେ ଛାଡ଼ିଲା ସେ ଦୁଆର
ଆସିଲେ ଯେତେ ଶୁଣ ନାମ ତାହାଙ୍କର ।
ବିରାଟ ଧୃଷ୍ଟଦ୍ୟୁମ୍ନ ସାତ୍ୟକୀ ଭୀମସେନ
ଦ୍ରୁପଦ ଧୃଷ୍ଟକେତୁ ଶିଖଣ୍ଡୀ ଚେକିତାନ ।
ନକୁଳ ସହଦେବ ପଞ୍ଚାଳ୍ୟ ଉତ୍ତମୌଜା
ଦ୍ରୌପଦେୟ କୈକେୟ ଯୁଯୁତ୍ସୁ ମହାତେଜା ।
ଏହି ସମୟେ ଯୁଧିଷ୍ଠିରଙ୍କ ସଭାକୁ
ମଣ୍ଡିଲେ ଦେଖାଇ ଯେ ଯାହା ପ୍ରଭାବକୁ ।
ଅନୁରୂପରେ ମାନ୍ୟଧର୍ମମାନ କଲେ
ନରପତି ଆଜ୍ଞାରେ ଆସନେ ବସିଲେ ।
କୃଷ୍ଣଙ୍କର ଆସନେ ବସିଲେ ସାତ୍ୟକି
ଅତିଶୟେ ଦୁଇ ଛାତିକି ଦେଇ ଟେକି ।
ସେଠାରେ ଯୁଧିଷ୍ଠିର କହିଲେ କୃଷ୍ଣଙ୍କୁ
ଆଶ୍ରୟ କରିଛି ମୁଁ ତୁମ୍ଭ ବିକ୍ରମକୁ ।
ଦେବତାମାନଙ୍କେ ଯେଉଁରୂପେ ବଜ୍ରଧାରୀ
ସେରୂପେ ଆମ୍ଭଙ୍କରେ ତୁମ୍ଭେ ହେ ମୁରାରୀ ।
କୁରୁଙ୍କ ସକାଶୁଁ ଆମ୍ଭର ଯେତେ ଦୁଃଖ
ହୋଇଛି ତାହା ହେ ଜାଣିଛ ପଦ୍ମମୁଖ ।
ରହିବି ମୁଁ ଯେଉଁରୂପେ ଲୋକେ ପାଇ କୀର୍ତ୍ତି
ସେ ରୂପେ କର ମୁଁ ତୁମ୍ଭର ବଶବର୍ତ୍ତୀ ।
ଅର୍ଜ୍ଜୁନର ପ୍ରତିଜ୍ଞା ରହିଲେ ଗୋବିନ୍ଦ
ହୋଇବ ଆମ୍ଭମାନଙ୍କରଟି ଆନନ୍ଦ ।
ରଥୀକି ପ୍ରତି ସାରଥିଟି ବଳିୟାର
ହୋଇଛ ତ ସାରଥି ତୁମ୍ଭେ ଅର୍ଜ୍ଜୁନର ।
ତୁମ୍ଭଙ୍କୁ ଅନୁରୂପ କର୍ମ ଯେଉଁ କଥା
ହେବ ତା କରିବ ହେ କୃଷ୍ଣ ମହାରଥା ।
ବୃଷ୍ଣିମାନଙ୍କର ପରାୟେଟି ଆମ୍ଭଙ୍କୁ
ପାଳନ କର ଯୁଦ୍ଧେ କହୁଛୁ ତୁମ୍ଭଙ୍କୁ ।
ଅଗାଧକୁରୁ-ସାଗରରେ ଆମ୍ଭେମାନେ
ମରୁଅଛୁଁ ବୁଡ଼ିଣ ନଉକା ବିହୀନେ ।
ଆପଣ ହେଲେ ଆମ୍ଭମାନଙ୍କ ନଉକା
ପାରି ହେବୁ ମନେ କରିଛୁ ଏକା ଏକା ।
ଆହେ ଦେବ ଦେବ ବିଷ୍ଣୁ କୃଷ୍ଣ ହରି
ବଇକୁଣ୍ଠ ପୁରୁଷଉତ୍ତମ ମୁରାରି ।
ବରେଣ୍ୟ ଭଗବାନ ଶରଣ ରକ୍ଷଣ
ଅନାଦି ସନାତନ ବିଷ୍ଣୁ ନାରାୟଣ ।
ତୁମ୍ଭେ ବୋଲି ନାରଦଋଷି କହିଛନ୍ତି
ଏଣୁଟି ତୁମ୍ଭଙ୍କୁ କରୁଛି ମୁଁ ପୀରତି ।
ଏହା ଶୁଣି କୃଷ୍ଣ ଅଧରଦେଶେ ହାସ
ପ୍ରକାଶିଣ ବୋଇଲେ ଶୁଣ ହେ ନରେଶ ।

ଅର୍ଜ୍ଜୁନ ପରି ତ୍ରିଭୁବନେ ଧନୁର୍ଦ୍ଧର
ଥିବା ପରି ମନକୁ ପାଉନାହିଁ ମୋର ।
ବୀର୍ଯ୍ୟବନ୍ତ ଅସ୍ତ୍ରସମ୍ପନ୍ନ ସିଂହଗତି
ମହାବଳ ଯେ ଯୁଦ୍ଧଶୂର ମହାମତି ।
ତେଜସ୍ୱୀ ଯୁବା ବୃଷସ୍କନ୍ଧ ଦୀର୍ଘବାହୁ
ଅର୍ଜ୍ଜୁନ ଯୋଦ୍ଧାଚନ୍ଦ୍ରଙ୍କର ଜାଣ ରାହୁ ।
ଅର୍ଜ୍ଜୁନ ଯେଉଁରୂପେ ମାରିବେ କୁରୁସେନା
ସେରୂପେ କରିବ ରାଜନ ମହାମନା ।
ଆଜି ଜୟଦ୍ରଥ ଅରଜୁନର କାଣ୍ଡ
ପାଇ ନୃପ ବସିବ ଯାଇ ଯମଦଣ୍ଡ ।
ବିଲୁଆ ଶାଗୁଣା ଏ ହୋଇକରି ଗୋଟି
ଖାଇବେ ଜୟଦ୍ରଥ ମାଂସ ମେଲି ପାଟି ।
ଥାଉ ଦ୍ରୋଣ ଇନ୍ଦ୍ର ରଖିଲେ ଜୟଦ୍ରଥ
ମାରିବେ ଜାଣ କହୁଅଛି ମୁହିଁ ପାର୍ଥ ।
ଏଥିକି ନୃପତି ନ କର କିଛି ଚିନ୍ତା
ତୁମ୍ଭର ଭାଇ ଅର୍ଜ୍ଜୁନ ତ ବଳବନ୍ତା ।
ଏହି ସମୟରେଟି ଆସିଣ ଦୁଆରୀ
ଆସୁଛନ୍ତି କହିଲା ସୁଭଦ୍ରାବିହାରୀ ।
ଯୁଧିଷ୍ଠିର ବୋଇଲେ ଯାଇ ତୁ ବହନ
ଭେଟାଅ ସଙ୍ଗେ ମୋର ଆଣି ଅରଜୁନ ।
ଏହା ଶୁଣି ଦୁଆରୀ ଦୁଆରକୁ ଗଲା
ଅର୍ଜ୍ଜୁନଙ୍କୁ ନୃପ ଛାମୁରେ ଭେଟାଇଲା ।
ଅର୍ଜ୍ଜୁନ ଯୁଧିଷ୍ଠିର ନୃପେ ନମସ୍କାର
କଲେ କରେ ଛୁଇଁ ତାହାଙ୍କର ପୟର ।
ଯୁଧିଷ୍ଠିର ରାଜା ଯେ ଉଠି ଅର୍ଜ୍ଜୁନଙ୍କୁ
ଆଲିଙ୍ଗନ କଲେଟି ଦେଖାଇ ପ୍ରେମକୁ ।
ଅର୍ଜ୍ଜୁନ ମୂର୍ଦ୍ଧାକୁ ଆଘ୍ରାଣ ନୃପ କରି
କହିଲେ ଏ ବଚନ ତାଙ୍କୁ ହାସ୍ୟ କରି ।
ଆହେ ଅରଜୁନ କୃଷ୍ଣଙ୍କ ପ୍ରସାଦରେ
ଭେଟିବ ଶତ୍ରୁମାରି ମୋତେ ପ୍ରମୋଦରେ ।
ଆଜ ଯାହା ଦିଶୁଛି ତୁମ୍ଭ ଦେହ କାନ୍ତି
ଦେଖୁନାହିଁ ସେରୂପେ ସୂର୍ଯ୍ୟଙ୍କର ଜ୍ୟୋତି ।
ଅରଜୁନ କହିଲେ ନୃପକୁଳଈଶ
ନିଶ୍ଚେ କୃଷ୍ଣ ପ୍ରସାଦେ ନାଶିବି ଶତ୍ରୁବଂଶ ।
ଗଲା ରାତି କୃଷ୍ଣଙ୍କ ସଙ୍ଗତରେ ମୁହିଁ
ସ୍ୱପନେ ଭେଟିଲି ପାର୍ବତୀ ଦେବୀସାଇଁ ।
ସେ ମୋତେ ପ୍ରସନ୍ନରେ ଯାଚିଦେଲେ ବର
ଏହା ଶୁଣି ପ୍ରଶଂସା କଲେ ସବୁ ନର ।
ହରରୁଦ୍ର ଶିବଟି ଯାହାଙ୍କୁ ବୋଲନ୍ତି
ତାହାଙ୍କୁ କଲେ ବସି ସମସ୍ତେ ପ୍ରଣତି ।

ଯୁଧିଷ୍ଠିର ତ ଆଜ୍ଞା ଦିଅନ୍ତେ ରଥୀଏ
ବାହାରିଲେଟି ଯୁଦ୍ଧ ସଜରେ ସଭିଏଁ ।
ଅର୍ଜୁନ ସାତ୍ୟକୀ କୁମର ଜନାର୍ଦ୍ଦନ
ଯୁଧିଷ୍ଠିର ପାଦରେ କରିଣ ବନ୍ଦନ ।
ଏକା ରଥକରେଟି ତିନିହେଁ ବସିଲେ
ଅରଜୁନଙ୍କର ତ ମନ୍ଦିରକୁ ଗଲେ ।
ଆପେ କୃଷ୍ଣ ଅର୍ଜୁନ ରଥକୁ ତିଆର
କଲେ ମଣ୍ଡି ନାନାଜାତିରେ ଅଳଙ୍କାର ।
ସେ ସକାଶୁଁ ସେ ରଥ ଦିଶିଲାତ ଶୋଭା
ଭାଙ୍ଗି ପକାଇଲା ଜ୍ୱଳନ ସୂର୍ଯ୍ୟ ପ୍ରଭା ।
ଅର୍ଜୁନଙ୍କର ରଥ ନେଇ ଜନାର୍ଦ୍ଦନ
ସମୟ  ଜାଣିଣ କରନ୍ତେ ନିବେଦନ ।
ପାର୍ଥ ରଥ ଦେଖି କବଚ ଧନୁ ଧରି
ବସିଲେ ସେ ରଥରେ ପ୍ରଦକ୍ଷିଣ କରି ।
ତପ ବିଦ୍ୟା ବୟୋବୃଦ୍ଧ ଯେତେକ ଜନ
ସ୍ତୁତି କଲେ ପାର୍ଥଙ୍କୁ ହୋଇଣ ସୁମନ ।
ଉଦୟ ପର୍ବତରେ ରବିଦେବ ପରି
ଦିଶିଲେ ଅରଜୁନ ରଥେ ତେଜ କରି ।
ଏ ଅନ୍ତରେ ଜଗତପାବନ ମୁରାରି
ବସିଲେ ସେ ରଥରେ ସାତ୍ୟକୀଙ୍କି ଧରି ।
ପୂର୍ବେ ଇନ୍ଦ୍ର ଶର୍ଯ୍ୟାତି ଯୋଗେ ଆସିଥିଲେ
ଇନ୍ଦ୍ର ରଥେ ଅଶ୍ୱିନୀକୁମାରେ ବସିଥିଲେ ।
ଯେପରି ଶୋଭା ଦିଶୁଥିଲେ ସେ ତିନିହେଁ
ସେହିପରି ଶୋଭା ଦିଶିଲେ ଏ ତିନିହେଁ ।
ମାତଳି ଅଶ୍ୱରଜ୍ଜୁ ବୃତ୍ରଙ୍କ ସମରେ
ଧଇଲା ପରି କୃଷ୍ଣ ଧଇଲେ ରଜ୍ଜୁ କରେ ।
ବୁଧ ଶୁକ୍ର ଘେନିଣ ଚନ୍ଦ୍ର ଦଣ୍ଡବତ
ଥିବା ପରି ଦିଶିଲେ ସୁଭଦ୍ରାଙ୍କ କାନ୍ତ ।
ତାରକ ଅସୁରକୁ ମାରିବାର ପାଇଁ
ଯେରୂପେ ଗଲେ ସୂର୍ଯ୍ୟ ବରୁଣ ସଚୀସାଇଁ ।
ସେହିରୂପେ ଅର୍ଜୁନ ସାତ୍ୟକି ଗୋବିନ୍ଦ
ଗଲେ ଜୟଦ୍ରଥକୁ କରିବାକୁ ବଧ ।
ଶଙ୍ଖ ଭେରୀ ମୃଦଙ୍ଗ ପଣବ ବାଜିଲା
ଯୋଦ୍ଧାଙ୍କ ଆନନ୍ଦ ରାଶି ସେ ସରଜିଲା ।
ଗନ୍ଧ ତୁଲେ ସହିତ ହୋଇଣ ପବନ
ପଛୁଁ ବହି ଆନନ୍ଦ କଲା ପାର୍ଥମନ ।
ସେ ପବନ ତୁମ୍ଭ ଯୋଦ୍ଧାଙ୍କ ମୁଖେ ବାଜି
ତପତରେ ଜାତକରିଲା ସ୍ୱେଦରାଜି ।
ପାଣ୍ଡବଙ୍କ ସଇନ ଆଗେ ଶୁଭଚିହ୍ନ
ବହୁତ ଜାତହେଲା ଦେଖିଲୁ ରାଜନ ।
ଅଶୁଭ ଚିହ୍ନଯାକ ତୁମ୍ଭ ସଇନରେ
ଗୋଟିହୋଇ ନୃପ ଦିଶିଲା ନିରନ୍ତରେ ।
ଅରଜୁନ ସାତ୍ୟକୀ ମୁଖକୁ ଅନାଇଁ
କହିଲେ ଜୟ ଯୁଦ୍ଧେ ପାଇବି ହେ ମୁହିଁ ।
ଦେଖ ମୋ ଜୟଚିହ୍ନ ଦିଶୁଛି ଅମାପ
ଏଥୁଁ ମନେ କରୁଛି ମଲା ସିନ୍ଧୁ ନୃପ ।
ଜୟଦ୍ରଥଠାକୁ ଯାଉଛି ଯୁଝି ମୁହିଁ
ଯୁଧିଷ୍ଠିର ରାଜାଙ୍କୁ ରଖ ତୁମ୍ଭେ ଯାଇ ।
ଜୟଦ୍ରଥ ମାରିବା ପ୍ରତିକି ଦଶଗୁଣ
କାର୍ଯ୍ୟ ମୋହର ଯୁଧିଷ୍ଠିର ରକ୍ଷା ଜାଣ ।
ତୁମ୍ଭେ ଥିଲେ ଯୁଧିଷ୍ଠିରଙ୍କୁ ରକ୍ଷାକରି
ମୁହିଁ ଏକା ରଖିଛି ଜାଣ ଧନୁ ଧରି ।
ଇନ୍ଦ୍ର ହେଲେ ଯୁଦ୍ଧରେ ତୁମ୍ଭଙ୍କୁ ହାରିବେ
କୁରୁଏତ ଅଳପବଳ କି କରିବେ ।
ଯୁଧିଷ୍ଠିର ରାଜା ଭାରକୁ ତୁମ୍ଭ ବିନା
ଆନ ରଥୀ ବହି ନ ପାରେ ମହାମନା ।
ପ୍ରଦ୍ୟୁମନ ଯେବେଟି ଯୁଦ୍ଧରେ ଥାଆନ୍ତେ
ସେହି ଏକା ଏ ଭାର ବହିଣ ପାରନ୍ତେ ।
ସବୁ ପ୍ରକାରରେ ରାଜାଙ୍କୁ ଜଗିବାର
କୁଶଳ ଆମ୍ଭମାନଙ୍କର ମନେ କର ।
କୃଷ୍ଣଙ୍କ ସହାୟରେ ମୋର ବାହୁ ଦୁଇ
ଏକା ଦେବେଟି ଜୟଦ୍ରଥକୁ ବଢ଼ାଇ ।
ଶ୍ରୀକୃଷ୍ଣ ଥିବାଠାରେ ଆମ୍ଭର ବିପତ୍ତି
ଦେବାକୁ ଦିଶୁନାହିଁ କାହାର ଶକତି ।
ଏରୂପେ ଅରଜୁନ କହନ୍ତେ ଉତ୍ତର
ସହି କଲେ ସାତ୍ୟକି ଯୋଦ୍ଧାଙ୍କ ପ୍ରବର ।
ଅରଜୁନ ଯେ ରଥବରକୁ ଛାଡ଼ିଲେ
ଯୁଧିଷ୍ଠିର ରାଜାଙ୍କ ସମୀପକୁ ଗଲେ ।
ଧୃତରାଷ୍ଟ୍ର ବୋଇଲେ ମୋର ଲୋକଯାକ
କି କଲେ ହେ କହ ତ ମନ୍ତ୍ରିଙ୍କ ନାୟକ ।
ଅର୍ଜୁନଙ୍କଠାରେ ଅପ୍ରାଧ କରିଥିଲେ
କିରୂପରେ ନିର୍ଭୟ ହୋଇ ସେ ଯୁଝିଲେ ।
ପୁତ୍ରଶୋକେ ସନ୍ତପ୍ତ ହୋଇ ଅରଜୁନ
ଆସୁଥିବ କରିବାକୁ ସେ ଆୟୋଧନ ।
କାଳ ଦେବ ପରି ଗାଣ୍ଡୀବ ମଧ୍ୟେ ଫାଟି
ବିସ୍ତାରି ଦେଇଥିବ ଶର ଦନ୍ତ ଯୋଟି ।
ତାହା ସହି ଆମ୍ଭର କେଉଁ ଯୋଦ୍ଧା ନର
କଲା ଅରଜୁନଙ୍କୁ ଆଗୁଳି ସମର ।
ଜାଣୁଛି ପୂର୍ବପରି ଆମ୍ଭ ଜନଙ୍କର
ମନସୁଖ ହୋଇଣ ହୋଇଥିବ ଧୀର ।

ନୃତ୍ୟ ଗୀତ ବାଦ୍ୟରେ ଯୋଦ୍ଧାଏ ଅପ୍ରୀତି
ବହିଥିବେ ହୃଦରେ ରହିବାରୁ ଭୀତି ।
ମାଗଧ ସୂତଙ୍କର ବୋଲିବା ବଚନ
ଆଜ ଶୁଭୁନାହିଁ ସଦନେ ଦୂର୍ଯ୍ୟୋଧନ ।
ପୁଅଙ୍କ ଶିବିରରେ ଆର୍ତ୍ତସ୍ୱର ଡକା
ଶୁଭୁଥିବ ସଞ୍ଜୟ ଜାଣୁଛି ତ ଏକା ।
ପୁଅମାନେ ମୋହର ଆନନ୍ଦ ବଚନ
ଛାଡ଼ିଦେଇ ନେତ୍ରରୁ ତେଜୁଥିବେ ବନ ।
ବିବିଂଶତି ଦୁର୍ମୁଖ ବିକର୍ଣ୍ଣ ଚିତ୍ରସେନ
ଦ୍ରୌଣି ବିନ୍ଦାନୁବିନ୍ଦ ଭୂରିଶ୍ରବା ଦ୍ରୋଣ ।
ଏମାନଙ୍କର ଶିବିରରେ ପୂର୍ବପରି
ନୃତ୍ୟ କରୁ ନ ଥିବେ ନଟେ ରାଗ ଧରି ।
କୃଷ୍ଣଙ୍କ ଆସିବାର କାଳେ ମୁଁ ସୁତକୁ
କହିଲି ପ୍ରୀତିକର ପାଣ୍ଡବମାନଙ୍କୁ ।
ମୋର କଥା ନ ଘେନି ଦୁର୍ଯ୍ୟୋଧନ ମୂଢ଼
ମରାଇ ଯୁଦ୍ଧରେ ଜ୍ଞାତିଙ୍କି କଲା କୁଢ଼ ।
ଭୀଷ୍ମ ଭୂରିଶ୍ରବା ଯେ ଶଲ୍ୟ ଅଶ୍ୱଥାମା
ପୁରୁମିତ୍ର ଜୟ ତ ଦ୍ରୋଣ ମହାକର୍ମା ।
ବିଦୂର କୃପା ସିନ୍ଧୁଦେଶ ନରପତି
ଜୁଅଖେଳ ତ ନିବର୍ତ୍ତାଉଥିଲେ ନିତି ।
ଶକୁନି ଦୁଃଶାସନ ଶିକ୍ଷାରେ ଜୁଆ ଖେଳି
ଦୁର୍ଯ୍ୟୋଧନ ଅରଜି ଆଣିଲା ଏ କଳି ।
ଆମ୍ଭ ବୋଲ ଯେବେ ପୂର୍ବେ ସେ ଥାନ୍ତା ଘେନି
ଜ୍ଞାତି ମିତ୍ର ତୁଲେ ପାଆନ୍ତା ଏ ଅବନୀ ।
କୁଳୀନପ୍ରାପ୍ୟ ଜ୍ଞାତିଙ୍କର ପ୍ରିୟକର
ଧର୍ମବନ୍ତ ହେବାରୁ ସେ ପାଣ୍ଡୁ କୁମର-
ମାନେ ନିତି ଯୁଦ୍ଧରେ କରୁଛନ୍ତି ଜୟ
ଅଧର୍ମରୁ ମୋ ସୁତ ଯାନ୍ତି ହୋଇ କ୍ଷୟ ।
ଯୋଗ୍ୟ ସେ ମହୀଯାକେ ରାଜା ହୋଇବାକୁ
ହସ୍ତିନା ରାଜା ହେବେ ବୋଲିବା କି ତାଙ୍କୁ ।
ଶଲ୍ୟ ଭୀଷ୍ମ ଭୂରିଶ୍ରବା ଯେ ଦ୍ରୌଣି ଦ୍ରୋଣ
ବଚନେ ନ ଲଙ୍ଘନ୍ତେ ଯୁଧିଷ୍ଠିର ରାଣ ।
ଅଧେ ରାଜ୍ୟ ତାହାଙ୍କୁ ଦେଇ ଅଧେ ରାଜ୍ୟ
ଖାଇ ମୋ ପୁଅ ସୁଖେ ହୁଅନ୍ତା ମହାରାଜା ।
କୃଷ୍ଣ ଧର୍ମମାର୍ଗରୁ ଲବେ ନ ଚଳନ୍ତି
ଶୁଣିଲେ ଏହା ହୋଇ ରହନ୍ତେ ସେ ତୃପ୍ତି ।
ଜାଣ ହେ ସଞ୍ଜୟ ଏରୂପେ ଦୁର୍ଯ୍ୟୋଧନ
ଆଗରେ ମୁଁ କହୁଛି ବହୁତ ବଚନ ।
ସେ ମୂର୍ଖ କାଳବଶେ ହୋଇଥିଲା ବାଇ
ମୋର କଥା ନ ଘେନି ଯୁଦ୍ଧକଲା ଯାଇ ।

ଭୀମ ଅରଜୁନ ଯେ ଶିଖଣ୍ଡୀ ସାତ୍ୟକି
ଧୃଷ୍ଟକେତୁ ବିରାଟ ଅଶୁକ ସୋମକି ।
ଯୁଧାମନ୍ୟୁ ଉତ୍ତମଓଜା ଧୃଷ୍ଟଦ୍ୟୁମ୍ନ
କ୍ଷେତ୍ରଧର୍ମା ଦ୍ରୌପଦେୟ ଯେ ଚେକିତାନ ।
ନକୁଳ ସହଦେବ ଦ୍ରୁପଦ କେକୟ
କୃଷ୍ଣ ଆଦି ପାଣ୍ଡବଙ୍କର ରଥୀଚୟ ।
ଧନୁ ଧରି ଯେବେ ସମର କରୁଥିବେ
ଅମର ତୁଲେ ପୁରନ୍ଦର ହାରିଯିବେ ।
ଦୁଃଶାସନ କର୍ଣ୍ଣ ଶକୁନି ଦୁର୍ଯ୍ୟୋଧନ-
ବିନା ଯୁଝିବାକୁ ନୁହଇ କାହା ମନ ।
ଅରଜୁନ ଯୋଦ୍ଧା ତ ଶ୍ରୀକୃଷ୍ଣ ସାରଥି
ଯୁଝି ପାରିବେଟି ତାହାଙ୍କୁ କେଉଁ ରଥୀ ।
ଭୀଷ୍ମ ଦ୍ରୋଣ ଦୁହିଙ୍କି ହାରି ଦୁର୍ଯ୍ୟୋଧନ
ସ୍ମରୁଥିବ ଏବେ ମୋର କଥାମାନ ।
ଅରଜୁନମୟ କରି ଏ ଯୁଦ୍ଧସୃଷ୍ଟି
ଦେଖି ଅବା କରୁଥିବ ସେ ଲୁହବୃଷ୍ଟି ।
ମୋ ସୈନ୍ୟତୃଣକୁ ଅର୍ଜୁନ ଶରାନଳେ
ପୋଡ଼ି ଦେଉଥିବ ବଳରେ ତାର ହେଳେ ।
ଅଭିମନ୍ୟୁ ମଲା ଉତ୍ତାରେ ଅରଜୁନ
ଆସନ୍ତେ ମୋ ସୈନ୍ୟଙ୍କୁ କରି ଆୟୋଧନ ।
ଦୁର୍ଯ୍ୟୋଧନ ଶକୁନି କର୍ଣ୍ଣ କି ବୋଇଲେ
ଏହାଟି ମୋତେ ହେ କହିବା ହେଉ ଭଲେ ।
ଲୋଭୀ ମନ୍ଦବୁଦ୍ଧି ଯେ ମୂର୍ଖ ହତଚେତା
ଦୁର୍ଯ୍ୟୋଧନ ଯୁଝିଲାଟିକି ଛାଡ଼ି ଚିନ୍ତା ।
ସଞ୍ଜୟ ବୋଇଲେ ରାଜନ ଛାଡ଼ ଶୋକ
ହସିବେଟି ଏହା ଶୁଣିଲେ ପରଲୋକ ।
ପାଣିଗଲା ପରେ ଯା ବନ୍ଧ ବନ୍ଧାଉଛ
କି କାର୍ଯ୍ୟ ହେବ ହେ ବିଚିତ୍ରବୀର୍ଯ୍ୟବତ୍ସ ।
ବିଧାତା ଯାହା କରୁଅଛି ସେ ହେଉଛି
ଏହା ଭାବିଣ ଶୋକ ଦିଅ ହେ ମୂରୁଛି ।
ପୂର୍ବୁଁ ଯେବେ ଦ୍ୟୁତ ନିବାରି ରଖିଥାନ୍ତ
କିପାଁ ଏଡ଼େ ଅକୀର୍ତ୍ତି ଆପଣ ପାଆନ୍ତ ।
ଜୁଅ ଘେନି ଯୁଦ୍ଧଟି ଯେବେ ପ୍ରବର୍ତ୍ତିଲା
ଆପଣ ତ ତାହାକୁ ଭାଙ୍ଗିବା ନୋହିଲା ।
ଜୁଅ ଯୁଦ୍ଧ ଦୁଇ ତ ତୁମ୍ଭେ ଜାଣି ରାୟେ
କରିଅଛ କିପାଇଁ ଡରୁଅଛ ଭୟେ ।
ଦୁର୍ଯ୍ୟୋଧନ ରାଜାଙ୍କୁ କରିଥିଲେ ବନ୍ଦୀ
କିପାଇଁ ରାଜନ ବସନ୍ତ ତୁମ୍ଭେ କାନ୍ଦି ।
ପୁତ୍ର ସ୍ନେହରେ ତ ଛାଡ଼ିଲ ସେହି କଥା
ବୃଥା ଶୋକ କଲେ କି ଜିଣିବ ହୃଦବ୍ୟଥା ।

ପଣ୍ଡିତ ହୋଇ ତୁମ୍ଭେ ଅପଣ୍ଡିତଲୋକ
କହିବା କଥା ଶୁଣି ଛାଡ଼ିଲ ବିବେକ
ଜାଣି ଜାଣିଣ ବିଷ କରିଦେଇ ଗ୍ରାସ
ମଲାବେଳକୁ କି ବୋଲିବା କର୍ମଦୋଷ ।
ଯୁଧିଷ୍ଠିର ଯେ ଭୀଷ୍ମ ଦ୍ରୋଣଙ୍କୁ ଅଧିକ
ତୁମ୍ଭଙ୍କୁ ମାନନ୍ତିଟି ଗୋକୁଳପାଳକ ।
ଅଧର୍ମରେଟି ତୁମ୍ଭେ ଆବୃତ୍ତ ହୁଅନ୍ତେ
ଛାଡ଼ିଗଲେ ତୁମ୍ଭଙ୍କୁ କୃଷ୍ଣ ମହାମତେ ।
ପାଣ୍ଡବଙ୍କୁ ତୁମ୍ଭର ପୋଏ ଗାଳି ଦେଲେ
ସୁଖ ପାଇଣ ତୁମ୍ଭେ ଶୁଣୁଥାଅ ଭଲେ ।
ପାଣ୍ଡୁ ରାଜା ହୋଇଣ ରାଇଜ ତୁମ୍ଭଙ୍କୁ
ଦେଲେ ସେ ପୁଣ ନ ଆଣିଲେ ହେ ମନକୁ ।
ପାଣ୍ଡୁ ସୁତମାନଙ୍କୁ କରିଥିଲେ ରାଜା
କରୁଥାନ୍ତେ ନିତି ସେ ତୁମ୍ଭ ପାଦେ ପୂଜା ।
ରାଜ୍ୟଲୋଭୀ ହୋଇ ଖେଦିଲ ପାଣ୍ଡବଙ୍କୁ
କି ଘେନିଲ କହ ତ ପାଣ୍ଡୁଙ୍କ ଗୁଣକୁ ।
ଆଜି କରି ଆଜି କରୁଛ କିପାଁ ନିନ୍ଦା
ଶୁଣିଲେ କ୍ଷତ୍ରିୟେଟି ନ କରିବେ ବନ୍ଦା ।
ସାମ ଦାନ ଭେଦରେ ଯୁଦ୍ଧରେ ଜଗିବ
ଯୁଦ୍ଧ ହେଲେ ସେ କଥା ମନେ ନ ଭାବିବ ।
କେବଳ ଲେଖିଅଛି କରି ବୀରକ୍ଷୟ
ଯୁଦ୍ଧରେ ଭାବୁଥିବ ଆଣିବାକୁ ଜୟ ।
ଦଇବବଶେ ଯେବେ ହୋଇବ ମରଣ
ତେବେ ପୂଜା ତାକୁ କରନ୍ତି ସୁରରାଣ ।
ଏହିମାନ ଭାବିଣ ଛାଡ଼ିଦିଅ ବ୍ୟଥା
ବଢ଼ାଉଥିଲେ ବଢୁଥିବ ସିନା କଥା ।
କୁରୁ ପାଣ୍ଡୁ ଦୁଇସେନାଙ୍କର ସମର
ଶୁଣିବା ଇଛା ଥିଲେ ଶୁଣ ନରବର ।
ଧୃତରାଷ୍ଟ୍ର ବୋଇଲେ ବୃଥା ଶୋକେ ପଡ଼ି
ଯାଉଅଛି ସିନା ସଞ୍ଜୟ ମୁହିଁ ସଢ଼ି ।
ସିନ୍ଧୁ ନୃପତିଙ୍କି ରଖିବାପାଇଁ ଦ୍ରୋଣ
କିରୂପେ ଅର୍ଜୁନଙ୍କୁ କହ କଲେ ରଣ ।
ସଞ୍ଜୟ ବୋଇଲେ ତା ଶୁଣ ନରସାଇଁ
ପାଆନ୍ତେ ରାତି ଦ୍ରୋଣ ବ୍ରାହ୍ମଣ ଗୋସାଇଁ ।
ଶଯ୍ୟା ଛାଡ଼ିଣ ସ୍ନାନ ସନ୍ଧ୍ୟାକୁ ସାରିଲେ
ତିଆରି କରି ସୈନ୍ୟ ଲୋକଙ୍କୁ ରଖିଲେ ।
ସେହି ସମୟରେଟି ଯୋଦ୍ଧାଙ୍କ ଚହଳ
ଶବଦରେ ପୂରିଲା ଶ୍ରବଣଯୁଗଳ ।
ଧନୁମାନଙ୍କରେ ରଥିଏ ଦେଇ ଗୁଣ
ଝିଙ୍କି ଟଙ୍କାରିଲେ ଦେଖାଇ ବାହୁଟାଣ ।
ବଚନରେ ବୋଇଲେ ପାର୍ଥ ଅଛ କାହିଁ
ଆସ ଯୁଦ୍ଧ କରିବା ଜୟ ନେବାପାଇଁ ।
ଅର୍ଜୁନଙ୍କୁ ହାଣିବା ବୋଲିଣ ପାଇକ-
ଯାକ ଖଣ୍ଡା ଝାଡ଼ିଲେ ହୁଦୁଁ ଛାଡ଼ି ଦକ ।
ଗଦାଧରାମାନେ ଯେ ବୁଲାଇ ଗଦାକୁ
ଡାକିଲେ ଅର୍ଜୁନଙ୍କୁ ଯୁଦ୍ଧ କରିବାକୁ ।
ଶକତିଧରା ବୀରେ ଧରିଣ ଶକତି
ବୋଇଲେ ଯିବେ ଆଜି ପାର୍ଥ ଯମ କତି ।
ପ୍ରାସ ଧରିଣ କେତେ ହାସ ପ୍ରକାଶିଲେ
ଅର୍ଜୁନ ଯମଦାସ ହୋଇବେ ବୋଇଲେ ।
କେତେ କୁନ୍ତ ଧରିଣ ଅର୍ଜୁନର ଅନ୍ତ
କାଢ଼ିବା ଏଥି ବୋଲି ହସିଲେ କାଢ଼ି ଦାନ୍ତ ।
ପରିଘପରି ବାହୁମାନଙ୍କେ ପରିଘ
ଧରି କରି ତୁମ୍ଭ ପରିଘ-ଯୋଦ୍ଧାସିଂହ ।
ଅର୍ଜୁନଙ୍କୁ ମାରିବା ବୋଲି ମନେ କଲେ
ମୋଡ଼ି ମୋଡ଼ି ନିଶ ଛିଣ୍ଡାଇ ପକାଇଲେ ।
ଉନମତ୍ତ ହୋଇ ତୁମ୍ଭର ଯୋଦ୍ଧାଜନ
ଡାକିଲେ କାହିଁ ଅଛ ଆସ ହେ ଅର୍ଜୁନ ।
ଏ ବାହାରେ ଡାକିଲେ ଭୀମ ଯୁଧିଷ୍ଠିର
ନକୁଳ ସହଦେବ କର ହେ ସମର ।
ଆହେ କୃଷ୍ଣ ହୋଇଛ ପରା ତୁମ୍ଭେ ସଖା
ଡାକିଲେ ତ ଯୁଦ୍ଧରେ ଦେଉ ନାହଁ ଦେଖା ।
ଦ୍ରୋଣ ରଥଘୋଷେ କମ୍ପାଇ ମହୀତଳ
ବୋଇଲେ ଶୁଣ ଜୟଦ୍ରଥ ମହୀପାଳ ।
ଭୂରିଶ୍ରବା କର୍ଣ୍ଣ ଯେ ଶଲ୍ୟ ବୃଷସେନ
ଅଶ୍ୱତ୍ଥାମା କୃପଙ୍କୁ ଘେନିଣ ରାଜନ ।
ଏଠାକୁ ଛକୋଶ ଅନ୍ତରେ ଯାଇ ରହି
ସଂଯତ ହୋଇଥିବ ଧନୁଶର ବହି ।
ଲକ୍ଷେ ଘୋଡ଼ା ଷାଠିଏ ସସ୍ର ନିଅ ରଥ
ଚତୁର୍ଦ୍ଦଶ ସହସ୍ର ମତ୍ତଗଜ ଯୂଥ ।
ଏକୋଇଶ ସହସ୍ର ପାଇକ ସଙ୍ଗତେ
ତୁମ୍ଭର ଥିବେଟି ଜାଣ ହେ ମହାମତେ ।
ଇନ୍ଦ୍ର ଆଦି ଦେବେ ଯୁଝିଲେ ଯିବେ ହାରି
ଦେଖିବା ପାର୍ଥ କିରୂପରେ ଯିବେ ମାରି ।
ଦ୍ରୋଣଙ୍କ କହିବା ପରାୟେ ଜୟଦ୍ରଥ
ରହିଲେ ରଥୀ ସୈନ୍ୟ ଘେନି ନରନାଥ ।
ସୈନ୍ୟଙ୍କ ଆଗେ ଦୁର୍ମର୍ଷଣ ମହାମନା
ରହିଲେ ପାଞ୍ଚଶତ ଘେନି ହାତୀସେନା ।
ଦୁଃଶାସନ ବିକର୍ଣ୍ଣ ଜୟଦ୍ରଥ ହିତ
ଭାବି ବ୍ୟୂହଅଗ୍ରେ ହୋଇଲେ ଯାଇ ସ୍ଥିତ ।

ଚବିଶିକୋଶ ଲମ୍ବ ପ୍ରସ୍ଥ ଦଶକୋଶ
ଶକଟବ୍ୟୂହ କଲେ ଦ୍ରୋଣ ଦ୍ୱିଜଈଶ ।
ରଥ ଗଜ ଅଶ୍ୱ ପାଇକେ ସେ ବ୍ୟୂହକୁ
ଜଗିଲେ ହେ ରାଜନ ଧରି ଆୟୁଧକୁ ।
ନୃପତିଏ ଯେ ଯାହା ସୈନ୍ୟଙ୍କର ତୁଲେ
ଦ୍ରୋଣଙ୍କର ବୋଲରେ ବ୍ୟୂହରେ ରହିଲେ ।
ଶକଟବ୍ୟୂହ ପଛେ କଲେ ପଦ୍ମବ୍ୟୂହ
ପଦ୍ମବ୍ୟୂହ ମଧ୍ୟରେ କଲେ ସୂଚୀବ୍ୟୂହ ।
ଏରୂପେ ବ୍ୟୂହ ଦ୍ରୋଣ କରି ଦୁର୍ଯ୍ୟୋଧନ
କର୍ଣ୍ଣଙ୍କୁ ସୂଚୀବ୍ୟୂହ ଜଗାଇବେ ଜାଣ ।
କାମ୍ବୋଜ ଜଳସନ୍ଧ ମଧ୍ୟେ ଲଗାଇଲେ
ଲକ୍ଷ ଲକ୍ଷ ଯୋଦ୍ଧାଏ ସଙ୍ଗତେ ରହିଲେ ।
ବଳ ତୁଲେ ସହିତ ହୋଇ ସିନ୍ଧୁନୃପ
ରହିଲା ସୂଚୀବ୍ୟୂହେ ହୋଇ ଶରଚାପ ।
ଶକଟବ୍ୟୂହ ମୁଖେ ଦ୍ରୋଣ କୃତବର୍ମା
ରହିଲେ ତ ଅଟନ୍ତି ସେ ମହାକରମା ।
ଶୁକଳବର୍ମ ଶୁକ୍ଳମାଳା ଶୁକ୍ଳପାଗ
ରହିଛନ୍ତି ଜାଣ ହେ ଦ୍ରୋଣ ମହାଭାଗ ।
ରଥ-ଆକାଶରେ ଯେ ଶର-କିରଣରେ
ମଣ୍ଡି ହୋଇ ଦିଶନ୍ତି ଚନ୍ଦ୍ରମା ପରିରେ ।
ଦ୍ରୋଣଙ୍କ ସୁନାବେଦୀ କୃଷ୍ଣାଜିନଧ୍ୱଜ
ରଥ ଦେଖି ଯୋଦ୍ଧା ଯୁଦ୍ଧକୁ କଲେ ଓଜ ।
ଦ୍ରୋଣଙ୍କ ବ୍ୟୂହ ଦେଖି ସ୍ୱର୍ଗେ ଦେବତାଏ
ଥାଇ ମହାଆଶ୍ଚର୍ଯ୍ୟ ପାଇଲେ ହେ ରାୟେ ।
ମନ କଲେ ସମୁଦ୍ର ତୁଲେ ମହୀଦେଶ
ଗ୍ରାସିବ ଏ ବ୍ୟୂହ କହିବା ଆଉ କିସ ।
ଚତୁରଙ୍ଗ ସେନାରେ ସଙ୍କୁଳ ବ୍ୟୂହ ଦେଖି
ଦୁର୍ଯ୍ୟୋଧନ ରାଜା ହୋଇଲେ ଅତି ସୁଖୀ ।
ଶଙ୍ଖ ଭେରୀ ମୃଦଙ୍ଗ ପଣବ ଗୋମୁଖକୁ
ବଜାଇଣ କୁରୁଏ ଧାଆନ୍ତେ ଯୁଦ୍ଧକୁ ।
ସେହି ସମୟରେ ଅର୍ଜ୍ଜୁନ ଗଲେ ପାଇ
ରଥଘୋଷେ ଅବନୀ ମଣ୍ଡଳ କମ୍ପାଇ ।
ଅର୍ଜ୍ଜୁନଙ୍କ ରଥ ଆଗରେ କୁଆ ବକ
ଶତ ଶତ ସସ୍ର ଉଡ଼ିଲେ ଟେକି ବେକ ।
କୁରୁ ସେନାଙ୍କର ଯେ ଦକ୍ଷିଣ ପଟରେ
ବୋବାଇଲେ ମୃଗ ବିଲୁଆ ତ ଆଣ୍ଟରେ ।
ଉଲୁକା ନିର୍ଘାତଟି ପଡ଼ିବାରେ କୋଟି
ବୁଜାଇଲେ ସବୁରି ନୟନ ଦିଓଟି ।
ମହାଘୋର ଭୟ ହୁଅନ୍ତେ ଉପସ୍ଥିତ
ମହୀ ଦେବୀ କମ୍ପିଲେ ହୋଇଣ ତରସ୍ତ ।

ରୁକ୍ଷ ହୋଇ ପବନ ସବୁ ଆଡୁ ବହି
ଦେଲା କୁରୁସେନାଙ୍କୁ ଧୂଳିରେ ଘୋଡ଼ାଇ ।
ଏହି କାଳରେ ଧୃଷ୍ଟଦ୍ୟୁମ୍ନମନ ନକୁଳ
କୁମର ଶତାନୀକ ହୋଇ ଏକମେଳ ।
ବ୍ୟୂହ କରି ନିଜ ସେନାଙ୍କୁ ରଖାଇଲେ
ଯୁଝିବାକୁ କୁରୁଙ୍କୁ ତୁଲେ ମନ କଲେ ।
ଶଏ ହାତୀ ଯେ ଦଶ ସହସ୍ର ପାଇକ
ସହସ୍ରେ ରଥ ତିନି ସହସ୍ର ଘୋଟକ ।
ପାଞ୍ଚଶତ ଧାନୁକୀ ଘେନି ସଙ୍ଗତରେ
ଦୁର୍ମର୍ଷଣ ରହିଲେ ବ୍ୟୂହର ଆଗରେ ।
ବଚନରେ କହିଲେ ବହୁତ ଗୁମାନ
ଆଜି ମୋତେ ଜିଣି ନ ଯିବୁ ଅରଜୁନ ।
ଯେଉଁ ରୂପେ ବେଳା ଆଗୁଳେ ସମୁଦ୍ରକୁ
ସେରୂପେ ଆଗୁଳିବ ଆଜି ଅର୍ଜ୍ଜୁନକୁ ।
ମାନ ଯଶ ଦୁହିଙ୍କି ବଢ଼ାଇବି ଆଜ
ଅରଜୁନ ସଙ୍ଗତେ କରି ମହାଯୁଦ୍ଧ ।
ଏରୂପେ କହି ଧନୁର୍ଦ୍ଧରଙ୍କେ ଆବୃତ
ହୋଇ ଧନୁ ଧରି ରହିଲେ ତୁମ୍ଭ ସୁତ ।
ଏହି ସମୟରେଟି ସୁଭଦ୍ରାବିହାରୀ
ପାଇଗଲେ କ୍ରୋଧରେ କାଳଦେବ ପରି ।
ପାଶହସ୍ତ ବରୁଣ ଶୂଳହସ୍ତ ଶିବ
ଦଣ୍ଡଧର-ମୃତ୍ୟୁ ଯେ ସହସ୍ର-ବାସବ ।
ଯୁଗାନ୍ତ କାଳ ସୂର୍ଯ୍ୟ ଦିଶିଲା ପରାୟେ
ଗାଣ୍ଡୀବ ଧନୁ ଧରି ଦିଶିଲା ସେ ରାୟେ ।
ଲଗାଇ ତ ଅଛନ୍ତି ସୁବର୍ଣ୍ଣ କବଚ
ଜ୍ୟୋତିରେ ସେ ମଣ୍ଡିଣ ଦେଉଅଛି ମଞ୍ଚ ।
ମେରୁ ଶିଖେ ଦ୍ୱିଧାର ଗଙ୍ଗା ପରି ପ୍ରଭା
ପ୍ରକାଶିଛି ନୃପ ଶୁକଳ ମାଳା ଶୋଭା ।
କୁଣ୍ଡଳ ଦୁଇ ତୁଲେ କିରୀଟିକିରୀଟ
ଦିଶୁଥିଲା ନାନା ରତନେ ଝଟ ଝଟ ।
ପର ରଥୀ ଶର ପାଇବା ସ୍ଥାନେ ରଥ
ରଖି ଶଙ୍ଖ ଫୁଙ୍କିଲେ ପାର୍ଥ ମହାରଥ ।
ଅର୍ଜ୍ଜୁନଙ୍କର ଶଙ୍ଖ ଫୁଙ୍କିବାର ଦେଖି
ଫୁଙ୍କିଲେ ପାଞ୍ଚଜନ୍ୟ କୃଷ୍ଣ ହୋଇ ସୁଖୀ ।
ସେ ଦୁହିଙ୍କ ଶଙ୍ଖ ଶବଦ ତୁମ୍ଭ ସେନା-
ଗଣ ଶୁଣି କମ୍ପିଲେ ହୋଇଣ ବିମନା ।
ବଜ୍ରରୁ ତ ନିଷ୍ଠୁର ଯେ ଧ୍ୱନି ଶୁଣିଲେ
ହଗି ମୂତି ହାତୀ ଘୋଡ଼ାଏ ପଳାଇଲେ ।
କେତେ ରଥୀ ତୁମ୍ଭର ହାରି ଦେହ ଜ୍ଞାନ
ରହିଲେ ରଥଦଣ୍ଡ ଧରି ହେ ରାଜନ ।

କେତେ ରଥୀ ପଳାଇବାର ମନ କଲେ
କେତେ ରଥୀ ଯୁଝିବା ବୋଲି ବିଚାରିଲେ ।
ଏହା ଜାଣି ଅର୍ଜ୍ଜୁନ କପିଧ୍ୱଜ ରଡ଼ି
ପାରନ୍ତେ ତୁମ୍ଭ ସୈନ୍ୟ ରହିଲେ ଶସ୍ତ୍ର ଛାଡ଼ି ।
ପୁଣି ଧୈର୍ଯ୍ୟ ହୋଇଣ ତୁମ୍ଭର ସେନାଏ
ଶଙ୍ଖ ଭେରୀ ଆନକ ବଜାଇଲେ ରାୟେ ।
ସିଂହନାଦ କରି କରିଲେ ବାହୁସ୍ଫୋଟ
ଯୁଝିବା ମନେ ଭାବି ହେଲେ ମହାହୃଷ୍ଟ ।
ଅରଜୁନ ତୁମ୍ଭ ଯୋଦ୍ଧାଙ୍କ ଆଣ୍ଟ ଦେଖି
କ୍ରୋଧରେ ବୋଇଲେ ହେ ଶୁଣ ପଦ୍ମଆଖି ।
ଯେଉଁଠାବରେ ଦୁର୍ମର୍ଷଣ ରହିଅଛି
ସେଠାକୁ ରଥ ମୋର ବାହ ମୁଁ ବୋଲୁଛି ।
ମାରି ତା ହାତୀ ବଳ ଯୁଦ୍ଧରେ ଗୁଡ଼ାଏ
ଆଗ ତାକୁ ଦେବି ହେ ଯଦୁକୁଳ ରାୟେ ।
ଗାଣ୍ଡୀବପାଣି ବାଣୀ ଶୁଣି ଚକ୍ରପାଣି
ବାହିଲେ ସେ ଘୋଡ଼ାମାନଙ୍କୁ ସେହିକ୍ଷଣି ।
ଦୁର୍ମର୍ଷଣ ସେନା ସମୀପେ ରଥ କଲେ
ଯୁଝ ହେ ଅରଜୁନ ହସିଣ ବୋଇଲେ ।
ଅରଜୁନଙ୍କୁ ଦେଖି ଦୁର୍ମର୍ଷଣ ସେନା
ବିନ୍ଧିଲେ ଧନୁ ଧରି ଶର ଅକଳନା ।
ଅର୍ଜ୍ଜୁନ ଗାଣ୍ଡୀବ ଧନୁରୁ ଶରବାରି
ବାହାରି ଘୋଡ଼ାଇଲେ ତୁମ୍ଭ ସେନା ଗିରି ।
ତୁମ୍ଭ ରଥୀଯାକ ତ ବଳବନ୍ତ ପଣ
ଦେଖାଇ ପାର୍ଥଙ୍କୁ ବିନ୍ଧିଲେ ବେଢ଼ି ବାଣ ।
ଏକା ଅର୍ଜ୍ଜୁନଙ୍କୁ ସହସ୍ର ସଂଖ୍ୟା ରଥୀ
ଯୁଦ୍ଧ କରି ନ ପାରିଲେ ତ କରି ବ୍ୟଥୀ ।
କ୍ରୋଧ ହୋଇ ଅର୍ଜ୍ଜୁନ ରଥୀଙ୍କର ମୁଣ୍ଡ
କାଟି କାଣ୍ଡେ ଗଡ଼ାଇ ଦେଲେ ରଣଦାଣ୍ଡ ।
କୁଣ୍ଡଳ ତୁଲେ ମୁଣ୍ଡ ପଡ଼ିବାରେ ମହୀ
ଆଚ୍ଛନ୍ନ ହୋଇଗଲା ଜାଣ ନରସାଇଁ ।
ତୁମ୍ଭ ଯୋଦ୍ଧାମାନେ ଖଡ଼ଗ ଧନୁଶର
ମୂଷଳ ଶୂଳ ଶକ୍ତି ପଟ୍ଟିଶ ତୋମର ।
ଧରିଥିଲେ ନ ମାରୁ ଅର୍ଜ୍ଜୁନ ଶାୟକେ
କାଟନ୍ତେ ବେକ ରହିଥିଲେ ସେହି ଠିକେ ।
ଯେ ରୂପରେ ଖସି ପଡ଼ଇ ପକ୍ୱତାଳ
ସେ ରୂପରେ ଖସି ପଡ଼ିଲେ ମୁଣ୍ଡମାଳ ।
ହାତୀଙ୍କ ଥୋର ହସ୍ତ ବୀରଙ୍କ ବାହୁ ଯୁଗ
ଛିଡ଼ନ୍ତେ ତଳେ ପଡ଼ି ନିନ୍ଦିଲେ ଭୁଜଙ୍ଗ ।
ପଡ଼ନ୍ତେ ଛିଡ଼ି ଛିଡ଼ି ଘୋଡ଼ାଙ୍କର ମୁଣ୍ଡ
ନିନ୍ଦାକଲା ଯେରୂପେ ଶିଳା ଖଣ୍ଡ ଖଣ୍ଡ ।
ତୁମ୍ଭ ସୈନ୍ୟଯାକ ଅର୍ଜ୍ଜୁନମୟ ସୃଷ୍ଟି
ମଣିଲେ ସର୍ବତ୍ର ଦିଶିଲା ତାଙ୍କ ଦୃଷ୍ଟି ।
ଆପଣା ଆପଣାରେ ମଣିଷ କିରୀଟି
ମରାମରି ହୋଇ ପଡ଼ିଲେ ମହୀ ଲୋଟି ।
ବାବୁ ଭାଇ ବୋଲି ଉଚ୍ଚରେ କରି ଡକା
ମଲେ ତୁମ୍ଭର ଲୋକେ ହୋଇଣ ତାଟକା ।
ପରିଘ ମୁଦଗର ପଟ୍ଟିଶ ମୂଷଳ
ଶକତି ଗଦା ଖଣ୍ଡା ତୋମର ଭିନ୍ଦିପାଳ ।
ଧରି ତୁମ୍ଭ ଯୋଦ୍ଧାଏ ମହୀଶଯ୍ୟା କରି
ଶୋଇଲେ ହେ ରାଜନ ମଣ୍ଡି ପ୍ରେତପୁରୀ ।
ପାର୍ଥ ସମ୍ମୁଖରେ ବିଶିଖ ଯେ ବିନ୍ଧିଲେ
ତା ବାଳ ଧରି କାଳ ଆଳୟକୁ ନେଲେ ।
ସେ ଯୁଦ୍ଧେ ଅର୍ଜ୍ଜୁନଙ୍କ ଆଦାନ ସନ୍ଧାନ
ଦେଖି ନ ପାରିଲା କେ କାହାର ନୟନ ।
ସହସ୍ର ଗଜାରୋହୀ ତୁରଗ ସିପାହୀ
ପଦାତି ରଥୀଙ୍କି ଅର୍ଜ୍ଜୁନ କ୍ରୋଧ ହୋଇ ।
ଏକାବେଳକରେ ତ କାଟିଲେଟି ମୁଣ୍ଡ
ଏହା କରି ପାରିନାହିଁ କେ ଏ ବ୍ରହ୍ମାଣ୍ଡ ।
ଅର୍ଜ୍ଜୁନ ଶର ବାତ ବଳେ କେତେ ରାଜା
ଅନିଳ-ତୃଣ ପରି ଉଡ଼ିଲେ ମହାରାଜା ।
ଗିରି ପରି ହାତୀ ପଡ଼ନ୍ତେ ମହୀ ଲୋଟି
ଦେଲେ ତୁମ୍ଭ ସେନା-ନଳିନ ବନ ମଣ୍ଡି ।
ମଧ୍ୟାହ୍ନ ସୂର୍ଯ୍ୟ ପରି ପାର୍ଥ ତେଜରାଜି
ପ୍ରକାଶନ୍ତେ ଯୋଦ୍ଧାଏ ଦେଲେ ଚକ୍ଷୁ ବୁଜି ।
ତୁମ୍ଭର ସେନାଯାକ ଯୁଦ୍ଧରେ ମହତ
ପୀଡ଼ା ପାଇ ଭାଜିଲେ ହୋଇଣ ତରସ୍ତ ।
ସିପାହୀ ଘୋଡ଼ାମାନଙ୍କର ବାଗ ମୋଡ଼ି
ଛାଟ ପିଟିବାରୁ ଭାଜିଲେ ଯୁଦ୍ଧ ଛାଡ଼ି ।
ରଥରେ ଥିବା ଲୋକେ ସାରଥିଙ୍କି ହାତ
ମାଇଲେ ଦେଖି ବହିନିଅ ବୋଲି ରଥ ।
ଗଜାରୋହେ ତ ଗଜକୁମ୍ଭଙ୍କୁ ଅଙ୍କୁଶ
ମାରନ୍ତେ ଭାଜିଲେ ସେ ପ୍ରାଣେ କରି ଆଶ ।
ପାଇକେ ପେଲାପେଲି ହୋଇଣ ପଛକୁ
ପଳାଇଲେ ରାଜନ ଜୀବ ରଖିବାକୁ ।
କେତେ ଯୋଦ୍ଧାମାନେ ନ ଚିହ୍ନି ଅରଜୁନ
ସମ୍ମୁଖରେ ପଡ଼ନ୍ତେ ହାରିଲେ ଜୀବନ ।
ଧୃତରାଷ୍ଟ୍ର ବୋଇଲେ ଭାଜିଲେ ସଇନ
ଅର୍ଜ୍ଜୁନଙ୍କୁ କହ କଲା କେ ଆୟୋଧନ ।
ନୋହିଲେ ବା ଶକଟବ୍ୟୂହରେ ପଶିଲେ
ଦ୍ରୋଣଙ୍କୁ ଆଶ୍ରେକରି ପାର୍ଥଙ୍କୁ ଯୁଝିଲେ ।

ଏହି କଥାମାନଙ୍କେ ବିଶେଷାବିଶେଷ
ଯାହା ଅଛି ସଞ୍ଜୟ କର ତା ପ୍ରକାଶ ।
ସଞ୍ଜୟ ବୋଇଲେ ହେ ତୁମ୍ଭ ସେନାଶ୍ରେଣୀ
ଭାଜିଲେ ଅର୍ଜ୍ଜୁନଙ୍କୁ ନ କରି ଆରଣି ।
ଦୁଃଶାସନ ଏକା ତ ଘେନି ଗଜସେନା
ଯୁଦ୍ଧ କଲେ ପାର୍ଥଙ୍କୁ ହୋଇ କୋପମନା ।
ଶିରଦେଶେ ତାଙ୍କ ସୁବର୍ଣ୍ଣଟୋପର
ସ୍ୱର୍ଣ୍ଣସାଞ୍ଜୁ ତୁଲେ ଦିଶିଲା ମନୋହର ।
ଗଜମାନଙ୍କର ଯେ ପାଦଘଣ୍ଟ ଧ୍ୱନି
ସ୍ତବ୍ଧ କରିଦେଲା ସବୁରି କର୍ଣ୍ଣବେନି ।
ବୀରମାନେ କରନ୍ତେ କ୍ରୋଧେ ଧନୁର୍ଘୋଷ
ସେହି ଶବଦ ପୂରି ରହିଲା ଆକାଶ ।
ଅର୍ଜ୍ଜୁନ ଦୁଃଶାସନ ଗଜବଳ ଦେଖି
ବିନ୍ଧିଲେ ଧନୁ ମଧ୍ୟେ ବାଛି ଶର ଯୋଖି ।
ସେ ହାତୀସୈନ୍ୟସିନ୍ଧୁ ମଧ୍ୟରେ ମଗର
ପରାୟେ ଚହଟିଲେ ଅରଜୁନ ବୀର ।
ଯୁଗକ୍ଷୟେ ଯେରୂପେ ସୂର୍ଯ୍ୟଙ୍କ ମଣ୍ଡଳ
ପ୍ରାଣୀମାନଙ୍କରଟି କରଇ ଆକୁଳ ।
ସେରୂପେ ପାର୍ଥ-ସୂର୍ଯ୍ୟ ଗାଣ୍ଡୀବମଣ୍ଡଳ
ପାଇ ଶରକିରଣ ହେଲେ କଲବଲ ।
କୃଷ୍ଣଙ୍କ ପାଞ୍ଚଜନ୍ୟ ଦେବଦତ୍ତ ଶଙ୍ଖ
ଶବ୍ଦେ ହାତୀମାନେ ରହିଲେ ଲଭି ଦୁଃଖ ।
ଏ ସମୟେ ଅର୍ଜ୍ଜୁନଙ୍କର ବାଣରାଜି
ବାଜିଲେ ତାହାଙ୍କର ଗଣ୍ଡିରେ ଗରଜି ।
ସେ ସକାଶୁଁ ରାଜନ ତୁମ୍ଭ ହାତୀକୁଳ
ପର୍ବତ ପରି ଯୁଦ୍ଧେ ମଣ୍ଡିଲେ ରସାତଳ ।
ହାତୀଙ୍କର କୁମ୍ଭ ଯାଆନ୍ତେ ବାଣେ ଫାଟି
କରକା ପରି ରାୟେ ମୁକ୍ତା କଲେ ବୃଷ୍ଟି ।
ଭଲ ଭଲ ମାହୁନ୍ତଙ୍କୁଟି ଭଲ୍ଲ କାଣ୍ଡ
ବିନ୍ଧନ୍ତେ ଅର୍ଜ୍ଜୁନ ପଡ଼ିଲା ଛିଡ଼ି ମୁଣ୍ଡ ।
ଯୋଦ୍ଧାଙ୍କ ମୁଖପଙ୍କଜରେ ମହୀଆଳି-
ଦେବୀଙ୍କି ପୂଜା କଲେ ପାର୍ଥ ବଳଶାଳୀ ।
ହାତୀମାନଙ୍କର ଉପରୁଟି ମାହୁନ୍ତେ
ପଡ଼ିଲେ ଲମ୍ବି ଅଙ୍କୁଶକୁ ଧରି କେତେ ।
କେତେକ ମାହୁନ୍ତଙ୍କୁ ମତ୍ତଦନ୍ତୀପନ୍ତି
ବହିଣ ବୁଲାଇଲେ ଶରେ ହୋଇ ବ୍ୟଥି ।
ବୁଲିବା ହାତୀଙ୍କର ଦେହେ ପାର୍ଥବାଣ
ବାଜନ୍ତେ ମଲେ ମାହୁନ୍ତଙ୍କ ନେଇ ପ୍ରାଣ ।
ଏକା କାଣ୍ଡକରେଟି ଦୁଇ ତିନି ହାତୀ
ମାଇଲେ ସେ ଯୁଦ୍ଧରେ ଅରଜୁନ ରଥୀ ।
ମାହୁନ୍ତ କାନ୍ଧେ ଥାଇ ମଲେ ଯେତେ କରୀ
ନିନ୍ଦାକଲେ ଯୁଦ୍ଧେ ସେ ଦ୍ରୁମବନ୍ତ ଗିରି ।
ଧନୁର୍ଗୁଣ ଜୁଆଳି ଈଷା ରଥୀଙ୍କର
କାଟିଲେ ପାର୍ଥ ଏହି କାଳେ ବିନ୍ଧି ଶର ।
ବିନ୍ଧିବା ଲାଘବରେ ନାଚିଲା ପରାୟେ
ଦିଶିଲା ଅର୍ଜ୍ଜୁନଙ୍କ ଅଙ୍ଗ ନରରାୟେ ।
କବନ୍ଧ ସେ ଯୁଦ୍ଧରେ ନୋହିଲା କଳନା
ମାରିବାରୁ କ୍ରୋଧରେ ନକୁଳଙ୍କ ନନା ।
ଛିଡ଼ନ୍ତେ ସୁନାରତ୍ନମୁଣ୍ଡା ମୁଣ୍ଡମାନେ
ଦିଶିଲେ ବିଦ୍ୟୁତ୍ ପରି ଯୁଦ୍ଧଭୂମିଘନେ ।
ଈଷାଦଣ୍ଡ ଯେ ଚକ ଧ୍ୱଜ ରଥଙ୍କର
ପଡ଼ିଲେ ଭାଜି ପାଇ ଅର୍ଜ୍ଜୁନଙ୍କ ଶର ।
ବସ୍ତ୍ର ପାଗ ଫୁଲ ତ ମଣ୍ଡିବାରେ ମହୀ
ମଣ୍ଡି ହେଲା ପରି ଦିଶିଲା ନରସାଇଁ ।
ଏରୂପେ ମାରନ୍ତେ ପୃଥାଙ୍କ ସାନ ସୂନୁ
ପଳାଇଲେ ଯୋଦ୍ଧାଏ କମ୍ପାଇ ଭୟେ ତନୁ ।
ଦୁଃଶାସନ ମଧ୍ୟେ ରହିଣ ନ ପାରିଲେ
ଶକଟବ୍ୟୂହେ ପଶି ଦ୍ରୋଣ ଆଶ୍ରେ କଲେ ।
ଦୁଃଶାସନ ଦୁର୍ମର୍ଷଣଙ୍କ ବଳ ମର୍ଦ୍ଦି
ଦୁହିଙ୍କର ସୈନ୍ୟଯାକର ମୁଣ୍ଡ ଛେଦି ।
ଦ୍ରୋଣ ସଇନରେ ହୋଇଲେ ପରବେଶ
ଉଡୁଥିଲାଟି ଫରଫର ଦୁଇ ନିଶ ।
ବ୍ୟୂହମୁଖେ ଦ୍ରୋଣ ତ ରଥେ ଥିଲେ ରହି
ନମିଲେ ଅରଜୁନ ତାଙ୍କୁ ପ୍ରୀତି ବହି ।
ଦୁଇ ହାତ ଯୋଡ଼ି କହିଲେ ଆହେ ଗୁରୁ
ତୁମ୍ଭେ କୃପା କଲେ ତରିବି ପ୍ରତିଜ୍ଞାରୁ ।
ଯୁଧିଷ୍ଠିର କୃଷ୍ଣ ଭୀମଙ୍କ ପ୍ରତି ମୋର
ଅଧିକ ମାନ୍ୟମାତ୍ର ତୁମ୍ଭେ ମନେ କର ।
ଯେଉଁରୂପେ ପାଣ୍ଡୁ ଅଛନ୍ତି ମୋର ପିତା
ସେହିରୂପେ ଗୁରୁ ତୁମ୍ଭେ ମୋହର ପିତା ।
ଅଶ୍ୱତ୍ଥାମା ପରି ମୁହିଁ ତୁମ୍ଭର ସୁତ
ମୋଠାରେ ଉଚିତ ଦେବାର ତୁମ୍ଭ ଚିତ୍ତ ।
ତୁମ୍ଭେ ଆଜ୍ଞା ଦେଲେ ମୁଁ ସିନ୍ଧୁ ନୃପତିଙ୍କି
ଦେଖାଇବିଟି ଯାଇ ଯମଙ୍କ କତିକି ।
ଦ୍ରୋଣ ବୋଇଲେ ହେ ମୋ ତୁଲେ ଯୁଦ୍ଧକର
ଜିଣିଲେ ମୋତେ ଜୟଦ୍ରଥେ ଯାଇ ମାର ।
ଏହା କହିଣ ଦ୍ରୋଣ ଶରେ ସମାଚ୍ଛନ୍ନ
କଲେ ରଥ ଅଶ୍ୱ ତୁଲରେ କୃଷ୍ଣାର୍ଜ୍ଜୁନ ।
ଦ୍ରୋଣଙ୍କର ଏ ରୀତି ଦେଖି ଅରଜୁନ
ଗାଣ୍ଡୀବ ଧରିଣ ବିନ୍ଧିଲେ ନଅବାର ।

ଅରଜୁନ କାଣ୍ଡକୁ ଦ୍ରୋଣ କାଣ୍ଡେ କାଟି
ଆଶୀବିଷ ସମ ବିନ୍ଧିଲେ ଶର ଯୋଟି ।
ଅରଜୁନ ଦ୍ରୋଣଙ୍କ ଧନୁ କାଟିବାକୁ
ଭାବନ୍ତେ ତରକିଣ ଦ୍ରୋଣ ସେ କଥାକୁ ।
ଅର୍ଜୁନଙ୍କର ଗୁଣ ପକାଇଲେ କାଟି
ଧ୍ୱଜ ଅଶ୍ୱ କୃଷ୍ଣଙ୍କୁ ବିନ୍ଧିଲେ ତ ଘୋଟି ।
ଅରଜୁନ ନିମିଷମାତ୍ରକେ ଗାଣ୍ଡୀବ
ଧନୁରେ ଗୁଣ ଦେଇ ନ ଛାଡ଼ିଣ ଭାବ ।
ଲାଘବ ଦେଖାଇବା ବୋଲି ମନେ କଲେ
କୋଦଣ୍ଡେ ସନ୍ଧି କାଣ୍ଡ ଛଅଶ ବିନ୍ଧିଲେ ।
ଏକାବେଳକରେ ସେ ଛଶକାଣ୍ଡଯାକ
ଧାଇଁଲେ ଦ୍ରୋଣଠାକୁ କରି ଘୋର ଡାକ ।
ଏ ବାହାରେ ଏଗାର ସହସ୍ର ସାତଶ
ନିମିଷକେ ବିନ୍ଧିଲେ ବିଜୟ ବୀରେଶ ।
ଏ କାଣ୍ଡରୁ ଗୋଟିଏ ନ ପଡ଼ିଣ ତଳେ
ପକାଇଲେଟି ଦ୍ରୋଣ ସଇନଙ୍କୁ ତଳେ ।
ରଥୀମାନଙ୍କର ରଥ ତୁଲରେ ବେକ
ଛିଡ଼ନ୍ତେ ତଳେ ପଡ଼ି ଦେଖିଲେ ସ୍ୱର୍ଗଲୋକ ।
ବଜ୍ରାନିଳ ଦହନ ପରାୟେ ସେ କାଣ୍ଡ
ଛୁଇଁଲେ ଗିରି ପରି କେତେ ହାତୀପିଣ୍ଡ ।
କେତେ ହାତୀ ଘନକୁ ଉଡ଼ାଇଣ ନେଲେ
କେତେ ହାତୀ ତୃଣ ବନକୁ ପୋଡ଼ିଦେଲେ ।
ଶତ ଶତ ସହସ୍ର ସହସ୍ର ଅଶ୍ୱପନ୍ତି
ବାଜନ୍ତେ କାଣ୍ଡଟି ପଡ଼ିଲେ ହୋଇ ଚିତି ।
ଅରଜୁନ ପୁଣି ସର୍ଜନ୍ତେ ଶରବ୍ରାତ
ପ୍ରଳୟ ସୂର୍ଯ୍ୟ ପରି ଯୁଦ୍ଧେ ହୋଇ ଗତ ।
ତୁମ୍ଭ ପ୍ରାଣ-ସିନ୍ଧୁରୁ ପ୍ରାଣ -ନୀର ହରି
ଘେନିଗଲେ ରାଜନ କିଛି ନ ବିଚାରି ।
ଘନାଘନ ପରାଏ ଦ୍ରୋଣଙ୍କର ଶରେ
ଘୋଡ଼ାଇଲେ ଗାଣ୍ଡୀବ ଶର-ସୂର୍ଯ୍ୟ ତୀରେ ।
ଏହା କରିସାରି ମରମଘାତୀ ଶରେ
ବିନ୍ଧିଲେ ଦ୍ରୋଣ ଆଣ୍ଡେ ଅର୍ଜୁନଙ୍କ ଉରେ ।
ଅରଜୁନ ସେ କାଣ୍ଡଘାତ ଉରେ ବହି
ଅବଶ ହୋଇଲେ ନିମିଷେ ନରସାଇଁ ।
ପୁଣି ଧୈର୍ଯ୍ୟ ହୋଇଣ ସରଜିଲେ ପତ୍ରୀ
ଉତ୍ତମ ମନ୍ତ୍ରଙ୍କରେ ଅରଜୁନ ମନ୍ତ୍ରି ।
କୃଷ୍ଣେ ପାଞ୍ଚକାଣ୍ଡ ବିନ୍ଧିଲେ ଦ୍ରୋଣଗୁଣ
ନୁହନ୍ତି ତ ଯୁଦ୍ଧଦାଣ୍ଡରେ ସେହୁ ଭୀରୁ ।
ଅର୍ଜୁନଙ୍କୁ ତେସ୍ତରୀ ଧ୍ୱଜକୁ ତ୍ରିକାଣ୍ଡ
ବିନ୍ଧନ୍ତେ ପିଇଲା ସେ ରକ୍ତ କରି ଦୁଣ୍ଡ ।

କୃଷ୍ଣ ଅର୍ଜୁନଙ୍କର ଯୁଦ୍ଧ ବିଳମ୍ବକୁ
ଦେଖିଣ କହିଲେ ଅନାଇଁ ଅର୍ଜୁନଙ୍କୁ ।
ମହତ ଉଦ୍ୟମ ତ ଆମ୍ଭେ କରିଥାଇଁ
ଯୁଝୁଥିବ ଦ୍ରୋଣଙ୍କୁ କହ କେତେ ଥାଇ ।
ଅରଜୁନ ବୋଇଲେ ଯେ ଇଚ୍ଛା ହେଉଛି
ତାହା କରିବା ହେଉ ମୋ ମନ ତ ଅଛି ।
କୃଷ୍ଣ ଅରଜୁନଙ୍କ ସମ୍ମତି ପାଇଲେ
ଦ୍ରୋଣଙ୍କ ରଥକୁ ବଳାଇ ବାହିନେଲେ ।
କୁରୁବାହିନୀର ମଧ୍ୟରେ କଲେ ନେଇ
ତାହା ଦେଖିଣ ଦ୍ରୋଣ ପଛରେ ଗୋଡ଼ାଇ ।
ବୋଇଲେ ଅରଜୁନ ଶତ୍ରୁକୁ ନ ଜିଣି
ଆଇଯାଏ ଯିବାର ନାହୁଁ ଆମ୍ଭେ ଶୁଣି ।
ନ ଜିଣି ତ ମୋତେ ଯାଉଛ ଆହେ ବୀର
ହୋଇଲା କି ଉଚିତ ଏ କଥା ତୁମ୍ଭର ।
ଅରଜୁନ ବୋଇଲେ ତୁମ୍ଭେ ତ ମୋ ଗୁରୁ
ମୁଁ ତୁମ୍ଭ ପୁତ୍ର, ଶତ୍ରୁ ହେଲୁ କି ହେତୁରୁ ।
ଏହା ତ ମୁହିଁ କିଛି ଜାଣିପାରୁ ନାହିଁ
ଶତ୍ରୁକୁ ନ ଜିଣି କି ଯିବାଲୋକ ମୁହିଁ ।
ତୁମ୍ଭକୁ ଜିଣିବାକୁ ଏ ମହୀରେ ଲୋକ
ଥିଲା ପରି ମୋହର ନୋହୁଛି ବିବେକ ।
ଏରୂପେ ଅରଜୁନ ବଚନରେ କହି
ତୁମ୍ଭ ସେନାମଧ୍ୟେ ପଶିଲେ ତ୍ୱରାହୋଇ ।
ଯୁଧାମନ୍ୟୁ ଉତ୍ତମଓଜା ଦୁଇ ବୀରେ
ପାର୍ଥ ରଥଚକ୍ର ରଖନ୍ତି ସେ ଯୁଦ୍ଧରେ ।
ଏ ସକାଶୁଁ ସେ ଦୁହେଁ ଅର୍ଜୁନ ସଙ୍ଗରେ
ଗୋଡ଼ାଇଣ ପଶିଲେ ବ୍ୟୂହର ଭିତରେ ।
କାମ୍ବୋଜ ଶ୍ରୁତାୟୁ ଯେ କୃତବର୍ମା ଜୟ
ଯୁଝିଲେ ବିଜୟଙ୍କୁ ନେବାପାଇଁ ଜୟ ।
ତାଙ୍କ ତୁଲେ ସହସ୍ରଦଶ ରଥୀ ରଥ
ଚଢ଼ି ଯୁଝୁଥିଲେ ହୋଇଣ ଧନୁହାତ ।
ଅଭୀଷାଦ ବଶାତି ଶିବି ମାବେଲ୍ଲକ
ଶୂରସେନ ଲଳିଖ କେକୟ ମଦ୍ରକ ।
କାଣ୍ଡେଜଗଜ ନାରାୟଣବଳ ଦ୍ରୋଣ
ଗୁରୁଙ୍କୁ ଆଗକରି ପାର୍ଥେ କଲେ ରଣ ।
ଔଷଧରେ ଯେରୂପେ ବ୍ୟାଧି ନିବର୍ତ୍ତଇ
ସେରୂପେ ଅର୍ଜୁନଙ୍କୁ ନିବାରିଲେ ଯାଇ ।
ରୁନ୍ଧିଦେଲେ ଯୁଦ୍ଧଦାଣ୍ଡରେ ରଥୀବୃନ୍ଦ
ଦ୍ରୋଣ ଧାଇଁ ଅଛନ୍ତି କରିବାକୁ ଦ୍ୱନ୍ଦ୍ୱ ।
ତାହା ଦେଖି ଅର୍ଜୁନ ସର୍ଜି ଶରବ୍ରାତ
ଡରାଇଦେଲେ ତୁମ୍ଭ ଯୋଦ୍ଧାଙ୍କର ଚିତ୍ତ ।

ରଥ ଧ୍ୱଜ-ଛତ୍ର ଯେ ଚାମର ଅନେକ
ପଡ଼ିଲା ଛିଡ଼ି-ବାଜି କିରୀଟି ଶାୟକ ।
ପ୍ରତିଜ୍ଞା ସତ୍ୟ ପାଳିବାକୁ ଦ୍ରୋଣଗୁରୁ
ଧାଇଁଲେ ପାର୍ଥଠାକୁ ନୋହି କିଛି ଭୀରୁ ।
ଅର୍ଜ୍ଜୁନକୁ ପଚିଶ କାଣ୍ଡ କରି ରୋଷ
ବିନ୍ଧିଲେ ଦ୍ରୋଣଗୁରୁ ଛାଡ଼ିଣ ମୁହାଁସ ।
ଅର୍ଜ୍ଜୁନ ଦ୍ରୋଣଙ୍କର ନ ସହି ଏ ରୀତି
ବିନ୍ଧିଲେ ସନ୍ଧିକାଣ୍ଡ କୋଦଣ୍ଡେ ଝଟତି ।
ଅର୍ଜ୍ଜୁନ କାଣ୍ଡଚାଣ୍ଡ ନ ସହିଣ ଦ୍ରୋଣ
ବ୍ରାହ୍ମଣ କାଟିଲେ ତା ପେଷି ବ୍ରହ୍ମବାଣ ।
ଦ୍ରୋଣାଚାର୍ଯ୍ୟଙ୍କର ଆଶ୍ଚର୍ଯ୍ୟ ନୟନରେ
ଦେଖିଲୁଁ ପାର୍ଥେ ଯା ଯୁଝିଲେ ଯତନରେ ।
ଅର୍ଜ୍ଜୁନ ପର୍ବତକୁ ଦ୍ରୋଣ ହୋଇ ଘନ
କରିଦେଲେଟି ଶର-ବାରିରେ ଆଚ୍ଛନ୍ନ ।
ପାର୍ଥ ବ୍ରହ୍ମଅସ୍ତ୍ର ବଳରେ ଶରସୃଷ୍ଟି-
ଯାକ ଦ୍ରୋଣଙ୍କର ଯେ ପକାଇଲେ କାଟି ।
ଦ୍ରୋଣ ପୁଣି ପଚିଶି କାଣ୍ଡ ଅର୍ଜ୍ଜୁନଙ୍କୁ
ବିନ୍ଧିକରି ବିନ୍ଧିଲେ ସତୁରି କୃଷ୍ଣଙ୍କୁ ।
ଅର୍ଜ୍ଜୁନ ହସି ହସି ଦ୍ରୋଣଙ୍କର କାଣ୍ଡ
ନ ବାଜୁଁ ଅଙ୍ଗେ କଲେ ଦୁଇ ଦୁଇ ଖଣ୍ଡ ।
ଯୁଗାନ୍ତ ଅଗ୍ନିପରି ଦ୍ରୋଣ ତେଜ ବହି
କରନ୍ତେ ଯୁଦ୍ଧ ଅର୍ଜ୍ଜୁନଙ୍କୁ କ୍ରୋଧ ହୋଇ ।
ଏହା ଜାଣି ଅର୍ଜ୍ଜୁନ ନ ଯୁଝି ତାହାଙ୍କୁ
ନେଲେ ରଥ କୃତବର୍ମାଙ୍କ ସଇନକୁ ।
କୃତବର୍ମା ଦେଖିଣ ଅର୍ଜ୍ଜୁନଙ୍କୁ ଆଗେ
ବିନ୍ଧିଲେ ଦଶ ଶର ରାଗେ ଅତି ବେଗେ ।
ଅରଜୁନ କୃତବର୍ମାଙ୍କୁ ବିନ୍ଧି କାଣ୍ଡେ
ପୁଣି ତିନି କାଣ୍ଡ ଯେ ବିନ୍ଧିଦେଲେ ଚାଣ୍ଡେ ।
କୃତବର୍ମା ହସିଣ କୃଷ୍ଣାର୍ଜ୍ଜୁନ ପିଣ୍ଡ
ଲାଖକରି ବିନ୍ଧିଲେ ପଚିଶିଟି କାଣ୍ଡ ।
ଅର୍ଜ୍ଜୁନ କୃତବର୍ମା ଧନୁକୁ ଛେଦିଲେ
ସାତଗୋଟି କାଣ୍ଡ ତ ବାଛିଣ ବିନ୍ଧିଲେ ।
ଆନ ଧନୁ ଧରିଣ କୃତବର୍ମା ବୀର
ବିନ୍ଧିଲେ ଅର୍ଜ୍ଜୁନଙ୍କ ବକ୍ଷେ ପାଞ୍ଚଶର ।
ଥିଲେ ଯେଉଁ କାଣ୍ଡକୁ ତଇଲେ ରଞ୍ଜାଇ
ବିନ୍ଧିଲେ ପାଞ୍ଚକାଣ୍ଡ ତହିଁରୁ ବଛାଇ ।
କୃତବର୍ମା ବକ୍ଷସ୍ଥଳକୁ ନବକାଣ୍ଡ
ବିନ୍ଧିଲେ ଅରଜୁନ ଓଟାରି କୋଦଣ୍ଡ ।
ଅରଜୁନ କୃତବର୍ମାଙ୍କର ସମର
ଦେଖି ମନେ ଚିନ୍ତା କରିଲେ ଚକ୍ରଧର ।
ଜୟଦ୍ରଥ ରାଜା ଜୀବନେ ରହିଅଛି
ଅର୍ଜ୍ଜୁନ ଯୁଝୁଁ ଯୁଝୁଁ କାଳ ତ ଯାଉଛି ।
ଏରୂପେ ଅନେକ ବିଚାରି ଚକ୍ରଧର
କହିଲେ କର କୃତବର୍ମାଙ୍କୁ ସଂହାର ।
ଅର୍ଜ୍ଜୁନ ଏହା ଶୁଣି ଅସ୍ତ୍ର କରି ଖରେ
ମୋହ କରିଣ କୃତବର୍ମାଙ୍କୁ ସମରେ ।
କାମ୍ବୋଜ ସେନାଙ୍କରେ ହୋଇଲେ ପ୍ରବେଶ
କଲେ ତହିଁ ଅତିଶୟରେ ଧନୁର୍ଘୋଷ ।
ଏ ଅନ୍ତେ କୃତବର୍ମା ଛାଡ଼ିକରି ମୋହ
ଅର୍ଜ୍ଜୁନଙ୍କୁ ଯୁଝିବା ବୋଲି ଧରି କୋହ ।
ପଛେ ଗୋଡ଼ାଅନ୍ତେ ନ ପାଇ ଅର୍ଜ୍ଜୁନଙ୍କୁ
ଯୁଝିଲେ ଯୁଧାମନ୍ୟୁ ଉତ୍ତମଓଜାଙ୍କୁ ।
ଯୁଧାମନ୍ୟୁ ଦେହକୁ ବିନ୍ଧି ତିନି ଶର
କଲେ ଚାରି ଉତ୍ତମଓଜାଙ୍କୁ ପ୍ରହାର ।
ସେ ଦୁହେଁ ତ କୃତବର୍ମାଙ୍କ ଧ୍ୱଜ କାଟି
ବିନ୍ଧିଲେ ଗଣି ଗଣି ମାର୍ଗଣ ଦଶୋଟି ।
କୃତବର୍ମା ଧରିଣ ଆନ ଧନୁଟାଏ
କାଟିଲେ ସେ ଦୁହିଙ୍କ ଧନୁକୁ ହେ ରାୟେ ।
ସେ ଦୁହେଁ ଛିଡ଼ାଧନୁ ତଳରେ ପକାଇ
ଆନ ଧନୁ ଧରି ଯୁଝିଲେ କ୍ରୋଧ ହୋଇ ।
ଯୁଧାମନ୍ୟୁ ଉତ୍ତମଓଜା ଦୁଇ ବୀରେ
ଯୁଝିଲେ ତ କୃତବର୍ମାଙ୍କ ସଙ୍ଗତରେ ।
ଏ ସକାଶୁ ଅର୍ଜ୍ଜୁନ ସଙ୍ଗ ଦେଲେ ଛାଡ଼ି
ଭେଦିଲେ ପାର୍ଥ ଦ୍ୱାର ବିନ୍ଧି ଶର ଧାଡ଼ି ।
ଜୟଦ୍ରଥ ବଧେ ତ ମନ ଦେଇଥିଲେ
ଏଣୁକରି କୃତବର୍ମାଙ୍କୁ ନ ଯୁଝିଲେ ।
ଶ୍ରୁତାୟୁଧ ରାଜନ ପାର୍ଥକୁ ଅନାଇଁ
ଧାଇଁଲେ ଯୁଝିବାକୁ ଧନୁହାତ ହୋଇ ।
ଅର୍ଜ୍ଜୁନଙ୍କୁ ତିନି ଯେ କୃଷ୍ଣଙ୍କୁ ସତୁରି
ବିନ୍ଧିଣ ଧ୍ୱଜକୁ ବିନ୍ଧିଲେ କାଣ୍ଡ ଧରି ।
ପାର୍ଥ ଶ୍ରୁତାୟୁଧ ଦେହକୁ ନଉକାଣ୍ଡ
ବିନ୍ଧିଲେ ଲୁଆଁଇ ଗାଣ୍ଡୀବ ମଧ ଖଣ୍ଡ ।
ପାର୍ଥ ପରାକ୍ରମ ନ ସହି ଶ୍ରୁତାୟୁଧ
ସତସ୍ତରି କାଣ୍ଡ ବିନ୍ଧିଲେ ବହି କ୍ରୋଧ ।
ଅର୍ଜ୍ଜୁନ ଶ୍ରୁତାୟୁଧ ଧନୁକୁ କାଟିଲେ
ଉରକୁ ସାତକାଣ୍ଡ ଲଖାଇ ବିନ୍ଧିଲେ ।
ଆନ ଧନୁ ଧରିଣ ଶ୍ରୁତାୟୁଧ ରାଜା
କ୍ରୋଧବଶେ ଥରାଇଦେଇ ନିଜ ମଜା ।
ଅର୍ଜ୍ଜୁନଙ୍କ ଉର ବାହୁକୁ ନବ ଶର
ବିନ୍ଧିଲେ କରିବାକୁ ତାହାଙ୍କୁ ସଂହାର ।

କ୍ରୋଧ ହୋଇ ପାର୍ଥ ଅନେକ କାଣ୍ଡ ବିନ୍ଧି
ଦେଲେ ଶ୍ରୁତାୟୁଧଙ୍କ ପରାଣକୁ ରୁନ୍ଧି ।
ସାରଥି ସେ ସତୁରି କାଣ୍ଡ କରି ଟାଣ
ବିନ୍ଧିଲେ ସେ ସତୁରି କାଣ୍ଡ କରି ଟାଣ ।
ଅର୍ଜ୍ଜୁନ ଶରେ ଶ୍ରୁତାୟୁଧ ପୀଡ଼ା ପାଇ
ଗଦା ଧରି ରଥରୁ ପଡ଼ିଲେ ସେ ଡେଇଁ ।
କାଳଦଣ୍ଡ ପରି ଶ୍ରୁତାୟୁଧ କରରେ
ଦିଶୁଥିଲା ଗଦା ଦେଖି ନୟନରେ ।
ପର୍ଣ୍ଣଶା ନଦୀଗର୍ଭୁ ବରୁଣ ବୀର୍ଯ୍ୟଜନ୍ମ
ଯେବେ ହୋଇଲେ ଶ୍ରୁତାୟୁଧ ନରୋତ୍ତମ ।
ତେବେ ତାହାଙ୍କ ମାତା ବରୁଣଙ୍କୁ ବର
ମାଗିଲେ ଅବଧ ମୋ ହୋଇବ କୁମର ।
ବରୁଣ ବୋଇଲେ ଗୋ ନଦୀ ଯାହା ମୋତେ
କହିଲେ ତାହା ଘେନି କହୁଛି ମୁଁ ତୋତେ ।
ଅବଧ ତ ମହୀରେ କେହି ହୋଇ ନାହିଁ
ଦେଉଛି ଅସ୍ତ୍ରବଳେ ବଧ ହେବ ଏହି ।
ଏହିରୂପେ କହି ବରୁଣ ଦଇବତ
ଦେଲେ ଗଦାଟି ସୁତକୁ ହୋଇ ପ୍ରୀତ ।
କହିଲେ ନ ଯୁଝିବା ଲୋକ ଏ ଗଦାକୁ
ମାଇଲେ ତାଙ୍କୁ ଛାଡ଼ି ମାରିବ ତୁମ୍ଭଙ୍କୁ ।
ସେହି ଗଦା ଧରିଣ ଶ୍ରୁତାୟୁଧ ବଳୀ
ଧାଇଁଥିଲେ ପାର୍ଥକୁ ମାରିବାକୁ ଚଳି ।
ଯୁଦ୍ଧବେଳେ ବରୁଣକଥା ପାସୋରିଲେ
ପାର୍ଥକୁ ନ ମାରି କୃଷ୍ଣଙ୍କୁ ତା ମାଇଲେ ।
କୃଷ୍ଣ ସେ ଗଦାଘାତେ କିଛି ନ କମ୍ପିଲେ
ସେହିକ୍ଷଣି ସେ ଗଦାବର ଲେଉଟିଲେ ।
ଶ୍ରୁତାୟୁଧ ମୁଣ୍ଡକୁ ଦେଇଣ ଫଟାଇ
ପଡ଼ିଲା ସେ ତଳେ ଜ୍ୱଳନ ଜ୍ୟୋତି ବହି ।
ଶ୍ରୁତାୟୁଧ ମରଣ ଦେଖି ତୁମ୍ଭ ନରେ
ପୂରାଇଲେ ଗଗନ ଆହା ଶବଦରେ ।
ଶ୍ରୀକୃଷ୍ଣ ଶ୍ରୁତାୟୁଧ ଯୁଝୁ ତ ନ ଥିଲେ
ତୁଚ୍ଛା ସିନା ତାହାଙ୍କୁ ଚଳି ସେ ମାଇଲେ ।
ଏହି ସକାଶରୁ ଲେଉଟି ସେହି ଗଦା
ଶ୍ରୁତାୟୁଧ ମୁଣ୍ଡଟି କରିଦେଲେ ପଦା ।
ବରୁଣଙ୍କ ବଚନ ନୁହଇଟି ଆନ
ତା ଆନ କରିବାରୁ ହେଲେ ସେ ନିଧନ ।
ମରନ୍ତେ ଶ୍ରୁତାୟୁଧ ଶ୍ରୁତାୟୁଧ ଲୋକେ
ପଳାଇଲେ ଯୁଦ୍ଧରୁ କାନ୍ଦି ସକ ସକେ ।
ଶ୍ରୁତାୟୁଧ ମରଣ ଅନ୍ତେ ସୁଦକ୍ଷିଣ
ଗୋଡ଼ାଇ ଅର୍ଜ୍ଜୁନଙ୍କ ସଙ୍ଗେ କଲେ ରଣ ।

ଅର୍ଜ୍ଜୁନ ସୁଦକ୍ଷିଣ ଦେହେ ସାତକାଣ୍ଡ
ବିନ୍ଧନ୍ତେ ପଡ଼ିଲେ ସେ ତଳେ ଗାଳି ପିଣ୍ଡ ।
ପୀଡ଼ା ପାଇ ଅର୍ଜ୍ଜୁନ ଶରେ ସୁଦକ୍ଷିଣ
ଅର୍ଜ୍ଜୁନଙ୍କୁ ବିନ୍ଧିଲେ ସାତ ତିନି ବାଣ ।
କୃଷ୍ଣଙ୍କୁ ତିନିକାଣ୍ଡ ବିନ୍ଧି ଅତିକୋପ
କରି ଅର୍ଜ୍ଜୁନଙ୍କୁ ବିନ୍ଧିଲେ ପାଞ୍ଚରୋପ ।
ଅର୍ଜ୍ଜୁନ ସୁଦକ୍ଷିଣ ଧ୍ୱଜ ଧନୁ କାଟି
ବିନ୍ଧିଲେ ଦୁଇ ଭାଲିକାଣ୍ଡ ଗୁଣେ ଯୋଟି ।
ଆନ ଧନୁକୁ ସୁଦକ୍ଷିଣ ଧରି କରେ
ତିନିକାଣ୍ଡ ବିନ୍ଧିଣ ଗର୍ଜିଲେ ସମରେ ।
ଘଣ୍ଟମାନବନ୍ଧା ଶକତି ସୁଦକ୍ଷିଣ
ଅର୍ଜ୍ଜୁନଙ୍କୁ ଫିଙ୍ଗିଲେ ଦେଖାଇଣ ଟାଣ ।
ସେ ଶକତିସର୍ପ ଅର୍ଜ୍ଜୁନ ଦେହ ବିଳ
ଗଳି ଆଶ୍ରେ କରିଲା ଯାଇ ଧରାତଳ ।
ତାଙ୍କର ଏ କର୍ମକୁ ପାର୍ଥ ନ ସହିଲେ
ଧ୍ୱଜ ଧନୁ ଅଶ୍ୱ ଯେ ସୂତଙ୍କୁ ବିନ୍ଧିଲେ ।
ପୁଣି ମାରଗଣଙ୍କୁ ବେଗରେ ପ୍ରହାରି
ସୁଦକ୍ଷିଣଙ୍କର ରଥକୁ ଦେଲେ ଚୂରି ।
ସୁଦକ୍ଷିଣଙ୍କର ଯେ ଉରକୁ ଚିଆରେ
ଗଳାନ୍ତେ ସେ ଭେଟିଲେ ଯମଙ୍କୁ ଠିଆରେ ।
ସୁଦକ୍ଷିଣ ଦେହକୁ ଏ ଅନ୍ତେ ଶିଥିଳ-
ଆଶ୍ରେ କରିବାରୁ ମୁକୁଟ ହେଲା ତଳ ।
ସୁବର୍ଣ୍ଣେ ଭୂଷିତ ଅଙ୍ଗ ତ କରିଥିଲେ
ଅନଳଲଗା ଗିରି ପରାୟେ ଦିଶିଲେ ।
ଶ୍ରୁତାୟୁଧ ସୁଦକ୍ଷିଣଙ୍କର ମରଣ
ଶୁଣି ତୁମ୍ଭ ସୈନ୍ୟ ଭାଜିଲେ ଛାଡ଼ି ରଣ ।
ଅଭୀଷାହ ବଶାତି ଶିବି ଶୂରସେନ
ଏ ଚାରଦେଶ ଲୋକେ କଲେ ଆୟୋଧନ ।
ଅର୍ଜ୍ଜୁନ ଶର ସିଂହ ମୂନନଖ ପାଇ-
ଭାଜିଲେ ସେ ସଇନହାତୀଏ ନ ରହି ।
ପୁଣି ଧୈର୍ଯ୍ୟ ହୋଇଣ ଅର୍ଜ୍ଜୁନଙ୍କୁ ରଣ-
କଲେ ସେ ଯୋଦ୍ଧାମାନେ ବେଢ଼ି ନରରାଣ ।
ଅରଜୁନ ସେହି ସଇନ୍ୟଙ୍କର ମୁଣ୍ଡ
ତାଳ ପରି ଗଡ଼ାଇଦେଲେ ରଣଦାଣ୍ଡ ।
ଏହା ଦେଖି ଶ୍ରୁତାୟୁ ଅଚ୍ୟୁତାୟ ଦୁଇ
ବାହାରିଲେ ଯୁଦ୍ଧକୁ ଅତି ତ୍ୱରା ହୋଇ ।
ସହକେ ସେ ଦୁହେଁ ଅଟନ୍ତି ଯୁଦ୍ଧଶାଳୀ
ପୁଣି ତ ବଳୀଙ୍କରେ ବୋଲାନ୍ତି ସେ ବଳୀ ।
ଅଣ୍ଟାରେ ବାନ୍ଧି ଖଣ୍ଡା ଧରିଥିଲେ ଧନୁ
ଧାଇଁଲେ ପାର୍ଥଠାକୁ ଧରି ହୃଦେ ମନୁ ।

ଅର୍ଜ୍ଜୁନଙ୍କର ସବ୍ୟ ଦକ୍ଷିଣରେ ରହି
ବିନ୍ଧିଲେ ଶର କ୍ରୋଧାନଳେ ହୋଇ ଦହି ।
ପାଣ୍ଡବଙ୍କ ଅହିତ ଦୁର୍ଯ୍ୟୋଧନ ହିତ
ଆପଣାର କୀର୍ତ୍ତିରେ ଦେଇକରି ଚିତ୍ତ ।
ସହସ୍ର ସଂଖ୍ୟା ପତ୍ରୀ ଜଳଧାରା ପରି
ବରଷା କଲେ ଅର୍ଜ୍ଜୁନଙ୍କ ରଥ ହେରି ।
କ୍ରୋଧ ହୋଇ ଶ୍ରୁତାୟୁ ନିଶିତ ତୋମର
କଲେ ଅରଜୁନଙ୍କୁ ଯୁଦ୍ଧରେ ପ୍ରହାର ।
ତୋମର ଘାତପାଇ ସ୍ୱରପୁରସାଇଁ
କୁମର ସମରେ ରହନ୍ତେ ତୁନି ହୋଇ ।
ଏହି ଛିଦ୍ରରେ ଅଚ୍ୟୁତାୟୁ ଧରି ଶୂଳ
ପିଟିଲା ଅରଜୁନ ଦେହେ ନରପାଳ ।
ଘାଆରେ ଲୁଣ ଦେଲାପରି ସେହି କଥା
ହୁଅନ୍ତେ ଅରଜୁନ ପାଇ ମହାବ୍ୟଥା ।
ଧ୍ୱଜଯଷ୍ଟିକି ତ ଧରିଣ ପକାଇଲେ
ସମ୍ଭାଳି କମ୍ପାରିଙ୍କ ନନ୍ଦନ ରହିଲେ ।
ଅର୍ଜ୍ଜୁନଙ୍କ ଏରୀତି ଦେଖି ତୁମ୍ଭ ଲୋକ
ମଲେ ବୋଲି ଡେଇଁଲେ ଛାଡ଼ି ହୃଦୁଁ ଦକ ।
କୃଷ୍ଣ ଅର୍ଜ୍ଜୁନଙ୍କର ଦେଖିକରି ମୋହ
ଆଶ୍ୱାସନା କଲେ ତାହାଙ୍କୁ ବହି ସ୍ନେହ ।
ଏହି ଛିଦ୍ରେ ଶ୍ରୁତାୟୁ ଅଚ୍ୟୁତାୟ ଦୁଇ
ଦେଲେ ଶରେ ଅର୍ଜ୍ଜୁନରଥକୁ ଘୋଡ଼ାଇ ।
ଅର୍ଜ୍ଜୁନଙ୍କ ଦେହରେ ମନ୍ଦେ ମନ୍ଦେ ଜ୍ଞାନ
ପ୍ରସରନ୍ତେ ଅର୍ଜ୍ଜୁନ ଫିଟାଇ ନୟନ ।
ଦେଖିଲେ ଘୋଟି ରହିଅଛି ଶରବୃନ୍ଦ
ଆଚ୍ଛନ୍ନ କରି ରଥ ତୁଳରେ ଗୋବିନ୍ଦ ।
ସହି ନ ପାରି ତା ଧନୁକୁ ଧରି ରାଗେ
ଇନ୍ଦ୍ରଙ୍କ ଦେବା ଅସ୍ତ୍ର ବିନ୍ଧିଲେ ସେ ବେଗେ ।
ସେ ଅସ୍ତ୍ରରୁ ସହସ୍ର ସଂଖ୍ୟା ଅସ୍ତ୍ର ହୋଇ
ଦେଲେ ସେ ଦୁହିଙ୍କର ଶରକୁ ବଢ଼ାଇ ।
ଆକାଶେ ପକ୍ଷୀ ପରି ପୁଣି ସଞ୍ଚରିଲେ
ଶ୍ରୁତାୟୁ ଅଚ୍ୟୁତାୟ ଉପରେ ପଡ଼ିଲେ ।
ଏହା କରିସାରି ଅର୍ଜ୍ଜୁନ ତ୍ୱରାହୋଇ
ଦୁହିଙ୍କ ମୁଣ୍ଡ ବାହୁ କାଟିଲେ ନୃସାଇଁ ।
ପବନରେ ଆହତ ହେବା ବୃକ୍ଷ ପ୍ରାୟେ
ପଡ଼ିଲେଟି ଶ୍ରୁତାୟୁ ଅଚ୍ୟୁତାୟ ରାୟେ ।
ଶ୍ରୁତାୟୁ ଅଚ୍ୟୁତାୟ ମରଣକୁ ଦେଖି
ତୁମ୍ଭ ଯୋଦ୍ଧାଯାକ ଲୋତକ ନେତ୍ରେ ରଖି ।
ମନେ କଲେ ଅବା ସମୁଦ୍ର ଶୁଖିଗଲେ
ନୋହିଲେ କିପାଁ ଅର୍ଜ୍ଜୁନଙ୍କ କରେ ମଲେ ।

ସେ ଦୁହିଙ୍କର ସୈନ୍ୟ ଅର୍ଜ୍ଜୁନ ସଂହାରି
ପଞ୍ଚାଶ ରଥୀଙ୍କର ପରାଣକୁ ହରି ।
ତୁମ୍ଭ ଯୋଦ୍ଧାଙ୍କର ଯେ ଭଲ ଭଲ ଲୋକ-
ମାନଙ୍କର ଶାୟକେ କାଟି କରି ବେକ ।
କୁରୁସେନା ମଧ୍ୟରେ ରଥ ନେଇ କଲେ
ମହାରଥୀମାନଙ୍କ ତୁଲେ ଯୁଦ୍ଧ କଲେ ।
ଶ୍ରୁତାୟୁ ଅଚ୍ୟୁତାୟୁ ଦୁହିଁଙ୍କ ମରଣ
ଶୁଣି ସେ ଦୁହିଁଙ୍କର ଦିଓଟି ନନ୍ଦନ ।
ଧାଇଁଲେ ଅର୍ଜ୍ଜୁନଙ୍କୁ ଯୁଦ୍ଧ କରିବାକୁ
ନିୟୁତାୟୁ ଦୀର୍ଘାୟୁ ବୋଲିଟି ତାହାଙ୍କୁ ।
ଅର୍ଜ୍ଜୁନ ମୁଖେ ରହି ସୁନାପୁଙ୍ଖବାଣ
ବିନ୍ଧୁଥିଲେ କାଳରେ ପ୍ରେରିତ ହୋଇଣ ।
ପାର୍ଥ ତଣ୍ଡିସନ କାଣ୍ଡକୁ ରୋଷ ବହି
ବିନ୍ଧିଣ ତାଙ୍କୁ ଦେଲେ ଯମଙ୍କୁ ଦେଖାଇ ।
ତୁମ୍ଭ ସୈନ୍ୟ-ନଳିନବନକୁ ଅର୍ଜ୍ଜୁନ
ମତ୍ତହସ୍ତୀ ପରାୟେ କଲେ ମରଦନ ।
ଯୋଦ୍ଧା ଯୁଦ୍ଧ କରିବା ଉତ୍ସାହ ଛାଡ଼ିଲେ
ଗୋଟିଏ ତାଙ୍କ ଆଗେ ରହି ନ ପାରିଲେ ।
ଦୁର୍ଯ୍ୟୋଧନଙ୍କରେ ହୁଅନ୍ତେ ସେ ପ୍ରେରିତ
ପ୍ରାଚ୍ୟ ଦାକ୍ଷିଣାତ୍ୟ କଳିଙ୍ଗ ମହୀକ୍ଷିତ ।
ଅରଜୁନ ଗାଣ୍ଡୀବ ଶରାସନ ରୋପେ
କାଟିଲେ ସେମାନଙ୍କ ବାହୁମୁଣ୍ଡ କୋପେ ।
ସହସ୍ରସଂଖ୍ୟା ବାହୁମାନଙ୍କୁ ଛିଣ୍ଡାଇ
ସସ୍ରସଂଖ୍ୟା ଯୋଦ୍ଧା ପଡ଼ିଲେ ଯୁଦ୍ଧେ ଶୋଇ ।
ସେ ବାହୁ-ସର୍ପକୁଳେ ସଂକୁଳ ଯୁଦ୍ଧଭୁଇଁ
ହେଲା ପରି ମଣିଲୁଁ ହସ୍ତିନା ନୃସାଇଁ ।
ହାତୀମାନେ କାଣ୍ଡରେ ଦେହରୁ ରକତ
କାତ କରି ନିନ୍ଦିଲେ ମେରୁ ପରବତ ।
ମ୍ଳେଚ୍ଛେ ତ ମରିବାରେ ସ୍ୱଚ୍ଛ ବୁଦ୍ଧିକରି
ଧାଇଁଥିଲେ ଯୁଦ୍ଧରେ ହାତୀ ଚଢ଼ି କରି ।
ଅର୍ଜ୍ଜୁନଙ୍କର କାଣ୍ଡ ତାହାଙ୍କର ଗଣ୍ଡି
ଖୋଳନ୍ତେ ହୋଇଲେ ସେ ରକତରେ ମଣ୍ଡି ।
ଶତ ଶତ ସହସ୍ର ସହସ୍ର ଯେ ହାତୀ
ଅରଜୁନ କାଣ୍ଡ ବାଜନ୍ତେ ହୋଇ ବ୍ୟଥୀ ।
ପଳାନ୍ତେ ସେ ତୁମ୍ଭର ଯୋଦ୍ଧାଙ୍କୁ ଚକଟି
କେତେ ଲୋକ ରହିଲେ ଭୂମେ ହୋଇ ବାଟି ।
ଯବନ କାଳକଚ୍ଛ ପୁଣ୍ଡ୍ରକ ଦରଦ
ବାହ୍ଲିକ ମ୍ଳେଚ୍ଛ ଦାର୍ବାଭିସାର ପାରଦ ।
ଏମାନେ ଗୋଟି ହୋଇ ପାର୍ଥେ ଶିଳାଘଷା
ଶର ବରଷିଲେ ନେବାକୁ ପରଶଂସା ।

ଅର୍ଜ୍ଜୁନ ତାଙ୍କର ନ ସହି ଯୁଦ୍ଧରୀତି
ବିନ୍ଧିଲେ ତାହାଙ୍କୁ ଗାଣ୍ଡୀବ ଝିଙ୍କି ଅତି ।
ଆକାଶରେ ଶଲଭପ୍ରାୟେ ଶରରାଜି
ପୂରିଲା ଦେଖିଲୁଁ କରନ୍ତେ ପାର୍ଥ ଆଜି ।
ମ୍ଲେଚ୍ଛଙ୍କ ବକ୍ଷସ୍ଥଳ ଗଳନ୍ତେ ସେ ଶରେ
ପଡ଼ି ଗଡ଼ିଗଲେ ସେ ସମରଦେଶରେ ।
ଲଣ୍ଡାମାନଙ୍କର ଛାଡ଼ିଯାଆନ୍ତେ ମୁଣ୍ଡ
ନିନ୍ଦିଲେ ଆଗ କାଟିଦେବା ବୃକ୍ଷଖଣ୍ଡ ।
ଜଟାଧାର ମ୍ଲେଚ୍ଛେ ଶରୀରକଟା ଦେଖି
ଫଟାଇ ମନ ଯୁଦ୍ଧୁଁ ଭାଜିଲେ ହୋଇ ଦୁଃଖୀ ।
ଅଶୁଚିଏ ରୁଧିରଜଳେ ଶୁଚିହୋଇ
ମୁଞ୍ଚିଲେ ସଂଗ୍ରାମକୁ ବଞ୍ଚିଯିବା ପାଇଁ ।
ଗିରିବାସୀ ଆସି ତ ଯୁଦ୍ଧ କରୁଥିଲେ
ବାଜନ୍ତେ କାଣ୍ଡ ମଲି ଭାଷି ସେ ବସିଲେ ।
ଗଜମାନେ ତର୍ଜନ ଧ୍ୱନିକି ବରଜି
ଶୋଇଲେ ଦଣ୍ଡା ହୋଇ ଚକ୍ଷୁ ଦୁଇ ବୁଜି ।
ଘୋଟକେ ଧପ ଧାପ ଧାଇଁବା ଛାଡ଼ିଲେ
ଅର୍ଜ୍ଜୁନ ଚାପରୋପ ବାଜନ୍ତେ ଗଡ଼ିଲେ ।
ଏହା ଦେଖିଣ କଙ୍କ ବକ କାକ ଧାଇଁ
ଖାଇଲେ ମାଉଁସ ନ ହୋଇ ଖୁଆଖୁଇ ।
ଚିରୁଗୁଣୀ ଡାହାଣୀ ପିଶାଚୁଣୀ ଶ୍ରେଣୀ
ପିଇଲେ ସୋଡ଼କି ସେ ରକ୍ତ ମଣି ପାଣି ।
ଅରଜୁନ ଧନୁଘନରୁ ଶରବ୍ରାତ
ଧରା ତ ଅତିଶୟେ ହେଲା ରାୟେ ଜାତ ।
ଏ ସକାଶୁଁ ତୁମ୍ଭ ସଇନ ମଧ ଭେଦି
ଜାତ ହୋଇ ବହିଲା ରକତର ନଦୀ ।
ବୀରଙ୍କର କେଶ-ସିଆଳି ପାଗ-ଫେନ
ଛିଡ଼ିଯିବା ଅଙ୍ଗୁଳିମାନେ କ୍ଷୁଦ୍ରମୀନ ।
ବେଗେ ସେ ନଦୀ ବହିଯାନ୍ତେ ସର୍ପପରି
ଛିଡ଼ିବା ଭୁଜମାନେ ଦିଶିଲେ ବାହାରି ।
ପଡ଼ିଅଛି ତହିଁ ଯେ ସୋରତରେ ବେଳା
ପାରି ହେବାପାଇଁ କି ଭାସେ ଶବ ଭେଳା ।
ମଡ଼ା-କାଠ ଦୁଇତଟରେ ସେ ଲାଗନ୍ତେ
ଖାଇଲେ ତା କୁକ୍କୁର ଶିବା ତୋଷଚିତ୍ତେ ।
ରକ୍ତନଦୀ ହେବା କଥାକୁ ଚମତ୍କାର
ନ କର ହେ ମନରେ ନରକୁଳବର ।
ଅରଜୁନ ବଳରେ ଯୁଦ୍ଧଭୂମିଯାକ
ଢିପ ଖାଲ ରକ୍ତରେ ହୋଇଗଲା ଏକ ।
ଝଡ଼ିମେଘ ଯେଉଁରୂପେ ବର୍ଷେ ଚାରିଦିଗ
ସେରୂପେ ଅର୍ଜ୍ଜୁନଟି ବିନ୍ଧିଲେ ଆଶୁଗ ।

ଯେ ଦେଖିଛି ଜାଣିଛି, କହିବା ଶକତି
ହୋଇବାର କଷ୍ଟ ହେ ଜାଣ ମହାମତି ।
ବଡ଼ ବଡ଼ କ୍ଷତ୍ରିୟ ସସ୍ରସାତ ପାର୍ଥ
ହାତ କାଣ୍ଡ ପାଇ ପାଇଲେ ଯମ ସାଥ ।
ବଜ୍ରାହତ ଗିରି ପରାୟେ ମରିକରି
ଶତ ଶତ ହାତୀ ଲୋଟିଲେ ଦଣ୍ଡଧାରୀ ।
ଘୋଡ଼ାଏ ମରିବାର ନୃପ ଏତେ ତେତେ
କରି ତାହା ତୁମ୍ଭଙ୍କୁ କହିବି ମୁଁ କେତେ ।
ଶରଜ୍ୱାଳାଙ୍କରେ ତୁମ୍ଭର ସୈନ୍ୟ ତୃଣ
ବନକୁ ପୋଡ଼ିଦେଲେ ଅରଜୁନ ଜାଣ ।
ରଥରେ ଯେତେ ରଥୀ ଥିଲେ ତାଙ୍କୁ ମାରି
ପକାଇଲେ ତଳେ ଗାଣ୍ଡୀବ ଧନୁର୍ଦ୍ଧାରୀ ।
ରକତରେ ମହାଦେବୀଙ୍କି ତୋଷି ପାର୍ଥ
ପଶିଲେ ସେନାମଧେ ହୋଇ ଧନୁହାତ ।
ଅମ୍ବଷ୍ଠ ଓଷ୍ଠ ଭିଡ଼ି ଏକା ଅର୍ଜ୍ଜୁନଙ୍କୁ
ଯୁଝିଲେ ଭାବି ମନେ ତୁମ୍ଭର ହିତକୁ ।
ଅରଜୁନ ତୀକ୍ଷଣ କାଣ୍ଡରେ ଅମ୍ବଷ୍ଠ
ଘୋଡ଼ା ପ୍ରାଣ ନେଲେ ଦେବାକୁ ଯୁଦ୍ଧେ କଷ୍ଟ ।
ଏହା ବାହାରେ ଧନୁ ପକାଇଲେ କାଟି
ଖୁଆଇବାକୁ ଅମ୍ବଷ୍ଠକୁ ପାଟି ମାଟି ।
ଅର୍ଜ୍ଜୁନ ବୀର ତ ଧାନୁକୀ ଶିରୋମଣି
ଏଣୁ ବ୍ୟୂହ ଭେଦିଲା କରି ସେ ଆରଣି ।
ଅରଜୁନ କାଣ୍ଡ କୋଶକେ କାଟୁଁ ମାଥ
ବଳିଯାଏ କୋଶେଚି କପିଧ୍ୱଜ ରଥ ।
ବୁଢ଼ା ତ ଆସି ମୁହିଁ ହୋଇଲିନି ବାପା
ତୁମ୍ଭର ବଚନକୁ ନାହିଁ ମୋର ତ୍ରପା ।
କି କରିବି ଶକତି ଅନୁରୂପେ ମୁହିଁ
ଯୁଝୁଅଛି ମୋତେ ସେ ଗଲା ବଳିଆଇଁ ।
ଯୁଧିଷ୍ଠିର ନୃପେ ଧରିବା ପାଇଁ ମୁହିଁ
ପ୍ରତିଜ୍ଞା ତ କରି ତୁମ୍ଭଙ୍କୁ ଅଛି କହି ।
ଦେଖ ହେ ସେନାମୁଖେ ପାଣ୍ଡବ ରାଜନ
ରହିଲେଣି ଆସି ସଙ୍ଗତେ ଘେନି ସୈନ୍ୟ ।
ଅରଜୁନ ଏବେ ତ ଜୟଦ୍ରଥ ମାରି-
ଯାଇଛି ଏ ଛିଦ୍ରେ ଆଣିବି ତାଙ୍କୁ ଧରି ।
ଏହି ଘେନି ଅର୍ଜ୍ଜୁନ ସଙ୍ଗେ ମୋର କାର୍ଯ୍ୟ
ନାହିଁ ଯୁଦ୍ଧ କରିବାରେ ହେ ମହାରାଜ ।
ଅର୍ଜ୍ଜୁନଙ୍କ ଠାକୁ ତ ତୁମ୍ଭେ ଏବେ ଯାଇ
ଯୁଦ୍ଧକର ନୃପ ନିର୍ଭୟଚିତ୍ତ ହୋଇ ।
ତୁମ୍ଭେ ବୀର ଶୂର କୃତଜ୍ଞ ଅସ୍ତ୍ରଜ୍ଞାତା
କାହିପାଇଁ ଯୁଦ୍ଧକୁ କରୁଅଛ ଚିନ୍ତା ।

ଦୁର୍ଯ୍ୟୋଧନ ବୋଇଲେ ଅର୍ଜ୍ଜୁନ ତୁମ୍ଭଙ୍କୁ
ଯୁଦ୍ଧରେ ବଳିଲେ ତ କହୁଛ ଆମ୍ଭଙ୍କୁ ।
ମୁଁ ଯାଇ କିରୂପରେ ଆଗୁଳି କିରୀଟୀ
ତୁଳରେ ଯୁଝିବି ଧନୁରେ ଶର ଯୋଚି ।
ଜିଣିବି ଯୁଦ୍ଧକଲେ ପାକଶାସନକୁ
ଜିଣି ନ ପାରିବି ଯୁଦ୍ଧରେ ଅର୍ଜ୍ଜୁନକୁ ।
ମହାବଳ ଶ୍ରୁତାୟୁଧ ଯେ ସୁଦକ୍ଷିଣ
ଶ୍ରୁତାୟୁ ଅଚ୍ୟୁତାୟ ଦୀର୍ଘାୟୁ ମ୍ଳେଚ୍ଛଗଣ ।
ଏମାନଙ୍କୁ ମାରି ମୋହର ଯୋଦ୍ଧା ଘୋଟି
ମୁଣ୍ଡ ଅର୍ଜ୍ଜୁନ ପକାଇଲା ରଣେ କାଟି ।
କୃତବର୍ମା ପରା ରଥୀଙ୍କି ମୋହକଲା
ତୁମ୍ଭର ତ ତାହାକୁ ବଳ ନ ପାଇଲା ।
ମୋହର ତ ବଳ ଯେ ଅଟଇ ଅଳପ
ଯୁଝିଗଲେ କରିବି ଭୂମିକି ତଳପ ।
ଯୁଝ ଯେବେ ତୁମ୍ଭେ ବୋଲୁଛ ଆହେ ଗୁରୁ
ଯୁଝିବି ପାର୍ଥଙ୍କ ନୁହଇ କିଛି ଭୀରୁ ।
ଭଲ ମନ୍ଦ କଥାରେ ମୋହର କରତା
ତୁମ୍ଭେ ସିନା ଅଟ ହେ ଦ୍ରୋଣ ବେଦବକ୍ତା ।
ଦ୍ରୋଣ ବୋଇଲେ ହେ କହିଲ ଯାହା ରାଜା
ସନ୍ତୋଷ ହୋଇଲା ହେ ଶୁଣି ମୋର ମଜ୍ଜା ।
ପାର୍ଥ ତ ଯୁଦ୍ଧରେ ଅତ୍ୟନ୍ତ ଦୁର୍ଦ୍ଧରଷ
ଯୁଦ୍ଧକଲେ ତୁମ୍ଭେ ତା ସଙ୍ଗେ ଯିବ ନାଶ ।
ଏହା ତ ଜାଣୁଅଛି କରିବି ଉପାୟ
ବିଜୟ ତୁମ୍ଭଠାରୁ ନ ଦେବାକୁ ଜୟ ।
ସୁନାର କବଚ ମୁଁ ଦେଉଛି ତୁମ୍ଭଙ୍କୁ
ଲଗାଇ ଯୁଦ୍ଧ କର ଯାଇ ଅର୍ଜ୍ଜୁନଙ୍କୁ ।
ଅର୍ଜ୍ଜୁନ ଅସ୍ତ୍ର ଶସ୍ତ୍ର ତୁମ୍ଭର ତ ଗଣ୍ଡି
ନ ଭେଦିବ କବଚ ହୋଇଥିବ ମଣ୍ଡି ।
ସୁରାସୁର ଯକ୍ଷ ଉରଗ ନର ଯୁଦ୍ଧ
କଲେ କରି ନ ପାରିବେ ତୁମ୍ଭର ବଧ ।
ଏରୂପେ ଦ୍ରୋଣ ତୁମ୍ଭ ସୁତକୁ କହିଲେ
ଆଚମନ କରି କବଚ ବାନ୍ଧିଦେଲେ ।
ଏଅନ୍ତରେ ଦ୍ରୋଣଟି ତୋଷମନ ହୋଇ
ଜପ କରିଲେ ପଇତାରେ ହାତ ଦେଇ ।
ଜପ ସାରି ବୋଇଲେ ବ୍ରହ୍ମଶ୍ରେଷ୍ଠ ସର୍ପ
ଯଯାତି ଦୁନ୍ଦୁମାର ବିଧାତା କଶ୍ୟପ ।
ଏକପାଦ ବହୁପାଦ ଯେ ବିଶ୍ୱାମିତ୍ର
ବଶିଷ୍ଠ ଦ୍ୱିଜ ସୂର୍ଯ୍ୟ ଦେବଳ ଅସିତ ।
ସ୍ୱାହା ସ୍ୱଧା ଶଚୀ ଯେ ଲକ୍ଷ୍ମୀ ଅରୁନ୍ଧତୀ
ଦିଗ ଦିଗୀଶ୍ୱର ତ କାର୍ତ୍ତିକେୟ କ୍ଷିତି ।
ଏ ସମସ୍ତେ ତୁମ୍ଭର କରନ୍ତୁ ମଙ୍ଗଳ
ଯାଅ ବାବୁ ଅର୍ଜ୍ଜୁନ ତୁଳେ କର ରୋଳ ।
ପୂର୍ବେ ଦେବେ ବୃତ୍ରାସୁରକୁ ଯୁଦ୍ଧେ ହାରି
କରିଗଲେଟି ବ୍ରହ୍ମାଦେବଙ୍କୁ ଗୁହାରି ।
ଗଦା ଧରି ଅମ୍ବଷ୍ଠ ଛାଡ଼ିଣ ରଥକୁ
ଧାଇଁଲେ ମାରିବାକୁ କୃଷ୍ଣ ଅର୍ଜ୍ଜୁନଙ୍କୁ ।
ଅମ୍ବଷ୍ଠର ବୁଦ୍ଧି ଅଟଇ ଅତି ନିନ୍ଦା
ପିଟିଲା ନେଇ ବିଶ୍ୱକର୍ତ୍ତାଙ୍କ ଦେହେ ଗଦା ।
ଉଦୟସୂର୍ଯ୍ୟ ମେଘ ଘୋଡ଼ାଇବା ପ୍ରାୟେ
ଘୋଡ଼ାଇଲେ ଅର୍ଜ୍ଜୁନ କାଣ୍ଡେ ତାର କାୟେ ।
ଅମ୍ବଷ୍ଠଙ୍କର ଗଦା ପାର୍ଥ କାଣ୍ଡେ କାଟି
ଦିଅନ୍ତେ ପକାଇଣ ଦେଲେ ସେ ଗଦାଟି ।
ଆନ ଗଦାଟିଏ ଧରିଣ କରପୁଟେ
ପିଟିଲେ ସେ ଶ୍ରୀକୃଷ୍ଣ ଅର୍ଜ୍ଜୁନଙ୍କୁ ଆଣ୍ଟେ ।
ଅରଜୁନ କାଣ୍ଡ ଯୋଡ଼ିଏ ସନ୍ଧି ବିନ୍ଧି
ଗଦା ତୁଳେ ତା ଭୁଜଦେଇ ଦେଲେ ଛେଦି ।
ପତ୍ରୀଟିଏ ବିନ୍ଧିଣ ଶତପତ୍ରନେତ୍ର
ମୁଖ ତୁଳେ ବେକ କାଟିଲେ କୁନ୍ତୀପୁତ୍ର ।
ଇନ୍ଦ୍ରଧ୍ୱଜ ପରି ତଳରେ ତାର ଗଣ୍ଡି-
ଖଣ୍ଡି ପଡ଼ି ଡେଙ୍ଗିଲା ହୋଇଣ ଦରାଣ୍ଡି ।
ଏ ଅନ୍ତେ ଅରଜୁନ ସୈନ୍ୟଘନବ୍ରାତ
ମଧ୍ୟରେ ସୂର୍ଯ୍ୟ ପରି ହୋଇଲେ ଆବୃତ୍ତ ।
ଦୁର୍ମର୍ଷଣ ଦୁଃଶାସନ ଯେ ଦ୍ରୋଣ କୃତ-
ବର୍ମାଙ୍କ ସଇନକୁ ଭେଦି ଇନ୍ଦ୍ରସୁତ ।
ଶ୍ରୁତାୟୁ ଅଚ୍ୟୁତାୟ କାମ୍ବୋଜ ସୁଦକ୍ଷିଣ
ଘେନନ୍ତେ ଯୁଦ୍ଧ କରି ଏମାନଙ୍କ ପ୍ରାଣ ।
ଦୁର୍ଯ୍ୟୋଧନରାଜା ଦେଖିଣ ଦୁଃଖୀ ହେଲେ
ଏକା ହୋଇ ଦ୍ରୋଣଙ୍କ ପାଶକୁ ଆସିଲେ ।
କହିଲେ ଆହେ ଗୁରୁ ଭେଦି ବ୍ୟୂହଯାକ
ଗଲା ତ ଅରଜୁନ ବୀରଙ୍କ ନାୟକ ।
ଏବେ ଯେଉଁ ରୂପରେ ମରିବ ଗୋସାଇଁ
ସେହିରୂପେ ଉପାୟ କର କହୁଥାଇଁ ।
ନ କଲେ ଜୟଦ୍ରଥ ପାଇବ ନିଧନ
ବିଫଳ ହୋଇବଟି ପ୍ରତିଜ୍ଞାବଚନ ।
ଜୟଦ୍ରଥ ରାଜାଙ୍କୁ ଜଗି ଯେ ଅଛନ୍ତି
କି କରିବା ବୋଲି ସେ ଗୁରୁ ଡରୁଛନ୍ତି ।
ତୁମ୍ଭଙ୍କୁ ଅର୍ଜ୍ଜୁନ ଜିଣନ୍ତେ ଯୁଦ୍ଧେ କୋପେ
ଭରସା ଭାଙ୍ଗି ରହିଛନ୍ତି ରସାନୃପେ ।
ଜାଣୁଛି ପୂର୍ବୁ ମୁହିଁ ତୁମ୍ଭଙ୍କୁ ଗୋସାଇଁ
ଥାଅ ମୋ ପାଶେ ପାଣ୍ଡବଙ୍କ ହିତ ଥାଇ ।

ଅର୍ଜୁନଠାରୁ ତୁମ୍ଭେ ଛାଡ଼ିବ କି ସ୍ନେହ
ତା ବଳ ଦେଖି ମୋର ହେଉଅଛି ମୋହ ।
ଶକତି ଅନୁରୂପେ ସେବିଛି ତୁମ୍ଭଙ୍କୁ
ତା ନ ଦେଖି ବିପତ୍ତି ଦେଉଛ ଆମ୍ଭଙ୍କୁ ।
ଆମ୍ଭେ ସଦା ଭକତ ତା ଭକତକଥା
କି ଜାଣିଥିଲେ ତାହା କହ ମହାରଥୀ ।
ଉପଗତ ବୈରୀ ନ କଲେ ତୁମ୍ଭେ ନାଶ
ବିଚାର ଏଥୁଁ ଆଉ ଅଛି କି ଅଯଶ ।
ସବୁଦିନେ ପାଣ୍ଡବଙ୍କର ପ୍ରିୟେ ଥାଇ
ମୋର ଅପ୍ରିୟ କରୁଥାଅ ହେ ଗୋସାଇଁ ।
ଆମ୍ଭ ଅନ୍ନ ଖାଇ ଆମ୍ଭର ଶୀର୍ଣ୍ଣଦଶା
ଭାବୁଅଛ ଏଥିରୁ ନେବ କି ପ୍ରଶଂସା ।
ତୁମ୍ଭଠାରୁ ବର ପାଇ ମୁଁ ଜୟଦ୍ରଥ .
ରାଜାଙ୍କୁ ଦେଖି ଏବେ କଟାଇବି ମାଥ ।
ମୁଁ ଦୁର୍ବୁଦ୍ଧି ତୁମ୍ଭର ବୁଦ୍ଧିରେ ପଡ଼ିଲି
ପଳାଉଥିଲା ଜୟଦ୍ରଥକୁ ରଖିଲି ।
ଆଜ ମୋ ଦୁଃଶୀଳା ଭଉଣୀ ହୋଇ ରାଣ୍ଡ
କାନ୍ଦିବ ଖଡ଼ୁବାହି ଛେଚି ମହୀଦାଣ୍ଡ ।
ଯମଦାଢ଼ ଭିତରୁ ଯିବ କିକି ଲୋକ
ନ ଯିବ ବାଜିଲେଟି କିରୀଟି ସାୟକ ।
ଆହେ ଦ୍ରୋଣ ମୋହର ପ୍ରଳାପ ବଚନ
ନ ଘେନି ରଖ ଜୟଦ୍ରଥର ଜୀବନ ।
ଦ୍ରୋଣ ବୋଇଲେ ହେ କହିଲ ଯାହା ବାବୁ
ଶୁଣିଲି ମୁଁ କାନ ଡେରିକରିଟି ସବୁ ।
ଅଶ୍ୱତ୍ଥାମା ପରି ତୁମ୍ଭେ ମୋହର ସୁତ
ତୁମ୍ଭଙ୍କୁ କିପାଁ ହୋଇବି କ୍ରୋଧଚିତ୍ତ ।
ଶ୍ରୀକୃଷ୍ଣ ତ ସାରଥିମାନଙ୍କେ ପ୍ରବର
ବାତଜିଣା ଗତି ଘୋଡ଼ାମାନଙ୍କର ।
କହିଲେ ଆହେ ଲୋକତାତ କୁଶଧର
ଜିଣିଲା ଯୁଦ୍ଧେ ଆମ୍ଭଙ୍କୁ ତ ବୃତାସୁର ।
ପାଖରେ ବିଷ୍ଣୁଦେବତା ବସିଥିଲେ
ତାହାଙ୍କୁ କୁଶପାଣି ଅନାଇଁ କହିଲେ ।
ସବୁକାଳେ ଦେବତାଙ୍କୁଟି ରଖିବାର
ଧରମ ମୋହର ହେ ବିଷ୍ଣୁ ମନେ କର ।
ଅୟୁତ ଶତ ଅବ୍ଦ ତପକୁ ଆଚରି
ଶିବ କୋଳରେ ତ୍ୱଷ୍ଟା ବୃତ୍ର ଛନ୍ତି କରି ।
ଶିବଙ୍କ ପ୍ରସନ୍ନରୁ ଅବଧ ହୋଇ ବୃତ୍ର
ଯୁଦ୍ଧ କରିଣ ବଧ କଲା ଦଇବତ ।
ଏବେ ଦେବତାଏ ମନ୍ଦର ପର୍ବତକୁ
ଯାଆନ୍ତୁ ବେଗହୋଇ ଘେନି ମୋ ବୋଲକୁ ।

ତପଯୋନି ଯେ ଦକ୍ଷଯଜ୍ଞ ବିନାଶନ
ସର୍ବଭୂତ ଈଶ୍ୱର ସାକ୍ଷୀ ନିପୀଡ଼ନ ।
ଅଛନ୍ତି ସେ ସେଠାରେ ତାଙ୍କୁ ନେତ୍ରଗତ
କଲେ ଏହା ଜାଣିପାରିବେ ଯୁଦ୍ଧେ ବୃତ୍ର ।
ବ୍ରହ୍ମାଙ୍କର ମୁଖରୁ ଏ ବଚନ ଶୁଣି
ମନ୍ଦର ପର୍ବତକୁ ଗଲେ ଦେବଶ୍ରେଣୀ ।
ଦେଖିଲେ ତହିଁ ଉମାଧବ ଛନ୍ତି ବସି
ତେଜରେ କୋଟି ସୂର୍ଯ୍ୟ ତେଜକୁ ବିନାଶି ।
ଶିବଙ୍କୁ ନମସ୍କାର କରି ସର୍ବ ଦେବେ
କରଯୋଡ଼ିଣ ସ୍ତୁତି ପ୍ରକାଶିଲେ ଭାବେ ।
ଶିବ ବୋଇଲେ ଆହେ କାହିଁ ଦଇବତ
କୁଳ ଆସିଅଛ ତାହା ମୋତେ କହ ତ ।
ମୋତେ ଦେଖିବାରଟି ଫଳ ନୋହେ ବ୍ୟର୍ଥ
ଏ ସକାଶୁ କହୁଛି ହେବ କାମଅର୍ଥ ।
ଦେବେ ବୋଇଲେ ଆହେ ବୃତ୍ର ଭୟେ ଆମ୍ଭେ
ଶରଣାପନ୍ନ ହେଲୁଁ ରକ୍ଷାକର ତୁମ୍ଭେ ।
ରୁଦ୍ର ବୋଇଲେ ଆହେ ଶୁଣ ଦେବଗଣ
ତ୍ୱଷ୍ଟା ତେଜେ ବୃତ୍ରାସୁରଟି ଉତପନ୍ନ ।
ଏହି ସକାଶୁ ବୃତ୍ର ଅଟେ ଦୁର୍ନିବାର୍ଯ୍ୟ
ମନ କଲେ ଘେନି ସେ ପାରେ ତୁମ୍ଭ ରାଜ୍ୟ ।
ତୁମ୍ଭଙ୍କୁ ସାହା ହେଲେ ମୋର ଧର୍ମ ଅଛି
ଏହା ଜାଣି ଅଦିତିବଂଶେ ମୁଁ ଦେଉଛି ।
କବଚ ମୁଁ ଅଙ୍ଗରୁ କରୁଛି ଉତପତ୍ତି
ମାନସମନ୍ତ୍ରେ ତା ବାନ୍ଧନ୍ତୁ ସୁରପତି ।
ମୋ କବଚ ବାନ୍ଧିଲେ ବୃତ୍ରର ସାୟକ
ନ କାଟିବ ଇନ୍ଦ୍ର କାଟିବେ ତାର ବେକ ।
ଏହା କହି ଇନ୍ଦ୍ରଙ୍କୁ ମଦନ ବଇରି
କବଚ ମନ୍ତ୍ର ଦୁଇ ଦେଲେ ସ୍ନେହକରି ।
କବଚକୁ ଲଗାଇ ଶଚୀଙ୍କ ରମଣ
ବୃତ୍ରାସୁର ତୁଲରେ କଲେ ଆସି ରଣ ।
ବୃତ୍ର ବାଣ ଇନ୍ଦ୍ରଙ୍କ କବଚ ନ ଭେଦି
ମହୀତଳେ ପଡ଼ି ରହିଲା ମୁହଁ ମୁଦି ।
ଏ ସକାଶୁଁ ଇନ୍ଦ୍ର ଦେବତା ଯୁଦ୍ଧ ଭୋଳେ
ଝମାଇ ବଜ୍ର କରନ୍ତେ କରତଳେ ।
ମାରନ୍ତେ ବୃତ୍ର ବେକେ ବସିଲା ସେ ନାକେ
ଇନ୍ଦ୍ର ଜୟଶିରୀ ଯେ ପାଇଲେ ନିଃଶଙ୍କେ ।
ମନ୍ତ୍ର ତୁଲେ କବଚ ଇନ୍ଦ୍ର ଅଙ୍ଗିରାକୁ
ଦେଲେ ସେ ସ୍ନେହେ ପୁଣି ତାଙ୍କର ପୁତ୍ରକୁ ।
ବୃହସ୍ପତି ଅଗ୍ନି ବେଶ୍ୟାଙ୍କୁ ସମର୍ପିଲେ
ଅଗ୍ନି ବେଶ୍ୟା କବଚ ମନ୍ତ୍ର ମୋତେ ଦେଲେ ।

ସେ କବଚ ଏବେ ବାନ୍ଧୁଛି ତୁମ୍ଭ ଦେହେ
ମାର ପାଣ୍ଡୁ ସୁତଙ୍କୁ ଯୁଦ୍ଧେ ରୁନ୍ଧି କୋହେ ।
ବ୍ରହ୍ମା ଇନ୍ଦ୍ର ଦେବଙ୍କୁ ତାରକ ସମରେ
ବାନ୍ଧିଥିଲେ କବଚ ସ୍ନେହ ହୃଦୟରେ ।
ଯେରୂପେ ସେରୂପେ କବଚ ମୁଁ ବାନ୍ଧୁଛି
ଭୟ ଦିଅ ମୁରୁଛି ଗାନ୍ଧାରୀଙ୍କ ବଛି ।
କବଚକୁ ବାନ୍ଧିଣ ଲକ୍ଷ୍ମଣଙ୍କ ପିତା
ଗୁରୁଙ୍କୁ ନମି ବାହାରିଲେ ଛାଡ଼ି ଚିନ୍ତା ।
ଦୁର୍ଯ୍ୟୋଧନଙ୍କର ଯେ ବାହାରିବା ଜାଣି
ଧାଇଁଲେ ତାଙ୍କ ସଙ୍ଗେ ତୁମ୍ଭ ଯୋଦ୍ଧାଶ୍ରେଣୀ ।
ସହସ୍ରେ ହାତୀ ଦଶ ସହସ୍ର ତୁରଙ୍ଗମ
ସହସ୍ର ରଥ ତୁଲେ ଜାଣ ନରୋତ୍ତମ ।
ନାନାଜାତି ବାଇଦଙ୍କୁ ତୁମ୍ଭର ଲୋକେ
ବଜାଇଲେଟି କରପୁଟରେ ନିଃଶଙ୍କେ ।
ତୁମ୍ଭର ଲୋକଯାକ କରିବାର ଡାକ
ଝମକାଇ ଦେଲେ ଯେ ଯୁଦ୍ଧଭୂମିଯାକ ।
ଏହି ସମୟରେ ପାଣ୍ଡବେ ସେମାନଙ୍କୁ
ଘେନିଣ ଯୁଦ୍ଧ କଲେ ଯାଇଣ ଦ୍ରୋଣଙ୍କୁ ।
ପାଞ୍ଚାଳ କୁରୁଙ୍କର ବ୍ୟୂହମୁଖେ ରଣ
ହୋଇଲା ସେ ସମୁଖ ହୁଅନ୍ତେ ନୃରାଣ ।
ସେ ସରିକି ବେଳ ପହର ଦୁଇ ହୋଇ
ଅଛି ବୋଲି ଜାଣ ବତାଇ ଜହ୍ନୁଁଥାଇଁ ।
ପାଣ୍ଡବେ ଧୃଷ୍ଟଦ୍ୟୁମ୍ନନଙ୍କୁ ଆଗ କରି
ବିନ୍ଧିଲେ ଆଶୁଗଙ୍କୁ ରାଗ ମନେ ଧରି ।
ଆମ୍ଭେମାନେ ଯେ ଦ୍ରୋଣଗୁରୁ ମହାଭାଗ
ପଛେ ଥାଇଁ ଯୁଝିଲୁଁ ଛାଡ଼ି ଅନୁଭାଗ ।
ସମୁଦ୍ରରେ ସମୁଦ୍ର ମିଶିଲାର ପରି
ଦୁଇସେନା ମିଶି ଯୁଝିଲେ ମୃତ୍ୟୁ ବରି ।
ଦ୍ରୋଣ-ପବନରୁ ସଂଗ୍ରାମ-ଘନଜ୍ଜଳ
ହୁଅନ୍ତେ ଜାତ ବରଷିଲା ଶର-ଜାଳ ।
ଗଦା-ବିଜୁଳିକି ପାଇଣ ଧନୁର୍ଘୋଷ
କଲା ସେ ନବଘନ ଘୋଷର ସଦୃଶ ।
ପାଣ୍ଡବସେନା-ସମୁଦ୍ରକୁ ଏକା ଦ୍ରୋଣ
ରଥ-ବୋଇତରେ ଯେ ତରିଗଲେ ଜାଣ ।
ଦ୍ରୋଣ ଅଭିମୁଖେ ପାଣ୍ଡବେ ଯତ୍ନ କରି
ରହିଲେଟିକି ସେମାନଙ୍କୁ ସଙ୍ଗେ ଧରି ।
ଦ୍ରୋଣଙ୍କ ବନ୍ଧବଳେ ପାଣ୍ଡବସଇନ-
ଜଳ ନ ବଳିଣ ଯେ ହୋଇଲେ ମଉନ ।
ପାଞ୍ଚାଳ ଯେ କେକୟ ମତ୍ସ୍ୟସେନାଙ୍କର
ଦୁର୍ବଳ ରଣେ ଦେଖି ଧୃଷ୍ଟଦ୍ୟୁମ୍ନବୀର ।
ଦ୍ରୋଣଙ୍କର ରଥ ଆଗରେ ନେଇ ରଥ
ରଖାଇ ବିନ୍ଧିଲେ ହୋଇଣ ଧନୁହାତ ।
ଦ୍ରୋଣ ଯେଉଁଠାକୁ ଯାଆନ୍ତି ଯୁଦ୍ଧ କରି
ସେଠି ଧୃଷ୍ଟଦ୍ୟୁମ୍ନ ଯୁଝନ୍ତି ଧନୁ ଧରି ।
ଯତ୍ନବନ୍ତ ହୋଇଣ ଯୁଝୁଥିଲେ ଦ୍ରୋଣ
ପାଇକରି ଧୃଷ୍ଟଦ୍ୟୁମ୍ନନଙ୍କର ବାଣ ।
ତୁମ୍ଭ ସେନା ତ୍ରିଭାଗ ହୋଇ ପଳାଇଲେ
ଭାଗେ ଦ୍ରୋଣ ଗୁରୁଙ୍କୁ ଯାଇ ଆଶ୍ରେ କଲେ ।
ଭାଗେ କୃତବର୍ମା ଯେ ଭାଗେ ଜଳସନ୍ଧ-
ରାଜାଙ୍କୁ ଆଶ୍ରେ କଲେ ଯୁଦ୍ଧେ ହୋଇ ରୁଦ୍ଧ ।
ଦ୍ରୋଣ ସଇନକୁ ଏକାଠି ପୁଣି କଲେ
ଧୃଷ୍ଟଦ୍ୟୁମ୍ନ ବଳରେ ପୁଣି ସେ ଭାଜିଲେ ।
ଅଗୋପାଳ ଗାଈ ପରାୟେ ସେନାକୁଳ
ହେଲେ ଦ୍ରୋଣ ତୁମ୍ଭ ହେବାରୁ ହୀନବଳ ।
ଧୃଷ୍ଟଦ୍ୟୁମ୍ନ ଶରେ ମୋହିତ ସେନା ହୋଇ
ଗଲା ପ୍ରାଣ ବୋଇଲେ ସର୍ବେ ଦୁଃଖୀ ହୋଇ ।
କୁତ୍ସିତ ନୃପରାଜ୍ୟେ ତସ୍କର ବ୍ୟାଧି ଭୟ
ହେଲା ପରି ଭୟଟି ହୋଇଲା ଉଦୟ ।
ସେନାଙ୍କ ପାଦଧୂଳି ଶସ୍ତ୍ର ତେଜରାଜି
ପାଇକରି ରହିଲୁ ନେତ୍ର ଦୁଇ ବୁଜି ।
ରୋଳରେ ଦେଖି ଧୃଷ୍ଟଦ୍ୟୁମ୍ନନଙ୍କ ବଳ
ସହିଟି ନ ପାରିଲେ ଭରଦ୍ୱାଜ-ବାଳ ।
ସରଜନା କରିଣ ଦ୍ରୋଣ ଶରମାଳା
ବିହରିଲେ ଦେହରୁ ଜାତକରି ଜ୍ୱାଳା ।
ରଥୀ ହାତୀ ଘୋଡ଼ା ପାଇକଙ୍କୁ ଦଣ୍ଡା-
କରି ଶୁଆଇଲେ ପ୍ରହାରି କାଣ୍ଡ ଖଣ୍ଡା ।
ଦ୍ରୋଣ ଚାପରୋପମାନଙ୍କୁ ଅଙ୍ଗେ ବହି
ପାଣ୍ଡବ ସେନାଯାକ ଭାଜିଲେ ନ ରହି ।
ଦ୍ରୋଣ ଶର ପ୍ରତାପ ସୂର୍ଯ୍ୟଙ୍କର ତାପ
ପାଇଣ ପାଣ୍ଡୁସେନା ଜ୍ଞାନ କଲେ ଲୋପ ।
ଚିତ୍ତଭ୍ରମ ହେବା ପରାୟେ ଯୁଦ୍ଧଭୂଇଁ-
ଯାକରେ ଭ୍ରମିଲେ ହସ୍ତିନା ନରସାଇଁ ।
ଏହା ଦେଖି ଧୃଷ୍ଟଦ୍ୟୁମ୍ନନ ଶରାନଳେ
ତୁମ୍ଭ ସୈନ୍ୟ-ତୃଣକୁ ପୋଡ଼ିଦେଲେ ହେଳେ ।
ଦ୍ରୋଣ ଧୃଷ୍ଟଦ୍ୟୁମ୍ନ କାଣ୍ଡରେ ଦୁଇ ସେନା
ହତହେଲେ କେତେ ହୋଇଲେ କୋପମନା ।
ଚାପମାନଙ୍କର ଯେ ରୋପକୁ ସନ୍ଧିଲେ
ଧପଧାପେ ଧାଇଁଣ ବିନ୍ଧାବିନ୍ଧି ହେଲେ ।
ଏହିରୂପେ ତୁମ୍ଭର ତାଙ୍କର ସଇନ
ଯୁଦ୍ଧ କରି ବହୁତ ହୋଇଲେ ନିଧନ ।

ବିବିଂଶତି ବିବର୍ଣ୍ଣ ଚିତ୍ରସେନ ବଳୀ
ବୃକୋଦର ତୁଲରେ ଆରମ୍ଭିଲେ କଳି ।
ବିନ୍ଦୁ ଅନୁବିନ୍ଦ ଯେ କ୍ଷେମଧୂର୍ତ୍ତି ବୀର
ସେ ତିନିଙ୍କ ପଛେ ରହିଲେ ମନେକର ।
ବାହ୍ଲିକ ଶାୟକଙ୍କୁ ମସ୍ତକେ ବୁଲାଇ
ଦ୍ରୌପଦୀଙ୍କ ସୁତକୁ ନିବାରିଲେ ଯାଇ ।
ଗୋବାସନ ରାଜା ଯେ କାଶୀଦେଶ ରାଜା
ସୁତ ତୁଲେ ଯୁଝିଲେ ଥରାଇଲେ ମଜ୍ଜା ।
ଶଲ୍ୟ ମହାମଲ୍ଲ ବୋଲାଇବାକୁ ଭଲ
କଲେ ଯୁଧିଷ୍ଠିର ରାଜାଙ୍କ ତୁଲେ ରୋଳ ।
ଦୁଃଶାସନ ଯେ ସେନା ସଙ୍ଗତରେ ଧରି
ସତ୍ୟକୁମରଙ୍କୁ ଯୁଝିଲେ ଆବୋରି ।
ମୁଁ ମଧ୍ୟ ଚେକିତାନ ସଙ୍ଗେ କଲି ରଣ
ତୁମ୍ଭ ହିତ ବାଞ୍ଛା କରି ହେ ନରରାଣ ।
ସାତଶ ଗାନ୍ଧାରଙ୍କୁ ଶକୁନି ଘେନିଲେ
ନକୁଳ ସହଦେବ ସଙ୍ଗତେ ଯୁଝିଲେ ।
ବାହ୍ଲିକଦେଶ ରାଜା ଥଇରାଣ ମଜ୍ଜା
ଶିଖଣ୍ଡୀକି ଯୁଝିଲେ ଛାଡ଼ୁଦେଇ ଲଜ୍ଜା ।
ବିନ୍ଦ ଅନୁବିନ୍ଦ ଯେ ଦୁହେଁ ପ୍ରାଣ ଛାଡ଼ି
ମତ୍ସ୍ୟନୃପ ପରେ ସର୍ଜିଲେ ଶରଧାଡ଼ି ।
ଅବନ୍ତିଦେଶ ରାଜା ଧୃଷ୍ଟଦ୍ୟୁମ୍ନ ତୁଲେ
ହୃଷ୍ଟରୋମା ହୋଇ ସମର ଆରମ୍ଭିଲେ ।
ଘଟୋତ୍କଚ ଯେ ଅଲାୟୁଧ ଭେଟାଭେଟି
ହୋଇଣ ଗରଜିଲେ ମେଲି ଦୁଇ ପାଟି ।
କୁନ୍ତିଭୋଜ ଅଲମ୍ବୁଷ ଯେ କରେ ରଣ
ବୃଷଭ ପରାୟେ ଅଟନ୍ତି ସେ ସିଂହାଣ ।
ସବୁ ସୈନ୍ୟ ପଛେ କୃପାଦି ବାହୁଛାୟା
ମଧ୍ୟରେ ଜୟଦ୍ରଥ ଲୁଚାଇଲେ କାୟା ।
ଜୟଦ୍ରଥଙ୍କର ଯେ ବାମ ଦକ୍ଷିଣରେ
ରହିଲେ କର୍ଣ୍ଣ ଅଶ୍ୱଥାମା ଦୁଇ ବୀରେ ।
ବୃଷସେନ ଶଲ୍ୟାଦି ରଥୀ ସିନ୍ଧୁନୃପ
ପୃଷ୍ଠରକ୍ଷା ହୋଇଲେ ଧରି କଲେ ଚାପ ।
ଜୟଦ୍ରଥ ରକ୍ଷାରେ ମନ ଦେଇ ଲୋକେ
ତୁମ୍ଭର ଯୁଝିଲେ ହେ ରାଜନ ନିଃଶଙ୍କେ ।
ଦ୍ରୋଣସୈନ୍ୟ ଭେଦିବା ଚିନ୍ତି ପାଣ୍ଡୁସୁତେ
ଯୁଦ୍ଧ କଲେ ସେ ସେନା ଘେନିଣ ସଙ୍ଗତେ ।
ଦ୍ରୋଣ ମଧ୍ୟ ମହତ୍ୱ ରଖିବା ପାଇଁକି
ଯୁଝିଲେ ସେନା ଘେନି ଧନୁ କରେ ଟେକି ।
ବିନ୍ଦ ଅନୁବିନ୍ଦ ଯେ ବିରାଟଙ୍କୁ ଦଶ
କାଣ୍ଡ ରାୟେ ବିନ୍ଧିଲେ କହି ମହାରୋଷ ।
ବିରାଟ ଏକା ହୋଇ ସେ ଦୁଇ ରଥୀଙ୍କି
ବିନ୍ଧିଲେ ମାର୍ଗଣ ତାହାଙ୍କୁ ଡାକିହାକି ।
ଦୁଇ ହାତୀ ତୁଲରେ ମୃଗେନ୍ଦ୍ର ସମର
କଲା ପ୍ରାୟେ ମଣିଲେ ଦେଖୁଥିବା ନର ।
ବାହ୍ଲକଙ୍କୁ ଶିଖଣ୍ଡୀ ଦେଲେ-କାଣ୍ଡେ ମଣ୍ଡି
ବାହ୍ଲିକ ସେହିରୂପେ କରି ତାଙ୍କ ଗଣ୍ଡି ।
ନଅଟି ମାରଗଣ ବାଛିଣ ବିନ୍ଧିଲେ
ଶିଖଣ୍ଡୀ ଯୁଦ୍ଧଶ୍ରଦ୍ଧା ଭାଙ୍ଗିବି ମଣିଲେ ।
ଭୀରୁଙ୍କର ଭୟ ଶୂରଙ୍କର ହରଷ
ବିଶେଷ ବଢ଼ାଇଲା ସେ ଯୁଦ୍ଧେ ନରେଶ ।
ବାହ୍ଲିକ ଶିଖଣ୍ଡୀଙ୍କ କାଣ୍ଡରେ ଆକାଶ
ଦିଗକୁ ଦେଖି ନ ପାରିଲା କାଣ ଦୃଶ ।
ହାତୀ ହାତୀ ତୁଲେ ଯେରୂପେ ଯୁଦ୍ଧ କରେ
ଶୈବ୍ୟ କାଶୀନୃପସୁତଙ୍କ ସଙ୍ଗତରେ ।
ସେହିରୂପରେ ଯୁଦ୍ଧ କଲେ କରି ଟାଣ
ଘେନିବାକୁ କାଶୀ ନୃପତି ସୁତ ପ୍ରାଣ ।
ବାହ୍ଲିକରାଜା ଦ୍ରୌପଦେୟଙ୍କର ତୁଲେ
ହିତ କଥା ଛାଡ଼ି ମହତ ଯୁଦ୍ଧ କଲେ ।
ଦ୍ରୌପଦେୟମାନେ ଯେ ହୋଇକରି ଗୋଟି
ବିନ୍ଧିଲେ ବାହ୍ଲିକ ରାଜାଙ୍କୁ ଶର ଯୋଟି ।
ତୁମ୍ଭର ସୁତ ଦୁଃଶାସନ ସାତ୍ୟକିଙ୍କି
ନବକାଣ୍ଡ ବିନ୍ଧିଲେ ଝିଙ୍କି ଧନୁ ଟେକି ।
ସାତ୍ୟକି ଦୁଃଶାସନ କାଣ୍ଡେ ପାଇ ପୀଡ଼ା
ରହିଲେ ରଥଦଣ୍ଡ ଧରି ହୋଇ ଛିଡ଼ା ।
ପୁଣି ଚେତା ପାଇଣ ସାତ୍ୟକିପ୍ରବର
ବିନ୍ଧିଲେ ଦୁଃଶାସନ ଦେହେ ଦଶ ଶର ।
ଅନ୍ୟୋନ୍ୟରେ ଦୁହେଁଟି ବୁହାଇ ରକତ
ଦିଶିଲେ ସେ କିଂଶୁକପୂଲର ସମିତ ।
କୁନ୍ତିଭୋଜ ଶରରେ ଦେହକୁ ରକତ
ଅଲମ୍ବୁଷ ତୁମ୍ଭ ଯୁଦ୍ଧରେ କଲା କାତ ।
ଅଲମ୍ବୁଷ କୁନ୍ତିଭୋଜଙ୍କୁ ତ ବିନ୍ଧିଲା
ସେନାମୁଖରେ ରହି ଗରଜି ଉଠିଲା ।
ଇନ୍ଦ୍ର କମ୍ଭାସୁର ପରାୟେ ଅଲମ୍ବୁଷ
କୁନ୍ତିଭୋଜ ଯୁଦ୍ଧ ମଣିଲା ଦେଖି ଦୃଶ ।
ମାଦ୍ରୀପୁତ୍ର ଦୁହେଁ ଶକୁନି ସଙ୍ଗେ ଯୋଟି
ବିନ୍ଧିଲେ ଶର ଆଖି ଦେଇଣ ତରାଟି ।
କର୍ଣ୍ଣ ଦୁର୍ଯ୍ୟୋଧନ ଶକୁନି ଦୁଃଶାସନ
ତୁମ୍ଭ ସକାଶରୁ ଏ ହୋଇଲା ରାଜନ ।
ଶକୁନି ମାଦ୍ରୀପୁତ୍ର ଦୁହିଙ୍କ ବଳ ପାଇ
ରହିଲେ ସମରଚେଷ୍ଟାକୁ ଛାଡ଼ିଦେଇ ।

ଶକୁନିକି ବିମୁଖ ଦେଖିଣ ବିଶିଖ
ବିନ୍ଧିଲେ ମାଦ୍ରୀପୁତ୍ରେ ବାଛିଣ ସଲଖ ।
ଲାଜ ପାଇ ଶକୁନି ନ କହିଣ କଥା
ଗଲେ ଯହିଁ ଥିଲେଟି ଦ୍ରୋଣ ମହାରଥା ।
ଘଟୋତ୍କଚ ଯେ ଅଳାୟୁଧକୁ ସଂଗ୍ରାମ
କଲେ ବଳୀ ଇନ୍ଦ୍ର ଯୁଦ୍ଧକୁ ହେଲା ସମ ।
ଯୁଧିଷ୍ଠିର ଶଲ୍ୟଙ୍କୁ ପାଞ୍ଚଶତ ଶର
ବିନ୍ଧି ପାଞ୍ଚକାଣ୍ଡ ବିନ୍ଧିଲେ ନୃପବର ।
ଅମରରାଜ ତୁଲେ ସମ୍ବର ସମର-
କଲା ପରି ମଣିଲେ ଯୁଦ୍ଧେ ଥିବା ନର ।
ବିବିଂଶତି ବିକର୍ଣ୍ଣ ଚିତ୍ରସେନ ବୀର
ଭୀମଙ୍କର ତୁଲରେ କଲେ ଯୁଦ୍ଧ ଘୋର ।
ଏରୂପେ ଦ୍ୱନ୍ଦ୍ୱଯୁଦ୍ଧ ହୁଅନ୍ତେ ବୀରକ୍ଷୟ
ଦେଖୁଁ ଦେଖୁଁ ଆସିଣ ହୋଇଲା ଉଦୟ ।
କୃତବର୍ମା ତୁଲେ ଯୁଝିଲେ ଯୁଧିଷ୍ଠିର
ଭୀମ କଲେଟି ଜଳସନ୍ଧକୁ ସମର ।
ଧୃଷ୍ଟଦ୍ୟୁମ୍ନ ଦ୍ରୋଣଙ୍କ ପାଖକୁ ଧାଇଁଲେ
ଅନ୍ୟୋଽନ୍ୟରେ ଯୁଦ୍ଧରେ ପୁଣି ପ୍ରବର୍ତ୍ତିଲେ ।
ଦ୍ରୋଣ ଧୃଷ୍ଟଦ୍ୟୁମ୍ନ ଦୁହିଙ୍କର ସମର
ଦେଖି ଚମତ୍କାର ମଣିଲେ ସବୁ ନର ।
ଦ୍ରୋଣ ଧୃଷ୍ଟଦ୍ୟୁମ୍ନ ଦୁହିଙ୍କ କାଣ୍ଡ ବାଜି
ଛିଣ୍ଡାଇ ମୁଣ୍ଡ ତଳେ ପଡ଼ିଲେ ଯୋଦ୍ଧାରାଜି ।
ଯୋଦ୍ଧାମାନଙ୍କର ତ ବସ୍ତ୍ର ଆଭରଣ
ଛିଡ଼ି ପଡ଼ି ମଣ୍ଡିଲା ସେ ଯୁଦ୍ଧଅଗଣ ।
କଳାବରନିଆଁ ଯୋଦ୍ଧାଏ ତ ରୁଧିର-
ଧାରା ହ୍ରଦେ ବହି ଯାଆନ୍ତେ ଯମପୁର ।
ଦିଶୁଥିଲା ତାଙ୍କର ଦେହ ଘନଛଟା
ନିନ୍ଦିଲା ତହିଁ ଥାଇ ରକ୍ତବିଜୁଳିଛଟା ।
ତାଳ ପରିମାଣରେ ଓଟାରି ଚାପକୁ
ବିନ୍ଧିଲେ ମହାରଥୀବୃନ୍ଦ ସଇନକୁ ।
ଏ ସକାଶୁଁ ଯୋଦ୍ଧାମାନଙ୍କ ଢାଲ ଖଣ୍ଡା
ଶକତି ମୁଦଗର ଛିଡ଼ିଲା ଗଣ୍ଡା ଗଣ୍ଡା ।
ଅକଳଣ ହୋଇଣ ନାଚନ୍ତେ କବନ୍ଧ
ଭୟାଳୁମାନଙ୍କର ଚକ୍ଷୁ ହେଲା ଅନ୍ଧ ।
ଗୃଧ୍ର ବକ କାକ ସଞ୍ଚାଣ ହୋଇ ଗୋଟି
ବସିଲେ ମଡ଼ାଙ୍କର ମାଉଁସ ରେକଟି ।
ଶିରମାନ ବାଛି ଅଲଗା କରିଦେଲେ
ବାଛି ବସା ମାଉଁସ ନିଠାଇ ଖାଇଲେ ।
ରଣଦୀକ୍ଷା କରିଥିଲେ ଯେତେକ ନର
ସେ ଯୁଦ୍ଧେ ସେ ଯୁଝିଲେ ଭୟ କରି ଦୂର ।

ପଚିଶ ଗଦା ଶକ୍ତି ତୋମର ପରଶ୍ୱଧ
ମୂଷଳ ଅଙ୍କପନ ଆଦି ନାନାୟୁଧ ।
ଧରିଣ ଯୋଦ୍ଧାମାନେ ହୋଇ ପିଟାପିଟି
ପଡ଼ି ତଳେ ଖାଇଲେ ପାଟି ମେଲି ମାଟି ।
ରଥୀଙ୍କି ରଥୀ ଗଜାରୋହେ ଗଜାରୋହା
ଯୁଦ୍ଧ କଲେ ରାଜନ ଟେକି ଦୁଇ ବାହା ।
ସିପାହି ସିପାହିଙ୍କି ଟିପେହେଁ ନ ଛାଡ଼ି
ବରଛିରେ ହୋଇଲେ ଅନ୍ତ କଡ଼ାକଡ଼ି ।
ଏହିରୂପରେ ପ୍ରବର୍ତ୍ତନ୍ତେ ମହାରଣ
ଯୁଝୁ ନ ଥିଲେ ଧୃଷ୍ଟଦ୍ୟୁମନଙ୍କୁ ଦ୍ରୋଣ ।
ସେହି ସମୟରେ ଦ୍ରୋଣଙ୍କ ରଥେ ରଥ
ଯୋଚାଇଲେ ଧୃଷ୍ଟଦ୍ୟୁମନ ମହାରଥ ।
ପାରାବତ ପରିଟି ଧୃଷ୍ଟଦ୍ୟୁମ୍ନ ଅଶ୍ୱ
ଦ୍ରୋଣଙ୍କର ଅଶ୍ୱ ତ ଶ୍ରୋଣିତ ସଦୃଶ ।
ଦୁହେଁ ତ ଯୁଦ୍ଧେ ରାୟେ ହେଲେ ମିଶାମିଶା
ଘନେ ଥିବା ବିଜୁପ୍ରଭାକୁ ଦେଲେ ନାଶି ।
ଦ୍ରୋଣଙ୍କୁ ସମୀପରେ ଧୃଷ୍ଟଦ୍ୟୁମ୍ନ ଭେଣ୍ଡା
ଦେଖି ଧନୁ ଥୋଇ ଧଇଲେ ଢାଲ ଖଣ୍ଡା ।
ଦ୍ରୋଣ-ଆମିଷକୁ ସଞ୍ଚାଣ ପରି ଝାମ୍ପି-
ପଡ଼ି ରଥେ ଦ୍ରୋଣଙ୍କୁ ବସିଲେ ହୋଇ କୋପ
ରଥରେ ଜୁଆଳିରେ କ୍ଷଣ କ୍ଷଣକରେ
ବିହାରକଲେ ଧୃଷ୍ଟଦ୍ୟୁମ୍ନ ସେ ଯୁଦ୍ଧରେ ।
କ୍ରୋଧ ହୋଇଣ ଦ୍ରୋଣଙ୍କର ଚାରି ଅଶ୍ୱ
ବେଳକୁ ଦେଖାଇ ସେ ହାଣିଲେ ନରେଶ ।
ଦ୍ରୋଣ ମହାରଥୀ ଯେ ହୋଇଣ କାତର
ଖୋଜିଲେ ଧୃଷ୍ଟଦ୍ୟୁମନଙ୍କର ଅନ୍ତର ।
ନ ପାଇ ଛିଦ୍ର କିଛି ଭରଦ୍ୱାଜ ସୁତ
ଶଏକାଣ୍ଡେ କରିଲେ କରତାଳ ହତ ।
ଦଶକାଣ୍ଡେ ଖଣ୍ଡାକୁ କାଟି ପକାଇଲେ
ଚଉଷଠି କାଣ୍ଡରେ ଗଣ୍ଡିକି ବିନ୍ଧିଲେ ।
ଧ୍ୱଜ ଛତ୍ର କାଟିଣ ପାଷ୍ଣି ସାରଥିକି
ଦେଖାଇଲେ ନେଇଟି ଯମଙ୍କ କତିକି ।
ନେବାପାଇଁ ଧୃଷ୍ଟଦ୍ୟୁମନଙ୍କ ଜୀବନ
ରୋଷରେ ଶର କଲେ ଧନୁରେ ସନ୍ଧାନ ।
କର୍ଣ୍ଣଯାଏ ତାହା ଓଟାରି ଦ୍ରୋଣ ଗୁରୁ
ବିନ୍ଧନ୍ତେ ଚଳିଲା ସେ ଶବ୍ଦ କରି ଗୁରୁ ।
ସାତ୍ୟକି ତାହା ଦେଖି ଚତୁର୍ଦ୍ଦଶ ରୋପ
ବିନ୍ଧି ଖରେ ଭାଙ୍ଗିଲେ ସେ ଶର ପ୍ରତାପ ।
ଧୃଷ୍ଟଦ୍ୟୁମନ-ମୃଗ ଦ୍ରୋଣ-ସିଂହ ମୁଖୁଁ
ଆସିଲେ ତରି ତୁମ୍ଭ ବୀରେ ଦେଖୁ ଦେଖୁଁ ।

ଧୃଷ୍ଟଦ୍ୟୁମନଙ୍କର ରଖିବାକୁ ପ୍ରାଣ
ଚଳି ରୋପ ଚାପରେ ସନ୍ଧି ଗୁରୁ ଦ୍ରୋଣ ।
ସାତ୍ୟକିଙ୍କି ଗଣି ଯେ ଛବିଶଟି ବିନ୍ଧି
ଦେଲେ ତାଙ୍କ ଯୁଝି ଆସିବା ଦାଣ୍ଡ ରୁନ୍ଧି ।
ସାତ୍ୟକି ମଧ ସେହିରୂପେ ଯୁଦ୍ଧତାପେ
ମାର୍ଗଣ ସନ୍ଧିଲେ ଦ୍ରୋଣଙ୍କୁ ଚଳିଆପେ ।
ଏହି ଛିଦ୍ରେଟି ଧୃଷ୍ଟଦ୍ୟୁମନଙ୍କୁ ଧରି
ଘେନିଗଲେ ପାଣ୍ଡବ ରଥୀଏ ଦଣ୍ଡଧାରୀ ।
ଧୃତରାଷ୍ଟ୍ର ବୋଇଲେ ଆହେ ମନ୍ତ୍ରୀବର
କହ ମୋତେ ଦ୍ରୋଣ ସାତ୍ୟକିଙ୍କ ସମର ।
ସଞ୍ଜୟ ବୋଇଲେ ହେ ଶୁଣ ନରସାଇଁ
ଯୁଦ୍ଧରେ ଦ୍ରୋଣଗୁରୁ-ସର୍ପ କ୍ରୋଧ ହୋଇ ।
ଚାପ-ପାଟି ବିସ୍ତାରି ଶର-ଦନ୍ତାବଳି
ଦେଖାଇ ଧାଇଁଲେ ସେ ସାତ୍ୟକିଙ୍କି ଗିଳି ।
ସାତ୍ୟକି ଦେଖିଣ ଗୁରୁଙ୍କୁ ନୟନରେ
ମନ କଲେ ଘନ ବା ଆସିଲେ ଘନରେ ।
ନୋହିଲେ କିପାଁ ସୁନାମୁଣ୍ଡା କର ଚାପ
ବିଜୁଳି ପରି କରୁଛି ମୋ ନେତ୍ରପାତ ।
ଗୁଣଘୋଷ ଚଡ଼କ ପ୍ରାୟେ ଶୁଭୁଅଛି
ଶର-ଜଳଧାରାକୁ ଦେଉଛନ୍ତି ମୁଞ୍ଚି ।
ଏହିକ୍ଷଣି ଜଳେ ଏ ମୋର ଧୈର୍ଯ୍ୟ-ଗିରି
ଘୋଡ଼ାଇଦେବେ ମନ ପାଉଛି ମୋହରି ।
ଏହିପରି ଅନେକ ବିଚାରି ସାତ୍ୱତ-
କୁମର ଦ୍ରୋଣ ତୁଲେ ଯୁଦ୍ଧେ ଦେଇ ଚିତ୍ତ ।
ସାରଥିକି ବୋଇଲେ ଗୁରୁଙ୍କୁ ରଥେ ନେଇ
ବାହି ରଥ ମୋହର ଦିଅ ତ ମିଶାଇ ।
ସବୁ ଅସ୍ତ୍ରବିଦ୍ୟାରେ କୁଶଳ ଦ୍ରୋଣଗୁରୁ
ନୁହନ୍ତି ସେ ଯୁଦ୍ଧଦାଣ୍ଡରେ କେବେ ଭୀରୁ ।
ଧୃତରାଷ୍ଟ୍ର ରାଜାଙ୍କ ପକ୍ଷ ଆଶ୍ରେ କରି
ପାଣ୍ଡବ ବାହିନୀଙ୍କି ଦିଅନ୍ତି ସଂହାରି ।
ସବୁରୂପେ ଆମ୍ଭର ଏ ଅନର୍ଥ ହେତୁ
ଆଜ ଯୁଦ୍ଧେ କରବି ଏହାଙ୍କର ମୃତ୍ୟୁ ।
ସାରଥି ସାତ୍ୟକିଙ୍କ ବଚନ ଘେନିଲା
ଦ୍ରୋଣଙ୍କ ରଥ ଆଗେ ରଥ ରଖାଇଲା ।
ପରସ୍ପରେ ଦୁହେଁ ଅଟନ୍ତି ରଥୀଶିଖ
ବିନ୍ଧାବିନ୍ଧି ହୋଇଲେ ସଲଖ ବିଶିଖ ।
ଦୁହିଁଙ୍କର କାଣ୍ଡ ତ ନଭେ ଗଲା ବ୍ୟାପୀ
ଉଡ଼ିଲା ପକ୍ଷୀମାନେ ହେଲେ ପରିତାପୀ ।
ବିନ୍ଧିଲେ ସେ ତ ଦୁହେଁ ଶରକୁ ତୁହାଇ
ନ ପଡ଼ିଲା ତହିଁ ସୂର୍ଯ୍ୟଙ୍କ କର ମହୀ ।

ସେ ଦୁହିଙ୍କର ଶର ବୀରଙ୍କର ମନ
ଛନ୍ନ କରି ବୁଜାଇ ଦେଲାଟି ନୟନ ।
ଦୁହିଁଙ୍କର ସନ୍ଧିବା ବିନ୍ଧିବା ଲାଘବ
ଖୋଜିଲେ ଲୋକେ କରି ନ ପାରିଲେ ଠାବ ।
ଇକ୍ଷୁପାତ ବଜ୍ରପାତରୁ ଯେ ଅଧିକ
ଶୁଭନ୍ତେ ଯୋଦ୍ଧାଜନେ ଛାଡ଼ିଲେ ବିବେକ ।
ଦୁଇଗୁଣ ଶବଦେ ଭୂମି ଗଲା ଫାଟି
ପରାୟେ ମଣିଲେ ସେ ରାଜନ ଯୋଦ୍ଧାସୃଷ୍ଟି ।
ସାରଥି ରଥ ଅଶ୍ୱ ଦୁହେଁ ଦୁହିଁଙ୍କର
ଘୋଡ଼ାଇଦେଲେ ଯେ ପ୍ରକାଶି ଶରଧାର ।
ଧ୍ୱଜ ଛତ୍ର ଦୁହେଁଟି କଟାକଟି ହେଲେ
ପରସ୍ପରେ ରକ୍ତ ଦେହରେ ମଣ୍ଡାଇଲେ ।
ସେ ଦୁହିଁଙ୍କ ଯୁଦ୍ଧ ଯୋଦ୍ଧାଏ ନେତ୍ରେ ଦେଖି
ନ କରି ଯୁଦ୍ଧେ କଲେ ଷ୍ଟକିତ ଦୁଇ ଆଖି ।
ସେ ଦୁହିଁଙ୍କର ଯୁଦ୍ଧ ଦେଖି କଉତୁକ
ପାଇ ଦେଖି ରହିଲେ ତୁମ୍ଭ ସେନାଯାକ ।
ମୁକ୍ତା ମଣି ରତ୍ନ ସୁବର୍ଣ୍ଣ ଅଳଙ୍କାର
ସୈନ୍ୟ-ଘନେ ଦିଶିଲା ବିଜୁଳି ଆକାର ।
ପାଣ୍ଡବ ସେନା ମଧ ଦୁଇ ରଥୀଙ୍କର
ଯୁଦ୍ଧ ଦେଖି ରହିଲେ ମଣି ଚମତ୍କାର ।
ବ୍ରହ୍ମା ରୁଦ୍ର ଇନ୍ଦ୍ର ଯେ ବରୁଣ ଚାରଣ
ସିଦ୍ଧ ସାଧ ଗନ୍ଧର୍ବ ଅପସରାଗଣ ।
ଆରୋହିଣ ବିମାନ ଆକାଶରେ ରହି
ବୋଇଲେ ଏଢେ଼ ଯୁଦ୍ଧ ଦେଖି ତ ନ ଥାଇଁ ।
ସାତ୍ୟକି ଦ୍ରୋଣ ଦୁହେଁ ଅସ୍ତ୍ରର କୁଶଳ
ଦେଖାଇ ବିନ୍ଧାବିନ୍ଧି ହେଲେ ଶରମାଳ ।
ଦ୍ରୋଣଙ୍କର କାଣ୍ଡକୁ ଧନୁକୁ ସାତ୍ୟକି
ବରଷି ଦୃଢ଼ପତ୍ରୀ କଲେ ଟିକି ଟିକି ।
ନିମିଷକେ ଆନ ଧନୁରେ ଦେଇ ଗୁଣ
ଧରନ୍ତେ ସାତ୍ୟକି କାଟିଲେ ପେଷି ବାଣ ।
ଏରୂପେ ଷୋଳଥର ଧନୁ ଦ୍ରୋଣଙ୍କର
କାଟିଲେ ସେ ଯୁଦ୍ଧରେ ସତ୍ୟକ କୁମର ।
ଦ୍ରୋଣ ତାହାଙ୍କର ଏହି କର୍ମକୁ ଦେଖି
ପ୍ରଶଂସିଣ ଭାବିଲେ ମନେ ହୋଇ ସୁଖୀ ।
ଅରଜୁନ ଭୀଷ୍ମ ବୀର ତ ପର୍ଶୁରାମ
କାର୍ତ୍ତବୀର୍ଯ୍ୟ ପରି ସାତ୍ୟକି ପରାକ୍ରମ ।
ଦେଖି ସାତ୍ୟକିଙ୍କର ଆଶ୍ଚର୍ଯ୍ୟ ସମର
ଦ୍ରୋଣଙ୍କ ପରି ପ୍ରଶଂସିଲେ ସବୁ ସୁର ।
ସନ୍ଧିବା ବିନ୍ଧିବା ସାତ୍ୟକିଙ୍କର ବଣା
ହେଲା କାଣ ସୁରାସୁରଙ୍କୁ ମହାମନା ।

ଧୈର୍ଯ୍ୟ ହୋଇଣ ଦ୍ରୋଣ ଧରି ଆନ ଚାପ
ଅସ୍ତ୍ରଯୁଦ୍ଧ କଲେ ସେ ବହି ମହାକୋପ ।
ସାତ୍ୟକି ଦ୍ରୋଣଙ୍କର ଅସ୍ତ୍ରକୁ ଅସ୍ତ୍ରରେ
ସଂହାରି ପକାଇଲେ ଦେଖିଲୁ ନେତ୍ରରେ ।
ସାତ୍ୟକିଙ୍କର ଅମାନୁଷ କର୍ମ ଜାଣି
ଉମାଧବ ପରି ମଣିଲେ ନରଶ୍ରେଣୀ ।
ଦ୍ରୋଣ ଯେତେ ଅସ୍ତ୍ର ବିନ୍ଧିଲେ ଚଳି କାଣ୍ଡେ
ତେତେ କାଟି ସାତ୍ୟକି ବିନ୍ଧିଲେ ରଣଦାଣ୍ଡେ ।
ଦ୍ରୋଣ ବୁଢ଼ା ନ ସହି ସାତ୍ୟକି ଯୁଦ୍ଧପୌଢ଼ି
ବାଛିଣ ଶରଟାଏ ତୂଣ ମଧ୍ୟୁ କାଢ଼ି ।
ଧନୁ ମଧ୍ୟେ ବସାଇ ଆଗ୍ନେୟ ଅସ୍ତ୍ର ଯନ୍ତ୍ର
ମନ୍ତ୍ର କରି ଗୁଣ ଝିଙ୍କିଲେ ଅତି ଯତ୍ନ ।
ଆପଣା ପ୍ରାଣହନ୍ତା ଦ୍ରୋଣହସ୍ତେ ଶର
ଦେଖିକରି କ୍ରୋଧରେ ସାତ୍ୟକକୁମର ।
ବାରୁଣ ଅସ୍ତ୍ର ଧନୁ ମଧ୍ୟେ ବସାଇଲେ
ଦ୍ରୋଣଙ୍କ ଅସ୍ତ୍ର ନାଶିବାକୁ ମନେ କଲେ ।
ଦିବ୍ୟାସ୍ତ୍ର ଧରିବାରୁ ସାତ୍ୟକି ଦ୍ରୋଣ ବାହା
କି ହେବ ବୋଲି ଲୋକେ କଲେ ଆହା ଆହା ।
ଆକାଶେ ଥିବା ପ୍ରାଣୀ ଛାଡ଼ିଲେ ସଞ୍ଚାର
ମରିବା ଭୟ ହେଲା ଯେଣୁ ତାହାଙ୍କର ।
ସୂର୍ଯ୍ୟ ଲୋକ ନାଶ ଦେଖିଣ ଦୟାକଲେ
ଦୁହିଁଙ୍କ ଶରମୁନ ପଛକୁ କରି ଦେଲେ ।
ଯୁଧିଷ୍ଠିର ଭୀମ ନକୁଳ ସହଦେବ
ଧୃଷ୍ଟଦ୍ୟୁମ୍ନ କେକୟ ବିରାଟ ନରଦେବ ।
ଏ ସମସ୍ତେ ସାତ୍ୟକି ରଥକୁ ବେଢ଼ି ରହି
ଧନୁମାନ କରେ ଟେକିଲେ କ୍ରୋଧ ବହି ।
ସହସ୍ର ସଂଖ୍ୟା ରାଜପୁତ୍ର ଦୁଃଶାସନ
ସଙ୍ଗେ ଘେନି ରହିଲେ ଦ୍ରୋଣ ସନ୍ନିଧାନ ।
ରହନ୍ତେ ଦୁଇକୁଳ ରଥୀଏ ହୋଇ ଗୋଟି
ବିନ୍ଧିଲେ କାଣ୍ଡମାନ ଧନୁ ମଧ୍ୟେ କୋଟି ।
ଧୂଳି ଉଡ଼ି ସେନା ଆବୃତ କରିଦେଲା
ଏଣୁଟି ନିମର୍ଯ୍ୟାଦା ଯୁଦ୍ଧ ପ୍ରବର୍ତ୍ତିଲା ।
ବେଳ ଗଡ଼ିବାର ସରିକି ତୁମ୍ଭ ବଳ
ଯୁଦ୍ଧ କରିବାରେ ସେ ହୋଇଲେ ଆକୁଳ ।
ଅର୍ଜ୍ଜୁନ କୃଷ୍ଣ ଏହି ସମୟେ ଜୟଦ୍ରଥ
ରାଜାଙ୍କୁ ମାରିବାକୁ ଧୂଆଁଇଲେ ରଥ ।
ରଥ ଯିବା ଦାଣ୍ଡର ସଇନକୁ ମାରି
ଦେଲେଟି ଜାଣ ଅରଜୁନ ବାଟ କରି ।
ଯେଉଁ ଯେଉଁ ଆଡ଼େ ଅର୍ଜ୍ଜୁନଙ୍କର ରଥ
ଯାଏ ତହିଁ ଯୋଦ୍ଧା ଶୁଅନ୍ତି ମଣ୍ଡି ପଥ ।
ଉତ୍ତମ ଅଧମ ତ ମଧ୍ୟମ ମଣ୍ଡଳ
ଦେଖାଇଲେ ଶ୍ରୀକୃଷ୍ଣ ତ୍ରିଭୁବନ ପାଳ ।
ସନ୍ନତ ପର୍ବ କାଣ୍ଡ ଉନ୍ନତ ଦେଖାଇ
ବିନ୍ଧିଲେ ଅରଜୁନ ଅତି କ୍ରୋଧ ହୋଇ ।
ଯୋଦ୍ଧାମାନଙ୍କର ରକତ ମାଂସ ମେଦ
ଖାଇକରି କଲେ ସେ ଅର୍ଜ୍ଜୁନ ପ୍ରମୋଦ ।
କୋଶ ଅନ୍ତେ ପାର୍ଥର ହାତ କାଣ୍ଡରାଜି
ବାଜନ୍ତେ ଶତ୍ରୁଙ୍କର ବେକରେ ଗରଜି ।
ତହିଁକି ପ୍ରତି କୋଶେ ବଳିଯାଏ ରଥ
ପଛେ ଛିଡ଼ି ପଡୁଥାଇଟି ଶତ୍ରୁ ମାଥ ।
ଗରୁଡ଼ ପବନଙ୍କ ପରି ଅରଜୁନ
ଅଶ୍ୱଙ୍କର ଗତିକି ଜାଣ ହେ ରାଜନ ।
ପୁଣି ତ କୃଷ୍ଣଙ୍କର ପାଇଲେ ହାତ ବାଡ଼ି
ଏ ସକାଶୁଁ ଯୁଦ୍ଧ ଭୂମିରେ ଗଲେ ଉଡ଼ି ।
ଇନ୍ଦ୍ର ରୁଦ୍ର କୁବେର ରବି ମହାଭାଗ
ରଥର ବେଗୁଟିକି ବଳିଲା ସେ ବେଗ ।
କୃଷ୍ଣ ସେନା ମଧ୍ୟରେ ରଥ ନେଲେ ବାହି
ବିନ୍ଧିଲେ ତ ରଥୀମାନେ କ୍ରୋଧକୁ ବହି ।
ସେ କାଣ୍ଡମାନେ ପାର୍ଥ ଘୋଡ଼ା ଦେହେ ବାଜି
ରହିଲେ ତ ମୁଗୁରୁ ପରିଯନ୍ତେ ମଜ୍ଜି ।
ପୁଣି ତ ହୋଇଅଛି ବେଳେ ଅବସାନ
ସକାଳୁ ସେ ତ କରିନାହାନ୍ତି ଅଶନ ।
ଏହି ସକାଶରୁ ଯେ କ୍ଷୁଧା ତୃଷା ଶ୍ରାନ୍ତ
ଅର୍ଜ୍ଜୁନଙ୍କ ଅଶ୍ୱ ଦେହକୁ ହେଲା ଗତ ।
ପୂର୍ବ ପରି ରଥକୁ ବହି ସେ ଘୋଡ଼ାଏ
ଚଳି ନ ପାରିଲେ ଯୁଦ୍ଧକୁ ଜାଣ ରାୟେ ।
କୃଷ୍ଣ ରଥ ବିଚିତ୍ର ଗତିରେ ବୁହାଇ
ମଲା ହାତୀମଢ଼ା ମାନଙ୍କୁଟି ମଡ଼ାଇ ।
ଅରଜୁନ ଘୋଡ଼ାଙ୍କୁ ପିଟି ଘେନିଗଲେ
ଜୟଦ୍ରଥ ବଧେ ତ ମନ ଦେଇଥିଲେ ।
ବିନ୍ଦ ଅନୁବିନ୍ଦ ଅର୍ଜ୍ଜୁନ ଘୋଡ଼ା ଶ୍ରାନ୍ତ
ଛିଦ୍ର ପାଇଣ ଦୁହେଁ ହୋଇ ଧନୁହସ୍ତ ।
ସେନା ଘେନି ଯୁଦ୍ଧଦାଣ୍ଡଟି ଆବୋରିଲେ
ଅରଜୁନଙ୍କୁ ଶର ଷାଠିଏ ବିନ୍ଧିଲେ ।
କୃଷ୍ଣଙ୍କ ଦେହକୁ ସତୁରୀ ପ୍ରହାରିଣ
ବିନ୍ଧିଲେ ଚାରି ଘୋଡ଼ା ଦେହେ ଶଏ ବାଣ ।
ଅରଜୁନ ମରମ ଭେଦି ନବଶର
କଲେଟି ବିନ୍ଦ ଅନୁବିନ୍ଦଙ୍କୁ ପ୍ରହାର ।
ସେ ଦୁହେଁ କୃଷ୍ଣାର୍ଜ୍ଜୁନ ଦୁହିଙ୍କି ଆଚ୍ଛନ୍ନ
କରି ଦେଇଣ ଶରେ କଲେ ଗରଜନ ।

ଭଲ୍ଲକାଣ୍ଡେ ଦୁହିଙ୍କ ଧ୍ୱଜ ଧନୁ ଦୁଇ
କାଟି ତଳେ ଅର୍ଜ୍ଜୁନ ଦେଲେଟି ପକାଇ ।
ଆନ ଧନୁ ଧରିଣ ବିନ୍ଦ ଅନୁବିନ୍ଦ
ଅରଜୁନଙ୍କର ସଙ୍ଗତେ କଲେ ଦ୍ୱନ୍ଦ ।
ପୁଣି ଅରଜୁନ ଯେ ଦୁଇକାଣ୍ଡେ ଧନୁ
ଦୁହିଁଙ୍କ କାଟିଲେ କମ୍ପାଇ କ୍ରୋଧେ ତନୁ ।
ବିନ୍ଦ ଅନୁବିନ୍ଦଙ୍କ ଘୋଡ଼ାଙ୍କର ପ୍ରାଣ
ଦେଖାଇଲେ ଯମଙ୍କୁ ବିନ୍ଧି ମାରଗଣ ।
ସେ ଦୁହିଙ୍କ ପାର୍ଷ୍ଣି ସାରଥି ଯେ ହୋଇ-
ଥିଲେ ତାହାଙ୍କୁ ମଧ ଦେଲେ ସେ ବଢ଼ାଇ ।
ବିନ୍ଦ ମୁଣ୍ଡ ଖଣ୍ଡକ ଚନ୍ଦ୍ରବିମ୍ବ ପରି
ପକାଇ ଦେଲେ ତଳେ ପାର୍ଥ କାଣ୍ଡ ମାରି ।
ବିନ୍ଦ ମରିବାର ଦେଖିଣ ଅନୁବିନ୍ଦ
ଗଦା ଧରି ଧାଇଁଲା କରିବାକୁ ଦ୍ୱନ୍ଦ ।
କୃଷ୍ଣଙ୍କ ଲଲାଟରେ ପିଟିଲା ଗଦାଟେକି
ନ ହେକିଲେ ହରି ସେ ଗଦା ବାଡ଼ି ଟେକି ।
ଅରଜୁନ ତାହାର ଭୁଜ ବାହୁ ଶିର
ପାଦ ଦୁଇ କାଟିଲେ ବରଗିଣ ଶର ।
ବିନ୍ଦ ଯେ ଅନୁବିନ୍ଦ ଦୁହିଙ୍କ ମରଣ
ଦେଖିକରି ତା ସଙ୍ଗେ ଥିବା ସେନାଗଣ ।
ଅରଜୁନଙ୍କୁ ବାଣ ବରଷନ୍ତେ ଘୋଟି
ଅର୍ଜ୍ଜୁନ ପ୍ରାଣ ନେଲେ ତାଙ୍କ ମୁଣ୍ଡ କାଟି ।
ବିନ୍ଦ ଅନୁବିନ୍ଦ ସଇନ ଘନ ଭେଦି
ଦିଶିଲେ ପାର୍ଥ-ସୂର୍ଯ୍ୟ ହୋଇ ନିର୍ବିବାଦୀ ।
କୁରୁଯୋଦ୍ଧାମାନେ ଅର୍ଜ୍ଜୁନ ଘୋଡ଼ା ଶ୍ରାନ୍ତ
ଦେଖିକରି ଯୁଝିଲେ ହୋଇଣ ଉଷତ ।
ମନେ କଲେ ଜୟଦ୍ରଥ ଦୂରରେ ଛନ୍ତି
ତାଙ୍କୁ ଆଜି କେବେ ଏ ମାରି ନ ପାରନ୍ତି ।
ଏହି ସମୟରେ ଅରଜୁନ କୃଷ୍ଣଙ୍କୁ
କହିଲେ ହସି କରି ମନ୍ଦ ବଚନକୁ ।
ଜୟଦ୍ରଥ ରାଜା ତ ରହିଛନ୍ତି ଦୂରେ
ଘୋଡ଼ାଏ ତ ଶ୍ରାନ୍ତ ହୋଇଲେ ନିମିଷରେ ।
ଏଥିକି ଚାହିଁ କେଉଁ କଥାଟି ଉଚିତ
ହେବ ନା ପଚାରୁଛି କହ ହେ ଅଚ୍ୟୁତ ।
ତୁମ୍ଭେ ଥିବାଠାରେ କି ଯୁଧିଷ୍ଠିର ରାଜା
ହସ୍ତିନାରେ ନୋହିବେ ବୋଲିବ କି ରାଜା ।
ମୁଁ ଏବେ ଯେ କଥା କରିବି ଚକ୍ରଧର
ତା କହୁଅଛି ଶୁଣ ମନ କରି ଧୀର ।
ମୋର ଚାରି ଘୋଡ଼ାଙ୍କ ଫିଟାଇ ଦଉଡ଼ି
ଆଶ୍ୱାସନା କର ହେ ଦେହୁଁ ବାଣ କାଢ଼ି ।
ଶ୍ରୀକୃଷ୍ଣ ବୋଇଲେ ହେ ମୁଁ ଯା ବିଚାରୁଛି
ଆପଣ ତ ସେ କଥା କହିବା ହେଉଛି ।
ଅର୍ଜ୍ଜୁନ ବୋଇଲେ ହେ ସୈନ୍ୟ ମୁଁ ନିବାରି
ରଖୁଛି ଆଶ୍ୱାସନା କର ମୋ ଘୋଡ଼ାଚାରି ।
ଏହା କହି ଅର୍ଜ୍ଜୁନ ରଥୁଁ ଓହ୍ଲାଇଲେ
ଧନୁ ଶର ଧରି ତଳରେ ଉଭା ହେଲେ
ପରବତ ପରି ତ ଅରଜୁନ ବୀର
ରହିଅଛନ୍ତି ତଳେ ଦେଖି ଯୋଦ୍ଧାନର ।
ମନେ କଲେ ଏହାଙ୍କ ମୃତ୍ୟୁକାଳ ଆସି
ପ୍ରାପତ ହେଲା ଚାଲ ପକାଇବା ନାଶି ।
ଏହିରୂପେ ବିଚାର ଛିଣ୍ଡାଇ ଯୋଦ୍ଧାଏ
ଧାଇଁଲେ ଅର୍ଜ୍ଜୁନଙ୍କୁ ଯୁଝିବାକୁ ରାଯେ ।
ପ୍ରଳୟାନଳ ପରି ପାର୍ଥ ହାତ ଶର
କଲା ତୁମ୍ଭ ଯୋଦ୍ଧାମାନଙ୍କୁ ଭସ୍ମସାର ।
କେତେ ଯୋଦ୍ଧା ଅର୍ଜ୍ଜୁନ କାଣ୍ଡ ମୁନ ଫିଟି
ଯୁଦ୍ଧ କଲେ ଶାୟକ ଧନୁ ମଧ୍ୟେ ଯୋଟି ।
କେତେ ରଥୀ ଅର୍ଜ୍ଜୁନ ଚାରିପଟେ ରଥ
ରଖିଣ ଗରଜିଲେ ମଲା ବୋଲି ପାର୍ଥ ।
ଅରଜୁନ-ସୂର୍ଯ୍ୟଙ୍କୁ ତୁମ୍ଭ ସୈନ୍ୟ ଶର-
ଘନ ଘୋଡ଼ାଇଲା ସେ କାଳେ ମନେ କର ।
ଅସ୍ତ୍ରେ ଅସ୍ତ୍ର ନିବାରି ଗାଣ୍ଡୀବ ଧନୁର୍ଦ୍ଧାରୀ
ମାଇଲେ ତୁମ୍ଭର ସେନାଙ୍କୁ ଖେଦିକରି ।
ତୁମ୍ଭ ସୈନ୍ୟ-ଶିଶୁମୃଗଙ୍କୁ ପାର୍ଥ ଭଲେ
ସିଂହ ପରି କାଣ୍ଡଟି ନଖରେ ମାଇଲା ।
ବିଜୟଠାରୁ ଜୟ ନ ପାଇ ତୁମ୍ଭ ଲୋକ-
ମାନେ ବୁକୁ ଭୟରେ କରି ଦକ ଦକ ।
ଅର୍ଜ୍ଜୁନ ଧନୁରୁ ବାହାରି ଶରପନ୍ତି
ଆକାଶ ମାର୍ଗରେ ହୁଅନ୍ତେ କନ୍ତାଜନ୍ତି ।
ତହିଁରୁ ଅଗ୍ନିକଣାମାନେ ହୋଇ ଜାତ
ପଡ଼ି ତୁମ୍ଭ ସୈନ୍ୟରୁ କଲା କେତେ ହତ ।
ହାତୀ ଘୋଡ଼ା ପାଇକ ସିପାହୀଙ୍କ ବୁକୁ
ପୋଡ଼ି ସେ ଶର ବେଗେ ଗମିଲେ ତଳକୁ ।
ଧୂଳି-ନୀର-ଶକ୍ତି କୁମ୍ଭୀର ଧ୍ୱଜାବର୍ତ୍ତ
ଶର-ଉର୍ମିପନ୍ତି ପଦାତି ମତ୍ସ୍ୟବ୍ରାତ ।
ଦୁନ୍ଦୁଭି ଶଙ୍ଖବୃନ୍ଦ ନିସ୍ୱନ ଗର୍ଜନ
ଗଜ ଶିଳା ପାଗ-ପତାକା ଛତ୍ର ଫେନ ।
ଏହିରୂପେ ତୁମ୍ଭର ସଇନ ସାଗର
ବେଳା ହୋଇଲେ ଏକା ଅରଜୁନ ବୀର ।
ଅର୍ଜ୍ଜୁନଙ୍କୁ ଚାହିଁ କହିଲେ ନରହରି
ତୃଷାରେ ଆର୍ତ୍ତ ହୋଇଛନ୍ତି ଘୋଡ଼ା ଚାରି ।

ଘୋଡ଼ାଙ୍କୁ ଆମ୍ଭେ ପାଣି ନ ଦେବାଟି ଯେବେ
ପୂର୍ବ ପରି ଚାଲି ନ ପାରିବେ ତେବେ ।
ପାର୍ଥ ଏହା ଶୁଣି ବୋଇଲେ ଅଛି ପାଣି
ଦିଅ ମୋର ଘୋଡ଼ାଙ୍କୁ ଆହେ ଚକ୍ରପାଣି ।
ଏହା କହିଣ ବୀର ମୁକୁଟଙ୍କବର
ବିନ୍ଧିଲେ ଧନୁ ଝିଙ୍କି ଭୂମେ ମହାଶର ।
ସେ ଶରଘାତ ପାଇ ମହୀଯାନ୍ତେ ଫାଟି
ବାହାରିଲା ରାଜନ ତହୁଁ ଜଳ ଫୁଟି ।
ଦୀର୍ଘ ପ୍ରତି ସମାନ ହୋଇ ସେ ବ୍ୟାପିଲା
ନୟନକୁ ଶର ପରାୟେଟି ଦିଶିଲା ।
ହଂସ ଯେ ଚକ୍ରବାକ ଆଦି ଜନ୍ତୁପନ୍ତି
ସେ ଶରେ ରହିଛନ୍ତି ହୋଇ ଜନ୍ତାଜନ୍ତି ।
ନଳିନରେ ଅଳି କରନ୍ତି ମଧୁପାନ
ନିର୍ମଳରେ ନିନ୍ଦା କରୁଛି ମୁନିମନ ।
ମତ୍ସ୍ୟ କୂର୍ମଙ୍କରେ ହୋଇଅଛି ସଙ୍କୁଳ
ଛାଡ଼ିଣ ସେ ଜଳ ସକତ ଦୋଷକୁଳ ।
ଗଭୀରରେ ସମୁଦ୍ର ପରାୟେ ଦିଶିଲା
ପିପାସୁ ଲୋକଙ୍କର ମାନସ ତୋଷିଲା ।
ଏରୂପେ ପୁଷ୍କରିଣୀ କରି ଅରଜୁନ
ତା ଚାରିପଟେ ରଖି ଶରେ ଖମ୍ବମାନ ।
ଶର ଶ୍ରେଣୀ ରୁଅ କରିଣ ପକାଇଲେ
ଶର-ତୃଣଙ୍କରେ ସେ ଘର ଘୋଡ଼ାଇଲେ ।
କୃଷ୍ଣ ସେ ପୁଷ୍କରିଣୀ ଶରଘର ଦେଖି
ଅରଜୁନଙ୍କୁ ପ୍ରଶଂସିଲେ ହୋଇ ସୁଖୀ ।
ବୋଇଲେ ଏହି କଥା ଶୁଣ ମହାରଥା
କରିବା ଥାଉ ନ ଜାଣିବଟି ଏ ପନ୍ଥା ।
ଅର୍ଜୁନଙ୍କୁ ଏ ରୂପେ ପରଶଂସା କରି
ତ୍ରିଭୁବନ ମୋହନ ରଥୁଁ ଅବତରି ।
ଚୁଚୁକାର କରି ଘୋଡ଼ାଙ୍କୁ ମାରି କର
ଦେଲେ ହରି ଫିଟାଇ ଦଉଡ଼ି ବେକର ।
ତାହା ଦେଖି ସିଦ୍ଧ ଚାରଣ ହୋଇ ଗୋଟି
ବୋଇଲେ ଶୁଣ ଜଣାନାହିଁ ଏ କଥାଟି ।
ଯୁଦ୍ଧରେ କେ ରଥରୁ ଘୋଡ଼ାଙ୍କୁ ଫେଇବ
ତଳରେ ଛିଡ଼ା ହୋଇ ଘୋଡ଼ାଙ୍କୁ ମାରିବ ।
ଅରଜୁନ ଶ୍ରୀକୃଷ୍ଣ ବିନା ଏ କରମ
ଆନଠାରେ ବୋଇଲେ ଲାଗିବ ସରମ ।
ଲୋଭ ସବୁ ଗୁଣକୁ ନିବାରିବା ପରି
ଅର୍ଜୁନ ଦେଲେ ତୁମ୍ଭ ରଥୀଙ୍କି ନିବାରି ।
ରଥୀ ହାତୀ ଘୋଡ଼ା ବହୁତ ହେଲେ ଗତ
ଏ ଘେନି ଅର୍ଜୁନ ବିନ୍ଧିଲେ ଶରବ୍ରାତ ।

ରାଜାଏ ବହୁତ ବିନ୍ଧିଲେ ଅର୍ଜୁନଙ୍କୁ
ଅରଜୁନ ବିନ୍ଧିଲେ ନ ହେଜି ତାହାଙ୍କୁ ।
ତୁମ୍ଭ ସେନା ଅସ୍ତ-ନଦୀକି ଅରଜୁନ-
ସମୁଦ୍ର ଗ୍ରାସ କରି ଦେଲେ ବୋଲି ଘେନ ।
କୃଷ୍ଣ ଅରଜୁନଙ୍କ ଅମାନୁଷ କର୍ମ
ଦେଖି ସବୁ ରଥୀଏ ବୋଇଲେ ଉତ୍ତମ ।
ଆହେ ଧୃତରାଷ୍ଟ୍ର ତ ଆଜିଯାଏ କେହି
ଯୁଦ୍ଧେ ଘୋଡ଼ା ଫିଟାଇ ପାଣି ପେଇ ନାହିଁ ।
କୃଷ୍ଣ ଅରଜୁନଙ୍କ ତେଜ ଦେଖି ନେତ୍ରେ
ଥୋଇଲୁଁ ଆମ୍ଭେମାନେ ମହାଭୟ ଗାତ୍ରେ ।
ନାରୀ ମଧ୍ୟେ ନିର୍ଭୟେ ବିହରିଲା ପରି
ଶରଘରେ ବିହରି ଗୋପାଳବେଶଧାରୀ ।
ଘୋଡ଼ାମାନଙ୍କରଟି ଧରି କରେ ବାଗ
ଟହଲାଇ ତାଙ୍କ କାଢ଼ିଲେ ଦେହାଶୁଗ ।
ଏ ସକାଶୁଁ ସେ ଘୋଡ଼ାମାନେ ମୋହ ଛାଡ଼ି
ଉନ୍ମତ୍ତ ହୋଇ କଲେ ଉଚ୍ଚେ ହ୍ରେସାରଡ଼ି ।
ହୁଅନ୍ତେ ଶ୍ରମହୀନ ଅର୍ଜୁନ ଘୋଡ଼ାଏ
ପିଆଇଲେ ପାଣି ତାହାଙ୍କୁ ଯଦୁରାୟେ ।
ଏହା ବାହାରେ ଦେହଯାକର ରକତ
ଧୋଇଦେଲେ ପାଣିକୁ ପକାଇ ଅଚ୍ୟୁତ ।
ଏରୂପେ ଆଶ୍ୱାସନା ରୁକ୍ମିଣୀନାୟକ
କରନ୍ତେ ବ୍ରଣହୀନ ହେଲେ ଘୋଡ଼ାଯାକ ।
କୃଷ୍ଣ ଯେ ପୋଖରୀରୁ ଦଳ ତୁଲେ ଘାସ
ଆଣିଦେଲେ ଘୋଡ଼ାଏ କରିବାକୁ ଗ୍ରାସ ।
ଘୋଡ଼ାଏ ଘାସଦଳେ ଆଗ ଖୁରା ମାରି
ତୋଷିଲେ ଉଦର ଦେଇଣ ଗ୍ରାସ କରି ।
ଶ୍ରୀକୃଷ୍ଣ ଘୋଡ଼ାଙ୍କୁ ଏ ଅନ୍ତେ ରଥେ ଯୋଚି
ଦିଅନ୍ତେ ପାର୍ଥ ରଥେ ଚଢ଼ିଲେ ଧନୁ ଆଞ୍ଚି ।
କୃଷ୍ଣଙ୍କର ବଚନ ମାନି ସେ ଘୋଡ଼ାଏ
ବାହାରିଲେ ପବନ ପରି ନରରାୟେ ।
ତାହା ଦେଖି ତୁମ୍ଭର ସେନାଏ ଧିକ୍କାରି
ହୋଇଲେ ଯେଝା ସୁଖେ ହୃଦେ କର ମାରି ।
କୁରୁମାନେ ତ ଜୟଦ୍ରଥଙ୍କର ରକ୍ଷା
କରିବାପାଇଁ ପୂର୍ବୁ କରିଥିଲେ କକ୍ଷା ।
ତାହା ଭାବି ସମସ୍ତେ ହୋଇ ଏକଚିତ୍ତ
ପୁଣି ହେଲେ ଅର୍ଜୁନ ରଥଠାକୁ ଗତ ।
ସେହିକାଳେ ତୁମ୍ଭଙ୍କୁ ଲୋକେ ନିନ୍ଦା କଲେ
ଧୃତରାଷ୍ଟ୍ର ତ କିଛି ନୁହନ୍ତି ବୋଇଲେ ।
ପୁତ୍ରସ୍ନେହେ ପୁତ୍ରମାନଙ୍କୁ ବଇର
କରିଣ କରାଇଲେ ପ୍ରାଣୀଙ୍କି ସଂହାର ।

ସିନ୍ଧୁ-ରାଜନଙ୍କର ପରଲୋକ କାର୍ଯ୍ୟ
କରାନ୍ତୁ ସବୁ ଏବେ ହେଲାଣି ଅକାର୍ଯ୍ୟ ।
ପାର୍ଥ ଯମ ମୁଖେ ପଡ଼ିଲେ ସେ କି ଜୀଇଁ
ଯିବ ଏହା ମନରେ ଆଣିବା କିପାଇଁ ।
ଅରଜୁନଟି ଜୟଦ୍ରଥଠାକୁ ରଥ
ବୁହାଇ ତ ଥିଲେ ହୋଇଣ ଧନୁହାତ ।
ତୁମ୍ଭର ଯୋଦ୍ଧାମାନେ ତାହା ଦେଖି କରି
କି ଯୁଝିବା ବୋଲି ରହିଲେ ଭୟ କରି ।
ସିଂହ ମୃଗଯୂଥକୁ ଖେଦି ନେଲା ପ୍ରାୟେ
ତୁମ୍ଭ ସୈନ୍ୟ ଖେଦିନେଲେ ସେ କାଣ୍ଡଘାଏ ।
ପାଞ୍ଚଜନ୍ୟ ଶଙ୍ଖ ବଜାଇ ମଧୁହାରୀ
ହୋଇଲେ ସେ ଯୋଦ୍ଧାମାନଙ୍କ ଧୈର୍ଯ୍ୟହାରୀ ।
ଗାଣ୍ଡୀବ କାଣ୍ଡକୁ ବଳିଲା ପାର୍ଥ ରଥ
ବେଗେ ବୋଲି ଜାଣ ହସ୍ତିନାନଗରନାଥ ।
ତୁମ୍ଭର ରଥୀମାନେ ବେଢ଼ି ଅର୍ଜୁନଙ୍କୁ
ଯୁଦ୍ଧ କଲେ କରି କ୍ଷତ୍ରିୟ ଗୁମାନକୁ ।
ଦୁର୍ଯ୍ୟୋଧନ ଅର୍ଜୁନ ପଛରେ ଗୋଡ଼ାଇ-
ଥିଲେ ଜାଣ ରାଜନ ଶର ଚାପ ବହି ।
ସୂର୍ଯ୍ୟ ଧୂଳିଙ୍କରେ ତ ହୋଇଲେ ଆବୃତ
ନୋହିଲେ କୃଷ୍ଣାର୍ଜୁନ ତାଙ୍କ ନେତ୍ରଗତ ।
କୁନ୍ଦ ଇନ୍ଦୁବରନ ଅର୍ଜୁନ ଘୋଡ଼ାଏ
ଗମିଲେ ବାତ ପରି କୃଷ୍ଣ ବାଡ଼ିଘାଏ ।
କୃଷ୍ଣ ଅର୍ଜୁନଙ୍କ ଯିବାର ବେଗ ଦେଖି
ସୈନ୍ୟେ ମଲାପରି ରଖିଲେ ପାଦ ଆଖି ।
ପୁଣି ଲଜ୍ଜା ମଜ୍ଜାରେ ଧରି ଯୋଦ୍ଧାକୁଳ
ଧାଇଁ ଅରଜୁନ ସଙ୍ଗତେ କଲେ ରୋଳ ।
ଅର୍ଜୁନଙ୍କ ମୁଖେ ରହି ଯେ ଯୁଦ୍ଧ କଲେ
ସୁଖେ ସେ ଯମଙ୍କର ନଗରେ ବସିଲେ ।
ଅଶକତ ଲୋକେଟି ହୋଇଣ ନିସତ
ପଳାଇଲେ ପାଇ ଅର୍ଜୁନ ଶରଘାତ ।
ଶୂରମାନେ ଶୂରପଣ ତ କରି ମଲେ
ସୁରମଣି ସୁରମଣୀ ତାହାଙ୍କୁ ଦେଲେ ।
ସୁରମଣୀ ଅରଜି ପାଇ ସେ ବିପତ୍ତି
ପାସୋରି ପ୍ରଶଂସିଲେ ଅର୍ଜୁନଙ୍କୁ ଅତି ।
ସେନା-ରାହୁ ମୁଖୁଁ ଉବୁରି କୃଷ୍ଣାର୍ଜୁନ
ସୂର୍ଯ୍ୟ ପରି ତେଜେ ମଣ୍ଡିଲେ ଅପଘନ ।
ରଥୀଜାଲ-ଜାଲକୁ ଛିଣ୍ଡାଇ ବେଗରେ
ଚହଟିଲେ ମତ୍ସ୍ୟପରି ସେ ସୈନ୍ୟ-ନୀରେ ।
ତୁମ୍ଭ ସୈନ୍ୟସିନ୍ଧୁରେ ଉଦ୍‌ଥିତ ବଡ଼ବାଗ୍ନି
ହେଲାପରି ଜାଣିଲୁଁ ତାଙ୍କ ତେଜ ଘେନି ।

ଦ୍ରୋଣାନିକ ଜିଣି ଆସନ୍ତେ କୃଷ୍ଣାର୍ଜୁନ
ମରିବେ ଜୟଦ୍ରଥ ଜାଣିଲେ ଦୁର୍ଯ୍ୟୋଧନ ।
ତୁମ୍ଭ ଯୋଦ୍ଧାଯାକ ମନରେ ଥିଲେ କରି
ଦ୍ରୋଣ କୃତବର୍ମାଙ୍କୁ ଯୁଦ୍ଧେ ଯିବେ ହାରି ।
ସେ ଦୁହିଙ୍କ ଯୁଦ୍ଧରେ ଦେଖିଣ ପରାସ୍ତ
ହୋଇଲେ ଯୋଦ୍ଧାମାନେ ଯୁଦ୍ଧରେ ତରସ୍ତ ।
ସିନ୍ଧୁରାଜ ଜୀବନେ ହୋଇଣ ନିରାଶା
ଛାଡ଼ିଦେଲେଟି କରିଥିଲେ ଯେ ଭରସା ।
ସେହିକାଳେ କୃଷ୍ଣ କହିଲେ ଅର୍ଜୁନଙ୍କୁ
ଜୟଦ୍ରଥ ଦିଶିଲେ ତୁମ୍ଭର ନେତ୍ରକୁ ।
ନିଶ୍ଚେ ତୁମ୍ଭେ ତାର କାଟିବ କାଣ୍ଡେ ବେକ
ରଖି ନ ପାରିଲେ ସେ ଛଅ ରଥୀଯାକ ।
ଶକ୍ର ବକ୍ର ଧରିଣ ଜୟଦ୍ରଥ ପାଇଁ
ଯୁଝିଲେ ଜୟ ତୁମ୍ଭଠାରୁ ନେବେ ନାହିଁ ।
ଏରୂପେ କଥାବାର୍ତ୍ତା କୃଷ୍ଣାର୍ଜୁନ ହୋଇ
ଯିବାକାଳେ ଦୁର୍ଯ୍ୟୋଧନାଦି ତାଙ୍କୁ ଚାହିଁ ।
କୁହାକୁହି ହୋଇଲେ ଦ୍ରୋଣଙ୍କ ସଇନ-
ମରୁଦେଶ ଜିଣିଣ କୃଷ୍ଣ ଅରଜୁନ ।
ମତ୍ତହସ୍ତୀ ପରାୟେ ବାହାରି ଆସନ୍ତି
ମହତଯୁଦ୍ଧ-ଜଳ ପାନେ ଦେଇ ମତି ।
ସଇନ୍ୟ-ଶ୍ୱାପଦରେ ଯୁଦ୍ଧଭୂମି-ଗିରି
ପୂରିଥିଲାଟି ବଣିଜାରୁଙ୍କର ପରି ।
ଏ ଦୁଇ ବୀରେ ଦେଖ ଆସୁଛନ୍ତି ତରି
କେ ଯୁଦ୍ଧ କରିବ ଏହାଙ୍କୁ ଧୈର୍ଯ୍ୟ ଧରି ।
ଦ୍ରୋଣ-ସର୍ପ ଏହାଙ୍କ ଶର-ମନ୍ତ୍ର ପାଇ
ନିବର୍ତ୍ତି ରହିଲେ ନୟନେ ଦେଖିଲାଇଁ ।
ଦ୍ରୋଣ କୃତବର୍ମା ସଇନ-ଘନ ଭଲେ
ବିଜୁ ପରି ତହିଁରେ ବିହରି ଆସିଲେ ।
ଦ୍ରୋଣଙ୍କ କାଣ୍ଡେ ଗଣ୍ଡି ବହିଛି ରକତ
ମଣ୍ଡୁଛନ୍ତି ତହିଁରେ ଏ ଗେରୁପର୍ବତ ।
ଗଦା ଶକ୍ତି ତୋମର ସର୍ପରେ ସଙ୍କୁଳ
ହୋଇଥିଲା ଗର୍ଭରେ ଦ୍ରୋଣ ସୈନ୍ୟ-ଜଳ ।
ଦ୍ରୋଣ ଗ୍ରାହ ପୂରିତ ତହିଁରେ ବିହାର
କରୁଥିଲେ ଏ ଦୁହେଁ ହେଲେ ଯାହା ପାର ।
ଏଣୁ ଜାଣୁଥାଇଁ ଏହାଙ୍କ ପରି ଏହି
ଏହାଙ୍କୁ ଯୁଦ୍ଧ କଲେ ଜୟ ଆଉ ନାହିଁ ।
ତୁମ୍ଭର ସୁତ ତୁମ୍ଭ ଲୋକଙ୍କର ତୁଲେ
ଏହିରୂପେ ଜାଣ ବହୁତ ବିଚାରିଲେ ।
କୃଷ୍ଣ-ଅରଜୁନଟି ଜୟଦ୍ରଥ-ରଥ
ସେହି ସମୟରେ କରିଲେ ନେତ୍ରପଥ ।

ଦ୍ରୋଣଙ୍କଠାରୁ ତ କବଚ ଥିଲେ ପାଇ
ତୁମ୍ଭର ସୁତ ଦୁର୍ଯ୍ୟୋଧନ କ୍ରୋଧ ହୋଇ ।
ଏକା ରଥକରେ ଆସିଣ ଅରଜୁନ
ରଥକୁ ଆବୋରିଲେ ଯୁଦ୍ଧେ ଦେଇ ମନ ।
ଦୁର୍ଯ୍ୟୋଧନ ପାର୍ଥ ହୁଅନ୍ତେ ଭେଟାଭେଟି
ଶୁଭିଲା ଶଙ୍ଖ ବାଦ୍ୟ ଶବ୍ଦ ଦିଗ ଘୋଟି ।
କେତେକ ଯୋଦ୍ଧା ତହିଁ କରି ସିଂହନାଦ
ଧପଧାପେ ଧାଇଁଣ ପକାଇଲେ ପାଦ ।
ଦୁର୍ଯ୍ୟୋଧନରାଜାଙ୍କ ରଥ ଆଗେ ଦେଖି
କହିଲେ ଅର୍ଜ୍ଜୁନଙ୍କୁ ହସି ପଦ୍ମଆକ୍ଷି ।
ଦୂରପାତୀ କୃତାସ୍ତ୍ର ଯୁଦ୍ଧେ ଉନମତ୍ତ
ବିଚିତ୍ରଯୋଦ୍ଧା ମହାରଥିଙ୍କ ମାନିତ ।
ସୁଖସମ୍ବର୍ଦ୍ଧିତ ମାନୀ ତୁମ୍ଭର ରିପୁ
ସୁଯୋଧନ ଅଟେ ତ ଭାଙ୍ଗ ତାର ବପୁ ।
ବହୁକାଳୁ ରଖିଅଛ ତ କ୍ରୋଧ-ବିଷ
ତା ପ୍ରକାଶି ଏ ପାପୀପାପବୃଦ୍ଧି ନାଶ ।
କୁରୁ ପାଣ୍ଡୁ ଅନର୍ଥ କରିବା ହେତୁ ଏହି
କହୁଥାଇଁ ଏହାକୁ ଦିଅ ହେ ବଢ଼ାଇ ।
ଆସିବାରୁ ତୁମ୍ଭର ଦୁର୍ଯ୍ୟୋଧନ ଭ୍ରାତ
ଜାଣୁଛି ଆଜି ହୋଇଅଛି ସୁପ୍ରଭାତ ।
ଏ ପାପୀ ତ ପଢ଼ିଛି ଅଧରମ ପାଠ
ପଢ଼ାଅ ଧର୍ମ ତାକୁ ବିନ୍ଧିଣ ବିପାଠ ।
ତୁମ୍ଭର ବଳ ଏହୁ ଜାଣି ନାହିଁ କିଛି
ଯୁଝି ଆସିଅଛି ଏଥିରୁ ମୁଁ ଜାଣୁଛି ।
ସୁରାସୁର ଉରଗ ଗନ୍ଧର୍ବ ମାନବ
ଏ ମୂର୍ଖ ବିନା ତୁମ୍ଭ ସାଙ୍ଗ କେ ଯୁଝିବ ।
ଇଚ୍ଛାସୁଖେ ବେକେ ଲଗାଇ କାଳଫାଶି
ରହିଛି କର ଯମନଗର-ନିବାସୀ ।
ବନବାସ ଦ୍ରୌପଦୀଦେବୀଙ୍କର କ୍ଳେଶ
କରିବା ଲୋକର ଏ ମୂଳ ବୀରଈଶ ।
ଏହାକୁ ଯେବେ ତୁମ୍ଭେ ପକାଇବ ମାରି
ପାଇବେ ସୁଖ ହେ ପାଣ୍ଡବ ଦଣ୍ଡଧାରୀ ।
କୀର୍ତ୍ତି ପଉରୁଷ ଯେ ବଢ଼ିବ ତୁମ୍ଭର
ଘେନି କର କହିବା କଥାରୁ ଆମ୍ଭର ।
ଧୃତରାଷ୍ଟ୍ର କୁଳ ଅଙ୍ଗାର ଅଟେ ଏହି
ଏହାକୁ ରଖିଅଛ ତୁମ୍ଭେ କାହିଁପାଇଁ ।
ବହୁତ ଭାଗ୍ୟ ହେବା ସକାଶୁଁ ତୁମ୍ଭର
ଆଗେ ଅଛି କରିବାପାଇଁ ଏ ସମର ।
ଯାହା ଏହାର ପ୍ରାଣ ଏତେବେଳଯାଏଁ
ରଖିଛ ତାହା ମୋର ମନକୁ ନ ଯୋଗାଏ ।

ଅର୍ଜ୍ଜୁନ ବୋଇଲେ କହିଲ ଯାହା ହରି
ସବୁରୂପେ କର୍ତ୍ତବ୍ୟ ଏ କଥା ମୋହରି ।
ସୁଯୋଧନ ରାଜା ତ ଆଗେ ଅଛି ରହି
ସେ କ୍ଳେଶକୁ ନାଶିବି ଏହାକୁ ନାଶି ମୁହିଁ ।
ଏହିରୂପେ ଅର୍ଜ୍ଜୁନ କହନ୍ତେ ବଚନ
ଦୁର୍ଯ୍ୟୋଧନଠାକୁ ବାହିଲେ କୃଷ୍ଣ ଯାନ ।
ମହାଭୟ ଆସି ହୁଅନ୍ତେ ଉପସ୍ଥିତ
ନୋହିଲା ଭୟ ତୁମ୍ଭ ସୁତହୃଦେ ସ୍ଥିତ ।
କୃଷ୍ଣ ପାର୍ଥଙ୍କୁ ସେ ଯୁଝିବେ ତ ଜାଣିଲେ
ସବୁ ଲୋକେ ଦୁର୍ଯ୍ୟୋଧନଙ୍କୁ ପ୍ରଶଂସିଲେ ।
ପ୍ରଶଂସା ଅନ୍ତେ ପୁଣି କଲେ ସିଂହନାଦ
ତା ଶୁଣି ଦୁର୍ଯ୍ୟୋଧନ ହୋଇଲେ ପ୍ରମୋଦ ।
ଅର୍ଜ୍ଜୁନଙ୍କର ଯିବା ବାଟକୁ ନିବାରି
ରହନ୍ତେ ରୋଷିଲେ ଗାଣ୍ଡୀବ ଧନୁର୍ଦ୍ଧାରୀ ।
ଦୁର୍ଯ୍ୟୋଧନ ଅର୍ଜ୍ଜୁନ ଦୁହିଙ୍କର ଯୁଦ୍ଧ
ଦେଖିଲେ ନୃପତିଏ ବହି ମହାସଧ ।
କୃଷ୍ଣ ଅର୍ଜ୍ଜୁନଙ୍କ କ୍ରୋଧକୁ ନ ହେଜିଲେ
ତୁମ୍ଭ ସୁତ ତାହାଙ୍କ ସମୀପକୁ ଗଲେ ।
ଦୁର୍ଯ୍ୟୋଧନ ରାଜା ରହନ୍ତେ ସମୀପରେ
ବେନି କୃଷ୍ଣ ହରଷ ସହିତ କୋପରେ ।
ସିଂହ ପରି ରଡ଼ି ଛାଡ଼ିଣ ଧରି ଶଙ୍ଖ
ବଜାନ୍ତେ ବଢ଼ାଇଲା ସେ ଯୋଦ୍ଧାଙ୍କ ଦୁଃଖ ।
ଧରାଧର ଧରଣୀ ନଭ ଗଲା ପୂରି
ବେନି କୃଷ୍ଣ ଶଙ୍ଖ ଶବଦେ ଦଣ୍ଡଧାରୀ ।
କୃଷ୍ଣ ଅରଜୁନଙ୍କ ଦୁର୍ଯ୍ୟୋଧନ ରଣ
କରିବା ସମୟରେ ତୁମ୍ଭ ଲୋକଗଣ ।
ମନେ କରିଲେ ଆମ୍ଭ ରାଜା ହେଲେ ବାଇ
ଏହାଙ୍କୁ ଯୁଝି ଆସିଛନ୍ତି କିସ ପାଇଁ ।
ଏ ଦୁହେଁ ମନେକଲେ କ୍ଷଣକେ କୁରୁବଳ-
ଯାକକୁ ଦେଖାଇ ପାରନ୍ତି ଯମଆଳ ।
ଶ୍ରୀକୃଷ୍ଣ ଅରଜୁନ ହୋମାଗ୍ନିରେ ଘୃତ
ହୋଇ ଆଜି ମଜ୍ଜିବେ ଲକ୍ଷ୍ମଣଙ୍କ ତାତ ।
ଏରୂପେ କୁହାକୁହି ହୋଇ ଜନମାନେ
ମଲେ ରାଜା ବୋଲି ଭାବନା କଲେ ମନେ ।
ପାଡ଼ିଲେ ଉଚେ ଡକା ଆହେ ଦୁର୍ଯ୍ୟୋଧନ-
ରାଜନ ଅର୍ଜ୍ଜୁନେ ନ କର ଆୟୋଧନ ।
ଦୁର୍ଯ୍ୟୋଧନ ସୈନ୍ୟଙ୍କ ଭୟବାଣୀ ଶୁଣି
ଗଜହନ୍ତା ପରି ରହିଲେ ଧନୁ ଟାଣି ।
କହିଲେ ସେନାଏ ନ ପାଅ କିଛି ଭୟ
ଦେଖ ଯୁଦ୍ଧେ କରୁଛି କୃଷ୍ଣାର୍ଜ୍ଜୁନ କ୍ଷୟ ।

ଅର୍ଜ୍ଜୁନଙ୍କୁ ଚାହିଁ ବୋଇଲେ ଦୁର୍ଯ୍ୟୋଧନ
ଦେବ ମନୁଷ୍ୟରେ ଯେତେକ ଅସ୍ତ୍ର ଜାଣ ।
ଯେ ଅସ୍ତ୍ରଯାକ ଆଜ ଯୁଦ୍ଧେ ମୋତେ ମାର
ହୋଇଥିଲେ ପାଣ୍ଡୁରାଜାଙ୍କର କୁମର ।
କୃଷ୍ଣଙ୍କର ମଧ ଯେତେକ ବଳ ଅଛି
ତା ମଧ ଦେଖାଅନ୍ତୁ ଡାକି ମୁଁ କହୁଛି ।
ତୁମ୍ଭ ଦୁହିଁଙ୍କର ବଳକୁ ମୋତେ ଲୋକେ
କହୁଥାନ୍ତି ଆଜ ତା ଦେଖାଅ ଶାୟକେ ।
କୃଷ୍ଣ ଅର୍ଜ୍ଜୁନଙ୍କୁ ଏରୂପେ ଦୁର୍ଯ୍ୟୋଧନ
ବଚନରେ ତରଜି ଧରି ଶରାସନ ।
ବାଛିଣ ତିନିକାଣ୍ଡ ବିନ୍ଧି ଅର୍ଜ୍ଜୁନଙ୍କୁ
ବିନ୍ଧିଲେ ଚାରିକାଣ୍ଡ ତାଙ୍କର ଘୋଡ଼ାଙ୍କୁ ।
ଶ୍ରୀକୃଷ୍ଣଙ୍କ ହୃଦକୁ ବିନ୍ଧି ଦଶକାଣ୍ଡ
କାଣ୍ଡକରେ ପ୍ରତୋଦ କଲେ ଦୁଇଖଣ୍ଡ ।
ଏହା ଦେଖି କ୍ରୋଧ ହୋଇଣ ସବ୍ୟସାଚୀ
ବିନ୍ଧିଲେ ଚଉଦଟି ଶର ଧନୁ ଆଞ୍ଚି ।
ସେ ଶରମାନେ ଦୁର୍ଯ୍ୟୋଧନର କବଚ
ଛୁଅନ୍ତେ ମୁନ ମୋଡ଼ି ପଡ଼ିଲେ ଯେ ମଞ୍ଚ ।
ତା ଦେଖି ଅର୍ଜ୍ଜୁନ ତେତିକି ମାରଗଣ
ଆଉ ଥରେ ବିନ୍ଧିଲେ ଦେଖାଇବା ଟାଣ ।
ଦ୍ରୋଣଙ୍କ କବଚ ତ ଦେହେ ଭରିଥିଲେ
ସେହିପରି ବିଫଳ ହୋଇଣ ସେ ଗଲେ ।
ଅର୍ଜ୍ଜୁନଙ୍କ ବିନ୍ଧିବା ଅଠାଇଶି କାଣ୍ଡ
ପଡ଼ନ୍ତେ ତଳେ ଛୁଇଁ ଦୁର୍ଯ୍ୟୋଧନ ପିଣ୍ଡ ।
କୃଷ୍ଣ ତାହା ଦେଖି କ୍ରୋଧରେ ମନ୍ଦହାସ
ପ୍ରକାଶି ବୋଇଲେ ଯୁଝୁଛ ପାର୍ଥ କିସ ।
ପଥର ଫୁଟିପାରେ ତୁମ୍ଭର ତ ଶର
ବ୍ୟର୍ଥ ହୋଇବାର ମଣୁଛି ଚମତ୍କାର ।
ଦୁଇ ଭୁଜ ଗାଣ୍ଡୀବ ବଳ ପୂର୍ବ ପରି
ନାହିଁ କି ହେ କୁମର ପୁଲୋମବଇରୀ ।
ନୋହିଲେ ବା ଦଇବ ହେଲା ପ୍ରତିକୂଳ
ଏଣୁ ଦୁର୍ଯ୍ୟୋଧନକୁ ପାଉନାହିଁ ବଳ ।
ବଜ୍ରଙ୍କର ସମାନ ତୁମ୍ଭର ତ ବାଣ
ପରକାୟ ଭେଦରେ ଅଟନ୍ତି ନିପୁଣ ।
ଏବେ ସେ କାହିଁପାଇଁ ନୃପ ଦୁର୍ଯ୍ୟୋଧନ
ଅଙ୍ଗେ ବାଜି ପଡ଼ନ୍ତି ମୋଡ଼ିଦେଇ ମୁନ ।
ଏଡ଼େ ବିଡ଼ମ୍ବଣ କଥା ମୁଁ ଆଜିଯାଏଁ
ତୁମ୍ଭ ଦେଖିନାହିଁ ଅର୍ଜ୍ଜୁନ ଯୋଦ୍ଧାରାୟେ ।
ଅର୍ଜ୍ଜୁନ ବୋଇଲେ ହେ ଶୁଣ ଯଦୁସାଇଁ
କବଚ ଦ୍ରୋଣଠାରୁ ଆସିଛି ଲଗାଇ ।
ଏ ସକାଶୁଁ ସହୁଛି ମୋର ଶରଘାତ
କହିବି ସେ କଥା ହେ ଶୁଣ ଦେଇ ଚିତ୍ତ ।
ଏ କବଚରେ ତିନିଲୋକ ରହିଅଛି
ଦ୍ରୋଣଙ୍କଠାରୁ ଏ କବଚ ସେ ଆଣିଛି ।
ଏ କବଚ କାଟିବାକୁ ମୁଁ ସମରଥ
ନୁହଇଁ କେବେ ଜାଣ ଯଦୁକୁଳନାଥ ।
ପ୍ରହାରିଣ ବଜ୍ର ଇନ୍ଦ୍ର ଏ କବଚକୁ
କାଟି ତ ନ ପାରିବେ ଆଣ ହେ ମନକୁ ।
ଭୂତ ଭବ୍ୟ ଯେ ବର୍ତ୍ତମାନର କଥାକୁ
ଜାଣ ତ ତୁମ୍ଭେ କିସ କହିବି ତୁମ୍ଭଙ୍କୁ ।
ମୋତେ କିପାଁ ମୋହ କରାଉଅଛ ହରି
ଜ୍ଞାନରେ ବ୍ରହ୍ମାଦି ନୁହନ୍ତି ତୁମ୍ଭ ପରି ।
ଦ୍ରୋଣ ଦେବାର ସାଞ୍ଜୁ ନ ଥିଲେ ସେ ଭରି
ଏତେବେଳଯାଏଁ କି ଥାନ୍ତା ଚକ୍ରଧାରୀ ।
କବଚ ଭେଦିବାକୁ ଯେ ଉପାୟ ଅଛି
ସୁଯୋଧନକୁ ତାହା ଗୋଚର ନୋହିଛି ।
ଏହି ସକାଶୁଁ ସୁଯୋଧନ ମହାମୂଢ଼
ରହିଛି ଆଗେ ଯୁଦ୍ଧେ ବୁଦ୍ଧି କରି ଦୃଢ଼ ।
ସୁଯୋଧନ କବଚେ ରକ୍ଷିତ ହୋଇଥିଲେ
ଦେଖ କୃଷ୍ଣ ଜିଣି ମୁଁ ପକାଉଛି ଭଲେ ।
ଅଙ୍ଗିରାକୁ ତ ଏ କବଚ ସୁରପତି
ପୂରୁବକାଳେ ଦେଇଥିଲେ ବହି ପ୍ରୀତି ।
ମୋତେ ମଧ ଦେଇଛନ୍ତି ଏ କବଚକୁ
ଜାଣିଛି ସମଗ୍ର ଏ କବଚ କଥାକୁ
ଥାଆନ୍ତୁ ଦ୍ରୋଣ ବ୍ରହ୍ମା ସୁଯୋଧନଙ୍କର
ଦେହେ ବାନ୍ଧିଥିଲେ କବଚ ଚକ୍ରଧର ।
ଯୁଦ୍ଧରେ ତାହାକୁ ମୁଁ ଦେବି ଦୁଃଖଦଶା
ନେଇ ନ ପାରିବ ସେ ମୋଠାରୁ ପ୍ରଶଂସା ।
ଏହା କହି କୃଷ୍ଣଙ୍କୁ ମନ୍ତ୍ରି ଦିବ୍ୟ ରୋପ
ଧନୁ ମଧ୍ୟେ ସନ୍ଧି ଝିଙ୍କିଲେ ବହି କୋପ ।
ଅଶ୍ୱଥାମା ତାହା ଦେଖିଣ ସର୍ବଘାତୀ
ଶରେ କାଟିଦିଅନ୍ତେ ହେଲେ ମହାବ୍ୟଥୀ ।
ଅରଜୁନ ନିଜର ଅସ୍ତ୍ର ନାଶ ଦେଖି
ଶ୍ରୀକୃଷ୍ଣଙ୍କୁ କହିଲେ ମନେ ଦୁଃଖ ରଖି ।
ଏ ଅସ୍ତ୍ର ଦ୍ୱିଥର ପ୍ରୟୋଗ କରିବାକୁ
ସମର୍ଥ ନୁହଇ କହିବି କି ତୁମ୍ଭଙ୍କୁ ।
କୋହ ମୋହେ ଯେବେଟି କରିବି ପ୍ରୟୋଗ
ନାଶ କରିବ ସେ ମୋହର ଦେହ ଆଗ ।
ଆନ ଅସ୍ତ୍ରେ ଭାଙ୍ଗୁଛି ସୁଯୋଧନ-ବଳ
ଦେଖୁଥାଅ ମୋ ରଥେ ଥାଇ ଯଦୁପାଳ ।

ଏହି ସମୟେ ଦୁର୍ଯ୍ୟୋଧନ ନରବର
କୃଷ୍ଣ ଅର୍ଜ୍ଜୁନଙ୍କୁ ବିନ୍ଧିଲେ ନବ ଶର ।
ପୁଣି ତ କୃଷ୍ଣ ଅର୍ଜ୍ଜୁନଙ୍କୁ ଶରମାଳା
ସରଜି ଗରଜିଲେ ମେଲିଦେଇ ଗଳା ।
ତୁମ୍ଭର ଲୋକମାନେ ତା ଦେଖିଣ ବାଦ୍ୟ
ବଜାଇଲେ ହୃଦୟେ ବହିଣ ପ୍ରମୋଦ ।
କ୍ରୋଧ ହୋଇ ପାର୍ଥ ସୃକ୍‌କଣୀ ଜିଭେ ଲିହି
ଦୁର୍ଯ୍ୟୋଧନ ଦେହ ଶରରେ ଦେଲେ ଛାଇ ।
ଦେଖିଲେ କବଚେ ରକ୍ଷିତ ପ୍ରତିଅଙ୍ଗ
ହୋଇଅଛି ମନରେ ବହି ଅତି ଖଙ୍ଗ ।
ଦୁର୍ଯ୍ୟୋଧନଙ୍କର ଯେ ଚାରଘୋଡ଼ା ମାରି
ପକାଇଲେଟି ଶରମାନଙ୍କୁ ପ୍ରହାରି ।
ଧନୁହସ୍ତାବାପ ଯେ ଦୁହିଙ୍କି କାଟିଲେ
ଦୁଇ ପାର୍ଷ୍ଣି ସାରଥିଙ୍କର ପ୍ରାଣ ନେଲେ ।
ଏହି ରୂପରେ ତୁମ୍ଭ ସୁତକୁ ବିରଥ
କରି ଯୁଦ୍ଧ ଦାଣ୍ଡେ ଅର୍ଜ୍ଜୁନ ମହାରଥ ।
ତୁମ୍ଭର ସୁତ ଦୁଇ ହସ୍ତର ତଳକୁ
ବିନ୍ଧିଲେ ମୁନ ଥିବା ଦୁଇ ମାର୍ଗଣକୁ ।
ଏହା ଦେଖିକରି ତୁମ୍ଭର ରଥୀ ଶ୍ରେଣୀ
ଦୁର୍ଯ୍ୟୋଧନ ପାଶେ ରହିଲେ ଧନୁ ଟାଣି ।
ହସ୍ତୀ ରଥ ପାଇକ ଘୋଡ଼ାରେ ଅର୍ଜ୍ଜୁନ
କୃଷ୍ଣ ତୁଲେ ରହିଲେ ହୋଇଣ ଆଚ୍ଛନ୍ନ ।
ଅରଜୁନ ତାହା ଦେଖି ଅସ୍ତ୍ରଶସ୍ତ୍ର କରି
ନେଲେ ଚତୁରଙ୍ଗ ସେନାଙ୍କ ପ୍ରାଣ ହାରି ।
ଅର୍ଜ୍ଜୁନ କାଣ୍ଡ ବାଜି କୁଡ଼ କୁଡ଼ ହୋଇ
ପଡ଼ିଲେ ଯୁଦ୍ଧ ଦାଣ୍ଡେ ମଡ଼ା ହେ ନୃସାଇଁ ।
ଏମନ୍ତ ହେଲେ ତୁମ୍ଭ ସେନା ହୋଇ ଗୋଟି
ଘେରିଲେ ଧାଇଁଯାଇ ଅର୍ଜ୍ଜୁନ ରଥୁଟି ।
ଏ ସକାଶୁଁ ସ୍ତମ୍ଭି ରହିଲା ରଥ ରାୟେ
ପୁଣି ମଡ଼ାସୈନ୍ୟ ପୂରିଲେ କୋଶେ ଯାଏ ।
କୃଷ୍ଣ ଏହା ଦେଖି କହିଲେ ଅର୍ଜ୍ଜୁନକୁ
ବଜାଉଛି ଶଙ୍ଖ ମୁଁ ଟଙ୍କାର ଧନୁକୁ ।
କୃଷ୍ଣଙ୍କର ବାଣୀକୁ ଅର୍ଜ୍ଜୁନ ଘେନିଲେ
ଛାଟେଣିନାଦେ ଶତ୍ରୁ ଅଣ୍ଟାକୁ ଭାଙ୍ଗିଲେ ।
ବାଛି ବାଛି ଅସ୍ତ୍ର ତ କରିଣ ପ୍ରହାର
କଲେ ତୁମ୍ଭର ଯୋଦ୍ଧାମାନଙ୍କୁ ସଂହାର ।
କୃଷ୍ଣ ପାଞ୍ଚଜନ୍ୟଶଙ୍ଖକୁ ବଜାଇଲେ
ମୁଖରୁ ଝାଳ ବହିଯାଉଥିଲା ଭଲେ ।
ଗାଣ୍ଡୀବ ପାଞ୍ଚଜନ୍ୟ ଘୋଷେ ତ ଶୁଣିଲେ
ନ ସହି ଯୋଦ୍ଧାଏ ଭୂମିରେ ପଡ଼ିଲେ ।

ଅର୍ଜ୍ଜୁନଙ୍କ ରଥକୁ ରୁନ୍ଧି ତ ସେ ଥିଲେ
ପଡ଼ନ୍ତେ ପାର୍ଥ ରଥ ପରେ ବାହାରିଲେ ।
ଜୟଦ୍ରଥ ପାଶରେ ଥିବା ରଥୀକୁଳ
ଅର୍ଜ୍ଜୁନ ତୁଲେ ରାୟେ ଆରମ୍ଭିଲେ ରୋଳ ।
ସେକାଳେ ବାଣୀ ଶଙ୍ଖ ଶବ୍ଦେ ଯୁଦ୍ଧଭୂଇଁ
ପୂରାଇଲେ ଯେ କୁରୁଯାକ ଗୋଟି ହୋଇ ।
ଅରଜୁନ ଶ୍ରୀକୃଷ୍ଣ ତୁମ୍ଭର ସଇନ
ଶଙ୍ଖ ଶବ୍ଦ ଶୁଣିଣ କଲେ ଶଙ୍ଖଧ୍ୱନ ।
କୃଷ୍ଣ ଅରଜୁନ ବେନି ଶଙ୍ଖ ଘୋଷ
କଲା ମହୀ ଆକାଶ ପାତାଳରେ ବାସ ।
ତୁମ୍ଭ ଲୋକମାନେଟି କୃଷ୍ଣ ଅର୍ଜ୍ଜୁନଙ୍କୁ
ଦେଖି ଯୋଖି ବିନ୍ଧିଲେ ଶର ମରମକୁ ।
ଭୂରିଶ୍ରବା ଶଳ ଯେ କର୍ଣ୍ଣ ବୃଷସେନ
ଜୟଦଥ କୃପ ଯେ ଦ୍ରୋଣଙ୍କ ନନ୍ଦନ ।
ଶଲ୍ୟ ମିଶି ଆଠ ରଥୀଏ ହୋଇ ଗୋଟି
କିରୀଟି ରଥକୁ ରଖିଲେ ରଥ ଯୋଟି ।
ବ୍ୟାଘ୍ରଚର୍ମେ ମଣ୍ଡି ହୋଇଛି ତାଙ୍କ ରଥ
ସୁବର୍ଣ୍ଣଚିତ୍ରେ ମୋହୁଅଛି ନେତ୍ରପଥ ।
ଦ୍ରୁତଗାମୀ ଘୋଡ଼ାଏ ସେ ରଥୀଙ୍କ ରଥ
ବହିଛନ୍ତି ଜାଣ ହସ୍ତିନାନରନାଥ ।
ସିନ୍ଧୁଦେଶେ ପର୍ବତେ ଜନ୍ମି ଯେତେ ଥିଲେ
ସେ ଅଶ୍ୱଯାକ ଘେନି ଯୋଦ୍ଧାଏ ଆସିଲେ ।
ତୁମ୍ଭର ଯୋଦ୍ଧାଙ୍କର ଶୁଣି ଶଙ୍ଖଧ୍ୱନି
ପୁଣି ବେନି କୃଷ୍ଣ ଫୁଙ୍କିଲେ ଶଙ୍ଖ ଘେନି ।
ଅର୍ଜ୍ଜୁନ-ଶଙ୍ଖଶବ୍ଦ ବ୍ୟାପି ତିନିପୁରେ
ଛପିଗଲା କୃଷ୍ଣଙ୍କ ଶଙ୍ଖ ଶବଦରେ ।
ଭେରୀ ଝରଝର ତ ପଣବ ଆନକ
ନାଦେ ପୂରିରହିଲା ଯୁଦ୍ଧଭୂମିଯାକ ।
ସେ ଆଠ ମହାରଥୀ ଘେନି ଦୁର୍ଯ୍ୟୋଧନ
ରାଜା କଲେଟି ଅର୍ଜ୍ଜୁନଙ୍କୁ ଆୟୋଧନ ।
ଅଶ୍ୱଥାମା କୃଷ୍ଣଙ୍କୁ ବିନ୍ଧିଣ ତେସ୍ତରି
ଦେଲେ ଅର୍ଜ୍ଜୁନଙ୍କୁ ତିନୋଟି ଶର ମାରି ।
ଧ୍ୱଜ ଅଶ୍ୱ ଦୁହିଙ୍କି ବିନ୍ଧିଲେ ପାଞ୍ଚକାଣ୍ଡ
ରହିଲେ ଆବୋରି ଅର୍ଜ୍ଜୁନ ରଥଦାଣ୍ଡ ।
କୃଷ୍ଣଙ୍କ ଦେହେ ଦ୍ରୋଣପୁତ୍ର ଶରରାଜି
ଦେଖିଣ ଅରଜୁନ କ୍ରୋଧଜଳେ ମଜ୍ଜି ।
ଅଶ୍ୱଥାମା ଦେହକୁ ଛଅଶତ କାଣ୍ଡ
ବିନ୍ଧିଲେ ଲୁଆଁଇଣ ଗାଣ୍ଡୀବକୋଦଣ୍ଡ ।
ଶଲ୍ୟଙ୍କୁ ଦଶ ବୃଷସେନଙ୍କୁ ତିନୋଟି
ପ୍ରହାରି ଶଲ୍ୟ ଧନୁ କାଟିଲେ କିରୀଟି ।

ଆନ ଧନୁଏ ଧରି ମଦ୍ରଦେଶରାୟେ
ବିନ୍ଧିଲେ ଅର୍ଜୁନଙ୍କୁ କ୍ରୋଧେ ଅତିଶୟେ ।
ଭୂରିଶ୍ରବା ତିନି ଯେ କୃପ ଶଲ୍ୟ ବିଂଶ
ବୃଷସେନ ପାଞ୍ଚ ତେସ୍ତରି ସିନ୍ଧୁଈଶ ।
ବତିଶି କର୍ଣ୍ଣ ଯେ ଷାଠିଏ ଦ୍ରୋଣପୁତ୍ର
ବିନ୍ଧିଲେ ସମସ୍ତେ ଥରାଇ କ୍ରୋଧେ ଗାତ୍ର ।
ପୁଣିଟି ଅଶ୍ୱତ୍ଥାମା ଅର୍ଜୁନଙ୍କୁ ପାଞ୍ଚ
ଶ୍ରୀକୃଷ୍ଣଙ୍କୁ ତେସ୍ତରି ବିନ୍ଧିଲେ ନାରାଚ ।
ଅର୍ଜୁନ ରଥିଙ୍କର ବିନ୍ଧିବାର ଜାଣି
ହସିଦେଇ ଗାଣ୍ଡୀବଧନୁଗୁଣ ଟାଣି ।
କର୍ଣ୍ଣ କର୍ଣ୍ଣମୂଳକୁ ଦେଖାଇ ଦ୍ୱାଦଶ
ବିନ୍ଧିଲେ ବାଣ ଅରଜୁନ ବହି ରୋଷ ।
ବୃଷସେନ ଦେହକୁ ବିନ୍ଧି ତିନିଗୋଟି
ମାରଗଣ ବୋଇଲେ ଯାଅ ଯମ ଭେଟି ।
ମୁଷ୍ଟିଠାରୁ ଯେ ଶଲ୍ୟଙ୍କର କାଟି ଚାପ
ବିନ୍ଧିଲେ କୋପରେ ଶଲ୍ୟଙ୍କୁ ଦଶରୋପ ।
ଦ୍ରୋଣଙ୍କ ନନ୍ଦନଙ୍କୁ ଆଠକାଣ୍ଡେ ରୁନ୍ଧି
ଦେଲେ ଭୂରିଶ୍ରବାଙ୍କୁ ତିନିକାଣ୍ଡ ବିନ୍ଧି ।
କୃପଆଚାର୍ଯ୍ୟଙ୍କୁଟି ଆଶ୍ଚର୍ଯ୍ୟ ଦେଖାଇ
ପଚିଶି ଶରେ ତାଙ୍କ ଦେହ ଦେଲେ ଛାଇ ।
ଜୟଦ୍ରଥ ରାଜାଙ୍କୁ ଶଏ କାଣ୍ଡ ମାରି
ପୁଣି ଅଶ୍ୱତ୍ଥାମାଙ୍କୁ ବିନ୍ଧିଲେ ସତୁରି ।
ଏହା ଦେଖିଣ ଭୂରିଶ୍ରବା କ୍ରୋଧ ହେଲେ
ଚକ୍ରଧରଙ୍କ କରପାଞ୍ଚଣ କାଟିଲେ ।
ଅର୍ଜୁନଙ୍କୁ ଗଣି ତେସ୍ତରି ମାରଗଣ
ବିନ୍ଧିଲେ ଭୂରିଶ୍ରବା ଦେଖାଇଣ ଟାଣ ।
ଶାୟକ ନାୟକଙ୍କୁ କିରୀଟି ପ୍ରହାରି
ତୁମ୍ଭ ରଥୀଙ୍କର ଗରବ ନେଲେ ହରି ।
ଯେଉଁରୂପେ ଘନବ୍ରାତକୁ ବାରେ ବାତ
ସେରୂପେ ରଥୀଏ ରହିଲେ ହୋଇ ଅସ୍ତ ।
ଧୃତରାଷ୍ଟ୍ର ବୋଇଲେ କହିବ ପଛେ ଯୁଦ୍ଧ
ଦୁଇକୁଳ ଧ୍ୱଜ କହ ମୋ ଅଛି ସଧ ।
ସଞ୍ଜୟ ବୋଇଲେ ହେ ପଚାରୁଛ ଯାହା
କହିବା ତା ଶୁଣ ଗାନ୍ଧାରୀପ୍ରାଣନାହା ।
ଦୁଇକୁଳ ରଥୀଙ୍କରଟି ଧ୍ୱଜାବଳି
ନିନ୍ଦା କରୁଥିଲା ସୂର୍ଯ୍ୟଙ୍କ ରଶ୍ମିମାଳି ।
ସୁବର୍ଣ୍ଣର ପୀଢ଼ ସୁବର୍ଣ୍ଣମୟ ଧ୍ୱଜ
ସୁବର୍ଣ୍ଣମାଳାରେ ପ୍ରକାଶି ଥିଲେ ତେଜ ।
ସୁବର୍ଣ୍ଣଗିରି ଶୃଙ୍ଗ ପରାୟେ ଦିଶନ୍ତି
ଦେଖିଲେ ନେତ୍ର ମନ ଧରି ସେ ରଖନ୍ତି ।
ନାନାଜାତିର ପତାକାରେ ସେ ଆବୃତ-
ହୋଇ ହରୁଥିଲେ ପବନେ ଦେହଶ୍ରାନ୍ତ ।
ନାନାଭଙ୍ଗୀରେଟି ତ ଉଡ଼ନ୍ତି ସେ ବାୟେ
ନାଚିଲା ପରାୟେ ମଣନ୍ତି ଲୋକ ରାୟେ ।
ଇନ୍ଦ୍ରଙ୍କର ଆୟୁଧପ୍ରଭାକୁ ସେ ଦଣ୍ଡି
ଶୋଭାରେ ସେ ରଣଦାଣ୍ଡକୁ ଦେଲେ ମଣ୍ଡି ।
ଅର୍ଜୁନଙ୍କ ବାନରଧ୍ୱଜ ପତାକାରେ
ଆବୃତ ହୋଇ ବସିଥାଏ ନିର୍ଭୟରେ ।
ଭୀଷଣ ଗରଜନେ ତୁମ୍ଭର ସେନାଙ୍କ
ହୃଦୟରେ ଥୋଇ ଦିଅଇ ସେ ଆତଙ୍କ ।
ଦ୍ରୋଣସୁତ ଧ୍ୱଜଟି ସିଂହର ଲାଙ୍ଗୁଡ଼-
ସୁବର୍ଣ୍ଣରେ ଯେ ହୋଇଅଛି ସେ ନିବାଡ଼ ।
କର୍ଣ୍ଣଙ୍କର ଧ୍ୱଜ ତ ସ୍ୱର୍ଣ୍ଣହାତୀଟାଏ
ଆକାଶକୁ ବ୍ୟାପି ସେ ଯାଉଥାଏ ରାୟେ ।
କୃପଙ୍କର ସେ ସୁନାବୃଷଭ ତ ଧ୍ୱଜ
ରୁଦ୍ରଙ୍କ ରଥ ପରି ଦିଶେ ମହାରାଜ ।
ବୃଷସେନ ଧ୍ୱଜ ତ ସୁବର୍ଣ୍ଣମୟୂର
ବିଶେଷ କାର୍ତ୍ତିକେୟ ରଥଙ୍କ ଆକାର
ମଦ୍ରରାଜ ଧ୍ୱଜ ତ ସୁବର୍ଣ୍ଣ ଲଙ୍ଗଳ
ଅଗ୍ନିଶିଖା ପରି ସେ ଦିଶେ ମହୀପାଳ ।
ଦୁଃଶଳାଙ୍କ ପତି ଯେ ସିନ୍ଧୁଦେଶ ନାହା
ତାହାଙ୍କର ଧ୍ୱଜଟି ରୂପାର ବାରିହା ।
ଭୂରିଶ୍ରବାଙ୍କର ଧ୍ୱଜ ତ ସୁନାଯୂପ
ଦେଖିଲେ ସେ ବଢ଼ାଏ ଶତ୍ରୁ ହୃଦତାପ ।
ଶଲ୍ୟଙ୍କର ଧ୍ୱଜ ତ ରୂପା ହାତୀଟାଏ
ତା ଉପରେ ମୟୂର ବସିଥାଏ ରାୟେ ।
ମଣିମୟନାଗ ଯେ ଦୁର୍ଯ୍ୟୋଧନଙ୍କର
ଧ୍ୱଜ ବୋଲିଣ ହେ ରାଜନ ମନେକର ।
କିଙ୍କିଣିଜାଲରେ ମଣ୍ଡିତ ସେ ହୋଇଛି
ଏଣୁ ମନୋରମେ ସେ ଧ୍ୱଜ ଗରଜୁଛି ।
ଯୁଗାନ୍ତସୂର୍ଯ୍ୟ ପରି ତୁମ୍ଭ ନବ ରଥୀ-
ଧ୍ୱଜ ପରରଥୀଙ୍କି କରନ୍ତି ହେ ବ୍ୟଥୀ ।
ଏ ଧ୍ୱଜମାନଙ୍କେ ଅର୍ଜୁନ ଧ୍ୱଜ ଶିଖ
ସବୁ ପ୍ରକାରେ ହେ ଜାଣ ନରଶିଖ ।
କହିଲି ତ ଦଶରଥୀଙ୍କ ଧ୍ୱଜ ମୁହିଁ
ଶୁଣ କୁରୁ ପାଣ୍ଡବ ଯୁଦ୍ଧ ମନ ଦେଇ ।
ତୁମ୍ଭର ରଥୀଏ ସୁବର୍ଣ୍ଣମଣ୍ଡା ଧନୁ
କମ୍ପାଇ ଯୁଦ୍ଧେ କ୍ରୋଧେ କମ୍ପାଇଲେ ତନୁ ।
ତାହା ଦେଖି ପାର୍ଥ ଗାଣ୍ଡୀବହାତ ହେଲେ
ତୁମ୍ଭ ରଥୀମାନଙ୍କୁ ଉଦ୍ଦେଶି ବାହାରିଲେ ।

ତୁମ୍ଭ ଦୁର୍ମନ୍ତଣାରୁ ଏତେ ସରି ଯାଏ
କଥା ହେଲା ଆହେ ହସ୍ତିନାନରରାୟେ ।
ତୁମ୍ଭ ଅପରାଧରୁ ନୃପେ ହେଲେ ଗୋଟି
ଭାରତଯୁଦ୍ଧେ ଧୂଳି ଖାଇଲେ ମେଲି ପାଟି ।
ନାନାଦେଶରେ ରଥ ହୟ ଦ୍ୱିପପନ୍ତି
ଏହିକାଳେ ପାର୍ଥ ସମ୍ମୁଖେ କଲେ ସ୍ଥିତି ।
ଦୁର୍ଯ୍ୟୋଧନ ଆଦି ରଥିଏ ଯେତେ ଥିଲେ
ସୈନ୍ୟ ଘେନିଣ ଅରଜୁନଙ୍କୁ ବିନ୍ଧିଲେ ।
ସେକାଳେ ଅଦଭୂତ କର୍ମ ଧନଞ୍ଜୟ
କଲେ ଏକାକୀରେ ସେ ନ ନେଲେ ଯା ଜୟ ।
ଜୟଦ୍ରଥ ପରାଣ ନେବାପାଇଁ ପାର୍ଥ
କାଟିଲେ କାଣ୍ଡେ ତୁମ୍ଭ ସୈନ୍ୟମାନଙ୍କର ମାଥ
ସନ୍ଧିବା ବିନ୍ଧିବାରେ କୁଶଳ ଦେଖାଇ
ଦେଲେ ତୁମ୍ଭର ଯୋଦ୍ଧାକୁଳକୁ ଘୋଡ଼ାଇ ।
ଗୋଟିହୋଇ ରାଜନ ତୁମ୍ଭ ଯୋଦ୍ଧାଜନ
ଶରରେ କଲେ ଅରଜୁନଙ୍କୁ ଆଚ୍ଛନ୍ନ ।
କୁରୁଙ୍କର କାଣ୍ଡରେ ଧନବିଙ୍କ ଗୁରୁ
ଅରଜୁନ ବୀର ନୋହିଲେ ରାୟେ ଭୀରୁ ।
ତୁମ୍ଭ ସେନାଯାକ କରନ୍ତେ ସିଂହରଡ଼ି
ମଣିଲୁଁ ଆକାଶ ପଡ଼ିଲା ତଳେ ଝଡ଼ି ।
ଧୃତରାଷ୍ଟ୍ର ବୋଇଲେ ଦ୍ୱାର ଜଗି ଦ୍ରୋଣ
ଥିଲେ ତ ତାଙ୍କୁ ବଳିଯାଇ ଅରଜୁନ ।
ସିନ୍ଧୁନୃପଙ୍କ ତୁଲେ କଲେ ତ ଲଢ଼ାଇ
ଦେବାପାଇଁ ଆମ୍ଭର ଛଡ଼ାଇ ବଢ଼ାଇ ।
ଦ୍ରୋଣ ଦ୍ୱାରେ ରହିଣ ପାଞ୍ଚାଳଙ୍କୁ ରଣ
ସୈନ୍ୟ ଘେନି କିରୂପେ କଲେ ତା ବଖାଣ ।
ସଞ୍ଜୟ ବୋଇଲେ ପାଞ୍ଚାଳ ଦ୍ରୋଣଙ୍କର
ଦଶଘଡ଼ି ସରିକି ହେଲା ଯୁଦ୍ଧ ଘୋର ।
ପାଞ୍ଚାଳମାନେ ସୈନ୍ୟ ତୁଲେ ଛାଡ଼ି ରଡ଼ି
ବରଗିଲେ ଦ୍ରୋଣ ଗୁରୁଙ୍କୁ ଶରଧାଡ଼ି ।
ଦେବାସୁର ଯୁଦ୍ଧ ପରାୟେ ସେ ଯୁଦ୍ଧକୁ
ଦେଖିକରି ତ ଲୋକେ ଆଣିଲେ ମନକୁ ।
ପାଣ୍ଡୁସୁତେ ପାଞ୍ଚାଳଙ୍କୁ ଧରିଣ ସଙ୍ଗେ
ବିନ୍ଧିଲେ ଦ୍ରୋଣ ରଥୀବରେ ରଣରଙ୍ଗେ ।
କେକୟରୁ ଜଣେ ହୋଇଣ ଧନୁହସ୍ତ
ବାହାରିଲେ ଯେ ତାଙ୍କ ନାମ ନାମ ବୃହଦ୍‌କ୍ଷେତ୍ର
ବୃହଦ୍ କ୍ଷେତ୍ର ଆଗକୁ ବାହାରିବା ଦେଖି
କ୍ଷମଧୃତି ତାଙ୍କୁ ଯୁଝିଲେ ନୋହି ଦୁଃଖୀ ।
ଚେଦି ଦେଶର ରାଜା ଧୃଷ୍ଟକେତୁ ବୀର
କଲେ ଯେ ଦ୍ରୋଣଙ୍କର ସଙ୍ଗତେ ସମର ।

ସେନା ଘେନିଣ ଯୁଧିଷ୍ଠିର ଆସୁଥିଲେ
ଦ୍ରୋଣ ତାଙ୍କୁ କାଣ୍ଡ ଚାଣ୍ଡରେ ନିବାରିଲେ ।
ବିକର୍ଣ୍ଣ ନକୁଳଙ୍କୁ ଯୁଦ୍ଧରେ ଆକୁଳ
ଦେବାପାଇଁ ଧାଇଁ ଆଗୁଳି କଲେ ରୋଳ ।
ସହଦେବଙ୍କର ଯୁଦ୍ଧରେ ଆସିବାର
ଦୁର୍ମୁଖ ଦେଖିଣ ବିନ୍ଧିଲେ ବହୁ ଶର ।
ସାତ୍ୟକି ଆସୁଥିଲେ ଯୁଝି ବ୍ୟାଘ୍ରଦତ୍ତ
ଦେଖି କରି ତାହାଙ୍କୁ କଲେ ଶରଘାତ ।
ଦ୍ରୌପଦେୟମାନେ ଯେ ବିନ୍ଧୁଥିଲେ ଶର
ଭୂରିଶ୍ରବା କଲେଟି ତାହାଙ୍କୁ ସମର ।
ଅଳମ୍ବୁଶ ଭୀମସେନଙ୍କୁ ଯୁଦ୍ଧେ ଭେଟି
ବିନ୍ଧିଲା ଧନୁ ମଧ୍ୟେ ଶର ଯୋଟି ଯୋଟି ।
ରାବଣ ତୁଲେ ରାମ ଯୁଝିଲା ପରାୟେ
ଯୁଝିଲେ ଭୀମ ତାହା ସଙ୍ଗେ ନରରାୟେ ।
ଯୁଧିଷ୍ଠିର ଦ୍ରୋଣଙ୍କ ମର୍ମକୁ ଦେଖାଇ
ବିନ୍ଧିଲେ ନଉକାଣ୍ଡ ରାଜନ ଲଖାଇ ।
ଯୁଧିଷ୍ଠିର ଶରଘାତରେ ଦ୍ରୋଣ ରୋଷ-
ବହି ଯୁଧିଷ୍ଠିରେ ବିନ୍ଧିଲେ ପଞ୍ଚବିଂଶ ।
ରଥ ଅଶ୍ୱ ଧ୍ୱଜ ତୁଲରେ ଯୁଧିଷ୍ଠିର
ରଥକୁ ଉଦ୍ଦେଶି ବିନ୍ଧିଲେ ବିଂଶ ଶର ।
ଯୁଧିଷ୍ଠିର ହସ୍ତ ଲାଘବକୁ ଦେଖାଇ
କାଟିଲେ ତାଙ୍କ କାଣ୍ଡଯାକ ନରସାଇଁ ।
ଦ୍ରୋଣ ଧର୍ମରାଜ ଧନୁକୁ ଦୁଇ ଖଣ୍ଡ
କଲେ କାଣ୍ଡକରେ ଦେଖାଇ ହସ୍ତ ଚାଣ୍ଡ ।
ଯୁଧିଷ୍ଠିରଙ୍କର ଯେ ଧନୁହୀନ ହସ୍ତ
ଦେଖି ଦ୍ରୋଣ ବିନ୍ଧିଲେ କାଣ୍ଡ ଅପ୍ରମିତ ।
ଦ୍ରୋଣଙ୍କ କାଣ୍ଡେ ନୟନକୁ ଦୃଶ୍ୟ ନୋହି
ରହନ୍ତେ ଯୁଧିଷ୍ଠିର ପାଣ୍ଡବ ନୃସାଇଁ ।
ସବୁ ଲୋକମାନେ ଯେ ବିଚାରିଲେ ମନେ
ଗଲେ ଯୁଧିଷ୍ଠିର ଯମଙ୍କର ସଦନେ ।
କେଉଁଣସିମାନେଟି ଭାବିଲେ ନ ମରି
ଅଛନ୍ତି ଦ୍ରୋଣ ଶରେ ଜୀଇଁ ଜ୍ଞାନ ହାରି ।
ଏ ସମୟେ ଆନ ଧନୁରେ ଦେଇ ଗୁଣ
କାଟିଲେ ଯୁଧିଷ୍ଠିର ବାଣେ ଦ୍ରୋଣ ବାଣ ।
ଦ୍ରୋଣଙ୍କୁ ମାରିବାକୁ ସୁନାଦଣ୍ଡ ଶକ୍ତି
ଧଇଲେ କରେ ଟେକି ପାଣ୍ଡୁ କୁଳପତି ।
ଆଠଘଣ୍ଟା ସେ ଶକ୍ତିଦଣ୍ଡରେ ଲାଗିଛି
ପରତାପନ ସେ ଯେ ଶବଦେ ହେଉଛି ।
ସେହି ଶକ୍ତିକି ଭଡ଼ା ଚାରି ଯୁଧିଷ୍ଠିର
ଆଗକୁ ଧାଇଁ ଫିଙ୍ଗି ଗରଜିଲେ ଘୋର ।

ଯୁଧିଷ୍ଠିର କରରୁ ଶକ୍ତି ମୁକ୍ତ ହୋଇ
ଜ୍ୱାଳାରେ ସୂର୍ଯ୍ୟକରମାଳାକୁ ଘୋଡ଼ାଇ ।
ଦ୍ରୋଣଙ୍କରଠାକୁଟି ଉଦ୍ଦେଶି ଧାଆନ୍ତେ
ଦ୍ରୋଣଙ୍କ ମଙ୍ଗଳ ଭାବିଲେ ଲୋକେ ଚିତ୍ତେ ।
ଯୁଧିଷ୍ଠିର ହସ୍ତରୁ ସର୍ପପରି ମୋକ୍ଷ
ହୋଇ ଶକ୍ତି ଧାଇଁଛି କରିବାକୁ ଗ୍ରାସ ।
ଆପଣାର ରକ୍ଷା ବିଚାରି ଦ୍ରୋଣ ଗୁରୁ
କକ୍ଷାକରି ବିନ୍ଧିଲେ ବ୍ରହ୍ମାସ୍ତ୍ର ନୋହି ଭୀରୁ ।
ଶକ୍ତିକି ଭସ୍ମାସାର ସେ ଅସ୍ତ୍ରବର କରି
ଗଲା ଯହିଁ ଥିଲେ ପାଣ୍ଡବଦଣ୍ଡଧାରୀ ।
ଯୁଧିଷ୍ଠିର ବ୍ରହ୍ମାସ୍ତ୍ରେ ଦ୍ରୋଣଙ୍କ ବ୍ରହ୍ମାସ୍ତ୍ର
ଶାନ୍ତି କରି ରଖିଲେ ଆପଣାର ଗାତ୍ର ।
ପୁଣି ଯୁଧିଷ୍ଠିର ଦ୍ରୋଣଙ୍କର ଦେହକୁ
ବିନ୍ଧିଲେ ପାଞ୍ଚ କାଣ୍ଡ ଛାଡ଼ି ଓପ୍ରୋଧକୁ ।
କ୍ଷରକାଣ୍ଡେ ଦ୍ରୋଣଙ୍କ ଧନୁ ଦେଲେ କାଟି
ବୋଇଲେ ଗୁରୁ ଆଜି ଯିବ କି ଲେଉଟି ।
ଦ୍ରୋଣ ଛିଡ଼ାଧନୁ ପକାଇ ତଳେ ଦେଲେ
ଗଦା ଧରିଣ ଯୁଧିଷ୍ଠିରଙ୍କୁ ଫିଙ୍ଗିଲେ ।
ସେ ଗଦାକୁ ଗଦା ଫିଙ୍ଗନ୍ତେ ଯୁଧିଷ୍ଠିର
ବଜାବଜି ହେଲେ ସେ ନଭେ ନରବର ।
ଅଗ୍ନିଜ୍ୱାଳାମାନ ବହୁତ ଜାତ କଲେ
ଦୁହେଁ ଏକାବେଳକେ ମହୀରେ ପଡ଼ିଲେ ।
କ୍ରୋଧ ହୋଇଣ ଦ୍ରୋଣ ଯୁଧିଷ୍ଠିର ଘୋଡ଼ା
ଚାରିଙ୍କି କାଣ୍ଡେ କଲେ ଯମପୁରେ ଛିଡ଼ା ।
ଭାଲିକାଣ୍ଡରେ ଧ୍ୱଜ ଧନୁକୁ କାଟିଲେ
ତିନିକାଣ୍ଡରେ ଯୁଧିଷ୍ଠିରଙ୍କୁ ବିନ୍ଧିଲେ ।
ହତଅଶ୍ୱ ହୁଅନ୍ତେ ରଥରୁ ଓହ୍ଲାଇ
ରହିଲେ ଯୁଧିଷ୍ଠିର ଭୂମେ ଉଭା ହୋଇ ।
ଇନ୍ଦ୍ରଧ୍ୱଜ ପ୍ରାୟେ ଟେକିଲେ ଦୁଇ ଭୁଜ
ଆୟୁଧ ନ ଥିବାରୁ ଜାଣ ମହାରାଜ ।
ସେହି ସମୟରେଟି ଦ୍ରୋଣ ବିନ୍ଧି ଶର
ଘୁଞ୍ଚାଇଲେ ଯୁଧିଷ୍ଠିରଙ୍କ ସୈନ୍ୟନର ।
ସିଂହ ତ ମୃଗଠାକୁ ଆସିବା ପରାୟେ
ଆସିଲେ ଦ୍ରୋଣ ଯୁଧିଷ୍ଠିରଠାକୁ ରାୟେ ।
ପାଣ୍ଡୁସେନାଯାକ ମନରେ ବିଚାରିଲେ
ଦ୍ରୋଣ ନିଶ୍ଚୟେ ଯୁଧିଷ୍ଠିରଙ୍କୁ ଧଇଲେ ।
ଯୁଧିଷ୍ଠିର ସହଦେବଙ୍କ ରଥେ ଚଢ଼ି
ପଳାଇଲେ ଘୋଡ଼ାକୁ ପିଟାଇଣ ବାଡ଼ି ।
କ୍ଷେମଧୃତି ବୃହଦ୍‌କ୍ଷେତ୍ରଙ୍କର ସମର
କହିବା ଶୁଣ ଆହେ ହସ୍ତିନାଈଶ୍ୱର ।

ବୃହଦ୍‌କ୍ଷେତ୍ର ବକ୍ଷସ୍ଥଳକୁ କ୍ଷେମଧୃତି
ଚାପେ ସନ୍ଧିଲେ କୋପେ ରୋମପନ୍ତି ।
ବୃହକ୍ଷେତ୍ର କ୍ଷେମଧୃତିଙ୍କୁ ନଉକାଣ୍ଡ
ବିନ୍ଧିଲେ କମ୍ପାଇଣ କରର କୋଦଣ୍ଡ ।
କ୍ରୋଧ ହୋଇଣ କ୍ଷେମଧୃତି ମହାବୀର
କାଟିଲେ କରଧନୁ ବୃହକ୍ଷେତ୍ରଙ୍କର ।
ଏହି ଛିଦ୍ରେ କ୍ଷେମଧୃତି ଯେ ବୃହକ୍ଷେତ୍ର
ହୃଦୟେ ବିନ୍ଧିଲେ ଥରାଇ କ୍ରୋଧେ ଗାତ୍ର ।
ଆନ ଧନୁ ଧରିଣ କ୍ଷେମଧୃତି ଅଶ୍ୱ
ସାରଥିଙ୍କୁ ବୃହକ୍ଷେତ୍ରଟି କଲେ ନାଶ ।
ଭଲ ଭାଲିକାଣ୍ଡରେ କ୍ଷେମଧୃତି ମୁଣ୍ଡ
କାଟିକରି ଗଡ଼ାଇଦେଲେ ରଣଦାଣ୍ଡ ।
ବୃହକ୍ଷେତ୍ର କ୍ଷେମଧୃତିର ପ୍ରାଣହନ୍ତା-
ହୋଇ ତୁମ୍ଭ ସୈନ୍ୟର ବଢ଼ାଇଲେ ଚିନ୍ତା ।
ଦ୍ରୋଣଙ୍କୁ ଯୁଝି ଧୃଷ୍ଟକେତୁ ଆସୁଥିଲେ
ବୀରଧନ୍ୱା ତାହାଙ୍କୁ ନିବାରି ରଖିଲେ ।
ପରସ୍ପରେ ଦୁଇବୀରେ ଯେ ମିଶାମିଶି
ହୋଇଣ ହେଲେ ଶରମୁନ କଷାକଷି ।
ହାତୀକି ହାତୀ ସିଂହ ସିଂହତୁଲେ ରଣ
କଲା ପରି ସେ ଦୁହେଁ ଆରମ୍ଭିଲେ ରଣ ।
ଚାରଣ ସିଦ୍ଧ ସେ ଦୁହିଁଙ୍କ ଯୁଦ୍ଧ ଦେଖି
ବୋଧକଲେ ମନ ରାଜନ ହୋଇ ସୁଖୀ ।
କ୍ରୋଧ ହୋଇଣ ବୀରଧନ୍ୱା ଧୃଷ୍ଟକେତୁ
ଧନୁ କାଟିଦେଲେ ବିଚାରି ତାଙ୍କ ମୃତ୍ୟୁ ।
ଚେଦି ଦେଶରାଜା ତ ଧୃଷ୍ଟକେତୁ ବୀର
ଛିଡ଼ନ୍ତେ ଧନୁ କ୍ରୋଧେ ହୋଇ ଥରଥର ।
ସୁନା ଦଣ୍ଡଲଗା ଶକତିଏ ଧଇଲେ
ବୀରଧନ୍ୱା ରଥକୁ ଉଦ୍ଦେଶି ଫିଙ୍ଗିଲେ ।
ବାଜନ୍ତେ ସେ ଶକତି ବୀରଧନ୍ୱା ବୀର
ଦେଲେ ପ୍ରିୟପ୍ରାଣକୁ ଯମଙ୍କର କର ।
ବୀରଧନ୍ୱା ତ୍ରିଗର୍ତ୍ତରେ ତ ମହାରଥ
ମରନ୍ତେ ପଳାଇଲେ ସୈନ୍ୟ ପୋତି ମାଥ ।
ସହଦେବ ବୀରଙ୍କୁ ଆଗରେ ଦୁର୍ମୁଖ
ଦେଖିକରି ବିନ୍ଧିଲେ ଷାଠିଏ ବିଶିଖ ।
ସେ ଶରକୁ ନ ହେଜି ସହଦେବ ବୀର
ଦୁର୍ମୁଖ ଦେହକୁ ବିନ୍ଧିଲେ ଦଶଶର ।
ପୁଣି ତୁମ୍ଭର ପୁତ୍ର ଦୁର୍ମୁଖ ନଅବାଣ
ବିନ୍ଧି ସହଦେବଙ୍କୁ ପୀଡ଼ା ଦେଲେ ଜାଣ ।
ସେ ଶରେ ପୀଡ଼ା ପାଇ ମାଦ୍ରୀଙ୍କ ତନୟ
ପାଞ୍ଚୋଟି ଶରେ ତାଙ୍କ ଧ୍ୱଜାଶ୍ୱ କଲେ କ୍ଷୟ ।

ଭଲ୍ଲ ଭାଲିଶରରେ ସାରଥିର ପ୍ରାଣ-
ଘେନି ଦୁର୍ମ୍ମୁଖର କାଟିଲେ ଶରାସନ ।
ଏହା ବାହାରେ ପାଞ୍ଚଶର ଦେଇ ବିନ୍ଧି
ଦୁର୍ମ୍ମୁଖର ପ୍ରାଣକୁ ପକାଇଲେ ରୁନ୍ଧି ।
ବିରଥ ତ ହୋଇଲେ ତୁମ୍ଭର ଦୁର୍ମ୍ମୁଖ
ଚଢ଼ିଲେ ନିରମିତ୍ର ରଥ ନରଶିଖ ।
ସହଦେବ ତାହାଟି ସହି ନ ପାରିଲେ
ନିରମିତ୍ର ମୁଣ୍ଡକୁ କାଣ୍ଡେ ହରିନେଲେ ।
ତ୍ରିଗର୍ତ୍ତ ରାଜସୁତ ନିରମିତ୍ର ନାଶ
ଦେଖି ତୁମ୍ଭ ବୀରେ ଛାଡ଼ିଲେ ଯୁଦ୍ଧ ଆଶ ।
ନିରମିତ୍ର ମରନ୍ତେ ତ୍ରିଗର୍ତ୍ତେ ହାହାକାର
କରିବା ଧ୍ୱନି ଏକା ଶୁଭିଲା ମନେକର ।
ନକୁଳଙ୍କର ସଙ୍ଗେ ତୁମ୍ଭର ବିକର୍ଣ୍ଣ
ଘଡ଼ିଏ ଯୁଦ୍ଧ କରି ଭାଜିଲେ ନୃରାଣ ।
ବ୍ୟାଘ୍ରଦତ୍ତ ଅଶ୍ୱ ସହିତେ ମାଧବଙ୍କୁ
ଘୋଡ଼ାଇଲେ ଯୁଦ୍ଧରେ ବଳାଇ ଭାବକୁ ।
ସାତ୍ୟକି ବ୍ୟାଘ୍ରଦତ୍ତ କାଣ୍ଡକୁ ନିବାରି
ପାଞ୍ଚକାଣ୍ଡେ ଘୋଡ଼ା ସାରଥି ପ୍ରାଣ ହରି ।
କାଣ୍ଡକରେ ବ୍ୟାଘ୍ରଦତ୍ତଙ୍କୁ ଯମଦାଣ୍ଡ
ଦେଖାଇଲେ ଯୁଦ୍ଧରେ ଫୁଲାଇଣ ପିଣ୍ଡ ।
ମାଗଧସୁତ ବ୍ୟାଘ୍ରଦତ୍ତ ମହାବଳ
ମରିକରି ଦେଖନ୍ତେ ଯମଙ୍କର ଆଳ ।
ମାଗଧେ ତା ଦେଖି ନୟନେ ପାଣି ରଖି
ପାଣିଦିଆ ଶର ବିନ୍ଧିଲେ ସେହୁ ଯୋଖି ।
ଶତ ଶତ ଶର ମୂଷଳ ମୁଦ୍ଗର
ପ୍ରହାରି ସାତ୍ୟକିଙ୍କି କଲେ ସେ ସମର ।
ମାଗଧଙ୍କ ଯୁଦ୍ଧକୁ ସାତ୍ୟକି ନ ହେଜି
କାଟିଲେ କାଣ୍ଡେ ଚାଣ୍ଡେ ଗର୍ଜି ମୁଣ୍ଡରାଜି ।
ସାତ୍ୟକି ଶରେ ପୀଡ଼ା ପାଇଣ ମାଗଧେ
ପଳାଇଲେ ଯୁଦ୍ଧରୁ ଲଭି ଭୟ ହୃଦେ ।
ମାଗଧଙ୍କ ଭାଗୁଡ଼ି ଦେଖି ତୁମ୍ଭ ସେନା-
ମାନେ ମଧ୍ୟ ଭାଜିଲେ ହୋଇଣ ବିମନା ।
ରଦନ ଭିଡ଼ି ତୁମ୍ଭ ସଇନ କଦନ
ସେହିକାଳେ କଲେଟି ସତ୍ୟକି ନନ୍ଦନ ।
ସାତ୍ୟକି ବ୍ୟାଘ୍ର ମୁଖୁଁ ଉବୁରି ସୈନ୍ୟଛେଳି
ଯେ ଗଲେ ସେ ଆଉ ନୋହିଲା ଯୁଦ୍ଧଶାଳୀ ।
ଏହା ଦେଖିଣ ଅଶ୍ୱତ୍ଥାମାଙ୍କର ବାପ
ସାତ୍ୟକିଙ୍କଠାକୁ ଧାଇଁଲେ ଧରି ଚାପ ।
ତହୁଁ ଦ୍ରୌପଦେୟମାନଙ୍କୁ ସୌମଦତ୍ତି
ଷାଠିଏ ବାଣ ବିନ୍ଧି କରାଇଲେ ବ୍ୟଥୀ ।

ଦ୍ରୌପଦୀଙ୍କର ସୁତେ ପାଆନ୍ତେ ତ ପୀଡ଼ା
ନ ଯୁଝି ଧନୁ ଧରି ରହିଲେ ହୋଇ ଛିଡ଼ା ।
ନକୁଳସୁତ କରେ ଲୁଆଇଁ କୋଦଣ୍ଡ
ବିନ୍ଧିଲେ ସୌମଦତ୍ତି ଦେହେ ଦୁଇ କାଣ୍ଡ ।
ଦ୍ରୌପଦୀଙ୍କର ବାକୀ ଚାରିସୁତ ତିନି
ତିନି ସୌମଦତ୍ତିଙ୍କୁ ବିନ୍ଧିଲେ କ୍ରୋଧ ଘେନି ।
ସୌମଦତ୍ତି ଦ୍ରୌପଦୀ ପାଞ୍ଚ କୁମାରଙ୍କ
ହୃଦୟକୁ ବିନ୍ଧିଲେ ପଚିଶି ଶାୟକ ।
ସେ ପାଞ୍ଚଭାଇ ସୌମଦତ୍ତି କାଣ୍ଡ ବହି
ଯୁଝିଲେ ପାଞ୍ଚରଥେ ବେଢ଼ିଆଇ ରହି ।
ଅର୍ଜ୍ଜୁନଙ୍କର ସୁତ ସୌମଦତ୍ତିଙ୍କର
ଚାରିଅଶ୍ୱ ପ୍ରାଣ ପେଷିଲେ ଯମପୁର ।
ସୌମଦତ୍ତିଙ୍କର କରର ଶରାସନ
କାଣ୍ଡରେ ଛିଣ୍ଡାଇଲେ ଭୀମଙ୍କ ନନ୍ଦନ ।
ଯୁଧିଷ୍ଠିରନନ୍ଦନ ସୌମଦତ୍ତି ଧ୍ୱଜ
କାଟିପକାଇଲେ କାଣ୍ଡକେ ମହାରାଜ ।
ନକୁଳସୁତ କାଣ୍ଡେ ସୌମଦତ୍ତିଙ୍କର
ସାରଥି ମୁଣ୍ଡ କାଟି ଦେଲେ ନରବର ।
ସହଦେବ ସୁତ ତା ଦେଖି କ୍ରୋଧ ହେଲେ
ସୌମଦତ୍ତି ଶିର କାଣ୍ଡକେ ହରିନେଲେ ।
ଭୂଷଣରେ ଭୂଷିତ ସୌମଦତ୍ତି ମୁଣ୍ଡ
ଛିଡ଼ି ସୂର୍ଯ୍ୟ ପରି ପଡ଼ିଲା ରଣଦାଣ୍ଡ ।
ମରନ୍ତେ ସୌମଦତ୍ତି ତୁମ୍ଭ ସେନାପତି
ପଳାଇଲେ ମଲୁଁ ଭାବନାକରି ମତି ।
ଆର୍ଷ୍ୟଶୃଙ୍ଗ ଭୀମସେନଟି କଲେ ରଣ
ବିନ୍ଧାବିନ୍ଧି ହୋଇଣ ମୁନଘଷାବାଣ ।
ସେ ନର - ରାକ୍ଷସଙ୍କ ଅନାଇଣ ଯୁଦ୍ଧ
ଛାଡ଼ିଲେ ଲୋକ ଯୁଦ୍ଧ କରିବାର ସଧ ।
ଆର୍ଷ୍ୟଶୃଙ୍ଗ ଦେହକୁ ଭୀମ ମହାବଳୀ
ବିନ୍ଧିଲେ ନବକାଣ୍ଡ ନୃପ କ୍ରୋଧେ ଜଳି ।
ଆର୍ଷ୍ୟଶୃଙ୍ଗ ରାକ୍ଷସ କରି ଗରଜନ
କଲା ଭୀମସେନଙ୍କ ସୈନ୍ୟ ବିନାଶନ ।
ଭୀମଙ୍କୁ ପାଞ୍ଚକାଣ୍ଡ ବିନ୍ଧି ଅତିଚାଣ୍ଡେ
ସାତଶ ରଥୀ ପ୍ରାଣ ନେଲା ରଣଦାଣ୍ଡେ ।
ପୁଣି କାଣ୍ଡେ ଭୀମଙ୍କ ଗଣ୍ଡିକି ପ୍ରହାର
କରନ୍ତେ ଭୀମ ମୋହ ହୋଇ ହେଲେ ଧୀର ।
ନିମିଷ ଭିତରେ ବିବେକ ଭୀମଙ୍କର
ହୃଦୟଦେଶରେ ରହନ୍ତେ କରି ଘର ।
ନିଜ ଧନୁ ମଧ୍ୟକୁ ଆଣ୍ଟକରି ଭିଡ଼ି
ଆର୍ଷ୍ୟଶୃଙ୍ଗ ଦେହେ ରଚିଲେ ଶରଧାଡ଼ି ।

ଭୀମଙ୍କର କାଣ୍ଡରେ କିଂଶୁକ ସମିତ
ଦିଶିଲା ଆର୍ଷ୍ୟଶୃଙ୍ଗ ଦେହର ରକତ ।
ପୀଡ଼ା ପାଇଣ ଆର୍ଷ୍ୟଶୃଙ୍ଗ ଛିଡ଼ା ହୋଇ
କହିଲା ଏ ବଚନ ଭୀମଙ୍କୁ ଅନାଇଁ ।
ବଡ଼ ଭାଇକି ମୋ କରିଛ ତୁମ୍ଭେ ନାଶ
ପଡ଼ିଛ ମୋ ଆଗରେ ଛାଡ଼ ଜୀବ ଆଶ ।
ଏହା କହି ରାକ୍ଷସ ଅନ୍ତର୍ଦ୍ଧାନ ହେଲା
ଭୀମ ଉପରେ ଶରଧାରା ବରଷିଲା ।
ଭୀମ ତା ଭୀଷଣ ଯୁଦ୍ଧକୁ ନ ଡରିଲେ
ଆକାଶକୁ ଶରରେ ପୂର୍ଣ୍ଣ କରିଦେଲେ ।
ଭୀମଙ୍କର ଶରେ ରାକ୍ଷସ ପାଇ ପୀଡ଼ା
ଯୁଦ୍ଧ କଲା ସେ ରଥବରେ ହୋଇ ଛିଡ଼ା ।
ପୁଣିଟି ଆକାଶକୁ କଲା ସେ ଗମନ
ଭାବିଲା ସେ ଭୀମ ପ୍ରାଣକୁ ମୁଁ ଶମନ ।
ନାନାଜାତି ରୂପମାନଙ୍କୁ ସେ ଧଇଲା
ନାନାଜାତି ଭର୍ତ୍ସନା ବଚନ ଭାଷିଲା ।
ପାଣ୍ଡବ ସୈନ୍ୟ ଚତୁରଙ୍ଗ କରି ହତ
ଗରଜିଲା ତୁଣ୍ଡ ମେଲିଣ ସେ ମହତ ।
ରଥମାନଙ୍କରୁ ତ ପଡ଼ିଲେ ରଥିଏ
ବାଜନ୍ତେ ଆର୍ଷ୍ୟଶୃଙ୍ଗ କାଣ୍ଡ ନରରାୟେ ।
ରଥାବର୍ତ୍ତ ହସ୍ତୀ - କୁମ୍ଭୀର ଛତ୍ର - ହଂସ
ବାହୁ-ସର୍ପକୁଳ ଯେ କର୍ଦ୍ଦମ-ମାଉଁସ ।
ପାଞ୍ଚାଳ ସୃଞ୍ଜୟଙ୍କ ମଡ଼ା କାଠ ପ୍ରାୟେ
ଭସାଇଲା ନଦୀଏ ରକ୍ତେ ବହି ରାୟେ ।
ପାଣ୍ଡବେ ଆର୍ଷ୍ୟଶୃଙ୍ଗ ପରାକ୍ରମ ଦେଖି
କି କଲା ହେ ରାକ୍ଷସ ବୋଲି ହେଲେ ଦୁଃଖୀ ।
ତୁମ୍ଭର ସୈନ୍ୟଯାକ ହୋଇଲେ ଆନନ୍ଦ
ବଜାଇଲେ ନାନାଜାତିର ବାଦ୍ୟବୃନ୍ଦ ।
ତୁମ୍ଭ ସୈନ୍ୟ ଏ ରୀତି ଭୀମ ତ ଜାଣିଲେ
ପାଣିରେ ପାଣି ଘଷି ଚକ୍ଷୁ ରଙ୍ଗକଲେ ।
ତ୍ୱାଷ୍ଟ୍ରଙ୍କ ଅସ୍ତ୍ର ଭୀମ କରନ୍ତେ ପ୍ରକାଶ
ବାହାରିଲା ସହସ୍ର ସଂଖ୍ୟାରେ ଶରବଂଶ ।
ଭୀମ ରଚିବାର ଦେଖିଣ ଶରଭିଡ଼ା
କେହି ତୁମ୍ଭ ଲୋକେ ନୋହିଲେ ଯୁଦ୍ଧେ ଛିଡ଼ା ।
ଭୀମଙ୍କ ତ୍ୱାଷ୍ଟ୍ର ଅସ୍ତ୍ର ରାକ୍ଷସ ମାୟା କାଟି
ରହିଲା ସେ ଯାଇଣ ରାକ୍ଷସକୁ ଘୋଟି ।
ଆର୍ଷ୍ୟଶୃଙ୍ଗ ଭୟରେ ଥରାଇ ଶରୀର
ଗଲା ଯେ ଯହିଁ ଥିଲେ ଦ୍ରୋଣ ଦ୍ୱିଜବର ।
ଆର୍ଷ୍ୟଶୃଙ୍ଗ ହାରିବା ଦେଖି ପାଣ୍ଡୁସେନା
ଭୀମଙ୍କୁ ପ୍ରଶଂସିଲେ ହୋଇ ତୋଷମନା ।

ହିଡ଼ିମ୍ବାସୁତ ଘଟୋତ୍କଚ ମହାବଳୀ
ବିନ୍ଧିଲା ଆର୍ଷ୍ୟଶୃଙ୍ଗ ଦେହେ ଶରାବଳି ।
ଦୁହେଁ ରାକ୍ଷସରେ ଅଟନ୍ତି ବଳୀୟାର
ପୁଣି ତ ସେ ବୋଲାନ୍ତି ମାୟାରେ ସାଗର ।
ଏହି ସକାଶୁଁ ରାଗ ଧରି ଆଗ ମାୟା
ପ୍ରକାଶି ଯୁଦ୍ଧକଲେ ଛାଡ଼ିଦେଇ ଦୟା ।
ଶମ୍ବରାସୁର ଇନ୍ଦ୍ର ଯୁଦ୍ଧକୁ ହେ ରାୟେ
ସେ ଯୁଦ୍ଧ ସମ ହେଲା ବୋଇଲେ ସଭିଏ ।
ପୂର୍ବକାଳେ ରାମ ରାବଣଙ୍କର ରଣ
ହେଲା ପରି ଦୁହେଁ ଆରମ୍ଭ କଲେ ରଣ ।
କୋଡ଼ିଏ କାଣ୍ଡ ଆର୍ଷ୍ୟଶୃଙ୍ଗ ବକ୍ଷସ୍ଥଳେ
ଘଟୋତ୍କଚ ବିନ୍ଧ ରାଜନ କଲା ରୋଳେ ।
ସେହିରୂପରେ ଆର୍ଷ୍ୟଶୃଙ୍ଗ କାଣ୍ଡ ବିନ୍ଧି
ଗରଜନ କରି ଆକାଶ ଦେଲା ରୁନ୍ଧି ।
ପରସ୍ପରେ ଦୁହେଁ ମାୟାରେ ବିଶାରଦ
ଯୁଝିଲେ ପରସ୍ପରେ ହୋଇଣ ପ୍ରମୋଦ ।
ଘଟୋତ୍କଚ ମାୟା କରନ୍ତେ ପରକାଶ
ଆର୍ଷ୍ୟଶୃଙ୍ଗ ତାହା ମାୟାରେ କଲା ନାଶ ।
ପୁଣି ଆର୍ଷ୍ୟଶୃଙ୍ଗ କରନ୍ତେ ମାୟାଯୁଦ୍ଧ
ପାଣ୍ଡବେ ଯୁଦ୍ଧ କଲେ ତାଙ୍କୁ ବହି କ୍ରୋଧ ।
ଭୀମ ଆଦି ରଥିଏ ରଥରେ ତାହାଙ୍କୁ
ବେଢ଼ିଣ ବିନ୍ଧିଲେ ସଳଖ ବିଶିଖକୁ ।
ଅସ୍ତ୍ର ବେଗେ ପାଣ୍ଡବଙ୍କର ଶର ନାଶି
ଆର୍ଷ୍ୟଶୃଙ୍ଗ ରାକ୍ଷସ ଦେଲା ନିଶ ଘଷି ।
ପାଣ୍ଡବ ରଥିଏ ଗୁହାରୁ ସିଂହ ପରି
ଆସିଲା ଚାପରୋପ ତୁଣ୍ଡକୁ ବିସ୍ତାରି ।
ସାତ ସହଦେବ ତେସ୍ତରି ନକୁଳଙ୍କୁ
ପାଞ୍ଚ ପାଞ୍ଚ ଦ୍ରୌପଦୀ ତନୟାମାନଙ୍କୁ ।
ଘଟୋତ୍କଚ ରାକ୍ଷସକୁ ଯେ ପଞ୍ଚବିଂଶ
ତିନି ଯୁଧିଷ୍ଠିରେ ବିନ୍ଧିଲା ବହି ରୋଷ ।
ଏ ବାହାରେ ଭୀମଙ୍କୁ ବିନ୍ଧି ପାଞ୍ଚକାଣ୍ଡ
ଗରଜନେ ପୂରାଇଦେଲା ରଣଦାଣ୍ଡ ।
ଭୀମସେନ ନବ ଯେ ଯୁଧିଷ୍ଠିର ଶଏ
ସହଦେବ ସାତ ନକୁଳଟି ଷାଠିଏ ।
ତିନି ତିନି ଦ୍ରୌପଦୀ ସୁତେ ଘଟୋତ୍କଚ
ବାଛିକରି ବିନ୍ଧିଲେ ଛକୋଡ଼ି ନାରାଚ ।
ଆର୍ଷ୍ୟଶୃଙ୍ଗ ରାକ୍ଷସକୁ ତ ତରଜନା
କଲାପରି ଗର୍ଜିଲେ ସେହି ମହାମନା ।
ସେ ଶବଦେ ଦିଗ ସମୁଦ୍ର ତୁଲେ ମହୀ
କମ୍ପିଗଲା ଜାଣ ହସ୍ତିନା ନରସାଇଁ ।

ଏକା ଆର୍ଷ୍ୟଶୃଙ୍ଗ ପାଣ୍ଡବ ରଥୀଯାକ
ଦେହକୁ ପାଞ୍ଚ ପାଞ୍ଚ ବିନ୍ଧିଲା ଶାୟକ ।
ହିଡ଼ିମ୍ବାର ତନୟ ଆର୍ଷ୍ୟଶୃଙ୍ଗ ଦେହେ
ବାଛି ସାତକାଣ୍ଡ ବିନ୍ଧିଲା ଅତି କୋହେ ।
ଆର୍ଷ୍ୟଶୃଙ୍ଗ ମଧ ତ ଶତ ଶତ ଶର
କରିଲା ଘଟୋତ୍କଚ ଦେହକୁ ପ୍ରହାର ।
ଆର୍ଷ୍ୟଶୃଙ୍ଗ ରାକ୍ଷସ ବିନ୍ଧିବା ଶରମାଳି
ପଶିଲେ ଘଟୋତ୍କଚ ଦେହଯାକେ ଗଳି ।
ଏ ଅନ୍ତେ ପାଣ୍ଡୁସୁତେ ଘଟୋତ୍କଚ ତୁଲେ
ଆର୍ଷ୍ୟଶୃଙ୍ଗ ଦେହକୁ ଶରରେ ଛାଇଲେ ।
ଆର୍ଷ୍ୟଶୃଙ୍ଗ ପାଣ୍ଡବଙ୍କର ଶରେ ପୀଡ଼ା
ପାଇ ମୋହ ଭଜି ରହିଲା ହୋଇ ଛିଡ଼ା ।
ଆର୍ଷ୍ୟଶୃଙ୍ଗ ମୋହ ଦେଖିଣ ଘଟୋତ୍କଚ
ମାରିବାକୁ ତାହାକୁ କରି ମନେ ପାଞ୍ଚ ।
ଆର୍ଷ୍ୟଶୃଙ୍ଗ ସର୍ପକୁ ଗରୁଡ଼ଙ୍କ ପରି
ବସିଲା ଝାମ୍ପି ତାର ରଥେ ଦଣ୍ଡଧାରୀ ।
ବୁଲାଇଲା ତାହାର ଧରି ଦୁଇବାହା
ତୁମ୍ଭ ଲୋକେ ତା ଦେଖି କରୁଥିଲେ ଆହା ।
ପଥରରେ ମାଠିଆ ଛେଚି ଯେଉଁ ରୂପେ
ଛେଚିଲା ତଳେ ଆର୍ଷ୍ୟଶୃଙ୍ଗକୁ ସେରୂପେ ।
ପୁଣି ଡେଇଁପଡ଼ି ତଳରେ ଥରେ ପେଷି
ଦେଲା ଘଟୋତ୍କଚ ତାହାକୁ ହୋଇ ରୋଷୀ ।
ସେ ଘାତ ପାଇ ହାତ ତୁଲେ ପିଠି ହାଡ଼
ଚୂନା ହୋଇଯାନ୍ତେ ଶୁଭିଲା ମଡ଼ ମଡ଼ ।
ଆର୍ଷ୍ୟଶୃଙ୍ଗ ମରଣ ଦେଖିଣ ପାଣ୍ଡବେ
ହୃଷ୍ଟ ହୋଇ ବସନ ଉଡ଼ାଇଲେ ସର୍ବେ ।
ତୁମ୍ଭର ଲୋକ ଆର୍ଷ୍ୟଶୃଙ୍ଗର ମରଣ
ଦେଖିକରି ଭାଜିଲେ ଛାଡ଼ିଦେଇ ରଣ ।
ମଲେ ହେଲେ ତ ଅଙ୍ଗାରକ ଗ୍ରହ ପରି
ଦିଶୁଥିଲା ଆର୍ଷ୍ୟଶୃଙ୍ଗଟି ଦଣ୍ଡଧାରୀ ।
ମରନ୍ତେ ଆର୍ଷ୍ୟଶୃଙ୍ଗ ଘଟୋତ୍କଚ ନିଶ
ଦୁଇ ମୋଡ଼ି କଲେ ରାଜନ ମୁଖଘୋଷ ।
ଘଟୋତ୍କଚଙ୍କର କର୍ମର ସୁଖମତି
ହୋଇଣ ପ୍ରଶଂସିଲେ ପାଣ୍ଡୁସୁତେ ଅତି ।
ଶୃଙ୍ଖଭେରୀ ମୃଦଙ୍ଗ ପଣବ ବାଇଲେ
ପାଣ୍ଡବେ ସେ ଶବଦେ ପୃଥ୍ୱୀ କମ୍ପାଇଲେ ।
ଧୃତରାଷ୍ଟ୍ର ବୋଇଲେ ଦ୍ରୋଣଙ୍କୁ ସାତ୍ୟକି
କି ରୂପେ ନିବାରିଲେ ଯୁଦ୍ଧେ ଟେକି ମତି ।
ବିଶେଷେ ଏହା ଶୁଣିବାକୁ ମୋ ମାନସ
ବଳିଅଛି ସଞ୍ଜୟ କର ତା ପ୍ରକାଶ ।

ସଞ୍ଜୟ ବୋଇଲେ ହେ ଯୁଧିଷ୍ଠିର ନୃପ
ବିଚାରି ହୃଦୟେ ଦ୍ରୋଣଙ୍କ ସନ୍ତାପ ।
ସୈନ୍ୟ ଆଗେ ରଖାଇ ସାତ୍ୟକି ବୀରଙ୍କୁ
ଆଶ୍ଚର୍ଯ୍ୟ ଯୁଦ୍ଧ କଲେ ଦ୍ରୋଣ ଆଚାର୍ଯ୍ୟଙ୍କୁ ।
ଦ୍ରୋଣଙ୍କ ସଇନ ସାତ୍ୟକି କାଣ୍ଡଘାତ
ପାଇକରି ସର୍ବେ ହୁଅନ୍ତେ ଭୂମିଗତ ।
ଦ୍ରୋଣ ତାହା କିଛିଟି ସହି ନ ପାରିଲେ
ରୋଷେ ନିଶ ମୋଡ଼ି ସାତ୍ୟକିଠାକୁ ଗଲେ ।
ଦ୍ରୋଣଙ୍କ ଆସିବାର ଦେଖିଣ ସାତ୍ୟକି
ପଚିଶି ଶର ତାଙ୍କୁ ବିନ୍ଧିଲେ ଶର ଝିଙ୍କି ।
ହେମପୁଂଖ ଯେ ଶିଳାଘଷା ପାଞ୍ଚକାଣ୍ଡ
ବିନ୍ଧିଲେ ଦ୍ରୋଣଗୁରୁ କ୍ରୋଧେ ଜାଳି ପିଣ୍ଡ ।
ସାତ୍ୟକି ଦ୍ରୋଣଙ୍କର ବିନ୍ଧିବା ନ ସହି
ପଚିଶି ଶର ପୁଣି ବିନ୍ଧିଲେ ତୁହାଇ ।
ସାତ୍ୟକିଙ୍କ କାଣ୍ଡରେ ମଣ୍ଡି ଦ୍ରୋଣ ପିଣ୍ଡ
ବିନ୍ଧିଲେ ସାତ୍ୟକିଙ୍କି ଉନ୍ନତପର୍ବ କାଣ୍ଡ ।
ସାତ୍ୟକି ଦ୍ରୋଣକାଣ୍ଡେ ପାଇ ମହାପୀଡ଼ା
ଅକର୍ତ୍ତବ୍ୟ ଲୋକ ପରାୟେ ହେଲେ ଛିଡ଼ା ।
ତୁମ୍ଭ ସୁତମାନେ ସାତ୍ୟକି ପୀଡ଼ା ଜାଣି
ଗରଜନ କଲେ ଘେନିଣ ସୈନ୍ୟଶ୍ରେଣୀ ।
ଏହା ଶୁଣିଣ ଯୁଧିଷ୍ଠିର ନରଶିଖ
ସଇନଙ୍କୁ ବୋଇଲେ ବିନ୍ଧିହେ ବିଶିଖ ।
ରଥିକୁଳ ଶଶୀ ସାତ୍ୟକି ମହାବାହୁ
ଗ୍ରାସି ଦେଉଛନ୍ତି ତାହାଙ୍କୁ ଦ୍ରୋଣରାହୁ ।
ଏସକାଶୁଁ କୁରୁଏ କରି ସିଂହରଡ଼ି
ଆସୁଛନ୍ତି ଆମ୍ଭର ଉପରକୁ ମାଡ଼ି ।
ଏଥିକି ଅନୁରୂପ ହେବ ଯେଉଁ କଥା
କର ମୋବୋଲେ ଯୋଦ୍ଧାମାନେ ଛାଡ଼ି ବ୍ୟଥା
ସମୀପେ ଯେ ଧୃଷ୍ଟଦ୍ୟୁମ୍ନ ରହିଥିଲେ
ତାହାଙ୍କୁ ଯୁଧିଷ୍ଠିର ଅନାଇ କହିଲେ ।
ତୁମ୍ଭ ପରି କ୍ଷତ୍ରିୟ ସାହା ଥାଉଁ ଥାଉଁ
ଦ୍ରୋଣ ଆମ୍ଭ ବୁକୁ କରାନ୍ତି ଦାଉ ଦାଉ ।
ଭୀମ ତୁଲରେ ତୁମ୍ଭେ ମହାରଥୀକୁଳ
ଘେନି କର ଦ୍ରୋଣ ଗୁରୁଙ୍କୁ ଯାଇ ରୋଳ ।
ତୁମ୍ଭ ପଛେ ପଛେ ସଇନ ଘେନି ମୁହିଁ
ଯିବି ସାତ୍ୟକିଙ୍କର ପ୍ରାଣ ରକ୍ଷା ପାଇଁ ।
ଏହିରୂପେ କହିଣ ଧୃଷ୍ଟଦ୍ୟୁମ୍ନଙ୍କୁ
ଧୂଆଁଇଲେ ରଥ ସାତ୍ୟକି ସମୀପକୁ ।
ନୃପ ଯିବା ଦେଖି ଯୋଦ୍ଧାଏ ହୋଇ ଗୋଟି
ଧାଇଁଲେ ପଛକୁ ଧନୁରେ ଶର ଯୋଚି ।

ଦ୍ରୋଣଙ୍କ ସମୀପରେ ହେଲେ ପରବଶ
ପାଞ୍ଚାଳ କଇକେୟ କଲେ ତୁଣ୍ଡଘୋଷ ।
କଙ୍କ ମୟୂରଙ୍କର ପକ୍ଷ ଲଗା ଶର
ବିନ୍ଧିଲେ ସେହୁ ଦ୍ରୋଣ ଦ୍ୱିଜଙ୍କ ଉପର ।
ଦ୍ରୋଣ ସମସ୍ତ ଯୋଦ୍ଧାମାନଙ୍କୁଟି ଆପେ
ନିକାରି ପକାଇଲେ ଶାୟକ ପ୍ରତାପେ ।
ମଧ୍ୟାହ୍ନସୂର୍ଯ୍ୟ ପରି ତେଜ ଦ୍ରୋଣଦ୍ୱିଜ
ବୁଲାଇଲେ ସବୁରି ନୟନ-ସରୋଜ ।
ଦ୍ରୋଣ ବଳେ ପାଣ୍ଡବ ସୃଞ୍ଜୟ ହୋଇ ଦଳି
ମଲାଙ୍କ ବୋଲିଣ ବସିଲେ ମନେ ଭାଳି ।
ପ୍ରାଣ ରଖିବାକୁ ନ ପାଇ ବାହୁସାହା
ବେଳକୁ ବେଳ ସେହୁ ହେଲେ ନିବୃସାହା ।
ସୂର୍ଯ୍ୟଙ୍କ ପରି ଦ୍ରୋଣଙ୍କର ଶରପନ୍ତି
ସବୁଆଡ଼ରୁ ପଡ଼ି ପୀଡ଼ା ଦେଲେ ଅତି ।
ସେହୁ ଯୁଦ୍ଧରେ ଦ୍ରୋଣ ପଚିଶି ପାଞ୍ଚାଳ -
ମହାରଥୀଙ୍କର ଯେ ପୂରାଇଲେ କାଳ ।
ଏହା ବାହାରେ ଆଉ ଯେତେ ଭଲ ରଥୀ
ଥିଲେ ତାହାଙ୍କୁ ମାଇଲେ ଯୁଦ୍ଧ କରି ବ୍ୟଥୀ ।
ଅନ୍ତକ ପରି ଦ୍ରୋଣ ପାଟିକି ବିସ୍ତାରି
ଯୁଦ୍ଧ କରି କେକେୟ ଶର ଦେଲେ ମାରି ।
ଏହା ବାହାରେ ମତ୍ସ୍ୟ କେକେୟପାଞ୍ଚାଳ
ମାନଙ୍କୁ ଶତ ଶତ ସସ୍ର କଲେ କ୍ଷୟ ।
ଦ୍ରୋଣ କାଣ୍ଡଘାତ ନ ସହି ବାବୁ ଭାଇ
ବୋଲି ପାଣ୍ଡୁ ସେନା ଭଜିଲେ ନରସାଇଁ ।
ଆକାଶେ ଥାଇ ପିତୃଦେବତା ଦେଖିଲେ
ଦ୍ରୋଣଙ୍କ ପ୍ରଶଂସାକୁ ହୃଦୟେ ରଖିଲେ ।
ପାଣ୍ଡବ ସଇନଙ୍କୁ କରିଣ ଧିକ୍କାର
ଏ ବାହାରେ ବୋଇଲେ ନୁହନ୍ତି ଏ ବୀର ।
ଦ୍ରୋଣଙ୍କ ସମ୍ମୁଖେ ପାଣ୍ଡବରଥୀକୁଳ
ରହି ନ ପାରିଲେ କରିବେ କେହିଁ ରୋଳ ।
ଏହି ସମୟରେଟି ଯୁଧିଷ୍ଠିର ରାୟେ
ଶୁଣିଲେ କୃଷ୍ଣ ଶଙ୍ଖ ବଜାନ୍ତି ଅତିଶୟେ ।
କୁରୁମାନଙ୍କର ଶୁଭିଲା ଗରଜନ
ନ ଶୁଣିଲା ତାହାଙ୍କୁ ଗାଣ୍ଡୀବ-ନିସ୍ୱନ ।
ଏହି ସକାଶରୁଟି କରି ମହାଦୁଃଖ
ଯୁଧିଷ୍ଠିର ରହିଲେ ଅଧଃ କରି ମୁଖ ।
ମନେ ମନେ ବୋଇଲେ ଅରଜୁନ ଭାଇ
ରହିଥାଇ ମୋହର ଯୁଦ୍ଧେ ଭଲ ନୋହି ।
ଅତି ଆଣ୍ଟେ ଶଙ୍ଖ ବଜାନ୍ତି ପୀତବାସ
କି କରିବି ଶୁଭୁ ତ ନାହିଁ ଧନୁଘୋଷ ।

ଏରୂପେ ଅନେକ ବିଚାରି ନରମଣି
କହିଲେ ଉଚ୍ଚେ କାନ୍ଦି ସାତ୍ୟକିକି ବାଣୀ ।
ଆହେ ମଧୁବଂଶପ୍ରଭବ ମାଧବ
ଆମ୍ଭଠାରେ ତୁମ୍ଭର ବଳିଛି ତ ଭାବ ।
ତୁମ୍ଭ ପରି ଆମ୍ଭର ଏ ମହୀରେ କେହି
ଥିବା ପରି ମୋର ମନକୁ ପାଉନାହିଁ ।
ସବୁଦିନେ ତୁମ୍ଭେ ଥାଇଣ ମୋର ମତେ
ଦିନ ସବୁଥାଅ ମୁଁ ଘେନୁଅଛି ଚିତ୍ତେ ।
ଶ୍ରୀକୃଷ୍ଣ ଅଟନ୍ତି ଆମ୍ଭର ଯେଉଁରୂପେ
ସତ୍ୟକତନୟ ଆଶ୍ରୟ ସେହିରୂପେ ।
ଗୁଣ ବିନାରେ ଦୋଷ ତୁମ୍ଭଠାରେ କିଛି
ଆମ୍ଭର କହିବାକୁ ନାହିଁ ଜାଣ ବାଛି ।
ଏବେ ତୁମ୍ଭଠାରେ ଦେଉଛି ଯେଉଁ ଭାର
ତାହା ବହ ହେ ମଧୁବଂଶଜପ୍ରବର ।
ତୁମ୍ଭ ଗୁରୁ ମୋହର ଭାଇ ଅର୍ଜୁନଙ୍କୁ
କୁରୁଏ ଦେଉଛନ୍ତି ମହାକଦନକୁ ।
ତାହାପାଇଁ ରଦନ ଭିଡ଼ି ଶରାସନ
ଧରି ତୁମ୍ଭେ କର ବୋଲୁଛି ଆୟୋଧନ ।
ସତ୍ୟବ୍ରତ ଶୂର ଅଭୟଦାତା ତୁମ୍ଭେ
ପଡ଼ିଛି ଭୟ ରକ୍ଷାକର ବୋଲୁ ଆମ୍ଭେ ।
ମିତ୍ରଲୋକ ପାଇଁ ଯେ ଯୁଦ୍ଧ କରି ମରେ
ନୋହିଲେ ପୃଥ୍ୱୀଦାନ ଦିଏ ଦ୍ୱିଜବରେ ।
ଏ ଦୁଇ କଥାତ ସୁକୃତ କହିଛନ୍ତି
ଦେବ ତତ୍ତ୍ୱ ଜାଣିବାମାନେ ଶିନିପତି ।
ଶୁଣିଛୁ ଆମ୍ଭେ ରାଜାମାନେଦ୍ୱିଜେ ଦାନ
ମହୀ ଦେଇ ସ୍ୱର୍ଗରେ କଲେ ଯାଇ ସ୍ଥାନ ।
ଅଞ୍ଜଳି କରି ମୁହିଁ କହୁଛି ତୁମ୍ଭଙ୍କୁ
ଭାଙ୍ଗି ନ କହିବଟି ମୋ ମତ ଆମ୍ଭଙ୍କୁ ।
ମହତ କାର୍ଯ୍ୟ ମୋହର ହେଲା ଉପଗତ
କୃଷ୍ଣ ତୁଲେ ତୁମ୍ଭେ କରିବ ପାଏ ଚିତ୍ତ ।
ବୀରକୁ ବୀର ନିକି ରକ୍ଷା କରିପାରେ
ପ୍ରାକୃତ ଲୋକଠାରେ ସମ୍ଭବି ନ ପାରେ ।
ତୁମ୍ଭରୁ ଆନ ଲୋକ ହୋଇ ଧନୁହାତ
ସାହା ହୋଇଣ ରଖି ନ ପାରିବ ପାର୍ଥ ।
ଲଘୁହସ୍ତ ଚିତ୍ରଯୋଧୀ ଯେ ପ୍ରାଜ୍ଞମୁଖ
ମହାବାହୁ ମହାହନୁ ଯେ ମହାବକ୍ଷ ।
ମହାତ୍ମା ମହାରଥୀ ମହାବଳ ଶୂର
ସର୍ବାସ୍ତ୍ରବେଦୀ ମହାସ୍କନ୍ଧ ମହାବୀର ।
ରୂପେ ମୋର ଶିଷ୍ୟ ସାତ୍ୟକି ଅଟନ୍ତି
ମୋର ପ୍ରିୟ ବିନା ସେ ଆନ ନ ଜାଣନ୍ତି ।

ମୋହର ସେ ମଧ ଅଟନ୍ତି ମହାପ୍ରିୟ
କରିବେ ମୋର ପାଇଁ ଶତ୍ରୁକୁଳ କ୍ଷୟ
ଏ ରୂପେ ଅର୍ଜ୍ଜୁନ ଦ୍ୱୈତବନେ ମୋତେ
କହିଛନ୍ତି ତୁମ୍ଭ କୀର୍ତ୍ତି ହେ ମହାମତେ ।
ଏ ବାହାରେ କହିଛି ରାମକୃଷ୍ଣ ଦୁଇ
ଅନିରୁଦ୍ଧ ପ୍ରଦ୍ୟୁମ୍ନ ଆଦି ଯେତେ ଭାଇ -
ମାନଙ୍କୁ ଘେନି ଆମ୍ଭେ ସାହା ହେବେ ଯୁଦ୍ଧେ
ମରିବେଟି ଜାଣ କୁରୁଏ ତାଙ୍କ କ୍ରୋଧେ ।
ଏରୂପେ ଯଦୁମାନେ ଥାଉ ମୋର ସାହା
ଆଶ୍ରୟ କରିଛି ମୁଁ ସାତ୍ୟକିଙ୍କି ବାହା ।
ସାତ୍ୟକି ମୋହ ପାଇଁ ଅକର୍ତ୍ତବ୍ୟ କଥା
ହେଲେ କରିଯିବେ ଅବଶ୍ୟ କରି କଥା ।
ଦ୍ୱାରିକାରେ ମୁଁ ମଧ ଅର୍ଜ୍ଜୁନେ ତୁମ୍ଭର
ଭକତି ଯେତେକ କରିଛି ତା ଗୋଚର ।
ଉପପ୍ଲବ ନଗରେ ତୁମ୍ଭର ଭକତି
ଆମ୍ଭଠାରେ ଯେତେ ଘେନିଛ ମହାମତି ।
ସୌହାର୍ଦ୍ଦ୍ୟ ସତ୍ୟନିଷ୍ଠ କୁଳୀନତା ମୈତ୍ର
ଅନୁରୂପେ ଯା ହେବ କର ଶିନିପୌତ୍ର ।
ସୁଯୋଧନ ସାଞ୍ଜୁ ଲଗାଇ ଦ୍ରୋଣଠାରୁ
ଯାଇଛି ଯୁଦ୍ଧେ ଜିଣିବାକୁ ତୁମ୍ଭ ଗୁରୁ ।
ପୁଣି ତ ରଥୀମାନେ ପୂର୍ବୁ ଜଗିଥିଲେ
ଅର୍ଜ୍ଜୁନ ଆସିଲେ ଯୁଝିବା ବୋଲି ଭଲେ ।
ଏବେ ତ କୁରୁଙ୍କର ତୁଣ୍ଡରୁ ଚହଳ
ବଡ଼ ଆଣ୍ଟେ ଶୁଭେ ସାତ୍ୟକି ମହାବଳ ।
ଏଥିପାଇଁ କି ଏହା କହୁଛି ତୁମ୍ଭଙ୍କୁ
ତୁମ୍ଭେ ଯାଇ ରକ୍ଷାକର ହେ ଅର୍ଜ୍ଜୁନଙ୍କୁ ।
ଦ୍ରୋଣ ଯେବେ ତୁମ୍ଭର ସଙ୍ଗତରେ ରୋଳ
କରିବେ ଆମ୍ଭେ ଭାଙ୍ଗିବୁଁ ତାଙ୍କର ବଳ ।
ଦେଖ ଆହେ ସାତ୍ୟକି ଆମ୍ଭ ସୈନ୍ୟଚୟ
ପଳାଉଛନ୍ତି ଯୁଦ୍ଧେ କରି ମହାଭୟ ।
ସିନ୍ଧୁ ଉଛୁଳିବା ପରାୟେ ସୈନ୍ୟଧୂଳି
ଉଡ଼ି ଘୋଡ଼ାଇଣ ଦେଉଛି ଦିଗାବଳି ।
ସିନ୍ଧୁ ସଉବୀର ବଳରେ ଜୟଦ୍ରଥ
ରକ୍ଷା ତ ହୋଇଛି ଯିବ ତା କେହିଁ ମାଥ ।
ଶର ଶକ୍ତି ଗଦା ଯେ ମଶଳ ପରିଘ
ଧରି ରହିଅଛନ୍ତି ରଥୀ ଯୋଦ୍ଧା ସିଂହ ।
ଜୟଦ୍ରଥରାଜାଙ୍କୁ ଅର୍ଜ୍ଜୁନ କି ରୂପେ
ମାରିବ ସାତ୍ୟକି ବିଚାର ହେ ଆପେ ।
ଦୁନ୍ଦୁଭି ଶଙ୍ଖ ରଥ ହାତୀ ଗରଜନ
ଶୁଣି ଆହେ ସାତ୍ୟକି ରଥୀ ଦେଇ କାନ ।
ସଇନ୍ଧବ ସଇନ ଆଗରେ ଅଛନ୍ତି
ପୁଣି ଦ୍ରୋଣସୈନ୍ୟ ତାହାଙ୍କୁ ଜଗିଛନ୍ତି ।
ଏ ସକାଶୁଁ ଭାବୁଛିଁ ଇନ୍ଦ୍ରଙ୍କର ପୀଡ଼ା
ବଢ଼ାଇ ତାଙ୍କୁ ଦେଇ ପାରନ୍ତି ଯୁଦ୍ଧେ ବ୍ରୀଡ଼ା ।
ଅରଜୁନ ଯେବେ ଯୁଦ୍ଧରେ ହେବେ ହତ
ରଖି ନ ପାରିବି ଜାଣ ମୁହିଁ ଜୀବିତ ।
ଶାମ ଯୁବା ଚିତ୍ରଯୋଧୀ ଯେ ଲଘୁହସ୍ତ
ସକାଳୁ ଯୁଝୁଛି ହେଲାନି କାଳ ଅସ୍ତ ।
ଏତେବେଳଯାଏଁ ତ ଭଲ ମନ୍ଦ ଦୁଇ
ବାରତା ନ ପାଇ ଧରିବି ଧୈର୍ଯ୍ୟ କେହିଁ ।
ଦେବତାର ଅଜେୟ କୁରୁଙ୍କ ସଇନ
ଏହା ହୋଇ ତହିଁ ପଶିଲେ ଅରଜୁନ ।
ଏହି ଘେନି ଆଜି ଆଜିରେ ମୋର ମତି
ଉତ୍ତମ ହୋଇ ରହୁଁନାହିଁ ଶିନିନାତି ।
ତୁମ୍ଭେ ସାକ୍ଷାତରେ ଦେଖୁଛ ନୟନରେ
ମାରୁଛନ୍ତି ଦ୍ରୋଣ ବାଣରେ ନିରନ୍ତରେ ।
ସବୁ କାର୍ଯ୍ୟଯାକେ ଅର୍ଜ୍ଜୁନ ପରିତ୍ରାଣ
ବଡ଼ କାର୍ଯ୍ୟ ବୋଲି ସାତ୍ୟକି ମୋର ଜାଣ ।
ଶ୍ରୀକୃଷ୍ଣଙ୍କର ପାଇଁ ନାହିଁ ମୋର ଶୋକ
ମନେ କଲେ ଜିଣି ସେ ପାରନ୍ତି ତ୍ରିଲୋକ ।
ଅଳପ ବଳ ଘେନି ଧୃତରାଷ୍ଟ୍ର ସୁତେ
କି ପାରିବେ ସେ ଘେନିମା ତା କେତେ ।
ଅରଜୁନ ପାଇଁ ହେଉଛି ମୋର ଭୟ
ଏହା କୁରୁସେନା କରିବେ କେହିଁ କ୍ଷୟ ।
ଏ ସକାଶୁଁ ବୋଲୁଛି ଅରଜୁନ ମାର୍ଗ
ଅନୁସରି ଯାଅ ହେ ବିନ୍ଧିଣ ଆଶୁଗ ।
ବୃଷ୍ଣି ବରୀମାନଙ୍କେ ତୁମ୍ଭେ ପ୍ରଦ୍ୟୁମନ
ଅତିରଥ ବୋଲିଣ ବାହାରେ ବଚନ ।
ଅସ୍ତ୍ରରେ କୃଷ୍ଣ ସରି ବଳେ ଶିବ ପରି
ବୀରତ୍ୱେ ଅର୍ଜ୍ଜୁନ ତୁମ୍ଭଙ୍କୁ ବୋଲି ପାରି ।
ଭୀଷ୍ମ ଦ୍ରୋଣ ପ୍ରତିକି ଜାଣିବାରେ ଯୁଦ୍ଧ
ଅଧିକ ତୁମ୍ଭେ ବୋଲି ହୁଏ ଆମ୍ଭ ବୋଧ ।
ତୁମ୍ଭଙ୍କୁ ବଳିଯିବା ପରି ମହାରଥୀ
ଏ ମହୀମଣ୍ଡଳରେ ଦିଶୁନାହିଁ କଥା ।
ତୁମ୍ଭଠାରେ ଅର୍ଜ୍ଜୁନଠାରେ ସମ୍ଭାବିନା
ଭାର ରହିଅଛି ଜାଣ ହେ ମହାମନା ।
ସେ ସମ୍ଭାବନା ଏବେ ନ ଦିଅ ହେ ଭାଙ୍ଗି
ହୁଅ ମୋ ବୋଲେ ଯାଇ ଯୁଦ୍ଧେ ପାର୍ଥ ସଙ୍ଗୀ
ଯୁଦ୍ଧରେ ପରାଣକୁ ଛାଡ଼ିବ କ୍ଷତ୍ରିୟ
ବୋଲି ଲେଖିଛନ୍ତି ସକଳ ଋଷିଚୟ ।

ବିଶେଷ ଯଦୁଏ ଅଟନ୍ତି ବଳୀଆର
ଯୁଝନ୍ତି କରି ପ୍ରିୟ ପରାଣକୁ ଦୂର ।
ଯୁଦ୍ଧ ଛାଡ଼ିକରି ପଳାଇ ଆସିବାର
ଭୟାଳୁମାନଙ୍କର ଅଟେ ଏ ବେଭାର ।
ତୁମ୍ଭେ ତ ଶୂର ବୀର ପଢ଼ିଅଛି ଯୁଦ୍ଧ
ମୋ ବୋଲ କର ଯାଇ ଶତ୍ରୁକୁଳ ବଧ ।
ଯେରୂପେ ଅର୍ଜୁନ ଅଟନ୍ତି ତୁମ୍ଭ ଗୁରୁ
ସେହି ରୂପେଟି ଅର୍ଜୁନ କୃଷ୍ଣଙ୍କର ଗୁରୁ ।
ତୁମ୍ଭ ଗୁରୁଙ୍କର ଗୁରୁ ମୁହିଁ ଯେ ଅଟଇ
ମୋ ବୋଲ ଭାଙ୍ଗିବାର ଉଚିତ ନୁହଇ ।
ମୋହର ଯେ ମତ ସେ କୃଷ୍ଣାର୍ଜୁନ ମତ
ବୋଲି ସତ୍ୟ କହୁଛି ସତ୍ୟକଙ୍କ ସୁତ ।
ସୁଯୋଧନ ବଳରେ ହୋଇ ପରବେଶ
କରାଅ ଲୋକେ ଖ୍ୟାତ କୀର୍ତ୍ତି ପଉରୁଷ ।
ଆହେ ଧୃତରାଷ୍ଟ୍ର ହେ ନୃପକୁଳମଣି
କହନ୍ତେ ରାଜା ପ୍ରୀତି କାଳଯୁକ୍ତ ବାଣୀ ।
ହୁଅନ୍ତେ ସେ ସାତ୍ୟକି ହୃଦୟକୁ ଗତ
ମଣ କରିଦେଲା କ୍ଷଣକମାତ୍ରେ ଚିତ୍ତ ।
ଯୁଧିଷ୍ଠିର ରାଜାଙ୍କୁ ଅନାଇଁ ମାଧବ
କହିଲେ ମୋତେ ଯାହା କହିଲେ ନରଦେବ
ସମସ୍ତ ମୁହିଁ କର୍ଣ୍ଣଯୁଗଳେ ଶୁଣିଛି
କହିବାକୁ ମୋହର ଉତ୍ତର ନାହିଁ କିଛି ।
କୀର୍ତ୍ତିକର ନ୍ୟାୟଯୁକତ ତୁମ୍ଭ କଥା
ଘେନିଲେ ଏହା ଚିତ୍ତେ ହେବ ଲାୟେ ପୋଥା
ଅରଜୁନ ପରି ମୁଁ ତୁମ୍ଭର ଅଧୀନ
ହୋଇଅଛି ବୋଲିଟି ତୁମ୍ଭେ ମନ ଘେନ ।
ଯା ବୋଲିବ ତାହା କରିବି ପ୍ରାଣରକ୍ଷା
କଥା ମୋ ନାହିଁ ହେ କହୁଛି କରି କକ୍ଷା ।
ତିନିଲୋକଯାକକୁ ଏକା ଯୁଝିପାରେଁ
କୁରୁସୈନ୍ୟ କେତେକ ମୋହର ଆଗରେ ।
ଏବେ ଯାଉଅଛି ମାଇଲେ ଜୟଦ୍ରଥ
ପାର୍ଥ ମୋର ଲେଉଟିବ ହେ ଜାଣ ରଥ ।
ନୋହିଲେ ମୁଁ ତୁମ୍ଭଙ୍କୁ ଆସିକରି ମୁଖ
ଦେଖାଇବି ନାହିଁ ହେ ଜାଣ ନରଶିଖ ।
କୃଷ୍ଣ ଥିଲେ ଅର୍ଜୁନ ଯାହା କହିଛନ୍ତି
ମୋତେ ତାହା ତୁମ୍ଭଙ୍କୁ କହିବି ନୃପତି ।
ଆମ୍ଭେ ତ ଯାଉଅଛୁ ମାରି ଜୟଦ୍ରଥ
ତୁମ୍ଭେ ଥିବ ଜଗି ପାଣ୍ଡବ ନରନାଥ ।
ପ୍ରଦ୍ୟୁମନ ତୁମ୍ଭ ବିନା ମୁହିଁ ଆନକୁ
ଦେଇ ଛାଡ଼ି ଯାଇ ନ ପାରଇ ରାଜାଙ୍କୁ ।
ଦ୍ରୋଣଙ୍କ ପ୍ରତିଜ୍ଞା ବାଣୀ ତ ଶୁଣିଅଛ
ବଳ ତ ତାହାଙ୍କର ମନକୁ ଆଣିଛ ।
ଏକଥାକୁ ଅନୁଚ୍ପରେ ଛାଗର୍କ
ହୋଇଥିବ ତୁମ୍ଭେଟି ଧରିଣ କାର୍ମୁକ ।
ଅଣୁମାତ୍ର ଛିଦ୍ର ପାଇଲେ ଦ୍ରୋଣଗୁରୁ
ନେବେ ବାନ୍ଧି ଯୁଧିଷ୍ଠିରଙ୍କୁ ନୋହି ଭୀରୁ ।
ଏହିରୂପେ ଅନେକ ମତେ ଅରଜୁନ
ଟିଆରି ମୋତେ କହିଗଲେ ହେ ରାଜନ ।
ଏ ବାହାରେ କହିଲେ ଜୟଦ୍ରଥ ପଦ
ଲିଭିବ ଆଜି ପାଆନ୍ତେ ସେ ମୃତ୍ୟୁପଦ ।
ଦ୍ରୋଣ ଯୁଧିଷ୍ଠିରେ ଯେ ରୂପେ ନ ଧରିବେ
ସେ ରୂପରେ ଆପଣ କରିବା ହୋଇବେ ।
ଜାଣୁଅଛ ମୁହିଁ ତ ଅଟେ ରଣରଙ୍କା
ମୋର କଥାରେ କିଛି ନ କରିବ ଶଙ୍କା ।
ଦ୍ରୋଣ ଯୁଧିଷ୍ଠିର ରାଜାଙ୍କୁ ନେବେ ଧରି
ନ ପାରିବି ଜୟଦ୍ରଥକୁ ମୁଁଟି ମାରି ।
ଆମ୍ଭେମାନେ ଯୁଦ୍ଧରେ କରିବାର ଶ୍ରମ
ବ୍ୟର୍ଥ ହେବ ବନ୍ଦୀ ପଡ଼ିଲେ ନରୋତ୍ତମ ।
ମୋହର ପ୍ରିୟକୀର୍ତ୍ତି ଇଚ୍ଛା ଥିଲେ ମନେ
ରଖ ଯୁଧିଷ୍ଠିରଙ୍କୁ ଯାଇଣ ବହନେ ।
ଦ୍ରୋଣ ଡରି ପାର୍ଥ ତୁମ୍ଭଙ୍କୁ ମତେ ଦେଇ
ଯୁଝିଯାଇଛନ୍ତି ହେ ଜାଣ ନରସାଇଁ ।
ପ୍ରତିଦିନ ପାର୍ଥ ନ ବୋଲନ୍ତି ପ୍ରଦ୍ୟୁମନ
ତୁମ୍ଭ ବିନା ତାହାଙ୍କୁ ନ ଯୁଝିବା ଆନ ।
ଗୁରୁଙ୍କର ବୋଲ ଅନ୍ୟଥା କରି ମୁହିଁ
ଯିବାକୁ ରାଜନ ମନ ବୋ ହେଉ ନାହିଁ ।
ପକ୍ଷୀତୁଲେ ବାଳକେ କ୍ରୀଡ଼ା କଲା ପରି
ସେରୂପେ ତୁମ୍ଭ ସୈନ୍ୟ ଦ୍ରୋଣ କ୍ରୀଡ଼ା କରି ।
ନେବେଟି ତୁମ୍ଭଙ୍କୁ ଧରିଣ ନରଗଣ
ନାହିଁ ତାଙ୍କ ଆଗେ କେ ବିନ୍ଧିବାକୁ ବାଣ ।
ରତିପତି ପ୍ରଦ୍ୟୁମ୍ନ ଥିଲେ ନରପତି
ତୁମ୍ଭଙ୍କୁ ଦ୍ରୋଣମୁଖୁଁ ରଖି ସେ ପାରନ୍ତି ।
ମୁଁ ଗଲେ ତୁମ୍ଭପାଖେ ଅଛି କେଉଁ ବଳୀ
ତାହାକୁ ମୋତେ ଆଗେ କହ ନୃପ ଭାଳି ।
ଅର୍ଜୁନ ସକାଶୁଁ ନ କର ତୁଚ୍ଛା ଭୟ
ମନେ କଲେ କରିବେ କୁରୁଯାକ କ୍ଷୟ ।
ସେନ୍ଧବ ଦାକ୍ଷିଣାତ୍ୟ ଉଦୀଚ୍ୟ ସୌବୀରଙ୍କ
ପୌରବ୍ୟ ପ୍ରାଚ୍ୟ କର୍ଣ୍ଣଆଦି ରଥୀଯାକ ।
ଅର୍ଜୁନଙ୍କର ଷୋଳକଳାର କଳାକୁ
ସମାନ ନୁହନ୍ତି କହିବି କି ତୁମ୍ଭକୁ ।

ସୁରାସୁର ନର ଯେ ରାକ୍ଷସ କିନ୍ନର
ମହୀଯାକେ ଯେତେ ଅଛନ୍ତି ନରବର ।
ଏ ବାହାରେ ସ୍ଥାବର ଜଙ୍ଗମ ହୋଇ ଗୋଟି
ଜିଣିଟି ନ ପାରିବେ ଯୁଝିଲେ କିରୀଟୀ ।
ଏହି କଥା ମନେ କର ଆହେ ରାଜନ
ଛାଡ଼ିଦିଅ ଯାହା ହେଉଛି ଭୟ ମନ ।
ଯେଉଁଠାବରେ ଦୁଇ କୃଷ୍ଣ ଛନ୍ତି ରହି
ସେହିଠାରେ ଅଜୟ ହେବ କାହିଁ ପାଇଁ ।
ତୁମ୍ଭର ଭାଇଙ୍କର ଅମର ସଂଯୋଗ
କୃତଜ୍ଞତା ବିଚାରି କହ ମହାଭାଗ ।
ଦ୍ରୋଣଙ୍କର ତ ଚିତ୍ରଯୋଧିତା ବିଚାର
ମୋ ବିନା ଏକା ରହିବାର ମନେକର ।
ଦ୍ରୋଣଙ୍କର ପ୍ରତିଜ୍ଞା ସତ୍ୟ କରିବାକୁ
ଇଚ୍ଛା ଥିଲେଟି ଯାଅ ବୋଲି ପାର୍ଥଠାକୁ ।
ମୁଁ ଗଲେ ତୁମ୍ଭଙ୍କୁ ଜଗିବ କେ ରାଜନ
ତାହାଙ୍କୁ ଦେଖି ନାହିଁ ମୋହର ନୟନ ।
ତାହାଙ୍କୁ ଛାଡ଼ି ମୁହିଁ ନ ପାରିବି ଯାଇ
ନ କହ ନରପତିଶେଖର ବଢ଼ାଇ ।
ଯେଉଁ କଥା ଶ୍ରେୟ ହୋଇବ ତାହା କର
ବୃଥା ଶୋକେ ମଥା ନ ପୋତ ବୋଲକର ।
ଯୁଧିଷ୍ଠିର ବୋଇଲେ ତୁମ୍ଭର କଥାକୁ
ମାନିଲି ହେ ସାତ୍ୟକି ନ କହ ଆମ୍ଭଙ୍କୁ ।
ଅର୍ଜ୍ଜୁନଠାରେ ମୋର ସ୍ନେହ ତ ବଳିଛି
ଏଣୁ ତାଠାକୁ ଯାଅ ତୁମ୍ଭଙ୍କୁ ବୋଲୁଛି ।
ମୋର ବୁଦ୍ଧିରେ ମୁହିଁ ହୋଇବି ରକ୍ଷିତ
ନ ପାଇବ ମୋତେ ଦ୍ରୋଣଙ୍କ ଶରଘାତ ।
ଅରଜୁନଙ୍କ ଠାକୁ ତୁମ୍ଭର ଯିବାର
ରୁଚୁଛି ମନକୁ ସାତ୍ୟକି ମନେ କର ।
ଭୀମ ପରାୟେ ଯୋଦ୍ଧା ପାଖେ ଥିଲେ ରହି
ଦ୍ରୋଣ ମତେ ବାନ୍ଧିଣ ନେଇ କି ପାରଇ ।
ଏହା ବାହାରେ ଧୃଷ୍ଟଦ୍ୟୁମ୍ନ ରହିଛନ୍ତି
ନୃପତିଏ ବହୁତ ମୋତେ ଜଗିଛନ୍ତି ।
ମୋ ପାଇଁ ପ୍ରାଣତ୍ୟାଗ କରିବେ ଏ ରଣେ
ନୋହିବି ମୁହିଁ କିତି ଜାଣ ଦ୍ରୋଣ ବାଣେ ।
ଦ୍ରୌପଦେୟ କେକୟ ଘଟୋତ୍କଚ ବୀର
ଶିଖଣ୍ଡୀ ଧୃଷ୍ଟକେତୁ ଦ୍ରୁପଦ ନୃପବର ।
ବିରାଟ କୁନ୍ତିଭୋଜ ମାତୁଳ ମୋହର
ଧନୁ ଧରି ମୋ ପାଇଁ କରିବେ ସମର ।
ଅମର ହେଲେ ଏହାଙ୍କୁ ତ ଯିବେ ହାରି
ଦ୍ରୋଣ ମୋତେଟି ଧରି ନେବେ କେହିଁକରି ।
ଦ୍ରୋଣ-ସିନ୍ଧୁ ଧୃଷ୍ଟଦ୍ୟୁମନ-ବେଳା ପାଇ
ଲଙ୍ଘି ନ ପାରିଣ ରହିବେ ତୁନି ହୋଇ ।
ଦ୍ରୋଣଙ୍କୁ ମାରିବାକୁ ଧୃଷ୍ଟଦ୍ୟୁମ୍ନ ଜାତ
ହୋଇଛନ୍ତି ଏହା ଗୋଚର ହୁଏ ଚିତ୍ତ ।
ଜନମିଅଛନ୍ତି ସେ ଧନୁଶର ଧରି
କୁଣ୍ଡଳାଦି ଅଳଙ୍କାର ଅଙ୍ଗରେ ଭରି
ମୋ କଥାରେ ବିଶ୍ୱାସ କରି ବୀରଈଶ
ଯାଅ ତୁମ୍ଭେ କହୁଛି ଅରଜୁନ ପାଶ ।
ପାଶେ ଥିଲେ ଧୃଷ୍ଟଦ୍ୟୁମନ ପରି ଭେଣ୍ଡା
ଆସିଲେ ଦ୍ରୋଣ ଯୁଝି ଶୋଇବେ ହୋଇ ଦଣ୍ଡା
ଧରମରାଜଙ୍କର ଏ ବଚନ ଶୁଣି
ସାତ୍ୟକି ଯଦୁକୁଳ ବୀରଙ୍କ ଅଗ୍ରଣୀ ।
ମନେକଲେ ଅର୍ଜ୍ଜୁନ ବୋଲିବେ ବା ମୋତେ
ଛାଡ଼ି ତୁମ୍ଭେ ରାଜାଙ୍କୁ ଆସିଲେ କେମନ୍ତେ ।
ଛାଡ଼ିଗଲେଟି ଲୋକେ ଦେବେ ଅପବାଦ
ସତ୍ୟକି ଗଲାକ୍ଷଣି ପଡ଼ିଲା ବିପଦ ।
ଏହିରୂପେ ବିଚାରି କହିଲେ ରାଜାଙ୍କୁ
ଯାଉଛି ତୁମ୍ଭ ଆଜ୍ଞା ଘେନି ପାର୍ଥଠାକୁ ।
ମଙ୍ଗଳ ହୋଇଥାଉ ରାଜନ ତୁମ୍ଭର
କିଛି ନ ଘେନିଲ କହିବା କଥା ମୋର ।
ଅର୍ଜ୍ଜୁନରୁ ବଡ଼ ତ ମୋର ପ୍ରିୟ ନାହିଁ
ଯିବି ତାଙ୍କ ଯିବା ମାର୍ଗରେତ ମୁହିଁ ।
କରିବା ନ କରିବା କଥା ପାର୍ଥ ପାଇଁ
ଜାଣ ଆହେ ରାଜନ ମୋହରଟି ନାହିଁ ।
ମୋ ଗୁରୁଙ୍କର ଗୁରୁ ବୋଲାଅ ତ ତୁମ୍ଭେ
ତୁମ୍ଭ ଆଜ୍ଞା ଭାଙ୍ଗିପାରିବୁ କିହେ ଆମ୍ଭେ ।
କୃଷ୍ଣାର୍ଜ୍ଜୁନ ଯେହ୍ନେ କରନ୍ତି ତୁମ୍ଭ ପ୍ରିୟ
ସେହିରୂପେ କରିବି ଆଜି ତାଙ୍କ ପ୍ରିୟ ।
ଦୁର୍ଭେଦ୍ୟ ସଇନକୁ ଶରମୁନେ ଭେଦି
ଯିବି ମୁଁ ପାର୍ଥଠାକୁ ହୋଇ ନିର୍ବିବାଦୀ ।
ଦ୍ରୋଣ ସୈନ୍ୟ-ସିନ୍ଧୁରେ ମତ୍ସ୍ୟପ୍ରାୟ ମୁହିଁ
ପଶି ଚହଟିବି ଦେଖିବ ନାସାଇଁ ।
ଯେଉଁଠାବରେ ଜୟଦ୍ରଥ ଅଛି ଲୁଚି
ଯେଉଁଠାବରେ ଯୁଝିବି ମୁଁ ଶରଧାରା ମୁଞ୍ଚି ।
ପାର୍ଥ ଯେଉଁଠାରେ ଯୁଝନ୍ତି ନରରାଣ
ସେ ପଥ ଅତକ୍ରମି ଯିବି ନରରାଣ ।
ଜୟଦ୍ରଥ ନୃପେ ମାରିବାଯାଏ ମୁହିଁ
ଯାଉଛି ଅରଜୁନ ପାଶେ ଥିବି ରହି ।
ଯୁଦ୍ଧକୁ ଯାଅ ବୋଲି ଦେଉଛ ତ ଆଜ୍ଞା
କି ରୂପେ ରାୟେ ତାହା କରିବି ଅବଜ୍ଞା ।

ଖଡ୍ଗ ଶକ୍ତି ଗଦା ତୋମାର କୁରୁ ସେନା
ଧରିଣ ଯୁଝୁଛନ୍ତି ହୋଇ କୋପମନା ।
ତାହାଙ୍କ ସଙ୍ଗେ ମୁହିଁ କରି ମହାରଣ
ଘେନି ପକାଇବିଟି ରାଜନ ପରାଣ ।
ଯେଉଁ ହାତୀଯାକ ଦିଶୁଅଛନ୍ତି ରାଯେ
ଅଞ୍ଜନକୁଳ ଜାତ ଅଟନ୍ତି ସଭିଏଁ ।
ମ୍ଳେଚ୍ଛେ ତ ସେ ହାତୀମାନଙ୍କେ କରି ସ୍ଥିତି
ନାନା ଜାତି ଆୟୁଧମାନ ଧରିଛନ୍ତି ।
ମ୍ଳେଚ୍ଛଙ୍କେ ପ୍ରେରିତ ହେଲେ ସେ ହାତୀଗଣ
କରିବେ ସେ ପରାଣ ଯିବା ଯାଏ ରଣ ।
ଯେଉଁ ରଥୀମାନଙ୍କୁ ସସ୍ର ସଂଖ୍ୟା କରି
ଦେଖୁଅଛ କୁରୁ ସେନାରେ ଦଣ୍ଡଧାରୀ ।
ତାଙ୍କ ନାମମାନ ଅଟଇ ରୁକ୍ମରଥ
ଅଟନ୍ତି ସେ ଯୁଦ୍ଧେ ମହତ ସମରଥ ।
ରଥ ଅଶ୍ୱ ନାଗଯୁଦ୍ଧ ସେହୁ ଜାଣନ୍ତି
ଧନୁର୍ବେଦ ପାରଦରଶୀ ସେ ବୋଲାନ୍ତି ।
ଗଦାଯୁଦ୍ଧ ସେ ମଲ୍ଲଯୁଦ୍ଧ ଆଦି ଯୁଦ୍ଧ
କରି ଶତ୍ରୁଙ୍କୁ କରିପାରନ୍ତି ସେ ବଧ ।
କର୍ଣ୍ଣ ନିଯୋଜିବାରେ ଦୁଃଶାସନ ପାଖେ
ରହି ସେମାନେ ଯୁଝୁଛନ୍ତି ତୁମ୍ଭ ମୁଖେ ।
କୃଷ୍ଣ ମଧ୍ୟ ଏ ରଥୀମାନଙ୍କୁ ପ୍ରଶଂସା
କରନ୍ତି ସଭାରେ ହେ ଜାଣ ମହାଯଶା ।
ଦୁର୍ଯ୍ୟୋଧନ ଯେ କର୍ଣ୍ଣ କରିବାରୁ ରଣ
ଅରଜୁନଙ୍କୁ କରି ନାହାନ୍ତି ଏ ଜାଣ ।
କିଛି ଶ୍ରାନ୍ତ ନ ପାଇ ଯୁଦ୍ଧେ ଏ ଅଛନ୍ତି
ମୁଁ ଗଲେ ମୋର ସଙ୍ଗେ ଯୁଝିବେ ନୃପତି ।
ଦେଖୁଥିବ ରାଜନ ଏହାଙ୍କ ମରଣ
କରିବି ଆଗ ବିନ୍ଧି ମୁନଘଷା ବାଣ ।
ପଛେ ଅର୍ଜୁନଙ୍କର ପାଖକୁ ମୁଁ ଯିବି
ତୁମ୍ଭର ଯେ ପ୍ରିୟ ହୋଇବ ତା କରିବି ।
ଗଣତିରେ ସାତଶ ହାତୀ ବହି ସାଞ୍ଜୁ
ଆଗେ ଥାଇ ଦିଶନ୍ତି ଦେଖ କେଡ଼େ ମଞ୍ଜୁ ।
କିରାତେ ବଢ଼ିବାରେ ଦିଶୁଅଛନ୍ତି ଆଣ୍ଟ
ବାଜିଲେ ତାଙ୍କ ଦନ୍ତ ଗିରି ହେବ ବାଟ ।
ଅଇରାବତ ପରି ଅଇରିମାନଙ୍କୁ
ପାରନ୍ତି ମାରି ଯୁଦ୍ଧେ କରି ବିକ୍ରମକୁ ।
ଉତ୍ତର ପର୍ବତରେ କରିଥାନ୍ତି ଘର
ପାରନ୍ତି ଯୁଦ୍ଧ କରି ଗରଜି ଏ ଘୋର ।
ଦସ୍ୟୁମାନେ ତା ଦେଖି ଯୁଝିବାକୁ ପାଞ୍ଚି
ବସିଛନ୍ତି ତାଙ୍କ ଉପରେ ଧନୁ ଆଞ୍ଚି ।

ସୁବର୍ଣ୍ଣ ସାଞ୍ଜୁମାନ ଅପଘନେ ମଣ୍ଡି
ହୋଇ ସୂର୍ଯ୍ୟ କରକୁ ଦେଉଛନ୍ତି ଦଣ୍ଡି ।
ଗାଈ ବାନର ଆଦି ଯେନିରୁଟି ପଶୁ
ହୋଇଛନ୍ତି ଜାତ ଏ ହାତୀଚଢ଼ା ଦସ୍ୟୁ ।
ଏ ସେନାବୃନ୍ଦ ଅଶ୍ୱଥାମା ଜୟଦ୍ରଥ
ଭୂରିଶ୍ରବା ଯେ କର୍ଣ୍ଣ କୃପ ମହାରଥ -
ମାନଙ୍କୁ ପାଇକରି ସୁଯୋଧନ ବଳୀ
ହୋଇ ତୁମ୍ଭର ସଙ୍ଗେ ଆରମ୍ଭିଛି କଳି ।
ମୋ କାଣ୍ଡଗୋଚରେ ପଡ଼ି ସେ ହାତୀପୁଞ୍ଜ
ଆଜି ରାଯେ ହେବେ ଯମଙ୍କ ପୁରେ ପୂଜ୍ୟ ।
ଏକଠା ହୋଇ ରହିଛନ୍ତି ଯେତେ ରଥୀ
ପାରନ୍ତି ଇନ୍ଦ୍ର ପରି ଲୋକର ବଳ ମନ୍ଥି ।
ଧନୁର୍ବେଦଉତ୍ତମ କରି ଜାଣିଛନ୍ତି
ଦୁର୍ବାର ବୋଲି ତାଙ୍କୁ ସମସ୍ତେ ବୋଲନ୍ତି ।
ଏହାଙ୍କୁ ମୁହିଁ ଆଜ କରିବି ସମର
ପୂଜିବେ ତାଙ୍କୁ ନେଇ ଜନ୍ତୁଙ୍କ ଈଶ୍ୱର ।
କୁରୁବୀରଙ୍କରେ ରକ୍ଷିତ ହୋଇ ସେନା
ରହିଛନ୍ତି ଅକ୍ଷୌହିଣୀଏ ମହାମନା ।
ସେମାନଙ୍କ ତୁଲରେ କରିବି ମୁଁ ରଣ
କରି ତ ଅଛନ୍ତି ସେ ମରଣ ବରଣ ।
ଆଉ ମୋତେ କିଛି ନ ପୁଚ୍ଛ ନରନାଥ
ଯୁଝିବି ତିଆର କର ମୋ ପାଇଁ ରଥ ।
ନାନା ଜାତି ଆୟୁଧେ ପୂର୍ଣ୍ଣକର ରଥ
ପୂର୍ଣ୍ଣ ହୋଇବାକୁ ଯୁଦ୍ଧେ ମୋ ମନୋରଥ ।
ସାରଥି ଧ୍ୱଜ ଧନୁ ଆୟୁଧ ଘୋଡ଼ାଏ
ଭଲ ହୋଇଲେ ରଥୀ ବ୍ୟର୍ଥ ନୋହେ ରାଯେ
ଏହା ଜାଣିଣ ମୁଁ କହୁଛି ତୁମ୍ଭଙ୍କୁ
ଏ ପାଞ୍ଚକେ ଉତ୍ତମ କର ମୋ ରଥକୁ ।
ଟହଲାଇ ପାଣି ଦେଇଣ ବାନ୍ଧି ଘୋଡ଼ା
ନୋହିଲେ ଯୁଦ୍ଧେ କାଢ଼ି ନ ପାରିବେ ଭଡ଼ା ।
ରଥେ ବସି ଆଜି କାମ୍ବୋଜ କିରାତଙ୍କ
ଯୁଦ୍ଧରେ ବଢ଼ାଇବି ଜାଣ ମୁଁ ଆତଙ୍କ ।
ସେମାନେ ନିଃଶଙ୍କ ହୋଇ ତ ଯୁଦ୍ଧେ ଛନ୍ତି
ପଙ୍କ ପରି ଦଳିଦେବି ତାଙ୍କର ମତି ।
ଅନଳ ପରି ମୁହିଁ ଶରକୁ ପ୍ରକାଶି
କୁରୁବଳ ତୃଣକୁଳକୁ ଦେବି ଧ୍ୱଂସି ।
ଏହିରୂପେ ସାତ୍ୟକି କହନ୍ତେ ବଚନ
ଯୁଧିଷ୍ଠିର ରାଜନ ହୋଇଣ ପ୍ରସନ୍ନ ।
ସେବକଙ୍କୁ ବୋଇଲେ ଯୋଚି ଦିବ୍ୟ ବାଜି
ଦିଅ ରଥ ସାତ୍ୟକି କରିବେ ହେ ଆଜି ।

ଅର୍ଜ୍ଜୁନଙ୍କର ପାଇଁ ଅସଂଖ୍ୟକ ବଳ
ଦେଖାଇବେ ସାତ୍ୟକି ବୃଷ୍ଣି ମହାବଳ ।
ଏହା ଶୁଣି ସେବକ ଜନେ ତ୍ୱରା ହୋଇ
ଚାରୋଟି ଘୋଡ଼ା ବାଛି ବୁଲାଇଲେ ନେଇ ।
ଏ ଅନ୍ତରେ ଘୋଡ଼ାଙ୍କୁ ସ୍ନାନ କରାଇଲେ
ବିରି ଘାସ ଖୁଆଇ ମଦ ପିଆଇଲେ ।
ମଦରେ ଘୋଡ଼ାଙ୍କ ହୁଅନ୍ତେ ନେତ୍ର ରଙ୍ଗ
ସ୍ୱର୍ଣ୍ଣମାଳାଙ୍କରେ ମଣ୍ଡିଲେ ତାଙ୍କ ଅଙ୍ଗ ।
ଯୁଧିଷ୍ଠିର ଦେବାର ରଥରେ ଯୋଚିଲେ
ସୁନା ସିଂହଧ୍ୱଜଟି ସେ ରଥେ ସଞ୍ଚିଲେ ।
ଶୁକଳ ଧ୍ୱଜରେ କରନ୍ତେ ଅଳଙ୍କୃତ
ଦିଶିଲା ସେ ପାଣ୍ଡୁର ମେଘର ସମିତ ।
ସୁନା ଦଣ୍ଡଛତ୍ର ସେହି ରଥରେ ରଖି
ଯୁଧିଷ୍ଠିର ସେବକ ଲୋକେ ହେଲେ ସୁଖୀ ।
ଦାରୁକ ସାନଭାଇ ସୂତ ରଥ ଦେଖି
କହିଲେ ସାତ୍ୟକିଙ୍କି ହୋଇ ମହାସୁଖୀ
ବୋଲିବା ପରି ହେ ତିଆରି ହେଲା ରଥ
ବସ ଯାଇ ତୁମ୍ଭେ ତହିଁରେ ମହାରଥ ।
ସୂତଙ୍କ ଏ କଥା ସାତ୍ୟକି କର୍ଣ୍ଣେ ଶୁଣି
ଶୁଦ୍ଧ ହୋଇଲେ ସ୍ନାନ କରି ସେହିକ୍ଷଣି ।
ଏଥିଅନ୍ତେ ମଙ୍ଗଳାଦି କର୍ମମାନ କଲେ
ସହସ୍ରେ ଦ୍ୱିଜଙ୍କୁ ସେ ଡକାଇ ଅଣାଇଲେ ।
ସହସ୍ରେ ନିଷ୍କ ତାଙ୍କମାନଙ୍କ ହାତେ ଦେଇ
କରାଇଲେ ସ୍ୱସ୍ତିବାଚନ ପ୍ରୀତି ବହି ।
ଦ୍ୱିଜେ ସନ୍ତୋଷରେ କରନ୍ତେ ଆଶୀର୍ବାଦ
ସାତ୍ୟକି ମହାରଥୀ ବହିଣ ପ୍ରମୋଦ ।
କିରାତକୃତ ମଧୁ ଆଣି ମୁଖେ ପାନ -
କରନ୍ତେ ହେଲା ରଙ୍ଗ ସାତ୍ୟକି ନୟନ ।
ସୁବର୍ଣ୍ଣର ଦର୍ପଣମାନଙ୍କୁ ଛୁଇଁଲେ
ହରଷରେ ସରସ ତେଜକୁ ସେ କଲେ ।
ଅଳଙ୍କାର ଭରି ହେ ହୋଇଣ କବଚୀ
ଥୋଇଲେ ନେଇ ରଥେ ଧନୁକୁ ଆବଞ୍ଚି ।
ଚନ୍ଦନ ମାଳାଦିରେ ହୋଇଣ ଶୋଭିତ
ଯୁଝିବାକୁଟି ବାହାରନ୍ତେ ଶିନିପୌତ୍ର ।
ପାଶରେ ଯେଉଁମାନେ ଛିଡ଼ା ହୋଇଥିଲେ
ଯିବାବେଳେ ତାହାଙ୍କୁ ଲିଆ ପକାଇଲେ ।
ଯୁଧିଷ୍ଠିରଙ୍କର ଚରଣେ ନମସ୍କାର
କରନ୍ତେ ତୋଷ ହୋଇ ପାଣ୍ଡବ ନୃବର ।
ସାତ୍ୟକିଙ୍କି ପ୍ରେମରେ ଆଲିଙ୍ଗନ କଲେ
ମୂର୍ଦ୍ଧାରେ ସାତ୍ୟକିଙ୍କ ନାକ ନିବେଶିଲେ ।

ବୋଇଲେ ଆହେ ମଧୁବଂଶ-କଳାକାର
ପାର୍ଥ ଶୁଭବାର୍ତ୍ତା ଆଣି ମୋ ସୁଖୀ କର ।
ଏହା ଶୁଣି ସାତ୍ୟକି ବୋଲିଲେ ନୃସାଇଁ
ଯାଉଛି ମୁଁ ତୁମ୍ଭେ ନିଶ୍ଚିନ୍ତେ ଥାଇ ରହି ।
ଏହିରୂପେ ଅନେକ କହିଣ ମାଧବ
ଚଢ଼ିଲେ ରଥବର ଯୁଦ୍ଧେ ହୋଇ ଭାବ ।
ଭୀମଙ୍କୁ ବୋଇଲେ ହେ ମୁଁ ଆସିବାଯାଏ
ରାଜାଙ୍କୁ ଜଗିଥିବ ସକଳ ଉପାୟେ ।
ଦୁର୍ଯ୍ୟୋଧନ ସଇନ ତାଳବୃକ୍ଷଫଳ
ମୁଣ୍ଡ ଆଜି ଲୋଟାଇବି ମୁଁ ମହୀତଳ ।
ତୁମ୍ଭେ ମୋହର ଆଉ ସଙ୍ଗତେ ନ ଆସ
ରଖିଲେ ଯୁଧିଷ୍ଠିର ନୃପେ ସବୁ ଯଶ ।
ଭୀମ ବୋଇଲେ ଆହେ ନ ବିଚାର କିଛି
ଯୁଝିଯାଅ ଏକା ମୁଁ ରାଜାଙ୍କୁ ରଖୁଛି ।
ସାତ୍ୟକି ବୋଇଲେ ମୁଁ ଯାଉଅଛି ଯୁଝି
ଶୁଆଇବି କୁରୁଙ୍କୁ ରଣଦାଣ୍ଡ ମଝି
ଶୁଭ ଚିହ୍ନମାନ ଦିଶୁଛି ମୋ ନେତ୍ରକୁ
କୁରୁ ଏ ନେଇ ନ ପାରିବେ ତ ଜୟକୁ ।
ଅରଜୁନଟି ସିନ୍ଧୁନୃପଙ୍କର ମାଥ
କାଟିଲେ ମୁଁ ଭେଟିବି ଆସି ନରନାଥ ।
ଏରୂପେ ସାତ୍ୟକି ଭୀମଙ୍କ ଆଗେ କହି
ତାରସୁହା ଧନୁକୁ କରପୁଟେ ବହି ।
ସିଂହ ମୃଗଯୂଥରେ ପଶିବା ପରାଏ
ତୁମ୍ଭ ସୈନ୍ୟେ ସାତ୍ୟକି ପଶିଲେ ହେ ରାୟେ
ସାରଥି ବାହିବାରେ ଘୋଡ଼ାଙ୍କ ଗମନ
ଜିଣି ପକାଇଲେଟି ରାଜନ ପବନ ।
ସାତ୍ୟକି ଆସିବାର ଦେଖିଣ କୁରୁଏ
ଭୟରେ ହେ ରାଜନ କମ୍ପିଗଲେ ରାୟେ ।
ପାର୍ଥଙ୍କୁ ଦେଖିବାକୁ ହୋଇଣ ଲାଳସୀ
ତୁମ୍ଭର ସେନାଙ୍କୁ ସାତ୍ୟକି ଦେଲେ ନାଶି ।
ସାତ୍ୟକିଙ୍କ ପଛରେ ଯୁଧିଷ୍ଠିରଗଣ
ବାହାରିଲେଟି ସୈନ୍ୟ ଘେନିଣ ଆପଣ ।
ବସୁଦାନ ନାମେ ପାଣ୍ଡବସୈନ୍ୟ ରାଜା
ଜଣେ ଥିଲେ କ୍ରୋଧରେ ଥରାଇଣ ମଜା ।
ସୈନ୍ୟଙ୍କୁ ବୋଇଲେ ବିଳମ୍ବ କିପାଁ କର
କରବାଳେ ବାଳ ଧରିଣ କୁରୁ ମାର ।
ସାତ୍ୟକି ତ ଯାଉଅଛନ୍ତି ପାର୍ଥଠାକୁ
ଏକା ଦେଖି ଯୁଝିଲେ ଯାଇଟି ତାହାଙ୍କୁ ।
ବସୁଦାନଙ୍କର ଯେ ଶୁଣି ଏ ବଚନ
କ୍ରୋଧରେ ରଥୀଏ ଥରାଇ ଅପଘନ ।

ନୟନଯୁଗଳକୁ ରଙ୍ଗ କରି ଦେଇ
ମାରୁଛୁଁ ଆମ୍ଭେ କୁରୁକୁଳଙ୍କୁ ହେ ଯାଇ ।
ଆମ୍ଭେମାନେଟି ଯୁଯୁଧାନ ରଥଟାକୁ
ବାହାରୁଲୁଁ ରାଜନ ଯୁଦ୍ଧ କରିବାକୁ ।
ତୁମ୍ଭ ପୁଅଙ୍କର ସେନାଏ ସାତ୍ୟକିଙ୍କ
ବାରଘାତେ ଭାଜିଲେ ଲଭିଣ ଆତଙ୍କ ।
ସାତ୍ୟକିଙ୍କ ଆଗରେ ତୁମ୍ଭ ସାତବୀର
ଯୁଝନ୍ତେ ତାଙ୍କୁ ସେ ପେଷିଲେ ଯମପୁର ।
ଆଉ ଯେ ବାକୀ ଥିଲେ ପକାଇ ଆୟୁଧ
ରହିଲେ ଯୁଦ୍ଧଦାଣ୍ଡେ ନ କରିଣ ଯୁଦ୍ଧ ।
ହସ୍ତୀ ହସ୍ତ ରଥ କେତେକ ଧ୍ୱଜ ଅଶ୍ୱ
ପଡ଼ନ୍ତେ ଯୁଦ୍ଧଭୂମି ହୋଇଲା ଅଦୃଶ୍ୟ ।
ଚନ୍ଦନବୋଳା ବାହୁ ଖଡ଼ଗରେ ଶୋଭା
ହୋଇ ତଳେ ପଡ଼ିଲା ନୃପ ଛାଡ଼ି ପ୍ରଭା
ଶୁକଳ ପତାକାରେ କାଞ୍ଚନେ ଚିତ୍ରିତ
ଟୋପର ତ ଛିଡ଼ି ପଡ଼ିଅଛି ବହୁତ ।
ତାହା ଦେଖି ପରତେ କଲୁଁ ଆମ୍ଭେମାନେ
ଫୁଟିଲା କି ନକ୍ଷତ୍ର ପତାକା ଶ୍ୱେତଘନେ ।
ବୀରଙ୍କ ମୁଖ-ପଦ୍ମେ ଅବନୀ-ଅବଳା
ମଣ୍ଡିହେଲା ସେକାଳେ ମୁଣ୍ଡେ ପଦ୍ମମାଳା ।
ଢାଲ-କୁଚରେ ମଲା ରଥୀଙ୍କର ହାତ
ନିବେଶାଇ ସାର୍ଥ କରିଲା ମନୋରଥ ।
ରାଜ-ବ୍ୟାଜେ ରକତକୁ ଯେ ବ୍ୟକ୍ତ କରି
ଯୁଦ୍ଧ କାମେ ଯୋଦ୍ଧାଙ୍କ ମନ ନେଲା ହରି ।
ମଲା ଗଜ ପର୍ବତେ ଯୁଦ୍ଧଭୂମି ଗୋଟା
ଦିଶିଲା ଗିରି ବେଢ଼ିଥିବା ଦୁର୍ଗଛଟା ।
ପଡ଼ିବା ଘୋଡ଼ାଙ୍କର ନାନାଜାତି ଘନ
ପରାୟେ ପୁଣି ଦିଶୁଥିଲା ହେ ବରନ ।
ଏ ସକାଶୁଁ ରକତ ବ୍ୟାଜେ ନୀରଧାରା
ବରଷି ଯେ ଯୁଦ୍ଧଭୂମିକି କଲେ ତୋରା ।
ଏହିରୂପେ ତୁମ୍ଭର ଚତୁରଙ୍ଗ ସୈନ୍ୟ
ଯୋଦ୍ଧାଦାଣ୍ଡେ ସାତ୍ୟକି କରିର ନିଧନ ।
ତୁମ୍ଭ ସୈନ୍ୟ-ସିନ୍ଧୁରେ ଗ୍ରହ ପ୍ରାୟେ ହୋଇ
ଚହଟିଲେ ଏହା ସେ ବିକ୍ରମ ଦେଖାଇ ।
ଯେଉଁମାର୍ଗରେ ଅରଜୁନ ଯାଇଥିଲେ
ସେହି ମାର୍ଗ ଦେଇ ସାତ୍ୟକି ବାହାରିଲେ ।
ସାତ୍ୟକି-ସିନ୍ଧୁ ବଳୀ ନୀରକୁ ଆଶ୍ରାକରି
ବଢୁଥିଲେ ଲହରୀ-ଶର ଚାପ ଧରି ।
ଦ୍ରୋଣବଳ ବେଳାକୁ ପାନ୍ତେ ନିବର୍ତ୍ତି
ରହିଲେ ହେ ଜାଣ ହସ୍ତିନା ନରପତି ।
ଦ୍ରୋଣ ମର୍ମଭେଦୀ ବାଛିଣ ପାଞ୍ଚଶର
କଲେଟି ସାତ୍ୟକିଙ୍କି ଯୁଦ୍ଧରେ ପ୍ରହାର ।
ହୋଇଅଛି ଫଳ ତଇଳରେ ଧଉତ
ସୁନାପୁଙ୍ଖକରେ ସେ ହୋଇଛି ଚିତ୍ରିତ ।
ଏରୂପେ ଗଣ୍ଠି ସାନ ସାତୋଟି ବିଶିଖ
ବିନ୍ଧିଲେ ବାଛିଣ ସାତ୍ୟକି ବୀରଶିଖ ।
ଦ୍ରୋଣ ମଧ୍ୟ ସାତ୍ୟକି ଘୋଡ଼ା ସାରଥିକି
ଛଅ କାଣ୍ଡ ବିନ୍ଧିଲେ ଧନୁ ମୁଷ୍ଟି ଟେକି ।
ସାତ୍ୟକି ତା ସହି କରି ସିଂହନାଦ
ବିନ୍ଧିଲେ ଚବିଶଟି କାଣ୍ଡ ବହି ମୋଦ ।
ପୁଣି ଦ୍ରୋଣଙ୍କର ଦେହକୁ ଦଶଶର
ବିନ୍ଧିଲେ ରୋଷ ବହି ସତ୍ୟକକୁମର ।
ସାରଥିକି କାଣ୍ଡେ ଘୋଡ଼ାକୁ ଚାରିଖଣ୍ଡ
ପ୍ରହାରିଲେ ସାତ୍ୟକି କାମୁଡ଼ି ଓଷ୍ଠଖଣ୍ଡ ।
ଦ୍ରୋଣ ସାତ୍ୟକିଙ୍କ ସାରଥି ଧ୍ୱଜ ଅଶ୍ୱ
ରଥକୁ କଲେ ରାୟେ କାଣ୍ଡରେ ଅଦୃଶ୍ୟ ।
ସାତ୍ୟକି ମଧ୍ୟ ଦ୍ରୋଣ ଗୁରୁଙ୍କୁ ଓପ୍ରଧ
ଛାଡ଼ିକରି ରାଜନ କଲେ ବଡ଼ ଯୁଦ୍ଧ ।
ଦ୍ରୋଣ ସାତ୍ୟକିଙ୍କର ଦେଖି ଯୁଦ୍ଧରୀତି
ବୋଇଲେ ମୋତେ ଯୁଝିପାରେ ନିଶିନାତି ।
ତୁମ୍ଭର ଯେ ଗୁରୁ ନ କରି ମୋତେ ଯୁଦ୍ଧ
ଗଲେ ଯେଉଁରୂପେ ତା କରିଛତ ବୋଧ ।
ମୁଁ ଯେ ଯୁଝୁଥିବି ହୋଇ କୋପମନ
ମୋତେ ବଳିଆଇ କି ଯିବ ଯୁଯୁଧାନ ।
ସାତ୍ୟକି ବୋଇଲେ ହେ କାଳ ବିଳମ୍ବକୁ
ସମୟ ନାହିଁ ମୋ କହିବି କି ତୁମ୍ଭଙ୍କୁ ।
ଯୁଧିଷ୍ଠିର ଆଜ୍ଞାରେ ଅର୍ଜୁନଙ୍କଠାକୁ
ଯାଉଛି ଆଚରିବି ମୋ ଗୁରୁ ମାର୍ଗକୁ ।
ଗୁରୁ କରିଥିବା କଥାଟି ଶିକ୍ଷା କଲେ
ଲୋକରେ ସେ ଲେଖା ତ ଯାଇଅଛି ଭଲେ ।
ମୋ ଗୁରୁ ଅରଜୁନ କରିଛନ୍ତି ଯାହା
ନାହିଁ କରିବି ଆହେ କେହି ଦ୍ରୋଣ ତାହା ।
ଏହିରୂପେ ଦ୍ରୋଣଙ୍କୁ କହି ଶିନିନାତି
ପ୍ରଦକ୍ଷିଣ କଲେ ଦ୍ରୋଣଙ୍କୁ ବହି ପ୍ରୀତି ।
ସାରଥିକି ବୋଇଲେ ବାହା ମୋର ରଥ
ଯେଉଁଠାରେ ରହିଣ ଯୁଝିଛନ୍ତି ପାର୍ଥ ।
ଆଗେ ଦିଶୁଛନ୍ତି ଆବନ୍ତ୍ୟ ଦାକ୍ଷିଣାତ୍ୟ
କର୍ଣ୍ଣବଳ ନେତ୍ରକୁ ହୋଇ ଅପ୍ରମିତ ।
ଅନ୍ୟୋନ୍ୟରେ ସେମାନେ ସାହା ହୋଇ ରହି
ଅଛନ୍ତି ଯୁଝିବେ ସେ ଜାଣ ନ ପଳାଇ ।

ଏହି ତିନି ସେନା ମଧ୍ୟକୁ ବେଗେ ରଥ
ବାହ ଆଗେ କାଟି ପକାଏଁ ତାଙ୍କ ମାଥ ।
ନାନା ବର୍ଣ୍ଣର ଅଶ୍ୱ ଗଜ ପନ୍ତି ପନ୍ତି
ହୋଇ ଦେଖ ରହିଅଛନ୍ତି ଜନ୍ତାଜନ୍ତି ।
ନାନାଜାତି ଆୟୁଧ ଧରିଛନ୍ତି କରେ
ବସିଛନ୍ତି ଯେ ଯାହା ଯାନେ ନିଃଶଙ୍କରେ ।
ଏହିରୂପେ ସାରଥି ଆଗରେ ସାତ୍ୟକି
କହି ଧନୁମୁଷ୍ଟି ଧଇଲେ ଭିଡ଼ି ଟେକି ।
ସାରଥି ରଥ ବାହିବାରେ କର୍ଣ୍ଣ ବଳେ
ପରବେଶ ହେଲେ ରାଜନ ଯାଇ ହେଲେ ।
ଦ୍ରୋଣ କ୍ରୋଧ ହୋଇଣ ସାତ୍ୟକି ପଛରେ
ଧାଇଁଲେ ଯୁଦ୍ଧ କରିବାକୁ ସେ ସ୍ୱଇଛାରେ ।
ସାତ୍ୟକି ଦ୍ରୋଣଙ୍କର ସଙ୍ଗତେ ନ ଯୁଝି
ଡେଇଁଗଲେ ରାଜନ କର୍ଣ୍ଣସେନା ମଝି ।
ତୀକ୍ଷ୍ଣ କାଣ୍ଡକରେ କର୍ଣ୍ଣଙ୍କର ବଳ-
ଯାକରୁ ଅଧେ ଦେଖାଇଲେ ଯମଆଳ ।
କୃତବର୍ମା ମହତଧନୁ କରେ ବହି
ବୋଇଲେ ସାତ୍ୟକି ନ ଯୁଝି ଯାଅ କେହିଁ ।
ଏକା ସ୍ଥାନଙ୍କରେ ତ କରିଥାଇଁ ଘର
ଏକା କୁଳେ ଜନ୍ମିତ ତୁମ୍ଭର ଆମ୍ଭର ।
ଏଥିକି ଅନୁରୂପ କଲେ ସିନା ଯୁଦ୍ଧ
ଦେଖି ଯୋଦ୍ଧାଲୋକେ କରିବେ ମନବୋଧ
ଏହା ଶୁଣି ସାତ୍ୟକି କମ୍ପାଇ କୋଦଣ୍ଡ
କୃତବର୍ମା ଦେହେ ବିନ୍ଧିଲେ ଛଅକାଣ୍ଡ ।
କୃତବର୍ମା ଚାରିଘୋଡ଼ାଙ୍କୁ ଚାରି ଶରେ
ପୀଡ଼ା ଦେଲେ ରାଜନ ଯେ ଯୁଦ୍ଧେ ରୋଷରେ
କୃତବର୍ମା ବକ୍ଷସ୍ଥଳକୁ ଷୋଳ ଶର
ପୁଣିଟି କଲେ ରାୟେ କ୍ରୋଧରେ ପ୍ରହାର ।
କୃତବର୍ମା ସାତ୍ୟକି କାଣ୍ଡରେ ଘାଉଁଆ
ହୋଇ ରଥ ମଧ୍ୟରେ ଧୈର୍ଯ୍ୟେ ହେଲେ ଠିଆ
ବସ୍ତଦନ୍ତଶରକୁ କର୍ଣ୍ଣଟାଏ ଟାଣି
ସାତ୍ୟକିଙ୍କ ବକ୍ଷକୁ ବିନ୍ଧିଲେ ନୃପମଣି ।
ସେ ଶର ସାତ୍ୟକିଙ୍କ କବଚ ଦେହେ ଗଳି
ବୋଳିହେଲାଟି ଯାଇ ଜାଣ ରଣଧୂ ଳି ।
ଏ ଅନ୍ତରେ ବହୁତ ବିନ୍ଧି ଶରରାଜି
ସାତ୍ୟକିଙ୍କ ଧନୁକୁ କାଟିଲେ ଗରଜି ।
ପୁଣି ସାତ୍ୟକିଙ୍କ ବକ୍ଷକୁ ଦଶକାଣ୍ଡ
କୃତବର୍ମା ବିନ୍ଧିଲେ ଦେଖାଇ ହସ୍ତଚାଣ୍ଡ ।
ସାତ୍ୟକି ସେହିକାଳେ ଶକ୍ତି ବଡ଼ପଣ
ଦେଖାଇବାକୁ ଶକ୍ତି ଧଇଲେ ଆପଣ ।
କୃତବର୍ମାଙ୍କର ଦକ୍ଷିଣ ବାହୁଦେଶେ
ପ୍ରହାର କଲେ ଭଡ଼ାଚାରି ଯାଇ ରୋଷେ ।
ଏ ଅନ୍ତେ ଆନ ଧନୁ ଧରିଣ ସାତ୍ୟକି
ଶତ ଶତ ଶର ବିନ୍ଧିଲେ ଧନୁ ଝିଙ୍କି ।
ଶରରେ ଆବୃତ୍ତ ହୁଅନ୍ତେ କୃତବର୍ମା
ସାତ୍ୟକି ଅଟନ୍ତି ତ ମହତକରମା ।
ସେହି ଛିଦ୍ରେ କୃତବର୍ମାଙ୍କର ସାରଥି
ମୁଣ୍ଡ କାଟି କଲେ ତାହାଙ୍କୁ ଯମସାଥି ।
ସାରଥି ବିନା ଘୋଡ଼ାମାନେ ଏଣେ ତେଣେ
କୃତବର୍ମାଙ୍କରଟି ପଳାଇଲେ ରଣେ ।
ତା ଦେଖି କୃତବର୍ମା ସାରଥି ରଥପଣ
କଲେ ଦେଖାଇଣ ଆପଣା ବାହୁଟାଣ ।
ସାତ୍ୟକି ସେହି ଛିଦ୍ରେ ଭେଦି ଭୋଜାନୀକ
ମାନଙ୍କୁ ମାରି ବସାଇଲେ ଯମଲୋକ ।
କମ୍ବୋଜସେନା ମହାରଥୀ ଗୋଟି ହୋଇ
ଯୁଝନ୍ତେ ସାତ୍ୟକିଟି ନ ପାରିଲେ ଯାଇ ।
ଦ୍ରୋଣ କୃତବର୍ମାଙ୍କୁ ଜଗାଇ ଦୁଆର
ଧାଇଁଲେ ସାତ୍ୟକିଙ୍କଠାକୁ ଦ୍ୱିଜବର ।
ସାତ୍ୟକିଙ୍କଠାରୁ ଧାଆନ୍ତେ ଦ୍ରୋଣଗୁରୁ
ପାଣ୍ଡବରଥୀମାନେ ନୋହି ଯୁଦ୍ଧ ଭୀରୁ ।
ଦ୍ରୋଣଙ୍କର ପଛେ ପଛେ ତ ଗୋଡ଼ାଇଲେ
ତା ଦେଖି କୃତବର୍ମା ଆସି ନିବାରିଲେ ।
ଯିବାକୁ ଯତ୍ନ କଲେ ହେଲେ ପାଣ୍ଡୁକୁଳ
ବଳିଲା ତାଙ୍କୁ କୃତବର୍ମାଙ୍କ ଶରଜାଳ ।
ଧଇର୍ଯ୍ୟ ଧରି ଯୁଦ୍ଧ ଦାଣ୍ଡରେ ରହିଲେ
ଯେ ଯାହାର ଶଉର୍ଯ୍ୟ ବଳ ପ୍ରକାଶିଲେ ।
ଏହା ଶୁଣିଣ ଧୃତରାଷ୍ଟ୍ର ନରପତି
ସଞ୍ଜୟଙ୍କୁ ବୋଇଲେ ଶୁଣ ଆହେ ମନ୍ତ୍ରୀ
ଆମ୍ଭର ତ ସଇନ ଅଟଇ ବହୁତ
ତେଜରେ ଦିବାକର କରର ସମିତ ।
ଅସ୍ତ୍ର ଶସ୍ତ୍ର ଯୁଦ୍ଧରେ କୁଶଳ ଅଟନ୍ତି
ପୁଣି ତ ସେ ଯୁବା ବୟସ ବହିଛନ୍ତି ।
ବାଳକ ଅତିବୃଦ୍ଧ କୃଶରେ ବିବର୍ଜିତ
ମୋହର ହେ ସଞ୍ଜୟ ସୈନ୍ୟ ହୋଇଛି ତ ।
ପୁଣି ତ ସେହିମାନେ ଅଶ୍ୱ ଗଜ ରଥ
ଚଢ଼ି ଯୁଝିବାରେ ଅଟନ୍ତି ସମରଥ ।
ଶକ୍ତି ଗଦା ତୋମର ପାଶ ଧନୁ ଖଣ୍ଡା-
ମାନଙ୍କେ କୁଶଳ ମୋହର ସୈନ୍ୟ ଭେଣ୍ଡା ।
କରୁଅଛନ୍ତି ନିତି ମିଷ୍ଟାନ୍ନ ଭୋଜନ
ନେଉଛନ୍ତି ଲେଖି ମୋଠାରୁ ବରତନ ।

ଏ ବାହାରେ ରାଜାଙ୍କୁ ବରି ମୁଁ ଆଣିଛି
ଉତ୍ତମକୁଳେ ଜାତର ଅଟେ ସୂତବଂଶି ।
ସବୁବେଳେ ସର୍ବେ ଅଟନ୍ତି ହୃଷ୍ଟପୁଷ୍ଟ
ପାରନ୍ତି ସମଗ୍ରରେ ନାଶି ପରଥାଟ ।
କୀର୍ତ୍ତି ପଉରୁଷରେ ତାଙ୍କୁ ସେ ସମାନ
ଭୋଗ କରୁଛନ୍ତି ଉତ୍ତମ ଦ୍ରବ୍ୟମାନ ।
ସେ ନୃପମାନଙ୍କର ଅନୁରୂପ ହୋଇ
ମନ୍ତ୍ରିଏ ରହିଛନ୍ତି ପାଶେ ଶୁଣିଥାଇଁ ।
ଏମାନେ ତ ଆମ୍ଭ ସକାଶେ ଛାଡ଼ି ପ୍ରାଣ
କରୁଅଛନ୍ତି ଯୁଦ୍ଧ କରି ଧନୁର୍ବାଣ ।
କାହିଁପାଇଁ ଆମ୍ଭର ହେଉ ନାହିଁ ଜୟ
କହ ହେ ତୁମ୍ଭେ ମନ୍ତ୍ରନିପୁଣ ସଞ୍ଜୟ ।
ଆମ୍ଭ ସୈନ୍ୟ ସିନ୍ଧୁରେ ଯୋଦ୍ଧାବୃନ୍ଦଦଳ
ଅସି ଗଦା ଶକ୍ତି ଯେ ପ୍ରାସ ମତ୍ସ୍ୟଜାଳ ।
ଜଳସନ୍ଧ- ଗ୍ରହ ବାହନ- ଉର୍ମିଚୟ
ଧ୍ୱଜ- ରତ୍ନ ଆକାର ବର୍ଣ୍ଣ - ଚନ୍ଦ୍ରୋଦୟ ।
ଦ୍ରୋଣ- ବାଡ଼ବାଗ୍ନି ଯେ କୃତବର୍ମା - ହ୍ରଦ
ଧାଇଁବାର ସମସ୍ତ ରିପୁ ବନସ୍ପଦ ।
ଅର୍ଜ୍ଜୁନ ସାତ୍ୟକି ଏ ସୈନ୍ୟ ସିନ୍ଧୁ ପାର
ହୋଇଲେ ତ ଆଉ ହେ ଅଛି କି ବିଚାର ।
କୁରୁମାନେ ଆମ୍ଭର କରୁଥାନ୍ତି ଟାଣ
କି ରୂପରେ ଯୁଦ୍ଧ କରିଲେ ତା ବଖାଣ ।
ଅର୍ଜ୍ଜୁନ- ମୃତ୍ୟୁଦେବତାର ମୁଖେ ପଡ଼ି
ମଲେ ମୋର ସେନାଏ ପରାକ୍ରମ ଛାଡ଼ି ।
କୃଷ୍ଣ ଅରଜୁନ ନ ବହି ଦେହେ କ୍ଷତ
ମୋର ସୈନ୍ୟ ମଧ୍ୟେ ସବୁଙ୍କୁ କଲେ ହତ ।
କୁଳୀନ ଲୋକଙ୍କୁ ମୁଁ ବାଛି ପେଷିଅଛି
ଅନ୍ନ ବସ୍ତ୍ର ଦେଇ ସୁଖୀ ତ କରିଅଛିଁ ।
ଏହା ବାହାରେ ମୋତେ ମାଗନ୍ତି ସେ ଯାହା
ଭଣ୍ଡାରୁ କାଢ଼ିକରି ଦିଅଇ ମୁଁ ତାହା ।
ସେମାନେ ତ ସାତ୍ୟକି ଅର୍ଜ୍ଜୁନରେ ଜିତ-
ହେଲେ କି କରିବି ସବୁ ଏ ବିଧି କୃତ ।
ଯେଉଁମାନେ ଜୟଦ୍ରଥଙ୍କୁ ରଖିଥିଲେ
ସେମାନଙ୍କୁ ଜିଣିତ ଅରଜୁନ ଗଲେ ।
ତାହା ଦେଖିଣ କିସ କଲା ମୋ ନନ୍ଦନ
ଜାଣିଥିଲେ ସଞ୍ଜୟ କହ ତୋଷମନ ।
ସାତ୍ୟକି ତ ଅରଜୁନଙ୍କ ପରି ଗଲେ
ଆଉ କି କଥା ଅଛି କହନ୍ତୁ ହେ ଭଲେ ।
ମୋହର ମନେ କରୁଅଛି ହେ ସଞ୍ଜୟ
କାନ୍ଦୁଥିବ ପରା ତ ମୋହର ତନୟ ।

ରଥୀମାନେ ହତ ହେବାରୁ ରଥଶୂନ୍ୟ
ଦିଶୁଥିବ ଦେଖୁଥିବ ତାହା ନୟନ ।
ଗଜ ଅଶ୍ୱ ପଦାତି କୋଟି କୋଟି ମାରି-
ବାରୁ ମୋ ପୁଅ ନେତ୍ରୁ ବୋହୁଥିବ ବାରି ।
ସାତ୍ୟକି ଭୋଜାନୀକ ଗଲେ ଅତିକ୍ରମୀ
କୁରୁଏ ଯୁଝିଲେ କି ନାହିଁ ହୋଇ ତମୀ ।
ଦ୍ରୋଣ ପାଣ୍ଡବଙ୍କୁ ତ ନିବାରି ରଖିଲେ
କହ ଆମ୍ଭର ଲୋକେ କିରୂପେ ଯୁଝିଲେ ।
ଓଜ ଶସ୍ତ୍ର ଅସ୍ତ୍ରରେ ଦ୍ରୋଣ ପାରଙ୍ଗମ
ପାଞ୍ଚାଳେ କେହିଁ କଲେ ତାହାଙ୍କୁ ସଂଗ୍ରାମ ।
ଅରଜୁନ ଜୟଦ୍ରଥଙ୍କ ପାଖେ ରଥ
ରଖିଲେ କିରୂପେ କାଟିଲେ ତାଙ୍କ ମାଥ ।
ଏହି କଥାମାନଙ୍କେ ଶରଧା ବଳିଛି
କହତ ହେ ସଞ୍ଜୟ ମନ୍ତ୍ରୀକୁଳ ବଂଶି ।
ସଞ୍ଜୟ ବୋଇଲେ ହେ ତୁମ୍ଭ ଅପରାଧ
ସକାଶରୁ ରାଜନ ପ୍ରବର୍ତ୍ତିଲା ଯୁଦ୍ଧ ।
ପ୍ରାକୃତ ଲୋକ ପରି ନ କର ବୃଥା ଶୋକ
ହସିବେଟି ଶୁଣିବେ ଯେବେ ଶତ୍ରୁଲୋକ ।
ଧର୍ମରେ ସଂଶୟ ପୁତ୍ରରେ ପକ୍ଷପାତ
ପାଣ୍ଡବଙ୍କଠାରେ ମାତ୍ସର୍ଯ୍ୟ ନିର୍ଗୁଣତ୍ୱ ।
ଆରତ ପ୍ରଳାପକୁ ତୁମ୍ଭ ଜାଣି ହରି
କରାଇଲେ ଯୁଦ୍ଧ ସଂଶୟ ଇଚ୍ଛାକରି ।
ଅପରାଧ ଥିବାରୁ ଯୁଦ୍ଧରେ ହାରୁଛ
ଅପରାଧହୀନ ଅଟନ୍ତି ପାଣ୍ଡୁବଂଶ ।
ଏବେଟି ଧୀର ହୋଇ ଲୋକକ୍ଷୟ କଥା
ଶୁଣ କହିବା ହେ ନୃପତି ମହାରଥା ।
ସାତ୍ୟକି ତ ଶକଟବ୍ୟୂହରେ ପଶିଲେ
ତା ଦେଖି ଭୀମ ଆଦି ରଥୀ ତୋଷହେଲେ ।
ସେନାମୁଖେ ତୁମ୍ଭର ରହିଣ ସଲଖ
ବାଛି କରି ରାଜନ ବିନ୍ଧିଲେ ବିଶିଖ ।
ଭୀମ ଆଦି ରଥୀଙ୍କି ଦେଖି କୃତବର୍ମା
ଯୁଝିଲେ ସେହୁ ଏକା ମହତକରମା ।
ପାଣ୍ଡବ ସେନା- ସିନ୍ଧୁ ଘୋଟି ଆସୁଥିଲେ
କୃତବର୍ମା - ବେଳାକୁ ଯାଇ ନିବର୍ତ୍ତିଲେ ।
ସେକାଳେ କୃତବର୍ମାଙ୍କର ପରାକ୍ରମ
ଦେଖି ପ୍ରଶଂସିଲେ ହେ ନୃପତିଉତ୍ତମ ।
ଏକା ହୋଇ ବହୁତ ସଙ୍ଗେ ଧନୁ ଧରି
ଯା ଯୁଝିଲେ ତା କେହି ନ ପାରଇ କରି ।
ଭୀମ କୃତବର୍ମାଙ୍କୁ ବିନ୍ଧି ତିନି କାଣ୍ଡ
ବଜାଇଲେ ଶଙ୍ଖ ଫୁଲାଇ ଦେଇ ପିଣ୍ଡ ।

ଯୁଧିଷ୍ଠିର ପାଞ୍ଚ ଯେ ସହଦେବ ବିଂଶ
ଧୃଷ୍ଟଦ୍ୟୁମ୍ନ ତିନି ଶିଖଣ୍ଡୀ ପଞ୍ଚବିଂଶ ।
ଦ୍ରୋପଦେୟମାନେଟି ବିନ୍ଧିଲେ ତେତ୍ତରି
ଘଟୋତ୍କଚ ବିନ୍ଧି ଆଶୁଗ ତିନି ଚାରି ।
ଦ୍ରୁପଦଙ୍କ ତୁଲେ ବିରାଟ ନରରାଣ
ବିନ୍ଧିଲେ ବାଛିକରି ତିନି ତିନି ବାଣ ।
ନକୁଳ ଏହା ଦେଖି ହୋଇ ଧନୁବାହା
ଶଏ ଶର ବିନ୍ଧିଲେ ହୋଇଣ ଉତ୍ସାହା ।
କୃତବର୍ମା ଜଣ ଜଣକେ ପାଞ୍ଚକାଣ୍ଡ
ବିନ୍ଧି ଭୀମ ଦେହେ ବିନ୍ଧିଲେ ସାତକାଣ୍ଡ ।
ଏହା କରିସାରିଣ କୃତବର୍ମା ଭଲେ
ଭୀମଙ୍କ ସାରଥିକି କାଣ୍ଡକେ ମାଇଲେ ।
ଧନୁ ତୁଲେ ଧ୍ୱଜକୁ ଦେଇଣ ସେ କାଟି
ଭୀମ ବକ୍ଷସ୍ଥଳକୁ ବିନ୍ଧିଲେ ସାତୋଟି ।
ଭୀମ କୃତବର୍ମାଙ୍କ ଶରେ ପୀଡ଼ା ପାଇ
ମୋହବଶେ ରଥରେ ପଡ଼ିଲେ ହେ ଶୋଇ
ଭୀମବ୍ୟଥା ଦେଖି ପାଣ୍ଡବ ରଥୀକୁଳ
ବିନ୍ଧିଲେ କୃତବର୍ମା ପରେ ଶରଜାଳ ।
କୃତବର୍ମା ରଥକୁ ରଥେ ଘୋଟିକରି
ରଖିଲେ ରଥିମାନେ ମାରିବା ବିଚାରି ।
ଭୀମ ଚେତା ପାଇଣ ସୁନାଦଣ୍ଡ ଶକ୍ତି
ଫିଙ୍ଗିଲେ କୃତବର୍ମା ରଥକୁ ଝଟତି ।
ଭୀମ ହାତରୁ ଫିଟି ଉରଗ ପରାୟେ
ଚଳିଲା ସେ ଶକ୍ତି ଶବଦ କରି ରାୟେ ।
କୃତବର୍ମା ରଥର ସମୀପେ ମିଳିଲା
ବହୁତ ସେ ଜ୍ୱାଳା ମୁଖରୁ ଜାତ କଲା ।
କୃତବର୍ମା ଦ୍ୱିକାଣ୍ଡେ କାଟି ସେ ଶକ୍ତିକି
ପକାଇଣ ତଳେ ଗର୍ଜିଲେ ରଥେ ଡାକି ।
ଶକତି ହତ ଦେଖି ପବନଙ୍କ ସୂନୁ
ମହତ କ୍ରୋଧ ବଶେ କମ୍ପାଇଣ ତନୁ ।
ଆନ ଧନୁ ଧରିଣ କୃତବର୍ମା ଉରେ
ବିନ୍ଧିଲେ ପାଞ୍ଚ କାଣ୍ଡ ଅତ୍ୟନ୍ତ ବେଗରେ ।
ଅଶୋକ ଫୁଲ ପରି କୃତବର୍ମା ଶୋଭା
ପ୍ରକାଶିଲା ପରକାଶନ୍ତେ ରକ୍ତପ୍ରଭା ।
କ୍ରୋଧରେ ହସି କୃତବର୍ମା ତିନିଶର
କଲେଟି ଭୀମସେନ ଦେହକୁ ପ୍ରହାର ।
ତଦନ୍ତେ ପାଣ୍ଡବରଥୀଙ୍କି ତିନି ତିନି
ଶର ପ୍ରହାରିଲେ ସେ ଯୁଦ୍ଧେ ହୋଇ ମାନି ।
ପାଣ୍ଡୁରଥୀକୁଳ ଯେ ହୋଇ ଏକ ମେଳ
ପୁଣି କୃତବର୍ମାଙ୍କୁ ବିନ୍ଧିଲେ ଶରଜାଳ ।

କୃତବର୍ମାଟି ତାହା ସହି ନ ପାରିଲେ
କ୍ଷୁର କାଣ୍ଡେ ଶିଖଣ୍ଡୀ ଧନୁକୁ ହରିଲେ ।
କ୍ରୋଧ ହୋଇ ଶିଖଣ୍ଡୀ କରବାଳଡାଲ
ଧଇଲେ ଥୋଇଥିଲେ ରଥେ କରି ଭଲ ।
ଢାଲ ଖଣ୍ଡା ଦୁଇ ବୁଲାଇବାରେ ଗତି
ଦେଖାଇଣ ଯୁଦ୍ଧେ ଶିଖଣ୍ଡୀ ମହାମତି ।
କୃତବର୍ମା ରଥକୁ ଫିଙ୍ଗିଲେ ଖଡ଼ଗ
କାଟିଲା ସେ ଖଡ଼ଗ ଯାଇ ଧନୁ ଆଗ ।
ପଛେ ଯାଇ ଧରଣୀ ମଧରେ ପଶିଲା
ସୁନାଲଗା ମୁଠିଟି କେବଳ ଦିଶିଲା ।
ଏହି ସମୟରେଟି ମହାରଥୀକୁଳ
ବାହାରିଲେ ଧନୁକୁ ଧରି କରତଳ ।
ଆନ ଧନୁ ଧରିଣ କୃତବର୍ମା ବୀର
ବିନ୍ଧିଲେ ସେମାନଙ୍କୁ ତିନି ତିନି ଶର ।
ଶିଖଣ୍ଡୀକି ଆଠଟି ଆଶୁଗ ପ୍ରହାରି
ଦେଲେ କୃତବର୍ମା ନୟନ ରଙ୍ଗ କରି ।
ଆନ ଧନୁ ଧରି ଶିଖଣ୍ଡୀ ହୋଇ ତ୍ୱରା
କୃତବର୍ମା ପରେ ରଚିଲେ ଶରଧାରା ।
କୃତବର୍ମା ସେରୂପେ ଶିଖଣ୍ଡୀଙ୍କି ରଣ-
କଲେ ବାଛି ବାଛି କରିଣ ଭଲ ବାଣ ।
କୃତବର୍ମା ଶିଖଣ୍ଡୀ ମତ୍ତହସ୍ତୀ ପ୍ରାୟେ
ଶରଦନ୍ତ ପାତିଣ ଯୁଝିଲେ ହେ ରାୟେ ।
ସିଂହ ପରି ଦୁହେଁ ତ ଗରଜନ କଲେ
ଅନ୍ୟୋନ୍ୟରେ ବଧକୁ ବିଚାରି ଯୁଝିଲେ ।
କୃତବର୍ମା ଯେ ଶିଖଣ୍ଡୀଙ୍କ ଅଶୀ କାଣ୍ଡ
ବିନ୍ଧନ୍ତେ ଗଳିଗଲା ଶିଖଣ୍ଡୀ ଙ୍କ ପିଣ୍ଡ ।
ସେ ଘାତରେ ଶିଖଣ୍ଡୀ ଥରାଇଣ ଗଣ୍ଡି
ପଡ଼ିଲେ ରଥେ ଶୋଇ ଛାଡ଼ି ଯୁଦ୍ଧଖଣ୍ଡି ।
ଶିଖଣ୍ଡୀ ମୋହ ଦେଖି ତୁମ୍ଭର ସେନାଏ
ଉଡ଼ାଇଲେ ପତାକା ହସି ଅତିଶୟେ ।
ବୋଇଲେ କୃତବର୍ମା ଛନ୍ତି ଅଚ୍ଛା ଅଚ୍ଛା
କରାଇଲେ ମୋହ ଯା ଦ୍ରୁପଦଙ୍କ ବତ୍ସା ।
ଶିଖଣ୍ଡୀ ପୀଡ଼ା ଦେଖି ସୁତ ତ୍ୱରା ହୋଇ
ସେଠାରୁ ରଥ ଆନଠାକୁ ନେଲା ବାହି ।
ପାଣ୍ଡବମାନେ ଦେଖି ଶିଖଣ୍ଡୀଙ୍କ ମୋହ
ଯୁଝିଲେ କୃତବର୍ମା ସଙ୍ଗେ କରି କୋହ ।
ଏକା କୃତବର୍ମା ଯୁଝିଲେ ପାଣ୍ଡବଙ୍କୁ
ତା ବଡ଼କରି ଆମ୍ଭେ ଆଣିଲୁ ମନକୁ ।
ପାଞ୍ଚାଳ କେକୟଙ୍କୁ ସୃଞ୍ଜୟ ଚେଦି ତୁଲେ
ସେହି ଯୁଦ୍ଧରେ କୃତବର୍ମାଟି ଜିଣିଲେ ।

କୃତବର୍ମା ସକାଶୁଁ ପାଣ୍ଡବଥାଟ ପୀଡ଼ା
ପାନ୍ତେ ଯୁଦ୍ଧଦାଣ୍ଡେ ନୋହିଲେ କେହି ଛିଡ଼ା ।
ଜଳନ୍ତା ଅଗ୍ନି ପରି କୃତବର୍ମା ତେଜ
ଦେଖିଲ ସେ ଯୁଦ୍ଧରେ ଜାଣ ମହାରାଜ ।
କୃତବର୍ମା କାଣ୍ଡରେ ପାଣ୍ଡୁ ସେନାରାଜି
ରହିଲେ ଯାଇ ଦୁଃଖ- ସିନ୍ଧୁମଧେ ମଜ୍ଜି ।
ତୁମ୍ଭ ଲୋକ ହରଷ କୃତବର୍ମା ବଳ
ଦେଖି ଲାଜେ ରହିଲେ ପାଣ୍ଡୁ ରଥୀକୁଳ ।
ସାତ୍ୟକି ତୁମ୍ଭ ସେନା ଗରଜନ ଶୁଣି
ଆସିଲେ କୃତବର୍ମାଠାକୁ ଧନୁ ଟାଣି ।
ଯୁଯୁଧାନ ବୀରଙ୍କୁ କୃତବର୍ମା ଆଗେ
ଦେଖିଣ ନିବାରିଲେ ତାହାଙ୍କୁ ଆଶୁଗେ ।
ସାତ୍ୟକି ଭଲ୍ଲକାଣ୍ଡେ କୃତବର୍ମା ଧନୁ
ପକାଇଲେ କାଟି ହୃଦରେ ଧରି ମନ୍ୟୁ ।
ଚାରିକାଣ୍ଡେ ଚାରିଘୋଡ଼ାଙ୍କ ନେଇ ପ୍ରାଣ
ସାରଥିକି ପୀଡ଼ା ଦେଲେ ବିନ୍ଧିଣ ବାଣ ।
ଏ ବାହାରେ ସେନାଯାକଙ୍କୁ ଶରଚୟ
ବିନ୍ଧିଲେ ଦେଖାଇବା ପାଇଁ ଯମାଳୟ ।
ସାତ୍ୟକିଙ୍କ କାଣ୍ଡେ ସେନାଏ ହୋଇ ଦୁଃଖୀ
ପଳାଇଲେ ଯୁଦ୍ଧୁଁ ଆଖିରେ ଲୁହ ରଖି-
ଏହା କରି ସାରିଣ ଲେଉଟାଇ ରଥ
ବୁହାଇଲେ ସାତ୍ୟକି ରଥିକୁଳନାଥ ।
ଆଗରେ ଦେଖି ବୃହ୍ମରଥ ଗଜସୈନ୍ୟ
ସାରଥିକି ବୋଇଲେ ତହିଁ ବାହ ଯାନ ।
ନ ଡର ଜୀଇଁଛି ତ ମୋହ ପରା ରଥୀ
ଏଥିପାଇଁ କାହିଁକି ହେଉଅଛ ବ୍ୟଥୀ ।
ଯୁଯୁଧାନ କହିଲା ପରାୟେ ରଥକୁ
ବାହିଲେ ସେ ସାରଥି ଦେଖାଇ ଧୈର୍ଯ୍ୟକୁ ।
ଯେଉଁଠାରେଟି ବୃହ୍ମରଥ ନାମେ ରାଜ
ପୁତ୍ର ଥିଲେ ତହିଁ କଲା ସେ ରଥରାଜ ।
ଆଗରେ ଦେଖିକରି ସାତ୍ୟକିଙ୍କ ଯାନ
ଧାଇଁଲେ ବୃହ୍ମରଥ ଧରି ଗଜସୈନ୍ୟ
ନାନାଜାତି ଶାୟକମାନଙ୍କୁ ପ୍ରହାରି
ଯୁଝିଲେ ଯୁଯୁଧାନ ସେନାଙ୍କୁ ସଂହାରି ।
ସାତ୍ୟକି ଗଜାନିକ ପରେ ଶରବୃଷ୍ଟି
କଲେ ଘେନିଯିବା ପାଇଁ କି ଜୟ ସୃଷ୍ଟି ।
ବଜ୍ର ପରି ଗଜଙ୍କ ଦେହେ ଯାଇ କାଣ୍ଡ
ବାଜନ୍ତେ ପଳାଇଲେ ଛାଡ଼ି ରଣଦାଣ୍ଡ ।
କେତେ ହାତୀଙ୍କରଟି ଗଲା ଦାନ୍ତ ଭାଜି
କେତେ ହାତୀ ପଡ଼ିଲେ ତଳେ ପ୍ରାଣ ତେଜି ।
କେତେ ହାତୀଙ୍କର ଯେ ଫାଟନ୍ତେ କପାଳ
କରଷା କଲେ ମୋତି ବ୍ୟାଜରେ ସେ ଛଳ ।
ମାହୁନ୍ତଙ୍କ ଅଙ୍କୁଶଘାତକୁ ନ ମାନି
ରହିଲେ କେତେ ହାତୀ ଯୁଦ୍ଧେ ହୋଇ ତୁନି ।
କେତେ ହାତୀ ଗରଜି ପଳାଇବା ଘାତ-
ପାଇଣ ମରିଗଲେ ପଦାତି ସମସ୍ତ ।
କେତେ ହାତୀ ଦେହ- ଗିରିରୁ ଯେ ରକତ
ଝରି ତାକୁ କଲେଟି ମହୀରେ ବ୍ୟକତ ।
ଜଳସନ୍ଧ ସନ୍ଧିଣ ଧନୁରେ ଆଶୁଗ
ରଖିଲେ ତାଙ୍କ ହାତୀ ସାତ୍ୟକିଙ୍କ ଆଗ ।
ନାନାଜାତି ଅଳଙ୍କାରକୁ ଅଙ୍ଗେ ଭରି
ହୋଇଛନ୍ତି ସୁବର୍ଣ୍ଣକବଚ ପହରି ।
ଶିରତଟେ ତାଙ୍କର ରତନ ମୁକୁଟ
ଥାଇ ଦିଶୁଥିଲା ରାଜନ ଝଟ ଝଟ ।
କାଞ୍ଚନକବଚରେ ମୋତିମାଳା ତୋରା
ନିନ୍ଦୁଥିଲା ହିମାଦ୍ରି ମନ୍ଦାକିନୀ ଧାରା ।
ହୃଦୟଭେ ଥାଇଣ ରତନ ପଦକ
ଭାଗୁଥିଲା ଜ୍ୱଳନ୍ତ ଅଗ୍ନିର ଆଲୋକ ।
ସାତ୍ୟକିଙ୍କର ବଳ ବେଳାକୁ ନ ବଳି
ରହିଲା ଜଳସନ୍ଧ ସିନ୍ଧୁ ପରି ବଳୀ ।
ଜଳସନ୍ଧ ଯେଉଁ ହାତୀକି ଚଢ଼ିଥିଲେ
ସେ ମଧ୍ୟ ସାତ୍ୟକିଙ୍କି ବଳି ନ ପାରିଲେ ।
ହସ୍ତୀ ନିବାରଣ ଦେଖିଣ ଜଳସନ୍ଧ
ବିନ୍ଧିଲା ସାତ୍ୟକିଙ୍କ କ୍ରୋଧେ ହୋଇ ରୁଦ୍ଧ ।
ସାତ୍ୟକିଙ୍କର ଧନୁ ପକାଇଣ କାଟି
ବିନ୍ଧିଲେ ସାତ୍ୟକିଙ୍କି ମାର୍ଗଣ ପାଞ୍ଚୋଟି ।
ଆନ ଧନୁଟାଏ ଧରିଣ ଯୁଯୁଧାନ
କାହିଁ ଯିବୁ ବୋଲି ଯେ ବୋଲିଣ ବଚନ ।
ଜଳସନ୍ଧ ଉରରୁ ଷାଠିଏଟି ରୋପ
ବିନ୍ଧିଲେ କର୍ଣ୍ଣଯାଏ ଝିଙ୍କି କରଚାପ ।
ପୁଣି କ୍ଷୁରକାଣ୍ଡ ଯେ ବିନ୍ଧିଣ ସାତ୍ୟକି
କାଟିଦେଲେ ଜଳସନ୍ଧର ଧନୁଟିକି ।
ତିନିକାଣ୍ଡ ଜଳସନ୍ଧର ହୃଦୟକୁ
ବିନ୍ଧିଲେ ସାତ୍ୟକି ଦେଖାଇ ବିକ୍ରମକୁ ।
ତୋମରୁଟାଏ ଧରି ଜଳସନ୍ଧ ବୀର
ସାତ୍ୟକିଙ୍କି ବିନ୍ଧିଲେ ହେବାକୁ ସଂହାର ।
ସେ ତୋମାର ସର୍ପପରାୟେ ବାହାରିଲା
ସାତ୍ୟକିଙ୍କ ଭୁଜବିଲକୁ ନିକିଳିଲା ।
ସେ ଶରେ ପୀଡ଼ା ପାଇ ସାତ୍ୟକି ମହାରଥୀ
ତିରିଶ ଶରେ ଜଳସନ୍ଧେ ଦେଲେ ବ୍ୟଥା ।

ଖଣ୍ଡା ଢାଲ ଧରିଣ ବୁଲାଇ ଖଣ୍ଡାକୁ
ଫିଙ୍ଗିଲେ ଜଳସନ୍ଧ ସାତ୍ୟକିଙ୍କଠାକୁ ।
ସେ ଖଡ଼୍‌ଗ ସାତ୍ୟକି ଧନୁଟିକି କାଟି
ଅଲାତଚକ୍ର ପରି ଭୂମେ ଗଲା ଲୋଟି ।
ଶାଳଗଛ ପରି ସାତ୍ୟକି ଧନୁଟାଏ
କରପୁଟେ ଟେକି ଧଇଲେ ଆହେ ରାୟେ ।
ନିମିଷ ମାତ୍ରକରେ ଚଢ଼ାଇଣ ଗୁଣ
କାଟିଲେ ଜଳସନ୍ଧ ଭୁଜେ ବିନ୍ଧି ବାଣ ।
କରିକର ଜଟା ତ ଜଳସନ୍ଧ ବାହା
ଛିଡ଼ି ତଳେ ପଡ଼ି ନିନ୍ଦିଲା ସର୍ପନାହା ।
କ୍ଷରକାଣ୍ଡରେ  ଜଳନ୍ଧରଙ୍କର ମୁଣ୍ଡ
କାଟନ୍ତେ ଚନ୍ଦ୍ରପରି ପଡ଼ିଲା ରଣଦାଣ୍ଡ ।
ଦୁଇବାକୁ ମୁଣ୍ଡଟି ଗଲେ ହେଲେ ଛିଡ଼ି
ରହିଥିଲା ଗଣ୍ଡି ହାତୀର ବେକ ମାଡ଼ି ।
ଜଳସନ୍ଧ ରକତ ହାତୀ ଦେହ ପାଇ
ବିଜୁଳି ଶୋଭାଳିକି ଦେଲାଟି ଲିଭାଇ ।
ମରନ୍ତେ ଜଳସନ୍ଧ ଦ୍ୱିରଦ ଦନ୍ତ ଦୁଇ
କାଟିପକାଇଲେ ସାତ୍ୟକି ତ୍ୱରାହୋଇ ।
ହାତୀ ପରେ ଥିଲା ତ ଜଳସନ୍ଧ ଗଣ୍ଡି
ହୁଅନ୍ତେ କାଣ୍ଡେ ହାତୀ ଦାନ୍ତ ଦୁଇଖଣ୍ଡି ।
ସାତ୍ୟକିଙ୍କ ମୁଖୁଁ ଭାଜିଲା କରି ଡକା
ତା ଦେଖି ତୁମ୍ଭ ଲୋକେ ହୋଇଲେ ତାଟକା ।
ମନେ କଲେ ମଲେ ତ ଜଳସନ୍ଧ ବଳୀ
ସାତ୍ୟକିସୁତକୁ କି ପାରିବା ଆଗୁଳି ।
ଆହା ଦଇବରେ ତୁ ଦୁର୍ଯ୍ୟୋଧନ ମୂର୍ଖ-
ପଣେ ତିଆଇଲୁ ଆମ୍ଭଙ୍କୁ ଏଡ଼େ ଦୁଃଖ ।
ଏହିରୂପେ ଅନେକ ଭାବି ନିରୁସାହା
ହୋଇଣ ପଳାଇଲେ ବୋଲି ଆହା ଆହା ।
ଏହି ସମୟରେଟି ରଥକୁ ଧୂଆଇଁ
ଦ୍ରୋଣ ଯୁଦ୍ଧ କରିଲେ ସାତ୍ୟକିଙ୍କି ଯାଇ ।
ତୁମ୍ଭର ଲୋକମାନେ ଦ୍ରୋଣଙ୍କ ଭରସା
ପାଇ ଯୁଦ୍ଧରେ ପୁଣି ବଳାଇଲେ ଆଶା ।
ସାତ୍ୟକିଙ୍କର ଚାରିପଟରେ ରହିଲେ
କଟକଟେ ଧନୁକୁ ଓଟାରି ବିନ୍ଧିଲେ ।
ସେ ଯୁଦ୍ଧ ଦେବାସୁର ଯୁଦ୍ଧେ ଉପମେୟ
ହୋଇଲା ଆହେ ଜାଣ ଅମ୍ବିକାତନୟ ।
ଦୁର୍ମୁଖ ଦଶ ଦୁଇଦଶ ଦୁର୍ମର୍ଷଣ
ଚିତ୍ରସେନ ଦୁଇ ଯେ ସତସ୍ତରୀ ଦ୍ରୋଣ ।
ଦୁଃଶାସନ ଆଠ ତ ବିକର୍ଣ୍ଣ ତିରିଶି
ଦୁଃସହ ଦଶଶର ବିନ୍ଧିଲେ ହୋଇ ରୋଷି ।
ଦୁର୍ଯ୍ୟୋଧନ ଘେନି ଯିବାକୁ ଜୟସୃଷ୍ଟି
ବହୁତ କଲେ ସାତ୍ୟକିଙ୍କି ଶରବୃଷ୍ଟି ।
ସାତ୍ୟକି ପୀଡ଼ା ପାଇ ଯୁଦ୍ଧରେ ଦ୍ରୋଣଙ୍କୁ
ଆଗ ରାଗେ ବିନ୍ଧିଲେ ତିନି ମାର୍ଗଣକୁ ।
ଆଠ ବିଂଶତିକି ପଚିଶ ବିକର୍ଣ୍ଣକୁ
ଧାତ ଚିତ୍ରସେନକୁ ଦଶ ଦୁଃସହକୁ ।
ନବ ସତ୍ୟବ୍ରତକୁ ଦଶ ବିଜୟକୁ
ବାରକାଣ୍ଡ ବିନ୍ଧିଲେ ସେ ଦୁର୍ମର୍ଷଣକୁ ।
ଏହିରୂପେ କୋପରେ ରଥରେ ରଥୀଙ୍କି
ପୀଡ଼ା ଦେଇଣ କୃଷ୍ଣବଂଶଜ ସାତ୍ୟକି ।
ଦୁର୍ଯ୍ୟୋଧନ ରଥ ଆଗରେ ରଥ କଲେ
ତା ଦେଖି ଲୋକେ ଚିନ୍ତାଜଳରେ ବୁଡ଼ିଲେ ।
ବିଚାରିଲେ ସାତ୍ୟକି ଯୁଦ୍ଧରେ ଦୁର୍ମଦ
ଏହିକ୍ଷଣି ସାରିବେ ଦୁର୍ଯ୍ୟୋଧନ ପଦ ।
ଅନ୍ୟୋନ୍ୟେ ଯୁଝିଲେ ଦେଖାଇ ଲଘୁହସ୍ତ
ଶରକୁ ପ୍ରହାରିଲେ ହୋଇଣ ସାରକ୍ତ ।
ଦୁର୍ଯ୍ୟୋଧନ କାଣ୍ଡ ସାତ୍ୟକି ଦେହ ମଣ୍ଡି-
ହୁଅନ୍ତେ ନିନ୍ଦାକଲା ଚାଳୁଣିକି ଗଣ୍ଡି ।
ସେହିରୂପେ ସାତ୍ୟକି ସ୍ୱର୍ଣ୍ଣପୁଙ୍ଖ ଶର
ବିନ୍ଧି ଦୁର୍ଯ୍ୟୋଧନକୁ କଲେ ନାରଖାର ।
କ୍ରୋଧବଶେ ସାତ୍ୟକି କମ୍ପାଇଣ ତନୁ
କାଟିଲେ କ୍ଷୁରକାଣ୍ଡେ ଦୁର୍ଯ୍ୟୋଧନ ଧନୁ ।
ଧନୁ ଛିଡ଼ିଯିବା ଛିଦ୍ରକୁ ନେତ୍ରେ ଦେଖି
ଦୁର୍ଯ୍ୟୋଧନ ଦେହେ ବିନ୍ଧିଲେ ହୋଇ ସୁଖୀ ।
ଆନ ଧନୁ ଧରି ତୁମ୍ଭର ଜ୍ୟେଷ୍ଠସୁତ
ଯୁଯୁଧାନ ଦେହେ ବିନ୍ଧିଲେ ଶତ ଶତ ।
ତୁମ୍ଭ ସୁତ ସରେ ସାତ୍ୟକି ପାଇ ପୀଡ଼ା
ପୁଣି ତୁମ୍ଭ ସୁତଙ୍କୁ ଦେଲେ ଯୁଦ୍ଧେ ବ୍ରୀଡ଼ା ।
ଦୁର୍ଯ୍ୟୋଧନଙ୍କର ମହତ ଦୁଃଖ ଜାଣି
ବିନ୍ଧିଲେ ସାତ୍ୟକିଙ୍କି ତୁମ୍ଭ ସୁତଶ୍ରେଣୀ ।
ସାତ୍ୟକି ତୁମ୍ଭ ସୁତଜଣଙ୍କୁ ପାଞ୍ଚକାଣ୍ଡ
ଲେଖାରେ ସେ ବିନ୍ଧିଲେ ଜାତି କ୍ରୋଧେ ପିଣ୍ଡ
ଦୁର୍ଯ୍ୟୋଧନ ରାଜାଙ୍କୁ ପୁଣି ଆଠକାଣ୍ଡ
ବିନ୍ଧିଣ କାଣ୍ଡର୍ମରେ କାଟିଲେ କୋଦଣ୍ଡ ।
ଏହା ବାହାରେ ମଣିମୟ ନାଗଧ୍ୱଜ
ଦୁର୍ଯ୍ୟୋଧନଙ୍କର କାଟିଲେ ମହାରାଜ ।
ଚାରିକାଣ୍ଡେ ଚାରିଘୋଡ଼ାଙ୍କ ପ୍ରାଣ ନେଲେ
କ୍ଷରକାଣ୍ଡେ ସାରଥି ମୁଣ୍ଡକୁ କାଟିଲେ ।
ଏହା କରିସାରିଣ ଦୁର୍ଯ୍ୟୋଧନ ମର୍ମ
ଖୋଳିଲେ ସେ ବରଗି ଶାୟକ ଉତ୍ତମ ।

ଦୁର୍ଯ୍ୟୋଧନ ସାତ୍ୟକି ଯୁଦ୍ଧକୁ ନ ସହି
ଚିତ୍ରସେନ ରଥରେ ବସିଲେ ସେ ଯାଇ ।
ସବୁଲୋକ ତା ଦେଖି କଲେ ଆହା ଆହା
ଛାଡ଼ିଲେ ଦୋହଲାଇ ଚାଳିବାର ବାହା ।
କୃତବର୍ମା ସାତ୍ୟକି ଓଜ ନ ସହିଲେ
ସାରଥିକି ବହୁତ ତିରସ୍କାର କଲେ ।
ବୋଇଲେ ମୋ ରଥ ସାତ୍ୟକି ରଥଠାକୁ
ବାହ ଭାଙ୍ଗୁଛି ମୁଁ ତାହାର ସାମର୍ଥ୍ୟକୁ ।
କୃତବର୍ମାଙ୍କ ବୋଲ ସାରଥି ଘେନିଲା
ସାତ୍ୟକିଙ୍କରଠାକୁ ରଥ ବାହିନେଲା ।
ସାତ୍ୟକି କୃତବର୍ମା ଆସିବାର ଜାଣି
ସାରଥିକି ଅନାଇଁ କହିଲେ ଏ ବାଣୀ ।
ଦେଖ କୃତବରମା ଯୁଝି ଆସୁଛନ୍ତି
ମୋ ରଥ ନେଇକରି ରଖ ତାଙ୍କ କତି ।
ସାରଥି ସାତ୍ୟକି- ବଚନେ ରଥ ନେଇ
ଦେଲା କୃତବରମା ଆଗରେ ରଖାଇ ।
ଦୁଇସିଂହ ପରି ଜାଣ ସେ ଦୁଇବୀରେ
ଯୁଝିଲେ ହେ ରାଜନ ଶାୟକ- ନଖରେ ।
କୃତବର୍ମା ସାତ୍ୟକି ଦେହକୁ ଛତିଶି
କାଣ୍ଡ ବାଛି ବିନ୍ଧିଲେ ହୋଇ ଯୁଦ୍ଧେ ରୋଷି ।
ସାରଥିକି ସାତ ଘୋଡ଼ାକୁ ଚାରି କାଣ୍ଡ
ବିନ୍ଧିଲେ କୃତବର୍ମା କମ୍ପାଇ କୋଦଣ୍ଡ ।
ସାତ୍ୟକି ପାର୍ଥଙ୍କୁ ଦେଖିବା ଇଚ୍ଛାକରି
ପଶିଥିଲେ ବ୍ୟୂହରେ ସିନା ଦଣ୍ଡଧାରି ।
କୃତବର୍ମା ତାଙ୍କୁ କରନ୍ତେ ଘୋର ରଣ
ତ୍ୱରା ହୋଇ ବିନ୍ଧିଲେ ସେ ଶଶିଏ ବାଣ ।
କ୍ଷିତି-କମ୍ପେ ପର୍ବତ କମ୍ପିବା ପରାୟେ
କମ୍ପିଲେ କୃତବର୍ମା ସାତ୍ୟକି କାଣ୍ଡଘାଏ ।
କୃତବର୍ମା ଯେ ଚାରିଘୋଡ଼ାଙ୍କୁ ତେଷଠି
ସାରଥିକି ବିନ୍ଧିଲେ ସାତ ଭିଡ଼ି ମୁଷ୍ଟି ।
ସୁବର୍ଣ୍ଣପୁଙ୍ଖ କାଣ୍ଡ ବସାଇ କୋଦଣ୍ଡେ
କୃତବର୍ମା ଦେହେ ବିନ୍ଧିଲେ ଅତିଚାଣ୍ଡେ ।
ସେ କାଣ୍ଡ ବଜ୍ରପ୍ରାୟେ ଧ୍ୱନିଟାଏ କରି
ଦେହ ଗଳି ପଶିଲା ଭୂମିକି ବିଦାରି ।
ସେ ଘାଏ କୃତବର୍ମା ପକାଇଣ ଧନୁ
ପଡ଼ିଲେ ରଥେ ଶୋଇ ପକାଇଣ ତନୁ ।
ସହସ୍ରବାହୁ ସମ କୃତବର୍ମା ରଥୀ
ଶୁଅନ୍ତେ ଯୁଦ୍ଧେ ରଥ ପିଠିକରି ସାଥି ।
ସାତ୍ୟକି ମହାରଥୀ ନିଶେ ଭରି ହାତ
ସାରଥିକି ବୋଇଲେ ଏଥୁ ବାହା ରଥ ।
ବୃତ୍ର ଦେବଚମୂଟି ଭେଦିବା ପରାୟେ
ସାତ୍ୟକି ଭେଦିଗଲେ ତୁମ୍ଭ ଚମୂରାୟେ ।
କୃତବର୍ମା ଚେତା ପାଇଣ ଧନୁଧରି
ରହିଲେ ପାଣ୍ଡବେ ଯୁଝିବା ଇଚ୍ଛାକରି ।
ସାତ୍ୟକି ଯିବାବାଟ ଆଚାର୍ଯ୍ୟ ନିବାରି
ଯୁଦ୍ଧ କଲେଟି ବଳି ବାସବଙ୍କ ପରି ।
ଆଶୀବିଷ ଆକାର ଲୌହ ତିନିଶର
ବିନ୍ଧିଲେ ସାତ୍ୟକିଙ୍କ ଲଲାଟେ ଦ୍ୱିଜବର ।
ସାତ୍ୟକି ସେହି ତିନି କାଣ୍ଡକୁ ଲଲାଟେ
ବୋହିଲେ ହେଲେ ଯୁଦ୍ଧ କଲେ ଅତି ଆଣ୍ଟେ ।
ତିନିଶୃଙ୍ଗ ଥିବା ଗିରିପରାୟେ ଦିଶି
ସାତ୍ୟକି ପ୍ରକାଶିଲେ ଯୁଦ୍ଧେ ତେଜରାଶି ।
ବିନ୍ଧିଲେ ଦ୍ରୋଣଗୁରୁ ଚଳି ଯେତେ କାଣ୍ଡ
କେତେକ ସାତ୍ୟକିଟି କଲେ ଦୁଇଖଣ୍ଡ ।
ଦ୍ରୋଣ ସାତ୍ୟକିଙ୍କର ଲାଘବ ନ ସହି
ହସିକରି ବିନ୍ଧିଲେ କୋଡ଼ିଏ ନୃସାଇଁ ।
ଏ ବାହାରେ ଦୁଇ ଥରରେ ଦ୍ରୋଣଗୁରୁ
ବିନ୍ଧିଲେ ସେ ଦେଢ଼ଶ କାଣ୍ଡ ନୋହି ଭୀରୁ ।
ଦ୍ରୋଣଙ୍କର ରଥରୁ ଅନର୍ଯ୍ୟାପ ବାଣ
ବାହାରି ଘୋଡ଼ାଇଲେ ସେ ଯୁଦ୍ଧଅଙ୍ଗଣ ।
ସାତ୍ୟକି ଦ୍ରୋଣପରି କରି ଲଘୁହାତ
ଘୋଡ଼ାଇ ପକାଇଲେ ଶରେ ଦ୍ରୋଣରଥ ।
ସାତ୍ୟକି ଦ୍ରୋଣଙ୍କର ସେ ଯୁଦ୍ଧରେ ଉଣା
ଅଧିକ ହେ ନୃପ ନୋହିଲା କିଛି ଜଣା ।
ସାତ୍ୟକି କ୍ରୋଧହୋଇ ଦ୍ରୋଣେ ନବକାଣ୍ଡ
ବିନ୍ଧି ସାରଥିକି ବିନ୍ଧିଲେ ଶଏକାଣ୍ଡ ।
ଏ ବାହାରେ ଧ୍ୱଜକୁ ବିନ୍ଧିଲେ ହେ ରାୟେ
କ୍ରୋଧାଗ୍ନିରେ ଜାଳି ତ ଦେଇଥିଲେ କାୟେ ।
ସାତ୍ୟକିଙ୍କ ଲାଘବ ଅଶ୍ୱଥମା ପିତା
ଦେଖିଣ ମନରେ ନ କରି କିଛି ଚିନ୍ତା ।
ଯୁଯୁଧାନ ଦେହକୁ ବିନ୍ଧିଲେ ସତୁରୀ
ଅଶ୍ୱେ ତିନି ତିନି ବିନ୍ଧିଲେ ବାଛିକରି ।
ଧ୍ୱଜକୁ କାଣ୍ଡେ ବିନ୍ଧି କାଣ୍ଡେ କରଧନୁ
କାଟିଣ ପକାଇଲେ ଭରଦ୍ୱାଜସୂନୁ ।
ସାତ୍ୟକି ଧନୁ ତଳେ ଫିଙ୍ଗି ଗଦା ଧରି
ଆଚାର୍ଯ୍ୟଙ୍କୁ ଫିଙ୍ଗିଲେ ଯାଇ ଉଡ଼ାଚାରି ।
ଦ୍ରୋଣ ସାତ୍ୟକିଙ୍କର ଗଦାକୁ ବହୁତ
କାଣ୍ଡ ବିନ୍ଧିକରି ରାଜନ କଲେ ହତ ।
ଏହି ସମୟରେଟି ଧରି ଆନ ଧନୁ
ଯୁଦ୍ଧ କଲେ ସାତ୍ୟକି ସତ୍ୟକଙ୍କସୂନୁ ।

ସିଂହପରି ଗରଜନ୍ତେ ଯେ ଯଦୁବୀର
ତା ଶୁଣି ଦ୍ରୋଣ କ୍ରୋଧେ ହେଲେ ଥରହର ।
ସୁବର୍ଣ୍ଣ ଦଣ୍ଡଲଗା ଶକତିଏ ଧରି
ଫିଙ୍ଗିଲେ ଦ୍ରୋଣ ଯୁଯୁଧାନେ ଦଣ୍ଡଧାରି ।
ସେ ଶକ୍ତି ସାତ୍ୟକିଙ୍କ ରଥରେ ବାଜିଲେ
ଦେଖୁଁ ଦେଖୁଁ ମହୀମଧରେ ମଜ୍ଜିଗଲେ ।
ସାତ୍ୟକି ଦ୍ରୋଣଙ୍କର ଦକ୍ଷିଣ ଭୁଜକୁ
ବାଛିକରି ବିନ୍ଧିଲେ ମାର୍ଗଣରାଜକୁ ।
ଦ୍ରୋଣ ସାତ୍ୟକିଙ୍କ ଧନୁକୁ ଚନ୍ଦ୍ର ଖଣ୍ଡ
କାଣ୍ଡକୁ ବରଗିଣ କଲେ ଦୁଇଖଣ୍ଡ ।
ଶକ୍ତିରେ ସେ ସାରଥି ଶକ୍ତି ହତକଲେ
ମତ୍ତହସ୍ତୀ ପରି ଯେ ଶକ୍ତି ଦେଖାଇଲେ ।
ସାରଥି ମୋହ ଦେଖି ସାତ୍ୟକି ରଥୀବର
ଧଇଲେ କରେ ରଜୁ ଘୋଡ଼ାମାନଙ୍କର ।
ନାନାଜାତି ଭଙ୍ଗିରେ ବାହି ନିଜ ଯାନ
କଲେ ଦ୍ରୋଣଗୁରୁଙ୍କ ସଙ୍ଗେ ଆୟୋଧନ ।
ବିନ୍ଧିଲେ ଶଏକାଣ୍ଡ ଦ୍ରୋଣେ ଧନୁ ଭିଡ଼ି
ଚଳିଲାଟି ସେ ଯୁଦ୍ଧ ଆକାଶରେ ମାଡ଼ି ।
ଦ୍ରୋଣ ଧନୁ ମଧରୁ ଭ୍ରମର ପରାୟେ
ଗମିଲେ ପଞ୍ଚକାଣ୍ଡ ଗର୍ଜି ଅତିଶୟେ ।
ଯୁଯୁଧାନର ହୃଦ - କମଳ ରକତ
ମଧୁକୁ ପିଇଲେ ସେ ହୋଇଣ ଆସକ୍ତ ।
ସାତ୍ୟକି ଦ୍ରୋଣଙ୍କର କାଣ୍ଡେ ପୀଡ଼ା ପାଇ
ବିନ୍ଧିଲେ ସେହୁ ଦ୍ରୋଣଗୁରୁଙ୍କୁ ତୁହାଇ ।
ଦ୍ରୋଣଙ୍କର ସାରଥିକିଟି ବିନ୍ଧି କାଣ୍ଡେ
ଦେଖୁଥିଲୁଁ ପକାଇ ଦେଲେ ରଣ ଦାଣ୍ଡେ ।
ସାରଥିରେ ହୀନ ତ ହୋଇଲେ ଘୋଡ଼ାଏ
ପୁଣି ସେ ବିକଳ ବୋଇଲେ କାଣ୍ଡଘାଏ ।
ସେହି ସକାଶୁଁ ଏଣେ ତେଣେ ଦ୍ରୋଣ ରଥ
ଗମିଲା ହେ ଜାଣ ହସ୍ତିନା ନରନାଥ ।
ଦୁର୍ଯ୍ୟୋଧନ ତୁଲେ ତୁମ୍ଭର ପକ୍ଷ ନୃପେ
ଏହା ଦେଖି ରାଜନ ପଡ଼ି ପରିତାପେ ।
ବୋଇଲେ ଯୋଦ୍ଧାଏ ଦ୍ରୋଣଙ୍କ ଘୋଡ଼ା ଧର
ବଡ଼ ରଣ କଲେ ତ ସାତ୍ୟକି ବିଚାର ।
ଏହା ଶୁଣି ତୁମ୍ଭ ରଥିଏ ହୋଇ ଗୋଟି
ଗଲେ ତ ଯହିଁ ଥିଲେ ଆଚାର୍ଯ୍ୟ ବୁଢ଼ାଟି ।
ମନେ କଲେ ସାତ୍ୟକି ଅଟେ ରଣରଙ୍କା
ଦ୍ରୋଣ ରଖି ପଛେ ଯୁଝିବା ଛାଡ଼ି ଦକା ।
ଦ୍ରୋଣଙ୍କ ସମୀପକୁ ଯାନ୍ତେ ରଥୀବୃନ୍ଦ
ତୁମ୍ଭ ସୈନ୍ୟ ଭାଜିଲେ ଛାଡ଼ିଦେଇ ଦ୍ୱନ୍ଦ ।
ଦ୍ରୋଣ ସୁସ୍ଥ ହୋଇଣ ରହି ବ୍ୟୂହ ଦ୍ୱାରେ
ନ ଯୁଝିଲେ ଯୁଯୁଧାନଙ୍କ ସଙ୍ଗତରେ ।
ପାଣ୍ଡବେ ପାଞ୍ଚାଳମା ନଙ୍କୁ ସଙ୍ଗେ ଧରି
ଧାଇଁଲେ ଦ୍ରୋଣ ସୈନ୍ୟ- ଛାଗେ ବାଘ ପରି
ଏହା ଦେଖି ଦ୍ରୋଣ କ୍ରୋଧରେ ଅପଘନ
କରି ଦେଲେଟି ବାଳ ସୂର୍ଯ୍ୟର ସମାନ ।
ଦ୍ରୋଣ କୃତବର୍ମା ଜିଣି ଯୁଯୁଧାନ
ସାରଥିକି କହିଲେ ମଧୁରେ ବଚନ ।
ପୂର୍ବରୁ ଏମାନଙ୍କୁ ପାର୍ଥଛନ୍ତି ଜିଣି
ନିମିତ୍ତ ମାତ୍ର ଆମ୍ଭେ ହେଲୁ ଥାଅ ଜାଣି ।
ଏହା କହି ସାରଥି ଆଗେ ଯୁଯୁଧାନ
ଶରେ କରି ତୁମ୍ଭର ସଇନ ନିଧନ ।
ଆମିଷାଶୀ ହୋଇ ସଞ୍ଚାଣ ଗଲା ପ୍ରାୟେ
ଗଲେ ସେ ତୁମ୍ଭ ସୈନ୍ୟ ଭେଦି ନରରାୟେ ।
ଶୁକଳ ଚାରି ଘୋଡ଼ା ଯୁଯୁଧାନଙ୍କର
ଜିଣି ପକାଇଲେ ଗତିକି ପବନର ।
ତୁମ୍ଭ ରଥୀମାନେ ତାହାଙ୍କୁ ଧନୁ ଟେକି
ଯୁଝି ନ ପାରିଲେ ଆଉ କି କହିବି କି ।
ସୂର୍ଯ୍ୟ ଚନ୍ଦ୍ର ଇନ୍ଦ୍ର ପରାୟେଟି ବିକ୍ରମ
ଦେଖାଇ ଯୁଦ୍ଧଦାଣ୍ଡେ ସାତ୍ୟକି ବୀରୋତ୍ତମ ।
ଯାଉଥିଲେ ରଥ ବୁହାଇ ଆହେ ରାୟେ
ଚାହିଁ ନ ପାରିଲେଟି ତୁମ୍ଭର ଯୋଦ୍ଧାଏ ।
ସୁଦରଶନ ନାମେ ଥିଲେ ଯେଉଁ ରାଜା
ଦେଖି ସାତ୍ୟକିଙ୍କି ଥରାଇ କ୍ରୋଧେ ମଜ୍ଜା ।
ବାହାରିଲେ ଯେ କାଣ୍ଡ କୋଦଣ୍ଡକୁ ଧରି
ସୁବର୍ଣ୍ଣର ସାଞ୍ଜୁତ ଅଙ୍ଗେ ଥିଲେ ଭରି ।
ନାନାଜାତି ଆଶ୍ଚର୍ଯ୍ୟ ଯୁଦ୍ଧେ ସେ ନିପୁଣ
ପାରନ୍ତି ମଧ ବିନ୍ଧି ବଡ଼ ବଡ଼ ବାଣ ।
ବଡ଼ବାନଳ ପରି ସାତ୍ୟକି ବଳ-ଜଳ
ପିଇବାକୁ ମନେ ଭାଳି ସେ ନରପାଳ ।
ଧନୁ ଶର ପାଟିକି ଦେଇ ସେ ବିସ୍ତାରି
ରହିଲେ ଯୁଦ୍ଧଦାଣ୍ଡେ ଧୈର୍ଯ୍ୟ ଆଶ୍ରେ କରି ।
ସାତ୍ୟକି ତା ଦେଖି ପ୍ରଳୟ ଦିବାକର
କର ପରି ରାଜନ ବରଷିଲେ ଶର ।
ଅନ୍ୟୋନ୍ୟରେ ଦୁହେଁ ତା ଜୟ ଧନେ ମନ
ଦେଇଣ ଯୁଦ୍ଧ କଲେ ଛାଡ଼ିଣ ଜୀବନ ।
ସୁଦରଶନ ଶର ଖଦ୍ୟୋତକୁ ହତ-
କଲା ସାତ୍ୟକିଙ୍କର ସୂର୍ଯ୍ୟ-ଶରବ୍ରାତ ।
ସାତ୍ୟକି କାଣ୍ଡ-ଚନ୍ଦ୍ର ସୁଦର୍ଶନ ଦେଖି
ଶର-ରାହୁଙ୍କରେ ଗ୍ରାସିଲେ ହୋଇ ସୁଖୀ ।

ଅନ୍ୟାନ୍ୟରେ ଦୁହେଁଟି ସର୍ପପରି ହୋଇ
ଶର-ପବନକୁ ଦେଲେଟି ରାୟେ ପିଇ ।
ଏ ସକାଶୁଁ ଦୁହେଁ ହୋଇଣ ମହାକ୍ରୋଧ
ଯୁଦ୍ଧ କଲେ ଭାବିଣ ଅନ୍ୟୋନ୍ୟରେ ବଧ ।
ସୁଦର୍ଶନ ହାତୁଁ ତିନୋଟି ବାଣ ଫିଟି
ଆଶୀବିଷ ପରାୟେ ମେଲି ମୁନପାଟି ।
ସାତ୍ୟକି ବର୍ମ କାଟି ଦେହେ ଯାଇ ଫୁଟି
ବୋଇଲା ଯାଅ ଯମରାଜନଙ୍କୁ ଭେଟି ।
ପୁଣି ସୁଦର୍ଶନ ବିନ୍ଧିଣ ଚାରି ବାଣ
ସାତ୍ୟକିଙ୍କ ଅଶ୍ୱକୁ ପୀଡ଼ା ଦେଲେ ଜାଣ ।
ତା ଦେଖି କ୍ରୋଧଭରେ ସାତ୍ୟକି ନନ୍ଦନ
ଶରରେ କଲେ ତାଙ୍କ ଅଶ୍ୱକୁ ନିଧନ ।
ବଜ୍ରସମ ଏକ ଶର ଦେଇଣ ବିନ୍ଧି
ସାରଥିର ମୁଣ୍ଡକୁ ପକାଇଲେ ଛେଦି ।
ଚନ୍ଦ୍ରବିମ୍ବ ପରି ସୁଦରଶନ ମୁଣ୍ଡ
କ୍ଷୁର କାଣ୍ଡେ ଗଡ଼ାଇଦେଲେ ରଣଦାଣ୍ଡ ।
ଅମରରାଜା ପରି ବୃଷ୍ଣି ଅବତଂଶ
ତୁମ୍ଭ ସେନା-ଶଚୀରେ ବଳାଇ ମାନସ ।
ଶାୟକ-ନଖକ୍ଷତେ ହୃଦୟ ବିଦାରି
ଭୋଗକଲେ ଜୟ-ଶିରୀକି ମୋଦ ଧରି ।
ଅରଜୁନ ଯିବା ବାଟରେ ମନୋରଥ
ସାର୍ଥକରି ସାତ୍ୟକି ଚଳାଇଲେ ରଥ ।
ସାତ୍ୟକିଙ୍କର ଯୁଦ୍ଧବର୍ମକୁ ଯୋଦ୍ଧାଏ
ଦେଖିଣ ପରଶଂସା କଲେ ଅତିଶୟେ ।
ଏଅନ୍ତେ ସାତ୍ୟକି ଅନାଇ ସାରଥିକି
କହିଲେ ଏ ବଚନ ବହିଣ ପ୍ରୀତିକି ।
ଶସ୍ତ୍ର ଝଳି-ଜଳ ଯେ ପତାକା-ଲହରୀ
ଖଡ଼ଗ-ମତ୍ସ୍ୟ ଗଦା-ଗ୍ରହରେ ଥିଲା ପୂରି ।
ଏରୂପେ ଯେଉଁ ଦ୍ରୋଣ ସଇନ-ସମୁଦ୍ର
ତରିଲାଇଁ ଯୁଦ୍ଧେ କେ କରିବ ଅଭଦ୍ର ।
ଆଉ ଯେଉଁ ବଳ ଅଛନ୍ତି ଯୁଝିବାକୁ
ନଦୀ ପରି ନଜର କରୁଛି ଏହାଙ୍କୁ ।
କିଛି ଭୟ ନ ପାଇ ବାହ ମୋର ରଥ
ମୋତେ ବଳିବାକୁ କେ ନାହିଁ ସମରଥ ।
ଦ୍ରୋଣ କୃତକର୍ମାଙ୍କୁ ଜିଣିବାରୁ ମୁହିଁ
ଭାବୁଛି ଅର୍ଜୁନଙ୍କୁ ଭେଟିବିଟି ଯାଇ ।
ବହୁତ ସୈନ୍ୟ ଦେଖି ହେଉ ନାହିଁ ଭୟ
ଏ କେବେ ନ ପାରନ୍ତି କରି ମୋର କ୍ଷୟ ।
ଅରଜୁନଟି ରଥୀ ହାତୀପନ୍ତି ମାରି
ଯାଇଛନ୍ତି ଦେଖ ଏ ଭୂମି ଛନ୍ତି ପୂରି ।

ଗାଣ୍ଡୀବ ଶବଦ ଶୁଭିଛି ମୋ କର୍ଣ୍ଣକୁ
ବେଗେ ବାହ ରଥ ଦେଖିବା ଅର୍ଜୁନଙ୍କୁ ।
ଯେତେ ଶୁଭଚିହ୍ନ ନୟନେ ଦେଖୁଥାଇଁ
ଜୟଦ୍ରଥ ମରିବ ସନ୍ଦେହ ତ ନାହିଁ ।
ତାହା ରଥୀବୃନ୍ଦରେ ଆବୃତ ହୋଇଛି
ଯେଉଁଠାରେଟି ଦୁର୍ଯ୍ୟୋଧନ ରହିଅଛି ।
ସେହିଠାକୁ ବୋଲିଣ ବାହ ମୋର ରଥ
ଆଜି ତାହାର କାଟି ପକାଇବି ମାଥ ।
ଏହା ଶୁଣି ସାରଥି ବୋଇଲେ ସାତ୍ୟକି
ତୁମ୍ଭେ ଥାଉଁ ମୋ ଭୟ ହୋଇବ କାହିଁକି ।
ରୁଦ୍ର ଇନ୍ଦ୍ର କୁବେର ବରୁଣ ଯକ୍ଷନାଥ
ସଙ୍ଗତେ ଯୁଦ୍ଧ କଲେ ବାହିବି ମୁଁ ରଥ ।
ପରଶୁରାମ ଯେବେ ଯୁଝିବେ ତୁମ୍ଭଙ୍କୁ
ତେବେ ଭୟ ନାହିଁଟି ମୋହର ଅଶ୍ୱଙ୍କୁ ।
ଦ୍ରୋଣ କୃତବର୍ମାଙ୍କୁ ଜିଣିଛ ତ ରଣେ
ଆଉ ରଥୀମାନଙ୍କୁ ନଜରେ କି ଗଣେ ।
କମ୍ବୋଜ ତାମ୍ରଲିପ୍ତ କିରାତ ବର୍ବର
ଶକ ମ୍ଲେଚ୍ଛ ଦରଦ ମାରିଛ ହେ ବୀର ।
ଆଉ ଯେମାନେ ଛନ୍ତି ଯୁଦ୍ଧରେ ବରତି
ତୁମ୍ଭ କାଣ୍ଡ-ବାଘକୁ ଛେଳି ଭାବ ମତି ।
କେଉଁବାଟେ ଏବେ ବାହିବି ରଥ ମୁହିଁ
ମନୋରଥ କରିଛ ତାହା ଦିଅ କହି ।
ଯାହାର ଜନ୍ମନାଥ ପୋଛିଥିବ ପାଞ୍ଜି
କାଣୁଛି ତୁମ୍ଭ ସଙ୍ଗେ କରିବ ସେ ଆଜି ।
ସାତ୍ୟକି ବୋଇଲେ ହେ ଦେଖ ଲଣ୍ଡାଥାଟ
ମାରିଦେଲେ ଏହାଙ୍କୁ ଯିବା କରି ବାଟ ।
ସୁଯୋଧନ ରାଜା ପଠାଣଥାଟ ମଲେ
ବୋଲି ଯେବେ ଶୁଣିବ କାନ୍ଦିବ ସେ ଭଲେ ।
ଅର୍ଜୁନ ପରି ଆଜି ମୋର ବାହୁବଳ
ଦେଖାଇଣ କୁରୁଙ୍କୁ କରିବି ନିର୍ମୂଳ ।
ଅଲାତଚକ୍ର ପରି ଦେଖି ମୋର ଧନୁ
ବୁଜିବେ ଯୋଦ୍ଧା ଆଖି କମ୍ପାଇଣ ତନୁ ।
ଭଲ ଭଲ ଯୋଦ୍ଧାଙ୍କୁ ଖୋଜି ତ ମାରିବି
ସୁଯୋଧନ ଦେଖିବ ମନେ ମନେ ଭାବି ।
ଯୋଦ୍ଧାଏ ଅରଜୁନ ଯୁଝିଲେ ତ ମୋତେ
ଆଉ କେ ପରିତ୍ରାଣ ହୋଇବ ଜଗତେ ।
ଶତ ଶତ ସହସ୍ର ରାଜାଙ୍କ ପରାଣ
ଘେନିବେ ସାରଥି ମୋ ହାତୁଁ ଫିଟି ବାଣ ।
ପାଣ୍ଡବଙ୍କଠାରେ ି ମୋହର ଭକତି
ଯେତେକ ତେତେକ ମୁଁ କରାଇବି ଖ୍ୟାତି ।

ଏହା ଶୁଣି ସାରଥି ଅଳପ ହସିଲେ
ଯୁଯୁଧାନ ମୁଖକୁ ଅନାଇଁ ଭାଷିଲେ ।
ବୃଷ୍ଣିକୁଳରେ ଅବତଂସ ତୁମ୍ଭେ ବୀର
ବିଚାରିବ ଯାହାଟି ତାହା କରିପାର ।
ସାତ୍ୟକି ତାହା ଶୁଣି ଲାଡ଼ିଦେଇ ମଥା
ବୋଇଲେ ବାହ ରଥ ଛାଡ଼ିଦେଇ କଥା ।
ଶଙ୍ଖ ଇନ୍ଦୁକୁନ୍ଦବରନ ଘୋଡ଼ାଚାରି
ସାରଥି ସାତ୍ୟକିଙ୍କି ବାହିଲା ଦଣ୍ଡଧାରୀ ।
ଅତି ଚଞ୍ଚଳ ତ ଅଟନ୍ତି ସେ ଘୋଡ଼ାଏ
ପାଞ୍ଚଣ ବାଡ଼ି ବାଜନ୍ତେ ତ ତାଙ୍କ କାୟେ ।
ମନପବନକୁ ବଳିଲା ତାଙ୍କ ଗତି
ମିଳିଲେ ଯାଇ ସେନା ଯବନଙ୍କ କତି ।
ସାତ୍ୟକିଙ୍କି ଦେଖି ପଠାଣ ରଥୀବୃନ୍ଦ
ଯୁଦ୍ଧ କଲେ ରାଜନ ହୋଇଣ ଆନନ୍ଦ ।
ସାତ୍ୟକି ତାଙ୍କର କାଣ୍ଡକୁ କାଣ୍ଡେ କାଟି
ବିନ୍ଧିଲେ ରୁକ୍ମପୁଙ୍ଖ କାଣ୍ଡ ଗୁଣେ ଯୋଚି ।
ସେ କାଣ୍ଡ ଚାଣ୍ଡେ ଯାଇ ଯବନଙ୍କ ମୁଣ୍ଡ
ଭୁଜ କାଟି ଗଡ଼ାଇ ଦେଲେ ରଣଦାଣ୍ଡ ।
ଲୁହା କଂସା କବଚ ଯବନେ ଲଗାଇ
ଥିଲେ ତାହା ଶୋଇଲେ କାଣ୍ଡରେ ଛିଣ୍ଡାଇ ।
ଶତ ଶତ ସହସ୍ର ସହସ୍ର ମ୍ଳେଚ୍ଛଗଣ
ପ୍ରାଣ ଛାଡ଼ିଯାଇ ଭେଟିଲେ ଯମରାଣ ।
ସାତ୍ୟକିଙ୍କର ହସ୍ତ ଲାଘବରେ କାଣ୍ଡେ
ବାଜିଲେ ଏକାବେଳେ ପାଞ୍ଚ ସାତ ପିଣ୍ଡେ ।
କାମ୍ବୋଜ ଶକକୁଳ ଶବର ବର୍ବର
ମରନ୍ତେ ମହୀ ହେଲା ଅଗମ୍ୟ ନୃବର ।
ଶିରସ୍ତ୍ରାଣ ତୁଲରେ ଦସ୍ୟୁଙ୍କର ମୁଣ୍ଡ
କାଟନ୍ତେ ପୂରିଗଲା ଯୁଦ୍ଧଭୂମି ଖଣ୍ଡ ।
ସେ ଯୁଦ୍ଧରେ କବନ୍ଧ ନାଚିବାର ଲେଖା
ନୋହିଲା ନାହିଁ କେବେ ନୃପ ତେତେ ଦେଖା ।
ଅଶ୍ୱ ଗଜ ରଥୀ ପାଇକ ମରିବାର
କହି ନ ପାରିବି ତୁମ୍ଭଙ୍କୁ ମନେ କର ।
ସାତ୍ୟକିଙ୍କି ବାଣଜାଲରେ ମାଳ ମାଳ
ହୋଇକରି ଭାଜିଲେ ତୁମ୍ଭ ଯୋଦ୍ଧାକୁଳ ।
ଘୋଡ଼ା ରଥଚଢ଼ାଏ ଘୋଡ଼ାଙ୍କୁ ଚାବୁକ
ପିଟି ଥାଣ୍ଟେ ଭାଜିଲେ ନ ଯାଉ ବୋଲି ବେକ ।
କାମ୍ବୋଜ ଶକ ଯବନଙ୍କୁ ଜିଣି ରଣେ
ସାତ୍ୟକି ବାହାରିଲେ ମୋଦ ଧରି ମନେ ।
ସାତ୍ୟକିଙ୍କି ଦେଖି ଚାରଣେ ହୋଇ ତୋଷ
ପୂଜା କଲେ ରାଜନ ବଚନେ ବିଶେଷ ।

ଶକତି ଆସି ଗଦା ଗୁରୁଜ ତୋମର
ଧନୁ-ପାଟି ଶର ଦନ୍ତରେ ଭୟଙ୍କର ।
ହୁଅନ୍ତେ ଯୁଯୁଧାନ ଦିଶିଲେ ସିଂହପରି
ତୁମ୍ଭ ସେନା ମୃଗଗଣଙ୍କୁ ଦଣ୍ଡଧାରୀ ।
ସୁନାସାଞ୍ଜୁ ଯେ ସୁନା ଟୋପରକୁ ଅଙ୍ଗ
ବୋହିବାରୁ ହେଲା ସେ ମେରୁଗିରିଶୃଙ୍ଗ ।
ଧନୁମଣ୍ଡଳରେ ସାତ୍ୟକି ସୂର୍ଯ୍ୟପରି
ହେଲେ ଶରକିରଣେ ଆବୃତ ଦଣ୍ଡଧାରୀ ।
ଗାଇମଧେ ବୃଷଭ ପଶିବା ପରାୟେ
ତୁମ୍ଭ ସୈନ୍ୟେ ସାତ୍ୟକି ପଶିଲେ ହେ ରାୟେ ।
ମତ୍ତହସ୍ତୀ ପରି ତା ଶର ବିଷାଣକୁ
ପାତି ଧାଇଁଥିଲେ ସାତ୍ୟକି ଯୁଝିବାକୁ ।
ତୁମ୍ଭ ସେନାମାନେ ତା ଦେଖି ହୋଇ ଦୁଃଖୀ
ଛପିଲେ କ୍ଷୁଦ୍ର ଜୀବ ପରି ବୁଜି ଆଖି ।
ଦ୍ରୋଣ ଜଳସନ୍ଧ କାମ୍ବୋଜ ଭୋଜସୈନ୍ୟ-
ରାହୁମୁଖରୁ ଚନ୍ଦ୍ରପରି ଯୁଯୁଧାନ ।
ବାହାରି ଶର-କରେ ଭୟ ତାପ ଶୀତ
ଜାତ କଲେ ତୁମ୍ଭର ଯୋଦ୍ଧାଙ୍କେ ବହୁତ ।
ଦୁର୍ଯ୍ୟୋଧନ ଚିତ୍ରସେନ ଯେ ଦୁଃଶାସନ
ବିବିଂଶତି ଶକୁନି ଦୁଃସହ ଦୁର୍ମର୍ଷଣ ।
କ୍ରାଥଆଦି ରଥିଏ ହୋଇକରି ଗୋଟି
ସାତ୍ୟକିଙ୍କ ଯୁଦ୍ଧ କରିଲେ ଯାଇ ଘୋଟି ।
ତୁମ୍ଭ ସୈନ୍ୟ ସେକାଳେ ସମୁଦ୍ର ପରାୟେ
ଶୁଭିଲା ହେ ରାଜନ ଗରଜନ୍ତାଏ ।
ଯୁଯୁଧାନ ଦେଖିଣ ମହାରଥୀବୃନ୍ଦ
ବୋଇଲେ ରଥ ବାହ କରି ମନ୍ଦ ମନ୍ଦ ।
କୁରୁବଳଯାକ ତ ସିନ୍ଧୁପରି ମାଡ଼ି
ଆସୁଛନ୍ତି ଦେଉଛି କାଣ୍ଡେ ଗଣ୍ଡି ପୋଡ଼ି ।
ଇନ୍ଦ୍ରପରି ଆଜ ମୋ ବିକ୍ରମକୁ ତୁମ୍ଭେ
ଦେଖିବ ହେ ସାରଥି କହୁଅଛୁଁ ଆମ୍ଭେ ।
ଆଜି ମୋ ଶରମୁନେ ଦେଖିବ ଦୁର୍ଯ୍ୟୋଧନ-
ବଳଯାକ ବସିବେ ଯମଙ୍କ ସଦନ ।
ଏରୂପେ ସାତ୍ୟକି ବଚନ କହୁଥିଲେ
ତୁମ୍ଭ ସେନାଯାକ ବେଢ଼ିଣ ଯୁଦ୍ଧ କଲେ ।
ମାର୍ ହାଣ କାଟ ଯେ ବିନ୍ଧ ଯେ ଶବଦ
ବିନା ନ ଶୁଭିଲା କର୍ଣ୍ଣକୁ ଆନ ପଦ ।
ଚାରିଶ ହାତୀ ଯୋଦ୍ଧା ତିନିଶ କାଣ୍ଡରେ
ମାଇଲେ ସେ ଯୁଦ୍ଧେ ସାତ୍ୟକି ନିଃଶଙ୍କରେ ।
ତୁମ୍ଭ ରଥୀମାନଙ୍କୁ ତୁଲରେ ସାତ୍ୟକି
ଯୁଝିଲେ ଏକା ଧନୁଶର କରେ ଟେକି ।

ଦେବତା ଅସୁରଙ୍କ ଯୁଦ୍ଧକୁ ସେ ଯୁଦ୍ଧ
ବଳିଲା ହେ ରାଜନ ମନେ କର ବୋଧ ।
ଥରକୁ ଥର କ୍ରୋଧ ହୋଇଣ ସାତ୍ୟକି
ବିନ୍ଧନ୍ତେ କୁମ୍ଭ ସେନା ଭାଜିଲେ ନ ଟାକି ।
ସାତ୍ୟକି ଯେବେ କାଣ୍ଡ ବିନ୍ଧିଲେ ରାଜନ
ନ ପଡ଼ି ତଳେ ନେଲା ଯୋଦ୍ଧାଙ୍କ ଜୀବନ ।
ସାତ୍ୟକିଙ୍କ କାଣ୍ଡେ ତୁମ୍ଭର ସୈନ୍ୟ ଭିଡ଼ା
ଗୋଟିଏ ଯୁଦ୍ଧରେ ନୋହିଲେ ଜାଣ ଛିଡ଼ା ।
ସାତ୍ୟକିଙ୍କର କାଣ୍ଡ ନ ବାଜି ଗୋଟିଏ
ଥିଲାପରି ମୁହଁ ନ ଦେଖେ ନେତ୍ରେ ରାୟେ ।
ଯେ ରୂପେ ତୁମ୍ଭ ସୈନ୍ୟ ମାଇଲେ ଯୁଯୁଧାନ
ସେରୂପେ ମାରି ନ ଥିଲେଟି ଅରଜୁନ ।
ଯୁଯୁଧାନ ବିକ୍ରମ ନ ସହି ଦୁର୍ଯ୍ୟୋଧନ
କଲେ ଯାଇ ତାଙ୍କ ସଙ୍ଗତେ ଆୟୋଧନ ।
କୋପେ ସାତ୍ୟକିଙ୍କି ଏଗାର ରୋପ ବିନ୍ଧି
ରହିଲେ ତାଙ୍କ ଯୁଝିବାର ଦାଣ୍ଡ ରୁନ୍ଧି ।
ସାତ୍ୟକି ସାରଥିକି ବିନ୍ଧି ତିନିକାଣ୍ଡ
ଚାରିକାଣ୍ଡେ ଖୋଲିଲେ ଘୋଡ଼ାଙ୍କର ପିଣ୍ଡ ।
ଦୁଃଶାସନ ଷୋଡ଼ଶ ଶକୁନି ପଚିଶ
ଚିତ୍ରସେନ ସାତ ଦୁଃସହ ପଞ୍ଚଦଶ ।
ମାର୍ଗଣ ସାତ୍ୟକିଙ୍କ ଦେହକୁ ବଜାଇ
ବିନ୍ଧିଲେ ସେ ଯୁଦ୍ଧରେ ମାନସ ରଞ୍ଜାଇ ।
ସାତ୍ୟକି ସେ କାଣ୍ଡମାନଙ୍କୁ ବୋହି ଅଙ୍ଗେ
ତିନି ତିନି ବିନ୍ଧିଲେ ପ୍ରତ୍ୟେକେ ରଣରଙ୍ଗେ ।
ହସ୍ତାବାପ ତୁଳେ ଶକୁନି ଧନୁ କାଟି
ଦୁର୍ଯ୍ୟୋଧନ ଉରେ ବିନ୍ଧିଲେ ତିନିଗୋଟି ।
ଶଏ ଚିତ୍ରସେନକୁ ଦୁଃସହକୁ ଦଶ
ବିନ୍ଧିଲେ ଦୁଃଶାସନ ପରେ ଶରବିଂଶ ।
ତୁମ୍ଭର ଶଳା ଧରି ଆନ ଧନୁଟାଏ
ବିନ୍ଧିଲେ ତେରକଣ୍ଡା ସାତ୍ୟକିଙ୍କ କାୟେ ।
ଦୁଃସହ ତିନିଶର ଦୁର୍ମୁଖ ଦ୍ୱାଦଶ
ବିନ୍ଧିଲେ ସାତ୍ୟକିଙ୍କି ଦୁଃଶାସନ ଦଶ ।
ଦୁର୍ଯ୍ୟୋଧନ ରାଜା ବିନ୍ଧିଲେ ତେଏସ୍ତରି
ସାରଥିକି ଯେ ତିନି ବିଶିଖ ପ୍ରହାରି ।
ସାତ୍ୟକି ତୁମ ରଥୀଙ୍କର ମୃତ୍ୟୁ ପାଞ୍ଚ
ବିନ୍ଧିଲେ ପାଞ୍ଚ ପାଞ୍ଚ କାଣ୍ଡ ଧନୁ ଆଞ୍ଚ ।
ତୁମ୍ଭର ପୁଅ ସାରଥିକି ଭଲ୍ଲ କାଣ୍ଡେ
ସାତ୍ୟକି ବସାଇଲେ ଯମଙ୍କର ଦାଣ୍ଡେ ।
ସାରଥିରେ ହୀନ ହୁଅନ୍ତେ ଦୁର୍ଯ୍ୟୋଧନ
ଘୋଡ଼ାଏ ଏଣେ ତେଣେ ଗମିଲେ ରାଜନ ।
ଦୁର୍ଯ୍ୟୋଧନଙ୍କର ଦେଖିଣ ଏହି ଦଶା
ଭାଜିଲେ ତୁମ୍ଭ ସୁତେ ଛାଡ଼ି ଯୁଦ୍ଧଆଶା ।
ସାତ୍ୟକି ରହ ରହ ବୋଲି ଦେଇ ଡାକ
ପ୍ରହାରିଲେ ବାଛିଣ ଉତ୍ତମ ଶାୟକ ।
ଏହିରୂପେ ତୁମ୍ଭର ସଇନ ବିନାଶ
କରିଣ ମାନସରେ ବୋହି ମହାତୋଷ ।
ଅରଜୁନ ଥିବା ସ୍ଥାନକୁ ହେରିକରି
ଗଲେ ସେଠାରୁ ରଥ ବୁହାଇ ବାହାରି ।
ଅଶ୍ୱ ସାରଥିର ତୁଲରେ ନିଜ ରକ୍ଷା
କରି ତୁମ୍ଭ ସେନା ମାଇଲେ କରି କକ୍ଷା ।
ତାହା ଦେଖି ତୁମ୍ଭର ମହାରଥୀ ବୃନ୍ଦ
ବୋଇଲେ ଯୁଯୁଧାନ ପାରେ କରି ଦ୍ୱନ୍ଦ୍ୱ ।
ଯୁଦ୍ଧରେ ଏହାଙ୍କ ପରାୟେ କେହି ନାହିଁ
ଯେ ଯୁଝିଲେ ମଲେ ସାକ୍ଷାତେ ଦେଖିଲଇଁ ।
ଧୃତରାଷ୍ଟ୍ର ବୋଇଲେ  ମୋ ନିର୍ଲଜ ସୁତେ
ଗରଜୁତ ସଞ୍ଜୟ ଥାନ୍ତି ଅନୁବ୍ରତେ ।
ସାତ୍ୟକି ଘଇତାର କଥା କାଣ୍ଡରାଜି
ପାଇଣ ପିତା ତୁଣ୍ଡ କରିଦେଲେ ଗୁଞ୍ଜି ।
ପୋଡ଼ିଯାଉଟି ତାହାଙ୍କର ବଳ ବୀର୍ଯ୍ୟ
ଅର୍ଜୁନ ପରି କଲେ ସାତ୍ୟକି ତ ଓଜ ।
ପୁତ୍ର ଥାଇ ମୋହର ନ ଥିବାର ପରି
ହୀନବୀର୍ଯ୍ୟ ହେବାରୁ ମରୁଛି ବିଚାରି ।
ଏକା ଗୋଟିକକୁ ଯେ କୋଟି କୋଟି ସେନା
ଘେନି ଯୁଦ୍ଧେ ମୋ ସୁତେ ହୋଇଲେ ବିମନା ।
ସବୁ ପାଣ୍ଡୁସୁତେ ଟି ଏକାଠାରେ ରୋଳ-
କଲେ ତ କ୍ଷଣକରେ ପୂରାବନ୍ତେ କାଳ ।
କିପାଇଁ ସାହସ ନ ପାରି କରି ଯୁଦ୍ଧ
କଲା ଯେ ଦୁର୍ଯ୍ୟୋଧନ ଅତ୍ୟନ୍ତ ଦୁର୍ବୋଧ ।
ଦ୍ରୋଣ - ବାଡ଼ ଭାଙ୍ଗିଣ ଗଲେ ତ ସାତ୍ୟକି
ମୋର ସୁତ- ବେଉସା ରହି ପାରିବ କି ।
କୃତବର୍ମା ତ ଯେଉଁ ସାତ୍ୟକିଙ୍କି ରଣ
କରି ନ ପାରିଲେ କେ କରିବଟି ରଣ ।
ସାତ୍ୟକି କଲା ପରି ଅର୍ଜୁନ ତ କରି
ନାହାନ୍ତି ହେ ଜାଣ ସଞ୍ଜୟ ହିତକାରୀ ।
ସଞ୍ଜୟ ବୋଇଲେ ହେ ପୁତ୍ରସ୍ନେହେ ତୁମ୍ଭେ
ସୁବିଚାର କଲ ତ ଜାଣିଅଛୁ ଆମ୍ଭେ ।
କାହିଁକି ଏତେବେଳେ ବସିଅଛ ଭାଳି
ଶୁଣିଲେ ପରଲୋକେ ଦେବେଟି ହେ ଗାଳି ।
ଶୁଣ ଏବେ ଯୁଦ୍ଧ ରାଜନ କରି ସଧ
କହିବା ତୁମ୍ଭ କୁରୁମାନଙ୍କର ବଧ ।

ଦୁର୍ଯ୍ୟୋଧନ ଆଜ୍ଞାରେ ସପ୍ତ ତିନିଯାଏ
ସିପାହୀ ବାହାରିଲେ ଯୁଦ୍ଧକୁ ହେ ରାୟେ ।
ଏ ବାହାରେ କାମ୍ବୋଜ ଯବନ ବାହ୍ଲୀକ
ପୈଶାଚ ମନ୍ଦର ତଙ୍ଗଣାମ୍ବଷ୍ଠ ଶକ ।
କୁଳିନ୍ଦ ପାରଦାଦି ବୀରେ ହୋଇ ଗୋଟି
ଯୁଝିଲେ ଦୁର୍ଯ୍ୟୋଧନ ଆଜ୍ଞାକୁ ନ ମେଣ୍ଟି ।
ଏହା ଦେଖି ପାଞ୍ଚଶ ପାର୍ବତୀୟେ ଧାଇଁ
ଆସିଲେ ପଥରଯୋଦ୍ଧା ଯେ ନରସାଇଁ ।
ଶଏ ମହାରଥୀ ଯେ ଦଶଶତ ରଥୀ
ସହସ୍ର ଦୁଇ ଘୋଡ଼ା ସପ୍ତସଂଖ୍ୟା ହାତୀ ।
ଅସଂଖ୍ୟେୟ ପାଇକ ଏହାଙ୍କ ସଙ୍ଗତେ
ଯୁଝିବାକୁ ବାହାରିଲେ ହେ ମହାମତେ ।
ଦୁଃଶାସନ ତୁମ୍ଭର ଅନାଇଁ ସେନାଙ୍କୁ
ବୋଇଲେ ମାର ହେ ପାମର ସାତ୍ୟକିକୁ ।
ଆପଣା ଧନୁ କରେ ଟାଣି ସାତ୍ୟକିଙ୍କି
ଆଗୁଳି ଯୁଦ୍ଧ କଲେ ନୃପ ଡାକି ହାକି ।
ସେ ଯୁଦ୍ଧେ ଯା କଲେ ସାତ୍ୟକି ମହାରଥା
କହିବାକୁ ତାହା ହେ ନ ଆସୁଛି କଥା ।
ହାତୀ ରଥୀ ସିପାହୀ- କମଳକୁ ମନ୍ଥି
ଏକା ଦେଲେ ଜାଣ ସାତ୍ୟକି- ମତ୍ତହସ୍ତୀ ।
ଚକ ଅଖ ସ୍ତମ୍ଭ ତ ଈର୍ଷା ଧ୍ୱଜ ଛତି
ଧନୁଶରେ ଯେ ଗଦା ତୋମର ଶକତି ।
ପ୍ରାସ ଢାଲ ଖଡ଼୍ଗ ସାଞ୍ଜୁ ଅଳଙ୍କାର
ପତାକା ପାଗ ବସ୍ତ୍ର କୁଣ୍ଡଳ ଟୋପର ।
ଏମାନଙ୍କେ ବାଜନ୍ତେ ସାତ୍ୟକିଙ୍କ କାଣ୍ଡ
ପଡ଼ିଲେ ହେ ରାଜନ ଛିଡ଼ି ରଣଦାଣ୍ଡ ।
ଅଞ୍ଜନ ଐରାବତ ବାମନ ସୁପ୍ରତୀକ
ଏ କୁଳରେ ଜାତ ଯେ ସେ ହାତୀଙ୍କୁ ଶାୟକ ।
ବିନ୍ଧନ୍ତେ ଯୁଯୁଧାନେ ଅଚଳ ପରାୟେ
ପଡ଼ିଲେ ଶୋଇ ଶୋଇ ଯୁଦ୍ଧରେ ହେ ରାୟେ ।
ବନାୟୁଜ ପର୍ବତ ବାହ୍ଲୀକ କାମ୍ବୋଜ
ଦେଶଙ୍କରେଟି ଜାତ ଘୋଡ଼ାବ୍ରଜ ।
ବାଛି ବାଛି ସାତ୍ୟକି ସେ ଘୋଡ଼ାମାନଙ୍କୁ
ବରଗିଲେ ନୃପ ଯମଙ୍କ ନଗରକୁ ।
ଶତ ଶତ ସହସ୍ର ସହସ୍ର ସଂଖ୍ୟକ
ହୋଇକରି ମଲେ ତୁମ୍ଭର ପାଇକ ।
ବଞ୍ଚିଗଲେ ଯେତେକ ତୁମ୍ଭର ସଇନ
ମରିବା ଭାବି ପଳାଇଲେ ଛାଡ଼ି ରଣ ।
ଦୁଃଶାସନ ସାତ୍ୟକି ପରାକ୍ରମ ଦେଖି
କହିଲେ ସେ ଦସ୍ୟୁମାନଙ୍କୁ ଶର ଯୋଖି ।
କାହିଁପାଇଁ ଯୁଦ୍ଧରୁ ପଳାଉଛ ତୁମ୍ଭେ
ତୁମ୍ଭ ପୃଷ୍ଠ ସାହା ତ ହୋଇଅଛୁ ଆମ୍ଭେ ।
ସାତ୍ୟକି ତ ପଥର ଯୁଦ୍ଧ ନ ଜାଣନ୍ତି
ଶିଳା ଯୁଦ୍ଧେ ତାଙ୍କୁ ପଠାଅ ଯମ କତି ।
ତୁମ୍ଭ ପୁଅ ବଚନେ ସେ ଦସ୍ୟୁ ସେନାଏ
ପଥର ଧରି କରେ ଧାଇଁଲେ ହେ ରାୟେ ।
ସାତ୍ୟକିଙ୍କୁ ଚାରିଆଡ଼ରୁ ବେଢ଼ିକରି
ପଥର ବରଷିଲେ ମାରିବା ବିଚାରି ।
ସାତ୍ୟକି ତିରିଶ ନାରାଚେ ସେ ପଥର-
ଯାକ ପକାଇଲେ ହେ ଚୂରି ନରବର ।
ତୁମ୍ଭ ସୈନ୍ୟଲୋକଙ୍କ ମୁଣ୍ଡେ ସେ ପଥରେ
ପଡ଼ନ୍ତେ ପଡ଼ିଲେ ସେ ଯମଙ୍କ ହାତରେ ।
ପାଞ୍ଚଶଯୋଦ୍ଧା ପୁଣି ଧରିଣ ପଥର
ଧାଇଁଲେ ହେ କ୍ରୋଧରେ ହୋଇ ଥରଥର ।
ଯୁଯୁଧାନ ଶରେ ଛିଣ୍ଡାଇ ବାହୁ ଦୁଇ
ରହିଲେ ଶାଖାହୀନ ବୃକ୍ଷ ପ୍ରାୟ ହୋଇ ।
ଏହିରୂପେ ଆପଣା ଯୋଦ୍ଧାଯାକ ମରି
ଯାଆନ୍ତେ ଘେନିଲୁଁ ତା ଚମତ୍କାର ପରି ।
ଅମ୍ବଷ୍ଠ ଲକ୍ଷିଖ ଅଶକ ସେନାଯାକ
ଭିନ୍ନ ଭିନ୍ନ କଲାଟି ସାତ୍ୟକି ଶାୟକ ।
ତାହା ଦେଖି ସେମାନେ ପର୍ବତ ଉପାଡ଼ି
ଫିଙ୍ଗନ୍ତେ ସାତ୍ୟକି କାଣ୍ଡେ ସେ ଗଲେ ଉଡ଼ି ।
ପଥର ପଡ଼ିବାରେ ତୁମ୍ଭର ସୈନ୍ୟଯାକ
ପଳାଇଲେ ଯୁଦ୍ଧରୁ ହାରିଣ ବିବେକ ।
ଯେଉଁମାନଙ୍କର ମୁଣ୍ଡରେଟି ପଥର
ପଡ଼ିଲା ଜିଭ କାଢ଼ି ମଲେ ନରବର ।
ଏ ବାହରେ ବସାଦହିଟି ମୁଣ୍ଡ ଫାଟି
ବହନ୍ତେ ପୂରିଲା ଜାଣ ସେ ଯୁଦ୍ଧ ସୃଷ୍ଟି ।
ହତଶେଷ ହାତୀ ଆସନ୍ତି ପୁଣି ଯୁଝି
ବସିଲେ ସେ ଯାଇଣ ଯମଦାଣ୍ଡ ମଝି ।
ତୁମ୍ଭ ସଇନଯାକ ମଲୁଁ ବୋଲି ଡକା
କରନ୍ତେ ପୂରିଲା ସେ ଆକାଶରେ ଏକା ।
ଦ୍ରୋଣ ସେ ଶବଦକୁ ଶୁଣିକରି କାନେ
ସାରଥିକି ତ ଏହା କହିଲେ ବଚନେ ।
ସାତ୍ୟକି କୁରୁସୈନ୍ୟ ପକାଉଛି ମାରି
ମୋ ରଥକୁ ନିଅ ସେଠାକୁ ବାହିକରି ।
ପାଷାଣ ଯୋଦ୍ଧାଙ୍କର ସଙ୍ଗତରେ ଯୁଦ୍ଧ
କରୁଛନ୍ତି ସାତ୍ୟକି ହୋଇ ମହାକ୍ରୋଧ ।
ସାରଥୀର ପାଞ୍ଚଣବାଡ଼ିକି ନ ମାନି
ପଳାଉଛନ୍ତି ଘୋଡ଼ାମାନେ ରଥ ଘେନି ।

ସାରଥୀ ବୋଇଲା ହେ କି କହ ଗୋସାଇଁ
ପାଣ୍ଡବେ ସୈନ୍ୟ ଘେନି ଆସୁଛନ୍ତି ଧାଇଁ ।
ତୁମ୍ଭ ସୈନ୍ୟଯାକଟି ନ କରିଣ ରଣ
ପଳାଇ ଲୁଚିବାକୁ ଖୋଜୁଛନ୍ତି ବନ ।
ସାତ୍ୟକି ତ ଦୂରରେ କରନ୍ତି ସମର
ଯେ ଉଚିତ ହେବ ବିଚାର ତାହା କର ।
ଏହିରୂପେ ଦ୍ରୋଣ ହୁଅନ୍ତେ କଥାବାର୍ତ୍ତା
କୁରୁସୈନ୍ୟ ମାରି ସାତ୍ୟକି ଧନୁର୍ବେର୍ତ୍ତା ।
ଅର୍ଜ୍ଜୁନଙ୍କୁ ଦେଖିବା ବୋଲି ମନେ ପାଞ୍ଚି
ବାହାରିଲେ ନାରାଚମାନ ମୁଞ୍ଚି ମୁଞ୍ଚି ।
ସେ ଘାଏ କୁରୁସେନା ହୋଇଣ ଆକୁଳ
ଆଶ୍ରୟ କଲେ ସେ ଆସି ଦ୍ରୋଣଙ୍କର ବଳ ।
ଦୁଃଶାସନ ମଧଟି ରଥରୁ ବୁହାଇ
ରଖିଲେ ରଥ ଦ୍ରୋଣ ସମୀପରେ ନେଇ ।
ଦେଖି ଦୁଃଶାସନକୁ ସମୀପରେ ଦ୍ରୋଣ
ବୋଇଲେ ନାହିଁକି ହେ ତୁମ୍ଭ ବହୁଟାଣ ।
ରଥୀମାନେ ତୁମ୍ଭର କାହିଁକି ପଳାଇ
ଆସୁଅଛନ୍ତି ତାହା କହ ତ ବଢ଼ାଇ ।
ରାଜାଙ୍କ ପୁଅ ରାଜାଭାଇ ଯୁବରାଜ
ବୋଲାଉଥିଲ ପଳାଉଛ ନାହିଁ ଲାଜ ।
ଦ୍ରୌପଦୀଙ୍କି ଯେ ଗାଳିଦେଇଣ ବସନ
ଝିଙ୍କୁଥିଲ ଉଲଗ୍ନ ଦେବାକୁ ଦର୍ଶନ ।
ଏବାହାରେ ବଚନେ ପାଣ୍ଡବଙ୍କୁ ଗାଳି
ଦେଲ ବାଇ ହୋଇଣ ଷଣ୍ଢତିଳ ବୋଲି ।
ଏବେ ତ କହ କିପାଁ ପଳାଇ ଆସିଲ
ବୋଲିବା ବଚନ କି ମନୁଁ ପାସୋରିଲ ।
ପାଞ୍ଚାଳ ପାଣ୍ଡବଙ୍କୁ କରିଛ ବଇର
ଏହା ସାତ୍ୟକିଙ୍କି ଡରୁଛ ହୋଇ ବୀର ।
ଜୁଆଖେଳାବେଳେ ପକାଇ ପଶାକାଠି
ଆଣିଥିଲ ପାଣ୍ଡବ ଧନ କରି ଲୁଟି ।
ସେହି କଥାକୁ ଏବେ ସୁମରିଣ ପିଠି
ଦେବାର ଉଚିତ କି ଯୁଝ ବଳି ଉଠି ।
ପାଣ୍ଡବେ ଅପ୍ରିୟ ବୋଲିବା କର୍ତ୍ତା ତୁମ୍ଭେ
ଯୁଦ୍ଧରୁ ପଳାଉଛ ସହିବୁଁ କି ଆମ୍ଭେ ।
ମାନ ଦର୍ପଗଞ୍ଜନ ଗଲା ତୁମ୍ଭ କାହିଁ
ବୋଇଲେ ନ କହ ରହିଛ ତୁନି ହୋଇ ।
ଆଶୀବିଷ ପରି ତ ପାଣ୍ଡବଙ୍କ କ୍ରୋଧ
ତହିଁରେ ପଡ଼ିଅଛ ନୋହିବ କି ବଧ ।
ବାହୁବଳ ଆଳୟ କରି ସାତ୍ୟକିଙ୍କି
ଯୁଝ ମୁଁ ବୋଲୁଅଛି ଏବେ ଧନୁ ଟେକି ।

ରାଜାଭାଇ ହୋଇ ତ ପଳାଉଛ ଡରି
ଆମ୍ଭେ କିରୂପରେ ଯୁଝିବୁଁ ଶସ୍ତ୍ର ଧରି ।
ସାତ୍ୟକି ବଳକୁ ତ ଡରି ପଳାଉଛ
କିରୂପେ ପାଣ୍ଡବେ ଯୁଝିବ ହୋଇ କଛ ।
ସାତ୍ୟକି ତ ବଳୀ ଅରଜୁନ ପରାୟେ
ନୁହନ୍ତି ପଳାଉଛ କିପାଁ ତାଙ୍କ ଭୟେ ।
ଜୀବନକୁଟି ଯେବେ କରିଅଛ ଆଶ
ତେବେ ପାଣ୍ଡୁ ସୁତେ ଶରଣ ଯାଇ ପଶ ।
ଅରଜୁନର କାଣ୍ଡ ଗଣ୍ଡିରେ ତୁମ୍ଭର
ନ ବାଜୁଁ ଯାଇଣ କହୁଛି ପ୍ରୀତି କର ।
ନ ପଡୁ ତୁମ୍ଭ ଦେହେ ଭୀମ ଗଦାବାଡ଼ି
ବୋଧ ଧର୍ମରାଜାଙ୍କୁ ପାଦତଳେ ପଡ଼ି ।
କୃଷ୍ଣ ଯୁଧିଷ୍ଠିରଟି ନୋହିଛନ୍ତି କ୍ରୋଧ
କହିଲେ ବିନୟେ ରହିବେ ହୋଇ ବୋଧ ।
ପୂର୍ବରୁ ତ ଭୀଷ୍ମ ତୁମ୍ଭଙ୍କୁ କହିଛନ୍ତି
ପାଣ୍ଡୁସୁତେ ଅଜେୟ ଜଗତେ ବୋଲାନ୍ତି ।
ପ୍ରୀତି ଛାଡ଼ି ଅପ୍ରୀତି ଯାହା ଅରଜୁଛ
ଭେଟିବଟି ଯାଇ ସମସ୍ତେ ସୂର୍ଯ୍ୟବସ୍ତ ।
ସେ କଥାକୁ ତ ତୁମ୍ଭେ ବଡ଼ଭାଇ ତୁଲେ
ସ୍ୱୀକାର ନ କଲେ ଜାଣିଛୁ ଆମ୍ଭେ ଭଲେ ।
ଏବେ ସବୁକଥା ତୁମ୍ଭର ଗଲା ଜଣା
ଯୁଝ ହେ ସାତ୍ୟକିଙ୍କି ନୋହି ଭୟମନା ।
ତୁମ୍ଭର ହୀନ ହୋଇବାରେ କୁରୁବଳ
ପଳାଉଛନ୍ତି ଦେଖ ହୋଇଣ ଦୁର୍ବଳ ।
ଏହା ଜାଣିଣ ଦୁଃଶାସନ ତୁନି ହୋଇ
ଗଲେ ଯହିଁ ଥିଲେ ସାତ୍ୟକି ଯୁଦ୍ଧେ ରହି ।
ମ୍ଳେଚ୍ଛସୈନ୍ୟ ସଙ୍ଗତେ ବହୁତ ଧଇଲେ
ଯୁଯୁଧାନ ତୁଲରେ ଆୟୋଧନ କଲେ ।
ପାଣ୍ଡବ ପାଞ୍ଚାଳଙ୍କଠାକୁ ଦ୍ରୋଣଗୁରୁ
ବୁହାଇଲେ ତ ରଥ ନୋହି କିଛି ଭୀରୁ ।
ନାନାଜାତିର ଶସ୍ତ୍ରମାନଙ୍କୁ ପ୍ରହାରି
ପାଣ୍ଡବଙ୍କ ସେନାକୁ ପକାଇଲେ ମାରି ।
ପାଞ୍ଚାଳପୁତ୍ର ବୀରକେତୁ ନ ସହିଲେ
ଦ୍ରୋଣଙ୍କ ଉପରେ ଶାୟକ ବରଷିଲେ ।
ଦ୍ରୋଣେ ପାଞ୍ଚକାଣ୍ଡ ଧ୍ୱଜକୁ ବିନ୍ଧି କାଣ୍ଡେ
ସାରଥିକି ବିନ୍ଧିଲେ ସାତଶରଚାଣ୍ଡେ ।
ଦ୍ରୋଣାଚାର୍ଯ୍ୟ ଯୁଦ୍ଧେ ହୋଇଲେ ହେଲେ ତମୀ
ନ ପାଇଲେ ବୀରକେତୁକୁ ଅତିକ୍ରମି ।
ପାଞ୍ଚାଳେ ଯୁଧିଷ୍ଠିର ଜୟେ ଦେଇ ମନ
ବେଢ଼ି ଦ୍ରୋଣଗୁରୁଙ୍କୁ କଲେ ଆୟୋଧନ ।

ତୋମର ଶର ଶକ୍ତି ପରଶୁ ଖଡ଼ଗ
ମାଇଲେ ଦ୍ରୋଣଗୁରୁ ଅଙ୍ଗେ ବହି ରାଗ ।
ଦ୍ରୋଣଙ୍କର ଶରମାନଙ୍କୁ ଶରେ କାଟି
ବିନ୍ଧିଲେ ହେ ରାଜନ ଭିଡ଼ି ମୁଷ୍ଟିପାଟି ।
ଦ୍ରୋଣଙ୍କ ଶରଜାଳ ପାଇଣ ପାଞ୍ଚାଳ-
ବଳ ଅତିଶୟ ହୋଇଣ ଆକୁଳ ।
ପବନେ ତୁଳାକୁଢ଼ ଉଡ଼ିବା ପରାୟେ
ଦ୍ରୋଣ କାଣ୍ଡେ ଉଡ଼ିଗଲେଟି ସେହୁ ରାୟେ ।
ସୂର୍ଯ୍ୟ ଅଗ୍ନି ପରାୟେ ଶରଟାଏ ଦ୍ରୋଣ
ସନ୍ଧିଲେ ସହିପାରେ ପାଡ଼ିଲେ ଭାର୍ଗଣ ।
କର୍ଣ୍ଣଯାଏ ଯେ ଧନୁ କଟ କଟ କରି
ଆଣିଲେ ଦ୍ରୋଣଗୁରୁ ଶରକୁ ଓଟାରି ।
ବୀରକେତୁ ହୃଦକୁ ଉଦ୍ଦେଶି ଛାଡ଼ିଲେ
ପଡ଼ିଲା ସେ ଶର ଶବଦ କରି ଭଲେ ।
ସାଞ୍ଜୁ ତୁଳେ ନିକିଳି ବୀରକେତୁ ହୃଦ-
ବିଳେ ଗଳି କଲା ଦ୍ରୋଣଙ୍କର ପ୍ରମୋଦ ।
ସେ ଘାଏ ବୀରକେତୁ ପଡ଼ି ରଥ ତଳେ
ବେଢ଼ାଏ ଗଡ଼ିଯାଇ ପ୍ରାଣକୁ ଛାଡ଼ିଲେ ।
ଚିତ୍ରକେତୁ ଚିତ୍ରବର୍ମା ଯେ ଚିତ୍ରରଥ
ସ୍ୱଧନ୍ୱାଦି ଦ୍ରୋଣ ସମୀପେ ରଖି ରଥ ।
କକଡ଼ା ମାସେ ମେଘ ପ୍ରାୟେ ଶର ଧାରା
ବରଷି ଦ୍ରୋଣ ରଥ କରିଦେଲେ ତୋରା ।
କ୍ରୋଧ ହୋଇ ଦ୍ରୋଣ ଦ୍ରୁପଦସୁତଙ୍କର
ଘୋଡ଼ା ସାରଥିକି ମାଇଲେ ନରବର ।
ଭଲ ଭାଲି କାଣ୍ଡମାନଙ୍କେ ମୁଣ୍ଡରାଜି
ଦ୍ରୁପଦ ସୁତଙ୍କର କାଟିଲେ ଗରଜି ।
ରଥ ଆକାଶରୁଟି ନକ୍ଷତ୍ର ପରାୟେ
ପଡ଼ିଲେ ସେହୁ ମହୀ ମଧରେ ସଭିଏ ।
ଭାଇଙ୍କର ମରଣ ଦେଖି ଧୃଷ୍ଟଦ୍ୟୁମ୍ନ
ନୟନ - ବନଜରେ ଅଶ୍ରୁ କଲେ ପୂର୍ଣ୍ଣ ।
ଦ୍ରୋଣଙ୍କରଟି ସର୍ପ ରଥକୁ ଫେରାଇ
ବିନ୍ଧିଲେ ଶର ବାହୁବଳକୁ ଦେଖାଇ ।
ଧୃଷ୍ଟଦ୍ୟୁମ୍ନ ପରେ ହୁଅନ୍ତେ ଦ୍ରୋଣ ରୁନ୍ଧି
ଭୟେ ତୁମ୍ଭ ସେନାଏ ନ ପାରିଲେ ବିନ୍ଧି ।
ଦ୍ରୋଣ ତ ଧାନୁକିରେ ଅଟନ୍ତି ଆଚାର୍ଯ୍ୟ
ଏ ବଳରେ ହସି ଯୁଝିଲେ ମହାରାଜ ।
ଧୃଷ୍ଟଦ୍ୟୁମ୍ନ ଚାଣ୍ଡେ ଓଟାରିଣ କୋଦଣ୍ଡ
ବିନ୍ଧିଲେ ଦ୍ରୋଣଙ୍କ ବକ୍ଷକୁ ନଉକାଣ୍ଡ ।
ଧୃଷ୍ଟଦ୍ୟୁମ୍ନ କାଣ୍ଡରେ ଗାତ୍ରେ ପୀଡ଼ା ପାଇ
ବସିଲେ ଦ୍ରୋଣ ରଥେ ମୁଣ୍ଡେ ହାତ ଦେଇ ।

ତାହା ଦେଖି ଧୃଷ୍ଟଦ୍ୟୁମନ ମହାଭେଣ୍ଡା
ଡେଇଁ ଦ୍ରୋଣ ରଥେ ବସିଲେ ଧରି ଖଣ୍ଡା ।
ଧୃଷ୍ଟଦ୍ୟୁମନଙ୍କୁ ଦେଖି ସେ ସମୀପରେ
ଗଣ୍ଠି ସାନ କାଣ୍ଡ ବିନ୍ଧିଲେ ଝଟତିରେ ।
ସେ ଶିରପୀଡ଼ା ପାଇ ଦ୍ରୁପଦନନ୍ଦନ
ନିଜ ରଥେ ବସିଣ କଲେ ଆୟୋଧନ ।
ତାହା ଦେଖିକରି ବୋଇଲେ ଦ୍ରୋଣଗୁରୁ
ଭାଗ୍ୟରେ ବଞ୍ଚିଗଲ ଆଜ ମୋ ମୁଖରୁ ।
ଦ୍ରୋଣ ଦୃଷ୍ଟଦ୍ୟୁମନ ଦୁହିଙ୍କ ଯୁଦ୍ଧକୁ
ଉପମା ନାହିଁ କିସ କହିବି ତୁମ୍ଭଙ୍କୁ ।
ଆକାଶେ ଥାଇଣ ଚାରଣ ସିଦ୍ଧଗଣ
ଦୁହିଙ୍କି ପ୍ରଶଂସିଲେ ବହୁତ ହେ ଜାଣ ।
ଦ୍ରୋଣ ଧୃଷ୍ଟଦ୍ୟୁମନ ସାରଥି ମୁଣ୍ଡଟି
ପକ୍ୱତାଳ ପରାୟେ ପକାଇଲେ କାଟି ।
ସାରଥିରେ ହୀନ ଯେ ଧୃଷ୍ଟଦ୍ୟୁମ୍ନ ରଥ
ହୁଅନ୍ତେ ଘୋଡ଼ାଏ ଭାଜିଲେ ନରନାଥ ।
ଯାଆନ୍ତେ ଧୃଷ୍ଟଦ୍ୟୁମ୍ନ ଯୁଦ୍ଧଦାଣ୍ଡ ଛାଡ଼ି
ପାଞ୍ଚାଳଙ୍କୁ ଦ୍ରୋଣ ଯେ ମାଇଲେ ଘଉଡ଼ି ।
ପାଣ୍ଡବ ପାଞ୍ଚାଳେ ଏରୂପେ ଜିଣି ଦ୍ରୋଣ
ବ୍ୟୂହଦ୍ୱାର ଜଗି ରହିଲେ ନରରାଣ ।
ପାଣ୍ଡବ ରଥିଏ ଦ୍ରୋଣଙ୍କୁ ଜିଣିବାକୁ
ନ କଲେ ମନ ଆଉ କହିବି ତୁମ୍ଭଙ୍କୁ ।
ଦୁଃଶାସନ ସାତ୍ୟକିଠାକୁ ଯୁଝିଗଲେ
କହିବା ତା ଶୁଣ ହେ ମହାରାଜ ଭଲେ ।
ଛଅସ୍ତରିଟି କାଣ୍ଡ ବିନ୍ଧି ଦୁଃଶାସନ
ସାତ୍ୟକିଙ୍କି କିମ୍ପାଇ ନ ପାରିଲେ ଜାଣ ।
ସାତ୍ୟକି ଦୁଃଶାସନ ଦେହେ ଶର- ସାଲ
ପହରାଇ ଦେଲେ କାଢ଼ି ଦେଇ ଛାଲ ।
ଦୁଃଶାସନର ପୀଡ଼ା ଦେଖି ଦୁର୍ଯ୍ୟୋଧନ
ତ୍ରିଗର୍ତ୍ତଙ୍କୁ ବୋଇଲେ କର ଆୟୋଧନ ।
ଏକା ଯୁଯୁଧାନ ଆମ୍ଭଙ୍କୁ ହୀନବଳ
ଦେଖିଣ ମାରୁଅଛି ଖୋଜି ଆମ୍ଭ ବଳ ।
ତୁମ୍ଭେମାନେ ଯେବେ କରିବଟି ସମର
ଜୀଇଁଯିବ ନିକି ସାତ୍ୟକି ହୋଇ ବୀର ।
ଦୁର୍ଯ୍ୟୋଧନ ବଚନ ଶୁଣି କରି କାନେ
ଅସ୍ତ୍ରହସ୍ତେ ତ୍ରିଗର୍ତ୍ତେ ବସିଲେକ ଯାନେ ।
ନ ମାଇଲେ ଲେଉଟି ନ ଆସିବ ଭାବି
ମେଘ ପରି ଘୋଟିଲେ ଯୁଯୁଧାନ ରବି ।
ଯୁଯୁଧାନ ଶରବ୍ରାତରେ ଆହେ ରାୟେ
ତ୍ରିଗର୍ତ୍ତଙ୍କୁ ନାଶିଲେ ଦେଖିଲୁଁ ସଭିଏଁ ।

ଭଲ ଭଲ ପାଞ୍ଚଶ ଯୋଦ୍ଧାଙ୍କର ପ୍ରାଣ
ଘେନି ପକାଇଲେ ବିନ୍ଧିଣ ମୁନ ବାଣ ।
ରଥ ଧ୍ୱଜ ପତାକା ଅଶ୍ୱ ଗଜ ତୁଲେ
ପଡ଼ିକରି ଗଡ଼ିଲେ ଦେଖିଥିଲୁଁ ତୋଳେ ।
ଦ୍ରୋଣଙ୍କୁ ପରିତ୍ରାଣ ମଣି ତୁମ୍ଭ ଲୋକେ
ପଳାଇଲେ ଦ୍ରୋଣଙ୍କ ସମୀପକୁ ଥୋକେ ।
ସାତ୍ୟକି - ସୁବର୍ଣ୍ଣଙ୍କ ଭୟେ ତୁମ୍ଭ ବଳ-
ସର୍ବ ଆଶ୍ରେ କଲେଟି ଯାଇ ଦ୍ରୋଣବିଳ ।
ପାଞ୍ଚଶ ରଥୀ ମାରି ସମରେ ସାତ୍ୟକି
ପାର୍ଥ ସମୀପକୁ ବାହିଲେ ରଥଟିକି ।
ଦୁଃଶାସନ ଯୁଯୁଧାନକୁ ଆୟୋଧନ
କଲେ ପୁଣି ବିନ୍ଧି ନଅଟି ମାରଗଣ ।
ଗୃଧ୍ରପକ୍ଷଲଗା ନିଶିତ ପାଞ୍ଚକାଣ୍ଡ
ବିନ୍ଧିଲେ ଯୁଯୁଧାନ ଜ୍ୱାଳି କ୍ରୋଧେ ପିଣ୍ଡ ।
ଦୁଃଶାସନ ଯେ ସାତ୍ୟକିଙ୍କି ଦୁଇଦଶ
କାଣ୍ଡ ବିନ୍ଧି ଆଉଁସି ଦେଲେ ଥରେ ନିଶ ।
ସାତ୍ୟକି ଦୁଃଶାସନ ଉରକୁ ଲଗାଇ
ତିନିକାଣ୍ଡ ବିନ୍ଧିଲେ ଜୟ ନେବାପାଇଁ ।
ଚାରିକାଣ୍ଡେ ଚାରିଘୋଡ଼ାଙ୍କ ପ୍ରାଣ ନେଲେ
କାଣ୍ଡକେ ସାରଥିକି ଯମ ଭେଟାଇଲେ ।
ଧନୁ ହସ୍ତାବାପ ଧ୍ୱଜ ଯେ ରଥ ଶକ୍ତି
କାଟିଲେ ଯୁଯୁଧାନ ଦେଖାଇ ଯୁଦ୍ଧେ ଶକ୍ତି ।
ଦୁଇ ପାର୍ଷ୍ଣିଙ୍କ ସାରଥିଙ୍କର ଜୀବନ
ହରି ଦୁଃଶାସନ ବଧରେ ଦେଲେ ମନ ।
ଏହା ଦେଖି କରି ତ୍ରିଗର୍ତ୍ତ ସେନାପତି
ମଲେ ଦୁଃଶାସନ ଭାବନା କରି ମତି ।
କର ଧରି ଦୁଃଶାସନକୁ ନିଜ ରଥେ
ବସାଇଣ ଗଲେ ନ ରହି ଯୁଦ୍ଧ ପଥେ ।
ସାତ୍ୟକି ଭୀମଙ୍କର ପ୍ରତିଜ୍ଞା ସୁମରି
ଛାଡ଼ିଦେଲେଟି ଦୁଃଶାସନକୁ ନ ମାରି ।
ଏରୂପେ ଦୁଃଶାସନ ସୁତଙ୍କୁ ତୁମ୍ଭର
ଜିଣି ଯୁଦ୍ଧଦାଣ୍ଡେ ସାତ୍ୟକି ମହାବୀର ।
ଅରଜୁନ ଯିବାର ବାଟେ ବାହାରିଲେ
ତୁମ୍ଭ ଥାଟ ଆଗୁଳି ତାଙ୍କୁ ନ ପାରିଲେ ।
ଧୃତରାଷ୍ଟ୍ର ବୋଇଲେ ମୋ ରଥୀଏ ମାଇ-
ହେଲେ କି ହେ ସଞ୍ଜୟ କହ ତା ବତାଇ ।
ଏହା ହୋଇଣ ଯୁଯୁଧାନ ମୋର ବଳ
ମାଇଲେ କେଡ଼େ ମନ୍ଦ ଅଟେ ମୋ କପାଳ ।
ନୋହିଲେ ବା ସାତ୍ୟକି ଯିବାବାଟେ ଲୋକେ
ନ ଥିଲେ ଏଣୁ ଗଲେ ଜାଣ ସେ ନିଃଶଙ୍କେ ।
ଜଣେ ହୋଇ ବହୁତ ଜନଙ୍କର ପ୍ରାଣ
ନେବାର ଚମତ୍କାର ପାଉଛି ମୁଁ ଜାଣ ।
ସଞ୍ଜୟ ବୋଇଲେ ହେ ଶୁଣ ନରପତି
ତୁମ୍ଭ ସେନା ଯୁଦ୍ଧରେ ଦେଇ କରି ମତି ।
ଗୋଟି ହୋଇ ରହନ୍ତେ ପ୍ରଳୟାଗ୍ନି ପ୍ରାୟେ
ଦିଶିଲେ ସେ ଅତ୍ୟନ୍ତ ଭୟଙ୍କର ରାୟେ ।
ଏହା ଦେଖି ତୁମ୍ଭଙ୍କୁ ଭାଗ୍ୟବନ୍ତ ଅତି-
ଅୟ କରି ଦେଖିଲୁ ଜାଣ ନରପତି ।
ଚାରଣ ଦେବତା ଏ ତୁମ୍ଭ ସଇନ୍ୟକୁ
ଦେଖି ପ୍ରଶଂସିଲେ ହେ ବହି ହରଷକୁ ।
ଜୟଦ୍ରଥ ରକ୍ଷା ହେବାକୁ ଦ୍ୱିଜବର
ଦ୍ରୋଣ କଲେ ବୂ ୍ୟହଟି ବ୍ୟୂହଙ୍କରେ ସାର ।
ତୁମ୍ଭର ସେନାଙ୍କର ତୁଣ୍ଡର ଚହଳ
ଉଣା କଲା ସମୁଦ୍ର ଗରଜିବା ବଳ ।
ପାଣ୍ଡବଙ୍କ ସୈନ୍ୟରେ ତୁମ୍ଭ ସେନା ପରି
ତୁଣ୍ଡ ଚହଳ ହେ ଶୁଭିଲା ଦଣ୍ଡଧାରୀ ।
ଭୀମ ଯୁଧିଷ୍ଠିର ନକୁଳ ସହଦେବ
ଧୃଷ୍ଟଦ୍ୟୁମ୍ନ ଆଦି ସକଳ ନରଦେବ ।
ବ୍ୟୂହଦ୍ୱାରା ରୁନ୍ଧି ଦ୍ରୋଣକୁ ଶର ବିନ୍ଧି
ଦେଲେହେଲେଦ୍ରୋଣ ନ ଦେଲେ ବ୍ୟୂହଭେଦି
ଏହି ସକାଶରୁ ଯେ ଭୀମ ଧୃଷ୍ଟଦ୍ୟୁମ୍ନ
କ୍ରୋଧହୋଇସୈନ୍ୟେବୋଇଲେ ମାରଦ୍ରୋଣ
କୃଷ୍ଣାର୍ଜୁନ ସାତ୍ୟକି ବ୍ୟୂହେ ତ ଅଛନ୍ତି
ଜୟଦ୍ରଥ ବଧରେ ଦେଇ କରି ମତି ।
ଆମ୍ଭେ ଦ୍ରୋଣଗୁରୁଙ୍କୁ ଯୁଦ୍ଧେ ଦେଲେ ଦଶା
ଭାଜିଯିବ କୁରୁଙ୍କ ଯୁଝିବା ଭରଷା ।
ଶ୍ରୀକୃଷ୍ଣ ଅରଜୁନ ହୋଇଲେ ନିଧନ
ଆମ୍ଭଙ୍କୁଟି ଖୋଜି ମାରିବା ଦୁର୍ଯ୍ୟୋଧନ ।
ଏହା ଜାଣିକରି ସଂଯତଚିତ୍ତ ହୋଇ
ଯୁଝି କୁରୁସେନାଙ୍କୁ ଜାଣ କହୁଥାଇଁ ।
ଏହି ରୂପେ ପାଣ୍ଡବରଥୀଙ୍କ ବଚନ
ଶୁଣିକରି ପାଣ୍ଡବସେନା ଯୋଦ୍ଧାଜନ ।
ପ୍ରାଣଛାଡ଼ି କୁରୁସେନାଙ୍କୁ ଶରଧାଡ଼ି
ସରଜିଲେ ନୃପ ଆଗକୁ ଗୋଡ଼ ମାରି ।
ତୁମ୍ଭ ଲୋକମାନେ ତ ଅଟନ୍ତି ମନୁଆ
ତା ଦେଖି ରହିଲେ ଧନୁକୁ କରି ନୁଆ ।
ସାତ୍ୟକି ତୁମ୍ଭ ସୈନ୍ୟଯାକ ଅତିକ୍ରମି
ଗଲେ ପାର୍ଥଠାକୁ ହେ ହସ୍ତିନାକୁ ସ୍ୱାମୀ ।
ରଥୀଙ୍କ ସୁବର୍ଣ୍ଣ କବଚେ ସୂର୍ଯ୍ୟକର
ପଡ଼ନ୍ତେ ଦିଶିଲେ ଅତ୍ୟନ୍ତ ତେଜସ୍କର ।

ଦୁର୍ଯ୍ୟୋଧନ ରାଜା ପାଣ୍ଡବ ବାହିନୀରେ
ପରବେଶ ହେଲେ ଯୁଝିବା ଶରଧାରେ ।
କ୍ରୋଧରେ ଦୁର୍ଯ୍ୟୋଧନ ଦେଲେ ଶରେ ଛାଇ
ପାଣ୍ଡୁସେନାଙ୍କୁ ହେ ହସ୍ତିନାନରସାଇଁ ।
ପାଣ୍ଡବସେନାଙ୍କର ତୁମ୍ଭ ସୁତ ତୁଳେ
ପ୍ରବର୍ତ୍ତି ରାଜନ ମହାଯୁଦ୍ଧ ଭଲେ ।
ଧୃତରାଷ୍ଟ୍ର ବୋଇଲେ ଏହା ଦୁର୍ଯ୍ୟୋଧନ
କଲା ତ ଯାଇଁ ପାଣ୍ଡବଙ୍କୁ ଆୟୋଧନ ।
ନ ପଳାଇ ଯୁଦ୍ଧେ ଧନୁ ଧରିଣ କରେ
ରହିଲାଟି କହ ମୋ ସୁତ ନିଃଶଙ୍କରେ ।
ସୁକୁମାର ହୋଇ ତ ବଢ଼ି ଅଛି ସୁତ
ପୁଣି ତ ପାଇଅଛି ହସ୍ତିନା ରାଜତ୍ୱ ।
ସମସ୍ତ ପ୍ରକାରେ ସମସ୍ତ ନୃପଙ୍କର
ଅଟଇ ମୋର ପୁତ୍ର ଆଦର ପାତର ।
ଯୁଝିଲେ ତ ଯାଇଣ ହୋଇ ନିଃସହାୟ
ଡରି ନ ଥିବ ଅବା ମୋହର ତନୟ ।
ସଞ୍ଜୟ ବୋଇଲେ ହେ ଦୁର୍ଯ୍ୟୋଧନଙ୍କର
ବହୁତ ଲୋକ ତୁଳେ ହୋଇଲା ସମର ।
ଯେଉଁରୂପେ ସେରୂପେ କହୁଅଛି ମୁହିଁ
ବସିଣ ଶୁଣ ରାୟେ ଏକମନ ହୋଇ ।
ଦୁର୍ଯ୍ୟୋଧନ ପାଣ୍ଡବସେନା- ପଦ୍ମକୁଳ
ହସ୍ତୀପରି ଦଳିଲେ ଦେଖାଇଣ ବଳ ।
ତାହା ଦେଖି ଭୀମସେନଙ୍କୁ ଆଗକରି
ପାଞ୍ଚାଳେ ଯୁଦ୍ଧ କଲେ ନାନାଶସ୍ତ୍ର ଧରି ।
କେକୟଙ୍କୁ ବାର ଯେ ଶିଖଣ୍ଡୀ ଙ୍କି ଶତ
ଭୀମଙ୍କୁ ଦଶ ଯୁଧିଷ୍ଠିରଙ୍କୁ ସପତ ।
ନକୁଳ ସହଦେବ ବିରାଟ ଦ୍ରୁପଦ
ଏମାନଙ୍କୁ ପ୍ରତ୍ୟେକେ ହୋଇ ମହାମୋଦ ।
ଦ୍ରୌପଦୀସୁତଙ୍କର ତୁଳରେ ମିଶାଇ
ତିନି ତିନି ବିନ୍ଧିଲେ ହୃଦେ କ୍ରୋଧ ବହି ।
ଏବାହାରେ ଧୃଷ୍ଟଦ୍ୟୁମନଙ୍କୁ ଚଳି
କୋଡ଼ିଏଟି ବିନ୍ଧିଲେ ଦୁର୍ଯ୍ୟୋଧନ ବଳୀ ।
ହାତୀ ରଥଚଢ଼ା ଯୋଦ୍ଧାଙ୍କୁ ତୁମ୍ଭ ସୁତ
କାଣ୍ଡକରେ କଲେ ଯମଙ୍କ କରଗତ ।
ବିନ୍ଧିବା ସନ୍ଧିବାର ଦୁର୍ଯ୍ୟୋଧନଙ୍କର
ସବୁରି ନୟନକୁ ନୋହିଲା ଗୋଚର ।
ଯୁଧିଷ୍ଠିରରାଜା ଯେ ଦୁର୍ଯ୍ୟୋଧନଙ୍କର
ଧନୁକାଟି ପକାଇ ଦେଲେ ପେଷି ଶର ।
ଦୁର୍ଯ୍ୟୋଧନ ଦେହେ ବଜାଇ ଦଶକାଣ୍ଡ
ବିନ୍ଧନ୍ତେ ସେ ଗଳିଲେ ସାଞ୍ଜୁ ତୁଳେ ପିଣ୍ଡ ।
ପାଣ୍ଡବେ ମୋଦ ଧରି ଯୁଧିଷ୍ଠିର ପାଶେ
ରହିକରି ପ୍ରଶଂସାକଲେ ଅତି ତୋଷେ ।
ଦୁର୍ଯ୍ୟୋଧନ ରାଜା ଧରିଣ ଆନ ଧନୁ
କ୍ରୋଧବଶେ କମ୍ପାଇ ଦେଇ ନିଜ ତନୁ ।
ରହ ରହ ବୋଲିଣ ଯୁଧିଷ୍ଠିର ପାଶେ
ଧାଇଁଲେ ସେ ଶରକୁ ପ୍ରହାରି ନିରାଶେ ।
ପାଞ୍ଚାଳମାନେ ତା ନ ସହି ଦୁର୍ଯ୍ୟୋଧନ
ସମ୍ମୁଖରେ ବିଶିଖ ବିନ୍ଧିଲେ ବହନ ।
ଦ୍ରୋଣ ସେ ସମୟରେ ପାଞ୍ଚାଳମାନଙ୍କୁ
ବିନ୍ଧିଲେ ବାଛିଟି ଉତ୍ତମ ମାର୍ଗଣକୁ ।
ଶିବଙ୍କ କ୍ରୀଡ଼ାସ୍ଥାନ ପ୍ରାୟେ ରଣଭୂଇଁ
ଦିଶିଲା ସେହିକ୍ଷଣି ଦେଖିଲୁଁ ନୃସାଇଁ ।
ତଇଳରେ ଧଉତ ଶୀଳାରେ ନିଶିତ
ଚଳିଲେ ଯେ ଗର୍ଜନେ କମ୍ପଇ ଜଗତ ।
ବୃହକ୍ଷେତ୍ର ସେ କାଣ୍ଡ କୋଟିକୁ ଦଶୋଟି
ବିନ୍ଧିକରି ଯୁଦ୍ଧରେ ପକାଇଲେ ମାଟି ।
ଦ୍ରୋଣ ଯେ ବୃହକ୍ଷେତ୍ର ଲାଘବକୁ ଦେଖି
ହସି ଆଠଶର ବିନ୍ଧିଲେ ଶୁଣି ଯୋଖି ।
ଦ୍ରୋଣଙ୍କର ଆଠକାଣ୍ଡକୁ ଆଠକାଣ୍ଡେ
ବୃହକ୍ଷେତ୍ର କାଟିଲେ ଦେଖିଲୁ ରଣଦାଣ୍ଡେ ।
ବୃହକ୍ଷେତ୍ରଙ୍କର ଦେଖିଣ ପରାକ୍ରମ
ଦୁର୍ଯ୍ୟୋଧନ ରହିଲେ ଛାଡ଼ି ଯୁଦ୍ଧେ ତମ ।
ଦ୍ରୋଣ ଶରଯୁଦ୍ଧେ ନ ପାରି ବ୍ରହ୍ମଶର
ପେଷିଲେ ବୃହକ୍ଷେତ୍ର ହେବାକୁ ସଂହାର ।
ବୃହକ୍ଷେତ୍ର ବ୍ରହ୍ମଶରକୁ ନେତ୍ରେ ଦେଖି
ବ୍ରହ୍ମାସ୍ତ୍ରେ ସଂହାରି ରହିଲେ ହୋଇ ସୁଖୀ ।
ଦ୍ରୋଣଙ୍କର ଦେହକୁ ଷାଠିଏଟି କାଣ୍ଡ
ଗଣିଣ ବିନ୍ଧିଲେ ଦେଖାଇ ହସ୍ତଚାଣ୍ଡ ।
ଦ୍ରୋଣ ତାହା ଦେଖି ନାରାଚଟିଏ ଧରି
ବିନ୍ଧିଲେ କର୍ଣ୍ଣଯାଏ ଧନୁକୁ ଓଟାରି ।
ବଜ୍ରପରି ଧ୍ୱନି କରିଣ ସେ ନାରାଚ
ଗଳିଲା ବୃହକ୍ଷେତ୍ର ଦେହର କବଚ ।
ସର୍ପ ପରି ଦେହ ବିଳକୁ ଆଶ୍ରେକରି
ରହିଲା ମହୀ ମଧ୍ୟେ ଅଧେ ବୁଡ଼ିକରି ।
ବୃହକ୍ଷେତ୍ର ସେ ଘାଏ କମ୍ପାଇ ଅପଘନ
ସତୁରିଟି କାଣ୍ଡ ବିନ୍ଧିଲେ ତ ବହନ ।
ଦ୍ରୋଣଙ୍କର ସାରଥି ବାହୁ ଉରୁ ଦୁଇ
ଭାଳିକାଣ୍ଡେ ଖୋଳିଦେଲେ ହେ ନରସାଇଁ ।
ଦ୍ରୋଣ ଯେ ବୃହକ୍ଷେତ୍ର ରଥକୁ ତୀକ୍ଷଣ
ମାରଗଣେ ଛାଇ ଦେଲେ ହେ ନରରାଣ ।

ସେ କାଣ୍ଡକୁ କାଟି ନ ପାରି ବୃହକ୍ଷେତ୍ର
କି କରିବା ବୋଲି ଭାବନା କଲେ ମନ୍ତ୍ର ।
ଏହି ସମୟରେ ତୀକ୍ଷଣ କାଣ୍ଡଟିଏ
ବିନ୍ଧିଲେ ଦ୍ରୋଣଗୁରୁ ଝିଙ୍କି ଅତିଶୟେ ।
ବୃହକ୍ଷେତ୍ର ସେ କାଣ୍ଡେ ହୃଦୟ ଗଳାଇ
ରଥତଳେ ଶୋଇ ପଡ଼ିଲେ ଦଣ୍ଡା ହୋଇ ।
ବୃହକ୍ଷେତ୍ର ମରନ୍ତେ ଶିଶୁପାଳସୁତ
ଧୃଷ୍ଟକେତୁ ଯୁଦ୍ଧରେ ଦେଇକରି ଚିତ୍ତ ।
ସାରଥୀକି ବୋଇଲେ ବାହ ମୋର ଯାନ
ଘେନିବି ମୁହିଁ ରଣେ ଦ୍ରୋଣଙ୍କ ଜୀବନ ।
ପାଞ୍ଚାଳ କେକୟଙ୍କୁ ହାରୁଛନ୍ତି ଦେଖ
ସହି ନ ପାରିବି ମୁଁ ତାହାଙ୍କର ଦୁଃଖ ।
ଧୃଷ୍ଟକେତୁ କଥା ସାରଥି କର୍ଣ୍ଣେ ଶୁଣି
ବାହିଲେ ଧୃଷ୍ଟକେତୁ ରଥ ସେହିକ୍ଷଣି ।
ପତଙ୍ଗ ପରି ଦ୍ରୋଣ- ଅନଳେ ରାଜନ
ପଡ଼ିଲା ଇଚ୍ଛାସୁଖେ ବୋଲି ମନେ ଘେନ ।
ଶୋଇଥିବା ସର୍ପଲାଙ୍ଗୁଡ଼ଟିକୁ ଧରି
ଚଳାଇଲା ପରି ଚାଲିଲା ଦଣ୍ଡଧାରୀ ।
ଦ୍ରୋଣ ଦ୍ୱିଜବରଙ୍କୁ ଷାଠିଏଟି ଶର
ବିନ୍ଧିଲା ଦେଖାଇଣ ବିକ୍ରମ ତାହାର ।
ସେ ଶର ଦ୍ରୋଣ- ସୂର୍ଯ୍ୟ ଆଗେ ଜୁଳୁ ଜୁଳୁ
ପୋକ ପରି ଦିଶିଲେ ହୋଇବାରୁ ମେଳା ।
କ୍ଷୁରକାଣ୍ଡ ପେଷିଣ ଧୃଷ୍ଟକେତୁ ଧନୁ
କାଟିଣ ପକାଇଲେ ଭରଦ୍ୱାଜସୂନୁ ।
ଆନ ଧନୁ ଧରିଣ ଶିଶୁପାଳ ବେଟା
ବିନ୍ଧିଲେ ଯୁଦ୍ଧେ ରାୟେ ଶର କୋଡ଼ିଏଟା ।
ଦ୍ରୋଣ ତାହାର ଘୋଡ଼ା ସାରଥିକି ମାରି
ପଚିଶ ଶାୟକ ବିନ୍ଧିଲେ ନିଶ ଧରି ।
ଶିଶୁପାଳ ସୁତ ତ ହୋଇଣ ବିରଥ
ଦ୍ରୋଣଙ୍କୁ ମାରିବାକୁ ହେଲା ଗଦାହସ୍ତ ।
ବେଢ଼ା କେତେ ବୁଲାଇ ଫିଙ୍ଗିଲା ଦ୍ରୋଣଙ୍କୁ
ଚଳିଗଲା ସେ ଗଦାମଣି ଆକାଶକୁ ।
ଦ୍ରୋଣ ତାହାର ଗଦା ଆସିବା ଦେଖିଲେ
ଅନେକ ସହସ୍ର ଶର ଯେ ପ୍ରହାରିଲେ ।
ସେ ସକାଶୁଁ ଗଦା ପଡ଼ିଲା ଭୂମି ତଳେ
ନକ୍ଷତ୍ର ପରାୟେ ଦେଖଲୁଁ ଆମ୍ଭେ ଡୋଳେ ।
ଗଦାହତ ଦେଖିଣ କନକଭୂଷିତ
ଶକତି ତୋମରକୁ କରି କରଗତ ।
ଧୃଷ୍ଟକେତୁ ହୃଷ୍ଟ ହୋଇଣ ଯେ ବିନ୍ଧିଲେ
ଦ୍ରୋଣଙ୍କ ଉପରେ ସେ ଉଦ୍ଦେଶି ଧାଇଁଲେ ।

ଦ୍ରୋଣ ତିନିକାଣ୍ଡରେ ତୋମରକୁ କାଟି
ପକାଇଦେଲେ କାଣ୍ଡେ ଛିଣ୍ଡାଇ ଶକତି ।
ଧୃଷ୍ଟକେତୁ ସୁତକୁ ଦେଖି ହସି ହସି
କାଣ୍ଡ ବିନ୍ଧିଣ କଲେ ଯମପୁରବାସୀ ।
ବାଘ ଯେଉଁରୂପେ ମୋଡ଼ଇ ମୃଗପିଲା
ସେରୂପେ ଧୃଷ୍ଟକେତୁ ସୁତର ମୃତ୍ୟୁ ହେଲା ।
ଜରାସନ୍ଧ ସୁତ ଯେ ସହଦେବ ବଳୀ
ଆସିଲେ ଦ୍ରୋଣଠାକୁ ଯୁଝିବାକୁ ଚଳି ।
ଜରାସନ୍ଧସୁତ- ମେଘରେ ଦ୍ରୋଣ- ସୂର୍ଯ୍ୟ
ଆବୃତ୍ତ ହୋଇଲେ ହେ ଜାଣ ମହାରାଜ ।
ସହଦେବଙ୍କର ଲାଘବେ ନୋହି ଭୀରୁ
ସସ୍ରସଂଖ୍ୟା କାଣ୍ଡ ବିନ୍ଧିଲେ ଦ୍ରୋଣଗୁରୁ ।
ଧନୁ ମଧ୍ୟେ ଉତ୍ତମ କାଣ୍ଡଟିଏ ଯୋଚି
ସହଦେବ ମୁଣ୍ଡ ପକାଇଲେ କାଟି ।
ଦ୍ରୋଣଠାକୁ ଯେତେ ଆସିଲେ ରାୟେ ଯୁଝି
କେତେକ ଶୋଇଲେଟି ଯାଇ ରଣ ମଝି ।
ଆପଣାର ନାମ ଜଣାଇ ଦ୍ରୋଣଗୁରୁ
କଲେ ପାଣ୍ଡୁ ସେମାନଙ୍କୁ ଯୁଦ୍ଧେ ଭୀରୁ ।
ନର ନାଗ ଯେ ଅଶ୍ୱମାନଙ୍କର ପ୍ରାଣ
ଘେନିଲାଟି ଏକା ଯାଇଣ ଦ୍ରୋଣବାଣ ।
ପଡ଼ିଲେ ଶୀତେ ଯେଉଁରୂପେ କମ୍ପେ ଦେହୀ
ସେରୂପେ ପାଣ୍ଡୁ ସେନା କମ୍ପିଲେ ନୃସାଇଁ ।
ପାଣ୍ଡୁ ସେନାଯାକଟି ସେ କାଳରେ ଏକା
ରଖ ରଖ ବୋଲି ପାଡ଼ିଲେ ଉଚ୍ଚେ ଡକା ।
ଶୁଣି ଛେଦି ପାଞ୍ଚାଳ ସୃଞ୍ଜୟ ହୋଇ ଗୋଟି
ବୋଇଲେ ମାର ବେଢ଼ି ବ୍ରାହ୍ମଣ ବୁଢ଼ାଟି ।
ବ୍ରାହ୍ମଣ କର୍ମ ଛାଡ଼ି କ୍ଷତ୍ରିୟ କରମ
କରୁଛନ୍ତି ଏହାଙ୍କ ନାହିଁ କିଛି ଧର୍ମ ।
ଏହାଙ୍କୁ ଆମ୍ଭେ ଯେବେ ନ ମାରିବାର ଆଜି
ପୋଛାଇବେ ଆମ୍ଭର ଯମ ହାତେ ପାଞ୍ଜି ।
ଦ୍ରୋଣ ପାଣ୍ଡୁ ସେନାଙ୍କ ଜାଣି ବିଚାରକୁ
ଦେଲେ ତାଙ୍କ ପ୍ରାଣକୁ ଯମନଗରକୁ ।
ଚେଦି ମୋକ୍ଷମାନେ ଦ୍ରୋଣଙ୍କ ବାଣେ ମଲେ
ପାଞ୍ଚାଳେ ତାହା ଦେଖି ଭୟେ କମ୍ପିଗଲେ ।
ମନେ କଲେ ଦ୍ରୋଣଙ୍କୁ ଧୃଷ୍ଟଦ୍ୟୁମ୍ନ ଭୀମ
ବିନା ଆନ ଲୋକେ କି କରଇ ସଂଗ୍ରାମ ।
ଏତେ ବୋଲି ସମସ୍ତେ ହୋଇ ଏକମନ
ଡାକିଲେ ଧାଇଁ ଆସ ଆସ ଭୀମସେନ ।
ଆଜିହେ ଦ୍ରୋଣଠାରେ ନିଜ ନାମ ସିଦ୍ଧି
କରିବ ବୋଲୁଅଛୁଁ ଯୁଦ୍ଧେ ଦେଇ ବୁଦ୍ଧି ।

ବ୍ରାହ୍ମଣ ହୋଇ ଦ୍ରୋଣ ଛାଡ଼ି କରି ତପ
କ୍ଷତ୍ରିୟପଦ ଦେଖ କରୁଛନ୍ତି ଲୋପ ।
ତପ ଧନୁର୍ବିଦ୍ୟା ଦୁଇ ତ ଦ୍ରୋଣଠାରେ
ଥିଲା ପରି ଦେଖୁନାହିଁଟି ଆନଠାରେ ।
ବଳ ଉତ୍ସାହରେ ତ ଦ୍ରୋଣ ତ ଦ୍ରୋଣ ପରି ।
ଆମ୍ଭେମାନେ କି ତାକୁ ଯୁଝିବୁଁ ଶସ୍ତ୍ର ଧରି ।
ଏ ବାଣୀ ଶୁଣି ଧୃଷ୍ଟଦ୍ୟୁମନନନ୍ଦନ
କାଟିଲେ ଅର୍ଦ୍ଧଚନ୍ଦ୍ରେ ଦ୍ରୋଣ ଶରାସନ ।
ଛାଡ଼ିବା ଧନୁ ଦ୍ରୋଣ ରଥରେ ପକାଇ
ଦେଲେ ଆନ ଧନୁରେ ଗୁଣକୁ ଚଢ଼ାଇ ।
ତୀକ୍ଷଣ ଶର ତହିଁ କରିଣ ସନ୍ଧାନ
କ୍ଷତ୍ରଧର୍ମ୍ମା ଦେହକୁ ବିନ୍ଧିଲେ ରାଜନ ।
ସେ କାଣ୍ଡ କ୍ଷତ୍ରଧର୍ମା ଦେହକୁ ନିକିଳି
ରକ୍ତ ମୁଖେ ବୋଲି ପଶିଲେ ମହୀଆଳି ।
ଯାଆନ୍ତେ ପ୍ରାଣ ହୁଡ଼ି କ୍ଷତ୍ରଧର୍ମା ବୀର
ଧରଣୀ- ପଲ୍ୟଙ୍କେ ଶୋଇଲେ ମନେ କର ।
ଧୃଷ୍ଟଦ୍ୟୁମନଙ୍କ ସୁତର ମୃତ୍ୟୁ ଦେଖି
ପାଣ୍ଡବସେନାଯାକ ହେଲେ ମହାଦୁଃଖୀ ।
ଚେକିତାନ ରାଜା ଦ୍ରୋଣଙ୍କ ବକ୍ଷସ୍ଥଳେ
ଦଶକାଣ୍ଡ ନୃପ ବିନ୍ଧିଲେ ମୃତ୍ୟୁବଳେ ।
ଦ୍ରୋଣଙ୍କର ଚାରିଘୋଡ଼ାଙ୍କୁ ଚାରିକାଣ୍ଡେ
ପୀଡ଼ାଦେଲେ ସାରଥିକି ଯେ ପାଞ୍ଚକାଣ୍ଡେ ।
ଦ୍ରୋଣ ତାହା ନ ସହି ଚେକିତାନଙ୍କର
ଦକ୍ଷିଣ କରକୁ ବିନ୍ଧିଲେ ଷୋଳଶର ।
ସାରଥିଙ୍କ ତିନି ଧ୍ୱଜକୁ ସାତରୋପ
ବିନ୍ଧିଲେ ଦ୍ରୋଣଗୁରୁ କରି ମହାକୋପ ।
ଦ୍ରୋଣଙ୍କ ତିନିକାଣ୍ଡେ ସାରଥିର ଗଳା
ଗଣ୍ଡିରୁ ଛିଡ଼ନ୍ତେ ଭେଟିଲା ସୂର୍ଯ୍ୟବଳା ।
ସାରଥି ହତ ଦେଖି ଚେକିତନା ଅଶ୍ୱ
ଚାରିହେଁ ପଳାଇଲେ ଯୁଦ୍ଧେ ଲଭି ତ୍ରାସ ।
ଚେକିତାନ ରଥ ଯାଆନ୍ତେ ଆଡ଼ ହୋଇ
ଭୟ କଲେ ପାଣ୍ଡବ ପାଞ୍ଚାଳେ ତା ଚାହିଁ ।
ଏହି ଛିଦ୍ରରେ ଚେଦି ପାଞ୍ଚାଳିଙ୍କୁ ଦ୍ରୋଣ
ଖେଉଦି ଘେନିଗଲେ ବିନ୍ଧି ମୁନବାଣ ।
ଅଟନ୍ତି ତ ଦ୍ରୋଣଗୁରୁ ଯେ ଶ୍ୟାମବର୍ଣ୍ଣ
ଶୁକଳ ରୋମକୁ ତ ବୋହିଛନ୍ତି ଜାଣ ।
ଦେହରୁ ଚର୍ମ କେତେ ହୋଇଛନ୍ତି ବୋଲି
ତଥାପିତ ତେଜ ଅଗ୍ନିଙ୍କ ବଳେ ପଡ଼ି ।
ପଞ୍ଚାଶି ବରଷରେ ଷୋଳ ବରଷିଆ
ଭେଣ୍ଡିଆ ପରି ଯୁଦ୍ଧେ ହୋଇଛନ୍ତି ଠିଆ ।

ତୁମ୍ଭ କାର୍ଯ୍ୟ କରିବା ପାଇଁ ଦେହପ୍ରାଣ
ତ୍ୟାଗ କରି ଯୁଝୁଥାନ୍ତିଟି ଏକା ଦ୍ରୋଣ ।
ପାଣ୍ଡୁ ସେନାଯାକ ଦ୍ରୋଣଙ୍କୁ ଯୁଦ୍ଧେ ଦେଖି
ମନେ କରିଲେ ଯୁଝିଲେ କି ସହସ୍ରାକ୍ଷି ।
ଦ୍ରୁପଦ ଦ୍ରୋଣଙ୍କର ଦେଖି ଯୁଦ୍ଧରୀତି
ବୋଇଲେ ଦ୍ୱିଜକୁଳେ ହୋଇ ଉତପତ୍ତି ।
ଧନୁ ଧରି କ୍ଷତ୍ରିୟମାନଙ୍କୁ ସଂହାର
କରନ୍ତି ଉଚିତ ଅଟେ କି ଏହାଙ୍କର ।
ଦ୍ରୋଣଙ୍କ ଅଧର୍ମରୁ ଦୁର୍ଯ୍ୟୋଧନ ରାୟେ
ଭେଟିବେ ଯମକୁ ଭୀମଙ୍କ ଗଦାଘାଏ ।
ଶତ ଶତ ରାଜାମାନଙ୍କରଟି ପ୍ରାଣ
ଘେନି ପକାଇଲେଣି ଏ ଦ୍ରୋଣ ବ୍ରାହ୍ମଣ ।
ଏହିରୂପେ ଦ୍ରୁପଦ ବଚନ ଉଚାରି
ପାଣ୍ଡବଙ୍କୁ ସଙ୍ଗତେ ଘେନି ଦଣ୍ଡଧାରୀ ।
ଯେଉଁଠାରେଟି ଦ୍ରୋଣ କରୁଥିଲେ ରଣ
ସେଠାକୁ ବୋଲିକରି ଗଲେ ସେ ଆପଣ ।
ଦ୍ରୋଣଙ୍କ ସଙ୍ଗତେ ପାଣ୍ଡବରାଜସେନା
କରନ୍ତେ ଯୁଦ୍ଧ ପାଇଁ ହୋଇ କୋପମନା ।
ଯୁଗାନ୍ତର କାଳ ପରି ସେକାଳ ପରତେ
ହୋଇଲା ହେ ଜାଣ ରାଜନ ମହାମତେ ।
ଯୁଧିଷ୍ଠିର ଆପଣା ଛଳହୀନ ଦେଖି
ଭାଳିଲେ ମାନସରେଏହା ହୋଇ ଦୁଃଖୀ ।
ଅର୍ଜ୍ଜୁନ ଯେ ଜୟଦ୍ରଥର ବଧ ପାଇଁ
ଯାଇଛନ୍ତି ବାରତା ପାଇଲି ମୁଁ ନାହିଁ ।
ଏ ରୂପେର ଅନେକ ବିଚାରି ଯୁଧିଷ୍ଠିର
ଚାରିପଟେ ଚାହିଁଲେ ହୋଇଣ ଅସ୍ଥିର ।
ଅର୍ଜ୍ଜୁନ ଚିହ୍ନ ବର୍ଣ୍ଣ ଗାଣ୍ଡୀବ ନିର୍ଘୋଷ
ନ ଦେଖି ନ ଶୁଣି ଲଭିଲେ ମହା ତ୍ରାସ ।
ବୋଇଲେ ଅର୍ଜ୍ଜୁନ ବାରତା ବୁଝିବାକୁ
ବରଗିଲି ମୁହିଁ ସତ୍ୟକୁ- କୁମରକୁ ।
ସେହୁ ତ ଏତେବେଳେଯାଏ ନ ଆସିଲେ
କି କରିବି ଯୁଦ୍ଧରେ ତାଙ୍କର କି ହେଲେ ।
ସାତ୍ୟକି ଅର୍ଜ୍ଜୁନ ଦୁହେଁ ତ ପ୍ରିୟ ମୋର
ନ ଶୁଣିଲି କିଛି ବାରତା ତାହାଙ୍କର ।
ସାତ୍ୟକି ଅରଜୁନ ଶୁଭ ବାରତାକୁ
ଜାଣିବାକୁ ପେଷିବି ମୁଁ ଆନ ଯୋଦ୍ଧାଙ୍କୁ ।
ସାତ୍ୟକିଙ୍କ ବାରତା ନ ବୁଝିଲେ ମୁହିଁ
ନିନ୍ଦା ଦେବେଟି ଲୋକେ ମୋତେ ଜାଣୁଥାଇଁ
ଲୋକଅପବାଦରୁ ହୋଇବାକୁ ପାରି
ବରଗିବି ମୁହିଁ ଭୀମଙ୍କୁ ଡାକି କରି ।

ଭୀମ ଯାଇ ପାର୍ଥ ସାତ୍ୟକି ଅନ୍ୱେଷଣା
କରନ୍ତୁ ଯୁଦ୍ଧରେ ତ ସେହି ମହାମନା ।
ଅର୍ଜ୍ଜୁନରେ ମୋର ପୀରତି ଯେଉଁ ରୂପେ
ସାତ୍ୟକିଠାରେ ପ୍ରୀତି ଅଟଇ ସେରୂପେ ।
ଯୁଯୁଧାନ ବୀରଙ୍କୁ ଦିଅନ୍ତେ ମୁଁ ଭାର
ଲଙ୍ଘି ନ ପାରିଣ ସେ ମୋ ଦେବାର ଭାର ।
ଏକା ହୋଇ ସଇନ- ସିନ୍ଧୁରେ ମଗର-
ପରାୟେ ପଶିବେ ସେ ଧରି ଧନୁଶର ।
ସାତ୍ୟକିଙ୍କି ଦେଖିଣ କୁରୁଯୋଦ୍ଧାଙ୍କର
କରିବାର ଶବଦ ହୋଇଛି ଗୋଚର ।
ଏହି ସକାଶରୁଟି ସାତ୍ୟକି ପାଶକୁ
ବରଗିବି ଡାକିକରି ମୁହିଁ ଭୀମଙ୍କୁ ।
ଭୀମଙ୍କୁ ଜିଣିବାକୁ ଏ ମହୀରେ କେହି
ଥିଲାପରି ଜାଣ ଆଖିରେ ଦିଶୁନାହିଁ ।
ଭୀମ ବାହୁବଳରେ ତରି ବନବାସ
ହସ୍ତିନା ପାଇବାକୁ ବଳିଛି ମାନସ ।
ଭୀମ ଯେବେ ଅର୍ଜ୍ଜୁନ ସାତ୍ୟକିଙ୍କି ସାହା
ହେବେ ସବୁ କରି ପାରିବେ ତାଙ୍କ ବାହା ।
କୃଷ୍ଣଙ୍କେ ରକ୍ଷିତ ଅର୍ଜ୍ଜୁନ ଯୁଯୁଧାନ
ହୋଇଛନ୍ତି ତାଙ୍କୁ କେ କରିବ ଆୟୋଧନ ।
ଏମନ୍ତ ହେଲେହେଁ ମୋ ଚିତ୍ତ ଶାନ୍ତିପାଇଁ
ଭୀମଙ୍କୁ ତାଙ୍କଠାକୁ ଦେବି ପଠିଆଇ ।
ଏରୂପେ ଅନେକ ବିଚାରି ଯୁଧିଷ୍ଠିର
ସାରଥିକି ବୋଇଲେ ଶୁଣ ମୋ ଉତ୍ତର ।
ଭୀମଙ୍କୁ ଏହିକ୍ଷିଣି ରଥରେ ବସାଇ
ଆଣ ମୋର ପାଶକୁ କ୍ଷଣେହେଁ ନ ରହି ।
ଯୁଧିଷ୍ଠିର ବଚନେ ସୁତ ସୁନାରଥ
ନେଲାଟି ଯହିଁ ଥିଲେ ଭୀମ ମହାରଥ ।
ଭୀମ ଯୁଧିଷ୍ଠିରଙ୍କ ଦେବା ରଥେ ବସି
ଯୁଧିଷ୍ଠିର ଛାମୁରେ ଦେଖା ଦେଲେ ଆସି ।
ଯୁଧିଷ୍ଠିର ଦେଖିଣ ଭୀମଙ୍କ ବଦନ
ଦେଖୁ ଦେଖୁଟି ହାରିହେଲେ ହେୟ ଜ୍ଞାନ ।
ପୁଣିଟି ଚେତା ପାଇ କହିଲେ ଭୀମଙ୍କୁ
ନ ଦେଖୁଛି ବାବୁ ନୟନେ ଅର୍ଜ୍ଜୁନକୁ ।
ଦେବାସୁର ନର ଯେ ଉରଗ କିନ୍ନର-
ମାନଙ୍କୁ ଜିଣିପାରେ ଅରଜୁନ ଶର ।
ସେ ଏବେ ଜୟଦ୍ରଥ ବଧେ ମନ ଦେଇ
ଯାଇଛି କିସ କଲା ଗୋଚର ତ ନାହିଁ ।
ଭୀମ ବୋଇଲେ ହେ କାହିଁକି ନୃପ ମୋହ
ଭଜୁଛ ତ ବ୍ୟର୍ଥେ କି କଥା ଅଛି କହ ।

ଆଜ ପରି ରୀତି ତ ତୁମ୍ଭର ସ୍ୱପନେ
ଦେଖି ନାହିଁ ହେ ଆମ୍ଭେମାନେଟି ନୟନେ ।
ପୂର୍ବେଟି ଆମ୍ଭେମାନେ କରୁ ଯେବେ ଦୁଃଖ
କହି ଆମ୍ଭମାନଙ୍କ ବଢ଼ାଅ ହେ ସୁଖ ।
ଏବେ କେଉଁ କଥା ହେଉଛି ତୁମ୍ଭ ଲୋଡ଼ା
ତା କହ କରିଛି ହୋଇ ହିଁ ପାଖେ ଛିଡ଼ା ।
ଅସାଧ ହୋଇ ମୋର କଥା ନାହିଁ କିଛି
ବୃଥା ଶୋକେ ବ୍ୟଥା ନ ଭଜ ମୁଁ କହୁଛି ।
ଯୁଧିଷ୍ଠିର ଶୁଣିଣ ଭୀମଙ୍କ ବଚନ
ଅଶ୍ରୁରେ ପୂର୍ଣ୍ଣ କରି କମଳ-ନୟନ ।
ସର୍ପପରି ନିଃଶ୍ୱାସ ଗୋଟେ ପକାଇଣ
ବୋଇଲେ ହେ ଶୁଣ କହିବା ଭୀମସେନ ।
ଶୁଭୁ ନାହିଁ ଗାଣ୍ଡୀବ ଧ୍ୱନିର ନିଃସ୍ୱନ
ଏଣୁ ତ ଭୀମ ହେ ବିକଳ ହୁଏ ମନ ।
ଏ ସକାଶୁଁ ଜାଣୁଛି ପାର୍ଥ ଜୀଇଁ ନାହିଁ
ଯୁଝୁଅଛନ୍ତି କୃଷ୍ଣ ଶଙ୍ଖକୁ ବଜାଇ ।
ଜୟଦ୍ରଥ ମାରିବି ବୋଲି ଅରଜୁନ
ଯିବାର ଦେଖିଅଛି ମୋହର ନୟନ ।
ଆସିବାର ତାଙ୍କର ନୋହିବାରୁ ଜଣା
ଆହେ ଭୀମ ଭାଇ ହେଲାଣି ବୁଦ୍ଧି ବଣା ।
ଅର୍ଜ୍ଜୁନର ଦେହ ତ ଶ୍ୟାମଳବରନ
ଚକୋରକୁ ନିନ୍ଦା କରଇ ତା ନୟନ ।
ମହାଭୁଜ ସିଂହସ୍କନ୍ଧ ଯେ ସିଂହଗତି
ଶାଳଗଛ ପ୍ରାୟ ଉନ୍ନତ ଦିଶେ ଅତି ।
ସେହି ଅର୍ଜ୍ଜୁନ ଯେବେ ଆଜି ମୋ ପାଶକୁ
ନ ଆସିବେ ଯିବି ଯମଙ୍କ ନଗରକୁ ।
ଅର୍ଜ୍ଜୁନଙ୍କର ଧ୍ୱଜ ଶାୟକ ସ୍ୱରୂପ
ନ ଦେଖିଲେ ଛାଡ଼ି ନାହିଁ ମୋ ହୃଦୁଁ ତାପ ।
ପାର୍ଥ ମରିବାର ସାତ୍ୟକି କୃଷ୍ଣ ଦୁଇ
ମିଶି ଯୁଦ୍ଧ କରୁଛନ୍ତି ହେ ଭୀମ ଭାଇ ।
ଏବେ ବୋଲ ଘେନି ସାତ୍ୟକି କୃଷ୍ଣ ପାଶେ
ଯାଅ ମୋର ଆଗେ ନ ରହି ତୁମ୍ଭେ ଲେଶେ ।
ମୁଁ ଯେବେ ତୁମ୍ଭ ଜ୍ୟେଷ୍ଠ ଭାଇ ଭୀମସେନ
ତେବେ ମୋର ବଚନ ନ କରିବ ଆନ ।
ଦେଖ ମୋର ବଚନ ପାତିଣ ସାତ୍ୟକି
ଏକା ଯୁଝିଗଲେ କୁରୁଙ୍କୁ ଧନୁ ଟେକି ।
ଶ୍ରୀକୃଷ୍ଣ ଅରଜୁନ ସାତ୍ୟକିଙ୍କି ତୁମ୍ଭେ
ଦେଖିଲେ ସିଂହନାଦ କର ବୋଲୁଁ ଆମ୍ଭେ ।
ଏହି ସଙ୍କେତରୁ ହୋଇ ମୁଁ ଧୈର୍ଯ୍ୟଶାଳୀ
ଯୁଝିବି ବ୍ୟୂହଦ୍ୱାରେ ଦ୍ରୋଣଙ୍କୁ ଆଗୁଳି ।

ଭୀମ ବୋଇଲେ ଆହେ କି କହ ରାଜନ
ମହାବଳୀୟାର ତ କୃଷ୍ଣ ଅରଜୁନ ।
ବ୍ରହ୍ମା ଇନ୍ଦ୍ର ରୁଦ୍ରେ ବୋହିବା ରଥ ଚଢ଼ି
ଯାଇଛନ୍ତି ସେ ଦୁହେଁ ଦେଖାଇଣ ପୌଢ଼ି ।
ତାହାଙ୍କୁ କୁରୁଙ୍କରେ ନିବାରି କେ ବାଣ
ବିନ୍ଧିବ ମୋତେ ଦିଶୁନାହିଁ ନରରାଣ ।
କେବଳ ତୁମ୍ଭ ଆଜ୍ଞା ଧରି ମୁଁ ଯାଉଛି
ନ କର ମାନସରେ ନୃପ ଦୁଃଖ କିଛି ।
ଏହା କହି ଜ୍ୟେଷ୍ଠ ଭାଇଙ୍କି ଭୀମସେନ
କହିଲେ ଧୃଷ୍ଟଦ୍ୟୁମନଙ୍କୁ ଏ ବଚନ ।
ଯୁଧିଷ୍ଠିରରାଜା ବରଗୁଛନ୍ତି ମୋତେ
କି କରିବି ଯାଉଛି ମୁଁ ଅଣଆୟତେ ।
ଦ୍ରୋଣଙ୍କର ପ୍ରତିଜ୍ଞା ଜଣା ତ ଯାଉଛି
ରାଜାଙ୍କୁ ଜଗିଥିବ ଜାଣ ମୁଁ କହୁଛି ।
ଯୁଧିଷ୍ଠିର ରାଜା ଆଗ୍ରହକରି ମୋତେ
ବୋଇଲେ ନାହିଁ ତାହା କରନ୍ତି କେମନ୍ତେ ।
ତୁମ୍ଭେ ତ ସବୁ ଅସ୍ତ୍ର ଶସ୍ତ୍ରେ ପାରଙ୍ଗମ
ଦ୍ରୋଣ ତୁଲରେ କରୁଥିବଟି ସଂଗ୍ରାମ ।
ଯେରୂପେ ଯୁଧିଷ୍ଠିର ରାଜାଙ୍କୁ ସେ ଧରି
ନ ନେବେ ସେହିରୂପେ ଯୁଝିବ ବିଚାରି ।
ଏହା ଶୁଣିଣ ଧୃଷ୍ଟଦ୍ୟୁମନ ହସିଲେ
କି କହୁଅଛ ଭୀମ ବୋଲିଣ ଭାଷିଲେ ।
ମୋତେ ନ ମାଇଲେ ଯେ ନୃପତିଙ୍କି ଧରି
ନେଇ ନ ପାରନ୍ତିଟି ଦ୍ରୋଣ ଧନୁର୍ଦ୍ଧାରୀ ।
ଅରଜୁନ ଥିବା ସ୍ଥାନକୁ ତୁମ୍ଭେ ଯାଅ
ଭୟ ନାହିଁ ହେ ଥିଲେ ମୋହ ପରି ପୁଅ ।
ଧୃଷ୍ଟଦ୍ୟୁମନଙ୍କର ଏ ବଚନ ଶୁଣି
ମହତ ହୃଷ୍ଟ ହୋଇ ଭୀମ ବୀରମଣି ।
ଯୁଧିଷ୍ଠିରନୃପ ସମର୍ପି ତାଙ୍କୁ ଦେଲେ
ଯୁଧିଷ୍ଠିରଙ୍କର ତ ପାଦରେ ବନ୍ଦିଲେ ।
ଯୁଧିଷ୍ଠିର ରାଜାଙ୍କୁ କରି ଆଲିଙ୍ଗନ
ମସ୍ତକ ଶୁଙ୍ଘି ଦେଲେ ଗୋଟିଏ ଚୁମ୍ବନ ।
ବୋଇଲେ ଆହେ ଭୀମ ଅର୍ଜୁନ ସନ୍ଦେଶ
ବୁଝିଆସ ବାବୁ ମୋହର ମନ ତୋଷ ।
ଭୀମ ଯୁଧିଷ୍ଠିର ବଚନେ ସୁଖୀ ହେଲେ
ମଙ୍ଗଳକର ଦ୍ରବ୍ୟମାନଙ୍କୁ ଛୁଇଁଲେ ।
କଇରାତମମଧୁ କରିଣ ମୁଖେ ପାନ
ରଙ୍ଗ କରିଦେଲେଟି ତାଙ୍କର ନୟନ ।
ସେହି ସମୟରେ ବ୍ରାହ୍ମଣେ ଆଶୀର୍ବାଦ
କରିଲେ ଭୀମ ଜୟ ବାଞ୍ଛି ବୋହି ମୋଦ ।
ମନ୍ଦ ଗନ୍ଧ ଶୀତ ସହିତରେ ପବନ
ପୃଷ୍ଠଦେଶୁ ବୋହି ମୋହିଲା ଭୀମ ମନ ।
କବଚ କୁଣ୍ଡଳ ଲଗାଇ ଭୀମ ଅଙ୍ଗେ
ରଥରେ ବସି ବାହାରିଲେ ରଣରଙ୍ଗେ ।
ଏହି ସମୟରେ ତ ପାଞ୍ଚଜନ୍ୟ ରଡ଼ି
ନିନ୍ଦା କଲା ଶବ୍ଦେ ପ୍ରଳୟ ଘଡ଼ଘଡ଼ି ।
ଯୁଧିଷ୍ଠିର ସେ ଶବଦକୁ ଶୁଣି କାନେ
ଭୀମଙ୍କ ପାଶେ ଯାଇ କହିଲେ ବିମନେ ।
ଶୁଣ କୃଷ୍ଣଙ୍କର ଶୁଭୁଛି ଶଙ୍ଖସ୍ୱନ
ଭାବୁଛି ଜୀଇଁ ନାହିଁ ମୋ ଭାଇ ଫାଲ୍‌ଗୁନ ।
କୃଷ୍ଣ କୁରୁମାନଙ୍କୁ କରୁଛନ୍ତି ଯୁଦ୍ଧ
ଆମ୍ଭର ହିତ ଭାବି ହୋଇ ମହାକ୍ରୋଧ ।
ପାର୍ଥ ସାତ୍ୟକିଙ୍କି ନ ଦେଖିବାରୁ ନେତ୍ର
ମୋହର ଭଜି ରହିଛି ଜାଣ ମୋର ଗାତ୍ର ।
ଏରୂପେ ଯୁଧିଷ୍ଠିର କଥା କର୍ଣ୍ଣେ ଶୁଣି
ଧନୁଘୋଷ କରିଲେ ଭୀମ ସେହିକ୍ଷଣି ।
ସିଂହପରି ଗରଜନ କରିଣ ଆଣ୍ଟେ
ଶଙ୍ଖ ବଜାଇଲେ ତ ଦେଇ ମୁଖତଟେ ।
ବିଶୋକେ ସଂଯୁତ ହୁଅନ୍ତେ ଘୋଡ଼ାକୁଳ
ପବନରୁ ଅଧିକ ଗମିଲେ ଭୂପାଳ ।
ଭୀମ ସେ ସମୟରେ କରି ଘୋରରଡ଼ି
ତୁମ୍ଭ ସେନା ପରେ ସର୍ଜିଲେ ଶରଧାଡ଼ି ।
ଭୀମ ଯିବା ଦେଖିଣ ପାଞ୍ଚାଳ ସୋମକେ
ଗଲେ ପଛେ ପଛେ ନ ପଡ଼ି ଭୟ ଶୋକେ ।
ଏହା ଦେଖିଣ ଦୁଃଶାସନ ଚିତ୍ରସେନ
କୁଣ୍ଡଭେଦି ଦୁର୍ମୁଖ ଦୁଃସହ ବିକର୍ଣ୍ଣ ।
ବିନ୍ଦ ଅନୁବିନ୍ଦ ଯେ ଶଲ୍ୟ ସୁଦର୍ଶନ
ବୃନ୍ଦାରକ ସୁଷେଣ ସୁଦୀର୍ଘଲୋଚନ ।
ଦୀର୍ଘବାହୁ ସୁହସ୍ତ ଅଭୟ ରୌଦ୍ରକର୍ମ୍ମା
ବିବିଂଶତ ଦୁର୍ବିଲୋଚନ ଯେ ସୁବର୍ମା ।
ଏ ସର୍ବେ ଆଗୁଳି ଭୀମଙ୍କୁ କଲେ ରଣ
ବାଛି କରି ବିନ୍ଧିଲେ ମୁନଘଷା ବାଣ ।
କ୍ଷୁଦ୍ର ମୃଗଠାକୁ ଯେ ସିଂହ ଗଲା ପ୍ରାୟେ
ଧାଇଁଲେ ଭୀମ ତାଙ୍କୁ ଦେଖି କ୍ରୋଧେ ରାୟେ ।
ତୁମ୍ଭର ସୁତଯାକ ହୋଇ ଏକମନ
କଲେ କାଣ୍ଡେ ଭୀମସେନଙ୍କୁ ଆୟୋଧନ ।
ଭୀମ ତୁମ୍ଭ ସୁତଯାକଙ୍କୁ ଅତିକ୍ରମି
ଦ୍ରୋଣାନିକେ ପଶିଲେ ହୋଇ ମହାତମୀ ।
ଦ୍ରୋଣାନିକ ଆଗରେ ଥିଲେ ଗଜାନିକ
ବିନ୍ଧିଲେ ତାଙ୍କୁ ଭୀମ ବାଛିଣ ଶାୟକ ।

ଭୀମ ଶରସିଂହ- ମୁନ - ନଖ- ଘାତେ
ପଳାଇଲେ ଗଜାନିକ ହେ ମହାମତେ ।
ଭୀମ ବଳ ସିନ୍ଧୁକୁ ସେ କାଳରେ ବେଳା
ହୋଇ ଏକା ଦ୍ରୋଣ ସର୍ଜିଲେ ଶରମାଳା ।
ଦ୍ରୋଣଙ୍କ ନାରାଚ ଲଲାଟେ ଭୀମ ବୋହି
ସୂର୍ଯ୍ୟରଶ୍ମି ପ୍ରଭାକୁ ପକାଇଲେ ଦହି ।
ଦ୍ରୋଣ ଅର୍ଜ୍ଜୁନଙ୍କର ଯିବାର କର୍ମକୁ
ସୁମରିଣ କହିଲେ ସେ ଭୀମସେନଙ୍କୁ ।
ତୁମ୍ଭ ଭାଇ ଅର୍ଜ୍ଜୁନ ମୋର ସନମତେ
ବୂହ୍ୟ ମଧ୍ୟେ ପଶିଲେ କୃଷ୍ଣଙ୍କ ସଙ୍ଗତେ ।
ତୁମ୍ଭେ ମୋତେ ନ ଜିଣି ଆହେ ବ୍ୟୂହଦ୍ୱାର
କିରୂପେ ଲଙ୍ଘି ଯିବ କହ ଭୀମବର ।
ଭୀମ ଯେ ଦ୍ରୋଣଙ୍କର ଏ ବଚନ ଶୁଣି
କ୍ରୋଧରେ ଦେହ ଶିରଯାକ ଦେଲେ ଟାଣି ।
ଦୁଇ ନୟନକୁ ସେ କରିଦେଇ ରଙ୍ଗ
କହିଲେ ବଚନ ଗୁରୁଙ୍କୁ ବହି ଖଙ୍ଗ ।
ଅର୍ଜ୍ଜୁନ ତ ଜିଣି ପାରନ୍ତି ପୁରନ୍ଦର
ତୁମ୍ଭଙ୍କୁ ଜିଣିବା ଅଧିକ କି ତାଙ୍କର ।
ତୁଚ୍ଛା ମୋର ଆଗେ କରୁଚ ଗୁରୁ ଟାଣ
ନ ବାଜିବାରୁ ଅଙ୍ଗେ ମୂନଘଷା ବାଣ ।
ଗୁରୁ ବୋଲି ଅବା ଅର୍ଜ୍ଜୁନ ପୂଜା କରି
ଯାଇଥିବେ କଥା ନ କହ ବଡ଼ କରି ।
ଅର୍ଜ୍ଜୁନ ପରି ଦୟାହୃଦୟ ମୋହର
ନୁହଇ ହେ ଦ୍ୱିଜ ଅଧମ ମନେକର ।
ବାବୁ ଭାଇ ଯେ ଗୁରୁ କରିଣ ତୁମ୍ଭଙ୍କୁ
ମାନିବା ଫଳ ତୁମ୍ଭେ ଦେଲଣି ଆମ୍ଭଙ୍କୁ ।
ମୋ ନାମ ଅନୁରୂପେ କରମ ମୁଁ କରି
ବ୍ୟୂହ ବନ ମଧ୍ୟେ ପଶିବି ସିଂହ ପରି ।
ତୁମ୍ଭେ ଶତ୍ରୁ ହୋଇ ଡରାଇବାରୁ ମୋତେ
ଡରୁ ନାହିଁ ଜାଣ ହେ ଦ୍ରୋଣ ମହା ମତେ ।
ଏରୂପରେ ଦ୍ରୋଣଗୁରୁଙ୍କୁ ଭୀମ କହି
କାଳଦଣ୍ଡ ପରି ଗଦାକୁ କରେ ବୋହି ।
ବେଢ଼ା କେତେ ବୁଲାଇ ଫିଙ୍ଗିଲେ ତ ରାଗେ
ଚଳିଲା ସେ ରାଜନ ପବନରୁ ବେଗେ ।
ଦ୍ରୋଣ ସେ ଗଦା ଦେଖି ରଥୁଁ ଓହ୍ଲାଇଲେ
ଚୂରିଲା ସେ ରଥକୁ ଗଦାବର ଭଲେ ।
ଦ୍ରୋଣଙ୍କର ବିରଥ ଦେଖି ତୁମ୍ଭ ସୁତେ
ରହିଲେ ବେଢ଼ିକରି ଭୀମକୁ ତୁରିତେ ।
ଆନ ରଥ ଚଢ଼ିଣ ବ୍ୟୂହ ଦ୍ୱାରେ ଜଗି
ରହିଲେ ଗୁରୁ ଦ୍ରୋଣ ହୋଇ ଅତି ରାଗୀ

ଭୀମ ତୁମ୍ଭ ସୁତମାନଙ୍କୁ ରଥୀବୃନ୍ଦ
ଦେଖି କାଣ୍ଡ ବିନ୍ଧିଲେ ଭୀମଙ୍କୁ ବଶିଖ ।
ତୁମ୍ଭର ପୁଅମାନେ ହୋଇଣ ବିମୁଖ
ବାଛିକରି ବିନ୍ଧିଲେ ଭୀମଙ୍କୁ ବିଶିଖ ।
ଲୁହାର ଶକ୍ତିଟାଏ ଦୁଃଶାସନ ଧରି
ଫିଙ୍ଗିଲେ ଭୀମଙ୍କ ପାଖକୁ ଲାଖ କରି ।
ଭୀମ ସେ ଶକତିକି ଦେଖିକରି କାଣ୍ଡେ
ଦୁଇଖଣ୍ଡ କରିଣ ପକାଇଲେ ଦାଣ୍ଡେ ।
ସୁଷେଣ ଦୀର୍ଘନେତ୍ର କୁଣ୍ଡଭେଦି ମୁଣ୍ଡ
ଛିଣ୍ଡାଇ ପକାଇଲେ ବିନ୍ଧି ତିନି କାଣ୍ଡ ।
ବୃନ୍ଦାରକ ସୁତ ତୁମ୍ଭର ଯୁଝିଥିଲେ
ଭୀମ କାଣ୍ଡ ବାଜନ୍ତେ ଯମଙ୍କୁ ଭେଟିଲେ ।
ଦୁର୍ବିଲୋଚନ ରୌଦ୍ରକର୍ମା ଅଭୟକୁ
ପେଷିଲେ ତିନି କାଣ୍ଡେ ଯମନଗରକୁ ।
ଏହା ଦେଖି ତୁମ୍ଭର ବାକି ସୁତଗଣ
ଭୀମଙ୍କୁ ବେଢ଼ିକରି କଲେ ଘୋର ରଣ ।
ବିନ୍ଦ ଅନୁବିନ୍ଦ ଯେ ସୁବର୍ମା ସୁତଙ୍କୁ
ମାଇଲେ ଭୀମ ବିନ୍ଧି ତୀକ୍ଷଣ ବାଣକୁ ।
ସୁଦର୍ଶନ ନାମେ ତୁମ୍ଭର ଯେଉଁ ସୁତ
ଥିଲେ ଭୀମ କାଣ୍ଡରେ ସେ ହୋଇଲେ ହତ ।
ଏ ରୂପେ ତୁମ୍ଭର ମରନ୍ତେ ସୁତବୃନ୍ଦ
ପଳାଇଲେ ବାକି ଯେ ଥିଲେ ଛାଡ଼ି ଦ୍ୱନ୍ଦ୍ୱ ।
ତୁମ୍ଭର ପୁଅ ସେନାନିକ ଭୀମରଥୀ
ଶାୟକ ମତ୍ତହସ୍ତୀ ଘାତେ ଦେଲେ ମଛି ।
ଭୀମଙ୍କ କାଣ୍ଡଘାଏ ତୁମ୍ଭ ସେନାଯାକ
ଘୋଡ଼ା ଚଢ଼ି ଭାଜିଲେ କାନ୍ଦି ସକ ସକ ।
ଏ ରୂପେ ତୁମ୍ଭ ସେନା ଜିଣି ଭୀମବଳୀ
ସିଂହନାଦ କଲେ ତୋଟିକି ଆଣ୍ଟେ ମେଲି ।
ଦ୍ରୋଣ ସଇନରେ ହୋଇଲେ ପରବେଶ
କରି ଭୀମସେନ ମହତ ଧନୁର୍ଘୋଷ ।
ଦ୍ରୋଣ ଭୀମସେନଙ୍କୁ କରି ଶର ବୃଷ୍ଟି
ଯୁଝିଲେ ନେବା ପାଇଁ ନୃପ ଜୟସୃଷ୍ଟି ।
ଦ୍ରୋଣଙ୍କର କାଣ୍ଡକୁ ହେଜି ଭୀମସେନ
ତୁମ୍ଭ ସୁତମାନଙ୍କୁ କଲେ ଆୟୋଧନ ।
ତୁମ୍ଭ ପୁଅମାନଙ୍କ ବୋଲେ ତୁମ୍ଭ ରଥୀ-
ମାନେ ଭୀମ ତୁଲେ ଯୁଝିଲେ ନୋହି ବ୍ୟଥୀ ।
ଭୀମ ତା ନ ସହଇ ବୁଲାଇ ଗଦାବର
ଫିଙ୍ଗିଲେ କରିବାକୁ ସଇନ ସଂହାର ।
ଅଗ୍ନି ପରି ଜ୍ୟୋତି ପ୍ରକାଶି ରଣଦାଣ୍ଡ
ପ୍ରହାରିଲେ ଦେଖାଇ ହସ୍ତ ଚାଣ୍ଡ ।

ଭୀମଙ୍କ ଗଦା-ଜ୍ୟୋତି ଯେ ଗରଜନ
ନ ସହି ପଳାଇଲେ ତୁମ୍ଭର ସଇନ ।
ରଥମାନ ଚଢ଼ିଣ ରଥିଏ ଆରତେ
ପଳାଇଗଲେ ପିଠି ଦେଖାଇ ତ୍ୱରିତେ ।
ଏରୂପେ ତୁମ୍ଭର ସେନାଙ୍କୁ ଦେଇ ଦୁଃଖ
ଗଲେ ଦ୍ରୋଣ ସେନାକୁ ଭୀମ ବୀରଶିଖ ।
ଦ୍ରୋଣ ଭୀମଙ୍କର ଦେଖିଣ ପରାକ୍ରମ
ତମରେ ଆରମ୍ଭିଲେ ଉତ୍ତମ ସଂଗ୍ରାମ ।
ଦ୍ରୋଣ କାଣ୍ଡ ଚାଣ୍ଡରେ ନିବାରି ଭୀମଙ୍କୁ
ଭୟ କରାଇଲେ ଯେ ପାଣ୍ଡବମାନଙ୍କୁ ।
ଦେବାସୁର ପରି ଯେ ଦ୍ରୋଣ ଭୀମସେନ
ସମର ପ୍ରବର୍ତ୍ତିଲା ଜାଣ ହେ ରାଜନ ।
ଶତ ଶତ ସହସ୍ର ସହସ୍ର ସଂଖ୍ୟା ବାଣ
ବିନ୍ଧିଲେ ଭୀମଙ୍କ ଉପରେ ଗୁରୁ ଦ୍ରୋଣ ।
ଭୀମ ତାହା ନ ସହି ରଥୁଁ ଡେଇଁ ପଡ଼ି
ପଲକ ମାତ୍ରେ ନେତ୍ର ଯୁଗଳକୁ ଭିଡ଼ି ।
ଦ୍ରୋଣଙ୍କର ରଥ ସମୀପକୁ ସେ ଗଲେ
ଦ୍ରୋଣଙ୍କର ଶରକୁ କିଛି ନ ହେଜିଲେ ।
ହାତରେ ଧରିକରି ଦ୍ରୋଣଙ୍କର ରଥ
ଫିଙ୍ଗିଦେଲେ କ୍ରୋଧରେ ଭୀମ ମହାରଥ ।
ସେ ଘାତେ ଦ୍ରୋଣଙ୍କର ଯାନ୍ତେ ରଥ ଭାଜି
ଆନ ରଥ ଚଢ଼ିଗଲେ ସେ ବ୍ୟୂହ ହେଜି ।
ଦ୍ରୋଣରଥ ଭାଜିବା ଛିଦ୍ରେ ଦ୍ରୋଣରଥ
ଭୀମପାଶେ ସାରଥି କଲା ନରନାଥ ।
ନିଜ ରଥ ଆରୋହୀ ଭୀମ ମହାବଳୀ
କାଣ୍ଡରେ ଦେଲେ ତୁମ୍ଭ ସୁତଦର୍ପଦଳି ।
ଭୀମସେନ ଶରବ୍ରାତ ବାତରେ ସେନା-
ବୃକ୍ଷ ଭାଜି ପଡ଼ିଲେ ହୋଇ ଅକଳକା ।
କୃତବର୍ମା ସେନାଙ୍କୁ ଜିଣି ଭୀମ ବାଣେ
ଗଲେ ଯୁଝୁଥିଲେ ଅର୍ଜୁନ ଯେଉଁ ସ୍ଥାନେ ।
କ୍ରୋଧ ହୋଇ ଭୀମ କରନ୍ତେ ଘୋର ରଡ଼ି
ତୁମ୍ଭର ସେନାଯାକ ପଳାଇଲେ ଛାଡ଼ି ।
କାମ୍ବୋଜ ମ୍ଲେଚ୍ଛ ସେନା କରନ୍ତେ ଅତିକ୍ରମ
ଦେଖିଲେ କରୁଛନ୍ତି ସାତ୍ୟକି ସଂଗ୍ରାମ ।
ଜୟଦ୍ରଥ ମାଥ କାଟିବା ପାଇଁ ପାର୍ଥ
ଯୁଝୁଥିଲେ ହୋଇ ଗାଣ୍ଡୀବ- ଧନୁ ହାତ ।
ତାହାଙ୍କୁ ନୟନରେ ଦେଖି ବାତବଳା
କରିଲେ ଗରଜନ ମେଲି ଦେଇ ଗଳା ।
ଭୀମଙ୍କ ଗରଜନ କୃଷ୍ଣାର୍ଜୁନ ଶୁଣି
ସେ ମଧ୍ୟ ଗରଜନ କଲେ ନରମଣି ।

କୃଷ୍ଣଭୀମାର୍ଜୁନ ଗର୍ଜନ ଯୁଧିଷ୍ଠିର
ଶୁଣି ତୋଷରେ ଫୁଲାଇଲେ ସେ ଶରୀର ।
ମନେ କଲେ ଅର୍ଜୁନ ଛନ୍ତି ପ୍ରାଣେ ରହି
ପୁଣି ତ ସାହା ହେଲେ ଭୀମ ତାଙ୍କୁ ଯାଇ ।
ଏ ସକାଶୁଁ ନିକଟେ ଜୟଦ୍ରଥ ମାଥ
କାଟିବାର ଆଜି ଯୁଦ୍ଧେ ଅରଜୁନ ହାତ ।
ସାତ୍ୟକି ତ କୁଶଳେ ଯୁଦ୍ଧ କରୁଛନ୍ତି
କୁରୁଏ ଜୀଇଁ ନିକି ନିର୍ଘେଁ ଯିବେ ବର୍ତ୍ତି ।
ଖାଣ୍ଡବବନ ଦହି ଜିଣି ଶଚୀଈଶ
କରିଛନ୍ତି ଅର୍ଜୁନ ଅଗ୍ନିକି ସନ୍ତୋଷ ।
ଅରଜୁନ ବାହୁବଳକୁ ଆମ୍ଭେ ପାଇ
ଭାବୁଥାଇଁ ହୋଇବା ହସ୍ତିନା ନରସାଇଁ ।
ନିବୀତ କବଚକୁ ମାରିଛନ୍ତି ରଣେ
ଜିଣିଛନ୍ତି ଗନ୍ଧର୍ବରାଜକୁ ତୁଚ୍ଛ ବାଣେ ।
କାଳକେୟ ଚଉଦ ସସ୍ର ମହାବଳ
ବୋଲାନ୍ତି ତାଙ୍କୁ ଦେଇଛନ୍ତି ଯମଆଳ ।
ଗୋଗ୍ରହରେ ଏକାଥରଙ୍କରେ କୁରୁଙ୍କୁ
ଶୁଆଇଲେ ଭୂମିରେ କରାଇ ମୋହକୁ ।
ପୁତ୍ରଶୋକେ ଏବେ ସେ ଯାଇଛନ୍ତି ଯୁଝି
ଯେ ତାଙ୍କୁ ଯୁଝିବ ଶୋଇବ ରଣ ମଝି ।
ସୂର୍ଯ୍ୟଅସ୍ତ ନୋହୁଣୁ ଜୟଦ୍ରଥ ମାରି
ଭେଟିବ ମୋତେ ଗାଣ୍ଡୀବ ଧନୁର୍ଦ୍ଧାରୀ ।
ମାରି ଜୟଦ୍ରଥଙ୍କୁ କୁରୁଙ୍କ ଅନର୍ଥ
ସମ୍ପାଦି ପାର୍ଥ ହେ ଅର୍ଜିବେ ପୁରୁଷାର୍ଥ ।
ଜୟଦ୍ରଥ ମରନ୍ତେ ଆଜି ସୁଯୋଧନ
କହିବ ଆମ୍ଭଙ୍କୁ ବା ପ୍ରୀତିରେ ବଚନ ।
ଆଜି ଅର୍ଜୁନର ପରାକ୍ରମରେ ମହୀ
ରହିଥିବଟି ରକତରେ ପୂର୍ଣ୍ଣହୋଇ ।
ଏହା ଦେଖିଣ ସୁଯୋଧନ ପଶ୍ଚାତ୍ତାପ
କରି ଅବା ଛାଡ଼ିବ ବାଞ୍ଛିବାର ପାପ ।
ଭୀଷ୍ମ ପରା ଲୋକ ମରାଇ ଭାନୁମତି-
କାନ୍ତ ଅବା ଡରିଆସିବ କରି ପ୍ରୀତି ।
ଏହିରୂପେ କୃପାହୃଦୟ ଯୁଧିଷ୍ଠିର
ହୋଇ ବିଚାରିଲେ ରାଜନ ମନେଧୀର ।
କୁରୁ ପାଣ୍ଡୁସେନାଏ ଦୁହେଁ ଏ ସମୟେ
ଯୁଦ୍ଧକଲେ ଧନୁ ଆମଞ୍ଚି ଅତିଶୟେ ।
ଧୃତରାଷ୍ଟ୍ର ବୋଇଲେ ଆହେ ମନ୍ତ୍ରିସୁତ
ସଞ୍ଜୟ ମୋର ପୋଏ କି କଲେ କହ ତ ।
ଭୀମ ତ କ୍ରୋଧ ହୋଇ ଗର୍ଜି ଯୁଝୁଥିଲେ
ଆମ୍ଭର ଯୋଦ୍ଧାମାନେ ତା ଦେଖି କି କଲେ ।

ମୋ ମତେ ଭୀମଙ୍କ ସମୀପେ ରହି ରଣ
କରି ବିନ୍ଧିବାକୁଟି ନାହିଁ କେହି ଜାଣ ।
ଭୀମ ଯେତେ କରରେ ଟେକିଥିବ ଗଦା
ତେବେ ମୋ ସୈନ୍ୟଯାକ କରିଥିବ ପଦା ।
ରଥରେ ରତ ହାତୀମାନଙ୍କୁ ହାତୀରେ
ଯେଉଁ ଭୀମଟି ମାରି ପାରଇ ସମରେ ।
ସେହି ଭୀମକୁ ବଜ୍ରପରି ପୁରନ୍ଦର
ଯୁଝିଲେ ହାରି ହେ ଜାଣୁଛି ମନ୍ତ୍ରୀବର ।
ମୋ ପୁଅମାନଙ୍କୁ ମାରିବାକାଳେ ଭୀମ
କିଏ କଲା ତାହାଙ୍କ ସଙ୍ଗରେ ସଂଗ୍ରାମ ।
ଭୀମ କ୍ରୋଧାନଳେ ମୋ ପୁତ୍ର କୁଟା ପ୍ରାୟେ
ପୋଡ଼ିଯାଉଥିବେଟି ଜାଣ ମନ୍ତ୍ରୀରାୟେ ।
କୃଷ୍ଣ ଅରଜୁନ ସାତ୍ୟକି ଧୃଷ୍ଟଦ୍ୟୁମ୍ନ-
ଠାରେ ଭୀମ ପରି ମୋ ନୁହେଁ ଭୟମନ ।
ସଞ୍ଜୟ ବୋଇଲେ ହେ ପଚାରୁଛ ଯାହା
କହିବା ଶୁଣ ତା ହସ୍ତିନାନରନାହା ।
ଗରଜି ଯାଉଥିଲେ ଭୀମ ଯୁଦ୍ଧଦାଣ୍ଡେ
କର୍ଣ୍ଣ ତାହାଙ୍କୁ ଆସି ନିବାରିଲେ ଚାଣ୍ଡେ ।
କର୍ଣ୍ଣଯାଏଟି କର୍ଣ୍ଣ ଓଟାରିଣ ଚାପ
ବିନ୍ଧିଲେ ରୋଷେ ଭୀମ ପରେ କରି କୋପ ।
ଯେ ରୂପରେ ବାତକୁ ନିବାରି ପର୍ବତ
ସେ ରୂପରେ ଭୀମ ବାରିଲେ ସୂତସୁତ ।
ଭୀମ କର୍ଣ୍ଣଙ୍କର ବିକ୍ରମକୁ ନ ସହି
ବିନ୍ଧିଲେ ଶିଳାଘଷା ଶର ନଣସାଇଁ ।
କର୍ଣ୍ଣ ଭୀମଙ୍କର କାଣ୍ଡକୁ କାଣ୍ଡେ କାଟି
ଯୁଦ୍ଧକଲେ କ୍ରୋଧରେ ଭିଡ଼ି ଓଷ୍ଠ ପାଟି ।
କର୍ଣ୍ଣ ଭୀମଙ୍କର ଦେଖିଣ ସମାଗମ
କରିଲେ ଯୋଦ୍ଧାମାନେ ବୁକୁ ଦମ ଦମ ।
ଭୀମଙ୍କ ଗରଜନେ ନଭ ତୁଳେ ମହୀ
ପୂରିଗଲା ଜାଣ ହସ୍ତିନା ନରସାଇଁ ।
ସେମାନଙ୍କର ହାତରୁ ଚାପ ରୋପେ
ପଡ଼ିଲେଟି ଭୀମ ଗର୍ଜନର ପ୍ରତାପେ ।
ବିଷ୍ଠାମୂତ୍ର ଉତ୍ସର୍ଗ କରି ଗଜ ଅଶ୍ୱ
ପକାଇଲେଟି ମହାଭୟରେ ନିଃଶ୍ୱାସ ।
ଗୃଧ୍ର କାକ ବକ ମାଉଁସ ଖାଇବାକୁ
ରଡ଼ିଲେ ଆକାଶରେ ବିସ୍ତାରି ଡେଣାକୁ ।
କର୍ଣ୍ଣ ତ୍ୱରା ହୋଇଣ ଭୀମକୁ କୋଡ଼ିଏ
ସାରଥିକି ବିନ୍ଧିଲେ ପାଞ୍ଚକାଣ୍ଡ ରାୟେ ।
ଭୀମ ତାହା ଦେଖି ଅଧରେ ଧରି ହାସ
ଚଉଷଠିକାଣ୍ଡ ବିନ୍ଧିଲେ ବହି ରୋଷ ।
କର୍ଣ୍ଣ ପୁଣି ଭୀମେ ବିନ୍ଧିଲେ ଚାରିକାଣ୍ଡ
ଭୀମ ତା କାଣ୍ଡକରେ କଲେ ଆଠଖଣ୍ଡ ।
କର୍ଣ୍ଣ କର୍ଣ୍ଣକୁଣ୍ଡଳ ବେନି ଦୋହଲାଇ
ବିନ୍ଧି କାଣ୍ଡ ଭୀମଙ୍କୁ ଦେଲେ ସେ ଘୋଡ଼ାଇ ।
ମହତ କ୍ରୋଧ ହୋଇ ପବନଙ୍କ ବେଟା
କାଟି ପକାଇଲେ କର୍ଣ୍ଣଙ୍କର ଧନୁଟା ।
ଏ ବାହାରେ ଗଣ୍ଡିକି ଲଖାଇଣ କାଣ୍ଡ
ବିନ୍ଧିଲେ ଦେଖାଇବା ପାଇଁ ଯମଦାଣ୍ଡ ।
ଆନ ଧନୁ ଧରିଣ ସୂର୍ଯ୍ୟଙ୍କର ବଳା
ଭୀମଙ୍କର ଉପରେ ସର୍ଜିଲେ ଶରମାଳା ।
କର୍ଣ୍ଣଙ୍କ ପରାକ୍ରମ ଦେଖି ଭୀମବଳୀ
ବିନ୍ଧି କର୍ଣ୍ଣବକ୍ଷସ୍ଥଳକୁ କାଣ୍ଡ ଚଳି ।
ସେହି ଘାତରେ କର୍ଣ୍ଣ ଦେହରୁ ରକତ
ଜାତ ହୋଇ ନିନ୍ଦିଲା ଗେରୁପରବତ ।
ସେକାଳେ କର୍ଣ୍ଣ କିଛି ସାଙ୍କୁଡାଇ ଗଣ୍ଡି
ପୁଣି ଯୁଦ୍ଧକଲେ ସେ ଧରି ଧନୁଖଣ୍ଡି ।
ଶତ ଶତ ସସ୍ର ସହସ୍ର ମାରଗଣ
ବିନ୍ଧିଲେ ତୁମ୍ଭ କର୍ଣ୍ଣ କରି ବୀରପଣ ।
ଭୀମ ତ କର୍ଣ୍ଣଙ୍କର ଧନୁଗୁଣ କାଟି
ବୋଇଲେ ଆଜି ଯିବ କର୍ଣ୍ଣ ଯମ ଭେଟି ।
ସାରଥି ତୁଲେ ଚାରିଘୋଡ଼ାଙ୍କର ପ୍ରାଣ
ଘେନି ପକାଇଲେଟି ବରଗିଣ ବାଣ ।
ସାରଥି ଅଶ୍ୱହତ କର୍ଣ୍ଣ ନେତ୍ରେ ଦେଖି
ବୃଷସେନ ରଥେ ବସିଲେ ହୋଇ ଦୁଃଖୀ ।
କର୍ଣ୍ଣକୁ ରଣେ ଜିଣି ଭୀମ ମହାମନା
ଗରଜନେ କମ୍ପାଇ ଦେଲେ ତୁମ୍ଭ ସେନା ।
ଭୀମଙ୍କ ଗରଜନ ଶୁଣି ଯୁଧିଷ୍ଠିର
ଭାବିଲେ ଆଜି ହେବେ କୁରୁଏ ସଂହାର ।
ଭୀମକରେ କର୍ଣ୍ଣ ପରାସ୍ତ ହେବା ଶୁଣି
ଶଙ୍ଖ ବଜାଇଲେ ପାଣ୍ଡବ ସେନାଶ୍ରେଣୀ ।
ପାଣ୍ଡୁସେନା ଶଙ୍ଖଶବଦ ଶୁଣି କାନେ
ଗରଜିଲେ ମଧ ହେ ପାଣ୍ଡୁସେନାମାନେ ।
ଅରଜୁନ ତା ଶୁଣି ଗାଣ୍ଡୀବ ଶବଦ
କରି ତୁମ୍ଭ ସେନାଙ୍କୁ ଦେଲେ ଅପ୍ରମୋଦ ।
କୃଷ୍ଣ ଶଙ୍ଖଶବଦେ ଅବନୀ କମ୍ପାଇ
ଦେଲେ ଜାଣ ଆହେ ହସ୍ତିନା ନରସାଇଁ ।
ଏହି ସମୟରେଟି ତୁମ୍ଭର ନନ୍ଦନ
ଦେଖିକରି କଲେ ମହତ ଦୁଃଖମନ ।
ଏକା ରଥକରେ ତ ଦ୍ରୋଣଙ୍କର ପାଶେ
ପରବେଶ ହେଲେ ସେ ମାନସ ବିରସେ ।

କ୍ରୋଧରେ ନୟନକୁ ରଙ୍ଗ କରି ଦେଇ
କହିଲେ ଏ ବଚନ ଦ୍ରୋଣଙ୍କୁ ଅନାଇଁ ।
ଥାଉଁ ଥାଉଁ ଯୁଦ୍ଧରେ ତୁମ୍ଭ ପରା ଲୋକ
ମଲେଣି ଡରି କରି ମୋର ଲୋକଯାକ ।
ଅରଜୁନ ତୁମ୍ଭଙ୍କୁ ଜିଣି ଆୟୋଧନେ
ଯାହା କଲେ ତାହା ମାନୁଛୁଁ ଆମ୍ଭେମାନେ ।
ଭୀମ ସାତ୍ୟକି ତ ସେହିରୂପେ ଚୁହନ୍ତି
ସେ କିରୂପେ ଗଲେ ହେ କହ ଦ୍ରୋଣପତି ।
ସମୁଦ୍ର ଶୁଖିଯିବା ପ୍ରାୟେ ତୁମ୍ଭ ରୀତି
ଦେଖୁଛୁଁ ତୁମ୍ଭଙ୍କୁ କରିବୁଁ କି ଯୁକତି ।
ବିଚାର କର ତୁମ୍ଭେ ମନେ ଦ୍ରୋଣାଚାର୍ଯ୍ୟ
ଲୋକରେ ଏ କଥା କି ନୁହଇ ଆଶ୍ଚର୍ଯ୍ୟ ।
ତୁମ୍ଭଙ୍କୁ ଜିଣି ଯା ସାତ୍ୟକି ଭୀମ ଗଲେ
ପରତେ କରିବେ କି ଲୋକେ ତା ଶୁଣିଲେ ।
ନୋହିଲେ ମୋ ନାଶ ହେବାରୁ ଉପସ୍ଥିତ
ହେଲ ହେ ଗୁରୁ ତୁମ୍ଭେ ଯୁଦ୍ଧରେ ନିସତ ।
ତୁମ୍ଭଙ୍କୁ ଅତିକ୍ରମି ସାତ୍ୟକି ଭୀମସେନ
ଅରଜୁନ ଗଲେ ଅଛି କି ପ୍ରୟୋଜନ ।
ଯେଉଁ କଥା ହୋଇଗଲାଣି ସେ କଥାକୁ
ବୋଲୁନାହିଁ ତୁମ୍ଭଙ୍କୁ ଚିନ୍ତା କରିବାକୁ ।
ଏବେ କେଉଁ କଥା କରିବା ଆହେ ଦ୍ରୋଣ
ବିଚାରି ତା କର ତୁମ୍ଭେ ତ ସବୁ ଜାଣ ।
ଏବେ ଜୟଦ୍ରଥ ଜୀଇଁବ ଯେଉଁ ରୂପେ
କହୁଅଛି ମୁହିଁ ହେ ଆଚର ସେ ରୂପେ ।
ଦ୍ରୋଣ ବୋଇଲେ ଆହେ କୃଷ୍ଣାର୍ଜ୍ଜୁନ ଘେନି
ହୋଇଅଛ ନୃପ ଯେରୂପେ ଭୟସ୍ଥାନୀ ।
ସେହିରୂପେ ପାଣ୍ଡବ ପାଞ୍ଚାଳଙ୍କ ବଳ
ବ୍ୟୂହଦ୍ୱାର ଜିଣିଲେ ହୋଇବ ଆକୁଳ ।
ଏହା ଜାଣି କହୁଛି ରଖ ଜୟଦ୍ରଥ
ରାଜାଙ୍କୁ ଯୁଦ୍ଧ କର କଟୁ ପାର୍ଥ ମାଥ ।
ସାତ୍ୟକି ଭୀମ ଦୁଇବୀରେ ପାଇ ସାହା
ସବୁ କରିପାରେ ଗାଣ୍ଡୀବ ଧନୁବାହା ।
ଏ ସକାଶୁ କହୁଛି ହୋଇ ଜାଗରୂକ
ଯୁଝନ୍ତୁ ପାର୍ଥ ତୁଲେ ତୁମ୍ଭ ରଥୀଯାକ ।
ଶକୁନି ବୁଦ୍ଧିରେ ତ ଖେଳିଥିଲ ଜୁଆ
ନ ଗଲା ଜଣା ତହିଁ ଅଜେୟ କେ ଜେୟ ।
ଆଜି ଯୁଦ୍ଧଜୁଅ ରାଜନ ପ୍ରବର୍ତ୍ତିଛି
ଜଣାଯିବ ଜୟ ଅଜେୟ ମୁଁ କହୁଛି ।
ପ୍ରାଣ ଛାଡ଼ିଣ ଜୟଦ୍ରଥଙ୍କୁ ରଖିଲେ
ପ୍ରଶଂସିବେ ଆମ୍ଭଙ୍କୁ ସଂସାରେ ଶୁଣିଲେ ।

ଏବେ ତୁମ୍ଭେ ଯାଇ ଯେ ରଖ ଜୟଦ୍ରଥ
ହେବା ଇଚ୍ଛା ଥିଲେ ହସ୍ତିନା ନରନାଥ ।
ମୁହିଁ ଏହିଠାରେ ପାଞ୍ଚାଳ ସୃଞ୍ଜୟଙ୍କୁ
ମାରି ପୂରାଇବି ଯମଙ୍କ ନଗରକୁ ।
ଏହା ଶୁଣିଣ ଦୁର୍ଯ୍ୟୋଧନ ତ୍ୱରା ହୋଇ
ଦ୍ରୋଣଙ୍କ ପାଶରୁ ଗଲେ ହେ ନରସାଇଁ ।
ଯୁଧାମନ୍ୟୁ ଉତ୍ତମଓଜା ଅର୍ଜ୍ଜୁନର
ଚକ୍ରରକ୍ଷା ଅଟନ୍ତି ଜାଣିଛ ନୃବର ।
କୃତବର୍ମା ଯୁଝିବା ହେତୁ ଅର୍ଜ୍ଜୁନଙ୍କୁ
ଛାଡ଼ିକରି ଯୁଝିଲେ ସେ କୃତବର୍ମାଙ୍କୁ ।
ଏ ସକାଶୁଁ ସେ ଦୁହେଁ ଅର୍ଜ୍ଜୁନ ସଙ୍ଗତେ
ଯାଇ ନ ପାରିଲେ ହେ ହସ୍ତିନା ନୃପତେ ।
ସେନା ବାହାରରେ ଯେ ବୁହାଇଣ ରଥ
ଯାଉଥିଲେ ଯେଉଁଠାରେଟି ଥିଲେ ପାର୍ଥ ।
ଦୁର୍ଯ୍ୟୋଧନ ସେ ଦୁଇରଥୀ ନେତ୍ରେ ଦେଖି
ବିନ୍ଧିଲେ ହେ ରାଜନ ଭଲ ଶର ଯୋଖି ।
ସେହି ଦୁଇ ଭାଇ ହୋଇଣ ଏକମନ
ଉଭାରି ଧନୁବେନି କଲେ ଆୟୋଧନ ।
ଦୁର୍ଯ୍ୟୋଧନ ରାଜାଙ୍କୁ ତିରିଶଟି କାଣ୍ଡ
ବିନ୍ଧିଲେ ଯୁଧାମନ୍ୟୁ କରି ହସ୍ତଚାଣ୍ଡ ।
ସୂତାଙ୍କୁ କୋଡ଼ିଏ ଘୋଡ଼ାଙ୍କୁ ଚାରି ବିନ୍ଧି
ରହିଲେ କାଣ୍ଡୁଟିଏ ଧନୁ ମଧେ ସନ୍ଧି ।
ଦୁର୍ଯ୍ୟୋଧନ ତ ଯୁଧାମନ୍ୟୁଙ୍କର ଧ୍ୱଜ
କାଟିଲେ କାଣ୍ଡକେ ଜାଣ ହେ ମହାରାଜ ।
ଏହା ବାହାରେ କାଣ୍ଡେ ଭାରତିକି କାଟି
ଭାଲିଶରେ ସାରଥୀ ପ୍ରାଣ ନେଲେ ଲୁଟି ।
ଯୁଧାମନ୍ୟୁଙ୍କର ଚାରିଟି ଘୋଡ଼ାବୀର
ପ୍ରାଣ ନେବାପାଇଁ ବିନ୍ଧି ଚାରି ଶର ।
ଯୁଧାମନ୍ୟୁ ନ ସହି ହୋଇ ମହାରୋଷୀ
ବିନ୍ଧିଲେ ଦୁର୍ଯ୍ୟୋଧନ ଉରୁକୁ ତିରିଶି ।
ଉତ୍ତମୌଜା ଦୁର୍ଯ୍ୟୋଧନଙ୍କ ସାରଥିର
କାଟିଲେ ଶର ପେଷି ସୁନାପୁଂଖ ଶର ।
ଦୁର୍ଯ୍ୟୋଧନ ଉତ୍ତମୌଜାଙ୍କ ଚାରିଘୋଡ଼ା
ସାରଥି ତୁଲେ କଲେ ଯମପୁରେ ଛଡ଼ା ।
ଘୋଡ଼ା ସାରଥିଙ୍କର ଦେଖିଣ ମରଣ
ଭାଇ ରଥେ ସେ ଯାଇ ଚଢ଼ିଲେ ଆପଣ ।
ଦୁଇ ଭାଇଟି ଏକା ରଥକରେ ବସି
କି କଲା ଦୁର୍ଯ୍ୟୋଧନ ବୋଲି ଦେଲେ ହସି ।
ଉତ୍ତମୌଜା ଉତ୍ତମ ଓଜ ଦେଖାଇଲେ
ଦୁର୍ଯ୍ୟୋଧନଙ୍କ ଚାରି ଘୋଡ଼ାଙ୍କୁ ମାଇଲେ ।

ଯୁଧାମନ୍ୟୁ ଉତ୍ତମ ଯୋଦ୍ଧା ତ ଅଟନ୍ତି
ସେ ସମୟେ ଧନୁ କାଟିଲେ ବହି ପ୍ରୀତି ।
ସାରଥି ଘୋଡ଼ାଙ୍କର ମରଣକୁ ଦେଖି
ଦୁର୍ଯ୍ୟୋଧନ କ୍ରୋଧରେ ରଙ୍ଗ କରି ଆଖି ।
ଗଦା ଧରି ରଥ ଉପରୁ ଓହ୍ଲାଇଲେ
ପକାଇବି ପିଟି ବୋଲିଣ ଯେ ଧାଇଁଲେ ।
ଦୁର୍ଯ୍ୟୋଧନଙ୍କର ଆସିବା କଥା ଜାଣି
ରଥକୁ ଛାଡ଼ିଦେଲେ ଦୁହେଁ ସେହିକ୍ଷଣି ।
ଦୁର୍ଯ୍ୟୋଧନ କ୍ରୋଧ ହୋଇଣ ତ ଧାଇଁଲେ
ବୁଲାଇ ଗଦା ରଥ ଉପରେ ପିଟିଲେ ।
ସେ ଘାତେ ଅଶ୍ୱ ସାରଥିଙ୍କ ତୁଲେ ରଥ
ଚୂରି ହୋଇଗଲା ହେ ହସ୍ତିନା ନୃପନାଥ ।
ଏହା କରିସାରି ତୁମ୍ଭର ଦୁର୍ଯ୍ୟୋଧନ
ଶଲ୍ୟଙ୍କ ରଥେ ଯାଇ ବସିଲେ ରାଜନ ।
ଯୁଧାମନ୍ୟୁ ଉତ୍ତମଓଜା ଆନ ରଥେ
ଚଢ଼ି ବାହାରିଲେ ଅର୍ଜ୍ଜୁନ ଯିବା ପଥେ ।
କର୍ଣ୍ଣ ନିଜ ସୈନ୍ୟଙ୍କ ପୀଡ଼ା ଦେଖିକରି
ଯୁଝିଲେ ପବନଙ୍କ ସୁତକୁ ଆବୋରି ।
ଯେହ୍ନେ ବନେ ମତ୍ତହସ୍ତୀଏ ପାତି ଦାନ୍ତ
ଯୁଝନ୍ତି ସେ ଦୁହେଁ ଯୁଝିଲେ ସେ ସମିତ ।
ଧୃତରାଷ୍ଟ୍ର ବୋଇଲେ କର୍ଣ୍ଣ ଭୀମଙ୍କର
କହ ଯୁଦ୍ଧ ମୋତେ ସଞ୍ଜୟ ମନ୍ତ୍ରୀବର ।
ଯୁଦ୍ଧ କରି କର୍ଣ୍ଣ ତ ହାରି ଯାଇଥିଲେ
କି ସାହା ପାଇ ଆସି ଭୀମଙ୍କୁ ଯୁଝିଲେ ।
ଭୀଷ୍ମ ଦ୍ରୋଣ ଦୁହିଙ୍କ ଉତ୍ତାରୁ କର୍ଣ୍ଣଙ୍କୁ
ଡରନ୍ତି ଯୁଧିଷ୍ଠିର କହିଛ ଆମ୍ଭଙ୍କୁ ।
ସେ କର୍ଣ୍ଣଙ୍କୁ କିରୂପେ ଭୀମ ମହାବଳ
ଯୁଝିଲା କହ କରି ଧନୁକୁ ମଣ୍ଡଳ ।
କର୍ଣ୍ଣଙ୍କୁ ତ କୁନ୍ତୀଟି ମନା କରିଥିଲେ
କର୍ଣ୍ଣ କିପାଁ ଭୀମଙ୍କ ସଙ୍ଗତେ ଯୁଝିଲେ ।
ପୂର୍ବର ବଇରକୁ ସୁମରିଣ ଭୀମ
କଲା କି କର୍ଣ୍ଣ ତୁଲେ ଉତ୍ତମ ସଂଗ୍ରାମ ।
ଦୁର୍ଯ୍ୟୋଧନ ପୂର୍ବେ କହିଛି ମୋର ଆଗେ
ପାଣ୍ଡବେ ମରିବେ ଯୁଝିଲେ କର୍ଣ୍ଣ ସଙ୍ଗେ ।
କର୍ଣ୍ଣବଳେ ମୋ ପୁଅ ଯୁଝେ ପାଣ୍ଡବଙ୍କୁ
କି ରୂପରେ ଭୀମ ଯୁଝିଲାଟି କର୍ଣ୍ଣଙ୍କୁ ।
ଏକା ରଥକରେ ମଣ୍ଡଳଯାକ କର୍ଣ୍ଣ
କିଣିଥିଲେ ବୋଲି ତ ଶୁଣିଅଛି କାନ ।
କୁଣ୍ଡଳ କବଚକୁ ଧରି ଜାତ ହୋଇ
ଅଛନ୍ତି ତ କର୍ଣ୍ଣ ସମସ୍ତେ ଜାଣିଥାଇଁ ।
ଏହି ସକାଶରୁ ତୁମ୍ଭଙ୍କୁ ପଚାରୁଛି
ସେ ଦୁହିଙ୍କ ଯୁଦ୍ଧ ଶୁଣିବା ଇଚ୍ଛା ଅଛି ।
କର୍ଣ୍ଣ ଭୀମ ଦୁହେଁ ଅଟନ୍ତି ବଳୀୟାର
ଜିଣିଲା କିଏ ତା କହ ତ ମନ୍ତ୍ରୀବର ।
ସଞ୍ଜୟ ବୋଇଲେ ହେ ଶୁଣ ନରପତି
କର୍ଣ୍ଣ ଯୁଦ୍ଧରେ ଭୀମ ନ ଦେଇଣ ମତି ।
ଶ୍ରୀକୃଷ୍ଣ ଅରଜୁନ ଥିବାର ସ୍ଥାନକୁ
ବୁହାଇଲେ ରାଜନ ତାଙ୍କର ରଥକୁ ।
ଭୀମ ଯିବା ଦେଖିଣ କର୍ଣ୍ଣ ଧନୁ ଟାଣି
ବିନ୍ଧିଲେ ଭୀମଙ୍କ ଦେହକୁ ଶରଶ୍ରେଣୀ ।
ଏ ବାହାରେ ବୋଇଲେ ଆହେ ଭୀମ ବୀର
ବୋଲାଅ ତ ଯୋଦ୍ଧାମାନଙ୍କେ ବଳୀୟାର ।
ପିଠିଦେଇ କିପାଁ ଯାଉଛ ପାର୍ଥଠାକୁ
ପାଲଟି ଥରେ ମୋତେ ଦେଖା ବିକ୍ରମକୁ ।
ଭରତବଂଶରେ ତ ହୋଇଅଛ ଜାତ
ତହିଁକି ଅନୁରୂପ କର ହେ ଚରିତ ।
ଭୀମ ତାହା ନ ସହି ଲେଉଟାଇ ରଥ
ବିନ୍ଧିଲେ କର୍ଣ୍ଣକୁ ଦେଖାଇ ଲଘୁହାତ ।
କଳହର ଅନ୍ତକରିବା ମନେ ଭାବି
ତେଜେ ନିନ୍ଦାକଲେ ମଧ୍ୟାହ୍ନକାଳ ରବି ।
ନାନାଜାତିର ଶର କର୍ଣ୍ଣଙ୍କ ଉପରେ
ବିନ୍ଧିଲେ ଭୀମସେନ ଅତ୍ୟନ୍ତ କୋପରେ ।
କର୍ଣ୍ଣ ଭୀମଙ୍କର ଶରକୁ ଅସ୍ତ୍ରେ ନାଶି
ନିଶକୁ ଟେକି ଦେଇ ଥରେ ଦେଲେ ହସି ।
କର୍ଣ୍ଣ ଦ୍ରୋଣ ପରି ବିନ୍ଧିଲେ ଯୁଦ୍ଧେ ବାଣ
ଭୀମ ଆମିଷକୁ ହୋଇଣଟି ସଞ୍ଚାଣ ।
ଯତ୍ନକରି ଭୀମ ଯୁଝିଲେ ହେଲେ ତାଙ୍କୁ
ବିନ୍ଧିଲେ କର୍ଣ୍ଣ ହସିକରି ଶାୟକକୁ ।
ଭୀମ କର୍ଣ୍ଣଙ୍କର ହସିବାକୁ ନ ସହି
ବିନ୍ଧିଲେ ମହଦନ୍ତ ଶରକୁ ରୋଷାଇ ।
ଏକୋଇଶି କାଣ୍ଡ କର୍ଣ୍ଣଙ୍କ ଗଣ୍ଡି ଫୋଡ଼ି
ଦେବାକୁ ଭୀମ ଧନୁ ମଧ୍ୟୁ ଦେଲେ ଛାଡ଼ି ।
କର୍ଣ୍ଣ ଯେ ଭୀମଙ୍କର ଘୋଡ଼ାକୁ କୋଡ଼ିଏ
ବିନ୍ଧିଲେ ଭେଟାଇବା ପାଇଁ ଯମ ରାୟେ ।
ନିମିଷ ମାତ୍ରକରେ ଭୀମଙ୍କର ରଥ
ଆଛନ୍ନ କଲେ ଶରେ କର୍ଣ୍ଣ ମହାରଥ ।
ଚଉଷଠି କାଣ୍ଡ ଭୀମଙ୍କ କବଚକୁ
ବିନ୍ଧିଲେ କର୍ଣ୍ଣ ଯୁଦ୍ଧେ ଦେଖାଇ ଓଜକୁ ।
ଏ ବାହାରେ ଭୀମଙ୍କ ପାଖକୁ ବଜାଇ
ବିନ୍ଧିଲେ ଶର ଯୁଦ୍ଧେ ମାନସ ରଞ୍ଜାଇ ।

କର୍ଣ୍ଣଙ୍କର ବାଣକୁ ନ କରି ଗଣନା
ଅସନ୍ତ୍ରାନ୍ତେ ଯୁଝିଲେ ଭୀମ ମହାମନା ।
ବାଜିଲେ ହେଲେ ଦେହେ କର୍ଣ୍ଣ କାଣ୍ଡ ରାଜି
ଭୀମ ଯୁଦ୍ଧ କଲେ ରାଜନ ତେଜେ ଗଞ୍ଜି ।
ବତିଶ ଭାଲିକାଣ୍ଡ ବିନ୍ଧିଲେ କର୍ଣ୍ଣକୁ
କର୍ଣ୍ଣ ମଧ୍ୟେ ସେ ରୂପେ ବିନ୍ଧିଲେ ଭୀମକୁ ।
କର୍ଣ୍ଣଙ୍କ ମୃଦୁ ଯୁଦ୍ଧ ଭୀମଙ୍କ ଶତ୍ରୁତା
ଯୁଦ୍ଧ ପ୍ରବର୍ତ୍ତିଲା ହେ ହସ୍ତିନା ଦେବତା ।
ଭୀମ ଯେ କର୍ଣ୍ଣଙ୍କର ମୃଦୁ ଯୁଦ୍ଧ ଦେଖି
ବିନ୍ଧିଲେ ବାଛି ଶର ରଙ୍ଗକରି ଆଖି ।
ଭୀମଙ୍କର କାଣ୍ଡ କର୍ଣ୍ଣଙ୍କ ଚାରିପଟେ
ପଡ଼ିଲେ କେତେ ଯୁଦ୍ଧରେ ସେ ପଟ ପାଟେ ।
କର୍ଣ୍ଣ ଭୀମ ଶରରେ ହୁଅନ୍ତେ ଆଚ୍ଛନ୍ନ
ବାଛିଣ ବିନ୍ଧିଲେ ତୂଣରୁ ଶରମାନ ।
କର୍ଣ୍ଣ ଯେତେକ କାଣ୍ଡ ବିନ୍ଧନ୍ତି ଭୀମଙ୍କୁ
ଭୀମ ତା କାଟନ୍ତି ଦେଖାଇ ବିକ୍ରମଙ୍କୁ ।
କର୍ଣ୍ଣ ଭୀମଙ୍କର ନ ସହି ପରାକ୍ରମ
ଆଚ୍ଛନ୍ନ କରିଦେଲେ ଶର ନୃପୋତ୍ତମ ।
ବାଜନ୍ତେ ଭୀମ ଦେହେ କର୍ଣ୍ଣ ଶରରାଜି
ନିନ୍ଦିଲା ଦେହ ଝିଙ୍କଦେହ ଶୋଭାରାଜି ।
ରକତେ ଆବୃତ ହୁଅନ୍ତେ ଭୀମ ଅଙ୍ଗ
ନିନ୍ଦିପକାଇଲା ପଲାଶଫୁଲ ରଙ୍ଗ ।
କର୍ଣ୍ଣଙ୍କ ବିକ୍ରମକୁ ନ ସହି ଭୀମବଳୀ
ପଚିଶି ନାରାଚ ବିନ୍ଧିଲେ ଅତି ଚଳି ।
ଚଉଷଠିକାଣ୍ଡ କର୍ଣ୍ଣଙ୍କ ମରମକୁ
ବିନ୍ଧିଲେ ଭୀମ କ୍ରୋଧେ ଜୀବନ ନେବାକୁ ।
ପୁଣି କର୍ଣ୍ଣଙ୍କର ଧନୁକୁ ଦେଲେ କାଟି
ବୋଇଲେ ମାଟି ଆଜି ଖାଅ ମେଲି ପାଟି ।
କର୍ଣ୍ଣଙ୍କର ଚାରିଘୋଡ଼ାଙ୍କ ତୁଲେ ପ୍ରାଣ
ସାରଥିର ନେଲେ ଯେ ଭୀମ ରଥୀରାଣ ।
ସୂର୍ଯ୍ୟରଶ୍ମି ପ୍ରାୟେ ଭୀମଙ୍କର ନାରାଚ
କର୍ଣ୍ଣଙ୍କ ଉରୁ ଗଳି ଆଶ୍ରେ କଲା ମଞ୍ଚ ।
ବିରଥ ହୋଇ କର୍ଣ୍ଣ ଆନ ରଥେ ବସି
ଦୁଇପାଟି ଲେସଡ଼ି ଦେଲେ ଥରେ ହସି ।
ଧୃତରାଷ୍ଟ୍ର ବୋଇଲେ କର୍ଣ୍ଣ ମହାବୀର
ବୋଲି ତ କହୁଥାଏ ମୋହର କୁମର ।
ସେହି କର୍ଣ୍ଣ ତ ଆଜି ହାରିଲେ ଭୀମଙ୍କୁ
ତା ଦେଖି କି ବୋଇଲା କହ ତା ଆମ୍ଭଙ୍କୁ ।
ବିରଥ ହୋଇ କର୍ଣ୍ଣ ଯୁଝିଲେ କି ନାହିଁ
ତାହା ତ କହିନାହଁ ସଞ୍ଜୟ ବତାଇ ।

ସଞ୍ଜୟ ବୋଇଲେ ହେ ବସି ଆନ ରଥେ
ଯୁଝିଲେ ପୁଣି କର୍ଣ୍ଣ ଆସି ଭୀମ ସାଥେ ।
ତୁମ୍ଭ ପୁଅମାନେ କର୍ଣ୍ଣଙ୍କ କ୍ରୋଧ ଦେଖି
ମଲେ ଭୀମ ବୋଲି ହୋଇଲେ ମହାସୁଖୀ ।
କର୍ଣ୍ଣ ଜ୍ୟାଘୋଷରେ କମ୍ପାଇ ଯୁଦ୍ଧସ୍ଥଳ
ଭୀମଙ୍କର ରଥକୁ କଲେ ରଥମେଳ ।
ସର୍ପ ନାଗ ସିଂହ ଯେ ବୃଷଭ ପରାୟେ
ଅନ୍ୟୋନ୍ୟରେ ଯୁଦ୍ଧ ସେ ଦୁହେଁ କଲେ ରାୟେ
କପଟ କୃତଜୟ ଦ୍ରୌପଦୀ ଉଲଗ୍ନ
ଜତୁଗୃହଦାହ ଗଙ୍ଗାରେ ଯେ କ୍ଷେପଣ ।
ବିଷଦାନ ବିରାଟଙ୍କର ଗୃହେ ବାସ
ସୁମରି ଭୀମ ଯୁଦ୍ଧ କଲେ ବୋହି ରୋଷ ।
ଭୟ ଛାଡ଼ି ଭୀମ ସର୍ଜନ୍ତେ କାଣ୍ଡଧାଡ଼ି
କର୍ଣ୍ଣଙ୍କ ରଥଯାକ ହୋଇଲା ସେ ଘୋଡ଼ି ।
କର୍ଣ୍ଣ ହସି ଭୀମଙ୍କ ଶରଯାକ କାଟି
ବିନ୍ଧିଲେ ଦୃଢ଼କରି ଧରି ଧନୁ ମୁଷ୍ଟି ।
ପୁଣି ଭୀମଙ୍କର ଦେହକୁ ନବକାଣ୍ଡ
ବିନ୍ଧିଲେ କର୍ଣ୍ଣବୀର ଓଟାରି କୋଦଣ୍ଡ ।
ନ ହେଜି ଭୀମସେନ କର୍ଣ୍ଣଙ୍କ କାଣ୍ଡକୁ
ଧାଇଁଲେ ବେଗେ କର୍ଣ୍ଣଠାକୁ ଯୁଝିବାକୁ ।
ମତ୍ତହସ୍ତୀ ଯୋଡ଼ାଏ ମିଶାମିଶି ହୋଇ
ଯୁଝିଲା ପରାୟେ ସେ ଯୁଝିଲେ ରୋଷାଇ ।
ଭୀମ ସେହିକାଳରେ ବଜାଅନ୍ତେ ଶଙ୍ଖ
ତୁମ୍ଭ ବଳଯାକ ଲଭିଲେ ମହାଦୁଃଖ ।
ଭୀମ କର୍ଣ୍ଣ ଦେହକୁ କାଣ୍ଡରେ ଘୋଡ଼ାଇ
ଦେଲେ ଦେଖୁ ଦେଖୁ ହସ୍ତିନାନରସାଇଁ ।
କର୍ଣ୍ଣ ସେହି କାଳରେ ଭୀମଙ୍କର ଘୋଡ଼ା
ସମ୍ମୁଖରେ ଲଗାଇଦେଲେ ତାଙ୍କ ଘୋଡ଼ା ।
ଭୀମ କର୍ଣ୍ଣଙ୍କର ଘୋଟକେ ମିଶାମିଶି
ଦେଖି ତୁମ୍ଭର ଲୋକେ ହେଲେ ଆହା ଭାଷି ।
ଋଷବରନ ତ ଭୀମଙ୍କର ଘୋଡ଼ାଏ
ବିଶଦବରନ ତ କର୍ଣ୍ଣଙ୍କ ଘୋଡ଼ାଏ ।
ଦୁହିଙ୍କର ଘୋଟକେ ମିଶାମିଶି ହେଲେ
ଏ ସକାଶୁ ଦେଖିବା ଲୋକ ମନେ କଲେ ।
ଶୁକ୍ଳ ଘନରେ ବିଶଦଘନକୁଳ
ମିଶିବା ଶୋଭାଟିକୁ କଲେ ସେ ଦୁର୍ବଳ ।
କର୍ଣ୍ଣ ଭୀମ ଦୁହିଁଙ୍କ କ୍ରୋଧକୁ ଆଲୋକ-
କରି କମ୍ପିଗଲେ ତୁମ୍ଭର ରଥୀଯାକ ।
ଭୀମ କର୍ଣ୍ଣ ଦୁହିଁଙ୍କର ଯେ ଆୟୋଧନ
ହେବାରୁ ହେଲା ଯମନଗର ବର୍ଦ୍ଧନ ।

ଜୟ ପରାଜୟ ଯେ ଭୀମ କର୍ଣ୍ଣଙ୍କର
କାହାର ହେବ କେହି ନ କଲେ ଗୋଚର ।
ଦୁର୍ଯ୍ୟୋଧନ ତୁମ୍ଭର ଦୁର୍ବୁଦ୍ଧିରୁ ରାୟେ
କଥା ଗଲା ଜାଣ ହେ ଏତେ ସରିଯାଏ ।
ଅନ୍ୟୋନ୍ୟରେ ଦୁହେଁ ହୁଅନ୍ତେ ବିନ୍ଧାବିନ୍ଧି
ନ ଉଡ଼ିଲେ ପକ୍ଷୀଏ ନଭ ହେଲା ରୁନ୍ଧି ।
ବରଷିବା ଘନ ପ୍ରାୟେକ କର୍ଣ୍ଣ ଭୀମ
ମୁଞ୍ଚି ଶର ରଚିଲେ ମହତ ସଂଗ୍ରାମ ।
ସୁବର୍ଣ୍ଣରେ ଭୂଷିତ ବାଣରେ ଆକାଶ
ପୂରନ୍ତେ ଦିଶିଲା ସେ ଉଲ୍କା ସଦୃଶ ।
ଭୀମ କର୍ଣ୍ଣ ଦୁହିଁଙ୍କ ଯୁଦ୍ଧ ନେତ୍ରେ ଦେଖି
କୃଷ୍ଣ ଅରଜୁନ ହୋଇଲେ ମହାସୁଖୀ ।
ମହତଭାର ଆଜି ପଡ଼ିଛି ଭୀମଙ୍କୁ
ଜିଣିବାଯାଏ ରଣେ ସୂତନନ୍ଦନଙ୍କୁ ।
ଭୀମଙ୍କର କାଣ୍ଡେ ବହୁତ ହାତୀ ରଥୀ
ମଲେ ତୁମ୍ଭର ହେ ରାଜନ ହୋଇ ବ୍ୟଥୀ ।
ସେ ହାତୀ ରଥୀଙ୍କର ମାଡ଼ରେ ଯୁଦ୍ଧସ୍ଥଳ
ମୁହୂର୍ତ୍ତକ ମଧ୍ୟରେ ହୋଇଲା ସଙ୍କୁଳ ।
ଧୃତରାଷ୍ଟ୍ର ବୋଇଲେ ଦେବ ଯକ୍ଷ ନର
ଉରଗ କର୍ଣ୍ଣ କରିପାରନ୍ତି ସଂହାର ।
ସେ କର୍ଣ୍ଣଙ୍କୁ ଯାହା ଯୁଝିଲେ ଭୀମସେନ
ଏକା ହୋଇ ବଡ଼ ଆଶ୍ଚର୍ଯ୍ୟ ମନେ ଘେନ ।
ପ୍ରାଣ ହୁଡ଼କରିଣ କର୍ଣ୍ଣ ଭୀମସେନ
ଯୁଝିଲେ କହ ତ ସେ ଯୁଦ୍ଧର ବିଧାନ ।
କର୍ଣ୍ଣଙ୍କୁ ପାଇ ଦୁର୍ଯ୍ୟୋଧନ ହୋଇ ବଳୀ
କୃଷ୍ଣାର୍ଜୁନ ସଙ୍ଗତେ ଆରମ୍ଭିଲେ କଳି ।
ଏବେ ତ କହୁଛ କର୍ଣ୍ଣଙ୍କୁ ଭୀମସେନ
ଥରକୁ ଥର ଯୁଦ୍ଧେ କରନ୍ତି ବଳହୀନ ।
ଏ କଥା ଶୁଣିଣ ପୋଡୁଛି ମୋ ହୃଦୟ
ମୋହ ମଧ୍ୟ ହେଉଛି ହୃଦରେ ଉଦୟ ।
ମୋ ପୁଅ ଦୁର୍ନୀତିରୁ କୁରୁଏ ଗଲେ ନାଶ
କର୍ଣ୍ଣ ନେଇ ପାରେ ଆଉ କି ଯୁଦ୍ଧେ ଯଶ ।
ଦେବତାମାନଙ୍କେ ଅଜୟେ ପାଣ୍ଡୁସୁତେ
ଦୁର୍ଯ୍ୟୋଧନ ଏହା ନ ଘେନିଲେଟି ଚିତ୍ତେ ।
ତହିଁକି ଅନୁରୂପ ଫଳୁଛି ତ ଫଳ
ଆଉଁସୁ ତ ନାହିଁକି ଏବେ ସେ କପାଳ ।
କପଟେ ପାଣ୍ଡବମାନଙ୍କ ରାଜ୍ୟ ହରି
ମନେ ମନେ ହୋଇଅଛି ତ ଦଣ୍ଡଧାରୀ ।
ପୁତ୍ର ସ୍ନେହେ ମୁଁ ଅବା ଲଘି ପାଣ୍ଡବଙ୍କୁ
ପାଉଛି ଅନୁରୂପ କରମ ଫଳକୁ ।
ଯୁଧିଷ୍ଠିର ଧରମ ଲଘି ନ ପାରିଣ
ଡରୁଥାନ୍ତି ଆମ୍ଭଙ୍କୁ କରିବାକୁ ରଣ ।
ମୋ ପୋଏ ନ ଜାଣି ଦୁର୍ବଳ ବୋଲି ତାଙ୍କୁ
ଯୁଝିଗଲେ ଏବେ ସେ ପାଇଲେ ଫଳକୁ ।
ଭୀମ ପୂର୍ବ ବରଇ ସ୍ମରି କର୍ଣ୍ଣ ତୁଲେ
ଯୁଝିଛି ଆଜି ଯୁଦ୍ଧେ ସାରିଦେବ ଭଲେ ।
ସଞ୍ଜୟ ବୋଇଲେ ହସ୍ତିନା ନରପତି
କହିବା କର୍ଣ୍ଣ ଭୀମ ଯୁଦ୍ଧେ ଦିଅ ମତି ।
ବାଛି କର୍ଣ୍ଣ ଭୀମଙ୍କ ମାର୍ଗଣ ତିରିଶି
ଧନୁ ମଧ୍ୟେ ଯୋଖି ବିନ୍ଧିଲେ ହୋଇ ରୋଷୀ ।
ଭୀମ ମଧ୍ୟ କର୍ଣ୍ଣଙ୍କ ବେଗୁଆର କାଣ୍ଡ
ବିନ୍ଧନ୍ତେ କମ୍ପିଗଲା ରାଜନ ରଣ ଦାଣ୍ଡ ।
କର୍ଣ୍ଣଙ୍କର ଧନୁକୁ ପକାଇଣ କାଟି
ଭାଲି କାଣ୍ଡେ କାଟିଲେ ସାରଥି ମୁଣ୍ଡଟି ।
କର୍ଣ୍ଣ କରେ ସୁବର୍ଣ୍ଣ ଭୂଷିତ ଶକତି
ଧଇଲେ ଭୀମ ପ୍ରାଣ ନେବା କରି ମତି ।
ବେଢ଼ାକେତେ ବୁଲାଇ ଫିଙ୍ଗି ଶକ୍ତବର
ଗରଜିଲେ କର୍ଣ୍ଣ କରିଣ ଅତି ଘୋର ।
କର୍ଣ୍ଣଙ୍କ ଗରଜନ ଶୁଣି ତୁମ୍ଭ ସୁତେ
ମଲେ ଭୀମ ବୋଲି ଆନନ୍ଦ ହେଲେ ଚିତ୍ତେ ।
ଭୀମ କର୍ଣ୍ଣଙ୍କର ଶକତିଟିଏ ଦେଖି
ସାନ କାଣ୍ଡେ କାଟିଲେ ନୋହି କିଛି ଦୁଃଖୀ ।
ବରହିପକ୍ଷଲଗା ସୁବର୍ଣ୍ଣର ପୁଂଖ
ବିଶିଖକୁ ବିନ୍ଧିଲେ ଭୀମ ବୀରଶିଖ ।
ଆନ ଧନୁ ଧରିଣ କର୍ଣ୍ଣ ମହାବଳୀ
ବିନ୍ଧିଲେ ଭୀମଙ୍କ ଉପରେ ଶରମାଳି ।
କର୍ଣ୍ଣଙ୍କର କାଣ୍ଡମାନଙ୍କୁ ନବ କାଣ୍ଡ
ଭୀମ ବିନ୍ଧିଣ ରଣେ କଲେ ଖଣ୍ଡ ଖଣ୍ଡ ।
କର୍ଣ୍ଣଙ୍କୁ ତରଜନ କରିବାକୁ ଭଲେ
ସିଂହ ପରି ସେ ଗରଜନଟାଏ କଲେ ।
ବୃଷଭ ପରି ଗର୍ଜି ହାତୀ ପରି ଯୁଝି
ବୋଲାବୋଲି ହେଲେ ହୋଇବା ବୁଝାବୁଝି ।
ଦୁହେଁ ମୁଖରେ ଭରି ବଜାନ୍ତେଣ ଶଙ୍ଖ
ସବୁପ୍ରାଣୀ ହୃଦେ ଜନ୍ମିଲା ଭୟ ଦୁଃଖ ।
ପୁଣି ଭୀମ କର୍ଣ୍ଣଙ୍କ ଧନୁ ଦେଇ କାଟି
କାଣ୍ଡକେ କଲେ ଚାରି ଘୋଡ଼ା-ପ୍ରାଣ ଲୁଟି ।
କର୍ଣ୍ଣଙ୍କ କଷ୍ଟ ଦେଖି ଦୁର୍ଯ୍ୟୋଧନ ରାଜା
ଅତିଶୟେ କ୍ରୋଧେ ଥରାଇଦେଇ ମଜ୍ଜା ।
ଦୁର୍ଜ୍ଜୟକୁ ବୋଇଲେ ଭୀମ ଜୟାକାଂକ୍ଷୀ
ହୋଇଅଛି ତାହାକୁ ମାର ଶର ଯୋଖି ।

କର୍ଣ୍ଣ-ଚନ୍ଦ୍ରମାକୁ ଯେ ଭୀମସେନ ଗ୍ରାସ
କରୁଛି ରାହୁ ପରି କର ତାକୁ ନାଶ ।
ଏରୂପେ ଦୁର୍ଯ୍ୟୋଧନ ବୋଲ କର୍ଣ୍ଣେ ଶୁଣି
ଭୀମଠାକୁ ଦୁର୍ଜ୍ଜୟ ଗଲେ ଧନୁ ଟାଣି ।
ଅଠରଟି କାଣ୍ଡ ଯେ ବିନ୍ଧିଲେ ଭୀମକୁ
ବିନ୍ଧିଲେ ଛଅକାଣ୍ଡ ସାରଥି ଦେହକୁ ।
ତିନିକାଣ୍ଡ ଧ୍ୱଜକୁ ବିନ୍ଧି ସାତ କାଣ୍ଡେ
ପୀଡ଼ା ଦେଲେ ଭୀମକୁ ପୁଣି ବିନ୍ଧି ଚାଣ୍ଡେ ।
ଭୀମ କ୍ରୋଧେ ବିନ୍ଧନ୍ତେ ସୂତ ଘୋଡ଼ା ତୁଳେ
ଦୁର୍ଜ୍ଜୟ ଯମଙ୍କ ନଗର ଜୟ କଲେ ।
ଦୁର୍ଜ୍ଜୟ ତଳେ ପଡ଼ି ଧୂଳିରେ ହୋଇ ଘୋଡ଼ି
ଦେଲାବେଳେଟି ପ୍ରିୟପରାଣକୁ ଛାଡ଼ି ।
କର୍ଣ୍ଣ ଦେଖି ତାହାଙ୍କୁ କରି ପ୍ରଦକ୍ଷିଣ
କାନ୍ଦିଲେ ସେ ହୋଇଣ ଅତ୍ୟନ୍ତ କରୁଣ ।
ଭୀମ ସେହି ସମୟେ କର୍ଣ୍ଣଙ୍କ ଦେହକୁ
ଛାଇଦେଲେ ରାଜନ ବିନ୍ଧିଣ କାଣ୍ଡକୁ ।
ବାଜିଲେ ହେଲେ କାଣ୍ଡ କର୍ଣ୍ଣ ମହାଭେଣ୍ଡା
ଯୁଦ୍ଧକଲେ ଭୀମଙ୍କୁ ବିନ୍ଧି ଗଣ୍ଡା ଗଣ୍ଡା ।
ପୁଣି ଆନ ରଥ ଆରୋହି ସୂତସୁତ
ଯୁଦ୍ଧେ ହେଲେ ଭୀମଙ୍କ ତୁଲରେ ସଙ୍ଗତ ।
କର୍ଣ୍ଣକାଣ୍ଡରେ ଦେଲେ ଭୀମଙ୍କୁ ଘୋଡ଼ାଇ
ଗର୍ଜିଲେ ଯୁଦ୍ଧେ ଭୀମ କୀର୍ତ୍ତିକି ବୁଡ଼ାଇ ।
ଭୀମ କର୍ଣ୍ଣ ଦେହକୁ ତିରିଶଟି କାଣ୍ଡ
ବିନ୍ଧନ୍ତେ କମ୍ପିଗଲା ଯୁଦ୍ଧଭୂମି ଦାଣ୍ଡ ।
କର୍ଣ୍ଣ ଭୀମ ବକ୍ଷସ୍ଥଳକୁ ନବଶର
ସବୁକାୟ ବିଦାରି ପାରେ ଯେଉଁ ଶର ।
ବିନ୍ଧିଲେ ଅଧିରଥ ନନ୍ଦନ ସେ ଶର
ବିନ୍ଧନ୍ତେ ଯୁଦ୍ଧଭୂମି ହୋଇଲା ଅନ୍ଧାର ।
ସେ କାଣ୍ଡ ଉଲ୍କା ପରି ଆକାଶକୁ ମଣ୍ଡି
କ୍ଷଣକ ମାତ୍ରକେ ଗଳିଣ ଭୀମ ଗଣ୍ଡି ।
ମହୀ ମଧ୍ୟେ ମୁଗୁରୁଯାଏ ଗଲା ପଶି
ତା ଦେଖି ତୁମ୍ଭ କର୍ଣ୍ଣ ହେଲେ ଅତି ତୋଷୀ ।
ଭୀମ ସେ ଘାତେ ଲୌହମୟ ଗଦା ଧରି
ହୋଇଛି ସୁନାମଣ୍ଡା ତହିଁରେ ଦଣ୍ଡଧାରୀ ।
ବେଢ଼ାକେତେ ବୁଲାଇ କର୍ଣ୍ଣଙ୍କ ଘୋଡ଼ାଙ୍କୁ
ଫିଙ୍ଗନ୍ତେ ସେ ଗଲେ ଯମଙ୍କ ନଗରକୁ ।
କ୍ଷରକାଣ୍ଡ ଯୋଡ଼ିକେ କାଟି କର୍ଣ୍ଣଧ୍ୱଜ
ସାରଥି ପ୍ରାଣ ନେଲେ ଭୀମ ବଳିରାଜ ।
ଘୋଡ଼ା ସାରଥିଙ୍କର ମରଣକୁ ଚାହିଁ
ଓହିଲେ କର୍ଣ୍ଣ ତଳେ ରଥରୁ ଓହ୍ଲାଇ ।

କର୍ଣ୍ଣଙ୍କର ଏ କଥା ହେଲା ଚମତ୍କାର
ବିରଥ ହୋଇ ଯାହା ରଚିଲେ ସମର ।
ଦୁର୍ଯ୍ୟୋଧନ କର୍ଣ୍ଣର ବିରଥକୁ ଜାଣି
ଦୁର୍ମ୍ମୁଖକୁ ଚାହିଁଣ କହିଲେ ଏ ବାଣୀ ।
ଭୀମଙ୍କରେ ବିରଥ ହୋଇଛନ୍ତି କର୍ଣ୍ଣ
ତାଙ୍କୁ ତୁମ୍ଭ ରଥେ ବସାଅ ହୋଇ ତୂର୍ଣ୍ଣ ।
ଦୁର୍ଯ୍ୟୋଧନ ବୋଲେ ଦୁର୍ମ୍ମୁଖ ବିନ୍ଧି ଶର
ଗଲେ ଯହିଁ ଯୁଝୁଥିଲେଟି କର୍ଣ୍ଣବୀର ।
ଦୁର୍ମ୍ମୁଖକୁ ଦେଖିଣ ଭୀମ ହୃଷ୍ଟ ହୋଇ
ପୁଷ୍ଟ କରିଦେଲେ ଯୁଦ୍ଧରେ ନିଜ ଦେହି ।
କର୍ଣ୍ଣଙ୍କୁ କାଣ୍ଡକରେ କରିଣ ନିବାର
ଦୁର୍ମ୍ମୁଖକୁ ଭୀମ ବିନ୍ଧିଲେ ବାଛି ଶର ।
ସନ୍ନତପର୍ବ ନବକାଣ୍ଡରେ ପୃଥାସୁତ
ଦୁର୍ମ୍ମୁଖର ପ୍ରାଣକୁ କଲେ କରଗତ ।
ଦୁର୍ମ୍ମୁଖରେ ମରଣ ଦେଖି ଦୁଃଖକରି
କର୍ଣ୍ଣ ତାଙ୍କ ରଥେ ବସିଲେ ଧନୁ ଧରି ।
ଦେଖିଲେ ଦୁର୍ମ୍ମୁଖର ମୁଖରୁ ରକତ
ବାହାରୁ ଅଛି ହୋଇ ଅତ୍ୟନ୍ତ ବ୍ୟକତ ।
ନଳିନୀ ପରା ଆଖି ମଳିନତା ବହି
ଲେଉଟି ରହିଛି ଧୂଳିରେ ଘୋଡ଼ି ହୋଇ ।
ଏହା ଦେଖି କର୍ଣ୍ଣଙ୍କ ଦୁଃଖରେ ନିଃଶ୍ୱାସ
ଗୋଟିଏ ଜାତ ହେଲା ହସ୍ତିନା ନରେଶ ।
ଦୁର୍ମ୍ମୁଖକୁ କର୍ଣ୍ଣ ଯେ ପ୍ରଦକ୍ଷିଣ କଲେ
ଭଲ ମନ୍ଦ ତ ଦୁଇ କଥା ନ କହିଲେ ।
ଭୀମ ସେ ସମୟରେ ଚଉଦ ନାରାଚ
ବିନ୍ଧନ୍ତେ ଚଳିଗଲା କମ୍ପାଇ ଦେବ ମଞ୍ଚ ।
କର୍ଣ୍ଣ-ଦେହ ପଦ୍ମରୁ ରକ୍ତ ମଧୁପାନ
କଲେଟି ଭୃଙ୍ଗ ପରକାର ସେ ରାଜନ ।
ପୁଣି ସେ କାଣ୍ଡେ କର୍ଣ୍ଣ ଗଣ୍ଡିକି ନିକିଳି
ରହିଲେ ଅଧେ ଅଧେ ବୁଡ଼ି ମହୀ ଆଳୀ ।
ସୁବର୍ଣ୍ଣ ପୁଂଖରେ ତ ଅଟନ୍ତି ଶୋଭନ
ସୋରିଷ ପୁଷ୍ପଶୋଭା କଲା ସେ ମର୍ଦ୍ଦନ ।
କର୍ଣ୍ଣ ଯେ ଜମ୍ବୁନଦ ଭୂଷିତ ଚଉଦ
କାଣ୍ଡ ମଧ ଭୀମେ ବିନ୍ଧିଲେ ବହି ମୋଦ ।
ସେ କାଣ୍ଡେ କ୍ରୋଞ୍ଚପକ୍ଷୀ ପ୍ରାୟେ ଯୁଦ୍ଧଦାଣ୍ଡେ
ଗମି ଭୀମବାହୁକୁ ଗତି ଅଦ୍ଭୁ ଚାଣ୍ଡେ ।
ସୂର୍ଯ୍ୟକର ପରିଟି ମହୀ ମଧ୍ୟେ ପଡ଼ି
ରହିଲେ ସେ ଛପି ଧୂଳିରେ ହୋଇ ଘୋଡ଼ି ।
ଭୀମଙ୍କର ଦେହରୁ ବହୁତ ରକତ
ସେ ଘାତ ସକାଶରୁ ହୋଇଲା ହେ ଜାତ ।

ଧୈର୍ଯ୍ୟଚିତ୍ତ ହୋଇ କର୍ଣ୍ଣଙ୍କୁ ବିନ୍ଧି ତିନି
ସାରଥି କି ସାତ ବିନ୍ଧିଲେଟି ପାବନି ।
କର୍ଣ୍ଣ ଭୀମ କାଣ୍ଡରେ ପାଇ ମହାପୀଡ଼ା
ପଳାଇଲେଟି ମୁହଁ ପୋତି ନୋହି ଛିଡ଼ା ।
ଜ୍ୱଳନ୍ତ ଅଗ୍ନିପରି ପ୍ରକାଶିଣ ତେଜ
ରହିଲେ ଭୀମ ଯୁଦ୍ଧେ ଦେଖିଲୁ ମହାରାଜ ।
ଧୃତରାଷ୍ଟ୍ର ବୋଇଲେ ଦଇବକୁ ବଳ
ନ ପାରଇ ସମୟ ହେଲେ ଲୋକ ବଳ ।
କର୍ଣ୍ଣ ପରାୟେ ଲୋକ ଛାଡ଼ିକରି ରଣ
ପଳାଇଲେ ଯାହାଟି ବଡ଼ ବିଡ଼ମ୍ବନ ।
କୃଷ୍ଣ ତୁଲେ ପାଣ୍ଡବଙ୍କୁ ଜିଣିବାକୁ
ଗୁମାନ କରି କର୍ଣ୍ଣ କହେ ତ ଆମ୍ଭଙ୍କୁ ।
ଏବେ ଏକା ଭୀମସେନକୁ ଯୁଦ୍ଧେ ହାରି
ପଳାଇଲେ ଲାଜ ବଦନୁ ଦୂର କରି ।
ମୋ ସୁତ କର୍ଣ୍ଣ ବଳେ କହୁଥାଏ ମୋତେ
ଦେବତାମାନଙ୍କୁ ମୁଁ ଜିଣିବି କିଞ୍ଚିତେ ।
ପାଣ୍ଡୁସୁତମାନେ ଅଳପ ବଳୀୟାର
ମୋ ସଙ୍ଗେ କି କରି ପାରିବେ ସେ ସମର ।
ଯୁଦ୍ଧରେ ହାରି କର୍ଣ୍ଣ ଆସିଲେ ପଳାଇ
କହ କିସ ବୋଇଲା ଦୁର୍ଯ୍ୟୋଧନ ବାଇ ।
ଯୁଦ୍ଧ ତ ନ ଜାଣଇ ମୋ ସୁତ ଦୁର୍ମୁଖ
ମରାଇଲା ତାହାକୁ ଦୁର୍ଯ୍ୟୋଧନ ମୂର୍ଖ ।
ଅଶ୍ୱତ୍ଥାମା କର୍ଣ୍ଣ ଯେ କୃପ ଶଲ୍ୟ ବଳୀ
ହାରିବେ ଭୀମ ସଙ୍ଗେ ଆରମ୍ଭିଲେ କଳି ।
ଏକା କର୍ଣ୍ଣ ହାରିବାରୁ ଏ ବଡ଼ କଥା
କରି କେତେ ବାଢ଼ିବି ପୂରିବଟି ପୋଥା ।
ଅଶ୍ୱତ୍ଥାମା କର୍ଣ୍ଣ ଶଲ୍ୟ ତ ଭୀମ ବଳ
ଜାଣନ୍ତି ଏ ସକାଶୁ ନ କରନ୍ତି ରୋଳ ।
ସୂରୁଖ ପଣେ କର୍ଣ୍ଣ ହୋଇ ଟାଣି ଟଣି
ଯୁଝିଲା ଫଳ ସେ ଭୁଞ୍ଜିଲା ଏବେ ଆଣି ।
ଯୁଦ୍ଧରେ ପୁରନ୍ଦର ହୃଦୟରେ ଦର
ରଖିପାରେ ଏକା ଜାଣୁଛି ଭୀମବୀର ।
ଦ୍ରୋଣଙ୍କୁ ରଣେ ଜିଣି ଏକା ଭୀମସେନ
ଆସିଲେ ତାଙ୍କୁ ଯୁଦ୍ଧ ପାରଇ କେ ଆନ ।
ଯମ ଆଗେ ପଡ଼ିଲେ ଲୋକ ବଞ୍ଚିପାରେ
ଭୀମ ଆଗେ ପଡ଼ିଲେ ବଞ୍ଚି ତ ନ ପାରେ ।
ଭୀମଠାକୁ ଯେ ମୋ ଯୋଦ୍ଧା ଗଲେ ଯୁଝି
କହୁଛ ସମସ୍ତେ ଶୋଇଲେ ରଣ ମଝି ।
ଭୀମର ପ୍ରତିଜ୍ଞା ସୁମରି ଦୁଃଶାସନ
ଜାଣୁଛି ମୁଁ କରି ନ ଗଲା ଆୟୋଧନ ।

ଦୁର୍ଯ୍ୟୋଧନ ଦୁଃଶାସନଙ୍କ ମତ ଜାଣି
ଦେଖାଇଲା ବଳ କହିବାରେ ଯେ ବାଣୀ ।
ଦୁର୍ଯ୍ୟୋଧନ ତ ପୂର୍ବେ କହଇ ଆମ୍ଭଙ୍କୁ
କର୍ଣ୍ଣ ଦୁଃଶାସନ ମୁଁ ଜିଣିବୁଁ ପାଣ୍ଡବଙ୍କୁ ।
ଭାଇମାନେ ଏବେଟି ଭୀମବଳେ ହତ
ହେବାରୁ ହେବଣି ମୋ ପୁତ୍ର ଶୋକଚିତ୍ତ ।
ସାକ୍ଷାତ କାଳଦେବ ପରି ଭୀମଭେଣ୍ଡା
ତା ସଙ୍ଗେ କେ ଯୁଝିବ ଅଣ୍ଟାରେ ବାନ୍ଧି ଖଣ୍ଡା ।
ବାକୀ ପାଣ୍ଡୁସୁତେ ସାତ୍ୟକି ଜନାର୍ଦ୍ଦନ
ଭୀମ ପରି ନୁହନ୍ତି ଏ ନିର୍ଦ୍ଦୟ ମନ ।
ଭୀମ ଶରଅଗ୍ନିରେ ପତଙ୍ଗ ପରାୟେ
ଜଳିଯିବେ ଜାଣୁଛି ମୋ ସୁତ ସଭିଏ ।
ସଞ୍ଜୟ ବୋଇଲେ ହେ କରୁଛ ବ୍ୟର୍ଥ ଶୋକ
ଯୁଦ୍ଧ ହେଲା ତୁମ୍ଭେ ହେବାରୁ ଅବିବେକ ।
ମନ୍ଦୁ ପଥ୍ୟ ଔଷଧ ନ ଖାଇଲା ପ୍ରାୟେ
ଆମ୍ଭର ବଚନକୁ ନ ଘେନିଲ ରାୟେ ।
ପୁଅ ବଚନକୁ ଭୁଲିଣ ଯୁଦ୍ଧ କଲ
ଏବେଟି କାନ୍ଦିଲେ ବୋଲାଇବ କି ଭଲ ।
ଆପଣା ଇଚ୍ଛାରେ ପିଇଛ କାଳକୂଟ
ମଲାବେଳେ ଯିବ କି ହେଲେ ଛଟପଟ ।
ବଳକୁ ଚାହିଁ ଲୋକେ ଯୁଦ୍ଧ କରୁଛନ୍ତି
ତାଙ୍କୁ ନିନ୍ଦା କରୁଛ ନୋହେ ଭଲ ଗତି ।
ଯେଉଁ ରୂପରେ ଯୁଦ୍ଧ ହୋଇଲା ରାଜନ
ତାହା କହିବା ଶୁଣ ହୋଇ ଏକମନ ।
ଦୁର୍ମର୍ଷଣ ଦୁଃସହ ଦୁର୍ମଦ ଅଜୟ
ଯୁଦ୍ଧରେ ଦେଖି ଭୀମ ହାତେ କର୍ଣ୍ଣ ଜୟ ।
କର୍ଣ୍ଣେ ସାହା ହୋଇ ଭୀମଙ୍କ ସମୀପକୁ
ଧୁଆଁଇଲେ ରଥ ରାଜନ ଯୁଝିବାକୁ ।
ଭୀମଙ୍କ ଚାରିପଟେ ରହି ତୁମ୍ଭ ସୁତେ
ଯୁଦ୍ଧ କଲେ ଭୀମଙ୍କୁ ଜୟ ନେବା ଚିତ୍ତେ ।
ଭୀମ ତୁମ୍ଭ ସୁତଙ୍କଠାରେ ବହି କ୍ରୋଧ
ଯୁଦ୍ଧ କଲେ ରାଜନ କରିବାକୁ ବଧ ।
ତୁମ୍ଭର ପୁଅମାନେ ଯୁଝନ୍ତେ ଭୀମଙ୍କୁ
କର୍ଣ୍ଣ ଗଲେ ଭୀମସେନଙ୍କୁ ଯୁଝିବାକୁ ।
ଭୀମ ତୁମ୍ଭ ସୁତମାନଙ୍କୁ ଲଙ୍ଘି ବଳେ
କର୍ଣ୍ଣଙ୍କୁ ଘୋଡ଼ାଇଲେ ନୃପ ଶରଜାଳେ ।
କୁରୁମାନେ କର୍ଣ୍ଣଙ୍କ ଚାରିପଟେ ରହି
ଭୀମଙ୍କୁ ଦେଲେ ରାୟେ କାଣ୍ଡକରେ ଛାଇ ।
ଭୀମ ତୁମ୍ଭର ସୁତ ପାଞ୍ଚଙ୍କୁ ପଚିଶ
କାଣ୍ଡକେ ଦେଲେ ନେଇ ଯମପୁରେ ବାସ ।

ଭୀମ ଶରବ୍ରାତ ବାତରେ ତୁମ୍ଭ ସୁତେ
ବୃକ୍ଷ ପରି ମହୀରେ ପଡ଼ିଲେ ସମସ୍ତେ ।
କର୍ଣ୍ଣଙ୍କୁ ନିବାରି ଯା ତୁମ୍ଭ ସୁତଗଣ
ମାଇଲେ ଭୀମ ଏହା ବଡ଼ କରି ଜାଣ ।
ଭୀମ କର୍ଣ୍ଣ ଦୁହେଁଟି ଶର ଚାପ ବହି
ରହିଲେ ହେ ରାଜନ ହୋଇ ଚୁହାଁଚୁହିଁ ।
ତୁମ୍ଭ ପୁଅମାନଙ୍କ ମରଣକୁ ଦେଖି
ହୋଇଣ କର୍ଣ୍ଣବୀର ନୀରପୂର୍ଣ୍ଣ ଆଖି ।
ବୋଇଲେ ମୋ ସକାଶୁ ମଲେ ପାଞ୍ଚ ଭାଇ
ଆଉ କାହା ମୁଖକୁ ଚାହିଁବି ମୁଁ ଯାଇ ।
ଏହିରୂପରେ ଭାଳି ହସି ପାଞ୍ଚ ଶର
ବିନ୍ଧି କଲେ ସତୁରି ପୁଣି ସେ ପ୍ରହାର ।
ପୁଣିଟି କାଣ୍ଡକରେ ପବନଙ୍କ ସୂନୁ
କାଟିଣ ପକାଇଲେ କର୍ଣ୍ଣଙ୍କର ଧନୁ ।
ଧନୁ ଛିଡ଼ି ଯାଆନ୍ତେ ରଥରୁ ଓହ୍ଲାଇ
କର୍ଣ୍ଣ ଗଦା ଫିଙ୍ଗିଲେ ଭୀମେ ତ୍ୱରା ହୋଇ ।
ଆସୁଥିଲା ଗଦାଟି ଗରଜିଣ ଦାଣ୍ଡେ
କାଟି ପକାଇଲେ ଯେ ଭୀମ ତାକୁ କାଣ୍ଡେ ।
କର୍ଣ୍ଣଙ୍କର ବଧ କରିବା ବିଚାରିଲେ
ସହସ୍ରସଂଖ୍ୟା କାଣ୍ଡ ଭୀମ ପ୍ରହାରିଲେ ।
କର୍ଣ୍ଣ ଭୀମଙ୍କର କାଣ୍ଡକୁ କାଣ୍ଡେ କାଟି
କାଟିଲେ ଭୀମ ଦେହର କର୍ବଚଟି ।
ପଚିଶ ସାନକାଣ୍ଡ ଭୀମଙ୍କର ପିଣ୍ଡେ
ଗଳାଇଲେ କର୍ଣ୍ଣ ଦେଖିଲୁଁ ରଣଦାଣ୍ଡେ ।
ଭୀମ କ୍ରୋଧ ହୋଇଣ କର୍ଣ୍ଣଙ୍କୁ ନବକାଣ୍ଡ
ବିନ୍ଧିଲେ କରିବାକୁ କର୍ଣ୍ଣଙ୍କୁ ଖଣ୍ଡ ଖଣ୍ଡ ।
ସେ କାଣ୍ଡେ ଭୀମ ହାତୁଁ ଫୁଟି ଅତି ଚାଣ୍ଡେ
କର୍ଣ୍ଣ ଗଣ୍ଡି ଗଳି ପଡ଼ିଲେ ରଣଦାଣ୍ଡେ ।
ଭୀମଙ୍କରେ କର୍ଣ୍ଣ ପାଆନ୍ତେ ମହାପୀଡ଼ା
ପଳାଇଲେ ରାଜନ ଯୁଦ୍ଧେ ନୋହି ଛିଡ଼ା ।
କର୍ଣ୍ଣଙ୍କ ପଳାଇବା ଦେଖି ଦୁର୍ଯ୍ୟୋଧନ
ଭାଇଙ୍କି ବୋଇଲେ ଯେ ହୋଇ ସାବଧାନ ।
କର୍ଣ୍ଣଙ୍କର ରଥ ଚାରିପଟରେ ରହି
ଯୁଦ୍ଧକର ଭୀମେ ନିର୍ଭୟଚିତ୍ତ ହୋଇ ।
ଏହା ଶୁଣି ଚିତ୍ରାକ୍ଷ ଚିତ୍ର ଚାରୁଚିତ୍ର
ଶରାସନ ଚିତ୍ରବର୍ମା ଯେ ଉପଚିତ୍ର ।
ଚିତ୍ରାଯୁଧ ମିଶି ତୁମ୍ଭର ସାତସୁତେ
ବାହାରିଲେ ଯୁଦ୍ଧଙ୍କୁ ଦୁର୍ଯ୍ୟୋଧନ ମତେ ।
ଭୀମ ତୁମ୍ଭ ସୁତମାନଙ୍କୁ ନେତ୍ରେ ଦେଖି
କାଣ୍ଡ କାଣ୍ଡକରେ ମାଇଲେ ନୋହି ଦୁଃଖୀ ।

କର୍ଣ୍ଣ ତୁମ୍ଭ ପୁଅମାନଙ୍କର ମରଣ
ଦେଖି ଅତିଶୟରେ ହୋଇଣ କରୁଣ ।
ମନେ କଲେ ବିଦୁର ଯାହା କହିଥିଲେ
ତା ନ କଲା ଫଳ ଫଳିଲା ଏବେ ଭଲେ ।
ଆନ ରଥ ଚଢ଼ିଣ ଭୀମଙ୍କୁ ସମର
କରିଲେ ଆସି ତୁମ୍ଭ ସୂତଙ୍କ କୁମର ।
ଭୀମ କର୍ଣ୍ଣ ଦୁଇରୁ ଯାଇ ଶରଧାର
ଦେଖୁଁ ଦେଖୁଁ କଲାଟି ଆକାଶ ଅନ୍ଧାର ।
ଛବିଶ ଭାଲିକାଣ୍ଡେ କର୍ଣ୍ଣଙ୍କ କବଚ
କାଟି ଭୀମ ପକାଇଦେଲେ ରାୟେ ମଞ୍ଚ ।
କର୍ଣ୍ଣ ସେହିରୂପରେ ପଚାଶଟି କାଣ୍ଡ
ବିନ୍ଧି ଛଡ଼ାଇଲେ କବଚ ଭୀମ ପିଣ୍ଡ ।
କାଟିଛଡ଼ା ସର୍ପ ପରାୟେ ଦୁଇବୀରେ
ଦିଶିଲେ ଯୁଦ୍ଧରେ କବଚ ନ ଥିବାରେ ।
ଧାର ଧାର ହୋଇଣ ବହନ୍ତେ ରକତ
ଦିଶିଲା ଦେହ ଫୁଲ କିଂଶୁକ ସମିତ ।
ଶର ଦନ୍ତ ନଖରେ ଦୁହେଁ ସିଂହ ପରି
ଯୁଦ୍ଧ କଲେ ଆମ୍ଭେ ଦେଖିଲୁ ଦଣ୍ଡଧାରୀ ।
ପରସ୍ପରେ ଦୁହେଁ ହୋଇଣ ଚୁହାଁଚୁହିଁ
ଇନ୍ଦ୍ର ବଳିକରି ଯୁଝିଲେ ନରସାଇଁ ।
ଭୀମ ସୁନାମଣ୍ଡାଚାପକୁ ଧରି କରେ
ବିନ୍ଧିଲେ ସେ ଶରକୁ ଅତ୍ୟନ୍ତ ବେଗରେ ।
ସେ ସକାଶୁଁ ସେ ଧନୁ ମେଘେ ବିଜୁପରି
ଦିଶିଲା ହେ ଜାଣ ହସ୍ତିନା ଦଣ୍ଡଧାରି ।
କର୍ଣ୍ଣ-ପର୍ବତରେ ଭୀମଙ୍କ ଶରବ୍ରାତ
ହୋଇଲା ଜଳଧାରା ପରି ଉପଗତ ।
ତୁମ୍ଭ ପୁଅମାନେ ଭୀମଙ୍କ ପରାକ୍ରମ
ଦେଖି କଲେ ବୁକୁମାନଙ୍କୁ ଦମ ଦମ ।
ଶ୍ରୀକୃଷ୍ଣ ଅରଜୁନ ସାତ୍ୟକି ଆନନ୍ଦ
ବଢ଼ାଇଲେ ଭୀମ କରନ୍ତେ ମହାଦ୍ୱନ୍ଦ୍ୱ ।
ଭୀମଙ୍କର ତ ଭୁଜ ଦୀର୍ଘ ଧୈର୍ଯ୍ୟ ଦେଖି
ତୁମ୍ଭ ପୁଅମାନେ ବୁଜିଲେ ଭୟେ ଆଖି ।
ଭୀମଙ୍କର ଜ୍ୟାଘୋଷ କର୍ଣ୍ଣ କର୍ଣ୍ଣେ ଶୁଣି
କ୍ରୋଧରେ ଦେଇ ଦେହ ଶିରଯାକ ଟାଣି ।
ମୁହୂର୍ତ୍ତେ ଯୁଦ୍ଧ ଛାଡ଼ି ତୁମ୍ଭ ସୁତବୃନ୍ଦ
ମରିଛନ୍ତି ତା ଦେଖି ହୋଇଣ ଆନନ୍ଦ ।
ଭୀମଙ୍କର ସମୀପକୁ ସେହୁ ଆସିଲେ
ମଲା ଭୀମ ଆଜି ମୋ ହାତରେ ବୋଇଲେ ।
କର୍ଣ୍ଣ ତ ଦିବ୍ୟ ଅସ୍ତ୍ରମାନଙ୍କୁ ପ୍ରହାରି
ଦିଶିବେ ସେ ମଧ୍ୟାହ୍ନ ସୂର୍ଯ୍ୟଦେବ ପରି ।

କର୍ଣ୍ଣଙ୍କର କାଣ୍ଡରେ ଭୀମ ମହାବଳ
ରହିଲେ ଘୋଡ଼ିହୋଇ ଜାଣ ନରପାଳ ।
ପକ୍ଷୀମାନେ ବସାରେ ପଶିଗଲା ପ୍ରାୟେ
କର୍ଣ୍ଣ ଶର ପେଷିଲେ ଭୀମ ଦେହେ ରାୟେ ।
ଧ୍ୱଜ ଧନୁ ଛତ୍ର ଈଶାରୁ କର୍ଣ୍ଣଙ୍କର
ବାହାରିଲା ଯୁଦ୍ଧେ ଦେଖିଲୁଁ ରାୟେ ଶର ।
କର୍ଣ୍ଣଙ୍କ ଶରଜାଲେ ନଭ ହେଲା ପୂର୍ଣ୍ଣ
କରି ନ ପାରିଲେଟି ପକ୍ଷୀଏ ଗମନ ।
ଅନ୍ତକ ପରି କର୍ଣ୍ଣ ଯୁଦ୍ଧ କରୁଥିଲେ
ତେବେ ହେଲେ ଭୀମ ତାହାଙ୍କୁ ନ ଡରିଲେ ।
ପ୍ରାଣତ୍ୟାଗ ଯେ ଯୁଦ୍ଧତ୍ୟାଗ କରିବାର
ଭଲ ନୁହେ ଭାବି ଯୁଝିଲେ ଭୀମବୀର ।
କର୍ଣ୍ଣଙ୍କର ଦେହକୁ ବଜାଇ ଯୋଡ଼ିଏ
ବିନ୍ଧିଲେ କ୍ରୋଧାଗ୍ନିରେ ଭୀମ ଜାଳି କାୟେ ।
କର୍ଣ୍ଣ ଯେଉଁରୂପେ ଭୀମଙ୍କୁ ଆଚ୍ଛନ୍ନ
କରିଥିଲେ ସେରୂପେ କଲେ ଭୀମସେନ ।
ଭୀମଙ୍କ ପରାକ୍ରମ ଦେଖି ତୁମ୍ଭ ଲୋକ-
ଯାକ ପ୍ରଶଂସିଲେ ହେ ହସ୍ତିନାନାୟକ ।
ସିଦ୍ଧ ଚାରଣେ ତହିଁ ଯୁଦ୍ଧ ଦେଖୁଥିଲେ
ଅଛନ୍ତି ଆଛା ଭୀମ ବୋଲି ପ୍ରଶଂସିଲେ ।
ଭୂରିଶ୍ରବା କୃପ ଯେ ଶଲ୍ୟ ଜୟଦ୍ରଥ
ଅଶ୍ୱତ୍ଥାମାଟି ଯୁଧାମନ୍ୟୁ ମହାରଥ ।
କୃଷ୍ଣାର୍ଜୁନ ସାତ୍ୟକି ଆଦି ଉଚ୍ଚେ ଡକା-
ପାରି ଭୀମସେନଙ୍କୁ ପ୍ରଶଂସିଲେ ଏକା ।
ଏହି ସମୟେ ଦୁର୍ଯ୍ୟୋଧନ ନରପତି
ଡକାଇ ସମୀପକୁ ବହୁତ ନୃପତି ।
କହିଲେ ମୋ ଭାଇମାନଙ୍କୁ ଘେନିଯାଅ
ଯୁଦ୍ଧରେ ରଖ ଅଧିରଥଙ୍କର ପୁଅ ।
ନୋହିଲେ ଭୀମ ଶର-ଅଗ୍ନି ମୁଖେ ପଡ଼ି
ଦେବେଟି ଆହେ କର୍ଣ୍ଣ ପ୍ରିୟପ୍ରାଣ ଛାଡ଼ି ।
ଦୁର୍ଯ୍ୟୋଧନଙ୍କରଟି ଶୁଣି ଏ ବଚନ
ବାହାରିଲେ ତୁମ୍ଭର ସାତୋଟି ନନ୍ଦନ ।
ପ୍ରଳୟେ ସାତଗ୍ରହ ସୋମେ ବେଢ଼ି କରି
ଯେଉଁରୂପେ ପୀଡ଼ା ଦିଅନ୍ତି ଦଣ୍ଡଧାରୀ ।
ସେରୂପେ ସେ ସାତେ ଭୀମଙ୍କୁ ଶରଭିଡ଼ା
ସରଜି ବେଢ଼ିଣ ରଚିଲେ ମହାପୀଡ଼ା ।
ଭୀମ ତୁମ୍ଭ ସୁତଙ୍କୁ କରି ତୁଚ୍ଛ ବୁଦ୍ଧି
ନ କଲେ ତାଙ୍କଠାରେ କିଛି ରଥବିଧି ।
ଏକାବେଳକରେଟି ସନ୍ଧି ସାତକାଣ୍ଡ
ବିନ୍ଧିକରି କାଟି ପକାଇଲେ ସେ ମୁଣ୍ଡ ।

ଚିତ୍ରାୟୁଧଟି ଶତ୍ରୁ ସହ ଚିତ୍ରସେନ
ଶତ୍ରୁଞ୍ଜୟ ଚିତ୍ର ଯେ ସୁଦୃଢ଼ ବିକର୍ଣ୍ଣ ।
ଏ ସାତଙ୍କ ନିଧନ ଦେଖି ତୁମ୍ଭ ଲୋକେ
କର୍ଣ୍ଣଆଦି ସର୍ବେ କାନ୍ଦିଲେ ସକସକେ ।
ଭୀମ ଦେହ-ଫୁଲାଇ କରି ସିଂହନାଦ
ମାଡ଼ିଲେ ଧନୁର୍ଗୁଣ ହୋଇଣ ପ୍ରମୋଦ ।
ଯୁଧିଷ୍ଠିର ଭୀମଙ୍କ ଗରଜନ ଶୁଣି
ଆନନ୍ଦରେଟି କହି ନ ପାରିଲେ ବାଣୀ ।
ଲୋକଙ୍କୁ ବୋଇଲେ ବଜାଅ ବୀରବାଦ୍ୟ
ଶୁଣି ଭୀମ ବହନ୍ତୁ ହୃଦରେ ପ୍ରମୋଦ ।
ଏରୂପେ କହି ସାରି ଧର୍ମଙ୍କର ସୁତ
ବାହାରିଲେ ଦ୍ରୋଣେ ଯୁଝିବା କରି ମତ ।
ଏକତିରିଶ ଭ୍ରାତ ମରିବାର ଦେଖି
ଦୁର୍ଯ୍ୟୋଧନ ରାଜା ହୋଇଣ ମହାଦୁଃଖୀ ।
ମନେ କଲେ ବିଦୁର କହିବା ବଚନ
ଲଙ୍ଘି ବ୍ୟର୍ଥେ ମୁହିଁ କଲିଟି ଆୟୋଧନ ।
କାହାକୁହିଁ କିଛି ମୁଁ ନ କହିଣ ବାଣୀ
ରହିଲେ ତୁନି ହୋଇ ଭୀମ ବଳ ଗୁଣି ।
ତୁମ୍ଭ ପୁଅ କୃଷ୍ଣାଙ୍କୁ ଆନ ପତି ବର
ବୋଲିବା ଫଳ ଏବେ ଫଳିଲା ନୃବର ।
ତେର ବରଷରଟି କ୍ରୋଧାଗ୍ନିକି ଛାଡ଼ି
ଦେବାରୁ ଭୀମ ତୁମ୍ଭ ସୁତେ ଗଲେ ପୋଡ଼ି ।
ଦୁର୍ବୁଦ୍ଧି କର୍ଣ୍ଣ ବୁଦ୍ଧି ଘେନି ହେ ରାଜନ
ନ କଲେ ସୁହୃଦମାନଙ୍କର ବଚନ ।
ସେ ସକାଶୁଁ ତୁମ୍ଭେ ପାଇଲ ଏଡ଼େ ଦଶା
ବେଳକୁବେଳ ଯେ ବଳିଲା ଲୋକହସା ।
ପୁଅଟିମାନଙ୍କୁ ମରାଇବାକୁ ମୂଳ
କରତା ଆପଣ ହେଲେ ହେ ନରପାଳ ।
ବିବର୍ଣ୍ଣ ଚିତ୍ରସେନ ପ୍ରାୟେ ସୁତ ମଲେ
କେଉଁ କଥା ଅଛିଟି କହିବାକ ଭଲେ ।
ଭୀମଙ୍କର ଚକ୍ଷୁରେ ତୁମ୍ଭର ନନ୍ଦନ
ପଡ଼ିଲେ ବସୁଛନ୍ତି ଯମଙ୍କ ସଦନ ।
ଧୃତରାଷ୍ଟ୍ର ବୋଇଲେ ମୋର ଦୁର୍ନୀତିରୁ
ଏ ସବୁ ହେଉଛି କି ହେବ ହୋଇ ଭୀରୁ ।
ସେ ଯୋଗ ଥିଲା ସେ ତ ହେଉଛି ସଞ୍ଜୟ
କିରୂପେ ଯୁଦ୍ଧ ହେଲା ତା ମୋତେ ବତାଅ ।
ସଞ୍ଜୟ ବୋଇଲେ ହେ କର୍ଣ୍ଣ ଭୀମ ବଳୀ
ବିନ୍ଧାବିନ୍ଧ ହେଲେ ବାଛିଣ ଶର ଚଳି ।
ଭୀମଙ୍କର ନାମରେ ଅଙ୍କିତ ଶରରାଜି
ପଶିଲେ କର୍ଣ୍ଣଦେହେ ରାଜନ ଗରଜି ।

ସେ ସକାଶୁଁ କର୍ଣ୍ଣ ପାଇଣ ମହାବ୍ୟଥା
ଥରେ ଥରେ କହି ନ ପାରିଲେଟି କଥା ।
ମୟୂରପକ୍ଷଲଗା ଶର କର୍ଣ୍ଣ ବିନ୍ଧି
ଦେଲେ ଭୀମଙ୍କରଟି ଯୁଦ୍ଧଦାଣ୍ଡ ରୁନ୍ଧି ।
ଚାରିଦିଗୁଁ ପଡ଼ନ୍ତେ ଦୁହିଙ୍କ ବାଣଗଣ
ତୁମ୍ଭ ସୈନ୍ୟ ଭାଜିଲେ ଘେନିଣ ପରାଣ ।
ଭୀମଙ୍କର ଧନୁରୁ ଶରେ ହୋଇ ଚ୍ୟୁତ
କଲେ ତୁମ୍ଭ ସେନାମାନଙ୍କୁ ରାୟେ ହତ ।
ହାତୀ ଘୋଡ଼ା ପଦାତି ପଡ଼ିବାରେ ମହୀ
ସଙ୍କୁଳ ହୋଇଲା ମଡ଼ାରେ ନରସାଇଁ ।
ନ ସହି ତୁମ୍ଭ ଲୋକେ ଭୀମ ଶରତାପ
ଛାଡ଼ିଲେ କର୍ଣ୍ଣ ଭୀମ ଦୁହିଙ୍କ ସମୀପ ।
ବହୁତ ଦୂରେ ଯାଇ ତୁମ୍ଭ ଲୋକେ ରହି
ଭୀମ କର୍ଣ୍ଣ ଯୁଦ୍ଧ ଦେଖିଲେ ସୁଖ ବହି ।
ସେ କାଳରେ ଯେ ନର ଗଜ ଅଶ୍ୱକୁଳ
ରକତରେ ପୂରିଗଲାଟି ରସାତଳ ।
ଖଳ ଖଳ ହୋଇ ବହନ୍ତେ ନଦୀ ପରି
ମଡ଼ା କାଠ ଭସାଇଲାଟି ଦଣ୍ଡଧାରୀ ।
ରଥ ଧନୁ କବଚ ଶକତି ତୋମର
ପରଶ୍ୱଧ ନାରାଚ ପଟିଷ ଗଦା ଶର ।
ପ୍ରାସ ଚକ୍ର ପରିଘ ଶତଘ୍ନୀ ମୂଷଳ
ଅଙ୍ଗୁରିୟକ ହାର ଅଙ୍ଗଦ କୁଣ୍ଡଳ ।
ବଳୟ ଚୂଡ଼ାମଣି ମୁକୁଟ ସୁନାସୂତ୍ର
କର୍ଣ୍ଣିଭୂଷା ପାଗ ଚାମର ବସ୍ତ୍ର ଛତ୍ର ।
ଏ ସମସ୍ତ ଛିଡ଼ି ପଡ଼ିଣ ମହୀତଳେ
ଦିଶିଲେ ଅତି ଲାଲ ରକତର ବୋଳେ ।
ଅମାନୁଷ କରମ କର୍ଣ୍ଣ ବୀରଙ୍କର
ଦେଖି ମହାଶ୍ଚର୍ଯ୍ୟ ପାଇଲେ ସିଦ୍ଧ ନର ।
ପବନ ପାଇ ଶର-ଅଗ୍ନିଙ୍କ ପ୍ରବଳ
ହେଲା ପରି ଦିଶିଲା ସେ ଦୁହିଙ୍କ ରୋଳ ।
ତୁମ୍ଭ ସୈନ୍ୟ-ପଦ୍ମବନକୁ କର୍ଣ୍ଣ ଭୀମ
ହସ୍ତୀ ପରି ମନ୍ଥିଲେ କରିଣ ସଂଗ୍ରାମ ।
କର୍ଣ୍ଣ ଭୀମ ଦେହକୁ ବିନ୍ଧି ତିନିକାଣ୍ଡ
ବହୁ ଶରେ ପୁଣି ଛାଇଲେ ଭୀମପିଣ୍ଡ ।
କର୍ଣ୍ଣଟି ଯେତେ କାଣ୍ଡ ବିନ୍ଧିଲେ ଭୀମଙ୍କୁ
ଭୀମ ତାହା ନ ହେଜି କଲେ ସଂଗ୍ରାମକୁ ।
ଭୀମ ଯେ କର୍ଣ୍ଣକୁଣ୍ଡଳକୁ କର୍ଣ୍ଣିକାଣ୍ଡେ
କାଟି ପକାଇଲେ ଦେଖିଲୁ ରଣଦାଣ୍ଡେ ।
ହସି ହସି ପୁଣି ସେ ଭଲ୍ଲ ଏକଶରେ
କର୍ଣ୍ଣଙ୍କର ହୃଦଦେଶକୁ ବିଦ୍ଧ କଲେ ।
ଏ ବାହାରେଟି ଆଶୀବିଷ ଦଶଶର
ବିନ୍ଧିଲେ କରିବାକୁ କର୍ଣ୍ଣକୁ ସଂହାର ।
ସେ ନାରାଚେ ମଞ୍ଚକୁ କମ୍ପାଇ ଗମିଲେ
କର୍ଣ୍ଣଙ୍କର ଲଲାଟ ପଟରେ ଗଳିଲେ ।
କର୍ଣ୍ଣ ସେ ନାରାଚକୁ ଲଲାଟଦେଶେ ବହି
ଦେଲେଟି ଇନ୍ଦୀବରମାଳାକୁ ଛପାଇ ।
ଟିକିଏ ଯାଏ ମାତ୍ର ଧରି ଯୁଗନ୍ଧର
ରହିଲେ ଝୁମି ଦେଖୁଥିଲୁଁ କର୍ଣ୍ଣବୀର ।
ଚେତା ପାଇଣ କର୍ଣ୍ଣ ଦୁର୍ବୁଦ୍ଧିଙ୍କ ବେଢ଼ା
ପୁଣି ଯୁଦ୍ଧ କଲେ ସେ ହୋଇ ଉନମତ୍ତା ।
କ୍ରୋଧରେ ଭୀମଙ୍କୁ ବିନ୍ଧିଲେ ଶଏଶର
ଗମିଲେ ସେ ଆକାଶେ କରି ରଡ଼ି ଘୋର ।
କର୍ଣ୍ଣଙ୍କର ଶରକୁ ନ କରି ଗଣନା
ଶରବୃଷ୍ଟି ରଞ୍ଜିଲେ ଭୀମ ମହାମନା ।
ଭୀମଙ୍କର ବକ୍ଷସ୍ଥଳକୁଟି ତୀକ୍ଷଣ
ନବକାଣ୍ଡ ବିନ୍ଧିଲେ କର୍ଣ୍ଣ ରଥୀରାଣ ।
ପରସ୍ପରେ ଦୁହେଁ ହୁଅନ୍ତେ ବିନ୍ଧାବିନ୍ଧି
ନ ଉଡ଼ିଲେ ପକ୍ଷୀ ଆକାଶ ଯାନ୍ତେ ରୁନ୍ଧି ।
ଦୁହିଙ୍କର ଛାଟେଣି ଶବଦରେ ଭୟ
ବୋଇଲା ହେ ରାଜନ ହୃଦରେ ଉଦୟ ।
ଅନ୍ୟୋନ୍ୟରେ ଦୁହେଁ ହୋଇଣ ଚକାଚକି
ବିନ୍ଧା ବିନ୍ଧି ହୋଇଲେ ଅତ୍ୟନ୍ତ ଗରଜି ।
କ୍ଷୁରକାଣ୍ଡେ କର୍ଣ୍ଣଙ୍କ କାଟିକରି ଧନୁ
ଗର୍ଜନ୍ତୁଟାଏ କଲେ ପବନଙ୍କୁ ସୂନୁ ।
ଛିଡ଼ିଯିବା ଧନୁକୁ କର୍ଣ୍ଣ ରଥେ ଥୋଇ
ଧଇଲେ ବଳୀୟାର ଧନୁଟିଏ ଯାଇ ।
ଗୁଣ ଦେଇଣ ଥରେ ମାଜି ଦେଇ ଗୁଣ
ଟଙ୍କାରିଲେ କ୍ରୋଧରେ କର୍ଣ୍ଣ ରଥୀରାଣ ।
କୁରୁ ସଉବୀରମାନଙ୍କର ମରଣ
ଦେଖି ମହାକ୍ରୋଧ ହୋଇଲେ କର୍ଣ୍ଣରାଣ ।
ରଙ୍ଗ କରି ନୟନ କୋଣରେ ଭୀମଙ୍କୁ
ଚାହିଁଲେ ସେ ତ ରଥୀ ଜୀବନ ନେବାକୁ ।
କର୍ଣ୍ଣଙ୍କର ଚାପରୁ ଖସି ଶରରାଜି
ଦିବାକର କରକୁ ପକାଇଲେ ଗଞ୍ଜି ।
କର୍ଣ୍ଣଙ୍କର ଆଦାନ ସନ୍ଧାନ ବିମୋଚନ
ଦେଖି ନ ପାରିଲାଟି କାହାରି ନୟନ ।
କର୍ଣ୍ଣ ଯେ କୋପେ ଲାଖ ବିନ୍ଧିବାର କାଳେ
ମଣ୍ଡଳାକାର ଧନୁ ଦିଶିଲା ସବୁବେଳେ ।
ଆକାଶେ କ୍ରୌଞ୍ଚପକ୍ଷୀ ପ୍ରାୟେ କର୍ଣ୍ଣଶର
ପୂରି ରହିଲେ ହେ ରାଜନ ମନେକର ।

ଗୃଧ୍ରପକ୍ଷୀ ଲଗା ତଇଳପିଆ ଶର
ଯାକ ବାଛି ବିନ୍ଧିଲେ ତୁମ୍ଭ କର୍ଣ୍ଣ ବୀର ।
ପ୍ରତିକ୍ଷଣେ ଭୀମଙ୍କ ରଥେ କର୍ଣ୍ଣକାଣ୍ଡ
ପଟପାଟେ ବାଜିଲେ ଗର୍ଜାଇ ରଣଦାଣ୍ଡ ।
ଏତେ ତେତେ କର୍ଣ୍ଣ ବିନ୍ଧିଲେ ନରମଣି
କହି ନ ପାରିବ କହୁଛି ମୋର ବାଣୀ ।
କାଣ୍ଡକୁ କାଣ୍ଡ ଲାଗି ଗମନ୍ତେ ଆକାଶେ
ଗୋଟିଏ କାଣ୍ଡ ପରି ଦୃଶକୁ ସେ ଦିଶେ ।
ଭୀମ ପର୍ବତକୁ ଯେ କର୍ଣ୍ଣ ଶରଧାରେ
ଘୋଡ଼ାଇ ଦେଲେ ତା ଦେଖିଲୁ କ୍ଷଣକରେ ।
ଭୀମଙ୍କ ବଳ ବୀର୍ଯ୍ୟ ବ୍ୟବସାୟଯାକ
ଦେଖିଲେ ତୁମ୍ଭ ସୁତ ତୁଲେ ତୁମ୍ଭ ଲୋକ ।
ସମୁଦ୍ର ପରି ଭୀମ ବେଳାକୁ ଶାୟକ-
ଜଳ ଘୋଟିଥିଲା ହେ ହସ୍ତିନାନାୟକ ।
ତେବେହେଲେ ଭୀମ ନ କରି ଭୟ କିଛି
ଯୁଦ୍ଧ କଲେ କର୍ଣ୍ଣଙ୍କୁ ତୂଣୁଁ ଶର ବାଛି ।
ଇନ୍ଦ୍ରଧନୁ ପରି ଯେ ଭୀମଙ୍କର ଧନୁ
ଦେଖିଲୁଁ ସେକାଳେ ଅମ୍ବିକାଦେବୀ ସୂନୁ ।
ଭୀମଙ୍କ ଶରଘାତେ ଆକାଶେ ପକ୍ଷୀଏ
ପକ୍ଷ ଚାଳି ନ ପାରି ରହିଲେ ଲୁଚି ଭୟେ ।
ଅଟନ୍ତି ତ ଭୀମଙ୍କ ଶରେ ସୁନାମଣ୍ଡା
ନିନ୍ଦାକଲେ ଆକାଶେ ସେବତୀ ଫୁଲଧଣ୍ଡା ।
ଭୀମଙ୍କ ଶରଜାଳେ କର୍ଣ୍ଣଙ୍କ ଶରମାଳେ
ଛିଡ଼ି ଛିଡ଼ି ରାଜନ ପଡ଼ିଲେ ହେ ତଳେ ।
ଭୀମ କର୍ଣ୍ଣଙ୍କର ଶାୟକ ବଜାବଜି
ହୁଅନ୍ତେ ତଳେ ଝଡ଼ିପଡ଼ିଲେ ଅଗ୍ନିରାଜି ।
ଭୀମଙ୍କର ବୀର୍ଯ୍ୟକୁ କରି ଅନାଦର
ଶରରେ ଛାଇଦେଲେ ତାଙ୍କର ଶରୀର ।
କମାରଶାଳେ ଘଷା ହୋଇଥିବା ଶର
ବାଛି ପୁଣି ଭୀମେ ବିନ୍ଧିଲେ କର୍ଣ୍ଣବୀର ।
ଭୀମ ରହ ରହ ତ ବୋଲିଣ କର୍ଣ୍ଣଙ୍କୁ
କାଟିଲେ କର୍ଣ୍ଣ କାଣ୍ଡ ବିନ୍ଧିଣ କାଣ୍ଡଙ୍କୁ ।
ସୂତସୁତ ଅଭୀତ ହୋଇ ତୁମ୍ଭ ହିତ
ଭାବି ଅସ୍ତ୍ରମାନଙ୍କୁ କରି କରଗତ ।
ଭୀମଙ୍କର ଶାୟକ ଭାରତିକି କାଟି
ଭୀମଙ୍କ ରଥ ଆଗେ ରଥକୁ ସେ ଯୋଟି ।
ଧନୁର୍ଗୁଣ କାଟି ଯୋଆଳି ଯୋତାଯାକ
ଟିକିଟିକି କରିଲେ ବିନ୍ଧିଣ ଶାୟକ ।
ଏହା କରି ସାରି ଘୋଡ଼ାଙ୍କ ପ୍ରାଣ ନେଲେ
ସାରଥିକି ତ ତିନି ଶର ପ୍ରହାରିଲେ ।
ଭୀମଙ୍କର ସାରଥି ପାଇ ମହାପୀଡ଼ା
ହେଲା ଯୁଧାମନ୍ୟୁ ରଥରେ ଯାଇ ଛିଡ଼ା ।
ଏହି ଛିଦ୍ରେ କର୍ଣ୍ଣ ପତାକା ଯେ ଧ୍ୱଜକୁ
କାଟିଣ ଦେଖାଇଲେ ଅବନୀ ମଧ୍ୟକୁ ।
ବିରଥ ହୋଇ ଭୀମ ହୋଇ ଶକ୍ତିହାତ
ଫିଙ୍ଗିଲେ ସେ କର୍ଣ୍ଣ ଦେହକୁ ନରନାଥ ।
ଭୀମହାତୁ ଫିଟି ଶକତି ରଣଦାଣ୍ଡେ
ଧାଇଁଲା କର୍ଣ୍ଣ ତା କାଟିଲେ ଦଶକାଣ୍ଡେ ।
ଶକତି ନାଶ ଦେଖି ଧରନ୍ତେ ଢାଲ ଖଣ୍ଡା
କାଟିଣ ପକାଇଲେ ତାହା କର୍ଣ୍ଣ ଭେଣ୍ଡା ।
ଭୀମ ଖଣ୍ଡା ଧରିଣ କର୍ଣ୍ଣଙ୍କ ରଥକୁ
ଫିଙ୍ଗିଲେ ଭଡ଼ାକେତେ ଧାଇଁଣ ଆଗକୁ ।
ସେ ଖଣ୍ଡା ଭୀମ ହାତୁ ଫିଟି ଅତିଚାଣ୍ଡେ
ଗମି ଧନୁ କାଟି ପଡ଼ିଲା ରଣଦାଣ୍ଡେ ।
କର୍ଣ୍ଣ ଯେ ଭାରବୁହା ଧନୁଟାଏ ଧରି
ରହିଲେ ଭୀମ ଆଗେ ଯୁଦ୍ଧ ଇଚ୍ଛାକରି ।
ଭୀମ ସେ ସମୟେ ଡେଇଁଲେ ଆକାଶକୁ
ଆଧିରଥିଙ୍କର ପରାଣ ସେ ନେବାକୁ ।
ଭୀମଙ୍କର ଉଦ୍ଧତପଣ କର୍ଣ୍ଣ ଦେଖି
ରଥରେ ଲୁଚିଗଲେ ବୁଜି ଦେଇ ଆଖି ।
ଭୀମ କରେ ଭାଙ୍ଗି ପକାଇ ରଥ ଧ୍ୱଜ
ତଳେ ଛିଡ଼ାହେଲେ ଦେଖିଲୁଁ ମହାରାଜ ।
ଭୀମଙ୍କ ଜୟକର୍ମ ଦେଖିକରି ରଣେ
ଧନ୍ୟ ଧନ୍ୟ ବଚନେ ପୂଜିଲେ ଚାରଣେ ।
ବୋଇଲେ କର୍ଣ୍ଣରଥେ ଥାନ୍ତେ ଯେବେ ବସି
କରନ୍ତେ ଭୀମ ତାଙ୍କୁ ଯମପୁରବାସୀ ।
କର୍ଣ୍ଣ ଧୈର୍ଯ୍ୟ ହୋଇ ଭୀମଙ୍କର ପାଶକୁ
ଗଲେ ବିନ୍ଧି ବିନ୍ଧି ଯେ ମାର୍ଗଣଗଣକୁ ।
ବରଷାକାଳ ମେଘ ପ୍ରାୟେ ଦୁହେଁ ଗର୍ଜି
ଯୁଝିଲେ ହେ ରାଜନ ଯୁଦ୍ଧରୁ ନ ଭାଜି ।
ଆୟୁଧହୀନ ହୋଇଥିଲେ ଭୀମସେନ
ମାରିଥିଲେ ଅର୍ଜୁନ ଯେତେ ହାତୀ ସୈନ୍ୟ ।
ସେ ସୈନ୍ୟର ଭିତରେ ଦେହକୁ ଲୁଚାଇ
ରହିଲେ କର୍ଣ୍ଣଶର ହେବାକୁ ବଞ୍ଚାଇ ।
କର୍ଣ୍ଣ ସେ ହାତୀମଡ଼ାମାନଙ୍କୁ କାଟି କାଣ୍ଡେ
ବିନ୍ଧିଲେ ଶରମାନ ବାଛି ଭୀମପିଣ୍ଡେ ।
ସେ ଘାତେ ପୀଡ଼ା ପାଇ କରେ ଟେକି ହେତି
ମାରନ୍ତେ କାଟିଲେ ତା କର୍ଣ୍ଣ ମହାରଥୀ ।
କର୍ଣ୍ଣ କାଣ୍ଡେ ଛାଡ଼ି ଯିବାର ହାତୀଅଙ୍ଗ-
ମାନଙ୍କୁ ଫିଙ୍ଗି ଭୀମ କଲେ ରଣରଙ୍ଗ ।

ରଥ ଚକ ଅଶ୍ୱ ମାହୁନ୍ତଙ୍କର ମଡ଼ା
ଫିଙ୍ଗି ଯୁଦ୍ଧ କଲେ ଭୀମ ହୋଇଣ ଛିଡ଼ା ।
ଭୀମଙ୍କର ଫିଙ୍ଗିବାଯାକ କର୍ଣ୍ଣ କାଟି
କାହିଁ ଯିବୁ ବୋଲି ଚାହିଁଲେ ଯେ ତରାଟି ।
ବଜ୍ର ପରି ମୁଷ୍ଟିକୁ ଟେକି ଭୀମସେନ
ଧାଇଁଲେ କରିବାକୁ କର୍ଣ୍ଣଙ୍କୁ ନିଧନ ।
ଅର୍ଜ୍ଜୁନ କର୍ଣ୍ଣଙ୍କୁ ମାରିବି ବୋଲୁଥିଲେ
ତହୁଁ ଭୀମ ତୁମ୍ଭ କର୍ଣ୍ଣଙ୍କୁ ନ ମାଇଲେ ।
କର୍ଣ୍ଣଙ୍କୁ ମାରିବାକୁ ସମର୍ଥ ଭୀମସେନ
ନ ମାଇଲେ ମାନିଟି ଅର୍ଜ୍ଜୁନ ବଚନ ।
କର୍ଣ୍ଣ ତାହା ଜାଣି ନ ପାରିଟି ଭୀମଙ୍କୁ
କରାଇଲେ ମୋହ ବିନ୍ଧିଣ ମାର୍ଗଣକୁ ।
କୁନ୍ତୀଙ୍କ ବଚନକୁ ସୁମରଣା କରି
ନ ମାଇଲେ ଭୀମଙ୍କୁ କର୍ଣ୍ଣ ଶସ୍ତ୍ରଧାରୀ ।
ଭୀମଙ୍କ ହାତେ ଯେବେ ଥାଆନ୍ତା ଆୟୁଧ
ନ ପାରନ୍ତେ କର୍ଣ୍ଣ ତାହାଙ୍କୁ କରି ବଧ ।
କର୍ଣ୍ଣ ଭୀମ ପେଟେ ଲଗାଇ ଧନୁ ଗୋଟି
କହିଲେ ଏ ବଚନ ହସି ମେଲି ପାଟି ।
ଆହେ ଭୀମ ତୁମ୍ଭର ବାଳକ ବୟସ
ହୋଇଛି ମୁଖରେ ନାହିଁ ତ କିଛି ନିଶ ।
ଖାଇବା ଖେଳିବାର କଥା ସିନା ଜାଣ
ନ ଜାଣି ଆମ୍ଭ ସଙ୍ଗେ କଲ ତୁଚ୍ଛା ରଣ ।
ଭକ୍ଷ ଭୋଜ୍ୟ ପେୟ ଥିବାର ଠାକୁ ଯାଅ
ପାରତ ଖାଇ ତୁମ୍ଭେ ତାହା ଯାଇ ଖାଅ ।
ଆମ୍ଭ ପରି ଲୋକମାନେ ସଙ୍ଗେ କଳି
କଲ ଯା ମନେ ମନେ ବୋଲାଇଣ ବଳୀ ।
ତହିଁ ଅନୁରୂପ ଫଳିଲା ଏବେ ଫଳ
ରହ ଭୀମ ଏବେ ହେ ଆଉଁସି କପାଳ ।
ନୋହିଲେ ମୁନିବେଶେ ଫଳମୂଳ ଖାଇ
ବନରେ ରହି ତପ କର ଏବେ ଯାଇ ।
ବନେ ରହି ତପ କରିବା ଯୋଗ୍ୟ ତୁମ୍ଭେ
ଯୁଦ୍ଧକୁ ଯୋଗ୍ୟ ନୁହଁ ଜାଣିଲୁଟି ଆମ୍ଭେ ।
ଭୋଜନରେ ବିଳମ୍ବ ହେଲେ ପାକକାରୀ
ଲୋକଙ୍କୁ ହେ କେବଳ ପାଇ ତୁମ୍ଭେ ମାରି ।
ରଥୀଙ୍କି ମାରିବାର କଥା ତୁମ୍ଭ ହାତେ
ନୁହଇ ତୁଚ୍ଛା ସିନା ବସିଥାଅ ରଥେ ।
ପୂର୍ବେ ଭୀମ ଯେତେକ କର୍ଣ୍ଣଙ୍କୁ ଧିକ୍କାର
କରିଥିଲେ କର୍ଣ୍ଣ ତା କହି ନରବର ।
ବୋଇଲେ ଆହେ ଭୀମ ତୁମ୍ଭ ଆମ୍ଭ ବଳ
ଏବେ ତ ଜଣାଗଲା କରିବାକୁ ରୋଳ ।

ପୁଣି ଭୀମ ଦେହରେ ଲଦି ଧନୁହୁଳ
ବୋଇଲେ ତୁମ୍ଭ ପରି ରଥୀ କର ରୋଳ ।
ଆମ୍ଭ ପରି ରଥୀମାନଙ୍କୁ କେବେ ଯୁଝି
ନ ଆସିବ ଆସିଲେ ଶୋଇବ ରଣମଝି ।
କୃଷ୍ଣ ଅରଜୁନ ସମୀପକୁ ଯାଅ
ପରାଣ ରଖ ଆହେ ପବନଙ୍କ ପୁଅ ।
ନୋହିଲେ ଯୁଦ୍ଧ ଛାଡ଼ି ବସାକୁ ଯାଇ ପିଠା
ଖାଅ ଆହେ ଭୀମ ଲାଗିବ ବଡ଼ ମିଠା ।
ଦ୍ରୁପଦ ନନ୍ଦନାକୁ ମାଗିଣ ତୋରାଣି
ପିଇ ବସ ଘର ଭିତରେ ପେଟ ଟାଣି ।
କୃଷ୍ଣ ଅରଜୁନ ଯେ ଦୁହେଁ ଦେଖୁଥିଲେ
ଏହି ରୂପରେ କର୍ଣ୍ଣ ଭୀମଙ୍କୁ ବୋଇଲେ ।
ଏ ସମୟେ କୃଷ୍ଣ କହିଲେ ଅର୍ଜ୍ଜୁନଙ୍କୁ
କି ଚାହୁଁଅଛ ଏବେ ମାର ହେ କର୍ଣ୍ଣଙ୍କୁ ।
ନୋହିଲେ ଆଜି ଜୀଇଁନାହିଁ ଭୀମଭୋଇ
କର୍ଣ୍ଣସିଂହ ଆଗେ ସେ ଅଛି ମୃଗ ହୋଇ ।
ଅରଜୁନ ଶୁଣି କୃଷ୍ଣଙ୍କର ବଚନ
ଓଟାରିଣ ଆଣ୍ଠେ ଗାଣ୍ଡିବ ଶରାସନ ।
ଶିଳାଘଷା ତଇଳପିଆ ଶର ବାଛି
ବିନ୍ଧିଲେ କର୍ଣ୍ଣଙ୍କୁ ସେ ଓପ୍ରଧ ମୁରୁଛି ।
ସିଂହ ଗୁହା ଭିତରେ ପଶିବା ପରାୟେ
କର୍ଣ୍ଣ ଦେହେ ପଶିଲେ ଗାଣ୍ଡୀବର ରାୟେ ।
କର୍ଣ୍ଣ ଭୀମ ଆଗେ କହୁ ତ ଥିଲେ ଟାଣ
ପଳାଇଲେ ବାଜନ୍ତେ ଅରଜୁନ ବାଣ ।
ଭୀମ ସାତ୍ୟକିଙ୍କ ରଥରେ ଯେ ବସିଲେ
ମୁଣ୍ଡ କାନ ଆଉଁସି ଅର୍ଜ୍ଜୁନଠାକୁ ଗଲେ ।
ଯମ ମୃତ୍ୟୁଦେବତା ବରଗିଲା ପରି
ବିନ୍ଧିଲେ ଅର୍ଜ୍ଜୁନ ନାରାଚେ ବାଛିକରି ।
ସେ ନାରାଚ-ଗରୁଡ଼ କର୍ଣ୍ଣ-ଉରଗକୁ
ଗ୍ରାସିବାକୁ ଧାଇଁଲା କରି ଗର୍ଜ୍ଜନଙ୍କୁ ।
ଅଶ୍ୱତ୍ଥାମା ଦେଖିଣ ଅର୍ଜ୍ଜୁନ ନାରାଚ
କାଟିଲେ କର୍ଣ୍ଣ ଜୀବ ରକ୍ଷାକରି ପାଞ୍ଚ ।
ଅର୍ଜ୍ଜୁନ କ୍ରୋଧ ହୋଇ ଚଉଷଠି କାଣ୍ଡ
ବିନ୍ଧି ଅଶ୍ୱତ୍ଥାମାକୁ କହିଲେ ଝାଡ଼ି ମୁଣ୍ଡ ।
କର୍ଣ୍ଣଙ୍କୁ ତ ଜୀବଦାନ ଦେଲ ହେ ତୁମ୍ଭେ
ନ ପଳାଇ ଯୁଝ ଆମ୍ଭଙ୍କୁ ବୋଲୁ ଆଗେ ।
ଅର୍ଜ୍ଜୁନ ଶରେ ପୀଡ଼ା ପାଇ ଅଶ୍ୱତ୍ଥାମା
ଲୁଚିଲେ ହାତୀ ସୈନ୍ୟେ ଛାଡ଼ିଣ ଗାରିମା ।
ଯେଉଁଠାରେ ତୁମ୍ଭ ରଥୀଏ ଥିଲେ ରହି
ସେଠାକୁ ରଥ ନେଲେ ଅର୍ଜ୍ଜୁନ ବୁହାଇ ।

ଅଶ୍ୱଥାମା ପଳାଇଥିଲେ ଆଗେ ଆଗେ
ଅରଜୁନ ଗୋଡ଼ାଇଲେ ତାଙ୍କର ସଙ୍ଗେ ।
ଅରଜୁନ ଆଗରେ ଯେତେ ଗଜ ବାଜି
ପଡ଼ିଲେ ତାଙ୍କ ପ୍ରାଣ ନେଲେ କ୍ରୋଧେ ମଜ୍ଜି ।
ଧୃତରାଷ୍ଟ୍ର ବୋଇଲେ ମୋହର ଅଜୟ
ବିନା କହୁନାହିଁ ହେ ଦିନେ ମୋର ଜୟ ।
କାଲ ସକାଶରୁଟି ସବୁ ବିପରୀତ
ହେଲା ଏବେ କି ହେବ ବୋଇଲେ ନିସତ ।
ଅରଜୁନ ଆଗରେ ପଶିଲେ ବ୍ୟୂହରେ
ପଛେ ଗଲେ ସାତ୍ୟକି ତାଙ୍କର ମାର୍ଗରେ ।
ଏ ଦୁହିଙ୍କ ଉତ୍ତାରୁ ଗଲେ ଭୀମସେନ
ଏ ତିନିହେଁ ଜିଣି ପାରନ୍ତି ତ୍ରିଭୁବନ ।
ଏକଥା ଶୁଣିବାରେ ଶୋକାଗ୍ନିରେ ପୋଡ଼ି
ଯାଉଛି ମୁଁ ସଞ୍ଜୟ ଧୈର୍ଯ୍ୟ ଦେଇ ଛାଡ଼ି ।
ଜୟଦ୍ରଥ ଆଦି ମୋ ପଟେ ଯେତେ ରାଜା
ଅଛନ୍ତି ଏ ପାଇବେ ଯମପୁରେ ପୂଜା ।
ଅର୍ଜ୍ଜୁନ ଚକ୍ଷୁରେ ପଡ଼ିଲେ ଜୟଦ୍ରଥ
ଜାଣୁଅଛି ଶୋଇବେ କଟାଇଣ ମାଥ ।
ଏବେ ହେ ମୋତେ ଯୁଦ୍ଧ ବତାଇ ସଞ୍ଜୟ
କହ ଶୁଣିବାରେଟି ବଳିଛି ମୋ ପ୍ରିୟ ।
ଏକା ହୋଇ ସାତ୍ୟକି ସୈନ୍ୟରେ କ୍ରୋଧରେ
ପଶିଲେ ହାରିଲେ କି ଜିଣିଲେ ଯୁଦ୍ଧରେ ।
ଏହି କଥାମାନଙ୍କେ ବିଶେଷାବିଶେଷ
ଯେ ଅଛି ସଞ୍ଜୟ ହେ କର ତା ପ୍ରକାଶ ।
ସଞ୍ଜୟ ବୋଇଲେ ରଥୀଙ୍କ ମଧେ ଭୀମ
ହାରନ୍ତେ କର୍ଣ୍ଣ ତୁଲେ କରିଣ ସଂଗ୍ରାମ ।
ସାତ୍ୟକି ତ ତାହାକୁ ନୟନେ ଦେଖିଲେ
ଭୀମଙ୍କରଠାକୁଟି ରଥ ବାହି ନେଲେ ।
ଗଲାବେଳେ ସାତ୍ୟକି ତୁମ୍ଭ ସେନାକୁଳ
କରିଦେଲେଟି ଶର ପ୍ରତାପେ ଆକୁଳ ।
ତୁମ୍ଭ ଲୋକମାନେ ସାତ୍ୟକି ଆଗେ ଛିଡ଼ା
ନୋହିଣ ପଳାଇଲେ ହୋଇ ଭିଡ଼ାଭିଡ଼ା ।
ସୁବର୍ଣ୍ଣକବଚ ଲଗାଇଥିଲା ଅଙ୍ଗେ
ପଶିଲା ଅଳମ୍ବୁଷ ରାକ୍ଷସ ରଣରଙ୍ଗେ ।
ସାତ୍ୟକିଙ୍କି ଯେ ଶର କରନ୍ତେ ପ୍ରହାର
ସାତ୍ୟକି କଲେ ତାକୁ ଶରରେ ନିବାର ।
ଦୁଇଦଳ ସେନାଏ ସେ ଦୁହିଙ୍କ ରଣ
ଅନାଇଁ ରହିଲେ ହେ ନ ବିନ୍ଧିଣ ବାଣ ।
ବିନ୍ଧିଲା ଅଳମ୍ବୁଷ ସାତ୍ୟକି ଦେହକୁ
ବାଛିକରି ରାଜନ ଦଶୋଟି କାଣ୍ଡକୁ ।
ସେ କାଣ୍ଡେ ଯୁଦ୍ଧଦାଣ୍ଡେ ଆସୁଥିଲେ ଚାଣ୍ଡେ
ସାତ୍ୟକି ତାହା କାଟି ପକାଇଲେ କାଣ୍ଡେ ।
ପୁଣି ନବକାଣ୍ଡ ବିନ୍ଧିଲା ଅଳମ୍ବୁଷ
ସାତ୍ୟକି ଦେହେ ଗଳି ତଳେ କଲେ ବାସ ।
ସାତ୍ୟକିଙ୍କର ଚାରିଘୋଡ଼ାକୁ ଚାରୋଟି
ଶର ବିନ୍ଧିଲା ସେହି ନୟନ ତରାଟି ।
ସାତ୍ୟକି ଅଲୟୁଷ ଯୁଦ୍ଧକୁ ନ ସହି
ଦେଲେ ଚାରିଜାଣରେ ଘୋଡ଼ାକୁ ବଢ଼ାଇ ।
ଭଲ୍ଲ କାଣ୍ଡରେ ଅଳମ୍ବୁଷର ସାରଥି
ମୁଣ୍ଡକୁ ହରିନେଲେ ଯୁଯୁଧାନ ରଥୀ ।
କୁଣ୍ଡଳ ତୁଲେ ଅଳମ୍ବୁଷର ମସ୍ତକ
କାଟି ପକାଇଲେଟି ମାଧବ ତିଳକ ।
ଚନ୍ଦ୍ରବିମ୍ବ ପରି ପଡ଼ିଣ ରଥଦାଣ୍ଡେ
ଖାଇଲା ତା ପାଟି ପୁଳାଏ ଧୂଳି ଚାଣ୍ଡେ ।
ଅଳମ୍ବୁଷ ବୀରକୁ ମାରି ଯୁଯୁଧାନ
କଲେ ତୁମ୍ଭ ସଇନଯାକକୁ ନିଧନ ।
ଯେଉଁଠାରେ ଅର୍ଜ୍ଜୁନ ଯୁଝୁଥିଲେ ରହି
ସେଠାକୁ ବୋଲି ରଥ ନେଲେ ସେ ବୁହାଇ ।
ତୁମ୍ଭ ପୁଅମାନେଟି ଯୁଯୁଧାନ ରଥ
ଦେଖିଣ ବାହାରିଲେ ହୋଇ ଧନୁହାତ ।
ଆଗରେ ତାଙ୍କ ଦୁଃଶାସନ ତହିଁ ଥିଲେ
ସମସ୍ତେ ବେଢ଼ି ସାତ୍ୟକିଙ୍କି ଯୁଦ୍ଧ କଲେ ।
ସାତ୍ୟକି ବାଣରେ ନିବାରି ତୁମ୍ଭ ସୁତ-
ବୃନ୍ଦକୁ କଲେ ଦୁଃଶାସନ ରଥ ହତ ।
ଦୁଃଶାସନ ବିରଥ ଦେଖିଣ ତ୍ରିଗର୍ତ୍ତେ
ଯୁଦ୍ଧକଲେ ଆସି ସାତ୍ୟକି ସଙ୍ଗତେ ।
ରଥଗଡ଼େ ସାତ୍ୟକି ବୀରଙ୍କୁ ପୂରାଇ
ବିନ୍ଧିଲେ କାଣ୍ଡମାନ ଦେବାକୁ ବଢ଼ାଇ ।
ତ୍ରିଗର୍ତ୍ତେ ତ ଅଟନ୍ତି ମହା ବଳୀୟାର
ଏ ସକାଶୁଁ ବେଢ଼ି ଯୁଝିଲେ ମନେକର ।
ପାଞ୍ଚଶ ତ୍ରିଗର୍ତ୍ତଙ୍କୁ ଏକା ଯୁଯୁଧାନ
ଜିଣି ପକାଇଲେ ହେ କରି ଆୟୋଧନ ।
ପୂର୍ବ ପଶ୍ଚିମରେ ଉତ୍ତର ଦକ୍ଷିଣରେ
ଦେଖିଲୁ ସାତ୍ୟକିଙ୍କି ଆମ୍ଭେ ସେ ଯୁଦ୍ଧରେ ।
ଏକା ହୋଇ ବହୁତ ରଥୀପରି ସେହି
ଯୁଝିଲେ ରାଜନ ସନ୍ଦେହ ଏଥି ନାହିଁ ।
ସାତ୍ୟକିଙ୍କର ବଳ ଦେଖିଣ ତ୍ରିଗର୍ତ୍ତେ
ଯେ ଥିଲେ ପଳାଇଲେ ଯୁଦ୍ଧରୁ ନିସତେ ।
ତା ଦେଖି ଶୂରସେନ କ୍ରୋଧ ଧରି ମନେ
ଯୁଯୁଧାନ ବୀରଙ୍କୁ ବିନ୍ଧିଲେ ଅବିଚ୍ଛିନ୍ନେ ।

ସାତ୍ୟକି ସେମାନଙ୍କୁ ନିବାରି ମୁହୂର୍ତ୍ତକେ
କଳିଙ୍ଗକୁ ରାଜନ ମାଇଲେ ଶାୟକେ ।
କଳିଙ୍ଗଙ୍କୁ ଅତିକ୍ରମିଣ ଯୁଯୁଧାନ
ହୋଇଲେ ଯାଇ ଅର୍ଜ୍ଜୁନଙ୍କ ସନ୍ନିଧାନ ।
ଅର୍ଜ୍ଜୁନଙ୍କୁ ପାଇ ସାତ୍ୟକି ବହି ତୋଷ
ଆଉଁସି ଥରେ ମୋଡ଼ିଦେଲେ ଦୁଇ ନିଶ ।
ଶ୍ରୀକୃଷ୍ଣ ବୋଇଲେ ହେ ଅରଜୁନ ଦେଖ
ତୁମ୍ଭ ଶିଷ୍ୟ ସାତ୍ୟକି କୁରୁଙ୍କ ଯୁଦ୍ଧେ ଦୁଃଖ ।
ଦେଇ ତୁମ୍ଭ ପାଶ ଧୂଆଁଇଛନ୍ତି ରଥ
ଜାଣିଲାଗଁ ସାତ୍ୟକି ଆଚ୍ଛା ସମରଥ ।
ଦ୍ରୋଣ କୃତବର୍ମାଙ୍କୁ ରଣାଙ୍ଗଣେ ଜିଣି
ଆସୁଛନ୍ତି ଦେଖ ସାତ୍ୟକି ବୀରମଣି ।
ଯୁଧିଷ୍ଠିର ପ୍ରିୟ ମନରେ ଇଚ୍ଛାକରି
ଦେଲେ କୁରୁବଳକୁ ସାତ୍ୟକି ସଂହାରି ।
ମଗର ପରି କୁରୁ-ସେନାରେ ଚହଟି
ଦେଖ ଦେଖ ସାତ୍ୟକି ବିନ୍ଧନ୍ତି ଶର କୋଟି ।
ଧର୍ମରାଜଙ୍କର ବଚନ ପ୍ରତିଗ୍ରହ
କରି ଅବିଶ୍ରାନ୍ତେ ଯୁଝିଲେ ବହି କୋହ ।
ସାତ୍ୟକିଙ୍କର ପରି କୁରୁଯୋଦ୍ଧାଙ୍କରେ
ଯୋଦ୍ଧା ନାହିଁ ଅର୍ଜ୍ଜୁନ ଆସୁଛି ମନରେ ।
କୁରୁସେନା-ଗାବଙ୍କୁ ଶାୟକ-ବାଡ଼ି ଧରି
ସାତ୍ୟକି-ଗଉଡ଼ଟି ନେଲେ କାଳିକରି ।
ସହସ୍ର ସଂଖ୍ୟାରାଜପୁତ୍ରଙ୍କ ଲପନ
ପକାଇ ମହୀ ଆଜି କଲେ ଏ ମଣ୍ଡନ ।
ଭାଇଙ୍କ ତୁଲେ ଦୁଃଶାସନେ ଜିଣି ରଣେ ।
ମାଇଲେ ଜଳସନ୍ଧ ରାଜାଙ୍କୁ ଏ ବାଣେ ।
କ୍ରୋଧ ହୋଇ ଯୁଦ୍ଧରେ ରକତରେ ନନ୍ଦ
କଲେଟି ଯୁଯୁଧାନ ବହିଣ ପ୍ରମୋଦ ।
ଏହା ଶୁଣି ଅର୍ଜ୍ଜୁନ ନୋହି କିଛି ହୃଷ୍ଟ
କହିଲେ କୃଷ୍ଣଙ୍କୁ ଏ ମୋର ବଡ଼ କଷ୍ଟ ।
ସାତ୍ୟକିରେ ହୀନ ହେଲେ ଯେ ଯୁଧିଷ୍ଠିର
ଦ୍ରୋଣ ଘେନିଥିବେ ପରାଣ ତାହାଙ୍କର ।
ସାତ୍ୟକିଙ୍କି ଯୁଧିଷ୍ଠିରଙ୍କୁ ମୁଁ ଜଗାଇ
ଆସିଲି ମୋଠାକୁ ଆସିଲେ ଏ ତ ଧାଇଁ ।
ଯୁଧିଷ୍ଠିର ରାଜା ଯେ ସର୍ବଶୁଭେ ଜୀଇଁ-
ଥିଲେ ସବୁ ଭାଗ୍ୟ ଆମ୍ଭର ଅଛି ରହି ।
ଯୁଧିଷ୍ଠିର ରାଜା ରହିଲେ ଦ୍ରୋଣ ଆଗେ
ଭୂରିଶ୍ରବା ଯୁଝିଲେ ସାତ୍ୟକିଙ୍କ ସଙ୍ଗେ ।
ଦେଖ ହେ କୃଷ୍ଣରଥ ଚଢ଼ି ଭୂରିଶ୍ରବା
ବାହାରିଛନ୍ତି ତୁମ୍ଭଙ୍କୁ ବା କି କହିବା ।

ସୂର୍ଯ୍ୟ ଆସି ପଶ୍ଚିମଗିରି ଆରୋହଣ
କଲା କାଳ ହେଲାଟି ଜୟଦ୍ରଥ ପ୍ରାଣ ।
ଏତେବେଳ ଯାଏ ତ ନେଇନାହିଁ ମୁହିଁ
ସାତ୍ୟକି ଭାର ମୋତେ ଲାଗିଲା ଯଦୁସାଇଁ ।
ଯୁଧିଷ୍ଠିର ରାଜାଙ୍କ ଭଲ ମନ୍ଦ କଥା
ଶୁଣି ତ ନାହିଁ ଶୋକେ ପାଉଛି ମୁଁ ବ୍ୟଥା ।
ଏ ତିନି କଥା ଏକାବେଳକେ ମୋତେ ଭାର
ପଡ଼ିଲା ଆହେ କୃଷ୍ଣ ଆଉ କି ପଚାର ।
ସାତ୍ୟକି ଯୁଝିବାରେ ହୋଇଛନ୍ତି ଶ୍ରାନ୍ତ
ଭୂରିଶ୍ରବା ତ ହୋଇଅଛନ୍ତି ଅଶ୍ରାନ୍ତ ।
ଏ ସକାଶୁଁ ସାତ୍ୟକିଙ୍କର ବଳ ମଣ୍ଡି
ଦେବେ ପରା ତ ଭୂରିଶ୍ରବା ମହାରଥୀ ।
ଅସହାୟ ହୋଇଅଛନ୍ତି ସୌମଦତ୍ତି
ଅସହାୟ ହୋଇ ଆସନ୍ତି ଶିନିନାତି ।
ଭୂରିଶ୍ରବା ଗୋଷ୍ପଦେ ସାତ୍ୟକି ମହାବୀର
ମରିବେ ବୁଡ଼ି କି ଭାବୁଛିଁ ଚକ୍ରଧର ।
ଯୁଧିଷ୍ଠିରଙ୍କର ନୋହେ ଏ ଭଲ କଥା
ଛାଡ଼ିଲେ ପାଶୁଁ ଯା ସାତ୍ୟକି ମହାରଥା ।
ଯୁଧିଷ୍ଠିର ରାଜା ଆମିଷକୁ ଯେ ଦ୍ରୋଣ-
ସଞ୍ଚାଣ ଘୋଟିଛନ୍ତି କରି ବାହୁଟାଣ ।
ଏହି ସମୟରେ ସାତ୍ୟକି ପାଶକୁ
ଗମିଲେ ଭୂରିଶ୍ରବା ନୃପ ଯୁଝିବାକୁ ।
ସାତ୍ୟକିଙ୍କି ବୋଇଲେ ଆହେ ଶିନିନାତି
ଦେଖିଲି ମୁଁ ତୁମ୍ଭଙ୍କୁ ଆଜି ଭାଗ୍ୟ ଅତି ।
ବହୁତ କାଳୁଁ ତୁମ୍ଭ ସଙ୍ଗତରେ ରଣ
କରିବି ମୁହିଁ ବୋଲି ଭାବିଥାଏ ଜାଣ ।
ମୋ ସଙ୍ଗତେ ଯେବେ ଯୁଝିବ ତୁମ୍ଭେ ରହି
ତୁମ୍ଭଙ୍କୁ ଦେବି ଆଜି ଯୁଦ୍ଧରେ ବଡ଼ାଇ ।
ତୁମ୍ଭେ ମୋ ହାତେ ମଲେ ଦୁର୍ଯ୍ୟୋଧନ ରାଜା
ସନ୍ତୋଷ ହୋଇ ମୋତେ କରିବେ ସେ ପୂଜା ।
କୃଷ୍ଣ ଅରଜୁନ ନୟନେ ଦେଖିଥିବେ
ମୋ ବାଣରେ ଆପଣା ମରିବା ହୋଇବେ ।
ତୁମ୍ଭର ମରିବାର ଶୁଣି ଯୁଧିଷ୍ଠିର
ଆଜି ଲାଜେ କାହାକୁ ନ ଦେବେ ଉତ୍ତର ।
ଯୁଦ୍ଧରେ ତୁମ୍ଭେ ଗଡୁଥିବ ଅରଜୁନ
ଦେଖି ଶୋକେ ନେତ୍ର କରିବେ ଥନଥନ ।
ତୁମ୍ଭଙ୍କୁ ଆଜି ଘୋରଯୁଦ୍ଧ ଦେବି ମୁହିଁ
ଜାଣିବ ତ ମୋ ବଳ ଯୁଯୁଧାନ ଭାଇ ।
ଲକ୍ଷ୍ମଣରେ ଯେରୂପେ ଇନ୍ଦ୍ରଜିତ ହତ
ହେଲେ ସେରୂପରେ ମୋ ହାତେ ହେବ ହତ ।

ଆଜି ତୁମ୍ଭେ ମରନ୍ତେ କୃଷ୍ଣ ଅରଜୁନ
ଯୁଧିଷ୍ଠିର ରାଜା ଛାଡ଼ିବେ ଆୟୋଧନ ।
ତୁମ୍ଭେ ଯେଉଁମାନଙ୍କୁ ମାରିଅଛ ରଣେ
ତୁମ୍ଭଙ୍କୁ ଯେବେ ମୁହିଁ ମାରିବି ଆପଣେ ।
ତେବେଟି ତାଙ୍କ ସ୍ତିରୀମାନେ ହୋଇ ରୁଣ୍ଡ
ଶୋକ ଛାଡ଼ି ବସିବେ ଫୁଲାଇଣ ପିଣ୍ଡ ।
ସିଂହ ଆଗରୁ ମୃଗ ପାରଇ କି ଯାଇ
ମୋ ଆଗେ ପଡ଼ିଲେ ବଞ୍ଚିବ ଅବା କେହି ।
ଭୂରିଶ୍ରବାଙ୍କର ଶୁଣିଣ ଏ ବଚନ
ଅଧରଦେଶେ ହାସ ଧରି ଯୁଯୁଧାନ ।
ବୋଇଲେ ତୁମ୍ଭ ଘେନି ମୋର ଭୟ କିଛି
ହେଉ ନାହିଁ ଜାଣ ହେ ସୋମଦତ୍ତବଚ୍ଛି ।
ଆୟୁଧ ଥିଲେ ମୋର ହାତେ ଜିଣିବାକୁ
ନ ଦେଖଇ ବୀର କରି ମୁହିଁ କାହାକୁ ।
ସବୁ ସେନାଯାକକୁ ପାରିବ ଯେ ମାରି
ସେ ଅବା ନେବ ଯୁଦ୍ଧେ ମୋର ପ୍ରାଣ ହରି ।
ଆଉ ତୁମ୍ଭ ଆଗରେ କହିବାକୁ କଥା
ଆମ୍ଭର ନାହିଁ ଭୂରିଶ୍ରବା ମହାରଥୀ ।
ଯେବେ ବଳୀୟାର ତ ହୋଇଛ ଆପଣ
ଦେଖାଅ ବଳ ତୁମ୍ଭେ ଯୁଦ୍ଧେ ବିନ୍ଧି ବାଣ ।
ଶରତ୍କାଳ ମେଘଗର୍ଜନ ପରି ବାଣୀ
ତୁମ୍ଭର ତ ହୋଇଯିବଟି ଏହିକ୍ଷଣି ।
କହିବାରେ ତୁମ୍ଭର ଗରଜି ବଚନେ
ବଡ଼ ହାସ୍ୟ ଜାତ ହେଉଛି ମୋର ମନେ ।
ବହୁତ କାଳୁଁ ମୁହିଁ ତୁମ୍ଭଙ୍କୁ ଯୁଝିବାକୁ
ଇଚ୍ଛା ତ କରିଥିଲି ଯୁଝ ହେ ଆମ୍ଭଙ୍କୁ ।
ତୁମ୍ଭଙ୍କୁ ନ ମାଇଲେ ଯୁଦ୍ଧରୁ ନିବର୍ତ୍ତି
ଯାଇନାହିଁ ଜାଣ ମୁଁ କହୁଛି ସୋମଦତ୍ତି ।
ଅନ୍ୟୋନ୍ୟରେ ଦୁହେଁ ବଚନେ ଯୁଦ୍ଧକରି
ଯୁଦ୍ଧ କଲେ ଦୁହେଁ ଯେ ଧନୁକୁ ଉଭାରି ।
ଜୟାକାଙ୍କ୍ଷୀ ହୋଇକରି ସେ ଦୁଇ ବୀରେ
ମିଶାମିଶି ହୋଇଗଲେ ତ ସେ ସମରେ ।
ପରସ୍ପରେ ଦୁହେଁ କରନ୍ତେ ଶରବୃଷ୍ଟି
ଦେଖି ନ ପାରିଲା ଦୁହିଙ୍କ ରାୟେ ଦୃଷ୍ଟି ।
ସାତ୍ୟକିଙ୍କି ମାରିବା ଇଚ୍ଛି ଦଶକାଣ୍ଡ
ବିନ୍ଧିଲେ ଭୂରିଶ୍ରବା କରି ହସ୍ତଚାଣ୍ଡ ।
ସାତ୍ୟକି ଯେ କାଣ୍ଡ ନ ବାଜୁ ଅଙ୍ଗେ ଆସି
ପ୍ରହାର କରି ଶର ପକାଇଲେ ନାଶି ।
ପରସ୍ପରେ ଦୁହେଁ ବରଷି ଶରଧାର
ଘୋଡ଼ାଇ ପକାଇଲେ ନଭ ମନେକର ।
ଜର ଶକ୍ତି ଗଦା ମୂଷଳ ପରିଘରେ
ମରାମରି ହେଲେ ସେହି ଯୁଦ୍ଧରଙ୍ଗରେ ।
ଅନ୍ୟୋନ୍ୟରେ ଦୁହେଁଟି ହୋଇଣ ଘାଉଆ
ସ୍ତବଧ ହୋଇ ରାୟେ ଯୁଦ୍ଧେ ହେଲେ ଠିଆ ।
ଯୁଦ୍ଧେ ମଲେ ବ୍ରହ୍ମଲୋକକୁ ଯିବା ଭାବି
ପୁଣି ଯୁଦ୍ଧ କଲେ ସେ ହୋଇଣ ଗରବୀ ।
ତୁମ୍ଭ ସୁତଙ୍କର ତୁଲରେ ରଥୀମାନେ
ଦେଖୁଥିଲେ ଯୁଦ୍ଧରେ ରହି ସାବଧାନେ ।
ଜୟ-ହାତୁଣୀର ରତିକୁ ଇଚ୍ଛା କରି
ସେ ଦୁଇ ରଥୀ-ହାତୀ ଯୁଝିଲେ ଦଣ୍ଡଧାରୀ ।
ଅନ୍ୟୋନ୍ୟରେ ଦୁହେଁଟି ହୁଅନ୍ତେ ବିରଥ
ଯୁଝିବାକୁ ଦୁହେଁ ହୋଇଲେ ଖଣ୍ଡାହାତ ।
ବୃଷଚର୍ମ୍ମେ ନିର୍ମିତ ଢେବିରିଢ଼ରେ ବହି-
ଥିଲେ ଖଣ୍ଡା ଖାପୁଁ କାଢ଼ିଲେ ତ୍ୱରା ହୋଇ ।
ନାନାଜାତି ମାର୍ଗ ମଣ୍ଡଳ ଦେଖାଇଲେ
ପଞ୍ଚାପଞ୍ଚ ହୋଇଣ ହଣାହଣି ହେଲେ ।
ଦୁହିଁଙ୍କ କରଚର୍ମ ଯାଆନ୍ତେଣ ଛିଡ଼ି
ପଞ୍ଜାରରୁ ଖଣ୍ଡା ପଡ଼ିଲା ତଳେ ଝଡ଼ି ।
ତା ଦେଖି ବାହୁସ୍ଫୋଟ କରି ଦୁଇ ରଥୀ
ଝିଙ୍କାଝିଙ୍କି ହୋଇ ଯୁଝିଲେ ନୋହି ବ୍ୟଥୀ ।
ଭୁଜକୁ ଭୁଜ ଜାନୁଯୁଗଳେ ଛନ୍ଦି ଜାନୁ
ପଡ଼ିଣ ତଳେ ଗଡ଼ାଇଲେ ନିଜ ତନୁ ।
ଦୁହିଙ୍କର ବାହୁ ଶବଦରେ ତ ଗିରି
ମଣିଲୁଁ ଆମ୍ଭେମାନେ ଫାଟିଗଲା ପରି ।
ସିଂହ ସିଂହ ତୁଲେ ଯୁଝିବାର ପରାୟେ
ସେ ଦୁହିଙ୍କ ଯୁଦ୍ଧ ମଣିଲେ ଜନେ ରାୟେ !
ଯୁଯୁଧାନ ବିରଥ ଯୁଦ୍ଧକୁ ଅନାଇଁ
କହିଲେ ଅର୍ଜୁନଙ୍କୁ ଜଗତ ଗୋସାଇଁ ।
କୁରୁରଥୀମାନଙ୍କୁ ମରଦି ତୁମ୍ଭ ଶିଷ୍ୟ
ସାତ୍ୟକି ଭୂରିଶ୍ରବା ହାତେ ଯିବ ନାଶ ।
ଭୂରିଶ୍ରବା ପରି ସାତ୍ୟକି ଓଜ ତେଜ
ଯୁଦ୍ଧରେ ଦିଶୁନାହିଁ ଦେଖ ରଥୀରାଜ ।
ଏହି ସମୟରେ ଯେ ଭୂରିଶ୍ରବା ବଳୀ
ସାତ୍ୟକିଙ୍କି ତଳରେ କଚାଡ଼ିଲେ ଚଳି ।
ପୁଣି କୃଷ୍ଣ ବୋଇଲେ ଅର୍ଜୁନ କି ଦେଖୁଛ
ଅତି ବଳିଆର ତ ସୋମଦତ୍ତବଚ୍ଛ ।
ତୁମ୍ଭ ଶିଷ୍ୟ ସାତ୍ୟକି ବୀରଙ୍କୁ କଚାଡ଼ି
ତଳେ ଦେଖ କ୍ରୋଧରେ ନିଃଶ୍ୱାସ ଦିଏ ଛାଡ଼ି ।
ଯେଉଁରୂପେ ସାତ୍ୟକି ଭୂରିଶ୍ରବା ବଶ
ନୋହିବେ ସେରୂପେ କର ହେ ବୀରଈଶ ।

ଅରଜୁନ ବୋଇଲେ ଯଦୁଅବତଂସ
ଶୁଣୁ ଶୁଣୁ କର୍ଣ୍ଣରେ ତୁମ୍ଭ ସ୍ନେହଭାଷ ।
ସିଂହ ହାତୀର ତୁଲେ କ୍ରୀଡ଼ା କଲା ପରି
ଭୂରିଶ୍ରବା ଯୁଝୁଅଛନ୍ତି ଚକ୍ରଧାରୀ ।
କୃଷ୍ଣ ଅର୍ଜ୍ଜୁନଙ୍କ ଏରୂପେ କଥାବାର୍ତ୍ତା
ପଡ଼ିଥିଲା ଭୂରିଶ୍ରବାଟି ଯୁଦ୍ଧବେତ୍ତା ।
ସାତ୍ୟକିର ବାଳ ଧରି ପକାଇଲେ
ଗୋଇଠାଟାଏ ତାଙ୍କ ବୁକୁକୁ ପ୍ରହାରିଲେ ।
ଖାପରୁ ଖଣ୍ଡା କାଢ଼ି ସାତ୍ୟକିଙ୍କ ବେକ
ହାଣିବା ସମୟରେ ଲଭି ମହାଦକ ।
କୁରାଳଚକ୍ର ପରି ବୁଲାନ୍ତେ ମୁଣ୍ଡକୁ
ଭୂରିଶ୍ରବା ନ ପାଇ ତାଙ୍କର ଛିଦ୍ରକୁ ।
ଖଣ୍ଡା ଆଞ୍ଜୁପାଞ୍ଜୁ କରି ସେ ରହିଥିଲେ
ଏହା ଦେଖି କୃଷ୍ଣ ଅର୍ଜ୍ଜୁନଙ୍କୁ କହିଲେ ।
ଦେଖ ଦେଖ ସାତ୍ୟକି ସୋମଦତ୍ତ ବଶ
ହୋଇଅଛନ୍ତି ଆଉ ବିଚାରୁଛ କିସ ।
ତୁମ୍ଭ ସମ ବଳ ତୁମ୍ଭର ହିତକାରୀ
ସାତ୍ୟକି ପରି ଯୋଦ୍ଧା ନାହିଁ ତିନିପୁରୀ ।
ତାହାଙ୍କ ବାଳ ଯାହା ଭୂରିଶ୍ରବା ବୀର
ଧରିଛନ୍ତି ବଡ଼ ଆଶ୍ଚର୍ଯ୍ୟ ମନେକର ।
ବଳୀ ହେଲେ ଲୋକ ତ ଦଇବକୁ ବଳି
ନ ପାରେ ଜାଣ ହେ ଅର୍ଜ୍ଜୁନ ଯୁଦ୍ଧଶାଳୀ ।
କୃଷ୍ଣଙ୍କ ଏ ବଚନ ଶୁଣି ଅରଜୁନ
ମନେକଲେ ଭୂରିଶ୍ରବାଙ୍କ ପ୍ରାଣ ଧନ୍ୟ ।
ସାତ୍ୟକି ବାଳ ଯାହା ଝିଙ୍କୁଛନ୍ତି ଆଣ୍ଟେ
ଶୋକ ଛାଡ଼ି ସେହି ମୋ ହୃଦେ ପରକଟେ ।
ଆମ୍ଭ କୁଳର ଅନୁରୂପେ ଯୁଦ୍ଧ କଥା
କଲେ ଆଜି ଯେ ଭୂରିଶ୍ରବା ମହାରଥା ।
ଆହେ ନୃପଶେଖର ଏରୂପେ ଅର୍ଜ୍ଜୁନ
ଭାବିଲେ ମାନସରେ ହୋଇଣ ପ୍ରସନ୍ନ ।
ବୋଇଲେ ହେ ହରି ଜଗତହିତକାରୀ
ରୁକ୍ମିଣୀ ପ୍ରାଣଧନ ଗୋକୁଳବିହାରୀ ।
ନବନୀତଚୋର ହେ ମୁରାରି ମୁକୁନ୍ଦ
ଯୋଗୀଜନବୃନ୍ଦଙ୍କ ହୃଦୟଆନନ୍ଦ ।
ତ୍ରିଭୁବନପାଳକ ପୂତନାଶୋଷକ
ଅଘ ବକମରା ଯେ କାଳୀୟ ଖେଦକ ।
କହୁଛି ମୋତେ ଯାହା ତା ଶୁଣିଲେ ମୁହିଁ
ନ ଶୁଣିଲା ପରି ହେ ଜାଣିଅଛି ରହି ।
ଜୟଦ୍ରଥ ବଧେ ନିବେଶି ଅଛି ନେତ୍ର
ଦେଖୁ ନାହିଁ ଏଣୁ ମୁଁ ଶିନିଙ୍କର ପୌତ୍ର ।
ବୋଲୁଛ ତ ଆପଣ ହାରିଲେ ସାତ୍ୟକି
ଭୂରିଶ୍ରବା ହାଣୁଅଛନ୍ତି ଖଣ୍ଡା ଟେକି ।
ସାତ୍ୟକି ମୋର ଅଟନ୍ତି ପ୍ରିୟ ଶିଷ୍ୟ
ତୁମ୍ଭର ବଚନ ତ ଅଲଘ୍ୟ ବିଶେଷ ।
ଏହି ସକାଶୁଁ ଅକର୍ତ୍ତବ୍ୟ ହେଲେ ମୁହିଁ
କର୍ତ୍ତବ୍ୟ କରି ତା କରିବି ଯଦୁସାଇଁ ।
ଏତେ କହି ଗାଣ୍ଡୀବେ କ୍ଷୁର କାଣ୍ଡୁଟାଏ
ଯୋଚିଲେ ଅର୍ଜ୍ଜୁନ କ୍ରୋଧରେ ଜାଳି କାୟେ ।
କଟକଟ କରିଣ ଧନୁକୁ ଓଟାରି
ବିନ୍ଧିଲେ ଭୂରିଶ୍ରବା ଭୁଜେ ଲାଖକରି ।
ସେ କାଣ୍ଡ ବଜ୍ର ପରି ଧ୍ୱନିକରି ଚାଣ୍ଡେ
ଗମିଲା ହେ ରାଜନ ଜାଣ ରଣଦାଣ୍ଡେ ।
ଭୂରିଶ୍ରବାଙ୍କର ଖଡ଼ଗଧରା ଭୁଜ
ପକାଇଲା କାଟି ତଳେ ହେ ମହାରାଜ ।
ଖଡ଼ଗ ଅଙ୍ଗଦକୁ ବହିଥିଲା ଭୁଜ
ମାଡ଼ିକରି ଗଡ଼ି ଯାଆନ୍ତେ ମହାରାଜ ।
ଦିଶିଲା ପାଞ୍ଚମୁଣ୍ଡ ସର୍ପ ପ୍ରାୟେ ସେହି
ଜ୍ୟୋତିରେ ଦିବାକର କରକୁ ଛପାଇ ।
ଭୂରିଶ୍ରବାଙ୍କର ଯାଆନ୍ତେ ଛିଡ଼ି ଭୁଜ
ଦୁଃଖ କଲେଟି ଦେବ ମାନବ ସମାଜ ।
ଭୂରିଶ୍ରବା ସାତ୍ୟକି ବାଳ ଛାଡ଼ିଦେଇ
ବୋଇଲେ ଅର୍ଜ୍ଜୁନଙ୍କୁ ଅତି କ୍ରୋଧ ବହି ।
ପର ତୁଲରେ କରୁଥିଲି ମୁଁ ସମର
ମୋତେ ନାଶ କଲ ଧର୍ମ କି ଏ ତୁମ୍ଭର ।
ଯୁଧିଷ୍ଠିର ରାଜା ଯେ ପୁଚ୍ଛିଲେ ତୁମ୍ଭଙ୍କୁ
କି ବୋଲି କହିବଟି କହ ତ ଆମ୍ଭଙ୍କୁ ।
ଇନ୍ଦ୍ର ଦ୍ରୋଣ କୃପ ଶିବଙ୍କଠାରୁ ଶର
ଶିଖିଅଛି ତ ଆହେ ପାଣ୍ଡୁଙ୍କ କୁମର ।
କାହା ଉପଦେଶ ଏ କହ ପଚାରୁଛିଁ
କୃଷ୍ଣ ଏହା କହିଲେ ପରା ମୁଁ ମଣୁଛି ।
ଅସ୍ତ୍ରଧର୍ମ ଜାଣିଣ ନ ଯୁଝିବା ଲୋକ
ହାତ କାଟୁଅଛ ଯାଏ ବଡ଼ ବିବେକ ।
ପ୍ରମତ୍ତ ଭୀତ ବିରଥକୁ ରଥୀମାନେ
ନ ମାରିବେ ସମସ୍ତ କହନ୍ତି ବଚନେ ।
ତୁମ୍ଭଠାରେ ଏ କଥା ହୋନ୍ତେ ବିପରୀତ
ହେଲା ଯେ କାପୁରୁଷ ପରି ଏ ଚରିତ ।
ଆର୍ଯ୍ୟ ଲୋକେ ଅନାର୍ଯ୍ୟକର୍ମ ଯେବେ କରେ
ନ ଲଭଇ ପୂଜା କେବେହେଁ ସେ ଲୋକରେ ।
ଯେଉଁ ବିଷୟରେ ଯେ ଲୋକ ପ୍ରବର୍ତ୍ତଇ
ସେ ସେହି ବିଷୟକୁ ଅବଶ୍ୟ କରଇ ।

ଭରତବଂଶେ ତୁମ୍ଭେ ହୋଇଅଛ ଜାତ
ସଙ୍ଗ ଅନୁରୂପେ କଲ ଏ ଧର୍ମ ଖ୍ୟାତ ।
ଉତ୍ତମ ହୋଇ ମୋତେ ଗୋଚର ହେଉଛି
ଏଥିରେ କହିବାକୁ କେଉଁ କଥା ଅଛି ।
କୃଷ୍ଣ ଯେବେ ତୁମ୍ଭର ନୋହିଥାନ୍ତେ ସଖା
ଅଧର୍ମ ଯୋଦ୍ଧାରେ ହୁଅନ୍ତି ତୁମ୍ଭେ ଲେଖା ।
ସଂସ୍କାରହୀନ ଗରହିତ କର୍ମକାରୀ
ଅନ୍ଧକ ବୃଷ୍ଣିମାନେ ଜାଣନ୍ତି ତିନିପୁରୀ ।
ତୁମ୍ଭେ କିମ୍ବା ତାହାଙ୍କ ବଚନ ପ୍ରମାଣ
ମନେକରି ଘେନିଲ କହ ମୋ ପରାଣ ।
ଏରୂପେ ଅର୍ଜ୍ଜୁନଙ୍କୁ କହି ଯୂପକେତୁ
ଭୂରିଶ୍ରବା ଭାବିଲେ ସ୍ୱର୍ଗ ଯିବା ହେତୁ
ଆସନ କରି କାଣ୍ଡମାନଙ୍କୁ ପାରିଲେ
ଚକା ଆସନରେଟି ତହିଁରେ ବସିଲେ ।
ସୂର୍ଯ୍ୟଙ୍କଠାରେ ଯେ ଦୃଷ୍ଟିକି ନିବେଶି
ପ୍ରାଣାୟାମ କଲେ ଇନ୍ଦ୍ରିୟେ ହୋଇ ତୋଷି ।
ଯୋଗରେ ମନଦେଇ ମନୋପନିଷଦ
ଭାବିଲେ ବ୍ରହ୍ମଲୋକେ ପାଇବାକୁ ପଦ ।
ଯୋଗଯୁକ୍ତ ହୁଅନ୍ତେ ଭୂରିଶ୍ରବା ବୀର
କୃଷ୍ଣ ପାର୍ଥଠାରୁ ବିମୁଖ କଲେ ଦୂର ।
ଭୂରିଶ୍ରବା ନିନ୍ଦା ବଚନ କର୍ଣ୍ଣେ ଶୁଣି
ନ କହିଲେ କୃଷ୍ଣ ଅର୍ଜ୍ଜୁନ ତାଙ୍କୁ ବାଣୀ ।
ସମସ୍ତ ଲୋକେ ଭୂରିଶ୍ରବାଙ୍କୁ ପ୍ରଶଂସା
କଲେ ହେଲେ ହୃଷ୍ଟ ନ କଲା ହୃଦେ ବସା ।
ତୁମ୍ଭ ସୁତମାନେ ଯେ ଭୂରିଶ୍ରବାଙ୍କର
ପରାୟେ ଉପଦେଶ ଦେଖି ନରବର ।
ଅର୍ଜ୍ଜୁନଙ୍କୁ ବହୁତ ରୂପେ ନିନ୍ଦାକଲେ
ଅର୍ଜ୍ଜୁନ ତାହା ଶୁଣି ସହି ନ ପାରିଲେ ।
କ୍ରୋଧହୋଇ ଆକ୍ଷେପେ କହିଲେ ଏ ବାଣୀ
ଏ ବ୍ରତ ତ ମୋର ସମସ୍ତେ ଛନ୍ତି ଜାଣି ।
ମୋର ବାଣ ଗୋଚରେ ଥିଲେ ମୋର ମିତ୍ର
ଶତ୍ରୁ ତ ତାର ନାଶି ନ ପାରଇ ଗାତ୍ର ।
ଏହି କଥା ଜାଣି ନ କରେ ମୋରେ ନିନ୍ଦା
ନ କରୁ କେବେ ଆମ୍ଭେ ଅଧରମ ଫନ୍ଦା ।
ଆହେ ଭୂରିଶ୍ରବା ତୁମ୍ଭେ ତ ଯୁଯୁଧାନ
ଜୀବନ ନେଉଥିଲା କରି ଆୟୋଧନ ।
ଦୃଷ୍ଟିରେ ପଡ଼ିବାରୁ ତୁମ୍ଭ ଭୁଜ ଶରେ
କାଟିଲି ଏ କଥା ନ ଗଣ ଅଧର୍ମରେ ।
ନ୍ୟସ୍ତଶସ୍ତ୍ର ହୋଇ ମୋ ସୁତ ଅଭିମନ୍ୟୁ
ଥିଲା ତୁମ୍ଭେମାନେଟି କାଟିଲ କାଣ୍ଡେ ତନୁ ।

ପୁଣି ତ ହୋଇଥିଲା ବାଳକ ବୟସ
କହ ତୁମ୍ଭେ ତାଙ୍କୁ କିରୂପେ କଲ ନାଶ ।
ଏ ଧର୍ମ ତୁମ୍ଭର ମନରେ ନ ପକାଇ
କହୁଛ କେତେ ମଲାବେଳେ ହୋଇ ବାଇ ।
ଏହା ଶୁଣିଣ ଭୂରିଶ୍ରବା ମହାରଥୀ
ନ କହି କଥାଟି ରହିଲେ ପୋତି ମଥା ।
ଭାଇମାନଙ୍କଠାରେ ମୋ ଯେଉଁ ପ୍ରୀତି
ସେରୂପେ ପ୍ରୀତି ତୁମ୍ଭଠାରେ ଥାଏ ବର୍ତ୍ତି ।
ଆମ୍ଭେ ବେନି କୃଷ୍ଣଙ୍କ ସମ୍ମତେ ଶିବିଙ୍କର-
ପରାୟେ ତୁମ୍ଭେ ସ୍ୱର୍ଗେ ବସି ଭୋଗକର ।
କୃଷ୍ଣ ବୋଇଲେ ଆହେ ଭୂରିଶ୍ରବା ବୀର
କରୁଅଛ ତ ତୁମ୍ଭେ ଯଜ୍ଞକୁ ଅପାର ।
କ୍ଷତ୍ରିୟ ଧର୍ମ କରି ମରୁଅଛ ରଣେ
ବୋଲୁଛିଁ ନ ପଡ଼ିବ ତୁମ୍ଭେ ଦୁଃଖବଣେ ।
ପକ୍ଷୀବର ଗରୁଡ଼ ତୁମ୍ଭଙ୍କୁ ମୋ ଲୋକ
ଦେବେ ତହିଁ ରହିବ ହୋଇଣ ବିଶୋକ ।
ଏ ଅନ୍ତରେ ସାତ୍ୟକି ହୋଇ ଝାଡ଼ିଝୁଡ଼ି
ଉଠି ଆଣ୍ଟକରି ଧଇଲେ ଖଣ୍ଡା ଭିଡ଼ି ।
ଛିନ୍ନବାହୁ ହୋଇଣ ଭୂରିଶ୍ରବା ବୀର
ବସିଛନ୍ତି ଯୋଗରେ କରି ଦେହ ଧୀର ।
ନୟନ ଦୁଇ ଭାଲେ‌ଦେଇଛନ୍ତି ଖୋସି
କଣ୍ଠାଗ୍ରତେ ପ୍ରାଣ ଯେ ରହିଅଛି ଆସି ।
ସାତ୍ୟକି ତାହାଙ୍କର ସମୀପକୁ ଧାଇଁ
ବାହାରନ୍ତେ ସର୍ବେ ଡାକିଲେ ତ୍ୱରାହୋଇ ।
ସେମାନଙ୍କର ନାମମାନ ହେ ରାଜନ
କହିବା ମୋହଠାରୁ ଶୁଣ ଦେଇ ମନ ।
କୃଷ୍ଣ ଅରଜୁନ ଯେ କର୍ଣ୍ଣ ଭୀମସେନ
ଯୁଧାମନ୍ୟୁ ଦ୍ରୋଣାଚାର୍ଯ୍ୟଙ୍କର ନନ୍ଦନ ।
ଉତ୍ତମଓଜା ଜୟଦ୍ରଥ ଆଦି ରଥୀ -
ମାନେ ମନା କରୁଥିଲେ ହୋଇଣ ବ୍ୟର୍ଥୀ ।
ତେବେହେଁ ସାତ୍ୟକି ନ ଘେନି ତାଙ୍କ ବାଣୀ
ଭୂରିଶ୍ରବା ବେକକୁ ପକାଇଲେ ହାଣି ।
ସାତ୍ୟକିଙ୍କ ଏ କର୍ମ ଦେଖି ପରଜନ
ତୁଲରେ ନିଜଜନେ ହୋଇଲେ ବିମନ ।
ସୋମଦତ୍ତସୁତକୁ ସମସ୍ତେ ପ୍ରଶଂସା
କରିବାରେ ରାୟେ ପୂରିଣ ଗଲା ରସା ।
ପୁଣି ଥୋକେ ଲୋକ ସାତ୍ୟକି ପଟେ ରହି
ସାତ୍ୟକିଙ୍କି ପ୍ରଶଂସା କଲେ ନରସାଇଁ ।
ବୋଇଲେ ଭୂରିଶ୍ରବା ସାତ୍ୟକିଙ୍କ ବାଳ
ଧରିଥିଲେ ସେ କିପାଁ ନ ପୁରାନ୍ତେ କାଳ ।

ସାତ୍ୟକି ବୋଇଲେ କୁରୁଏ ଏ ଧର୍ମ ଜାଣି
ବୋଲୁଅଛ ମୋତେ ଯୁଦ୍ଧରେ ନିନ୍ଦାବାଣୀ ।
ସୁଭଦ୍ରାଙ୍କର କୁମର ବାଳକ ବୟସ
ହୋଇଥିଲା ମୁଖରେ ନୋହିଥିଲା ନିଶ ।
ନ୍ୟସ୍ତଶସ୍ତ୍ର ହୋଇଣ ରହିଥିଲେ ରଣେ
କେଉଁ ଧର୍ମେ ତାଙ୍କୁ ମାଇଲ କହ ବାଣେ ।
ପୂର୍ବେ ମୁହିଁ ପ୍ରତିଜ୍ଞା ଅଛି ଯାହା କରି
କହୁଛି ତାହା ଏବେ ଶୁଣ କର୍ଣ୍ଣଡ଼େରି ।
ତଳେ ପେଷି ପାଦେ ମାରିବ ମୋତେ ଯେହି
ମାରିବି ମୁନି ହେଲେ ତାକୁ ଜାଣ ମୁହିଁ ।
ଭୂରିଶ୍ରବାଙ୍କର ଗୋଟିଏ ଥିଲା ଭୁଜ
ନିଃଶ୍ୱାସ ଛାଡୁଥିଲେ ଯେହ୍ନେ ନାଗରାଜ ।
ମାରିବାକୁ ମୋତେ ତରାଟି ଚାହିଁଥିଲେ
ଏଣୁ ତାଙ୍କୁ ମୁହିଁ ମାଇଲି ତାଙ୍କୁ ଭଲେ ।
ଅର୍ଜ୍ଜୁନଙ୍କୁ ବାହୁ କାଟ ତ ବୋଲି ମୁହିଁ
ନ ଥିଲି କହି ମୋତେ ନିନ୍ଦୁଛ କିପାଇଁ ।
ହେବା କଥା ହୁଅଇ ଜାଣିଛ ତ ତୁମ୍ଭେ
ଆଉ କେତେଗୁଡ଼ାଏ କହିବୁଟି ଆମ୍ଭେ ।
ଯେରୂପେ ସେରୂପେଟି ମାଇଲେ ଶତ୍ରୁକୁ
ଅଧର୍ମ ଥିଲା ପରି ନ ଆସେ ମନକୁ ।
ସାତ୍ୟକିଙ୍କ ଏ ବଚନ ଶୁଣିଣ କାନେ
ତୁନିହେଲେ ତୁମ୍ଭ ସକଳ ଯୋଦ୍ଧାମାନେ ।
ଯାଗପୂର୍ଣ୍ଣ ଭୂରିଦକ୍ଷିଣାରେ ଯେ ଯୁତ
ଭୂରିଶ୍ରବା ବୀର ହୁଅନ୍ତେ ରଣେ ହତ ।
ଦୁଇକୁଳର ଲୋକେ ନୋହିଲେ ସନ୍ତୋଷ
ମୋ କହିବାରୁ ଜାଣ ହସ୍ତିନା ନରେଶ ।
ଭୂରିଶ୍ରବା ଯେ ପ୍ରିୟ-ପରାଣକୁ ଛାଡ଼ି
ବିଷ୍ଣୁଲୋକଙ୍କରେ ବସିଲେ ଯାଇ ମାଡ଼ି ।
ଧୃତରାଷ୍ଟ୍ର ବୋଇଲେ କହିଲେ ଯା ସଞ୍ଜୟ
ଶୁଣି ତା ହୃଦେ ଜାତ ହୋଇଲା ସଂଶୟ ।
ଦ୍ରୋଣ କର୍ଣ୍ଣ କୃତବର୍ମା ଯେ ବିକର୍ଣ୍ଣଙ୍କୁ
ଜିଣିଲେ ତ ସାତ୍ୟକି କରି ସଂଗ୍ରାମକୁ ।
ଏ ବାହାରେ ମୋହର ସୈନ୍ୟ-ସିନ୍ଧୁତରୀ
ଆସିଲେ ତ ସାତ୍ୟକି ଧନୁଭେଳା ଧରି ।
ଭୂରିଶ୍ରବା ଗୋଷ୍ପଦଜଳ ପାଇ ବୁଡ଼ି
ମରୁଥିଲେ ସାତ୍ୟକି କଲେ ଶସ୍ତ୍ର ଛାଡ଼ି ।
ଏହି କଥାମାନଙ୍କେ ବିଶେଷାବିଶେଷ
ଯେ ଅଛି ତାହା କର ମୋ ଆଗେ ପ୍ରକାଶ ।
ସଞ୍ଜୟ ବୋଇଲେ ସଂଶୟମନା ହୋଇ
ପୁଛିଲ ଯାହା ତାହା ଶୁଣ ମନ ଦେଇ ।

ଅତ୍ରି ଋଷିଙ୍କଠାରୁ ଚନ୍ଦ୍ର ହେଲେ ଜାତ
ବୁଧ ବୋଲାଇଲେଟି ଚନ୍ଦ୍ରଙ୍କର ସୁତ ।
ବୁଧଙ୍କର ସୁତ ଯେ ପୁରୁରବା ହେଲେ
ପୁରୁରବା ସୁତଙ୍କୁ ଆୟୁ ବୋଲାଇଲେ ।
ଆୟୁଙ୍କର ସୁତଙ୍କୁ କହିଟି ନହୁଷ
ନହୁଷ ଜାତ କଲେ ଯଯାତି ନରେଶ ।
ଯଯାତିଙ୍କର ଜ୍ୟେଷ୍ଠ ସୁତ ଯଦୁ ହେଲେ
ଯଦୁଙ୍କ ବଂଶେ ଦେବମୀଢ଼ ଜନମିଲେ ।
ଦେବମୀଢ଼ଙ୍କର ଯେ ଶୂର ନାମ ସୁତ
ହେଲେ ସବୁଗୁଣରେ ଜଗତେ ସେ ଖ୍ୟାତ ।
ଶୂରଙ୍କର ନନ୍ଦନ ବସୁଦେବ ହେଲେ
କାର୍ତ୍ତବୀର୍ଯ୍ୟ ପରି ସେ ଶୂର ବୋଲାଇଲେ ।
ତାହାଙ୍କର ବଂଶରେ ଶିନି ଉତପତ୍ତି
ହୋଇଲେ ହେ ଜାଣ ଭରତବଂଶ ନାତି ।
ଏହିକାଳେ ଦେବକସୁତା ଦେବକୀର
ସ୍ୱୟମ୍ବରେ ଆସିଲେ ବହୁ ନରବର ।
ଶିନି ବସୁଦେବଙ୍କୁ କରିବା ବିଭା ଭାଳି
ଦେଖିଲେ ନୃପତିକି ହୋଇ ଯୁଦ୍ଧଶାଳୀ ।
ଦେବକୀଙ୍କି ନିଜ ରଥରେ ବସାଇଲେ
ବାବୁ ପରି ଆପଣା ରଥରେ ବସିଲେ ।
ଶିନିଙ୍କର ରଥରେ ଦେବକୀ ଦେଖି
ସୋମଦତ୍ତ ଯୁଝିଲେ ଧନୁରେ ଶରଯୋଖି ।
ଶରଯୁଦ୍ଧ କରି ସାରିଣ ବାହୁଯୁଦ୍ଧ
କରିଲେ ଅନ୍ୟୋନ୍ୟରେ ବିଚାରିଣ ବଧ ।
ବଳେ ସୋମଦତ୍ତ ବୀରକୁ ଦଳି ଶିନି
କଚାଡ଼ନ୍ତେ ତଳେ ରହିଲେ ହୋଇ ତୁନି ।
ବାଳ ଧରି ଗୋଇଠା ଗୋଟେ ହୃଦୟକୁ
ମାରି ଖଣ୍ଡା ଟେକିଲେ ଶିନି ହାଣିବାକୁ ।
ପୁଣି କୃପାକରି ବୋଇଲେ ସୋମଦତ୍ତ
ଜୀଇଁଥା ମାରିବାକୁ ନୋହୁଛି ମୋ ଚିତ୍ତ ।
ସବୁ ରାଜାମାନେ ନୟନେ ଚାହୁଁଥିଲେ
ଶିନି ସୋମଦତ୍ତଙ୍କୁ କୃପାରେ ଛାଡ଼ିଲେ ।
ସୋମଦତ୍ତ ଶିନିଙ୍କ ପରାଭବ ପାଇ
ସେବାକଲେ ଶିବଙ୍କୁ ଘରକୁ ନ ଯାଇ ।
ଶିବ ସୋମଦତ୍ତ ସେବାରେ ତୋଷ ହେଲେ
କି ବର ଇଚ୍ଛା ଅଛି ମାଗ ହେ ବୋଇଲେ ।
ସୋମଦତ୍ତ ବୋଇଲେ ଦେବା ମୋତେ ବର
କରିଛ ଯେବେ ଇଚ୍ଛା ଜଗତ-ଈଶ୍ୱର ।
ତେବେ ମୁଁ ମାଗୁଛି ମୋହର ହେବ ସୁତ
କରିବ ସେ ଶିନି ପୁତ୍ରର ଗର୍ବ ଚ୍ୟୁତ ।

ମୋତେ ଯୁଦ୍ଧେ ଯେରୂପେ ଶିନି କରିଛନ୍ତି
ସେ ସେରୂପେ କରିବ ବୋଲ ହେ ଉମାପତି ।
ଶିବ ସେ ବଚନକୁ ଶୁଣି ସହି କଲେ
ଏହିରୂପେ ହେବ ବୋଲିଣ ଯେ ବୋଇଲେ ।
ଶିବଙ୍କ ବରଦାନେ ଭୂରିଶ୍ରବା ବୀର
ହୋଇଲେଟି ସୋମଦତ୍ତଙ୍କର କୁମର ।
ଶିନିଙ୍କର ପୌତ୍ର ତ ଅଟନ୍ତି ସାତ୍ୟକି
ନୁହନ୍ତା କିରୂପେ ଯୁଝିଲେ ଧନୁ ଟେକି ।
ପାର୍ବତୀବଲ୍ଲଭ ବଚନ କେବେ ମିଥ୍ୟା
ନୁହଇ ଏ କଥାରେ ଥିଲେ ଛାଡ଼ି ବ୍ୟଥା ।
ପଚାରିବାରୁ ରାୟେ ଆଗ୍ରହରେ ତୁମ୍ଭେ
ଯାହା ଜାଣିଥିଲୁଁ କହିଲୁଁ ତାହା ଆମ୍ଭେ ।
ଯୁଯୁଧାନ ବୀରଙ୍କୁ ଜିଣିବାକୁ ମହୀ-
ମଣ୍ଡଳେ ଖୋଜିଲେ ରାଜନ ବୀର ନାହିଁ ।
ଯଦୁବଂଶ ରାଜାମାନେ ଯେ ଲବ୍ଧଲକ୍ଷ
ଅଧର୍ମ ଶବଦକୁ କରିଛନ୍ତି ମୋକ୍ଷ ।
ଦେବାଦୈତ୍ୟ ଦାନବ ଉରଗକୁଳକୁ
ଜିଣିଛନ୍ତି ଦେଖାଇ ନିଜ ବିକ୍ରମକୁ ।
ଥାଆନ୍ତି ସେ ବୃଦ୍ଧମାନଙ୍କର ବଚନେ
ନାହାନ୍ତି ଲଙ୍ଘି ତାଙ୍କୁ ରାଜନ ସ୍ୱପନେ ।
ବୃଷ୍ଣିବୀରମାନେ ଯେ ଦେବଙ୍କେ ଅଜିତ
ମନୁଷ୍ୟରେ ସେ କେହି ହୋଇବେ ହେ ଜିତ ।
ବ୍ରହ୍ମଦ୍ରବ୍ୟ ଗୁରୁଦ୍ରବ୍ୟ ଯେ ଜ୍ଞାତିଦ୍ରବ୍ୟ
ରକ୍ଷା କରିବାରେ ଅଟନ୍ତି ମହାଭବ୍ୟ ।
ସମର୍ଥ ଜିତେନ୍ଦ୍ରିୟ ଦେବ-ପରାୟଣ
ସତ୍ୟବାଦୀ ବ୍ରହ୍ମଣ୍ୟ ଦୀନାର୍ତ୍ତନାଶନ ।
ଧନବନ୍ତ ହୋଇ ହେବାରୁ ଅଗର୍ବିତ
ହୁଅନ୍ତି ସେ ନରମାନଙ୍କରେ ପୂଜିତ ।
ଏହି ସକାଶରୁଟି ବୃଷ୍ଣିମାନଙ୍କର
ଅଜେୟ ଶୁଣା କାନେ ନାହିଁ ନରବର ।
ମେରୁକୁ ଯେ ବହିବ ସିନ୍ଧୁ ହେବ ପାରି
ସେ କହିବ ବୃଷ୍ଣିଙ୍କ ଗୁଣଙ୍କୁ ବିସ୍ତାରି ।
ଧୃତରାଷ୍ଟ୍ର ବୋଇଲେ ଭୂରିଶ୍ରବା ପ୍ରାଣ
ଯାଆନ୍ତେ କେଉଁରୂପେ ହେଲା କହ ରଣ ।
ସଞ୍ଜୟ ବୋଇଲେ ମରନ୍ତେ ଭୂରିଶ୍ରବା
ଯେରୂପେ ଯୁଦ୍ଧ ହେଲା ଶୁଣ ତା କହିବା ।
କୃଷ୍ଣଙ୍କ ମୁଖ ଚାହିଁ କହିଲେ ଅର୍ଜ୍ଜୁନ
ବାହ ମୋର ବାହନମାନଙ୍କୁ ବହନ ।
ସୂର୍ଯ୍ୟ ଆସି ଅସ୍ତ ହୋଇଣ ଯାଉଛନ୍ତି
ଜୀଇଁଛି ଜୟଦ୍ରଥ ରାଜନ ଦୁର୍ମତି ।
ଆପଣ ତ ସମସ୍ତ କଥାରେ ଚତୁର
ମୋ ପ୍ରତିଜ୍ଞା ସଫଳ ହେବା ପରି କର ।
ଅର୍ଜ୍ଜୁନଙ୍କ ବଚନ କୃଷ୍ଣ କର୍ଣ୍ଣେ ଶୁଣି
ବାହିଲେ ଜୟଦ୍ରଥ ପାଶେ ଘୋଡ଼ାଶ୍ରେଣୀ ।
ଅରଜୁନ ଭିଡ଼ି ଗାଣ୍ଡୀବଶରାସନ
ବିନ୍ଧିଲେ ତୁମ୍ଭ ସେନାଙ୍କୁଟି ଶରମାନ ।
ତାହା ଦେଖି ତୁମ୍ଭ ସେନାଏ ହୋଇ ଗୋଟି
କିରୀଟୀ ନିବାରିଲେ ଯୁଦ୍ଧେ ହୋଇ ଯୋଟି ।
ଦୁର୍ଯ୍ୟୋଧନ ଯେ ମଦ୍ରରାଜ ବୃଷସେନ
କୃପ ସଇନ୍ଧବଟି ଦ୍ରୋଣଙ୍କ ନନ୍ଦନ ।
ଏ ସମସ୍ତେ ଅର୍ଜ୍ଜୁନଙ୍କୁ ଦେଖିଣ ରଣେ
ଧାଇଁଲେ ଧନୁମଧେ ସନ୍ଧି ବାଣେ ବାଣେ ।
ଅର୍ଜ୍ଜୁନ ଜୟଦ୍ରଥ ରାଜାଙ୍କୁ ରଥେ ଚାହିଁ-
ଦେଲେ ପୋଡ଼ିଦେଲା ପରି ହେ ନରସାଇଁ ।
ଜୟଦ୍ରଥ ସମୀପେ ଅର୍ଜ୍ଜୁନଙ୍କୁ ଦେଖି
ଦୁର୍ଯ୍ୟୋଧନ ରାଜା କିଛି ନୋହିଣ ସୁଖୀ ।
କର୍ଣ୍ଣଙ୍କୁ ବୋଇଲେ ହେ ମିତ କି ଦେଖୁଛ
ଏହିକ୍ଷଣି ମରିବ ସିନ୍ଧୁ-ରାଜବତ୍ସ ।
ବଳ ପଉରୁଷ ଦେଖାଇବାର କାଳ
ହୋଇଛି ତୁମ୍ଭର ତୁମ୍ଭେ ତ ମହାବଳ ।
ଅଳପକାଳ ତୁମ୍ଭେ କିରୀଟିକି ଯୋଟି
ଯୁଦ୍ଧକଲେ ଅନ୍ଧାର ଆସିବ ହେ ଘୋଟି ।
ଯୁଦ୍ଧ କରୁ କରୁ ଦିବସ ହେଲେ ଶେଷ-
ଯିବ ଅରଜୁନର ପଉରୁଷ ନାଶ ।
ଜୟଦ୍ରଥ ରାଜାଙ୍କ ରଖିଲେ ଜୀବନ
ଅରଜୁନ ଅଗ୍ନିରେ ହୋଇବ ନିଧନ ।
ଅରଜୁନ ମରିଲେ ଯୁଧିଷ୍ଠିର ଆଦି
ମରିବେ ଆମ୍ଭେ ସୁଖେ ହେବା ନିର୍ବିବାଦୀ ।
ନିଷ୍କଣ୍ଟକ କରି ଭୁଞ୍ଜିବା ବସୁନ୍ଧରା
ଯୁଦ୍ଧ କର ମିତ ପାର୍ଥକୁ ହୋଇ ତ୍ୱରା ।
ସରନ୍ତେ ବୁଦ୍ଧି ବିହି ଅର୍ଜ୍ଜୁନ ହାରି ଜ୍ଞାନ
କହିଲାଟି ନ ଜାଣି ପ୍ରତିଜ୍ଞା ବଚନ ।
ଜୟଦ୍ରଥ ରାଜାକୁ ନ ପାରିବ ମାରି
ଭେଟିବ ଇଚ୍ଛା ସୁଖେ ଯମକୁ ସେ ମାରି ।
ତୁମ୍ଭେ ଜୀଇଁଥିବାଟାରେ ହେ ମହାରଥ
କିରୂପେ କାଟିବ ସେ ଜୟଦ୍ରଥ ମାଥ ।
ଶଲ୍ୟ କୃପ ଅଶ୍ୱତ୍ଥାମା ତ ରହିଛନ୍ତି
ଜୟଦ୍ରଥ ରାଜା ରକ୍ଷାରେ ଦେଇ ମତି ।
ତୁମ୍ଭେ ଧନୁର୍ଦ୍ଧରମାନଙ୍କ ଶିରୋମଣି
ଜାଣୁଛି ବ୍ୟର୍ଥ ହେବ ଅରଜୁନ ବାଣୀ ।

ଭାଇଙ୍କି ଧରି ଦୁଃଶାସନ ତୁଳେ ମୁହିଁ
ରହିଛି ତୁ ତୁମ୍ଭର ପୃଷ୍ଠସାହା ହୋଇ ।
ସୂର୍ଯ୍ୟ ଆସି ଲମ୍ବିଣ ପଡ଼ିଲେଣି ଦେଖ
ଜୀଇଁଲେ ଜୟଦ୍ରଥ ନୃପ ରଥୀଶିଖ ।
ଏହା ଶୁଣି କର୍ଣ୍ଣ ବୋଇଲେ ଦୁର୍ଯ୍ୟୋଧନ
ରାଜନ ଶୁଣିଲି ମୁଁ ତୁମ୍ଭର ବଚନ ।
ମହାବଳୀ ଭୀମସେନର ଶରଜାଳେ
ପ୍ରାଣ ମୋର ଆଶ୍ରେ କରିଛି କଣ୍ଠତଳେ ।
ଯୁଦ୍ଧ ଛାଡ଼ି ନ ଯିବା ବୋଲି ମୁଁ ରହିଛି
ଯୁଦ୍ଧ କରିବାକୁ ମୋ ଶକ୍ତି ନାହିଁ କିଛି ।
ପ୍ରତିଅଙ୍ଗେ ମୋହର ପୂର୍ବ ପରି ଚେଷ୍ଟା
କରୁନାହାନ୍ତି ହେ ଗାନ୍ଧାରୀଙ୍କର ବେଟା ।
ଜୀବନ ଥିବାଯାକ ଆହେ ମହାରାଜ
ତୁଲାଇବି ପଡ଼ିଲେ କହୁଛି ତୁମ୍ଭ କାର୍ଯ୍ୟ ।
ଅରଜୁନ ଜୟଦ୍ରଥଙ୍କର ପରାଣ
ନ ନେବାକୁ ମୁହିଁ କରିବି ଘୋର ରଣ ।
ମୁଁ ଯୁଦ୍ଧ କରୁଥିଲେ ଜୟଦ୍ରଥ ମାଥ
କାଟି ନ ପାରଇଟି କେବେ ଜାଣ ପାର୍ଥ ।
ଭକତି କରି ତୁମ୍ଭଠାରେ ମୁଁ ସମର
କରିବି ଜୟ ତ ଆୟତ୍ତ ଦଇବର ।
ପଉରୁଷ ଆଶ୍ରା କରି ମୁଁ ଆଜି ଯୁଦ୍ଧ-
କରି କରିବି ମୁଁ ତୁମ୍ଭଚ ମନବୋଧ ।
ଆଜି କର୍ଣ୍ଣାର୍ଜୁନଙ୍କ ଯୁଦ୍ଧକୁ ନୟନେ
ଦେଖିଣ ପ୍ରଶଂସା କରିବେ ଯୋଦ୍ଧାଜନେ ।
ସେହି ସମୟରେ ଅର୍ଜୁନ ତୁମ୍ଭ ସେନା-
ମାନଙ୍କୁ ଶରେ କଲେ ରାଜନ ବିମନା ।
ପରିଘ ହସ୍ତୀକର ପ୍ରାୟେ ବାହୁଗଣ
କାଟି ପକାଇଲେ ଅର୍ଜୁନ ବିନ୍ଧି ବାଣ ।
ଯେତେ ଥିଲେ ରାଜନ ତୁମ୍ଭ ଭଲ ଭେଣ୍ଡା
କାଟିଲେ ତାଙ୍କ ମୁଣ୍ଡ କାଣ୍ଡେ ଗଣ୍ଡା ଗଣ୍ଡା ।
ଦ୍ୱିଖଣ୍ଡ ତିନିଖଣ୍ଡ କରି ହାତୀ ଘୋଡ଼ା
କାଟିବାରେ ସଙ୍କୁଳ ହେଲେ ପଡ଼ି ମଡ଼ା ।
ରଥ ରଖ ଯୁଆଳି ଚାମରଧ୍ୱଜ ପାର୍ଥ
କାଟି ପକାଇଲେ ଦେଖାଇ ଲଘୁହସ୍ତ ।
ଏରୂପେ ତୁମ୍ଭ ବଳ ବିନାଶ କରି ବାଣେ
ଗଲେ ଜୟଦ୍ରଥଠାକୁ ସେ ଘୋର ରଣେ ।
ଜ୍ୱଳନ୍ତା ଅଗ୍ନିପରି ଅର୍ଜୁନଙ୍କ ତେଜ
ବୁଜାଇଲା ସକୁରି ନୟନସରୋଜ ।
ଦୁର୍ଯ୍ୟୋଧନ କର୍ଣ୍ଣ ଯେ ବୃଷସେନ ଶଲ୍ୟ
ଦ୍ରୋଣଙ୍କର ତନୟ କୃପ ମହାମଲ୍ଲ ।
ସାନନ୍ଦ ହୋଇ ଅରଜୁନ ଚାରିପଟେ
ରହିଲେ ବେଢ଼ି ଧନୁମାନ ଝିଙ୍କି ଆଣ୍ଟେ ।
ଯେରୂପେ ଜୟଦ୍ରଥ-ରାଜାଙ୍କ ଜୀବନ
ନ ନେବେ ସେରୂପେ ସେ ବଳେ ଅୟୋଧନ ।
ତେତେବେଳେ ସରିକି ଛାୟାଙ୍କର ପତି
ହେବାକୁ ଅସ୍ତ ରଙ୍ଗ ଦିଶିଲେଣି ଅତି ।
ଭୋଗୀଭୋଗ ପରି ବାହୁରେ ରଥୀଗଣ
ଧରି ଚାପ ବିନ୍ଧିଲେ ଅର୍ଜୁନଙ୍କୁ ବାଣ ।
ଜୟଦ୍ରଥ ରାଜାଙ୍କୁ ପୃଷ୍ଠପଟେ ରଖି
ଯୁଝିଲେ ହେ ରାଜନ ସର୍ବେ ହୋଇ ସୁଖୀ ।
ମନେକଲେ ଏହିକ୍ଷଣି ତ ରବିଦେବ
ଅସ୍ତହେବେ ହାରିବେ ଅର୍ଜୁନ ପାଣ୍ଡବ ।
ସେମାନଙ୍କ ଶରମାନଙ୍କୁ ଯେ କିରୀଟୀ
ଦ୍ୱିଖଣ୍ଡ ପାଞ୍ଚଖଣ୍ଡ କରିଦେଲେ କାଟି ।
ଅଶ୍ୱଥାମା ଆଚାର୍ଯ୍ୟ ଯୁଦ୍ଧକରିବାକୁ
ଅର୍ଜୁନଙ୍କୁ ବିନ୍ଧିଲେ ଆଚ୍ଛା ମାର୍ଗଣକୁ ।
ଅର୍ଜୁନଙ୍କୁ ଦଶ କୃଷ୍ଣଙ୍କ ଦେହେ ସାତ
ବିନ୍ଧିଲେ ଅଶ୍ୱଥାମା ଦ୍ରୋଣଙ୍କର ସୁତ ।
ଧନୁମାନ ଟଙ୍କାରି ତୁମ୍ଭର ରଥୀଏ
ଘୋଡ଼ାଇଦେଲେ ଅର୍ଜୁନଙ୍କୁ କାଣ୍ଡେରାଯେ ।
ସେକାଳେ ଅର୍ଜୁନ ଗାଣ୍ଡୀବଭୁଜ ବଳ
ଦେଖିଲୁଁ ହେ ଉତ୍ତମ କର ମହୀପାଳ ।
ଅଶ୍ୱଥାମା ଅସ୍ତ୍ରକୁ ଅସ୍ତ୍ରରେ ନିବାରି
ତୁମ୍ଭର ରଥୀଙ୍କୁ ଗାଣ୍ଡୀବ ଧନୁର୍ଦ୍ଧାରୀ ।
ଜଣଜଣକରେ ବିନ୍ଧିଲେ ଦଶ ଦଶ
ଦେଖାଇବା ପାଇଁକି ବଳ ପଉରୁଷ ।
ବୃଷସେନ ସାତ ଯେ ଦ୍ରୋଣୀ ପଞ୍ଚବିଂଶ
ଦୁର୍ଯ୍ୟୋଧନଙ୍କ ନୃପ ସତୁରି କର୍ଣ୍ଣ ଦଶ ।
ବିନ୍ଧିଲେ ଅର୍ଜୁନଙ୍କୁ ଶରମାନ ଧାପେ
ଚାପମାନ ତାଙ୍କ ଓଟାରି କୋପ-ତାପେ ।
ରଥକୁ ରଥ ତୁମ୍ଭ ରଥୀଏ ଲଗାଇ
ଯୁଝିଲେ ସୂର୍ଯ୍ୟ ଅସ୍ତ ହେବାକୁ ଅନାଇ ।
ଅର୍ଜୁନଙ୍କ ଦେହକୁ ବାଛି ଦିବ୍ୟ କାଣ୍ଡ
ବିନ୍ଧନ୍ତେ ରଥୀଏ କମ୍ପିଲା ଯୁଦ୍ଧ ଦାଣ୍ଡ ।
ତୁମ୍ଭ ବଳଯାକକୁ ମାରି ନରନାଥ
ଅର୍ଜୁନ ନେଲେ ଜୟଦ୍ରଥଠାକୁ ରଥ ।
ସାତ୍ୟକି ଭୀମ ଦୁହେଁ ନେତ୍ରେ ଚାହୁଁଥିଲେ
ଅର୍ଜୁନଙ୍କୁ କର୍ଣ୍ଣ ଶାୟକେ ନିବାରିଲେ ।
ସେହିରୂପେ ତୁମ୍ଭର ସବୁ ସୈନ୍ୟଯାକ
ଦେଖୁଥିଲେ ଅର୍ଜୁନ ଦଶୋଟି ଶାୟକ ।

କର୍ଣ୍ଣଙ୍କର କର୍ଣ୍ଣମୂଳକୁ ପ୍ରହାରିଲେ
ମରୁ ଏ ଦୁଷ୍ଟପାପୀ ବୋଲି ମନେକଲେ ।
କର୍ଣ୍ଣଙ୍କୁ ତିନି ତିନି ଭୀମ ଯୁଯୁଧାନ
ବିନ୍ଧନ୍ତେ ସାତ ଶର ବିନ୍ଧିଲେ ଅର୍ଜ୍ଜୁନ ।
ଭୀମାର୍ଜ୍ଜୁନ ସାତ୍ୟକି ତିନିକି ନକୋଡ଼ି
ଶାୟକ କର୍ଣ୍ଣରାୟେ ଦେଲେ ଯୁଦ୍ଧେ ଛାଡ଼ି ।
ଏକା ହୋଇ କର୍ଣ୍ଣ ତିନିଙ୍କ ତୁଲେ ରଣ
କରିବାରୁ ବଡ଼ ଆଶ୍ଚର୍ଯ୍ୟ ହେଲା ଜାଣ ।
ଅରଜୁନ କର୍ଣ୍ଣଙ୍କ ଗର୍ବ ଭାଙ୍ଗିବାକୁ
ବିନ୍ଧିଲେ ଶଏ ଶର ବାଛି ମରମକୁ ।
କର୍ଣ୍ଣ ସେ କାଣ୍ଡଙ୍କର ଘାଏ ଜରଜର
ରକତେ ଦେହ କରିଦେଲେ ନରବର ।
ଯୁଦ୍ଧାକାଂକ୍ଷୀ ହୋଇ ପାଞ୍ଚଶ ଶର ଯୋଖି
ବିନ୍ଧିଲେ ଅରଜୁନ ରଙ୍ଗ କରି ଆଖି ।
ଅର୍ଜ୍ଜୁନ କର୍ଣ୍ଣଙ୍କର ଦେଖି ପରାକ୍ରମ
ଅତିଶୟେ ରାଜନ ହୋଇ ତମ ତମ ।
ଧନୁ କାଟି କର୍ଣ୍ଣଙ୍କ ଉରକୁ ବଜାଇ
ବିନ୍ଧିଲେ କାଣ୍ଡମାନ ଜୟରେ ରଞ୍ଜାଇ ।
ସୂର୍ଯ୍ୟଙ୍କ ତେଜ ପରି ଶରୁଟାଏ ବାଛି
ବିନ୍ଧିଲେ ଅଧିରଥ ସୁତେ ଇନ୍ଦ୍ରବହ୍ନି ।
ସେ କାଣ୍ଡ ବଜ୍ର ପରି କରି ଗରଜନ
ଆସୁଥିଲା କର୍ଣ୍ଣଙ୍କୁ ନେବାକୁ ଜୀବନ ।
ଅଶ୍ୱତ୍ଥାମା ଯେ ଅର୍ଦ୍ଧଚନ୍ଦ୍ର ବାଣ ପେଷି
ସମସ୍ତେ ଦେଖୁଥିଲୁଁ ପକାଇଲେ ନାଶି ।
ଆନ ଧନୁ ଧରିଣ ଅଙ୍ଗ ନରସାଇଁ
ଅର୍ଜ୍ଜୁନଙ୍କୁ ମାର୍ଗଣ ଗଣେ ଦେଲେ ଛାଇ ।
ପବନରେ ଶଲଭ ଉଡ଼ିବା ପରାୟେ
ଉଡ଼ିଲେ କର୍ଣ୍ଣଶର ପାର୍ଥଶର ରାୟେ ।
ସବୁ ଯୋଦ୍ଧାମାନେ ତୁମ୍ଭର ଥିଲେ ଚାହିଁ
ଦେଲେ ପାର୍ଥ ଶରରେ କର୍ଣ୍ଣଙ୍କୁ ଘୋଡ଼ାଇ ।
କର୍ଣ୍ଣ ସେହି ରୂପରେ ନ ଛାଡ଼ିଣ ରଣ
ଅର୍ଜ୍ଜୁନଙ୍କୁ ଘୋଡ଼ାଇ ଦେଲେ ବିନ୍ଧି ବାଣ ।
ବୃଷଭ ପରି ଦୁହେଁ ଶର-ବିଷାଣରେ
ମରାମରି ହୋଇଲେ ସେ ମହାରଣରେ ।
ପରସ୍ପରେ ଦୁହେଁ ହୋଇଲେ ବୋଲାବୋଲି
ନ ପଳାଇ ଯୁଝି ମରିବା ବୋଲି ଭାଳି ।
ରହ ଯୁଦ୍ଧ କରିବା ବଚନେ ଆକାଶ
ପୂରିଗଲା ଜାଣ ହେ ନରକୁଳଈଶ ।
କର୍ଣ୍ଣ ଅର୍ଜ୍ଜୁନଙ୍କ ଯୁଦ୍ଧକୁ ଲୋକେ ଚାହିଁ
ରହିଲେ ହେ ରାଜନ ଯୁଦ୍ଧ ଛାଡ଼ିଦେଇ ।

ଅନ୍ୟୋନ୍ୟରେ ଦୁହେଁ ହେ ଦୁହିଁଙ୍କର ବଧ
ଭାବିଣ ଯୁଦ୍ଧ କଲେ ହୋଇ ମହାକ୍ରୋଧ ।
ଦୁର୍ଯ୍ୟୋଧନ ରାଜା ଆପଣାର ହିତକୁ
ଭାବିକରି କହିଲେ ଆପଣା ମିତକୁ ।
ଜଗ ଯାଇଣ ଆହେ କୁରୁବଳଯାକ
କର୍ଣ୍ଣ କାଣ୍ଡେ ଅର୍ଜ୍ଜୁନ ଦେଖିବେ ଆଜି ନାକ ।
ଯୁଝନ୍ତେ ତୁମ୍ଭ କର୍ଣ୍ଣ ହୋଇ ଟାଣିଟୁଣି
କର୍ଣ୍ଣଙ୍କ ଘୋଡ଼ା ପ୍ରାଣ ନେଲେ ପ୍ରାର୍ଥ ଜାଣି ।
ଭଲ୍ଲକାଣ୍ଡରେ ସାରଥିର ମୁଣ୍ଡ କାଟି
ପକାଇଦେଲେ ଯୁଦ୍ଧଦାଣ୍ଡରେ କିରୀଟୀ ।
ତୁମ୍ଭ ପୁତ୍ରମାନେ ନୟନେ ଚାହୁଁଥିଲେ
ଅରଜୁନ ଶରେ କର୍ଣ୍ଣକୁ ଘୋଡ଼ାଇଲେ ।
ସୂତ ଘୋଡ଼ା ଦୁଇ ମରନ୍ତେ କର୍ଣ୍ଣଙ୍କର
ରହିଲେ ଶୀର୍ଣ୍ଣାବସ୍ଥା ଭଜି ନରବର ।
କର୍ଣ୍ଣଙ୍କୁ ସ୍ୱରଥେ ବସାଇ ଅଶ୍ୱତ୍ଥାମା
ବିନ୍ଧିଲେ ଅର୍ଜ୍ଜୁନଙ୍କୁ ଦେଖାଇ ଗାରିମା ।
ଶଲ୍ୟ ସେ ସମୟରେ ତିରିଶିଟି କାଣ୍ଡ
ଅର୍ଜ୍ଜୁନଙ୍କୁ ବିନ୍ଧିଲେ କମ୍ପାଇ କୋଦଣ୍ଡ ।
କୃପ ଯେ କୋପେ ଅର୍ଜ୍ଜୁନଙ୍କୁ ବିନ୍ଧି ବାର
କୋଡ଼ିଏ କାଣ୍ଡ କଲେ କୃଷ୍ଣଙ୍କୁ ପ୍ରହାର ।
ଜୟଦ୍ରଥକୁ ଚାରି ସାତ ବୃଷସେନ
ବିନ୍ଧିଲେ ଉଦ୍ଦେଶିଣ କୃଷ୍ଣ ଅରଜୁନ ।
ସେ ସମୟେ ଅର୍ଜ୍ଜୁନ ଅତିତ୍ୱରା ହେଲେ
ଗାଣ୍ଡୀବକୁ ସଜ କରିଣ ସେ ଧଇଲେ ।
ଶଏ ମଦ୍ରରାଜଙ୍କୁ ଦ୍ରୌଣୀଙ୍କୁ ଚୌଷଠି
ତିନି ବୃଷସେନ ବିନ୍ଧିଲେ ଭିଡ଼ି ମୁଷ୍ଟି ।
ଏ ବାହାରେ ଜୟଦ୍ରଥକୁ ବାଛି ଦଶ
ବିନ୍ଧି କୃପ ଦେହେ ବିନ୍ଧିଲେ ଶର ବିଂଶ ।
ଅର୍ଜ୍ଜୁନଙ୍କ ପ୍ରତିଜ୍ଞା ନାଶକୁ ବିଚାରି
ତୁମ୍ଭ ରଥୀଯାକ ଏକଠା ହୋଇ କରି ।
ଅର୍ଜ୍ଜୁନଙ୍କୁ ନାନାଜାତିରେ ମାରଗଣ
ବିନ୍ଧିଣ ପୁଣି ଆରମ୍ଭିଲେ ଘୋର ରଣ ।
ଏହା ଦେଖି ଅର୍ଜ୍ଜୁନ ସର୍ବଧାର ଅସ୍ତ୍ର
କଲେ ନାଶିବାକୁ ଯୋଦ୍ଧାମାନଙ୍କ ଗାତ୍ର ।
ଏମନ୍ତ ହେଲେ ତୁମ୍ଭ ସୈନ୍ୟ ଯାକ ବେଢ଼ି
ବିନ୍ଧିଲେ ପାର୍ଥକୁ ତୂଣରୁ ଶର କାଢ଼ି ।
ବନବାସ ଦୁଃଖଯାକକୁ ଅରଜୁନ
ପକାଇ ମନେ ରଙ୍ଗ କରିଣ ନୟନ ।
ଗାଣ୍ଡୀବରୁ ମୁକତ ହେବା ଶରପନ୍ତି-
ମାନଙ୍କରେ କୁରୁଙ୍କୁ ଦେଲେ ଦୁଃଖ ଅତି ।

ଉଲୁକା ପରି ଅରଜୁନଙ୍କର କାଣ୍ଡ
ଦେଖୁଁ ଦେଖୁଁ ମଣ୍ଡିଲା ଯୁଦ୍ଧାକାଶ ଖଣ୍ଡ ।
ଘୋଡ଼ା ହାତୀ ଉପରେ ବସିଥିଲା ନର-
ମାନଙ୍କୁ ଦେଲେ ପାର୍ଥ ଯମଙ୍କ ନଗର ।
ବଡ଼ ବଡ଼ ଖଣ୍ଡା ଶକତି ଗଦା ଫରୀ
ମୂଷଳ ପରିଘକୁ ଧରି ଦଣ୍ଡଧାରୀ ।
କୁଳ ଅର୍ଜୁନଙ୍କ ପାଶକୁ ଧାଇଁ ଆସି
ରୋଳକଲେ ରାଜନ ହୋଇ ମହାରୋଷୀ ।
ଇନ୍ଦ୍ରଚାପ ସମ ଗାଣ୍ଡୀବ ଶରାସନ
ଝିଙ୍କି ପାର୍ଥ ବିନ୍ଧନ୍ତେ ଦିବ୍ୟ ଶରମାନ ।
ଯୁଗାନ୍ତ ମେଘ ପରି ଗାଣ୍ଡୀବ କଲେ ଡକା
ଶୁଣି ତୁମ୍ଭର ଲୋକେ ହୋଇଲେ ଟାଟକା ।
ରଥ ଗଜ ଅଶ୍ୱ ଯେ ନରଙ୍କ ଦେହରୁ
ରକତ ବହି ନିନ୍ଦା କରିଦେଲା ଗେରୁ ।
ମରିବା ଭାଜିବାରେ ସରିବାର ନୋହେ
କହି ତା ପାରିବ କେ ନୃପ ନରଦେହେ ।
ଯେରୂପରେ ସମୁଦ୍ର ଯୁଗାନ୍ତର ବାତ
ପାଇଲେ ଘାଣ୍ଟିହୋଇ ହୁଅଇ କ୍ଷୋଭିତ ।
ଅର୍ଜୁନଙ୍କର ଶୁଣି କରେ ଧନୁନାଦ
ସେରୂପେ ତୁମ୍ଭ ଲୋକେ ହୋଇଲେ ସ୍ତବଧ ।
ସବୁ ଅସ୍ତ୍ରମାନଙ୍କୁ କରି ସବ୍ୟସାଚୀ
ଦିଶି ସବୁଦିଗେ ବିନ୍ଧିଲେ ଧନୁ ଆଞ୍ଚି ।
ପାଟି ମେଲିଥିବାର ଅନ୍ତକ ସମାନ
ଅର୍ଜୁନ ରୂପକୁ ହେ କଲୁ ଦରଶନ ।
ପ୍ରଳୟସୂର୍ଯ୍ୟ ପରି ଅର୍ଜୁନ ତେଜ ଜଳି
ବାହାରନ୍ତେ ଛପିଲେ ତୁମ୍ଭେ ଯେତେ ବଳୀ ।
ତୁମ୍ଭ ସେନା-ମାନସରେ ପାର୍ଥ ଶର
ପଶିଲେ ହଂସ ପରି ନୃପ ମନେକର ।
ତୁମ୍ଭ ରଥୀମାନଙ୍କ ଅସ୍ତ୍ରକୁ ଅସ୍ତ୍ରେ କାଟି
ଦିଶିଲେ ରୁଦ୍ର ଇନ୍ଦ୍ର ପରାୟେ କିରୀଟୀ ।
ଏରୂପେ ତୁମ୍ଭ ରଥୀବୃନ୍ଦେ ପୀଡ଼ା ଦେଇ
ଜୟଦ୍ରଥ ଆଗେ ରଖିଲେ ରଥ ନେଇ ।
ଚଉଷଠୀ ରୋପ ଯେ ସିନ୍ଧୁ ଦେଶ ନୃପ-
ଉପରକୁ ବିନ୍ଧିଲେ ପାର୍ଥ କରି କୋପ ।
ପାର୍ଥ ଶର ଦେହେ ବାଜନ୍ତେ ଜୟଦ୍ରଥ
ଥରାଇ କ୍ରୋଧେ ହୃଦ ହୋଇ ଧନୁହାତ ।
କମାର-ଶାଳ-ଘଷା ସର୍ପ ପରି କାଣ୍ଡ-
ମାନସେ ବିନ୍ଧିଲେ ଦେଖାଇ ହସ୍ତଚାଣ୍ଡ ।
ଗାଣ୍ଡୀବ କାଟିବାକୁ ତିନି କାଣ୍ଡ ବାଛି
ବିନ୍ଧିଲେ ଜୟଦ୍ରଥ ବୃଦ୍ଧକ୍ଷତ୍ରବଛି ।

ଅର୍ଜୁନେ ଛଶର ଘୋଡ଼ାଙ୍କୁ ଆଠ ଶର
ପ୍ରହାରି ପ୍ରହାରିଲେ ଧ୍ୱଜେ ଏକ ଶର ।
କୃଷ୍ଣଙ୍କର ମରମସ୍ଥାନମାନ ଖୋଜି
ବିନ୍ଧିଲେ ତିନିଶର ରୋଷରେ ସେ ମଜ୍ଜି ।
ପୁଣି ଅର୍ଜୁନଙ୍କ କିରୀଟ ଧନୁ ଘୋଡ଼ା
ଗଣେ ଜୟଦ୍ରଥ ବିନ୍ଧିଲେ ଶରଭିଡ଼ା ।
ଜୟଦ୍ରଥ-କାଣ୍ଡମାନଙ୍କୁ କାଟି ପାର୍ଥ
କାଟିଣ ପକାଇଲେ ସାରଥିର ମାଥ ।
ଜୟଦ୍ରଥଙ୍କ ତ ବରାହଧ୍ୱଜ ରଥ
ସେ ଧ୍ୱଜ କାଟିଲେ ଦେଖାଇ ଲଘୁହାତ ।
କଇଳାସ ଶୃଙ୍ଗ ପରାୟେ ସେହି ରୂପ
ବରାହ ପଡ଼ିଲା, ଦେଖିଲୁ ନେତ୍ରେ ନୃପ ।
ଏକାଳେ ପାର୍ଥଙ୍କୁ କହିଲେ ଚକ୍ରହସ୍ତ
କି ଯୁଝୁଅଛ ସୂର୍ଯ୍ୟ ହେଉଛନ୍ତି ଅସ୍ତ ।
ଏତେବେଳଯାଏ ତ ଜୟଦ୍ରଥ ମରି-
ପାରିନାହିଁ, କିରୂପେ ନେବ ଜୟ-ଶିରୀ ।
ପୁଣି ତ କର୍ଣ୍ଣ ଆଦି ରଥୀଙ୍କେ ଆବୃତ
ହୋଇ ରହିଛନ୍ତି ନିର୍ଭୟେ ସିନ୍ଧୁନାଥ ।
ତାହାଙ୍କୁ ନ ଜିଣି ବ୍ୟୂହକୁ ନ ଭାଙ୍ଗିଲେ
ତାର ମାଥ କାଟି ନ ପାର ତୁମ୍ଭେ ଭଲେ ।
ମୋର ମାୟା ବିନା ସେ ବ୍ୟୂହ ଭାଙ୍ଗିବାକୁ
ଆନ ଉପାୟ ମୋ ନ ଦିଶେ ନୟନକୁ ।
ଆହେ ଅରଜୁନ ତୁମ୍ଭେ ତ ଯୁଝି ଯୁଝି
ରହିଲନି ଶ୍ରାନ୍ତଦଶାରେ ଏବେ ମଜ୍ଜି ।
ଏବେ ମୋର ମାୟାକୁ ଦେଖ କୁନ୍ତୀବହି
ମୁହୂର୍ତ୍ତକ ମଧ୍ୟେ ମୁଁ ସେ ବ୍ୟୂହ ଭାଙ୍ଗୁଛି ।
କେବଳ କଥାଟିଏ କହୁଛି ତୁମ୍ଭଙ୍କୁ
ମୋ କଥା ମନେକରି ଯୁଝିବ କୁରୁଙ୍କୁ ।
ଯେତେବେଳେ ମୋହର ମାୟାରେ ଅନ୍ଧାର
ଗ୍ରାସିଦେବ ସୂର୍ଯ୍ୟଦେବତାଙ୍କର କର ।
ତାହା ଦେଖି କୁରୁଙ୍କ ତୁଲେ ଜୟଦ୍ରଥ
ବଞ୍ଚିଲାଇଁ ବୋଲିଣ ହୋଇବ ଉସତ ।
ତୁମ୍ଭର ମରଣକୁ ଦେଖିବାର ପାଇଁ
ବ୍ୟୂହ ଛାଡ଼ି ସଙ୍ଗେ ଆସିବ ତୁମ୍ଭଠାକୁ ଧାଇଁ ।
ଜୟଦ୍ରଥ ଆସିବା ଦେଖି ଯୋଦ୍ଧାମନେ
ବ୍ୟୂହ ଛାଡ଼ି ସଙ୍ଗେ ଆସିବେ ହୃଷ୍ଟମନେ ।
ସେ ସମୟେ ତୁମ୍ଭେ ଦେଖାଇ ଲଘୁହାତ
ମାଥ କାଟି ତାର କରିବ ଧୂଳିସାତ ।
ଏହା କହି କୃଷ୍ଣ ମାୟାରେ ସୂର୍ଯ୍ୟଙ୍କର
କିରଣକୁ ଲୁପ୍ତ କଲେ ଆହେ ନରବର ।

ଅସ୍ତଗିରି -ଶିଖରେ ଆଶ୍ରୟେ ଆଦିତ୍ୟ
ଥିଲେ ତ ଶୁଣି କୃଷ୍ଣ ମାୟାରେ ଆବୃତ ।
ହେଲେ, ଏ ସକାଶୁ ଯୋଦ୍ଧାଏ ହୃଷ୍ଟ ହୋଇ
ବଞ୍ଚିଲୁ ବୋଲି ଦେଲେ ଛାତିକି ଫୁଲାଇ ।
ଜୟଦ୍ରଥ ମଧ୍ୟ ଯେ ବଞ୍ଚିଲି ଭାବିଲେ
ସୂର୍ଯ୍ୟାସ୍ତ ଦେଖିଣ ମରିବା ଦୂର କଲେ ।
ଏବେ ତ ଅରଜୁନ ମରଣ ବରଣ -
କରିଣ ଇଚ୍ଛାସୁଖେ ହରାଇବ ପ୍ରାଣ ।
ଏରୂପେ ଜୟଦ୍ରଥ ତୁଲରେ ଯୋଦ୍ଧାଏ
ଅର୍ଜୁନ ମରଣ ନିଶ୍ଚୟ କରି ରାୟେ ।
କି ରୂପରେ ଅର୍ଜ୍ଜୁନ ମରିବ ବିଚାରି
ଯୁଦ୍ଧ ଛାଡ଼ି ରହିଲେ ସବୁ ଦଣ୍ଡଧାରୀ ।
କହିଲେ ପୂର୍ବେ ଯା ପାର୍ଥଙ୍କୁ ଅଚ୍ୟୁତ
ଦଇବ ଯୋଗେ ହେଲା ସେ କଥା ବ୍ୟକତ ।
ଯାହାଙ୍କର ମାୟା ଦେବତାଙ୍କୁ ଦୁର୍ଲ୍ଲଭ
ଏହାଙ୍କୁ କିରୂପେ.ସେ ହୋଇବ ସୁଲଭ ।
ଏରୂପେ ମାୟାକୁ ପ୍ରକାଶ କରି ହରି
ଜୟଦ୍ରଥ ମରିବା କଥାକୁ ବିଚାରି ।
ଅର୍ଜ୍ଜୁନଙ୍କୁ ବୋଇଲେ ଦେଖ ଜୟଦ୍ରଥ
ସୂର୍ଯ୍ୟ ଅସ୍ତ ଦେଖିଣ ହୋଇ ଆନନ୍ଦିତ ।
ତୁମ୍ଭ ମରଣକୁ ରହିଛି ଟାକିକରି
କାଟ ଏ ପାପୀ-ଶିର ବିଳମ୍ବ ନ କରି ।
ମରିବାର କାଳତ ହୋଇଛି ଏହାର
ମୁଣ୍ଡ କାଟି ପ୍ରତିଜ୍ଞା ତୁମ୍ଭ ପୂର୍ଣ୍ଣକର ।
ମୋହର ଯେଉଁ ମାୟା ସୂର୍ଯ୍ୟଙ୍କୁ ଆଚ୍ଛନ୍ନ
କରି କଲା କୁରୁଙ୍କ ଆନନ୍ଦ ବର୍ଦ୍ଧନ ।
ଏବେ ସେ ମାୟାକୁ ମୁଁ କରୁଛି ବିନାଶ
ଦେଖ ହେ ଅରଜୁନ ବୀରଙ୍କର ଈଶ ।
ସୂର୍ଯ୍ୟଦେବ ଅସ୍ତଦଶାକୁ ଭଜିନାହିଁ
କେବଳ ମୋର ମାୟା ଥିଲା ତ ଘୋଡ଼ାଇ ।
ଏବେ ଦେଖ ହେ ପାର୍ଥ ଦିବସ -ନାୟକ
ଗାଣ୍ଡୀବ ଧରି କାଟ ଜୟଦ୍ରଥ -ବେକ ।
ମାୟାଧର ଅନ୍ତର କରନ୍ତେ ସ୍ୱମାୟା
ଅସ୍ତଗିରି ଶିଖେ ଦିଶିଲା ରବି -କାୟା ।
ତାହା ଦେଖି ପାର୍ଥ କୃଷ୍ଣଙ୍କ ବଚନକୁ
ସୁମରି ଭିଡ଼ିଣ ଧଇଲେ ଗାଣ୍ଡୀବକୁ ।
ଦିବ୍ୟ ମନ୍ତ୍ରକୁ ମନ୍ତ୍ରି ଦିବ୍ୟ ଶରଚୟ
ଗାଣ୍ଡୀବରେ ଯୋଚିଲେ ବୀର ଧନଞ୍ଜୟ ।
କର୍ଣ୍ଣଙ୍କୁ ପଚାଶ ଯେ ବୃଷ୍ଟିକୁ କୋଡ଼ିଏ
ଶଲ୍ୟ ଦୁର୍ଯ୍ୟୋଧନେ ବିନ୍ଧିଲେ ବାର ରାୟେ ।
ବୃଷସେନ ଦେହକୁ ଆଠକାଣ୍ଡ ବିନ୍ଧି
ଦେଲେ ଜୟଦ୍ରଥେ ଷାଠିଏ କାଣ୍ଡ ରୁନ୍ଧି ।
ଜୟଦ୍ରଥ ପାଖରେ ଯେତେ ଯୋଦ୍ଧା ଥିଲେ
ତୁମ୍ଭ ହିତେ ପାର୍ଥଙ୍କୁ ଯାଇ ସେ ଯୁଝିଲେ ।
ପ୍ରଳୟକାଳ ସୂର୍ଯ୍ୟ ପ୍ରାୟେ ଅର୍ଜ୍ଜୁନଙ୍କ
ତେଜ ପ୍ରକାଶିଲେ ହେ ଅବନୀ ନାୟକ ।
ମୁହୂର୍ତ୍ତକ ମଧ୍ୟରେ ସେ ଯୁଦ୍ଧ-ପ୍ରାଙ୍ଗଣ
ଶରଧାରା ବରଷି କରି ଦେଲେ ପୂର୍ଣ୍ଣ ।
ଅର୍ଜ୍ଜୁନ ଶରେ ତୁମ୍ଭ ସେନା ପୀଡ଼ା ପାଇ
ଛାଡ଼ି ଜୟଦ୍ରଥକୁ ଗଲେ ହେ ପଳାଇ ।
ଯେରୂପେ ବାଘକୁ ଦେଖିଣ ଜନ୍ତୁଗଣ
ପଳାନ୍ତି, ସେରୂପେ ଭାଜିଲେ ତୁମ୍ଭ ସୈନ୍ୟ ।
ସେ କାଳେ ପରାକ୍ରମ କଲେ ଯା ଅର୍ଜ୍ଜୁନ
ଦେଖିବା ଥାଉ, ଶୁଣି ନାହିଁ ଆମ୍ଭ କାନ ।
ଗଜ ଅଶ୍ୱ ସହିତେ ଆରୋହୀଙ୍କ ମୁଣ୍ଡ
ଏକାବେଳକେ କାଟି କଲେ ଖଣ୍ଡ ଖଣ୍ଡ ।
ତୁମ୍ଭର ଯେତେ ତହିଁ ଯୋଦ୍ଧାମାନେ ଥିଲେ
ପାର୍ଥ-ଶରେ କେ ମରି କେହୁ ପଳାଇଲେ ।
ଏକେ ତ ଶର-ଅନ୍ଧକାର ଥିଲା ଘୋଟି
ପୁଣି ଧୂଳି ଉଡ଼ାଇ ବୁଜାଇଲା ଦୃଷ୍ଟି ।
ଏହି ସକାଶରୁ କେ କାହାକୁ ଜାଣି-
ନ ପାରି ଯୁଦ୍ଧ କରି ଶୋଇଲେ ଅବନୀ ।
ଏହିରୂପେ ତୁମ୍ଭର ଚତୁରଙ୍ଗ ସେନା-
ମାନଙ୍କୁ ଦଳି ପାର୍ଥ ହୋଇ କୋପମନା ।
କର୍ଣ୍ଣ ଅଶ୍ୱତ୍ଥାମା ଯେ କୃପାଚାର୍ଯ୍ୟ ଶଲ୍ୟ
ବୃଷସେନ ଦୁର୍ଯ୍ୟୋଧନ ଯେ ଥିଲେ ଭଲ ।
ତାହାଙ୍କୁ ପାଥିଁ କାଣ୍ଡ ଚାଣ୍ଡରେ ଆଚ୍ଛନ୍ନ
କରିବାରୁ ସେମାନେ ଭୟେ ହେଲେ ଛନ୍ନ ।
ଯେଉଁଆଡ଼େ ଦେଖିଲେ ସେ ଆଡ଼େ ଅର୍ଜ୍ଜୁନ-
ବିନା ତ ଆନେ ନ ଦେଖିଲା ହେ ନୟନ ।
ଅର୍ଜ୍ଜୁନଙ୍କ ଧନୁରୁ ଶର କୋଟି କୋଟି
ବାହାରି ଦଉଡ଼ିଲେ ଚାରିଦିଗ ଘୋଟି ।
ଆଶୀବିଷ ସଦୃଶ ଶରକୁ ପ୍ରକାଶି
ପୁଣି ତୁମ୍ଭ ବଳ ଘଡ଼ିକେ ଦେଲେ ଧ୍ୱଂସି ।
ଏ ବାହାରେ ଯେ କର୍ଣ୍ଣ ବୃଷସେନ ଧନୁ
କାଟିଣ ପକାଇଲେ ଇନ୍ଦ୍ରଙ୍କର ସୂନୁ ।
ଭଲ୍ଲ ଶରେ ଶଲ୍ୟଙ୍କ ସାରଥିର ମୁଣ୍ଡ
କାଟି ଗଡ଼ାଇଣ ଦେଲେ ଯେ ରଣ-ଦାଣ୍ଡେ ।
କୃପ ଅଶ୍ୱତ୍ଥାମା ଶରେ ଦେଇ ପୀଡ଼ା
ଜୟଦ୍ରଥ ଆଗରେ ହେଲେ ଯାଇ ଛିଡ଼ା ।

ତୁମ୍ଭ ଯୋଦ୍ଧାମାନେ ନୟନେ ଦେଖୁଥିଲେ
ପାର୍ଥ ଯୁଦ୍ଧେ କେହି ନିବାରି ନ ପାରିଲେ ।
ଶୂଳହସ୍ତ ହୋଇ ଶ୍ମଶାନେ ଉମା-ଧବ
ଖେଳିଲା ପରି ତାଙ୍କୁ ମଣିଲେ ମାନବ ।
ବଡ଼ ବଡ଼ ରଥୀମାନଙ୍କ ପ୍ରାଣହନ୍ତା
ହୋଇଲେ ସେକାଳେ ସୁଭଦ୍ରା ଯାର କାନ୍ତା ।
ତୁମ୍ଭ ସୈନ୍ୟ-ଚନ୍ଦ୍ରକୁ ପାର୍ଥ-ମହାବାହୁ
ଗରାସିଲେ ଏକା ବରଗି ଶର-ରାହୁ ।
ସନ୍ଧିବା ବିନ୍ଧିବାରେ ଭାରତିରୁ କାଣ୍ଡ
କାଢ଼ିବାରେ ଜଣା ନ ଗଲା ହସ୍ତଚାଣ୍ଡ ।
ଅଲାଳଚକ୍ର ପରି ଦିଶିଲା ସେ ଧନୁ
କମ୍ପାଇଲା ଅମିତ୍ରମାନଙ୍କର ତନୁ ।
କୃଷ୍ଣ ବୋଇଲେ ଆହେ ବୀର ଅରଜୁନ
ଆଗେ ତ ଦେଖୁଅଛ ସିନ୍ଧୁ ନରରାଣ ।
ଏ ପାପ ଜୟଦ୍ରଥ ନୃପ ମୁଣ୍ଡ କାଟି
କର ହେ କୁରୁଙ୍କର ଜୟ-ଧନ ଲୁଟି ।
ଆହୁରି କଥାଟିଏ ଅଛି ହେ ଅର୍ଜୁନ
କହିବା ତାହା ଶୁଣ ଦେଇ କରି ମନ ।
ବହୁତକାଳେ ବୃଦ୍ଧକ୍ଷତ୍ର ନୃପଙ୍କର
ଏ ଦୁଷ୍ଟ ଜୟଦ୍ରଥ ହୋଇଲେ କୁମର ।
ସେହିକାଳେ ଆକାଶୁଁ ଶୁଭିଲା ଏ ଗିର
ଏ କୁମର ତୁମ୍ଭର ହେବେ ମହାଶୂର ।
ବଳରେ ହେବେ ପରଙ୍କର ଗର୍ବଗଞ୍ଜା
ମିତ୍ରମାନଙ୍କର ହୋଇବେ ମନରଞ୍ଜା ।
ଧରନ୍ତେ କାଳ ବାଳ ଶତ୍ରୁ ତୁଲେ ଯୁଦ୍ଧ
କରୁଥିବେ ତୁମ୍ଭ ଏ ସୁତ ହୋଇ କ୍ରୋଧ ।
ସେକାଳେ ଏହାଙ୍କ ମୁଣ୍ଡକୁ ଶତ୍ରୁ ହେଲେ
କାଟିବ ଲେଖା ହୋଇଅଛି ଏ କପାଳେ ।
ଏହା ଶୁଣିଣ ବୃଦ୍ଧକ୍ଷତ୍ର ସୁବିସ୍ମୟ
ହୋଇଣ କମ୍ପାଇଲେ ଭୟରେ ହୃଦୟ ।
ଜ୍ଞାତି ଲୋକମାନଙ୍କୁ ଡକାଇ ଆଣିଲେ
ଆକାଶରୁ ଶୁଣିବା ବଚନ କହିଲେ ।
ପୁଣି ଧ୍ୟାନ କରି ବସନ୍ତେ ନରବର
ହୋଇଲା ହେ ତାହାଙ୍କୁ ଏ କଥା ଗୋଚର ।
କାଟିଲେହେଁ ମୁଣ୍ଡ ତଳେ ଯେ ପକାଇବ
ତା ମୁଣ୍ଡ ଶଏଖଣ୍ଡ ହୋଇ ଫାଟିଯିବ ।
ଏହି ବଳେ ପୁତ୍ରକୁ ରାଜ୍ୟେ ରାଜା କରି
ବୃଦ୍ଧକ୍ଷତ୍ର ଯେ ଗଲେ ତପୀରୂପ ଧରି ।
ସମନ୍ତପଞ୍ଚକ ବାହାରେ ବସି ତପ
ଆଜି କରୁଛନ୍ତିଟି ବୃଦ୍ଧକ୍ଷତ୍ର ନୃପ ।

ଏହା ଜାଣି ତୁମ୍ଭଙ୍କୁ କହୁଛି କିରୀଟୀ
ଜୟଦ୍ରଥ ମୁଣ୍ଡ ତ ପକାଇବ କାଟି ।
ତା ବାପୁ ତ ପଦ୍ମ-ଆସନେ ବସି ତପ
କରୁଅଛି, ତୁମ୍ଭେ ହେ ନ କରି ସନ୍ତାପ ।
ବୃଦ୍ଧକ୍ଷତ୍ର କୋଳରେ ଜୟଦ୍ରଥ ମୁଣ୍ଡ
ପକାଇ ଦେବ ନେଇ ବିନ୍ଧି ବିନ୍ଧି କାଣ୍ଡ ।
ଯେବେ ବା ଜୟଦ୍ରଥ ମୁଣ୍ଡକୁ ପକାଇ
ତଳେ ଦେବ ତୁମ୍ଭେ ମରିବ କହୁଥାଇଁ ।
ଦିବ୍ୟ ଅସ୍ତ୍ର ଆଶ୍ରୟକରି ଅରଜୁନ
କାଟି ମୁଣ୍ଡ କର ମୋ କହିବା ବଚନ ।
ତପସ୍ୟାରେ ତ ବୃଦ୍ଧକ୍ଷତ୍ର ମାତି ଅଛି
ସେ ନ ଜାଣୁ ମାର ମୁଁ ତୁମ୍ଭଙ୍କୁ କହୁଛି ।
ଜାଣିଲେ ବୃଦ୍ଧକ୍ଷତ୍ର ଜୟଦ୍ରଥ ମାଥ
ତା କୋଳେ ପକାଇ ନ ପାର ତୁମ୍ଭେ ପାର୍ଥ ।
ତିନିଲୋକ ଯାକରେ ଯେତେ କଥା ଅଛି
ସେ କଥା ତ ତୁମ୍ଭେ ଜାଣିଛ କୁନ୍ତୀବସ୍ଥୀ ।
ଅସାଧ ହୋଇ ତୁମ୍ଭ ହାତେ କଥାଟିଏ
ନାହିଁ ଆମ୍ଭେ ଜାଣିଛୁ ପାର୍ଥ ବୀରରାୟେ ।
ଏହା ଶୁଣି ପାର୍ଥ ସୃକ୍କଣି ଦୁଇ ଚାଟି
ଦୃଢ଼ କର ଭିଡ଼ି ଧଇଲେ ଧନୁମୁଷ୍ଟି ।
ସବୁ ଭାର ସହି ପାରଇ ଯେଉଁ ଶର
କାଢ଼ିଲେ ତା ତୂଣୀରୁ ଅରଜୁନ ବୀର ।
ପୂର୍ବେ ସେ ଗନ୍ଧମାଲ୍ୟେ ହୋଇଛି ଅର୍ଚ୍ଚିତ
ତେଜରେ କରୁଅଛି ସୂର୍ଯ୍ୟଙ୍କୁ ଲୁପତ ।
ସେ ଶରକୁ ଦିବ୍ୟ ମନ୍ତ୍ରରେ ମନ୍ତ୍ରି ପାର୍ଥ
ଗୁଣେ ଯୋଚିଣ ବିନ୍ଧିଲେ ଗାଣ୍ଡୀବ ହାତ ।
ଅର୍ଜୁନଙ୍କ ହାତରୁ ସେ ଶର ସଞ୍ଚାଣ
ଫିଟି ଜୟଦ୍ରଥ-ଆମିଷ ଭକ୍ଷେ ମନ-
ଦେଇ ଆକାଶରେ କରନ୍ତେ ବେଗେ ଗତି
ଥୋଇଲା ମହାଭୟ କୁରୁଙ୍କର ମତି ।
କିରୀଟ କୁଣ୍ଡଳଙ୍କ ତୁଲେ ଜୟଦ୍ରଥ
ରାଜାଙ୍କର ଯେ କାଟି ପକାଇଲା ମାଥ ।
ଦୁହୃଦମାନଙ୍କ ମୋଦକୁ ନାଶ କରି
ହୋଇଲା ସୁହୃଦଙ୍କ ସେ ଆନନ୍ଦକାରୀ ।
ଅର୍ଜୁନ ସେ ସମୟେ ସେ ମୁଣ୍ଡକୁ ଶର
ପ୍ରହାରନ୍ତେ ଗଲା ଗର୍ଜନ କରି ଘୋର ।
ଜୟଦ୍ରଥ ରାଜାଙ୍କ ମୁଣ୍ଡକୁ ଉଡ଼ାଇ
ନେଲେ ସେ ଶରେ ହେ ହସ୍ତିନା ନରସାଇଁ ।
କଦମ୍ବଫୁଲ ପରି ଦିଶିଲା ସେ ମୁଣ୍ଡ
କ୍ଷଣକମଧ୍ୟେ ଡେଇଁ ଗଲା ଯୁଦ୍ଧଦାଣ୍ଡ ।

ବୃଦ୍ଧକ୍ଷତ୍ର ବସି ତ ସନ୍ଧ୍ୟା କରୁଥିଲେ
ତାଙ୍କ କୋଡ଼େ ସେ ମୁଣ୍ଡ ପଡ଼ିଲାଟି ବଳେ ।
କି ପଡ଼ିଲା ବୋଲି ଉଠନ୍ତେ ତପୀବର
ପଡ଼ିଲା ତଳେ ମୁଣ୍ଡ ଜୟଦ୍ରଥଙ୍କର ।
ପଡ଼ିବାକ୍ଷଣି ତଳେ ଜୟଦ୍ରଥ ମୁଣ୍ଡ
ତା ବାବୁ ମୁଣ୍ଡ ଫାଟି ହେଲା ଶଏଖଣ୍ଡ ।
ଏହା ଦେଖିଣ ସବୁ ପ୍ରାଣୀଏ ଆଶ୍ଚର୍ଯ୍ୟ
ପାଇଲେ ଜାଣ ଧୃତରାଷ୍ଟ୍ର ମହାରାଜ ।
କୃଷ୍ଣ ଅରଜୁନଙ୍କୁ ବହୁତ ପ୍ରଶଂସା
କଲେ ବଚନରେ କରିଣ ମନ୍ଦହସା ।
ଜୟଦ୍ରଥ ମରଣ ଦେଖି ତୁମ୍ଭ ସୁତେ
କାନ୍ଦିଲେ ସକସକେ ବସି ଦୁଃଖଚିତ୍ତେ ।
ଯୁଧିଷ୍ଠିର ରାଜା ବାରତା ପାଇବାକୁ
ଗରଜିଲେ ଭୀମ ଦେଖାଇ ବିକ୍ରମକୁ ।
ଭୀମଙ୍କର ଗର୍ଜନ ଶୁଣି ଯୁଧିଷ୍ଠିର
ମନେ କରିଲେ ମଲା ଜୟଦ୍ରଥ ବୀର ।
ମୃଦଙ୍ଗ ଭେରୀ ଶଙ୍ଖ ପଣବ ବାଜିଲେ
ମାଇଲେ ପାର୍ଥ ଜୟଦ୍ରଥଙ୍କୁ କହିଲେ ।
ଗହଣ ଲଗାଇଣ କରିବାକୁ ରଣ
ଦ୍ରୋଣ ତୁଲେ ବାହାରିଲେ ନରରାଣ ।
ସୋମକ ପାଞ୍ଚାଳେ ଯେ ଦ୍ରୋଣଙ୍କର ତୁଲେ
ଅତିଶୟେ ସେ ଘୋର ଯୁଦ୍ଧେ ପ୍ରବର୍ତ୍ତିଲେ ।
ଦ୍ରୋଣଙ୍କ ପ୍ରାଣ ନେବା ପାଇଁ ପାଣ୍ଡୁରଥୀ-
ଯାକ ଯୁଦ୍ଧ କଲେ ନୋହିଣ କିଛି ବ୍ୟଥୀ ।
ମନେ କଲେ ପାର୍ଥ ମାଇଲେ ଜୟଦ୍ରଥ
ଆମ୍ଭେ ଆଜ ଦ୍ରୋଣଙ୍କୁ କରିବା ଅନାଥ ।
ଜୟଦ୍ରଥ ରାଜାଙ୍କୁ ସଂହାରି ଅର୍ଜ୍ଜୁନ
ଆମ୍ଭ ରଥୀମାନଙ୍କୁ କଲେ ଆୟୋଧନ ।
କରିବା ପ୍ରତିଜ୍ଞାକୁ ସଫଳ ତ କଲେ
ଫୁଲାଇ ହୃଦୟକୁ ନିର୍ଭୟେ ଯୁଝିଲେ ।
ଏହା ଶୁଣିଣ ଧୃତରାଷ୍ଟ୍ର ନରମଣି
ଫୁଟିଗଲା ଆଖିରେ କରିଣ ଚାହାଣୀ ।
ସଞ୍ଜୟଙ୍କୁ ବୋଇଲେ ରଥୀ-ମାଥେ ପାର୍ଥ
ପାଦ ଦେଇଣ ମାଇଲେ ତ ଜୟଦ୍ରଥ ।
ପୁଅଙ୍କର ମୋହର ସେନାମାନେ କିସ
କଲେ ତାହା ସଞ୍ଜୟ କର ତା ପ୍ରକାଶ ।
ସଞ୍ଜୟ ବୋଇଲେ ହେ ସିନ୍ଧୁନରପତି
ମରନ୍ତେ କୃପାଚାର୍ଯ୍ୟ ହୋଇ କୋପମତି ।
ନିଜ ଚାପରେ ଧାପେ ରୋପକୁ ସନ୍ଧିଲେ
ଅର୍ଜ୍ଜୁନ ଉପରକୁ ଉଦ୍ଦେଶି ବିନ୍ଧିଲେ ।

ଅଶ୍ୱତ୍ଥାମା ମଧ୍ୟ ଅରଜୁନଙ୍କ ତୁଲେ
ଯୁଝିବାକୁ ରାଜନ ରଥ ବୁହାଇଲେ ।
କୃପ ଅଶ୍ୱତ୍ଥାମା ଅର୍ଜ୍ଜୁନ ଦୁଇପାଖେ
ରହି ତୀକ୍ଷ୍ଣ ବିଶିଖ ବିନ୍ଧିଲେ ସେ ସୁଖେ ।
ସେହି ଦୁହେଁ ତ ରଥୀମାନଙ୍କରେ ବର
ଏଣୁ କଲେ ସେ ଅରଜୁନଙ୍କୁ ସମର ।
ସେ ଦୁହିଙ୍କ ଶରେ ଅର୍ଜ୍ଜୁନ ପୀଡ଼ା ପାଇ
କି କରିବା ବୋଲି ଭାବିଲେ ନରସାଇଁ ।
ଗୁରୁ ଗୁରୁପୁତ୍ର ତ କରୁଛନ୍ତି ରଣ
କି ରୂପରେ ଘେନିବି ଏହାଙ୍କ ପରାଣ ।
ଏହା ଭାବି ପାର୍ଥ ସେ ଦୁହିଙ୍କ ଅସ୍ତ୍ରକୁ
ଅସ୍ତ୍ରେ ବାଟି ପୁଣି ବିନ୍ଧିଲେ ବିଶିଖକୁ ।
ଦୟା କରି ପାର୍ଥ ବିନ୍ଧିଲେ ହେଲେ ଶର
ବଢ଼ିଲା ଯୁଦ୍ଧରେ ଆର୍ତ୍ତ ସେ ଦୁହିଙ୍କର ।
ଅର୍ଜ୍ଜୁନ ଶରେ ପୀଡ଼ା ପାଇ ଶାରଦ୍ୱତ
ପଡ଼ିଲେ ନିଜ ରଥେ ହୋଇଣ ମୂର୍ଚ୍ଛିତ ।
କୃପ ମଲେ ବୋଲିଣ ସାରଥି ବିଚାରି
ବାହିନେଲା ରଥ ଯୁଦ୍ଧରୁ ଆଡ଼କରି ।
କୃପଙ୍କ ମୋହ ଦଶା ଦେଖି ଅଶ୍ୱତ୍ଥାମା
ଛାଡ଼ିଦେଲେ ଯୁଦ୍ଧକୁ ଛାଡ଼ିଣ ଗାରିମା ।
ଶରଦ୍ୱତଙ୍କର ମୋହକୁ ପାର୍ଥ ଦେଖି
କହିଲେ ଏ ବାଣୀ ନୀରକୁ ନେତ୍ରେ ରଖି ।
ଦୁର୍ଯ୍ୟୋଧନ ଜନମ କାଳରେ ବିଦୁର
କହିଥିଲେ ଯେ ବଡ଼ବାପାଙ୍କୁ ଆମ୍ଭର ।
ଏହି ପୁଅକୁ ତୁମ୍ଭେ ଜୀବନେ ନ ରଖି
ମାରିବ ଯେବେ ତେବେ ହେବ ମହାସୁଖୀ ।
ଏତେକାଳରେ ଆସି ଫଳିଲା ସେ କଥା
ସୁଯୋଧନ ଯୋଗୁଁ ହେଲା ତ ଜାତ ବ୍ୟଥା ।
ଭୀଷ୍ମଙ୍କ ପରା ଲୋକ ଦୁର୍ଯ୍ୟୋଧନ ପାଇଁ
ଶୋଇଲେ ଶର-ଶଯ୍ୟା କରି ଯଦୁସାଇଁ ।
କ୍ଷତ୍ରିୟମାନଙ୍କର ବଳ ପଉରୁଷ
କଥାଟିରେ କାର୍ଯ୍ୟ ହେ ନାହିଁ ଜାଣ ଲେଶ ।
ଦେଖ ଆହେ କୃଷ୍ଣ ମୋହର ମୂଢ଼ପଣେ
କୃପ ପରା ଗୁରୁଙ୍କ ମାଇଲି ମୁଁ ରଣେ ।
ଦ୍ୱିଜକୁଳରେ ହୋଇଅଛନ୍ତି ସେ ଜାତ
ବଳିଲା ଯା ତାଙ୍କ ବଧରେ ମୋର ଚିତ୍ତ ।
କୃପାକରି କୃପଙ୍କୁ ବିନ୍ଧିଲି ମୁଁ ଶର
ସମ୍ଭାଳି ନ ପାରିଲେ, ବୟସ ଅପାର ।
ଅଭିମନ୍ୟୁ ମୃତ୍ୟୁ ପ୍ରତିକି କୃପଙ୍କର
ମୋହ ବଢ଼ାଉଅଛି ହୃଦରେ ମୋହର ।

ଦେଖ ରଥେ ମଥା ଧରିଣ କୃପ ରଥୀ
ମୋ କାଣ୍ଡଘାତେ ବସି ହେଉଛନ୍ତି ବ୍ୟଥୀ ।
ବିଦ୍ୟା ପଢ଼ି ଗୁରୁଙ୍କୁ ଦକ୍ଷିଣା ଯେ ଦିଏ
ପୂଜନ୍ତି ତାହାଙ୍କୁଟି ସ୍ୱର୍ଗେ ଦେବରାୟେ ।
ଗୁରୁଙ୍କଠାରୁ ବିଦ୍ୟା ପଢ଼ି ଯେ ଗୁରୁଙ୍କୁ
ମାରଇ କରେ ସେ ନରକେ ନିବାସକୁ ।
କୃପଙ୍କୁ ଯାହା କୃଷ୍ଣ, କରାଇଲି ମୋହ
ଜାଣୁଅଛି ନରକେ ପଡ଼ିବ ଏ ଦେହ ।
ଅସ୍ତ୍ର ଶିଖାଇବା କାଳରେ ମୋତେ କହି
ଅଛନ୍ତି କୃପ, ଗୁରୁ-ଦ୍ରୋହୀ ହେବ କେହି ।
ସେ କଥା ପାସୋରି ମୁଁ ମନେ ମହାରଥୀ
ହୋଇ ରଚିଲି ମୁହିଁ କୃପଙ୍କର ବ୍ୟଥା ।
ଏବେ କୃପଙ୍କର ପାଦକୁ ନମସ୍କାର
କରୁଅଛି କୃଷ୍ଣ ହେ ଜାଣ ଶଏ ବାର ।
ଧିକ ଧିକ ହେଉ ମୋହର ଜୀବନକୁ
ଆଉ କିସ ଗୁଡ଼ାଏ କହିବି ତୁମ୍ଭଙ୍କୁ ।
କର୍ଣ୍ଣ ଦେଖିଣ ଜୟଦ୍ରଥଙ୍କ ମରଣ
ଆସିଲେ ପାର୍ଥଠାକୁ କରିବାକୁ ରଣ ।
ଯୁଯୁଧାନ ଉତ୍ତମଓଜା ଯୁଧାମନ୍ୟୁ
କର୍ଣ୍ଣଙ୍କୁ ଦେଖି କ୍ରୋଧେ କମ୍ପାଇଲେ ତନୁ ।
କର୍ଣ୍ଣ ଆସିବାର ଦେଖିଣ ଅରଜୁନ
ବୋଇଲେ ଶୁଣ ଆହେ ଜଗତ-ପାବନ ।
ଅଧିରଥ-ସୁତ ଯେ କର୍ଣ୍ଣ ଅର୍ଦ୍ଧରଥୀ
ଧାଇଁଛନ୍ତି, ଦେବେ ସାତ୍ୟକି ବଳ ମଥି ।
କାଟିଛନ୍ତି ସାତ୍ୟକି ଭୂରିଶ୍ରବା ଶିର
ଶୁଝାଇବେ ତାହାଟି ଚିତ୍ତ କର୍ଣ୍ଣଙ୍କର ।
କର୍ଣ୍ଣଙ୍କ ସମୀପକୁ ବାହା ମୋର ରଥ
ପକାଇ ଶର-ପଥେ କାଟିବି ତା ମାଥ ।
ନୋହିଲେ ସାତ୍ୟକିଙ୍କି କର୍ଣ୍ଣ ମହାବୀର
ରଣରେ କରି ଦେଇ ଯିବଟି ସଂହାର ।
କୃଷ୍ଣ ବୋଇଲେ ହେ ଅର୍ଜ୍ଜୁନ ତୁମ୍ଭେ ବାଇ-
ହେଲା ପରି କଥା କହୁଛ କାହିଁପାଇଁ ।
କର୍ଣ୍ଣଙ୍କୁ ମାରିପାରେ ସାତ୍ୟକିଙ୍କ ବାହା
ହୋଇଛନ୍ତି ଦ୍ରୌପଦୀ ଦୁଇଭାଇ ସାହା ।
ବର୍ତ୍ତମାନ କର୍ଣ୍ଣର ତୁମ୍ଭର ସମର
ହୋଇବାର ମନକୁ ନ ପାଏ ମୋହର ।
ଇନ୍ଦ୍ର ଦେବା ଶକତି କର୍ଣ୍ଣ ହାତେ ଅଛି
ମାରିବ ଯୁଝିଲେ ତୁମ୍ଭଙ୍କୁ କୁନ୍ତୀବହି ।
ସାତ୍ୟକି ତୁଲେ କର୍ଣ୍ଣ କରନ୍ତୁଟି ରଣ
ନିବର୍ତ୍ତି ରହ କହୁଅଛି ମୁଁ ଆପଣ ।

ଯେଉଁକାଳେ କର୍ଣ୍ଣଙ୍କୁ ମାରିବଟି ତୁମ୍ଭେ
ସେକାଳ ଜାଣି ତା କହିବୁ ଜାଣ ଆମ୍ଭେ ।

•

## ସାତ୍ୟକି ଓ କର୍ଣ୍ଣଙ୍କ ଯୁଦ୍ଧ

ଧୃତରାଷ୍ଟ୍ର ବୋଇଲେ ସାତ୍ୟକି ବିରଥ
ହୋଇଥିଲେ କହ ସେ ଚଢ଼ି କେଉଁ ରଥ ।
କର୍ଣ୍ଣଙ୍କର ତୁଲରେ ଯୁଦ୍ଧ ଆରମ୍ଭିଲେ
ଏ କଥା କିଛି ଜାଣିପାରୁ ନାହିଁ ଭଲେ ।
ଯୁଧାମନ୍ୟୁ ଉତ୍ତମଓଜା ଦୁହିଙ୍କର
ଭାଜିଛି ରଥ ତ କହିଛ ମନ୍ତ୍ରୀବର ।
ସେ ଦୁହେଁ କିସ ଚଢ଼ିକରି ରଣରଙ୍ଗେ
ପ୍ରବର୍ତ୍ତିଲେ କହ ହେ ମନ୍ତ୍ରୀ, କର୍ଣ୍ଣ ସଙ୍ଗେ ।
ସଞ୍ଜୟ ବୋଇଲେ ହେ ତୁମ୍ଭ ଦୁଷ୍ଟେଷ୍ଟାରୁ
ହୋଇଛି ଯାହା ଶୁଣ ଦୁର୍ଯ୍ୟୋଧନ-ଗୁରୁ ।
ରଣେ ଭୂରିଶ୍ରବାଙ୍କୁ ହାରିବେ ଯୁଯୁଧାନ
ବୋଇଲେ ତ ପୂର୍ବୁଁ ଜାଣିଲେ ଭଗବାନ ।
ଏହି ସକାଶରୁ କହିଣ ଦାରୁକଙ୍କୁ
କରିଥିଲେ ତିଆରି ଆପଣା ରଥକୁ ।
ଦେବ ଯକ୍ଷ ଉରଗ କିନ୍ନର ନରରେ
ଅଧୃଷ୍ୟ କୃଷ୍ଣାର୍ଜ୍ଜୁନ ସମସ୍ତ ପ୍ରକାରେ ।
ସେ ଦୁହିଙ୍କି ଜୟଦ୍ରଥଙ୍କ ବଧ କିସ
ତା ବଡ଼ କରି ମନେ ନ ଘେନ ନରେଶ ।
କର୍ଣ୍ଣ ଯୁଯୁଧାନଙ୍କୁ ଯୁଝି ଆସିବାର
ଦେଖି ଶଙ୍ଖ ଋଷଭ ସ୍ୱରେ ଚକ୍ରଧର ।
ବଜାଅନ୍ତେ ଦାରୁକ କୃଷ୍ଣଙ୍କ ଛାମୁରେ
ରଥକୁ ଠିଆ କଲେ ଅତ୍ୟନ୍ତ ବେଗରେ ।
ପୂର୍ବରୁ କୃଷ୍ଣ କହିଥିଲେ ଦାରୁକଙ୍କୁ
ଋଷଭସ୍ୱରେ ମୁହିଁ ଫୁଙ୍କିଲେ ଶଙ୍ଖକୁ ।
ମୋର ରଥକୁ ମୋତେ ନେଇ ତୁମ୍ଭେ ଦେବ
ମାରିବି ତହିଁ ବସି ସବୁ ନରଦେବ ।
ଏହି ସକାଶରୁ ଋଷଭସ୍ୱର ବାରି
ଦାରୁକ ରଥ ଘେନିଗଲେ ଦଣ୍ଡଧାରୀ ।
ଗରୁଡ଼ଧ୍ୱଜ ରଥବରେ କୃଷ୍ଣ ଦେଖି
ସାତ୍ୟକିଙ୍କି ବସ ବୋଇଲେ ହୋଇ ସୁଖୀ ।
କୃଷ୍ଣ-ଅନୁଜ୍ଞାରେ ସାତ୍ୟକି ସେ ରଥରେ
ବସିଲେ ଧନୁଶର ଧରିଣ ହାତରେ ।
ଶୈବ୍ୟ ମେଘପୁଷ୍ପ ସୁଗ୍ରୀବ ବଳାହକ
ଯୋଚା ହୋଇଥିଲେ ସେ ରଥେ ଏ ଘୋଟକ ।
ଦାରୁକଙ୍କ ପାଞ୍ଚଶବାଡ଼ି-ଘାତ ପାଇ
ଗମିଲେ ସେ ବାୟୁ ପରାୟେ ନରସାଇଁ ।

କର୍ଣ୍ଣଙ୍କର ଆଗରେ କରି ରଥ ଛିଡ଼ା
ସର୍ଜିଲେ ସାତ୍ୟକି କର୍ଣ୍ଣଙ୍କୁ ଶରଭିଡ଼ା ।
ଯୁଧାମନ୍ୟୁ ଉତ୍ତମଓଜା ଦୁଇ ବୀରେ
ଜୟଦ୍ରଥ-ରଥ ଚଢ଼ି କର୍ଣ୍ଣେ ଯୁଝିଲେ ।
କର୍ଣ୍ଣ ମଧ କ୍ରୋଧ ହୋଇଣ ଶରବୃଷ୍ଟି
କଲେ ସାତ୍ୟକିଠାରେ ଦେଇ କରି ଦୃଷ୍ଟି ।
କର୍ଣ୍ଣ ସାତ୍ୟକିଙ୍କର ସମର ସମାନ
ନୋହିବ ଆହେ ଦେବାସୁର ଆୟୋଧନ ।
ସେ ଦୁହିଙ୍କର ଯୁଦ୍ଧ ଦେଖି ତୁମ୍ଭ ଲୋକ-
ଯାକ କେହି ପ୍ରହାର ନ କଲେ ଶାୟକ ।
ଦାରୁକଙ୍କ ବାହିବା ଭଙ୍ଗୀ ସୂର୍ଯ୍ୟରଥ-
ଗତିକି ନିନ୍ଦିଲା ଗରୁଡ଼ଧ୍ୱଜ ରଥ ।
କର୍ଣ୍ଣ ସାତ୍ୟକିଙ୍କର ଯୁଦ୍ଧ ଦେଖିବାକୁ
ଆସିଲେ ଦେବତାଏ ଛାଡ଼ିଣ ସ୍ୱର୍ଗକୁ ।
ମିତ୍ର ଅର୍ଥ ପାଇଁ ସେ କର୍ଣ୍ଣ ଯୁଯୁଧାନ
ଘୋର ସମର କଲେ ଛାଡ଼ିଣ ଜୀବନ ।
ଶିନିଙ୍କର ପୌତ୍ର ସରଜି ଶରଭିଡ଼ା
ଘୋଡ଼ି ପକାଇଲେ କର୍ଣ୍ଣଙ୍କ ଧ୍ୱଜ ଘୋଡ଼ା ।
ଭୂରିଶ୍ରବା ଯେ ଜଳସନ୍ଧଙ୍କ ନିଧନ
ପକାଇ ମନେ କର୍ଣ୍ଣ ହୋଇ ଶୋକମନ ।
କର୍ଣ୍ଣଯାଏ ନିଜ ଚାପକୁ ଆଣି ଟାଣି
ବିନ୍ଧିଲେ ଧାପେ କୋପେ ବାଛି ରୋପଶ୍ରେଣୀ
ସାତ୍ୟକି କର୍ଣ୍ଣଙ୍କର ଯୁଦ୍ଧକୁ ନ ହେଜି
ବିନ୍ଧିଲେ ସେ ଶରକୁ ଯୁଦ୍ଧରସେ ମଜି ।
ରଥକୁ ରଥ କର୍ଣ୍ଣ ସାତ୍ୟକି ମିଶାଇ
ରୁଧିରେ ଦେଲେ ଦେହମାନଙ୍କୁ ଭସାଇ ।
ସାତ୍ୟକି କର୍ଣ୍ଣଙ୍କର ପ୍ରତି ଅଙ୍ଗଯାକ
ପୀଡ଼ାଦେଲେ ବିନ୍ଧିଣ ଉତ୍ତମ ଶାୟକ ।
ଚାରିକାଣ୍ଡେ ଚାରିଘୋଡ଼ାଙ୍କ ପ୍ରାଣ ହରି
ସାରଥିକି ସାତ୍ୟକି ପକାଇଲେ ମାରି ।
ତୁମ୍ଭ ପୁଅମାନେ ନୟନେ ଚାହୁଁଥିଲେ
କର୍ଣ୍ଣଙ୍କର ଧ୍ୱଜକୁ କାଟି ପକାଇଲେ ।
ବୃଷସେନ ଶଲ୍ୟ ଯେ ଅଶ୍ୱତ୍ଥାମା ବୀର
ବେଢ଼ିଣ କଲେ ଯୁଯୁଧାନକୁ ସମର ।
କର୍ଣ୍ଣଙ୍କର ବିରଥ ଦେଖି ତୁମ୍ଭ ଲୋକେ
ପୂରାଇଲେ ଆକାଶ ହାହାକାର ଡାକେ ।
ବିରଥ ହୋଇ କର୍ଣ୍ଣ ପକାଇ ନିଃଶ୍ୱାସ
ଦୁର୍ଯ୍ୟୋଧନ ରଥେ ବସିଲେ ଲଭି ତ୍ରାସ ।
ଭୀମଙ୍କ ପ୍ରତିଜ୍ଞା ସୁମରି ଯୁଯୁଧାନ
ନ ନେଲେ ତୁମ୍ଭ ସୁତମାନଙ୍କ ଜୀବନ ।
ଯୁଦ୍ଧରେ ମାତ୍ର ତାଙ୍କୁ ବିରଥ ସେ କଲେ
ମାଥ କାଟିବାର କଥାକୁ ଛାଡ଼ିଦେଲେ ।
ତୁମ୍ଭର ରଥୀଯାକ ଯୁଯୁଧାନ ପ୍ରାଣ
ନେବା ଭାବି ରାଜନ କଲେ ମହାରଣ ।
ଛେଳିଙ୍କ ମେଳେ ବାଘ ପଶିବା ପରାୟେ
ଦିଶିଲେଟି ରଣେ ସାତ୍ୟକି ବୀରରାୟେ ।
ପାର୍ଥ ତ କର୍ଣ୍ଣଙ୍କୁ ମାରିବେ ବୋଲୁଛନ୍ତି
ଏଣୁ ନ ମାଇଲେ ତାହାଙ୍କୁ ଶିନିନାତି ।
ଦ୍ରୋଣ କୃତବର୍ମା ଆଦି ଯେ ରଥୀବୃନ୍ଦ-
ମାନଙ୍କୁ ଜିଣିଲେ ସାତ୍ୟକି କରି ଦ୍ୱନ୍ଦ ।
କୃଷ୍ଣ ସମ ବଳ ତ ବହନ୍ତି ସାତ୍ୟକି
କେ ତାଙ୍କୁ ଯୁଝିବ ରାଜନ ଧନୁ ଟେକି ।
କୃଷ୍ଣ ଅର୍ଜ୍ଜୁନ ଶୁଣି ଯୁଯୁଧାନ ବୀର
ମହୀରେ ଏକା ଏ ତିନିହେଁ ଧନୁର୍ଦ୍ଧର ।
ଆଉ ଜଣେ ଏହାଙ୍କ ତୁଲେ ଗଣିବାକୁ
ଖୋଜିଲେ ହେ ରାଜନ ନ ଦିଶେ ଆମ୍ଭଙ୍କୁ ।
ଧୃତରାଷ୍ଟ୍ର ବୋଲେ ସାତ୍ୟକି କୃଷ୍ଣ ରଥେ
ବସିଣ ଯୁଝିଲେ କହିଲ କର୍ଣ୍ଣ ସାଥେ ।
ସେ ରଥ କିବା ଆନ ରଥକୁ ଆରୋହି
ଯୁଝିଲେ ସେ ଏଣିକି କହ ତା ବଢ଼ାଇ ।
ଏହା ଶୁଣିବା ପାଇଁ ଇଚ୍ଛା ମୋ ହେଉଛି
ଏଣୁଟି ହେ ସଞ୍ଜୟ ତାହା ପଚାରୁଛି ।
ସଞ୍ଜୟ ବୋଇଲେ ହେ ପୁଚ୍ଛିଲ ଯା ମୋତେ
ଅଛି ତହିଁ କାରଣ ଶୁଣ ନରପତେ ।
ଦାରୁକଙ୍କର ସାନ ଭାଇ ରଥୁଟାଏ
ଆଣିଲେ ଦିଶୁଛି ଶୋଭା ସେ ଅତିଶୟେ ।
ହେମମାଳାଙ୍କରେ ସେ ହୋଇଛି ମଣ୍ଡିତ
ସୁବର୍ଣ୍ଣ ତାରାଙ୍କରେ ହୋଇ ଅଖଣ୍ଡିତ ।
ଯୋଚା ହୋଇଅଛି ଉତ୍ତମ ଘୋଡ଼ା ଚାରି
ପୂରିଅଛି ତହିଁରେ ଯୁଦ୍ଧ ସାମଗିରି ।
ସାତ୍ୟକି ସେ ରଥକୁ ନେତ୍ରପଥେ ଦେଖି
କୃଷ୍ଣ-ରଥ ଛାଡ଼ି ବସିଲେ ହୋଇ ସୁଖୀ ।
କର୍ଣ୍ଣଙ୍କର ସୂତ କର୍ଣ୍ଣଙ୍କୁ ଆଣି ରଥ
ଦିଅନ୍ତେ ତହିଁରେ ବସିଲେ ନରନାଥ ।
ସାତ୍ୟକିଙ୍କ ରଥ ପରାଏ କର୍ଣ୍ଣ ରଥ
ମଣ୍ଡି ପକାଇଲା ଆମ୍ଭର ନେତ୍ରପଥ ।
ତୁମ୍ଭର ଦୁର୍ନୀତିରୁ କୁରୁଙ୍କର କ୍ଷୟ-
ହେବାର କହିବି ରାଜନ ମନ ଦିଅ ।
ଦୁର୍ମୁଖକୁ ଆଦି ଯେ ଏକତିରିଶିଟି
ସୁତଙ୍କ ମୁଣ୍ଡ ଭୀମ ପକାଇଲେ କାଟି ।

ତୁମ୍ଭ ଦୁର୍ମନ୍ତ୍ରଣାରୁ ଏତେ ସରି କଥା
ହେବାଠାରୁ ତୁମ୍ଭ ନୋହିଲା ଜାତ ବ୍ୟଥା ।
ଏଥୁ ଅନନ୍ତରେ ଯେ ଧୃତରାଷ୍ଟ୍ର ରାଜା
ପୁଚ୍ଛିଲେ ସଞ୍ଜୟଙ୍କୁ ବାକ୍ୟେ କରି ପୂଜା ।
ଭୀମ ଅରଜୁନ ସାତ୍ୟକି ତିନି ଜଣ
ଏ ଅନ୍ତେ କହ କଲେ କିରୂପରେ ରଣ ।
ସଞ୍ଜୟ ବୋଇଲେ ପୁଚ୍ଛିଲ ଯା ରାଜନ
କହିବି ଯାହା, ତାହା ଶୁଣ ଦେଇ ମନ ।
କର୍ଣ୍ଣଙ୍କ ବଚନ ସୁମରି ଭୀମବଳୀ
କହିଲେ ଅର୍ଜ୍ଜୁନଙ୍କୁ ହୃଦ ମଧେ ଚଳି ।
ନୟନରେ ତ ତୁମ୍ଭେ ଦେଖୁଥିଲ ପାର୍ଥ
କର୍ଣ୍ଣ ଭାଙ୍ଗିଦେଲା ମୋ ବଳ ପୁରୁଷାର୍ଥ ।
ବଚନରେ ମୋତେ ଯା ଦେଇଅଛି ଗାଳି
ତା କହୁଛି ଶୁଣ ହେ ପାର୍ଥ ବନମାଳି ।
ମୁହଁରେ ତ ତୋହର ହୋଇ ନାହିଁ ନିଶ
କଲେ ଶୁଦ୍ଧ କିପାଇଁ ନ କରିବୁ ତ୍ରାସ ।
ହୋଇଅଛି ତ ପୁଣି ହୁରିଆ ବୟସ
କୁଡ଼ିଆଟି ଛାଇଙ୍କୁ ଖାଇ ତୁ ବିଶେଷ ।
ମୋତେ ଯେଉଁ ଲୋକ ବୋଲଇ ଏହିରୂପେ
ତାହାକୁ ମାରଇ ମୁଁ ଜାଣ କ୍ରୋଧ-ତାପେ ।
ମୋହର ଯେ ବ୍ରତ ତୁମ୍ଭର ସେହି ବ୍ରତ
କର ପାର୍ଥ ଆଜି କର୍ଣ୍ଣଙ୍କୁ ଯୁଦ୍ଧେ ହତ ।
ଭୀମଙ୍କର ବଚନ ଶୁଣି ଫାଲଗୁନ
କ୍ରୋଧରେ ନୟନକୁ କରି ଥନ ଥନ ।
କର୍ଣ୍ଣଙ୍କ ସମୀପକୁ ରଥ ବୁହାଇଲେ
ଅନାଇଁ କର୍ଣ୍ଣଙ୍କୁ ଏ ବଚନ କହିଲେ ।
ଆହେ କର୍ଣ୍ଣ ଅଧାର୍ମିକ ଯେ ଦୁଷ୍ଟମତି
ଶୁଣ ମନ ଦେଇ ମୋ କହିବା ଯୁକତି ।
ଜୟ ପରାଜୟ ଶୂରକୁ ଲାଗିଅଛି
ଶୂରେ ହାରିଅଛନ୍ତି ଏହା ଦେଖାଅଛି ।
ଏହିକ୍ଷଣି ସାତ୍ୟକି ତୁମ୍ଭଙ୍କୁ ବିରଥ
କରି ନ କାଟିଲେଟି କର୍ଣ୍ଣ ତୁମ୍ଭ ମାଥ ।
ପ୍ରତିଜ୍ଞା କରିଛି ମୁଁ ତୁମ୍ଭର ବଧକୁ
ଏହି ସକାଶୁଁ ସଂହାରିଲେ ସେ କ୍ରୋଧକୁ ।
ଭୀମଙ୍କୁ ଜିଣି ରଣେ ନିଷ୍ଠୁର ବଚନ
ଯା ବୋଲିଛ ତାହା କି ଶୁଣିବ ଏ କାନ ।
ରଥୀମାନେ ଏହା ନ ଭାବନ୍ତିଟି ଚିତ୍ତେ
ସୂତସୁତ ବିନା ହେ ତୁମ୍ଭ ଶକ୍ତି କେତେ ।
ଶତ୍ରୁ ଜିଣି ହୃଷ୍ଟବଚନ ବୋଲିବାର
ତୁମ୍ଭ ବିନା ଭବେ ଖୋଜିଲେ ନାହିଁ ନର ।

ଆର୍ଯ୍ୟାବର୍ତ୍ତେ ବୀର ଅଟନ୍ତି ଭୀମସେନ
କରୁଥିଲେ ତୁମ୍ଭଙ୍କୁ ଭଲ ଆୟୋଧନ ।
ତୁମ୍ଭେ ଯାହା ତାଙ୍କୁ ଲଙ୍ଘିଲ ଏ ବଚନେ
ସେ ଘେନି ଯିବ ଆଜି ଯମଙ୍କ ସଦନେ ।
କୃଷ୍ଣଙ୍କ ତୁଲେ ମୁହିଁ ଦେଖୁଥିଲି ଯୁଦ୍ଧ
ହାରିଲ ବହୁ ଥର ହେଲା ପରି ବଧ ।
ତେବେହେଲେ ତୁମ୍ଭଙ୍କୁ ଭୀମସେନ କିଛି
ବୋଲିଛନ୍ତି କି ହେ କହ ତ ସୂତବହ୍ନି ।
ଅଭିମନ୍ୟୁ ସୁତକୁ ବେଢ଼ି ଯା ମାରିଛ
ଫଳିବ ଫଳ, ମୋର କଥା ନୋହେ ମିଛ ।
ପୁଣି ତ ଭୀମଙ୍କ ଧନୁକୁ ଦେଇ କାଟି
ବୋଲିଛ ନିଷ୍ଠୁର ବଚନ ମେଲି ପାଟି ।
ରଥୀକି ଅନୁରୂପ ଯୁଦ୍ଧରେ ମୁଁ କଥା
ନ କଲେ ଯାଇନାହିଁ ଜାଣ ହୃଦବ୍ୟଥା ।
ଏବେ ତୁମ୍ଭେ ଚାହୁଁଥିବ ତୁମ୍ଭର ସୁତ
ବୃଷସେନର ମୁହିଁ ଘେନିବି ଜୀବତ ।
ଯେବେ କର୍ଣ୍ଣ ମୋତେ ଆସିବ ଆହେ ଯୁଝି
ଶୁଆଇବି ତୁମ୍ଭଙ୍କୁ ଜାଣ ରଣମଝି ।
ତୁମ୍ଭ ମୃତ୍ୟୁ ଦେଖି ମୋ ହାତେ ସୁଯୋଧନ
କାନ୍ଦିବ ଆଜି ନେତ୍ରେ ଅଶ୍ରୁ କରି ପୂର୍ଣ୍ଣ ।
ଏହିରୂପେ ଅର୍ଜ୍ଜୁନ ପ୍ରତିଜ୍ଞା କରନ୍ତେ
ତୁମ୍ଭର ଲୋକେ ଡକା ପାଡ଼ିଲେ ସମସ୍ତେ ।
ସୂର୍ଯ୍ୟ ଏ ସମୟରେ କିରଣ ଲୁଚାଇ
ଅସ୍ତଗିରି ଶିଖୁ ଖସିଲେ ନରସାଇଁ ।
ଅର୍ଜ୍ଜୁନଙ୍କୁ ଶ୍ରୀକୃଷ୍ଣ ଆଲିଙ୍ଗନ କରି
କହିଲେ ଏ ବଚନ ଅଳ୍ପ ହାସ୍ୟକରି ।
ବୃଦ୍ଧକ୍ଷତ୍ର ସୁତକୁ ବୃଦ୍ଧକ୍ଷତ୍ର ତୁଲେ
ଯା ମାଇଲ ଆମ୍ଭେ ମଣିଲୁଁ ମହୀ ତଳେ ।
ଧୃତରାଷ୍ଟ୍ର ରଥୀଏ ଯାକୁ ଜଗିଥିବେ
ନ ପାରି ଇନ୍ଦ୍ର  ତାକୁ ଜାଣୁଛି ଭାଗିବେ ।
ତୁମ୍ଭର ବିନା ଧୃତରାଷ୍ଟ୍ରଙ୍କ ବଳକୁ
ଜିଣିବାକୁ ତ ଦେଖୁ ନାହିଁ ମୁଁ କାହାକୁ ।
ତୁମ୍ଭ ପରାଏ ବଳୀ ରାଜାମାନେ ତୁମ୍ଭ
ସଙ୍ଗେ ଯୁଝି ହାରି ଛାଡ଼ିଲେ ହୃଦ-ଦମ୍ଭ ।
ଆଜି ଯେଉଁ ପରାକ୍ରମକୁ କଲ ବୀର
ଏ ପରାକ୍ରମ ନ କରିବେ ପୁରନ୍ଦର ।
ତୁମ୍ଭର ଆଜି ଯୁଦ୍ଧେ ବଢ଼ିବାକୁ କୀର୍ତ୍ତି
ବଢୁଅଛି ମୋହ ହୃଦରେ ସୁଖ ଅତି ।
ନ ରଖିଣ  ତୁମ୍ଭେ ହେ ମୁଣ୍ଡ କର୍ଣ୍ଣପିଣ୍ଡେ
ଗଡ଼ାଇବ, ଆମ୍ଭେ ଦେଖିବୁଁ ରଣଦାଣ୍ଡେ ।

ଅର୍ଜୁନ ବୋଇଲେ ହେ ତୁମ୍ଭ ପ୍ରସାଦରୁ
ତରିଲି ମୁଁ ଜାଣ ଏ ପ୍ରତିଜ୍ଞା-ହସ୍ତରୁ ।
ହୋଇବ ଆହେ କୃଷ୍ଣ ତୁମ୍ଭେ ଯାର ନାଥ
କି କରି ନ ପାରଇ ଜାଣ ତାର ହାତ ।
ଆମ୍ଭ ଭାର ତୁମ୍ଭଙ୍କୁ ଲାଗିଛି ତାହାରି
ତୁମ୍ଭ ବଳେ ଜୟ ହୋଇଅଛି ଆମ୍ଭରି ।
ଆମ୍ଭେମାନେ ତୁମ୍ଭ ସେବକ ସବୁଦିନେ
ଆମ୍ଭଙ୍କୁ ରଖିଅଛ ତୁମ୍ଭେ ସୁପ୍ରସନ୍ନେ ।
ଅର୍ଜୁନଙ୍କ ବଚନ ଶୁଣି କୃଷ୍ଣ ହସି
ବାହିଲେ ମନ୍ଦେ ମନ୍ଦେ ଘୋଡ଼ାକୁ ଆଶ୍ୱାସି ।
ଯୁଦ୍ଧଭୂମି ଦେଖି କହିଲେ ଭଗବାନ
ଦେଖ ହେ ତୁମ୍ଭେ ମାରିବାର ନୃପଜନ ।
ଘୋଡ଼ା ହାତୀ ରଥ ଉପରେ ନୃପତିଏ
ବସିଛନ୍ତି ମରି ଭୂଷଣ ମଣ୍ଡି କାୟେ ।
ଜୀଇଁ ଥିଲା ପରି ପରତେ ହେଉଅଛି
ମଲେ ହେଲେ ତେଜ ତ ଦେହୁଁ ନ ଛାଡ଼ିଛି ।
ଆୟୁଧ ଶକ୍ତି ଧନୁ ପଟ୍ଟିଶ ତୋମର
ଶତଘ୍ନୀ ପରଶ୍ୱଧ ସ୍ୱର୍ଣପୁଙ୍ଖ ଶର ।
ପ୍ରାସ କୁନ୍ତ ଯଷ୍ଟି ତୂଣୀର ଭିନ୍ଦିପାଳ
ଭୂଷଣ୍ଡୀ ମୃଦ୍ଗର ଖଡ଼ଗ ମୂଷଳ ।
କୃପଣ ପଶା ଘଣ୍ଟା କବଚ ବାହନ
ଅଙ୍ଗଦ କଣ୍ଠସୂତ୍ର ମାଳା ଶିରୋରତ୍ନ ।
ମଣିହାର ପଦକ ଗଦା ନାନାବସ୍ତ୍ର
ମୁକୁଟ ପାଗଧ୍ୱଜ ପତାକା ଅକ୍ଷଚକ୍ର ।
ଏ ସମସ୍ତେ ଅଛନ୍ତି ମହୀମଧ୍ୟେ ପଡ଼ି
ଯାଉଛି ଏ ଦେଖି ଯୋଦ୍ଧାଙ୍କ ଜ୍ଞାନ ବୁଡ଼ି ।
ପୃଥିବୀ-ପ୍ରିୟା-ପ୍ରିୟ ହୋଇ ନୃପତିଏ
ଶୋଇଛନ୍ତି ଧରି ହେ ନୃପ କାଣ୍ଡଘାଏ ।
ପର୍ବତ ଗେରୁଧାରା ମଣ୍ଡିହେଲା ପରି
ହାତୀଏ ପଡ଼ିଛନ୍ତି ରକ୍ତ ଅଙ୍ଗେ ଧରି ।
ସୁନାମାଳାମଣ୍ଡା ଘୋଡ଼ା ଯେ ଅକଳନା
ମରି ଶୋଇଛନ୍ତି ହେ ପାର୍ଥ ମହାମନା ।
ଗନ୍ଧର୍ବ-ନଗର ଆକାର ରଥକୁଳ
ଭାଜି ପଡ଼ିଅଛନ୍ତି ପାଇ ତୁମ୍ଭ ବଳ ।
ପତାକା ଧ୍ୱଜ ଚକହୀନ ହୋଇ କେତେ
ରଥ ରହିଅଛନ୍ତି ପାର୍ଥ ଦେଖ ନେତ୍ରେ ।
ଫରୀ ଖଣ୍ଡା ଧନୁ ଯେ ଶକତି ତୋମର
ଧରିଣ ପତ୍ତି ପଡ଼ିଅଛନ୍ତି ଅପାର ।
ହଣାହଣି ହୁଅନ୍ତେ ଏକାବେଳେ ଖଣ୍ଡା
ବାଜନ୍ତେ କେତେ ଶୋଇଛନ୍ତି ହୋଇ ଦଣ୍ଡା ।
ରକ୍ତ ମେଦ ମାଂସ କେବଳ ମହୀ-ସ୍ଥଳେ
ପୂରିବାର ଦେଖି ତ ନ ପାରୁଛୁ ଡୋଳେ ।
ପୁଣି ଭୂତ ପ୍ରେତ ଶାଗୁଣା ହୋଇ ଗୋଟି
ଖାଉଅଛନ୍ତି ରଡ଼ିକରି ମେଲି ପାଟି ।
ରୁଦ୍ର କ୍ରୀଡ଼ାସ୍ଥାନ ପରାୟେ ଯୁଦ୍ଧସ୍ଥାନ
ହୋଇଛି ମହାଭୟଙ୍କର ହେ ଅର୍ଜୁନ ।
ବଜ୍ର ଧରିଣ ଶଚୀପତି ଏଡ଼େ କଥା
ନ ପାରିବେ କରି ହେ ପାର୍ଥ ମହାରଥା ।
ତୁମ୍ଭ ବିନା ଆନ ଲୋକରେ ଏଡ଼େ କର୍ମ
ହେବ ବୋଇଲେ ହେ ଲାଗିବ ବଡ଼ ଶର୍ମ ।
ଏରୂପେ ଅର୍ଜୁନେ ଦେଖାଇ ଯୁଦ୍ଧଭୂମି
ବାହିଲେ ରଥବର ତ୍ରିଭୁବନ ସ୍ୱାମୀ ।
ଯେଉଁଠାବରେ ଯୁଧିଷ୍ଠିର ରାଜା ଥିଲେ
ସେଠାରେ କପିଧ୍ୱଜରଥକୁ ରଖିଲେ ।

•

## ଯୁଧିଷ୍ଠିରଙ୍କୁ ଜୟଦ୍ରଥବଧ ସମ୍ବାଦଦାନ

କହିଲେ ଅରଜୁନ ଜୟଦ୍ରଥ ମୁଣ୍ଡ
କାଟିଲେ ହେ ରାଜନ ଯୁଦ୍ଧେ ବିନ୍ଧି କାଣ୍ଡ ।
ଦୁସ୍ତର ପ୍ରତିଜ୍ଞାକୁ ପାର୍ଥ ହୋଇ ପାରି
ହତଶତ୍ରୁ ହେଲେ ହେ ଜାଣ ଦଣ୍ଡଧାରୀ ।
ଯୁଧିଷ୍ଠିର ରାଜା କୃଷ୍ଣଙ୍କ ଏ ବଚନ
ଶୁଣି ଆନନ୍ଦରେ ଫୁଲାଇ ଅପଘନ ।
ରଥୁଁ ଅବତରି କୃଷ୍ଣଙ୍କୁ ଆଲିଙ୍ଗନ
କଲେ ମହାହରଷେ ଜାଣ ହେ ରାଜନ ।
ହରଷରେ ନୟନୁ ବହିଗଲା ପାଣି
କହିଲେ ଗଦଗଦେ ଉଚ୍ଚାରି ଏ ବାଣୀ ।
ତୁମ୍ଭଠାରୁ ଶୁଣି ଜୟଦ୍ରଥ ବଧ
ଏତେବେଳେ ହୋଇଲା ମୋର ଚିତ୍ତ ବୋଧ ।
ଆନନ୍ଦ- ସମୁଦ୍ରେ ତ ଯାଉଛି ମୁଁ ଭାସି
ଏ ସକାଶୁ ତୁମ୍ଭଙ୍କୁ ନ ପାରୁଛି ଭାଷି ।
ତୁମ୍ଭେ ରକ୍ଷାକରିବା ସକାଶୁଁ ଅର୍ଜୁନ
ଘେନିଲା ଯୁଦ୍ଧେ ଜୟଦ୍ରଥର ଜୀବନ ।
ଆପଣ ଆମ୍ଭ ହିତେ ଥିବାଠାରେ ଜୟ
ହୋଇବାରୁ ଅଧିକ କି ରୁକ୍ମିଣୀ- ପ୍ରିୟ ।
ଦେବଙ୍କର ଇନ୍ଦ୍ର ଆଶ୍ରୟ ହେଲା ପରି
ଆମ୍ଭର ତୁମ୍ଭେ ଆଶ୍ରା ହେଲେ ନରହରି ।
ଦେବଙ୍କ ଅଜେୟ ଅଟନ୍ତି କୁରୁସେନା
ତୁମ୍ଭ ବଳେ ଜିଣିଲେ ପାର୍ଥ ମହାମନା ।

ଜୟଦ୍ରଥ ମୁଣ୍ଡ କାଟିଣ ପକାଇଲେ
ଏଥିରୁ କହିବାକୁ କଥା ନାହିଁ ଭଲେ ।
ବାଲ୍ୟକାଳୁଁ ତୁମ୍ଭର ଶୁଣିଛି ମହିମା
ନ ପାଆନ୍ତି ବ୍ରହ୍ମାଆଦି ତୁମ୍ଭର ସୀମା ।
ବିଶ୍ୱହର୍ତ୍ତା ବିଶ୍ୱପାଳକ ବିଶ୍ୱକର୍ତ୍ତା
ତୁମ୍ଭେ ବୋଲି ବୋଲାନ୍ତି ସର୍ବ ବେଦବେତ୍ତା ।
ଆଦି ଅନ୍ତ ମଧ୍ୟ ତୁମ୍ଭର ଆଦୌ ନାହିଁ
ତୁମ୍ଭ ଗୁଣ କହି କି ପାରିବି ଗୋସାଇଁ ।
ଭୂତାତ୍ମା ମହାପରମାତ୍ମା ନାରାୟଣ
ବିଶ୍ୱତୋମୁଖ ଗୁହ୍ୟ ମୁଖ୍ୟପରାୟଣ ।
ଜଗତ୍ପତି ଅବକ୍ତ ଅନନ୍ତ ଈଶ୍ୱର
ଜ୍ଞାନଯୋନି ହରି ହେ ବିଷ୍ଣୁ ଦେବବର ।
ଏହିରୂପେ ଯେ ତୁମ୍ଭେ ତୁମ୍ଭଙ୍କୁ ତ୍ରିଦଶେ
ନ ଜାଣନ୍ତି ନରେ ଘେନିବେ କି ମାନସେ ।
ଧନଞ୍ଜୟ ସଖା ଯେ ଧନଞ୍ଜୟଗୋପ୍ତା
ଧନଞ୍ଜୟହିତକାରକ ସୁରତ୍ରାତା ।
ତୁମ୍ଭଙ୍କୁ ଯେଉଁ ଲୋକ ଜାଣିପାରି ନାହିଁ
ଏ ସଂସାର ଦୁସ୍ତରୁ ତରିବଟି କେହିଁ ।
ତୁମ୍ଭର ପ୍ରସାଦରୁ ତ୍ରିଲୋକ -ବିଜୟୀ
ହୋଇ ସ୍ୱର୍ଗ ଭୁଞ୍ଜୁଅଛନ୍ତି ଶଚୀସାଇଁ ।
ସ୍ଥାବର ଜଙ୍ଗମାଦି କୀଟ ପରିଯନ୍ତେ
ସମସ୍ତଙ୍କୁ ରଖିଛ କୃଷ୍ଣ ମହାମତେ ।
ପ୍ରଳୟେ ଜଳମୟ ମର୍ତ୍ତ୍ୟ ତମୋମୟ
ହୋଇଥିଲା ତ, ତାହା ତୁମ୍ଭେ କଲ କ୍ଷୟ ।
ଏରୂପେ ତୁମ୍ଭ ଗୁଣ କର୍ମ ସଂଖ୍ୟାକରି
କହି ନ ପାରିବେ ବଚନେ କୁଶଧାରୀ ।
ଇନ୍ଦ୍ରାଦି ଦେବତାଙ୍କୁ ରଖିବା ପରାୟେ
ରଖ ଆମ୍ଭମାନଙ୍କୁ ଯଦୁକୁଳରାୟେ ।
ଏରୂପେ ଯୁଧିଷ୍ଠିର-ବାଣୀ କର୍ଣ୍ଣେ ଶୁଣି
ହସି କରି ତାଙ୍କୁ କହିଲେ ଚକ୍ରପାଣି ।
ତୁମ୍ଭ ଧର୍ମ କର୍ମରେ ଦୁଷ୍ଟ ଜୟଦ୍ରଥ
ପଡ଼ିଲା ଯୁଦ୍ଧେ ଆଜି କଟାଇଣ ମାଥ ।
ଭଲ ଭାବିବାରୁ ତୁମ୍ଭେ ତ ଅର୍ଜ୍ଜୁନର
ମାଇଲେ ସେ ନିଃଶ୍ରମେ ଜୟଦ୍ରଥ ବୀର ।
କୁଶଳତ୍ୱ ଯେ ବାହୁବୀର୍ଯ୍ୟ ଅସମ୍ଭ୍ରମ
ଅମୋଘ-ବେଧେ ନାହିଁ ଅର୍ଜ୍ଜୁନଙ୍କ ସମ ।
କରନ୍ତେ କୃଷ୍ଣ ଅରଜୁନଙ୍କୁ ପ୍ରଶଂସା
ସନ୍ତୁଷ୍ଟ ହୋଇ ଯୁଧିଷ୍ଠିର ମହାଯଶା ।
ଅର୍ଜ୍ଜୁନେ ପୋଟାଳି ପକାଇ ମୁହଁଝାଳ
ପୋଛି ଦେଇ ପାଣିରେ ପାଣ୍ଡବନୃପାଳ ।
ମୂର୍ଦ୍ଧା ଶୁଙ୍ଘି ଚୁମ୍ୱନଟିଏ ତହିଁ ଦେଲେ
ରଖିଲ ବାବୁ ଆମ୍ଭ ମହତ୍ତ୍ୱ ବୋଇଲେ ।
ଇନ୍ଦ୍ରାଦି ଦେବରେ ଅସହ୍ୟ କର୍ମ ଆଜି
କଲ ଜୟଦ୍ରଥକୁ ମାରି କରି ଆଜି ।
ଭାଗ୍ୟରେ ପ୍ରତିଜ୍ଞା ସଫଳ ଆଜି କରି
ଭେଟିଲ ମୋତେ ଆସି ଆହେ ଧନୁର୍ଦ୍ଧାରୀ ।
ଏରୂପେ ଅର୍ଜ୍ଜୁନଙ୍କୁ କହି ଯୁଧିଷ୍ଠିର
ଆଛା ଅଛି ବୋଲି ମାଇଲେ ପୃଷ୍ଠେ କର ।
କୃଷ୍ଣ ଅର୍ଜ୍ଜୁନ ତହୁଁ ମହାତୋଷ ବହି
ବୋଇଲେ ଶୁଣ ହେ ପାଣ୍ଡବ-ନରସାଇଁ ।
ତୁମ୍ଭ କୋପ-ଅଗ୍ନିରେ ଜୟଦ୍ରଥ-ତୃଣ
ପୋଡ଼ି ମଲା, ନିମିତ୍ତ ଆମ୍ଭେମାନେ ଜାଣ ।
ନିକଟେ ଧୃତରାଷ୍ଟ୍ର-ସୁତେ ତୁମ୍ଭ କ୍ରୋଧେ
ମରିବେ ଯୁଦ୍ଧେ ତାଙ୍କୁ ପୂଜିଲେ ବିବୁଧେ
ଭୀଷ୍ମ ପରା ରଥୀ ତୁମ୍ଭଙ୍କୁ ଅପରାଧ
କରିବାରୁ ଶିଖଣ୍ଡୀ-କାଣ୍ଡେ ହେଲେ ବଧ ।
ତୁମ୍ଭର କ୍ରୋଧ ଯାହାଠାରେ ଅଛି ରହି
ଜୟ ତାର ସୁଲଭ ହୋଇବଟି କେହିଁ ।
ଯାକୁ ତୁମ୍ଭେ କ୍ରୋଧ ହୋଇଛ ଦଣ୍ଡଧାରୀ
ତାହାର ନାଶ ଯାଏ ଆୟୁ ଯଶ ଶିରୀ ।
ତୁମର କ୍ରୋଧବଶେ କୁରୁକୁଳଯାକ
ପୁତ୍ର ନାତି ଘେନି ଦେଖିବେ ଯମଲୋକ ।

•

## ଯୁଧିଷ୍ଠିରଙ୍କ ସହ ଭୀମ ଓ ସାତ୍ୟକିଙ୍କର ସାକ୍ଷାତ

ଏହି ସମୟରେ ସାତ୍ୟକି ଭୀମ ଛିଡ଼ା
ହୋଇଲେ, ଲାଗିଛି ଦେହରେ ଶରଭିଡ଼ା ।
ଯୁଧିଷ୍ଠିରଙ୍କର ପାଦରେ ନମସ୍କାର
କରି କର ଯୋଡ଼ି ରହିଲେ ଦୁଇବୀର ।
ଯୁଧିଷ୍ଠିରରାଜା କହିଲେ ସେ ଦୁହିଁଙ୍କି
ଭାଗ୍ୟରେ ତୁମ୍ଭଙ୍କୁ ଦେଖିଲି କହିବି କି ।
କୃପ କୃତବରମା-ମନରେ ପୂରିତ
ହୋଇଣ ହୋଇଥିଲେ ଦ୍ରୋଣ ସିନ୍ଧୁଜାତ ।
ତାହା ତରି ତୁମ୍ଭେ ଆସିଲ ମୋର ପାଶ
ପ୍ରଶଂସା କରିବାକୁ ନାହିଁ ମୋର ଭାଷ ।
ଯୁଦ୍ଧେ ସବୁ ରାଜାମାନଙ୍କୁ କଲ କ୍ଷୟ
ଯାହା, ମୋର ଏ କଥା ଅଟେ ବଡ଼ ଜୟ ।
ଶଲ୍ୟ କର୍ଣ୍ଣ ଦ୍ରୋଣ ଆଦିଙ୍କି ପରାଭବ
ଦେବାକୁ ତୁମ୍ଭ ବିନା ନାହିଁ କେ ମାନବ ।

ମୋ ବଚନ ଲଙ୍ଘି ନ ପାରି ଏକା ହୋଇ
ସୈନ୍ୟ-ସିନ୍ଧୁ ମଧ୍ୟରେ ପଶିଲ ଝସୋଇ ।
ଏହି କଥା ତୁମ୍ଭର ଶୁଝିବାକୁ ମୁହିଁ
ହେ ଭୀମ ସାତ୍ୟକି ଉପାୟ ଦିଶୁ ନାହିଁ ।
ବହୁତ ଭାଗ୍ୟ ମୋର ହେବାରୁ ପ୍ରକାଶ
ଦେଖିଲା ଆଜି ତୁମ୍ଭ ଦୁହିଁଙ୍କି ମୋ ଦୃଶ୍ୟ ।
ଯୁଧିଷ୍ଠିର ରାଜା ହେ ଭୀମ ସାତ୍ୟକିଙ୍କି
କହିଣ ପୋଟାଳିଲେ ଦୁଇବାହୁ ଟେକି ।
ପାଣ୍ଡବମାନଙ୍କ ସଇନ ଯୁଦ୍ଧେ ଜୟ
ଦେଖି ପୁଣି ହୋଇଲେ ଆନନ୍ଦ-ହୃଦୟ ।

•

## ଦୁର୍ଯ୍ୟୋଧନଙ୍କର ଦ୍ରୋଣନିକଟରେ ଶୋକ ପ୍ରକାଶ

ଆହେ ଧୃତରାଷ୍ଟ୍ର ପାଣ୍ଡବ-ନରସାଇଁ
ଶୁଣ ତୁମ ପୁତ୍ରଙ୍କ କଥା ମନ ଦେଇ ।
ଜୟଦ୍ରଥ ରାଜାଙ୍କ ଯାନ୍ତେ ରଣେ ମାଥ
ଦୁର୍ଯ୍ୟୋଧନ କପାଳେ ମାରି କରି ହାତ ।
ବୋଇଲେ ମୋହ ପରି ମନ୍ଦଭାଗ୍ୟ ହୋଇ
ଏ ମହୀରେ ଆଉ ନୃପତି ଥିବ ନାହିଁ ।
ଅରଜୁନ ବଳ ଅଧକୁ ମୋର ବଳ -
ଯାକ ସରି ନୁହେ ଯୁଝିଲେ ହୋଇ ଠୁଳ ।
ଦ୍ରୋଣ କୃପ ଯେ କର୍ଣ୍ଣ ଶଲ୍ୟ ଅଶ୍ୱଥାମା
ଏହାଙ୍କୁ ପାଇ ତୁଚ୍ଛା କରେ ମୁଁ ଗାରିମା ।
ଆଜି ତ ଜଣାଗଲା ଏମାନଙ୍କ ବଳ
ମରିବାରୁ ସିନ୍ଧୁଦେଶର ନରପାଳ ।
କୁରୁବଳ ଯାକୁ ରଖିବେ ଯେବେ ଶକ୍ର
ଅର୍ଜ୍ଜୁନ କରିଦେବ ଯୁଦ୍ଧେ ତାଙ୍କୁ ବକ୍ର ।
କର୍ଣ୍ଣ ବାହା ଆଶ୍ରାକରି ମୁଁ କଲି ଯୁଦ୍ଧ
ନ ପାରିଲେ ସହିତେ ସେ କିରୀଟୀ-କ୍ରୋଧ ।
ନିଷ୍ଠୁର ବାକ୍ୟକୁ ସଭାରେ କର୍ଣ୍ଣ ବଳୀ
ବୋଲିଥିଲେ ସଭାରେ ପାଣ୍ଡବଙ୍କୁ ଚଳି ।
ଏବେ ତ ଚଳିଗଲେ ପାର୍ଥ-ଶରପଥେ
ଧନୁ ଥାଇ ତାଙ୍କର କିସ ହେଲା ହାତେ ।
ପ୍ରୀତି ଇଚ୍ଛାକରି ତ କୃଷ୍ଣ ଆସିଥିଲେ
ତାହାଙ୍କୁ ଲଙ୍ଘିଲି ମୁଁ କର୍ଣ୍ଣଙ୍କର ବଳେ ।
ଏରୂପରେ ଦୁଃଖ କରିଣ ଦୁର୍ଯ୍ୟୋଧନ
କଲେ ସେ ଦ୍ରୋଣଙ୍କର ପାଶକୁ ଗମନ ।
କହିଲେ ଆହେ ଗୁରୁ ଜୀଇଁଅଛ ତୁମ୍ଭେ
ପାର୍ଥ ହାତ-ବାଣେ ଅନାଥ ହେଲୁଁ ଆମ୍ଭେ !
ଭୀଷ୍ମ ପରା ବୀରେ ଶିଖଣ୍ଡୀ ମାରି କାଣ୍ଡ
ରହିଅଛି ଦେଖ ହେ ଦ୍ରୋଣ ଯୁଦ୍ଧଦାଣ୍ଡେ ।
ସାତଅକ୍ଷୌହିଣୀ ମୋର ବଳ ସଂହାରି
ଜୟଦ୍ରଥ ପ୍ରାଣ ଅର୍ଜ୍ଜୁନ ନେଲା ହରି ।
ମୋହ ବିଜୟ ଇଚ୍ଛା କରି ମୋ ସୁହୃଦେ
ପଡ଼ିଲେ ଅରଜୁନ-କାଣ୍ଡରେ ପ୍ରମାଦେ ।
ବସୁଧାପତିଏ ବସୁଧା-ପ୍ରିୟା ପ୍ରିୟ
ଧରି ଶୋଇଛନ୍ତି ହେ ଛାଡ଼ି ପ୍ରାଣ ପ୍ରିୟ ।
ମିତ୍ରନାଶକାରୀ ଅଟଇ ମୁହିଁ ଗୁରୁ
ତରି ନ ପାରିବି କେବେ ଏ ପାତକରୁ ।
ଭାବୁଅଛି କଲେ ସହସ୍ରେ ଅଶ୍ୱମେଧ
ଯିବା ପରି ପାତକ ହେଉ ନାହିଁ ବୋଧ ।
ଅଧାର୍ମିକ ପାପୀ ଲୁବ୍ଧ ମୁହିଁ ଅଟେ
ମୁଁ କିମ୍ପା ନ ପଡ଼ନ୍ତି ଏ ଘୋର ସଙ୍କଟେ ।
ପୃଥିବୀ ମୋତେ କିମ୍ପା ଦ୍ରୋଣ, ଦେବ ଠାବ
ମୁହିଁ ତ ଅଟେ ଅତି ପତିତ ମାନବ ।
ରକତରେ ଅଙ୍ଗ ମଣ୍ଡିଣ ଭୀଷ୍ମ ରଥୀ
ଯୁଦ୍ଧରେ ଶୋଇଥିଲେ ହୋଇ ମହାବ୍ୟଥୀ ।
ତାହାଙ୍କୁ ରାଜାଙ୍କର ମଧ୍ୟେ ମୋ ନୟନ
ଦେଖିଲା, ଫୁଟି କିପାଁ ନ ଗଲା ହେ ଦ୍ରୋଣ ।
ଜଳସନ୍ଧ ଭୂରିଶ୍ରବା ଏ ଦୁଇବୀରେ
ମରିଗଲେ ତ ଯୁଯୁଧାନଙ୍କ ସମରେ ।
କାମ୍ବୋଜ ଅଳମ୍ବୁଷ ଆଦି ମିତ୍ରଗଣ
ମଲେ ତ ଜୀଇବାର ବ୍ୟର୍ଥ ମୋର ଜାଣ ।
ମୋର ହିତକାରିଏ ମୋ ପାଇଁ ବିକ୍ରମ
କରୁଥିଲେ, ଦେଖିଲେ ଯାଇ ଯମଗ୍ରାମ ।
ପାଣ୍ଡବ ସୃଞ୍ଜୟ ପାଞ୍ଚାଳଙ୍କୁ ନିହତ
କରିବା ଅନୃଣୀ ହୋଇ ମୁଁ କୁମ୍ଭସୁତ ।
ଯମୁନାଙ୍କ ଜଳରେ ତର୍ପଣ କରିବି
ନୋହିଲେ ତାଙ୍କ ହାତେ ପ୍ରାଣ ହରାଇବି ।
ଏ ଦୁଇକଥାରୁ କଥାଏ ହେବ ମୋର
ସତ୍ୟକରି କହୁଛି ଦ୍ରୋଣ ମନେ କର ।
ଯେତେ ଲୋକଙ୍କୁ ମୁଁ ସହାୟ ଅଛି କରି
ପାଣ୍ଡବଙ୍କୁ ଜୟ ସେ ହୃଦେ ଛନ୍ତି ଧରି ।
ଭୀଷ୍ମଙ୍କ ପରା ରଥୀ ପାଣ୍ଡବଙ୍କ ମୃତ୍ୟୁ -
କହିଲେ କହିବାକୁ ଅଛି କେଉଁ ହେତୁ ।
ଆପଣଙ୍କ ଶିଷ୍ୟ ତ ଅଟେ ଅରଜୁନ
କିରୂପେ ହେବ ତାଠାରେ ବିମନ ।

ତୁମ୍ଭର ଦୁହିଙ୍କର ସ୍ନେହରୁ ପାଣ୍ଡବେ
ମାରି କୁରୁବଳକୁ ଚାଲିଲେ ଗରବେ ।
ଏକା କର୍ଣ୍ଣ ମୋର ଜୟକୁ ବିଚାରି
ଯୁଝୁଅଛି ଶକତି ଅନୁରୂପ କରି ।
ଜୟଦ୍ରଥ ଭୂରିଶ୍ରବା ଯେ ଶୂରସେନ
ଅଭୀଷାହା ବଶାତି ହୋଇଲେ ନିଧନ ।
ମୁଁ ଆଉ ଜୀଇଥାଇ କରିବିଟି କିସ
ନାହିଁ ମୋର ଡର ହେ ପାଣ୍ଡବେ କଲେ ରୋଷ
ପାଣ୍ଡୁ ପୁତ୍ରମାନଙ୍କର ତ ଗୁରୁ ତୁମ୍ଭେ
ଅନୁଜ୍ଞା ଦିଅ ତାଙ୍କୁ ଯୁଝିବୁଁଟି ଆମ୍ଭେ ।

•

## ଦ୍ରୋଣଙ୍କର ଦୁର୍ଯ୍ୟୋଧନ ପ୍ରତି ବାକ୍ୟ

ଧୃତରାଷ୍ଟ୍ର ବୋଇଲେ ମରନ୍ତେ ସିନ୍ଧୁନୃପ
ହେଲା କି ନାହିଁ ହେ ସଞ୍ଜୟ ତୁମ୍ଭ ବାପ ।
ଦୁର୍ଯ୍ୟୋଧନ ଦ୍ରୋଣଙ୍କୁ ନିଷ୍ଠୁର ବଚନ
କହିଲା, କି କହିଲେ କୁମ୍ଭଙ୍କ ନନ୍ଦନ ।
ଏହିମାନ ଶୁଣିବା ପାଇଁ ମୋର ଇଚ୍ଛା
ହେଉଅଛି, କହ ହେ ମନ୍ତ୍ରିକୁଳମଣ୍ଡା ।
ସଞ୍ଜୟ ବୋଇଲେ ପୁଚ୍ଛିଲ ଯା ରାଜନ
କହିବା ଭଲ କରି ତାହା ଏବେ ଶୁଣ ।
ଭୂରିଶ୍ରବା ଜୟଦ୍ରଥ ସମରେ ହତ
ହୁଅନ୍ତେ ତୁମ୍ଭ ସେନା ହୋଇଣ ତରସ୍ତ ।
ମନେ କଲେ ଦୁର୍ଯ୍ୟୋଧନର ବୁଦ୍ଧି କଞ୍ଚା
ବସିବା ଆମ୍ଭେ ସର୍ବେ ଯମରାଜା ମଞ୍ଚା ।
ଦ୍ରୋଣ ତୁମ୍ଭ ପୁଅଙ୍କ କ୍ରୂର ବାଣୀ ଶୁଣି
ମୁହୂର୍ତ୍ତେ ଧ୍ୟାନ କରି କହିଲେ ତ ବାଣୀ ।
ମୁଁ ତ ପୂର୍ବୁ ତୁମ୍ଭଙ୍କୁ କହିଛି ଅର୍ଜୁନ -
ସଙ୍ଗତେ କରି ନ ପାରିବି ଆୟୋଧନ ।
ତାହା ଜାଣିଣ ମୋତେ ବଚନରେ ପୀଡ଼ା
ଦେଉଛ ହେ ନୃପ ଆଗରେ ହୋଇ ଛିଡ଼ା ।
ଯେତେ ମହାରଥୀ ଆଣିଛ ଗୋଟିଆଇ
ଅର୍ଜୁନଙ୍କ ବଳକୁ ଜାଣନ୍ତିଟି ନାହିଁ ।
ଅବଧ ଭୀଷ୍ମେ ଯା ଶିଖଣ୍ଡୀ କଲା ବଧ
ଅର୍ଜୁନ ବଳ ପାଇ ନୋହିଲା କି ବୋଧ ।
ସେହି ଦିନରୁ ଆମ୍ଭେ କରିଅଛୁଁ ମନେ
ମରିବ ତୁମ୍ଭେମାନେ ପାର୍ଥ-କାଣ୍ଡମୁନେ ।
ତିନିଲୋକ ଯାକରେ ଭୀଷ୍ମ ବଳୀୟାର
ବୋଲି ଦୁର୍ଯ୍ୟୋଧନ ମନରେ ଥାଏ ମୋର ।
ସେ ଭୀଷ୍ମ ତ ଶୋଇଲେ ଶରଶଯ୍ୟା କରି
କେ ହୋଇ ପାରିବ ହେ ତୁମ୍ଭ ରକ୍ଷାକାରୀ ।

ଶକୁନିର ପଶାକାଠି ତ ଏବେ ବାଣ
ହୋଇ ଘେନୁଅଛି ହେ ଆମ୍ଭର ପରାଣ ।
ବିଦୁରଙ୍କ ବାକ୍ୟ ନ ଘେନିବାରୁ ତୁମ୍ଭେ
ଜାଣିଅଛୁଁ ତ ନାଶିଯିବୁଁ ବୋଲି ଆମ୍ଭେ ।
ସୁହୃଦଙ୍କ ମତ ନ ଘେନି ନିଜ ମତ
ଯେ କରେ ସେ ହୋଏଟି ଯମ-ପୁରେ ଗତ ।
ସଭାରେ ପାଣ୍ଡବ-ଭାର୍ଯ୍ୟା କୃଷ୍ଣାଙ୍କୁ ଆଣି
ଛିଡ଼ାକରି ଝିଙ୍କିଲ ତାଙ୍କ ବାସଶ୍ରେଣୀ ।
ଏ କଥା ତୁମ୍ଭର କି ହୋଇଲା ଯୁକତ
ନ ଯିବ ନାଶ ଯିବ କିଏ ସେ କହ ତ ।
ସେହି ପାପର ଫଳ ଫଳିବାରୁ ରାୟେ
ଜାଣିଛୁ ଯମଦଣ୍ଡ ପାଇବଟି କାୟେ ।
ପାଣ୍ଡବଙ୍କୁ ଅଜିନ ପିନ୍ଧାଇ ବନକୁ
ପଠିଆଇ ଦେବାର ଆଣ ହେ ମନକୁ ।
ଧର୍ମକୁ ଚାହିଁ ତ ରହିଲେ ପାଣ୍ଡୁସୁତେ
ତୁମ୍ଭେ ଏବେ କିପାଁ ହେ ଚିନ୍ତା କର ଚିତ୍ତେ ।
ପାଣ୍ଡବେ ତ ଧାର୍ମିକଙ୍କରେ ଅଗ୍ରସର
କରିବ ତାଙ୍କ ଦ୍ରୋହ କହ କେଉଁ ନର ।
ମୋର ତ ସେମାନେ ଅଟନ୍ତି ପୁଅ ପରି
ତାଙ୍କଠାରୁ ସ୍ନେହ ମୁଁ ଛାଡ଼ିବି କିପରି ।
ଧୃତରାଷ୍ଟ୍ରଙ୍କର ସମ୍ଭତେ ଦୁର୍ଯ୍ୟୋଧନ
ଶକୁନି ତୁଲେ ଲୋଡ଼ି ଆଣିଲେ ଯୋଧନ ।
ପୁଣି ଅର୍ଜୁନଙ୍କ ସୁତକୁ ରଥୀଯାକ
ବେଢ଼ି କରି ମାଇଲ ଛାଡ଼ିଣ ବିବେକ ।
ଇଚ୍ଛାସୁଖେ ଅନର୍ଥ ଆଣିଛ ତ ଲୋଡ଼ି
ଯାଉଛ କିପାଁ ରାୟେ ଶୋକ-ଜଳେ ବୁଡ଼ି ।
କର୍ଣ୍ଣ ଅଶ୍ୱତ୍ଥାମା ଘେନି ତ ଯୁଝୁଥିଲ
କିପାଁ ଜୟଦ୍ରଥଙ୍କ ପ୍ରାଣ ନ ରଖିଲ ।
ସବୁ ନୃପତିଏ ଜୟଦ୍ରଥ ରକ୍ଷା-
ପାଇଁ ସମର କରୁଥିଲେ କରି କକ୍ଷା ।
ରଖି କିପାଇଁ ନ ପାରିଲେ ଜୟଦ୍ରଥ
ଏହା ମୋ ଆଗରେ କହ ତ ନରନାଥ ।
ପାଞ୍ଚାଳଯାକକୁ ମୁଁ ଯମ ନଗରକୁ
ଦେଖାଇବି ପାଉଛି ମୋହର ମନକୁ ।
ଜୟଦ୍ରଥ ରାଜାକୁ ନ ପାରିଣ ରଖି
ବଚନରେ ମୋତେ କରୁଛ କିପାଁ ଦୁଃଖୀ ।
ଭୀଷ୍ମଙ୍କର ସୁବର୍ଣ୍ଣ ଧ୍ୱଜକୁ ନ ଦେଖି
ଜୟରେ ହେ ରାୟେ ରଖିଛ କିପାଁ ଆଖି ।
ମହାରଥୀମାନଙ୍କ ମଧ୍ୟେ ଜୟଦ୍ରଥ
ଭୂରିଶ୍ରବା ଦୁହେଁ ତ କଟାଇଲେ ମାଥ ।

ଆଉ ରଥୀମାନେ ଯେ କିରୂପେ ଜୀଇବେ
କହିଲେ ତ ବୋଧ ହେ ହେଉ ନାହିଁ ଲବେ ।
ନୟନେ ଚାହୁଁଥିଲ ଭୀଷ୍ମଙ୍କୁ ଅର୍ଜ୍ଜୁନ
ପକାଇ ଦେଲେ ତଳେ ନ ନେଇ ଜୀବନ ।
ସେହି ଦିନୁଁଟି ମନେ କରିଅଛି ମୁହିଁ
ଧୃତରାଷ୍ଟ୍ର ପୁଅକୁ ମହୀ ଯୋଗ ନାହିଁ ।
ସୃଞ୍ଜୟ ପାଞ୍ଚାଳକୁ ନ ମାଇଲେ ମୁହିଁ
କହୁଛି କବଚକୁ ଫିଟାଇବି ନାହିଁ ।
ବୋଲୁଛି ମୋ ପୁତ୍ରେ କହିବ ଦୁର୍ଯ୍ୟୋଧନ
ଧର୍ମ ଅର୍ଥ କାମରେ ଦେଇଥିବ ମନ ।
ଶକତି ଅନୁରୂପେ ବ୍ରାହ୍ମଣଙ୍କୁ ପୂଜା
କରି ହରୁଥିବ ତାଙ୍କର ନିତି ମଜା ।
ବ୍ରାହ୍ମଣମାନଙ୍କ ବିପ୍ରିୟ କରିବାର
ଥାଉ, ମନରୁ ତାହା କରିଥିବ ଦୂର ।
ତୁମ୍ଭ ବାକ୍ୟ-ଶଲ୍ୟରେ ପୀଡ଼ା ପାଇ ମୁହିଁ
ଯାଉଅଛି ଜୀବନ ଛାଡ଼ି ଯୁଝିବଇଁ ।
ତୁମ୍ଭର ଯେବେ ବଳ ଅଛି ଦୁର୍ଯ୍ୟୋଧନ
ଦେଖାଇ କର ହେ ପାଣ୍ଡବେ ଆୟୋଧନ ।
ରାତ୍ରିରେ ହେଲେ ଯୁଦ୍ଧ ଛାଡ଼ିବି ମୁଁ ନାହିଁ
ତିଆରି କର ସୈନ୍ୟ ଯାଇ ନରସାଇଁ ।
ଏହା କହି ଦ୍ରୋଣ ସୃଞ୍ଜୟ ପାଞ୍ଚାଳଙ୍କୁ
ବାହାରି ଗଲେ ରଥ ଚଢ଼ି ମାରିବାକୁ ।
ସୂର୍ଯ୍ୟ-କରେ ନକ୍ଷତ୍ର ଲୁଚିଲା ପରାୟେ
ଦ୍ରୋଣ-ତେଜେ ଲୁଚିଲେ ପାଣ୍ଡୁ ସୈନ୍ୟରାୟେ
ଦ୍ରୋଣଙ୍କ ଏ ବଚନ ଶୁଣି ଦୁର୍ଯ୍ୟୋଧନ
କ୍ରୋଧରେ ଭାବିଲେ କରିବା ଆୟୋଧନ ।
କର୍ଣ୍ଣଙ୍କ ସମୀପରେ ଯାଇ ଯେତୁ ହେଲେ
କର୍ଣ୍ଣଙ୍କୁ ଚାହିଁଣ ସେ ଏମନ୍ତ କହିଲେ ।
ଦେବତାରେ ଅଭେଦ୍ୟ ଦ୍ରୋଣଙ୍କର ବ୍ୟୂହ
ଭେଦିଗଲା ତାହା କିରୀଟୀ କରି କୋହ ।
ଦ୍ରୋଣ ଆଦି ତୁମ୍ଭେମାନେ ଯେ ଥିଲେ ଚାହିଁ
ଦେଲା ତ ଜୟଦ୍ରଥ ନୃପଙ୍କୁ ବଢ଼ାଇ ।
ସିଂହ ଯେଉଁ ରୂପରେ ମାରଇ ମୃଗକୁ
ସେରୂପେ ମାଇଲା ସେ ମୋ ପଟ ରାଜାଙ୍କୁ ।
ବଡ଼ ଯତ୍ନ କରି ମୁଁ କଲେ ହେଲେ ଯୁଦ୍ଧ
କରି ପକାଇଲା ମୋ ସେନାଯାକ ବଧ ।
ଦ୍ରୋଣ ଯେବେ ପାର୍ଥଙ୍କୁ ନ ଦିଅନ୍ତି ଛାଡ଼ି
ମୋ ସୈନ୍ୟ-ଗଣ୍ଡି କାଣ୍ଡେ ପାରନ୍ତା କି ପୋଡ଼ି
ପ୍ରତିଜ୍ଞାର ପାରକୁ ପାଇଲା ଅର୍ଜ୍ଜୁନ
କରିଣ ଜୟଦ୍ରଥ ରାଜାର ନିଧନ ।

ଯୁଅାଇକି ନିଆଁ ହୋଇଣ ଯୁଦ୍ଧେ କାଣ୍ଡ
ବିନ୍ଧି ମୁଣ୍ଡ କାଟିଲା ଭଗ୍ନୀ ହେଲା ରାଣ୍ଡ ।
ମୁହିଁ ନିର୍ଲଜ୍ଜ ଜୀଇ ଅରଜିଲି ଏହା
ଧିକ ହେଉ କର୍ଣ୍ଣ ହେ ମୋର ଧନୁବାହା ।
ଅର୍ଜ୍ଜୁନଠାରେ ପ୍ରିୟ ନିତ୍ୟ ଦ୍ରୋଣ ବହି
ଥିବାରୁ ଦ୍ୱାର ଛାଡ଼ିଦେଲେ ଅଙ୍ଗସାଇଁ ।
ଦ୍ରୋଣଙ୍କର ଏ କଥା ଜାଣିବା ପଣକୁ
ଗଛିଲା କି କର୍ଣ୍ଣ ହେ ବିଚାର ମନକୁ ।
ଅଭୟ ଦେଇ ସିନ୍ଧୁ ନୃପକୁ ଦୁଆର
ଛାଡ଼ିଦେଲେ ପାର୍ଥଙ୍କୁ ଏ କେଉଁ ବିଚାର ।
ଘରକୁ ଯାଅ ବୋଲି ବୋଲିଥିଲେ ଦ୍ରୋଣ
ନ ପାଆନ୍ତେ ମୋହର ଯୁଆଇଁ ମରଣ
ଦ୍ରୋଣଙ୍କ ବୁଦ୍ଧିରେ ପଡ଼ି ମୁଁ ଜୟଦ୍ରଥ
ରାଜାଙ୍କୁ ରଖିବାରୁ ଗଲା ତାଙ୍କ ମାଥ ।
ଆମ୍ଭେମାନେ ଦେଖୁଥିଲାଇଁ ନୟନରେ
ଚିତ୍ରସେନ ଗଲେ ଯମଙ୍କ ସଦନରେ ।
ଚିତ୍ରସେନ ତୁଲେ ମୋ ସବୁ ଭାଇମାନେ
ସଙ୍ଗ ହୋଇଲେ ଭୀମସେନ କାଣ୍ଡମୁନେ ।
କର୍ଣ୍ଣ ବୋଇଲେ ଆହେ ନୃପତି-ମଣ୍ଡନ
ଦୁର୍ଯ୍ୟୋଧନ ନୁହ କହୁଛି ଦୁଃଖମନ ।
ସାମର୍ଥ୍ୟକୁ ଚାହିଁଣ ଦ୍ରୋଣ ମହାରଥୀ
ଯୁଝୁଥିଲେ ତାଙ୍କୁ ପଡ଼ିଲା ବଳି ବ୍ୟଥା ।
ଦ୍ରୋଣଙ୍କୁ ଅତିକ୍ରମି ଅର୍ଜ୍ଜୁନ ଯା ଗଲେ
ଦ୍ରୋଣଙ୍କ ଲବେ ଦୋଷ ନାହିଁ ଜାଣ ଭଲେ ।
ଅର୍ଜ୍ଜୁନ କୁଶଳ ଚତୁର ଯୁବା ଶୂର
କୃତାସ୍ତ୍ର ଶୀଘ୍ର ପରାକ୍ରମୀ ମହାବୀର ।
ଗାଣ୍ଡୀବ ମହାଧନୁ ଧରି କରି ହାତେ
ମାଡ଼ି ବସିଥାଏ ଯେ କପିଧ୍ୱଜ ରଥେ ।
ଅରଜୁନ ଘୋଡ଼ାଏ ପବନ ବେଗରେ
ଚଳନ୍ତି କୃଷ୍ଣଙ୍କର ବାହିବା ଭଙ୍ଗୀରେ ।
ଦ୍ରୋଣ ତ ବୁଢ଼ା ହୋଇ ଗଲେଣି ରାଜନ
ଦେଖୁଛ ଦେହରେ ହେଲେଣି ଚର୍ମ ଶୀର୍ଣ୍ଣ ।
ବାହୁ ଦୁହିଙ୍କର ବଳ ତା ତାଙ୍କ ଊଣା
ବୁଢ଼ା ସକାଶରୁ ସେ ହୋନ୍ତି ବୁଦ୍ଧିବଣା ।
ଅର୍ଜ୍ଜୁନ ଦ୍ରୋଣଙ୍କର ଏତେ ତାରତମ୍ୟ
ଅଛି ମନେ ବିଚାରି ନୃପତି ଉତ୍ତମ ।
ପାର୍ଥ ବଳିଯାଇ ଯିବାରୁ ଯୁଦ୍ଧେ ତାଙ୍କୁ
ଦୋଷ ନାହିଁ ବୋଲି ମୁଁ କହୁଛି ତୁମ୍ଭଙ୍କୁ ।
ଦ୍ରୋଣଙ୍କରେ ଜୟ ହେବାର ଅରଜୁନ
ବଡ଼ କଷ୍ଟ ବୋଲି ରାଜନ ମନେ ଘେନ ।

ଦଇବ ଯାହା କରୁଥାଏ ତାହା ହୋଏ
ଏଥିକି କେତେ ବସି ବିଚାରୁଛ ରାୟେ ।
ଯତନ କରି ଆମ୍ଭେ କରିଥିଲୁଁ ଯୁଦ୍ଧ
ଅରଜୁନ କଲାଟି ଜୟଦ୍ରଥ ବଧ ।
ତୁମ୍ଭେ ମଧ୍ୟ ଯୁଦ୍ଧରେ ହୋଇ ଜାଗରୁକ
ବିନ୍ଧୁଥିଲା ବାଛିଣ ଉତ୍ତମ ଶାୟକ ।
ଅରଜୁନ ତେବେ ହେଲେ ତ ଗଲା ଜିଣି
ଦଇବରେ ପଉରୁଷ ହେ ନରମଣି ।
କରମ କରିବାର ପୁରୁଷ ଆୟତ୍ତ
ନିଷ୍ଫଳ ଫଳସବୁ ଦଇବର କୃତ ।
ବ୍ୟବସାୟ କରି କରିବ ସିନା କାର୍ଯ୍ୟ
କି କରିବ ହେ ଲୋକ ହୋଇଲେ ଅକାର୍ଯ୍ୟ ।
ବିଷ ଦେଇଣ ଜଉଘରରେ ପୂରାଇ
ପୋଡ଼ିଦେଲେ ତାଙ୍କୁ, ଭୋଗ ସେ କଲେ ଜୀଇ
ଏ ବାହାରେ ଜୁଅ ଖେଳିଣ ଅରଣ୍ୟକୁ
ଖେଦିଲ, କି କରିବ ଦେବ ରଖିବାକୁ ।
ମାରିବା ଇଚ୍ଛା ଥିଲେ ଯୁଝ ପାଣ୍ଡବଙ୍କୁ
ଆଉ ନାହିଁ ଆହେ ଗାନ୍ଧାରୀଦେବୀବସି ।
ସେହିରୂପେ ତୁମ୍ଭର ଦୁଷ୍କୃତ ସ୍ୱପନେ
ଶୁଣି ନାହିଁ ତ ମୁହିଁ ଦୁର୍ଯ୍ୟୋଧନ କାନେ ।
ସୁକୃତ ଦୁଷ୍କୃତକୁ ଦଇବ ପ୍ରମାଣ
ବୋଲିକରି ଜାଣ ହେ ଦୁର୍ଯ୍ୟୋଧନ ରାଣ ।
ଅଳ୍ପ ବଳ ଘେନି ପାଣ୍ଡବେ ତୁମ୍ଭ ବଳ
ଯା ନାଶିଲେ ଆମ୍ଭର ମନ୍ଦ ହେ କପାଳ ।

•

## ଦୁର୍ଯ୍ୟୋଧନଙ୍କର ଶତ୍ରୁ ସୈନ୍ୟ ବିନାଶ

ଏହି ସମୟରେ ଯେ ପାଣ୍ଡବ ସଇନ
ଆସନ୍ତେ ପୂରିଗଲା ଧୂଳିରେ ଗଗନ ।
ତୁମ୍ଭ ଯୋଦ୍ଧାମାନେ ତା ଦେଖିଣ ପାଲଟି
ହୋଇଲେ ଶକ୍ତି ଗଦାମାନଙ୍କେ ପିଟାପିଟି ।
କୁରୁ ପାଞ୍ଚାଳଙ୍କର ହୁଅନ୍ତେ ମରଣ
ବଢ଼ିଲା ଯମରାଷ୍ଟ୍ର ହୋଇଣ ଦ୍ୱିଗୁଣ ।
ଶୂରମାନେ ଶୂରମାନଙ୍କୁ କ୍ଷୟ କରି
ଦେବାରୁ ବସିଲେ ସେ ଯମପୁରେ ମାଡ଼ି ।
ରଥୀମାନେ ରଥୀମାନଙ୍କ ସଙ୍ଗତରେ
ଯୁଝନ୍ତେ ମଣ୍ଡିହେଲେ ରକତ ଅଙ୍ଗରେ ।
ହାତୀମାନେ ହାତୀକି ପ୍ରହାରନ୍ତି ଦନ୍ତ
ଯୁଦ୍ଧ କରିଲେ କଡ଼ାକଡ଼ି ହୋଇ ଅନ୍ତ ।
ସିପାହିଏ ସିପାହିମାନଙ୍କ ପାଶକୁ
ଧୂଆଁଇ ଘୋଡ଼ା ପ୍ରହାରିଲେ ସେ ପ୍ରାସକୁ ।
ପାଇକେ ଫରୀ ଖଣ୍ଡା ଧରି ମରାମରି
ହୋଇ ରଣଦାଣ୍ଡେ ଶୋଇଲେ ଦଣ୍ଡଧାରୀ ।
ଗୋତ୍ର ନାମ ଉଚ୍ଚାରି କରିବାରୁ ରଣ
ଜଣାଗଲା ରାଜନ ଯେ ପର ଆପଣ ।
ଦଶଦିଗ ଯାକ ହେବାରୁ ଶରେ ରୁନ୍ଧି
ହେଲା ସବୁଙ୍କରି ଅନ୍ଧାରେ ନେତ୍ର ବନ୍ଦି ।
ଜୟଦ୍ରଥ ବଧରେ ଦୁର୍ଯ୍ୟୋଧନ ଦୁଃଖୀ
ହୋଇ କ୍ରୋଧରେ ରଙ୍ଗ କରି ଦୁଇଆଖି ।
ମରିବା କଥାଟିକି ବରଣ କରିଣ
ସୈନ୍ୟ ମଧ୍ୟେ ପଶି କଲେ ଯେ ଘୋରରଣ ।
କୁରୁ ପାଣ୍ଡବଙ୍କ ଅନ୍ୟୋନ୍ୟରେ କ୍ରୋଧ
ପଡ଼ନ୍ତେ ବଳି ରାୟେ ହେଲା ବଡ଼ ଯୁଦ୍ଧ ।
ମଧ୍ୟାହ୍ନ ସୂର୍ଯ୍ୟ ପ୍ରାୟେ ଦୁର୍ଯ୍ୟୋଧନ ତେଜ
ବୁଜାଇଲା ସବୁରି ନୟନ-ସରୋଜ ।
ଦୁର୍ଯ୍ୟୋଧନଙ୍କରେ ହୋଇଣ ପରାଭୂତ
ପାଞ୍ଚାଳେ ପଳାଇଲେ ହୋଇଣ ତରସ୍ତ ।
ଦୁର୍ଯ୍ୟୋଧନ କାଣ୍ଡରେ ପାଣ୍ଡବଙ୍କ ସେନା -
ମାନେ ମରିବାର ତ ନ ଗଲା କଳନା ।
ତୁମ୍ଭ ପୁଅ ଥରାଇ ଯୁଝ କ୍ରୋଧେ କାୟେ
ଯେଉଁରୂପେ ସେରୂପେ ନାହାନ୍ତି ଯୁଝି ରାୟେ ।
ପାଣ୍ଡୁସେନା ବନ-ନଳିନ ଦୁର୍ଯ୍ୟୋଧନ
ମତ୍ତହସ୍ତୀ ପରାୟେ କଲେ ମରଦନ ।
ପାଣ୍ଡୁସେନାକୁ ହତ ଦେଖିଣ ପାଞ୍ଚାଳେ
ଧାଇଁଲେ ସେ ଯୁଦ୍ଧେ ଭୀମଙ୍କୁ ଘେନି ତୁଲେ
ସେମାନଙ୍କୁ ଦେଖି ତୁମର ଦୁର୍ଯ୍ୟୋଧନ
କ୍ରୋଧଭରେ ଥରାଇ ଦେଇ ଅପଘନ ।
ଭୀମଙ୍କୁ ଦଶ ଯୁଧିଷ୍ଠିରଙ୍କୁ ସପତ
ସାତ୍ୟକିଙ୍କି ପାଞ୍ଚ ଯେ ଶିଖଣ୍ଡୀଙ୍କି ଶତ ।
ତିନି ତିନି ଯେ ମାଦ୍ରୀତନୟ ଦୁହିଙ୍କି
ତିନି ତିନି ଦ୍ରୌପଦୀଙ୍କର ସନ୍ତତିଙ୍କି
କେକୟ ଚେଦି ଘଟୋତ୍କଚକୁ ଅନେକ
ଧୃଷ୍ଟଦ୍ୟୁମ୍ନଙ୍କୁ ଯେ ସତୁରି ଶାୟକ ।
ବିନ୍ଧି ତିନି ତିନି ବିରାଟ ଦ୍ରୁପଦଙ୍କୁ
ବିନ୍ଧିଲେ ପୁଣି ସେ ଦେଖାଇ ପ୍ରତାପକୁ ।
ଶତସଂଖ୍ୟା ଯୋଦ୍ଧାମାନଙ୍କର ପରାଣ
ଘେନିଲେ ଦୁର୍ଯ୍ୟୋଧନ ବରଗିଣ ବାଣ ।
ଏହି ସମୟରେ ସେ ଯୁଧିଷ୍ଠିର ନୃପ
ପାଇଗଲେ ଆସି କରେ ଧରିଣ ଚାପ ।

ସେ ଦୁଇ ମହାବୀର ସମାଗମ ହୋଇ
ଯୁଦ୍ଧକଲେ ଜୟ ଆଶାରେ ମନ ଦେଇ ।
ଭାଲିକାଣ୍ଡେ ଯୁଧିଷ୍ଠିରଙ୍କ କରଚାପ
କାଟିଲେ ତୁମ୍ଭ ପୁଅ ଦେଖାଇ ପ୍ରତାପ ।
ଯୁଧିଷ୍ଠିର ଗଣ୍ଡିକି ଲଗାଇ ଦଶଗୋଟି
ମାରଗଣ ବିନ୍ଧିଲେ ବାଛି ଗୋଟି ଗୋଟି ।
ସେ କାଣ୍ଡ ତାଙ୍କ ହାତୁଁ ଫିଟି ଅତିଚାଣ୍ଡେ
ନୃପ ଗଣ୍ଡ ଫୋଡ଼ି ପଡ଼ିଲେ ରଣଦାଣ୍ଡେ ।
ତୁମ୍ଭ ପୁଅ ଶରରେ ଯୁଧିଷ୍ଠିର ଗଣ
ପୀଡ଼ା ପାଇ ଧଇଲେ ଆନ ଶରାସନ ।
କେହି ନିବାରିବାର ନୁହଇ ଯେ କାଣ୍ଡ
ସେ କାଣ୍ଡକୁ ବିନ୍ଧିଲେ କମ୍ପାଇ କୋଦଣ୍ଡ ।
ଯୁଧିଷ୍ଠି ରାଜାଙ୍କ ସେ କାଣ୍ଡଘାତ ପାଇ
ବସିଲେ ଦୁର୍ଯ୍ୟୋଧନ ତହୁଁ ମୋହ ଯାଇ ।
ପାଞ୍ଚାଳେ ତାହା ଦେଖିହୋଇ ମହାତୋଷ
ବୋଇଲେ ମଲେ ଦୁର୍ଯ୍ୟୋଧନ ନରଈଶ ।
ସେ କାଳରେ ଏକା ଶୁଭିଲା କାଣ୍ଡ ରଡ଼ି
ମିଳିଲା ରାଜନ ପ୍ରଳୟ ଘଡ଼ଘଡ଼ି ।
ସେହିଠାବକୁ ଭରଦ୍ୱାଜଙ୍କ ନନ୍ଦନ
ଆସିଲେ କରିବାକୁ ମହାଆୟୋଧନ ।
ଦୁର୍ଯ୍ୟୋଧନରାଜା ଏ ସମୟେ ଚେତା
ପା?।ନ୍ତେ ଛାଡ଼ିଦେଇ ମନୁ ମୋହ ଚିନ୍ତା ।
ଧନୁ ଧରି ଯୁଧିଷ୍ଠିରଙ୍କ ସମୀପକୁ
ଧାଇଁଲେ ଯୁଝିବାକୁ କରିଣ କୋପକୁ ।
ତାହା ଦେଖି ପାଞ୍ଚାଳେ ଯୁଧିଷ୍ଠିର ନୃପ
ସମୀପରେ ରହିଲେ ଧରି ଶରଚାପ ।
ଦୁର୍ଯ୍ୟୋଧନ ରାଜାଙ୍କ ରଖିବାକୁ ପ୍ରାଣ
ତାଙ୍କ ପାଖେ ରହି ଯୁଝିଲେ ଗୁରୁ ଦ୍ରୋଣ ।
ପ୍ରଳୟସୂର୍ଯ୍ୟ ମେଘ ନାଶକଲା ପ୍ରାୟେ
ନାଶକଲେ ପାଞ୍ଚାଳବଳକୁ ସେ ରାୟେ ।
ତୁମ୍ଭ ଲୋକମାନଙ୍କ ସଙ୍ଗେ ପାଣ୍ଡୁ ଲୋକ
ଯୁଦ୍ଧ କଲେ ମରିବା କରିଣ ବିବେକ ।
ଧୃତରାଷ୍ଟ୍ର ବୋଇଲେ ଦ୍ରୋଣେ ପାଣ୍ଡୁ ସୁତେ
କି ରୂପେ ଯୁଦ୍ଧ କଲେ କହ ମୋ ଅଗ୍ରତେ ।
ଦ୍ରୋଣଙ୍କ ଦକ୍ଷିଣ ଉତ୍ତରେ କେତେ ନର
ରହିଲେ ହେ ଜଗି ସଞ୍ଜୟ ମନ୍ତ୍ରୀବର ।
ଅଗ୍ନିପରି ଦ୍ରୋଣ ତ ଜଳୁଥିଲେ ରଣେ
କେ ଲିଭାଇଲା ତାଙ୍କୁ କର ଜଳ-ବାଣେ ।
ସଞ୍ଜୟ ବୋଇଲେ ସାୟାହ୍ନ ସମୟରେ
ମଲେ ତ ଜୟଦ୍ରଥ ଅର୍ଜୁନ ହାତରେ ।

ପୁଣି ଦୁଇସେନା ପାଲଟି କଲେ ଯୁଦ୍ଧ
ଏହେତୁ ଅର୍ଜୁନ ସାତ୍ୟକି ହୋଇ କ୍ରୋଧ ।
ଦ୍ରୋଣଙ୍କ ସମୀପକୁ ବୁହାଇଲେ ରଥ
କମ୍ପାଇ ଦେଇ ନାଦେ ଯୁଦ୍ଧଭୂମି ପଥ ।
ଯୁଧିଷ୍ଠିର ଭୀମ ଦ୍ରୋଣଙ୍କ ଯୁଦ୍ଧ ଦେଖି
ଧାଇଁଲେ ସେନା ଧରି ଧନୁଶର ଯୋଖି ।
ନକୁଳ ସହଦେବ ବିରାଟ କେକୟ
ଧୃଷ୍ଟଦ୍ୟୁମ୍ନ ମତ୍ସ୍ୟ ବିରାଟ ଯେ ଶାଲ୍ୱେୟ ।
ଏ ସମସ୍ତେ ଦ୍ରୋଣ ବୁଢ଼ାଙ୍କୁ ମାରିବାକୁ
ଧାଇଁଲେ ଘେନି ସଙ୍ଗେ ସଇନ ସଖାକୁ ।
ଦ୍ରୌପଦେୟ ଘଟୋତ୍କଚ ବିନ୍ଧିଣ ବାଣ
ଗଲେ ଦ୍ରୋଣଠାକୁ କରିବାପାଇଁ ରଣ ।
ଛସହସ୍ର ପ୍ରଭଦ୍ର ପାଞ୍ଚାଳେ ଶିଖଣ୍ଡୀ
ବୀରଙ୍କୁ ଆଗ କରି ଧାଇଁଲେ ଦରାଣ୍ଡି ।
ଏହି ସମୟରେ ଯେ ଭୀରୁ ଭୟଙ୍କର
ରଜନୀ ଚୌଦିଗେ ଘୋଟିଲା ନରବର ।
ମୁଖମାନଙ୍କରେ ଜ୍ୱାଳା କରିଣ ବାନ୍ତି
ରାତି ଦେଖି ରଡ଼ିଲେ ବିଲୁଆଏ ଅତି ।
ଉଲ୍ଲୁକମାନେ କରି ମହା କୋଳାହଳ
ରଡ଼ିଲେ ଆକାଶେ ଦେଖାଇ ପକ୍ଷବଳ ।
ମୃଦଙ୍ଗ ଭେରୀ ଶଙ୍ଖ ଶବଦେ ମହୀଯାକ
ପୂରିଗଲା ସେକାଳେ ହସ୍ତିନାନାୟକ ।
ସୃଞ୍ଜୟମାନଙ୍କ ତୁଲରେ ଅଶ୍ୱତ୍ଥାମା
ପିତା ଯୁଦ୍ଧ କଲେ ହେ ଦେଖାଇ ଗାରିମା ।
ସୈନ୍ୟଙ୍କ ପାଦଘାତେ ଉଡ଼ି ମହାଧୂଳି
ରହିଲା ସେ ଆକାଶମଣ୍ଡଳରେ ରଡ଼ି ।
ପୁଣି ତ ରହିଥିଲା ଘୋଟି ତମ ଦିଶ
ଏଣୁ ନ ଦିଶିଲା ହେ ନୃପ କିଛି ଦୃଶ ।
କେବଳ ଅସ୍ତ୍ରଙ୍କର ପଡ଼ିବା ଶବଦ
ଶୁଭି କଲା କର୍ଣ୍ଣମାନଙ୍କୁ ଅପ୍ରମୋଦ ।
ପର ଆପଣାରେ ଯେ ନୋହି ଜଣାଜଣି
ଉନ୍ମତ୍ତ ହୋଇ ଲୋକେ ହେଲେ ହଣାହଣି ।
ପଡ଼ିବାରେ ରକ୍ତ ମହୀରେ କ୍ଷଣକରେ
ଧୂଳି ଶାନ୍ତି ହେଲା ଦେଖିଲୁଁ ନୟନରେ ।
ସୁବର୍ଣ୍ଣର କବଚ ସୁବର୍ଣ୍ଣ ଟୋପର
ଜ୍ୟୋତିରେ ଅନ୍ଧକାର ହେଲା ମଧ ଦୂର ।
ମଣି ରତ୍ନେ ଭୂଷିତହୋଇଥିଲେ ଲୋକ
ଭାଙ୍ଗିଲେ ସେ ତହିଁରେ ନକ୍ଷତ୍ର ଆଲୋକ ।
ବଜ୍ର ପରି କେବଳ ଗର୍ଜି ଶସ୍ତ୍ରରାଜି
ଯୋଦ୍ଧାଙ୍କର ଦେହମାନଙ୍କେ ଗଲେ ମଜ୍ଜି ।

କରି -ଘନେ ସୁବର୍ଣ୍ଣ ଭୂଷଣେ ବିଦ୍ୟୁତ
ଛବିଙ୍କି ନିନ୍ଦିଲେ ହେ ଅମ୍ବିକାଙ୍କ ସୁତ ।
ଭୁଷୁଣ୍ଡି ଶକତି ଗଦା ତୋମର ପଟ୍ଟିଶ
ପଡ଼ନ୍ତେ ଅଗ୍ନି ପରି ଦେଖିଲାଟି ଦୃଶ୍ୟ ।
ରଥ ଜଳଦ ଦୁର୍ଯ୍ୟୋଧନ ପୂର୍ବବାତ
ବାଦିତ୍ରଧ୍ୱନି ଘୋଷ କୋଦଣ୍ଡ ବିଦ୍ୟୁତ ।
ଖଡ଼ଗ ଶକ୍ତି ବଜ୍ର ପାଣ୍ଡବ ଦ୍ରୋଣ ଇନ୍ଦ୍ର
ସେନାଙ୍କ ଶରପାତ ଜଳବୃଷ୍ଟି ସାନ୍ଦ୍ର ।
ଏହିରୂପେ ସେ ଯୁଦ୍ଧ ବରଷାକୁ ପାଇ
ଗାଧୋଇଲେ ଯୋଦ୍ଧାଏ ବରଷାରେ ଯାଇ ।
ସେ ଯୁଦ୍ଧରେ ଯେତେ ଯୋଦ୍ଧାଏ ଦ୍ରୋଣତୁଲେ
ଯୁଝିଲେ ସେ ଦେଖିଲେ ଯମେ ଯାଇ ଭଲେ ।
ସେ ଦ୍ରୋଣଙ୍କ ଯୁଦ୍ଧ ନ ସହି ମୁହଁ ମାଡ଼ି
ପଳାଇଲେ ପଛକୁ ଲାଜକୁ ଦେଇ ଛାଡ଼ି ।

•

## ରାତ୍ରି ଯୁଦ୍ଧ

ଧୃତରାଷ୍ଟ୍ର ବୋଇଲେ ସୃଞ୍ଜୟକୁ ଦ୍ରୋଣ
କରନ୍ତେ ରଣ ତୁମ୍ଭେ କି କଲ ବଖାଣ ।
ମୋ ପୁଅକୁ କହି ରଣକୁ ଦ୍ରୋଣ ଗଲେ
ଅରଜୁନ କହ ସେ କାଳରେ କି କଲେ ।
ଜୟଦ୍ରଥ ଭୂରିଶ୍ରବାଙ୍କର ବିନାଶ
ହୁଅନ୍ତେ ଦ୍ରୋଣ ଯୁଝିଗଲେ ବହି ରୋଷ ।
ମୋର ପୁଅ ଦୁର୍ଯ୍ୟୋଧନ କି ମନେ କଲା
ତାହା ତ ମୋତେ କିଛି ଗୋଚର ନୋହିଲା ।
ଦ୍ରୋଣଙ୍କର ଆଗେ ପଛରେ କିଏ ରଣ
କଲେ ଆହେ ସଞ୍ଜୟ ତା ସବୁ ବଖାଣ ।
ମୁଁ ମନେ କରୁଛି ଦ୍ରୋଣଙ୍କ ଶର ପାଇ
ଭୟେ କମ୍ପିଥିବେ ପାଣ୍ଡବ ପାଞ୍ଚଭାଇ ।
ପାଞ୍ଚାଳମାନଙ୍କ ମଧ୍ୟରେ ପଶି ଦ୍ରୋଣ
କିରୂପରେ ପଞ୍ଚତ୍ୱ ପାଇଲେ ତା ଜାଣ ।
ରାତି ଯୁଦ୍ଧରେ କାହା ବୁଦ୍ଧି-ଭେଳା ଧରି
କହ ତ ହେଲ ତୁମ୍ଭେ ରଣ-ସିନ୍ଧୁ ପାରି ।
କୁରୁ ପାଣ୍ଡୁଙ୍କର ସେନାଏ ହୋଇ ଜଣା
କିରୂପେ ଯୁଝିଲେ ସଞ୍ଜୟ ନୋହି ବଣା ।
ସଞ୍ଜୟ ବୋଇଲେ ହୁଅନ୍ତେ ରାତିଯୁଦ୍ଧ
ପାଣ୍ଡବେ ଯୁଝିଲେ ଦ୍ରୋଣଙ୍କୁ ବହି କ୍ରୋଧ ।
ଧୃଷ୍ଟଦ୍ୟୁମ୍ନଙ୍କର ସୁତଙ୍କ ତୁଲରେ
କେକୟଙ୍କୁ ମାଇଲେ ଦ୍ରୋଣ ଶାୟକରେ ।
ଦ୍ରୋଣଙ୍କର ଆଗରେ ଆସିଲା ଯେ ଯୁଝି
ଦଣ୍ଡାହୋଇ ଶୋଇଲା ପଡ଼ି ରଣମଝି ।

ଦ୍ରୋଣଙ୍କ ପରାକ୍ରମ ଦେଖି ଶିବିନୃପ
ଆସିଲେ ଦ୍ରୋଣଠାକୁ ଯୁଝି ଧରି ଚାପ ।
ଶିବିଙ୍କି ଦେଖି ଦ୍ରୋଣ ଦଶ ଲୋହଶର
ବିନ୍ଧିଲେ ରୋଷେ ଦେହ କରି ଥରଥର ।
ଶିବି ଦ୍ରୋଣ ଦେହେ ତିରିଶି କାଣ୍ଡ ମାରି
ଭାଲିକାଣ୍ଡେ ସାରଥି ମୁଣ୍ଡ ନେଲେ ହରି ।
ଦ୍ରୋଣ ତା ନ ସହି ସାରଥି ତୁଲେ ଘୋଡ଼ା
ମାରି କରି ଶିବିଙ୍କି ଯମ-ପୁରେ ଛଡ଼ା ।
କଳିଙ୍ଗ ନୃପ ସୁତ ଯୁଦ୍ଧରେ ବଡ଼ାଇ
ଦେଖାଇବାକୁ କଲା ଭୀମଙ୍କୁ ଲଢ଼ାଇ ।
ପୂର୍ବୁତ ତାଙ୍କ ବାବୁ ହୋଇଥିଲେ ହତ
ଏଣୁ କ୍ରୋଧାଗ୍ନିରେ ସେ ଜାଳି ଦେଲା ଚିତ୍ତ ।
ଭୀମଙ୍କୁ ପାଞ୍ଚ ସାତ କାଣ୍ଡ ନିମିଷକେ
ବିନ୍ଧିଦେଲା ରାଜନ ଅତ୍ୟନ୍ତ ନିଃଶଙ୍କେ ।
ବିଶୋକକୁ ତିନି ବିନ୍ଧିଣ ଭୀମ ଧ୍ୱଜ
କାଟିବାକୁ ବିନ୍ଧିଲା ଏକ ମହାରାଜ ।
ଭୀମ କ୍ରୋଧ ହୋଇଣ ନିଜ ରଥ ଛାଡ଼ି
କଳିଙ୍ଗସୁତ ରଥ ମଧ୍ୟେ ବସି ମାଡ଼ି ।
ଗାଲକୁ ଦେଖାଇ ମାରନ୍ତେ ଖୁନ୍ଦାଟାଏ
କଳିଙ୍ଗସୁତ ଯେ ଭେଟିଲା ଯମରାୟେ ।
ଭୀମ-ମୁଷ୍ଟିଘାତେ କଳିଙ୍ଗସୁତ ହାଡ଼....
ଯାକ ଭାଜିଗଲାଟି ହୋଇ ଭଡ଼ଭଡ଼ ।
ତାର ଭାଇମାନେ ତା ଦେଖି ହୋଇ ଗୋଟି
କଲେ ଭୀମସେନ ଉପରେ ଶରବୃଷ୍ଟି ।
ଭୀମ ଧ୍ରୁବରଥୀଙ୍କୁ କଲେ ମୁଷ୍ଟିମାଡ଼
ବସିଲେ ସ୍ୱର୍ଗପୁରେ ବୋଲାଇ ସେ ବଡ଼ ।
ଜୟରାତ ରଥେ ବସିଣ ଭୀମରଥୀ
ଗରଜନେ ଦେଲେ ଯୋଦ୍ଧାଙ୍କ ହୃଦ ମନ୍ଥି ।
ତୁମ୍ଭ କର୍ଣ୍ଣ ନୟନ-ଯୁଗେ ଚାହୁଁଥିଲେ
ଜୟରାତ ପ୍ରାଣ ଚାପୋଡ଼େ ମାରି ନେଲେ ।
କର୍ଣ୍ଣ ତାହା ନ ସହି ଫିଙ୍ଗତେ ଶକତି
ଭୀମ ତାହା ଧଇଲେ ଦେଖାଇ ଶକତି ।
କର୍ଣ୍ଣଙ୍କ ଉପରେ ଫିଙ୍ଗନ୍ତେ ମରି ରାଗ
ଶକୁନି ତା କାଣ୍ଡରେ କଲେ ଦୁଇଭାଗ ।
ତୁମ୍ଭ ସୁତମାନେ ନେବାକୁ ଜୟ-ସୃଷ୍ଟି
ବେଢ଼ି ଭୀମସେନଙ୍କୁ କଲେ ଶରବୃଷ୍ଟି ।
ଭୀମ ହସି ଦୁର୍ମ୍ମଦ ସୁତ ଘୋଡ଼ାପ୍ରାଣ
ଘେନି ପକାଇଲେ ବରଗି ମୁନବାଣ ।
ରଥୁଁ ଅବତରି ଦୁଷ୍କର୍ଣ୍ଣ ରଥେ ଯାଇ
ବସିଲେ ତୁମ୍ଭର ଦୁର୍ମ୍ମଦ ନରସାଇଁ ।

ଏକାରଥେ ଦୁର୍ମ୍ମଦ ଦୁଷ୍କର୍ଣ୍ଣ ବସିଲେ
ଭୀମଙ୍କ ଉପରେ ଶାୟକ ବରଷିଲେ ।
କର୍ଣ୍ଣ ଦ୍ରୋଣ ଯେ ସୋମଦତ୍ତ ଦୁର୍ଯ୍ୟୋଧନ
ବାହ୍ଲିକ କୃପ ଆଦି ଆଗେ ଭୀମସେନ ।
ଗୋଇଠା ପ୍ରହାରି ରଥକୁ କଲେ ଚୂର୍ଣ୍ଣ
ଭୂମିରେ ଛିଡ଼ା ହେଲେ ଦୁର୍ମ୍ମଦ ଦୁଷ୍କର୍ଣ୍ଣ ।
ଦୁହିଙ୍କି ଦୁଇମୁଷ୍ଟି ମାରି ଭୀମ ରାଗେ
ଦେଲେଟି ହେ ରାଜନ ଯମରାଜା ଭାଗେ ।
ଏହା ଦେଖି ତୁମ୍ଭ ସେନାଏ ହାହାକାର
କରି ଭୟରେ ଥରାଇଲେ ହେ ଶରୀର ।
ବୋଇଲେ ଭୀମରୂପେ ଯୁଝନ୍ତି ରୁଦ୍ର ଆସି
ଏ କର୍ମ କରି ନ ପାରନ୍ତି ମହୀବାସୀ ।
ଏହିରୂପେ ବୋଲି ତୁମ୍ଭର ନୃପଗଣ
ପଡ଼ି ଉଠି ପଳାଇଗଲେ ଛାଡ଼ି ରଣ ।
ଏରୂପେ ତୁମ୍ଭ ବଳ ନାଶି ବୃକୋଦର
ନମିଲେ ଯାଇ ଯୁଧିଷ୍ଠିରଙ୍କ ପୟର ।
ନକୁଳ ସହଦେବ ବିରାଟ କେକୟ
ଭୀମଙ୍କୁ ପୂଜାକଲେ ବହି ହୃଦେ ପ୍ରିୟ ।
ତୁମ୍ଭ ପୁଅମାନେ ଦ୍ରୋଣଙ୍କୁ କରି ଆଗ
ବିନ୍ଧିଲେ ଭୀମସେନ ଉପରେ ଆଶୁଗ ।
ଗୃଧ୍ରବୃକୋମୋଦ ସମର ହେ ରାଜନ
ହୋଇଲା ନିଶା ପ୍ରବେଶରେ ବୋଲି ଘେନ ।
ଭୂରିଶ୍ରବା ହତ ସୁମରି ସୋମଦତ୍ତ
କହିଲେ ସାତ୍ୟକିଙ୍କି ହୋଇ କ୍ରୋଧଚିତ୍ତ ।
ମୋ ସୁତ ଭୂରିଶ୍ରବା ପ୍ରାୟ ଉପବେଶ
କରିଥିଲା ଯୁଦ୍ଧେ ତାହାକୁ କଲ ନାଶ ।
କ୍ଷତ୍ରିୟମାନଙ୍କର ଧରମ ଏ ନୋହେ
ହାଣିଲ କେହି ଖଣ୍ଡା କହ କୋହେ ମୋତେ ।
ପଳାଉଥିବ ଶସ୍ତ୍ର ନ ଥିବ ଯା କରେ
ତାକୁ ମାରିବାକୁ ଲେଖିଛି କି ଶାସ୍ତ୍ରରେ ।
ବୃଷ୍ଣିମାନଙ୍କରେ ତ ପ୍ରଦ୍ୟୁମନ ତୁମ୍ଭେ
ମହାରଥୀ ବାନା ବାନ୍ଧିଛ ଜାଣୁ ଆମ୍ଭେ ।
ଗୋଟିଏ ତ ବାହୁ ଥିଲା ଯାହାର ମୁଣ୍ଡ
କାଟିଲ ହେ ତୁମ୍ଭ ଏ କେଉଁ ଧର୍ମଖଣ୍ଡ ।
ଅର୍ଜ୍ଜୁନରେ ଅରକ୍ଷ ହୋଇଲେ ଏ ରାତି -
ଭିତରେ ତୁମ୍ଭଙ୍କୁ ମୁଁ ଦେବି ଯମକତି ।
ଯେବେ ନ ପାରିବି ତୁମ୍ଭଙ୍କୁ ରଣେ ମୁହିଁ
ପଡ଼ିବି ନରକେ କହୁଛି ଧନୁ ଛୁଇଁ ।
ଏରୂପେ ସୋମଦତ୍ତ ଯୁଯୁଧାନ ଆଗେ
କହିଣ ଶଙ୍ଖ ବଜାଇଲେ ନାନା ରାଗେ ।
ଏରୂପେ ସୋମଦତ୍ତ ଯୁଯୁଧାନ
କୋମଳେ ହସି କ୍ରୋଧେ-କହିଲେ ବଚନ ।
ଭୂରିଶ୍ରବା ମୃତ୍ୟୁ ଦେଖି ତା ସାନ ଭାଇ
ଶଳା ଯୁଦ୍ଧକରି ଦେଖିଲେ ପ୍ରେତସାଇଁ ।
କୁରୁବଂଶେ ତୁମ୍ଭେ ତ ଜନ୍ମ ଅଛ ପାଇ
ରହ ଯୁଦ୍ଧେ ସଂଯତ ହୋଇ କହୁଥାଇଁ ।
ପୁତ୍ର ନାତି ତୁଲରେ ତୁମ୍ଭର ପରାଣ
ଘେନି ପକାଇବି ବରଗି ମୁନବାଣ ।
ଦାନ ଦମ ଶଉଚ ନୀତିରେ ପଣ୍ଡିତ
ଅଟନ୍ତି ତ ହେ ଯୁଧିଷ୍ଠିର ଧର୍ମସୁତ ।
ତାହାଙ୍କର ଦୋରିହା ହୋଇବାରୁ ଆମ୍ଭେ
ମନେ କରିଅଛୁଁ ମଲନି ବୋଲି ତୁମ୍ଭେ ।
କର୍ଣ୍ଣ ଶକୁନିଙ୍କ ସଙ୍ଗତେ କୁରୁବଳ
କହୁଅଛି ନିକଟେ ହୋଇବେ ନିର୍ମୂଳ ।
କୂପ ତଡ଼ାଗଆଦି ଯାଗାଦି କରମକୁ
ମାନଙ୍କର ମୋହର ଯେତେକ ଧରମ ।
ସେ ଧରମମାନ ନୋହିବ କିଛି ମୋର
ତୁମ୍ଭଙ୍କୁ ଯୁଦ୍ଧରେ ମୁଁ ନ କଲେ ସଂହାର ।
ଏ ବାହାରେ କୃଷ୍ଣଙ୍କ ଚରଣ ମୋ ଇଷ୍ଟ
ନ ମାଇଲେ ତୁମ୍ଭଙ୍କୁ ହେବ ସେ ମୋ ଭ୍ରଷ୍ଟ ।
ଯୁଦ୍ଧ ଛାଡ଼ି ଯେବେ ପଳାଇ ଯିବ ତୁମ୍ଭେ
ରହିବ ଜୀବନେ ହେ କି କରିବୁଁ ଆମ୍ଭେ ।
ଏହିରୂପେ ସେ ଦୁହେଁ ବୋଲାବୋଲି ହେଲେ
ଯୁଦ୍ଧ କରିବା ପାଇଁ ଦୁହେଁ ମନ ଦେଲେ ।
ଏ ସମୟେ ଅୟୁତେ ଗଜ ରଥୀ-ଦଶ
ଶତ ଘେନିଣ ଦୁର୍ଯ୍ୟୋଧନ ନରଈଶ ।
ସୋମଦତ୍ତଙ୍କର ସେ ଚାରିପାଶ ବେଢ଼ି
ରହିଲେ ତୂଣରୁ ଉତ୍ତମ କାଣ୍ଡ କାଢ଼ି ।
ପୁତ୍ର ନାତି ଭାଇଙ୍କି ଘେନିଣ ଶକୁନି
ବାହାରିଲେ ହୋଇଣ ଯୁଦ୍ଧ-ଅଭିମାନୀ ।
ବ୍ରଜପରି ଆଣ୍ଟ ତ ଶକୁନିର ଅଙ୍ଗ
ବାଜିଲେ ଶର ରହିଯାନ୍ତି ହୋଇ ଭଙ୍ଗ ।
ତୁମ୍ଭର ଶଳା ଯେ ସୁବଳାରାଜ ବଳା
ଧାଇଁଲେ ଯୁଦ୍ଧଦାଣ୍ଡେ ନକରିଣ ହେଳା ।
ଲକ୍ଷେ ଅଶ୍ୱାରୋହୀ ତାଙ୍କର ସଙ୍ଗେ ଥିଲେ
ସୋମଦତ୍ତଙ୍କର ପାଶରେ ସେ ରହିଲେ ।
ଦୁର୍ଯ୍ୟୋଧନ ଶକୁନି ଦୁହିଙ୍କର ବଳ ।
ପାଇଣ ସୋମଦତ୍ତ ହୋଇ ଉତଫୁଲ୍ଲ ।
କାଣ୍ଡମାନଙ୍କରେ ଯେ ସାତ୍ୟକି ଅଙ୍ଗକୁ
ଛାଇ ପକାଇଲେ ଦେଖାଇ ବିକ୍ରମକୁ ।

ସାତ୍ୟକି ସୋମଦତ୍ତ-ବାଣେ ଘୋଡ଼ିହୋଇ
ରହନ୍ତେ ଦେଖି ଧୃଷ୍ଟଦ୍ୟୁମ୍ନ କ୍ରୋଧ ବହି ।
ସେନା ଘେନି ସୋମଦତ୍ତଙ୍କୁ କଲେ ରଣ
ବାଛି ବାଛି ବିନ୍ଧିଲେ ଉତ୍ତମ ମାର୍ଗଣ ।
ଦୁଇସେନାଙ୍କର ସେକାଳେ ମୁଖ-ରଡ଼ି
ବଳିଲା ସମୁଦ୍ର-ଗର୍ଜନ ଘଡ଼ଘଡ଼ି ।
ସାତ୍ୟକିଙ୍କି ଯେ ସୋମଦତ୍ତ ନବକାଣ୍ଡ
ବିନ୍ଧିଲେ ଅତି ଆଣ୍ଟେ ଝିଙ୍କିଣ କୋଦଣ୍ଡ ।
ସାତ୍ୟକି ସେହିରୂପେ ସୋମଦତ୍ତ ଦେହେ
ଦଶକାଣ୍ଡ ବିନ୍ଧିଲେ ରାଜନ ହେ କୋହେ ।
ସୋମଦତ୍ତ ମୋହକୁ ଦେଖିଣ ସାରଥି
ଲେଉଟାଇ ରଥ ବାହିଲା ହୋଇ ବ୍ୟଥୀ ।
ସୋମଦତ୍ତଙ୍କ ମୋହ ଅଶ୍ୱଥାମା ଦେଖି
ବିନ୍ଧିଲେ ଯୁଯୁଧାନ ଦେହେ ଶର ଯୋଖି ।
ଅଶ୍ୱଥାମା ସାତ୍ୟକି ସଙ୍ଗତରେ ରଣ
କରିବାର ଦେଖି ଅସୁରକୁଳରାଣ ।
ହିଡ଼ିମ୍ବା ନନ୍ଦନ ଘଟୋତ୍କଚ ବଳୀ
ଯୁଝିଲା ଅଶ୍ୱଥମା ସଙ୍ଗତରେ ଚଳି ।
ଘଟୋତ୍କଚ ରଥ ଲୁହାରେ ଯେ ନିର୍ମିତ
ହୋଇଣ ହୋଇଅଛି ଭାଲୁଚର୍ମେ ବୃତ ।
ତହିଁରେ ଯୋଚା ହୋଇଅଛନ୍ତି ବାହନେ
ହାତୀ ଘୋଡ଼ାରୁ ସେ ବାହାର ଘେନ ମନେ ।
ତା ରଥରେ ଧ୍ୱଜ ଯେ ହୋଇଛି ସାର୍ଗୁଣା
ଚଞ୍ଚୁ ଦୁଲେ ବିସ୍ତାରି ଦେଇଅଛି ଡେଣା ।
ରକତରେ ଗୁଡ଼ା ହୋଇଣ ଲୁଗାଟାଏ
ପତାକା ହୋଇ ବନ୍ଧା ହୋଇଅଛି ରାୟେ ।
ଆଠଚକ ତାର ତ ରଥରେ ଲାଗିଛି
ଗର୍ଜନେ ସବୁରି ସେ ଭୟ କରାଉଛି ।
ଧରି ଶୂଳ ମୁଦ୍ଗର ପରବତ ବୃକ୍ଷ
ସଙ୍ଗତେ ଅଛନ୍ତି ରାକ୍ଷସ ଲକ୍ଷ ଲକ୍ଷ ।
କାଳଦଣ୍ଡ ପରି ତା କରେ ଧନୁ ଦେଖି
ତୁମ୍ଭ ନୃପତିଏ ହୋଇଲେ ମହାଦୁଃଖୀ ।
ସହଜେ ତ ତା ଦେହ କଳାମେଘ ପରା
ଦିଶୁଥିଲା ରତନ-ବିଜୁଳିରେ ତୋରା ।
ପର୍ବତରେ ଅନଳ ମାଳା ପରି ରାୟେ
ସୁବର୍ଣ୍ଣମାଳା ଦିଶୁଥିଲା ତାର କାୟେ ।
କୁଲା ପରି କର୍ଣ୍ଣ କରିଣ ଠିଆ ଠିଆ
ସୁବର୍ଣ୍ଣ କୁଣ୍ଡଳେ ସେ ନିନ୍ଦୁଥିଲା ନିଆଁ ।
କୁରାଳ ଚକ୍ର ପରି ତାର ଦୁଇଆଖି
ଜ୍ୱାଳାରେ କରୁଥିଲା ସବୁଙ୍କୁ ସେ ଦୁଃଖୀ ।
ଅନ୍ତକଦେବପରି ମେଲି ଦୁଇ ପାଟି
ଗର୍ଜିବାରେ ଗଲା କି ସତେ ହୃଦ ଫାଟି ।
ତାହା ଶୁଣି ତୁମ୍ଭର ସେନାଏ ବିମନ
ହୋଇ ଭାବିଲେ କି କରିବା ଆଉ ରଣ ।
ଘଟୋତ୍କଚ ସଙ୍ଗତେ ଥିଲେ ତ ରାକ୍ଷସେ
ବରଷିଲେ ପଥର ସେ ଯୁଦ୍ଧରେ ରୋଷେ ।
ଭୂଷଣ୍ଡୀ ଚକ୍ର ପ୍ରାସ ଶତଘ୍ନୀ ତୋମର
ଅବିଚ୍ଛିନ୍ନେ ପଡ଼ିଲେ ନଭୁଁ ନରବର ।
ତୁମ୍ଭର ପୁଅମାନେ ଭାବି ରୌଦ୍ରଯୁଦ୍ଧ
କର୍ଣ୍ଣ ତୁଲେ ଭାଜିଲେ ହେବା ବୋଲି ବଧ ।
ଅସ୍ତ୍ରବଳେ ଏକା ରହିଲେ ଅଶ୍ୱଥାମା
ହୃଦୟରେ ଧରିର କ୍ଷତ୍ରିୟ ଗାରିମା ।
ଘଟୋତ୍କଚ ଯେତେକ ମାୟା ଗଲା ରଣେ
ଅଶ୍ୱଥାମା ତାହାକୁ କାଟିଲେଟି ବାଣେ ।
ମାୟା ବିନାଶ ଦେଖି ଘଟୋତ୍କଚ ରୋଷୀ
ହୋଇ ବାଛି ନାରାଚ ବିନ୍ଧି ନିଶ ଘଷି ।
ସେ କାଣ୍ଡେ ସର୍ପ ପରି ଅଶ୍ୱଥାମା ଦେହ -
ବିଳରେ ପଶିଲେ ହେ ଜାଣ ନରସିଂହ ।
ଅଶ୍ୱଥାମା କାଣ୍ଡଘାତରେ କ୍ରୋଧେ ଥରି
ବିନ୍ଧିଲେ ଦଶକାଣ୍ଡ ଧନୁକୁ ଓଟାରି ।
ସେ ଶରେ ପୀଡ଼ା ପାଇ ଘଟୋତ୍କଚ ବଳୀ
ନିନ୍ଦିଲେ ଯେସନେ ମଧ୍ୟାହ୍ନ ଅଂଶୁମାଳୀ ।
କ୍ଷୁର ପରି ଦାଢ଼ ତପନ ପରି ତେଜ
ମଣି ରତ୍ନେ-ଭୂଷିତ ହୋଇ ମହାରାଜ ।
ଲାଗିଅଛି ଅର ଯେ ସେ ଚକ୍ରରେ ଲକ୍ଷେ
ଫିଙ୍ଗିଲା ଘଟୋତ୍କଚ ଅଶ୍ୱଥାମା-ବକ୍ଷେ ।
ସେ ଚକ୍ରକୁ ଦେଖି ନ ଡରି ଅଶ୍ୱଥମା
ପକାଇ ଦେଲେ କାଣ୍ଡେ ଯୁଦ୍ଧଭୂମିସୀମା ।
ହତଭାଗା ଲୋକ ସଙ୍କଳ୍ପ ବ୍ୟର୍ଥ ପରି
ହୋଇଲା ଜାଣ ହେ ସେ ଚକ୍ର ଦଣ୍ଡଧାରୀ ।
ଚକ୍ର ହତ ଦେଖିଣ ଘଟୋତ୍କଚ-ସୁତ
ଅଞ୍ଜନପର୍ବା ଯୁଦ୍ଧେ ହୋଇ କ୍ରୋଧ ଚିତ୍ତ ।
ଅଶ୍ୱଥାମାଙ୍କର ନେବାକୁ ରଣେ ପ୍ରାଣ
ଘୋଡ଼ାଇ ପକାଇଲା ବିନ୍ଧି ଭଲ ବାଣ ।
ମେରୁ ଜଳଧାରାରେ ମଣ୍ଡହେବା ପ୍ରାୟେ
ଦିଶିଲା କାଣ୍ଡ ଅଶ୍ୱଥାମାଙ୍କର କାୟେ ।
ରୁଦ୍ର ଇନ୍ଦ୍ର ପ୍ରାୟେ ସେ ବଳ ଦେଖାଇଲେ
ଅଞ୍ଜନପର୍ବା ଧ୍ୱଜ କାଟିପକାଇଲେ ।
ଦ୍ୱିକାଣ୍ଡରେ ସାରଥି ପ୍ରାଣ ନେଲେ ହରି
ଚାରିକାଣ୍ଡେ ଚାରିଘୋଡ଼ାଙ୍କୁ ଦେଲେ ମାରି

କାଣ୍ଡକରେ ଧନୁଟିକି ଯେ କଲେ ନାଶ
ତ୍ରିକାଣ୍ଡେ ତ୍ରିବେଣୁ ନାଶିଲେ ବହି ରୋଷ ।
ବିରଥ ହୋଇ ଘଟୋତ୍କଚର ନନ୍ଦନ
ଖଡ଼ଗ ଘେନି କଲାବେଳେ ଆୟୋଧନ ।
ଅଶ୍ୱଥାମା ତାହାକୁ ପକାଇଲେ କାଟି
ତଳେ ପଡ଼ି ସେ ଖଣ୍ଡା ଖୋଳିଲାଟି ମାଟି ।
ଖଣ୍ଡା ଛିଡ଼ି ଯାଆନ୍ତେ ଧରି ଗଦା କରେ
ବୁଲାନ୍ତେ ଦ୍ରୋଣସୁତ କାଟିଲେ ତା ଶରେ ।
ଶସ୍ତ୍ରଯୁଦ୍ଧେ ହାରି ଅଞ୍ଜନପର୍ବା ବୀର
ଆକାଶର ମଧ୍ୟରେ କରିଣ ସଞ୍ଚାର ।
ବୃକ୍ଷ ପଥରକୁ ଯେ ଅଶ୍ୱଥାମା ଶିରେ
ବର୍ଷିଲା ହସି ସେ ରାକ୍ଷସ ରୋଷରେ ।
ଅଶ୍ୱଥାମା ନ ସହି ତା ବୃକ୍ଷ ପଥର
ବୃଷ୍ଟିଯାକ ବିନାଶ କଲେ ପେଷିଶର ।
ନାଶ ଯାଆନ୍ତେ ବୃକ୍ଷ ପଥର ବରଷା
ବସିଲା ରଥେ ଆସି ରକ୍ଷ ମହାଯଶା ।
ଅନ୍ଧକଙ୍କୁ ଶଙ୍କର ସଂହାରିବା ପରି
ଦେଲେ ଯେ ଅଶ୍ୱଥାମା ତାହାଙ୍କୁ ସଂହାରି ।
ପୁତ୍ର ହତ ଦେଖିଣ ଘଟୋତ୍କଚ ବଳୀ
ଦ୍ରୋଣ-ନନ୍ଦନଙ୍କୁ ବୋଇଲା ଏହା ଚଳି ।
ରହ ରହ ଆଜି ଯୁଦ୍ଧରେ ତୁମ୍ଭ ପ୍ରାଣ
ଘେନି ପକାଉଅଛି ବିନ୍ଧି ମାରଗଣ ।
ଅଶ୍ୱଥାମା ଶୁଣିଣ ରାକ୍ଷସ ବଚନ
ବୋଇଲେ ହେ ତୁମ୍ଭେ ତ ଆମ୍ଭର ନନ୍ଦନ ।
ଆମ୍ଭ ସଙ୍ଗେ ତୁମ୍ଭର କରିବାର ରୋଳ
ଉଚିତ ନୋହେ ଯାଅ ଘେନି ମୋର ବୋଲ ।
ତୁମ୍ଭଠାରେ ମୋହର କ୍ରୋଧ ନାହିଁ କିଛି
ନ ଯୁଝ ଆମ୍ଭଙ୍କୁ ହେ ଗୁରୁତା ମୁରୁଛି ।
ଏହା ଶୁଣିଣ ଘଟୋତ୍କଚ ପୁତ୍ର ନାଶ
ସୁମରି ହୃଦେ କ୍ରୋଧ ବଢ଼ାଇ ବିଶେଷ ।
ଦୁଇନୟନକୁ ଯେ ରଙ୍ଗକରି ଦେଲେ
କି ବୋଲୁଅଛ ଦ୍ରୋଣବେଟା ହେ ବୋଇଲେ
ଯୁଦ୍ଧରେ ତ ମୁହିଁ ହେ ନୁହଇ କାତର
ମୋତେ କିପାଁ କହିଲ ଏରୂପେ ଉତ୍ତର ।
କୁରୁବଂଶରେ ମୁହିଁ ହୋଇଅଛି ଜାତ
ଜାଣୁଛ ତ ଆପଣ ଭୀମ ମୋର ତାତ ।
ମହତବଳ ବହିଛନ୍ତି ବାହୁ ଦୁଇ
ଦଶଗ୍ରୀବ ସମ ବଳୀଟି ଅଟେ ମୁହିଁ ।
ଟିକିଏ ରହି ଯେବେ ଯୁଝିବ ମୋ ଆଗେ
ଯୁଦ୍ଧ ଶ୍ରଦ୍ଧା ଭାଙ୍ଗିବି ଜାଣ ମୁଁ ଆଶୁଗେ ।

ଏରୂପେ ବଚନରେ କହି ଘଟୋତ୍କଚ
ଗରଜନ ଘାତରେ କମ୍ପାଇଣ ମଞ୍ଚ ।
ରଥ ଅଖ ପରି ନାରାଚ ବାଛି ବାଛି
ବିନ୍ଧିଲା ନାଶ କରିବାକୁ ଦ୍ରୋଣବଛି ।
ଘଟୋତ୍କଚ ଶରଯାକକୁ ଦ୍ରୋଣସୁତ
ନିଶିତ କାଣ୍ଡ ପେଷି କଲେ ରାୟେ ହତ ।
ଆକାଶରେ ଦୁହିଙ୍କ କାଣ୍ଡ ଭେଟାଭେଟି
ହୁଅନ୍ତେ ବାଜି ଅଗ୍ନିକଣା ହେଲା ବୃଷ୍ଟି ।
ଅଶ୍ୱଥାମା ମାୟାକୁ କରିବାରୁ ନାଶ
ଘଟୋତ୍କଚ ରାକ୍ଷସ ହୋଇଣ ଅଦୃଶ୍ୟ ।
ଗଦା ଶକ୍ତି ତୋମରଙ୍କରେ ମଣ୍ଡିହୋଇ
ପର୍ବତ ପରି କାୟା ଦେଲା ସେ ବଢ଼ାଇ ।
ସେ ପର୍ବତ ମଧ୍ୟୁଁ ବାହାରି ଶରରାଜି
ହାତୀ ଘୋଡ଼ା ନରଙ୍କ ଦେହେ ଗଲେ ମଜ୍ଜି ।
ତା ଦେଖି ଅଶ୍ୱଥାମା ନ ପାଇଣ ଭୟ
କରିବାକୁ ତୁମ୍ଭର ସୁତଙ୍କର ପ୍ରିୟ ।
ହସି ବ୍ରଜଅସ୍ତ୍ର ବରି ସେ ପର୍ବତକୁ
ଚୂରିଲେ ଅଶ୍ୱଥାମା ଦେଖାଇ ବଳକୁ ।
ପୁଣି ଇନ୍ଦ୍ରଧନୁ ସହିତ ମେଘ ହୋଇ
ଦେଲା ଶରେ ରାକ୍ଷସ ଦ୍ରୋଣୀଙ୍କି ଘୋଡ଼ାଇ ।
ବାୟବ୍ୟଅସ୍ତ୍ର କରି ଦ୍ରୋଣଙ୍କ ନନ୍ଦନ
କଲେ ମାୟା-ମେଘକୁ କ୍ଷଣକେ ଧ୍ୱଂସନ ।
ଦ୍ରୋଣିଙ୍କ ସଞ୍ଚାର ଦାଣ୍ଡକୁ ଶରେ ରୁନ୍ଧି ।
ମାଇଲା ତୁମ୍ଭ ସେନା ଯାକୁ କାଣ୍ଡ ବିନ୍ଧି ।
ମାୟାରେ ଘଟୋତ୍କଚ ଅନେକ ରାକ୍ଷସ
କଲା ଚଢ଼ିଥିଲେ ସେ ରଥ ହାତୀ ଅଶ୍ୱ ।
ତା ଦେଖି ତୁମ୍ଭ ଦୁର୍ଯ୍ୟୋଧନ-ମୁହଁ ଶୁଖି
ଯାନ୍ତେ ଦ୍ରୋଣୀତାଙ୍କୁ କହିଲେ ନୋହି ଦୁଃଖୀ
ସେନାଯାକଙ୍କୁ ତୁମ୍ଭେ କର ଆଶ୍ୱସନା
ମାରୁଛି ମୁଁ ଯୁଦ୍ଧେ ରାକ୍ଷସ ମହାମନା ।
ସତ୍ୟ କରି କହୁଛି ଘଟୋତ୍କଚ ଘେନି
ନୋହିବ ଆହେ ତୁମ୍ଭେ ଅଜୟର ଗ୍ଲାନୀ ।
ଦୁର୍ଯ୍ୟୋଧନ ବୋଇଲେ ତୁମ୍ଭଠାରେ ମୁହିଁ
ଏ କଥା ଆଶ୍ଚର୍ଯ୍ୟ କି କରି ଘେନିବଇଁ ।
ମୋହଠାରୁ ତୁମ୍ଭର ସ୍ନେହ ଯେଉଁ ରୂପେ
ସେହି ରୂପେ ତ ଚିତ୍ତେ ବିଚାରିଛୁ ଆପେ ।
ଏରୂପେ ଅଶ୍ୱଥାମା ଆଗେ ଦୁର୍ଯ୍ୟୋଧନ
କହି ଶକୁନିଙ୍କି କହିଲେ ଏ ବଚନ ।
ସହସ୍ରଶଏ ରଥ ସପ୍ତଷଷ୍ଠୀ ଗଜ
ଧରି ତୁମ୍ଭେ ନିବାର ଇନ୍ଦ୍ରଙ୍କ ଆତ୍ମଜ ।

କର୍ଣ୍ଣ ବୃଷସେନ ଯେ କୃପ କୃତବର୍ମା
ନୀଳ ପୁରୁମିତ୍ର ନିକୁମ୍ଭ ଜୟବର୍ମା ।
ଦୁଃଶାସନ କୁମ୍ଭଭେଦୀ ଯେ ପୁରୁଞ୍ଜୟ
ପୁରୁକରମ ଦୃଢ଼ରଥ ଶଲ୍ୟ ଜୟ ।
ସଞ୍ଜୟ ପଦ୍ମାକ୍ଷ ବିଜୟ ସୁଦର୍ଶନ
ପୁରକ୍ରାଥୀ ପତାକୀ ହେମବିକମ୍ପନ ।
ଏ ସମସ୍ତ ଛଅ ଅୟୁତ ସଙ୍ଗେ ପତି
ଘେନି କରି ଜଗି ରହନ୍ତୁ ତୁମ୍ଭ କତି ।
ତୁମ୍ଭଠାରେ ଜୟ ଆଶା ମୋର ଅଛି
କହୁଛି ମାମୁ ଯାଇ ମାର ଇନ୍ଦ୍ରବହ୍ନି ।
ଏହା ବାହାରେ ଆନ ପାଣ୍ଡବମାନଙ୍କୁ
ଦେଖାଇ ପାର ତୁମ୍ଭେ ଯମ-ନଗରକୁ ।
କାର୍ତ୍ତିକେୟ ଅସୁରମାନଙ୍କୁ ସଂହାର
କଲା ପରି ପାଣ୍ଡବଗଣେ ତୁମ୍ଭ ମାର ।
ତୁମ୍ଭ ସୁତ ମୁଖୁଁ ଶୁଣିଣ ଏ ବଚନ
କଲା ତୁମ୍ଭ ଶଳା ପାଣ୍ଡବେ ଆୟୋଧନ ।
ଇନ୍ଦ୍ର ପ୍ରହଲାଦ ସମର କଲା ପ୍ରାୟେ
ଯୁଝିଲେ ଦ୍ରୋଣି ରାକ୍ଷସର ତୁଲେ ରାୟେ ।
କ୍ରୋଧ ହୋଇଣ ଘଟୋତ୍କଚ ଦଶ ଶର
କରିଲେ ଅଶ୍ୱତ୍ଥାମା ବକ୍ଷକୁ ପ୍ରହାର ।
ଘଟୋତ୍କଚ କାଣ୍ଡରେ ଅଶ୍ୱତ୍ଥାମା ବ୍ୟଥା
ପାଇଣ କ୍ଷଣେ ଯାଏ ନ କହିଲେ କଥା ।
ଅଞ୍ଜଳିକ ଅସ୍ତ୍ର ବରଗି ଭୀମ-ସୁତ
କରି ପକାଇଲେ ଦ୍ରୋଣିଙ୍କ ଚାପ ହତ ।
ଆନ ଧନୁକୁ ଧରି ଅଶ୍ୱତ୍ଥାମା ବଳୀ
ବିନ୍ଧିଲେ ରାକ୍ଷସମାନଙ୍କୁ ଶର ଚଳି
ଅଶ୍ୱତ୍ଥାମାଙ୍କ ଶର ସିଂହରେ ରାକ୍ଷସେ
ବିଲୁଆ ଗଞ୍ଜି ହୋଇ ରହିଲେ ସେ ଦେଶେ ।
କାଣ୍ଡ ଅନଳରେ ଯେ ଅଶ୍ୱତ୍ଥାମା ଦାହ
କରି ପକାଇଲେ ସେ ରାକ୍ଷସଙ୍କ ଦେହ ।
ତ୍ରିପୁରାକୁ ପୋଡ଼ିଣ ରୌଦ୍ର ମହାଦେବ
ଦିଶିଲା ପରି ଦିଶିଲେ ସେ ଭୂମିଦେବ ।
କ୍ରୋଧରେ ରାକ୍ଷସ କହିଲା ରାକ୍ଷସଙ୍କୁ
ମାର ବେଢ଼ି ସମସ୍ତେ ଏ ଦୁଷ୍ଟ ଦ୍ୱିଜକୁ ।
ଘଟୋତ୍କଚଙ୍କଠାରୁ ଶୁଣି ଏ ବଚନ
ରଙ୍ଗକରି ଦେଇଣ ରାକ୍ଷସେ ନୟନ ।
ଅନ୍ତକ ପରି ପାଟି ଦୁଇ ବିସ୍ତାରିଲେ
ଦ୍ରୋଣିଙ୍କ ବେଟାଟିକି ଘୋଟି ଯୁଦ୍ଧ କଲେ ।
ଗଦା ଶକ୍ତି ତୋମର ପରିଘ ଖଡ଼ଗ ଶୂଳ
ଶତଘ୍ନୀ ପ୍ରାସ ଅସି ପଟ୍ଟିଶ ଭିନ୍ଦିପାଳ ।
ପରଶ୍ୱଧ ଅଶନି କମ୍ପନ ମୂଷଳ
ଭୁଷୁଣ୍ଡୀ ମୁଦ୍‌ଗର କୁଣପ ସ୍ଥୂଣା ହୁଳ ।
ଏମାନେ ଦ୍ରୋଣସୁତ ଅଙ୍ଗେ ପ୍ରହାରିଲେ
ନେବା ଯୁଦ୍ଧରେ ଜୟ ବୋଲି ମନେ କଲେ ।
ଅଶ୍ୱତ୍ଥାମାଙ୍କର ମୁଣ୍ଡରେ ରାକ୍ଷସଙ୍କ
ଅସ୍ତ୍ରଯାକ ପଡ଼ନ୍ତେ ହୋଇଣ ଆତଙ୍କ ।
ତୁମ୍ଭ ଲୋକମାନେ ଯେ ଭୟରେ ଥରିଲେ
ମରିବେ ପରା ଅଶ୍ୱତ୍ଥାମା ମନେ କଲେ ।
ଅସମ୍ଭ୍ରାନ୍ତ ହୋଇ ଦ୍ରୋଣଙ୍କ ନନ୍ଦନ
ନାଶିଲେ ଶରେ ଶରବୃଷ୍ଟିକି ବହନ ।
ଦିବ୍ୟ ଅସ୍ତ୍ରବଳରେ ରାକ୍ଷସମାନଙ୍କୁ
ଦେଖାଇଲେ ହେଲେ ଯମଙ୍କ ନଗରକୁ ।
ଅଶ୍ୱତ୍ଥାମା ସିଂହର ଶର ନଖଆଣ୍ଟ
ପାଇଣ ଭାଜିଲେ ରାକ୍ଷସ କରି ଥାଟ ।
କ୍ରୋଧ ହୋଇ ପୁଣି ରାକ୍ଷସ ହୋଇ ଗୋଟି
ବିନ୍ଧିଲେ ଅଶ୍ୱତ୍ଥାମା ପ୍ରତି ଶର ମୋଟି ।
କେହି ନ କରିବା ପରାକ୍ରମକୁ ଦ୍ରୋଣ
ନନ୍ଦନ କଲେ ଆହେ ଧୃତରାଷ୍ଟ୍ର ରାଣ ।
ଏକାଜଣଙ୍କରେ ସେ ଘଟୋତ୍କଚ ସେନ
ଗଣେ ଶରାଗ୍ନିରେ ଦହିଲେ ମହାମନ ।
ଘଟୋତ୍କଚ ବିନା ରାକ୍ଷସେ ଦ୍ରୋଣସୁତ
ଯୁଦ୍ଧ ଦେଖିଣ ହୋଇ ଗଲେଟି ନିସତ ।
ସେକାଳେ ହାତେ ହାତେ ପେଷି ଭୀମସୁତ
ସାରଥିକି ବୋଇଲେ ନୋହି ଭୟଚିତ୍ତ ।
ମୋ ରଥ ଦ୍ରୋଣିରଥ ପାଖେ ରଖ ନେଇ
ମାରିବି ତାହାଙ୍କୁ ଓପ୍ରୋଧ ଛାଡ଼ି ମୁହିଁ ।
ଘଟୋତ୍କଚ ବାକ୍ୟେ ସାରଥି ରଥ ନେଇ
ଅଶ୍ୱତ୍ଥାମା ରଥ ଆଗରେ ଦେଲା ଥୋଇ ।
ଆଠୋଟା ଘଣ୍ଟା ଲଗା ବ୍ରଜ କରେ ଧରି
ଫିଙ୍ଗିଲା ଦ୍ରୋଣସୁତ ଦେହେ ରାଗ କରି ।
ତା ଦେଖି ଅଶ୍ୱତ୍ଥାମା ରଥେ ଧନୁ ଥୋଇ
ଧଇଲେ ସେ ଅଶନିବର ରାୟେ ଡେଇଁ ।
ଘଟୋତ୍କଚ ଉରକୁ ଫିଙ୍ଗିଲେ ତା ରାଗେ
ଚଳିଲା ସେ ଅତିଶୟରେ ବେଗେ ବେଗେ ।
ଅଶନି ଆସିବାର ଘଟୋତ୍କଚ ଦେଖି
ତଳରେ ଛିଡ଼ାହେଲେ ରଥକୁ ଉପେକ୍ଷି ।
ସାରଥି ଅଶ୍ୱ ତୁଲେ ଘଟୋତ୍କଚ ରଥ
ପୋଡ଼ିଦେଇ ଅଶନି ହେଲେ ମହୀସାଥ ।
ଶିବିଙ୍କେ ନିର୍ମିତ ଅଶନି ଦ୍ରୋଣସୁତ
ଧରିବା ଦେଖି ଲୋକେ ହୋଇଲେ ଚକିତ ।

ସାଧୁ ସାଧୁ ପ୍ରଶଂସା ସବୁ ଜନେ କଲେ
ଏକଥା ଅନାହତେ ନୁହଇ ବୋଇଲେ ।
ଧୃଷ୍ଟଦ୍ୟୁମ୍ନ ରଥରେ ଘଟୋତ୍କଚ ବସି
କି କଲା ଦ୍ରୋଣସୁତ ବୋଲିଦେଲା ହସି ।
ଆନ ଧନୁ ଧରି ଦ୍ରୋଣିଙ୍କ ବକ୍ଷସ୍ଥଳେ
ସରଜନା କଲା ରାକ୍ଷସ ଶରମାଳେ ।
ଅସମ୍ଭ୍ରାନ୍ତ ହୋଇଣ ଧୃଷ୍ଟଦ୍ୟୁମ୍ନ ବୀର
ବିନ୍ଧିଲେ ଅଶ୍ୱଥାମା ଉପରେ ଯୋଖି ଶର ।
ଅଶ୍ୱଥାମା ଧୃଷ୍ଟଦ୍ୟୁମନ ଘଟୋତ୍କଚ
ଦୁହିଙ୍କି ବିନ୍ଧିବାରେ କମ୍ପାଇଲେ ମଞ୍ଚ ।
ଘଟୋତ୍କଚ ଧୃଷ୍ଟଦ୍ୟୁମନ କ୍ରୋଧ ବହି
କାଟିଲେ ଅଶ୍ୱଥମା କାଣ୍ଡ ନରସାଇଁ ।
ଏରୂପେ ସେ ତିନିଙ୍କ ପ୍ରବର୍ତ୍ତିଲା ଯୁଦ୍ଧ
ଆସିଲେ ଭୀମସେନ ହୋଇ ମହା କ୍ରୋଧ ।
ଛ ସହସ୍ର ଘୋଡ଼ା ତିନିଶ ଦନ୍ତାବଳ
ସହସ୍ରେ ରଥ ସଙ୍ଗେ ଥିଲେଟି ନୃପାଳ ।
ସବୁ ପ୍ରାଣୀମାନଙ୍କେ ନୋହିବାର କର୍ମ
ସେ କାଳେ କଲେ ଦ୍ରୋଣସୁତ ଦ୍ୱିଜୋତ୍ତମ ।
ନିମିଷମାତ୍ରକେ ରାକ୍ଷସ ଅକ୍ଷୌହିଣୀ
ମାରି ପକାଇଲେ ବରଗି ଶରଶ୍ରେଣୀ ।
ଭୀମ ଯୁଧିଷ୍ଠିର ନକୁଳ ସହଦେବ
ଘଟୋତ୍କଚ ଶ୍ରୀକୃଷ୍ଣ ଅର୍ଜ୍ଜୁନ ପାଣ୍ଡବ ।
ନୟନେ ଚାହିଁଥିଲେ ପ୍ରତିକାର କିଛି
ନ କଲେ ମାଇଲେଟି ଦ୍ରୋଣଙ୍କର ବଛି ।
ହାତିଏ କାଣ୍ଡଘାଏ ମେରୁଗିରି ଶୃଙ୍ଗ
ପରାୟେ ଦିଶିଲେ ପକାଇ ତଳେ ଅଙ୍ଗ ।
ହାତୀଙ୍କର ଶୁଣ୍ଢ ପଡ଼ନ୍ତେ ଛିଡ଼ି ବଳେ
ସର୍ପପରି ଲୋକେ ମଣିଲେ ଦେଖି ଡୋଳେ ।
ଚନ୍ଦ୍ରଙ୍କରେ ଆକାଶ ମଣ୍ଡିହେଲା ପ୍ରାୟେ
ଛିଡ଼ିବା ଛତ୍ରେ ମହୀ ଦିଶିଲା ହେ ରାୟେ ।
ରକ୍ତ -ଜଳ -ଧ୍ୱଜ -ମଣ୍ଡୁକ ରଥ-ବର୍ତ୍ତ
ପତାକା -ଦ୍ରୁମକଙ୍କ ଗୃଧ୍ର ଗ୍ରାହବ୍ରାତ ।
ଛତ୍ର -ହଂସ ଯେ ଭେରୀ -କଚ୍ଛପନିକର
କେଶ- ଶିଇଆଳ ଘୋଟକଟି ମକର ।
ଆୟୁଧ ମତ୍ସ୍ୟ ଗଜସମୂହ ପାଷାଣ
ମଜ୍ଜା ମାଂସ ପଙ୍କଜାଳ ଚାମର ଫେନ ।
ଏରୂପେ ନଦୀଟାଏ ଦ୍ରୋଣିଶର -ଘାତେ
ପ୍ରବର୍ତ୍ତିଲାଟି ଜାଣ ଆହେ ମହାମତେ ।
ଧୃଷ୍ଟଦ୍ୟୁମ୍ନ ପାଣ୍ଡବଗଣେ ବିନ୍ଧି ବାଣ
ନେଲେ ଦ୍ରୋଣି ସୁରଥ ଦ୍ରୌପଦେୟ ପ୍ରାଣ ।

ସୁରଥଙ୍କ ତନୟ ଶତ୍ରୁଞ୍ଜୟ ବୀର
ମଲେ ପାଇଣ ଦ୍ରୋଣିଙ୍କର ହାତ ଶର ।
ଦ୍ରୁପଦଙ୍କ ସୁତ ଜୟାଶ୍ୱ ଚନ୍ଦ୍ରମୌଳି
ବଳାନୀକ ଜୟାନୀକ ଯେ ରୁକ୍ମମାଳୀ ।
ଶ୍ରୁତାହ୍ୱୟ ପୃଷଧ୍ର ମାନୀ ଚନ୍ଦ୍ରଦେବ
ଦ୍ରୋଣସୁତ ଘେନିଲେ ଏହାଙ୍କର ଜୀବ ।
ଦଶକାଣ୍ଡେ କୁନ୍ତିଭୋଜଙ୍କ ଦଶ ପୁଅ
ପ୍ରାଣ ନେଇ ବୋଇଲେ ଯମପୁରେ ଯାଅ ।
ପୁଣି ଅଶ୍ୱଥାମା ଯୁଦ୍ଧରେ କ୍ରୋଧ ହେଲେ
ଯମଦଣ୍ଡ ପରି ସେ ଶରକୁ ଯୋଖିଲେ
ଘଟୋତ୍କଚ ହୃଦକୁ ଉଦ୍ଦେଶି ସେ ଶର
ବିନ୍ଧନ୍ତେ ଚଳିଲା ସେ ଶବ୍ଦ କରି ଘୋର ।
ସେ ଶର ସର୍ପପରି ଘଟୋତ୍କଚ ବିଳ
ଉର ଗଳି ଯାଇ ଆଶ୍ରୟକଲା ତଳ ।
ଘଟୋତ୍କଚ ମୋହ ଦେଖିଣ ଧୃଷ୍ଟଦ୍ୟୁମ୍ନ
ନ ଯୁଝି ଆନଠାକୁ କଲେ ସେ ଗମନ ।
ଯୁଧିଷ୍ଠିର ସଇନଯାକ ତାହା ଦେଖି
ପଳାଇଲେ ରାଜନ ହୋଇ ଅତି ଦୁଃଖୀ ।
ତୁମ୍ଭ ତନୟମାନେ ସେନାଙ୍କର ତୁଲେ
ବେଢ଼ ଅଶ୍ୱଥାମାଙ୍କୁ ବହୁ ପ୍ରଶଂସିଲେ ।
ରାକ୍ଷସ - ଶବରେ ଆବୃତ୍ତ ହେଲା ମହୀ
ଯୋଦ୍ଧାମାନେ ଯୁଦ୍ଧରେ ନ ପାରିଲେ ଯାଇ ।
ସହଜେ ତ ରାକ୍ଷସମାନଙ୍କର ଅଙ୍ଗ
ମହାବଡ଼, ପଡ଼ି ନିନ୍ଦିଲା ଗିରିଶୃଙ୍ଗ ।
ଗନ୍ଧର୍ବ ସିଦ୍ଧ ନାଗ ପୁଣି ସୁରାସୁର
ଅପସରା ସୁବର୍ଣ୍ଣ ରାକ୍ଷସ ପିତର ।
ଏ ସମସ୍ତେ ଅଶ୍ୱଥାମାଙ୍କ ବଳ ଦେଖି
ପ୍ରଶଂସିଲେ ରାଜନ ହୋଇ ଅତି ସୁଖୀ ।
ଦ୍ରୁପଦ କୁନ୍ତିଭୋଜ ସୁତ ତୁଳେ ସେନା
ରାକ୍ଷସକୁ ମାରନ୍ତେ ଦ୍ରୌଣି ମହାମନା ।
ଯୁଧିଷ୍ଠିର ଭୀମ ସାତ୍ୟକି ଧୃଷ୍ଟଦ୍ୟୁମ୍ନ
ସମୟ କରିବାରେ ବଳାଇଲେ ମନ ।
ସୋମଦତ୍ତ ଦେଖିଣ ସାତ୍ୟକିଙ୍କ ଆଗେ
ଛାଇ ଦେଲେ ଯୁଦ୍ଧଦାଣ୍ଡରେ ସେ ଆଶୁଗେ ।
ପାଣ୍ଡବସେନାଙ୍କ ସଙ୍ଗତେ ତୁମ୍ଭ ସେନା
ଘୋର ଯୁଦ୍ଧ କଲେ ହେ ନୋହିଣ ବିମନା ।
ସାତ୍ୟକି ହିତ ଭାବି ସୋମଦତ୍ତ ଦେହେ
ବିନ୍ଧିଲେ ଭୀମସେନ ଦଶ କାଣ୍ଡ କୋହ ।
ସୋମଦତ୍ତ ଭୀମଙ୍କୁ ବିନ୍ଧି ଶଏ କାଣ୍ଡ
କାହିଁ ଯିବ ବୋଲି ଲୋଡ଼ିଲେ ମୁଣ୍ଡଖଣ୍ଡ ।

ସାତ୍ୟକି ବାଛି କରି ଦଶଗୋଟି ରୋପ
ବିନ୍ଧିଲେ ସୋମଦତ୍ତ ପ୍ରତି ବହି କୋପ ।
ଶକତିଟାଏ ଧରି ସୋମଦତ୍ତ ଉରେ
ଫିଙ୍ଗି ପୁଣି ବ୍ୟାକୁଳ କଲେ ସପ୍ତଶରେ ।
ଭୀମସେନ ମଧ୍ୟ ବିଜୟ ଇଚ୍ଛା ଚିତ୍ତେ
ପରିଘକୁ ଫିଙ୍ଗିଲେ ସୋମଦତ୍ତ ଗାତ୍ରେ ।
ଅଗ୍ନି ପରାଏ ଶର ବାଛିଣ ସାତ୍ୟକି
ବିନ୍ଧିଲେ ସୋମଦତ୍ତ ହୃଦେ ମୁଠି ଟେକି ।
ଏକାବେଳକରେ ଯେ ସୋମଦତ୍ତ ଉରେ
ପଡ଼ିଲେ ସେ ପରିଘ ତୁଲେ ଯାଇ ଶରେ ।
ସେ ଘାତରେ ବ୍ୟାକୁଳ ହୋଇ ସୋମଦତ୍ତ
ରଥ ମଧ୍ୟେ ବସି ଚେତନା କଲେ ହତ ।
ସୋମଦତ୍ତ ହତ ବାହ୍ଲିକ ତାହା ଦେଖି
ଯୁଦ୍ଧ କରିଲେ ଆସି ରଙ୍ଗକରି ଆଖି ।
ଭୀମ ସାତ୍ୟକିଙ୍କ ଶ୍ରେୟକୁ କରି ମନେ
ବାହ୍ଲିକକୁ ବିନ୍ଧିଲେ ନ କାଣ୍ଡ ବହନେ ।
ଇନ୍ଦ୍ର ବଜ୍ର ଫିଙ୍ଗିବା ପରାୟେ ବାହ୍ଲିକ
ଫିଙ୍ଗିଲେ ଭୀମ ଉରେ ଶକତି- ନାୟକ ।
ଭୀମ ବାହ୍ଲିକଙ୍କ ଶକତି ଘାତ ପାଇ
ମୋହଗଲେ ଶରୀର ଯାକକୁ ଥରାଇ ।
ଟିକିଏକ ଉତ୍ତାରେ ଚେତା ପାଇ ଭୀମ
ଧଇଲେ କରେ ଗଦା କରି ମହାତମ ।
ବୁଲାଇ ତିନିବେଢ଼ା ବାହ୍ଲିକଙ୍କ ମୁଣ୍ଡେ
ପିଟନ୍ତେ ପଡ଼ିଲେ ସେ ଜାଣ ରଣଦାଣ୍ଡେ ।
ବଜ୍ରାହତ ପର୍ବତ ପ୍ରାୟେ ବାହ୍ଲିକଙ୍କ
ମଡ଼ା ଦିଶିଲା ଆହେ ହସ୍ତିନା ନାୟକ ।
ଏହା ଦେଖି କରି ତୁମ୍ଭର ଦଶ ପୁତ୍ର
ଭୀମଙ୍କୁ ଯୁଝିଲେ ଥରାଇ କ୍ରୋଧେ ଗାତ୍ର ।
ଭୀମ ତୁମ୍ଭ ଦଶସୁତଙ୍କୁ ଦଶକାଣ୍ଡେ
ବସାଇଦେଲେ କ୍ଷଣକରେ ଯମଦାଣ୍ଡେ ।
ଶର ବାତାହତ ହୁଅନ୍ତେ ତୁମ୍ଭ ସୁତ-
ମାନେ ବୃକ୍ଷ ପରି ମହୀକି ହେଲେ ଗତ ।
ଏରୂପେ ତୁମ୍ଭ ସୁତମାନଙ୍କୁ ସଂହାରି
ବାହାରିଲେ ଭୀମ କର୍ଣ୍ଣ ସୁତ ମାରି ।
କର୍ଣ୍ଣଙ୍କର ଭାଇ ଯେ ବୃଷରଥ ତାହା
ନ ସହି ଯୁଦ୍ଧ କଲେ ହୋଇ ଧନୁର୍ବାହା ।
ଭୀମ ବୃଷରଥର ଉପରକୁ ଶର
ଯୋଖିକରି ବିନ୍ଧିଲେ ରାଜନ ଅପାର ।
ତୁମ୍ଭର ଶଳା ସାତରଥୀଙ୍କି ସଂହାରି
ଶତଚନ୍ଦ୍ର ଜୀବନ ଭୀମ ନେଲେ ହରି ।

ଶତଚନ୍ଦ୍ର ମରିବା ଦେଖି ଭାତୃଗଣ
କଲେ ଭୀମସେନ ସଙ୍ଗତେ ଆସି ରଣ ।
ଭୀମ ତାହାଙ୍କ ଶର ବିନ୍ଧିବା ନ ସହି
ଦେଲେ ଯେ ଯମଙ୍କର ନଗରେ ବସାଇ ।
ସେମାନଙ୍କ ମରଣ ଦେଖି ତୁମ୍ଭ ନୃପେ
ମଲାଇଁ ବୋଲିକରି ପଡ଼ିଲେ ସନ୍ତାପେ ।
କ୍ରୋଧ ହୋଇଣ ଯୁଧିଷ୍ଠିର ତୁମ୍ଭ ସେନା-
ମାନଙ୍କୁ ମାଇଲେ ହେ ଜାଣ ମହାମନା ।
ଅମ୍ବଷ୍ଠ ଶୂରସେନ ତ୍ରିଗର୍ତ୍ତ ବାହ୍ଲିକ
ଅଭୀଷାହ ଶିବ ମାଳବ ଯେ ମଦ୍ରକ ।
ଯଉଧେୟ ବଶାତି ଆରଟ୍ଟମାନଙ୍କୁ ।
ପେଷିଲେ ଯୁଧିଷ୍ଠିର ଯମ- ନଗରକୁ ।
ତୁମ୍ଭର ଲୋକମାନେ ଯୁଧିଷ୍ଠିର ରଥ
ଚାରିପଟେ ବେଢ଼ି ବିନ୍ଧିଲେ ନରନାଥ ।
ଦୁର୍ଯ୍ୟୋଧନ ବୋଲେ ସେ କାଳ ତୁମ୍ଭ ସୁତ
ମାନେ ଯୁଧିଷ୍ଠିରଙ୍କୁ କଲେ ଶରାଘାତ ।
ଦ୍ରୋଣ କ୍ରୋଧହୋଇ ବାୟବ୍ୟଅସ୍ତ୍ର କଲେ
ଯୁଧିଷ୍ଠିର ରାଜା ତା ଅସ୍ତ୍ରେ କାଟିଲେ ।
ବାୟବ୍ୟଅସ୍ତ୍ର ନାଶଯାନ୍ତେ ଗୁରୁ ଦ୍ରୋଣ
କ୍ରୋଧକୁ ଜାତକରି ହୃଦରେ ଦ୍ୱିଗୁଣ ।
ବାରୁଣ ଯାମ୍ୟ ତ୍ୱଷ୍ଟ ସାବିତ୍ର ଆଗ୍ନେୟ
ଅସ୍ତ୍ର କଲେ ଯୁଧିଷ୍ଠିରଙ୍କୁ ଛାଡ଼ି ପ୍ରିୟ ।
ଯୁଧିଷ୍ଠିର ରାଜା ଦ୍ରୋଣଙ୍କ ଅସ୍ତ୍ରକୁଳ
ପକାଇଲେ କାଟି ଅସ୍ତ୍ରେ ମହୀପାଳ ।
ପୁଣି ଯେ ଦ୍ରୋଣ ଐନ୍ଦ୍ରଅସ୍ତ୍ର ପ୍ରାଜାପତ୍ୟ
ବିନ୍ଧିଲେ କରିବାକୁ ପଣ ତାଙ୍କ ସତ୍ୟ ।
ମାହେନ୍ଦ୍ର ପ୍ରାଜାପତ୍ୟ ଦୁହେଁ ଯୁଧିଷ୍ଠିର
ଅସ୍ତ୍ରେ ନାଶଗଲେ ଭୟରେ ଅପାର ।
ଅସ୍ତ୍ର ନାଶଯାଆନ୍ତେ ବ୍ରହ୍ମଅସ୍ତ୍ର ଦ୍ରୋଣ
ବିନ୍ଧିଲେ ନେବା ପାଇଁ ଯୁଧିଷ୍ଠିର ପ୍ରାଣ ।
ଦ୍ରୋଣଙ୍କ ବ୍ରହ୍ମଅସ୍ତ୍ର ସକାଶୁଁ ଜଗତ
କମ୍ପିଗଲା, ପ୍ରାଣୀଏ ହୋଇଲେ ତରସ୍ତ ।
ଯୁଧିଷ୍ଠିର ବ୍ରହ୍ମଅସ୍ତ୍ରେ ସେ ବ୍ରହ୍ମାସ୍ତ୍ରକୁ
ସଂହାରି ପକାଇଲେ ନ କରି ଭୟକୁ ।
ଦ୍ରୋଣ ଯୁଧିଷ୍ଠିରଙ୍କ ଦେଖିଣ ସମର
ଧନ୍ୟ ଧନ୍ୟ ବଚନ ବୋଇଲେଟି ନର ।
ଦ୍ରୋଣ ଯେ ଯୁଧିଷ୍ଠିର ରାଜାଙ୍କୁ ନ ପାରି
ଦ୍ରୁପଦ ସଇନଙ୍କୁ ପକାଇଲେ ମାରି ।
ଭୀମ ଅରଜୁନଙ୍କୁ ନୟନେ ଚାହୁଁଥିଲେ
ଦ୍ରୋଣ ଶରେ ପାଞ୍ଚାଳଯାକ ପଳାଇଲେ ।

ଅର୍ଜୁନ ଭୀମ ଦୁହେଁ ଏକ ମନ ହେଲେ
ଗଉରବ ଛାଡ଼ିଣ ଗୁରୁଙ୍କୁ ଯୁଝିଲେ ।
ଦକ୍ଷିଣେ ଅର୍ଜୁନ ଉତ୍ତରେ ଭୀମ ବଳୀ
ରହି ଦ୍ରୋଣ ଦେହେ ବିନ୍ଧିଲେ ଶରାବଳୀ ।
ପାଞ୍ଚାଳ ମଧ୍ୟେ ରହି ଭୀମାର୍ଜୁନ ପଛେ
ଯୁଦ୍ଧ କଲେ ଦ୍ରୋଣଙ୍କୁ ହୃଦ ଅତି ସ୍ୱଚ୍ଛେ ।
ଅରଜୁନ- ଶରବ୍ରାତକୁ ପାଇ ତୁମ୍ଭ
ସେନା ପଳାଇଲେ ହୃଦରୁ ଛାଡ଼ି ଦମ୍ଭ ।
ଦୁର୍ଯ୍ୟୋଧନ ଦ୍ରୋଣ ବହୁତ ଯତ୍ନ କଲେ
ନିବାରି ନ ପାରିଲେ ସେନାଙ୍କୁ ହେ ଭଲେ ।
ପାଣ୍ଡବ ସେନାଯାକ ଆହବେ ଆହବ
କରନ୍ତେ ଦୁର୍ଯ୍ୟୋଧନ କରି ଯୁଦ୍ଧେ ଭାବ ।
କହିଲେ ଆହେ କର୍ଣ୍ଣ ଦେଖୁଛତ ତୁମ୍ଭେ
ମାରୁଛନ୍ତି ପାଣ୍ଡବେ କି କରିବୁଁ ଆମ୍ଭେ ।
ମିତ୍ରବତ୍ସଳ ତ ହେ ତୁମ୍ଭେ କର୍ଣ୍ଣବୀର
ରଖ ମିତ୍ରମାନଙ୍କୁ କରିଣ ସମର ।
ପାଣ୍ଡବ କେକୟ ଆମ୍ଭର ପରା ସେନା-
ମାନଙ୍କୁ ଯୁଦ୍ଧେ ଦେଉଛନ୍ତି କଦର୍ଥନା ।
ଦଇବେ ତ ଜୟ ଯୁଦ୍ଧେ ସେ କରିଛନ୍ତି
ଗରଜନ କରି ଆମ୍ଭଙ୍କୁ ତରଜନ୍ତି ।
କର୍ଣ୍ଣ ବୋଇଲେ ହେ ନ ଡର ନରରାଣ
ମୋ ପରି ଲୋକ ଧରିଛି ତ ଧନୁର୍ବାଣ ।
ଇନ୍ଦ୍ର ଆସି ରଖିଲେ ଅର୍ଜୁନଙ୍କ ମୁଣ୍ଡ
ଛିଣ୍ଡାଇ ଦେବି ମୁଁ ଦେଖିବ ରଣଦଣ୍ଡ ।
ସତ୍ୟ କରି ପଣ କରୁଛି ତୁମ୍ଭ ଆଗେ
ପାଣ୍ଡବ ପାଞ୍ଚାଳେ ହେ ରହିଲେ ମୋ ଭାଗେ
କୁମ୍ଭ ପ୍ରିୟ କରିବା ପାଇଁ ଅଛି ଜୀଇଁ
ମୋ ବଳେ ଭୁଞ୍ଜିବ ରାଜନ ତୁମ୍ଭେ ମହୀ ।
ପାଣ୍ଡବ ସେନାରେ ଅର୍ଜୁନ ବଳୀୟାର
ହୋଇଛନ୍ତି କୃଷ୍ଣ ସହାୟେ ମନେକର ।
ତାହାଙ୍କୁ ମୁଁ ଇନ୍ଦ୍ରଙ୍କ ଦେବାର ଶକତି
ବରଗି ବସାଇବି ଯମଙ୍କର କତି ।
ଅରଜୁନ ମରନ୍ତେ ପାଣ୍ଡବେ ଅନାଥ
ହୋଇ ଆସି ଧରିବେ ତୁମ୍ଭ ଗୋଡ଼ ହାତ ।
ନୋହିଲେ ବନରେ କରିବେ ଯାଇ ତପ
ତୁମ୍ଭଠାରେ ବୁଦ୍ଧିତ କରିଛନ୍ତି ପାପ ।
କର୍ଣ୍ଣଙ୍କ ଏ ବଚନ ଶୁଣି କୃପ କାନେ
ବୋଇଲେ କିସ କର୍ଣ୍ଣ କହୁଛ ବଚନେ ।
ଲାଜ ତୁମ୍ଭ ମୁଖରୁ ହୋଇବାରୁ ଦୂର
ବାହାରୁଛି ଏହି କଥାଟି ମନେକର ।
ବୋଲିବା ମାତ୍ରକେ ପାଣ୍ଡବେ ଯେବେ ମଲେ
ଦୁର୍ଯ୍ୟୋଧନ ତେବେ ହସ୍ତିନା ଭୋଗକଲେ ।
ତୁମ୍ଭଙ୍କୁ ପାଇ ଏବେ ଧୃତରାଷ୍ଟ୍ର ସୁତେ
ନାଥବନ୍ତ ହୋଇଲେ ଘେନିଲଇଁ ଚିତ୍ତେ ।
ଯେ ରୂପେ କହୁଛ ସେରୂପେ ଯୁଦ୍ଧକାଳେ
କେବେ ଦେଖି ନାହୁଁ ତୁମ୍ଭର ଆମ୍ଭେ ଡୋଳେ ।
ବହୁତ ଥର ପାଣ୍ଡୁ ସୁତଙ୍କୁ ସମର
କରି ତ ହାରିଛ ବୋଲାଇ କର୍ଣ୍ଣବୀର ।
ଦୁର୍ଯ୍ୟୋଧନ ନୃପେ ଗନ୍ଧର୍ବେ ନେଲେ ବାନ୍ଧି
ଛଡ଼ାଇ ନ ଆଣିଲ କର୍ଣ୍ଣ କାଣ୍ଡ ବିନ୍ଧି ।
ବିରାଟ ନଗରେ ଗୋଗ୍ରହେ କରି ଯୁଦ୍ଧ
କରି ତ ନ ପାରିଲ ଅର୍ଜୁନଙ୍କୁ ବଧ ।
ଏକା ପାର୍ଥଙ୍କୁ ତ ନ ପାର ଯୁଦ୍ଧେ ଜିଣି
କିରୂପେ ଜିଣିବ କହ ତ ଚକ୍ରପାଣି ।
ନ କହି ଏବେ ପରାକ୍ରମ କର କର୍ଣ୍ଣ
ତୁମ୍ଭ କଥା ଶୁଣିଣ ଘୂରିଲାନି କର୍ଣ୍ଣ ।
ଶରଦକାଳେ ମେଘ ଗରଜନ ପରି
ହୋଇବ କହିବାରୁ କଥାଟି ତୁମ୍ଭରି ।
ଅରଜୁନର କାଣ୍ଡ ନ ବାଜିବା ଯାଏ
ଗର୍ଜୁଛ ବୀର ହେ ଫୁଲାଇ ଦେଇ କାୟେ ।
ବଚନରେ ବ୍ରାହ୍ମଣ କ୍ଷତ୍ରିୟ ବାହୁରେ
ଧନୁରେ ଅରଜୁନ ଶୂର ଏ ମହୀରେ ।
ମନୋରଥ କରିବାରେ ତ ତୁମ୍ଭ ପରି
ଶୂର ନାହିଁ କର୍ଣ୍ଣ, ଖୋଜିଲେ ତିନିପୁରୀ ।
କର୍ଣ୍ଣ ବୋଇଲେ ହେ କି କହୁଅଛ କୃପ
ଶୁଣିଲଇଁ ଯାହା ହେ ମୋହ କର୍ମ ପାପ ।
ଶୂରମାନେ ବରଷା ଘନ ପରି ଗର୍ଜି
କହୁଥାଆନ୍ତି ସବୁବେଳେ କ୍ରୋଧେ ମଜ୍ଜି ।
ଋତୁକାଳରେ ବୀର୍ଯ୍ୟ ଫଳ ହେଲା ପରି
ଫଳ ଫଳାନ୍ତି ରହେ ଶୂରେ ଶସ୍ତ୍ର ଧରି ।
ତୁଲାଉଥାନ୍ତି ଭାଗ ପଡ଼ିଲେଟି ଶୂରେ
ଏ ଘେନି ଗର୍ଜନ ଦୋଷ କି ତାହାଙ୍କରେ ।
ପୁରୁଷ ଯେ ଭାର ବହିବା ଭାବେ ଚିତ୍ତେ
ଦଇବ ତ ତାହା ନିର୍ଭା କରଇ ତୁରିତେ ।
ମୁଁ ତ ଭାର ବହି ଗର୍ଜିଲି କରି କୋପ
ତୁମ୍ଭର କିସ ବାଧା ହେଲା କହ କୃପ ।
ଆପଣା ସାମର୍ଥ୍ୟକୁ ଅନାଇଁଟି ଶୂରେ ।
ଗରଜନ କରି କହନ୍ତି ବଚନରେ ।
କୃଷ୍ଣ ପାଣ୍ଡବଙ୍କୁ ଜିଣିବା ପାଇଁ ମନ ।
ଥିବାରୁ ଗର୍ଜୁଛି ମୁଁ ଜାଣ ପ୍ରତିଦିନ ।

କୃଷ୍ଣ ତୁଲରେ ପାଣ୍ଡବଙ୍କୁ ଆଜି ମାରି
ହସ୍ତିନା ଦେବି ଦୁର୍ଯ୍ୟୋଧନେ ଯାଚିକରି ।
ଦେଖିବ ତୁମ୍ଭେ କୃପ ଆଜି ହେ ନୟନେ
ଗୁଡ଼ାଏ ଆଉ କିସ କହିବା ବଚନେ ।
କୃପ ବୋଇଲେ ଆହେ ତୁମ୍ଭର ପ୍ରଳାପ-
ବଚନ ବାହାରୁଛି କାର ଅଙ୍ଗନୃପ ।
ଶ୍ରୀକୃଷ୍ଣ ଅରଜୁନ ଯୁଧିଷ୍ଠିର ରାଜା
ଶୂର ବୀର ଧାର୍ମିକେ ପାଆନ୍ତି ସେ ପୂଜା ।
ତାହାଙ୍କୁ ଅଧିକ୍ଷେପ କରୁଛ ବଚନେ
ଭଲ ମନ୍ଦ ଦୁହିଙ୍କି ନ ବିଚାରି ମନେ ।
ଦେବପକ୍ଷ କିନ୍ନର ଉରଗ ଅସୁର-
ମାନଙ୍କରେ ଅଜେୟ କୃଷ୍ଣାର୍ଜୁନ ବୀର ।
ଏହାଙ୍କୁ ଜିଣିବ ଯା ବୋଲୁଅଛ ତୁମ୍ଭେ
ଛାଡ଼ିଲାନି ଦଇବ ବୋଲୁଅଛୁଁ ଆମ୍ଭେ ।
ବ୍ରହ୍ମଣ୍ୟ ଦାନ୍ତ ସତ୍ୟବାଦୀ ଧର୍ମରତ
ଦେବତାଙ୍କର ପୂଜ୍ୟ ଗୁରୁ ଧୃତିମନ୍ତ ।
କୃତାସ୍ତ୍ର ସର୍ବଗୁଣ ସୁଧୀ ଯୁଧିଷ୍ଠିର
ଥିବାରେ ଅଜେୟ ଅଛି କି ମନେକର ।
ତାଙ୍କୁ ଅନୁରୂପ ତାଙ୍କର ଭ୍ରାତୃକୁଳ
ରହିଛି ଦେହେ ଗୁଣ ହୋଇକରି ଠୁଳ ।
ଧୃଷ୍ଟଦ୍ୟୁମ୍ନ ଶିଖଣ୍ଡୀ ଦ୍ରୌମୁଖି ଭଦ୍ରସେନ
ଜନ୍ମେଜୟ ଚନ୍ଦ୍ରସେନ ସୁତେଜନ ।
ଧ୍ରୁବ ବସୁଚନ୍ଦ୍ର ଦ୍ରୁପଦ ସୁଦର୍ଶନ
କୀର୍ତ୍ତିବର୍ମା ବିରାଟ ସୁରଥ ବାହନ ।
ଦାମଚନ୍ଦ୍ର ସିଂହଚନ୍ଦ୍ର ଚନ୍ଦ୍ରୋଦୟ
ନକୁଳ ସହଦେବ ଜୟାଶ୍ୱ ଦ୍ରୌପଦେୟ ।
ଶ୍ରୁତଧ୍ୱଜ ବଳାନୀକ ଜୟାନୀକ
ଘଟୋତ୍କଚ ଶ୍ରୁତାନୀକ ଗଜାନୀକ ।
ଏ ସମସ୍ତେ ଯୁଧିଷ୍ଠିରଙ୍କ ଭଲ ବାଞ୍ଛି
ଯୁଦ୍ଧ କରୁଅଛନ୍ତି ପରାଣ ମୁରୁଛି ।
ଏହାଙ୍କ ସମ୍ମୁଖରେ ରହି କେଉଁ ଲୋକ
ଯୁଦ୍ଧରେ ବିନ୍ଧିବାକୁ ନ ଦେଖେ ଶାୟକ ।
ଏ ତିନିଜଗତକୁ ଭୀମ ଅରଜୁନ
ମନେକଲେ କ୍ଷଣେ ପାରନ୍ତି କରି ଶୂନ୍ୟ ।
ଚାହିଁଲେ କ୍ରୋଧେ ଯୁଧିଷ୍ଠିର ନରପତି
ଶିବଙ୍କ ଅଙ୍ଗଯୋଗ୍ୟ ହୋଇଯିବ କ୍ଷିତି ।
ଯାହାକୁ ସାହା ହୋଇଅଛନ୍ତି ଗୋବିନ୍ଦ
ତାହାକୁ କେ ଜିଣି ପାରିବ କରି ଦ୍ୱନ୍ଦ ।
କୃଷ୍ଣ ତୁଲେ ସହିତ କରି ପାଣ୍ଡବଙ୍କୁ
ଜିଣିବ ଭାବୁଛ ଯା ବରୁଛ ମୃତ୍ୟୁକୁ ।
କର୍ଣ୍ଣ କୃପଙ୍କର ଏ ବଚନକୁ ଶୁଣି
ହସିକରି କୃପଙ୍କୁ କହିଲେ ଏ ବାଣୀ ।
କହିଲ ତୁମ୍ଭେ ଯେତେ ପାଣ୍ଡବଙ୍କ ଗୁଣ
ତହିଁକି ପ୍ରତି ଅଧିକ ସେ ବୋଲି ଜାଣ ।
ଇନ୍ଦ୍ରାଦି ଦେବଙ୍କରେ ଅଜେୟ ଫାଲ୍‌ଗୁନ
ତାଠାରୁ ଜୟ ନେବ ମର୍ତ୍ତ୍ୟେ ନାହିଁ ଜନ ।
ଏମନ୍ତ ହେଲେ ମୁହିଁ ମାରିବି ମୋ ମତି
ମାରିଣ ଯୁଦ୍ଧେ ଇନ୍ଦ୍ର ଦେବାର ଶକତି ।
ଅରଜୁନ ମରନ୍ତେ ପାଣ୍ଡୁ ଚାରିସୁତେ
ଜିଣି ନ ପାରିବେ କେବେହେଁ ଯୁଦ୍ଧେ ମୋତେ
ପାଣ୍ଡୁ ସୁତେ ନାଶଯାଆନ୍ତେ ମହୀଭୋଗ
କରିବେ ଦୁର୍ଯ୍ୟୋଧନ ବହିଣ ସରାଗ ।
ନୀତିଥିବା ମାନବ ସିନା କାର୍ଯ୍ୟ ପାଏ
ଥିବାରୁ ନୀତିରେ ମୁଁ ଫୁଲାଉଛି କାୟେ ।
ବୟସ ତୁମ୍ଭର ତ ହେଲାଣି ଶିଥିଳ
ବୁଢ଼ା ହେବାରୁ ତ ଦେହରେ ନାହିଁ ବଳ ।
ଅରଜୁନଠାରେ ତ କରିଅଛ ସ୍ନେହ
ଏଣୁ ମୋ କଥାରେ ହେଉଛି ତୁମ୍ଭ ମୋହ ।
ଆଉ ଥରେ ଏପରି ବୋଇଲେଟି ତୁମ୍ଭେ
ଖଣ୍ଡାରେ ଜିଭ କାଟି ପକାଇବି ଚାଣ୍ଡେ ।
ପାଣ୍ଡବଙ୍କୁ ସ୍ତୁତି କରିଣ କୁରୁଙ୍କର
ଭୟ ଜାତ କରୁଛ କୃପ ଦ୍ୱିଜବର ।
ଏଥିକି ମୁହିଁ ଯାହା କହିବି ତୁମ୍ଭଙ୍କୁ
ତାହା ଶୁଣ କୃପ ହେ ଦେଇଣ ମନକୁ ।
ଦୁର୍ଯ୍ୟୋଧନ ଦ୍ରୋଣ ଶକୁନି ଦୁଃଶାସନ
ସୋମଦତ୍ତ ଦୁର୍ମୁଖ ଜୟ ବୃଷସେନ ।
ମଦ୍ରରାଜ ତ ବିବିଂଶତି ଭୂରି ଦ୍ରୌଣି
ତୁମ୍ଭେ ଆମ୍ଭେ ମିଶି ଅଛଇଁ ରଥୀଶ୍ରେଣୀ ।
ଧନୁ ଧରିଣ ଆମ୍ଭେ କରୁଥିଲେ ଯୁଦ୍ଧ
କହ ତ ଆମ୍ଭେ ସେନା କେ କରିବ ବଧ ।
ଇନ୍ଦ୍ର ହେଲେହେଁ ବଜ୍ର ଧରି ଯିବେ ହାରି
ମନୁଷ୍ୟ ହାତେ ସିଦ୍ଧି ହେବ ଏ କି ଜରି ।
ଧର୍ମଜ୍ଞ କୃତଜ୍ଞ ଏ ଶୂର ଅସ୍ତ୍ରଜ୍ଞାତା
ପାରନ୍ତି ଯୁଦ୍ଧେ କରି ଦେବଙ୍କର ଚିନ୍ତା ।
ଯୁଝୁ ଯୁଝୁ ଦୈବ ଆୟତ ସିନା ଜୟ
ଏଥିକି କେତେ ଆମ୍ଭେ କରିବାଟି ଭୟ ।
ଭୀଷ୍ମ ଜୟଦ୍ରଥ ବିକର୍ଣ୍ଣ ଚିତ୍ରସେନ
ବାହ୍ଲିକ ଭୂରିଶ୍ରବା ଜୟ ସୁଦକ୍ଷିଣ ।
ଜଳସନ୍ଧ ଶଳ ଯେ ଭଗଦତ୍ତ ବୀର
ଆଦି ଯା ମଲେ ଜାଣ ଆୟତ୍ତ ଦୈବର ।
ପାଣ୍ଡବଙ୍କୁ ଟେକି ଯା କହ ବଡ଼ କରି
ସହସ୍ର ସଂଖ୍ୟା ରଥୀ ତାଙ୍କ ଛନ୍ତି ମରି ।
ପାଣ୍ଡବଙ୍କର ଯେବେ ଥାନ୍ତା ଦେହେ ବଳ
କାହିଁପାଇଁ ମରନ୍ତେ କହ ତାଙ୍କ ବଳ ।

ଯୁଦ୍ଧ କରୁଁ ଦୁର୍ଯ୍ୟୋଧନଙ୍କର ହିତରେ
ଜୟ ଅବା ହେବ ମୋହର ଦଇବରେ ।
ତୁମ୍ଭେ କିପାଇଁ ମୋତେ ଡରାଉଛ କୃପ
ଜାଣିନାହଁ କି ତୁମ୍ଭେ ମୋହର ପ୍ରତାପ ।
ଏହା ଶୁଣିଣ କୃପ କୃପା ହୃଦେ ବହି
ଭଲ ମନ୍ଦ ନ କହି ଗଲେ ତୁନୀ ହୋଇ ।
ମାମୁଁଙ୍କ ପରାଭବ ଶୁଣି ଦ୍ରୋଣସୁତ
କ୍ରୋଧାଗ୍ନିରେ ଦେହକୁ କରିଣ ଦୀପିତ ।
ଖଡ଼ଗ କରେ ଧରି ସିଂହପରି ଗତି
କରି କର୍ଣ୍ଣଠାକୁ ସେ ଧାଇଁଲେ ଝଟତି ।
ଦୁର୍ଯ୍ୟୋଧନ ରାଜା ନୟନେ ଚାହିଁଥିଲେ
କର୍ଣ୍ଣଙ୍କୁ ଅନାଇ ସେ ଏମନ୍ତ କହିଲେ ।
ଅର୍ଜ୍ଜୁନଙ୍କର ଗୁଣ ବନ୍ଦି ମାମୁଁ ମୋର
କହୁଥିଲେ ତାହାଙ୍କୁ ବୋଇଲ ନିଷ୍ଠୁର ।
ବାହୁବୀର୍ଯ୍ୟେ ତୁମ୍ଭେ ଗର୍ବିତ ହୋଇଅଛ
ଏଣୁ ବୀରକରି କାହାକୁ ନ ଗଣୁଛ ।
ଚାହୁଁଥିଲ ନୟନେ ଜୟଦ୍ରଥ ମାଥ
କାଟି ପକାଇଲା ସେ ବୀରବର ପାର୍ଥ ।
ତେତେବେଳେ ହେ ବଳ ରଖିଥିଲ କାହିଁ ।
ଆମ୍ଭଙ୍କୁ ଗୋଚର ଏ କଥା ହେଉ ନାହିଁ ।
ସାକ୍ଷାତେ ଶିବଙ୍କୁ ଯେ କରିଛନ୍ତି ଯୁଦ୍ଧ
କିରୂପେ କର୍ଣ୍ଣ ହେ କରିବ ତାଙ୍କୁ ବଧ ।
କୃଷ୍ଣଙ୍କର ବାହୁ ଛାୟାରେ ପାର୍ଥ ଥିଲେ
ଇନ୍ଦ୍ରାଦି ଦେବେ ହେଲେ ହାରିଯିବ ଭଲେ ।
ଦୁର୍ବୁଦ୍ଧିପଣେ ତୁମ୍ଭେ କରୁଛ ଗାରିମା
ଜାଣିଛ ତ ଯୁଦ୍ଧରେ ଅର୍ଜ୍ଜୁନ ମହିମା ।
ଏବେ କର୍ଣ୍ଣ କ୍ଷଣେ ରହ ତ ମୋର ଆଗେ
ଦେବି ମୁଁ କହୁଛି ତୁମ୍ଭଙ୍କୁ ଯମଭାଗେ ।
ଏହି ରୂପରେ କହି ଦ୍ରୋଣଙ୍କର ସୁତ
ମାରିବାକୁ କର୍ଣ୍ଣ ପାଶକୁ ହେଲେ ଗତ ।
ଏହା ଦେଖିଣ ଦୁର୍ଯ୍ୟୋଧନ କୃପ ଧାଇଁ
ଧଇଲେ ଦ୍ରୋଣଙ୍କ ସୁତକୁ କୁଣ୍ଢାଇ ।
କର୍ଣ୍ଣ ବୋଇଲେ ହେ ଦୁର୍ବୁଦ୍ଧି ଅଶ୍ୱତ୍ଥାମା
ମୁଁ ଶୂର ବୋଲିକରି ବହିଛ ଗାରିମା ।
ଏହାକୁ କିପାଁ ରଖିଅଛ ରାଜା ତୁମ୍ଭେ
ଛାଡ଼ ମୋ ବଳକୁ ବୁଝୁ ସେ ବୋଲୁଁ ଆମ୍ଭେ ।
ଅଶ୍ୱତ୍ଥାମା ବୋଇଲେ ବୋଲୁଛୁ ଯା କର୍ଣ୍ଣ
ଶୁଣି ଫାଟିଗଲାନି ମୋର ବେନିକର୍ଣ୍ଣ ।
ରାଜା ତ ଧରି ମୋତେ ମନା କରୁଛନ୍ତି
ନୋହିଲେ ବସାନ୍ତି ତୁମ୍ଭଙ୍କ ଯମ କତି ।
ଅର୍ଜ୍ଜୁନ ତୁଲରେ ତ ଭାବିଅଛ ରଣ
ଜାଣିବ ସେବେଳେ ମରଣ ଦୁଃଖଗଣ ।

ଦୁର୍ଯ୍ୟୋଧନ ବୋଇଲେ କି କହ ଦ୍ରୋଣସୁତ
ତୁମ୍ଭେ ତ ଅଟ ହେ ଆମ୍ଭର ଗୁରୁଭ୍ରାତ ।
ସୂତତନୟ କର୍ଣ୍ଣ ପ୍ରତିଜ୍ଞାକୁ ଚଳି
ମାରିବ ବୋଲି ଯା ଧାଇଁଛ ମହାବଳୀ ।
ଏ କଥା ଆମ୍ଭମାନଙ୍କର ହେ ମନକୁ
ନ ପାଏ, ନିବର୍ତ୍ତ କହିବୁଁ କି ତୁମ୍ଭଙ୍କୁ ।
ବଡ଼କାର୍ଯ୍ୟ ମୋତେ ତ ପଡ଼ିଛି ଗୋସାଇଁ
ଶାନ୍ତ ହୁଅ ପ୍ରସନ୍ନମନ ତୁମ୍ଭେ ହୋଇ ।
ତୁମ୍ଭଠାରେ ଭାର ଦେଇଣ ମୁଁ ହସ୍ତିନା
ଭୋଗିବି ବୋଲିଣ ଭାବିଛି ମହାମନା ।
ଦେଖ ପାଣ୍ଡୁ ସୁତେ କର୍ଣ୍ଣଙ୍କୁ ଯୁଝିବାକୁ
ଧାଇଁ ଅଛନ୍ତି କରେ ଉତ୍ତାରି ଧନୁକୁ ।
ଗରଜନ ନାଦରେ ଅବନୀ କମ୍ପାଇ
ଦେଉଅଛନ୍ତି, ଏହା ପାରିବ କେ ସହି ।
ଦୁର୍ଯ୍ୟୋଧନ ବଚନ ଶୁଣି ଦ୍ରୋଣ ସୁତ
କ୍ଷଣକମାତ୍ରକରେ ହୋଇଗଲେ ଶାନ୍ତ ।
କୃପ ସେହିକାଳରେ କହିଲେ କର୍ଣ୍ଣଙ୍କୁ
କ୍ଷମାକଲୁଁ ଆମ୍ଭେ ହେ ତୁମ୍ଭର ଦୋଷକୁ ।
ଅର୍ଜ୍ଜୁନଙ୍କୁ ତୁମ୍ଭେ ତ କରାଉଛ ରୋଷ
କରିବ ସେ ତୁମ୍ଭର ସବୁ ଗର୍ବ ଧ୍ୱଂସ ।
ଏହି ସମୟରେ ଯେ ପାଣ୍ଡବ ପାଞ୍ଚାଳେ
ପାଇଗଲେ ଆସି ରାଜନ ଯୁଦ୍ଧସ୍ଥଳେ ।
କର୍ଣ୍ଣ ନିଜର ବାହୁବଳ ଆଶ୍ରେ କରି
ରହିଲେ କୁରୁସେନା ମଧ୍ୟେ ଧନୁ ଧରି ।
ପାଣ୍ଡବମାନଙ୍କ ସଙ୍ଗତେ କର୍ଣ୍ଣଙ୍କର
ପ୍ରବର୍ତ୍ତିଲା ଯୁଦ୍ଧ ହୋଇ ଯେ ଅତି ଘୋର ।
କର୍ଣ୍ଣଙ୍କୁ ଦେଖି ଯୁଦ୍ଧେ ପାଣ୍ଡବ ପାଞ୍ଚାଳ-
ବଳ ଗରଜିଲେ ହୋଇଣ ଉତଫୁଲ୍ଲ ।
ବଚନରେ ବୋଇଲେ କର୍ଣ୍ଣ କାହିଁ ଅଛି
ଆଜି ତାହାର ପାଞ୍ଜି ପକାଇବା ପୋଛି ।
କେ ବୋଇଲେ ଟିକିଏ ରହି କର୍ଣ୍ଣ ରଣ
କର ବୁଝାଯାଉ ତୁମ୍ଭର ବାହୁଟାଣ ।
କେ ବୋଇଲେ ପାଣ୍ଡୁ ସୁତଙ୍କ ଏ ବଇରୀ
ଏ ଯୁଦ୍ଧ ଅନର୍ଥର ଅଟେ ହେତୁକାରୀ ।
ଏହାକୁ ଆଜ ଆମ୍ଭେ କଲେ ରଣେ ବଧ
ସବୁ ପ୍ରାଣୀମାନେ ପାଇବେ ମନେ ସଧ ।
ଏହିରୂପେ ପାଣ୍ଡବ ସେନାମାନେ ବୋଲି
କର୍ଣ୍ଣଙ୍କୁ ଶର ବିନ୍ଧି ଆଗେ ଗଲେ ପେଲି ।
କର୍ଣ୍ଣ ଆପଣା ବଳ ଆଶ୍ରୟକୁ କଲେ
ପାଣ୍ଡବସେନାକୁ ନଜରେ ନ ଆଣିଲେ ।
ଦିବ୍ୟ କାଣ୍ଡବଳରେ ଏକା କର୍ଣ୍ଣ ରଥୀ
ନିବାରିଲେ ପାଣ୍ଡବଗଣେ ନୋହି ବ୍ୟଥି ।

ଶତ ଶତ ସହସ୍ର ସହସ୍ର ଯେ ବାଣ
କର୍ଣ୍ଣଙ୍କ ଉପରେ ବିନ୍ଧିଲେ ନୃପଗଣ ।
ନୃପତିମାନଙ୍କ ଶରକୁ ସୁତବେଟା
ପୋଡ଼ିଲେ ଶରାଗ୍ନିରେ ଜାଣି କରି କୁଟା ।
ଦେବାସୁର ଯୁଦ୍ଧ ପରାୟେ ସେହି ଯୁଦ୍ଧ
କଲା ହେ ରାଜନ ସବୁରି ମନବୋଧ ।
କର୍ଣ୍ଣଙ୍କର ଆଶ୍ଚର୍ଯ୍ୟ ଲାଘବକୁ ଦେଖି
ପାଣ୍ଡବସେନାଏ ଯୁଝିଲେ ହୋଇ ଦୁଃଖୀ ।
କର୍ଣ୍ଣ ଅତିଶୟ ଦେଖାଇ ବାହୁଟାଣ
କାଟିଲେ ରଥ ଛତ୍ର ବିନ୍ଧି ବାଣଗଣ ।
କର୍ଣ୍ଣ ବାଣେ ପୀଡ଼ା ପାଇଣ ନୃପଗଣେ
ଯୁଦ୍ଧ ଛାଡ଼ିଣ ପଳାଇ ଗଲେ ଏଣେ ତେଣେ ।
ହାତୀ ରଥୀ ଘୋଡ଼ା ଯେ କୁଢ଼ କୁଢ଼ ହୋଇ
ପଡ଼ିଲେ କର୍ଣ୍ଣବାଣେ ହସ୍ତିନା ଗୋସାଇଁ ।
ଶୂରମାନଙ୍କର ବଦନ କମଳରେ
ମଣ୍ଡି ହୋଇଲା ଯୁଦ୍ଧଦାଣ୍ଡେ ସେ କାଳରେ ।
ଦୁର୍ଯ୍ୟୋଧନ ରାଜା କର୍ଣ୍ଣଙ୍କ ବିକ୍ରମକୁ
ଦେଖି ହସି କହିଲେ ସେ ଅଶ୍ୱତ୍ଥାମାଙ୍କୁ ।
ଆହେ ଗୁରୁଭାଇ ଦେଖ ତ କର୍ଣ୍ଣବୀର
ଏକାକୀ କଲେ ପାଣ୍ଡୁ ସେନାଙ୍କୁ ସଂହାର ।
କାର୍ତ୍ତିକେୟ ଅସୁରସେନାଙ୍କୁ ମାରିବା-
କଥାକୁ ଟି ଏ କଥା ପଟାନ୍ତର ଦେବା ।
କର୍ଣ୍ଣଙ୍କୁ ମାରିବାକୁ ଆସୁଛି ଅର୍ଜ୍ଜୁନ
କର ତୁମ୍ଭେ କର୍ଣ୍ଣ ସଙ୍ଗତେ ଆୟୋଧନ ।
ଏହା ଶୁଣିଣ ଅଶ୍ୱତ୍ଥାମା ଶଲ୍ୟ କୃପ
କୃତବର୍ମା ଆଦି ଧରିଣ କରେ ଚାପ ।
ଅର୍ଜ୍ଜୁନଙ୍କ ସନ୍ତାପ ବଢ଼ାଇବା ପାଇଁ
ବେଢ଼ିଲେ ଅର୍ଜ୍ଜୁନଙ୍କୁ ଯୁଦ୍ଧରେ ସେ ଯାଇ ।
କର୍ଣ୍ଣ ମଧ ଅର୍ଜ୍ଜୁନଠାକୁ ତମତମ
ହୋଇଗଲେ କରିବାପାଇଁ ହେ ସଂଗ୍ରାମ ।
ଧୃତରାଷ୍ଟ୍ର ବୋଇଲେ କର୍ଣ୍ଣ ପାର୍ଥ ଦୁହେଁ
ବଇର କରି ନିତ୍ୟେ ଜଳୁଥାନ୍ତି କୋହେ ।
ଦୁହେଁ ତ ଦଇବରେ ହେଲେ ଭେଟାଭେଟି
କିରୂପେ ଯୁଝିଲେ କହ ତ ରଥ ଯୋଟି ।
ସଞ୍ଜୟ ବୋଇଲେ ହେ ହାତୀ ତୁଲେ ହାତୀ
ଯୁଝିବା ପରି ଯୁଦ୍ଧ କଲେ ଦୁଇ ରଥୀ ।
ଅର୍ଜ୍ଜୁନ ଗାଣ୍ଡୀବକୁ ଓଟାରିଣ ଆଣ୍ଡେ
ବିନ୍ଧିଲେ କର୍ଣ୍ଣଙ୍କ ଦେହକୁ ପଟପାଟେ ।
କର୍ଣ୍ଣ ସଙ୍ଗେ ଧରିଣ ଓଟାରି କୋଦଣ୍ଡ
ପାର୍ଥକୁ ବିନ୍ଧିଲେ ରାଜନ ତିନି କାଣ୍ଡ ।
କର୍ଣ୍ଣଙ୍କର ଲାଘବ ଅର୍ଜ୍ଜୁନ ନ ସହି
ତିରିଶି କାଣ୍ଡେ ଦେଲେ କର୍ଣ୍ଣ ଦେହ ଛାଇ ।
ଏ ବାହାରେ କର୍ଣ୍ଣଙ୍କ ବାମଭୁଜ କାଣ୍ଡେ
ବିନ୍ଧନ୍ତେ କର୍ଣ୍ଣ ଧନୁ ଖସି ପଡ଼ି ଚାଣ୍ଡେ ।
ନିମିଷ ଅଧକରେ କର୍ଣ୍ଣ ଧନୁ ଧରି
ଅର୍ଜ୍ଜୁନଙ୍କୁ ଘୋଡ଼ାଇ ଦେଲେ ଶର ମାରି ।
କର୍ଣ୍ଣ ଯେତେ ଶର ବିନ୍ଧିଲେ ଅର୍ଜ୍ଜୁନକୁ
ପାର୍ଥ ତା କାଟିଲେ ଦେଖାଇ ବିକ୍ରମକୁ ।
ଅନ୍ୟୋନ୍ୟରେ ଦୁହେଁ କରନ୍ତେ ଶରବୃଷ୍ଟି
ନ ଦେଖିଲା ଜାଣି ହେ ସେ ଦୁହିଙ୍କି ଦୃଷ୍ଟି ।
କର୍ଣ୍ଣଙ୍କର ବିକ୍ରମ ନ ସହି ଅର୍ଜ୍ଜୁନ
କାଟିଲେ ମୁଷ୍ଟିଠାରୁ ଧନକୁ ବହନ ।
ଚାରିକାଣ୍ଡେ ଚାରି ଘୋଡ଼ାଙ୍କ ପ୍ରାଣ ନେଲେ
ଭାଲିକାଣ୍ଡେ ସାରଥି ମୁଣ୍ଡକୁ କାଟିଲେ ।
କର୍ଣ୍ଣଙ୍କ ଦେହକୁ ବଜାଇ ଚାରିକାଣ୍ଡ
ବିନ୍ଧିଲେ ଅରଜୁନ କମ୍ପାଇ କୋଦଣ୍ଡ ।
ବିରଥ ହୋଇ କର୍ଣ୍ଣ କୃପ ରଥେ ବସି
ଜୀଇଲି ବୋଲି ମୁଣ୍ଡ ହାତେ ଦେଲେ ଘଷି ।
କର୍ଣ୍ଣ ପଳାଅନ୍ତେ ତୁମ୍ଭର ସେନାଯାକ
ପଳାଇଲେ ବାଜନ୍ତେ ଅର୍ଜ୍ଜୁନ ଶାୟକ ।
ଦୁର୍ଯ୍ୟୋଧନ ଭାଜିବା ସେନା ଲେଉଟାଇ
ବୋଇଲେ ରହ ଯୁଦ୍ଧ କରୁଅଛି ମୁହିଁ ।
ଅର୍ଜ୍ଜୁନ ମୋତେ ତ ନୁହଇ ବଳୀୟାର
କିପାଇଁ ତୁମ୍ଭେମାନେ ହେଉଛ କାତର ।
ଆଜି ମୋ ପରାକ୍ରମ ଦେଖି ପାଣ୍ଡୁସୁତେ
ପଳାଇବେ ଯୁଦ୍ଧରୁ ଭୟ ଧରି ଚିତ୍ତେ ।
ସହସ୍ର ସହସ୍ର ମୁଁ ବିନ୍ଧି ମାରଗଣ
ଘୋଡ଼ାଇ ପକାଇବି ଯୁଦ୍ଧାକାଶାଙ୍ଗଣ ।
ବରଷାକାଳେ ମେଘ ବରଷିବା ପ୍ରାୟେ
ବିନ୍ଧିବି ମୁଁ ଶର ହେ ଦେଖିବ ସର୍ବିଏଁ ।
ସମୁଦ୍ର ଯେଉଁରୂପେ ନ ଲଙ୍ଘି ବେଳାକୁ
ସେରୂପେ ନ ଲଙ୍ଘିବ ପାର୍ଥ ମୋ ବଳକୁ ।
ଏରୂପେ ଦୁର୍ଯ୍ୟୋଧନ ସେନା ଆଗେ କହି
କ୍ରୋଧ ହୋଇଣ ଦୁଇ ନିଶ ମୋଡ଼ିଦେଇ ।
ବାହାରିଲେ କରିବାପାଇଁ ରଣରଙ୍ଗ
ଅରଜୁନଠାକୁ ନୟନ କରି ରଙ୍ଗ ।
ଦୁର୍ଯ୍ୟୋଧନ ଅର୍ଜ୍ଜୁନଠାକୁ ଯୁଦ୍ଧ କରି
ଯାନ୍ତେ କୃପ ହୃଦମଧରେ ଦୟାକରି ।
କହିଲେ ଭଣଜାକୁ ଦେଖୁଅଛ କିସ
ଦେଖ ଦୁର୍ଯ୍ୟୋଧନ କରୁଛି ବିଷଗ୍ରାସ ।
ଅରଜୁନ କ୍ରୋଧ ଅନଳରେ ପତଙ୍ଗ
ପରାୟେ ପୋଡ଼ିଯିବ କରି ରଣରଙ୍ଗ ।
ଆମ୍ଭେମାନେ ଅନ୍ନ ଖାଇଣ ପାଖେ ଥାଇ
ଜାଣୁ ଜାଣୁ କିରୂପେ ଦେବାଟି ମରାଇ ।

ଆରଜୁନ କାଣ୍ଡ ନ ପାଉଁ ଦୁର୍ଯ୍ୟୋଧନ
ରଖ ଅଶ୍ୱତ୍ଥାମା ହେ ଯାଇଣ ବହନ ।
ଅରଜୁନ ସିଂହ ତୁଲରେ ଦୁର୍ଯ୍ୟୋଧନ
ଗଜ ଯୁଦ୍ଧ କଲେଟି ହୋଇବ ନିଧନ ।
ମାମୁଙ୍କର ବଚନ ଅଶ୍ୱତ୍ଥାମା ଘେନି
କହିଲେ ଦୁର୍ଯ୍ୟୋଧନ ନୃପେ କରି ତୁନି ।
ଆମ୍ଭେମାନେ ତ ଜୀଇଥିବାଯାକ ନୃପ
ତୁମ୍ଭେ କିପାଁ ଯୁଝିବ କହ କରି କୋପ ।
ଅରଜୁନଙ୍କୁ ଯାଇ ଯୁଝୁଅଛି ମୁହିଁ
ରଖ ସେନା ମଧ୍ୟେ ରଥକୁ ଲେଉଟାଇ ।
ଦୁର୍ଯ୍ୟୋଧନ ବୋଇଲେ ତୁମ୍ଭର ଦ୍ରୋଣର
ସ୍ନେହ ତ ପାଣ୍ଡୁ ସୁତଗଣେ ନିରନ୍ତର ।
ଯୁଧିଷ୍ଠିରଙ୍କର ଶ୍ରେୟକୁ ଇଚ୍ଛାକରି
ମନ୍ଦବଳେ ଯୁଦ୍ଧ ତ ହେଉଛି ତୁମ୍ଭରି ।
ନୋହିଲେ ଅବା ମୋର ମନ୍ଦ କରମକୁ
ନ ପାଏ ତୁମ୍ଭ ବଳ ପାଣ୍ଡବମାନଙ୍କୁ ।
ମହୀଲୋଭୀ ହୋଇଣ ବନ୍ଧୁଙ୍କର ଦୁଃଖ
ବଢ଼ାଇଲି ତ ଆହେ ବୁଦ୍ଧିକରି ମୂର୍ଖ ।
ଶସ୍ତ୍ର ଅସ୍ତ୍ର ଜାଣି ଶତ୍ରୁକୁ ନ ମାରିବ
ତୁମ୍ଭ ବିନା ତ ଦେଖୁନାହିଁ ମୁଁ ମାନବ ।
ପ୍ରସନ୍ନ ହୋଇ ଏବେ ମୋର ପାଣ୍ଡବଙ୍କୁ
ନ ଘେନ ମୋହର ଏ କହିଥିବା କଥାକୁ ।
ସୋମକ ପାଞ୍ଚାଳେ ମୋ ସୈନ୍ୟ ଗଣ୍ଡି ଫୋଡ଼ି
ଦେଉ ଅଛନ୍ତି ଶରେ ଦିଅ ହେ ଘଉଡ଼ି ।
ଅର୍ଜୁନରେ ରକ୍ଷିତ ହୋଇଣ କେକୟେ
ମାରୁଅଛନ୍ତି ମୋର ସେନାଙ୍କୁ ନିର୍ଭୟେ ।
ଏବେ ଯତ୍ନବନ୍ତେ ମୋ ଶତ୍ରୁକୁ ସଂହାର
ଆଦ୍ୟ ପ୍ରାନ୍ତ ଦୁଇରେ ତୁମ୍ଭ ପରେ ଭାର ।
ପାଣ୍ଡବଙ୍କୁ ମାରିବା ପାଇଁ ଜନ୍ମ ହୋଇ
ରଖିଛ ତାଙ୍କୁ ଯୁଦ୍ଧେ କାହିଁକି ଗୋସାଇଁ ।
ଅପାଞ୍ଚାଳ କରିବ କହିଛନ୍ତି ସିଦ୍ଧେ
ସେହି କଥାକୁ ତୁମ୍ଭ ସିଦ୍ଧକର ଯୁଦ୍ଧେ ।
ତୁମ୍ଭ ଅସ୍ତ୍ର ପାନ୍ତେ ଇନ୍ଦ୍ରାଦି ଦେବଗଣ
ଭାଜିବେ, ପାଣ୍ଡୁ ସୁତେ କରିବେ କିରଣ ।
ତୁମ୍ଭ ତୁଲେ ପାଣ୍ଡବ ସୋମକେ ଯୁଦ୍ଧକୁ
ସମର୍ଥ ବୋଲି କିଏ ଆଣିବ ମନକୁ ।
ଦେଖ ପାର୍ଥ ମାରୁଅଛି ମୋ ସୈନ୍ୟଗଣ
ନ ଗଢ଼ାଇ କାଳକୁ କର ଯାଇ ରଣ ।
ପାଣ୍ଡବ ପାଞ୍ଚାଳଙ୍କୁ ମାରି ତୁମ୍ଭେ ପାର
ତୁମ୍ଭ ପରି ଏକା ମହୀରେ ତୁମ୍ଭେ ଶୂର ।
ଦୁର୍ଯ୍ୟୋଧନ ବଚନ ଶୁଣି ଦ୍ରୋଣସୁତ
ବୋଇଲେ ନୃପ ଛାଡ଼ି ହୃଦୟ ତରସ୍ତ ।

ଯେଉଁରୂପେ ଆମ୍ଭର ପାଣ୍ଡୁସୁତେ ପ୍ରିୟ
ସେହିରୂପେ ଜାଣ ହେ ତୁମ୍ଭେ ଆମ୍ଭ ପ୍ରିୟ ।
ସାମର୍ଥ୍ୟକୁ ଅନାଇଁ ତୁମ୍ଭ କାର୍ଯ୍ୟପାଇଁ
ପ୍ରାଣ ଛାଡ଼ି ଯୁଝିବି କହୁଛି ତ ମୁହିଁ ।
କର୍ଣ୍ଣ କୃପ ଶଲ୍ୟ ଯେ କୃତବର୍ମା ଆମ୍ଭେ
ନିମିଷେ ପାଣ୍ଡୁସେନା ମାରିବୁଁଟି ତୁମ୍ଭେ ।
ଆମ୍ଭେ ନ ଯୁଝିଲେ ପାଣ୍ଡବେ କୁରୁସେନା
ମାରିକେ ନିମିଷାର୍ଦ୍ଧେ ଜାଣ ମହାମନା ।
ଦୁଇ କୁଳ ରଥିଏ ଯୁଝିବାରୁ ରାୟେ
ଅଛନ୍ତି ଜୀଇ ଆଜଯାଏଟି ସେନାଏ ।
ପାଣ୍ଡବେ ଜୀଇଥିଲେ ପାଣ୍ଡବସେନାଙ୍କୁ
ନ ଦେଖେ ଜିଣିମାକୁ ମହୀରେ କାହାକୁ ।
ସତ୍ୟ କରି ତୁମ୍ଭଙ୍କୁ କହୁଅଛି ଏହା
ଜାଣିଥାଏ ଏବେ ହେ ଭାନୁବତୀନାହା ।
ଆପଣା ହିତ ଭାବି ପାଣ୍ଡୁ ସୁତେ ରଣ
କରୁଛନ୍ତି, କେ ତାଙ୍କୁ ଜିଣିବ ରାଜନ ।
ଲୋଭୀ ମାନୀ ସର୍ବାଭିଶଙ୍କୀ ତୁମ୍ଭ ହୃଦ
ଏଣୁ ଆମ୍ଭଠାରେ ନୋହୁଛ ସୁଖପ୍ରଦ ।
ଏବେ ମୁଁ ତୁମ୍ଭ ପାଇଁ ପ୍ରାଣ ଛାଡ଼ି ଯୁଦ୍ଧ
କରିବି ହେ ରାଜନ କର ଚିତ୍ତ ବୋଧ ।
ପାଞ୍ଚାଳ କେକୟ ସୋମକ ପାଣ୍ଡବଙ୍କୁ
ନିବାରିବି ଭାବିଣ ତୁମ୍ଭର ହିତକୁ ।
ଆଜି ମୋ କାଣ୍ଡଘାତେ ପାଞ୍ଚାଳ ସୋମକେ
ପଳାଇବେ, କୁରୁଏ ମାରିବେ ନିଃଶଙ୍କେ ।
ଅଶ୍ୱତ୍ଥାମୟଟି ଆଜି ଯୁଧିଷ୍ଠିର
ଏ ଜଗତଯାକ ଦେଖିବେ ମନେକର ।
ନିର୍ବେଦ ହୋଇ ଆଜି ଯୁଧିଷ୍ଠିର ରାଜା
ଥରାଇବେ ଭୟ ଶୋକରେ ଜାଣ ମଜ୍ଜା ।
ମୋ ବାଣ ମୁଖେ ଆଜି କରିବ ଯେ ରଣ
ପୋଛିଲା ଯମ ପାଞ୍ଜି ବୋଲି ତାର ଜାଣ ।
ଏ ରୂପେ ଦୁର୍ଯ୍ୟୋଧନ ନୃପ ଦ୍ରୋଣସୁତ
କହି ଯୁଦ୍ଧ କରିବା ପାଇଁ ହେଲେ ରତ ।
କେକୟେ ପାଞ୍ଚାଳେ ବୋଇଲେ କର ଯୁଦ୍ଧ
ପାରିଲେ ବଧକର କିବା ହୁଅ ବଧ ।
ଅଶ୍ୱତ୍ଥାମାଠାରୁ ଶୁଣନ୍ତେ ପାଣ୍ଡୁସେନା
ବିନ୍ଧିଲେ ହେ ରାଜନ ଶର ଅକଳନା ।
ଦ୍ରୋଣସୁତ ସେ କାଣ୍ଡମାନଙ୍କୁ କାଟିଲେ
ପାଣ୍ଡବ ଧୃଷ୍ଟଦ୍ୟୁମ୍ନ ଆଗେ ରଥ କଲେ ।
ଅଶ୍ୱତ୍ଥାମା ଶର ପରତାପେ ପାଞ୍ଚାଳ
ସୃଞ୍ଜୟେ ପଳାଇଲେ ଜାଣ ହେ ନୃପାଳ ।
ସୋମକ ପାଞ୍ଚାଳଙ୍କ ପଳାଇବାର ଦେଖି
ଧୃଷ୍ଟଦ୍ୟୁମ୍ନ ଯୁଝିଲେ ରଙ୍ଗ କରି ଆଖି ।

ଶଏ ରଥୀ ତାହାଙ୍କ ସଙ୍ଗତରେ ଥିଲେ
ସାଜି ହୋଇକରି ଜାଣ ହେ ନୃପ ଭଲେ ।
ସେନାଙ୍କୁ ମାରିବା ନ ସହି ଧୃଷ୍ଟଦ୍ୟୁମ୍ନ
ବୋଇଲେ ଶୁଣ ଆହେ ଦ୍ରୋଣଙ୍କ ନନ୍ଦନ ।
ଦୁର୍ବୁଦ୍ଧିପଣ ଏବେ ତୁମ୍ଭ ଜଣାଗଲା
ଇତର ଲୋକଙ୍କୁ ଯା ପାରିବା ହୋଇଲା ।
ମୁଁ ତ ଧନୁର୍ବାହା ହୋଇଣ ରହିଅଛି
ଦେଖା ତୁମ୍ଭ ବଳ ଯେତେକ କହ ଅଛି ।
ଟିକିଏ ଯେବେ ତୁମ୍ଭେ ରହିବ ମୋ ଆଗେ
ଆହେ ଆଶ୍ୱଥାମା ପଡ଼ିବ ଯମଭାଗେ ।
ଏହିରୂପେ ଅନେକ ବୋଲି ଧୃଷ୍ଟଦ୍ୟୁମ୍ନ
ବିନ୍ଧିଲେ ବାଛିଣ ଉତ୍ତମ ଶରମାନ ।
ଭ୍ରମରପନ୍ତି ପରି ଯାଇ ଶର ଭଲେ
ଦ୍ରୋଣସୁତ ରକତ ମଧୁ ପାନକଲେ ।
ବାଜିଲେ ପାଦ ସର୍ପ କ୍ରୋଧହେବା ପରି
କ୍ରୋଧ ହେଲେ ଅଶ୍ୱଥାମା ହେ ଦଣ୍ଡଧାରୀ ।
କାଣ୍ଡୁଟାଏ କରପୁଟରେ ସେ ଧଇଲେ
କ୍ଷଣେ ଧୃଷ୍ଟଦ୍ୟୁମନ ରହ ହେ ବୋଇଲେ ।
ଧନୁ ମଧେ ବସାଇ ଅଗଣିତ ଶର
ବିନ୍ଧନ୍ତେ ନ ଦିଶିଲେ ଧୃଷ୍ଟଦ୍ୟୁମ୍ନ ବୀର ।
ଦ୍ରୌଣି କାଣ୍ଡେ ଧୃଷ୍ଟଦ୍ୟୁମନ ଘୋଡ଼ିହୋଇ
କହିଲେ ଦ୍ରୋଣସୁତ ମୁଖକୁ ସେ ଚାହିଁ ।
ଦ୍ରୋଣଙ୍କୁ ମାରି ଦ୍ରୋର ତୁମ୍ଭର ଜୀବନ
ନେବା ପାଇଁ ମୋର ଜନମ ମନେ ଘେନ ।
ଏହି ରାତି ଭିତରେ ଦ୍ରୋଣଙ୍କର ତୁଲେ
ତୁମ୍ଭଙ୍କୁ ବସାଇବି ଯମପୁରେ ଭଲେ ।
ନୋହିଲେ ମୋର ମନ ସୁଖ ହୋଇ ନାହିଁ
କିସ ଆଉ ଗୁଡ଼ାଏ କହିବଇଁ ମୁହିଁ ।
କୁରୁଙ୍କଠାରେ ତୁମ୍ଭ କରିଛ ଭକତି
ତହିଁକି ଅନୁରୂପ ଦେଖାଅ ଶକତି ।
ବ୍ରାହ୍ମଣ୍ୟ ଛାଡ଼ି କ୍ଷତ୍ରି ଧର୍ମେ ହେଲ ରତ
ମାରିବାର ତୁମ୍ଭଙ୍କୁ ହୋଇଲା ଉଚିତ ।
ଧୃଷ୍ଟଦ୍ୟୁମ୍ନ ବଚନ ଶୁଣି ଅଶ୍ୱଥାମା
ବୋଇଲେ ଭାଙ୍ଗୁଛି ମୁଁ ତୁମ୍ଭର ଗାରିମା ।
ରହ ରହ କ୍ଷତ୍ରିୟପଣକୁ ଦେଖାଅ
ହୋଇଛ ତ ତୁମ୍ଭେ କ୍ଷତ୍ରିୟଘର ପୁଅ ।
ଏରୂପେ କହି ତୁମ୍ଭ ହିତ ମନେ କଲେ
ଧୃଷ୍ଟଦ୍ୟୁମ୍ନଙ୍କୁ ଯେ ଶରରେ ଛାଇଲେ ।
ଆପଣା ବଳ ଆଶ୍ରେକରି ଧୃଷ୍ଟଦ୍ୟୁମ୍ନ
ଯୁଦ୍ଧ କଲେ ତାହାଙ୍କୁ ନୋହିଣ ବିମନ ।
ଦୁହିଙ୍କ ଯୁଦ୍ଧ ଦେଖି ଚାରଣ ସିଦ୍ଧ ସୁର
ଧନ୍ୟ ଧନ୍ୟ ବୋଲି ବୋଇଲେ ନରବର ।

ପରସ୍ପରେ ଦୁହେଁ ବିଜୟ ଇଚ୍ଛା ଭାବି
ଯୁଦ୍ଧ କରୁ ତେଜେ ସେ ନିନ୍ଦାକଲେ ରବି ।
ସେ ଦୁଇ ରଥୀ ଯୁଦ୍ଧ ଦେଖି ଦୁଇ ସେନା
ବଜାଇଲେ ବାଦ୍ୟ ତୋଷରେ ଅକଳନା ।
ଗୋଟି ହୋଇ ଯୋଦ୍ଧା କରନ୍ତେ ସିଂହ ରଢ଼ି
ମଣିଲୁଁ ପଡ଼ିଲା କି ଗିରିଶୃଙ୍ଗ ଝଡ଼ି ।
ମୁହୂର୍ତ୍ତ ପରିଯନ୍ତେ ଦୁଇ ରଥୀଙ୍କର
ସମାନ ଯୁଦ୍ଧ ପ୍ରବର୍ତ୍ତିଲା ନରବର ।
ଧୃଷ୍ଟଦ୍ୟୁମ୍ନଙ୍କର ଘୋଡ଼ା ଛତ୍ର ଧ୍ୱଜ
ସାରଥି ଧନୁ ନାଶକଲେ ଦ୍ରୋଣାତ୍ମଜ ।
ସମସ୍ତ ପାଞ୍ଚାଳକୁ ବାରମ୍ବାରେ ଖେଦି
ନେଲେ ଦ୍ରୋଣସୁତ ହେବାକୁ ନିର୍ବିବାଦୀ ।
ଅଶ୍ୱଥାମାଙ୍କର ଦେଖିଣ ପରାକ୍ରମ
ପାଣ୍ଡୁସେନା ଭାଜିଲେ ଛାଡ଼ି ସେ ସଂଗ୍ରାମ ।
ଅର୍ଜୁନ ଧୃଷ୍ଟଦ୍ୟୁମ୍ନ ନେତ୍ରେ ଚାହୁଁଥିଲେ
ଶଏ କାଣ୍ଡେ ଶଏ ପାଞ୍ଚାଳ ପ୍ରାଣ ନେଲେ ।
ସୃଞ୍ଜୟ ପାଞ୍ଚାଳ ଉପରେ ଶରଧାଡ଼ି
ସରଜନ୍ତେ ଦ୍ରୌଣି ଯେ ପଳାଇଲେ ଛାଡ଼ି ।
ପାଣ୍ଡୁସେନାମାନଙ୍କୁ ଜିଣି ରଣେ ଦ୍ରୌଣି
ଆଷାଢ଼ ମେଘ ପରି ଗରଜିଲେ ଟାଣି ।
ପ୍ରଳୟଅଗ୍ନି ପରି ଅଶ୍ୱଥାମା ତେଜ
ସେ କାଳେ ଦିଶିଲା ଦେଖିଲୁଁ ମହାରାଜ ।
ଇନ୍ଦ୍ର ଶତ୍ରୁଗଣ ନାଶିଣ ପ୍ରଭାବନ୍ତ
ହେଲା ପରି ଦ୍ରୌଣି ହୋଇଲେ ଶୋଭାବନ୍ତ
ଏହା ଦେଖି ଯେ ଯୁଧିଷ୍ଠିର ଭୀମସେନ
କଲେ ଦ୍ରୋଣସୁତ ସଙ୍ଗତେ ଆୟୋଧନ ।
ଦୁର୍ଯ୍ୟୋଧନ ରାଜା ଦ୍ରୋଣଙ୍କୁ ଘେନି ତୁଲେ
ଯୁଧିଷ୍ଠିର ରାଜାଙ୍କ ସଙ୍ଗତେ ଯୁଝିଲେ ।
ପାଣ୍ଡବ ନରପତି ମାଳବ ଅମ୍ବଷ୍ଠ
ବଙ୍ଗ ଶିବି ତ୍ରିଗର୍ତ୍ତ ମାଇଲେ କରି ରୁଷ୍ଟ ।
ଅଭୀଷାହ ଶୂରସେନଙ୍କୁ ଭୀମ ମାରି
ରକତେ ପୃଥିବୀ ମଣ୍ଡିଲେ ଦଣ୍ଡଧାରୀ ।
ଯୋଧେୟ ଆରଟ୍ଟଜ ମଦ୍ରକମାନଙ୍କୁ
ପେଷିଲେ ଅରଜୁନ ଯମ ନଗରକୁ ।
ପଡ଼ନ୍ତେ ହାତୀମାନେ ପର୍ବତ ପରାୟେ
ନୋହିଲା ଗମି ଯୁଦ୍ଧସ୍ଥାନେ ନରରାୟେ ।
ଛିଡ଼ି ତଳେ ପଡ଼ି ଯାଆନ୍ତେ ହାତୀଶୁଣ୍ଢ
ନିନ୍ଦା କରିଲା ସେ ରାଜନ ସର୍ପଭେଣ୍ଢା ।
ଅର୍ଜୁନଙ୍କ ଶରରେ ଚନ୍ଦ୍ରମା ପରାୟେ
ନୃପଙ୍କ ଛତ୍ର ଛିଡ଼ି ଦିଶିଲା ହେ ରାୟେ ।
ମାର ଧର କାଟ ଶବଦରେ ଯେ କର୍ଣ୍ଣ
ଯୁଗଳ ପୂରିଗଲା ସେକାଳେଟି ଜାଣ ।

ବାୟବ୍ୟ ଅସ୍ତ୍ର କରି ଦ୍ରୋଣ ଅସ୍ତ୍ରଜ୍ଞାତା
ଉଡ଼ାଇଣ ସେନା ଛାଡ଼ିଲେ ମନୁଁ ଚିନ୍ତା
ଭୀମ ଅରଜୁନ ନୟନେ ଚାହିଁଥିଲେ
ପାଞ୍ଚାଳଙ୍କୁ ଦ୍ରୋଣ ଯୁଦ୍ଧରେ ଖେଦିନେଲେ ।
ବହୁତ ବଳ ଧରି ଭୀମ ଅରଜୁନ
ଆସିଲେ ଦ୍ରୋଣ ପାଶେ ଯୁଝିକରି ମନ ।
ଦକ୍ଷିଣେ ଅର୍ଜ୍ଜୁନ ଉତ୍ତରେ ଭୀମସେନ
ରହି ଦ୍ରୋଣ ଦେହେ ବିନ୍ଧିଲେ କାଣ୍ଡମାନ ।
ଭୀମ ଅରଜୁନଙ୍କ ଯୁଦ୍ଧକୁ ଦେଖିଣ
ବାହୁଡ଼ି କଲେ ମତ୍ସ୍ୟ କେକୟଟି ରଣ ।
ତୁମ୍ଭର ପୁଅ ଦୁର୍ଯ୍ୟୋଧନ ସେନା ଘେନି
କହିଲେ ଦ୍ରୋଣ ପାଶେ ହୋଇ ଯୁଦ୍ଧ ମାନୀ ।
ଅରଜୁନ କାଣ୍ଡେ କୁରୁଏ ପାଇ ପୀଡ଼ା
ଯୁଦ୍ଧରୁ ପଳାଇଲେ ଛାଡ଼ିଦେଇ ବ୍ରୀଡ଼ା ।
ନିଦ୍ରା ଅନ୍ଧକାରେ ତ ନୟନ କାହାର
ନ କରୁଥିଲା ପର ଆପଣା ଗୋଚର ।
ପୁଣି ଅରଜୁନ ଯେ ମାରନ୍ତେ ଘଉଡ଼ି
ଏ ଘେନିଟି ପଳାଇ ଗଲେ ସେନା ଛାଡ଼ି ।
ଦ୍ରୋଣ ତୁଲରେ ଦୁର୍ଯ୍ୟୋଧନ ନିବାରଣ
କଲେକ ସେନାଏ ଭାଜିଲେ ଛାଡ଼ି ରଣ ।
ତୁମ୍ଭର ନୃପତିଏ ଅର୍ଜ୍ଜୁନ ଭୟରେ
ଲଜ୍ଜା ଦୂରକରି ଯୁଦ୍ଧରୁ ପଳାଇଲେ ।
ସେହି ସମୟରେ ଯେ ସାରଥିକି ଚାହିଁ
କହିଲେ ବଚନ ସାତ୍ୟକି ହସିଦେଇ ।
ସୋମଦତ୍ତଠାକୁ ବାହା ମୋହର ରଥ
କାଟି ପକାଇବି ଯୁଦ୍ଧେ ମୁଁ ତାର ମାଥ ।
ସାରଥି ସାତ୍ୟକି ବଚନ ଶୁଣି କାନେ
ବାହିଲା ସେ ତୁରଙ୍ଗମାନଙ୍କୁ ବହନେ ।
ପବନ ମନ ପରି ଘୋଡ଼ା କରି ଗତି
ପରବେଶ ହୋଇଲେ ସୋମଦତ୍ତ କତି ।
ସାତ୍ୟକି ଆସିବାର ଦେଖି ସୋମଦତ୍ତ
ବିନ୍ଧିଦେଲେ କାଣ୍ଡ ହେବାକୁ ଗର୍ବଚ୍ୟୁତ ।
ସୋମଦତ୍ତ ଶର ଘନରେ ମଧୁବଂଶ
ଅବତଂସ ସୂର୍ଯ୍ୟ ହୋଇଗଲେ ଅଦୃଶ୍ୟ ।
ଅସମ୍ଭ୍ରାନ୍ତି ହୋଇଣ ଯୁଯୁଧାନ ବୀର
କଲେ ସୋମଦତ୍ତକୁ ମାର୍ଗଣ ପ୍ରହାର ।
ସୋମଦତ୍ତକୁ ସାତ୍ୟକି ବକ୍ଷକୁ ଷାଠିଏ
ବିନ୍ଧିଲେ ଯୁଦ୍ଧେ କ୍ରୋଧେ ଗଣି ଗଣି ରାୟେ ।
ସାତ୍ୟକି ସୋମଦତ୍ତ ବକ୍ଷେ ତୀକ୍ଷ୍ଣ ଶର
ବାଛିକରି ବିନ୍ଧିଲେ ହେବାକୁ ସଂହାର ।
ଅନ୍ୟୋନ୍ୟରେ ସେଦୁହେଁ କାଣ୍ଡେ ହୋଇ ମଣ୍ଡି
ବୁହାଇଲେ ରକ୍ତ ଫୁଲାଇ ଦେଇ ଗଣ୍ଡି ।

ବସନ୍ତ ସମୟେ କିଂଶୁକ ଦେହ ପ୍ରଭା
ଭାଙ୍ଗି ପକାଇଲା ଦୁହିଁଙ୍କ ଦେହ ପ୍ରଭା
ଦୁହେଁ ପରସ୍ପରେ ହୋଇଣ ତୁହାଁତୁହିଁ
ବୋଲାବୋଲି ହୋଇଲେ ଜାଣ ନରସାଇଁ ।
ରଥ ମଣ୍ଡଳକୁ ଦେଖାଇ ଶର ବୃଷ୍ଟି
କଲେ ସେ ଦୁହେଁ ନେବାପାଇଁ ଜୟସୃଷ୍ଟି ।
ଝିଙ୍କ ଦେହ ପରାୟେ ଦୁହିଙ୍କର ଦେହ
ଦିଶିଲା ରାଜନ ବାଜନ୍ତେ ଶର ସିଂହ ।
ସେ ଶରେ ତ ସୁବର୍ଣ୍ଣପୁଙ୍ଖ ଲାଗିଥିଲେ
ଅଗ୍ନିକଣା ପରି ସେ ଦୂରକୁ ଦିଶିଲେ ।
ଏହି ସମୟରେ ଯେ ବହ୍ଲିକଙ୍କ ସୁନୁ
କାଟିଲେ ଅର୍ଦ୍ଧଚନ୍ଦ୍ରେ ସାତ୍ୟକିଙ୍କ ଧନୁ ।
ତ୍ୱରା ହୋଇ ସାତ୍ୟକି ଦେହେ ପଞ୍ଚବିଂଶ
ଶର ସୋମଦତ୍ତ ବିନ୍ଧିଲେ ବହି ରୋଷ ।
ଆନ ଧନୁ ଧରି ମାଧବ ପାଞ୍ଚକାଣ୍ଡ
ବିନ୍ଧିଲେ କ୍ରୋଧେ ଜାଳିଦେଇ ହୃଦଖଣ୍ଡ ।
ହସିକରି ବାହ୍ଲିକ- ତନୟ ଧ୍ୱଜକୁ
କାଟି ପକାଇଲେ ଦେଖାଇ ବିକ୍ରମକୁ ।
ଧ୍ୱଜ ଛିଡ଼ି ଯାଆନ୍ତେ ସୋମଦତ୍ତ ତ୍ୱରା
ହୋଇ ବିନ୍ଧିଲେ ହେ ରାଜନ ଶର- ଧାରା ।
ସେହି ସମୟରେ ଯେ ସୋମଦତ୍ତ ଧନୁ
କାଟିଣ ପକାଇଲେ ମଧୁବଂଶ ସୁନୁ ।
ସୋମଦତ୍ତ ଦେହକୁ ବଜାଇଣ ଶଏ
କାଣ୍ଡକୁ ବିନ୍ଧିଲେ ସାତ୍ୟକି ବୀରରାଏ ।
ଆନ ଧନୁ ଧରିଣ ସୋମଦତ୍ତ ବୀର
ଘୋଡ଼ାଇ ଦେଲେ ଶରେ ସାତ୍ୟକି ଶରୀର ।
ସାତ୍ୟକି ତା ନ ସହି ସୋମଦତ୍ତ ଦେହେ
ଶାୟକ ନାୟକଙ୍କୁ ପ୍ରହାରିଲେ କୋହେ ।
ସାତ୍ୟକିଙ୍କ ବିନ୍ଧିବା ପରି ସୋମଦତ୍ତ
ବିନ୍ଧିଲେ ଯୁଦ୍ଧେ ରାୟେ ହୋଇ କ୍ରୋଧଚିତ୍ତ ।
ଭୀମ ସାତ୍ୟକିଙ୍କର ସହାୟ ହୋଇଲେ
ଦଶଟି ଶର ସୋମଦତ୍ତଙ୍କୁ ବିନ୍ଧିଲେ ।
ଅସମ୍ଭ୍ରାନ୍ତ ହୋଇଣ ସୋମଦତ୍ତ ବୀର
ବିନ୍ଧିଲେ ସାତ୍ୟକି ଦେହକୁ ବହୁ ଶର ।
ଏହି ସମୟରେ ପରିଘ ଟାଏ ଭୀମ-
ସୁତ ଘଟୋତ୍କଚ ଫିଙ୍ଗିଲେ ବହି ତମ ।
ସେ ପରିଘ ନ ଆସୁ ସୋମଦତ୍ତ କାଟି
ବଡ଼ କରି ଯେ ହସିଦେଲେ ମେଲି ପାଟି ।
ପାଞ୍ଚ କାଣ୍ଡେ ସୋମଦତ୍ତଙ୍କ ହସ୍ତାବାପ
ତୁଲେ ଧନୁ କାଟିଲେ ସାତ୍ୟକି ଅମାପ ।
ସୋମଦତ୍ତ ଚାରିଘୋଡ଼ାକୁ ଚାରିକାଣ୍ଡେ
ବସାଇଲେ ସାତ୍ୟକି ଯୁଦ୍ଧେ ଯମଦାଣ୍ଡେ ।

ଭାଲିକାଣ୍ଡେ ସାରଥି ମୁଣ୍ଡଟିକି କାଟି
ଖୁଆଇଦେଲେ ତଳେ ତା ପାଟିକି ମାଟି ।
ସୁବର୍ଣ୍ଣ ପୁଙ୍ଖଲଗା ଶିଳାଘଷା ଶର
ଯୋଚିଲେ ଧନୁମଧ୍ୟେ ମଧୁବଂଶ ବୀର ।
ସୋମଦତ୍ତ ବଧରେ କରିଣ ଲାଳସା
ଝିଙ୍କିଲେ କର୍ଣ୍ଣଯାଏ ସାତ୍ୟକି ସୁଯଶା ।
ସୋମଦତ୍ତ ହୃଦୟ ଦେଶକୁ ସେ ବାଣ
ପ୍ରହାରନ୍ତେ ଚଳିଲା ଶବ୍ଦ କରି ଟାଣ ।
ସୋମଦତ୍ତ ବହିସ୍ଥଳକୁ ସେ ବିଦାରି
ପଶନ୍ତେ ସୋମଦତ୍ତ ପ୍ରାଣ ଦୂରକରି ।
ରଥ ଆକାଶରୁ ଯେ ଚନ୍ଦ୍ରମା ପରାୟେ
ତଳେ ପଡ଼ି ବେଢ଼ାଏ ଗଡ଼ିଗଲେ ରାୟେ ।
ମରନ୍ତେ ସୋମଦତ୍ତ ତୁମ୍ଭ ରଥୀବୃନ୍ଦ
ବେଢ଼ି ସାତ୍ୟକିଙ୍କି କରିଲେ ମହାଦ୍ୱନ୍ଦ୍ୱ ।
ସାତ୍ୟକି ପରସୈନ୍ୟଶରେ ଘୋଡ଼ିହୋଇ
ରହନ୍ତେ ଦେଖି ତା ପାଣ୍ଡବ ନରସାଇଁ ।
ମହତସେନା ଘେନି ସାତ୍ୟକି ମହତ୍ତ୍ୱ
ରଖିବାକୁ ଦ୍ରୋଣ ସୈନ୍ୟଙ୍କୁ ହେଲେ ଗତ ।
ଯୁଧିଷ୍ଠିର ରାଜାଙ୍କ ପାଇ କାଣ୍ଡଘାତ
ଭାଜିଲେ ତୁମ୍ଭ ସୈନ୍ୟ ହୋଇଣ ତରସ୍ତ ।
ଦ୍ରୋଣ ଯୁଧିଷ୍ଠିରଙ୍କ ପରାକ୍ରମ ଦେଖି
ଧଇଲେ ସେ ଯୁଦ୍ଧରେ ରଙ୍ଗ କରି ଆଖି ।
ତୀକ୍ଷଣ ସାତଶର ଯୁଧିଷ୍ଠିର ଦେହେ
ବିନ୍ଧିଲେ କୁମ୍ଭସୁତ ରାଜନ ହେ କୋହେ ।
କ୍ରୋଧ ହୋଇଣ ଯୁଧିଷ୍ଠିର ନରରାଣ
ଦ୍ରୋଣ ଉପରକୁ ବିନ୍ଧିଲେ ପାଞ୍ଚବାଣ ।
ଯୁଧିଷ୍ଠିର କାଣ୍ଡେ ଦ୍ରୋଣ ପୀଡ଼ା ପାଇ
ସୃକ୍କଣୀ ତଟକୁ ଜିହ୍ୱାରେ ଚାଟି ଦେଇ ।
ଯୁଧିଷ୍ଠିର ଧ୍ୱଜ କାର୍ମୁକକୁ ଯେ କାଣ୍ଡେ
କାଟିଣ ପକାଇଲେ ଦ୍ରୋଣ ହସ୍ତଚାଣ୍ଡେ ।
ଆନ ଧନୁ ଧରି ରାଜନ ଯୁଧିଷ୍ଠିର
ବିନ୍ଧିଲେ ଦ୍ରୋଣଙ୍କୁ ସହସ୍ର ସଂଖ୍ୟା ଶର ।
ଦ୍ରୋଣଙ୍କ ଧ୍ୱଜ ଘୋଡ଼ା ସୁତ ଦେହେ ଯାଇ
ବାଜିଲା ସେ କାଣ୍ଡଯାକ ହେ ନରସାଇଁ ।
ଦ୍ରୋଣ ମଧ୍ୟ ସେ କାଣ୍ଡେ ପାଇ ମହାପୀଡ଼ା
ରଥ ମଧ୍ୟେ ବସିଲେ ଛାଡ଼ିଦେଇ ବ୍ରୀଡ଼ା ।
ଚେତନା ପାଇ ଦ୍ରୋଣ ବାୟବ୍ୟାସ୍ତ୍ର କଲେ
ଅସ୍ତ୍ରରେ ଯୁଧିଷ୍ଠିର ସେ ଅସ୍ତ୍ର ସ୍ତମ୍ଭିଲେ ।
କୃଷ୍ଣ ସେହିକାଳେ ବୋଇଲେ ଯୁଧିଷ୍ଠିର
ଦ୍ରୋଣ ତୁଲରେ ତୁମ୍ଭେ ନ କର ସମର ।
ତୁମ୍ଭଙ୍କୁ ଧରିବାକୁ ଦ୍ରୋଣଙ୍କର ମନ
ଏଥିକି ଜଗ, ସେ ତ ଯୋଦ୍ଧାଙ୍କ ମଣ୍ଡନ ।
ଧୃଷ୍ଟଦ୍ୟୁମ୍ନ କାଲି ଯେ ମାରିବ ଗୁରୁଙ୍କୁ
ତୁମ୍ଭେ ଯାଅ ସୁଯୋଧନକୁ ଯୁଝିବାକୁ ।
ରାଜା ତୁଲେ ରାଜା ସମର କରିବାର
ସବୁଦିନେ ଉଚିତ ଏକା ମନେକର ।
କୁରୁ ତୁଲେ ଭୀମ ତ ଯୁଦ୍ଧ କରୁଛନ୍ତି
ତାଙ୍କଠାକୁ ଯାଅ ହେ ପାଣ୍ଡବ ନୃପତି ।
କୃଷ୍ଣଙ୍କର ବଚନ ଘେନି ଯୁଧିଷ୍ଠିର
ଗଲେ ଯେଉଁ ସ୍ଥାନରେ ଥିଲେ ବୃକୋଦର ।
ଯୁଧିଷ୍ଠିର ଯିବାବେଳରେ ତୁମ୍ଭ ସେନା
ମାରି ପକାଇଲେ ହେ ଜାଣ ଅଗଳନା ।
ଦ୍ରୋଣ ପାଣ୍ଡୁ ପାଞ୍ଚାଳ ସଇନଙ୍କୁ ରଣ
କରନ୍ତେ ଘେନି ପକାଇଲେ ରାୟେ ପ୍ରାଣ ।
ଏହିରୂପେ ଯୁଦ୍ଧ ହୁଅନ୍ତେ ମହୀପାଳ
ଅନ୍ଧକାରେ ହେଜି ନ ପାରିଣ ନିଜବଳ ।
ବୋଲାବୋଲି ହୋଇ ମାତ୍ରଟି ଯୁଦ୍ଧକଲେ
ହାତୀ ଘୋଡ଼ା ପଦାତିକୁଳକୁ ନାଶିଲେ ।
ଦ୍ରୋଣ କୃପ କର୍ଣ୍ଣ ଭୀମ ଧୃଷ୍ଟଦ୍ୟୁମନ
ସାତ୍ୟକି ଆଦି ଯେତେ ଥିଲେ ରଥୀ ଜନ ।
ପରସ୍ପରେ ପର ଆପଣା ସୈନ୍ୟ ଚିହ୍ନି
ବଧ କଲେ ଯୋଦ୍ଧାଏ ହୋଇ କ୍ରୋଧସ୍ଥାନୀ ।
ଚାରିପଟରେ କୁରୁ ପାଣ୍ଡବ ସଇନ
ଛାଡ଼ିଲେ ଛାଟିପିଟି ହୋଇଣ ଜୀବନ ।
ତୁମ୍ଭ, ତୁମ୍ଭ ପୁଅ ବିଚାରେ ହେ ରାଜନ
ହୋଇଲେ ବେନିକୁଳ ସେନାଏ ନାଶନ ।
ଅନ୍ଧାରେ ନୟନକୁ ନ ଦିଶନ୍ତେ କିଛି
ରହିଲେ ଦୁଇସେନା ଯୁଦ୍ଧକୁ ମୁରୁଛି ।
ରଥୀମାନେ ହୃଦରୁ ଛାଡ଼ିଦେଇ କ୍ରୋଧ
ଅନ୍ଧାର ସକାଶୁଁ ନ କଲେ କେହି ଯୁଦ୍ଧ ।
ଧୃତରାଷ୍ଟ୍ର ବୋଇଲେ ଅନ୍ଧାର ହୁଅନ୍ତେ
କି ବିଚାର କଲେ କହ ତ ମନ୍ତ୍ରୀବର ।
ସଞ୍ଜୟ ବୋଇଲେ ସୈନ୍ୟକୁ ଗୋଟିଆଇଁ
ବ୍ୟୂହ ରଚିଲେ ଦ୍ରୋଣ ବ୍ରାହ୍ମଣ ଗୋସାଇଁ ।
ବ୍ୟୂହ ଦ୍ୱାର ଜଗି ରହିଲେ ଗୁରୁ ଦ୍ରୋଣ
ପୃଷ୍ଠଦେଶେ ରହିଲେ ମଦ୍ରଦେଶରାଣ ।
ଦୁଇ ପାଖେ ଶକୁନି ଅଶ୍ୱତ୍ଥାମା ରହି
ମୋଡ଼ି ଠିଆକଲେ ରାଜନ ନିଶ ଦୁଇ ।
ଦୁର୍ଯ୍ୟୋଧନ ରାଜା ଯେ ବଳକୁ ଆବୋରି
କହିଲେ ଏ ବଚନ ପ୍ରୀତିଯୁକ୍ତ କରି ।
ଅନ୍ଧାରେ ତ କାହାକୁ ଦିଶୁନାହିଁ କିଛି
ଶସ୍ତ୍ର ଛାଡ଼ିଣ ହୁଳା ଧର ମୁଁ ବୋଲୁଛି ।
ଦୁର୍ଯ୍ୟୋଧନ ବଚନ ଘେନି ସେନାଗଣ
ଦୁହୁଡ଼ିରେ ଉଜ୍ଜ୍ୱଳ କଲେ ଯୁଦ୍ଧାଙ୍ଗଣ ।

ମଣିରତ୍ନ ସୁବର୍ଣ୍ଣ ଦିହୁଡ଼ି ଆଲୋକ
ପାଆନ୍ତେ ଅଧିକ ଦିଶିଲା ଝକଝକ ।
କାଳଘନେ ବିଜୁଳି ଚହଟିବା ପରି
ଦିଶିଲା ସେ ଅନ୍ଧାରେ ଆଲୋକ ସେପରି ।
ତହିଁ ଦ୍ରୋଣ ସୂର୍ଯ୍ୟ ଆଲୋକ- ମୟୂଖରେ
ଅନ୍ଧାର ଘନମାଳା ବିଦାରିଣ ଖରେ ।
ସଇନ ଆକାଶେ ଦିଶିଲେ ପ୍ରଭାବନ୍ତ
ଧନୁ ମଣ୍ଡଳରେ ଯେ ହୋଇଣ ଆବୃତ ।
ଶସ୍ତ୍ରମାନେ ଅଗ୍ନି ପ୍ରଭାରେ ପ୍ରତିପ୍ରଭା
ଦେଇ ହେଲେ ବୀରଙ୍କ ମନ ନେତ୍ର ଲୋଭା ।
ଶସ୍ତ୍ର ଦୀପ ଆଭରଣଙ୍କ ଦୀପିତରେ
ବ୍ୟକତ ହୋଇ ସୈନ୍ୟ ଦିଶିଲେ ନେତ୍ରରେ ।
ସୁବର୍ଣ୍ଣ ରତ୍ନମଣ୍ଡା ସବୁରି ତ ଧ୍ୱଜ
ବୁକାଇଲେ ସେ ତେଜେ ନୟନ ସରୋଜ ।
ତୁମ୍ଭ ସୈନ୍ୟେ ଆଲୋକ ଦେଖି ପାଣ୍ଡୁସୁତେ
ପଦାତିଙ୍କି ଡାକିଣ କହିଲେ ତ୍ୱରିତେ ।
ଆମ୍ଭ ସୈନ୍ୟ ଆଲୋକ ଧରି ତୁମ୍ଭେମାନେ
ଯୁଦ୍ଧ କରୁ ଆମ୍ଭେଟି ବୋଲୁଛୁଁ ବହନେ ।
ହାତୀକେ ସାତ ରଥ ଗୋଟିକରେ ଦଶ
ଘୋଡ଼ା ଗୋଟିକରେ ଯୋଡ଼ିଏ ନରଈଶ ।
ଲଗାଇ ଦୀପ ଦୁଇ ସେନା କଲେ ଯୁଦ୍ଧ
ହୋଇଲା ତା ଦେଖି ବୀରଙ୍କ ମନ ବୋଧ ।
ଏ ବାରେ ପ୍ରଦୀପ ଦିହୁଡ଼ି ଅସଂଖ୍ୟା
ଲାଗିଲା, କହି ମୁଁ ନ ପାରେ କରି ସଂଖ୍ୟା ।
ଡଗର ହୋଇ ଅଗ୍ନି ଦୀପତ ସ୍ୱର୍ଗକୁ
ଗଲା କି ଯୁଦ୍ଧ କୀରତିକି କହିବାକୁ
ଏହିରୂପେ ଆମ୍ଭେ ଯେ ଦେଖିଣ ନୟନେ
ମଣିଲୁ ଆହେ ମନେ ରାୟେ କର ମନେ ।
ଦେବ ଯକ୍ଷ କିନ୍ନର ଅସୁର ଉରଗ
ଆସିଲେ ଯୁଦ୍ଧ ଦେଖି ବହି ଅନୁରାଗ ।
ସେ ଯୁଦ୍ଧରେ ଯେତେକ ବୀର ମୃତ ହେଲେ
ବିମାନମାନ ଗଢ଼ି ସ୍ୱର୍ଗକୁ ସେ ଗଲେ ।
ସେ ସକାଶୁଁ ରାଜନ ସେ ଯୁଦ୍ଧପ୍ରଦେଶ
ପୁଣ୍ୟ ସ୍ଥାନ ପରି ମଣିଲା ଦେଖି ଦୃଶ ।
ସୁରାସୁର ବ୍ୟୂହ ପରାୟେ ଦୁଇ ବ୍ୟୂହ
ମଣିଲେ ହେ ରାଜନ ନରେ ବହି ମୋହ ।
ରଥ- ଜଳଦ ତୁରଙ୍ଗମ - ଧ୍ୱନି - ଘୋଷ
ଶସ୍ତ୍ର - ବାତ ରକତ ଜଳରେ ସଦୃଶ ।
ତହିଁରେ ଦ୍ରୋଣ -ସୂର୍ଯ୍ୟ ବାଣ କିରଣରେ
ଦିଶିଲେ ସେହୁ ପ୍ରଭାବନ୍ତ ଅତ୍ୟନ୍ତରେ ।
ଧୂଳି ତମ ତୁଟି ଯାଆନ୍ତେ ଯୋଦ୍ଧାଗଣ
ଯୋଟାଯୋଟି ହୋଇ ପୁଣି ସେ କଲେ ରଣ ।

ପରସ୍ପର ସମସ୍ତେ ହୋଇ ତୁହାଁତୁହିଁ
ଯମପୁରେ ବସିଲେ ହଣାହଣି ହୋଇ ।
ଭୂମି ଆକାଶ ଦେଶେ ନକ୍ଷତ୍ର ପରାୟେ
ଦିହୁଡ଼ି ଦୀପକାନ୍ତି ଦିଶିଲା ହେ ରାୟେ ।
ହୁଳାମାନେ ଉଲ୍କା ପ୍ରାୟେ ଦୀପ୍ତିମନ୍ତ
ହୁଅନ୍ତେ ଯୋଦ୍ଧାଙ୍କର ତୋଷିଲା ସେ ଚିତ୍ତ ।
ଅନ୍ଧାର ଘନରାଜି ମଧ୍ୟେ ଦୀପପନ୍ତି
ନିନ୍ଦାକଲେ ଜୁଳୁଜୁଳାକୁ ସେ ଅତି ।
ରଥୀ ରଥୀ, ହାତୀଚଢ଼ାକୁ ହାତୀଚଢ଼ା-
ମାନେ ଯୁଦ୍ଧ କଲେ ଆଗକୁ କାଢ଼ି ଭଡ଼ା ।
ଅଶ୍ୱାରୋହେ ଅଶ୍ୱାରୋହୀଙ୍କୁ ବିନ୍ଧି ବାଣ
ଘେନି ପକାଇଲେ ହେ ରାଜନ ପରାଣ ।
ସେ କାଳେ ଅରଜୁନ ଉଭାରି ଗାଣ୍ଡୀବ
ପକାଇଲେ ବିନାଶି କୁରୁସେନା ଜୀବ ।
ଧୃତରାଷ୍ଟ୍ର ବୋଇଲେ ବାଜି ପାର୍ଥ ବାଣ
ସୈନ୍ୟ ତୁଲେ ମୋ ପୁଅ କି କଲା ବଖାଣ ।
ଅରଜୁନଙ୍କୁ କେଉଁମାନେ ଯୁଦ୍ଧ କଲେ
କହ କେଉଁମାନେ ବା ଛାଡ଼ି ପଳାଇଲେ ।
ଦ୍ରୋଣଙ୍କର ଦକ୍ଷିଣଚକ୍ର କେ ରଖିଲା
କେ ଯାଇ ତାହାଙ୍କ ସହାୟ ପୃଷ୍ଟେ ହେଲା ।
ଦ୍ରୋଣଙ୍କର ଆଗରେ କେଉଁମାନେ ରଣ
କଲେ ମୃତ୍ୟୁଦେବଙ୍କୁ କରିଣ ବରଣ ।
ଦ୍ରୋଣ -ସିଂହ ପାଞ୍ଚାଳବଳ-ମୃଗ ମାରି
କିରୂପେ ଶୋଇଲେ କହ ତ ପ୍ରାଣ ହାରି ।
ପାଣ୍ଡବଙ୍କ ଜୟ କହୁଛ ସବୁବେଳେ
ମୋ ଲୋକେ ତୁମ୍ଭଠାରେ କିବା ଦୋଷକଲେ
ସଞ୍ଜୟ ବୋଇଲେ ଦ୍ରୋଣଙ୍କ ମତ ଜାଣି
ଦୁର୍ଯ୍ୟୋଧନ ଡାକି ଆଣିଲେ ରଥୀଶ୍ରେଣୀ ।
ସେମାନଙ୍କର ନାମମାନ ତୁମ୍ଭ ଆଗେ
କହିବା ଶୁଣ ଆହେ ରାଜନ ସରାଗେ ।
ବିକର୍ଣ୍ଣ ଦୀର୍ଘବାହୁ ଦୁର୍ଦ୍ଧର୍ଷ ଚିତ୍ରସେନ
ମହାବାହୁ ଆଦି ଥିଲେ ଯେ ଭ୍ରାତୃଗଣ ।
ଏହାଙ୍କୁ ବୋଇଲେ ଦ୍ରୋଣଙ୍କ ପୃଷ୍ଠ ଜଗ
ଆଜି ଦ୍ରୋଣ ଘେନି ଆଣିବେ ଜୟଭାଗ ।
କୃତବରମା ଶଲ୍ୟ ଉତ୍ତର ଦକ୍ଷିଣ
ଜଗିକରି କରନ୍ତୁ ପାଣ୍ଡବଙ୍କୁ ରଣ ।
ପାଣ୍ଡୁସୁତ ତ ସାବଧାନ ହୋଇଛନ୍ତି
ଅସାବଧାନ ହେଲେ ଯିବା ଯମକଂତି ।
ଦ୍ରୋଣଙ୍କ ପରି ତ ମହୀରେ ନାହିଁ ବୀର
ପାଣ୍ଡବେ ମାରିବେ ତାଙ୍କୁ ସେ କେତେକର ।
କେବଳ କହୁଥାଇଁ ଧୃଷ୍ଟଦ୍ୟୁମ୍ନ ମୁଖେ
ପଡ଼ିଲେ ଦ୍ରୋଣ ପଡ଼ିବେଟି ଜାଣ ଦୁଃଖେ ।

ଏଥିକି ଜଗିକରି ଆହେ ରଥିକୁଳ
ଜାଗ୍ରତେ ପାଣ୍ଡବ ସେନାଙ୍କୁ କର ରୋଳ ।
ଧୃଷ୍ଟଦ୍ୟୁମ୍ନ ବିନା ଦ୍ରୋଣଙ୍କୁ ଯୋଚି ବାଣ
ବିନ୍ଧିବାକୁ କାହାକୁ ନ ପାଏ ମୁଁ ଜାଣ ।
ସବୁ ପ୍ରକାରରେ ଦ୍ରୋଣଙ୍କୁ ଥିଲେ ଜଗି
ଭୁଞ୍ଜିବା ହସ୍ତିନାକୁ ହୋଇ ଅନୁରାଗୀ ।
ସୃଞ୍ଜୟ ପାଞ୍ଚାଳ ସକାଳୁ ଧୃଷ୍ଟଦ୍ୟୁମ୍ନ
ବଳୀ ହୋଇ କରୁଅଛନ୍ତି ଆୟୋଧନ ।
ତାହାଙ୍କୁ ଦ୍ରୋଣ ଯେବେ ପକାଇବେ ମାରି
ନ ପାରିବେ ଧୃଷ୍ଟଦ୍ୟୁମନ ଯୁଦ୍ଧ କରି ।
ଅର୍ଜୁନଙ୍କୁ କର୍ଣ୍ଣ ମାରିବେ ଯେବେ ରଣେ
ଭୀମ ମୋତେ ଯୁଝିଲେ ଯିବେ କି ପରାଣେ ।
ଦୁର୍ଯ୍ୟୋଧନ ଏହା ବୋଲନ୍ତେ ତୁମ୍ଭ ସେନା
ଯୁଦ୍ଧ କଲେ ରାଜନ ହୋଇ କୋପମନା ।
ଅର୍ଜୁନଙ୍କୁ ବେଢ଼ି ମାରନ୍ତେ କୁରୁବଳ
ଅର୍ଜୁନ ଦେଲେ କାଳ ହାତେ ତାଙ୍କ ବାଳ ।
ଦ୍ରୁପଦଙ୍କୁ ଅଶ୍ୱଥାମା କରିଣ ରଣ
ଘୋଡ଼ାଇ ପକାଇଲେ ବିନ୍ଧି ମୁନବାଣ ।
ଭାରଦ୍ୱାଜ ସୃଞ୍ଜୟମାନଙ୍କୁ ଯୁଝିଲେ
ମୃତ୍ୟୁଞ୍ଜୟ ସୁତ ଏ ବୋଲି ସେ ବୁଝିଲେ ।
ପରସ୍ପରେ ଯେ ପାଣ୍ଡୁକୁରୁ ସେନାଯାକ
ମରନ୍ତେ ବିକଳେ କରନ୍ତେ ଘୋର ଡାକ ।
ସେହି ରାତିକ ଯୁଦ୍ଧ ଦେଖି କରି ରାୟେ
ଥରିଗଲା ଜାଣ ହେ ସବୁଙ୍କର କାୟେ
ଆଜିଯାଏ କାହା କାନରେ ନାହିଁ ଶୁଣା
କାହିଁ ପାଇଁ କାହାକୁ ହୋଇବ ସେ ଜଣା
ରାତି ଯୁଦ୍ଧ ହୋନ୍ତେ ପାଞ୍ଚାଳ ସୋମକଙ୍କୁ
କହିଲେ ଡାକି ଯୁଧିଷ୍ଠିର ବଚନକୁ ।
ସମସ୍ତେ ବେଢ଼ି ଦ୍ରୋଣ ବୁଢ଼ାଟିକି ମାର
ସେ ମଲେ ହେବା ଆମ୍ଭେ ଶତ୍ରୁମୁଖୁଁ ପାର ।
ଧର୍ମରାଜ ବଚନେ ତୋଷ ହୋଇ ସେନା
ଦ୍ରୋଣ ପ୍ରତି ଶର ବିନ୍ଧିଲେ ଅକଳନା ।
ଆମ୍ଭେମାନେ ମଧ ଦ୍ରୋଣଙ୍କର ହିତରେ
ଯୁଦ୍ଧ କଲୁଁ ପାଣ୍ଡବ ସୈନ୍ୟ ସଙ୍ଗତରେ ।
କୃତବର୍ମା ଯୁଧିଷ୍ଠିରଙ୍କ ତୁଲେ ରଣ
କରିବାପାଇଁ ରଥ ଧୁଆଁଇଲେ ଜାଣ ।
ସାତ୍ୟକି ଚୌଦିଗେ କରନ୍ତେ ଶରବୃଷ୍ଟି
ଭୂରି ଧାଇଁଆସିଲେ ଯାନ୍ତେ ପଡ଼ି ଦୃଷ୍ଟି ।
ସହଦେବ ଦ୍ରୋଣ କରନ୍ତେ ଆସି ରଣ
କର୍ଣ୍ଣ ତାଙ୍କୁ ବିନ୍ଧିଲେ ଉତ୍ତମ ମାର୍ଗଣ ।
ଭୀମଙ୍କୁ ଦୁର୍ଯ୍ୟୋଧନ ଯୁଦ୍ଧରେ ନିବାରି
ବିନ୍ଧିଲେ ଶରମାନ ଧନୁକୁ ଓଟାରି ।
ନକୁଳଙ୍କୁ ଶକୁନି କଲେ ନିବାରଣ
ଶିଖଣ୍ଡୀଙ୍କି ବିନ୍ଧିଲେ କୃପାଚାର୍ଯ୍ୟ ବାଣ ।
ପ୍ରତିବିନ୍ଧ୍ୟ ତୁଲରେ ଦୁଃଶାସନ ବୀରା
ଯୁଦ୍ଧ କଲେ ମାରି ଯୁଦ୍ଧରେ ଚାରି ଚିରା ।
ଘଟୋତ୍କଚ ରାକ୍ଷସ ଆସନ୍ତେ ଯୁଦ୍ଧକୁ
ଅଶ୍ୱଥାମା ଯୁଝିଲେ ଯାଇଣ ତାହାକୁ ।
ଦ୍ରୁପଦଙ୍କର ତୁଲେ ବୃଷସେନ ରଣ
କଲେ ବାଛି ବାଛି ବିନ୍ଧିଣ ମାରଗଣ ।
ଦ୍ରୋଣେ ମାରିବାକୁ ବିରାଟ ଆସୁଥିଲେ
ଶଲ୍ୟ ତାଙ୍କୁ ଉତ୍ତମ ବାଣେ ନିବାରିଲେ ।
ଶତାନିକ ବୀରକୁ ଚିତ୍ରସେନ ଶର
ପ୍ରହାରନ୍ତେ ରହିଣ କଲେ ସେ ସମର ।
ଅଳମ୍ବୁଷ ଅରଜୁନଙ୍କୁ ନେତ୍ରେ ଦେଖି
ଯୁଦ୍ଧ କଲା ଧନୁ ମଧ୍ୟରେ ଶର ଯୋଖି ।
ଦ୍ରୋଣ ଧୃଷ୍ଟଦ୍ୟୁମନ ଦୁହେଁ କଲେ ରଣ
ବିନ୍ଧିଲେ ବାଛିଣ ତୂଣରୁ ମାରଗଣ ।
ତୁମ୍ଭର ରଥୀମାନେ ପାଣ୍ଡବ ରଥୀଙ୍କି
ପ୍ରତ୍ୟେକେ ନିବାରିଲେ ଧନୁ କରେ ଟେକି ।
ଗଜାରୋହୀମାନେ ଯେ ଗଜାରୋହୀ ତୁଲେ
ଶତ ଶତ ସହସ୍ର ସଂଖ୍ୟାରେ ଯୁଝିଲେ ।
ହାତୀକି ହାତୀ ହାରି ଯାନ୍ତେ ଯୁଦ୍ଧ ଛାଡ଼ି
ମଣିଲେ ଲୋକେ ଗିରି ପଡ଼ିଲା କି ମାଡ଼ି ।
ସିପାଇଏ ସିପାଇମାନଙ୍କୁ ତୋମର
ପ୍ରାସକୁ ପ୍ରହାରିଣ ରଚିଲେ ସମର ।
ପାଇକେ ଗଦା ଫରୀ ଖଣ୍ଡା ମୂଷଳକୁ
ଧରି ଯୁଦ୍ଧ କଲେ ଛାଡ଼ିଣ ଜୀବନକୁ ।
ଯୁଧିଷ୍ଠି- ସିନ୍ଧୁକୁ କୃତବର୍ମାର ବେଳା
ନିବାରି ପକାଇଲେ ସର୍ଜି କାଣ୍ଡମାଳା ।
ଯୁଧିଷ୍ଠିର ଯେ କୃତବର୍ମାଙ୍କୁ ପଚିଶି
ଶର ବିନ୍ଧି ରହ ବୋଇଲେ ହୋଇ ରୋଷୀ ।
କୃତବରମା ତାହା ସହି ନ ପାରିଲେ
ଯୁଧିଷ୍ଠିର ଧନୁକୁ କାଟି ପକାଇଲେ ।
ପୁଣି ରାଗେ ଝିଙ୍କିଣ ଆପଣା କୋଦଣ୍ଡ
ଯୁଧିଷ୍ଠିର ଦେହେ ବିନ୍ଧିଲେ ସାତକାଣ୍ଡ ।
ଆନ ଧନକୁ ଧରି ଯୁଧିଷ୍ଠିର ରାୟେ
ବାହୁ ଉର ଦୁହିଙ୍କି ବିନ୍ଧିଲେ କୋଡ଼ିଏ ।
ଯୁଧିଷ୍ଠିର କାଣ୍ଡ ବାଜିଲେ ହେଲେ ଦେହେ
କୃତବର୍ମା ରହିଲେ ଗିରିପରି କୋହେ ।
ଯୁଧିଷ୍ଠିର ଦେହେ ବଜାଇ ସାତକାଣ୍ଡ
ବିନ୍ଧିଲେ କୃତବର୍ମା କରି ହସ୍ତଚାଣ୍ଡ ।
ଯୁଧିଷ୍ଠିର କୃତବର୍ମାଙ୍କ ହସ୍ତାବାପ
ତୁଲରେ କାଟି ପକାଇଲେ କରିଚାପ ।

ଏ ବାହାରେ ପାଞ୍ଚୋଟି କାଣ୍ଡେ ଧର୍ମବହି
ବିନ୍ଧିଲେ ହେ ରାଜନ ପ୍ରବୋଧ ମୁରୁଛି ।
ସେ କାଣ୍ଡେ କୃତବର୍ମା ଗଣ୍ଡିକି ନିକିଳି
ଖୋଳି ପକାଇଲେ ମହୀକି ରାୟେ ଗଳି ।
ନିମିଷ ମାତ୍ରକରେ ଧରି ଆନ ଧନୁ
ବିନ୍ଧିଲେ କୃତବର୍ମା କୁଦିକଙ୍କ ସୃନୁ ।
ଯୁଧିଷ୍ଠିରଙ୍କୁ ଷାଠିଏ ସାରଥିକି ନବ
କାଣ୍ଡ କୃତବର୍ମା ବିନ୍ଧିଲେ ଛାଡ଼ିଭାବ ।
ଯୁଧିଷ୍ଠିର ରାଜା ଧନକୁ ରଥେ ଥୋଇ
ଶକତି ହାତେ ହେଲେ ମହାକ୍ରୋଧ ବହି ।
ଭଡ଼ା କେତେ ଯାଇ ଫିଙ୍ଗନ୍ତେ ଶକ୍ତିବର
ଚଳିଲା ସେ ଶବଦ କରି ମହାଘୋର ।
ଉଲ୍ଲକା ପରି ରଣଦାଣ୍ଡରେ ଦିଶିଲା
କୃତବର୍ମା ଦକ୍ଷିଣ ବାହୁରେ ପଶିଲା ।
ତହିଁ ରହି ନ ପାରି ଯୁଧିଷ୍ଠିର ବଳେ
ଦେଖୁଁ ଦେଖୁଁ ଯାଇଣ ପଶିଲା ପାତାଳେ ।
ଏହି ସମୟରେ ଚାପକୁ ଧରି ନୃପ
ବିନ୍ଧିଲେ ରୋପ କୃତବର୍ମାଙ୍କୁ ଅମାପ ।
ନିମିଷାର୍ଦ୍ଧ ଭିତରେ ଯୁଧିଷ୍ଠିରଙ୍କର
କୃତବରମା ନେଲେ ପ୍ରାଣ ସାରଥିର ।
ଏହା ବାହାରେ ଚାରି ଘୋଡ଼ାଙ୍କୁ ମାଇଲେ
କାହିଁ ଯିବଟି ରାଜା ଆଜ ହେ ବୋଇଲେ ।
ଯୁଧିଷ୍ଠିର ରାଜନ ଧରନ୍ତେଣ ଖଣ୍ଡା
କାଟି ପକାଇଲେ ତା କୃତବର୍ମା ଭେଣ୍ଡା ।
ସୁନାଦଣ୍ଡଲଗା ତୋମର ଯୁଧିଷ୍ଠିର-
ଫିଙ୍ଗିଲେ କୃତବର୍ମା ଦେହେ ନରବର ।
ତୋମରକୁ ଦେଖି କାଣ୍ଡରେ କୃତବର୍ମା
କାଟିଣ ପକାଇଲେ ଦେଖାଇ ଗାରିମା ।
କୃତବରମା ଶଏ ଶର ଯୁଧିଷ୍ଠିର
ଦେହକୁ ପ୍ରହାରିଲେ କରିଣ ସମର ।
ପୁଣି କାଣ୍ଡକୁ ବିନ୍ଧି ଯୁଧିଷ୍ଠିର ମଞ୍ଜୁ
ଦେହ ମର୍ଧୁଁ ସେ କାଟି ପକାଇଲେ ସାଞ୍ଜୁ ।
ଆକାଶରୁ ଭୂମିରେ ନକ୍ଷତ୍ରଙ୍କ ପ୍ରାୟେ
ଦିଶିଲା ସେ ସାଞ୍ଜୁ ପଡ଼ି ହେ ନରରାୟେ ।
ସାଞ୍ଜୁ ଛିଡ଼ିଯାଆନ୍ତେ ଯୁଧିଷ୍ଠିର ରାଜା
ପଳାଇଲେ ଯୁଦ୍ଧରୁ ଛାଡ଼ିଦେଇ ମଜ୍ଜା ।
ଯୁଧିଷ୍ଠିର ରାଜାଙ୍କୁ ଜିଣିଣ ହାର୍ଦିକ
ହୃଦୟ ତୋଷ କଲେ ବିନ୍ଧିଣ ଶାୟକ ।
ସେନା ନାୟକ ତହିଁ ଦ୍ରୋଣ ହୋଇଥିଲେ
ତାହାଙ୍କର ଦକ୍ଷିଣ ଚକ୍ରକୁ ଜଗିଲେ ।
ସାତ୍ୟକି ପାଞ୍ଚଶର ଭୂରିଙ୍କ ଦେହକୁ
ବିନ୍ଧନ୍ତେ ରଚିଲେ ସେ ଭୂରିଙ୍କ ପୀଡ଼ାକୁ
ଭୂରି ସାତ୍ୟକିଙ୍କ ବକ୍ଷକୁ ଦଶକାଣ୍ଡ
ବିନ୍ଧିଲେ ରାଜନ ଦେଖାଇ ହସ୍ତ ଚାଣ୍ଡ ।
ଯୁଦ୍ଧଶ୍ରଦ୍ଧା ନ ଛାଡ଼ି ଭୂରି ଯୁଯୁଧାନ
ପାଇଲେ ହେଲେ ପୀଡ଼ା କଲେ ଆୟୋଧନ
ଅନ୍ତକ ଯମ ପରି ଦୁହେଁ ଦୁହିଁଙ୍କର
ନେବା ପାଇଁ ପ୍ରାଣକୁ ରଚିଲେ ସମର ।
ମୁହୂର୍ତ୍ତେ ପରିଯନ୍ତେ ଯୁଯୁଧାନ ଭୂରି
ସମାନ ଯୁଦ୍ଧ କଲେ ଜାଣ ଦଣ୍ଡଧାରୀ ।
ବୃଷ୍ଣି ଅବତଂସ ସେ ଯୋଦ୍ଧାଙ୍କ ପ୍ରବର
ଶିନିପୌତ୍ର ସାତ୍ୟକି ଥରାଇ ଶରୀର ।
ଭୂରିଙ୍କର କରଚାପକୁ କାଟିଦେଲେ
ନବରୋପ ପ୍ରତାପ ଦେଖାଇ ବିନ୍ଧିଲେ ।
ସାତ୍ୟକିଙ୍କ ବଳକୁ ନ ଡରିଣ ଭୂରି
ବିନ୍ଧିଲେ ସାତ୍ୟକିଙ୍କୁ ଆନ ଧନୁ ଧରି ।
ବିନ୍ଧିଣ ତିନିକାଣ୍ଡ ଯୁଯୁଧାନ ଦେହେ
ପୁଣି କରଚାପ କାଟିଲେ ଭୂରି କୋହେ ।
ଧନୁ ଛାଡ଼ିଯାନ୍ତେ ଶକତି କରେ ଧରି
ଫିଙ୍ଗିଲେ ଯୁଯୁଧାନ ଧାଇଁ ଉଡ଼ା ଚାରି ।
ମରଣ ଦେବତାର କନିଷ୍ଠା ଭଗିନୀ
ପରାୟେ ଦିଶିଲା ସେ ଶକ୍ତି ତେଜ ଘେନି ।
ଭୂରି ତାହା ଦେଖି ବୁଜନ୍ତେ ବେନି ଆଖି
ଉରେ ଗଳି ଭୂମିରେ ରହିଲା ସେ ଲାଖି ।
ସେହିକ୍ଷଣି ପ୍ରାଣୁଟିକି କରି ଭୂରି ଦୂର
ପଡ଼ିଲେ ଇନ୍ଦ୍ରଧ୍ୱଜ ପ୍ରାୟେ ନରବର ।
ଭୂରି ହତ ଦେଖି ବାହାରିଲେ ଅଶ୍ୱତ୍ଥାମା
ଭାଙ୍ଗିବା ପାଇଁ ଯୁଯୁଧାନଙ୍କ ଗାରିମା ।
ରହ ରହ ସାତ୍ୟକି ମୋତେ ଯୁଦ୍ଧ କର
ବୋଲିକରି ବିନ୍ଧିଲେ ବହୁତ ସେ ଶର ।
ଅଶ୍ୱତ୍ଥାମା ସାତ୍ୟକି ପାଶକୁ ଆସନ୍ତେ
ଭୀମଙ୍କ ସୁତ ଘଟୋତ୍କଚ ଦେଖି ନେତ୍ରେ ।
ଗରଜନ କରିଣ କହିଲା ତାହାଙ୍କୁ
ରହ ଆଜି ମାରିବି ଯୁଦ୍ଧରେ ତୁମ୍ଭଙ୍କୁ ।
ଏରୂପେ କହି ଘଟୋତ୍କଚ ମହାବଳ
ଦ୍ରୋଣସୁତ ସଙ୍ଗରେ ଆରମ୍ଭିଲେ ରୋଳ ।
ଯେରୂପରେ ସିଂହ ଆସଇ ହସ୍ତୀଠାକୁ
ସେରୂପେ ଆସିଲା ସେ ଦ୍ରୋଣସୁତଠାକୁ ।
ଅଖ ପରି ଶରକୁ ଧରି ଘଟୋତ୍କଚ
ବିନ୍ଧନ୍ତେ କମ୍ପିଗଲା ସେ ଘାତରେ ମଞ୍ଚ ।
ଘଟୋତ୍କଚ ଶରବୃଷ୍ଟି କି ଦ୍ରୋଣସୁତ
ହସି ହସି କାଣ୍ଡ ବିନ୍ଧିଣ କଲେ ହତ ।
ଶହେ କାଣ୍ଡ ଘଟୋତ୍କଚର ଦେହକୁ
ବିନ୍ଧିଲେ ଦ୍ରୋଣସୁତ ଦେଖାଇ ବଳକୁ ।

ରାକ୍ଷସ ସେ ଶର ବାଜନ୍ତେ ହେଲେ ପ୍ରାଣ-
ନ ପାଇ ବଢ଼ାଇଲା ଦ୍ୱିଗୁଣରେ ରୋଷ ।
ଶରମାଳାଙ୍କରେ ସେ ହୋଇଯାନ୍ତେ ମଣ୍ଡି
ନିନ୍ଦିପକାଇଲା ଝିଙ୍କକୁ ତାର ଗଣ୍ଡି ।
କ୍ଷୁର ଅର୍ଦ୍ଧଚନ୍ଦ୍ର ଯେ ନାରାଚ ନାଳିକ
ବରାହକର୍ଣ୍ଣ କର୍ଣ୍ଣୀ ଶାୟକ ଅନେକ ।
ବିନ୍ଧିଲା ଘଟୋତ୍କଚ ଅଶ୍ୱତ୍ଥାମା ଦେହେ
ଘାଉଆବାଘ ପ୍ରାୟେ ହୋଇଥିଲା କୋହେ ।
ଦ୍ରୌଣି ତାର କାଣ୍ଡରାଜିକି ଦିବ୍ୟଶର
ପ୍ରହାରିଣ କରିଲେ କ୍ଷଣକେ ସଂହାର ।
ଅଶ୍ୱତ୍ଥାମା ଘଟୋତ୍କଚଙ୍କ ବାଣରାଜି
ବାହାରନ୍ତେ ଧନୁରମଧରୁ ଗରଜି ।
ଆକାଶଦେଶେ ବଜାବଜି ହୋଇ ଜ୍ୱାଳା
ମାଳା ଜାତ କରନ୍ତେ ଭୟ ଜାତ ହେଲା ।
ତୁମ୍ଭ ପଅ ହିତ ବିଚାରି ଦ୍ରୋଣ ସୁତ
କାଣ୍ଡେ ଘଟୋତ୍କଚକୁ କରିଣ କ୍ଷୋଭିତ ।
ଚାରିଦିଗ ଶରେ କରି ଆଚ୍ଛନକୁ
ବିନ୍ଧିଲେ ଆଶୁଗ ରାଗରେ ରାକ୍ଷସକୁ ।
ନ ସହି ତା କ୍ରୋଧେ ରାକ୍ଷସକୁଳ ଭେଣ୍ଡା
ଦ୍ରୋଣିକି ଯୁଦ୍ଧେ ଶୋଇବାକୁ କରି ଦଣ୍ଡା ।
କାଳାନଳ ପରି ଦଶୋଟି ମାରଗଣ
ବିନ୍ଧିଲା ଦ୍ରୋଣସୁତ ଉରେ କରି ଟାଣ ।
ପବନବେଗେ ବୃକ୍ଷ ଢଳିଗଲା ପ୍ରାୟେ
ଢଳିଗଲେ ଅଶ୍ୱତ୍ଥାମା ସେ କାଣ୍ଡଘାଏ ।
ଧ୍ୱଜଯଷ୍ଟି ଧରି ରହିଲେ ମୁଣ୍ଡ ପୋତି
ତା ଦେଖି ତୁମ୍ଭ ସେନା ବ୍ୟସ୍ତ କଲେ କତି ।
ଆହା କି ହେଲା ବୋଲି ମନେ ଚିନ୍ତାକଲେ
ଭୟକୁ ହୃଦରେ ଉଦୟ କରାଇଲେ ।
ଅଶ୍ୱତ୍ଥାମାର ମୋହ ଦେଖିଣ ପାଞ୍ଚାଳ
ସୃଞ୍ଜୟେ ସିଂହନାଦ କଲେ ମେଳି ଗଳ ।
ଚେତା ପାଇ ନିମିଷ ମାତ୍ରେ କୁମ୍ଭନାତି
ଧନୁକୁ ସଜ କରି ଧାଇଁଲେ ଝଟତି ।
ଯମଦଣ୍ଡ ପରାୟେ ବସାଇଣ ଶର
ଝିଙ୍କିଲେ କର୍ଣ୍ଣଯାଏ ଦ୍ରୌଣି ମହାବୀର ।
ଘଟୋତ୍କଚ ଉର ଉଦ୍ଦେଶି ଦେଲେ ଛାଡ଼ି
ଚଳିଲା ସେ ଶର କରିଣ ଘୋର ରଡ଼ି ।
ସର୍ପ ପରି ଘଟୋତ୍କଚ ଉର ବିଳେ
ଗଳିଯାଇ ସେ ଶର ପଶିଲା ପାତାଳେ ।
ସେ କାଣ୍ଡଘାଏ ଘଟୋତ୍କଚ ପାଇ ପୀଡ଼ା
ବସିଥିଲା ରଥେ ନ ପାରି ହୋଇ ଛିଡ଼ା ।
ଘଟୋତ୍କଚର ମୋହ ଦେଖିଣ ସାରଥି
ଲେଉଟାଇ ରଥ ବାହିଲା ହୋଇ ବ୍ୟଥୀ ।

ଘଟୋତ୍କଚ ମୋହ ଦେଖିଣ ଦ୍ରୌଣିସୁତ
ସିଂହନାଦେ ପୂରାଇଲେ ଏ ଜଗତ ।
ସବୁ ଯୋଦ୍ଧାମାନେ ବୋଲନ୍ତେ ଧନ୍ୟ ଧନ୍ୟ
ସୂର୍ଯ୍ୟ ପରି ଜ୍ୟୋତିରେ ହେଲେ ପରିପୂର୍ଣ୍ଣ ।
ଭୀମ ଦ୍ରୋଣ ରଥ ସମୀପେ ଯୁଝୁଥିଲେ
ଦୁର୍ଯ୍ୟୋଧନ ତାହାଙ୍କୁ ଆସି ଯୁଦ୍ଧ କଲେ ।
ଭୀମ ଦୁର୍ଯ୍ୟୋଧନ ଦେହକୁ ନବଶର
ପେଷିଲେ ଦେଖାଇବା ପାଇଁ ଯମପୁର ।
ଦୁର୍ଯ୍ୟୋଧନ ଭୀମର ଦେହକୁ କୋଡ଼ିଏ
ବିନ୍ଧିଲେ ହେ ରାଜନ କ୍ରୋଧେ ଜାଳି କାୟେ ।
ଦୁର୍ଯ୍ୟୋଧନ ଭୀମ ବିନ୍ଧନ୍ତେ ତ୍ୱରା ହୋଇ
ସେ ଦୁହିଙ୍କି ଯେ ନ ଦେଖିଲା ନେତ୍ର ଦୁଇ ।
ଦୁର୍ଯ୍ୟୋଧନ ରାଜା ଭୀମକୁ ପାଞ୍ଚଶର
ବିନ୍ଧି ରହ ରହ ବୋଇଲେ ନରବର ।
ନ କାଣ୍ଡେ ଭୀମ ଦୁର୍ଯ୍ୟୋଧନ ଧନୁ ଧ୍ୱଜ
କାଟି ପକାଇଲେ ଦେଖିଲ ମହାରାଜ ।
ଏହା କରି ସାରିଣ ପବନଙ୍କ ସୂନୁ
ଛାଇଲେ ନଉକାଣ୍ଡେ ଦୁର୍ଯ୍ୟୋଧନ ତନୁ ।
ସବୁ ରଥୀମାନେ ନୟନେ ଚାହିଁଥିଲେ
ତୁମ୍ଭ ପୁଅ ଶରେ ଭୀମଙ୍କୁ ଛାଇଦେଲେ ।
ଦୁର୍ଯ୍ୟୋଧନ କାଣ୍ଡଯାକକୁ ଭୀମ କାଟି
ପୀଡ଼ିଲେ ତାଙ୍କୁ ବିନ୍ଧି ଶର ପଚିଶଟି ।
ଦୁର୍ଯ୍ୟୋଧନ ତୁମ୍ଭର କଲେ ବଡ଼ କଥା
ଭୀମ ଧନୁ କାଟି ରଚିଲେ ତାଙ୍କ ବ୍ୟଥା ।
ଏ ବାହାରେ ଭୀମଙ୍କ ଦେହକୁ ସେ ଦଶ
ଶର ରୋଷେ ବିନ୍ଧି ମୋଡ଼ିଲେ ଦୁଇନିଶ ।
ଆନ ଧନୁ ଧରିଣ ଭୀମ ମହାବଳୀ
ବିନ୍ଧିଲେ ସାତ କାଣ୍ଡ ଯୁଦ୍ଧେ ଅତି ଚଳି ।
ଦୁର୍ଯ୍ୟୋଧନ ହସ୍ତ ଲାଘବ ଦେଖାଇଲେ
ଭୀମଙ୍କର ଧରିବା ଧନୁକୁ କାଟିଲେ ।
ପାଞ୍ଚ ସାତ ଧନୁ ଯେ ଧରୁ ଧରୁ ଭୀମ
କାଟିଲେ ଦୁର୍ଯ୍ୟୋଧନ ଦେଖାଇ ବିକ୍ରମ ।
ଧନୁ ଧରି ପାରି ଭୀମ ଲାଜ ପାଇ
ଲୁହାର ଶକତି ଧଇଲେ ନରସାଇଁ ।
ଫିଙ୍ଗନ୍ତେ ସେ ଶକତି ମୃତ୍ୟୁ- ଭଗ୍ନି ପ୍ରାୟେ
ଚଳିଲା ସେ ଶବ୍ଦେ କମ୍ପାଇ ଦିଗ ରାୟେ ।
ଉଲ୍କା ପରି ଯିବାବେଳେ ମାଗି ଜ୍ୟୋତି-
କରି ଧାଇଁଲେ ସେହୁ ଦୁର୍ଯ୍ୟୋଧନ କତି ।
ଦୁର୍ଯ୍ୟୋଧନ ତାହା କାଣ୍ଡରେ ତିନିଖଣ୍ଡ
କରନ୍ତେ ଦେଖିଲୁଁ ପଡ଼ିଲା ରଣଦାଣ୍ଡ ।
ଶକତି ନାଶ ଦେଖି ଭୀମ ଗଦା ଧରି
ଫିଙ୍ଗିଲେ ଦୁର୍ଯ୍ୟୋଧନ ରଥେ ଦଣ୍ଡଧାରି ।

ସେ ଗଦା ତୁମ୍ଭ ପୁଅ ସୁତ ଘୋଡ଼ା ପ୍ରାଣ
ଘେନି ଦେଖାଇଲା ଭୀମଙ୍କ ବାହୁଟାଣ ।
ତୁମ୍ଭ ପୁଅ ରଥରୁ ଡେଇଁଣ ନନ୍ଦକ
ରଥେ ବସିଣ କଲେ ବୁକୁ ଦକଦକ
ଦୁର୍ଯ୍ୟୋଧନ ମଲେଣି ବୋଲି ମନେକଲେ
ଆଣ୍ଟେ କଣ୍ଠ ଫୁଲାଇ ଭୀମ ଗରଜିଲେ ।
ଦୁର୍ଯ୍ୟୋଧନ ମଲେ ବୋଲିଣ ତୁମ୍ଭ ଲୋକ-
ଯାକ ହାହା କରି କାନ୍ଦିଲେ ସକ ସକ ।
ଯୁଧିଷ୍ଠିର ଦୁର୍ଯ୍ୟୋଧନ ମଲେଣି ବୋଲି
ମନେକରି ରଥକୁ ଧୂଆଁଇଲେ ଫୁଲି ।
ଯେଉଁ ସ୍ଥାନରେ ଭୀମସେନ ରହିଥିଲେ
ସେହିଠାରେ ଆଣି ରଥକୁ ରଖାଇଲେ ।
ପାଞ୍ଚାଳ କୈକେୟ ସୃଞ୍ଜୟ ମତ୍ସ୍ୟବଳ
ଏହି କାଳେ କଲେ ଦ୍ରୋଣଙ୍କୁ ଯାଇ ରୋଳ ।
ଦ୍ରୋଣ ନ ଡରିଣ ସମର ରସେ ମଜ୍ଜି
ବିନ୍ଧିଲେ ପାଣ୍ଡୁ ସେନାମାନଙ୍କୁ ଗରଜି ।
ଦ୍ରୋଣଙ୍କଠାକୁ ସହଦେବ ଆସୁଥିଲେ
ସୂତସୁତ କର୍ଣ୍ଣ ଯେ ତାହାଙ୍କୁ ଯୁଝିଲେ ।
ସହଦେବ କର୍ଣ୍ଣକୁ ଊନବିଂଶ ଶର
ପ୍ରହାରିଲେ କରିବା ପାଇଁ ହେ ସଂହାର ।
କର୍ଣ୍ଣ ସହଦେବ ପ୍ରହାରି ଶଏକାଣ୍ଡ
ଗୁଣତୁଲେ ଧନୁକୁ କଲେ ଦୁଇଖଣ୍ଡ ।
ଆନ ଧନୁ ଧରିଣ ସହଦେବ ବୀର
ବିନ୍ଧିଲେ କର୍ଣ୍ଣ ଦେହେ କୋଡ଼ିଏଟି ଶର ।
କର୍ଣ୍ଣ ସହଦେବଙ୍କ ଚାରିଘୋଡ଼ା ମାରି
ଭଲ କାଣ୍ଡେ ସାରଥି ମୁଣ୍ଡ ନେଲେ ହରି ।
ବିରଥ ହୋଇ ସହଦେବ ଢାଲ ଖଣ୍ଡା
ଧରନ୍ତେ ତା କାଟିଲେ କାଣ୍ଡେ କର୍ଣ୍ଣ ଭେଣ୍ଡା ।
ଢାଲ ଖଣ୍ଡା କାଟନ୍ତେ କର୍ଣ୍ଣଙ୍କ ରଥକୁ
ଫିଙ୍ଗିଲେ ସହଦେବ ବୁଲାଇ ଗଦାକୁ ।
କର୍ଣ୍ଣ କାଣ୍ଡମାନଙ୍କେ ସେ ଗଦାକୁ କାଟି
ପକାନ୍ତେ ତଳେ ଯାଇ ଖୋଳିଲା ସେ ମାଟି ।
ଗଦା ନାଶ ନ ସହି ସହଦେବ ବୀର
ଫିଙ୍ଗନ୍ତେ ଶକ୍ତି କର୍ଣ୍ଣ କଲେ ତା ସଂହାର ।
ରଥରୁ ଡେଇଁ ପଡ଼ି ରଥ ଚକ୍ର ଧରି
ଫିଙ୍ଗିଲେ ସହଦେବ କର୍ଣ୍ଣେ ଲାଖ କରି ।
କାଳଚକ୍ରର ପରି ଆସୁଥିଲା ଚକ୍ର
କର୍ଣ୍ଣ ତା କାଟିଲେ ନ କରି ହୃଦ ବକ୍ର ।
ହୁଅନ୍ତେ ଚକ୍ର ବକ୍ର ଛାଡ଼ି ପୁରୁଷାର୍ଥ
ସହଦେବ ପଳାଇଲେ ହେ ନରନାଥ ।
କର୍ଣ୍ଣ ସହଦେବ ପଛରେ ଗୋଡ଼ାଇଲେ
କାହିଁକି ଯୁଦ୍ଧୁଁ ପଳାଉଛ ହେ ବୋଇଲେ ।

ମୋହଦ୍ୱାରା ତ ତୁମ୍ଭେ ବଧ ନୁହ କେବେ
ହାରିଲ ବୋଲି ଏବେ ମାରିବୁଁ କି ଆମ୍ଭେ ।
ଧନୁଗୋଟି ସହଦେବଙ୍କ ଦେହେ ଥୋଇ
ବୋଇଲେ ଯାଅ ଅର୍ଜ୍ଜୁନଙ୍କଠାକୁ ଭାଇ ।
ନୋହିଲେ ବୋଲୁଅଛି ଯାଅ ହେ ବସାକୁ
ମାଗିଣ ପାଞ୍ଚାଳୀଙ୍କୁ ଖାଅ ପଖାଳକୁ ।
ଆମ୍ଭ ପରି ରଥୀମାନଙ୍କୁ ଆଉ ରଣ
ନ କରିବ କଲେଟି ପାଇବ ମରଣ ।
ଏରୂପେ ସହଦେବ ବୀରେ ଦେଇ ଲାଜ
ଆନଠାକୁ କର୍ଣ୍ଣ ଗଲେ ହେ ମହାରାଜ ।
ପୂର୍ବୁଁ ତ କୁନ୍ତୀ ତାଙ୍କୁ ମାଗିଥିଲେ ଏହା
ଏଣୁ ନ ମାଇଲେ ସେ ଜାଣ ନରନାହା ।
ସହଦେବ କର୍ଣ୍ଣ ବଚନେ ପାଇ ପୀଡ଼ା
ଜନ୍ମେଜୟ ରଥରେ ଯାଇ ହେଲେ ଛିଡ଼ା ।
ମନେ କଲେ ଆଉ ଜୀଇଲେ କାର୍ଯ୍ୟ ନାହିଁ
ଛାର କର୍ଣ୍ଣ ବଚନ ସହିବାଟି କେହି ।
ଏହି ସମୟରେ ବିରାଟ ମଦ୍ରରାଣ
ଜମ୍ଭ ଇନ୍ଦ୍ର ପରି ରାଜନ କଲେ ରଣ ।
ଶଲ୍ୟ ବିରାଟଙ୍କୁ ବିନ୍ଧିଲେ ଶଏକାଣ୍ଡ
ପକାଇବାକୁ ଖୋଳି ଯୁଦ୍ଧେ ତାଙ୍କ ପିଣ୍ଡ ।
ଶଏତେଏସ୍ତରୀଟି ଶର ମହେଶ୍ୱର
ଦେହକୁ ବିନ୍ଧିଲେ ସେ ମତ୍ସ୍ୟ ନୃପବର ।
ବିରାଟ ସାରଥି ଘୋଡ଼ାକୁ ମଦ୍ରପତି
ପାଞ୍ଚବାଣେ ପେଶିଲେ ଯମଙ୍କର କତି ।
ଏହା ବାହାରେ ଇନ୍ଦ୍ର ଧ୍ୱଜ ପରି ଧ୍ୱଜ
କାଟନ୍ତେ ତଳେ ପଡ଼ିଗଲା ମହାରାଜ ।
ଘୋଡ଼ା ମରିଯାଆନ୍ତେ ରଥୁଁ ଓହ୍ଲାଇଲେ
ଧନୁ ଧରି ବିରାଟ ତଳେ ଛିଡ଼ା ହେଲେ ।
ବିରାଟଙ୍କୁ ବିରଥ ଦେଖି ତାଙ୍କ ଭ୍ରାତ
ଶତାନୀକ ତାହାଙ୍କୁ ଆଣିଦେଲେ ରଥ ।
ଦେଖି ଶତାନୀକୁ ଶଲ୍ୟ ନରପତି
ପ୍ରାଣ ନେଲେ ନାରାଚ ପ୍ରହାରିଣ ଅତି ।
ଶତାନୀକ ମରନ୍ତେ ଶତାନୀକ ରଥ
ଆରୋହିଲେ ବିରାଟ ମତ୍ସ୍ୟ ନରନାଥ ।
ଦୁଇଆଖି ରଙ୍ଗ କରିଣ ମତ୍ସ୍ୟପତି
ବିନ୍ଧିଲେ ଶଲ୍ୟଙ୍କ ଦେହକୁ ଶର ଅତି ।
କ୍ରୋଧ ହୋଇ ଶଲ୍ୟ ବିରାଟ ବକ୍ଷସ୍ଥଳେ
ଶଏ କାଣ୍ଡ ପ୍ରହାର କଲେ ଅତି ରୋଳେ ।
ବିରାଟ ଶଲ୍ୟଙ୍କ କାଣ୍ଡରେ ପୀଡ଼ାପାଇ
ମୋହଯାଇ ରଥରେ ପଡ଼ିଲେ ସେ ଶୋଇ ।
ବିରାଟ ମୋହ ଦେଖି ବିରାଟଙ୍କ ରଥ
ସାରଥି ଲେଉଟାଇ ନେଲା ନରନାଥ ।

ଶଲ୍ୟଙ୍କର କାଣ୍ଡରେ ବିରାଟ ସେନାଏ
ଯୁଦ୍ଧ ଛାଡ଼ି ଭାଜିଲେ ନ ରହି ଗୋଟିଏ ।
କୃଷ୍ଣ ଅରଜୁନ ଶଲ୍ୟଙ୍କ ବାହୁ ଟାଣ
ଦେଖିକରି ଆସିଲେ କରିବାକୁ ରଣ ।
ଆଠଚକଲଗା ରଥରେ ଅଲଂବଳ
ରାକ୍ଷସ ବସିଥିଲା ସେ ତ ମହାବଳ ।
କୃଷ୍ଣ ଅରଜୁନଙ୍କ ଆସିବାର ଦେଖି
ଯୁଝିବାକୁ ଆସିଲା ରଙ୍ଗ କରି ଆଖି ।
ଘୋଡ଼ା ପରି ମୁଖ ପିଶାଚେ ତାର ରଥେ
ଯୋଚା ତ ହୋଇଥିଲେ ଜାଣ ମହାମତେ ।
ରକତରେ ଯେ ବୁଡ଼ା ହୋଇଣ ପତାକା
ଉଡ଼ି ସେ ଫରଫରେ ପାଡୁଥିଲା ଡକା ।
ରଥୁଟିଯାକ ତାର ଅଟଇ ତ ଲୁହା
ହୋଇ ତ ଥିଲା ପୁଣି ଭାଲୁଚର୍ମେ ଛୁଆ ।
ଶାଗୁଣାଟାଏ ତାର ଧ୍ୱଜ ହୋଇ ପାଟି
ମେଲିଣ ଖାଉଥିଲା ମାଉଁସ ରେକଟି ।
ଏରୂପେ ସେ ରାକ୍ଷସ ଅଳମ୍ବୁଷ ରଥ
ବୋଲିକରି ଜାଣ ହସ୍ତିନା ନରନାଥ ।
ଅର୍ଜୁନଙ୍କୁ ଦେଖିଣ ଶତ ଶତ କାଣ୍ଡ
ବିନ୍ଧି ଅମ୍ବୁଷ ପୂରାଇ ଦେଲା ଦାଣ୍ଡ ।
ତାର ଯୁଦ୍ଧ ଦେଖି ଉଲ୍ଲୁକ ଗୃଧ୍ର କାଳ-
ମାନଙ୍କର ପ୍ରମୋଦ ହୋଇଲା ଅଧିକ ।
ଅରଜୁନ ଅଳମ୍ବୁଷକୁ ଶଏ ବିନ୍ଧି
ଆଗ ତାହାର ଯୁଦ୍ଧଦାଣ୍ଡ ଦେଲେ ରୁନ୍ଧି ।
ଏ ବାହାରେ ସୂତ ଅଶ୍ୱଙ୍କୁ ପାଞ୍ଚକାଣ୍ଡ
ବିନ୍ଧି ବସାଇଦେଲେ ନେଇ ଯମଦାଣ୍ଡ ।
ରଥ ତ୍ରିବେଣୁକୁ ପ୍ରହାରି ତିନିକାଣ୍ଡ
କାଣ୍ଡକେ କାଟି ପକାଇଲେ ଧ୍ୱଜଖଣ୍ଡ ।
ବିରଥ ହୋଇ ଅଲଂବଳ ମହାବଳୀ
ଧରନ୍ତେ ଖଣ୍ଡା ତା କାଟିଲେ ପାର୍ଥ ବଳୀ ।
ଅଳମ୍ବଳ ଦେହେ ବଜାଇ ଚାରିକାଣ୍ଡ
ବିନ୍ଧନ୍ତେ ପଛକୁ ସେ କାଢ଼ିଲା ପହଣ୍ଡ ।
ଜିଣି ଅଲଂବଳକୁ ପାର୍ଥ ମହାମନା
ମାଇଲେ ଅଶ୍ୱ ଗଜ ପଶି ଦ୍ରୋଣସେନା ।
ଅରଜୁନ କାଣ୍ଡ ବାତରେ ସେନା ବୃକ୍ଷ
ଭାଜି ତଳେ ଲୋଟିଲେ ଜାଣ ଲକ୍ଷ ଲକ୍ଷ ।
ଅରଜୁନ ସକାଶୁଁ ପାଇ ମହାପୀଡ଼ା
ଭାଜିଲେ ତୁମ୍ଭ ସେନା ନୋହି ଯୁଦ୍ଧେ ଛିଡ଼ା ।
ତୁମ୍ଭର ପୁଅ ଚିତ୍ରସେନ ଶତାନୀକ
ସଙ୍ଗତେ ଯୋଚିକରି ବିନ୍ଧିଲେ ଶାୟକ ।
ତୁମ୍ଭର ପୁଅ ନ ସହି ଅତି କୋହେ
ବିନ୍ଧିଲେ ସେ ନାରାଚ ଚିତ୍ରସେନ ଦେହେ ।

ଚିତ୍ରସେନ ଶତାନୀକକୁ ଦଶକାଣ୍ଡ
ବିନ୍ଧିଲେ ଦେବାକୁ ଯମଙ୍କ ରାଜ୍ୟଖଣ୍ଡ ।
ଶତାନୀକ ବକ୍ଷସ୍ଥଳକୁ ହେଜି ନବ
ପୁଣି ଚିତ୍ରସେନ ବିନ୍ଧିଲେ କରି ରାବ ।
ଶନ୍ନତପର୍ବ କାଣ୍ଡେ ନକୁଳଙ୍କ ସୁତ
ଚିତ୍ରସେନଙ୍କର ବର୍ମକୁ କଲେ ହତ ।
ଯାଆନ୍ତେ ସାଞ୍ଜୁ ଛିଡ଼ି ପାଇ ଶରତାପ
ଦେହ ଯେ ନିନ୍ଦା କଲା କାତି ଉଡ଼ା ସର୍ପ ।
ଧ୍ୱଜ ଧନୁ ଚିତ୍ରସେନଙ୍କର ସେ କାଟି
ଗର୍ଜିଲେ ଶତାନୀକ ମେଲି ଦୁଇପାଟି ।
କବଚ ଧନୁ ଦୁହେଁ ଯାନ୍ତେ ରଣେ ଛିଡ଼ି
ଆନ ଧନୁ ଧଇଲେ ଚିତ୍ରସେନ ଭିଡ଼ି ।
ଶତାନୀକ ଦେହେ ଲଗାଇ ନବକାଣ୍ଡ
ବିନ୍ଧିଲେ ରାଜନ ଦେଖାଇ ହସ୍ତଚାଣ୍ଡ ।
କ୍ରୋଧ ହୋଇ ଶତାନୀକ ତା ଚାରିଘୋଡ଼ା
ସାରଥିକି କଲେ ଯମଙ୍କ ପୁରେ ଛିଡ଼ା ।
ରଥରୁ ଡେଇଁପଡ଼ି ଚିତ୍ରସେନ ବଳୀ
ବିନ୍ଧିଲେ ପଚିଶଟି କ୍ରୋଧେ ନେତ୍ର ଢାଳି ।
ତା ନ ସହି ନାକୁଳି କରି ଅତି କୋପ
ଅର୍ଦ୍ଧଚନ୍ଦ୍ରେ କାଟିଲେ ଚିତ୍ରସେନ ଚାପ ।
ତୁମ୍ଭ ପୁଅ ଯୁଦ୍ଧେ ହୁଅନ୍ତେ ବଳ ଊଣା
ପଳାଇଲେ ଛାଡ଼ିଣ ସେ ଯୁଦ୍ଧ ଅଗଣା ।
କୃତବରମାଙ୍କର ରଥରେ ବସିଲେ
ଜୀଇଲି ଥରେ ବୋଲି ମୁଣ୍ଡ ଆଉଁସିଲେ ।
ବୃଷସେନ ଦ୍ରୁପଦ ହୋଇ ଭେଟାଭେଟି
ଯୁଦ୍ଧକଲେ ଧନୁ ମଧରେ କାଣ୍ଡ ଯୋଚି ।
ଯଜ୍ଞସେନ କର୍ଣ୍ଣ ତନୟ ବାହୁ ଉର
ଦୁହିଁଙ୍କି ଷାଠିଏ ବିନ୍ଧିଲେ ନରବର ।
ବୃଷସେନ ମଧ ସେ ଯଜ୍ଞସେନ ଉରେ
ବହୁତ କାଣ୍ଡମାନ ବିନ୍ଧିଲେ କୋପଭରେ ।
ଦୁହିଙ୍କ ଦେହରେ ରହନ୍ତେ କାଣ୍ଡେ ମଜ୍ଜି
ଝିଙ୍କପକ୍ଷୀ- ଦେହ- ଶୋଭାକୁ ଦେଲେ ଗଞ୍ଜି
ବହନ୍ତେ ଦୁହିଙ୍କର ଦେହରୁ ରକତ
ଦିଶିଲେ ଫୁଟିଥିବା କିଂଶୁକ ସମିତ ।
ଧାରାବୃଷ୍ଟି ପରାୟେ ବୃଷସେନ ଶରେ
ପଡ଼ିଲେ ଅବିକ୍ଷଣେ ଦ୍ରୁପଦ ଉପରେ ।
ଦ୍ରୁପଦଙ୍କର ବଳ ବୃଷସେନ କାଣ୍ଡ
ପାଆନ୍ତେ ଛାଡ଼ି ପଳାଇଲେ ରଣଦାଣ୍ଡ ।
ସେହି କାଳରେ ଦୀପମାନଙ୍କ ଦୀପିତ
କରି ପକାଇଲାଟି ଗ୍ରହକୁ ଲୁପତ ।
କର୍ଣ୍ଣସୁତ ଭୟେ ସୋମକ ବଳ ମଧ
ପଳାଇଲେ ପ୍ରାଣ ରଖିବା କରି ସଧ ।

ସହସ୍ର ସଂଖ୍ୟା ରାଜା ମଧ୍ୟେ ବୃଷସେନ
ଅଗ୍ନି ପରି ଦିଶିଲେ ନେତ୍ରକୁ ରାଜନ ।
ଯେଉଁଠାବରେ ଯୁଧିଷ୍ଠିର ଯୁଝୁଥିଲେ
ସେଠାକୁ ବୋଲି ବୃଷସେନ ରଥ ନେଲେ ।
ପ୍ରତିବିନ୍ଧ୍ୟ ତୁଲରେ ଦୁଃଶାସନ ରଣ
ଆରମ୍ଭିଲେ ରାୟେ ଦେଖାଇ ବାହୁଟାଣ ।
ବୁଧ ସୂର୍ଯ୍ୟ ପରି ସେ ଦୁହିଙ୍କର ଯୁଦ୍ଧ
ଦେଖିଣ ମନେ କଲେ ଦେଖିବା ବିବୁଧ ।
ପ୍ରତିବିନ୍ଧ୍ୟଙ୍କର ଲଲାଟକୁ ଯେ ଶର
ତିନୋଟି ପ୍ରହାରିଲେ ତୁମ୍ଭର କୁମର ।
ପ୍ରତିବିନ୍ଧ୍ୟ ବୋହି ସେ ଶର ତିନି ଭାଲେ
ତିନିଶୃଙ୍ଗ ପର୍ବତ ପରାୟେ ଦିଶିଲେ ।
ପ୍ରତିବିନ୍ଧ୍ୟ ଦୁଃଶାସନକୁ ଷୋଳକାଣ୍ଡ
ବିନ୍ଧିଲେ ରାଜନ ଓଟାରି ଧନୁଖଣ୍ଡ ।
ତୁମ୍ଭ ପୁଅ ତହିଁ ଦୁଷ୍କର କର୍ମ କଲେ
ପ୍ରତିବିନ୍ଧ୍ୟ ରାଜାଙ୍କ ଘୋଡ଼ାକୁ ମାଇଲେ ।
ଭାଲିକାଣ୍ଡେ ସାରଥି ମୁଣ୍ଡୁଟିକି କାଟି
ପକାଇଦେଲେ ତଳେ ଦେଖିଲୁଁ ଧ୍ୱଜଟି ।
ଶଏଖଣ୍ଡ କରିଣ ପ୍ରତିବିନ୍ଧ୍ୟ ରଥ
କାଟି ପକାଇଲେ ଦେଖାଇ ଲଘୁହାତ ।
ବିରଥ ହେଲେ ହେଲେ ପ୍ରତିବିନ୍ଧ୍ୟ ରଣ
ନ ଛାଡ଼ିର ବିନ୍ଧିଲେ ବହୁତ ସେ ବାଣ ।
କ୍ଷୁରକାଣ୍ଡେ ପ୍ରତିବିନ୍ଧ୍ୟଙ୍କ ଧନୁ କାଟି
ଦୁଃଶାସନ ବିନ୍ଧିଲେ ଦେହକୁ ଦଶୋଟି
ଦ୍ରୌପଦେୟମାନେ ଯେ ଭାଇଙ୍କ ବିରଥ
ଦେଖି ସାହା ହୋଇଲେ ହୋଇ ଧନୁହାତ ।
ବହୁତ ସେନା ମଧ ସଙ୍ଗତରେ ଥିଲେ
ଦୁଃଶାସନ ସଙ୍ଗେ ସମର ଆରମ୍ଭିଲେ ।
ଶ୍ରୁତସୋମ ରଥରେ ବସି ପ୍ରତିବିନ୍ଧ୍ୟ
କଲେ ସେ ଦୁଃଶାସନ ସଙ୍ଗତରେ ଯୁଦ୍ଧ ।
ତୁମ୍ଭର ଲୋକମାନେ ତୁମ୍ଭର ସୁତକୁ
ଆବୋରି ଯୁଝିଲେ ଦ୍ରୌପଦୀ ତନୟକୁ ।
ସେ ଦାରୁଣ ନିଶାରେ ଯମଙ୍କ ନଗର
ପୂରିଗଲା ମଲେ ତ ବହୁ ଯୋଦ୍ଧାନର ।
ସେହିକାଳେ ନକୁଳ ତୁଲରେ ଶକୁନି
ରହ ରହ ବୋଲି ଯୁଝିଲେ କ୍ରୋଧ ଘେନି ।
ଅନ୍ୟୋନ୍ୟରେ ବଧ ଆକାଂକ୍ଷା କରି ଦୁହେଁ
ବଇର ସୁମରି ଯୁଝିଲେ ଅତି କୋହେ ।
ଯେଉଁରୂପେ ଶକୁନି ବରଷିଲେ ଶର
ସେ ରୂପେ ନକୁଳ ବିନ୍ଧିଲେ ନରବର ।
ଶିମୁଳୀବୃକ୍ଷ ପରି ଦୁହିଙ୍କର ଗଣ୍ଡି
ଦିଶିଲା ରାଜନ ହୁଅନ୍ତେ କାଣ୍ଡେ ମଣ୍ଡି ।
ତୁମ୍ଭ ଶଳା ବିନ୍ଧିଲେ ହସି କର୍ଣ୍ଣକାଣ୍ଡ
ପୋଡ଼ିବାକୁ କ୍ରୋଧେ ନକୁଳ ହୃଦଖଣ୍ଡ ।
ନକୁଳ ସେ କର୍ଣ୍ଣିକାଣ୍ଡରେ ପୀଡ଼ା ପାଇ
ରଥ ମଧ୍ୟେ ବସିପଡ଼ିଲେ ମୋହ ଯାଇ ।
ନକୁଳଙ୍କୁ ଜିଣି ଆଷାଢ଼ ଘନ ପ୍ରାୟେ
ଗରଜିଲେ ଶକୁନି ଫୁଲାଇଣ କାୟେ ।
ଚେତା ପାଇ ନକୁଳ ଧରି ଧନୁଶର
ଧାଇଁଲେ ହରିବାକୁ ପ୍ରାଣ ଶକୁନିର ।
ନାରାଚ ଶଏ ଶକୁନିଙ୍କ ହୃଦସ୍ଥଳେ
ପ୍ରହାରିଲେ ମାଦ୍ରୀଙ୍କ ନନ୍ଦନ ସେ ରୋଳେ ।
ସେ ଘାତେ ଶକୁନି ରହନ୍ତେ ବହି ମୋହ
ଧ୍ୱଜକୁ କାଟିଲେ ନକୁଳ ବହି କୋହ ।
ତୁମ୍ଭ ଶଳା ମୋହ ସିନ୍ଧୁରେ ଜ୍ଞାନ-ଭେଳା
ବୁଡ଼ାନ୍ତେ ସାରଥି ନ କରି କିଛି ହେଳା ।
ରଥ ଲେଉଟାଇ ନକୁଳଠାରୁ ନେଲା
ଜୀଇଲେ ଆସିଣ ଏ ଯୁଝିବେ ଭାବିଲା ।
ତାହା ଦେଖି ପାଣ୍ଡବ ସଇନ ଗରଜି
ଯୁଦ୍ଧ କଲେ ତୁମ୍ଭର ସେନାକୁ ତରଜି ।
ଶକୁନିଙ୍କି ଜିଣି ନକୁଳ ହୋଇ ତୋଷ
ସାରଥିକି କହିଲେ ହୋଇ ହସ ହସ ।
ଦ୍ରୋଣଙ୍କ ସମୀପକୁ ବାହା ମୋର ରଥ
ବୁଝିବି ଆଜ ଦ୍ରୋଣ କେଡ଼େ ସାମରଥ ।
ନକୁଳଙ୍କ ବଚନେ ଦ୍ରୋଣ ସମୀପକୁ
ବାହିଲା ସେହିକ୍ଷଣି ସାରଥି ରଥକୁ ।
ଶିଖଣ୍ଡୀ ଯେ ଦ୍ରୋଣଙ୍କ ତୁଲରେ ସମର
କରୁଥିଲେ କୃପ ବିନ୍ଧିଲେ ତାଙ୍କୁ ଶର ।
ଶିଖଣ୍ଡୀ ଭଲ ଭାଲିକାଣ୍ଡ ନବ ବାଛି
ବିନ୍ଧିଲେ କୃପଙ୍କୁ ସେ ଓପ୍ରୋଧ ମୁରୁଛି ।
ପଚିଶି ଗୋଟି କାଣ୍ଡ ଶିଖଣ୍ଡୀକି କୃପ
ବିନ୍ଧନ୍ତେ ଧରି ଝିଙ୍କି ଦେଖାଇ ପ୍ରତାପ ।
ଶମ୍ବର ଚନ୍ଦ୍ର ପରି ଶିଖଣ୍ଡୀ କୃପ ଦୁଇ
ଲଢ଼ାଇ କଲେ ଦେଖାଇବାକୁ ବଡ଼ାଇ ।
ଶରକାଳରେ ଦୁହେଁ ଆକାଶ ଆବୃତ
କରନ୍ତେ ନକ୍ଷତ୍ରଙ୍କୁ ନ ଦେଖିଲା ନେତ୍ର ।
କାଳରାତ୍ରି ପରି ସେ ରାତ୍ରିକିଟି ନରେ
ମଣିଲେ ହେ ରାଜନ ଦେଖି ନୟନରେ ।
କୃପାଚାର୍ଯ୍ୟଙ୍କର ଗୁଣର ତୁଲେ ଧନୁ
କାଟି ପକାଇଲେ ସେ ଦ୍ରୁପଦଙ୍କ ସୂନୁ ।
ଧନୁ ଛାଡ଼ିଯାନ୍ତେ ଶକତି ଧରି କରେ
ଶିଖଣ୍ଡୀଙ୍କି ଫିଙ୍ଗିଲେ କୃପ ଅତି ଖରେ ।
ବହୁ ଶର ବିନ୍ଧି ଶିଖଣ୍ଡୀ ସେ ଶକତି
କାଟି ପକାଇଲେ ଦେଖାଇଣ ଶକତି ।

ଆନ ଧନୁକୁ ଧରି କୃପ ଦ୍ୱିଜବର
ଶରରେ ଘୋଡ଼ାଇଲେ ଶିଖଣ୍ଡୀ ଶରୀର ।
କୃପାଚାର୍ଯ୍ୟଙ୍କର କାଣ୍ଡରେ ପାଇ ପୀଡ଼ା
ଶିଖଣ୍ଡୀ ରଥରେ ବସିଲେ ନୋହି ଛିଡ଼ା ।
ମାରିବି ବୋଲି ମନେ କରି ଶିଖଣ୍ଡୀକି
ବିନ୍ଧିଲେ କୃପ ବହୁ ଶରଧନୁ ଟେକି ।
ଶିଖଣ୍ଡୀଙ୍କ ବିମୁଖ ଦେଖିଣ ପାଞ୍ଚାଳେ
ଘୋଡ଼ାଇଲେ କୃପାଚାର୍ଯ୍ୟଙ୍କୁ ଶରଜାଳେ ।
ତୁମ୍ଭ ପୁଅମାନେ କୃପଙ୍କୁ ସାହା ହୋଇ
ଯୁଝିଲେ ପାଞ୍ଚାଳେ ହସ୍ତିନା ନରସାଇଁ ।
ଅନ୍ୟୋନ୍ୟରେ ସେ ଦୁହେଁ ବୁହାଅନ୍ତେ ରଥ
ଗରଜନରେ ପୂରିଗଲା ଯୁଦ୍ଧପଥ ।
ଗଜାରୋହେ ଅଶ୍ୱାରୋହେ ଯେ ଜନ୍ତାଜନ୍ତି
ହୋଇଣ ଯୁଦ୍ଧ କଲେ ସେ ଯୁଦ୍ଧରେ ଅତି ।
ଭୟଗ୍ରସ୍ତ ସ୍ତିରୀ ପରାୟେ ଯୁଦ୍ଧଭୂମି
କମ୍ପିଗଲା ଜାଣ ହେ ହସ୍ତିନା-ଭୂସ୍ୱାମୀ ।
ରଥୀମାନେ ରଥୀମାନଙ୍କୁ କଲେ ଯୁଦ୍ଧ
ପୂରି ତ ରହିଥିଲା ତାଙ୍କ ଚିତ୍ତେ କ୍ରୋଧ ।
ହାତୀ ହାତୀ ଘୋଡ଼ାରୋହାଙ୍କୁ ଘୋଡ଼ାରୋହା
ପତ୍ତି ତୁଲେ ପତ୍ତି ଯୁଝିଲେ ଟେକି ବାହା ।
ଆକାଶରୁ ବିଚ୍ୟୁତ ଉଲ୍କା ପରାୟେ ।
ଦୀପପନ୍ତି ନେତ୍ରକୁ ଦିଶିଲେ ହେ ରାୟେ ।
ଦୀପଙ୍କ ସକାଶରୁ ରଣ ଭୂମିଯାକ
ଦିବସରୁ ଅଧିକ ହୋଇଲା ଆଲୋକ ।
ସମ୍ବନ୍ଧୀକି ସମ୍ବନ୍ଧୀ ଜୁଆଁଇକି ଶଳା
ଯୁଦ୍ଧ କରିଣ କାଟି ପକାଇଲେ ଗଳା ।
ମାମୁ ତୁଲେ ଭଣଜା ବାବୁ ତୁଲେ ସୁତ
ହଣାହଣି ହୋଇ ମହୀକି ହେଲେ ଗତ ।
ନିର୍ମର୍ଯ୍ୟାଦା ହୋଇ ହୁଅନ୍ତେ ଜନକ୍ଷୟ
ଜାତ ହେଲା ସବୁରି ହୃଦେ ମହାଭୟ ।
ଏରୂପେ ଘୋରଯୁଦ୍ଧ ହୋନ୍ତେ ଗୁଣ ମାଜି
ଗଲେ ଧୃଷ୍ଟଦ୍ୟୁମ୍ନ ଦ୍ରୋଣଙ୍କୁ କରି ଆଜି ।
ଦ୍ରୋଣଙ୍କ ସମୀପକୁ ଯାନ୍ତେ ଧୃଷ୍ଟଦ୍ୟୁମ୍ନ
ରହିଗଲେ ବେଢ଼ି ପାଞ୍ଚାଳ ପାଣ୍ଡୁସୈନ୍ୟ ।
ତୁମ୍ଭ ପୁଅମାନେ ତା ଦେଖି ଯତ୍ନବନ୍ତେ
ଦ୍ରୋଣଙ୍କୁ ଜଗିଲେ ହେ ଜାଣ ମହାମତେ ।
ଦୁଇବଳଯାକ ତ ମିଶାମିଶି ହେଲେ
ଦୁଇସିନ୍ଧୁ ପରି ସେ ନେତ୍ରକୁ ଦିଶିଲେ ।
ଦ୍ରୋଣେ ପାଞ୍ଚଶର ପ୍ରହାରି ଧୃଷ୍ଟଦ୍ୟୁମ୍ନ
ସିଂହ ପରି କଲେ ଗୋଟାଏ ଗରଜନ ।
ଦ୍ରୋଣ ତାହା ନ ସହି ପଞ୍ଚବିଂଶ ଶର
କରିଲେ ଧୃଷ୍ଟଦ୍ୟୁମ୍ନ ଦେହକୁ ପ୍ରହାର ।
ଭାଲିକାଣ୍ଡେ ଧନୁକୁ କାଟି ପକାଇଲେ
କାହିଁ ଯିବ ଆଜି ବୋଲିଣ ଗରଜିଲେ ।
ଦ୍ରୋଣଙ୍କର ନାଶ ବିଚାରି ଧୃଷ୍ଟଦ୍ୟୁମ୍ନ
ଧଇଲେ କରେ ବାଛି ଏକ ଶରାସନ ।
ଦ୍ରୋଣଙ୍କର ପ୍ରାଣଅନ୍ତକ ଶର ବାଛି
ବିନ୍ଧିଲେ ଧୃଷ୍ଟଦ୍ୟୁମ୍ନ ଦ୍ରୁପଦଙ୍କ ବଚ୍ଛି ।
ସେ କାଣ୍ଡ ଗଲାବେଳେ ରବି ଅଗ୍ନି ଶୋଭା
ଭାଙ୍ଗି ପକାଇଲା ଯେ ପ୍ରକାଶିଣ ପ୍ରଭା ।
ଦେବତା ଗନ୍ଧର୍ବେ ଯେ ଯୁଦ୍ଧ ଦେଖୁଥିଲେ
ତା ଦେଖି ଦ୍ରୋଣଙ୍କ ମଙ୍ଗଳ ବିଚାରିଲେ ।
ଦ୍ରୋଣଙ୍କର ରଥକୁ ନ ପାଉଁ ସେ କାଣ୍ଡ
କର୍ଣ୍ଣ ତାହା କାଣ୍ଡକେ କଲେ ବାରଖଣ୍ଡ ।
ପୁଣି ଦଶକାଣ୍ଡ ଧୃଷ୍ଟଦ୍ୟୁମନ ଦେହେ
ସୂତଙ୍କ ନନ୍ଦନ ବିନ୍ଧିଲେ ଅତି କୋହେ ।
ଧୃଷ୍ଟଦ୍ୟୁମନଙ୍କୁ କୋଡ଼ିଏ ଦୁର୍ଯ୍ୟୋଧନ
ଅଶ୍ୱଥାମା ପାଞ୍ଚ ଯେ ତିନି ଦୁଃଶାସନ ।
ଶକୁନି ସାତ ଶଲ୍ୟ ଦଶ ଦ୍ରୋଣସାତ
ବିନ୍ଧିଲେ କ୍ରୋଧେ ଘେନିବାକୁ ହେ ଜୀବିତ ।
ଅସମ୍ଭ୍ରଜ ହୋଇଣ ଦ୍ରୁପଦଙ୍କ ସୁତ
ତିନି ତିନି ବିନ୍ଧିଲେ ସେ ତ ଲଘୁହାତ ।
ତୁମ୍ଭର ରଥିମାନେ ଏକମନ ହୋଇ
ବିନ୍ଧିଲେ ପାଞ୍ଚକାଣ୍ଡ ଲେଖାଁ ନରସାଇଁ ।
ଧୃଷ୍ଟଦ୍ୟୁମନଙ୍କୁ ଯେ ଦ୍ରୁମସେନ ଶର
ତିନୋଟି ପ୍ରହାରିଲେ ଏବେ ମନେକର ।
ଧୃଷ୍ଟଦ୍ୟୁମନ ମଧ ଦ୍ରୁମସେନ ଦେହେ
ତିନୋଟି କାଣ୍ଡ ପ୍ରହାରିଲେ ଅତି କୋହେ ।
ଭାଲିକାଣ୍ଡେ ଦ୍ରୁମସେନଙ୍କର କୁଣ୍ଡଳ
ତୁଲରେ ମୁଣ୍ଡ କାଟି ପକାଇଲେ ତଳ ।
ପାଚିଲା ତାଳ ପରି ମୁଣ୍ଡ ତଳେ ପଡ଼ି
କେତେ ଦୂର ଯାଏ ଗଲା ସେ ଗଡ଼ି ଗଡ଼ି ।
କର୍ଣ୍ଣଙ୍କର ଧନୁକୁ କାଟି ଭାଲିକାଣ୍ଡେ
ତୁମ୍ଭ ରଥୀମାନଙ୍କୁ ବିନ୍ଧିଲେ ସେ ଚାଣ୍ଡେ ।
ଲାଙ୍ଗୁଳ କାଟିଲେ ଯେରୂପେ ଚଳେ ସିଂହ
ସେରୂପରେ କର୍ଣ୍ଣ ହୋଇଣ ମହା କୋହ ।
ଆନ ଧନୁକୁ ଧରି ଧୃଷ୍ଟଦ୍ୟୁମ୍ନ ରଥ
ଘୋଡ଼ାଇ ପକାଇଲେ କାଣ୍ଡେ ନରନାଥ ।
କର୍ଣ୍ଣଙ୍କ ପୃଷ୍ଠସାହା ହୋଇ ତୁମ୍ଭ ରଥୀ-
କୁଳ ଯୁଦ୍ଧ କଲେ ନୋହିଣ କିଛି ବ୍ୟଥୀ ।
ମୃତ୍ୟୁମୁଖରେ ଧୃଷ୍ଟଦ୍ୟୁମନ ରହିବା
କଥାକୁ ସେ କଥା ହେ ପଟାନ୍ତର ଦେବା ।
ଏହିକାଳେ ସାତ୍ୟକି ଧୃଷ୍ଟଦ୍ୟୁମ୍ନଠାକୁ
ଆସିଲେ ବିନ୍ଧି ବିନ୍ଧି ମାର୍ଗଣଗଣକୁ ।

ସାତ୍ୟକି ଆସିବାର ଦେଖି କରି କର୍ଣ୍ଣ
ବିନ୍ଧିଲେ ଦଶ କାଣ୍ଡ କରି ଅତି ତୂର୍ଣ୍ଣ ।
ସାତ୍ୟକି ଦଶକାଣ୍ଡ ବିନ୍ଧିଣ କର୍ଣ୍ଣଙ୍କୁ
ବୋଇଲେ ଯୁଝ ନ ପଳାଇ ହେ ଆମ୍ଭଙ୍କୁ ।
ଇନ୍ଦ୍ର ବଳୀ ପରି ସାତ୍ୟକି କର୍ଣ୍ଣଙ୍କର
ଯୁଦ୍ଧ ପ୍ରବର୍ତ୍ତିଲା, ଦେଖିଲୁଁ ନରବର ।
ଛାଟେଣି ଶବଦେ କମ୍ପାଇ କ୍ଷତ୍ରିୟଙ୍କୁ
ପ୍ରହାର କଲେ ଶର ସାତ୍ୟକି କର୍ଣ୍ଣଙ୍କୁ ।
ବିପାଠ ବସଦନ୍ତ ଆଦି ଶରମାନ
ବିନ୍ଧିଲେ ସାତ୍ୟକିଙ୍କି ସୂତଙ୍କ ନନ୍ଦନ ।
ସେ ଦୁହିଙ୍କ ଯୁଦ୍ଧ ସମାନ ହୋଇ ରାୟେ
ପ୍ରବର୍ତ୍ତିଲା, ତ ଦେଖୁଥିଲୁଁ ହେ ସଭିଏ ।
ତୁମ୍ଭର ଲୋକମାନେ କର୍ଣ୍ଣ ପୁତ୍ର ତୁଳେ
କର୍ଣ୍ଣର ହିତେ ଯୁଯୁଧାନଙ୍କୁ ଯୁଝିଲେ ।
ସାତ୍ୟକି ସବୁଙ୍କ କାଣ୍ଡକୁ ନିବାରିଲେ
ରାଗେ ବୃଷସେନ ଆଶୁଗ ପ୍ରହାରିଲେ ।
ବାଜନ୍ତେ ଯୁଯୁଧାନ କାଣ୍ଡ ଗଣ୍ଡା ଗଣ୍ଡା
ବୃଷସେନ ଶୋଇଲେ ରଥେ ହୋଇ ଦଣ୍ଡା ।
ବୃଷସେନ ମଲେ ବୋଲିଣ କର୍ଣ୍ଣ ମନେ-
କରି ସାତ୍ୟକିଙ୍କି ବିନ୍ଧିଲେ ଅବିଚ୍ଛିନ୍ନେ ।
କର୍ଣ୍ଣଙ୍କର କାଣ୍ଡେ ସାତ୍ୟକି ପାଇ ପୀଡ଼ା
ତେବେହେଁ ବିନ୍ଧିଲେ ନ କାଢ଼ି ପାଦେ ଭଡ଼ା ।
ଏହି ସମୟରେ ବୃଷସେନ ଚେତା ପାଇ
ସାତ୍ୟକିଙ୍କି କାଣ୍ଡ ବିନ୍ଧିଲେ ନିଠିଆଇ ।
ସାତ୍ୟକି ବାପ ପୁଅଙ୍କର ହସ୍ତାବାପ
ତୁଳରେ କାଟି ପକାଇଲେ ହସ୍ତ ଚାପ ।
ଆନ ଧନୁ ଧରିଣ କର୍ଣ୍ଣ ବୃଷସେନ
କଲେ ସାତ୍ୟକିଙ୍କି ଉତ୍ତମ ଆୟୋଧନ ।
ଏହି ସମୟରେ ଗାଣ୍ଡୀବଧନୁ-ଘୋଷ
ପୂର୍ଣ୍ଣ କରିଦେଲା ରାଜନ ଦଶଦିଶ ।
ଗାଣ୍ଡୀବ କପିଧ୍ୱଜ ଘୋଷ କର୍ଣ୍ଣେ ଶୁଣି
କହିଲେ କର୍ଣ୍ଣ ଦୁର୍ଯ୍ୟୋଧନଙ୍କୁ ଏ ବାଣୀ ।
ତୁମ୍ଭ ରଥୀମୁଖ୍ୟମାନଙ୍କୁ ଯମପକ୍ଷ
କଲେ ଅରଜୁନ ମାରିଣ ଲକ୍ଷ ଲକ୍ଷ ।
ଶୁଣ ଏବେ ଗାଣ୍ଡୀବଶବଦ ଶୁଭୁଛି
ଏଥିକି ଯେ ବିଚାର କର ମୁଁ କହୁଛି ।
ଦେଖ ହେ ରାଜନ ଗାଣ୍ଡୀବଧନୁ ବାଣେ
ତୁମ୍ଭ ସେନାଯାକ ପଳାନ୍ତି ଏଣେ ତେଣେ ।
ବିଜୟର ବିଜୟ ଦେଖି ପାଣ୍ଡୁବଳ
ବଜାଇଣ ଦୁନ୍ଦୁଭି କରୁଛନ୍ତି ରୋଳ ।
ହାହାକାର ଶବଦ କରି ତୁମ୍ଭ ଲୋକେ
ପଳାଉଛନ୍ତି ଯୁଦ୍ଧୁ କାନ୍ଦି ସଜସକେ ।

ଆମ୍ଭର ରଥୀବୃନ୍ଦ ମଧ୍ୟରେ ସାତ୍ୟକି
ରହିଛନ୍ତି ଫୁଲାଇ ଦେଇଣ ଛାତିକି ।
କାଳ ଆସି ତାଙ୍କର ଧଇଲା ତା ବାଳ
ଏଥିକି କିଛି ଚିନ୍ତା ନ କର ନୃପାଳ ।
ଧୃଷ୍ଟଦ୍ୟୁମ୍ନନଙ୍କୁ ଯେ ବେଢ଼ିଣ ଯୋଦ୍ଧାଏ
ଯୁଝନ୍ତି ବିମୁଖ କରିବେ କାଣ୍ଡଘାଏ ।
ସାତ୍ୟକି ଧୃଷ୍ଟଦ୍ୟୁମ୍ନ ଦୁହେଁ ଗଲେ ନାଶ
ପାଣ୍ଡବେ ଭାଙ୍ଗିଦେବେ ଯୁଦ୍ଧରୁ ମୁହାଁସ ।
ଅର୍ଜୁନସୁତ ପରି ଧୃଷ୍ଟଦ୍ୟୁମ୍ନନଙ୍କୁ
ବେଢ଼ିକରି ମାରିବା ସାତ୍ୟକି ବୀରଙ୍କୁ ।
ଦ୍ରୋଣ ସଇନକୁ ଆସିଲେ ଅରଜୁନ
ଘେନି ନ ପାରଇଟି ଏହାଙ୍କ ଜୀବନ ।
ଏ ଭିତରେ ଆମ୍ଭେ ବିନ୍ଧିଣ ମୂନବାଣ
କରିବା ଧୃଷ୍ଟଦ୍ୟୁମ୍ନ ସାତ୍ୟକି ମରଣ ।
କର୍ଣ୍ଣଙ୍କଠାରୁ ଏରୂପେ ଶିକ୍ଷା ପାଇ
ଶକୁନିକି ପାଖକୁ ଡକାଇ ଅଣାଇ ।
କହିଲେ ଲକ୍ଷେ ରଥ ସସ୍ର ଦଶ ହାତୀ
ଘେନି ଯୁଝ ପାର୍ଥକୁ ତୁମ୍ଭେ ଏକା ରଥୀ ।
ଦୁଃଶାସନ ସୁବାହୁ ଦୁଷ୍ପ୍ରଧରଷଣ
ଦୁର୍ବିସହ ଆଦି ପାରନ୍ତି କରି ରଣ ।
ଏହାଙ୍କୁ ତୁମ୍ଭେ ମଧ୍ୟ ସଙ୍ଗେ ଘେନିଯାଅ
ବିଜୟଠାରୁ ଜୟ ମୋତେ ଆଣିଦିଅ ।
କୃଷ୍ଣ ଅରଜୁନ ନକୁଳ ସହଦେବ
ଭୀମାଦି ପାଣ୍ଡବଙ୍କ ଘେନ ମାମୁ ଜୀବ ।
ତୁମ୍ଭଠାରେ ବିଜୟ ଆଶା ମୋର ଅଛି
ଯାଅ ସତ୍ୟ କରି ହେ ମାମୁଁ ମୁଁ କହୁଛି ।
ଏରୂପେ ଦୁର୍ଯ୍ୟୋଧନ କହନ୍ତେ ବଚନ
ତୁମ୍ଭ ଶଳା ଶକୁନି ତୋଷ କରି ମନ ।
ଦୁର୍ଯ୍ୟୋଧନ କହିବା ପରି ଘେନି ସୈନ୍ୟ
ଗଲେ ଯହିଁ ଯୁଯୁଥିଲେଟି ଫାଲଗୁନ ।
ତୁମ୍ଭ ସେନାମାନେ ପାଣ୍ଡବସେନା ତୁଲେ
ମରିବା କଥା ଛାଡ଼ିଦେଇ ଯୁଦ୍ଧ କଲେ ।
ଯୁଯୁଧାନ ସଙ୍ଗତେ କର୍ଣ୍ଣ କଲେ ରଣ
ବାଣଗଣେ ପୂରାଇ ଆକାଶଅଙ୍ଗଣ ।
ସବୁ ନୃପତିଏ ଯେ ସାତ୍ୟକିଙ୍କି ବେଢ଼ି
ବିନ୍ଧିଲେ ଚାରିଆଡୁ ଶରମାନ କାଢ଼ି ।
ଧୃଷ୍ଟଦ୍ୟୁମ୍ନନ ଆଦି ପାଞ୍ଚାଳଙ୍କ ତୁଲେ
ଦ୍ରୋଣଗୁରୁ ବୁଢ଼ା ଯାଇଣ ଯୁଦ୍ଧ କଲେ ।
ତ୍ୱରା ହୋଇ ରାଜନ ତୁମ୍ଭ ଯୋଦ୍ଧାବୃନ୍ଦ
ଯେତେ ଥିଲେ କଲେ ସେ ସାତ୍ୟକିଙ୍କି ଦ୍ୱନ୍ଦ ।
ମାଧବର ବଧରେ ଦେଇ ନୃପେ ମନ
ବିନ୍ଧିଲେ ଯେତେ ଥିଲେ ଭଲ ଶରମାନ ।

ସାତ୍ୟକି ତୁମ୍ଭ ସେନାଗଣେ ବାଣଧାଡ଼ି
ସରଜିଲେ ଯୁଦ୍ଧରୁ ଦେବାକୁ ଘଉଡ଼ି ।
ପରିଘ ତୁଲେ ବାହୁ କୁଣ୍ଡଳ ତୁଲେ ମୁଣ୍ଡ
ଯୋଦ୍ଧାଙ୍କ ସାତ୍ୟକି କାଟିଲେ ବିନ୍ଧି କାଣ୍ଡ ।
ହାତୀମାନଙ୍କର ଯେ ଥୋରହସ୍ତ କାଟି-
ପକାନ୍ତେ ସର୍ପପରି ଦିଶିଲେ ଚହଟି ।
ଘୋଡ଼ାମାନଙ୍କର ବେକ ରଥଙ୍କର ଅଖ
କାଟିଲେ ଯୁଯୁଧାନ ବିନ୍ଧିଣ ବିଶିଖ ।
ଢାଲ ଫରୀ ଖଣ୍ଡା ଚାମର ଛତ୍ରପନ୍ତି
ଧ୍ୱଜତୁଲେ କାଟିଲେ ମଧ ଶିନିନାତି ।
ସାତ୍ୟକିଙ୍କ କାଣ୍ଡ ଚଡ଼କପରେ ରଡ଼ି-
କରି ଦେହେ ବାଜି ଭାଜିଲେ ଡାକ ଛାଡ଼ି ।
ସାତ୍ୟକି କାଣ୍ଡେ ତୁମ୍ଭ ସଇନର ନାଶ
ଦେଖି କରିଣ ଦୁର୍ଯ୍ୟୋଧନ ନରଈଶ ।
ବୋଇଲେ ଯେଉଁଠି ଶୁଭୁଛି ଆର୍ତ୍ତରଡ଼ି
ସେଠାକୁ ବୋଲି ଦିଅ ରଥ ମୋର ଛାଡ଼ି ।
ଏରୂପେ ଦୁର୍ଯ୍ୟୋଧନ ବୋଲନ୍ତେ ବଚନ
ବାହିଲା ରଥ ଯହିଁ ଥିଲେ ଦୁର୍ଯ୍ୟୋଧନ ।
ଦୃଢ଼ କରି ଧନୁ ଧରିଣ ତୁମ୍ଭ ସୁତ
ବିନ୍ଧିଲେ ସାତ୍ୟକିଙ୍କି ଶର ଅପ୍ରମିତ ।
କର୍ଣ୍ଣ ପରିଯନ୍ତେ ପୁରାଇ ବାର ଶର
ବିନ୍ଧିଲେ ସାତ୍ୟକିଙ୍କୁ ତୁମ୍ଭର କୁମର ।
ଯୁଯୁଧାନ ଯେ କର୍ଣ୍ଣଯାଏ ଧନୁ ଟାଣି
ଦୁର୍ଯ୍ୟୋଧନେ ଦଶ ବିନ୍ଧିଲେ ଗଣି ଗଣି ।
କ୍ରୋଧ ହୋଇ ସାତ୍ୟକି ଦୁର୍ଯ୍ୟୋଧନ ଉରେ
ଅଶିଏ ଶର ପ୍ରହାରିଲେ ସେ ବେଗରେ ।
ଦୁର୍ଯ୍ୟୋଧନ ଘୋଟକ ସାରଥିର ପ୍ରାଣ
ଘେନି ପକାଇଲେ ସାତ୍ୟକି ବିନ୍ଧି ବାଣ ।
ଏମନ୍ତ ହେଲେ ରଥେ ଥାଇ ତୁମ୍ଭ ସୁତ
ବିନ୍ଧିଲେ ସାତ୍ୟକିଙ୍କି ଶର ଅପ୍ରମିତ ।
ଦୁର୍ଯ୍ୟୋଧନର କାଣ୍ଡଯାକକୁ ସାତ୍ୟକି
କାଣ୍ଡ ବିନ୍ଧିଣ କରିଦେଲେ ଟିକି ଟିକି ।
ଭଲ୍ଲାକାଣ୍ଡେ ତୁମ୍ଭ ପୁଅଙ୍କ କର ଧନୁ
କାଟି ପକାଇଲେ ସେ ସାତ୍ୟକିଙ୍କ ସୂନୁ ।
ବିରଥ ହୋଇ କୃତବର୍ମା-ରଥେ ଯାଇ
ବସିଲେ ଦୁର୍ଯ୍ୟୋଧନ ସୁସ୍ଥ ହେବାପାଇଁ ।
ଦୁର୍ଯ୍ୟୋଧନ ପଳାନ୍ତେ ତୁମ୍ଭର ସେନାକୁ
ମାଇଲେ ଖେଦି ଖେଦି ଦେଖାଇ ବଳକୁ ।
ଶତ ଶତ ସହସ୍ର ସହସ୍ରାଶ୍ୱ ଗଜ
ନର ସଙ୍ଗେ ଘେନି ଶକୁନି ମହାରାଜ ।
ଅରଜୁନଙ୍କୁ ବେଢ଼ି ସରଜିଲେ ଶର
ମୁହୂର୍ତ୍ତ ମାତ୍ର ସେ ନେଇ ଅବସର ।

କାଳେ ତ ପ୍ରେରିତ କ୍ଷତ୍ରିୟେ ହୋଇଥିଲେ
ଏଣୁଟି କାଳଦେବ-ପାର୍ଥଙ୍କୁ ଯୁଝିଲେ ।
ଶତ ଶତ ସସ୍ର ସହସ୍ର ଘୋଡ଼ା ହାତୀ
ରଥୀ ଅରଜୁନ ବାଣରେ ଦେଲେ ମଞ୍ଚି ।
ଶକୁନି ହସି ହସି ତୀକ୍ଷ୍ଣ ଶଏ କାଣ୍ଡ
ବିନ୍ଧନ୍ତେ ଚଳିଲେ କମ୍ପାଇ ଯୁଦ୍ଧଦାଣ୍ଡ ।
ଶକୁନିକି ପାର୍ଥ କୋଡ଼ିଏ ପ୍ରହାରିଲେ
ଜଣକେ ତିନି ତିନି ଲେଖାରେ ବିନ୍ଧିଲେ ।
ତୁମ୍ଭର ଯୋଦ୍ଧାମାନଙ୍କର ପ୍ରିୟ ପ୍ରାଣ
ନେଲେ ଅରଜୁନ ପ୍ରହାର କରି ବାଣ ।
ପଡ଼ନ୍ତେ ଛିଡ଼ି ଶିର ବାହୁ କୋଟି କୋଟି
ପୂରିଗଲା ରକତ-ଜଳେ ଯୁଦ୍ଧସୃଷ୍ଟି ।
କାଟିଲେ ହେଲେ ମୁଣ୍ଡ ଓଷ୍ଠପୁଟ ଭିଡ଼ି
ଯୋଦ୍ଧାଙ୍କ ମୁଣ୍ଡରାଜି ଗଲେ ତଳେ ପଡ଼ି ।
ଏରୂପେ ଉଗ୍ରକର୍ମ ଅରଜୁନ କରି
ଉଲୁକେ ଛଶର ବିନ୍ଧିଲେ କ୍ରୋଧ ଧରି ।
ଶକୁନିକି ମଧ ବିନ୍ଧିଲେ ପାଞ୍ଚକାଣ୍ଡ
ଝିଙ୍କି କର୍ଣ୍ଣ ପରିଯନ୍ତେ ଗାଣ୍ଡୀବ କୋଦଣ୍ଡ ।
ଉଲୁକ ତିନି କାଣ୍ଡ ବିନ୍ଧି ଅର୍ଜ୍ଜୁନଙ୍କୁ
ବିନ୍ଧିଲା ମାରଗଣ କୃଷ୍ଣଙ୍କ ଦେହକୁ ।
ଅରଜୁନ ଶକୁନି ଧନୁକୁ କାଟିଲେ
ଶର-ଶିଳେ ତା ଘୋଡ଼ା-ପରାଣ କାଟିଲେ ।
ଉଲୁକଙ୍କ ରଥରେ ବସିଣ ଶକୁନି
ମାଜିଲେ ଧନୁର୍ଗୁଣ ଥରେ କ୍ରୋଧ ଘେନି ।
ବାପୁ ପୁଅ ଦୁହେଁ ଯେ ଏକାରଥେ ବସି
ଅର୍ଜ୍ଜୁନଙ୍କୁ ଶର ବିନ୍ଧିଲେ ହୋଇ ରୋଷୀ ।
ଶକୁନି ଉଲୁକକୁ ପାର୍ଥ ବିନ୍ଧି କାଣ୍ଡେ
ମାଇଲେ ତୁମ୍ଭ ସେନାଯାକ ବାଣ ଚାଣ୍ଡେ ।
ବାହନମାନଙ୍କ ଉତୁରି ଯୋଦ୍ଧାକୁଳ
ପଳାଇଲେ ରାଜନ ହୋଇଣ ଆକୁଳ ।
ତୁମ୍ଭ ଲୋକଯାକକୁ ପାର୍ଥ ଜିଣି ରଣେ
କୃଷ୍ଣ ତୁଲେ ଶଙ୍ଖ ଫୁଙ୍କିଲେ ଅତି ଟାଣେ ।
ଦ୍ରୋଣଙ୍କୁ ତିନିକାଣ୍ଡ ଧୃଷ୍ଟଦ୍ୟୁମ୍ନ ବିନ୍ଧି
କାଣ୍ଡକେ ଦେଲେ ଦ୍ରୋଣ ଗୁଣଟିକି ଛେଦି ।
ଗୁଣି ଛିଡ଼ି ଯାନ୍ତେ ସେ ଧନୂ ରଥେ ଥୋଇ
ଆନ ଧନୁକୁ ଧରି ବ୍ରାହ୍ମଣ ଗୋସାଇଁ ।
ପ୍ରହାରି ସାତଶର ଧୃଷ୍ଟଦ୍ୟୁମ୍ନଙ୍କୁ
ପଞ୍ଚାଶର ବିନ୍ଧିଲେ ସାରଥି ଦେହକୁ ।
ବିନ୍ଧିଣ କାଣ୍ଡ ଯୁଦ୍ଧେ ନିବାରି ଦ୍ରୋଣଙ୍କୁ
ମାଇଲେ ଧୃଷ୍ଟଦ୍ୟୁମ୍ନ ତୁମ୍ଭର ବଳକୁ ।
ମରନ୍ତେ ତୁମ୍ଭ ବଳ ରକ୍ତ ନଦୀଟାଏ
ବହିଲା ବଇତରଣୀଙ୍କ ପ୍ରାୟେ ରାୟେ ।

ଏହା କରି ସାରି ଯେ ଧୃଷ୍ଟଦ୍ୟୁମ୍ନ ବୀର
ବଜାଇଲେ ଶଙ୍ଖକୁ ହୋଇ ତୋଷଭର ।
ନକୁଳ ସହଦେବ ଶିଖଣ୍ଡୀ ଭୀମସେନ
ତାହା ଦେଖିକରି ହୋଇଣ ତୋଷମନ ।
ତୁମ୍ଭ ରଥୀମାନେ ନୟନେ ଚାହୁଁଥିଲେ
ଗରଜନ କରି ଶଙ୍ଖକୁ ବଜାଇଲେ ।
ତୁମ୍ଭ ପୁଅ କ୍ରୋଧରେ ହୋଇଣ ଆବିଷ୍ଟ
ଦ୍ରୋଣ କର୍ଣ୍ଣ ଦୁହିଙ୍କି କହିଲେ ସେ ରୁଷ୍ଟ ।
ଜୟଦ୍ରଥ ମରିବା କ୍ଷଣି ଛାଡ଼ି ଯୁଦ୍ଧ
ରହନ୍ତି ମୁଁ ଜାଣ ହେ ମନ କରି ବୋଧ ।
ତୁମ୍ଭେ ଦୁହେଁ ଯୁଦ୍ଧେ ଦେବାରୁ ମନ ମୁହିଁ
ଦେଲି ଏଥି ସନ୍ଦେହ ଜାଣ କିଛି ନାହିଁ ।
ଶକତ ହୋଇ ଅଶକତ ପରି ରଣ
କରୁଛ, କହିବାକୁ ଅଛି କି ବଚନ ।
ତୁମ୍ଭର ଯେବେ ତ୍ୟାଜ୍ୟ ଅଟଇଟି ମୁହିଁ
ଫିଟାଇ ମୋତେ କିପାଁ କହିଲେ ହେ ନାହିଁ ।
ତୁମ୍ଭର ବଳେ ପାଣ୍ଡୁ ସୁତଙ୍କୁ ବଇର
କରିବା ଫଳ ଏବେ ଫଳୁଛି ମୋହର ।
ତୁମ୍ଭର ମୁହିଁ ତ୍ୟଜ୍ୟ ନୁହଇଟି ଯେବେ
ବଳକୁ ଚାହିଁ ଯୁଦ୍ଧ କର ବୋଲୁଁ ଆମ୍ଭେ ।
ତୁମ୍ଭ ପୁଅ ବଚନ-ଶରେ ପୀଡ଼ା ପାଇ
ଦ୍ରୋଣ କର୍ଣ୍ଣ ଦୁହେଁ ଯତନବନ୍ତ ହୋଇ ।
କୁରୁସେନା ଆବୋରି ପାଣ୍ଡବସେନାକୁ
ଯୁଦ୍ଧ କଲେ ରାୟେ ଦେଖାଇ ବିକ୍ରମକୁ ।
ଦ୍ରୋଣ କର୍ଣ୍ଣେ ସାତ୍ୟକି ପାଣ୍ଡବଙ୍କ ତୁଲେ
ଯୁଝିଲେ ଦେଖାଇ ଆପଣା ବଳ ଭଲେ ।
ପାଣ୍ଡବେ ଘେନି ସଙ୍ଗେ ନିଜ ରଥୀକୁଳ
କଲେ ଦ୍ରୋଣ କର୍ଣ୍ଣ ଦୁହିଙ୍କି ମହାରୋଳ ।
ଦଶ ଦଶ ଯେ ଦ୍ରୋଣ କର୍ଣ୍ଣ ବୃଷସେନ
ସାତ ସାତ ବିନ୍ଧିଲେ ଶକୁନି ଦୁର୍ଯ୍ୟୋଧନ ।
ତେବେହେଁ ସାତ୍ୟକି ନ ପାଇ କିଛି ପୀଡ଼ା
ଯୁଦ୍ଧ କଲେ ରଥେ ଧଇର୍ଯ୍ୟେ ହୋଇ ଛିଡ଼ା ।
ପାଣ୍ଡବସେନାଯାକ ମାରୁଥିଲେ ଦ୍ରୋଣ
ସେମାନେ ବେଢ଼ିଣ ବିନ୍ଧିଲେ ତାଙ୍କୁ ବାଣ ।
ମାରନ୍ତେଣ ଦ୍ରୋଣଗୁରୁ ପାଞ୍ଚାଳ ରଡ଼ି
କରିଣ ପଳାଇଲେ ଯୁଦ୍ଧଭୂମି ଛାଡ଼ି ।
ପିତା ପୁତ୍ର ସମ୍ବନ୍ଧୀ ଶ୍ୱଶୁର କ୍ୱାଇଁକି
ଛାଡ଼ି ପଳାଇଗଲେ କରିଣ ଭୀତିକି ।
ମୋହବଶେ ଦ୍ରୋଣ-ମୁଖେ ଯେ କଲେ ରଣ
ଦେଲେ ତାହାଙ୍କୁ ସ୍ଥାନ ସବୁ ପ୍ରାଣୀରାଣ ।
ପାଣ୍ଡୁସେନାଯାକ ଛାଡ଼ିଣ ହାତୁଁ ହୁଳା
ପଳାଇଲେ ମଲାଇଁ ବୋଲି ମେଲି ଗଳା ।

ଭୀମ ଅରଜୁନ ଯେ ନକୁଳ ଗୋବିନ୍ଦ
ଚାହୁଁଥିଲେ ଦ୍ରୋଣ ଖେଦିଲେ ସୈନ୍ୟବୃନ୍ଦ ।
ତୁମ୍ଭ ବଳ-ଦିହୁଡ଼ି-କରେ ପାଣ୍ଡୁଲୋକ
ପଳାଇବାର ଆମ୍ଭେ କଳୁଁଟି ବିବେକ ।
ପାଣ୍ଡୁସେନା ପଛରେ ଦ୍ରୋଣ କର୍ଣ୍ଣ ଦୁଇ
ଗୋଡ଼ାଇ ଶର ତାଙ୍କୁ ବିନ୍ଧିଲେ ତୁହାଇ ।
ପାଣ୍ଡବବଳ ରୋଳେ ପଳାନ୍ତେ ଆକୁଳେ
କହିଲେ ଅର୍ଜ୍ଜୁନଙ୍କୁ କୃଷ୍ଣ ଦେଖି ଡୋଳେ ।
ଦେଖ ଦେଖ ଆହେ ଅର୍ଜ୍ଜୁନ ମହାବାହୁ
ତୁମ୍ଭ ସୈନ୍ୟ-ଚନ୍ଦ୍ରକୁ ଦ୍ରୋଣ-କର୍ଣ୍ଣ-ରାହୁ ।
ଧନୁ-ପାଟି ଶର-ଦନ୍ତକୁ ଯେ ଦେଖାଇ
ଦେଉଅଛନ୍ତି କ୍ରୋଧ-ଜିଭରେ ସେ ଖାଇ ।
ଆମ୍ଭେ ଦୁହେଁ ସଇନ ଘେନି ସଙ୍ଗତରେ
ଦ୍ରୋଣଙ୍କୁ ଦେବା ଆଜି ମୃତ୍ୟୁଙ୍କ ହାତରେ ।
କର୍ଣ୍ଣ କର୍ଣ୍ଣକୁଣ୍ଡଳ ଦୋହଲାଇ ରଣ
କରୁଛି, ତା ମୁଣ୍ଡ କାଟିବା ପେଷ ବାଣ ।
ଯେବେ ଦ୍ରୋଣ କର୍ଣ୍ଣ ଦୁହିଙ୍କି ନ ମାରିବା
ତେବେ ଜାଣ ନିଃସଂଶୟେଟି ନାଶ ଯିବା ।
ଏରୂପେ କୃଷ୍ଣାର୍ଜ୍ଜୁନ ହୋନ୍ତେ କଥାବାର୍ତ୍ତା
ଆସିଲେ ସେହିଠାକୁ ଭୀମ ବଳବନ୍ତା ।
ଆସିବା ଭୀମ ନେତ୍ରେ ଦେଖି ଜନାର୍ଦ୍ଦନ
ବୋଇଲେ ଶୁଣ ମୋର ବଚନ ଅର୍ଜ୍ଜୁନ ।
ସୋମକ ପାଣ୍ଡବଙ୍କୁ ଘେନି ଭୀମ ବଳୀ
ଆସୁଅଛନ୍ତି ଦ୍ରୋଣ କର୍ଣ୍ଣଙ୍କୁ ସେ ଚଳି ।
ସାତ୍ୟକି ମଧ ଭୀମ ସଙ୍ଗେ ଲାଗିଛନ୍ତି
ଦ୍ରୋଣ କର୍ଣ୍ଣ ଦୁହିଙ୍କି ଦେବେ ଏ ବିପତ୍ତି ।
ଏରୂପେ କଥାବାର୍ତ୍ତା ହୋନ୍ତେ କୃଷ୍ଣାର୍ଜ୍ଜୁନ
ପାଲଟିଲେ ସେ ଯୁଧିଷ୍ଠିରଙ୍କ ସଇନ ।
ସମୁଦ୍ରରେ ସମୁଦ୍ର ମିଶିଗଲା ପ୍ରାୟେ
ଦୁଇ ସୈନ୍ୟ ଯୁଦ୍ଧରେ ମିଶାଗଲା କାୟେ ।
ତୁମ୍ଭ ସୈନ୍ୟଯାକ ପକାଇ ଦୀପ ହୁଳା
କାଟିଲେ ଖଡ଼ଗେ ପାଣ୍ଡବସେନା ଗଳା ।
ଦୁଇପକ୍ଷ ହୁଳା ଦିହୁଡ଼ି ଲିଭିଯାନ୍ତେ
ନାମ ଗୋତ୍ର ଉଚ୍ଚାରି ଯୁଝିଲେ ସମସ୍ତେ ।
କ୍ଷଣକେ ଯୁଦ୍ଧଭୂମି ହୋନ୍ତେ ନିଶବଦ
କ୍ଷଣକେ କର୍ଣ୍ଣେ ସ୍ତବଧ କରେ ପୁରି ଶବ୍ଦ ।
ଲିଭି ନ ଥିବା ଦୀପୁଁ ବାହାରି ଆଲୋକେ
ଯହିଁ ଦିଶେ ସବୁ ଥାଆନ୍ତି ସବୁ ଲୋକେ ।
ଦୁଇସେନାଙ୍କର ହୁଅନ୍ତେ ରଣେ ଗୋଳ
ପ୍ରବର୍ତ୍ତିଲା ଘୋର ହୋଇଣ ରାତ୍ରିକାଳ ।
ଧୃଷ୍ଟଦ୍ୟୁମନଙ୍କର ବକ୍ଷସ୍ଥଳେ ଦଶ-
କାଣ୍ଡ ପ୍ରହାରିଲେ କର୍ଣ୍ଣ କରିଣ ରୋଷ ।

ଧୃଷ୍ଟଦ୍ୟୁମ୍ନ କର୍ଣ୍ଣଙ୍କୁ ବିନ୍ଧି ପାଞ୍ଚକାଣ୍ଡ
ରହ ରହ ବୋଲନ୍ତେ କମ୍ପିଗଲା ଦାଣ୍ଡ ।
ଅନ୍ୟୋନ୍ୟରେ ଦୁହେଁ ହୋଇଣ ବିନ୍ଧାବିନ୍ଧି
ଯୁଦ୍ଧ କରିଲେ ରୋଷେ ହୋଇ ରୁନ୍ଧାରୁନ୍ଧି ।
ଧୃଷ୍ଟଦ୍ୟୁମନଙ୍କ ସାରଥି ତୁଲେ ଘୋଡ଼ା-
ମାନଙ୍କୁ କର୍ଣ୍ଣ କଲେ ଯମପୁରେ ଛିଡ଼ା ।
ତୀକ୍ଷ୍ଣ କାଣ୍ଡେ ଧୃଷ୍ଟଦ୍ୟୁମନଙ୍କ ଧନୁ
କାଟି ପକାଇଲେ ଯେ ଅଧିରଥି ସୂନୁ ।
ବିରଥ ହୋଇ ଧୃଷ୍ଟଦ୍ୟୁମ୍ନ ମହାଭାଗ
ଧଇଲେ ସେ ପରିଘୂଟାଏ ବହି ରାଗ ।
ବୁଲାଇ ପରିଘ ଫିଙ୍ଗନ୍ତେ ଯୁଦ୍ଧ ଦାଣ୍ଡେ
କର୍ଣ୍ଣଙ୍କ ଘୋଡ଼ା ପ୍ରାଣ ନେଲା ସେହୁ ଚାଣ୍ଡେ ।
ମରନ୍ତେ ଘୋଡ଼ା କର୍ଣ୍ଣ ନୋହିଣ ବିମନା
ବିନ୍ଧିଲେ ଶର ଧୃଷ୍ଟଦ୍ୟୁମ୍ନେ ଅକଳନା ।
ସେ ଘାଏ ପୀଡ଼ା ପାଇ ସହଦେବ ରଥେ
ଧୃଷ୍ଟଦ୍ୟୁମ୍ନ ବସିଲେ ଧନୁ ଧରି ହାତେ ।
କର୍ଣ୍ଣଙ୍କ ରଥରେ ସାରଥି ଘୋଡ଼ା ଚାରି
ଯୋଚିଦେଲା ଆଣି ସେକ୍ଷଣି ଦଣ୍ଡଧାରୀ ।
ଯାଆନ୍ତେ ଧୃଷ୍ଟଦ୍ୟୁମ୍ନ ଯୁଦ୍ଧରୁ ଓହରି
ପାଞ୍ଚାଳଙ୍କୁ ମାଇଲେ କର୍ଣ୍ଣ ଶର ମାରି ।
ସିଂହ ଭୟରେ ମୃଗ ପଳାଇବା ପ୍ରାୟେ
ପାଞ୍ଚାଳ ସୈନ୍ୟ ପଳାଇଲେ କର୍ଣ୍ଣ ଭୟେ ।
ହାତୀ ଘୋଡ଼ା ରଥ ଗଜରୁ ଯେ ଅନେକ
ଲୋକ ପଡ଼ି ଗଡ଼ିଲେ ଯୁଦ୍ଧ ଭୂମିଯାକ ।
ଯୁଝିବାକୁ କର୍ଣ୍ଣ ଆଗକୁ ଯେ ଆସିଲେ
ଶସ୍ତ୍ର ତୁଲେ ତାଙ୍କ ବାହୁକୁ କଟାଇଲେ ।
ଘୋଡ଼ା ହାତୀ ଚଢ଼ାମାନଙ୍କର ଯେ ଉରୁ
କାଟିଲେ କର୍ଣ୍ଣ ଯୁଦ୍ଧେ ନୋହି କିଛି ଭୀରୁ ।
ଚାରିଆଡ଼ରେ କର୍ଣ୍ଣମୟ ପାଣ୍ଡୁସେନା
ମଣି ମହାଭୟେ କମ୍ପିଲେ ମହାମନା ।
ପଳାଇଲେ ହେଲେଟି ପାଣ୍ଡବଙ୍କ ବଳ
ଗୋଡ଼ାଇଲେ କର୍ଣ୍ଣ ହେବାକୁ ମହାମଲ୍ଲ ।
କର୍ଣ୍ଣଙ୍କର ସମ୍ମୁଖେ ରହି ଯୁଝିବାକୁ
ନ ଦେଖିଲୁଁ ନୟନେ ସେକାଳେ କାହାକୁ ।
କର୍ଣ୍ଣ ଦ୍ରୋଣଙ୍କର ନିଷ୍ଠୁର ଯୁଦ୍ଧ ପାଇଁ
ପଳାଇଲେ ପାଞ୍ଚାଳେ ପଛକୁ ନ ଚାହିଁ ।
ଯୁଧିଷ୍ଠିର ରାଜା ଭୟରେ ହୋଇ ଛନ୍ନ
ଅର୍ଜୁନଙ୍କୁ ଚାହିଁ କହିଲେ ଏ ବଚନ ।
ଦେଖ ହେ କର୍ଣ୍ଣ-ସୂର୍ଯ୍ୟ ଧନୁ-ମଣ୍ଡଳରେ
ଦିଶୁଅଛଇ ଶୋଭା ରଥ-ଆକାଶରେ ।
ଶର-କିରଣକୁ କରିଣ ପରକାଶ
ନାଶି ପକାଉଛି ଆମ୍ଭର ସୈନ୍ୟବଂଶ ।

ଅନାଥ ଲୋକ ପରି ଆମ୍ଭ ଲୋକଯାକ
ପଳାଉଛନ୍ତି ଦେଖ କାନ୍ଦି ସକସକ ।
ସନ୍ଧିବା ବିନ୍ଧିବାରେ କର୍ଣ୍ଣ ଛିଦ୍ର କିଛି
ଜାଣୁନାହିଁ କାହିବା ପାଇଁ କିସ ଅଛି ।
କର୍ଣ୍ଣଙ୍କର ବଧକୁ ଯେ ହେବ ଯୁକତ
ତାହା କର ଆହେ ଗାଣ୍ଡୀବଧନୁହାତ ।
ଯୁଧିଷ୍ଠି ରାଜାଙ୍କ ବଚନ କର୍ଣ୍ଣେ ଶୁଣି
କହିଲେ ଅରଜୁନ କୃଷ୍ଣଙ୍କୁ ଏ ବାଣୀ ।
ଯୁଧିଷ୍ଠିର ରାଜା ତ ପାଉଛନ୍ତି ଭୟ
ଏଥିକି ଯେ ଉପାୟ ତାହା କହିଦିଅ ।
ଆମ୍ଭମାନଙ୍କର ସବୁକାଳରେ ଗତି
ଆପଣ ତ ଆମ୍ଭେ କରିବୁଁ କି ଯୁକତି ।
ଦ୍ରୋଣ କର୍ଣ୍ଣ ଶାୟକେ ପାଇ ମହାପୀଡ଼ା
ଥାଉ ଯୁଝିବାର, ନୁହନ୍ତି କେହି ଛିଡ଼ା ।
ନିର୍ଭୟ ହୋଇ କର୍ଣ୍ଣ ଆମ୍ଭ ସୈନ୍ୟେ ପଶି
ଶାୟକନାୟକରେ ପକାଉଛି ନାଶି ।
କର୍ଣ୍ଣଙ୍କ ଚରିତ୍ର ଦେଖି ହେ ଭଗବାନ
କ୍ରୋଧରେ କମ୍ପିଯାଉଛି ମୋ ଅପଘନ ।
ଯେଉଁଠାରେ କର୍ଣ୍ଣ କରୁଅଛନ୍ତି ରଣ
ସେଠାକୁ ବାହ ରଥ, ଘେନିବି ତା ପ୍ରାଣ ।
କୃଷ୍ଣ ବୋଇଲେ ଆହେ କର୍ଣ୍ଣ ତୁଲେ ରଣ
ତୁମ୍ଭ ବିନା ଯେ କଲେ ହାରିବ ପରାଣ ।
ଇନ୍ଦ୍ରପରି ବଳ ଦେଖାଇ କର୍ଣ୍ଣ ରଥୀ
ଦେଉଛନ୍ତି ପାଣ୍ଡବ ବଳକୁ ଳ ମନ୍ଥି ।
ଘଟୋତ୍କଚ ଏକା ପାରନ୍ତି କରି ରଣ
ଆନଠାରେ ମନ ତ ପାଉନାହିଁ କାଣ ।
ସୂତପୁତ୍ର ତୁଲେ ତ ଯୁଝିବାକୁ ତୁମ୍ଭେ
କାଳ ହୋଇ ନାହିଁ, ବୋଲିବୁ କେହିଁ ଆମ୍ଭେ
ତୁମ୍ଭଙ୍କୁ ମାରିବାକୁ ଧରିଛି ସେ ଶକ୍ତି
ଏଥିକି ଭୟ ମୋର ହେଉଅଛି ମତି ।
ମହା ବଳୀୟାର ତା ଅଟେ ଘଟୋତ୍କଚ
ଯୁଦ୍ଧରେ କର୍ଣ୍ଣଙ୍କୁ ଛଡ଼ାଇ ପାରେ ମଞ୍ଚ ।
ଭୀମଙ୍କର ବୀର୍ଯ୍ୟରେ ହୋଇଛି ସେ ଜାତ
ରାକ୍ଷସ ଶୂର ଦିବ୍ୟଅସ୍ତ୍ରରେ ସେ ଯୁତ ।
ସବୁକାଳେ ଆମ୍ଭଙ୍କୁ ଥାଏ ଭଜି ରହି
ଯୁଦ୍ଧ କଲେ କର୍ଣ୍ଣଙ୍କୁ ଦେବ ସେ ବଢ଼ାଇ ।
ଏହା କହି ଅରଜୁନଙ୍କୁ ଭୀମସୁତ
ଘଟୋତ୍କଚ ବୀରକୁ ଡାକନ୍ତେ ଅଚ୍ୟୁତ ।
ସେକ୍ଷଣି ତ ଆଗରେ ଆସି ହେଲା ଛିଡ଼ା
ବାନ୍ଧିଥିଲା ଅଣ୍ଟାରେ ଆଣ୍ଟେ ଖଣ୍ଡାଯୋଡ଼ା ।
ଇନ୍ଦ୍ରଧନୁ ପରି ଧନୁକୁ ଧରି କରେ
ଛିଡ଼ା ହୋଇଲା ବେଗେ କୃଷ୍ଣଙ୍କ ଆଗରେ ।

କୃଷ୍ଣ ଅର୍ଜୁନଙ୍କୁ କରିଣ ନମସ୍କାର
ଅଞ୍ଜଳି କରି କର କହିଲା ଉତ୍ତର ।
କେଉଁ କଥାପାଇଁକି ଡକାଇଲେ ମୋତେ
ବୋଲ ତାହା ହେ ମୁହିଁ କରିବି ତୁରିତେ ।
ହସି କୃଷ୍ଣ ବୋଇଲେ ଘଟୋତ୍କଚ ସୁତ
ଶୁଣ ଆମ୍ଭ କହିବା କଥା ଦେଇ ଚିତ୍ତ ।
ରାତ୍ର ହେବା ସକାଶୁଁ ତୁମ୍ଭର ବିକ୍ରମ
ଦ୍ୱିଗୁଣରେ ବଢ଼ିବ ରାକ୍ଷସ ଉତ୍ତମ ।
ତୁମ୍ଭେ ଥାଉଁ ଥାଉଁ ଆମ୍ଭର ହୋଇ ବନ୍ଧୁ
ବୁଡ଼ାଉଛି ଆମ୍ଭଙ୍କୁ କର୍ଣ୍ଣ କ୍ରୋଧ-ସିନ୍ଧୁ ।
ମାୟା ଅସ୍ତ୍ର ଦୁହେଁ ତ ଗୋଚର ତୁମ୍ଭଙ୍କୁ
ବହିଛ ତ ଦେହେ ଉତ୍ତମ ବିକ୍ରମକୁ ।
ପର୍ବତ ପରାୟେ ତୁମ୍ଭର ଦିଶେ ମୂର୍ତ୍ତି
କେ ଜୀବଇ ବାଜିଲେ ତୁମ୍ଭ ଶରପନ୍ତି ।
ଦେଖ କର୍ଣ୍ଣ ଦେଖାଇ ନିଜ ବାହୁଟାଣ
ଘେନି ପକାଉଛି ଆମ୍ଭର ସେନା ପ୍ରାଣ ।
କର୍ଣ୍ଣଙ୍କ ଆଗରେ ଯୁଝନ୍ତି ଯେ ପାଲଟି
ଖାଉଛନ୍ତି ଧୂଳାଏ ମାଟି ତାର ପାଟି ।
ସିଂହକୁ ଦେଖି ମୃଗେ ପଳାଇବା ପ୍ରାୟେ
ପଳାନ୍ତି ଦେଖ ହେ ପାଞ୍ଚାଳେ କର୍ଣ୍ଣ-ଭୟେ ।
କର୍ଣ୍ଣ-କ୍ଷୁଦ୍ରବୃକ୍ଷେ ଉପାଡ଼ିବାକୁ ତୁଲେ
ରଥୀ-ହାତୀ ପରିଚି ମଣିଅଛୁଁ ଆମ୍ଭେ ।
ମାତୃ ପିତୃକୁଳକୁ ଉଚିତ ଯେ କର୍ମ
ଦେଖାଅ କର୍ଣ୍ଣ ତୁଲେ କରିଣ ସଂଗ୍ରାମ ।
ଦୁଃଖରୁ ତରିବାକୁ ନରମାନେ ଯୁତ
କରିଥାନ୍ତି, ସେକାଳ ହୋଇଛି ଆଗତ ।
ତୁମ୍ଭର ଅସ୍ତ୍ରବଳ ମାୟାବଳ ଦୁଇ
ତରିବାକୁ ମହୀରେ କେହି ଦିଶୁନାହିଁ ।
ଯମପାଶରେ ତୁମ୍ଭେ କର୍ଣ୍ଣଙ୍କୁ ବସାଅ
ଦ୍ରୋଣ ପ୍ରାଣ ଘେନିବେ ଦ୍ରୁପଦଙ୍କ ପୁଅ ।
ଦ୍ରୋଣ କର୍ଣ୍ଣ ଦୁହେଁ ମରିଗଲେ ଚିନ୍ତା ଛାଡ଼ି
ଯୁଧିଷ୍ଠିର ହସ୍ତିନା ବସିବେଟି ମାଡ଼ି ।
କୃଷ୍ଣଙ୍କ ଏ ବଚନ ଶୁଣି ଅରଜୁନ
ତ୍ୱରାହୋଇ ବୋଇଲେ ଶୁଣ ହେ ନନ୍ଦନ ।
ମୋ ମତରେ ତୁମ୍ଭେ ସାତ୍ୟକି ଭୀମସେନ
ଆମ୍ଭ ସେନ୍ୟେ ରହିଛ ହୋଇ ବଳବାନ ।
କର୍ଣ୍ଣ ତୁଲେ ତୁମ୍ଭେ ଯାଇଣ ଯୁଦ୍ଧକର
ସାତ୍ୟକି ପୃଷ୍ଠରକ୍ଷା କରିବେ ତୁମ୍ଭର ।
ସାତ୍ୟକି ସହାୟରେ କର୍ଣ୍ଣଙ୍କୁ ବଢ଼ାଇ
ଦିଅ ପୁତ୍ର କରି ଏ ରାତିକି ଲଢ଼ାଇ ।
ଏ ବଚନ ଶୁଣିଣ ଘଟୋତ୍କଚ କାନେ
ହସି ବେନି କୃଷ୍ଣଙ୍କୁ କହିଲା ବଚନେ ।

ଏ ରାତି ଭିତରେ ମୁଁ ଦ୍ରୋଣ କର୍ଣ୍ଣ ଦୁଇ
ମାରି ସବୁ ସେନାଙ୍କୁ ପାରଇଁ ବଢ଼ାଇ ।
ଯେବେ ବୋଲୁଅଛ ହେ କର୍ଣ୍ଣ ତୁଲେ ଯୁଦ୍ଧ
କରିଣ ଛାଡ଼ିବି ଦେଖିବ ବିଷ-କ୍ରୋଧ ।
ମୋ ଶର-ଅଗ୍ନି-ମୁଖେ ପଡ଼ି ସେ ବାପୁଡ଼ା
ମଡ଼ା ନିନ୍ଦା କରି ଦେଖିବ ଦରପୋଡ଼ା ।
ରାକ୍ଷସ ଧରମକୁ ଆଶ୍ରେ କରି ମୁହିଁ
ଦାନ୍ତେ କୁଟା ଧରିବା ଲୋକେ ମାରିବଇଁ ।
ଶରଣ ପୟରେ ମୋ ପଶିବ ଯେ ନର
ତେବେ ହେଲେ ମରଣ ମୂଳ ହେଇ ତାର ।
ଏରୂପେ କହି ଘଟୋତ୍କଚ ମହାବଳୀ
ଦୁଇ ନିଶ ହାତରେ ଘଷିଦେଲା ଚଳି ।
ପୁଣି ନେତ୍ର ଦୁଇକି ରଙ୍ଗ କରି ଦେଇ
ଆଉଁସିଲା ଥରେ ହାତରେ ଦାଢ଼ି ଦୁଇ ।
କାନ୍ଧ ପର୍ଯ୍ୟନ୍ତେ ଦାଢ଼ିବାଳକୁ ଝିଙ୍କିଲା
ଯୁଝିବା ବୋଲି ପାଞ୍ଚ୍ ଧନୁ ଆମଞ୍ଚିଲା ।
ମଟମଟ କରିଣ ଚାହିଁ ଚାରିପଟେ
ଦାନ୍ତକୁ କଟକଟ କରି ଅତି ଆଣ୍ଟେ ।
କର୍ଣ୍ଣଙ୍କ ସମୀପକୁ ଧୂଆଁଇଲା ରଥ
ଗରଜନେ କମ୍ପାଇ ଦେଲା ଯିବା ପଥ ।
ଘଟୋତ୍କଚ ଆସିବାର ଯେ କର୍ଣ୍ଣ ଦେଖି
ବିନ୍ଧିଲେ ଶର ଧନୁ ମଧଦେଶେ ରଖି ।
ନର ରାକ୍ଷସର ହୋଇଲା ମହାରଣ
ପୂରିଗଲା କାଣ୍ଡରେ ଆକାଶ-ଅଙ୍ଗଣ ।
ତା ଦେଖି ଦୁର୍ଯ୍ୟୋଧନ ବୋଲେ ଦୁଃଶାସନ
କର ତୁମ୍ଭେ ଘଟୋତ୍କଚକୁ ଆୟୋଧନ ।
ମିତ ହିତ ବିଚାରି ଆମ୍ଭ ଯୁଝୁଛନ୍ତି
ନେବଟି ପ୍ରାଣ ହରି ହିଡ଼ିମ୍ବା-ସନ୍ତତି ।
କର୍ଣ୍ଣଙ୍କୁ ରଖିଲେଟି ଆମ୍ଭର ପ୍ରତିଜ୍ଞା
ରହିବ, ପାଣ୍ଡବେ ଛାଡ଼ିବେ ଦେହ ସଂଜ୍ଞା ।
ଏମନ୍ତ ସମୟରେ ଜଟାସୁର ସୁତ
ଦୁର୍ଯ୍ୟୋଧନଠାରେ ହୋଇଣ ଉପଗତ ।
ବୋଇଲା ତୁମ୍ଭେ ଯେବେ ଆଜ୍ଞା ଦେବ ମୋତେ
ପାଣ୍ଡବଙ୍କ ପରାଣ ଘେନିବି କିଞ୍ଚିତେ ।
ମୋ ବାପୁ ଜଟାସୁର ପରାଣ ପାଣ୍ଡବେ
ନେଇଛନ୍ତି, ତେଣୁ ମାରିବି ତାଙ୍କୁ ଏବେ ।
ନୋହିଲେ ପିତୃରଣ ଶୁଝାଇ ମୁଁ ନାହିଁ
ଜୀଇବାର ମୋର ବ୍ୟର୍ଥ ହେ ନରସାଇଁ ।
ଦୁର୍ଯ୍ୟୋଧନ ବୋଇଲେ ଦ୍ରୋଣ କର୍ଣ୍ଣ ତୁଲେ
ମାରିବି ମୁଁ ପାଣ୍ଡବଗଣେ ଜାଣ ଭଲେ ।
ଯେବେ ତୁମ୍ଭେ ବୋଲୁଛ ମାର ଭୀମସୁତ
ଘଟୋତ୍କଚ ହୋଇଛି ଯୁଦ୍ଧେ ଉନମତ ।

ଏହା ଶୁଣିଣ ଅଳମ୍ବଳ କରି ରଢ଼ି
ସରଜିଲା ଘଟୋତ୍କଚକୁ ଶରଧାଡ଼ି ।
ଘଟୋତ୍କଚ ଶର-ପବନେ ତୁମ୍ଭ ବଳ-
ମେଘ ପଳାଇଗଲେ ହୋଇଣ ଆକୁଳ ।
ଅଳମ୍ବଳ କର୍ଣ୍ଣ ଦୁହିଙ୍କ ମଧ ବିନ୍ଧି
ଘଟୋତ୍କଚ ବୀର ଯେ ପକାଇଲେ ରୁନ୍ଧି ।
ଘଟୋତ୍କଚ ବଳ ଦେଖିଣ ଅଳଂବଳ
ବିନ୍ଧିଲା ନାନାଜାତି ବାଛି ଶରଜାଳ ।
ଏ ବାହାରେ ପାଣ୍ଡୁସେନାଙ୍କୁ ଶରେ ଖେଦି
ଘେନିଗଲ ଯୁଦ୍ଧେ ହେବାକୁ ନିର୍ବିବାଦୀ ।
ସେରୂପେ ଘଟୋତ୍କଚ-ଶରେ ତୁମ୍ଭ ସେନା
ପଳାଇଲେ ଯୁଦ୍ଧରୁ ହୋଇଣ ବିମନା ।
ତାହା ନ ସହି ଅଳଂବଳ ମହାବଳୀ
ଭୀମସୁତ ଦେହେ ବିନ୍ଧିଲା ଦଶ ଚଟି ।
ଅଳମ୍ବ ଳ ସୁତ ପ୍ରାଣଙ୍କୁ କାଣ୍ଡେ ହରି
କାଟିଲା ତାର ରଥ ଶରକୁ ପ୍ରହାରି ।
କର୍ଣ୍ଣାଦି ରଥୀଙ୍କି ଘୋଡ଼ାଇ ଦେଇ ଶରେ
ବିନ୍ଧିଲା କ୍ରୋଧେ ଅଳମ୍ବଳର ଉପରେ ।
କୁରୁସୈନ୍ୟହାକ ଯେ ହୋଇଣ ତାଟକା
ରହିଲେ ମେଞ୍ଚହୋଇ ପାଡ଼ି ଉଚେ ଡକା ।
ମହତ କ୍ରୋଧ ହୋଇ ଜଟାସୁର ସୁତ
ଘଟୋତ୍କଚ ଦେହକୁ କଲା ମୁଷ୍ଟିଘାତ ।
ଘଟୋତ୍କଚ ମୁଷ୍ଟିମାଡ଼ରେ ଯାଇ କମ୍ପି
ମାଇଲା ମୁଷ୍ଟ ତା ଦେହରେ ପଡ଼ି ଝାମ୍ପି ।
ଦୁଇ ହାତରେ ଅଳମ୍ବଳକୁ ଟେକିଲା
ପକାଇ ତଳେ ଥରେ ଲେଡ଼ିରେ ପେଷିଲା ।
ଉଠିଣ ଅଳମ୍ବଳ ଝାଡ଼ିଝୁଡ଼ି ହୋଇ
ହିଡ଼ମ୍ବା-ନନ୍ଦନକୁ ଧରି କୁଣ୍ଢିଆଇ ।
ଉପରକୁ ଟେକି ପକାଇଦେଇ ତଳେ
ଦୁଇ ହାତରେ ଥରେ ପେଷିଦେଲା ହେଳେ ।
ସେ ଦୁହିଙ୍କର ଯୁଦ୍ଧ ହୋଇଲା ସମାନ
ତା ଦେଖି ଥରିଲା ସବୁରି ଅପଘନ ।
ଦୁହେଁ ତ ଅଟନ୍ତି ରାକ୍ଷସକୁଳେ ଜାତ
ଏଣୁ ମାୟାଯୁଦ୍ଧକୁ କଲେ ସେ ବହୁତ ।
ମାୟାରେ ଅଳମ୍ବଳ ଅଗ୍ନିହୋଇ ପୋଡ଼ି-
ଦିଅନ୍ତେ ଘଟୋତ୍କଚ-ସିନ୍ଧୁ ଗଲା ମାଡ଼ି ।
ସର୍ପ ହୋଇଣ ଫଣା ଟେକି ଅଳଂବଳ
ମୁଖେ ପ୍ରକାଶନ୍ତେ ବହୁତ ବିଷଜାଳ ।
ତାହା ଦେଖିଣ ଘଟୋତ୍କଚ ଗରୁଡ଼ଙ୍କ-
ରୂପ ଧରନ୍ତେ ସେହୁ ଲଭିଲା ଆତଙ୍କ ।
ମେଘ ହୋଇଣ ଅଳମ୍ବଳ ମହାବଳୀ
ଘୋଟିଲା ଚାରିଦିଗେ ସର୍ଜି ବିଜୁମାଳୀ ।
ଘଡ଼ଘଡ଼ି ରଢ଼ିକି କରିଣ ପଥର
ବରଷିଲା ପାଣ୍ଡବ ସେନାଙ୍କ ଉପର ।
ଘଟୋତ୍କଚ ପବନ ହୋଇକରି ଆପେ
ଉଡ଼ାଇଦେଲା ଚୋଡ଼େ ଘନକୁ ପ୍ରତାପେ ।
ଅଳମ୍ବଳ ରାକ୍ଷସ ହୁଅନ୍ତେ ପର୍ବତ
ବଜ୍ର ପରି ଘଟୋତ୍କଚ ତା କଲା ହତ ।
ଜଟାସୁର-ସୁତ ପର୍ବତ ପରି ହାତୀ
ହୋଇ ଧାଇଁ ଆସନ୍ତେ ଦୁଇଦନ୍ତ ପାତି ।
ହିଡ଼ିମ୍ବା ସୁତ ପାଞ୍ଚଆସ୍ୟ ନଖଘାତେ
ତେଡ଼େ ହାତୀ ଗୋଟା ଯେ ଭାଜିଲା ତରଣ୍ତେ ।
ଅଳମ୍ବକ ସୂର୍ଯ୍ୟ ହୋଇଣ ଦଶଦିଶ-
ମାନଙ୍କରେ ପ୍ରତାପ କରନ୍ତେ ପ୍ରକାଶ ।
ତାହା ସହି ନ ପାରି ଘଟୋତ୍କଚ ବଳୀ
ସେକ୍ଷଣି ରାହୁ ହୋଇ ପକାଇଲା ଗିଳି ।
ଏରୂପେ ଶତ ଶତ ସଂଖ୍ୟା ମାୟା କଲେ
ମରଣକୁ ବରଣ କରି ସେ ଯୁଝିଲେ ।
ଏ ଅନ୍ତରେ ସେ ଦୁହେଁ ମାୟା ଯୁଦ୍ଧ ଛାଡ଼ି
ଅସ୍ତ୍ର ଶସ୍ତ୍ର ଯୁଦ୍ଧ ସର୍ଜିଲେ ହରଘଡ଼ି ।
ଏହା ବାହାରେ ଗିରିମାନଙ୍କୁ ଉପାଡ଼ି
ହୋଇଲେ ଯୁଦ୍ଧଦାଣ୍ଡେ ଫବଡ଼ାଫବଡ଼ି ।
ଘୋଡ଼ା ହାତୀ ରଥ ଚଢ଼ିଣ କେତେବେଳେ
ଯୁଝିଲେ କେତେବେଳେ ଯୁଝିଲେ ବା ତଳେ ।
ଅଳମ୍ବଳ ବଧରେ ଘଟୋତ୍କଚ ମନ
ଦେଇଣ ଉପରକୁ ଡେଇଁଣ ରାଜନ ।
ସଞ୍ଚାଣ ପରି ଅଳମ୍ବଳ ଦେହେ ପଡ଼ି
ବାଳ ଧରି ମୁଣ୍ଡ କାଟିଲା ଖଣ୍ଡା କାଢ଼ି ।
ଅଳମ୍ବଳ ମୁଣ୍ଡକୁ ଧରି ଘଟୋତ୍କଚ
ଗରଜନେଘାତେ କମ୍ପାଇଦେଇ ମଞ୍ଚ ।
ଦୁର୍ଯ୍ୟୋଧନଙ୍କର ରଥରେ ଅଳମ୍ବଳ-
ମୁଣ୍ଡ ଥୋଇଦେଇ ଗର୍ଜିଲା ମହାବଳ ।
କହିଲା ତୁମ୍ଭ ପ୍ରିୟକାରୀ ଜଟାସୁର-
ସୁତର ପ୍ରାଣ ନେଲି କରିଣ ସମର ।
ତୁମ୍ଭେମାନେ ନେତ୍ରେ ଅନାଇଁ ରହିଥିଲ
ପ୍ରତିକାର କିଛି ତ କରି ନ ପାରିଲ ।
ଏବେ ଦେଖ ହେ ଏହିକ୍ଷଣି କର୍ଣ୍ଣ ମୁଣ୍ଡ
କାଟି ଗଡ଼ାଇ ମୁହିଁ ଦେବି ରଣଦାଣ୍ଡ ।
ଏହା କରି ସାରିଣ କୁରୁନରପତି
ତୁମ୍ଭଙ୍କୁ ବସାଇବି ନେଇ ଯମ କତି ।
ଏରୂପେ ଦୁର୍ଯ୍ୟୋଧନ ଆଗେ ଭୀମସୁତ
କହି କର୍ଣ୍ଣଠାକୁ ହୋଇଲା ଉପଗତ ।
ଘଟୋତ୍କଚ କର୍ଣ୍ଣଙ୍କ ପ୍ରବର୍ତ୍ତିଲା ଯୁଦ୍ଧ
ଅନ୍ୟୋନ୍ୟରେ ଦୁହେଁ ତ ହୋଇଥିଲେ କ୍ରୋଧ ।

ଧୃତରାଷ୍ଟ୍ର ବୋଇଲେ ଆହେ ମନ୍ତ୍ରୀମଣି
କର୍ଣ୍ଣ ଘଟୋତ୍କଚ ତ କରିଲେ ଆରଣି ।
କେ କାକୁ ଜିଣିଲା, କି ରୂପେ କଲେ ଯୁଦ୍ଧ
ଏହା କହି ମୋହ ମନକୁ କର ବୋଧ ।
ରଥ ଅଶ୍ୱ କବଚ ଧନୁ ଶିରସ୍ତ୍ରାଣ
ପରଶ୍ୱଧ ଶକ୍ତି ତୋମର ଖଡ୍‌ଗ ବାଣ ।
କି ରୂପରେ ଘଟୋତ୍କଚର କହ ମୋତେ
ଶୁଣିବା ଇଚ୍ଛା ମୁହିଁ କରିଅଛି ଚିତ୍ତେ ।
ଏ ବାହାରେ ଯେ ଘଟୋତ୍କଚର ଆକୃତି
କହି ତ ନାହଁ ହେ ସଞ୍ଜୟ ମହାମନ୍ତ୍ରୀ ।
ସଞ୍ଜୟ ବୋଇଲେ ପୁଚ୍ଛିବା କଥାଯାକ
କହିବା ତାହା ଶୁଣ ହସ୍ତିନା-ନାୟକ ।
ଶଗଡ଼-ଚକ ପରି ତାର ଆଖି ଦୁଇ
ଥୋଇଥିବା କଞ୍ଚା ମାଉଁସକୁ ନିନ୍ଦଇ ।
କୁଲା ପରି ଜାଣ ତା କାନ ଦୁଇଗୋଟି
ସେହି ପରିଯନ୍ତେ ବିସ୍ତାର ତାର ପାଟି ।
ପିଙ୍ଗଳବର୍ଣ୍ଣ ତାର କେଶ ଉପରକୁ
ଉଠୁଥାଏ, ଦେଖିଲେ ଦିଅଇ ଭୟକୁ ।
ତାଟିଲା ତମ୍ବା ପରି ଓଷ୍ଠ ଜିହ୍ୱା ତାର
ନାକୁଟି ଗରୁଡ଼ଙ୍କ ନାକର ଆକାର ।
କର୍ଣ୍ଣବିଳ ଦ୍ୱୟୁଁ ବାହାରି ସର୍ପ ଦୁଇ
ଖେଳିଲା ପରି ଭ୍ରୂ ବେନି ତା ଦିଶଇ ।
ଖଙ୍କାଳ ପେଟ ତା ପିଠିକି ଲାଗିଥାଏ
ଯେତେ ଖାଇଲେ ସେ ତ ନ ଦିଶଇ ରାୟେ ।
ମହାଶରୀର ମହାବଳ ମହାଶିର
ବହିଥାଏ ଘଟୋତ୍କଚଟି ମନେକର ।
ଶାଳବୃକ୍ଷ ପରି ତାହାର ବାହୁ ଦୁଇ
ତହିଁରେ ଯେ ପଡ଼େ ଯମକୁ ସେ ଭେଟଇ ।
ଗୃଢ଼ନାଭି ସ୍ଥୂଳପିଚା ପୁଣି ତାହାର
ଦିଶୁଥାଏ ମାଟିକୁଢ଼ର ପରକାର ।
ସୁବର୍ଣ୍ଣମାଳା ଦେହେ ହୋଇଥାଏ ମଣ୍ଡି
ଗିରି ଅଗ୍ନିମାଳା ଶୋଭାକୁ ଦେଇ ଖଣ୍ଡି ।
କିରୀଟୀ ସକାଶୁଁ ରାକ୍ଷସ ବଳବନ୍ତ
ଭାଗୁଥାଏ ସେ ହେମଶୃଙ୍ଗ ପ୍ରଭାବନ୍ତ ।
ଚନ୍ଦ୍ରର ପରି କଂସାକବଚ ଚହଟେ
କୁଣ୍ଡଳ ଦୁଇ ଲୋଟୁଥାଏ କନ୍ଧତଟେ ।
ଚାରିଶହାତ ଉଚ୍ଚ ରଥେ ହୋଇ ଛିଡ଼ା
ଧରିଥାଏ ଅଙ୍ଗରେ ନାନା ଶସ୍ତ୍ର ଭିଡ଼ା ।
ଭାଲୁଚର୍ମରେ ଛୁଆ ଜାଣ ତାର ରଥ
ଗର୍ଜନେ କମ୍ପାଉଥାଏ ସେ ମହୀପଥ ।
ଆଠୋଟାଚକ ତାର ରଥେ ଲାଗିଥାଏ
ପବନୁ ଅଧିକ ଗତି ସେ କରୁଥାଏ ।

ମତ୍ତହସ୍ତୀ ପରି ତା ରଥେ ଶଏ ଘୋଡ଼ା
ବନ୍ଧା ହୋଇ ରାଜନ ହୋଇଥାନ୍ତି ଯୋଡ଼ା ।
ସେ ଘୋଡ଼ାମାନଙ୍କର ଗଣ୍ଡି କଳାହାଣ୍ଡି
ପରାୟେ ଦିଶେ, ଆଖି ରକ୍ତେ ଥାଏ ମଣ୍ଡି ।
ବିରୂପାକ୍ଷ ରାକ୍ଷସ ସାରଥି ତାହାର
ବାହୁଥାଏ ଯାନକୁ କରିଣ ସଧୀର ।
ଅରୁଣ ତୁଲେ ସୂର୍ଯ୍ୟ ଦିଶିଲା ପରାୟେ
ଦିଶୁଥାଏ ସାରଥି ତୁଲେ ତାର କାୟେ ।
ଧ୍ୱଜ ହୋଇ ତା ରଥେ ଥାଇଣ ଶାଗୁଣା
ବିସ୍ତାର କରି ଦେଉଥାଏ ମୁଖ ଡେଣା ।
ବାରହାତ ଲମ୍ବ ଓସାର ହାତେ ଯାଏ
ଧନୁ ଧରି ଥାଏ ସେ ରଣକୁଳ ରାୟେ ।
ଅଖ ପରାଏ କାଣ୍ଡ ବରଷି କର୍ଣ୍ଣଙ୍କୁ
ଯୁଝିଲାଟି ରାକ୍ଷସ ଜୀବନ ନେବାକୁ ।
ବଜ୍ର ପରି ଗର୍ଜନ ତାହା ଧନୁ ରଡ଼ି
କେ ଯୁଝିବ ତାକୁ କହ ତ ପ୍ରାଣ ଛାଡ଼ି ।
ସିଂହ ଭୟେ ବିଲୁଆ ଭାଜିବା ପରାୟେ
ପଳାଇଲେ ସଇନ ଘଟୋତ୍କଚ ଭୟେ ।
ଏକା କର୍ଣ୍ଣ ଯୁଦ୍ଧରେ ଦେଇଣ ମାନସ
ଡାକିଲେ ଆସ ଯୁଦ୍ଧ କରିବା ରାକ୍ଷସ ।
ଶମ୍ବର ଇନ୍ଦ୍ର ପରି ଘଟୋତ୍କଚ କର୍ଣ୍ଣ
ଯୁଦ୍ଧ କଲେ ଜୟ-ଶିରୀରେ ଦେଇ ମନ ।
ଯୁଦ୍ଧଦାଣ୍ଡରେ ଦୁହେଁ ହୁଅନ୍ତେ ବିନ୍ଧାବିନ୍ଧି
ନ ଦେଖିଲୁଁ ତାଙ୍କୁ ହୁଅନ୍ତେ ଶରେ ରୁନ୍ଧି ।
ଅନ୍ୟୋନ୍ୟରେ ଦୁହେଁ କବଚ ଗଳାଗଳି
ହେଲେ ସରଜନା କରିଣ ଶରାବଳି ।
ଶକତି ଗଦା କାଣ୍ଡ ତୋମର ପରଶୁ
ମରାମରି ହୋଇଲେ ନେବା ପାଇଁ ଅସୁ ।
ପରସ୍ପରେ ଦୁହିଙ୍କ ଦେହରୁ ରକତ
ବହନ୍ତେ ନିନ୍ଦା କଲା ଗେରୁ-ପରବତ ।
ଦୁହେଁ ତ ଯୁଦ୍ଧଦାଣ୍ଡେ ଅଟନ୍ତି ମନୁଆ
ଯୁଦ୍ଧ କରିଲେ ଧରିବାକୁ ଦେହ ନୂଆ ।
ଦୁହିଙ୍କରଟି ଯୁଦ୍ଧ ହୋଇଲା ସମାନ
ଦଳି ନ ପାରିଲେ ସେ କେ କାହାକୁ ଜାଣ ।
ଦୁଇ ସେନାଯାକ ଦୁହିଙ୍କ ଧନୁ ରଡ଼ି
ଶୁଣି ପଳାଇଲେ ତରସ୍ତ ହୋଇ ଛାଡ଼ି ।
କର୍ଣ୍ଣ ଘଟୋତ୍କଚେ ହେଲେହେଁ ଯୁଦ୍ଧେ ଉଣା
ବିନ୍ଧିଲେ ଦିବ୍ୟାସ୍ତ୍ର ନ କରି ବୁଦ୍ଧି ବଣା ।
କର୍ଣ୍ଣ ଦିବ୍ୟ ଅସ୍ତ୍ରକୁ ବିନ୍ଧିବାର ଜାଣି
ମହାମାୟା କଲା ରାକ୍ଷସ ସେହିକ୍ଷଣି ।
ଶୂଳ ମୁଦଗର ଘେନିଣ ସେ ରାକ୍ଷସେ
ରହିକରି ଯୁଝିଲେ ଜାଣ କର୍ଣ୍ଣ ପାଶେ ।

ମୃତ୍ୟୁଦେବ ଯୁଦ୍ଧକୁ ଆସିବା ପରାୟେ
ମଣିଲେ ସେ ରକ୍ଷକୁ ଦେଖି ସବୁ ରାୟେ ।
ତୋଟିକି ମେଲି ଗରଜନ୍ତେ ଭୀମସୁତ
ହାତୀ ଘୋଡ଼ାମାନେ ତେଜିଲେ ମଳ ମୂତ୍ର ।
ରାକ୍ଷସେ ଆକାଶରେ କରିଣ ସଞ୍ଚାର
କର୍ଣ୍ଣଙ୍କ ଉପରକୁ ଫିଙ୍ଗିଲେ ପଥର ।
ଲୁହାଚକ୍ର ଲୁହାଶୂଳ ଯେ ଲୁହାଗଦା
ପଡ଼ିଲା ଆକାଶରୁ ହୋଇ ଗଦା ଗଦା ।
ସେ ଯୁଦ୍ଧ ଦେଖି ତୁମ୍ଭ ପୁଅମାନେ ଆଖି
ବୁଜିଦେଇ ଭାଜିଲେ ହୋଇ ମହା ଦୁଃଖୀ ।
ଏକା କର୍ଣ୍ଣ ରହିଣ ବିନ୍ଧି ଦିବ୍ୟ କାଣ୍ଡ
ଘଟୋତ୍କଚ ମାୟାକୁ କଲେ ଖଣ୍ଡ ଖଣ୍ଡ ।
ମାୟାହତ ଦେଖିଣ ଘଟୋତ୍କଚ ବଳୀ
ସର୍ଜିଲା କର୍ଣ୍ଣଙ୍କୁ ମହତ ଶରାବଳୀ ।
କର୍ଣ୍ଣଙ୍କର ଦେହକୁ ନିକିଳି ସେ କାଣ୍ଡେ
ରକ୍ତମୁଖେ ବୋଳି ପଡ଼ିଲେ ରଣଦାଣ୍ଡେ ।
ଭୀମଙ୍କ ନନ୍ଦନଙ୍କୁ କ୍ରୋଧେ ଦଶ କାଣ୍ଡ
ବିନ୍ଧିଲେ ତୁମ୍ଭ କର୍ଣ୍ଣ ଉଭାରି କୋଦଣ୍ଡ ।
ସେ କାଣ୍ଡ ଘଟୋତ୍କଚ ମର୍ମେ ଯାନ୍ତେ ଗଳି
ବ୍ୟଥାରେ ରାକ୍ଷସ ଧଇଲା ଚକ୍ର ଟାଳି ।
ମଣି ରତନରେ ବିଭୂଷିତ ଯେ ଚକ୍ର
ହୋଇଛି ସହସ୍ର ରଥରେ ଅତି ବକ୍ର ।
କ୍ଷୁର ପରି ଦାଢ଼ ଯେ ସୂର୍ଯ୍ୟ ପରି ଜ୍ୟୋତି
ଫିଙ୍ଗିଲା ସେ ଚକ୍ରକୁ ହିଡ଼ିମ୍ବା ସନ୍ତତି ।
କର୍ଣ୍ଣ ସେ ଚକ୍ରବର କରି ନେତ୍ରଗତ
ବରଗି କାଣ୍ଡରାଜି ଗର୍ଜିକଲେ ହତ ।
ଚକ୍ର ହତ ନ ସହି କର୍ଣ୍ଣଙ୍କୁ ମାର୍ଗଣ
ବିନ୍ଧନ୍ତେ ରାକ୍ଷସ ପୂରିଲା ଯୁଦ୍ଧାଙ୍ଗଣ ।
ରୁଦ୍ର ଇନ୍ଦ୍ର ପରି ବିକ୍ରମ କର୍ଣ୍ଣ କଲେ
ଚିଆର କାଣ୍ଡେ ଘଟୋତ୍କଚ ଛାଡ଼ିଦେଲେ ।
କର୍ଣ୍ଣ ତୁଳେ ରଥକୁ କରିବାକୁ ପଦା
ଫିଙ୍ଗିଲା ଘଟୋତ୍କଚ କରେ ଟେକି ଗଦା ।
ବରଷି ଶର ତାହା କାଟି ସୂତସୂନୁ
ଫୁଲାଇ ଦେଲେ ଅତି ଉଲ୍ଲାସରେ ତନୁ ।
ଏହା ଦେଖିଣ ଘଟୋତ୍କଚ ମହାବୀରା
ଶୂନ୍ୟକୁ ଗମିଲା ଗୋଟାଏ ମାରି ଚିରା ।
ନାନାଜାତି ପାଦପମାନଙ୍କୁ ରୋଷରେ
ବରଷିଲା ଆଣି ସେ କର୍ଣ୍ଣଙ୍କର ଶିରେ ।
କର୍ଣ୍ଣ ତାହା ଦେଖିଣ ଆକାଶକୁ ଦୃଷ୍ଟି
ଦେଇକରି କଲେ ମହତ ଶରବୃଷ୍ଟି ।
ଘଟୋତ୍କଚ ଘୋଡ଼ାମାନଙ୍କ ପ୍ରାଣ ନେଲେ
ଶଏଖଣ୍ଡ କରିଣ ରଥକୁ କାଟିଲେ ।
ଘଟୋତ୍କଚ ଦେହ ହେବାକୁ ଖଣ୍ଡଖଣ୍ଡ
ବିନ୍ଧିଲେ ବାଛି କରି ଉତ୍ତମ ଯେ କାଣ୍ଡ ।
ଦ୍ୱି ଆଙ୍ଗୁଳ ଅନ୍ତର ନୋହି କାଣ୍ଡରାଜି
ଘଟୋତ୍କଚ ଦେହେ ରହିଲେ ବାଜି ମଜ୍ଜି ।
କର୍ଣ୍ଣଙ୍କର କାଣ୍ଡରେ ଘଟୋତ୍କଚ-ବୀର
ନୋହିଲା ରାୟେ ଆମ୍ଭ ନେତ୍ରକୁ ଗୋଚର ।
ନ ପାଇ କିଛି ପୀଡ଼ା ହିଡ଼ିମ୍ବା-ନନ୍ଦନ
କର୍ଣ୍ଣଙ୍କୁ ମାରିବାକୁ କରି ତହୁଁ ମନ ।
ଦିବ୍ୟଅସ୍ତ୍ର ବରଗି କରି ମହାରାଗ
କାଟି ପକାଇଲା ସେ କର୍ଣ୍ଣଙ୍କ ଆଶୁଗ ।
ମାୟାରେ ଘଟୋତ୍କଚ ନ ଦିଶେ କାହାକୁ
ବିନ୍ଧିଲା ସେ ଶର କର୍ଣ୍ଣଙ୍କ ଉପରକୁ ।
ନାନାଜାତି ମୁଖ ସେ ଘଟୋତ୍କଚ କରି
କର୍ଣ୍ଣଙ୍କ ଶରଯାକ ଦେଲା ଗ୍ରାସକରି ।
ଆକାଶୁଁ ଶଏ ଖଣ୍ଡ ହୋଇ ସେ ରାକ୍ଷସ
ପଡ଼ିଲା, ଦେଖିଲୁଁ ହେ ସାକ୍ଷାତେ ନରେଶ ।
ମଲା ଘଟୋତ୍କଚ ବୋଲିଣ କୁରୁମାନେ
ଫୁଲାଇ ଅପଘନ ହସିଲେ ବଦନେ ।
ଏହା ଜାଣି ନବୀନ ଦେହକୁ ଧଇଲା
ମାରିବାକୁ ତୁମ୍ଭର ସୈନ୍ୟଙ୍କୁ ଗ୍ରାସିଲା ।
ଶଏ ମୁଣ୍ଡ ଶଏ ଉଦର ଘଟୋତ୍କଚ
କରିଣ ବାହାରନ୍ତେ କମ୍ପିଗଲା ମଞ୍ଚ ।
ମଇନାକ ଶଇଳ ପରାୟେ ପରତେ
ହୋଇଲା ଆମ୍ଭଙ୍କୁ ହେ ଜାଣ ମହାମତେ ।
ଅଙ୍ଗୁଷ୍ଠି ପରିମାଣେ ରକ୍ଷ ଦେଇ ଦେଖା
ଦିଶିଲା ତହୁଁ ସବୁ ଆଡ଼ରେ ଅଲେଖା ।
କେତେବେଳେ ଜଳେ ବା କେତେବେଳେ ସ୍ଥଳେ
ରହଇ ଆକାଶରେ ଯାଇ କେତେବେଳେ ।
ଏହା କରି ସାରି ସେ ନିଜ ରଥେ ବସି
ଦୁଇ ନିଶ ଦୁଇ ହାତରେ ଦେଇ ଘଷି ।
କର୍ଣ୍ଣଙ୍କର ରଥ ସମ୍ମୁଖେ ନେଇ ରଥ
ରଖାଇ କହିଲା ଅଳପ ଲାଡ଼ି ମାଥ ।
ଯୁଦ୍ଧଶ୍ରଦ୍ଧା ଆଜି ତୁମ୍ଭର ମୁଁ ଭାଙ୍ଗୁଛି
ପଳାଇ ନ ଗଲେ ହେ ଜାଣ ସୂତ ବଚ୍ଛି ।
ଏହିରୂପେ କର୍ଣ୍ଣଙ୍କୁ ଚଦିଣ ରାକ୍ଷସ
ଗରଜନ କଲା ସେ ରହିଣ ଆକାଶ ।
ଅଖ ପରିମାଣେ ଯେ ସଲଖ ବିଶିଖ
ବରଷିଲା କର୍ଣ୍ଣ ଶିରେ ହେ ନରଶିଖ ।
କରିବା ପାଇଁ କର୍ଣ୍ଣ ଜୟ-ଶିରୀ ଲୁଟି
କାଟି ପକାଇଲେ ରାକ୍ଷସ-ଶରବୃଷ୍ଟି ।
କର୍ଣ୍ଣଙ୍କରେ ମାୟାଟି ହୋଇବାରୁ ହତ
ଅନ୍ତର୍ଦ୍ଧାନ ହୋଇଲା ହିଡ଼ିମ୍ବାର ସୁତ ।

ରଣ ଅଙ୍ଗଣରେ ପର୍ବତଚୂଟାଏ ହୋଇ
ଦିଶିଲା ସେ ବହୁତ ଶୃଙ୍ଗ ଥିଲା ବହି ।
ପ୍ରାସ ଆସି ଗଦା ଯେ ମୂଷଳ ଝରଣ
ହୋଇଣ ବହିନେଲେ ଯୋଦ୍ଧାଙ୍କ ପରାଣ ।
ଏମନ୍ତ ହେଲେ କର୍ଣ୍ଣ କ୍ଷତ୍ରିମତେ ରହି
ଭୟ ଦୂର କରି ଦେଲେ ହେ ନରସାଇଁ ।
ଦିବ୍ୟ ଅସ୍ତ୍ରବଳରେ କର୍ଣ୍ଣ ଶସ୍ତ୍ରଧାରୀ
କେତେ ପର୍ବତଚୂଟା ରାଜନ ଦେଲେ ଚୂରୀ ।
ନୀଳମେଘ ହୋଇ ରାକ୍ଷସ ମହାବୀର
ବରଷିଲା କର୍ଣ୍ଣଙ୍କ ଉପରେ ପଥର ।
ବାୟବ୍ୟଅସ୍ତ୍ର ଏରି କର୍ଣ୍ଣ ସେ ମେଘକୁ
ଉଡ଼ାଇ ଘେନିଗଲେ ଦେଖାଇ ବଳକୁ ।
ଘଟୋତ୍କଚ ଅସ୍ତ୍ରକୁ ଅସ୍ତ୍ରେ କର୍ଣ୍ଣ କାଟି
ଯୁଦ୍ଧ ସର୍ଜିଲେ ଚାରିଦିଗରେ ଚହଟି ।
ଘଟୋତ୍କଚ ତାହା ନ ସହିଣ ହସିଲା
ମାରିବାକୁ କର୍ଣ୍ଣଙ୍କୁ ମାୟା ଆରମ୍ଭିଲା ।
ଘଟୋତ୍କଚ ମାୟାବଳରେ ନରପତି
ହେଲେ କୋଟି କୋଟି ରାକ୍ଷସ ଉତପତ୍ତି ।
ରଥ ହାତୀ ଘୋଡ଼ା ଆରୋହି ସେ ରାକ୍ଷସେ
ଧରି ଅଛନ୍ତି ନାନାଶସ୍ତ୍ର କରଦେଶେ ।
ଘଟୋତ୍କଚ ବନେ କର୍ଣ୍ଣଙ୍କୁ ରାକ୍ଷସ
ବଂଶ ବେଢ଼ି ମାଇଲେ ଗଦା ଶୂଳ ପ୍ରାସ ।
ଘଟୋତ୍କଚ କର୍ଣ୍ଣଙ୍କୁ ବିନ୍ଧି ପାଞ୍ଚକାଣ୍ଡ
ଗରଜିଲା ଅତିଶୟରେ ମେଲି ତୁଣ୍ଡ ।
କର୍ଣ୍ଣଙ୍କର ମାର୍ଗଣ ଗୁଣ ତୂଳେ ଚାପ
କାଟିଲା ଘଟୋତ୍କଚ ତହୁଁ କରି କୋପ ।
ଆନ ଧନୁ ଧରିଣ ରାଧାଙ୍କ ସନ୍ତତି
ବିନ୍ଧିଲେ ଗୁଣେ ଯୋଚି ମାର୍ଗଣଙ୍କୁ ଅତି ।
କର୍ଣ୍ଣଙ୍କର କାଣ୍ଡଟି ବାଜନ୍ତେ ରାକ୍ଷସେ
ଗୋଟିଏ ରହି ନ ପାରିଲେ ଯୁଦ୍ଧଦେଶେ ।
ପ୍ରଳୟଅଗ୍ନି ପ୍ରାଣୀ କଲାପରି ନାଶ
କର୍ଣ୍ଣ କଲେ ରାକ୍ଷସ ବଳଯାକ ଧ୍ୱଂସ ।
ତ୍ରିପୁର ପ୍ରାଣହର ଯୁଗାନ୍ତକ ମୂର୍ତ୍ତି
ପରାୟେ ଦିଶିଲା ସେକାଳେ କର୍ଣ୍ଣ-ଜ୍ୟୋତି ।
କର୍ଣ୍ଣଙ୍କୁ ଚାହିଁବାକୁ ଘଟୋତ୍କଚ ବିନା
ସେକାଳେ ନ ଦିଶିଲେ ଯୋଦ୍ଧା ମହାମନା ।
କର୍ଣ୍ଣଙ୍କର ନେତ୍ରରୁ ଅଗ୍ନିଜ୍ୱାଳା ଜାତ
ହୋଇଲା ହେ ରାଜନ ହୋଇ ଦୀପ୍ତିମନ୍ତ ।
ଘଟୋତ୍କଚ ଯେ ମାୟା ରଥୁଟାଏ ଚଢ଼ି
ଧନୁ ମଧ୍ୟେ ଯୋଚିଲା ତୂଣୁଁ ଶର କାଢ଼ି ।
ସାରଥିକି ବୋଇଲା ବାହ ମୋର ରଥ
ଛାଡ଼ିବି ଯୁଦ୍ଧ ମୁଁ କାଟିଲେ କର୍ଣ୍ଣମାଥ ।
ଘଟୋତ୍କଚ ବାକ୍ୟେ ସାରଥି ତ୍ୱରା ହୋଇ
ରଖିଦେଲେ ରଥକୁ କର୍ଣ୍ଣ ଆଗେ ନେଇ ।
ରୁଦ୍ରଙ୍କରେ ନିର୍ମିତ ଅଶନି ରାକ୍ଷସ
ଧଇଲା କରିବାକୁ କର୍ଣ୍ଣ ପ୍ରାଣନାଶ ।
ଆଠୋଟା ଚକ ଲାଗିଅଛି ଅଶନିରେ
ଦିଶୁଅଛି ଯେ ମୃତ୍ୟୁଭଗିନୀ ପରିରେ ।
ଉଚ୍ଚର୍ଗରେ ଯେ ଆଠକୋଶ ସେ ଅଟଇ
ଚାରିକୋଶ ଲମ୍ବ ବିସ୍ତାର ନରସାଇଁ ।
କଦମ୍ବଫୁଲ ପରି ଦୂରକୁ ଦିଶଇ
ଶୂଳମାନେ ତହିଁ ଖଞ୍ଜା ତ ଛନ୍ତି ହୋଇ ।
ସେ ଅଶନି କର୍ଣ୍ଣଙ୍କୁ ଉଦ୍ଦେଶି ରାକ୍ଷସ
ଫିଙ୍ଗନ୍ତେ ଜ୍ୟୋତିରେ ସେ ମଣ୍ଡି ଦଶଦିଶ ।
ବଜ୍ର ପରାୟେ ଧ୍ୱନି କରି କର୍ଣ୍ଣ ପାଶେ
ପାଇଗଲା ରାଜନ ଅତ୍ୟନ୍ତ ନିରାଶେ ।
ତାହା ଦେଖି କର୍ଣ୍ଣ ଧନୁକୁ ରଥେ ଥୋଇ
ସେ ଅଶନି ଗୋଟାକୁ ଧଇଲେ ସେ ଡେଇଁ ।
ଘଟୋତ୍କଚ ରାକ୍ଷସ ଉରକୁ ଉଦ୍ଦେଶି
ଫିଙ୍ଗି ସେ ଅଶନି ବସିଲେ ରଥେ ଆସି ।
କର୍ଣ୍ଣ ହାତୁ ଅଶନି ଫିଟି ଅତି ଚାଣ୍ଡେ
ଧାଇଁଲା ଘଟୋତ୍କଚଠାକୁ ରଣଦାଣ୍ଡେ ।
କର୍ମବ୍ୟଙ୍ଗ କୃତହା ପୁରୁଷ ପରାୟେ
ସେ ଅଶନି ହେଲା ହେ ଜାଣ ନରରାୟେ ।
ଘଟୋତ୍କଚ ତା ଦେଖି ରଥୁଁ ଡେଇଁପଡ଼ି
ରହିଲା ଯୁଦ୍ଧଭୂମି ମଧ୍ୟେ ମୁହଁ ମାଡ଼ି ।
ଘଟୋତ୍କଚ ରଥେ ପଡ଼ନ୍ତେ ସେ ଅଶନି
କଲା ସୂତ ଅଶ୍ୱ ତୁଲରେ ଭସ୍ମସ୍ଥାନୀ ।
ଏ ଅନ୍ତରେ ବସୁଧା ବିଦାରିଣ ବଳେ
ପଶିଲା ସେ ଅଶନି ଦେଖିଲୁଁ ପାତାଳେ ।
କର୍ଣ୍ଣଙ୍କର ଏ କର୍ମ ଦେଖି ସୁରାସୁର
ନର ପ୍ରଶଂସିଲେ ହେ ରାଜନ ଅପାର ।
ତହୁଁ ଘଟୋତ୍କଚ ଦେହକୁ ବାଛି କାଣ୍ଡ
ବିନ୍ଧିଲେ ତୁମ୍ଭ କର୍ଣ୍ଣ ଝିଙ୍କିଣ କୋଦଣ୍ଡ ।
କର୍ଣ୍ଣ ବିନା ଏ କଥା ଆନଲୋକ ହାତ-
କର୍ମ ନୁହେ ବୋଲି ହେ ଜାଣ ନରନାଥ ।
କର୍ଣ୍ଣ କାଣ୍ଡରାଜି ରହନ୍ତେ ମଜ୍ଜି ଅଙ୍ଗେ
ଲୁଚିଲା ରାକ୍ଷସ ଦେଖିଲୁଁ ରଣ ରଙ୍ଗେ ।
ଦିବ୍ୟ ଅସ୍ତ୍ରମାନ ମାୟାରେ ପରକାଶ
କଲା ସେ ଘଟୋତ୍କଚ ପାଞ୍ଚି କର୍ଣ୍ଣ-ନାଶ ।
କର୍ଣ୍ଣ ତାର ମାୟାକୁ କିଛି ନ ବିଚାରି
ବିନ୍ଧିଲେ ନାନାଜାତି ଅସ୍ତ୍ର ବାଛି କରି ।
ମାୟାରେ ଘଟୋତ୍କଚ ନାନାଜାତି ରୂପ
ଧଇଲା ତା ଏବେ କହିବା ଶୁଣ ନୃପ ।

ସିଂହ ବାଘ ଉରଗ ବିହଙ୍ଗ ରାକ୍ଷସ
ରୂପ ଧରି ପୂରିଗଲା ଯେ ଦଶଦିଶ ।
କର୍ଣ୍ଣ ରଥ ପାଶେ ରହିଲା ଆସି ଘୋଟି
ଖାଇବାକୁ କର୍ଣ୍ଣଙ୍କୁ ମେଲିଦେଇ ପାଟି ।
କର୍ଣ୍ଣ ଏହା ଦେଖିଣ ନିର୍ଭୟ ମନରେ
ଯୁଝନ୍ତେ ନାଶକଲେ ମାୟାବହନରେ ।
ଦିବ୍ୟ ଅସ୍ତ୍ରକୁ ବିନ୍ଧି ଘଟୋତ୍କଚ ଘୋଡ଼ା-
ମାନଙ୍କୁ କର୍ଣ୍ଣ କଲେ ଯମପୁରେ ଛିଡ଼ା ।
ମାୟା ହତ ଦେଖିଣ ରାକ୍ଷସ ନ ସହି
କହିଲା ଏ ବଚନ କର୍ଣ୍ଣମୁଖ ଚାହିଁ ।
ଯେଉଁରୂପରେ ଆପଣ ପାଇବ ମରଣ
ସେରୂପରେ ଏକ୍ଷଣି କରିବି ମୁଁ ରଣ ।
ଏତେ କହି ସେଠାରେ ଲୁଚାଇଲା କାୟେ
ଖୋଜିଲେ ହେଲେ ତାକୁ ନ ଦେଖିଲୁଁ ରାୟେ ।
ଏହି ସମୟରେ ରାକ୍ଷସ ଅଳାୟୁଧ
ଆସିଲା ଶୁଣି ପାଣ୍ଡୁ କୁରୁସେନା ଯୁଦ୍ଧ ।
ନାନାରୂପ ଧରି ରାକ୍ଷସ ତାର ସଙ୍ଗେ
ଥିଲେ ସେ ଚାଲି ଆସୁଥିଲେ ନାନା ରଙ୍ଗେ ।
କିର୍ମୀର ବକ ହିଡ଼ିମ୍ବର ମରଣକୁ
ସୁମରି କହିଲା ସେ ତୁମ୍ଭ କୁମରଙ୍କୁ ।
ଆହେ ନୃପ-ମଣ୍ଡନ କୁରୁ-ଅବତଂସ
ମୋ ଜ୍ଞାତିଯାକକୁ କରିଛି ଭୀମ ନାଶ ।
ହିଡ଼ିମ୍ବକୁ ମଧ ବଳେ ସେ ହରିଅଛି
ଆମ୍ଭରଠାରେ ଭୟ ନ କରିଣ କିଛି ।
ବୋଲିବ ଯେବେ ତୁମ୍ଭେ ବନ୍ଧୁ ସଖା ତୁଲେ
ତାକୁ ଆଜି ମୁହିଁ ମାରିବି ଜାଣ ଭଲେ ।
ତା ସୁତ ଘଟୋତ୍କଚ ବୋଲେ ମହାବଳ
କରୁଛି ପରା ତୁମ୍ଭ ସଙ୍ଗତରେ ରୋଳ ।
ତାହା ତୁଲେ ଲଢ଼ାଇ କରି ମୁଁ ବଢ଼ାଇ-
ଦେଇ ଯୁଦ୍ଧେ ଘରକୁ ଯିବି ନରସାଇଁ ।
ଏହି କଥା ସଙ୍କଳ୍ପ କରି ମୁଁ ଆସିଛି
ବୋଇଲେ ଯୁଝିବି ତୁମ୍ଭଙ୍କୁ ପଚାରୁଛି ।
କୃଷ୍ଣ ତୁଲେ ପାଣ୍ଡୁସୁତଙ୍କୁ କରି ନାଶ
ପୋଡ଼ିଦେଇ ଅଗ୍ନିରେ କରିଦେବି ଗ୍ରାସ ।
ବ୍ୟର୍ଥ ଶ୍ରମ ତୁଲେ ନ ପାଅ ବୋଲୁଛି
ନିବାର ବଳ ପାଣ୍ଡବଙ୍କୁ ମୁଁ ଯୁଝୁଛି ।
ଅଳାୟୁଧ ବଚନ ଶୁଣି ଦୁର୍ଯ୍ୟୋଧନ
ଅତିଶୟ ହୋଇଣ ସୁପ୍ରସନ୍ନ ମନ ।
ଭାଇଙ୍କର ତୁଲେ ବିଚାର ଛିଣ୍ଡାଇଲେ
ଅଳାୟୁଧ ମୁଖକୁ ଚାହିଁଣ କହିଲେ ।
ପାଣ୍ଡବଙ୍କୁ ଆମ୍ଭେ ତ କରିଛୁଁ ବଇର
ନିବର୍ତ୍ତିବୁଁ କେହି ହେ ରାକ୍ଷସଈଶ୍ୱର ।
ତୁମ୍ଭଙ୍କୁ ଆଗେଇ ଯୁଝିବୁ ପାଣ୍ଡବଙ୍କୁ
ଏହି କଥା ପାଉଛି ଆମ୍ଭର ମନକୁ ।
ଏରୂପେ ହେଉ ବୋଲି ହସି ସହିକଲା
ରାକ୍ଷସଙ୍କୁ ଘେନି ଭୀମଙ୍କଠାକୁ ଗଲା ।
ଘଟୋତ୍କଚ ପରି ତ ଆକୃତି ତାହାର
ରଥ ଘୋଡ଼ା ସାରଥି ସେରୂପେ ବିଚାର ।
ଚାପ ଧ୍ୱଜ ମଧ ସେ ରୂପରେ ହେ ରାୟେ
ବିସ୍ତାର କରି କେତେ କହିବି ଗୁଡ଼ାଏ ।
ଗଦା ଖଡ଼ଗ ଚର୍ମ ପଟ୍ଟିଶ ଶୂଳ ଶର
ଭୃଷୁଣ୍ଡୀ ତା ରଥରେ ରହିଛି ଅପାର ।
ପାଣ୍ଡବ ସେନାଙ୍କ ଉପରେ ଶରଧାଡ଼ି
ସର୍ଜନ୍ତେ ରାକ୍ଷସ ଯେ ପଳାଇଲେ ଛାଡ଼ି ।
ପାଣ୍ଡବମାନେ ତାହା ଦେଖିଣ ଆନନ୍ଦ
ନ ପାଇ କଲେ ସେ କୁରୁଙ୍କ ତୁଲେ ଦ୍ୱନ୍ଦ୍ୱ ।
ଅଳାୟୁଧ ବିକ୍ରମ ଦେଖି କୁରୁମାନେ
ମନେ କଲେ ପାଣ୍ଡବେ ଯିବେ ଯମସ୍ଥାନେ ।
ତୁମ୍ଭ ସୁତେ ଅଳାୟୁଧକୁ ପାଇ ସାହା
ଜୀଇଲୁ ବୋଲି ମନେ କଲେ ନରସାହା ।
ଘଟୋତ୍କଚ କର୍ଣ୍ଣଙ୍କ ରଣକୁ ଅନାଇଁ
ରହିଲେ ଦୁଇ ସେନାଯାକ ନରସାଇଁ ।
ଦ୍ରୋଣ ଦ୍ରୋଣୀ କୃପ ଯେ ଘଟୋତ୍କଚ ବଳ
ଦେଖି ଯୁଦ୍ଧଦାଣ୍ଡରୁ ହୋଇଣ ଆକୁଳ ।
ବୋଇଲେ ଆଜି କର୍ଣ୍ଣ ଘଟୋତ୍କଚ ଫାଶେ
ପଡ଼ିଲେ ବସିବେଟି ଯମଙ୍କର ପାଶେ ।
କର୍ଣ୍ଣଙ୍କ ଜୀବନରେ କୁରୁଏ ନିରାଶ
ହୋଇ ହୃଦମଧେ ଧଇଲେ ମହାତ୍ରାସ ।
ଦୁର୍ଯ୍ୟୋଧନ କର୍ଣ୍ଣଙ୍କ ପୀଡ଼ାକୁ ଦେଖିଣ
ଡାକି ଅଳାୟୁଧକୁ କହିଲେ ଆପଣ ।
ଦେଖ କର୍ଣ୍ଣ ଘଟୋତ୍କଚକୁ ଯୁଝୁଛନ୍ତି
ମହା ବଳୀୟାର ତ ଭୀମଙ୍କ ସନ୍ତତି ।
କର୍ଣ୍ଣ ତା ସକାଶୁଁ ହୋଇବେ ରଣେ କ୍ଷୟ
ତୁମ୍ଭେ ତାହାକୁ ମାରିନିଅ ରଣେ ଜୟ ।
ଏହା ଶୁଣି ରାକ୍ଷସ ରଥକୁ ଧୁଆଇଁ
ଘଟୋତ୍କଚ ରାକ୍ଷସ ଆଗେ ଗଲା ପାଇ ।
ଘଟୋତ୍କଚ ଅଳାୟୁଧ ଦେଖି ନେତ୍ରେ
କର୍ଣ୍ଣଙ୍କୁ ଛାଡ଼ି ଶର ବିନ୍ଧିଲା ସେ ଗାତ୍ରେ ।
ମତ୍ତହସ୍ତୀ ଯୋଡ଼ା ଯୁଝିବା ପରାୟେ
ଯୁଝିଲେ ସେ ରାକ୍ଷସେ କ୍ରୋଧେ ଜାଳି କାୟେ ।
ଯୁଝନ୍ତେ ଅଳାୟୁଧ ତୁଲେ ଘଟୋତ୍କଚ
ଭୀମଙ୍କୁ ସୂତସୁତ ବିନ୍ଧିଲେ ନାରାଚ ।
କର୍ଣ୍ଣଙ୍କୁ ଛାଡ଼ିଦେଇ ଭୀମ ମହାବଳୀ
ଘଟୋତ୍କଚ ସାହା ହେବାକୁ ଗଲେ ଚଳି ।

ଅଳାୟୁଧ ଛାଡ଼ିଣ ଘଟୋତ୍କଚ ରଣ
ଭୀମଙ୍କୁ ବୋଇଲେ ହେ ବିନ୍ଧ ମୋତେ ବାଣ ।
ଭୀମ ଅଳାୟୁଧର ଉପରକୁ ଶର
ପ୍ରହାରିଲେ ନିର୍ଭୟ ହୋଇ ନରବର ।
ଭୀମଙ୍କୁ ଅଳାୟୁଧ ନ ଛାଡ଼ିଣ ଟିପେ
ରୋପ କୋପେ ବିନ୍ଧିଲା ସନ୍ଧି ନିଜ ଚାପେ ।
ଅଳାୟୁଧ ସୈନ୍ୟ ରାକ୍ଷସେ ହୋଇ ଗୋଟି
ବୃକୋଦର ଉପରେ କଲେ ଶର ବୃଷ୍ଟି ।
ଭୀମ ରାକ୍ଷସଙ୍କୁ ନ ମାନି ଶର ଭିଡ଼ା
ରଚିଲେ ଯୁଦ୍ଧ ଦାଣ୍ଡେ ରଥେ ହୋଇ ଛିଡ଼ା ।
ଜଣଙ୍କେ ପାଞ୍ଚ ଲେଖା ବିନ୍ଧିଲେ ସେ ଶର
ଦେଖାଇଣ ହସ୍ତ-ଲାଘବ ବୃକୋଦର ।
ଭୀମ କାଣ୍ଡରେ ପୀଡ଼ା ପାଇ ଉଚ୍ଚେ ଡକା
ମାରି ପକାଇଲେ ରାକ୍ଷସକୁଳ ଏକା ।
ସୈନ୍ୟଙ୍କ ଭାଗୁଡ଼ି ନ ସହି ଅଳାୟୁଧ
ଯୁଝିଲା ଭୀମ ତୁଲେ ହୋଇ ଅତି କ୍ରୋଧ ।
ଭୀମଙ୍କର କାଣ୍ଡକୁ କାଣ୍ଡରେ କାଟିଲା
କେତେ କାଣ୍ଡମାନଙ୍କୁ ଧରି ପକାଇଲା ।
ଭୀମ ଅଳାୟୁଧ ରାକ୍ଷସ ବଳ ଜାଣି
ଧରି କରେ ଗଦା ଫିଙ୍ଗିଲେ ନରମଣି ।
ଜ୍ୱାଳାମାଳାରେ ସେହୁ ଆକାଶ-ମଣ୍ଡଳ
ମଣ୍ଡି ଗରଜିଣ ଆସନ୍ତେ ନରପାଳ ।
ଅଳାୟୁଧ ଆପଣା ଗଦାକୁ ପ୍ରସାରି
ସେ ଗଦାର ବଳକୁ ଦେଲା ନାଶକରି ।
ଭୀମ ତାଠାରୁ ଜୟ-ଶିରୀ ନେବାପାଇଁ
ହତ ହେଲେ, ଗରାସେ ବିନ୍ଧିଲେ ରୋଷାଇ ।
ରାକ୍ଷସ ଭୀମଙ୍କ କାଣ୍ଡକୁ ନ ମାନିଲା
ଭୀମଙ୍କ ଦେହେ ଶର ବିନ୍ଧି ଛାଇ ଦେଲା ।
ଅଳାୟୁଧ ଆଜ୍ଞାରେ ଅଳାୟୁଧ ଲୋକେ
ବିଦାରିଲେ ଯୁଦ୍ଧେ ପାଣ୍ଡବ ସେନାଯାକେ ।
କେକୟ ପାଞ୍ଚାଳଙ୍କ ପରାଣକୁ ନେଇ
ପିଇଲେ ରକତ ସେ ପାଟି ମେଲିଦେଇ ।
ଅଳାୟୁଧ ବଳ ଦେଖିଣ ଭଗବାନ
କହିଲେ ଅର୍ଜୁନଙ୍କୁ ହସି ଏ ବଚନ ।
ଭୀମ ଅଳାୟୁଧର ବଶ ହେଲା ପରି
ଯୁଝୁଛନ୍ତି ଦେଖ ଗାଣ୍ଡୀବ ଧନୁର୍ଦ୍ଧାରୀ ।
ଭୀମଙ୍କ ସାହା ହୋଇ ତୁମ୍ଭେ କଲେ ଯୁଦ୍ଧ
ପାରିବେ ଅଳାୟୁଧକୁ ସେ କରି ବଧ ।
ଶିଖଣ୍ଡୀ ଧୃଷ୍ଟଦ୍ୟୁମ୍ନ ଦ୍ରୌପଦୀଙ୍କ ସୁତେ
ଯୁଝନ୍ତୁ କର୍ଣ୍ଣ ସଙ୍ଗେ ବୋଲି ମହାମତେ ।
ନକୁଳ ସହଦେବ ସାତ୍ୟକି ରାକ୍ଷସ-
ବଂଶକୁ ଶରଗଣେ କରନ୍ତୁ ବିନାଶ ।
ନିବାରି ତୁମ୍ଭେ ସେନା ନ ରଖିଲେ ଆଜି
ଆଜିରେ ମରିଯିବେ ତୁମ୍ଭ ସେନାରାଜି ।
ଏରୂପେ ଶୁଣି କୃଷ୍ଣ ବାଣୀ ରଥୀକୁଳ
କର୍ହିବା ପରି କୃଷ୍ଣ କଲେ ଯାଇ ରୋଳ ।
ଏହି ସମୟରେ ଭୀମଙ୍କ ଧନୁ କାଣ୍ଡେ
ଅଳାୟୁଧ ଯେ କାଟି ପକାଇଲେ ଚାଣ୍ଡେ ।
ଭୀମଙ୍କର ଘୋଟକ ସାରଥିର ପ୍ରାଣ
ନେଲା ଅଳାୟୁଧ ବରଗି ମୁନିବାଣ ।
ସାରଥି ଘୋଟକ ମରନ୍ତେ ରଥ ଛାଡ଼ି
ଛିଡ଼ା ହେଲେ ଭୀମ କରେ ଗଦା ଧରି ।
ବୁଲାଇ ସେ ଗଦା ଫିଙ୍ଗନ୍ତେ ହୋଇ କ୍ରୋଧ
ଗଦାରେ ନିବାରିଲା ତାହା ଅଳାୟୁଧ ।
ରାକ୍ଷସର ଘୋର ବଳକୁ ଭୀମ ଦେଖି
ଧଇଲେ ପୁଣି ଗଦା ରଙ୍ଗକରି ଆଖି ।
ଭୀମ ଅଳାୟୁଧର ହେଲା ଗଦାଯୁଦ୍ଧ
ଦେଖୁଥିଲେ ଆକାଶେ ରହିଣ ବିବୁଧ ।
ପରସ୍ପରେ ଦୁହେଁ ସେ ଗଦାକୁ ପକାଇ
ମୁଷ୍ଟି ମରାମରି ହୋଇଲେ ନରସାଇଁ ।
ରଥଚକ ଅଖ ତ ପଡ଼ିଥିଲା ଭାଜି
ତା ଫିଙ୍ଗାଫିଙ୍ଗି ହେଲେ ଦୁହେଁ କ୍ରୋଧେ ମଜି ।
ଦୁହିଙ୍କର ଦେହରୁ ବହନ୍ତେ ରକତ
ଦିଶିଲେ ସେ ଗେରୁପରବତ ସମିତ ।
କୃଷ୍ଣ ତାହା ଦେଖି ଭୀମଙ୍କ ରକ୍ଷା ପାଇଁ
ଭୀମଙ୍କ ନନ୍ଦନଙ୍କୁ ପାଶକୁ ଡକାଇ ।
କହିଲେ ଅଳାୟୁଧ ତୁମ୍ଭର ବାପାଙ୍କୁ
ଯୁଦ୍ଧେ ଆସି ଦେଲାଣି ତୁମ୍ଭର ଶ୍ରାନ୍ତିକୁ ।
କର୍ଣ୍ଣ ତୁଲରେ ତୁମ୍ଭେ ନ କରିଣ ରଣ
ଆଗ ଘେନିଯାଅ ହେ ଅଳାୟୁଧ ପ୍ରାଣ ।
ତୁମ୍ଭ ବାହୁବଳେ କରିଛୁ ଆମ୍ଭେ ଆଶା
ଦେଖାଇ ତାହା ନିଅ ଯୁଦ୍ଧେ ପରଶଂସା ।
ମାରିଣ ଆଗ ଅଳାୟୁଧ ରାକ୍ଷସକୁ
ପଛେ ମାର ହେ ଆସି ଯୁଝିଣ କର୍ଣ୍ଣଙ୍କୁ ।
କୃଷ୍ଣଙ୍କର ବଚନେ ହିଡ଼ିମ୍ବାର ସୁତ
ଯୁଝିବାକୁ ମାମୁଠାକୁ ସେ ହେଲା ଗତ ।
ଅଳାୟୁଧ ଭୀମଙ୍କଠାରୁ ଯୁଦ୍ଧ ଛାଡ଼ି
ଭଣଜାକୁ ସରଜିଦେଲା ଶରଧାଡ଼ି ।
ଅଳାୟୁଧ ବଳକୁ ନକୁଳ ସାତ୍ୟକି
ସହଦେବ କାଣ୍ଡରେ କଲେ ଟିକି ଟିକି ।
ସବୁ କ୍ଷତ୍ରିୟଙ୍କୁ ଅର୍ଜୁନ ବିନ୍ଧି କାଣ୍ଡ
ଯୁଦ୍ଧଦାଣ୍ଡ ଯାକରେ ଗଡ଼ାଇଲେ ମୁଣ୍ଡ ।
କର୍ଣ୍ଣ ଧୃଷ୍ଟଦ୍ୟୁମନ ଶିଖଣ୍ଡୀ ଆଦିଙ୍କି
ଆବୋରି ଯୁଝିଲେ ମହତଧନୁ ଟେକି ।

ପାଞ୍ଚାଳର ପ୍ରାଣ ନେବାର ଦେଖି କର୍ଣ୍ଣ
ଭୀମ ତାକୁ ବିନ୍ଧିଲେ ଶର କରି ପୂର୍ଣ୍ଣ ।
ନକୁଳ ସହଦେବ ସାତ୍ୟକି ରାକ୍ଷସ-
ମାନଙ୍କୁ ନାଶିଣ ଆସିଲେ କର୍ଣ୍ଣ ପାଶ ।
କ୍ରୋଧ ହୋଇ ପରିଘ ଘଟୋତ୍କଚ ମୁଣ୍ଡେ
ପ୍ରହାର କଲା ଅଳାୟୁଧ ଅତି ଚାଣ୍ଡେ ।
ପରିଘ ଘାତ ପାଇ ଭୀମଙ୍କ ନନ୍ଦନ
କିଛି ମୋହ ଯାଇ ପାଇଲା ପୁଣି ଜ୍ଞାନ ।
କାଞ୍ଚନରେ ଭୂଷିତ ଶଏଘଣ୍ଟା ଯୁତ
ଗଦାକୁ ଘଟୋତ୍କଚ କରି କରଗତ ।
ଅଳାୟୁଧ ରଥକୁ ଉଦ୍ଦେଶି ଫିଙ୍ଗିଲା
ରଥ ଭାଙ୍ଗି ଘୋଡ଼ା ସାରଥି ପ୍ରାଣ ନେଲା ।
ରାକ୍ଷସ ମାୟା କରି ଅଳାୟୁଧ ବୀର
ରହିଣ ଆକାଶରେ ମୁଞ୍ଚିଲା ରୁଧିର ।
ରାକ୍ଷସ ମାୟାରେ ଆସନ୍ତେ ମେଘ ଘୋଟି
ମାଇଲା ଚାରିଦିଗେ ବିଜୁଳି ଚହଟି ।
ଘଡ଼ଘଡ଼ି ଶବ୍ଦ କରି ସେ ମେଘକୁଳ
ବରଷିଲେ ନରଙ୍କ ଉପରେ ଉପଳ ।
ପ୍ରଳୟଅଗ୍ନି ପରି ମଣ୍ଡି ଜ୍ୱାଳା ଅଙ୍ଗେ
ପଡ଼ିଲା ଅଦଭୁତେ ବଜ୍ର ରଣରଙ୍ଗେ ।
ଘଟୋତ୍କଚ ଅଟେ ତ ମାୟା-ବିଶାରଦ
ମାୟାରେ ସେ ମାୟାକୁ ନାଶି ହେଲା ମୋଦ ।
ମାୟା ହତ ଦେଖିଣ ଘଟୋତ୍କଚ ଶିରେ
ଅଳାୟୁଧ ପଥର ବୃଷ୍ଟି କଲା ଖରେ ।
ଘଟୋତ୍କଚ ତାହା ଯେ ସହି ନ ପାରିଲା
ପ୍ରହାର କରି ଶର ପଥର କାଟିଲା ।
ପରଶ୍ୱଧ ଭଲ୍ଲ ନାରାଚ କରବାଳ
ପରିଘ ଗଦା ଚକ୍ର ମୁଦ୍‌ଗର ମୂଷଳ ।
ତୋମର ପ୍ରାସ ଆୟୋଗୁଡ଼ ଭିନ୍ଦିପାଳ
ଗୋଶୀର୍ଷ ବତ୍ସଦନ୍ତ ଧନୁ ଉଲୁଖଳ ।
ଏମାନେ ଦୁହେଁ ଯୁଦ୍ଧରେ ମରାମରି
ହୋଇ ଯୁଦ୍ଧ କଲେ ପଥର ବୃକ୍ଷ ଧରି ।
ପର୍ବତରେ ଅଶନି ପଡ଼ିବାର ପରି
ସେ ଯୁଦ୍ଧରେ ଶବଦ ଶୁଭିଲା ସେପରି ।
ବାନରେନ୍ଦ୍ର ବାଳୀ ସୁଗ୍ରୀବ ପରି ରଣ
କଲେ ହେ ରାଜନ ଜାଣ ସେ ଦୁଇଜଣ ।
ପୁଣି ଦୁଇ ରାକ୍ଷସେ ହୋଇ ଖଣ୍ଡାପାଣି
ପଞ୍ଚାପଞ୍ଚ ହୋଇ ହୋଇଲେ ହଣାହଣି ।
ଘଟୋତ୍କଚ ଅଳାୟୁଧ ଏ ଦୁହେଁ ଯୁଦ୍ଧେ
ମିଶା ମିଶି ହୋଇ ଯାଆନ୍ତେ ଅତି କ୍ରୋଧେ ।
ବାଳ ଧରାଧରି ହୋଇଣ କଲେ ରଣ
ମୁରୁଛି ଦେଲେ ଦୁହେଁ ଦୁହିଁଙ୍କର ପ୍ରାଣ ।
ଝାଳ ରକତକୁ ଅଙ୍ଗରେ ହୋଇ ମଣ୍ଡି
ତିନ୍ତାଇଦେଲେ ଦୁହେଁ ଯୁଦ୍ଧଭୂମି ଖଣ୍ଡି ।
ଅଳାୟୁଧ ବଳକୁ କଳି ଭୀମସୁତ
ଅଣ୍ଟାରୁ ଖଣ୍ଡା କାଢ଼ି କଲା କରଗତ ।
ଅଳାୟୁଧ ବେକରେ ପ୍ରହାରନ୍ତେ ନେଇ
ଝଡ଼ିଲା ସେ ରାକ୍ଷସ ତଳେ ଦଣ୍ଡା ହୋଇ ।
ଅଳାୟୁଧ ମୁଣ୍ଡ ଛିଣ୍ଡନ୍ତେ ଖଣ୍ଡାଘାତେ
କାଢ଼ି ଜିଭ ହାତେ ପଡ଼ିଲା ଯୁଦ୍ଧପଥେ ।
ମାରି ଅଳାୟୁଧକୁ ଘଟୋତ୍କଚ ବୀର
ଗରଜନେ ପୂରାଇ ଦେଲା ମଞ୍ଚପୁର ।
ମରନ୍ତେ ବକଭାଇ ଅଳାୟୁଧ ଶଣେ
ପାଣ୍ଡବେ ସିଂହନାଦ କଲେ ଅତି ଟାଣେ ।
ଅୟୁତସଂଖ୍ୟା ଭେରି ଲକ୍ଷ ଲକ୍ଷ ଶଙ୍ଖ
ବଜାଇଲେ ପାଣ୍ଡୁ ଯୋଦ୍ଧାଏ ଦେଇ ମୁଖ ।
ପାଣ୍ଡବଙ୍କ ବିଜୟକରତା ସେ ରାତି
ହେଲା ବୋଲି ଜାଣ ହେ କୁରୁନରପତି ।
ଅଳାୟୁଧର ଶିରବାଳ ଧରି କରେ
ଘଟୋତ୍କଚ ରାକ୍ଷସ ଅତି ନିଃଶଙ୍କରେ ।
ତୁମ୍ଭର ସୁତ ଦୁର୍ଯ୍ୟୋଧନଙ୍କ ଆଗକୁ
ଫିଙ୍ଗି ଦେଇଣ କଲା ମହତ ହାସକୁ ।
ଅଳାୟୁଧ ମରଣ ଦେଖି ଦୁର୍ଯ୍ୟୋଧନ
ନୟନ-ନଳିନରୁ ତେଜି ଅଶ୍ରୁବନ ।
ମନେ କଲେ ଆମ୍ଭ ରକ୍ଷକ ହୋଇ କେହି
ଏଣିକି ହେଲା ପରି ଆଉ ଦିଶୁନାହିଁ ।
ସ୍ମର ସେ ଭୀମଙ୍କ ବଇର ଦୁର୍ଯ୍ୟୋଧନ
ମାରିବି ତାଙ୍କୁ ବୋଲି ବୋଇଲେ ରାଜନ ।
ପୁଣି ଘଟୋତ୍କଚ କରନ୍ତେ ଘୋର ରଡ଼ି
ମଣିଲେ ଲୋକେ ଗିରି ପଡ଼ିଲା କି ମାଡ଼ି ।
କର୍ଣ୍ଣ ଧୃଷ୍ଟଦ୍ୟୁମ୍ନନ ଶିଖଣ୍ଡୀଙ୍କି ରଣ
କଲେ ଆଗେ ପ୍ରହାରି କୋଡ଼ିଏଟି ବାଣ ।
ଏ ବାହାରେ ଉତ୍ତମଓଜା ଯୁଧାମନ୍ୟୁ
ସାତ୍ୟକିଙ୍କି ବିନ୍ଧିଲେ ତୁମ୍ଭ ସୂତସୁନୁ ।
ପାଣ୍ଡବ ରଥୀମାନେ ନ ଛାଡ଼ିଣ ଟିପେ
ବିନ୍ଧିଲେ ଚାରିପଟେ ରହି ଶର କୋପେ ।
ସେ ରଥୀମାନଙ୍କର ଘଡ଼ଘଡ଼ି ପ୍ରାୟେ
ଶୁଭିଲା ଘୋରରଡ଼ି ଶୁଣିଲୁଁଟି ରାୟେ ।
ଗରି ପରି ଆଣ୍ଟ ହୃଦ ତ କର୍ଣ୍ଣଙ୍କର
ଯୁଦ୍ଧରେ ଭୟ କିପାଁ ହୋଇବ ତାଙ୍କର ।
ନିର୍ଭୟ ହୋଇ ପାଣ୍ଡସେନା ମଧ୍ୟେ ପଶି
ମାଇଲେ ପାଣ୍ଡୁବଳ ଶରଜାଳ ପେଷି ।
ତୁମ୍ଭ ପୁଅ ହିତରେ ରତ ହୋଇ କର୍ଣ୍ଣ
ବିନ୍ଧିଲେ ଶର କର୍ଣ୍ଣଯାଏ କରି ପୂର୍ଣ୍ଣ ।

କର୍ଣ୍ଣଙ୍କର ଶରରେ ଗୋଡ଼ ହାତ ମୁଣ୍ଡ
ଛିଣ୍ଡାଇ ଯୋଦ୍ଧାଏ ପଡ଼ିଲେ ରଣଦାଣ୍ଡେ ।
ଯୁଧିଷ୍ଠିର-ସଇନ-ଦୁଃଖ ନେତ୍ରେ ଦେଖି
ଘଟୋତ୍କଚ ରାକ୍ଷସ ହୋଇ ମହା ଦୁଃଖୀ ।
ସୁବର୍ଣ୍ଣରେ ଚିତ୍ରିତ ରଥରେ ବସିଲା
ଗର୍ଜନ କରି କର୍ଣ୍ଣ ମଲ୍ଲରେ ବୋଇଲା ।
ବଜ୍ର ପରି ନିଷ୍ଠୁର ମାରଗଣଗଣ
ବିନ୍ଧିଲା ହେବା ପାଇଁ କର୍ଣ୍ଣଙ୍କ ମରଣ ।
କର୍ଣ୍ଣ ବସ୍ତଦନ୍ତ ନାରାଚ କୁନ୍ତାସନ
ବିପାଠ ଉତ୍ତମ କ୍ଷୁର ପ୍ରକାଣ୍ଡମାନ ।
ପରସ୍ପରେ ଦୁହେଁ ହୁଅନ୍ତେ ବିନ୍ଧାବିନ୍ଧି
ଦେଲେ ଯେ ଯୁଦ୍ଧଦାଣ୍ଡେ-ଆକାଶକୁ ରୁନ୍ଧି ।
ଘଟୋତ୍କଚ କର୍ଣ୍ଣଙ୍କ ଊଣାଧିକ ଜଣା
ନୋହିଲା ହେଲାଟି ସବୁରି ବୁଦ୍ଧିର୍ବଣା ।
ଯୁଦ୍ଧଭୂମି-ଆକାଶେ ସୂର୍ଯ୍ୟ ରାହୁ ପ୍ରାୟେ
ସେ ଦୁହେଁ ଯୁଦ୍ଧକଲେ କ୍ରୋଧେ ଅତିଶୟେ ।
ଘଟୋତ୍କଚ ରାକ୍ଷସ ତୁଲେ ସମ ଯୁଦ୍ଧ
କଲେ କର୍ଣ୍ଣ ତାକୁ କରିବେ କେହିଁ ବଧ ।
ଏହା ଜାଣି ପାରି ତୁମ୍ଭର ସୂତସୂନୁ
ଦିବ୍ୟଅସ୍ତ୍ର କଲେ ଫୁଲାଇ ଦେଇ ତନୁ ।
କର୍ଣ୍ଣଙ୍କ ଦିବ୍ୟଶର ଘଟୋତ୍କଚ ରଥ
ଭାଙ୍ଗିଦେଲା ସାରଥି ପ୍ରାଣ ଯମହାତ ।
ଏ ବାହାରେ ଯେ ଚାରିଘୋଡ଼ାଙ୍କୁ ମାଇଲା
କର୍ଣ୍ଣଙ୍କ ବିକ୍ରମକୁ ପରାକାଶ କଲା ।
ବିରଥ ହୋଇ ଘଟୋତ୍କଚ ମାୟା କରି
ଅନ୍ତରହିତ ହୋଇ ଗଲା ଦଣ୍ଡଧାରୀ ।
ଧୃତରାଷ୍ଟ୍ର ବୋଇଲେ ଛଳେ ଘଟୋତ୍କଚ
ଯାଆନ୍ତେ ଛାଡ଼ିକରି ଯୁଦ୍ଧଭୂମି-ମଞ୍ଚ ।
ମୋହର ଲୋକମାନେ କି କଲେ ସଞ୍ଜୟ
ଫିଟାଇଣ ହୃଦୟ ତାହା କହି ଦିଅ ।
ସଞ୍ଜୟ ବୋଇଲେ ପୁଛିଲ ଯା ରାଜନ
କହୁଥାଇଁ ହେ ତାହା ଶୁଣ ଦେଇ ମନ ।
ଅନ୍ତର୍ଦ୍ଧାନ ହୋଇଣ ଯାଆନ୍ତେ ରାକ୍ଷସ
କୁରୁଙ୍କ ହୃଦେ ଜାତ ହେଲା ମହାତ୍ରାସ ।
ବୋଲାବୋଲି ହୋଇଲେ ଭୀମଙ୍କର ସୁତ
କରିବି ଆଜି ନିଶ୍ଚେ କର୍ଣ୍ଣକୁଟି ହତ ।
ତୁମ୍ଭ ସେନାଙ୍କର ଏ ବଚନକୁ ଶୁଣି
କର୍ଣ୍ଣଯାଏ କର୍ଣ୍ଣ ଧନୁକୁ ଆଣି ଟାଣି ।
ଶରେ ପୂର୍ଣ୍ଣକରି ଦିଅନ୍ତେ ଦଶଦିଶ
ଦେଖି ନ ପାରିଲା ନକ୍ଷତ୍ର କାହିଁ ଦୃଶ ।
କର୍ଣ୍ଣଙ୍କର ଆଦାନ ସନ୍ଧାନ କାହାକୁ
ଗୋଚର ନୋହିଲା କି କହିବି ତୁମ୍ଭଙ୍କୁ ।

ଏହି ସମୟରେ ଘଟୋତ୍କଚ ବୀର
ଅଦୃଶ୍ୟ ହୋଇ ଶୂନ୍ୟେ କରିଣ ସଞ୍ଚାର ।
ମାୟାରେ ଆକାଶେ କରନ୍ତେ ରଙ୍ଗ ମେଘ
ନିନ୍ଦିଲା ସେ ଜ୍ୱଳନ୍ତା ଅଗ୍ନିଶିଖା ସଙ୍ଘ ।
ବିଜୁଳି ଚାରିଆଡ଼େ ଯାଆନ୍ତେ ଚହଟି
ପଡ଼ିଲା ଆକାଶୁ ଚଡ଼କ କୋଟି କୋଟି ।
ଶକ୍ତି ରୁଷ୍ଟି ମୂଷଳ ପରିଘ ଗଦା ପ୍ରାସ
ପରଶ୍ୱଧ ଖଡ଼ଗ ତ୍ରିଶୂଳ ପଟ୍ଟୀଶ ।
ଶତଘ୍ନୀ ବଜ୍ର ଶୂଳ ତୋମର ଚକ୍ର ଶିଳା
ପଡ଼ିଲା ଆକାଶରୁ ହୋଇ ଭେଳା ଭେଳା ।
ବେଳକୁଁବେଳ ଅତି ପ୍ରବଳେ ରାଜନ
ପଡ଼ନ୍ତେ କର୍ଣ୍ଣ ମନ କରିଦେଲେ ଛନ୍ନ ।
ବିନ୍ଧିଲେ ହେଲେ କାଣ୍ଡ ନ ପାରିଲେ କାଟି
ଅସଂଖ୍ୟ ତ ହେଲା ରାକ୍ଷସ ଶରବୃଷ୍ଟି ।
ପଥର ଶୂଳ ଗଦା ଶକତି ତୋମର
ବାଜନ୍ତେ ତୁମ୍ଭ ସେନା ମଲେ ହେ ଅପାର
ରଥୀ ହାତୀ ଘୋଡ଼ା ପଦାତି ଏତେ ତେତେ
ମଲେ ବୋଲି କହି ମୁଁ ନ ପାରେ କିଞ୍ଚିତେ ।
ନିଜ ବଳ ହତ ଦେଖିଣ ଦୁର୍ଯ୍ୟୋଧନ
କି ଯୁଝିବା ଭାବି ଶୁଖାଇଦେଲେ ମନ ।
ସେନାଯାକ ତୁମ୍ଭର କରି ହାହା ରଡ଼ି
ପଳାଇଲେ ରାଜନ ଯୁଦ୍ଧଭୂମି ଛାଡ଼ି ।
କେତେ ରଥୀ ଯୋଦ୍ଧାଏ କାନ୍ଦି ସକ ସକ
ଗଲା ବା ଛିଡ଼ି ବୋଲି ଆଉଁଷିଲେ ବେକ ।
କେତେ ଯୋଦ୍ଧା ମରିବା ପଛେ ମନେ କଲେ
ସ୍ୱଚ୍ଛନ୍ଦ ହୋଇଣ ରହି ଯୁଦ୍ଧ କଲେ ।
ରାକ୍ଷସମାନଙ୍କର ଦେଖି ଶରବୃଷ୍ଟି
ଭୟରେ ତୁମ୍ଭ ସୁତେ ବୁଜିଦେଲେ ଦୃଷ୍ଟି ।
ସେ କାଳେ ବିଲୁଆ-ସଇନ କରି ରଡ଼ି
ଖାଇବାକୁ ମାଉଁସ ଆସିଲେ ଦଉଡ଼ି ।
ଭୂତ ପ୍ରେତ ପିଶାଚଗଣ ହୋଇ ଗୋଟି
ତୁମ୍ଭ ସେନା-ରକ୍ତ ପିଇଲେ ମେଲି ପାଟି ।
ପର୍ବତ ପରି ରହି ରାକ୍ଷସ ଆକାଶେ
ଶକ୍ତି ଶୂଳ ବରଷା କଲେ ଦଶଦିଶେ ।
ନାନାଜାତି ଆୟୁଧମାନଙ୍କୁ ପ୍ରହାରି
ତୁମ୍ଭ ସେନାଙ୍କର ପ୍ରାଣକୁ ନେଲେ ହରି ।
ପଥର ପଡ଼ିବାରେ ଚୂରିହୋଇ ରଥ
ଯାନ୍ତେ ରଥୀ ମରି ଭୂମିକି କଲା ସାଥ ।
ହାତୀମାନେ ଯେ କରମାନଙ୍କୁ ଛିଣ୍ଡାଇ
ପଡ଼ିଲେ ଚାରିଗୋଡ଼ ଟେକି ଶୋଇ ଶୋଇ ।
ଘୋଡ଼ାମାନଙ୍କର ଯାଆନ୍ତେ ଛିଡ଼ି ମୁଣ୍ଡ
ତଳେ ପଡ଼ିଣ ନଚାଇଲେ ଗଣ୍ଡି ଖଣ୍ଡ ।

ପଳାଇଲେ ଶରଣ ପଶିଲେ ଯେତେକ
ରାକ୍ଷସେ କାଟିଲେଟି ତାହାଙ୍କର ବେକ ।
ନିର୍ଦ୍ଦୟ ହୋଇ ଯହୁଁ ମାଇଲେ ରାକ୍ଷସେ
କୁରୁଏ ଏ ବଚନ ଉଚ୍ଚାରିଲେ ତ୍ରାସେ ।
କିସ ଯୁଦ୍ଧ କରୁଛ ପଳାଅ ଘରକୁ ।
ପାଉ ତ ନାହିଁ ବଳ ଯୁଦ୍ଧ କରିବାକୁ ।
ପାଣ୍ଡବଙ୍କ ଜୟ ବିଚାରି ଶଚୀପତି
ଆସି ନିଶ୍ଚେ ଆମ୍ଭର ପ୍ରାଣ ଘେନୁଛନ୍ତି ।
କର୍ଣ୍ଣର ବିନା ଯୁଦ୍ଧଭୂମିରେ ଯୋଦ୍ଧାଙ୍କୁ
ଖୋଜିଲେ ଗୋଚର ନୋହିଲା ନୟନକୁ ।
ଯୁଦ୍ଧଭୂମି ଚାରିଦିଗଟି ଶୂନ୍ୟ ହେଲା
ବେଳକୁବେଳ ଘଟୋତ୍କଚ ପ୍ରବଳିଲା ।
ଏକା କର୍ଣ୍ଣ ତୁମ୍ଭର ରହି ଧନୁ ଟାଣି
କରୁଥିଲେ ବଳକୁ ଚାହିଁଣ ଆରଣି ।
ଦିବ୍ୟଅସ୍ତ୍ର ବଳରେ ସୂତଙ୍କ ନନ୍ଦନ
ଯୁଝିଲେ ରାକ୍ଷସଙ୍କୁ ନୋହିଣ ବିମନ ।
କର୍ଣ୍ଣଙ୍କର ଯୁଦ୍ଧରେ ନୋହିବାରୁ ଭୟ
ପ୍ରଶଂସିଲେ ତାହାଙ୍କୁ ତୁମ୍ଭ ନୃପଚୟ ।
ଘଟୋତ୍କଚ ଏହି ସମୟରେ ଚକ୍ରକୁଳ
ଶତଘ୍ନି ଶୂଳାଦି ମାଇଲା ଅସ୍ତ୍ରଜାଳ ।
ସେ ଘାତେ କର୍ଣ୍ଣଙ୍କର ରଥ ଚାରିଘୋଡ଼ା
ଯମଙ୍କର ପୁରେ ପ୍ରାଣକୁ କଲେ ଛିଡ଼ା ।
ଜିଭମାନ କାଢ଼ି ଦେଇଣ ତଳେ ପଡ଼ି
ଯୁଦ୍ଧଭୂମି ଧୂଳିରେ ବେଢ଼ାଏ ଗଲେ ଗଡ଼ି ।
ମରନ୍ତେ ଚାରିଘୋଡ଼ା ରଥରୁ ଓହ୍ଲାଇ
ଧନୁ ଧରି ତଳେ ରହିଲେ ଅଙ୍ଗସାଇଁ ।
ମନେ କଲେ ବଡ଼ ଯୁଝିଲା ତ ରାକ୍ଷସ
କି କରିବା, କିରୂପେ ହେବ ପ୍ରାଣ ନାଶ ।
ଏହିକାଳେ କୁରୁଏ ଡାକିଲେ କର୍ଣ୍ଣଙ୍କୁ
ଶକତି ମାର ଘଟୋତ୍କଚର ଉରକୁ ।
ନୋହିଲେ କୁରୁମାନେ ବରତିବେ ନାହିଁ
କିସି ଆଉ ଗୁଡ଼ାଏ ବିଚାରୁଛ ରହି ।
ଘଟୋତ୍କଚ ମୁଖୁଁ ଜୀଇଁଲେ ଆମ୍ଭେମାନେ
ପାଣ୍ଡବଙ୍କୁ ଯାଇ ମାରିବୁଁ ଆୟୋଧନେ ।
ଭୀମ ଅରଜୁନ ସକାଶୁଁ ଏହି ଭୟ
ହୋଇନାହିଁ ଏବେ ହେଉଛି ଯେଉଁ ଭୟ ।
ତୁମ୍ଭେ ଶକତିରେ ମାର ଏ ରାକ୍ଷସକୁ
ଅଛୁଁ ତ ଆମ୍ଭେ ପାଣ୍ଡବଙ୍କୁ ଯୁଝିବାକୁ ।
କୁରୁମାନେ ନ ମରୁଁ ମଲେ ଏ ରାକ୍ଷସ
ପାଇବେ ପାଣ୍ଡୁସୁତମାନେ ମହାତ୍ରାସ ।
କୁରୁମାନଙ୍କର ଏ ବଚନକୁ ଶୁଣି
ଦେଲେ କର୍ଣ୍ଣ ପ୍ରସନ୍ନେ ଦେହଶିର ଟାଣି ।

ଆପଣାର ବିରଥ କୁରୁଙ୍କ ଅନାଥ-
ଦଶା ଦେଖି ନୟନେ କର୍ଣ୍ଣ ମହାରଥ ।
ଯୁଦ୍ଧରେ ପୁରୁଷାର୍ଥ ଅରଜିବା ପାଇଁ
ଶକ୍ତିହାତ ହେଲେ ହସ୍ତିନା-ନରସାଇଁ ।
ପାତ୍ରକୁ ମାରିବା ପାଇଁ ଯେ ଶକ୍ତିବର
ରଖିଥିଲେ ପୂଜାକରିଟି କର୍ଣ୍ଣବୀର ।
କୁଣ୍ଡଳ ନେଇ ଇନ୍ଦ୍ର ସେ ଶକ୍ତି କର୍ଣ୍ଣଙ୍କୁ
ଦେଇଥିଲେ ଏକ ବୀରର ନିଧନକୁ ।
କର୍ଣ୍ଣ ନିଜ ମରଣକାଳ ହେବା ଜାଣି
ଫିଙ୍ଗିଲେ ଅନାୟତ୍ତେ ଶକ୍ତି-ଶିରୋମଣି ।
ଉଲକା ପରି ଶକ୍ତି ଚଳି ରଣଦାଣ୍ଡେ
ଧାଇଁଲା ପଡ଼ିବାକୁ ଘଟୋତ୍କଚ ପିଣ୍ଡେ ।
ଶକତି ଆସିବାର ଦେଖିଣ ରାକ୍ଷସ
ଦେହକୁ କଲା ବିନ୍ଧ୍ୟପର୍ବତ ସଦୃଶ ।
କିରୂପେ ଜୀଇବି ବୋଲି ମନେ କଲା
ଭୟ ଝାଳେ ଦେହକୁ ତିନ୍ତାଇଣ ଦେଲା ।
ସେ ସମୟେ ସଭାଆଡ଼ରେ ବଜ୍ରପାତ
ହେଲା ଉଷ୍ମ ଥାଇ ବହିଲା ମଧ୍ୟ ବାତ ।
ଘଟୋତ୍କଚ ମାୟା ଜାଲକୁ କରି ନାଶ
ନିକିଳିଲା ଶକତି ତାର ହୃଦଦେଶ ।
ଦେଖୁଁ ଦେଖୁଁ ନକ୍ଷତ୍ର ମଣ୍ଡଳରେ ପଶି
ଉପରକୁ ଯାଇ ହୋଇଲା ଶୂନ୍ୟବାସୀ ।
ଶକତିଘାତେ ଘଟୋତ୍କଚ କରି ରଡ଼ି
କଚାଡ଼ି ଭୂମିରେ ପଡ଼ିଲା ପ୍ରାଣ ଛାଡ଼ି ।
ଘଟୋତ୍କଚର ଦେହ ବାଜି ତୁମ୍ଭ ସୈନ୍ୟ
ସହସ୍ର ଶତସଂଖ୍ୟା ମଲେ ହେ ରାଜନ ।
ଘଟୋତ୍କଚ ମରଣ କୁରୁଏ ଅନାଇଁ
ବଜାଇଲେ ଶଙ୍ଖ ଦୁନ୍ଦୁଭି ହୃଷ୍ଟ ହୋଇ ।
ବୃତ୍ର ବଧେ ଇନ୍ଦ୍ରଙ୍କୁ ପୂଜିବା ପରାଏ
କୁରୁ ପୂଜାକଲେ କର୍ଣ୍ଣଙ୍କୁ ହେ ରାୟେ ।
ଏଅନ୍ତେ କର୍ଣ୍ଣ ଦୁର୍ଯ୍ୟୋଧନ ରଥେ ବସି
ମଲା ଘଟୋତ୍କଚ କହିଲେ ହସି ହସି ।
ଦୁର୍ଯ୍ୟୋଧନ ତାଙ୍କୁ ବହୁତ ପ୍ରଶଂସିଲେ
ଆନ ହାତେ ଏ କଥା ନୁହନ୍ତା ବୋଇଲେ ।
ଘଟୋତ୍କଚ ହତ ଦେଖିଣ ପାଣ୍ଡୁସେନା
ପଡ଼ିଲେ ଉଚ୍ଚେ ଡକା ହୋଇଣ ବିମନା ।
ହରଷ ଜଳେ କୃଷ୍ଣ ହୋଇଣ ନିମଗ୍ନ
କଲେ ସ୍ନେହେ ଅରଜୁନଙ୍କୁ ଆଲିଙ୍ଗନ ।
ପୁଣି ଅରଜୁନଙ୍କୁ ଧରିଣ ଗୋବିନ୍ଦ
ନୃତ୍ୟ କରିଲେ ବଳି ପଡ଼ନ୍ତେ ଆନନ୍ଦ ।
ନୃତ୍ୟ ଛାଡ଼ି ଦେଇଣ ରଥ ମଧ୍ୟେ ବସି
ହରଷେ କୃଷ୍ଣ ଗରଜିଲେ ହସି ହସି ।

ଶ୍ରୀକୃଷ୍ଣଙ୍କର ହୃଷ୍ଟ ଆପଣା ଅନିଷ୍ଟ
ମନେ କରି ଖୋଜନ୍ତେ ନ ଦେଖିଣ ପୁଷ୍ଟ ।
ବୋଇଲେ କୃଷ୍ଣ ମଲା ଘଟୋତ୍କଚ ସୁତ
ତୁମ୍ଭେ କିମ୍ପା କରୁଅଛ ହର୍ଷଚିତ୍ତ ।
ପାଣ୍ଡବ ସେନାଏ ଅଛନ୍ତି ମଲାପରି
ଘଟୋତ୍କଚ ମଲାବେଳୁଁ ହେ ଚକ୍ରଧାରୀ ।
ମୋର ମଧ୍ୟ ହୃଦେ ହେଉଛି ଜାତ ଭୟ
ତୁମ୍ଭର ତ ହେଉଛି ହରଷ ଉଦୟ ।
ବିଶେଷ କାରଣ ଏ କଥାରେ ରହିଛି
ଫିଟାଇ କହ ନାରାୟଣ ମୁଁ ପୁଚ୍ଛୁଛି ।
ଯେବେ ଶୁଣିବାକୁ ଏ କଥା ଯୋଗ୍ୟ ମୁହିଁ
ପଚାରୁଛି ତେବେ ଫିଟାଇ ଦିଅ କହି ।
ମେରୁକୁ ଟାଳିଦେବା ସମୁଦ୍ର ଶୁଖିବା
କଥାକୁ ତୁମ୍ଭ କଥା ପଟାନ୍ତର ଦେବା ।
ଆଜଯାଏ ସ୍ୱପନେ ଏପରି ତୁମ୍ଭର
ଆଚରଣ ମୋତେଟି ନୋହିଛି ଗୋଚର ।
କୃଷ୍ଣ ବୋଇଲେ ହେ ଯହିଁକି ମୁହିଁ ହୃଷ୍ଟ
ହେଉଛି ତା କହିବା ସେ ତୁମ୍ଭର ପୁଷ୍ଟ ।
କର୍ଣ୍ଣ ଏକଗନୀ ଶକତିର ବଳରେ
ବୋଲୁଥାଏ ମାରିବି ତୁମ୍ଭଙ୍କୁ ରୋଳରେ ।
ସେହି ଶକତି ଆଜି ଘଟୋତ୍କଚ ଉରେ
ପଡ଼ିଲା ନ ପଡ଼ିଲ ତୁମ୍ଭେ ସେ ଭୟରେ ।
ଶକତି ଥିବାଯାକ କର୍ଣ୍ଣଙ୍କର କରେ
ଜିଣିବାକୁ ଲୋକ ନାହିଁଟି ଏ ମହୀରେ ।
ଏବେ କର୍ଣ୍ଣ ତୁମ୍ଭ ସଙ୍ଗତେ ଯୁଦ୍ଧକଲେ
ମାରିବି ତାଙ୍କୁ ସୁଖେ ଜାଣୁଛୁଁଟି ଭଲେ ।
ଶକତି ତାର ହାତେ ଦେଖି ମୁଁ ଅର୍ଜ୍ଜୁନ
ମଣୁଥାଏ ତୁମ୍ଭେ ହେ ହୋଇବ ନିଧନ ।
ଏବେ ସେ ଶକ୍ତି ତ ତା ହାତୁଁ ଗଲା ଫିଟି
ପକାଅ ସୁଖେ ଅର୍ଜ୍ଜୁନ ତା ମୁଣ୍ଡକାଟି ।
ପୂର୍ବରେ କର୍ଣ୍ଣଠାରୁ କବଚ କୁଣ୍ଡଳ
ମାଗିନେଇଥିଲେ ଆସିଣ ଆଖଣ୍ଡଳ ।
ସେ କବଚ କୁଣ୍ଡଳ ଶକ୍ତି କର୍ଣ୍ଣଠାରେ
ଥିଲେ ଜୟ ହୁଅନ୍ତା ତାର ସବୁଠାରେ ।
କୁଣ୍ଡଳ ସାଙ୍ଗୁ ଶକ୍ତି ହୀନ ହୋଇ କର୍ଣ୍ଣ
ରହିଛି ତୁମ୍ଭ ବିନା ମାରିବ କେ ଆନ ।
ଇନ୍ଦ୍ର ରୁଦ୍ର ଅନଳ ବରୁଣ କୁବେର
ହାରନ୍ତେ ଥିଲେ ଶକ୍ତି କର୍ଣ୍ଣେ ମନେ କର ।
ଆପଣ ଗାଣ୍ଡୀବକୁ ଉଭାରି କର୍ଣ୍ଣଙ୍କୁ
ଯୁଝିଲେ ଜିଣନ୍ତି ନ ଆସେ ମୋ ମନକୁ ।
ଚକ୍ର ଧରି କର୍ଣ୍ଣଙ୍କୁ ନ ପାରେ ବଢ଼ାଇ
ଆନ ରଥୀଗଣେ ଗଣିବା କାହିଁପାଇଁ ।

ତୁମ୍ଭ ହିତ ବିଚାରି କୁଣ୍ଡଳ କବଚ
ନିଆଇଲି ଇନ୍ଦ୍ରଙ୍କ ହାତେ କରି ପାଞ୍ଚ ।
କୁଣ୍ଡଳ କବଚକୁ ଅଙ୍ଗୁ କାଟି କର୍ଣ୍ଣ
ଦେବାରୁ ତାଙ୍କ ନାମ ହେଲା ବୈକର୍ତ୍ତନ ।
ଲିଭିଗଲା ପରାୟେ ଆଜି କର୍ଣ୍ଣ ତେଜ
ଦିଶୁଅଛି ମୋତେ ହେ ଦେଖ ବୀରରାଜ ।
ଇନ୍ଦ୍ରଙ୍କଠାରୁ ପାଇ ଏକଘ୍ନୀ ଶକତି
ମାରିବାକୁ ତୁମ୍ଭଙ୍କୁ କରିଥାଏ ମତି ।
ଶକତି ଗଲେ ହେଲେ କର୍ଣ୍ଣଙ୍କୁ ଅର୍ଜ୍ଜୁନ
ତୁମ୍ଭ ବିନା କେ କରି ନପାରେ ନିଧନ ।
ବ୍ରହ୍ମଣ୍ୟ ସତ୍ୟବାଦୀ ତପୀ ଯତିବ୍ରତ
ଶତ୍ରୁଙ୍କଠାରେ ଦୟା କରନ୍ତି ନିରତ ।
ଏହିଁ ସକାଶୁ କର୍ଣ୍ଣ ବୋଲାଅନ୍ତି ବୃଷ
ତାଙ୍କ ପରି ନାହିଁକେ ମହୀରେ ପୁରୁଷ ।
କର୍ଣ୍ଣର ହାତେ ଯେତେବେଳେ ଥାଏ ଧନୁ
ତେଜରେ ସେହୁ ନିନ୍ଦା କରୁଥାନ୍ତି ଭାନୁ ।
ଦେବରେ ଅଜେୟ ଅଟନ୍ତି ରାଧାସୁତ
ମନୁଷ୍ୟେ ଜୟ କେହିଁ ହେବ ସେ କହ ତ ।
କୁଣ୍ଡଳ କବଚ ଯେ ଶକତିରେ ହୀନ
ହେବାରୁ ନର ପରି ହେଲେ ଆଜି କର୍ଣ୍ଣ ।
କର୍ଣ୍ଣଙ୍କୁ ମାରିବାକୁ ଉପାୟ ଯା ଅଛି
ତାହା ଶୁଣ ଆହେ ଅର୍ଜ୍ଜୁନ ମୁଁ କହୁଛି ।
ଯେ କାଳେ କର୍ଣ୍ଣର ଲାଗିବ ରଥ ଚକ
ସେକାଳେ କହିବି କାଟିବ ତୁମ୍ଭେ ବେକ ।
କର୍ଣ୍ଣର ହାତେ ଶସ୍ତ୍ର ଥିଲେ ବ୍ରଜ ଧରି
ଯୁଦ୍ଧ କଲେ ଇନ୍ଦ୍ର ଦେବତା ଯିବେ ହାରି ।
ଜରାସନ୍ଧ ଶିଶୁପାଳ ଯେ ଏକଲବ୍ୟ
ଏମାନେ ଶସ୍ତ୍ର ଅସ୍ତ୍ରଙ୍କରେ ମହାଭବ ।
ଦେଖିଅଛ ତ ତୁମ୍ଭେ କପଟେ ଏହାଙ୍କୁ
ବରଗିଲି ମୁହିଁ ଯମଙ୍କ ନଗରକୁ ।
କିର୍ମୀର ଅଜାୟୁଧ ହିଡ଼ିମ୍ବ ବକକୁ
ମରାଇଛି ଭୀମଙ୍କ ହାତରେ ଏହାଙ୍କୁ ।
ଏବେ ଘଟୋତ୍କଚ କର୍ଣ୍ଣଙ୍କ ହାତରେ
ମରାଇଲି, ଦେଖିଲ ଆପଣ ନେତ୍ରରେ ।
ଅରଜୁନ ବୋଇଲେ ଆମ୍ଭ ହତ ପାଇଁ
କି ଉପାୟ କରିଛ ଯଦୁକୁଳସାଇଁ ।
ଜରାସନ୍ଧାଦିଙ୍କୁ ଯେରୂପେ କଲ ହତ
ଏହା ମୋତେ ବ୍ୟକତ କରିଣ କହ ତ ।
କୃଷ୍ଣ ବୋଇଲେ ହେ ପୁଚ୍ଛିଲ ଯା ଅର୍ଜ୍ଜୁନ
କହିବା ଆମ୍ଭେ ତାହା ଶୁଣ ଦେଇ ମନ ।
ଜରାସନ୍ଧ ଏକଲବ୍ୟ ଯେ ଶିଶୁପାଳ
ଥିଲେ, ଏବେ କରନ୍ତେ ସେ ଭୀଷଣ ରୋଳ ।

ଆମ୍ଭର ତ ଶତ୍ରୁ ଅଟନ୍ତି ସବୁକାଳେ
ରହନ୍ତେ ସେ ଅବଶ୍ୟ ସୁଯୋଧନ ବଳେ ।
ଇନ୍ଦ୍ର ପରି ବଳ ଦେଖାଇ କୁରୁସେନା
ପାଳନ୍ତେ ସେ ଥିଲେ ହେ ଜାଣ ମହାମନା ।
ସୁଯୋଧନର ସାହା ପାଇଲେ ସେମାନେ
ରଚନ୍ତେ ଆମ୍ଭ ପୀଡ଼ା ଜାଣ ଯୁଦ୍ଧସ୍ଥାନେ ।
ଯେଉଁ ଉପାୟରେ ସେମାନେ ହେଲେ ହତ
ତା କହିବା ଶୁଣ ଅର୍ଜ୍ଜୁନ ଦେଇ ଚିତ୍ତ ।
ଉପାୟ ବିନା ବଳେ ତାଙ୍କୁ ମାରିବାକୁ
ଏ ମହୀରେ ବୀର ମୁଁ ନ ଦେଖେଁ କାହାକୁ ।
ଜଣଜଣକରେ ସେ ସୁରସେନା ଯାକୁ
ପାରନ୍ତେ ମାରି ମୋର ପାଉଛି ମନକୁ ।
ଆମ୍ଭର ଦୁଇ ଭାଇଙ୍କର ବଧେ ମନ-
ଦେଇ କରି ମଗଧଦେଶର ରାଜନ ।
ଲୋହମୁଖୀ ଗଦାକୁ କରପୁଟେ ବହି
ଫିଙ୍ଗିଲା ସେ ଆମ୍ଭ ଦୁହିଙ୍କି ରୋଷ ବହି ।
ସେ ଗଦାକୁ ଦେଖିଣ ସ୍ଥୂଣାକର୍ଣ୍ଣ ଶର
ବରଗିଲେ ଯେ ଜ୍ୟେଷ୍ଠଭାଇ ରାମ ମୋର ।
ସ୍ଥୂଳାକର୍ଣ୍ଣ ଶରଘାତେ ସେ ଗଦା ତଳେ
ପଡ଼ି ମହୀ ବିଦାରି ପଶିଲା ପାତାଳେ ।
ଯେଉଁଠାରେ ଗଦା ପଡ଼ିଲା ଅରଜୁନ
ତହିଁ ଥିଲା ଜରାରାକ୍ଷସୀ ମନେ ଘେନ ।
ଜରାସନ୍ଧର ତ ଅଟଇ ଦୁଇ ମାତ
ଫାଳେ ଫାଳେ ହୋଇଣ ହୋଇଥିଲେ ଜାତ ।
ସେ ରାକ୍ଷସୀ ସେ ଦୁଇଫାଳ ଯୋଡ଼ି ଦେଇ
ଜୀଆଇବାରୁ ଜରାସନ୍ଧ ତାକୁ କହି ।
ଗଦା ଆଘାତେ ସ୍ଥୂଳାକର୍ଣ୍ଣ ଶରପାତେ
ସେ ରାକ୍ଷସୀ ବସିଲା ଯମଙ୍କ ପୁରତେ ।
ସେ ଗଦା ନ ଥିବାରୁ ଭୀମ ମହାଭାଗ
କଲେଟି ଯୁଦ୍ଧେ ଜରାସନ୍ଧେ ଦୁଇଭାଗ ।
ଗଦାପାଣି ହୋଇ ଯୁଝିଲେ ଜରାସନ୍ଧ
ଇନ୍ଦ୍ରାଦି ଦେବେ କରି ନ ପାରନ୍ତେ ବଧ ।
ମାଟିରେ ଦ୍ରୋଣ କରି ଏକଲବ୍ୟ ବୀର
ଶିଖିଲା ଅସ୍ତ୍ରଶସ୍ତ୍ର ସେ ବଳେ ଅପାର ।
କପଟେ ଦ୍ରୋଣଙ୍କୁ ସେଠାକୁ ନିଆଇଲା
ଦକ୍ଷିଣା କରି ତା ଅଙ୍ଗୁଷ୍ଠ ଦିଆଇଲା ।
କଷଣି ବାନ୍ଧି ଯେବେ କରନ୍ତା ସେ ରଣ
ନ ପାରନ୍ତେ ତାହାକୁ ଜିଣି ସୁରରାଣ ।
ଶିଶୁପାଳର ହତ ହେବାକୁ ଜନମ
ହୋଇଛି ମୁଁ, ଜାଣ ହେ ବୀରଙ୍କ ଉତ୍ତମ ।
ତୁମ୍ଭେ ତ ଦେଖିଅଛ ଶିଶୁପାଳ ମୁଣ୍ଡ
ଚକ୍ର ପ୍ରହାରି ମୁହିଁ କଲି ଦୁଇଖଣ୍ଡ ।

ହିଡ଼ିମ୍ବ ବକ କୀର୍ମିରକୁ ଭୀମ ହାତେ
ମରାଇଲି ରାବଣ ପରି ସେ ସମସ୍ତେ ।
ଏ ରାତି ଭିତରେ ମୁଁ ଘଟୋତ୍କଚ ହାତେ
ବିସାଇଲି ଅଳାୟୁଧକୁ ଯମପଥେ ।
ସେହିରୂପେ କର୍ଣ୍ଣଙ୍କ ହାତେ ଘଟୋତ୍କଚ
ରାକ୍ଷସକୁ ଶକ୍ତିରେ ଛଡ଼ାଇଲି ମଞ୍ଚ ।
କର୍ଣ୍ଣ ଯେବେ ଶକ୍ତି ନ ମାରନ୍ତେ ତାହାକୁ
ମାରନ୍ତି ଜାଣ ଘଟୋତ୍କଚ ରାକ୍ଷସକୁ ।
ତୁମ୍ଭର ହିତ ପାଇଁ ଆଜଯାଏ ମୁହିଁ
ରଖିଥିଲି, ଏବେ ଫିଟାଇ ଦେଲି କହି ।
ଗୋ-ବ୍ରାହ୍ମଣ ନିଧନକାରୀ ସେ ରାକ୍ଷସ
ନ କରନ୍ତି କି ରୂପେ କହ ତାକୁ ନାଶ ।
ଶକତି ଧରି କର୍ଣ୍ଣ ହେଉଥିଲେ ଟାଣି
ତୁମ୍ଭଙ୍କୁ ମାରିବାକୁ କରିଣ ଆରଣୀ ।
ସେ କଥାଟି ତାଙ୍କର କରିଦେଲି ବ୍ୟର୍ଥ
ମାର ହାତସୁଖେ କର୍ଣ୍ଣଙ୍କୁ ବୀର ପାର୍ଥ ।
ଧର୍ମ ରଖିବାକୁ ପ୍ରତିଜ୍ଞା ମୁଁ କରିଛି
ସତ୍ୟ କରି ଅର୍ଜ୍ଜୁନ ତୁମ୍ଭଙ୍କୁ କହୁଛି ।
ଧର୍ମକୁ ଯେଉଁମାନେ କରନ୍ତିଟି ଲୋପ
ତାହାଙ୍କର ପଦ କରଇଁ ମୁହିଁ ଲୋପ ।
ବେଦ ସତ୍ୟ ଦମ ଶଉଚ ଧର୍ମଧୃତି
ଲଜ୍ଜା ଶିରୀ କ୍ଷମାଟି ଯେଉଁଠାରେ ସ୍ଥିତି ।
କରିଥାନ୍ତି ସେଠାରେ ଥାଏ ପ୍ରୀତି ମୋର
ଏଥିରେ ଅରଜୁନ ସନ୍ଦେହ ନ କର ।
ଦୁର୍ଯ୍ୟୋଧନ କର୍ଣ୍ଣ ଦୁହିଙ୍କ ନିଧନକୁ
ଶିଖାଇବି ଉପାୟ ତୁମ୍ଭଙ୍କୁ ଭୀମଙ୍କୁ ।
ଏବେ ଦେଖ କୁରୁଏ କରିବାକୁ ରୋଳ
ଧାଇଁଅଛନ୍ତି ଆଣ୍ଠେ କରି ମୁଖଗୋଳ ।
ଦ୍ରୋଣ ତୁମ୍ଭ ସୈନ୍ୟଙ୍କୁ ଶାୟକାଗ୍ନି-ମୁଖେ
ପୋଡ଼ି ଦେଉଅଛନ୍ତି ଯୁଦ୍ଧକ୍ରୋଧ ଦୁଃଖେ ।
ଧୃତରାଷ୍ଟ୍ର ବୋଇଲେ ବୋଲ ଯା ସଞ୍ଜୟ
ତାହା ଶୁଣି ଘାଣ୍ଟି ହେଉଛି ମୋ ହୃଦୟ ।
ଏକ-ବୀର ବଧକୁ ଶକ୍ତି ଯେବେ କର୍ଣ୍ଣ
ରଖିଥିଲେ କିପାଁ କରିଣ ଆୟୋଧନ ।
ଅର୍ଜ୍ଜୁନକୁ ତାହା ନ ମାରି ଏତେକାଳ
ସାଇତିବାରୁ କହ ହେଲା କେଉଁ ଫଳ ।
ପାର୍ଥ ମରିଥିଲେ ପାଣ୍ଡବେ ମଲା ପରି
ହୋଇ ଆସି ରହନ୍ତେ ଆମ୍ଭ ସେବା କରି ।
ଏଡ଼େ ପୁରୁଷାର୍ଥ କଥା ତ ହେଲା ବ୍ୟର୍ଥ
ଧରିଣ ବସୁ ଏବେ ଦୁର୍ଯ୍ୟୋଧନ ମାଥ ।
ଡାକିଲେ ଅରଜୁନ ଯୁଝନ୍ତା କର୍ଣ୍ଣଙ୍କୁ
ଶକତି ମାରି କର୍ଣ୍ଣ ମାରନ୍ତା ତାହାକୁ ।

ଏ କଥା କାହିଁପାଇଁ ନୋହିଲା ସଞ୍ଜୟ
ଏଥିରେ ଯେ କଥା ଅଛି ତା କହିଦିଅ ।
ନିଶ୍ଚୁପାୟ ନିର୍ବୁଦ୍ଧି ଅଟଇ ମୋ ସୁତ
ଜାଣୁଛି ପାଣ୍ଡବେ କରିବେ ତାକୁ ହତ ।୮
ଜୟ ପ୍ରତି ଯେଉଁ ଶକତି ଥିଲା ରହି
ସେ ତ ଏବେ ସଞ୍ଜୟ ଗଲା ବ୍ୟର୍ଥ ହୋଇ ।
କେମ୍ପା ହାତୁ ଦ୍ରବ୍ୟ ଛଡ଼ାଇନେଲା ପ୍ରାୟେ
ନେଲେ ଶକତି କୃଷ୍ଣ ଛଡ଼ାଇ ଉପାୟେ ।
କର୍ଣ୍ଣ ତୁଲେ ଘଟୋତ୍କଚକୁ ଆୟୋଧନ
କରାଇଲେ ଯାହା ସେ ଜଗତ-ପାବନ ।
ଏଣୁ ମୁଁ ମନେ କରୁଅଛି ସେ ସଞ୍ଜୟ
ମଲେ କର୍ଣ୍ଣ ପାଆନ୍ତେ ପାଣ୍ଡବେ ବିଜୟ ।
କର୍ଣ୍ଣ ଘଟୋତ୍କଚକୁ ଶକତିକି ମାରି
ପକାଇଲେ, ଜୀଇଲେ ସୁଭଦ୍ରା- ବିହାରୀ ।୯
ଦୃଢରୂପେ ପାଣ୍ଡବମାନଙ୍କର ଶ୍ରେୟ
ଭାବି ଏହା କଲେ ରୁକ୍ମିଣୀ ପ୍ରାଣପ୍ରିୟ ।
ସଞ୍ଜୟ ବୋଇଲେ କହିଲ ଯା ରାଜନ
ଏହିରୂପେ ଏ କଥା ସତ୍ୟକରି ଘେନ ।
ଅର୍ଜ୍ଜୁନ କର୍ଣ୍ଣଙ୍କର ଶକତିରେ ମରି
ଥିଲେ କିଛି କାର୍ଯ୍ୟ ପାଆନ୍ତ ଦଣ୍ଡଧାରୀ ।
ନ ଥିଲେ କୃଷ୍ଣଙ୍କ କତିରେ ଜାଣ ପାର୍ଥ
ରଥ ଘୋଡ଼ା ସହ କରନ୍ତେ ମହୀ ସାଥ ।
କୃଷ୍ଣଙ୍କରେ ପାଳିତ ହେବାରୁ ଅର୍ଜ୍ଜୁନ
କଲେଟି ତୁମ୍ଭ ବଳଯାକକୁ ନିଧନ ।
ଧୃତରାଷ୍ଟ୍ର ବୋଇଲେ କୁବୁଦ୍ଧି ମୋ ସୁତ
ମୁଁ ବୁଦ୍ଧିମନ୍ତ ବୋଲି କରିଥାଏ ଚିତ୍ତ ।
ଅମୋଘ ଶକତିକି କର୍ଣ୍ଣଙ୍କର ହାତେ
ମରାଇଥିଲେ ପାର୍ଥ ଯାନ୍ତେ ଯମପଥେ ।
ଜାଣିଥାନ୍ତି ତ କର୍ଣ୍ଣ ସକଳ କଥାକୁ
ନ ମାଇଲେ କିମ୍ପା ଶକତି ଅର୍ଜ୍ଜୁନଙ୍କୁ ।
ତୁମ୍ଭେ ଜାଣିବାର ହୋଇ ବା କିସ କଲ
ମାର ଶକ୍ତି ପାର୍ଥେ ବୋଲି ତା ନ କହିଲ ।
ସଞ୍ଜୟ ହୋଇଲେ ହେ ଦୁର୍ଯ୍ୟୋଧନ କର୍ଣ୍ଣ
ଏ ବାହାରେ ତୁମ୍ଭ ଶକୁନି ଦୁଃଶାସନ ।
ମୋତେ ଘେନିଣ ନିତି ଭାବନା କରନ୍ତି
ମାରିବା ଶକତିରେ ଇନ୍ଦ୍ରଙ୍କ ସନ୍ତତି ।
ଏ ଛଡ଼ା ବୋଲନ୍ତି ପାଣ୍ଡବ ବୃକ୍ଷଙ୍କର
ମୂଳ ଏକା ଜାଣ ବୋଲି ସେ ଚକ୍ରଧର ।
ଶକତିରେ ଆମ୍ଭେ ତ ମାଇଲେ ପାର୍ଥଙ୍କୁ
କରିବେ ଯୁଦ୍ଧ ଯେବେ କୃଷ୍ଣଟି ଆମ୍ଭଙ୍କୁ ।
ଶକତିରେ କୃଷ୍ଣ ମୂଳକୁ ଦେଲେ ତାଡ଼ି
ଗଣ୍ଡି ଡାଳଯାକ ଇଚ୍ଛାରେ ଯିବ ଝଡ଼ି ।

ବୃକ୍ଷର ଡାଳ ଗଣ୍ଡି ପାଣ୍ଡବ ପାଞ୍ଚାଳେ
ଏହାଙ୍କୁ ମାରି କାର୍ଯ୍ୟ କିଛି ନାହିଁ ରୋଳେ ।
ଯଦୁ ପଣ୍ଡୁକୁଳ ଆନନ୍ଦ ବଢଧନ
ଏକା ଶ୍ରୀକୃଷ୍ଣଙ୍କର ଘେନିଲେ ଜୀବନ ।
ନିଷ୍କଣ୍ଟକ କରି ହସ୍ତିନା ବସୁମତି
କରିବା ଭୋଗ ଆମ୍ଭେ ତୋଷ ଧରି ମତି ।
ଏହିରୂପେ ଆମ୍ଭେ ରାତିରେ ନିତି ବସି
ବସାରେ ବିଚାର ଛିଣ୍ଡାଉ ହସି ହସି ।
ସକାଳୁ ଉଠି ଯେତେବେଳେ ଯୁଦ୍ଧ କରୁ
ରାତ୍ରରେ କଥା ହେବା କଥାକୁ ପାଶୋରୁ ।
ତ୍ରିଭୁବନମୋହନ ବସୁଦେବ ସୁତ
ହେଉଁ ତାଙ୍କ ମାୟାରେ ରାଜନ ଆବୃତ୍ତ ।
ଅର୍ଜ୍ଜୁନଙ୍କୁ କର୍ଣ୍ଣଙ୍କୁ ନ କରାନ୍ତି ରଣ
ଏହି କଥାମାନଟି ଜାଣି ନାରାୟଣ ।
ଇନ୍ଦ୍ରଙ୍କର ବଚନ ବ୍ୟର୍ଥ ନୋହିବାକୁ
ଆଡ଼େ କରି ନିଆନ୍ତି ଯୁଦ୍ଧୁଁ ଅର୍ଜ୍ଜୁନଙ୍କୁ ।
ତିନିଭୁବନ ରକ୍ଷାକାରୀ ଯେଉଁ ହରି
ତାଙ୍କୁ କି ହେ ଭାଜନ ତୁମ୍ଭେ ପାର ମାରି ।
କୃଷ୍ଣ ତ ତ୍ରିଭୁବନ ହରତା କରତା
ମାରିବ ତାଙ୍କୁ ଯା ଭାବୁଛ ପାପଚିନ୍ତା ।
ଏହି କଥାମାନ ସାତ୍ୟକି ଶ୍ରୀକୃଷ୍ଣଙ୍କୁ
ପଚାରିବା ପାଇଁ ଆସିଲେ ସମୀପକୁ ।
କର୍ଣ୍ଣ ତ ନିଜ ହାତେ ରଖିଥିଲେ ଶକ୍ତି
ନ ମାଇଲେ କାହିଁକି କୁନ୍ତିଭୋଜ ନାତି ।
କୃଷ୍ଣ ବୋଇଲେ ହେ ପୁଚ୍ଛିଲ ଯୁଯୁଧାନ
ଯାହା ତାହା କହିବା ଶୁଣ ଦେଇ ମନ ।
ଦୁର୍ଯ୍ୟୋଧନ ଜୟଦ୍ରଥ ଯେ ଦୁଃଶାସନ
ଶକୁନିଙ୍କି ଘେନି ଚାରିହେଁ ଏକମନ ।
ହୋଇ ନିତି କର୍ଣ୍ଣଙ୍କୁ ବୋଲନ୍ତି ପାର୍ଥଙ୍କୁ
ମାରିବ ଏ ଶକତି ନ ମାରି ଆନଙ୍କୁ ।
ଅର୍ଜ୍ଜୁନ ମରନ୍ତେ ପାଣ୍ଡବ ସେନାଯାକ
ଘେନି ପାଣ୍ଡବଙ୍କୁ ଦେଖିବେ ଯମଲୋକ ।
କର୍ଣ୍ଣ ସେମାନଙ୍କ କଥାକୁ ନିତି ସହି
କରୁଥାନ୍ତି ପାର୍ଥେ ମାରିବି ବୋଲି କହି ।
ମୁଁ ମୋହ କରାଇଇବା ସକାଶୁଁ କର୍ଣ୍ଣଙ୍କୁ
ନ ମାଇଲେ କର୍ଣ୍ଣ ସେ ଶକ୍ତି ଅର୍ଜ୍ଜୁନଙ୍କୁ ।
କର୍ଣ୍ଣ ହାତେ ଶକ୍ତି ଦେଖି ମୁଁ ନିତି ଚିନ୍ତା
କରିଣ ଶରୀରକୁ କରଇ କ୍ଷୀଣତା ।
ସେହି ଶକତି ଅନିବାରଣ ମରଣ
ଅର୍ଜ୍ଜୁନଙ୍କର ବୋଲି ସାତ୍ୟକି ହେ ଜାଣ ।
ଘଟୋତ୍କଚ ଉରେ ତ ପଡ଼ିଲା ସେ ଶକ୍ତି
ଜୀଇଲେ ଆଜି ଜାଣ ଇନ୍ଦ୍ରଙ୍କ ସନ୍ତତି ।

ମାତା ପିତା ଭ୍ରାତା ଭଗିନୀ ବନ୍ଧୁଲୋକ
ଅର୍ଜ୍ଜୁନଠାରୁ ମୋର ନୋହେ କେ ଅଧିକ ।
ଅରଜୁନ ବିନାଟି ତିନିଲୋକ ମୁହିଁ
ରାଜା ହେଲେ ସାତ୍ୟକି ମୋର ଲୋଡ଼ା ନାହିଁ
ମରିଥିଲେ ଅର୍ଜ୍ଜୁନ ଜୀଇଲେ ସାତ୍ୟକି
ଆଜି ବୋଲି ଆଣ ହେ ତୁମ୍ଭର ମତିକି ।
ଅର୍ଜ୍ଜୁନଙ୍କୁ ଦେଖି ଯା ଆନନ୍ଦ ବଢୁଛି
ତାହା କହିବାକୁ ଉପମା ନାହିଁ କିଛି ।
ଘଟୋତ୍କଚ ବିନା କର୍ଣ୍ଣଙ୍କୁ ଯୁଦ୍ଧେ ମୋଡ଼ା
ଦେବାକୁ ନାହିଁ ଯେତେ ଛନ୍ତି ରଥୀଭିଡ଼ା ।
ଏରୂପେ ଯଦୁବଂଶ ଅବତଂସ ହରି
କହିଲେ ଅର୍ଜ୍ଜୁନଙ୍କ ହୋଇ ପ୍ରିୟକାରୀ ।
ସାତ୍ୟକି ଏହା ଶୁଣି ହେଲେ ତୋଷମନ
ତୁମ୍ଭଙ୍କୁ ମୁଁ ତାହା କହିଲି ହେ ରାଜନ ।
ଧୃତରାଷ୍ଟ୍ର ବୋଲେ କୃଷ୍ଣ ନ ରଖିଥିଲେ
ଜାଣିଲି ଅରଜୁନ ମରିଥାନ୍ତେ ଭଲେ ।
ସଞ୍ଜୟ ବୋଇଲେ ହେ ନିତି କର୍ଣ୍ଣ କର୍ଣ୍ଣେ
କହୁଥାଉଁ ସକାଳୁ ଉଠି ଆମ୍ଭେମାନେ ।
ଯୁଦ୍ଧରେ ଡାକି କୃଷ୍ଣ ଅର୍ଜ୍ଜୁନଙ୍କୁ ଦୁଇ
ଜଣରୁ ଜଣକୁ ହେ ମୋର ଅଙ୍ଗସାଇ ।
ତୁମ୍ଭଠାରେ ବଇଜୟନ୍ତୀ ନାମେ ଶକ୍ତି
ରହିଛି ନ ପାଇବେ ତହୁଁ ସେ ମୁକତି ।
ଯୁଦ୍ଧ ହେବାକ୍ଷଣି ସେ ବୁଦ୍ଧି ଯାଏ ରାୟେ
ଆଉ କିସ ତୁମ୍ଭଙ୍କୁ କହିବି ଗୁଡ଼ାଏ ।
ଦଇବଟି ବଡ଼ଟି ନୁହଇ ମନୁଷ୍ୟ
ଯାହା କରିଥାଏ ସେ ହୁଅଇ ଅବଶ୍ୟ ।
କୃଷ୍ଣ ଅର୍ଜ୍ଜୁନଙ୍କୁ ନ ମାରି ସେ ଶକତି
ମାଇଲେ କର୍ଣ୍ଣ ତହିଁ ହିଡ଼ିମ୍ବା ସନ୍ତତି ।
ଧୃତରାଷ୍ଟ୍ର ବୋଇଲେ କୃଷ୍ଣଙ୍କ ମାୟାରେ
ନ ମାଇଲେ ଶକତି କୃଷ୍ଣଙ୍କ ଦେହରେ ।
ନୋହିଲେ ବା ତୁମ୍ଭେ ଦୁର୍ବୁଦ୍ଧିପଣ କରି
ବିଚାରିବା କଥାକୁ ଦିଅ ହେ ପାଶୋରି ।
ସେ କଥାକୁ ଏବେ ଭାଳିଲେ କାର୍ଯ୍ୟ ନାହିଁ
ଜାଣୁଛି ସମସ୍ତେ ଦେଖିବ ପ୍ରେତସାଇଁ
କୁରୁ ପାଣ୍ଡୁ ସେନାଙ୍କ କି ରୂପରେ ଯୁଦ୍ଧ
ହେଲା ତାହା କହି ମୋ ମନ କର ବୋଧ ।
ପାଞ୍ଚାଳ ସୃଞ୍ଜୟଙ୍କୁ ଘେନି ଦ୍ରୋଣଠାକୁ
ଗଲେ ସେ କି ରୂପରେ ଯୁଝିଲେ ଦ୍ରୋଣଙ୍କୁ ।
ଜୟଦ୍ରଥ ବଧ ସକାଶୁଁ ଦ୍ରୋଣ କ୍ରୋଧ
ହୋଇ ତ କରୁଥିଲେ ପାଣ୍ଡୁସେନା ବଧ ।
ତାହାଙ୍କୁ ପାଣ୍ଡୁସେନା ଯୁଝିବାରୁ ଚିତ୍ତେ
ବଡ଼କାର୍ଯ୍ୟ ବୋଲି ମୁଁ ଘେନୁଛି ମୋ ମତେ ।
ଦ୍ରୋଣି କୃପ କର୍ଣ୍ଣଙ୍କୁ ଘେନି ଦୁର୍ଯ୍ୟୋଧନ
ଜଗି ତ ରହିଥିଲେ କୁମ୍ଭଙ୍କ ନନ୍ଦନ ।
ଯୁଦ୍ଧରେ ସେମାନେ କି ପରାକ୍ରମ କଲେ
ଏମାନ ବତାଇଣ କହ ମୋତେ ଭଲେ ।
ଅରଜୁନ ଭୀମ କି ରୂପେ ଆୟୋଧନ
ଦ୍ରୋଣ ତୁଲେ କଲେ ତା ଶୁଣିବା ମୋ ମନ ।
ସୃଞ୍ଜୟ ବୋଇଲେ ହେ ଘଟୋତ୍କଚ ବୀର
କର୍ଣ୍ଣ ଶକତିରେ ଯାଆନ୍ତେ ଯମପୁର ।
ତୁମ୍ଭ ରଥୀମାନେ ସଇନ ଘେନି ମାଡ଼ି
ପାଣ୍ଡବ ସେମାନଙ୍କୁ ମୁଞ୍ଚିଲେ ଶରଧାଡ଼ି ।
ଯୁଧିଷ୍ଠିର ରାଜା ଘଟୋତ୍କଚ ବିନାଶ
ଯିବାର ଦେଖି କଲେ ମାନସ ବିରସ ।
ଭୀମ ଯେ ତାଙ୍କ ପାଖେ ଛିଡ଼ା ହୋଇଥିଲେ
ତାହାଙ୍କୁ ଅନାଇଁ ଏ ବଚନ କହିଲେ ।
ଦେଖ କୁରୁସେନା ଯୁଦ୍ଧକୁ ଆସୁଛନ୍ତି
ତାହାଙ୍କୁ ତୁମ୍ଭେ ଯୁଦ୍ଧ କର ହେ ମାରୁତି ।
ଘଟୋତ୍କଚ ମରିବା ସକାଶୁଁ ମୋ ମୋହ
ହେଉଛି ଆଉ ମୋତେ ଗୁଡ଼ାଏ ନ କହ ।
ଏହିରୂପେ ଭୀମଙ୍କୁ ଯୁଧିଷ୍ଠିର କହି
ନୟନରୁ ଲୋତକ ଧାରଙ୍କୁ ବୁହାଇ ।
ଥରକୁଥର ନୃପ ପକାଇ ନିଃଶ୍ୱାସ
ପଡ଼ିଲେ ବସି ରଥେ ପାଇ ମୋହ ତ୍ରାସ ।
ଯୁଧିଷ୍ଠିରଙ୍କର ମୋହକୁ ଦେଖି ହରି
କହିଲେ ଏ ବଚନ ତାଙ୍କୁ ଧୀର କରି ।
ଉଠ ଉଠ ନୃପତି ପ୍ରାକୃତ ପୁରୁଷ
ପରି ମୋହ ଘେନି ନ ଭଜ ହୃଦେ ତ୍ରାସ ।
କ୍ଷତ୍ରିୟ କୁଳେ ତ ହୋଇଛ ଉତପତ୍ତି
ଯୁଦ୍ଧୁଁ ଓହରାଇ ଦେଉଛ କିମ୍ପା ମତି ।
ଏ ରୂପରେ ବସିଲେ ବିକଳ ହୃଦୟେ
ପକାଇବ ଜିଣିଚି ଦୁର୍ଯ୍ୟୋଧନ ରାୟେ ।
ଯୁଧିଷ୍ଠିର ରାଜା ଶ୍ରୀକୃଷ୍ଣଙ୍କ ବଚନ
ଶୁଣି ପୋଛିଦେଇ ବନଜ ନେତ୍ରୁ ବନ ।
ବୋଇଲେ ମୁଁ ଧରମ କଥା ଜାଣିଅଛି
କିରୂପେ କହ କୃଷ୍ଣ ଦେବି ତା ମୁରୁଛି ।
ମହତ ଉପକାରୀ ଅଟେ ଭୀମ ସୁତ
ସେ ମଲାଠାରେ ଶୋକ ନୁହଇ କି ଜାତ ।
ଆମ୍ଭେ ଯେଉଁକାଳରେ ବୁଲୁଥିଲୁଁ ବନେ
ଆମ୍ଭ ସାହା ସେ ହୋଇଥାଏ ଅବିଚ୍ଛିନ୍ନେ ।
ଅସ୍ତ୍ର ପାଇଁ ଅର୍ଜ୍ଜୁନ ଗଲେ ତ ସ୍ୱର୍ଗକୁ
କାମ୍ୟକବନେ ରହି ଜଗିଲା ଆମ୍ଭଙ୍କୁ ।
ଦୁର୍ଗମ ସ୍ଥାନମାନଙ୍କେ ସେ ବହିନିଏ
ଦ୍ରୌପଦୀ ତୁଲେ ଆମ୍ଭଙ୍କୁଟି ଯଦୁରାୟେ ।

ଯୁଦ୍ଧ ହେବା ଦିନୁଁ ଦୁଷ୍କର କର୍ମ କରି
ଶୋଇଲା ମୋ ପାଇଁ ରାକ୍ଷସ ପ୍ରାଣ ହାରି ।
ସହଦେବଠାରେ ଯେରୂପେ ପ୍ରୀତି ମୋର
ସେରୂପେ ଘଟୋତ୍କଚଠାରେ ମନେକର ।
ମୋହର ତ ସେ ବଡ଼ ପ୍ରିୟକାରୀ ଅଟେ
ତା ମଲାରୁ ପ୍ରାଣ ରହିଛି କଣ୍ଠତଟେ ।
କୌରବମାନେ ଘଟୋତ୍କଚର ମରଣ
ଦେଖିଣ ହୃଷ୍ଟ ହୋଇ ବିନ୍ଧୁଛନ୍ତି ବାଣ ।
ଆମ୍ଭର ସୈନ୍ୟ ନଳିନକୁ ଦ୍ରୋଣ ହାତୀ
କର୍ଣ୍ଣ ସାହା ପାଇ ପକାଉଛି ମଛି ।
ଭୀମ ଅରଜୁନ ଦୁହିଙ୍କି ଅନାଦର
କରି ଘଟୋତ୍କଚକୁ କରିଣ ସଂହାର ।
ଦ୍ରୋଣ କର୍ଣ୍ଣ ସୁଯୋଧନ ଏ ତିନିଜଣ
ଚାଲିଛନ୍ତି ଦେଖ ଦେଖାଇ ବାହୁ ଟାଣ ।
ଆହେ କୃଷ୍ଣ ତୁମ୍ଭେ ଆମ୍ଭେ ତ ରହିଥାଇଁ
ମାଇଲା ଘଟୋତ୍କଚ ପୁଅ ଅଙ୍ଗସାଇଁ ।
ଅଭିମନ୍ୟୁ ମଲାବେଳରେ ଅରଜୁନ
ନ ଥିଲେ କରୁଥିଲେ ଆନେ ଆୟୋଧନ ।
ଏହା ହୋଇ ବାଳକ ପଶିଲା ବ୍ୟୂହରେ
କୁରୁ ରଥୀଯାକ ତ ବେଢ଼ିଲେ କୋହରେ ।
ଦ୍ରୋଣ ଅଭିମନ୍ୟୁର ମରଣର ଛିଦ୍ର
କହିଦେଲେ ସୁଯୋଧନର ଭାବି ଭଦ୍ର ।
ସବୁ ରଥୀଯାକ ବିରଥ ତାଙ୍କୁ କଲେ
ଦୁଃଶାସନ ସୁତ ହାତରେ ମରାଇଲେ ।
ସାରଥି ଘୋଡ଼ା ପ୍ରାଣ ନେଇ କୃତବର୍ମା
ଭାଙ୍ଗିଦେଲେ ସେ ଅଭିମନ୍ୟୁର ଗାରିମା ।
ରଥେ ଥିଲେ ସେ ପିଲା ନିଶ୍ଚେ ଧୈର୍ଯ୍ୟ ଧରି
ଯୁଝନ୍ତା କୁରୁଏ କି ପାରନ୍ତେଟି ମାରି ।
ଏଥିପାଇଁ ଅରଜୁନ ଚଢ଼ିଣ ରଥ
କାଟିଲେ ଯାହା ଜୟଦ୍ରଥଙ୍କର ମାଥ ।
ଏଥୁଁ ସାର ହେଲା ଭଗିନୀ ହେଲା ରାଣ୍ଡ
କାନ୍ଦୁଅଛି ସେ ଛେଚି ଖଡ୍ଡୁବାହି ଖଣ୍ଡ ।
କର୍ଣ୍ଣ ଦ୍ରୋଣ ଦୁହିଙ୍କି ପାର୍ଥ ଥିଲେ ମାରି
ଏତେ ଦୁଃଖ କିପାଇଁ ହୁଅନ୍ତା ଆମ୍ଭରି ।
ଏବେ ବେଢ଼ିଣ କରୁଥିଲାଇଁ ତ ଯୁଦ୍ଧ
କର୍ଣ୍ଣ କଲା ଘଟୋତ୍କଚକୁ ରଣେ ବଧ ।
ଏଥିରୁ ବଡ଼ ହୋଇ ନାହିଁ ଲାଜକଥା
ଜାଣ ହେ ଏବେ ଯଦୁକୁଳ ମହାରଥା ।
ଦ୍ରୋଣ କର୍ଣ୍ଣ ଦୁହିଙ୍କି ପାରିଲେଟି ମାରି
ତେବେ ସିନା ହେବା ବିଜୟେ ଅଧିକାରୀ ।
କର୍ଣ୍ଣ ତୁଲେ କୃଷ୍ଣ କରିବି ମୁହିଁ ଯୁଦ୍ଧ
ବାହୁଡ଼ିବି ନାହିଁ ନ କଲେ ତାକୁ ବଧ ।

ଦ୍ରୋଣ ସୈନ୍ୟ ଯୁଝୁ ତ ଛନ୍ତି ବୃକୋଦର
କରନ୍ତୁ ପାର୍ଥ ଆନମାନଙ୍କୁ ସଂହାର ।
ଏରୂପେ ଯୁଧିଷ୍ଠିର କୃଷ୍ଣ ଆଗେ କହି
ଛାଟେଣୀ ଶବଦେ କମ୍ପାଇ ଦେଇ ମହୀ ।
ସାରଥିକି ବୋଇଲେ ବାହ ମୋର ରଥ
କାଟି ପକାଇବି ଯୁଦ୍ଧରେ କର୍ଣ୍ଣ ମଥା ।
ଯୁଧିଷ୍ଠିର ଯୁଦ୍ଧକୁ ଯିବାର ଶିଖଣ୍ଡୀ
ଦେଖିଣ ଆନନ୍ଦେ ଫୁଲାଇଦେଇ ଗଣ୍ଡି ।
ଦଶଶତ ରଥ ତିନିଶ ଦନ୍ତାବଳ
ସପ୍ତପାଞ୍ଚ ଅଶ୍ୱ ଶିଖଣ୍ଡୀ ମହାବଳ ।
ସଙ୍ଗତରେ ଘେନିଣ ଯୁଧିଷ୍ଠିର ପଛ
ମଣ୍ଡି ବାହାରିଲେ ସେ ହୃଦ କରି ସ୍ୱଚ୍ଛ ।
ଭେରୀ ଶଙ୍ଖ ମୃଦଙ୍ଗ ପଣବ ପାଞ୍ଚାଳେ
ଏହା ଦେଖି ଯେ ବଜାଇଲେ ଯୁଦ୍ଧଭୋଳେ ।
ତାହା ଦେଖି କୃଷ୍ଣ କହିଲେ ଅର୍ଜୁନଙ୍କୁ
ଦେଖ ତୁମ୍ଭର ଜ୍ୟେଷ୍ଠଭାଇଙ୍କ କଥାକୁ ।
ବାହାରିଛନ୍ତି ମାରିବାକୁ ଅଙ୍ଗରାଣ
ବୁଝ ପାର୍ଥ ଏ କଥା କେଡ଼େ ବିଦ୍ମୟଣ ।
ଏହାଙ୍କୁ ଏବେ ଆମ୍ଭେ ଆଗୁଳି ରଖିବା
କାଳବେଳକୁ ଜାଣି କର୍ଣ୍ଣଙ୍କୁ ମାରିବା ।
ଏହା କହି ଅର୍ଜୁନ ରଥ ବେଗେ ବାହି
ନେଲେ ଯହିଁ ଥିଲେ ପାଣ୍ଡବ ନରସାଇଁ ।
ଏହି ସମୟରେ ଆସିଣ ବେଦବ୍ୟାସ
ବୋଇଲେ ଶୁଣ ଆହେ ପାଣ୍ଡବ ନରେଶ ।
ଘଟୋତ୍କଚ ମାରିବାକୁ ଯା ଶୋକ କର
ବିଚାରିଲେ ଏ କଥା ଭଲ ହେ ତୁମ୍ଭର ।
ସେ ଶକତି ଘଟୋତ୍କଚକୁ ଯେବେ କର୍ଣ୍ଣ
ନ ମାରନ୍ତେ, ମରନ୍ତେ ତହିଁରେ ଅର୍ଜୁନ ।
ଘଟୋତ୍କଚ ମରିବାରୁ ତୁମ୍ଭର ଶୁଭ
ହେଲା ହେ ରାଜନ ଉତ୍ତମ ହୋଇ ଲାଭ ।
ସବୁ ପ୍ରାଣୀମାନଙ୍କୁ ଘୋଟିଅଛି କାଳ
ବେଳ ହେଲେ ଚିପଇ ତୋଟି ଧରି ବାଳ ।
ଭାଇଙ୍କି ଘେନି କୁରୁଙ୍କୁ ମାରି ରୋଳେ
ବସ ଗଜାହ୍ୱୟ ମହୀକି ମାଡ଼ି ବଳେ ।
ଆଜହୁଁ ପାଞ୍ଚଦିନେ ହସ୍ତିନାରେ ତୁମ୍ଭେ
ରାଜା ହେବ ରାଜନ ଜାଣୁଅଛୁ ଆମ୍ଭେ ।
ଅନୃଶଂସ୍ୟ ତପସ୍ୟା କ୍ଷମା ଦାନ ଦୟା
କର ନୃପ ହୃଦୟ ଛାଡ଼ିଦେଇ ମାୟା ।
ଧର୍ମ ଥିବା ଲୋକ କେବେହେଁ ହାରି ନାହିଁ
ନ ବସ ମୋ ବାକ୍ୟେ ସନ୍ଦେହ ଚିତ୍ତ ହୋଇ ।
ଏରୂପେ ଯୁଧିଷ୍ଠିର ନୃପେ କହି ବ୍ୟାସ
ହେଲେ ସେହିଠାରେ ସେ କ୍ଷଣକେ ଅଦୃଶ୍ୟ ।

ବ୍ୟାସଙ୍କର ବଚନ ଘେନି ଯୁଧିଷ୍ଠିର
ନିବର୍ତ୍ତିଲେ କର୍ଣ୍ଣ ବଧରୁ ମନେ କର ।
ଘଟୋତ୍କଚ ମରନ୍ତେ ଏକା ଭୀମସେନ
କରୁଥିଲେ କୁରୁମାନଙ୍କୁ ଆୟୋଧନ ।
ତା ଦେଖି ଯୁଧିଷ୍ଠିର ଧୃଷ୍ଟଦ୍ୟୁମ୍ନନଙ୍କୁ
ଡାକିକରି କହିଲେ ମାର ହେ ଦ୍ରୋଣଙ୍କୁ ।
ଦ୍ରୋଣେ ମାରିବାକୁ ଅଗ୍ନିରୁ ତୁମ୍ଭେ ଜାତ
ହୋଇଛ, ସଫଳ ତା କର ହେ ତ୍ୱରିତ ।
ଜନ୍ମେଜୟ ଶିଖଣ୍ଡୀ ଦୌର୍ମୁଖି ଯଶୋଧନ
ନକୁଳ ସହଦେବ ଦ୍ରୌପଦୀ ନନ୍ଦନ ।
ପ୍ରଭଦ୍ରକ ଦ୍ରୁପଦ ସାତ୍ୟକି ବିରାଟ
କେକୟ ଅରଜୁନ ଆଦି ଘେନି ଥାଟ ।
ତୁମ୍ଭଙ୍କୁ ସାହା ହୋଇ ଏମାନେ ରହନ୍ତୁ
କର ତୁମ୍ଭେ ଯୁଦ୍ଧରେ ଦ୍ରୋଣଙ୍କର ମୃତ୍ୟୁ ।
ଯୁଧିଷ୍ଠିର ରାଜାଙ୍କ ଆଜ୍ଞା ଦେଲା ପରି
ପାଣ୍ଡବରଥୀକୁଳ ସୈନ୍ୟ ସଙ୍ଗେ ଧରି ।
ଅର୍ଜୁନାଦି ଯାଇ ଦ୍ରୋଣଙ୍କୁ କଲେ ରଣ
ବିନ୍ଧିଲେ ଦାଢ଼ ମୁନ ଥିବା ବାଛି ବାଣ ।
ପାଣ୍ଡବସେନା ଆସିବାର ଦ୍ରୋଣ ଦେଖି
ଯୁଦ୍ଧ କଲେ ତାହାଙ୍କୁ ନୋହି କିଛି ଦୁଃଖୀ ।
ଏହା ଦେଖିଣ ଦୁର୍ଯ୍ୟୋଧନ ନରପତି
ଧାଇଁଲେ ସୈନ୍ୟ ସଙ୍ଗେ ଘେନି ଅଗଣତି ।
ପାଣ୍ଡବ କୁରୁଙ୍କର ପ୍ରବର୍ତ୍ତନ୍ତେ ଯୁଦ୍ଧ
ହୋଇଲେ ଦୁଇସେନା ଅନ୍ୟୋନ୍ୟରେ ବଧ ।
ଯୁଦ୍ଧରେ ତ ଶ୍ରାନ୍ତ ଯୋଦ୍ଧାଏ ହୋଇଥିଲେ
ବହୁତ ରାତ୍ର ହେବାଯାଏ ଯୁଦ୍ଧ କଲେ ।
ଏ ସକାଶୁଁ ନିଦ୍ରା ହୁଅନ୍ତେ ନେତ୍ରେ ଘାରି
ରହିଲେ ଯୁଦ୍ଧ ଛାଡ଼ି ସର୍ବେ ମଲା ପରି ।
ଦୁଇ ପ୍ରହର ସନ୍ଧ୍ୟା ଛାଡ଼ିଣ ତ୍ରିଯାମ
ବୋଲାଏ ତ ରାତି ଜାଣିଛ ନରୋତ୍ତମ ।
ସେହି ତ୍ରିଯାମା ଯୋଦ୍ଧାମାନଙ୍କ ଅସର
ହୋଇଲେ ଶ୍ରମ ସକାଶରୁ ମନେ କର ।
ଲାଜଥିବା ଲୋକେ ପୂଜିବା ସୁରରାଜ
ଭାବି ଯୁଦ୍ଧ କଲେ ଦେଖାଇ ବଳ ଓଜ ।
ରଥ ଘୋଡ଼ା ଯେ ହାତୀ ଓଟଙ୍କ ଉପରେ
ପଡ଼ିଲେ ଶୋଇ ଯାହା ବସିଥିବା ନରେ ।
ଅନ୍ୟୋନ୍ୟରେ କେତେ ହୋଇଣ ମରାମରି
ବସିଲେ ଯମରାଜା ପାଶେ ବେଢ଼କରି ।
ନିଦ୍ରା ଘେନି ଅନ୍ଧ ହୋଇଣ ସେନାଶ୍ରେଣୀ
ପରାପର ନ ଜାଣି ହେଲେ ହଣାହଣି ।
ଏହା ଜାଣି କୁନ୍ତୀଙ୍କ କନିଷ୍ଠନନ୍ଦନ
ଦୁଇକୁଳ ଯୋଦ୍ଧାଙ୍କୁ କରି ଦୟାମନ ।
ବୋଇଲେ ଆର୍ତ୍ତ ଯେବେ ହେଉଛ ନିଦ୍ରାରେ
ନ କରି ଯୁଦ୍ଧ ଶୁଅ ସବୁ ଯୋଦ୍ଧା ନରେ ।
ଯୁଦ୍ଧରେ ତ ଶ୍ରମ ହେ ବାଧିଛି ତୁମ୍ଭଙ୍କୁ
ଶ୍ରମ ଛାଡ଼ି ଟିକିଏ ଯାଅ ହେ ନିଦ୍ରାକୁ ।
ଚନ୍ଦ୍ର ତ ଅଳ୍ପକାଳେ ହୋଇବେ ଉଦୟ
ଉଠି ଯୁଦ୍ଧ ପଛେ କରିବ ଯୋଦ୍ଧାଚୟ ।
ଉଚ୍ଚରେ ଅର୍ଜୁନ ଏରୂପେ ଡକା ଛାଡ଼ି
ବୋଲନ୍ତି ଯୋଦ୍ଧାଏ ରହିଲେ ଶସ୍ତ୍ର ଛାଡ଼ି ।
ଭାବିଲେ ପାଣ୍ଡବେ ଅଟନ୍ତି ଧର୍ମବନ୍ତ
କହିଲେ ସତ ଜାଣି ଆମ୍ଭ ଯୁଦ୍ଧଶ୍ରାନ୍ତ ।
ଶୂନ୍ୟେ ଥାଇ ଦେବେ ଯେ ଯୁଦ୍ଧ ଦେଖୁଥିଲେ
ସେ ମଧ୍ୟ ଏହା ଶୁଣି ପରଶଂସା କଲେ ।
ବୋଇଲେ ଅର୍ଜୁନ ତ ଅଟନ୍ତି ଧାର୍ମିକ
ବଳ ଅନୁରୂପ ପୂରିଛି ଗୁଣଯାକ ।
ଅତିଶ୍ରାନ୍ତ ଦୁଇଯୋଦ୍ଧା ତ ହୋଇଲେ
ମୁହୂର୍ତ୍ତେ ମାତ୍ର ତଳେ କଢ଼ ପକାଇଲେ ।
ଶ୍ରାନ୍ତ ଭାଙ୍ଗି ତୁମ୍ଭ ଯୋଦ୍ଧାଏ ତୋଷଚିତ୍ତ
ହୋଇଣ ପ୍ରଶଂସିଲେ ପାର୍ଥଙ୍କୁ ବହୁତ ।
ବୋଇଲେ ବେଦ ବୃଦ୍ଧି ଅସ୍ତ୍ର ପରାକ୍ରମ
ଧର୍ମ କରୁଣା ଅନୃଶଂସ୍ୟ କ୍ଷମା ସମ ।
ତୁମ୍ଭଠାରେ ତ ରହିଅଛି କରି ଘର
ଜୟ କିମ୍ପା ଯୁଦ୍ଧରେ ନୋହିବ ତୁମ୍ଭର ।
ଏବେ ଯାହା ତୁମ୍ଭେ କରିଛ ମନୋରଥ
ଆହେ ମହାବାହୁ ପାର୍ଥ, ତା ହେଉ ସାର୍ଥ ।
ଏରୂପ ଅର୍ଜୁନଙ୍କୁ ପ୍ରଶଂସି ଆଶିଷ-
କରି ସେନା ଶୋଇଲେ ଛାଡ଼ିଣ ନିଃଶ୍ୱାସ ।
ରଥ ଗଜ ଅଶ୍ୱ ଯୋଦ୍ଧା ଏ ସେମାନଙ୍କେ
ମହତ ନିଦ୍ରାଗଲେ ଅତ୍ୟନ୍ତ ନିଃଶଙ୍କେ ।
ଦଣ୍ଡା ଦଣ୍ଡା କରି ଶୁଆଇ ଗଣ୍ଡା ଗଦା
ଭୂମିରେ ଯୋଦ୍ଧାଏ ଶୋଇଲେ ଗଦା ଗଦା ।
ହାତୀମାନେ ଯେ ଶୁଣ୍ଢମାନଙ୍କୁ ଲମ୍ୱାଇ
ଚାରିଗୋଡ଼ ପକାଇ ପଡ଼ିଲେଟି ଶୋଇ ।
ଘୋଡ଼ାଏ ସେହିରୂପେ ହାତୀଙ୍କ ପରାୟେ
ଶୋଇ ମୁଣ୍ଡ ତଳକୁ ପୋତିଲେ ହେ ରାୟେ ।
ଶୋଇଲାବେଳେ ଘୋଡ଼ାମାନେ ଖୁରାଘାତ
କରନ୍ତେ ସମଭୂମିଙ୍କର ହେଲା ଖ୍ୟାତ ।
ଘୋଡ଼ା ହାତୀମାନଙ୍କୁ ଆଉଜିଣ ନର
ଶୁଅନ୍ତେ ହେଲେ ଚିତ୍ରପଟର ଆକାର ।
ଗଜକୁମ୍ଭ କୁଚକୁ ଧରି ଯୋଦ୍ଧାକୁଳ
ଶୁଅନ୍ତେ କାମୀ ପରି ଦିଶିଲେ ଭୂପାଳ ।
ବିରହିଣୀ କାମିନୀ ଗଣ୍ଡଖଣ୍ଡ ପରି
ପୂର୍ବଗିରି ଶିଖେ ଦିଶିଲେ ଶଶଧାରୀ ।

ସେ ଚନ୍ଦ୍ର ମୃଗଇନ୍ଦ୍ର କିରଣ ନଖରେ
ତିମିର ବାରଣଙ୍କୁ ବିଦାରିଲେ ଖରେ ।
କାମ ଜୟଧନୁ ପରାୟେ ଆକୃତି
ଦିଶୁଥିଲା ରାୟେ ଚନ୍ଦ୍ରମା ମୂରତି ।
ତାହା ଦେଖି କାମିନୀଙ୍କର ହୃଦେ କାମ
ବଢ଼ନ୍ତେ କଲେ ପ୍ରିୟଗଣେ ଅତି ପ୍ରେମ ।
କାମିନୀଙ୍କର ଭାଲପଟ ପ୍ରାୟେ
ଆସିଲା ଦିଶି ଚନ୍ଦ୍ରଛଟା ଜାଣ ରାୟେ ।
ଉଦୟଗିରି ଛାଡ଼ିଯାନ୍ତେ କଳାକର
ହତ ହେଲା ତେଜ ନକ୍ଷତ୍ରମାନଙ୍କର ।
ରହନ୍ତେ ଚନ୍ଦ୍ର କର ମହୀଯାକ ଘୋଟି
ମଣିଲୁଁ ଚନ୍ଦନ କି ଲେପି ଦେଲା ସୃଷ୍ଟି ।
ଖୋଜିଲେ ତ ହେଲେ ଟିକିଏ ଅନ୍ଧକାର
କାହାରି ନୟନକୁ ନୋହିଲା ଗୋଚର ।
ପଡ଼ନ୍ତେ ଚନ୍ଦ୍ର କର ସଇନ ଶୀତଳ
ପାଇ ନିଦ୍ରା ଛାଡ଼ିଣ ଉଠିଲେ ସକଳ ।
ମାର ହାଣ ବିନ୍ଧି ବୋଲିବା ଶବଦରେ
ମହୀ କମ୍ପିଗଲା ସେକାଳେ ନୃପ ଥରେ ।
କ୍ରୋଧ ହୋଇଲେ ଦୁର୍ଯ୍ୟୋଧନ ନରରାଣ
ଦ୍ରୋଣଙ୍କର ଆଗରେ କଲେ ଏ ବଖାଣ ।
ପାଣ୍ଡବ ସେନାଯାକ ଶ୍ରମକୁ ହରିଲେ
ଆପଣ ତାଙ୍କୁ କିଛି କହିବା ନୋହିଲେ ।
ଆପଣ ରହିବାରୁ ନିବର୍ତ୍ତି ଯୁଦ୍ଧରୁ
ଆମ୍ଭେଟି ନିବର୍ତ୍ତିଲୁ ଜାଣ ଆହେ ଗୁରୁ ।
ଶାନ୍ତବେଳେ ସିନା ଶତ୍ରୁଙ୍କୁ ହୋଏ ମାରି
ତାହା ତ ତୁମ୍ଭେ ଛାଡ଼ିଦେଲ ଦୟାକରି ।
ବ୍ରହ୍ମଅସ୍ତ୍ର ଆଦି ତ ତୁମ୍ଭଠାରେ ଅଛି
ତୁମ୍ଭ ପରି ବୀର କାହିଁ ମୁଁ ନ ଦେଖୁଛି ।
ପାଣ୍ଡୁ ସୁତେ ଅବା ଅଟନ୍ତି କେତେକର
ଏହାଙ୍କୁ କରି କିବା ନ ପାର ସଂହାର ।
ସୁରାସୁର ଗନ୍ଧର୍ବ ଉରଗ କିନ୍ନର
ମନ କଲେ କ୍ଷଣକେ କରିବେ ସଂହାର ।
ମୋ ମନ୍ଦ କରମୁଁ ଆପଣ ମନ୍ଦବଳ
ହୋଇ ପାଣ୍ଡୁସୁତଙ୍କୁ କରୁଅଛ ରୋଳ ।
ପାଣ୍ଡବେ ତ ତୁମ୍ଭ ଅଟନ୍ତି ପ୍ରିୟ ଶିଷ୍ୟ
କେ ବୋଲିବ ତାହାଙ୍କୁ କର ବୋଲି ନାଶ ।
ଏରୂପେ ଦୁର୍ଯ୍ୟୋଧନ କହନ୍ତେ ଦ୍ରୋଣଙ୍କୁ
ଦ୍ରୋଣ କ୍ରୋଧ ହୋଇଣ କହିଲେ ତାହାଙ୍କୁ ।
ବୁଢ଼ାଟାଏ ହୋଇଗଲିଣି ତ ହେ ମୁହିଁ
ଯୁଦ୍ଧ ମୁଁ କରୁଅଛି ଶକତିକି ଚାହିଁ ।
ଯେବେ ବା ବୋଲୁଅଛ ଅଧରମ କଥା
ଏଣିକି ଆଚରିବି ଛାଡ଼ି ଧର୍ମପନ୍ଥା ।

ଅସ୍ତ୍ର ନ ଜାଣିବା ଲୋକଙ୍କୁ ପେଷି ଅସ୍ତ୍ର
ବୋଲୁଛ ଯେବେ ତୋତେ କାଟିବି ତା ଗାତ୍ର ।
ପାଞ୍ଚାଳଙ୍କୁ ନ ମାଇଲେ ମୁଁ କବଚକୁ
ନଫେଇବି କହୁଛି ଛୁଇଁ ଆୟୁଧକୁ ।
ଅର୍ଜ୍ଜୁନଙ୍କୁ ଶ୍ରାନ୍ତ ବୋଲିଣ ଯା ବୋଲୁଛ
ଆମ୍ଭଙ୍କୁ ସେ କଥାଟି ଲାଗୁଅଛି ମିଛ ।
ସୁରାସୁର ଗନ୍ଧର୍ବ ଉରଗ କିନ୍ନର
ହାରିବେ ଅର୍ଜ୍ଜୁନଙ୍କୁ କଲେ ହେ ସମର ।
ଇନ୍ଦ୍ର ଯୁଦ୍ଧେ ଜିଣି ଖାଣ୍ଡବବନ ଦହି
ପକାଇଲେ ଏକା ତ ଜାଣ ନରସାଇଁ ।
ଚିତ୍ରସେନ ଗନ୍ଧର୍ବ ବାନ୍ଧିଣ ତୁମ୍ଭଙ୍କୁ
ନେଉଣଥିଲା ଜାଣି ଅର୍ଜ୍ଜୁନ ତାହାଙ୍କୁ ।
ତୁମ୍ଭଙ୍କୁ ବନ୍ଧନୁଁ ଫିଟାଇ ଦେଇଛନ୍ତି
ତାହା କି ଦୁର୍ଯ୍ୟୋଧନ ନାହିଁ ତୁମ୍ଭ ମତି ।
ସୁରାସୁରେ ଅବଧ ନିବାତକବଚେ
ଶୁଣିଅଛ ତ ମଲେ ଅର୍ଜ୍ଜୁନ ନାରାଚେ ।
ହିରଣ୍ୟପୁରବାସୀମାନଙ୍କର ମାଥ
କାଟିଲେଟି ଅଳପ ଯୁଦ୍ଧ କରି ପାର୍ଥ ।
ଏବେ ତ ଚାହୁଁଛ ସେ କରୁଛନ୍ତି ଯାହା
ନ ପାରି କହୁଅଛ ଲାଡ଼ି ମୋତେ ବାହା ।
ଦ୍ରୋଣଙ୍କର ବଚନ ଶୁଣି ଦୁର୍ଯ୍ୟୋଧନ
କ୍ରୋଧରେ ଦ୍ରୋଣଙ୍କୁ ସେ କହିଲେ ରାଜନ ।
ଶକୁନି କର୍ଣ୍ଣ ଦୁଃଶାସନଙ୍କୁ ମୁଁ ଘେନି
ସୈନ୍ୟ ତୁଲେ ପାର୍ଥେ କରିବି ଯମସ୍ଥାନୀ ।
ଦୁର୍ଯ୍ୟୋଧନଙ୍କର ଶୁଣି ଏହି ଗୁମାନ
ହସିଣ ଦ୍ରୋଣଗୁରୁ କହିଲେ ବଚନ ।
ତିନିଲୋକ ବୀର ପାର୍ଥଙ୍କୁ ଜିଣିବାକୁ
ଦିଶୁନାହିଁ ତୁମ୍ଭେ କି କହୁଛ ଆମ୍ଭଙ୍କୁ ।
ଇନ୍ଦ୍ର ଯମ ବରୁଣ କୁବେର ଶଙ୍କର
ଯୁଝିଲେ ମୃତ୍ୟୁ ହୋଇନାହିଁଟି ପାର୍ଥର ।
ମୂର୍ଖପଣେ ଲୋକେ ପାର୍ଥଙ୍କୁ ଜିଣିବାକୁ
ବୋଲନ୍ତି ଯାହା ତ ଆଣିବା କି କଥାକୁ ।
ଯମମୁଖେ ପଡ଼ିଲେ ଜୀଇ ପାରେ ଲୋକ
ନ ଜୀଇବ ବାଜିଲେ କିରୀଟୀ ଶାୟକ ।
ସବୁଠାରେ ତୁମ୍ଭର ଶଙ୍କା ଥାଏ ରହି
ଧର୍ମବୁଦ୍ଧି ତୁମ୍ଭଠାରେ ତ କିଛି ନାହିଁ ।
ଆମ୍ଭ ପରା ଲୋକମାନଙ୍କୁ ନିନ୍ଦୁଅଛ
ଭୁଞ୍ଜିବଟି ପ୍ରାନ୍ତେ ଫଳ ଗାନ୍ଧାରୀ ବତ୍ସ ।
କ୍ଷତ୍ରିୟକୁଳେ ତ ଜନମ ଅଛ ପାଇ
ଦିଅ ଅରଜୁନଙ୍କୁ ଯୁଦ୍ଧରେ ଶୁଆଇ ।
ହସ୍ତିନାମହୀ ମହିଳାକୁ ତୁମ୍ଭେ ଭୋଗ-
କରିବା ମନ ଥିଲେ ପାର୍ଥ ଯୁଝ ଆଗ ।

ବଇର କରିବାରେ ମୂଳ ତୁମ୍ଭେ ରାୟେ
ମରାଇଲ ଅଣାଇଁ କ୍ଷତ୍ରିୟଗୁଡ଼ାଏ ।
ବଳୀୟାର ମାମୁଁ ତ ସାହା ହୋଇଛନ୍ତି
ମରି ଅର୍ଜ୍ଜୁନଙ୍କୁ ବଢ଼ାନ୍ତୁ ତୁମ୍ଭ ପ୍ରୀତି ।
କର୍ଣ୍ଣଙ୍କୁ ଘେନି ଧୃତରାଷ୍ଟ୍ର ଆଗେ ତୁମ୍ଭେ
କହିଛ ଯାହା ତାହା ଶୁଣିଛୁଁ ତା ଆମ୍ଭେ ।
ଏବେ ସେ କଥାଟିକି ଯୁଦ୍ଧରେ ରାଜନ
ଫଳାଅ ନେଇ ପାଣ୍ଡୁସୁତଙ୍କ ଜୀବନ ।
ବ୍ରାହ୍ମଣଙ୍କୁ ତୁମ୍ଭେ ତ ଦେଇଅଛ ଦାନ
ଜପ ହୋମେ ପୂର କରିଛ ଅପଘନ ।
ଏକାଗ୍ର କରି ମହୀ ଭୋଗ ତ କରୁଛ
ଯୁଝ ଅର୍ଜ୍ଜୁନଙ୍କୁ ହୃଦୟ କରି ସ୍ୱଚ୍ଛ ।
ଏରୂପେ କହି ଦ୍ରୋଣ ତୁମ୍ଭର ସୁତଙ୍କୁ
ବାହାରିଲେ ରାଜନ ଯୁଦ୍ଧ କରିବାକୁ ।
ସେ ସରିକି ରାତ୍ର ହୋଇଅଛି ଘଡ଼ି ଦଶ
ଯୁଝିଲେ ଦୁଇସେନା ବହି ମହାରୋଷ ।
ଯୁଦ୍ଧ କରୁଁ କରୁଁ ହୋଇଗଲା ପାହାନ୍ତି
ଆସନ୍ତେ ଘୋଟି ପୂର୍ବଦିଗୁଁ ଛାୟାପତି ।
ଅରୁଣତେଜ ଆଗ ହୁଅନ୍ତେ ପ୍ରକାଶ
ରଙ୍ଗ ହୋଇଗଲା କ୍ଷଣକେ ପୂର୍ବଦିଶ ।
ଏହି ସମୟରେ ସୂର୍ଯ୍ୟଦେବଙ୍କ ମଣ୍ଡଳ
ଦିଶିଲା ଜମ୍ବୁନଦ ପରି ହେ ଭୂପାଳ ।
ଦେଖି ସୂର୍ଯ୍ୟଦେବଙ୍କୁ ଦୁଇସୈନ୍ୟ ଜନ
ଓହ୍ଲାଇଲେ ଯାନୁଁ ଉତ୍ସୁକ କରି ମନ ।
ମନ୍ତ୍ର ସ୍ନାନ କରି ଦେହକୁ ଶୁଦ୍ଧି କଲେ
ଯତ୍ନବନ୍ତ ହୋଇଣ ମନ୍ତ୍ରକୁ ଜପିଲେ ।
ଏ ଅନ୍ତେ ଦ୍ରୋଣ ସୈନ୍ୟ କରି ଦୁଇଭାଗ
ଯୁଦ୍ଧ କରିବାକୁ ବଳାଇ ଅନୁରାଗ ।
ପାଞ୍ଚାଳ ପାଣ୍ଡବ ସୋମକଙ୍କର ତୁଲେ
ଆବୋରିଲେ ଯାଇଣ ରାଜନ ସେ ଭଲେ ।
ଦ୍ୱିଭାଗ ହୋଇ କୁରୁସଇନ ଯୁଦ୍ଧକୁ
ଆସନ୍ତେ ଦେଖି କୃଷ୍ଣ କହିଲେ ପାର୍ଥଙ୍କୁ ।
ଅପସବ୍ୟେ ରହିଣ ବିନ୍ଧ ତୁମ୍ଭେ ଶର
ଘେନ ଅରଜୁନ ମୋ କହିବା ଉତ୍ତର ।
ଅରଜୁନ କୃଷ୍ଣଙ୍କ ବଚନ ଘେନିଲେ
ଦ୍ରୋଣ କର୍ଣ୍ଣ ଦକ୍ଷିଣ ପାଖରେ ରହିଲେ ।
କୃଷ୍ଣଙ୍କ ଅଭିପ୍ରାୟେ ଜାଣି ଭୀମସେନ
ସେକାଳେ ବିଭତ୍ସୁଙ୍କୁ କହିଲେ ବଚନ ।
କ୍ଷତ୍ରିୟସ୍ତିରୀ ଯହିଁ ପାଇଁ ସୁତ ଜାତ
କରିଥାଏ, ସେକାଳ ହୋଇଛି ଆଗତ ।
ତୁମ୍ଭ ଅନୁରୂପ କରମ ତୁମ୍ଭେ କରି
ଘେନିଯାଅ ଆମ୍ଭେ କହୁଛୁଁ ଜୟଶିରୀ ।

ସତ୍ୟ ଶିରୀ ଯଶ ଯେ ଧରମ ଆନୃଣ୍ୟ
କର ବଳ ଦେଖାଇ ବୋଲାଇଟି ଧନ୍ୟ ।
ଭୀମ କୃଷ୍ଣ ଦୁହିଙ୍କ ବାଣୀ କର୍ଣ୍ଣେ ଶୁଣି
ଅର୍ଜ୍ଜୁନ ନିବାରିଲେ ତୁମ୍ଭ ସୈନ୍ୟଶ୍ରେଣୀ ।
ଅର୍ଜ୍ଜୁନଙ୍କୁ ସକାଳେ ତୁମ୍ଭର କ୍ଷତ୍ରିୟେ
ନିବାରି ନ ପାରି ଜାଣ ହେ ଗୋଟିଏ ।
ଦୁର୍ଯ୍ୟୋଧନ କର୍ଣ୍ଣ ଶକୁନି ଏକମନ
ହୋଇଣ ଅର୍ଜ୍ଜୁନଙ୍କୁ କଲେ ଆୟୋଧନ ।
ଅର୍ଜ୍ଜୁନ ତାଙ୍କ ଅସ୍ତ୍ର ନିବାରି ଅସ୍ତ୍ରରେ
ପ୍ରହାରିଲେ ଶର ସେ ତିନିଙ୍କ ଗାତ୍ରରେ ।
ଧୂଳି ଉଡ଼ିବାରେ ଚାରିଦିଗକୁ ନେତ୍ର
ବାରି ନ ପାରିଲା ଅମ୍ବିକାଦେବୀ-ପୁତ୍ର ।
କୋଳାହଳ ବଚନେ ସ୍ତବ୍ଧ କର୍ଣ୍ଣ ବେନି
ସବୁରି ହେଲା, ନ ପାରିଲୁଁ କଥା ଜାଣି ।
ନାମ ଗୋତ୍ର ଉଚ୍ଚାରି କଲେ ଆୟୋଧନ
ମଲେ ହେଲେ ଗୋଟିଏ ନୋହିଲେ ବିମନ ।
ପରସ୍ପରେ ରଥିଏ ହୁଅନ୍ତେ ବିରଥ
ଯୁଦ୍ଧ କରିଲେ ଧରାଧରି ହୋଇ ହାତ ।
ମଲେ ହେଲେ ଯୋଦ୍ଧାଏ ଯେଝା ଆୟୁଧକୁ
ଧରି ରହିଲେ ହେ, କହିବି କି ତୁମ୍ଭଙ୍କୁ ।
ନିର୍ଦ୍ଧୂମଅଗ୍ନି ପରି ଉତ୍ତରରେ ଦ୍ରୋଣ
ରହି ପାଣ୍ଡୁ ସେନାଙ୍କୁ କଲେ ଆୟୋଧନ ।
ଦ୍ରୋଣ ସୈନ୍ୟ ଛାଡ଼ି ଏକାନ୍ତେ ଯୁଝିବାରେ
ଦେଖି ପାଣ୍ଡୁ ସଇନ ହୋଇଲେ କାତର ।
ଦ୍ରୋଣଙ୍କର କ୍ରୋଧ ଅଗ୍ନିକି ନେତ୍ରେ ଦେଖି
ଭୟରେ ପାଣ୍ଡୁ ସେନା ବୁଜିଦେଲେ ଆଖି ।
ଦ୍ରୋଣଙ୍କୁ ଜିଣିବାକୁ କାହାରି ରାଜନ
ମନ ନୋହିଲା ଏକା ସେକାଳରେ ଘେନ ।
ମହତ୍ତ୍ୱ ଥିବା ଲୋକେ ଯୁଝେ ଦେଇ ଚିତ୍ତ
ଯୁଝିବାକୁ ଦ୍ରୋଣ ପାଖକୁ ହେଲେ ଗତ ।
ମୋଡ଼ି ଓଷ୍ଠପାଟି ତରାଟିଣ ଚାହିଁ
ମାଇଲେ ଅସ୍ତ୍ରଶସ୍ତ୍ର ଦ୍ରୋଣଙ୍କୁ ରୋଷାଇ ।
ପାଞ୍ଚାଳେ ଦ୍ରୋଣଙ୍କ କାଣ୍ଡରେ ପାଇ ପୀଡ଼ା
ପଡ଼ିଲେ ବସି ନ ପାରିଣ ହୋଇ ଛିଡ଼ା ।
ଏ ଦେଖି ବିରାଟ ଦ୍ରୁପଦ କ୍ରୋଧ ହୋଇ
ଦ୍ରୋଣେ ଯୁଝିବାକୁ ଆସିଲେ ରାୟେ ଧାଇଁ ।
ଦ୍ରୁପଦଙ୍କ ତିନୋଟି ନାତି ଦ୍ରୁପଦଙ୍କ
ତୁଲେ ଥିଲେ ଜାଣ ହେ ଅବନୀ-ନାୟକ ।
ଦ୍ରୋଣ ତିନିକାଣ୍ଡେ ଦ୍ରୁପଦ ତିନିଙ୍କାତି
ପ୍ରାଣ ନେଲେ ଆଗ ରାଗରେ ନରପତି ।
ମତ୍ସ୍ୟ ଚେଦି ସୃଞ୍ଜୟ କେକୟମାନଙ୍କୁ
ଜିଣିଲେ ଦୋଣ କୋପେ ପ୍ରହାରି ରୋପକୁ ।

ତା ଦେଖି ବିରାଟ ଦ୍ରୁପଦ ହୋଇ କ୍ରୋଧ
ବିନ୍ଧିଲେ ଶର ଦ୍ରୋଣଙ୍କର ଭାବି ବଧ ।
ବିରାଟ ଦ୍ରୁପଦଙ୍କ କାଣ୍ଡ ଦ୍ରୋଣ କାଟି
କାଣ୍ଡ ବିନ୍ଧି ରହିଲେ ତାଙ୍କୁ ଯୁଦ୍ଧେ ଘୋଟି ।
ସେ ଦୁଇ ନୃପତି ମତିରେ ବହି କୋହ
ଘୋଡ଼ାଇଲେ କାଣ୍ଡରେ ଦ୍ରୋଣଙ୍କର ଦେହ ।
ଦ୍ରୋଣ ଭାଲିକାଣ୍ଡେ ବିରାଟ ଦ୍ରୁପଦଙ୍କ
କାଟିଲେ ଧନୁ ଯୁଦ୍ଧେ ଦେବାକୁ ଆତଙ୍କ ।
ବିରାଟ ଦଶକୋଟି ବାଛିଣ ତୋମର
ଫିଙ୍ଗିଲେ ଭାବି ମନେ ଦ୍ରୋଣ ମରିବାର ।
ଏହି ସମୟରେ ଯେ ଦ୍ରୁପଦ ଶକତି
ଫିଙ୍ଗିଲେ ଯୁଦ୍ଧଦେଶେ ଦେଖାଇ ଶକତି ।
ଦ୍ରୋଣ ଭାଲିକାଣ୍ଡେ ସେ ଶକତି ତୋମର
କାଟି ପକାଇଲେ ନ କରିଟି ବିଚାର ।
ମଣି ଦୁଇ ଭାଲିକାଣ୍ଡକୁ ବିନ୍ଧି ଦ୍ରୋଣ
ବିରାଟ ଦ୍ରୁପଦଙ୍କ ରଚିଲେ ମରଣ ।
ବାପାଙ୍କର ମରଣ ପୁତ୍ରଙ୍କର ନାଶ
ଦେଖି ନେତ୍ର ଧୃଷ୍ଟଦ୍ୟୁମନ ବୀରଈଶ ।
କ୍ରୋଧ ହୋଇଣ ସେନାମାନଙ୍କୁ ଉତ୍ତର
ଯାହା ଦେଲେ, ତାହା ଶୁଣ ହେ ନରବର ।
ଜପ ତପ ତଡ଼ାଗ ଯାଗ ଯା କରିଛ
ଦ୍ରୋଣେ ନ ମାଇଲେ ଆଜି ସେ ହେବ ମିଛ ।
ଏରୂପେ କହି ସେନାଗଣେ ବୁଣ୍ଢିଆଇ
ଆସିଲେ ଧୃଷ୍ଟଦ୍ୟୁମ୍ନ ଦ୍ରୋଣଠାକୁ ଧାଇଁ ।
ଏହି ସମୟରେ ଯେ ପାଣ୍ଡବ ପାଞ୍ଚାଳେ
ବେଢ଼ିଲେ ଦ୍ରୋଣ ବୁଢ଼ାଟିକି ଆସି ରୋଳେ ।
ଦୁର୍ଯ୍ୟୋଧନ କର୍ଣ୍ଣ ଶକୁନି ଯେ ଦ୍ରୋଣଙ୍କୁ
ଜଗିଲେ ସେହି କାଳେ ଉଞ୍ଚାରି ଧନୁକୁ ।
ଦ୍ରୋଣଙ୍କୁ ତ ତୁମ୍ଭ ରଥୀଏ ଜଗିଥିଲେ
ଏଣୁ କିଛି ପାଞ୍ଚାଳେ କରି ନ ପାରିଲେ ।
ଭୀମ ଧୃଷ୍ଟଦ୍ୟୁମନଙ୍କର ମୁଖ ଚାହିଁ
ସେହିକାଳେ କହିଲେ ମହାକ୍ରୋଧ ବହି ।
ସବୁ ଶସ୍ତ୍ରକୁ ଜାଣି ବାପଙ୍କର ଶତ୍ରୁ
ଦ୍ରୋଣଙ୍କୁ ଦେଖୁଅଛି ନ ଦେଇଣ ମୃତ୍ୟୁ ।
ଦେଖି ଦ୍ରୋଣ ଦ୍ୱିଜ କ୍ଷତ୍ରିୟ ତୃଣବନ
କ୍ରୋଧ-ଦହନରେଟି କରୁଛି ଦହନ ।
ତୁମ୍ଭଙ୍କୁ କହିବାକୁ ବେଶୀ ଆଉ କାର୍ଯ୍ୟ
ନାହିଁ, ମଠ କଲେ ହୋଇବଟି ଅକାର୍ଯ୍ୟ ।
କୁରୁରଥୀଯାକ ଅଛନ୍ତି ଗୋଟିହୋଇ
ଦେବେ ସିନା ଆମ୍ଭ ସଇନକୁ ବଢ଼ାଇ ।
ଏକା ମୁଁ ଯାଉଛି ଘେନିବି ଦ୍ରୋଣ ପ୍ରାଣ
ବାଛି ବାଛି ବିନ୍ଧିଣ ମୁନଘଷା ବାଣ ।

ଏରୂପେ କହି ଦ୍ରୋଣସୈନ୍ୟେ ଭୀମ ପଶି
ଦେଲେ ତୁମ୍ଭର ସେନାମାନଙ୍କୁ ବିନାଶି ।
ଧୃଷ୍ଟଦ୍ୟୁମ୍ନ ମଧ ପଶିଣ ସେନାମଧେ
ମାଇଲେ ତୁମ୍ଭ ସେନାଯାକକୁ ମହାକ୍ରୋଧେ ।
ଦ୍ରୋଣଙ୍କ ମଲାଦିନ ସୂର୍ଯ୍ୟୋଦୟ କାଳେ
ରୋଳ ପରି ରୋଳ ହେ ଦେଖିନାହୁଁ ଡୋଳେ ।
ରଥୀ ହାତୀ ପଦାତି ହୋନ୍ତେ ମିଶାମିଶି
କଟାକଟି ହୋଇ ହୋଇଲେ ସ୍ୱର୍ଗବାସୀ ।
ପଖା ପିଠି ମୁଣ୍ଡ ନାକ କାନରେ ଶର
ମଣ୍ଡି ହୋଇଲେ ଦୁଇକୁଳ ଯୋଦ୍ଧାନର ।
ଯେରୂପେ ତଳଦିନ ଲୋକେ ଥିଲେ ଯୁଝି
ସେହିରୂପେ ଯୁଝି ଶୋଇଲେ ରଣମଝି ।
କରୀ-ହୟ ଚଢ଼ାମାନେ ଯେ ହୟ କରି-
ଚଢ଼ାଙ୍କୁ ଡାକିଣ ଯୁଝିଲେ ଶସ୍ତ୍ର ଧରି ।
କ୍ଷୁଧା ତୃଷ୍ଣା ଦୁଇରେ ହୋଇଲେ ସେ ଶ୍ରାନ୍ତ
ନ ବାଜୁଁ ଶର ମୋହେ ହେଲେ ମହୀଗତ ।
ଶଙ୍ଖ ଭେରୀ ମୃଦଙ୍ଗ ପଣବ ଗୋମୁଖ
ବଜାଇଲେ କେତେ ଯୋଦ୍ଧାଏ ବହି ସୁଖ ।
ମରିବାବେଳେ ଲୋକେ ବିକଳରେ ରଡ଼ି-
ଛାଡ଼ନ୍ତେ ରହି ସେ ଆକାଶକୁ ମାଡ଼ି ।
ନ ଚିହ୍ନିଣ ପର ଆପଣା ଦୁଇଲୋକ
କଟାକଟି ହୋଇ ଶୋଇଲେ ରାୟେ ବେକ ।
ଦୁଇସେନା ଯାକର ବସନ ରକତେ
ବୁଡ଼ନ୍ତେ ପଟା ପରି ଦିଶିଲେ ସେ ନେତ୍ରେ ।
ଖଣ୍ଡା ଗଦା ପରଶୁ ତୋମର ପଚିଶ
ପ୍ରାଣରେ ମରାମରି ହେଲେ ଯୋଦ୍ଧାବଂଶ ।
ଗଜ-ଅଶ୍ୱ-କାୟ-ଶଇଳରୁ ରକତ-
ଝରିଣ ବହି ନଦୀଟାଏ ହେଲା ଜାତ ।
ପୁଟା-ପଙ୍କ ବସ୍ତ୍ର-ଫେନ ଯେ ମତ୍ସ୍ୟକୁଳ
ପ୍ରାୟେ ଦିଶିଲେ ସେ ନଦୀରେ ଶସ୍ତ୍ରଜାଳ ।
ଦୁଇକୁଳର ମଡ଼ା-କାଠକୁ ଭସାଇ-
ଦେଲା ସେ ରକ୍ତନଦୀ ଖଳଖଳେ ବହି ।
ବୀରମାନେ ବାହୁ-ଭେଳାକୁ କରି ସାହା
ତରିଲେ ତାହା ହେ ହସ୍ତିନା-ନରନାହା ।
ଭୟାଳୁମାନଙ୍କର ହୋନ୍ତେ ଜାତ ଭୟ
ଶୋଇ ଶୋଇ ପଡ଼ିଲେ କମ୍ପାଇ ହୃଦୟ ।
ହାତୀ ଘୋଡ଼ା ପୂର୍ବୁଁ ତ ଶ୍ରାନ୍ତ ହୋଇଥିଲେ
ବାଜନ୍ତେ ଶର ପଦେ ପାଦ ନ କାଢ଼ିଲେ ।
ଘୋଟକ ଗଜ ରଥ ଅସ୍ତ୍ର ପଡ଼ିବାରେ
ଚଳି ନ ପାରିଲେଟି ଦୁଇ ଯୋଦ୍ଧା ନରେ ।
ଘୋଡ଼ାମାନେ ପାଞ୍ଚବାଡ଼ି-ଘାତ ପାଇ
ମହତ କଷ୍ଟେ ରଥମାନ ନେଲେ ବହି ।

ଦ୍ରୋଣ ଅରଜୁନ ବିନାଟି ସବୁ ଲୋକ
ଭୟ ଶ୍ରମ ଦୁଇରେ ହାରିଲେ ବିବେକ ।
ସେ ଦୁହିଁଙ୍କ ମୁଖରେ ପଡ଼ିଲେ ସେ ଯାଇ
ପୂଜାକଲେ ତାହାଙ୍କୁ ନେଇ ପ୍ରେତସାଇଁ ।
ଦ୍ରୋଣ ଭୀମ ଅର୍ଜୁନ ଯୁଧିଷ୍ଠିର ନୃପ
ନକୁଳ ସହଦେବ ଧୃଷ୍ଟଦ୍ୟୁମ୍ନ କୃପ ।
ସାତ୍ୟକି ଦୁଃଶାସନ ଶଲ୍ୟ ଦୁର୍ଯ୍ୟୋଧନ
କୃତବରମା କର୍ଣ୍ଣ ଦ୍ରୋଣଙ୍କ ନନ୍ଦନ ।
ଏ ରଥୀମାନଙ୍କର ରଣଧୂଳି କାୟେ
ଲୁଚାଇ ପକାଇଲା ନ ଦେଖିଲୁ ରାୟେ ।
ହେଲେ ହେଲେ ସୂର୍ଯ୍ୟଦେବତା ହେ ଉଦୟ
ହେଲା ରାତି ମଣିଲା ସବୁରି ହୃଦୟ ।
ବିଷମ ସମ ଦିଗ ବିଦିଗ ଆକାଶ
ଖୋଜିଲେ ହେଲେ ଦେଖି ନ ପାରିଲା ଦୃଶ ।
ପର ଆପଣାକୁ ନ ଚିହ୍ନିଣ ଅଣ୍ଡାଳି
ମାଇଲେ ଶସ୍ତ୍ରଅସ୍ତ୍ର ଯେବା ଯୁଦ୍ଧ ଶାଳୀ ।
ଦେଖୁଁ ଦେଖୁଁ ସେ ଯୋଦ୍ଧାମାନଙ୍କ ରକତ
ପଡ଼ନ୍ତେ ତେଡ଼େ ଧୂଳିଗୋଟା ହେଲା ହତ ।
ରକ୍ତେ ମଣ୍ଡିହେବାରୁ ସେନା ଅପଘନ
ନିନ୍ଦିଲା କିବା ପାରିଜାତକ କାନନ ।
ଦୁର୍ଯ୍ୟୋଧନ ଦୁଃଶାସନ ଏ ଦୁଇ ବୀରେ
ଯୁଦ୍ଧ କଲେ ମାଦ୍ରୀପୁତ୍ରଙ୍କ ସଙ୍ଗତରେ ।
କର୍ଣ୍ଣ ଭୀମ ଦୁହେଁ ହୋଇଲେ ମରାମରି
ଶରମାନ ତୂଣୀରୁ ବାଛି ଦଣ୍ଡଧାରୀ ।
ଅରଜୁନ ଦ୍ରୋଣ ଦେଖାଇଣ ପ୍ରତାପ
ଚାପରେ ରୋପ ସନ୍ଧି ବିନ୍ଧିଲେ ଅମାପ ।
ଏ ଆଠ ରଥୀଙ୍କର ଯୁଦ୍ଧଙ୍କୁ ଅନାଇଁ
ରହିଲେ ଦୁଇ ସେନାଯାକ ନରସାଇଁ ।
ପରସ୍ପରେ ଆପଣା ଜୟରେ ଦେଇ ମନ
ନିନ୍ଦିଲେ ଶ୍ରାବଣେ ମୁଞ୍ଚବା ଧାରା ଘନ ।
ଉନ୍ମତ୍ତ ହୋଇଥିବା ବୃଷଭ ପରାୟେ
ଶାୟକ ବିଷାଣରେ ଯୁଝିଲେ ସଭିଏଁ ।
ପଦ ବାହୁ ଶିର ବିଶିଖ ଧନୁ ପ୍ରାସ
ପରଶୁଁ କ୍ଷୁର ଖଡ଼୍ଗ ତୋମର ପଟ୍ଟିଶ ।
କବଚ ରଥ ଗଜ ବାଜି ଆଭରଣ
ଛତ୍ର ବସ୍ତ୍ର ମାଲ୍ୟ କିରୀଟ ମଣିଗଣ ।
ଚୂଡ଼ାମଣି କିଙ୍କିଣୀ ମୁକୁଟ ଉଷ୍ଣୀଷ
ଲୋଟିଲେ ଏ ସମସ୍ତେ ଛିଡ଼ି ମହୀଦେଶ ।
ବୀରଙ୍କ ଅଳଙ୍କାର ନକ୍ଷତ୍ରଙ୍କ ପରି
ମହୀ ଆକାଶକୁ ମଣ୍ଡନ ଦେଲେ କରି ।
ଦୁର୍ଯ୍ୟୋଧନଙ୍କର ନକୁଳଙ୍କର ରଣ
ଯେରୂପରେ ହେଲା ତା ଶୁଣ ନରରାଣ ।
ତୁମ୍ଭର ପୁଅ ଅପସବ୍ୟରେ ନକୁଳ
ରହି କରି ବାଛି ବିନ୍ଧିଲେ ଶରଜାଳ ।
ଦୁର୍ଯ୍ୟୋଧନ ମଧ୍ୟ ନକୁଳ ଅପସବ୍ୟେ
ରହି ଦିବ୍ୟକାଣ୍ଡ ବିନ୍ଧିଲେ ମହାଗର୍ବେ ।
ନକୁଳ ଦିବ୍ୟ ମାର୍ଗଣକୁ ଦେଖାଇଲେ
ଦିବ୍ୟ ଶରେ ତୁମ୍ଭ ସୁତଙ୍କୁ ପୀଡ଼ା ଦେଲେ ।
ଦୁର୍ଯ୍ୟୋଧନ ରାଜାଙ୍କୁ ଯୁଦ୍ଧରେ ବିମୁଖ
କଲେ କ୍ଷଣକରେ ନକୁଳ ବୀରଶିଖ ।
ରହ ରହ ବୋଲିଣ ଦୁର୍ଯ୍ୟୋଧନ ଅଙ୍ଗେ
ବାଛି କାଣ୍ଡ ବିନ୍ଧି ନକୁଳ ରଣରଙ୍ଗେ ।
ସହଦେବ ତୁଲେ ଏକାଳେ ଦୁଃଶାସନ
କରୁଥିଲେ ଦେଖାଇ ନିଜ ବାହୁଟି ଟାଣ ।
ରଥ ଯିବାଘାତରେ ମେଦିନୀ କମ୍ପାଇ
ବୋଇଲେ କାହିଁ ଯିବୁ ସହଦେବଭାଇ ।
ଏହି ସମୟରେ ଯେ ସହଦେବ କାଣ୍ଡେ
କାଟିଲେ ଦୁଃଶାସନ ସୂତ ମୁଣ୍ଡ ଚାଣ୍ଡେ ।
ସାରଥି ମୁଣ୍ଡ କାଟିବାର ଦୁଃଶାସନ
ଜାଣି ନ ପାରିଲେଟି ଜାଣ ହେ ରାଜନ ।
ସେତେବେଳେ କର ଦଉଡ଼ି ଶ୍ଳଥ ହେଲା
ଯେତେବେଳେ ମଲା ବୋଲି ସେ ଜଣାଗଲା ।
ସାରଥି ରଥୀପଣ ଦୁଃଶାସନ କରି
ଯୁଝିଲେ ସହଦେବ ବୀରେ ନ ଓହରି ।
ତୁମ୍ଭ ସୁତ ଦୁଃଶାସନର ସେ କର୍ମକୁ
ପରଶଂସି ଯୋଦ୍ଧାଏ ଆଣିଲେ ମନକୁ ।
ସହଦେବ ଦୁଃଶାସନ ଘୋଡ଼ା ଦେହେ
ବିନ୍ଧିଲେ ବାଛି କାଣ୍ଡମାନ ଅତି କୋହେ ।
ଧନୁ ଛାଡ଼ିଣ ଘୋଡ଼ାମାନଙ୍କୁ ବାହାନ୍ତି
ଧାଇଁଲେ ଧନୁ ଧରି ଶରକୁ ବିନ୍ଧନ୍ତି ।
ଏହି ଛିଦ୍ର ଦୁଃଶାସନର ସହଦେବ
ଜାଣି କାଣ୍ଡ ବିନ୍ଧିଲେ ଜାଣ ନରଦେବ ।
ଦୁଃଶାସନକୁ ହୀନବଳ କର୍ଣ୍ଣ ଜାଣି
ଆସିଲେ ଦୁଇହାତେ ଧନୁବର ଟାଣି ।
ସେହି ସମୟେ ଭୀମ କର୍ଣ୍ଣଯାଏ ଶର
ପୂରାଇ କର୍ଣ୍ଣ ଉପରେ କଲେ ହେ ପ୍ରହାର ।
କର୍ଣ୍ଣ ଭୀମକାଣ୍ଡେ ଘାଉଥା ତ ହୋଇଲେ
ଲେଉଟି ଭୀମସେନ ସଙ୍ଗତେ ଯୁଝିଲେ ।
ଉରଗ ପରି ରାଗ କରିଣ ଆଶୁଗ
ବିନ୍ଧନ୍ତେ ଭୀମ କର୍ଣ୍ଣ କମ୍ପିଲା ଭୂଭାଗ ।
ଭୀମ କର୍ଣ୍ଣ ଦୁହେଁ ହୁଅନ୍ତେ ମିଶାମିଶି
ଗଦାଯୁଦ୍ଧକୁ ଦୁହେଁ ଆରମ୍ଭିଲେ ହସି ।
ଭୀମ ଗଦା ମାରିଣ କର୍ଣ୍ଣଙ୍କର ରଥ
କୁବରକୁ ଦେଖାଇଦେଲେ ମହୀପଥ ।

କର୍ଣ୍ଣ ଭୀମଙ୍କର ବିକ୍ରମ ନ ସହିଲେ
ଭୀମଙ୍କର ରଥକୁ ଗଦାକୁ ଫିଙ୍ଗିଲେ ।
ଭୀମ ନିଜ ଗଦାକୁ ପାଡି ସେ ଗଦାକୁ
ଭାଙ୍ଗି ପକାଇଲେ କରିଣ ସୁହାସକୁ ।
କ୍ରୋଧ ହୋଇ ଭୀମ ବୁଲାଇ ଗଦାବର
ଫିଙ୍ଗିଲେ ମରୁ ବୋଲି ତୁମ୍ଭ କର୍ଣ୍ଣ ବୀର ।
କର୍ଣ୍ଣ ଭୀମ ଗଦାକୁ ବିନ୍ଧି ଦଶଶର
ଦେଲେ ଲେଉଟାଇ ଦେଖିଲୁ ନରବର ।
ସେ ଗଦା ଲେଉଟି ଭୀମଙ୍କ ରଥ ଧ୍ୱଜ
କାଟି ପକାଇଲା ଯେ ଦେଖାଇଣ ଓଜ ।
କଚାଡ଼ି ହୋଇ ଭୀମ ସାରଥିର ପିଣ୍ଡେ
ପଡ଼ିଲାକ୍ଷଣି ମୋହ ଗଲା ଅତି ଚାଣ୍ଡେ ।
ତା ସହି ନ ପାରିଣ ପବନଙ୍କ ସୂନୁ
ଛାଇଦେଲେ ଶରେ କର୍ଣ୍ଣଙ୍କ ଧ୍ୱଜ ଧନୁ ।
ଏହା କରି ସାରିଣ ବିନ୍ଧି ଆଠକାଣ୍ଡ
କର୍ଣ୍ଣଙ୍କ ଧ୍ୱଜ ଧନୁ କଲେ ଦୁଇ ଖଣ୍ଡ ।
ଆନ ଧନୁ ଧରି ଭୀମଙ୍କ ଘୋଡ଼ାଚାରି
ପରାଣ ନେଲେ କର୍ଣ୍ଣ ଶରକୁ ପ୍ରହାରି ।
ଏ ବାହାରେ ଭୀମଙ୍କର ପାର୍ଷ୍ଣି ସାରଥିଙ୍କି
ଦେଖାଇ ଦେଲେ ନେଇ ପ୍ରେତଙ୍କ ପତିକି ।
ବିରଥ ହୋଇ ଭୀମ ନକୁଳଙ୍କ ରଥେ
ଡେଇଁ ବସିଗଲେ ଉଠାଇ ପିଚା ହାଦେ ।

•

## ଦ୍ରୋଣଙ୍କ ଯୁଦ୍ଧ

ଏବେ ଶୁଣ ଦ୍ରୋଣ ଅର୍ଜ୍ଜୁନ ଆୟୋଧନ
ଦୁହେଁ ତ ମହାରଥୀମାନଙ୍କ ମଣ୍ଡନ ।
ସନ୍ଧିବା ବିନ୍ଧିବାରେ ସେ ଦୁହିଙ୍କି କେହି
ଦେଖି ନ ପାରିଲେ ହସ୍ତିନା ନରସାଇଁ ।
ବୁହାଅନ୍ତେ ରଥ ସେ କରି ନାନାମାର୍ଗ
ଡରି ଯୋଦ୍ଧାମାନେ ହୋଇଲେ ଦୁଇଭାଗ ।
ଦ୍ରୋଣ ଅର୍ଜ୍ଜୁନଙ୍କୁ ଯୁଝନ୍ତେ ଶ୍ରଦ୍ଧା ବହି
ଦୁଇସେନା ଯାକ ରହିଲେ ଜାଣ ଚାହିଁ ।
ଅନ୍ୟୋନ୍ୟରେ ସେ ଅପସବ୍ୟ ଦୁହେଁ ଇଚ୍ଛା
କରି ଯୁଝିଲେ ସେ ନୋହିଲେ ମନବାଞ୍ଛା ।
ଆକାଶରେ ସଞ୍ଚାଣ ମାଂସ ଲୋଭୀ ହୋଇ
ଯୁଝିଲା ପରି ଦୁହେଁ ଯୁଝିଲେ ରୋଷାଇ ।
ଅର୍ଜ୍ଜୁନଙ୍କୁ ଜିଣିବା ପାଇଁ ଯେତେ କର୍ମ
ଦେଖାଇଲେ ସେ ଦ୍ରୋଣ ବ୍ରାହ୍ମଣ ଉତ୍ତମ ।
ସେ କର୍ମମାନଙ୍କୁ କିରୀଟୀ ହସି ହସି
କୋଡ଼ିଏ କାଣ୍ଡ ବିନ୍ଧି ପକାଇଲେ ନାଶି ।
ଶିଷ୍ୟ ଅରଜୁନଙ୍କୁ ନ ପାରିଣ ବଳି
ଲାଜ ପାଇଣ ଦ୍ରୋଣଗୁରୁ ଅତି ଚଳି ।
ଦିବ୍ୟ ଅସ୍ତ୍ରମାନଙ୍କୁ ପରକାଶ କଲେ
ବିଜୟଠାରୁ ଜୟ ନେବି ବିଚାରିଲେ ।
ଐନ୍ଦ୍ର ପାଶୁପତ ଯେ ବାୟବ୍ୟ ବରୁଣ
ତ୍ୱାଷ୍ଟ୍ର ଆଦି ଦ୍ରୋଣ ବିନ୍ଧିଲେ ଅସ୍ତ୍ରଗଣ ।
ସେ ଅସ୍ତ୍ରଙ୍କୁ କିରୀଟୀ ଅସ୍ତ୍ର ପେଷି କାଟି
ବସୁଥାଆନ୍ତି ବଢ଼ କରି ମେଲି ପାଟି ।
ଅସ୍ତ୍ରମାନ ଯହୁଁ ହୋଇଗଲା ବିନାଶ
ଦିବ୍ୟ ଅସ୍ତ୍ର ବିନ୍ଧିଲେ ଭରଦ୍ୱାଜ ଶିଷ୍ୟ ।
ଉତ୍ତମ ଅସ୍ତ୍ର ବାଛି ବିନ୍ଧିଲେହେଁ ଦ୍ରୋଣ
ଅର୍ଜ୍ଜୁନଙ୍କୁ ଘୁଞ୍ଚାଇ ନ ପାରିଲେ ଜାଣ ।
ଅରଜୁନଙ୍କ ପରାକ୍ରମ ଦ୍ରୋଣ ଦେଖି
ମନେ ଅର୍ଜ୍ଜୁନଙ୍କୁ ପୂଜିଲେ ହୋଇ ସୁଖୀ ।
ପୁଣି ମନେ କରିଲେ ଅର୍ଜ୍ଜୁନଙ୍କ ଗୁରୁ
ବୋଲାଇଲି ମୁହିଁଟି ବହୁତ ଭାଗ୍ୟରୁ ।
ନ ପାରି ଅର୍ଜ୍ଜୁନଙ୍କୁ ହସି ଗୁରୁ ଦ୍ରୋଣ
ପ୍ରୀତିରେ ନିବାରିଲେ ଯୁଦ୍ଧୁ ରାୟେ ଜାଣ ।
ଆକାଶରେ ଦେବ ଗନ୍ଧର୍ବ ଋଷି ସିଦ୍ଧ
ସେ ଯୁଦ୍ଧକୁ ଦେଖି ହୋଇଲେ ଅତି ବୋଧ ।
ଆକାଶବାସୀଯାକ ଆକାଶରେ ରହି
ଦେଖନ୍ତେ ସୂର୍ଯ୍ୟକର ନ ପଡ଼ିଲା ମହୀ ।
ଦ୍ରୋଣ ଅର୍ଜ୍ଜୁନଙ୍କୁ ଦେଖିଣ ଦେବତାଏ
କହିଲେ ବଚନ ପ୍ରଶଂସି ଅତିଶୟେ ।
ଦେବ ଯକ୍ଷ କିନ୍ନର ଉରଗ ଅସୁର
ଏପରି କରି ନ ପାରନ୍ତି ହେ ସମର ।
ଏ ଦୁହିଙ୍କ ଯୁଦ୍ଧକୁ ଏ ଦୁହିଙ୍କ ଯୁଦ୍ଧ
ସମାନ କରି ଏକା ମନେ କର ବୋଧ ।
ରୁଦ୍ର ଦୁଇଭାଗ ହୋଇଣ ଯୁଦ୍ଧ କଲେ
ଗଚ୍ଛିବ ଏ ଯୁଦ୍ଧେ ପାଉଛି ଚିତ୍ତ ଭଲେ ।
ଦ୍ରୋଣଗୁରୁ ଐଶ୍ୱର୍ଯ୍ୟ ଜ୍ଞାନର ଆକାର
ବଳ ଐଶ୍ୱର୍ଯ୍ୟ ଜ୍ଞାନ ଯୋଗ ଅର୍ଜ୍ଜୁନର ।
ଏ ଘେନି ଏ ଦୁଇ ବୀରଙ୍କୁ ମାରିବାକୁ
ତ୍ରିଭୁବନେ କା'କୁ ନ ଆଣେ ନଜରକୁ ।
ଏ ଦୁହେଁ ମନ କଲେ ତ୍ରିଭୁବନଯାକ
ପାରନ୍ତି ନାଶ କରି ବିନ୍ଧିଣ ଶାୟକ ।
ଏରୂପେ ଦ୍ରୋଣ ଅର୍ଜ୍ଜୁନଙ୍କୁ ପରଶଂସା
କଲେ ଦେବତାଏ ଶୂନ୍ୟରେ କରି ବସା ।
ଦ୍ରୋଣ ଅର୍ଜ୍ଜୁନଙ୍କ ସନ୍ତାପ ବଢ଼ିବାକୁ
ପ୍ରୟୋଗ କଲେ ଯୁଦ୍ଧେ ବ୍ରହ୍ମାଙ୍କ ଅସ୍ତ୍ରକୁ ।
ସେ ବ୍ରହ୍ମଅସ୍ତ୍ରଘାତେ ବନ ପରବତେ
ସିନ୍ଧୁ ମହୀ ତୁଲେ କମ୍ପିଲେ ମହାମତେ ।
ଦାରୁଣ ହୋଇ କରି ବହନ୍ତେ ପବନ
ବାଲୁକାରେ ଆଚ୍ଛନ୍ନ ହୋଇଲା ଗଗନ ।

ଅର୍ଜ୍ଜୁନ ଯେ ଅସ୍ତ୍ରକୁ କିଛି ନ ଡରିଲେ
ବ୍ରହ୍ମାସ୍ତ୍ର ପେଶି ବ୍ରହ୍ମଅସ୍ତ୍ରକୁ ନାଶିଲେ ।
ଦ୍ରୋଣ ଅସ୍ତ୍ର ଅସ୍ତ୍ରେ କରନ୍ତି ପାର୍ଥ ନାଶ
ଉତପାତ ଯାକଟି ହୋଇଗଲା ଧ୍ୱଂସ ।
ଦ୍ରୋଣ ଅର୍ଜ୍ଜୁନଙ୍କର ଜୟ ପରାଜୟ
ଦେଖି ନ ପାରିଲା ଯୋଦ୍ଧାଙ୍କ ନେତ୍ରଚୟ ।
କେତେ ରହି ଦେଖିବା ଯୁଦ୍ଧ ବୋଲି ଭାଷି
ଦୁଇସେନା ଯୁଝିଲେ ହୋଇ ମିଶାମିଶି ।
ଦ୍ରୋଣ ଅରଜୁନଙ୍କ ଶରରେ ଆକାଶ
ହୁଅନ୍ତେ ରୁନ୍ଧି ନ ଦିଶିଲେ ଛାୟା ଈଶ ।
ଆକାଶ-ଦେଶେ ଯିବା ପକ୍ଷିଏ ଆକାଶ
ଛାଡ଼ିଣ କଲେ ତାଳ ବୃକ୍ଷଙ୍କରେ ବାସ ।
ଏରୂପେ ତାଙ୍କ ଯୁଦ୍ଧ ଦେଖିଣ ରାଜନ
ଯୁଦ୍ଧ କଲେ ଧୃଷ୍ଟଦ୍ୟୁମନ ଦୁଃଶାସନ ।
ଦୁଃଶାସନ କାଣ୍ଡ ବାଜନ୍ତେ ଅଙ୍ଗେ ଚଳି
ବିନ୍ଧିଲେ ଧୃଷ୍ଟଦ୍ୟୁମ୍ନ ବାଛି ଶରାବଳୀ ।
ସାରଥି ଧ୍ୱଜ ତୁଳେ ନ ଦିଶିଲା ରଥ
ବିନ୍ଧନ୍ତେ ଶର ଧୃଷ୍ଟଦ୍ୟୁମ୍ନ ମହାରଥ ।
ଦୁଃଶାସନ ଧୃଷ୍ଟଦ୍ୟୁମନଙ୍କର ଆଗେ
ନ ରହିଲେ ଶର ବାଜନ୍ତେ ଯାଉ ଅଙ୍ଗେ ।
ତୁମ୍ଭ ଦୁଃଶାସନ ସୁତକୁ ଧୃଷ୍ଟଦ୍ୟୁମ୍ନ
କ୍ଷେଉଦି ତ ଦେଲେ ହେ କରି ଆୟୋଧନ ।
ଏ ଅନ୍ତେ ଶତ ଶତ ଶରକୁ ପ୍ରହାରି
ଆସିଲେ ଦ୍ରୋଣଙ୍କୁ ମାରିବା ଇଚ୍ଛାକରି ।
ଧୃଷ୍ଟଦ୍ୟୁମନଙ୍କର ଆସିବାର ଦେଖି
କୃତବର୍ମା ରଙ୍ଗ କରିଣ ବେନି ଆଖି ।
ତୁମ୍ଭ ତିନିସୁତଙ୍କୁ ସଙ୍ଗତେ ଘେନିଲେ
ଧୃଷ୍ଟଦ୍ୟୁମନଙ୍କୁ ଯାଇଣ ନିବାରିଲେ ।
ନକୁଳ ସହଦେବ ଧୃଷ୍ଟଦ୍ୟୁମ୍ନଙ୍କର
ପୃଷ୍ଠରକ୍ଷା ହୋଇ ରହିଲେ ମନେକର ।
ଏମାନେ ସ୍ୱଭାବେ ଶୁଦ୍ଧାତ୍ମା ଶୁଦ୍ଧିମନ୍ତ
ଯୁଦ୍ଧ କରିଲେ ମରଣରେ ଦେଇ ଚିତ୍ତ ।
ଅଧର୍ମ ଯୁଦ୍ଧଟିକୁ ମନୁ ଦୂର କଲେ
ଧର୍ମଯୁଦ୍ଧେ ସ୍ୱର୍ଗକୁ କିଣିବା ଭାବିଲେ ।
ନାଳୀକ କର୍ଣ୍ଣୀ ବିଷଲିପ୍ତ ଶରରାଜି
ନ ବିନ୍ଧିଲେ, ଧର୍ମେ ତ ଚିତ୍ତ ଥିଲା ମଜି ।
ତୁମ୍ଭର ଚାରିରଥୀ ତାଙ୍କ ତିନିରଥୀ
ଏରୂପେ ଯୁଦ୍ଧ କଲେ ମିଶି ସାତରଥୀ ।
ନକୁଳ ସହଦେବ ପ୍ରହାରିଣ ଶର
କଲେ ତ ତୁମ୍ଭ ଚାରିରଥୀଙ୍କି ନିବାର ।
ଏହା ଦେଖି ଧୃଷ୍ଟଦ୍ୟୁମନ ହୋଇ ତ୍ୱରା
ମୁଞ୍ଚିଲେ ଦ୍ରୋଣଙ୍କ ଉପରେ ଶରଧାରା ।

ନକୁଳ ସହଦେବ ତୁମ୍ଭ ଚାରିରଥୀ-
ମାନଙ୍କୁ ଯୁଦ୍ଧ କରି କଲେ ମହାବ୍ୟଥୀ ।
ଦୁର୍ଯ୍ୟୋଧନ ଯେ ଧୃଷ୍ଟଦ୍ୟୁମନଙ୍କୁ ରଣ
ସେକାଳେ କଲେ ଆସି ବିନ୍ଧି ମନବାଣ ।
ଦୁର୍ଯ୍ୟୋଧନ ରାଜାଙ୍କୁ ଦେଖିଣ ସାତ୍ୟକି
ଆସିଲେ ଧାଇଁ ଯୁଝିବାକୁ ଧନୁ ଟେକି ।
ଦୁହେଁ ପରସ୍ପରେ ହସାହସି ହେଲେ
ବାଲ୍ୟକାଳ ବୃତ୍ତିକି କଥାବାର୍ତ୍ତା ହେଲେ ।
ଦୁର୍ଯ୍ୟୋଧନ ବୋଇଲେ ତୁମ୍ଭଠାରୁ ମିତ
ଖୋଜିଲେ ଆମ୍ଭର ନ ଥିବ ଏ ଜଗତ ।
ଧିକ ହେଉ ଆମ୍ଭର କ୍ଷତ୍ରିୟ ବୃତ୍ତିକୁ
ଭାବୁଥାଇଁ ଯାହା ତୁମ୍ଭର ବିନାଶକୁ ।
ତୁମ୍ଭଙ୍କୁ ମାରି ଯାହା ଭୁଞ୍ଜିବୁ ହସ୍ତିନା
ମଲେ ଆମ୍ଭେ ଏଥୁଁ ହୁଅନ୍ତା ଭଲ ସିନା ।
ପରସ୍ପରେ ପ୍ରାଣରୁ ପ୍ରିୟ ଆମ୍ଭେ ଦୁହେଁ
କରୁଥାଇଁ ସମରେ ବ୍ୟର୍ଥେ ପଡ଼ି ମୋହେ ।
ଯୁଦ୍ଧ କରିବାରୁଟି ତୁମ୍ଭ ଆମ୍ଭ ପ୍ରୀତି
ପାସୋର ଗଲା ନ ଆସିଣ ହୃଦ କତି ।
କ୍ରୋଧ ଲୋଭ ଦୁଇରୁ ବଡ଼ ହୋଇ କଥା
ଥିଲା ପରି ନ ଦିଶେ ଆହେ ମହାରଥା ।
ତୁମ୍ଭଙ୍କୁ ମାରିବି ମୁଁ ବିଚାରୁଛି ଯାହା
ରଖିଛି କିପାଁ ପ୍ରାଣ ମୋର ଚାରିବାହା ।
ସାତ୍ୟକି ବୋଇଲେ ରାଜନ ହେଲ ବାଇ
କହୁଛ ପୂର୍ବ କଥା କିପାଁ ଚିତୁଆଇ ।
ସେ କାଳ ତ ଆଜି ହେ ହୋଇ ନାହିଁ ରାୟେ
ଭେଟାଅ ମୋତେ ନେଇ କାଣ୍ଡେ ଯମରାୟେ ।
ଦୁର୍ଯ୍ୟୋଧନ ବୋଇଲେ କାଳକୁ ଅତିକ୍ରମ
ନ କରଇ ପୁରୁଷ ହୋଇଲେ ଉତ୍ତମ ।
କାଳକୁ ଚାହିଁ ସବୁ ହେଉଛି ସାତ୍ୟକି
କିସ କହିବି ଯୁଦ୍ଧ କର ଧନୁ ଟେକି ।
ଧନ ସକାଶରୁ ତ ହାରିଅଛି ଜ୍ଞାନ
ନ କରିବି ତୁଲେ କାହିଁକି ଆୟୋଧନ ।
ସାତ୍ୟକି ବୋଇଲେ ଯୁଝିବ ଯେବେ ଗୁରୁ
ମାରି ପକାଇବି ମୁଁ ନୋହି ଧର୍ମଭୀରୁ ।
ଯେବେ ତୁମ୍ଭର ମୁଁ ଅଟଇ ପ୍ରିୟସଖା
ତେବେ ବିନ୍ଧି ହେ ଶରରାଜିକି ଅଲେଖା ।
ତୁମ୍ଭ ହାତେ ମଲେ ମୁଁ ଇନ୍ଦ୍ରଙ୍କ ଆସନେ
ବସିବି ଯାଇ ଜାଣ ସୁପ୍ରସନ୍ନ ମନେ ।
ମିତ୍ରମାନଙ୍କ ଦୁଃଖ ମରଣ ବିପତ୍ତି
ଦେଖି ନ ପାରେ ହେ ବିଚିତ୍ରବୀର୍ଯ୍ୟନାତି ।
ଏହିରୂପେ ସାତ୍ୟକି କହିଣ ବଚନେ
ଯୁଝିବାକୁ ଗଲେ ସେ ନିରପେକ୍ଷ ମନେ ।

ଦୁର୍ଯ୍ୟୋଧନ ସାତ୍ୟକି ଆସିବାର ଦେଖି
ବିନ୍ଧିଲେ ଶରମାନ ରଙ୍ଗକରି ଆଖି ।
ଅନ୍ୟୋନ୍ୟରେ ଦ୍ୱିରଦ ସିଂହ ପ୍ରାୟେ ଦୁହେଁ
ଯୁଦ୍ଧ କଲେ ମହତ କ୍ରୋଧ ଧରି ଦେହେ ।
ସାତ୍ୟକି ଦେହକୁ ଦଶୋଟି ବାଛି ଶର
କରିଲେ ଦୁର୍ଯ୍ୟୋଧନ ତୁମ୍ଭର ପ୍ରହାର ।
ସାତ୍ୟକି ଦୁର୍ଯ୍ୟୋଧନ ଦେହକୁ ସେରୂପେ
ନଉକାଣ୍ଡ ସନ୍ଧି ବିନ୍ଧିଲେ ଅତି ଧାପେ ।
ତୁମ୍ଭ ପୁଅ ସାତ୍ୟକି ଦେହେ ବିଂଶ ଦଶ
କାଣ୍ଡ ବିନ୍ଧିଣ ଥରେ ମୋଡ଼ିଦେଲେ ନିଶ ।
କ୍ଷରକାଣ୍ଡେ ସାତ୍ୟକି ଧନୁଟିକି କାଟି
ଗରଜନ କରିଲେ ମେଳି ଦୁଇପାଟି ।
ଆନ ଧନୁକୁ ଧରି ମଧୁବଂଶମଣି
ପ୍ରହାରିଲେ ଦୁର୍ଯ୍ୟୋଧନଙ୍କୁ ଶରଶ୍ରେଣୀ ।
ଦୁର୍ଯ୍ୟୋଧନ ସାତ୍ୟକି ଶରେ ପେଶି ଶର
କାଟନ୍ତେ ଗରଜିଲେ ଯୋଦ୍ଧାଏ ତୁମ୍ଭର ।
ସାତ୍ୟକିଙ୍କ ଦେହକୁ ବଜାଇ ଟେଣ୍ଡରି
ବିନ୍ଧିଲେ କାଣ୍ଡ ଦୁର୍ଯ୍ୟୋଧନ ଦଣ୍ଡଧାରୀ ।
ସାତ୍ୟକି ଦୁର୍ଯ୍ୟୋଧନ-ଧନୁ କାଟି କାଣ୍ଡେ
ବିନ୍ଧିଲେ କାଣ୍ଡମାନ ଦୁର୍ଯ୍ୟୋଧନ ପିଣ୍ଡେ ।
ଦୁର୍ଯ୍ୟୋଧନ ସାତ୍ୟକି-ଶରେ ପୀଡ଼ା ପାଇ
ରଥ ମଧ୍ୟେ ବସି ପଡ଼ିଲେ ନରସାଇଁ ।
ପୁଣି ଧୈର୍ଯ୍ୟ ହୋଇଣ ଉଠି ଦୁର୍ଯ୍ୟୋଧନ
କଲେ ସାତ୍ୟକିଙ୍କି ମହତ ଆୟୋଧନ ।
ସାତ୍ୟକି ଦୁର୍ଯ୍ୟୋଧନ ଦୁହେଁ ମିଶାମିଶି
ହୋଇ ହୋଇଲେ ବାଣ ମୁନ କଷାକଷି ।
ଦୁହିଙ୍କ ଧନୁରୁ ଫିଟିଲେ ଯେତେ କାଣ୍ଡ
କାଟିଲେ ସେ ଘୋଟକ ହାତୀ ନରମୁଣ୍ଡ ।
ପଡ଼ିବା ଆସିବାରେ ଶର ଦୁହିଙ୍କର
ଆକାଶେ ମହୀ ଘୋଡ଼ି ହେଲା ନରବର ।
ସାତ୍ୟକିଙ୍କ ବଳ ଅଧିକ କର୍ଣ୍ଣ ଜାଣି
ଦୁର୍ଯ୍ୟୋଧନ ପୃଷ୍ଟେ ରହିଲେ ଧନୁ ଟାଣି ।
ଭୀମ ତାହା ସହି ନ ପାରିଣ କର୍ଣ୍ଣଙ୍କୁ
ଛାଇଦେଲେ ପ୍ରହାରି ମାର୍ଗଣଗଣଙ୍କୁ ।
କର୍ଣ୍ଣ ତା ନ ସହି ଭୀମଙ୍କ ଶର କାଟି
ଧାପେ ଯେ କାଟିଦେଲେ ଭୀମଙ୍କ ଚାପୁଟି ।
ଭୀମଙ୍କ ସାରଥି ଯେ ବାହୁଥିଲା ଘୋଡ଼ା
ତାଙ୍କୁ ମଧ ବିନ୍ଧିଲେ ବାଛି ଶରଭିଡ଼ା ।
ଭୀମ କ୍ରୋଧ ହୋଇଣ ଗଦାକୁ ପିଟିଲେ
ଧ୍ୱଜ ଧନୁ ଭାଙ୍ଗି ସାରଥି ପ୍ରାଣ ନେଲେ ।
ପୁଣି ସେ ଗଦାଘାତେ କର୍ଣ୍ଣ ରଥଚକ
ଭାଙ୍ଗିଣ ଭୀମ ଟେକିଦେଲେ ନିଶଯାକ ।
ଭାଙ୍ଗନ୍ତେ ରଥ ଚକ ରଥେ କର୍ଣ୍ଣ ଥାଇ
ପଛକୁ ପାଦ ଥରେ ନ ଦେଲେ ପକାଇ ।
ସୂର୍ଯ୍ୟ-ରଥ ପରି ସେକାଳେ କର୍ଣ୍ଣ ରଥ
ବହିନେଲେ ଘୋଡ଼ାଏ ଦେଖାଇ ସାମର୍ଥ ।
କ୍ରୋଧ ହୋଇ କର୍ଣ୍ଣ ବିନ୍ଧିଲେ ନାନାକାଣ୍ଡ
ଭୀମଙ୍କୁ ଦେଖାଇବା ପାଇଁ ଯମଦଣ୍ଡ ।
ଭୀମ ମଧ ତାହାଙ୍କୁ ବିଚାରି ସେପରି
ବିନ୍ଧିଲେ କାଣ୍ଡକୁ ରାଜନ ବାଛିକରି ।
ଏହି ସମୟରେ ପାଣ୍ଡବ ନରସାଇଁ
ମତ୍ସ୍ୟ ପାଞ୍ଚାଳଙ୍କୁ ସେ କହିଲେ ଅନାଇଁ ।
ଦେଖ ଆମ୍ଭର ରଥୀବୃନ୍ଦ ହୋଇ ଗୋଟି
ଧୃତରାଷ୍ଟ୍ର ସୈନ୍ୟେ କରନ୍ତି ଶର ବୃଷ୍ଟି ।
ତୁମ୍ଭେମାନେ କାହିଁକି ଅନାଇଁ ରହିଛ
ଯୁଦ୍ଧ କର ଏବେ ହୃଦୟ କର ସ୍ୱଚ୍ଛ ।
ଜିଣିଲେ ଇହଲୋକେ ପାଇବ କୀରତି
ମଲେ ତ ପୂଜିବେ ତୁମ୍ଭଙ୍କୁ ଶଚୀପତି ।
ଏରୂପେ ନୃପ-ଆଜ୍ଞା ପାଇ ସେନାକୁଳ
ତୁମ୍ଭ ଯୋଦ୍ଧାମାନଙ୍କ ସଙ୍ଗେ କଲେ ରୋଳ ।
ପାଞ୍ଚାଳମାନେ ଦ୍ରୋଣ ବୁଢ଼ାଟିକି ବେଢ଼ି
ବିନ୍ଧିଲେ ତୃଣ ମଧୁ ବାଛି କାଣ୍ଡଧାଡ଼ି ।
କେତେ ମହାରଥୀ ଭୀମଙ୍କୁ କରି ଆଗ
ଦ୍ରୋଣଙ୍କର ଉପରେ ବିନ୍ଧିଲେ ଆଶୁଗ ।
ନକୁଳ ସହଦେବ ଭୀମ ଏ କାଳରେ
ଡାକିଲେ ହେ ପାର୍ଥ ଦ୍ରୋଣଙ୍କୁ ମୋର ଖରେ ।
ତୁମ୍ଭର ବାହୁ ସାହା ପାଇଣ ପାଞ୍ଚାଳେ
କାଟି ଦ୍ରୋଣମୁଣ୍ଡ ପକାଇଦେବେ ତଳେ ।
ଏହା ଶୁଣି ଅର୍ଜୁନ ରଥ ଧୁଆଁଇଲେ
କୁରୁସେନାମାନଙ୍କୁ ଯୁଦ୍ଧେ ବଡ଼ାଇଲେ ।
ଧୃଷ୍ଟଦ୍ୟୁମନ ଆଦି ପାଞ୍ଚାଳମାନଙ୍କୁ
ଯୁଦ୍ଧକଲେ ଦ୍ରୋଣ ଦେଖାଇ ବିକ୍ରମକୁ ।
ପାଞ୍ଚାଳମାନେ ଦ୍ରୋଣ ଅସ୍ତ୍ରକୁ ନ ଡରି
ଯୁଦ୍ଧ କଲେ ଦ୍ରୋଣେ ମାରିବା ଇଚ୍ଛାକରି ।
ବାଜିଲେ ହେଲେ କାଣ୍ଡ ପେଲି ଚାଲି ଦାଣ୍ଡେ
ମାଇଲେ କାଣ୍ଡ ଖଣ୍ଡା ଦ୍ରୋଣଙ୍କର ପିଣ୍ଡେ ।
ଦ୍ରୋଣଙ୍କର କାଣ୍ଡେ ପାଞ୍ଚାଳେ ପାଇ ପୀଡ଼ା
ଡକା ପାଡ଼ି ପଛକୁ ପକାଇଲେ ଭଡ଼ା ।
ଦ୍ରୋଣଙ୍କର ବିକ୍ରମ ଦେଖି ପାଣ୍ଡୁ ସୁତେ
କି କରିବା ବୋଲି ଧଇଲେ ଭୟ ଚିତ୍ତେ ।
ମହାରଥୀମାନଙ୍କ ଦେଖିକରି ନାଦ
ଛାଡ଼ିଲେ ପାଣ୍ଡୁ ସୁତେ ଯୁଦ୍ଧେ ଜୟ ଆଶ ।
ମନେ କଲେ ଦ୍ରୋଣ ବିଷମ ଅଗ୍ନି ପ୍ରାୟେ ।
ପୋଡ଼ିବେ ଆମ୍ଭ ସୈନ୍ୟ-ତୃଣକୁ ନିଶ୍ଚୟେ ।

ଅର୍ଜ୍ଜୁନ ତ ଗୁରୁ ବୋଲିଣ ସେ ଦ୍ରୋଣଙ୍କୁ
ନ ମାରିବେ, କିସ ବା ବୋଲିବା ତାହାଙ୍କୁ ।
ଦ୍ରୋଣଙ୍କ ପରି ଆମ୍ଭ ସୈନ୍ୟେ ବଳୀୟାର
ନାହିଁ ତ କେହି କେହି ହୋଇବେ ସଂହାର
ଏହିକାଳେ କୃଷ୍ଣ କହିଲେ ଅର୍ଜ୍ଜୁନଙ୍କୁ
ଶୁଣ ଆହେ ଅର୍ଜ୍ଜୁନ ମୋର ବଚନକୁ ।
ଧନୁ ଧରିଣ ଦ୍ରୋଣ କରୁଥିଲେ ରଣ
ପ୍ରାଣ ପାଇବେ କି ଜାଣ ହେ ନରରାଣ ।
ଦ୍ରୋଣ ଶସ୍ତ୍ର ଛାଡ଼ିଲେ ତୁମ୍ଭ ରାଜ୍ୟ ଅଛି
ନୋହିଲେ ରାଜ୍ୟ ଆଶା ଦିଅ ହେ ମୁରୁଛି
ଧର୍ମ ଛାଡ଼ି ଉପାୟ କଲେ ହେବ ଜୟ
ନୋହିଲେ ଦ୍ରୋଣ ବାଣେ ହୋଇବାଟି କ୍ଷୟ ।
ଅଶ୍ୱଥାମା ମଲେ ତ ନ ଯୁଝିବେ ଦ୍ରୋଣ
ପାଉଛି ମନକୁ ରଥୀରେ ସେ ତ ଟାଣ ।
ତାଙ୍କୁ ଆମ୍ଭେ ବଳରେ ମାରି ନ ପାରିବା
ମଲେଣି ବୋଲି ମିଥ୍ୟା ଦ୍ରୋଣଙ୍କୁ କହିବା ।
କୃଷ୍ଣଙ୍କଠାରୁ ଏହା ଶୁଣି ଅରଜୁନ
ତୁନି ହୋଇ ରହିଲେ ହୋଇଣ ବିମନ ।
ଯୁଧିଷ୍ଠିର ବହୁ କଷ୍ଟରେ ସହି କଲେ
ସେନାମାନେ ଭଲ ହୋଇଲା ଏ ବୋଇଲେ ।
ମାଳବଦେଶ ରାଜା ଇନ୍ଦ୍ରବର୍ମାଙ୍କର
ଅଶ୍ୱଥାମା ନାମରେ ଥିଲା କରୀବର ।
ତାହା ପ୍ରାଣ ଭୀମ ଗଦାରେ କରି ଲୁଟି
ମଲେ ଅଶ୍ୱଥାମା ବୋଇଲେ ମେଲି ପାଟି ।
ଲାଜ ଲାଜ ପାଇଣ ଦ୍ରୋଣଙ୍କ ପାଶକୁ
ଯାଇ ଯେ ଭୀମସେନ ଅନାଇଁ ଦ୍ରୋଣଙ୍କୁ ।
ବୋଇଲେ ହେ ଗୁରୁ କରୁଛୁ କିପାଁ ରଣ
ଅଶ୍ୱଥାମା ତୁମ୍ଭର ପାଇଲେ ମରଣ ।
ଭୀମଙ୍କ ଏ ବଚନ ଶୁଣି ଦ୍ରୋଣ କାନେ
କି ହେଲା ବୋଲି ପଡ଼ି ରହିଲେ ସେ ଛନେ ।
ପୁଣି ଧୈର୍ଯ୍ୟ ହୋଇ ବୋଇଲେ ମୋର ସୁତ
କରିପାରେ ବଳେ ସବୁରି ଗର୍ବ ଚ୍ୟୁତ ।
ତାହାକୁ ମାରିବାକୁ ନାହିଁ ତ କ୍ଷତ୍ରିୟ
କହୁଛି ମିଛ ମୋତେ ପବନ-ତନୟ ।
ଏହିରୂପେ ସେ ଦ୍ରୋଣଗୁରୁ ମନେ କଲେ
ଅଙ୍ଗିରା ଦେଇଥିବା ଧନୁକୁ ଧଇଲେ ।
ବଜ୍ର ସମ ଶରକୁ ଧନୁ ମଧ୍ୟେ ଯୋଖି
ଯୁଝିଲେ ଧୃଷ୍ଟଦ୍ୟୁମ୍ନ ସଙ୍ଗେ ନୋହି ଦୁଃଖୀ ।
ମୁହୂର୍ତ୍ତକେ ଧୃଷ୍ଟଦ୍ୟୁମ୍ନ ଦେଇ ପୀଡ଼ା
ସାରଥିକି କରିଲେ ଯମପୁରେ ଛିଡ଼ା ।
ଆନ ଧନୁକୁ ଦେଖି ଧୃଷ୍ଟଦ୍ୟୁମ୍ନ ବୀର
ଦ୍ରୋଣ ବକ୍ଷସ୍ଥଳେ ବିନ୍ଧିଲେ ତୀକ୍ଷ୍ଣଶର ।
ସେ ଶରେ ପାଇ ପୀଡ଼ା ରଥେ ଦ୍ରୋଣ ବୁଢ଼ା
ବସି ପଡ଼ିଲେ ନ ପାରିଣ ହୋଇ ଛିଡ଼ା ।
ପୁଣି ଦ୍ରୋଣଗୁରୁ ପ୍ରହାରି ଭାଲିକାଣ୍ଡ
କଲେ ଧୃଷ୍ଟଦ୍ୟୁମ୍ନ ଧନୁକୁ ଦୁଇଖଣ୍ଡ ।
ଧୃଷ୍ଟଦ୍ୟୁମ୍ନ ଯେତେକ ଧରୁଥିଲେ ଧନୁ
କାଟୁଥିଲେ ତେତେକ ଭରଦ୍ୱାଜ-ସୂନୁ ।
ଧୃଷ୍ଟଦ୍ୟୁମନଙ୍କ ଦେହକୁ ନବ ରୋପ
ବିନ୍ଧିଲେ ଦ୍ରୋଣଗୁରୁ ଦେଖାଇ ପ୍ରତାପ ।
ଧୃଷ୍ଟଦ୍ୟୁମ୍ନ ଘୋଡ଼ା ପାଖକୁ ଘୋଡ଼ା ନେଇ
ମିଶାଇଦେଲେ ଦ୍ରୋଣ ଯୁଦ୍ଧେ କ୍ରୋଧହୋଇ ।
ଧୃଷ୍ଟଦ୍ୟୁମନଙ୍କର ହେବାକୁ ସଂହାର
ବ୍ରହ୍ମଅସ୍ତ୍ର ପ୍ରହାର କଲେ ଦ୍ୱିଜବର ।
ଦ୍ରୋଣଙ୍କ ଘୋଡ଼ା ତ ଅଟନ୍ତି ଆରକତ
ଧୃଷ୍ଟଦ୍ୟୁମ୍ନ ଘୋଡ଼ା ନିନ୍ଦନ୍ତି ପାରାବତ ।
ଏ ଆଠ ଘୋଡ଼ାଯାକ ହୋନ୍ତେ ମିଶାମିଶି
ବିଜୁଳିଥିବା ମେଘ-ଶୋଭା ଦେଲେ ଧ୍ୱଂସି ।
ଧୃଷ୍ଟଦ୍ୟୁମନଙ୍କର ରଥ ଈଷାବନ୍ଧ
ତୁଲେ ଦ୍ରୋଣଗୁରୁ କାଟିଲେ ଚକ୍ରବନ୍ଧ ।
ଧନୁ ମଧ୍ୟ ତାଙ୍କର କାଟି ପକାଇଲେ
ଯିବୁ କି ଜୀଇ ଆଜି ବୋଲି ଗରଜିଲେ ।
ବିରଥ ହୋଇ ଧୃଷ୍ଟଦ୍ୟୁମ୍ନ ଧରି ଗଦା
ଫିଙ୍ଗିଲେ ଦ୍ରୋଣ ରଥ କରିବାକୁ ପଦା ।
ଦ୍ରୋଣ ସେ ଗଦାଟିକି ଦେଖିକରି ନେତ୍ରେ
ପକାଇଦେଲେ କାଟି କ୍ରୋଧକରି ଗାତ୍ରେ ।
ଗଦାହତ ଦେଖିଣ ଖଡ଼ଗ ଚର୍ମକୁ
ଧଇଲେ ଧୃଷ୍ଟଦ୍ୟୁମ୍ନ ଦ୍ରୋଣେ ମାରିବାକୁ ।
ଭାବିଲେ ଦ୍ରୋଣଙ୍କ ହୋଇଛି ବଧକାଳ
ଘେନିବି ଏହା ପ୍ରାଣ ନ ଛାଡ଼ି ମୁଁ ରୋଳ ।
ଦ୍ରୁପଦସୁତ ଏହା ବିଚାରି ହୃଦୟେ
ଦ୍ରୋଣଙ୍କ ରଥେ ଠିଆହେଲେ ସୂର୍ଯ୍ୟ ପ୍ରାୟେ ।
ଘୋଡ଼ାଙ୍କର ବେକ ଜୁଆଳି ଘୋଡ଼ାଙ୍କରେ
ସଞ୍ଚାର କଲେ ଧୃଷ୍ଟଦ୍ୟୁମ୍ନ ଅତି ଖରେ ।
ଦ୍ରୋଣ-ଆମିଷକୁ ସଞ୍ଚାଣ ପରି ଝାମ୍ପି
ରହିଲେ ଖଣ୍ଡାଫଳା ଧରି ହୋଇ କୋପୀ ।
ଏହି ଛିଦ୍ରେ ଧୃଷ୍ଟଦ୍ୟୁମନ ଘୋଡ଼ାଙ୍କର
ପ୍ରାଣ ନେଲେ ଶକ୍ତି ପ୍ରହାରି ଦ୍ୱିଜବର ।
ଆପଣା ଘୋଡ଼ାଙ୍କର ମରଣକୁ ଦେଖି
ଧୃଷ୍ଟଦ୍ୟୁମନ ରଙ୍ଗ କରିଦୁଇ ଆଖି ।
ଧାଇଁଲେ ଦ୍ରୋଣ ମୁଣ୍ଡ କାଟିବାକୁ ଚାଣ୍ଡେ
ଧରି ହସ୍ତରେ ସେ ରାଜନ ଖଣ୍ଡା ଖଣ୍ଡେ ।
ଭ୍ରାନ୍ତ ଉଦଭ୍ରାନ୍ତ ଯେ ଆବଦ୍ଧ ଆପ୍ଲୁତ
ପ୍ରସୃତ ପରିବୃତ୍ତ ନିବୃତ୍ତ ସମ୍ପାତ ।

ସମୁଦୀର୍ଣ୍ଣ କୌଶିକ ପୁଣି ଯେ ଭାରତ
ସାତ୍ୟକି ଭାବି ମାର୍ଗ ଦେଖାଇ ତୁରିତ ।
ଦ୍ରୋଣଙ୍କର ମୁଣ୍ଡକୁ ହାଣିବାକୁ ଚାଣ୍ଡେ
ଡେଇଁଲେ ଧୃଷ୍ଟଦ୍ୟୁମ୍ନ ଭେଣ୍ଡା ରଣଦାଣ୍ଡେ ।
ଧୃଷ୍ଟଦ୍ୟୁମ୍ନଙ୍କର ଖଡ଼ଗ ଚର୍ମ ମାର୍ଗ
ଦେଖିବା ଲୋକେ ତାଙ୍କୁ ବହିଣ ସରାଗ ।
ବଚନରେ ବୋଇଲେ କ୍ଷତ୍ରିୟଙ୍କ ବୃତ୍ତି
ବୀର ଧୃଷ୍ଟଦ୍ୟୁମ୍ନ ସମଗ୍ରେ ପାଇଛନ୍ତି ।
ଦ୍ରୋଣ ଧୃଷ୍ଟଦ୍ୟୁମନ ଖଡ଼ଗ ଚର୍ମକୁ
କାଟିଲେ ବିନ୍ଧି ଦଶ ଦଶ ମାର୍ଗଣକୁ ।
ଦ୍ରୋଣ ଯେଉଁ କାଣ୍ଡେ କାଟିଲେ ଖଣ୍ଡାଢାଲ
ସେ କାଣ୍ଡ ନ ଜାଣନ୍ତି ଆନ ରଥୀକୁଳ ।
କୃପ ଅର୍ଜ୍ଜୁନ ପୁଣି କର୍ଣ୍ଣ ପ୍ରଦ୍ୟୁମନ
ଅଶ୍ୱଥାମା ଅଭିମନ୍ୟୁ ଯେ ଯୁଯୁଧାନ ।
ଏମାନଙ୍କଠାରେ ରହିଛି ସେହି କାଣ୍ଡ
ପାରନ୍ତି ବଳେ ସେ ପରକୁ ଦେଇ ଦଣ୍ଡ ।
ଏ ଅନ୍ତେ ଧୃଷ୍ଟଦ୍ୟୁମ୍ନ ପ୍ରାଣ ଅପହାର
କରିବାକୁ ଦ୍ରୋଣ ସନ୍ଧିଲେ ଧନୁ ଶର ।
ସାତ୍ୟକି ଦଶ କାଣ୍ଡେ ଦ୍ରୋଣଙ୍କ କାଣ୍ଡୁଟି
ପକାଇଲେ ଧନୁରୁ ନ ଫିଟୁଁ ତା କାଟି ।
ଦୁର୍ଯ୍ୟୋଧନ କର୍ଣ୍ଣ ନୟନେ ଚାହୁଁଥିଲେ
ଧୃଷ୍ଟଦ୍ୟୁମନ ପ୍ରାଣ ସାତ୍ୟକି ରଖିଲେ ।
ସାତ୍ୟକିଙ୍କ ଏ କର୍ମ କୃଷ୍ଣ ଅରଜୁନ
ଦେଖିକରି ବୋଇଲେ ଉତ୍ତମ ଉତ୍ତମ ।
ଅର୍ଜ୍ଜୁନ କୃଷ୍ଣଙ୍କୁ ବୋଇଲେ ଦେଖ ହରି
ସାତ୍ୟକି ଯୁଦ୍ଧେ ଚିତ୍ତ ନେଉଛନ୍ତି ହରି ।
ନକୁଳ ସହଦେବ ଭୀମ ଯୁଧିଷ୍ଠିର
ରକ୍ଷାକାରୀ ସାତ୍ୟକି ହେଲେ ଏହାଙ୍କର ।
ସିଦ୍ଧମାନେ ସାତ୍ୟକିଙ୍କର ଯୁଦ୍ଧ ଦେଖି
ପ୍ରଶଂସା କରୁଛନ୍ତି ଦେଖ ହୋଇ ସୁଖୀ ।
ଦୁଇ କୁଳ ଯୋଦ୍ଧାଏ ସାତ୍ୟକି ବଳକୁ
ମାନି ପୋତୁଅଛନ୍ତି ମସ୍ତକ ତଳକୁ ।
ଏହି ସମୟରେ ତୁମ୍ଭର ରଥୀବୃନ୍ଦ
ଯୁଯୁଧାନ ତୁଲରେ ଆରମ୍ଭିଲେ ଦ୍ୱନ୍ଦ୍ୱ ।
କୃପାଚାର୍ଯ୍ୟ କର୍ଣ୍ଣ ତୁମ୍ଭର ପୁତ୍ରଯାକ
ବାଛି ଯୁଯୁଧାନକୁ ବିନ୍ଧିଲେ ଶାୟକ ।
ଏହା ଦେଖି ନକୁଳ ସହଦେବ ଭୀମ
ସାତ୍ୟକି ପୃଷ୍ଠସାହା ହେଲେ ବହି ପ୍ରେମ ।
କର୍ଣ୍ଣ କୃପ ଦୁର୍ଯ୍ୟୋଧନ ଆଦି ଯେ ରଥୀ
ବିନ୍ଧିଲେ ସାତ୍ୟକିଙ୍କି ଯୁଦ୍ଧେ ହୋଇ ବ୍ୟଥୀ ।
ସାତ୍ୟକି ତୁମ୍ଭ ରଥୀଙ୍କର ଶରବ୍ରାତ
ଶର ପେଷିଣ କ୍ଷଣକରେ କଲେ ହତ ।
କୃପ ଆଦି ରଥୀଙ୍କ ଅସ୍ତ୍ରକୁ ଅସ୍ତ୍ରରେ
ନିବାରି ଦେଲେ ଯେ ସାତ୍ୟକି ଅତି ଖରେ ।
ବୀରମାନଙ୍କର ପଡ଼ନ୍ତେ ଛିଡ଼ି ମୁଣ୍ଡ
ସେ ଶବଦରେ କମ୍ପିଗଲା ଯୁଦ୍ଧକାଣ୍ଡ ।
ରଥ ଧ୍ୱଜ ଭାଜିବାରେ ତ ସଂଖ୍ୟା ନାହିଁ
ହାତୀ ଘୋଡ଼ା ମଲେ କହିବି କେତେ ମୁହିଁ ।
ମରିବାବେଳେ ଦୁଇକୁଳ ପାରି ଡକା
ନିନ୍ଦା କରିଲେ ବାଡ଼ିବଜା ସର୍ପ ଏକା ।
ଏରୂପେ ଘୋର ଯୁଦ୍ଧ ପ୍ରବର୍ତ୍ତିବା ଦେଖି
ଯୁଧିଷ୍ଠିର ରାଜା ହୋଇଣ ମହାସୁଖୀ ।
ସୈନ୍ୟଙ୍କୁ ବୋଇଲେ ଦ୍ରୋଣଙ୍କୁ ଯାଇ ମାର
କରୁ ତ ଛନ୍ତି ଧୃଷ୍ଟଦ୍ୟୁମନ ସମର ।
ଦ୍ରୋଣ ଆସି ତ ମଲା ପରାୟେ ହେଲେନି
ଯୁଦ୍ଧ କର କେହି ନୋହିଣ ଭୟସ୍ଥାନି ।
ତୁମ୍ଭେମାନେ ସମସ୍ତେ ଧୃଷ୍ଟଦ୍ୟୁମ୍ନ ସାହା
ହେଲେ ଦ୍ରୋଣ ମୁଣ୍ଡ କାଟିବ ତାଙ୍କ ବାହା ।
ଏହା ଶୁଣି ପାଣ୍ଡବ ସୈନ୍ୟ ଗୋଟିହୋଇ
ଯୁଝିଲେ ଧୃଷ୍ଟଦ୍ୟୁମ୍ନ ପୃଷ୍ଠ ସାହା ହୋଇ ।
ଦ୍ରୋଣ ଯେ ମରଣକୁ କରିଣ ବରଣ
ଛାଡ଼ିବା କେହି ଯୁଦ୍ଧ ଭାବି କଲେ ରଣ ।
ସେହିକାଳେ କମ୍ପି ଯାଆନ୍ତେ ମହୀତଳ
ଉଲ୍କା ମଣ୍ଡିଦେଲା ଆକାଶ ମଣ୍ଡଳ ।
ଦ୍ରୋଣ ଧରିଥିବା ଅସ୍ତ୍ରଙ୍କରୁ ଯେ ନିଆଁ
ବାହାରିଲା ମଧ୍ୟ ମିଶିଣ ଥିଲା ଧୂଆଁ ।
ଅଦଭୁତେ ଦ୍ରୋଣଙ୍କ ରଥ କଲା ରଡ଼ି
ଦେଖି ତାଙ୍କ ଘୋଡ଼ା ରହିଲେ ଅଶ୍ରୁ ଛାଡ଼ି ।
ବାମ ବାହୁ ବାମ ନୟନ ଦ୍ରୋଣଙ୍କର
ସ୍ଫୁରିଲା ହେବାକୁ ମରଣ ନରବର ।
ଧୃଷ୍ଟଦ୍ୟୁମନଙ୍କୁ ସେ ଦେଖିଣ ବିମନା
ହେଲେ ଯୁଦ୍ଧରେ ଦ୍ରୋଣେ ତେଡ଼େ ମହାମନା ।
ଋଷିଙ୍କ ତୁଲେ ଦ୍ରୋଣ ଯିବାକୁ ସ୍ୱର୍ଗକୁ
ଭାବିକରି ଯୁଝିଲେ ଦେଖାଇ ବଳକୁ ।
ଚାରିପଟେ ଦ୍ରୋଣଙ୍କୁ ସେନା ବେଢୁଥିଲେ
ଦ୍ରୋଣ ମତ୍ତହସ୍ତୀ ତା ବଳେ ମନ୍ଥିଦେଲେ ।
ସହସ୍ରବିଂଶ ଯାଏ କ୍ଷତ୍ରି କରି ନାଶ
ପୁଣି ଦଶଅୟୁତ ସେନା କଲେ ଧ୍ୱଂସ ।
କ୍ଷତ୍ରିୟମାନଙ୍କୁ ଅଭାବ ମନେ ଧରି
ବ୍ରହ୍ମଅସ୍ତ୍ରକୁ କଲେ ଦ୍ରୋଣ କୋପ କରି ।
ଧୃଷ୍ଟଦ୍ୟୁମ୍ନ ଦ୍ରୋଣଙ୍କ ଶାୟକେ ବିରଥ
ହୋଇ ତ ଥିଲେ, ଭୀମ ହେଲେ ତାଙ୍କ ସାଥ ।
ଭୀମ ଧୃଷ୍ଟଦ୍ୟୁମ୍ନ ହାତକୁ ଧରି ହାତେ
ବସାଇଲେ ନେଇଣ ଆପଣାର ରଥେ ।

ଦ୍ରୋଣ ଶୁଣୁଥିଲେ, କହିଲେ ଏ ବଚନ
ତୁମ୍ଭେ ହେ କରିପାର ଦ୍ରୋଣଙ୍କୁ ନିଧନ ।
ଅଛୁ ତ ସାହାହୋଇ ଆମ୍ଭେମାନେ ପଛେ
ମାର ଦ୍ରୋଣ ଗୁରୁଙ୍କୁ ତୁମ୍ଭେ ହୃଦ ସ୍ୱଚ୍ଛେ ।
ଭୀମଙ୍କ ଏ ବଚନେ ଦ୍ରୁପଦନନ୍ଦନ
ଧଇଲେ ବାଛି ଭାରସୁହା ଶରାସନ ।
ଦିବ୍ୟ ଧନୁବରକୁ କରରେ ଓଟାରି
ବିନ୍ଧିଲେଟି ଦ୍ରୋଣ ମରଣ ଇଚ୍ଛା କରି ।
ବ୍ରହ୍ମଅସ୍ତ୍ର ଆଦି ଅସ୍ତ୍ରକୁ ଧୃଷ୍ଟଦ୍ୟୁମ୍ନ
ଦ୍ରୋଣ କଲେ ଜାଣି କରନ୍ତେ ଆୟୋଧନ ।
ଧୃଷ୍ଟଦ୍ୟୁମ୍ନ ଶତେ ଆଚ୍ଛନ୍ନ ହେଲେ ଗୁରୁ
ତେବେ ହେଲେ ତ ଯୁଦ୍ଧ କଲେ ନୋହି ଭୀରୁ ।
ଧୃଷ୍ଟଦ୍ୟୁମ୍ନ ମଧ ଦ୍ରୋଣଙ୍କର ଶର କାଟି
ଯୁଝିଲେ ଦ୍ରୋଣଙ୍କ ରଥକୁ ରଥ ଯୋଟି ।
ଧୃଷ୍ଟଦ୍ୟୁମ୍ନ ଶରେ ଦ୍ରୋଣଙ୍କ ଘୋଡ଼ାଏ
ଘୋଡ଼ି ହେଲେ, କାହାକୁ ନ ଦିଶିଲା ରାୟ ।
ଦ୍ରୋଣ ତାହା ସହି ନ ପାରି ଧୃଷ୍ଟଦ୍ୟୁମ୍ନ-
କର ଧନୁକୁ କାଟିପକାଇ ବହନ ।
ଧୃଷ୍ଟଦ୍ୟୁମନଙ୍କର ମରଣକୁ ଶର
ପ୍ରହାରନ୍ତେ ବ୍ୟଥା ବଢ଼ିଲା ତାହାଙ୍କର ।
ଏ କାଳେ ପାଞ୍ଚାଳେ ଦ୍ରୋଣଙ୍କ ଚାରି ପଟେ
ରହି କାଣ୍ଡମାନ ବିନ୍ଧିଲେ ପଟପାଟେ ।
ପାଞ୍ଚାଳଙ୍କ କାଣ୍ଡେ ଆବୃତ ଦ୍ରୋଣ ହୋଇ
ରହନ୍ତେ ନ ଦେଖିଲୁ ଦ୍ରୋଣେ ନରସାଇଁ ।
ଦ୍ରୋଣ କ୍ରୋଧ ହୋଇ ବରଗି ବ୍ରହ୍ମଶର
ନେଲେ ଯୁଦ୍ଧେ ପ୍ରାଣ ପାଞ୍ଚାଳମାନଙ୍କର ।
କୁଣ୍ଡଳ ତୁଲେ ମୁଣ୍ଡ ଖଡ଼ଗ ତୁଲେ ଭୁଜ
କାଟିପକାଇଲେ ବାଣରେ ଦ୍ରୋଣ ଦ୍ୱିଜ ।
ହାତୀ ଘୋଡ଼ାମଡ଼ା ଉପରେ ହୋଇ ଛିଡ଼ା
ଯୁଦ୍ଧ କଲେ ପଦାତି ବିନ୍ଧି ଶରଭିଡ଼ା ।
ଦୁଇଦଶସହସ୍ର ପାଞ୍ଚାଳମାନଙ୍କୁ
ଦେଖାଇଲେ ଦ୍ରୋଣ ଯମଙ୍କ ନଗରକୁ ।
ବସୁଦାନ ରାଜାଙ୍କ ମୁଣ୍ଡକୁ କାଟିଲେ
ମତ୍ସ୍ୟବଳ ପାଞ୍ଚଶ ଜୀବନ ଲୁଟିଲେ ।
ସହସ୍ର ଛଅଯାଏ ମାଇଲେ ସଞ୍ଜୟ
ହାତୀ ଘୋଡ଼ା ଦୁଇ ଅୟୁତ କଲେ କ୍ଷୟ ।

## ଦ୍ରୋଣଙ୍କର ଦେହତ୍ୟାଗ

କ୍ଷତ୍ରିୟମାନଙ୍କର ଏରୂପେ ଅଭାବ
କରନ୍ତେ ଦ୍ରୋଣ, ଋଷିମାନେ ଛାଡ଼ି ଭାବ ।
ଦ୍ରୋଣ ସମୀପକୁ ଆସିଲେ ଗୋଟି ହୋଇ
ତାଙ୍କ ନାମ କହିବା ଶୁଣ ନରସାଇଁ ।
ଜମଦଗ୍ନି ଭରଦ୍ୱାଜ ଯେ ବିଶ୍ୱାମିତ୍ର
ଗୌତମ ଅତ୍ରିଗର୍ଗ କଶ୍ୟପ ସିକତ ।
ବଶିଷ୍ଠ ବାଳଖିଲ୍ୟ ଭୃଗୁ ଅଙ୍ଗିରସ
ଏମାନେ ଆସିଟି ମିଳିଲେ ଦ୍ରୋଣ ପାଶ ।
ଦ୍ରୋଣଙ୍କୁ ବ୍ରହ୍ମଲୋକ ନେବା ମନେ କଲେ
ଏ ବଚନ ଦ୍ରୋଣ ଗୁରୁଙ୍କୁ ସେ କହିଲେ ।
ଅଧର୍ମରେ ତୁମ୍ଭେ କ୍ଷତ୍ରିୟ କଲ ବଧ
ଏବେ ଆମ୍ଭ କଥାରେ କର ମନବୋଧ ।
ଆୟୁଧ ପକାଇଣ ଆସ ଆମ୍ଭଠାକୁ
ନ କର ଯୁଦ୍ଧ ଘେନି ଆମ୍ଭ ବଚନକୁ ।
ବେଦ ବେଦାଙ୍ଗରେ ତ ଅଟ ପାରଙ୍ଗମ
ବ୍ରାହ୍ମଣ ହୋଇ କିପାଁ କରୁଛ ସଂଗ୍ରାମ ।
ମନୁଷ୍ୟ ଲୋକେ ଆଉ ରହିବାକୁ କାଳ
ତୁମ୍ଭର ନାହିଁ ଜାଣ ଭରଦ୍ୱାଜବାଳ ।
ଅସ୍ତ୍ର ନ ଜାଣିବା ଲୋକଙ୍କୁ ବ୍ରହ୍ମଅସ୍ତ୍ର
କରିଣ ଯୋଡ଼ି ପକାଇଲ ତାଙ୍କ ଗାତ୍ର ।
ଏଥିରୁ ଅକରମ ହୋଇ ନାହିଁ କଥା
ବ୍ରାହ୍ମଣ ପୁତ୍ର ହୋଇ ହେବ ମହାରଥା ।
ଏଣିକି ଏପରି କରମ କଲେ ତୁମ୍ଭେ
ଧର୍ମ ବୁଡ଼ାଇବ କହୁଛୁଁ ଜାଣ ଆମ୍ଭେ ।
ଏରୂପେ ଋଷିଙ୍କ ବଚନ ଦ୍ରୋଣ ଶୁଣି
ଭୀମସେନ ବଚନ ମନେ ମନେ ଗୁଣି ।
ଧୃଷ୍ଟଦ୍ୟୁମନଙ୍କୁ ଦେଖିଣ ଆଗେ ଦ୍ରୋଣ
ମନେ କଲେ ନିଶ୍ଚେ ଟି ଗଲା ମୋ ପରାଣ ।
ଯୁଧିଷ୍ଠିର ରାଜାଙ୍କୁ ସୁତ ମରିବାର
ପଚାରିବାକୁ ଚିତ୍ତ କଲେ ଦ୍ୱିଜବର ।
ମନେ କଲେ ବାଲ୍ୟରୁ ଧର୍ମଙ୍କ ନନ୍ଦନ
କହନ୍ତି ମିଥ୍ୟା ବୋଲି ଶୁଣିନାହିଁ କାନ ।
ସେ ଯେବେ ମୋର ଆଗେ ଅଶ୍ୱଥାମା ମୃତ
କହିବେ, ତେବେ ମୁଁ କରିବି କଥା ସତ ।
ଦ୍ରୋଣଙ୍କର ଏ ଚିତ୍ତ ଜାଣି ଚକ୍ରପାଣି
ଯୁଧିଷ୍ଠିର ରାଜାଙ୍କୁ କହିଲେ ଏ ବାଣୀ ।
ଦ୍ରୋଣ ହାତରେ ଯେବେ ଥିବ ଧନୁଶର
ତାହାଙ୍କୁ ଜିଣି ନ ପାରନ୍ତି ସୁରାସୁର ।
ତୁମ୍ଭେ ପାଞ୍ଚଭାଇ ମନୁଷ୍ୟ ଜନ୍ମ ପାଇ
ଅଛ, ତାଙ୍କୁ ଯୁଦ୍ଧରେ ଠଉରିବ କେହିଁ ।
ଅଶ୍ୱଥାମା ମଲେଣି ବୋଲି ଦ୍ରୋଣ ଆଗେ
କହି ଧନୁଶର ଛଡ଼ାଇ ଦିଅ ବେଗେ ।
ପ୍ରାଣ ପାଇଁ ମିଥ୍ୟା କହିଲେ ନରସାଇଁ
ମିଥ୍ୟା ଦୋଷ ଏଥେଁ ଟିକିଏ ନ ଲାଗଇ ।
ଏ କାଳେ ରାଜାଙ୍କୁ କହିଲେ ବୃକୋଦର
ମାଳବ ଦେଶ ରାଜା ଇନ୍ଦ୍ରବର୍ମାଙ୍କର ।

ଅଶ୍ୱତ୍ଥାମା ନାମେ ଥିଲା ତ ହାତୀଟାଏ
ତାହାକୁ ଗଦାରେ ମୁଁ ମାରିଣ ହେ ରାୟେ ।
ଦ୍ରୋଣଙ୍କ ଆଗରେ କହିଲି ତୁମ୍ଭ ସୁତ
ଅଶ୍ୱତ୍ଥାମା ହୋଇଲେ ଯୁଦ୍ଧଦାଣ୍ଡେ ହତ ।
ମୋହ କଥାକୁ ଦ୍ରୋଣ ପରତେ ନ କଲେ
ଧନୁ ଧରିଣ ଆମ ସୈନ୍ୟଙ୍କୁ ମାଇଲେ ।
ଯେରୂପେ କୃଷ୍ଣ କହୁଅଛନ୍ତି ତୁମ୍ଭଙ୍କୁ
ସେରୂପେ ତୁମେ କହ ପୁଚ୍ଛିଲେ ଦ୍ରୋଣଙ୍କୁ ।
ନୋହିଲେ ଆନ ମତେ ନାହିଁ ପରିତ୍ରାଣ
ମାରିବଟି ଆମ୍ଭ ବଳକୁ ସେ ବ୍ରାହ୍ମଣ ।
ସତ୍ୟ କହ ବୋଲିଣ ଦ୍ରୋଣ ତ ତୁମ୍ଭଙ୍କୁ
ଜାଣନ୍ତି ପ୍ରତ୍ୟେ ଯିବେ ସେ ତୁମ୍ଭ କଥାକୁ ।
କୃଷ୍ଣ ଭୀମ ଦୁହିଙ୍କ ବଚନକୁ ଘେନି
କହିବି ମିଛ ଭାବି ରହିଲେ ସେ ତୁନି ।
ଯୁଧିଷ୍ଠିର ନୃପେ‌ଂବୋଇଲେ ଗୁରୁ ଦ୍ରୋଣ
ବାଲ୍ୟରୁ ତ ସତ୍ୟ ପାଳିଛ ନରରାଣ ।
ଥାଉ ମିଥ୍ୟା ଉଚ୍ଚାରିବାର ତୁମ୍ଭ ତୁଣ୍ଡ
ସେ ଦୋଷ ଛୁଇଁ ନ ପାରିଛି ତୁମ୍ଭ ପିଣ୍ଡ ।
ତୁମ୍ଭଙ୍କୁ ତୁମ୍ଭେ ଏକା ଅଟ ପଟାନ୍ତର
ସତ୍ୟ କହିବାରେ ରାଜନ ମନେକର ।
ମୋ ସୁତ ଅଶ୍ୱତ୍ଥାମା ମୃତ ହୋଇବାର
ଗୋଚର ଥିଲେ ମୋତେ କହ ନରବର ।
ଯୁଧିଷ୍ଠିର ରାଜା ଭୟରେ ଆସକତି
ହୋଇଣ ଛାଡ଼ିଦେଇ ଧରମରୁ ମତି ।
ବ୍ୟକ୍ତ କରି କହିଲେ ଅଶ୍ୱତ୍ଥାମା ହତ
ଅବ୍ୟକ୍ତେ କହିଲେ କୁଞ୍ଜର ହେଲା ମୃତ ।
ଆଙ୍ଗୁଳ ଚାରି ଛାଡ଼ି ଶୂନ୍ୟ ଯୁଧିଷ୍ଠିର
ରଥ ତ ସବୁଦିନେ କରଇ ସଞ୍ଚାର ।
ଗୁରୁଙ୍କ ଆଗେ ମିଥ୍ୟା କହିଦେବାକ୍ଷଣି
ଲାଗିଲା ତାଙ୍କ ରଥ କ୍ଷୌଣୀରେ ସେକ୍ଷଣି ।
ଯୁଧିଷ୍ଠିର ମୁଖରୁ ଶୁଣି ଏ ବଚନ
ସତ୍ୟ ତା ମଣି ଭରଦ୍ୱାଜଙ୍କ ନନ୍ଦନ ।
ପ୍ରିୟ ପ୍ରାଣରୁଟି ଆଶାକୁ ଛାଡ଼ିଦେଲେ
ପାଣ୍ଡବଙ୍କୁ ଅପ୍ରାଧ କଲି ମନେକଲେ ।
ଋଷିଙ୍କ ବଚନ କରନ୍ତେ ସୁମରଣା
ଯୁଝିବାକୁ ତ ବୁଦ୍ଧି ହୋଇଗଲା ବଣା ।
ଧୃଷ୍ଟଦ୍ୟୁମ୍ନନଙ୍କୁ ଦେଖି କରିଣ ଆଗେ
ଦ୍ରୋଣଗୁରୁ ରଖିଲେ ପ୍ରାଣ କଣ୍ଠଭାଗେ ।
ଧୃଷ୍ଟଦ୍ୟୁମ୍ନ ତ ଦ୍ରୋଣଙ୍କର ହତ ପାଇଁ
ଅଗ୍ନିକୁଣ୍ଡ ଜନମିଥିଲେ ନରସାଇଁ ।
ଦ୍ରୋଣଙ୍କର ଏ ରୀତି ଜାଣି ସେ ଜଇତ୍ର-
ନାମରେ ଧନୁବର କରି କରଗତ ।
ଦୃଢ଼ କରିଣ ଗୁଣ ଦେଇ ଦୁଇ ହୁଳେ
ସର୍ପ ପରି ସେ ଶର ଧରି କରତଳେ ।
ଦ୍ରୋଣଙ୍କୁ ମାରିବାକୁ ହୋଇଣ ଉଦ୍ୟତ
ଧନୁ ମଧ୍ୟେ ଶରକୁ ସନ୍ଧିଲେ ତୁରିତ ।
କଟକଟ କରି ଆଣନ୍ତେ ଶର ଝିଙ୍କି
ନିନ୍ଦିଲା ସେହି ଶର ସୂର୍ଯ୍ୟଙ୍କ ରଶ୍ମିକି ।
ତା ଦେଖି ତୁମ୍ଭ ସେନା କରି ମହାଭୟ
ବୋଇଲେ ଧୃଷ୍ଟଦ୍ୟୁମ୍ନ କଲେ ଦ୍ରୋଣକ୍ଷୟ ।
ଧୃଷ୍ଟଦ୍ୟୁମ୍ନ ଶରକୁ ଝିଙ୍କିବାର ଦେଖି
କାଳ ହେଲା ଭାବିଣ ଦ୍ରୋଣ ହେଲେ ଦୁଃଖୀ ।
ସେ ଅସ୍ତ୍ରକୁ ନିବାରିବାକୁ ଯତ୍ନବନ୍ତ
ହେଲେ ଦ୍ରୋଣ, ଅସ୍ତ୍ର ନୋହିଲେ ଉପଗତ ।
ସେ ସରିକି ଜାଣ ପହର ତିନି ବେଳ
ସରିଲା ଦ୍ରୋଣଙ୍କ ତୂଣରୁ ଶରକୁଳ ।
କ୍ଷୀଣ ହୋଇଲା ଶସ୍ତ୍ର ନ ସ୍ଫୁରିଲା ଅସ୍ତ୍ର
ତେବେ ହେଲେ ଯୁଝିଲେ ଭରଦ୍ୱାଜ-ପୁତ୍ର ।
ଋଷିମାନଙ୍କର ତେଜରୁ ଏଢ଼େ କଥା
କଲେଟି ଯୁଦ୍ଧେ ଜାଣ ଦ୍ରୋଣ ମହାରଥା ।
ଭୀମ ତାହା ସହି ନ ପାରି କ୍ରୋଧ ହୋଇ
ଦ୍ରୋଣଙ୍କ ରଥ ପାଖେ ରଥକୁ ରଖାଇ ।
କହିଲେ ଆହେ ଗୁରୁ ହୋଇଣ ବ୍ରାହ୍ମଣ
ଯୁଦ୍ଧ କରିବାରୁ କ୍ଷତ୍ରିୟେ ମଲେ ଜାଣ ।
ବ୍ରାହ୍ମଣମାନଙ୍କ ଅହିଂସା ବଡ଼ ଧର୍ମ
ତୁମ୍ଭେ ତା ଛାଡ଼ି କିପାଁ ଅର୍ଜିନ ଅଧର୍ମ ।
ଏକା ପୁଅ ପାଇଁ ବହୁତ ଲୋକ ପ୍ରାଣ
ଘେନିଲ ତୁମ୍ଭେ ଆଜି ପେଷି ବ୍ରହ୍ମବାଣ ।
ଦ୍ୱିଜକୁଳେ ଜନ୍ମିତ କ୍ଷତ୍ରିୟଙ୍କ ନାଶ
କଲ, ଲାଜ ନାହିଁ, କହିବୁଁ ଆମ୍ଭେ କିସ ।
ଯୁଧିଷ୍ଠିର ରାଜା ତ ତୁମ୍ଭଙ୍କୁ କହିଲେ
ଆଜି ଅଶ୍ୱତ୍ଥାମା ଯୁଦ୍ଧରେ ନାଶଗଲେ ।
ସେ କଥାରେ ବିଶ୍ୱାସ ନ କରି କିପାଇଁ
ଯୁଝୁଅଛ ଦ୍ରୋଣ ହେ, କହ ତା ବତାଇ ।
କହନ୍ତେ ଏହା ଭୀମ, ଯୁଦ୍ଧୁଁ ଭାଙ୍ଗି ମତି
ରହିଲେ ହେ ରାଜନ ଦ୍ରୋଣ ହୋଇ ଶାନ୍ତି ।
ମନ କଲେ ବା ଅସ୍ତ୍ର ଛାଡ଼ିଦେବା ଆଜ
ଯୁଦ୍ଧ କଲେ ଏଣିକି ଉପୁଜିବ ଲାଜ ।
ଏହିରୂପେ ଅନେକ ଭାବି ଦ୍ରୋଣ ମନେ
କହିଲେ କର୍ଣ୍ଣ ଦୁର୍ଯ୍ୟୋଧନଙ୍କୁ ପ୍ରସନ୍ନେ ।
ଯତ୍ନ କରିଣ ତୁମ୍ଭେମାନେ କର ଯୁଦ୍ଧ
ମୋର ଆଉ ଯୁଦ୍ଧେ ନାହିଁଟି ଜାଣ ସଧ ।
ମଙ୍ଗଳ ହୋଇଥାଉ ତୁମମାନଙ୍କର
ଅସ୍ତ୍ର ଛାଡ଼ିବା କାଳ ହେଲାଟି ମୋହର ।

କର୍ଣ୍ଣ ଦୁର୍ଯ୍ୟୋଧନଙ୍କୁ ଦ୍ରୋଣ ଏହା କହି
ଡାକିଲେ ଅଶ୍ୱଥାମା ଅଛୁ କିରେ ଜୀଇ ।
ପାଣ୍ଡବମାନଙ୍କଠାରୁ ଭୟ ଦୂର
କରି ଯୋଗାସନେ ବସିଲେ ଦ୍ୱିଜବର ।
ଧନୁଶରକୁ କର ବେନିରୁ ପକାଇ
ରଖିଲେ ଦୁଇ ଆଖି ଭାଲପଟେ ନେଇ ।
ସେହିକାଳେ ଧୃଷ୍ଟଦ୍ୟୁମ୍ନ ଖଣ୍ଡା ଧରି
ଦ୍ରୋଣଙ୍କ ରଥରେ ଚଢ଼ିଲେ ଦଣ୍ଡଧାରୀ ।
ଧୃଷ୍ଟଦ୍ୟୁମ୍ନ ବଶ ହୁଅନ୍ତେ ଗୁରୁ ଦ୍ରୋଣ
ହାହା ରଡ଼ିକଲେ ସକଳ ପ୍ରାଣୀଗଣ ।
ଧୃଷ୍ଟଦ୍ୟୁମନଙ୍କର ବିକ୍ରମକୁ ଚାହିଁ
ଧିକ୍କାରି ଗାଳିଦେଲେ ଲୋକେ ନରସାଇଁ ।
ଦ୍ରୋଣ ଅସ୍ତ୍ର ଛାଡ଼ିଣ ଚକାସନ ମାଡ଼ି
ବସି ଯୋଗମାର୍ଗରେ ଦେଲେ ପ୍ରାଣ ଛାଡ଼ି ।
ଜ୍ୟୋତିରୂପେ ଦ୍ରୋଣଙ୍କ ଜୀବ ରଷିଙ୍କର
ସଙ୍ଗତେ ରହିଲା ଆକାଶେ କରି ଘର ।
ସେ କାଳେ ଆକାଶେ ଦିଶିଲା ଏ ଆଶ୍ଚର୍ଯ୍ୟ
ହେଲେ କି ଏକାବେଳେ ଉଦେ ବେନି ସୂର୍ଯ୍ୟ ।
ତେବେ ଆକାଶକୁ ଏରୂପେ ମଣ୍ଡି ଦ୍ରୋଣ
ଗଲେ ବହୁ ଲୋକକୁ ଲଗାଇ ଗହଣ ।
ଦ୍ରୋଣଙ୍କର ଯିବାର ଯେଉଁ ପାଞ୍ଚଜଣ
ଦେଖିଛୁଁ, ତାଙ୍କ ନାମ ଶୁଣ ନରରାଣ ।
କୃଷ୍ଣ ଅରଜୁନ ଯେ କୃପ ଯୁଧିଷ୍ଠିର
ମୋତେ ମିଶି ପାଞ୍ଚେ ଦେଖିଲୁଁ ମନେକର ।
ଦୁଇସେନା ଯାକରେ ଯେତେ ଥିଲେ ଜୀଇ
ଦ୍ରୋଣ ପ୍ରାଣ ଯିବା କାହାକୁ ଜଣା ନାହିଁ ।
ଧୃଷ୍ଟଦ୍ୟୁମ୍ନ ଦ୍ରୋଣଙ୍କ ଧରନ୍ତେଣ ବାଳ
ନିନ୍ଦା କରୁଥିଲେ ସେ ଦୁଇ କୁଳ ବଳ ।
ନ ମାନି ଧୃଷ୍ଟଦ୍ୟୁମ୍ନ ପ୍ରହାରି ଖଣ୍ଡାଟି
ଦ୍ରୋଣଙ୍କର ମୁଣ୍ଡକୁ ପକାଇଲେ କାଟି ।
ମହତ ହରଷରେ ହୋଇଣ ଯୁକତ
ସିଂହନାଦ କରିଣ ଦ୍ରୁପଦଙ୍କ ସୁତ- ।
ଖଣ୍ଡାକୁ ମସ୍ତକେ ବୁଲାଇ ବେଢ଼ା କେତେ
ବୋଇଲେ ଦ୍ରୋଣମଲେ ଦେଖ ମୋର ହସ୍ତେ ।
କର୍ଣ୍ଣଙ୍କ ବାଳଯାକ ଯାଇଥିଲା ପାଚି
ତୁମରି ନିମନ୍ତେରେ ଦ୍ରୋଣ ଧନୁ ଆଞ୍ଚି ।
ମହତଯୁଦ୍ଧ କରି ହରାଇଲେ ପ୍ରାଣ
ହୋଇଥିଲା ଚାରିଶ ବର୍ଷ ତାଙ୍କୁ ଜାଣ ।
ହାଣିବା ସମୟେ ଦ୍ରୋଣଙ୍କୁ ଧୃଷ୍ଟଦ୍ୟୁମ୍ନ
ଡକା ପାଡ଼ିଣ ବୋଲୁଥିଲେ ଅରଜୁନ ।
ଦ୍ରୋଣ ମୁଣ୍ଡ ନ କାଟି ବାନ୍ଧି ତାଙ୍କୁ ଆଣ
ତୁମ୍ଭ ଆମ୍ଭର ତ ପୂଜ୍ୟ ତୁମ୍ଭେ ଜାଣ ।
ତୁମ୍ଭ ସୈନ୍ୟଯାକ ନ ମାର ବୋଲି ରଡ଼ି
ଛାଡୁଥିଲେ ତେବେ ହାଣିଲେ ଖଣ୍ଡା କାଢ଼ି ।
ଛିଣ୍ଡାଇ ମୁଣ୍ଡ ଦ୍ରୋଣ ପଡ଼ିଯାନ୍ତେ ତଳେ
ଉଦୟ ସୂର୍ଯ୍ୟ ପରି ମଣିଲୁଁ ତ ଡୋଳେ ।
ଧୃଷ୍ଟଦ୍ୟୁମ୍ନ କ୍ରୋଧରେ ଦ୍ରୋଣଙ୍କ ମୁଣ୍ଡକୁ
ଫିଙ୍ଗିଦେଲେ ତୁମ୍ଭର ଲୋକଙ୍କ ଆଗକୁ ।
ଦ୍ରୋଣଙ୍କର ମୁଣ୍ଡକୁ ଦେଖି ତୁମ୍ଭ ଲୋକେ
କାନ୍ଦି ପକାଇଲେ ପଛକୁ ସକସକେ ।
ବେଦବ୍ୟାସ ପ୍ରସାଦେ ଦ୍ରୋଣ ବ୍ରହ୍ମଲୋକ
ଯିବାର ଜାଣିଲି ମୁଁ ଅବନୀନାୟକ ।
ବିଧୂମ ଉଲ୍କା ପରି ଦ୍ରୋଣ ଆକାଶରେ
ବାହାରିଥିଲେ ରାୟେ ଦେଖିଲୁଁ ନେତ୍ରରେ ।
ମରନ୍ତେ ଦ୍ରୋଣ ତୁମ୍ଭ ସୈନ୍ୟ ନିରୁତ୍ସାହା
ହୋଇ ବିଚାରିଲେ ବଚନେ ଆହା ଆହା ।
ମୃତ ପରି ତୁମ୍ଭର ଲୋକଯାକ ରହି
କହି ନ ପାରିଲେ ତୁଣ୍ଡରେ କଥା କେହି ।
ଭୀଷ୍ମ ଦ୍ରୋଣେ ହୀନ ହୁଅନ୍ତେ କୁରୁସେନା
ମଲାଇଁ ନିଶ୍ଚେ ବୋଲି ହୋଇଲେ ବିମନା ।
ଦ୍ରୋଣଙ୍କର ଦେହକୁ କରିବାକୁ ଦାହ
ଖୋଜିଲେ ରାଜାମାନେ ବହି ଅତି ସ୍ନେହ ।
ଲକ୍ଷ ଲକ୍ଷ କବନ୍ଧେ ପୂରିଥିଲା ମହୀ
ଏଣୁ ଦ୍ରୋଣ ଶବକୁ ପାଇଲେ ସେ ନାହିଁ ।
ତୁମ୍ଭଠାରୁ ପାଣ୍ଡବେ ଜୟ-ଶିରୀ ଲୁଟି
କରିଣ ଗରଜିଲେ ମେଲିଦେଇ ପାଟି ।
ମୃଦଙ୍ଗ ଭେରୀ ଶଙ୍ଖ ଗୋମୁଖ ଆନକ
ବଜାଇଲେ ହସି ପାଣ୍ଡବ ଯୋଦ୍ଧାଯାକ ।
ଭୀମ ଧୃଷ୍ଟଦ୍ୟୁମନ ପୋଟଳା ପୋଟଳି
ହୁଅନ୍ତେ ପଡ଼ିଲାଟି ହର୍ଷ ଜାଣ ବଳି ।
ସନ୍ତୋଷ ହୋଇ ଭୀମ ଧୃଷ୍ଟଦ୍ୟୁମ୍ନ ଆଗେ
କହିଲେ ଏ ବଚନ ଅତ୍ୟନ୍ତ ସରାଗେ ।
କର୍ଣ୍ଣ ଦୁର୍ଯ୍ୟୋଧନ କରିବା ଯେବେ ହତ
ଏଥୁଁ ତେବେଟି ବଳି ପଡ଼ିବ ଉଷତ ।
ଏରୂପେ ଧୃଷ୍ଟଦ୍ୟୁମ୍ନ ଆଗେ ଭୀମ କହି
ବାହୁସ୍ଫୋଟ କରି କମ୍ପାଇଦେଲେ ମହୀ ।
ଭୀମଙ୍କ ବାହୁସ୍ଫୋଟ ଶୁଣି ତୁମ୍ଭ ଲୋକ
ପଳାଇଲେ ଅସ୍ତ୍ର ପକାଇ ଲଭି ଦକ ।
ମରନ୍ତେ ଦ୍ରୋଣ ତୁମ୍ଭ ସୈନ୍ୟମୁଖ-ପଦ୍ମେ
ଅଶ୍ରୁ-ମଧୁ ପୂରିତ ରହିଲା ଅଛଦ୍ମେ ।
ହତୋତ୍ସାହ ହୋଇ ଆରତେ ପାଡ଼ି ଡକା
ରହିଲେ ସେନା ଦୁର୍ଯ୍ୟୋଧନେ ବେଢ଼ି ଏକା ।
କ୍ଷୁଧା ତୃଷା ସୂର୍ଯ୍ୟ ତାପରେ ତୁମ୍ଭ ଲୋକ-
ଯାକ ହୋଇଲେ ଶ୍ରାନ୍ତ ସେକାଳେ ଅଧିକ ।

ଇନ୍ଦ୍ରଙ୍କର ଅଜେୟ ସୂର୍ଯ୍ୟଙ୍କ ପତନ
ମେରୁଙ୍କ ବିପର୍ଯ୍ୟୟ ସମୁଦ୍ର ଶୋଷଣ ।
ପରାୟେ ଦ୍ରୋଣଙ୍କ ମରଣ ତୁମ୍ଭ ସେନା
ମଣି ହେଲେ ଯୁଦ୍ଧରେ ମହତବିମନା ।
ଦ୍ରୋଣଙ୍କ ମରିବାର ଶୁଣିଣ ଶକୁନି
ପଳାଇଲେ ଯୁଦ୍ଧ ନ କରି ହୋଇ ତୁନି ।
କର୍ଣ୍ଣ ନିଜ ସୈନ୍ୟଙ୍କୁ ଘେନିଣ ସଙ୍ଗତେ
କି ଯୁଝିବି ବୋଲିଣ ଭାଜିଲେ ତୁରିତେ ।
ମଦ୍ରଦେଶ ରାଜା ଚାହିଁଣ ଚାରିପଟେ
ପଳାଇଲେ ଘୋଡ଼ାଙ୍କୁ ଦଉଡାଇ ଆଣ୍ଟେ ।
କଷ୍ଟ କାଳ ହୋଇଲା ବୋଲି କୃପ ବୋଲି
ପଛକୁ ଭାଜିଲେ ସେନାଙ୍କୁ ପେଲି ପେଲି ।
ବାହ୍ଲିକ ଅରଚ୍ଛଜ କଳିଙ୍ଗସେନା ସଙ୍ଗେ
ଘେନି କୃତବର୍ମା ଭାଜିଲେ ରଣରଙ୍ଗେ ।
ଶକୁନିର ପୁଅ ଯେ ଉଲୁକ ପାଇକ
ଧରି ପଳାଇଗଲା ହୋଇ ଦକ ଦକ ।
ଦୁଃଶାସନ ତୁନି ହୋଇଣ ତୁମ୍ଭ ବଳ-
ମଧ୍ୟେ ପଶି ଭାଜିଲେ ଘେନି କରୀକୁଳ ।
ଅୟୁତେ ରଥ ତିନି ସହସ୍ର ହାତୀ ଘେନି
ବୃଷସେନ ଭାଜିଲେ ଛାଡ଼ିଣ ଆରଣି ।
ଚତୁରଙ୍ଗ ସେନାରେ ହେଲେହେଁ ଆବୃତ
ପଳାଇଲେ ଭୟରେ ତୁମ୍ଭ ଜ୍ୟେଷ୍ଠସୁତ ।
ସଂଶପ୍ତକ ବଳକୁ ଘେନିଣ ସୁଶର୍ମା
ଭାଜିଲେ ଛାଡ଼ିଦେଇ କରିବା ଗାରିମା ।
ଦ୍ରୋଣ ମଲେ ବୋଲି ଆଉ ଯେ ବାକୀ ଥିଲେ
ଶୁଣିବା କ୍ଷଣି ଯୁଦ୍ଧସ୍ଥଳୁ ପଳାଇଲେ ।
ମାମୁଁ ଭାଇ ଶଳା ଯେ ଶ୍ୱଶୁର ଜୁଆଁଇଁ
ଡାକିଲେ ଯୁଦ୍ଧ ଆଉ କରୁଛ କିପାଇଁ ।
ଦ୍ରୋଣ ପରା ଲୋକ ହେଲେଣି ରଣେ ହତ
ଆସ ନିରତରେ ହେ ରଖିବା ଜୀବିତ ।
କେତେ ଯୋଦ୍ଧା ବାଳ ଫିଟାଇ ପଳାଇଲେ
କେତେ କୁଟା ଧରିଣ ଦାନ୍ତ ନିକୁଟିଲେ ।
ଟୋପର କବଚକୁ ଦେଇଣ ପକାଇ
କେତେକ ପଳାଇଲେ ବେଗକୁ ଦେଖାଇ ।
ଅନ୍ୟୋନ୍ୟରେ ସେ ରହ ରହ ବୋଲି
ପଳାଇଲେ ସେନାଏ ହୋଇ ପେଲାପେଲି ।
ଏରୂପେ ତୁମ୍ଭ ସୈନ୍ୟ ଭାଗୁଡ଼ି ରାଜନ
ବାକ୍ୟେ ନ ସରିବ ସରିବ ନିଶା ଦିନ ।
ତୁମ୍ଭ ସୈନ୍ୟ ଭାଗୁଡ଼ି ତ୍ରସ୍ତ ଦ୍ରୋଣପୁତ୍ର
ଦେଖିକରି କ୍ରୋଧେ ଥରାଇଦେଲେ ଗାତ୍ର ।
ମଗର ସମୁଦ୍ରରେ ଚହଟିବା ପ୍ରାୟେ
ଚହିଟିଲେ ପାଣ୍ଡବ ସଇନ୍ୟେ ସେ ରାୟେ ।
ପ୍ରଭଦ୍ରକ ଚେଦି ଯେ ପାଞ୍ଚାଳ କେକୟ
ଶିଖଣ୍ଡୀ ଆଦି କ୍ଷତ୍ରିୟଙ୍କୁ କରି ଜୟ ।
ପାଣ୍ଡବ ସେନାଙ୍କର ବହୁ ସେନାଗଣ-
ମାନଙ୍କର ଦ୍ରୌଣି ଯେ ରଚିଲେ ମରଣ ।
ଦୁର୍ଯ୍ୟୋଧନ ନୃପଙ୍କ ସମୀପକୁ ଆସି
କହିଲେ ଏ ବଚନ ଚାହିଁ ହସି ହସି ।
କ୍ଷତ୍ରିୟକୁଳେ ତୁମ୍ଭେ ହୋଇଛ ତ ଜାତ
ଭାବୁଛ ଦେବାକୁ ହସ୍ତିନା ମହୀକ୍ଷିତ ।
ସେନାଯାକ ତ କରୁଅଛନ୍ତି ଭାଗୁଡ଼ି
ତାଙ୍କୁ କିମ୍ପା ପାଖେ ନ ରଖି ଆଣି ଲୋଡ଼ି ।
ପୂର୍ବ ପରି ତୁମ୍ଭର ବଦନ ପ୍ରସନ୍ନ
ଦିଶୁନାହିଁ ଆଜି କାହିଁକି ହେ ରାଜନ ।
କର୍ଣ୍ଣ ଆଦି ତୁମ୍ଭର ମହାରଥୀବୃନ୍ଦ
ବୋଲୁଛନ୍ତି କିମ୍ପା କରମ ଆମ୍ଭ ମନ୍ଦ ।
ଯୁଦ୍ଧମାନଙ୍କେ ତ ଏରୂପେ ଆମ୍ଭ ସେନା
ଭାଜିବାର ଦେଖି ନାହିଁ ହେ ମହାମନା ।
ତୁମ୍ଭ ସେନାଯାକର ମଙ୍ଗଳ ରାଜନ
ହୋଇଅଛିଟିକି ହେ ତା ମୋତେ ବଖାଣ ।
କେଉଁ ରଥୀ ତୁମ୍ଭର ପାଇଲା ମରଣ
ତାହା ସତ କରିଣ କହ ନରରାଣ ।
ଅଶ୍ୱତ୍ଥାମା ଏହା ପୁଛନ୍ତେ ତୁମ୍ଭ ସୁତ
ନ କହି କଥା କିଛି ହୋଇଲେ ତରସ୍ତ ।
ନୟନରୁ ଲୋତକ ତଳକୁ ପକାଇ
କହିଲେ ଏ ବଚନ କୃପଙ୍କୁ ଅନାଇ ।
ଯହିଁ ପାଇଁ ଆମ୍ଭର ହୋଇଛି ଏ ଦଶା
ଶୁଣନ୍ତୁ ତାହା କହ ଦ୍ରୌଣି ମହାଯଶା ।
ଏହା କହି କୃପ ମନରେ ପରିତାପ
କରି ନେତ୍ର ଦୁଇରୁ ପୋଛିଦେଇ ଆପ ।
ବୋଇଲେ ଅଶ୍ୱତ୍ଥାମା ଶୁଣ ଦେଇ ମନ
କହିବା ଯହିଁ ପାଇଁ ହୋଇଛି ବିମନ ।
ଆମ୍ଭେମାନେ ଦ୍ରୋଣଙ୍କୁ ଆଗରେ ଚଳାଇ
କଲୁ ପାଞ୍ଚାଳଙ୍କର ସଙ୍ଗତେ ଲଢ଼ାଇ ।
ପରସ୍ପରେ ପାଞ୍ଚାଳ ତୁଲେ ଆମ୍ଭ ଲୋକ
ଶୋଇଲେ କଟାକଟି ହୋଇ ରଣେ ବେକ ।
ଏହିରୂପେ ସମାନ ଯୁଦ୍ଧ ଯହୁଁ ହେଲା
ଦ୍ରୋଣଙ୍କ ହୃଦେ ତହୁଁ କ୍ରୋଧ ପ୍ରବର୍ତ୍ତିଲା ।
ବ୍ରହ୍ମାସ୍ତ୍ର କରି ଶତ ସହସ୍ର ସଂଖ୍ୟକ
କ୍ଷତ୍ରିୟମାନଙ୍କ କାଟିଲେ ଦ୍ରୋଣ ବେକ ।
ପାଣ୍ଡବ ପାଞ୍ଚାଳେ ଯେ ଯୁଝିଲେ ଦ୍ରୋଣଙ୍କୁ
ସେ ଭେଟିଲେ ଯାଇ ଯମଙ୍କ ନଗରକୁ ।
ସହସ୍ର ଦୁଇ ରଥୀ ସହ୍ରେ ହାତୀକୁଳ
ପ୍ରାଣ ନେଲେ ବ୍ରହ୍ମାସ୍ତ୍ରେ ଦ୍ରୋଣ ମହାବୀର ।

ବୁଢ଼ା ହେଲେହେଁ ଦ୍ରୋଣ ଭେଣ୍ଡା ପରି ରଥ
ଆରୋହି ଯୁଦ୍ଧରେ କାଟିଲେ ଶତ୍ରୁମାଥ ।
ବ୍ରହ୍ମାସ୍ତ୍ର କରି ଦ୍ରୋଣ ଆରମ୍ଭନ୍ତେ ରଣ
ବିମୁଖ ହୋଇଲେ ପାଞ୍ଚାଳ ରଥୀଗଣ ।
ଦିବ୍ୟ ଅସ୍ତ୍ରବଳେ ଉଦୟ ସୂର୍ଯ୍ୟ ପରି
ପ୍ରକାଶିଲେ ତେଜକୁ ଦ୍ରୋଣ ତପଶ୍ଚାରୀ ।
ଦ୍ରୋଣଙ୍କର ଯୁଦ୍ଧ ଦେଖିଣ ପାଣ୍ଡୁଲୋକେ
ଥୋକେ ପଳାଇଲେ ଯୁଦ୍ଧରୁ ମହାଦକେ ।
ଦ୍ରୋଣଙ୍କର ବିକ୍ରମ ଦେଖି ଜନାର୍ଦ୍ଦନ
ପାଣ୍ଡବଙ୍କୁ ଚାହିଁ କହିଲେ ଏ ବଚନ ।
ଶସ୍ତ୍ର ଥିଲେ ଦ୍ରୋଣେ ହାରିବେ ସୁରରାଣ
ଏହାଙ୍କୁ ତୁମ୍ଭେ କରିପାରିବ କି ରଣ ।
ଧର୍ମ ଛାଡ଼ି ଜୟ ଆକାଂକ୍ଷା କର ତୁମ୍ଭେ
ନୋହିଲେ ମରିବ କହୁଛୁଁ ଜାଣ ଆମ୍ଭେ ।
ଦ୍ରୋଣଙ୍କ ଆଗେ ଏବେ ଅଶ୍ୱଥାମା ହତ
ବୋଲିଣ ଜଣେ ମିଛ କହ ହେ ତୁରିତ ।
ପୁତ୍ର ହତ ଶୁଣିଲେ ଦ୍ରୋଣ ଧନୁ ଶର
ଛାଡ଼ି ରହିବେ ହେ ପାଉଛି ମନ ମୋର ।
ଏହା ଶୁଣି ପାର୍ଥ ପ୍ରସନ୍ନମନ ନୋହି
ବୋଇଲେ ଏ କଥା ମୋ ହାଦେ ହେବ ନାହିଁ ।
ପାଣ୍ଡବ ରଥୀଯାକ ଶୁଣି ହେଲେ ତୋଷ
କଷ୍ଟରେ ସହିକଲେ ପାଣ୍ଡବ ନରେଶ ।
ଭୀମ ଲାଜ ପାଇଣ ଦ୍ରୋଣ ପାଶେ
ଆସି ଏ ବଚନକୁ କହିଲେ ହରଷେ ।
ଯୁଦ୍ଧରେ ତୁମ୍ଭ ସୁତ ଅଶ୍ୱଥାମା ହତ
ହୋଇଲେ ହେ ଗୁରୁ ଏ କଥା ଅଟେ ସତ ।
ଭୀମଙ୍କ ବଚନରେ ଶଙ୍କିତ ହୃଦୟ
ହୋଇ ଦ୍ରୋଣ ପୁଚ୍ଛିଲେ ଧର୍ମଙ୍କ ତନୟ ।
ମୋ ସୁତ ଅଶ୍ୱଥାମା ମରିଛି କି ନାହିଁ
ଜାଣିଥିଲେ ନୃପ ତା କହ ଶୁଣିବଇଁ ।
ଯୁଧିଷ୍ଠିର ରାଜା ଯେ ଜୟ ଇଚ୍ଛା କରି
ମଲେ ଅଶ୍ୱଥାମା କହିଲେ ଉଚ୍ଚକରି ।
ଇନ୍ଦ୍ରବର୍ମା ହାତୀ ଅଶ୍ୱଥାମା ନିହତ
ତା ମୃତ୍ୟୁ ଅବ୍ୟକ୍ତେ କହିଲେ ଧର୍ମସୁତ ।
ଯୁଧିଷ୍ଠିର ବାକ୍ୟେ ପରତେ ଦ୍ରୋଣ କରି
ଦେଲେ ଦେହ ବଳଯାକକୁ ଶୀର୍ଣ୍ଣ କରି ।
ପୂରୁବ ପରି ଶସ୍ତ୍ରଅସ୍ତ୍ର ଯୁଦ୍ଧ ତାଙ୍କୁ
ନ ଆସିଲା ଆଉ କି କହିବି ତୁମ୍ଭଙ୍କୁ ।
ଏହି ସମୟରେ ଯେ ଦ୍ରୁପଦଙ୍କ ବେଟା
ଧାଇଁଲେ ମୃତ୍ୟୁଦେବଙ୍କର ଧରି ଛଟା ।
ଦ୍ରୋଣ ତାହାଙ୍କୁ ଚାହିଁ ପ୍ରାୟ ଉପଦେଶ
କଲେ ଶସ୍ତ୍ର ଛାଡ଼ି ହେ ଗଉତମୀଶିଷ୍ୟ ।

ଦୁଇକୁଳ ସେନାଏ ପାଡୁଥିଲେ ଡକା
ଦୁରାଚାର ଧୃଷ୍ଟଦ୍ୟୁମନ ଧାଇଁ ଏକା ।
ବାଳ ଧରି ତୁମ୍ଭର ବାପାଙ୍କର ମୁଣ୍ଡ
କାଟି କରି ଗଡ଼ାଇଦେଲେ ରଣଦାଣ୍ଡ ।
ଅର୍ଜ୍ଜୁନ ରଥରୁ ଓହ୍ଲାଇ ଧାଇଁ ଆସି
ନିଷେଧିଲେ ତେବେ ହାଣିଲା ହୋଇ ରୋଷୀ ।
ଏରୂପେ ତୁମ୍ଭ ପିତା ପ୍ରାଣକୁ ନୃଶଂସ
ଧୃଷ୍ଟଦ୍ୟୁମ୍ନ ଯୁଦ୍ଧେ କଲାଟି ପ୍ରାଣ ଧ୍ୱଂସ ।
ମଲାକ୍ଷଣି ଦ୍ରୋଣ ଆରମ୍ଭ ଏହି ଦଶା
ହେଲା କି କହିବୁଁ ବାହାରୁ ନାହିଁ ଭାଷା ।
ବାପାଙ୍କ ହତ ଶୁଣି କୃପଙ୍କ ମୁଖରୁ
ଦ୍ରୋଣସୁତ ଅଶ୍ୱଥାମା ନୋହିଣ ଭୀରୁ ।
ପାଦାହତ ଉରଗ ପ୍ରାୟେ କରି ରାଗ
ତେଜେ ନିନ୍ଦାକଲେ ପ୍ରଳୟ ଅଗ୍ନି ଭାଗ ।
ହାତକୁ ହାତେ ପେଷି ଦନ୍ତକୁ ଦନ୍ତରେ
ଚୋବାଇଣ ନିଃଶ୍ୱାସ ପକାଇଲେ ଖରେ ।
ଧୃତରାଷ୍ଟ୍ର ବୋଇଲେ ଦ୍ରୋଣ ବଧ ଶୁଣି
କି ବୋଇଲେ କହ ତ କ୍ରୋଧହୋଇ ଦ୍ରୌଣି ।
ନାରାୟଣ ମାନୁଷ ଆଗ୍ନେୟ ବାରୁଣ
ବ୍ରହ୍ମା ଐନ୍ଦ୍ର ଆଦି ଜାଣନ୍ତି ଅସ୍ତ୍ରଗଣ ।
ଦ୍ରୋଣ ତ ଅସ୍ତ୍ରଯାକ ପର୍ଶୁରାମଙ୍କର
ଦେଇଛନ୍ତି ଅଶ୍ୱଥାମାଙ୍କୁ ମନ୍ତ୍ରୀବର ।
ଆପଣାକୁ ଗୁଣେ ଅଧିକ ହେବ ସୁତ
ବୋଲି ଇଚ୍ଛା କରନ୍ତି ନରେ ଶୁଣିଛ ତ ।
ଆଚାର୍ଯ୍ୟମାନଙ୍କ ରହସ୍ୟ କଥା ଯେତେ
ପୁତ୍ରକୁ ତାହା ଡାକି ଶିଖାନ୍ତି ଏକାନ୍ତେ ।
ନୋହିଲେ ପ୍ରିୟ ଶିଷ୍ୟ ହୋଇ ଯେ ଥାଆନ୍ତି
ତାହାଙ୍କୁ ଅତି କଷ୍ଟେ କେତେ ବା କହନ୍ତି ।
ଅଶ୍ୱଥାମା ଦ୍ରୋଣଙ୍କଠାରୁ ଶସ୍ତ୍ରକୁଳ
ପାଇବାରୁ ମର୍ତ୍ତ୍ୟେ ବୋଲାନ୍ତି ମହାବଳ ।
ଅସ୍ତ୍ରରେ ପର୍ଶୁରାମ ଯୁଦ୍ଧେ ଦିବସ୍ପତି
ବିଦ୍ୟାରେ ଦ୍ରୋଣଗୁରୁ ଜ୍ଞାନେ ବୃହସ୍ପତି ।
ତେଜରେ ବୀତିହୋତ୍ର ଧୈର୍ଯ୍ୟରେ ପର୍ବତ
ଗାମ୍ଭୀର୍ଯ୍ୟରେ ସମୁଦ୍ର ବେଗରେ ମରୁତ ।
କ୍ରୋଧରେ ଆଶୀବିଷ ବୀର୍ଯ୍ୟେ କାର୍ତ୍ତବୀର୍ଯ୍ୟ
ପରାୟେ ଅଟନ୍ତି ତ ଦ୍ରୋଣଙ୍କ ଆତ୍ମଜ ।
ଅଶ୍ୱଥାମା ଯେବେ ବିନ୍ଧନ୍ତି ଶରଜାଳ
ତେବେ ଯାଉଥାଏ କମ୍ପି ଏ ଧରାତଳ ।
ଯୁଦ୍ଧ କରିଲେ ଅଶ୍ୱଥାମାଙ୍କର ବ୍ୟଥା
ହୋଏ ବୋଲି ବାହାରି ନାହିଁ କାହା କଥା ।
ବ୍ରହ୍ମଚର୍ଯ୍ୟ ଧନୁର୍ବେଦରେ ପାରଙ୍ଗମ
ଅଟନ୍ତି ସେ ଦଶରଥଙ୍କ ସୁତ ସମ ।

ସମୁଦ୍ରଙ୍କ ପରାୟେ ଅକ୍ଷୋଭ ଅଟନ୍ତି
ରଥୀଙ୍କରେ ଆଗଟି ତାହାଙ୍କୁ ଲେଖନ୍ତି ।
ମାରନ୍ତେ ଧୃଷ୍ଟଦ୍ୟୁମ୍ନ ପିତାଙ୍କୁ ଅଶ୍ୱଥାମା
କି କଲେ କହ ସେ ତ ମହତକରମା ।
ଦ୍ରୁପଦ ଦ୍ରୋଣଙ୍କର ଜୀବନ ନେବାକୁ
କରିଥିଲେ ତ ସୁତ ଧୃଷ୍ଟଦ୍ୟୁମନଙ୍କୁ ।
ସେହିରୂପେ ଧୃଷ୍ଟଦ୍ୟୁମନଙ୍କର ପ୍ରାଣ
ନେବାକୁ ଜନ୍ମିଛନ୍ତି ଅଶ୍ୱଥାମା ଜାଣ ।
ସଞ୍ଜୟ ବୋଇଲେ ହେ କହୁଛ ଯା ନୃପ
ସତ ଏ କଥାଯାକ ନୁହଇ ପ୍ରଳାପ ।
କପଟରେ ଦ୍ରୋଣଙ୍କୁ ମାରିବାର ଶୁଣି
ଶୋକ କ୍ରୋଧ ଦୁହିଙ୍କ ଆଶ୍ରେ କରି ଦ୍ରୌଣି ।
ଖର କରିଣ ଛାଡ଼ି ଦିଅନ୍ତେ ନିଃଶ୍ୱାସ
ମୃତ୍ୟୁଦେବ ପରି ସେ ଦିଶିଲେ ନରେଶ ।
ଅଶ୍ରୁରେ ତାଙ୍କ ବେନି ଆଖି ପରିପୂର୍ଣ୍ଣ
ହୋଇଥିଲା, ତା ପୋଛି କହିଲେ ବଚନ ।
ଆହେ ଦୁର୍ଯ୍ୟୋଧନ ଅସ୍ତ୍ର ଛାଡ଼ିଣ ଦ୍ରୋଣ
ଥିଲେ, ଧୃଷ୍ଟଦ୍ୟୁମନ ନେଲା ତାଙ୍କ ପ୍ରାଣ ।
ଧର୍ମଧ୍ୱଜୀ ବୋଲାନ୍ତି ଯୁଧିଷ୍ଠିର ରାଜା
ବୁଡ଼ାଇଲେ ଏବେ ଜାଣିଲି ପାପେ ମଜା ।
ଯୁଦ୍ଧ କଲା ଲୋକର ଜୟାଜୟ ଅଛି
ମଲେ ହେଲେ ତାହାର ନିନ୍ଦା ନାହିଁ କିଛି ।
ନ୍ୟାୟରେ ଯେବେ ଦ୍ରୋଣ ଗୁରୁଙ୍କର ପ୍ରାଣ
ନେଇଥାନ୍ତେ, ଦୁଃଖ ନୁହନ୍ତା ମୋର ଜାଣ ।
ଦ୍ରୋଣଙ୍କ ମରିବାର ବାଧୁ ନାହିଁ ମୋତେ
ଏ କଥା ଘେନୁଛି ବଡ଼ ମୁଁ କରି ଚିତ୍ତେ ।
କ୍ଷୁଦ୍ର ଦୁରାଚାରୀ ଯେ ଦ୍ରୁପଦଙ୍କ ସୁତ
ଦ୍ରୋଣଗୁରୁ ବାଳ କରିଣ କରଗତ ।
ବ୍ରାହ୍ମଣ ବୁଢ଼ା ବୋଲି ମନରେ ନ କଲା
ପ୍ରହାରିଣ ଖଣ୍ଡା ସେ ହାଣି ପକାଇଲା ।
ମୋ ପରା ପୁଅ ଥାଉଁ ଥାଉଁ ଦ୍ରୋଣଙ୍କର
ବାଳ ଧରି ହାଣିଲା ଦ୍ରୁପଦ କୁମର ।
ଜୀଇଥିବାରୁ ମୁଁ ଶୁଣିଲି ସିନା ଏହା
ମରିଥିଲେ ମୋ ଭଲ ହୋନ୍ତା ନରନାହା ।
କାମ ଲୋଭ ମୋହ ସକାଶୁଁ ପିଲା କାଳେ
ଧରମ ନ କରନ୍ତି ଦେଖିଥାଇଁ ଡୋଳେ ।
ଭେଣ୍ଡା ହୋଇ ଧୃଷ୍ଟଦ୍ୟୁମନ ଧରି ଖଣ୍ଡା
ଶୋଇଲା ଦ୍ରୋଣଙ୍କୁ ଅଧର୍ମେ କରି ଦଣ୍ଡା ।
ମୋହ ପରା ଲୋକ ଜୀଇଛି ସୁତ ହୋଇ
କଲା କେଡ଼େ ସାହସ ଆହେ ନରସାଇଁ ।
ଆଜି ମୁଁ ଯେ ଦଶା ତାହାଙ୍କୁ ରଣେ ଦେବି
କି କହିବି ତାହା ସାକ୍ଷାତେ ଦେଖାଇବି ।

ଯୁଧିଷ୍ଠିର ମିଥ୍ୟା କହିଲେ ଗୁରୁ ଆଗେ
ତାଙ୍କୁ ମୁଁ ଆଜି ଶୁଆଇବି ରଣଭାଗେ ।
ସତ୍ୟକରି ନିୟମ କରି ମୁଁ କହୁଛି
ପାଞ୍ଚାଳଙ୍କ ପାଞ୍ଜି ଦେଲାଣି ଯମ ପୋଛି ।
ତାଙ୍କୁ ଯେବେ ରଣେ ନ କରିବି ବିନାଶ
ତେବେ ମୁହିଁ ମରିବି କରି ବିଷଗ୍ରାସ ।
ସମସ୍ତ ଉପାୟରେ ପାଞ୍ଚାଳଙ୍କ ତୁଲେ
ଧୃଷ୍ଟଦ୍ୟୁମ୍ନଙ୍କୁ ମୁଁ ବଢ଼ାଇଦେବି ଭଲେ ।
ଦାରୁଣ ମୃଦୁ କର୍ମ ଦୁଇରେ ପାଞ୍ଚାଳ-
ମାନଙ୍କୁ ମାଇଲେ ମୁଁ ସନ୍ତୋଷ ନୃପାଳ ।
ପିତୃରଣକୁ ନ ଯୁଝିଲେ ମୁହିଁ ପୁତ୍ର
ବୋଲଇ ନ ଧରିବି ଜାଣ ମୋର ଗାତ୍ର ।
ଅନାଥ ପରି ମୁହିଁ ଥାଉଁ ଦ୍ରୋଣ ମାଥ
କଟାଇ ଶୋଇଛନ୍ତି ଦେଖ ନରନାଥ ।
ଧିକ୍ ହେଉ କିନା ହେ ମୋହର ବଳକୁ
କି କାର୍ଯ୍ୟ ଅଛି ଆଉ ବହି ଏ ବାହୁକୁ ।
ଆପଣା ପରାକ୍ରମ ଜ୍ଞାନବନ୍ତ ଜନ
ନ କହିବଟି କେବେ ଉଚାରି ବଚନ ।
ଏହା ଜାଣିଣ ମୁହିଁ ବାବୁଙ୍କର ବଧ
ନ ସହି କହୁଅଛି ଶୁଣ ବହି କ୍ରୋଧ ।
କୃଷ୍ଣ ତୁଲେ ପାଣ୍ଡବେ ନେତ୍ରେ ଥିବେ ଚାହିଁ
ଦେବି ତାଙ୍କ ସେନାଙ୍କୁ ଶରାଗ୍ନିରେ ଦହି ।
ଦେବାସୁର ଉରଗ ରାକ୍ଷସ ମନୁଷ୍ୟ
ଯୁଝିଲେ ଆଜି ତାଙ୍କୁ କରିବି ମୁଁ ନାଶ ।
ଅର୍ଜୁନ ମୋର ପରି ଧନୁର୍ଦ୍ଧରେ ମହୀ-
ମଣ୍ଡଳରେ ରାଜନ ଜାଣ କେହି ନାହିଁ ।
ଦେବତାରେ ସର୍ଜ୍ଜନା ଯେତେ ଅସ୍ତ୍ରଗଣ
ସେମାନ ମୁଁ ବିନ୍ଧିବି କରି ଘୋର ରଣ ।
ମୋ ଧନୁରୁ ଆଜି ବାହାରି ଶରରାଜି
ପାଣ୍ଡୁସେନା ରକ୍ତ ପିଇବେ ଦେହେ ମଜ୍ଜି ।
ଜଳଧାରା ପରି ମୋହର ବାଣଗଣ
ପଡ଼ିବେ ଆଜି ଚାରିପଟୁଁ ରାୟେ ଜାଣ ।
ପବନରେ ବୃକ୍ଷ ଆହତ ହେଲା ପ୍ରାୟେ
ଶୋଇବେ ଯୋଦ୍ଧାକୁଳ ମୋହ କାଣ୍ଡଘାଏ ।
ଅରଜୁନ କୃଷ୍ଣ ସାତ୍ୟକି ଭୀମସେନ
ଆଦି ଯେତେ ଛନ୍ତି ପାଣ୍ଡବ ରଥୀ ଜନ ।
ଏହିମାନଙ୍କୁ ଅଗୋଚର ଅସ୍ତ୍ର କରି
ପିତୃରଣ ଶୁଝାଇବି ହେ ଦଣ୍ଡଧାରୀ ।
ସେ ଅସ୍ତ୍ର ପ୍ରୟୋଗ ସଂହାରି ରଥୀ ଜନ
ଜାଣିବା ଥାଉ, ଶୁଣି ନ ଥିବେଟି କାନ ।
ବ୍ରାହ୍ମଣ ରୂପ ଧରି ମୋ ପିତା ଆଗରେ
ନାରାୟଣ ଛିଡ଼ା ହୁଅନ୍ତେ ସରାଗରେ ।

ଦେଖି ମୋର ପିତା ପ୍ରଣାମ ତାଙ୍କୁ କଲେ
ଉପହାର ଦେଇଣ ବିଧିରେ ପୂଜିଲେ ।
ପ୍ରସନ୍ନ ହୋଇ ନାରାୟଣ ତାଙ୍କୁ ବର
ଯାଚନ୍ତେ ମୋର ପିତା ଯୋଡ଼ି ବେନିକର ।
ବୋଇଲେ ନାରାୟଣ-ଅସ୍ତ୍ର ଦିଅ ମୋତେ
ପ୍ରସନ୍ନ ଯେବେ ନାରାୟଣ ହେଲେ ଚିତ୍ତେ ।
ନାରାୟଣ-ଅସ୍ତ୍ର ଦେଇଣ ନାରାୟଣ
କହିଲେ ତୁମ୍ଭ ସମ ତୁମ୍ଭେ ଏକା ଜାଣ ।
ଏ ଅସ୍ତ୍ରର ପ୍ରୟୋଗ ସଂହାର ମନକୁ
ଉପଗତ ହୋଇବ ଜାଣ ହେ ତୁମ୍ଭଙ୍କୁ ।
ଏ ଅସ୍ତ୍ର ଶତ୍ରୁ ଭୟ ପାଇଟି ପ୍ରୟୋଗ
କରିବ ରଖିଥିବ ଏହା ହୃଦଭାଗ ।
ଅବଧ୍ୟକୁ ଏ ଅସ୍ତ୍ର ପାରେ ବଧ କରି
ତୁଚ୍ଛା ନ ମାରିବଟି ଦ୍ରୋଣ ରାଗ କରି ।
ଶସ୍ତ୍ରକୁ ପକାଇ ଯେ ଅସ୍ତ୍ରକୁ ଶରଣ
ପଶିବ, ତାକୁ ନ ମାରିବ ଅସ୍ତ୍ର ଜାଣ ।
ଏ ମହୀରେ ଯେତେକ ଶସ୍ତ୍ର ରହିଅଛି
ବିନ୍ଧିଲେ ଏ ଅସ୍ତ୍ରେ ଜନ୍ମିବ ମୁଁ କହୁଛି ।
ପ୍ରଳୟ-ଅଗ୍ନି ସୂର୍ଯ୍ୟ-କରୁଁ ଏହା ତେଜ
ଅଧିକ ବୋଲି ମନେ ଘେନ ଦ୍ରୋଣଦ୍ୱିଜ ।
ଏରୂପେ କହି ନାରାୟଣ ଅସ୍ତ୍ର ଦେଇ
ଗମିଲେ ବୈକୁଣ୍ଠକୁ ଜଗତ-ଗୋସାଇଁ ।
ସେ ଅସ୍ତ୍ର ମୋ ବାପାଙ୍କଠାରୁ ତ ଶିଖିଛି
ମଲେ ବୋଲି ଜାଣ ହେ ଆଜି ପାଣ୍ଡୁବଂଶି ।
ସେ ଅସ୍ତ୍ର ବିନ୍ଧି ମୁଁ କରିବି ଯେବେ ରଣ
ନ ପାରିବେ ଅର୍ଜୁନ ଆଦି ବିନ୍ଧି ବାଣ ।
ମୋ ମନୋବାଞ୍ଛା ଯେଉଁ ରୂପେ ହେଉଥିବ
ସେରୂପେ ଅସ୍ତ୍ରବୃଷ୍ଟି ସେ ଅସ୍ତ୍ରୁ ହେବ ।
ପଥରବୃଷ୍ଟି ମଧ୍ୟ ବିଚାରିଲେ ରାୟେ
ଅସ୍ତ୍ରରୁ ଉପୁଜିବ, ଦେଖିବ ସଭିଏଁ ।
ସେ ଅସ୍ତ୍ରବଳେ ମୁହିଁ ପାଣ୍ଡବମାନଙ୍କୁ
ଦେଖାଇବି ଜାଣ ଯମଙ୍କ ନଗରକୁ ।
ମିତ୍ର ଗୁରୁଦ୍ରୋହୀ ଚାଣ୍ଡାଳ ଧୃଷ୍ଟଦ୍ୟୁମ୍ନ
ଶୋଇବ ଆଜି ଯୁଦ୍ଧେ ହାରିଣ ଜୀବନ ।
ଏରୂପେ ଆସ୍ଥରେ କହନ୍ତେ ଦ୍ରୋଣବେଟା
ତୁମ୍ଭ ରଥୀଯାକ ଆନନ୍ଦେ ହେଲେ ମୋଟା ।
ଶଙ୍ଖ ଭେରୀ ମୃଦଙ୍ଗ ପଣବ ବାଇଲେ
ମଲେ ପାଣ୍ଡୁ ସୁତେ ବୋଲି ସେ ମନେ କଲେ ।
ସେହି ଶବଦ ଦଶଦିଗଯାକ ବ୍ୟାପି
ରହନ୍ତେ ପାଣ୍ଡୁ ସେନା ହେଲେ ପରିତାପୀ ।
ମନେ କଲେ ଦ୍ରୋଣଙ୍କୁ କଲାଇଁ ତ ହତ
କାହିଁକି କୁରୁଏ କରନ୍ତି ବାଦ୍ୟଘାତ ।

ଏହି ସମୟରେ ଯେ ଦ୍ରୋଣଙ୍କ ନନ୍ଦନ
ଦେହକୁ ଶୁଦ୍ଧକରି କଲେ ଆଚମନ ।
ସେ ନାରାୟଣ ଅସ୍ତ୍ରବରକୁ ପ୍ରୟୋଗ
କରିବି ବିଚାରିଲେ ଦ୍ରୋଣି ମହାଭାଗ ।
ସେକ୍ଷଣି ପାଣ୍ଡବମାନଙ୍କ ବାମଭାଗେ
ବେଢ଼ି ମୃଗପନ୍ତି ରହିଲେ ଅନୁରାଗେ ।
ପୃଷ୍ଠଆଡୁ ବାୟୁ ବହିଲା ଖର ହୋଇ
ଧୂଳିରେ ଦେଲା ପାଣ୍ଡୁ ସେନାକୁ ଘୋଡ଼ାଇ ।
ନ ଥାଇ ମେଘ ଶୂନ୍ୟେ ଶୁଭିଲା ଗର୍ଜନ
କମ୍ପିଗଲା ପାଣ୍ଡବେ ରହିଥିବା ସ୍ଥାନ ।
ପ୍ରତିକୂଳ ହୋଇଣ ନଦୀଏ ବହିଲେ
ସମୁଦ୍ର ମଧ୍ୟେ ରାୟେ ଘାଣ୍ଟି ହୋଇଗଲେ ।
ଗିରିମାନଙ୍କର ଶିଖର ତଳେ ଝଡ଼ି
ପଡ଼ି ଗଡ଼ିଗଲେ କରିଣ ଘୋର ରଡ଼ି ।
ସୂର୍ଯ୍ୟଙ୍କର କିରଣ ହୋଇଗଲା ଊଣା
ତୋଷ ହେଲେ ତା ଦେଖି ବିଲୁଆ ଶାଗୁଣା ।
ତ୍ରିଭୁବନ ପ୍ରାଣୀଏ ହୋଇଣ ତରସ୍ତ
କି କରିବା ବୋଲି ମୁଣ୍ଡରେ ଦେଲେ ହସ୍ତ ।
ପାଣ୍ଡବମାନଙ୍କ ଯେ ଥିଲେ ନୃପଗଣ
ମଲାଇଁ ବୋଲିକରି ବିଚାରିଲେ ମନ ।
ଧୃତରାଷ୍ଟ୍ର ବୋଇଲେ ଦ୍ରୋଣି ଆସିବାର
ଦେଖି କିସ ବିଚାର କଲେ ଯୁଧିଷ୍ଠିର ।
କିରୂପେ ଧୃଷ୍ଟଦ୍ୟୁମ୍ନ ପ୍ରାଣକୁ ରଖିଲେ
ଅଶ୍ୱତ୍ଥାମା ମୁଖରୁ ମୋତେ କହ ଭଲେ ।
ସଞ୍ଜୟ ବୋଇଲେ ହେ କୁରୁଙ୍କ ଗର୍ଜନ
କର୍ଣ୍ଣ ଡେରି ଶୁଣିଣ ପାଣ୍ଡବରାଜନ ।
ପାର୍ଥଙ୍କୁ ବୋଇଲେ ମଲେ ତ ଦ୍ରୋଣଗୁରୁ
ପଳାଇଲେ କୁରୁଏ ଦେଖି ହୋଇ ଭୀରୁ ।
ଧୃଷ୍ଟଦ୍ୟୁମନ ତ ଗୁରୁଙ୍କୁ ମାରି କରି
କୁରୁଙ୍କଠାରୁ ଘେନିଗଲେ ଜୟ ଶିରୀ ।
ପତାକା ଧ୍ୱଜ ଛତ୍ର ଛିଣ୍ଡାଇ କୁରୁଏ
ପଳାଇଲେ ଯୁଦ୍ଧରୁ ନ ରହି ଗୋଟିଏ ।
ଘୋଡ଼ା-ହାତୀ-ରଥ-ଚଢ଼ାଏ କେତେ ଲୋକ
ଦେଖୁତ ଥିଲେ ଗଲେ କାନ୍ଦି ସକ ସକ ।
କେତେ ଯୋଦ୍ଧା କବଚ ଟୋପର ପକାଇ
ପଳାଇଲେ ଥରେ ସେ ପଛକୁ ନ ଚାହିଁ ।
କେତେ ପଦାତିଙ୍କି ପାଦରେ ହସ୍ତୀକୁଳ
ଚକଟି ଦେଇ ଦେଖାଇଲେ ଯମଆଳ ।
ବାବୁ ଭାଇ ବୋଲି କରିଣ ଉଚ୍ଚେ ଡକା
ପଳାଇଲେ କୁରୁଏ ହୋଇଣ ତାଟକା ।
ପିତା ତନୟ ମାମୁଁ ଭଣଜାମାନଙ୍କୁ
ଛାଡ଼ିଣ ପଳାଇଲେ ଜୀବ ରଖିବାକୁ ।

ମରନ୍ତେ ଦ୍ରୋଣ ଏହିରୂପେ କୁରୁଙ୍କର
ଦଶାଟି ହୋଇଲା ତ ଦେଖିଲ ଏ ବୀର ।
ଏବେ କାହିଁପାଇଁ କରିଣ ଘୋର ରଡ଼ି
ଆସୁଛନ୍ତି କୁରୁଏ ଯୁଦ୍ଧ ଭୂମି ମାଡ଼ି ।
ଏ କଥାରେ କି କଥା ଅଛି ହେ ଅର୍ଜ୍ଜୁନ
ଜଣା ହୋଇଥିଲେ ତା ମୋ ଆଗେ ବଖାଣ ।
ଘୋଡ଼ା ହାତୀ ରଥର ଗରଜନେ ମହୀ
କୁରୁଏ ଦେଖାଦେଉ ଅଛନ୍ତି କିମ୍ପାଇ ।
କୁରୁଙ୍କର ଆନନ୍ଦ ଦେଖି ମୋର ମନ
ପାଉଛି କିଣିବେ କି ଆଜି ତ୍ରିଭୁବନ ।
ଇନ୍ଦ୍ର ଅବା ଦ୍ରୋଣଙ୍କ ମରଣ ନ ସହି
ଆସୁଛନ୍ତି ବଜ୍ର ଧରି କି ଯୁଝି ଭାଇ ।
କୁରୁଙ୍କ ଗରଜନେ ଆମ୍ଭ ସୈନ୍ୟଯାକ
ହୃଦ ମଧଟିକି କରନ୍ତି ଦକଦକ ।
ଅର୍ଜ୍ଜୁନ ବୋଇଲେ ପୁଚ୍ଛିଲ ଯା ରାଜନ
କହିବି ମୁହିଁ ତାହା ମନ ଦେଇ ଶୁଣ ।
ଉଗ୍ର କର୍ମ ଦେଖାଇ ଆପଣେ ଯେ କୁରୁଙ୍କୁ
ଗୋଚର ତ ହେଉନାହିଁଟି ସେ ତୁମ୍ଭଙ୍କୁ ।
ଯାର ଜନ୍ମ କାଳେ ସହସ୍ର ଗାଈ ଦାନ
ଦେଇ ଦ୍ରୋଣ ସନ୍ତୋଷ କଲେ ଦ୍ୱିଜ ମନ ।
ଜନ୍ମ ହେବାକ୍ଷଣି ଯେ ଅଶ୍ୱ ପରି ରଡ଼ି
ଛାଡ଼ନ୍ତେ ରହିଲା ଆକାଶ ଯାକ ମାଡ଼ି ।
ଯାହାକୁ ଅଶ୍ୱତ୍ଥାମା ନାମ ଦେଲେ ଦ୍ରୋଣ
ତା ବଳେ କୁରୁଏଟି ଗର୍ଜ୍ଜୁଛନ୍ତି ଜାଣ ।
ଅନାଥ ପରି ଧୃଷ୍ଟଦ୍ୟୁମ୍ନ ଦ୍ରୋଣ ମାଥ
କାଟିଲେ ତ ଦେଖିଅଛ ହେ ନରନାଥ ।
ଏବେ ତାହାଙ୍କ ନାଥ ଅଶ୍ୱତ୍ଥାମା ହୋଇ
ଆସନ୍ତି ମୁଁ କିସ କହିବି ନରସାଇଁ ।
ଧାର୍ମିକ ହୋଇ ତ ଅଧର୍ମ କଥା କଲ
ରାଜ୍ୟ ଲୋଭେ ଗୁରୁଙ୍କୁ ମିଛେ ଭୁଲାଇଲ ।
ତିନି ଲୋକ ଯାକରେ ତୁମ୍ଭର କୀରତି
ଉତ୍ତମ ହୋଇକରି ହୋଇଥିଲା ଖ୍ୟାତି ।
ରାମଙ୍କଠାରେ ବାଳିବଧ ଦୋଷ ପରି
ତୁମ୍ଭର ଏ ଦୋଷ ହେଲା ଏ ଦଣ୍ଡଧାରୀ ।
ଧର୍ମକୁ ତୁମ୍ଭେ ଜାଣ ବୋଲି ସିନା ଦ୍ରୋଣ
ପଚାରିଲେ ହେ ଅଶ୍ୱତ୍ଥାମାଙ୍କ ମରଣ ।
ତହିଁକି ଅନୁରୂପ ତୁମ୍ଭେ ତ ଧରମ
ପାଳିଲ, କି କହିବି ନୃପତି-ଉତ୍ତମ ।
ମରିଥିଲା ତ ଅଶ୍ୱତ୍ଥାମା ନାମେ ହାତୀ
କହିଲ ଅଶ୍ୱତ୍ଥାମା ଗଲେ ଯମକତି ।
ତୁମ୍ଭର ବଚନକୁ ସତ୍ୟ କରି ଦ୍ରୋଣ
ଯେଉରୂପେ ହେଲେ, ତା ଦେଖିଛ ତ ଆପଣ ।
ନିଃଶସ୍ତ୍ର ହୋଇ ଦ୍ରୋଣଗୁରୁ ବସିଥିଲେ
ଶିଷ୍ୟ ହୋଇଣ ଧୃଷ୍ଟଦ୍ୟୁମନ ହାଣିଲେ ।
ଅଧର୍ମରେ ଗୁରୁଙ୍କୁ ମରାଇ ରଣକୁ
ଡରି କରି କିସ ହେ ପୁଚ୍ଛୁଛ ଆମ୍ଭଙ୍କୁ ।
ସମର୍ଥ ହୋଇଲେ ଧୃଷ୍ଟଦ୍ୟୁମ୍ନ ପ୍ରାଣ
ଦ୍ରୋଣିଙ୍କ ମୁଖରୁ ରଖ ହେ ନରରାଣ ।
ଧୃଷ୍ଟଦ୍ୟୁମନଙ୍କୁ ତ ରଖିବାକୁ ମୁହିଁ
ନୁହଇ ସମର୍ଥ ହେ ଜାଣ ନରସାଇଁ ।
ସବୁକାଳରେ ଆମ୍ଭେ ଅଶ୍ୱତ୍ଥାମା ପ୍ରିୟ
ଆଜିତ ହୋଇଲଇଁ ତାଙ୍କର ଅପ୍ରିୟ ।
ଡକା ପାଡୁଥିଲି ନ ମାର ବୋଲି ମୁହିଁ
ମାଇଲା ଧୃଷ୍ଟଦ୍ୟୁମ୍ନ ଦ୍ରୋଣେ ଖଣ୍ଡା ନେଇ ।
ଜିଣିଲେ ଅଳ୍ପକାଳ କରିବା ତ ଭୋଗ
ଏଥିକି ମାଇଲଇଁ ଦ୍ରୋଣ ମହାଭାଗ ।
ଭୀଷ୍ମ ଦ୍ରୋଣ ଦୁହିଁଙ୍କି ଦେଇ ରାଜ୍ୟଭାର
ନିଶ୍ଚେନ୍ତେ ଥିଲେ ଜ୍ୟେଷ୍ଠପିତା ଯେ ଆମ୍ଭର ।
ତେବେହେଁ ଆମ୍ଭଙ୍କୁ ସେ ସ୍ନେହ କରିଥାନ୍ତି
ତାଙ୍କୁ ଯା ମାଇଲାଇଁ ଭାବ ଥରେ ମତି ।
ତୁମ୍ଭ ଆମ୍ଭ ଭାବରେ ଛାଡ଼ି ଧନୁର୍ବାଣ
ମଲେଟି ଭୀଷ୍ମ ଦ୍ରୋଣ ବୋଲି ରାୟେ ଜାଣ ।
ଧନୁରେ ସେ ଦୁହେଁ କରନ୍ତେ ଯେବେ ଯୁଦ୍ଧ
ପାରନ୍ତେ କରି ଆମ୍ଭମାନଙ୍କୁ ସେ ବଧ ।
ପିତା ଗୁରୁ ଦୁହିଁକି ରାଜ୍ୟ-ଲୋଭୀ ହୋଇ
ଦୁର୍ବୁଦ୍ଧ ବୁଦ୍ଧିରେଟି ଯୁଦ୍ଧେ ମାଇଲଇଁ ।
ପୁତ୍ର ଭାରିଯା ମିତ୍ର ବାନ୍ଧବମାନଙ୍କୁ
ଛାଡ଼ି ଅରଜୁନ ଆସିବ ମୋ କାର୍ଯ୍ୟକୁ ।
ଏମନ୍ତ ବୋଲି ଦ୍ରୋଣ କରିଥାନ୍ତି ମନେ
ମାଇଲା ଧୃଷ୍ଟଦ୍ୟୁମ୍ନ ଦେଖିଛି ନୟନେ ।
କିଛି ପ୍ରତିକାର ନ କରିବାରୁ ମୁହିଁ
ନରକେ ପଡ଼ିବି, ସନ୍ଦେହ ଏଥି ନାହିଁ ।
ବ୍ରାହ୍ମଣ ବୃଦ୍ଧ ଯଜ୍ଞଶୀଳ ଗୁରୁ ଦ୍ରୋଣ
ପୁଣି ଶସ୍ତ୍ର ଛାଡ଼ି ନ କରୁଥିଲେ ରଣ ।
ତାହାଙ୍କ ବାଳ ଧରି ଧୃଷ୍ଟଦ୍ୟୁମ୍ନ ଭେଣ୍ଡା
ହାଣିଲା କି ପୁଚ୍ଛୁଛ ପ୍ରହାରିଣ ଖଣ୍ଡା ।
ଏଥିକି ପ୍ରତି ରାୟେ ମରିବାର ଭଲ
ଜୀଇଁଲେ ହୃଦ ହେଉଥିବ କଲବଲ ।
ଅର୍ଜ୍ଜୁନର ମୁଖରୁ ଶୁଣି ଏହି ବାଣୀ
ନ କହି ତୁନି ହେଲେ ପାଣ୍ଡବ ନୃମଣି ।
କ୍ରୋଧ ହୋଇ ଭୀମ କହିଲେ ଏ ବଚନ
ତୁମ୍ଭେ ଏକା ଧରମ ଜାଣ ହେ ଅର୍ଜ୍ଜୁନ ।
ମୁନିମାନେ ସିନା ପାରନ୍ତି କହି ଏହା
ତୁମ୍ଭେ କିମ୍ପା କହୁଛ ହୋଇ ଧନୁର୍ବାହା ।

କ୍ଷତ୍ରିୟର ଧର୍ମ କ୍ଷତଗୁଁ ତାରିବାର
ସ୍ତିରୀ ସାଧୁପାଳନା କରି ନିରନ୍ତର ।
କ୍ଷତ୍ରିୟ ହୋଇ ତୁମ୍ଭେ ଅକ୍ଷତ୍ରିୟ ପରି
କହୁଛ କିପାଇଁ ଗାଣ୍ଡୀବ ଧନୁର୍ଦ୍ଧାରୀ ।
ଇନ୍ଦ୍ର ପରି ବିକ୍ରମ ବହିଛ ତ ତୁମ୍ଭେ
ଧର୍ମେ ତ ଚଳିବାର ଦେଖୁ ନାହୁଁ ଆମ୍ଭେ ।
ବନବାସେ ତେର ବରଷ ପାଇ ଦୁଃଖ
ଧରମ ସ୍ମରୁଛ କେତେ ତୁମ୍ଭେ ମୂର୍ଖ ।
ଜାଣୁଅଛୁ ଆମ୍ଭେଟି ଧରମରେ ବୁଦ୍ଧି
ରହିଥାଏ ବୋଲି ତୁମ୍ଭରି ନିରବଦ୍ଧି ।
ରାଜ୍ୟକୁ ହରି ତେର ବରଷ ଯୁଅରେ
ରଖିଲେଟି ବକଳ ପିନ୍ଧାଇ ବନରେ ।
ଏକବସ୍ତ୍ରା ହୋଇ ଦ୍ରୌପଦୀ ଦେବୀ ଥିଲେ
ସଭାରେ ଆଣି ତାଙ୍କୁ ଉଲଗ୍ନ କରିଲେ ।
କ୍ଷତ୍ରି ହୋଇ ତୁମ୍ଭେ ଏ କଥା ପାଶୋରିବ
ଧରମ ବିଚାରିବ ଏହା କେ ଭାବିବ ।
କୁରୁକୁଳ ଯାକକୁ ମୋର ବାହୁ ଦୁଇ
ନିର୍ମୂଳ କରିଦେବ ଦେଖିବ ହେ ଭାଇ ।
ତୁମ୍ଭେ ବୋଲିବାରୁଟି ଯୁଦ୍ଧ କଲୁଁ ଆସି
ଏବେ କିମ୍ପା ହୋଇଲ ଧର୍ମରେ ଲାଳସୀ ।
ଘାଆରେ ଲୁଣପାଣି ଦେଲା ପରି ତୁମ୍ଭେ
ବଚନରେ କହୁଛ ଜାଣିଲୁଣି ଆମ୍ଭେ ।
ଧାର୍ମିକ ହୋଇ ହେ ଅର୍ଜ୍ଜୁନ ମହାରଥା
ବାଢ଼ି କିମ୍ପା ବସିଛ ଅଧରମ କଥା ।
କୃଷ୍ଣ ପରା ଲୋକ ଅଛନ୍ତି ରଥେ ରହି
ପ୍ରଶଂସୁଅଛ ଦ୍ରୋଣପୁତ୍ରଙ୍କୁ କିପାଇଁ ।
ତୁମ୍ଭ ଷୋଳକଳାର କଥାକୁ ଦ୍ରୋଣସୁତ
ବଳ ସରି ନୁହଇ ଏ ସବୁରି ମତ ।
ଆପଣାର ବଳ ଆପଣା କହିବାର
ଅସୁନ୍ଦର ବୋଲି ମୁଁ ଜାଣୁଛି ବିଚାର ।
ତୁମ୍ଭ କଥା ସହି ନ ପାରି ଅରଜୁନ
କହୁଛି ଯାହା ମୁହିଁ ଶୁଣ ଦେଇ ମନ ।
ବାହୁବଳେ ମୁହିଁ ପାରଇ ମେରୁ ଟାଳି
ଦ୍ରୋଣଙ୍କ ସୁତ ଅବା କେତକର ବଳୀ ।
ଇନ୍ଦ୍ରାଦି ଦେବତା କରିବେ ଯେବେ ରଣ
ତେବେ ମୁଁ ଘେନିପାରେ ଯୁଦ୍ଧେ ତାଙ୍କ ପ୍ରାଣ ।
ମୋହ ପରା ଭାଇ ପାଖରେ ଥାଉଁ ଥାଉଁ
କାହିଁପାଇଁ ବୁକୁ କରୁଛ ଦାଉ ଦାଉ ।
ତୁମ୍ଭେ ଏବେ ଭାଇମାନଙ୍କୁ ସଙ୍ଗେ ଧରି
ଦେଖୁଥା ଯୁଦ୍ଧ ହେ ଗାଣ୍ଡୀବ ଧନୁର୍ଦ୍ଧାରୀ ।
ଗଦାଘାତକେ ଅଶ୍ୱତ୍ଥାମାଙ୍କର ମୁଣ୍ଡ
ଫଟାଇ ଲୋଟାଇ ଦେବି ଏ ରଣଦାଣ୍ଡ ।

ଏମନ୍ତ ସମୟରେ ଦ୍ରୁପଦ ନନ୍ଦନ
କ୍ରୋଧରେ ଅର୍ଜ୍ଜୁନଙ୍କୁ କହିଲେ ବଚନ ।
ଦାନ ପ୍ରତିଗ୍ରହ ଯେ ଯଜନ ଯାଜନ
ଅଧ୍ୟୟନ ଅଧ୍ୟାପନ ଏ ଛଅଁ ଦ୍ରୋଣ ।
କେଉଁ କଥାଟି କରୁଥିଲେ ସେ କଥାକୁ
ଜାଣିଥିଲେ ବତାଇ କହ ତା ଆମ୍ଭଙ୍କୁ ।
ଦ୍ୱିଜ ଧର୍ମ ଛାଡ଼ି କ୍ଷତ୍ରିୟ ଧର୍ମ କରି
ମାରୁଥିଲେ କ୍ଷତ୍ରିୟପଣେ ନ ବିଚାରି ।
ତାହାଙ୍କୁ ମାରିବାରେ ହେଲା କେଉଁ ଦୋଷ
ଏଥିକି କିପାଁ ମୋତେ କରୁଛ ହେ ରୋଷ ।
ଅସ୍ତ୍ର ନ ଜାଣିବା ଲୋକକୁ ବ୍ରହ୍ମଅସ୍ତ୍ର
କରିଣ ପୋଡ଼ି ପକାଇଲେ ତାଙ୍କ ଗାତ୍ର ।
ଦ୍ରୋଣପୁତ୍ର ଯେବେ ହେ ଆସୁଅଛି ଯୁଝି
ମୋ କାଣ୍ଡେ ଦେଖିବ ଶୋଇବ ରଣମଝି ।
ଏଥିକି ବସି ଏତେ କରିବା ବିଚାର
ବସି ତ ଛନ୍ତି କୃଷ୍ଣ ତାହାଙ୍କୁ ପଚାର ।
ଦ୍ରୋଣଙ୍କୁ ମାରିବାକୁ ହୋଇଛି ମୁଁ ଜାତ
ଏହା ଜାଣି ବୋଲୁଛ କଲୁ ଗୁରୁଘାତ ।
ଯୁଦ୍ଧ କଲା ଉତାରୁ ଦ୍ୱିଜ କ୍ଷତ୍ରିୟର
ଭେଦ ଅଛି କି ଆହେ ଅର୍ଜ୍ଜୁନ ବିଚାର ।
କ୍ଷତ୍ରିୟ ବୀର୍ଯ୍ୟରେ ଯେ ହୋଇଥିବ ଜାତ
କରିବ ଉପାୟରେ ଦ୍ରୋଣଙ୍କୁ ସେ ହତ ।
ଧର୍ମ ଅର୍ଥ କାମକୁ ଜାଣ ତ ହେ ତୁମ୍ଭେ
ନିନ୍ଦିବାର ପାତ୍ର କି ତୁମ୍ଭର କହ ଆମ୍ଭେ ।
ତୁମ୍ଭର ହିତ ପାଇଁ ଦ୍ରୋଣଙ୍କର ମୁଣ୍ଡ
କାଟିକରି ଗଡ଼ାଇଦେଲି ରଣଦାଣ୍ଡ ।
ପରଶଂସା ନ କରି ଅପ୍ରଶଂସା ବାଣୀ
ତୁମ୍ଭ ବିନା ଆନ କେ କହନ୍ତା ଏ ବାଣୀ ।
ଭାଇ ମୋର ଶିଖଣ୍ଡୀ ଭୀଷ୍ମଙ୍କର ପ୍ରାଣ
ଘେନିଲା ତ ଦେଖିଲ ବିନ୍ଧି ମୁନବାଣ ।
ମୁଁ ତ ଦ୍ରୋଣ ମୁଣ୍ଡକୁ ପକାଇଲି କାଟି
କହ ତ ନିନ୍ଦାଯୋଗ୍ୟ କିରୂପେ ହେଲିଟି ।
କାଟିଲେ ହେଲେ ମୁହିଁ ଦ୍ରୋଣଙ୍କର ମୁଣ୍ଡ
ପୂରି ରହିଛି ହେ ଦୁଃଖ ମୋ ହୃଦଖଣ୍ଡ ।
ଜୟଦ୍ରଥର ମୁଣ୍ଡ ଉଡ଼ାଇଲା ପରି
ଦ୍ରୋଣମୁଣ୍ଡ ଉଡ଼ାଇଥାନ୍ତି ଶସ୍ତ୍ର ମାରି ।
ତେବେ ଅବା କେତେ ହେ ହୋଇଥାନ୍ତି ସୁଖ
କି କହିବି ତୁମ୍ଭଙ୍କୁ ମୁହିଁ ତ ମୂରୁଖ ।
ଶତ୍ରୁକୁ ଆଗେ ପରେ କରଇ ଯେ ନାଶ
ପରକାଶ ହୋଏ ତାହାରଟିକି ଦୋଷ ।
ବାପଙ୍କ ସଖା ଭଗଦତ୍ତଙ୍କୁ ମାଇଲ
ଦ୍ରୋଣଙ୍କୁ ମାରିବାରୁ ମୋତେ ନିନ୍ଦା କଲ ।

ଏ ତୁମ୍ଭ ଯୁକତ ହେଲା କି ମନେ କର
କହୁଅଛ ତ ହୋଇ ଧରମପ୍ରବର ।
ତୁମ୍ଭଙ୍କୁ ତ ଆମ୍ଭେ ଭଉଣୀଟାଏ ଦେଇ
ରହିଛୁ ସବୁକାଳେ ଅନୁଗତ ହୋଇ ।
ଏଥିକି ଚାହିଁ କଲେ ସହୁଁ ପରାଭବ
ତୁମ୍ଭର କିଛି ନାହିଁ ଆମ୍ଭଠାରେ ଭାବ ।
ହାତୀ ଶୋଇପଡ଼ିଲେ ଚଢ଼ଇ ମାହୁନ୍ତ
କରଇଟି ମନରେ ମୁହିଁ ବଳବନ୍ତ ।
ସେହିରୂପରେ ସବୁ ସହିବାରୁ ଆମ୍ଭେ
ଗର୍ବିତ ହୋଇକରି କହୁଅଛ ତୁମ୍ଭେ ।
ଭଉଣୀ ଭଣଜାଙ୍କ ଯୋଗୁଁ ତୁମ୍ଭ ଚାଲି
ସହିଟି ରହିଅଛୁଁ ଆମ୍ଭେ ଜାଣ ପେଲି ।
ବାପାଙ୍କ ଦିନୁ ଆମ୍ଭ ଶତ୍ରୁ ଅଟେ ଦ୍ରୋଣ
ନ ନିଅନ୍ତୁ କିପାଇଁ ଆମ୍ଭେ ତାର ପ୍ରାଣ ।
ଶିଷ୍ୟଦ୍ରୋହୀ ହେବାରୁ ହେଲୁଁ ଗୁରୁଦ୍ରୋହୀ
ଧରମ ଲୋଡ଼ୁଛ ଏଥିକି କାହିପାଇଁ ।
ଧୃତରାଷ୍ଟ୍ର ବୋଇଲେ ପାର୍ଥ ଧର୍ମବାଣୀ
ଶୁଣି ଧୃଷ୍ଟଦ୍ୟୁମ୍ନ କହିଲା ଶିର ଟାଣି ।
ସବୁଙ୍କରି ଗୁରୁ ତ ଭରଦ୍ୱାଜସୁତ
ଅଧର୍ମେ ପାପିଷ୍ଠ କଲା ତ ତାଙ୍କୁ ହତ ।
କହିଲେ ଧର୍ମପନ୍ଥା ମଥା ଦୋହଲାଇ
ଅର୍ଜୁନଙ୍କୁ କହିଲା ଭଙ୍ଗୀରେ ଚଳାଇ ।
ତାହା ଶୁଣି କେହିଟି ନ କହିଲେ କଥା
ଏହି କଥା ମୋର କରୁଛି ଜାତ ବ୍ୟଥା ।
ସଞ୍ଜୟ ବୋଇଲେ ହେ ଧୃଷ୍ଟଦ୍ୟୁମନର
ବଚନ ଶୁଣି କେହି ନ ଦେଲେ ଉତ୍ତର ।
କଟାକ୍ଷରେ ଅର୍ଜୁନ ମାତ୍ର ତାଙ୍କୁ ଚାହିଁ
ଧିକ୍ ତୋତେ ହେଉ ବୋଇଲେ କ୍ରୋଧ ବହି ।
ଯୁଧିଷ୍ଠିର ଭୀମ ନକୁଳ ସହଦେବ
କୃଷ୍ଣ ଆଦି ଲାଜ ପାଇଲେ ନରଦେବ ।
ସାତ୍ୟକି ସେକାଳେ ବୋଇଲେ ଧୃଷ୍ଟଦ୍ୟୁମ୍ନ
ପୋଢୁ ପୋଢୁ ହେବାର ତୁ ରାଜନନ୍ଦନ ।
ତୋହ ପରି ପାପୀକି କରିବାକୁ ହତ
ପୁରୁଷ ନାହିଁ ପାଣ୍ଡୁ ସୈନ୍ୟେ ପାଏ ଚିତ୍ତ ।
ସମସ୍ତ ଲୋକଙ୍କରେ ନିନ୍ଦା ପାଇ କେହି
ଜୀଇଛୁ ଧୃଷ୍ଟଦ୍ୟୁମ୍ନ କହ ତ ହେ ଚାହିଁ ।
ଲାଜ ତୋ ମୁଖକୁ କରିଅଛି ଦୂର
ଗୁରୁ ବଧ କରି ବୋଲାଉ ତୁହି ବୀର ।
ଜିଭ ତୋର କିରୂପେ ନ ଛିଡ଼ି ରହିଛି
ଏ କଥା ଏକା ଚମତ୍କାର ମୁଁ ମଣୁଛି ।
ସବୁ ଲୋକଙ୍କରେ ତ ହେଲୁନି ନିନ୍ଦିତ
ତୋ ମତରେ ତୁହି ହୋଇଛୁ ଧର୍ମବନ୍ତ ।
ଜୀଇବାର ତୋର କିଛିହିଁ କାର୍ଯ୍ୟ ନାହିଁ
ମରିଥିଲେ ଭଲ ହୁଅନ୍ତା କହୁଥାଇଁ ।
ଗୁରୁ ବାଳ ଧରିଣ ତୋ ବିନା କେ ଆନ
ହାଣିବ ହାଣିଛି କହ ତ ଧୃଷ୍ଟଦ୍ୟୁମ୍ନ ।
ଦ୍ରୁପଦ ରାଜା କେଡ଼େ ଅଭାଗ୍ୟ କରିଲେ
ତୋତେ ପୁତ୍ର କରି କୁଳରେ ଜାତ କଲେ ।
ତୋ ସକାଶୁଁ ତଳ ଉପର ସାତ ସାତ
ପୁରୁଷ ଘେନି ସେ ନରକେ ହେଲେ ଗତ ।
ଭୀଷ୍ମ ଦ୍ରୋଣଙ୍କୁ ମାରିବା ଲୋକଟି ତୁମ୍ଭେ
ତୁମ୍ଭଙ୍କୁ ବଳୀ ପାପୀ ଦେଖୁ ନାହୁଁ ଆମ୍ଭେ ।
ପାଞ୍ଚାଳମାନେ ତୁମ୍ଭ ବଳେ ମିତ୍ରଦ୍ରୋହୀ
ହେଲେ ତୋତେ ଗୋଟିଏ କହିବାକୁ ନାହିଁ ।
ଆଉ ଥରେ ମୋ ଆଗେ ଫିଟାଇଲେ ତୁଣ୍ଡ
ଫଟାଇବିଟି ଗଦାରେ ଜାଣ ତୋର ମୁଣ୍ଡ ।
ବ୍ରହ୍ମହତ୍ୟାକାରୀକୁ ଯେ ଲୋକ ଦେଖିବ
ସୂର୍ଯ୍ୟଙ୍କୁ ଦେଖିଲେ ପାତକ ନାଶ ଯିବ ।
ତୋହର ଯେ ମୁହଁକୁ ଦେଖିଅଛି ଆଜି
ରହିଛି ଏଣୁଟି ସୂର୍ଯ୍ୟଙ୍କୁ ଚାହିଁ ଭଜି ।
ବ୍ରହ୍ମଦ୍ରୋହୀ ପୁଣି ଗୁରୁଦ୍ରୋହୀ ଆପଣ
କିରୂପେ ଚାହାଁଯିବ ମୁଖ ତୋ ବଖାଣ ।
ଗୁରୁର ଗୁରୁକୁ ମୋ ମାରିକରି ନିନ୍ଦା
କେତେ କହୁଅଛ ବଳକୁ କରି ଫନ୍ଦା ।
ରହ ରହ ମୋହର ସହି ଗଦାଘାତ,
ବଳ ଥିଲେ ତାହାକୁ ଦେଖାଅ ତୁରିତ ।
ଏରୂପେ ସାତ୍ୟକିଙ୍କ ଅଧୀକ୍ଷେପ ବାଣୀ
ଦ୍ରୁପଦଙ୍କ ନନ୍ଦନ ଧୃଷ୍ଟଦ୍ୟୁମ୍ନ ଶୁଣି ।
ବୋଇଲେ ଯେତେ ତୁମ୍ଭେ ବୋଇଲ ମାଧବ
ସବୁ ସୁହାଗଲା ଥିବାରୁ ପୂର୍ବଭାବ ।
ଅସାଧୁଲୋକ ସାଧୁ ଲୋକ ଅଧିକ୍ଷେପ
କରିଣ ସାଧୁଙ୍କର ବଢ଼ାଏ ସନ୍ତାପ ।
କ୍ଷମାକୁ କରିବାର ପାପୀ ବିନା ଆନ-
ଠାରେ ଭଲ ବୋଲି କହନ୍ତି ସବୁଜନ ।
ପାପୀକି ଯେବେ କ୍ଷମାଦେବା ଗର୍ବ ବହି
ଡରିଲା ବୋଲି ବାହା ଚାଲେ ସେ ହଲାଇ ।
ନଖଠାରୁ କେଶ ପର୍ଯ୍ୟନ୍ତ ତୁମ୍ଭ ଗୁଣ
ବାଛୁଥିଲେ ବାହା ରୁଥିବଟି ଦୁର୍ଗୁଣ ।
ନ ଥିଲା ଭୁଜ ପ୍ରାୟୋପବେଶ ଭୂରିଶ୍ରବା
କରିଥିଲେ ତାଙ୍କୁ ମାରିଛ କି ବୋଲିବା ।
ଏ ବାହାରେ ପୁଣି ନିବାରୁଥିଲେ ଲୋକେ
ପ୍ରହାରିଲେ ଖଣ୍ଡା ନେଇଣ ତାଙ୍କ ବେକେ ।
ଭଲ ଗୁଣରେ ଏକା ଏ ଗୁଣ ତୁମ୍ଭର
ହୋଇଛି ଲେଖା ଆଉ ମୋତେ କି ପଚାର ।

ଧରି ତ ଥିଲେ ଭୂରିଶ୍ରବା ତୁମ୍ଭ ବାଳ
ତେବେ ହେଲେ ନ ଥିଲା କରେ କରବାଳ ।
ଅରଜୁନ ବାହୁକୁ କାଟିବାରୁ ଟାଣି-
ହୋଇଣ ହାଣି ପକାଇଲ ଶିର ପୁଣି ।
ଯେଉଁଠାବରେ ଦ୍ରୋଣ କରୁଥାନ୍ତି ରଣ
ସେଠାରେ ମୁଁ ଯୁଝୁଥାଏ ତ ତୁମ୍ଭେ ଜାଣ ।
ଚାଣ୍ଡାଳ ପରି କର୍ମ କରିଅଛ ତୁମ୍ଭେ
ନିନ୍ଦା ଯେ କରୁଛ କି କଲୁଁ କହ ଆମ୍ଭେ ।
ବଡ଼ ପାପ କର୍ମ କରିଛ ଯୁଯୁଧାନ
ନୁହଟି କଥାକୁ ହେ ତୁମ୍ଭେ ଯୋଗ୍ୟ ଜାଣ ।
ଆଉଥରେ ମୋତେ ଏହି ରୂପରେ କଥା
କହିଲେ କାଟି ପକାଇବି ତୁମ୍ଭ ମଥା ।
ଯୁଧିଷ୍ଠିର ରାଜାଙ୍କୁ ଜୁଆରେ ବଞ୍ଚାଇ
ଖେଦିଲେ କୁରମାନେ ବକଳ ପିନ୍ଧାଇ ।
ପାଣ୍ଡବଙ୍କର ଘରଯାକ ଲୁଟି କଲେ
କପଟେ ଶଲ୍ୟଙ୍କୁ ତାଙ୍କର କରିନେଲେ ।
ଅଭିମନ୍ୟୁ ପରା ପୁଅକୁ ଅଧରମ
ଯୁଦ୍ଧ କରିଣ ଦେଖାଇଲେ ଯମଗ୍ରାମ ।
ପାଣ୍ଡବେ ସେହିରୂପେ ପିତାମହ ଭୀଷ୍ମ
ପ୍ରାଣ ନେଲେ ଅଧର୍ମେ କରି ଯୁଦ୍ଧ ଉଷ୍ମ ।
ତୁମ୍ଭେ ତ ଭୂରିଶ୍ରବା ହତ ଯେଉଁରୂପେ
କରିଅଛ ତାହା ବିଚାର ବସି ଆପେ ।
ଏରୂପେ କୁହ ପାଣ୍ଡୁ ଅଧର୍ମ ବହୁତ
ଆଚରିଛନ୍ତି ଆହେ ମଧୁବଂଶ ସୁତ ।
ଧରମର ସୂକ୍ଷ୍ମ ନ ଜାଣନ୍ତିଟି କେହି
କି ବୋଲିବା କହୁଛ ଧାର୍ମିକ ବୋଲାଇ ।
ଏଥିକି ଅନୁରୂପ କହୁଅଛ କଥା
ଲାଜ ପାଇ ସାତ୍ୟକି ରହ ପୋତି ମଥା ।
ଯୁଦ୍ଧ କରି ଏବେ କୁରୁଙ୍କ ପ୍ରାଣ ନିଅ
ପାଣ୍ଡୁସୁତଙ୍କର ପୀରତିକି ବଢ଼ାଅ ।
ଏ ବଚନ ଶୁଣି ସାତ୍ୟକି ହୋଇ କ୍ରୋଧ
ବୋଲେ ଧୃଷ୍ଟଦ୍ୟୁମ୍ନ କରିବି ତୋତେ ବଧ ।
ସାପ ପରି ଶ୍ୱାସ ପକାଇ ବୀର ମଣି
ବାହାରିଲେ ହୋଇକରି ସେ ଗଦାପାଣି ।
କୃଷ୍ଣ ତାହା ଦେଖିଣ କହିଲେ ଭୀମଙ୍କୁ
ନିବାର ଯାଇ ହେ ସାତ୍ୱକି ପ୍ରବରଙ୍କୁ ।
ଭୀମ କୃଷ୍ଣଙ୍କର ବଚନ କର୍ଣ୍ଣେ ଶୁଣି
ରଥରୁ ଅବତରି ପଡ଼ିଲେ ସେକ୍ଷଣି ।
ସାତ୍ୟକିଙ୍କି ଦୁଇବାହୁରେ ପୋଟାଳିଲେ
ତେବେ ହେଲେ ସାତ୍ୟକି ତାଙ୍କୁ ଘେନିଗଲେ ।
ଛ ପହଣ୍ଡ ଉତ୍ତାରୁ ଭୀମ ମହାବଳୀ
ରଖିଲେ ସାତ୍ୟକିଙ୍କ ଟିପ ମାଡ଼ି ଚଳି ।
ଏହି ସମୟରେ କହିଲେ ସହଦେବ
ଶୁଣ ମୋ କଥା ମନ ଦେଇଣ ମାଧବ ।
ବୃଷ୍ଣି ପାଞ୍ଚାଳଙ୍କଠାରୁ ଆମ୍ଭର ମିତ
ଖୋଜିଲେ ତ ଦିଶୁନାହିଁ ଟି ଏ ଜଗତ ।
ଏଥିରେ କୃଷ୍ଣ ତୁମ୍ଭେ ଯେରୂପେ ଆମ୍ଭର
ସେହିରୂପେ କେହି ନୁହନ୍ତି ମନେକର ।
ଆମ୍ଭେ ସେହିରୂପେ ତୁମ୍ଭର ମିତ୍ର ଅଟୁଁ
ବିଚାରିଲେ ଏଥିରେ ନାହିଁ କିଛି ଚାଟୁ ।
ପାଞ୍ଚାଳଙ୍କରଟି ପାଣ୍ଡବ ବୃଷ୍ଣି ବିନା
ମିତ୍ର ହୋଇ କେହି ନାହିଁ ହେ ମହାମନା ।
ସବୁ ଧର୍ମ ତୁମ୍ଭଙ୍କୁ ହୋଇଛି ତ ଜଣା
କହିବାକୁ କଥା ତ ନାହିଁ ହୋଇ କଣା ।
ମିତ୍ର ଧର୍ମ ଆଚରି କ୍ରୋଧକୁ ସଂହାର
ଯେବେ ତୁମ୍ଭେ ଆମ୍ଭମାନଙ୍କ ବୋଲ କର ।
ଦୁହେଁ ଦୁହିଁଙ୍କର ଦୋଷକୁ କ୍ଷମାକର
ଆମ୍ଭମାନଙ୍କର ଘେନ ଏ କହିବାର ।
ଏହି ସମୟରେ ଯେ ହସି ଧୃଷ୍ଟଦ୍ୟୁମ୍ନ
ବୋଇଲେ ଶୁଣ ହେ ମୋ କଥା ଭୀମସେନ ।
ମୋତେ ମାରିବାକୁ ସାତ୍ୟକି ଅଛି ଧାଇଁ
ଧରୁଅଛ ତୁମ୍ଭେ ତାହାକୁ କାହିଁପାଇଁ ।
ତୀକ୍ଷ୍ଣ କାଣ୍ଡକରେ ସାତ୍ୟକିର ମୁଣ୍ଡ
ଦେଉଅଛି ଗଡ଼ାଇ ଦେଖ ରଣଦାଣ୍ଡ ।
ଏତେବେଳେ ତୁମ୍ଭର କାର୍ଯ୍ୟ ତ ପଡ଼ିଛି
ଏ କଥା ଭାବି ମୁଁ ଅଳପ ଓହରୁଛି ।
ଅର୍ଜ୍ଜୁନ ତ ଅଛନ୍ତି କରନ୍ତୁ ସେ ରଣ
କୁରୁଙ୍କୁ ମୁଁ ଏହାର ଘେନିଯାଏଁ ପ୍ରାଣ ।
ଭୂରିଶ୍ରବା ପରି କରିଛି ମୋତେ ମନେ
ଜାଣିବ ବାଜିଲେ ମୋ କାଣ୍ଡ ଅପଘନେ ।
ଏହା ଶୁଣିଣ ଭୀମ ବାହୁମଧ୍ୟେ ଥାଇ
ଗର୍ଜିଲେ ସାତ୍ୟକି ଅତ୍ୟନ୍ତ କ୍ରୋଧ ହୋଇ ।
ସାତ୍ୟକି ପରି ଧୃଷ୍ଟଦ୍ୟୁମ୍ନ ମଧ ଗର୍ଜି
ରହିଲେ କୃଷ୍ଣଙ୍କ ବଚନେ ଶାନ୍ତି ଭଜି ।
ଦୁହିଙ୍କି ସମାଧାନ କରି ପାଣ୍ଡୁସୁତେ
ବାହାରିଲେ କୁରୁଙ୍କୁ ଯୁଝି ଇଚ୍ଛି ଚିତ୍ତେ ।
ଅନ୍ତକ ପରି ଦ୍ରୋଣସୁତ ଶତ୍ରୁକୁଳ
ଦଳି ପକାଇଲେ ଦେଖାଇ ଦେହବଳ ।
ରଥ ଗଜ ଦ୍ରୁମ ପାଷାଣରେ ଆବୃତ
କରି ମଡ଼ା ପର୍ବତ ଦ୍ରୌଣି କଲେ ଜାତ ।
ଏହା କରିସାରି କରିଣ ଗରଜନ
କହିଲେ ଦ୍ରୋଣସୁତ ପ୍ରତିଜ୍ଞା ବଚନ ।
ଯୁଧିଷ୍ଠିର ଗୁରୁଙ୍କୁ କହିଲେ ତ ମିଛ
ତାହା ତ ସବୁ ପ୍ରାଣୀ କର୍ଣ୍ଣରେ ଶୁଣିଛ ।

ଯୁଧିଷ୍ଠିର ଦେଖ ନୟନେ ଚାହୁଁଥିବେ
ମୋ ବାଣେ ତାଙ୍କ ଲୋକେ ଯମପୁର ଯିବେ ।
ଆଗ ଧୃଷ୍ଟଦ୍ୟୁମ୍ନର ଘେନିବି ଜୀବନ
ପଛେ ନାଶ କରିବ ପାଣ୍ଡବ ସଇନ ।
ସତ୍ୟ କରି ଏ କଥା କହୁଅଛି ମୁହିଁ
ଏ ବାକ୍ୟେ ସନ୍ଦେହ ନ ଘେନ ମନେ କେହି ।
ଏହା ଶୁଣିଣ ଦୁର୍ଯ୍ୟୋଧନ ସିଂହନାଦ
କଲେ ମାନସ ମଧେ ବହିଣ ପ୍ରମୋଦ ।
କୁରୁଙ୍କୁ ବୋଇଲେ ନ ମୋଡ଼ କେହି ମୁହଁ
ଦେଖୁଛ ତ ଦ୍ରୌଣି କରିଅଛନ୍ତି କୋହ ।
ଏହି କାଳେ କୁରୁ ପାଣ୍ଡବେ ମିଶାମିଶି
ହୋଇ ହେଲେ ଅସିମାନଙ୍କେ କଷାକଷି ।
ପରସ୍ପରେ ଯୁଦ୍ଧରେ ଦୁଇ ସେନା ମାନ
ଦେଇ ରାୟେ ଆରମ୍ଭ କଲେ ଆୟୋଧନ ।
ସମୁଦ୍ରରେ ସମୁଦ୍ର ମିଶିଗଲା ପ୍ରାୟେ
ମିଶିଗଲେ ଯେ କୁରୁ ପାଣ୍ଡୁ ସେନା ରାୟେ ।
ଶତ ଶତ ଶଙ୍ଖ ସେ ପଣବ ଗୋ ମୁଖ
ବଜାଇଲେ ଦୁଇ ସେନାଏ ଦେଇ ମୁଖ ।
ପାଣ୍ଡବ ପାଞ୍ଚାଳଙ୍କ ମରଣ ବିଚାରି
ଦ୍ରୋଣସୁତ ସଜ କରିଣ ଚାପ ଧରି ।
ନାରାୟଣ ଅସ୍ତ୍ର ରୋପକୁ କୋପଭରେ
ଧଇଲେ ପରତାପ ଇଚ୍ଛାରେ ଧାପରେ ।
ଚାପମଧେ ନେଇ ରଖି ସେ ଅସ୍ତ୍ରବର
ଆଣିଲେ ଝିଙ୍କି ଗୁଣ କର୍ଣ୍ଣଙ୍କୁ ତାଙ୍କର ।
ଦ୍ରୌଣିଙ୍କର ଚାପମଣ୍ଡଳୁ ସୂର୍ଯ୍ୟକର
ଦେଖା ହୋଇ ହେଲା ସେ କାଳେ କି ବାହାର ।
ସେ ଅସ୍ତ୍ରରୁ ଅସ୍ତ୍ର ବାହାରି କୋଟି କୋଟି
ଧାଇଁ ପାଣ୍ଡବଙ୍କ ପରାଣ କଲେ ଲୁଟି ।
ନାରାୟଣ ଅସ୍ତ୍ର ଯେ ଯିବାର ସମୟେ
ସୂର୍ଯ୍ୟଙ୍କର କର ମହୀ ନ ଛୁଇଁଲା ରାୟେ ।
ପ୍ରଳୟାଗ୍ନି ପରି ସରଜି ଜ୍ୱାଳାମାଳା
ପାଣ୍ଡୁବଳ ପୋଡ଼ିବାକୁ ସେ ବାହାରିଲା ।
ଗଦା ଶକ୍ତି ହୂଲ ଶତଘ୍ନୀ ଓ ଲଗୁଡ଼
ଦ୍ୱିଚକ୍ର ଚତୁଷ୍ଚକ୍ର ମୂଷଳ ଯେ ବଡ଼ ।
ସେ ଅସ୍ତ୍ରରୁ ଜାତ ହୋଇଲା ଆହେ ରାୟେ
ତା ଦେଖି ଛପିଗଲେ ପାଣ୍ଡବ ସେନାଏ ।
ମନୁଆ ପଣ କରି ନୁଆଇଁ ଯେ ଧନୁ
ଯୁଦ୍ଧ କଲା ସେ ଅସ୍ତ୍ର ପୋଡ଼ିଲା ତା ତନୁ ।
କେତେ ସେନା ସେ ଅସ୍ତ୍ର ତେଜର ପ୍ରତାପେ
ପୋଡ଼ି ମରି ବସିଲେ ଯମପୁର ଧାପେ ।
ଗ୍ରୀଷମରେ ଅନଳ ବନକୁ ଦହନ-
କଲା ପରି ଅସ୍ତ୍ର ଦହିଲା ପାଣ୍ଡୁ ସୈନ୍ୟ ।
ନାରାୟଣ ଅସ୍ତ୍ରରେ ଯାନ୍ତେ ସୈନ୍ୟ ପୋଡ଼ି
ଯୁଧିଷ୍ଠିର ରାଜା ଥରିଲେ ଧୈର୍ଯ୍ୟ ଛାଡ଼ି ।
ବାମ ପାଖେ ଯୁଧିଷ୍ଠିରଙ୍କ ଅରଜୁନ
ଥିଲେ ହେଲେ ରାଜା ନୋହିଲେ ଧୈର୍ଯ୍ୟମନ ।
କହିଲେ ଧୃଷ୍ଟଦ୍ୟୁମ୍ନ ତୁମ୍ଭ ସେନା ଘେନି
ପଳାଅ ହେ ଯୁଦ୍ଧ ନ କରି ହୋଇ ତୁନି ।
ବୃଷ୍ଣି ଅନ୍ଧକଙ୍କୁ ଘେନିଣ ଯେ ସାତ୍ୟକି
ପଳାଅ କିସ ଯୁଦ୍ଧ କର ଧନୁ ଟେକି ।
ତ୍ରିଲୋକ ରଖିବା ସାମର୍ଥ୍ୟ କୃଷ୍ଣଙ୍କର
ରଖି ତ ସେ ପାରିବେ ତାଙ୍କର ଶରୀର ।
ଏ ବାହାରେ ଯେତକ ମୋ ପାଇଁ ଯୁଝୁଛ
ମୋ ବୋଲ ଘେନିଣ ଗୋଡ଼କୁ କର ପଛ ।
ଗାଙ୍ଗେୟ ଦ୍ରୋଣ ସମୁଦ୍ରରେ ଦ୍ରୋଣସୁତ
ଗୋଷ୍ପାଦେ ଯୋଗ ଥିଲା ହେବାକୁ ମୁଁ ହତ ।
ଚାରୋଟି ଭାଇ ସଙ୍ଗେ ଘେନି ମୁଁ ଅନଳେ
ପରବେଶ ହେବି ବା ମରିବି ଏ ରୋଳେ ।
ଅର୍ଜୁନଙ୍କର ମନୋରଥ ପୂର୍ଣ୍ଣ ହେଉ
କୁରୁଏ ମରିବାର ଏତେକରେ ରହୁ ।
ଧର୍ମଜ୍ଞ ସତ୍ୟସନ୍ଧ ଦ୍ରୋଣଙ୍କୁ ମୁଁ ହତ
କରାଇବାରୁ ପରା ହେଲା ମୋ ଶ୍ରୀଚ୍ୟୁତ ।
ଅଭିମନ୍ୟୁ ପିଲାକୁ ଦ୍ରୋଣ ପରା ରଥୀ
ଥାଇଣ କରାଇଲେ ଯୁଦ୍ଧରେ ବିରଥୀ ।
ଏ ବାହାରେ ଦୁଃଶାସନର ହାତେ ଗଦା
ଦିଆଇ କରାଇଲେ ପିଲା ମୁଣ୍ଡ ପଦା ।
ଦ୍ରୌପଦୀଙ୍କି ସଭାରେ ଯେବେ ଛିଡ଼ା କଲେ
ଧାର୍ମିକ ହୋଇ ଦ୍ରୋଣ କିଛି ନ କହିଲେ ।
ନ କାଟିବାକୁ ଦେହେ ଅର୍ଜୁନ ନାରାଚ
ଦେଲେ ଦୁର୍ଯ୍ୟୋଧନକୁ ଅଭେଦ କବଚ ।
ସତ୍ୟଜିତ ଆଦି ଦ୍ରୁପଦଙ୍କର ସୁତ-
ମାନଙ୍କୁ ବ୍ରହ୍ମଅସ୍ତ୍ର ଦ୍ରୋଣ କଲେ ହତ ।
ଅସ୍ତ୍ର ନ ଜାଣିବା ଲୋକକୁ ବ୍ରହ୍ମଶରେ
ମାରନ୍ତି ଦ୍ରୋଣ ଧର୍ମବନ୍ତ ହୋଇବାରେ ।
ଆମ୍ଭେମାନେ ବନକୁ ଯାନ୍ତେ ଦ୍ରୋଣଗୁରୁ
ଆଶ୍ରେକଲେ କୁରୁଙ୍କୁ ଧର୍ମେ ନୋହି ଭୀରୁ ।
ଏରୂପେ ଆମ୍ଭ କାର୍ଯ୍ୟେ ଥାଇ ଦ୍ରୋଣ ମନେ
କେଉଁ କାର୍ଯ୍ୟ ଆଉ ଲଭିବି ଜୀଇଥିଲେ ।
ଏରୂପେ ଯୁଧିଷ୍ଠିର କରନ୍ତେ ପରିହାସ
ସେକାଳେ ତାହାଙ୍କୁ କହିଲେ ପୀତବାସ ।
ଏ ଯାନମାନଙ୍କରୁ ସମସ୍ତେ ଓହ୍ଲାଇ
ରହିଥା ଛିଡ଼ାହୋଇ ଶସ୍ତ୍ରକୁ ପକାଇ ।
ଏ ଅସ୍ତ୍ର ନାଶ ପାଇଁ ନାରାୟଣ ଏହା
କହିଛନ୍ତି ଶସ୍ତ୍ର ନ ଧର କେହି ବାହା ।

ଶସ୍ତ୍ର ନ ଧରିବା ଲୋକକୁ ଏହି ଅସ୍ତ୍ର
ନ ମାରଇ ଯେ ଧରେ ନାଶଇ ତା ଗାତ୍ର ।
ଶସ୍ତ୍ର ଧରି ଯେତେ କରିବ ତୁମ୍ଭେ ଯୁଦ୍ଧ
ତେତେକ ନାରାୟଣ ଅସ୍ତ୍ରେ ହେବ ବଧ ।
ମନେ ଯୁଦ୍ଧ କରିବାକୁ ଯେ ବିଚାରିବ
ଏ ଅସ୍ତ୍ର ତାହାକୁଟି ଅବଶ୍ୟ ମାରିବ ।
ଏରୂପରେ କହନ୍ତେ ଜଗତଗୋସାଇଁ
ଛାଡ଼ିଲେ ଅସ୍ତ୍ର ପାଣ୍ଡୁ ସେନା ନରସାଇଁ ।
ସେହିକାଳେ ମାରୁତ କହିଲେ ଯୋଦ୍ଧାଙ୍କୁ
ନ ଛାଡ଼ି ଶସ୍ତ୍ର ଯୁଝ ଘେନି ମୋ କଥାକୁ ।
ଏବେ ଅଶ୍ୱତ୍ଥାମାର ଅସ୍ତ୍ରକୁ ସଂହାର-
କରିବି, ଦେଖ ଆଜି ବିକ୍ରମ ମୋହର ।
ମୋ କାଣ୍ଡେ ଅଶ୍ୱତ୍ଥାମା ଅସ୍ତ୍ରର ପ୍ରତାପ
ନ ଭାଙ୍ଗିଲେ ପିଟିବି ଗଦା ବହି କୋପ ।
ମୋ ପରି ବିକ୍ରମରେ ପୁରୁଷ ମହୀ-
ମଣ୍ଡଳେ ଥିଲା ପରି ନେତ୍ରେ ଦିଶୁ ନାହିଁ ।
ନାଗରାଜ-କର ପରାୟେ ମୋର କର
ଘୁଞ୍ଚିଯିବେ ସଂଗ୍ରାମ କଲେଟି ଶଙ୍କର ।
ଦେବତାମାନଙ୍କରେ ଇନ୍ଦ୍ରଙ୍କ ପରାୟେ
ନରଙ୍କରେ ବଳ ରହିଛି ମୋର କାୟେ ।
ନାରାୟଣ ଅସ୍ତ୍ରର ପ୍ରତିଯୋଦ୍ଧା ମୁହିଁ
ବୋଲିକରି ଜାଣ ହେ ସର୍ବ ନରସାଇଁ ।
ଏହା କହି ବୋଇଲେ ଅର୍ଜ୍ଜୁନ ଗାଣ୍ଡୀବ
ନ ଛାଡ଼, ତୁମ୍ଭ ପରି ନାହିଁ ତ ମାନବ ।
ଚନ୍ଦ୍ର ପରି କୀର୍ତ୍ତି ମହୀରେ ବ୍ୟାପିଅଛି
ଦ୍ରୋଣପୁତ୍ର ଭୟେ ନ ଦିଅ ତାହା ପୋଛି ।
ଅର୍ଜ୍ଜୁନ ବୋଇଲେ ବ୍ରାହ୍ମଣ ନାରାୟଣ
ଅସ୍ତ୍ର କଲେ ଗାଣ୍ଡୀବ ଛାଡ଼ିବି ମୁଁ ଜାଣ ।
ଅର୍ଜ୍ଜୁନଙ୍କ ବଚନ ଭୀମ ନ ଘେନିଲେ
ଯୁଝିବାକୁ ଅଶ୍ୱତ୍ଥାମାକୁ ବାହାରିଲେ ।
ଅଶ୍ୱତ୍ଥାମା ଦେହକୁ ବଜାଇଣ କାଣ୍ଡ
ବିନ୍ଧିଲେ ରାଗେ ଭୀମ ଝିଙ୍କିଣ କୋଦଣ୍ଡ ।
ଭୀମଙ୍କ ଯୁଦ୍ଧ ଦେଖି ହସି ଦ୍ରୋଣ ବୀର
ନାରାୟଣଅସ୍ତ୍ର ବଳରୁ କେତେ ଶର ।
ଭୀମଙ୍କର ମୁଣ୍ଡରେ ପକାଇଲେ ଦ୍ରୌଣି
ଭୀମ ଯୁଦ୍ଧ କଲେ ତା କିଛିହିଁ ନ ଜାଣି ।
ସେ କାଣ୍ଡମାନଙ୍କରେ ମୁନରୁ ତ ଜ୍ୱାଳା
ବାହାରିଥିଲେ ରାୟେ ହୋଇ ମାଳା ମାଳା ।
ସେହି ଜ୍ୱାଳାରେ ଭୀମ ହୁଅନ୍ତେ ଆବୃତ
ଦିଶିଲେ ଅଗ୍ନି ପରି ଯୁଦ୍ଧେ ପ୍ରଦୀପିତ ।
ଯେତିକି ଭୀମ ଯୁଦ୍ଧ କରୁଥିଲେ ରୋଷେ
ତେତିକି ସେ ଅସ୍ତ୍ର ଦିଶିଲା ଦଶ ଦିଶେ ।
ଭୀମଙ୍କ ବିନା ନାରାୟଣ-ଅସ୍ତ୍ର-ପ୍ରଭା
ଭାଙ୍ଗି ପକାଇଲା ସବୁରି ଦେହ ଶୋଭା ।
ପାଣ୍ଡୁ ସେନାସକଳ ଗଜ ଅଶ୍ୱ ରଥ
ଛାଡ଼ିକରି ରହିଲେ ହୋଇ ଶୂନ୍ୟ-ହାତ ।
ଏ ସକାଶୁଁ ସେ ଅସ୍ତ୍ର ସେନାଙ୍କୁ ନ ମାରି
ନିବର୍ତ୍ତି ରହିଲା ହସ୍ତିନା-ଦଣ୍ଡଧାରୀ ।
ଭୀମ ତ ଅସ୍ତ୍ର ତୁଲେ କରୁଥିଲେ ଯୁଦ୍ଧ
ପଡ଼ିଲା ତାଙ୍କ ଦେହେ କରିବାକୁ ବଧ ।
ଭୀମଙ୍କର ଦଶମ-ଦଶା-କାଳ ଜାଣ
କି ହେଲା ବୋଲି ଲୋକେ ଉଚ୍ଚାରିଲେ ବାଣ ।
ଭୀମଙ୍କ ଦେହକୁ ନ କାଟୁଁ ଅସ୍ତ୍ର ତେଜ
ଭଗ୍ନାର୍ଥେ କଲେ ବାରୁଣାସ୍ତ୍ର ସୁରରାଜ-
କୁମର [illegible]ଜୁନ ସେହି ସମୟରେ
ମୋ କହିବାରୁ ରାୟେ ଆଣ ହୃଦୟରେ ।
ଅର୍ଜ୍ଜୁନ ବିନ୍ଧିବାର ବାରୁଣ-ଅସ୍ତ୍ରକୁ
ଗୋଚର ନୋହିଲାଟି ଜାଣ ହେ କାହାକୁ ।
ନାରାୟଣ ଅସ୍ତ୍ର ତେଜରେ ଦୁର୍ଦ୍ଧରଷ
ହୋଇଲେ ଭୀମ ଦେଖି ନ ପାରିଲା ଦୃଶ ।
ଡେଙ୍ଗା ମୁଣ୍ଡେ ଠେଙ୍ଗା ପରାୟେ ଭୀମ ମୁଣ୍ଡେ
ସବୁ ଅସ୍ତ୍ରଯାକ ପଡ଼ିଗଲାଟି ଚାଣ୍ଡେ ।
ଜଗତ କ୍ଷୟ କରି ନାରାୟଣ ମୁଖେ
ପ୍ରବେଶନ୍ତି ଯେ ରୂପେ ଅଗ୍ନି ମହାସୁଖେ ।
ସେହିରୂପେ ଅଶ୍ୱତ୍ଥାମାଙ୍କ ଅସ୍ତ୍ରବର
ଠାବ କରିଲା ଏକା ଭୀମଙ୍କ ଶରୀର ।
ଅଗ୍ନିରେ ଅଗ୍ନି ମିଶିଗଲା ପ୍ରାୟେ ଭୀମ ।
ଅସ୍ତ୍ର ତେଜେ ଦିଶିଲେ ଜାଣ ନରୋତ୍ତମ ।
ଅଶ୍ୱତ୍ଥାମା ଅସ୍ତ୍ର ଆବୃଇ ଭୀମ ବଳୀ
ଦେଖି ପାଣ୍ଡୁ ସେନା ବସିଲେ ମନେ ଭାଳି ।
ଅର୍ଜ୍ଜୁନ କୃଷ୍ଣ ଦୁହେଁ ରଥୁଁ ଡେଇଁପଡ଼ି
ଗଲେ ଯେ ଭୀମଙ୍କର ପାଶକୁ ଦଉଡ଼ି ।
ବେନି କୃଷ୍ଣଙ୍କର ମାୟାରେ ନାରାୟଣ-
ଅସ୍ତ୍ର ବାଧି ନ ପାରିଲାଟି ରାୟେ ଜାଣ ।
ପୂର୍ବୁତ ଜାଣି ଅସ୍ତ୍ର ଛାଡ଼ିଥିଲେ ଦୁହେଁ
ନ ପଡ଼ିଲେ ତେଣୁ ସେ ଅସ୍ତ୍ରବର କୋହେ ।
ଭୀମଙ୍କ ଆୟୁଧମାନଙ୍କୁ କୃଷ୍ଣାର୍ଜ୍ଜୁନ
ଧରିଣ ବଳେ ଫିଙ୍ଗିଦେଲେ ହେ ରାଜନ ।
ଏମନ୍ତ ହେଲେ ହେଲେ ଆନ ଅସ୍ତ୍ର ଧରି
ତାହା ତୁଲେ ଭୀମ ଯୁଝିଲେ କ୍ରୋଧକରି ।
ଏହା ଦେଖି କୃଷ୍ଣ ବୋଇଲେ ଭୀମ ବାଇ-
ହେଲା ପରା ଯୁଦ୍ଧ କରୁଛ କାହିଁପାଇଁ ।
ନାରାୟଣଅସ୍ତ୍ର ଅକ୍ଷୟ ହୋଇବାରୁ
ରହିଲୁଁ ଆମ୍ଭେ ଶସ୍ତ୍ର ଛାଡ଼ି ହୋଇ ଭୀରୁ ।

ତୁମ୍ଭେ ଆମ୍ଭମାନଙ୍କୁ ଲଙ୍ଘି ରଥେ ବସି
କାହିଁକି ଯୁଝୁଛ କହ ତ ହୋଇ ରୋଷୀ ।
ଏହା କହି କୃଷ୍ଣ ଭୀମଙ୍କୁ ବଳେ ତଳେ
ପକାଇଦେଲେ ରାୟେ ଦେଖୁଥିଲେଁ ଡୋଳେ ।
ନାରାୟଣ ଅସ୍ତ୍ର ଛାଡ଼ନ୍ତେ ଯୁଦ୍ଧ ଭୀମ
ଶାନ୍ତି ହୋଇଗଲା ହେ ଜାଣ ନରୋତ୍ତମ ।
ସେହିକ୍ଷଣି ଦିଶିଲା ନୟନକୁ ଦଶ-
ଦିଶ, କଲେ ବିଲୁଆ ଶାଗୁଣାଏ ଘୋଷ ।
ସୁଶୀତଳ ହୋଇଣ ପବନ ବହିଲା
ଦେହୀଙ୍କର ଦେହମାନଙ୍କୁ ଉଲ୍ଲାସିଲା ।
ଗଜ ଅଶ୍ୱ ଲୋତକ ତେଜିବାର ଛାଡ଼ି
ବାହାରିଲେ ଯୁଦ୍ଧେ ଆଗକୁ ପାଦ କାଢ଼ି ।
ସେକାଳେ ଭୀମଙ୍କ ତେଜକୁ ଦିବାକର
ଦିଶିଲେ ନିଉନ ରାଜନ ମନେ କର ।
ପାଣ୍ଡୁସେନା ତ ମରାମରି ହୋଇଥିଲେ
କୃଷ୍ଣଙ୍କ ଉପାୟେ ଜୀଇ ସେ ଗରଜିଲେ ।
ଦୁର୍ଯ୍ୟୋଧନ ଦେଖି ବୋଇଲେ ଦ୍ରୋଣପୁତ୍ର
ଆଉ ଥରେ ଧର ତ ନାରାୟଣ-ଅସ୍ତ୍ର ।
ଦେଖ ପାଣ୍ଡୁସେନା ଆସୁଅଛନ୍ତି ମାଡ଼ି
ଧୈର୍ଯ୍ୟ ରହୁନାହିଁ କହିଲି ହୃଦ ଫେଡ଼ି ।
ଅଶ୍ୱଥାମା ବୋଲେ ଦ୍ୱିଥର ନାରାୟଣ
ଅସ୍ତ୍ର ପେଷିବାକୁ କହନ୍ତି ନାହିଁ ଦ୍ରୋଣ ।
ଆଉ ଥରେ କରିଲେ ଏହି ଅସ୍ତ୍ରବଳ
ଲେଉଟି କରିବ ସେ ଆମ୍ଭଙ୍କୁ ସଂହାର ।
ନାରାୟଣ ଅସ୍ତ୍ରକୁ ଦେବାକାଳେ ଏହା
କହିଛନ୍ତି ଜାଣ ହସ୍ତିନା-ନରନାହା ।
ମରଣ ପରି ପରାଜୟ ରାୟେ ଘେନ
ଛାଡ଼ିଲେ ଅସ୍ତ୍ର ଆଉ ଅଛି କିସ ଜାଣ ।
ଦୁର୍ଯ୍ୟୋଧନ ବୋଇଲେ ଏପରି ବହୁତ
ଅସ୍ତ୍ର ଜାଣିଅଛ ତ ଦ୍ରୋଣଙ୍କର ସୁତ ।
ସେ ଅସ୍ତ୍ରମାନଙ୍କରେ ମୋର ପାଣ୍ଡୁବଳ
ହାଣିଛନ୍ତି ପାଞ୍ଚାଳେ ଧରି ଦ୍ରୋଣ ବାଳ ।
ଧୃତରାଷ୍ଟ୍ର ବୋଇଲେ ଦୁର୍ଯ୍ୟୋଧନ ବାଣୀ
ଘେନି କିସ କଲେ, କହ ତ ମୋତେ ଦ୍ରୌଣି ।
ସଞ୍ଜୟ ବୋଇଲେ କହନ୍ତେ ଦୁର୍ଯ୍ୟୋଧନ
ଦ୍ରୋଣମୃତ୍ୟୁ ଦ୍ରୌଣି ସୁମରି କ୍ରୋଧମନ-
ହୋଇ ଧୃଷ୍ଟଦ୍ୟୁମ୍ନ ପାଶକୁ ଆୟୋଧନ
କରିବାକୁ ଗଲେ ଟେକିଣ ଶରାସନ ।
ଧୃଷ୍ଟଦ୍ୟୁମ୍ନଙ୍କର ଘେନିବାକୁ ପ୍ରାଣ
ବିନ୍ଧିଲେ ବାଛି ସେ ପଚିଶ ଶାଣବାଣ ।
ଧୃଷ୍ଟଦ୍ୟୁମନ ତା ନ ସହି ତିନିକୋଡ଼ି-
ତିନିକାଣ୍ଡ ବିନ୍ଧିଲେ ତୂଣ ମଧ୍ୟୁ କାଢ଼ି ।

ଅଶ୍ୱଥାମା ଧୃଷ୍ଟଦ୍ୟୁମନ ସାରଥିକୁ
ବିନ୍ଧିଲେ କୋଡ଼ିଏଟି ପରାଣ ନେବାକୁ ।
ଏ ବାହାରେ ଚାରି ଘୋଡ଼ାଙ୍କୁ ଚାରି କାଣ୍ଡ
ବିନ୍ଧିଲେ ଦ୍ରୌଣି ନେବାପାଇଁ ଯମଦଣ୍ଡ
ନ ସହି ତାହା ଧୃଷ୍ଟଦ୍ୟୁମ୍ନ ମାରି ଚିରା
କାହିଁ ଯିବୁ ବୋଲି ମୁଞ୍ଚିଲେ ଶରଧାରା ।
ଅଶ୍ୱଥାମାଙ୍କର ମୁଣ୍ଡକୁ ଶରବୃଷ୍ଟି
କଲେ ଧୃଷ୍ଟଦ୍ୟୁମ୍ନ ନେବାକୁ ଜୟ-ସୃଷ୍ଟି ।
ବାପଙ୍କ ବଧକୁ ସୁମରି ଅଶ୍ୱଥାମା
ବିନ୍ଧିଲେ ଦଶକାଣ୍ଡ ଦେଖାଇ ଗାରିମା ।
କ୍ଷୁରକାଣ୍ଡେ ଧୃଷ୍ଟଦ୍ୟୁମ୍ନର ଧ୍ୱଜ ଧନୁ
କାଟିଲେ ଅଶ୍ୱଥାମା ଥରାଇଣ ତନୁ ।
ଘୋଡ଼ା ସାରଥିର ଘେନିଣ ଯୁଦ୍ଧେ ପ୍ରାଣ
ମାଇଲେ ଖୋଜି ଖୋଜି ପାଞ୍ଚାଳ ସଇନ ।
ଅଶ୍ୱଥାମା କାଣ୍ଡ ନ ସହିଣ ପାଞ୍ଚାଳେ
ପଳାଇଲେ ଯୁଦ୍ଧରୁ ପ୍ରାଣର ବିକଳେ ।
ଧୃଷ୍ଟଦ୍ୟୁମ୍ନଙ୍କ ପୀଡ଼ାକୁ ଯୁଯୁଧାନ
ଦେଖି ନେତ୍ର ଧାଇଁଲେ ଟେକି ଶରାସନ ।
ଅଠାଇଶ କାଣ୍ଡ ଅଶ୍ୱଥାମାର ଦେହେ
ବିନ୍ଧିଲେ ଯୁଯୁଧାନ ବୀର ଅତି କୋହେ ।
ଅଶ୍ୱଥାମାଙ୍କର ସାରଥିକି ଯେ ବିନ୍ଧି
ଦେଲେ ଚାରିକାଣ୍ଡେ ଘୋଡ଼ାଙ୍କ ପ୍ରାଣ ରୁନ୍ଧି ।
ଭଲ ଭଲ୍ଲ ଶରରେ ରଥ ଧ୍ୱଜ ଧନୁ
କାଟିଲେ ଦ୍ରୌଣିଙ୍କର ସତ୍ୟକଙ୍କ ସୁନୁ ।
ଏହା ବାହାରେ ଅଶ୍ୱଥାମାଙ୍କ ବକ୍ଷକୁ
ଲଖାଇ ବିନ୍ଧିଲେ ତିରିଶି ମାର୍ଗଣକୁ ।
ସେ ଶରେ ଅଶ୍ୱଥାମା ପାଇ ଅତି ପୀଡ଼ା
ରଥମଧ୍ୟେ ବସିପଡ଼ିଲେ ନୋହି ଛିଡ଼ା ।
ଅଶ୍ୱଥାମାଙ୍କର ଏହି ଦଶାକୁ ଦେଖି
ଦୁର୍ଯ୍ୟୋଧନ କର୍ଣ୍ଣ ହୋଇଣ ଅତି ଦୁଃଖୀ ।
କୃପ କୃତବର୍ମାଙ୍କ ତୁଲେ ସଇନଙ୍କୁ
ସଙ୍ଗତେ ଘେନିଣ ବେଢ଼ିଲେ ସାତ୍ୟକିଙ୍କୁ ।
କୃପାଚାର୍ଯ୍ୟ ତିନି କୋଡ଼ିଏ ଦୁର୍ଯ୍ୟୋଧନ
କୃତବର୍ମା ଦଶ ଯେ ଶଏ ଦୁଃଶାସନ ।
ସାତ ବୃଷସେନ ପଚିଶି ସୂତସୁତ
ଏକାବେଳେ ବିନ୍ଧିଲେ ଯୁଦ୍ଧେ ଦେଇ ଚିତ୍ତ ।
ଆଉ ଯେତେ ଥିଲେ, ସତ୍ୟକକୁମରଙ୍କୁ
ବେଢ଼ିକରି ବିନ୍ଧିଲେ ତୀକ୍ଷଣ ମାର୍ଗଣକୁ ।
ଏମନ୍ତ ହେଲେହେଁ ସାତ୍ୟକି ମହାବଳୀ
ତୁମ୍ଭ ରଥୀମାନଙ୍କୁ ପକାଇଲେ ଦଳି ।
ଏହି ସମୟେ ଅଶ୍ୱଥାମା ଚେତା ପାଇ
ସାତ୍ୟକିଙ୍କ ଆଗରେ ରଥ କଲେ ନେଇ ।

ଦ୍ରୌଣିଙ୍କର ରଥକୁ ଆଗରେ ସାତ୍ୟକି
ଦେଖି ଦ୍ଵାଣ୍ଡକେ କଲେ ପୁଣି ଟିକିଟିକି ।
ଅଶ୍ୱ ପାଞ୍ଚ ଅୟୁତ ଅୟୁତେ ଗଜାରୋହୀ
ଶକୁନି କୃପଙ୍କୁ ମାଇଲେ କ୍ରୋଧ ବହି ।
ଏ ବାହାରେ ତିନିସହସ୍ର ମହାରଥୀ
ବୃଷସେନଙ୍କର ସେ ପକାଇଲେ ମଛି ।
ସାତ୍ୟକିଙ୍କ ଏହି ଆଶ୍ଚର୍ଯ୍ୟ ପରାକ୍ରମ
ଦେଖି ପାଣ୍ଡୁସେନା ଏ କଲେ ଶଙ୍ଖସ୍ୱନ ।
ତାହ ଦେଖି ସହି ନ ପାରି ଅଶ୍ୱଥାମା
ହୃଦୟମଧେ ଧରି ମହତ ଗାରିମା ।
ସାତ୍ୟକିଙ୍କି ଚାହିଁ କହିଲେ ଏ ବଚନ
ବଳ ଥିଲେ ରଖ ହେ ଧୃଷ୍ଟଦ୍ୟୁମ୍ନ ପ୍ରାଣ ।
ଗୁରୁଙ୍କୁ ମାରିବାର ଜାଣିଛୁ ତ ଆମ୍ଭେ
ସତ୍ୟଟି କହୁଛି ମରିବ ନିଶ୍ଚେ ତୁମ୍ଭେ ।
ପାଞ୍ଚାଳମାନଙ୍କର ନ ନେଲେ ମୁଁ ପ୍ରାଣ
କହି କିରୂପରେ ଶୁଝିବି ପିତୃଋଣ ।
ତୁମ୍ଭମାନଙ୍କର ଦେହରେ ବଳ ଥିଲେ
ପାଞ୍ଚାଳଦଳ ରଖ, ମାରିବି ମୁଁ ଭଲେ ।
ଏହା କହିଣ ବାଛି ଉତ୍ତମ ମାର୍ଗଣ
ବିନ୍ଧିଲେ ଯୁଯୁଧାନ ଦେହ କରି ଟାଣ ।
ସେ କାଣ୍ଡ ଆଶୀବିଷ ପରାୟେ ଗମିଲା
ସାତ୍ୟକିଙ୍କ ଦେହ-ବିଳକୁ ନିକିଳିଲା ।
ସାତ୍ୟକି ସେ ଘାଏ ପାଇଣ ମହାବ୍ୟଥା
ରଥେ ବସି ପଡ଼ିଲେ ନ କହିଣ କଥା ।
ସାରଥି ଅଶ୍ୱଥାମା ଆଗୁଁ ସାତ୍ୟକିଙ୍କ-
ରଥକୁ ବାହିନେଲା ଲଭିଣ ଆତଙ୍କ ।
ଏ ଅନ୍ତେ ଅଶ୍ୱଥାମା ଧୃଷ୍ଟଦ୍ୟୁମ୍ନ ଭ୍ରୁରୁ-
ମଧକୁ ଦେଲେ କାଣ୍ଡେ ଛାଡ଼ିଣ ନୋହି ଭୀରୁ ।
ସେ କାଣ୍ଡଘାତେ ଧୃଷ୍ଟଦ୍ୟୁମ୍ନ ଧ୍ୱଜଯଷ୍ଟ
ଧରିଣ ରହିଲେ ଅନ୍ଧାର ହେଲା ସୃଷ୍ଟ ।
ଅର୍ଜୁନ ଭୀମସେନ ପୌରବ ବୃଦ୍ଧଯନ୍ତ୍ର
ମାଳବ ସୁଦର୍ଶନ ଚେଦି ମହୀକ୍ଷତ ।
ଏ ପାଞ୍ଚେ ଅଶ୍ୱଥାମା ଯୁଦ୍ଧ ଟାଣ ଦେଖି
ଧୁଆଁଇଲେ ରଥ ଧନୁଶର ଯୋଖି ।
କୋଡ଼ିଏ ପହଣ୍ଡ ଅନ୍ତରେ ରଥ ରଖି
ବିନ୍ଧିଲେ ପାଞ୍ଚଶର ଲେଖାରେ ସେ ଲେଖି ।
ଅଶ୍ୱଥାମା ସେ ପାଞ୍ଚ ବୀରଙ୍କ ଶରକୁ
ନିବାରିଲେ ବିନ୍ଧି ପଚିଶି ମାର୍ଗଣକୁ ।
ଅରଜୁନଙ୍କୁ ଏକ ବୃଦ୍ଧକ୍ଷେତ୍ରେ ସାତ
ସୁନ୍ଦରଶନେ ତିନି ବିନ୍ଧି ଦ୍ରୋଣପୁତ୍ର ।
ଭୀମଙ୍କର ଦେହକୁ ବାଛି ଛଅ ଶର
ପ୍ରହାରିଲେ ନେବାକୁ ପ୍ରାଣ ତାହାଙ୍କର ।
ପୁଣି ସାତ ବୀରେ ହୋଇଣ ଏକମନ
ବରଷିଲେ ଅଶ୍ୱଥାମାଙ୍କୁ କାଣ୍ଡମାନ ।

ଚେଦିନୃପ କୋଡ଼ିଏ, ପାର୍ଥ ଆଠ ଶର
ବିନ୍ଧିଲେ ଦ୍ରୋଣସୁତ ପ୍ରତି ନରବର ।
ଭୀମ ପଉରବ ମାଳବ ଏ ତିନିହେଁ
ତିନି ତିନି ବିନ୍ଧିଲେ ଅଶ୍ୱଥାମା ଦେହେ ।
ଅର୍ଜୁନଙ୍କୁ ଛଅ କୃଷ୍ଣଙ୍କ ଦେହେ ଦଶ
ବିନ୍ଧି ଅଶ୍ୱଥାମା ମୋଡ଼ିଲେ ଦୁଇ ନିଶ ।
ଭୀମଙ୍କୁ ଦଶ ଚେଦିନୃପେ ଚାରିଶର
ବିନ୍ଧି ମାଳବଙ୍କୁ ବିନ୍ଧିଲେ ଦୁଇଶର ।
ଏବାହାରେ କଉରବ ଯେ ଯୁଝୁଥିଲେ
ତାହାଙ୍କୁ ମଧ ଦୁଇକାଣ୍ଡ ସେ ବିନ୍ଧିଲେ ।
ଦ୍ୱିକାଣ୍ଡେ ଭୀମଙ୍କର ଧ୍ୱଜ ଦୁଇ ଖଣ୍ଡ-
କରି ସାରଥିକି ବିନ୍ଧିଲେ ଛଅକାଣ୍ଡ ।
ଏହା କରି ସାରିଣ ଅର୍ଜୁନ ଦେହକୁ
କଲେ ଶରବୃଷ୍ଟି ଦେଖାଇ ବିକ୍ରମକୁ ।
ଏହିରୂପେ ଯେ ଅଶ୍ୱଥାମା ପାଣ୍ଡୁରଥି-
ମାନଙ୍କୁ ଯୁଦ୍ଧଦାଣ୍ଡେ କରି ଅତି ବ୍ୟଥୀ ।
ଦଶଦିଗ ତୁଳେ ଆକାଶ ନରଈଶ
ଘୋଡ଼ାଇ ପକାଇଲେ ବିନ୍ଧି ଶରବଂଶ ।
ସୁଦର୍ଶନ ନୃପଙ୍କ ଦୁଇ ଭୁଜ ଶିର
କାଟିଲେ ତିନିକାଣ୍ଡେ ଅଶ୍ୱଥାମା ବୀର ।
ପଉରବ ରଥକୁ କାଟି ତିଳ ପରି
ପଉରବର ଦୁଇ ବାହାକୁ କତୁରି ।
ପଉରବ ତୁଣ୍ଡକୁ ଖୁଆଇଣ ମାଟି
ବୋଇଲେ ଭେଟିଯାଅ ପୂର୍ବ ପୁରୁଷଟି ।
ଚେଦିନୃପ ସୁତକୁ ତୀକ୍ଷଣ କାଣ୍ଡରେ
ବସାଇଦେଲେ ନେଇ ଯମଙ୍କ ଦାଣ୍ଡରେ ।
ମାଳବ ପଉରବ ଯୁବରାଜ ନାଶ
ଦେଖି ଭୀମସେନ ବହିଣ ହୃଦେ ରୋଷ ।
ଯମଦଣ୍ଡ ପରି ସେ ଦଶକାଣ୍ଡ ବାଛି
ବିନ୍ଧିଲେ ଦ୍ରୌଣିଙ୍କି ଓପ୍ରଧକୁ ମୁରୁଛି ।
ଭୀମଙ୍କ ଦଶ କାଣ୍ଡ ଦ୍ରୌଣିଙ୍କ ଲଲାଟେ
ବାଜିକରି ବାହାରିଗଲେ ପଛପଟେ ।
ସେ ଘାତରେ ଦ୍ରୌଣି ଥରାଇ ଅପଘନ
ରହିଲେ ବୁଜିଦେଇ ପଙ୍କଜ ନୟନ ।
ମୁହୂର୍ତ୍ତ ଉତ୍ତାରୁ ଅଙ୍ଗରେ ଚେତା ପାଇ
ଧଇଲେ ଉଠି ଧନୁ ଅଟି କ୍ରୋଧ ହୋଇ ।
ଭୀମଙ୍କ ଦେହକୁ ବଳାଇ ଶଏ କାଣ୍ଡ
ବିନ୍ଧିଲେ ଦ୍ରୌଣି ଝିଙ୍କି ଆପଣା କୋଦଣ୍ଡ ।
ଭୀମ ଅଶ୍ୱଥାମା ବଳକୁ ନ ହେଜି
ବିନ୍ଧିଲେ ଶରରାଜି ଯୁଦ୍ଧରସେ ମଜି ।
ଅଶ୍ୱଥାମା ଭୀମଙ୍କ ଧନୁକୁ କାଟିଲେ
ଗରଜି ଶରବାଜି ଉରକୁ ସର୍ଜିଲେ ।
ଆନ ଧନୁ ଧରିଣ ପାବନି ପାବକ-
ପରି ବାଛି ବିନ୍ଧିଲେ ରାଜନ ଶାୟକ ।

ଅନ୍ୟୋନ୍ୟରେ ଦୁହେଁ କରନ୍ତେ ଶରବୃଷ୍ଟି
ଦେଖି ନ ପାରିଲା ତାହାଙ୍କୁ ଯୋଦ୍ଧାଦୃଷ୍ଟି ।
ଦୁହେ ଦୁହିଙ୍କର ଶରକୁ ଯୁଦ୍ଧେ କାଟି
ଯୁଦ୍ଧେ କଲେ ଦୁହେଁ ଭିଡ଼ିଣ ଓଷ୍ଠ ପାଟି ।
ଭୀମସେନଙ୍କର ସେ ବିନ୍ଧିବାର ଦେଖି
ରଖିଲେ ଚକିତରେ ଦ୍ରୌଣି ଦୁଇ ଆଖି ।
ସନ୍ଧିବା ବିନ୍ଧିବାର ଧରିବାର ଶର
ଭୀମଙ୍କର ନୋହିଲା କାହାକୁ ଗୋଚର ।
ଅଶ୍ୱତ୍ଥାମା ଭୀମଙ୍କ ପ୍ରାୟେ ଶରରାଜି
ବିନ୍ଧନ୍ତେ ତାଙ୍କୁ ଲୋକେ ନ ପାରିଲେ ହେଜି ।
ଅଲାତଚକ୍ର ପରି ଖାଲି କର ଧନୁ
ଦିଶି କମ୍ପାଇଦେଲା ଯୋଦ୍ଧାଙ୍କର ତନୁ ।
ଶଲଭ ପରି ଅଶ୍ୱତ୍ଥାମା ଶରପଲ
ବାହାରେ ମାରିବା ପାଇଁ ଯୋଦ୍ଧା ଭଲ ।
ଅଶ୍ୱତ୍ଥାମାଙ୍କର କାଣ୍ଡରେ ଭୀମ ରଥ
ଆବୃତ୍ତ ହୋଇଲେ ହସ୍ତିନା ନରନାଥ ।
ସେ ଯୁଦ୍ଧରେ ଭୀମଙ୍କ ବଳ ପରାକ୍ରମ
ବ୍ୟବସାୟ ମଧଟି ଦେଖିଲୁଁ ଉତ୍ତମ ।
ଦ୍ରୋଣଙ୍କ ନନ୍ଦନଙ୍କୁ ଦେବାକୁ ବଢ଼ାଇ
କଲେ ଯେ ଭୀମସେନ ମହତ ଲଢ଼ାଇ ।
ବରଷାକାଳେ ଯେଉଁରୂପେ ଧାରାବୃଷ୍ଟି
ହୁଏ, ସେ ସେରୂପେ ସର୍ଜିଲେ ଶରସୃଷ୍ଟି ।
ଇନ୍ଦ୍ରଧନୁ ପରି ଭୀମଙ୍କ ଶରାସନ
ଦିଶିଣ ବଢ଼ାଇଲା ସନ୍ତାପ ରାଜନ ।
ଭୀମଙ୍କର ଧନୁରୁ କୋଟି କୋଟି ଶର
ବାହାରି ଘୋଡ଼ାଇଲେ ଦ୍ରୌଣିଙ୍କ ଶରୀର ।
ଦୁହିଙ୍କ ଶରେ ତ ଆକାଶ ତୁଳେ ମହୀ
ଘୋଡ଼ିହେଲା, ପବନ ନ ପାରିଲା ଯାଇ ।
ତଇଳପିଆ ଶର ଦ୍ରୋଣଙ୍କ ନନ୍ଦନ
ବିନ୍ଧିଲେ ଘେନିବାକୁ ଭୀମଙ୍କ ଜୀବନ ।
ଭୀମ ଅଶ୍ୱତ୍ଥାମାଙ୍କ କାଣ୍ଡେ ତିନି ତିନି
ଖଣ୍ଡ କରି ବୋଇଲେ ଯିବ କି ଜୀବ ଘେନି ।
ଅଶ୍ୱତ୍ଥାମା ଦେହେ ମହତ ଶରରାଜି
ବିନ୍ଧିଲେ, ଗମିଲେ ସେ ହୋଇ ବଙ୍କାବଙ୍କି ।
ଭୀଷଣ ଶରବୃଷ୍ଟି କାଟି ଦ୍ରୋଣସୁତ
କଲେ ଭୀମଙ୍କର ଚାପକୁ କାଣ୍ଡେ ଚ୍ୟୁତ ।
ଧନୁ ଛିଡ଼ିଯାନ୍ତେ ଶକତି ଧରି ଭୀମ
ଫିଙ୍ଗିଲେ ଅଶ୍ୱତ୍ଥାମା ପ୍ରତି କରି ତମ ।
ଦ୍ରୋଣ ତନୟ ହସ୍ତଲାଘବ ଦେଖାଇ
ଦେଲେ ଦଶକାଣ୍ଡରେ ଶକତି ବଢ଼ାଇ ।
ଏହି ସମୟରେ ଧରିଣ ଆନ ଧନୁ
ବିନ୍ଧିଲେ ଦ୍ରୌଣିଙ୍କ ଉପରୁ ବାତସୂନୁ ।
ଅଶ୍ୱତ୍ଥାମା ଭୀମଙ୍କ ସାରଥି ଲଲାଟେ
ବିନ୍ଧିଲେ ଶରଟାଏ ଜାଣ ଅତି ଆଣ୍ଟେ ।

ଦ୍ରୋଣସୁତ କାଣ୍ଡରେ ଭୀମଙ୍କ ସାରଥି
ଦହଡ଼ି ଛାଡ଼ିଦେଇ ରହିଲା ସେ ବ୍ୟଥୀ ।
ସାରଥିର ଏ ଦଶା ଜାଣି ତା ଘୋଡ଼ାଏ
ପଳାଇଲେ ଆଗକୁ ନ ଚାଲି ଭଡ଼ାଏ ।
ଭୀମଙ୍କୁ ଧରି ଘୋଡ଼ା ଭାଜିବାର ଦେଖି
ଫୁଙ୍କିଲେ ଶଙ୍ଖ ଦ୍ରୋଣସୁତ ହୋଇ ସୁଖୀ ।
ପାଞ୍ଚାଳମାନେ ଧୃଷ୍ଟଦ୍ୟୁମ୍ନଙ୍କୁ ଛାଡ଼ି
ପଳାଇଲେ ରାଜନ ହୋଇ ମଡ଼ାମଡ଼ି ।
କାଳଦେହ ପରି ଚହଟି ପଣ୍ଡୁସେନା-
ମାନଙ୍କ ପ୍ରାଣ ନେଲେ ଦ୍ରୌଣି ମହାମନା ।
ପାଣ୍ଡୁସେନାଯାକ ମଣିଲେ ଦ୍ରୋଣସୁତ
ଚାରିପଟେ ରହି ଆମ୍ଭଙ୍କୁ କଲେ ହତ ।
ନିଜ ବଳ ଭାଜିବା ଦେଖି ବୀର ପାର୍ଥ
ଧୁଆଁଇଣ ବେଗରେ କପିଧ୍ୱଜ ରଥ ।
ସଇନଙ୍କୁ ସେ ନିବର୍ତ୍ତାଇଣ ରଖିଲେ
ମାରୁଛି ଦେଖ ଦ୍ରୋଣସୁତକୁ ବୋଇଲେ ।
ଅରଜୁନ ସାହା ପାଇଣ ପାଣ୍ଡୁ ସେନା
ପାଲଟିଲେ ଯୁଝିବା କରିଣ ଭାବନା ।
ଅଶ୍ୱତ୍ଥାମାଙ୍କର ସମ୍ମୁଖେ ପାର୍ଥ ରଥ
ରଖାଇଣ ଦୁଇ ନିଶରେ ଦେଇ ହାତ ।
ବୋଇଲେ ତୁମ୍ଭ ଦେହେ ଯେତେ ବଳ ଅଛି
ଯେତେକ ଶସ୍ତ୍ର ଅସ୍ତ୍ର ତୁମ୍ଭଙ୍କୁ ଆସିଛି-
ଯେତେ ବିଚାରିଛ ଆମ୍ଭର ତୁମ୍ଭେ ନାଶ
ଯେତେକ ଆଜି କର ମୋ ଆଗେ ପ୍ରକାଶ ।
ନୋହିଲେ ଧୃଷ୍ଟଦ୍ୟୁମ୍ନ ସମୀପକୁ ଯାଅ
ଯୁଦ୍ଧ କରି ବାପାଙ୍କ ପରି ଦଶା ପାଅ ।
ବଳ ଯେବେଟି ଅଛି କର ମୋତେ ରୋଳ
ଦେଖାଅ, ଦେଖ ଅବା ଯମଙ୍କର ଆଳ ।
ଏହା ଶୁଣିଣ ଧୃତରାଷ୍ଟ୍ର ନରପତି
ବୋଇଲେ ଶୁଣ ହେ ସଞ୍ଜୟ ମହାମତି ।
ମହାବଳୀୟାର ତ ଦ୍ରୋଣଙ୍କ ନନ୍ଦନ
ଅଟନ୍ତି ତ ପ୍ରିୟସଖା ସେ ଅରଜୁନ ।
ଗୁରୁ ପୁତ୍ର ହେବାରୁ ଅର୍ଜୁନ ମାନିତ
ପାତ୍ର ବୋଲିକରି ହୋଇଛି ବୋଧ ଚିତ୍ତ ।
ଏହା ଜାଣି ଭୀଭତ୍ସୁ କାହିଁକି ଭର୍ତ୍ସନା
କହିଲେ ତା କହ ସଞ୍ଜୟ ମହାମନା ।
ସଞ୍ଜୟ ବୋଇଲେ ହେ ଚେଦି ନୃପ ସୁତ
ମାଳବ ପୌରବ ହେଲେ ତ ରଣେ ହତ ।
ଭୀମ ଧୃଷ୍ଟଦ୍ୟୁମ୍ନନ ରହିଲେ ତ ହାରି
ଯୁଧିଷ୍ଠିର ନିରାଶ ବଚନ ସୁମରି ।
ଏହି ସକାଶରୁ ଯେ କ୍ରୋଧ ହୋଇ ପାର୍ଥ
କହିଲେଟି ନିଷ୍ଠୁର ଛାଡ଼ି ପୁରୁଷାର୍ଥ ।
ଅର୍ଜୁନଙ୍କ ବଚନ ଶୁଣି ଅଶ୍ୱତ୍ଥାମା
ହୃଦୟରେ ବହିତ ମହତ ଗାରିମା ।

ଆଚମନ କରି ଧଇଲେ ଅଗ୍ନି ଅସ୍ତ୍ର
ପୋଡ଼ିବାକୁ ଯୁଦ୍ଧରେ ଅର୍ଜ୍ଜୁନଙ୍କ ଗାତ୍ର ।
ସେହି ଅସ୍ତ୍ରକୁ ଦେବ ମାନବ ଅସୁର
କରି ନ ପାରନ୍ତିଟି ଜାଣ ହେ ସଂସାର ।
ଅର୍ଜ୍ଜୁନଙ୍କ ତୁଲରେ ଦୃଶ୍ୟାଦୃଶ୍ୟ ଶତ୍ରୁ-
ମାନଙ୍କର ଦ୍ରୋଣନନ୍ଦନ ଭାବି ମୃତ୍ୟୁ ।
ଧନୁ ମଧେ ଯୋଚି ଆଗ୍ନେୟ ଅସ୍ତ୍ରବର
କର୍ଣ୍ଣଯାଏ ଓଟାରି ଆଣି ଦ୍ୱିଜବର ।
ନୟନ ମୁଖ ରଙ୍ଗ କରି ଦେଲେ ଛାଡ଼ି
ମଲ ଆଜି ପାଣ୍ଡବେ ବୋଲି କରେ ରଡ଼ି ।
ସରଜିବା ବେଳରେ ଜ୍ୱାଳାରେ ଆକାଶ
ହୋଇଗଲା ଯେ ଦିଶ ତୁଲରେ ଅଦୃଶ୍ୟ ।
କୋଟି କୋଟି ହୋଇଣ ପଡ଼ିଲେ ଉଲ୍କା
ଥୋଇଲା ସବୁ ପ୍ରାଣୀ ହୃଦୟରେ ଦକା ।
ନିଷ୍ଠୁର ହୋଇକରି ବହିଲା ପବନ
ଗରଜନ କଲେ ପିଶାଚ ଯାତୁଧାନ ।
ସୂର୍ଯ୍ୟଙ୍କର କିରଣ ମନ୍ଦ ହୋଇଗଲା
ଧରଣୀଧର ତୁଲେ ଧରଣୀ କମ୍ପିଲା ।
ଆକାଶରୁ ରକତ ହୁଅନ୍ତେ ବରଷା
ବହିଗଲା ଜଳର ପରାୟେ ସେ ରସା ।
ତ୍ରିଭୁବନରେ ଯେତେ ପ୍ରାଣୀ ଛନ୍ତି ରହି
ଏହା ଦେଖି ଭୟରେ କମ୍ପାଇଲେ ଦେହୀ ।
ଅସ୍ତ୍ର ତେଜେ ଭୂମିରେ ଥିବା ସର୍ପରାଜି
ପଡ଼ିଲେ ସେ ପଦାକୁ ବାହାରି ଗରଜି ।
ଜଳାଶୟମାନେ ଯେ ଅସ୍ତ୍ର ତେଜେ ତାତି-
ଯାନ୍ତେ ମରି ମରି ଭାସିଲେ ମତ୍ସ୍ୟପନ୍ତି ।
ଅଗ୍ନିରେ ପଡ଼ିଯିବା ଦ୍ରୁମ ପରି ଲୋକେ
ପଡ଼ିଲେ ଅଶ୍ୱତ୍ଥାମାଙ୍କର ସେ ଶାୟକେ ।
ରଥ ଗଜ ଘୋଟକ ହୋଇବାର ଦହି
ଏତେ ତେତେ ବୋଲି ମୁଁ ନ ପାରିବି କହି ।
ଯୁଗାନ୍ତକ ଅନଳ ପରାୟେ ସେ ଅସ୍ତ୍ର
ପୋଡ଼ି ପକାଇଲାଟି ସବୁଙ୍କରି ଗାତ୍ର ।
କୁରୁଙ୍କ କୀରତି ପାଣ୍ଡବ କୁଳବୁଡ଼ା
ଇଚ୍ଛାକରି ଆଗ ସେ କଡ଼ାଇଲା ମଡ଼ା ।
ପାଣ୍ଡବ ସେନାଙ୍କର ଦେଖିଣ ମରଣ
ଗରଜିଲେ ହୃଷ୍ଟରେ ତୁମ୍ଭ ସେନାଗଣ ।
ମୃଦଙ୍ଗ ଭେରୀ ଶଙ୍ଖ ପଣବ ବାଇଲେ
ମଲେ ଆଜି ପାଣ୍ଡବେ ବୋଲି ମନେ କଲେ ।
ଅରଜୁନ ପ୍ରଭୃତି ସେ ଅସ୍ତ୍ର ତେଜରେ
ନ ଦିଶିଲେ କାହାରି ନେତ୍ର ସରୋଜରେ ।
ଦ୍ରୋଣସୁତ ଏ ଅସ୍ତ୍ର କଲାପରି ଅସ୍ତ୍ର
ଦେଖି ଶୁଣି ନ ଥାଇଁ ଅମ୍ବିକାଙ୍କ ପୁତ୍ର ।
ସବୁ ଅସ୍ତ୍ର ନାଶିବାପାଇଁ ବ୍ରହ୍ମଅସ୍ତ୍ର
କରିଥିଲେ ପୂର୍ବେ ଯା ପଙ୍କଜଙ୍କ ପୁତ୍ର ।

ସେ ଅସ୍ତ୍ରକୁ ଅର୍ଜ୍ଜୁନ ଧନୁରେ ବସାଇ
ଦ୍ରୌଣି ଅସ୍ତ୍ର ନାଶରେ ବିନ୍ଧିଲେ ରୋଷାଇ ।
ସେ ଅସ୍ତ୍ର ଘାତେ ଦ୍ରୌଣି ଅସ୍ତ୍ର ହେଲା ହତ
ଦିଗ ତୁଲେ ନଭ ଦେଖିଲା ସୁଖେ ନେତ୍ର ।
ଯେତେ ଉତପାତ ମୁଁ କରିଥିଲି ରାୟେ
ରହିଲା ସେ ନିବର୍ତ୍ତି ପାର୍ଥ କାଣ୍ଡଘାଏ ।
ଏ ବାହାରେ ପାଣ୍ଡୁସେନାର ଅକ୍ଷୌହିଣୀ
ସେନା ମରିଣ ଆଶ୍ରେ କଲେଟି ଧରଣୀ ।
ଦେଖିଥିଲେ ନୟନେ ଅର୍ଜ୍ଜୁନ ଅଚ୍ୟୁତ
କରିଲେ ଦ୍ରୌଣି ଅସ୍ତ୍ରବଳରେଟି ହତ ।
ଦ୍ରୌଣି ଅସ୍ତ୍ରୁଁ ମୁକତ ହୋଇ କୃଷ୍ଣାର୍ଜ୍ଜୁନ
ଚନ୍ଦ୍ର ପରି ସନ୍ତୋଷ କଲେ ସେନା ମନ ।
ସୂର୍ଯ୍ୟ ପରି ତୁମ୍ଭ ସେନାଙ୍କୁ ତାପ ଦେଇ
ବିହରିଲେ ଯୁଦ୍ଧରେ ରଥକୁ ଧୁଆଁଇ ।
ଶଙ୍ଖ ଭେରୀ ମୃଦଙ୍ଗ ପଣବ ପାଣ୍ଡୁସେନା-
ମଧରେ ସେ କାଳେ ବାଜିଲା ଅକଳନା ।
କୃଷ୍ଣ ଅରଜୁନଙ୍କ କରନ୍ତେ ଶଙ୍ଖ ରଡ଼ି
ତା ଶୁଣି ପଳାଇଲେ ତୁମ୍ଭ ସେନା ଛାଡ଼ି ।
ତୁମ୍ଭ ଲୋକଙ୍କ ବ୍ୟଥା ଦେଖିଣ ପାଣ୍ଡବେ
ଦୋହଲାଇ ବାହା ଚାଲିଲେ ମତ୍ତଭାବେ ।
କୃଷ୍ଣ ଅରଜୁନ ଜୀଇବାର ଦେଖି
ଅଶ୍ୱତ୍ଥାମା ଦୁଃଖରେ ବୁଜିଦେଇ ଆଖି ।
ନିଃଶ୍ୱାସୁଟାଏ ଛାଡ଼ି ଲଭି ମହାବ୍ରୀଡ଼ା
ସେହିକ୍ଷଣି ଯୁଦ୍ଧରୁ କଲେ ମୁହଁମୋଡ଼ା ।
ରଥରେ ଧନୁ ଥୋଇ ତଳେ ଛିଡ଼ା ହେଲେ
କିମ୍ପା କୃଷ୍ଣାର୍ଜ୍ଜୁନ ଜୀଇଲେ ବିଚାରିଲେ ।
ସର୍ବଘାତୀ ଅସ୍ତ୍ର ତ କରିଥିଲି ମୁହିଁ
ମିଥ୍ୟା ହୋଇଲା ଧନୁର୍ବେଦ କାହିଁପାଇଁ ।
ଧିକ ହେଉ ଧନୁର୍ବେଦକୁ ମୁଁ ବୋଲୁଛି
ସମର କରିବାରେ କାର୍ଯ୍ୟ ନାହିଁ କିଛି ।
ଏହିରୂପେ ଅନେକ ଭାବି ଦ୍ରୋଣସୁତ
ଯୁଦ୍ଧ କରିବାପାଇଁ ନିବର୍ତ୍ତାଇ ଚିତ୍ତ ।
ଯୁଦ୍ଧଭୂମି ଛାଡ଼ିଣ ପ୍ରାୟ ଉପବେଶ
କଲେ ସେ ଜୀବନରେ କରିଣ ନିରାଶ ।
ଏହି ସମୟେ ବେଦବିଭାଗ ଗୋସାଇଁ
ଆସିଲେ ଅଶ୍ୱତ୍ଥାମା ପାଶେ ତ୍ୱରା ହୋଇ ।
ଧର୍ମ ପରି ଆଗେ ବ୍ୟାସଙ୍କୁ ଦ୍ରୋଣସୁତ
ଦେଖି ପଚାରିଲେ ତୋଷିବା ପାଇଁ ଚିତ୍ତ ।
ଯେଉଁ ଅସ୍ତ୍ର ଆଜି ମୁଁ ପ୍ରୟୋଗିଲି ଋଷି
ଅମର ହେଲେ ହୋନ୍ତା ଯମପୁରବାସୀ ।
ସେହି ଅସ୍ତ୍ରକୁ କୃଷ୍ଣ ଅରଜୁନ ନାଶ
କରିବାରୁ ଯୁଦ୍ଧରୁ ହେଲି ମୁଁ ନିରାଶ ।
ମୋର ବ୍ୟତିକ୍ରମ ହେବାରୁ ଅସ୍ତ୍ରଟାଣ
ଦେଖାଇ ନ ପାରିଲା କି ଋଷି ବଖାଣ ।

କେବଳ ମୋର ଅସ୍ତ୍ର ଅକ୍ଷୌହିଣୀ ସୈନ୍ୟ
ମାଇଲା ନ ମଲେ ତ କୃଷ୍ଣ ଅରଜୁନ ।
ଏହିସକାଶରୁ ସନ୍ତାପ ଜଳେ ବୁଡ଼ି
ଯାଉଅଛି କହିଲି ହୃଦୟକୁ ଫେଡ଼ି ।
ଆପଣଙ୍କୁ ସମସ୍ତ କଥା ତ ଗୋଚର
କହି ମୋ ହୃଦୟୁ ସନ୍ଦେହ ଦୂର କର ।
ବ୍ୟାସ ବୋଇଲେ ହେ ପୁଚ୍ଛିଲ ଯାହା ମୋତେ
କହିବା ଶୁଣ ତାହା ବସି ଏକଚିତ୍ତେ ।
ଆଦି ଅନ୍ତ ମଧ ଯାହାରଟି ବ୍ୟକତ-
ହୋଇ ନାହିଁ, ହୋଇ ନାହିଁ ଯେ କର୍ଣ୍ଣଗତ ।
ବ୍ରହ୍ମା ଆଦି ଦେବତାମାନଙ୍କ ପାଳନ
ଚଉଦ ଭୁବନ ଯାକର ସଂହାରଣ ।
ଅଚିନ୍ତ୍ୟ ପରାକ୍ରମ ଅଚିନ୍ତ୍ୟ ମହିମା
ନାହିଁ ତାହାକୁ କିଛିଦେବାକୁ ଉପମା ।
ଅବ୍ୟକ୍ତ ଅନକ୍ଷର ସୂକ୍ଷ୍ମ ସନାତନ
ସମସ୍ତ ଋଷିଙ୍କର ହୃଦୟ ରତନ ।
ଏରୂପେ ଯେ ନାରାୟଣ ସେ ଧର୍ମଙ୍କର
ହୋଇଲେ କାଳବଶେ ଜାଣ ହେ କୁମର ।
ଛଷଠି ସହସ୍ର ବରଷ ମଇନାକ-
ଗିରି ଶିଖେ ରହିଲେ ସେ ସୁତ ଧର୍ମଙ୍କ ।
ଆହାର କରି ମାତ୍ର ପିଇଲେ ପବନ
ଶୀର୍ଣ୍ଣ କରିଦେଲେ ତପରେ ଅପଘନ ।
ତେବେହେଲେ ଫଳ ସେ ନ ପାଆନ୍ତେ ଦ୍ରୌଣି
ତେତିକି କାଳ ତପ କଲେ ଆଉ ପୁଣି ।
ତପସ୍ୟା କରିବାରେ ତାହାଙ୍କର ତେଜ
ଗଲା ତ୍ରିଭୁବନେ ପୂରି ହେ ଦ୍ରୌଣି ଦ୍ୱିଜ ।
ତାହାଙ୍କର ତପକୁ ଜାଣି ଉମାକାନ୍ତ
ବର ଦେବା ପାଇଁ ହୋଇଲେ ଉପଗତ ।
ଅଣ୍ଡ ବୃହଉର ଯେ ଋଷଭ ଈଶାନ
ଦୁର୍ଦ୍ଧର୍ଷ୍ୟତିଗମନ୍ୟୁ ରୁଦ୍ର ଚେକିତାନ ।
ପ୍ରଚେତା ସର୍ବହର୍ତ୍ତା ଦିବ୍ୟ ଧନୁର୍ଦ୍ଧର
ହିରଣ୍ୟବର୍ମା ବଜ୍ରୀ ପିନାକୀ ଈଶ୍ୱର ।
ସ୍ଥାବର ଜଙ୍ଗମାଦିମାନଙ୍କ କାରଣ
ଅନନ୍ତବୀର୍ଯ୍ୟ ଦଣ୍ଡପାଣି ଦୁର୍ବାରଣ ।
ମୂଷଳ ଗଦା ଦୀପ୍ତ ଶୂଳ ଅସିଧର
ସର୍ବଗୁଣ ଶୋଭା ଜଟିଳ ମହେଶ୍ୱର ।
ସ୍ରପରିଗ ଯେ ଶୁଭ୍ରାଙ୍ଗଦ ପରଶ୍ୱଧୀ
ବୃଦ୍ଧସ୍ତୁତ ଇନ୍ଦୁମଉଳୀ ତପୋନିଧି ।
ବ୍ୟାଘ୍ର ଅଜିନ ଭୂତସମୂହ ମିଳିତ
ନାଗ ଯଜ୍ଞସୂତ୍ରବନ୍ତ ଦୀପତିମନ୍ତ ।
ଜଳ ଦିଗ ଆକାଶ ଚନ୍ଦ୍ର ସୂର୍ଯ୍ୟ କ୍ଷିତି
ବାୟୁ ଅଗ୍ନି ଏ ଆଠେ ତାହାଙ୍କର ମୂର୍ତ୍ତି ।
ଭିନ୍ନବୃତ୍ତେ ଅଦୃଶ୍ୟ ସାଧବୃତ୍ତେ ଦୃଶ୍ୟ
ବୋଲାଅନ୍ତି ଜଗତଯାକରେ ସେ ଈଶ ।
ପାର୍ବତୀଦେବୀ ବସିଛନ୍ତି ତାଙ୍କ କ୍ରୋଡ଼େ
ଭୂତ ପ୍ରେତ ପିଶାଚ ଛନ୍ତି ଚାରିଆଡ଼େ ।
ସେ ଦେବଙ୍କୁ ଧର୍ମନନ୍ଦନ ନମସ୍କାର
କରି ଏ ସ୍ତୁତି କଲେ ବିନୟେ ଅପାର ।
ତୁମ୍ଭଠାରୁ ଜାଣ ହୋଇଣ ଦେବତାଏ
ରଖିଛନ୍ତି ଏ ଜଗତକୁଟି ଉପାୟେ ।
ଇନ୍ଦ୍ର ଯମ କୁବେର ବରୁଣ ତ୍ୱଷ୍ଟା ସୋମ
ପିତୃ ଆଦି କରୁଅଛନ୍ତି ସ୍ୱକରମ ।
ଯେତେକ, ଯେତେକଟି ତୁମ୍ଭ ପ୍ରଭାବରେ
ହେଉଛି, ନୋହୁଛି ଯେ ତୁମ୍ଭ ଅଭାବରେ ।
ରୂପ ଜ୍ୟୋତି ଶବଦ ପବନ ଆକାଶ
ସଲିଳ ଗନ୍ଧ ଉର୍ବୀ କାଳ ବେଦ ସ୍ପର୍ଶ ।
ବ୍ରହ୍ମା ବିପ୍ର ସ୍ଥାବର ଜଙ୍ଗମ ତୁମ୍ଭର-
ଠାରୁ ହୋଇଅଛନ୍ତି ହେ ବରଦ ହର ।
ପ୍ରଳୟରେ ଏମାନେ ତୁମ୍ଭଠାରେ ଯାଇ
ରହନ୍ତି, ରଖ ତୁମ୍ଭେ ଦେହରେ ମିଶାଇ ।
ଏରୂପେ ଯେ ଲୋକ ଜାଣନ୍ତି ତୁମ୍ଭ କଥା
କେବେ ତାଙ୍କୁ ଲାଗି ନ ପାରେ ଭବବ୍ୟଥା ।
ଭଜୁଛି ମୁଁ ତୁମ୍ଭଙ୍କୁ, ଦୟାକରି ବର
ଦିଅ ମୋତେ ଯାଚି ହେ ଜଗତଈଶ୍ୱର ।
ତୁମ୍ଭଙ୍କୁ ତ ମୁହିଁ ଏରୂପେ କଲି ସ୍ତୁତି
ମୋତେ ଚାହିଁ ମୋ ପରି ହୋଇଣ ବିନତି ।
ସ୍ଥାବର ଜଙ୍ଗମରେ ଛନ୍ତି ଯେତେ ଲୋକ
କରିବେ ଜାଣିଥାଅ ପାର୍ବତୀ ନାୟକ ।
ନାରାୟଣଙ୍କର ସେ ବଚନରେ ହର
ହରଷ ମନେ ଦେଲେ ତାହାଙ୍କୁ ଏ ବର ।
ଅପ୍ରମେୟ ବଳଟି ରହିବ ଦେହରେ
ତୁମ୍ଭ ପରି ପୁରୁଷ ନୋହିବେ ସଂସାରେ ।
ଦେବାସୁର ଉରଗ ପିଶାଚ ଗନ୍ଧର୍ବ
ରାକ୍ଷସ ନର ନାଗ ସୁପର୍ଣ୍ଣ ବିଶ୍ୱଦେବ ।
ଏମାନଙ୍କର ତୁମ୍ଭେ ହୋଇବ ଦୁର୍ଦ୍ଧର୍ଷ
ବିଚାରିବ ଯାକୁ କରିବ ତାକୁ ନାଶ ।
ଅସ୍ତ୍ର ଶସ୍ତ୍ର ଅଶନ ଅନଳ ପବନ
ବାଧି ନ ପାରିବ ତୁମ୍ଭର ଅପଘନ ।
ମୋ ପ୍ରତିକି ଯୁଦ୍ଧରେ ଅଧିକ ହୋଇବ
କାହାରିଠାରୁ ତୁମ୍ଭେ ଭୟ ନ ପାଇବ ।
ଏହିରୂପେ ନାରାୟଣଙ୍କୁ ଉମା-ଧବ
ପୂର୍ବେ ବର ଦେଇଅଛନ୍ତି ବହି ଭାବ ।
ସେ ନାରାୟଣ ଏବେ ବସୁଦେବ-ସୁତ
ହୋଇଣ ମୋହୁଛନ୍ତି ମାୟାରେ ଜଗତ ।
ନାରାୟଣଙ୍କର ମହତ ତପସ୍ୟାରେ
ନର ନାମେ ମୁନିଏ ହୋଇଲେ ସଂସାରେ ।
ସେହିଟି ଅର୍ଜ୍ଜୁନ କୁନ୍ତୀଙ୍କ ସାନ ସୁତ
ନାରାୟଣ ପ୍ରାୟେ ବିକ୍ରମ ତାଙ୍କ ଖ୍ୟାତ ।

ପ୍ରତିଯୁଗରେ ନର ନାରାୟଣ ଜନ୍ମ
ହୋଇ ପାଳୁଅଛନ୍ତି ସ୍ଥାବର ଜଙ୍ଗମ ।
ରୁଦ୍ରଙ୍କଠାରୁ ତୁମ୍ଭେ ହେବାରୁ ଉତ୍ପତ୍ତି
କରୁଅଛ ବଳ ବିକ୍ରମ କୀର୍ତ୍ତି ଖ୍ୟାତି ।
ପୂର୍ବରେ ଭୟ ପାଇ ଜପିଣ ଶିବଙ୍କୁ
ତୋଷ କଲ ଦେଇଣ ଫଳ କୁସୁମକୁ ।
ସନ୍ତୁଷ୍ଟ ହୋଇ ଦେଇଛନ୍ତି ଶିବ ବର
ନୁହ ତୁମ୍ଭେ ଊଣା ହେ ଦ୍ରୋଣଙ୍କ କୁମର ।
ତୁମ୍ଭେ ତିନିଜଣ ଯେ ରୁଦ୍ରଙ୍କ ଭକତ
ଅଧିକ ଏଥିରେଟି ଅଟନ୍ତି ଅଚ୍ୟୁତ ।
ସର୍ବରୂପୀ ଶିବ ବୋଲି ଯେ ସେବା କରେ
ଅଧିକଟି ସେ ଶାସ୍ତ୍ରଆତମା ଯୋଗରେ ।
ଏହା ଜାଣି ଦେବ ଗନ୍ଧର୍ବ ଋଷିଗଣ
ଶିବଙ୍କୁ ପୂଜା କରୁଛନ୍ତି ପ୍ରତିକ୍ଷଣ ।
ଶିବଙ୍କ ଲିଙ୍ଗକୁ ପୂଜୁଛି ଯେଉଁ ଲୋକ
ଶିବଙ୍କ ପ୍ରସାଦରେ ନାହିଁ ତାର ଦକ ।
ଅଶ୍ୱତ୍ଥାମା ଶୁଣିଣ ବ୍ୟାସଙ୍କ ବଚନ
ଶିବଙ୍କର ପାଦରେ କରିଣ ବନ୍ଦନ ।
କୃଷ୍ଣଙ୍କୁ ବଡ଼ ବୋଲିକରି ମନେକଲେ
ଯୁଦ୍ଧରେ ହାରିଥିବା ଦୁଃଖକୁ ଛାଡ଼ିଲେ ।
ବ୍ୟାସଙ୍କର ଚରଣେ କରି ନମସ୍କାର
ଗଲେ ସେନାମଧକୁ ଦ୍ରୋଣଙ୍କ କୁମର ।
ବୋଇଲେ ଆଜି ଯୁଦ୍ଧ ଏତେକରେ ରହୁ
ପଡ଼ିଲେ ତ ଯୁଦ୍ଧରେ ଦ୍ରୋଣ ମହାବାହୁ ।
ବିଚାରି କାଲି ଆମ୍ଭେ କରିବା ସମର
ଯେରୂପେ ହେବେ ପାଣ୍ଡୁବାହିନୀ ସଂହାର ।
ଏହା ଶୁଣିଣ କୁରୁସେନାଏ ଲେଉଟି
ବାହାରିଲେ ବସାକୁ ଆଉଁଷି ମୁଣ୍ଡଟି ।
ପାଣ୍ଡବମାନଙ୍କ ସେନାଏ ଦେଖି ତାହା
ବାହାରିଲେ ବସାକୁ ଦୋହଲାଇ ବାହା ।
ଏରୂପେ ପାଞ୍ଚଦିନ ଯାଏ ଯୁଦ୍ଧ କରି
ଗଲେ ବ୍ରହ୍ମଲୋକକୁ ଦ୍ରୋଣ ଶସ୍ତ୍ରଧାରୀ ।
ପଞ୍ଚମଦିନ ଯୁଦ୍ଧ ବ୍ୟାସ ମହାଭାଗ
ଏହିଠାରେ ସାରିଲେ ବହିଣ ସରାଗ ।
ତାହାଙ୍କର ପଦ-କମଳ ହୃଦେ ଧ୍ୟାୟି
କୃଷ୍ଣସିଂହ ନୃପତି ଏ ଗୀତେ କହଇ ।

●

## ଶତରୁଦ୍ରୀୟ ସ୍ତୋତ୍ର

ଧୃତରାଷ୍ଟ୍ର ବୋଇଲେ ହୋନ୍ତେ ଦ୍ରୋଣକ୍ଷୟ
କି କଲେ କୁରୁଏ ତା କହ ହେ ସଞ୍ଜୟ ।
ପାଣ୍ଡବସେନାଏ ତ ମାଇଲେ ଦ୍ରୋଣଙ୍କୁ
କି ବିଚାର କଲେ ସେ ଯାଇଣ ବସାକୁ ।
ଏମାନଙ୍କେ ବିଶେଷାବିଶେଷଟି ଯାହା
ଶୁଣିବି ଇଚ୍ଛା ଅଛି ମନ୍ତ୍ରୀକୁଳନାହା ।
ସଞ୍ଜୟ ବୋଇଲେ ହେ ବସାରେ ପାଣ୍ଡବେ
ପରବେଶ ହୋଇଲେ ମହାଅନୁଭାବେ ।
ସେହି ସମୟ ଜାଣି ଋଷି ବେଦବ୍ୟାସ
ହୋଇଲେ ଅରଜୁନ ବସାରେ ପ୍ରବେଶ ।
ଅରଜୁନ ବେଦବ୍ୟାସଙ୍କୁ ନେତ୍ରେ ଦେଖି
ଆସନୁ ଉଠି ପାଦେ ନମିଲେକ ସୁଖୀ ।
ସୁଦିବ୍ୟ ଆସନରେ ବସାଇ ତାହାଙ୍କୁ
ପଚାରିଲେ ଅରଜୁନ ଯୋଡ଼ିଣ କରକୁ ।
ଯୁଦ୍ଧ ମୁଁ ଯେତେବେଳେ କରୁଥାଏ ଋଷି
ମୋ ଆଗେ ସୂର୍ଯ୍ୟ ପରି ତେଜକୁ ପ୍ରକାଶି ।
ପୁରୁଷ ଜଣେ ଶୂଳ ଧରି ଧାଉଁଥାଏ
ସେ ବଳେ ମୋତେଟି ନ ଯୁଝେ କେ ଗୋଟିଏ
ଚରଣ ତାହାଙ୍କର ନ ଲାଗଇ ତଳେ
ସବୁବେଳରେ ଶୂଳ ଥାଏ କରତଳେ ।
ସେ ଶୂଳରୁ ଶୂଳ ସହସ୍ରସଂଖ୍ୟା ଜାତ
ହୋଇ ମୋ ବଇରିକୁଳକୁ କରେ ହତ ।
ସେ ପୁରୁଷ ପଛରେ ଗୋଡ଼ାଇଣ ମୁହିଁ
ପ୍ରହାରି କାଣ୍ଡ ଶତ୍ରୁକୁଳକୁ ମାରଇଁ ।
ବ୍ୟାସ ବୋଇଲେ ହେ ପୁଚ୍ଛିଲ ଯା ଅର୍ଜୁନ
କହିବା ତାହା ଏବେ ଶୁଣ ଦେଇ ମନ ।
ଦେବଙ୍କ ଦେବତା ପାର୍ବତୀଦେବୀକାନ୍ତ
ଥାଆନ୍ତି ତୁମ୍ଭ ଆଗେ ଭାବି ତୁମ୍ଭ ହିତ ।
ତାହାଙ୍କ ପ୍ରଭାବରୁ ତୁମ୍ଭର ଅଜେୟ-
ନୋହିବାରୁ ନାମଟି ପାଇଛ ବିଜୟ ।
କହୁଅଛି ବାବୁ ତାହାଙ୍କ ପାଦପଦେ
ଶରଣ ପଶିଥା, ସେ ରଖିଥିବେ ନିତ୍ୟେ ।
ମହାତ୍ମା ମହାଭୂତ ଜଟିଳ ଈଶାନ
ଶଙ୍କର ଚୀରବାସୀ ରୁଦ୍ର ତ୍ରିନୟନ ।
ଦେବଦେବ ଶଙ୍କର ସ୍ଥାଣୁ ମହାଭୁଜ
ଭୁବନେଶ୍ୱର ଅଧୀଶ୍ୱର ବିଶ୍ୱସୃଜ ।
ଶରଣାତ୍ମା ଜଗତସ୍ରଷ୍ଟା ବିଶ୍ୱମୂର୍ତ୍ତି
ବିଶ୍ୱାତ୍ମା ପରମେଷ୍ଠୀ ଅଜିତ ମହାଦୀପ୍ତି ।
ଲୋକମୟ-ବିଧାତା-ପରମ-ଈଶ୍ୱର
ଲୋକତ୍ରୟ ଆଶ୍ରୟ ପ୍ରଭୁ ବିଶ୍ୱେଶ୍ୱର ।
ଜ୍ଞାନଗମ୍ୟ ସୁଦୁର୍ଜ୍ଞେୟ ଜ୍ଞାନଜ୍ଞେୟ
ଭକ୍ତବରଦାତା ଈଶ୍ୱର ସୁଦୁର୍ଜ୍ଜୟ ।
ଜନ୍ମମରଣଜରାଦିଗ ସର୍ବଶ୍ରେଷ୍ଠ
ଜ୍ଞାନାତ୍ମା ବିଶ୍ୱଯୋନି ଯଶସ୍ୱୀ ଜଗଜ୍ୟେଷ୍ଠ ।
ଜଗନ୍ନାଥ ବରଦ ଭୁବନ-ଈଶ୍ୱର
ବିଶ୍ୱକରମା ସର୍ବଲୋକେଶ୍ୱରେଶ୍ୱର ।
ବୃଷାଙ୍କ ଜଗତ୍ରୟପ୍ରଧାନ ସ୍ୱୟମ୍ଭୁ
ଭୂତଭବ୍ୟଭବନ୍ନାଥ ଯୋଗୀଶ ଶମ୍ଭୁ ।
ତାଙ୍କ ପାରିଷଦେ ଅଛନ୍ତି ଯେତେ ଗଣ
ଜଟିଳ ବାମନ ସେ ମୁଣ୍ଡ ବୋଲି ଜାଣ ।

ହ୍ରସ୍ୱଗ୍ରୀବ ମହୋଦର ଯେ ମହାକର୍ଣ୍ଣ
ମହାକାୟ ବିକୃତ ପାଦଦେଶାନନ ।
ସେ ଶିବ ତୁମ୍ଭ ଆଗେ ଶୂଳ ଧରି ଯାହା
ଛିଡ଼ା ହୋଇଥାଆନ୍ତି ହୋଇକରି ସାହା ।
ଏଥିରୁ ଭାଗ୍ୟ ହୋଇ କହିବାକୁ କଥା
ନାହିଁ ଆଉ ଜାଣ ଅର୍ଜୁନ ମହାରଥୀ ।
ଦ୍ରୋଣ କର୍ଣ୍ଣ କୃପ ରକ୍ଷିତ ଯେଉଁ ସେନା
ମାରିବାକୁ ସେ ସେନା ନାହିଁ ଶିବ ବିନା ।
ଶିବ ଆଗେ ଥିବାରୁ ରଥୀଏ ଗୋଟି ହୋଇ
ସଂଗ୍ରାମ କଲେ ତୁମ୍ଭେ ଦିଅଟି ଘୁଞ୍ଚାଇ ।
ତ୍ରିଲୋକେ ଶିବଙ୍କ ସମାନ ହୋଇ କେହି
ଥିବା ପରି ପାର୍ଥ ମନକୁ ପାଉ ନାହିଁ ।
ଶିବଙ୍କ ପ୍ରସନ୍ନରେ ଦେବେ ସ୍ୱର୍ଗେ ରହି
ଦିବ୍ୟ ଫୁଲବାସେ ଫୁଲାଉଛନ୍ତି ଦେହୀ ।
ଶିବଙ୍କଠାରେ ଭକ୍ତି କରେ ଯେଉଁ ନର
ଜୀଇଥିଲେ ସୁଖ, ମରିଲେ ସ୍ୱର୍ଗପୁର ।
ତୁମ୍ଭକୁ କହୁଥାଇଁ ଶିବଙ୍କର ପାଦେ
ପଡ଼ିଥାଅ, ପଡ଼ିବ ନାହିଁଟି ପ୍ରମାଦେ ।
ରୁଦ୍ର ସୁବର୍ଚ୍ଚସ କପର୍ଦ୍ଦୀ ଶୀତିକଣ୍ଠ
ସଦବୃତ୍ତ ଶଙ୍କର ହର୍ଯକ୍ଷ କନିଷ୍ଠ ।
କାମ୍ୟଦେବ କରାଳ ସ୍ଥାଣୁ ମୁଣ୍ଡ ଈଶ
ହରନେତ୍ରବରଦ ଅବ୍ୟକତ-କେଶ ।
ଦେବଦେବ ରହସ୍ୟ ପୁରୁଷ-ଉତ୍ତମ
ବହୁରୂପ ଭାସ୍କର ସୁତୀର୍ଥ ବେଗବାନ ।
ଉଷ୍ଣୀଷବାସପ୍ରିୟ ପ୍ରିୟବାସା କୃଶ
ସହସ୍ରାକ୍ଷ ସୁବର୍ଣ୍ଣ ପ୍ରଶାନ୍ତ ଗିରୀଶ ।
ହିରଣ୍ୟବାହୁ ଉଗ୍ର ଚୀରବାସା ଯତି
ସ୍ୱବହସ୍ତ ସେନାନାୟକ ଦିଶପତି ।
ପ୍ରଜାପତି ସହସ୍ରଧନ୍ୱବୀ ଭୂତପତି
ଭାର୍ଗବ ବୃକ୍ଷପତି ସହସ୍ର ବାହୁପନ୍ତି ।
ସୁରପତି ପର୍ଜ୍ଜନ୍ୟପତି ବିଶ୍ୱପତି
ସହସ୍ର ପାଦ ନେତ୍ର ଶିର ଉମାପତି ।
ପୂଷାଦନ୍ତବିନାଶୀ ପିଙ୍ଗଳ ଗୋମଟି
ସ୍ୱର୍ଣ୍ଣକେଶ ବହୁଧନ୍ୱବୀ ମାତୃପତି ।
ବନସ୍ପତି ବେଦପତି ନରପତି
ବୃଷାବର୍ତ୍ତ ଯେ ବୃଷନାଭ ଗଣପତି ।
ବୃଷଭଧ୍ୱଜ ବୃଷଦର୍ପ ତ୍ରିପୁରଘ୍ନ
ବୃଷପତି ଯଜ୍ଞପାଳକଟି ଭଗଘ୍ନ ।
ଅପାଂପତି ଯେ ବୃଷଶୃଙ୍ଗ ବୃଷର୍ଷଭ
ବୃଷାୟୁଧ ବୃଷଭନୟନ ବୃଷଭ ।
ବୃଷଭୋଦର ବୃଷମୂର୍ତ୍ତି ବୃଷଶର
ବୃଷାଙ୍କ ମହାକାୟ ଲୋକେଶ ମହେଶ୍ୱର ।
ଦ୍ୱିପିଚର୍ମନିବାସୀ ବ୍ରାହ୍ମଣ ମହୋଦର
ଧନ୍ୱୀ ଖଣ୍ଡପରଶୁ ଖଡ଼୍‌ଗଚର୍ମଧର ।

ସୁବ୍ରତ ସୁଧନ୍ୱବୀ ସୁବାସା ଧନ୍ୱନ୍ତର
ଧନୁମୂର୍ତ୍ତି ଉଗ୍ରାୟୁଧ ଯେ ଧନୁର୍ଦ୍ଧର ।
ତ୍ରିଶୂଳପାଣି ପ୍ରିୟମନ୍ତ୍ରୀ ସୁରବର
ଉମାବର ବୋଲି ଅର୍ଜୁନ ମନେକର ।
ସେ ମହାଦେବଙ୍କର ଦିବ୍ୟ କର୍ମ୍ମ ମୁହିଁ
ଯେରୂପେ ଶୁଣିଛି ସେରୂପେ କହିବଇଁ ।
ସୁରାସୁର ଯକ୍ଷ କିନ୍ନର ଗନ୍ଧରବ
ଶିବଙ୍କ ଅଭାବରେ ନ ପାଆନ୍ତି ଭାବ ।
ଦକ୍ଷ ପ୍ରଜାପତି ଯେ ଶିବଙ୍କୁ ନ ମାନି
ଯାଗ କଲେ ତାହା ନୋହିଲା ଶିବ ଘେନି ।
ସୁରାସୁର ଗନ୍ଧର୍ବ ଋଷି ଆଦି ଯେତେ
ଯାଗେ ଥିଲେ ସମସ୍ତେ ରହିଲେ ତରସ୍ତେ ।
ଶଙ୍କର ସେତେବେଳେ କଲେ ଧନୁଘୋଷ
ମଣିଲେ ମହୀ ତୁଲେ ଫାଟିଲା ଆକାଶ ।
ଶୈଳମାନଙ୍କରୁ ପଡ଼ିଲା ଶୃଙ୍ଗ ଝଡ଼ି
ରହିଲେଟି ଦିଗ୍‌ଗଜମାନେ ମୁହଁ ମାଡ଼ି ।
ସଲିଳମାନଙ୍କରୁ ବାହାରିଣ ମୀନ
କୂଳେ ପଡ଼ି ରହିଲେ ଛାଡ଼ିଣ ଜୀବନ ।
ସମୁଦ୍ର ମଧ ଥରେ ଘାଣ୍ଟି ହୋଇଗଲେ
ବରୁଣାଦି ଦେବତା ଦେଖିଣ କମ୍ପିଲେ ।
ଦେଖିଣ ଋଷିମାନେ ହୋଇଣ ତରସ୍ତ
ଜପକଲେ ପଇତାରେ ଦେଇଣ ହସ୍ତ ।
ପୂଷା ପୁରୋଡ଼ାସ ଭକ୍ଷଣ କରୁଥିଲେ
ମୁଥିମାଡ଼େ ତାଙ୍କ ଦାନ୍ତକୁ ଝଡ଼ାଇଲେ ।
ତାହା ଦେଖିଣ ଦେବେ ହୋଇଣେ କାତର
ପଳାଇଲେ ଯାଗରୁ ହୋଇ ତର ତର ।
ଦେବଙ୍କ ପଳାଇବା ଦେଖି ଉମାସାଇଁ
ସନ୍ଧିଲେ ଧନୁମଧେ ଶର ରୋଷ ବହି ।
ଦେବେ ଶଙ୍କରଙ୍କର ଦେଖିଣ ଏ ରୀତି
ଦେଲେ ଯା ଯାଗ ଭାଗ ହେବାକୁ ତୃପତି ।
ଶଙ୍କରଙ୍କର ପାଦେ ପଶିଲେ ଶରଣ
କହିଲେ ମାଗୁଅଛୁଁ ରଖ ଆମ୍ଭ ପ୍ରାଣ ।
ଶିବଙ୍କର ଆଜ୍ଞାରେ ପୁଣି ଦେବେ ଯାଗ
କରାଇଣ ଦକ୍ଷେ ଖାଇଲେ ହବିର୍ଭାଗ ।
ଏ ବାହାରେ ଶିବଙ୍କ ମହାପରାକ୍ରମ
କହିବା ଶୁଣ ଆହେ ପୁରୁଷଉତ୍ତମ ।
ଲୁହା ରୁପା ସୁନାରେ କରି ତିନିପୁର
ତହିଁ ରହିଥିଲେ ଅସୁରେ କରି ଘର ।
ଲୁହାପୁରରେ ବିଦ୍ୟୁନ୍ମାଳୀ ଅଧିପତି
ହୋଇ କରୁଥିଲା ସେ ଅସୁରଙ୍କ ପ୍ରୀତି ।
ତାରକାକ୍ଷ ନାମେ ଅସୁର ରୁପାପୁରେ
ରାଜା ହୋଇ ଅସୁରମାନଙ୍କେ ବିହରେ ।
କମଳାକ୍ଷ ନାମରେ ରାକ୍ଷସ ସୁବର୍ଣ୍ଣ-
ପୁରେ ରାଜା ହୋଇ ଭୋଗକୁ କଲା ପୂର୍ଣ୍ଣ ।

ଏରୂପେ ତିନିପୁରେ ଏ ତିନି ରାକ୍ଷସେ
ନୃପତି ହୋଇ ବିହରିଲେ ମହାତୋଷେ ।
ବଜ୍ର ଧରିଣ ଇନ୍ଦ୍ର ସେ ତିନିପୁରକୁ
ଭେଦି ନ ପାରିଲେଟି ଆଣ ହେ ମନକୁ ।
ସକଳ ଦେବତାଏ ତା ଦେଖି କରୁଣ
କରି ଉମାଧବଙ୍କୁ ପଶିଲେ ଶରଣ ।
କହିଲେ ବ୍ରହ୍ମାବରେ ରାକ୍ଷସ ତ୍ରିପୁର
କରିଣ ଭୋଗ କଲେ ଏ ତିନି ସଂସାର ।
ଆନ ଲୋକ ହାତେ ନୁହନ୍ତି କେବେ କ୍ଷୟ
ମାରି ତାଙ୍କୁ ତୁମ୍ଭେ ବୋଲାଅ ଦେବପ୍ରିୟ ।
ଅସୁରଙ୍କୁ ତୁମ୍ଭେଟି ସଂହାର ନ କଲେ
ନିଶ୍ଚୟେ ସୃଷ୍ଟି ସେ କରିବେ ନାଶ ଭଲେ ।
ଦେବଙ୍କର ବଚନ ଶୁଣି ଶୂଳପାଣି
କହିଲେ ହସି ମୁଁ କରିବି ତୁମ୍ଭ ବାଣୀ ।
ପୃଥିବୀ ରଥ ଚନ୍ଦ୍ର ସୂର୍ଯ୍ୟ ଚକ୍ରଯୁଗ
ଶେଷ ଅଖ ମଳୟପରବତ ଯୁଗ ।
ଗନ୍ଧବମାର୍ଦନ ବିନ୍ଧ୍ୟ ଦୁହେଁ ବଂଶଧ୍ୱଜ
ଭୂତଗଣ ଯୋତା ଯେ ମେରୁଗିରି ଧ୍ୱଜ ।
ସାରଥି ବ୍ରହ୍ମ ରଜ୍ଜୁ ଗାୟତ୍ରୀ ସାବିତ୍ରୀ
ପ୍ରଣବଟି ପ୍ରତୋଦ ଶମ୍ପା ବୈଜୟନ୍ତୀ ।
ଏଳାପତ୍ର କୁସୁମଦନ୍ତ ଅଖ କିଳା
ଚାରିବେଦ ତହିଁରେ ତୁରଙ୍ଗମମାଳା ।
ତକ୍ଷକ ନେମି ଉପଦେବ ବଳିୟାର
ଶମନ ପୁଙ୍ଖ ଅଗ୍ନି ପତ୍ରୀ ବିଷ୍ଣୁଶର ।
ମନ୍ଦର ପର୍ବତ ଗାଣ୍ଡୀବ ଶରାସନ
ବାୟୁ ପକ୍ଷଦ୍ୱୟ ବାସୁକି ଧନୁର୍ଗୁଣ ।
ଏରୂପେ ରଥ ଧନୁ ଶରକୁ ଭିଆଇ
ବସିଲେ ରଥେ ଶିବ ଦେବରୂପ ବହି ।
ଧନୁରେ ଶର ଯୋଖି ସହସ୍ର ବରଷ
ସ୍ଥାଣୁପରି ରହିଲେ ନ ଚଳି ଦିଗ୍‌ବାସ ।
ସେ ତିନିପୁର ଯେବେ ଏକଠା ହୋଇଲେ
ତେବେ ଶିବ ଧନୁରୁ ଶର ଛାଡ଼ିଦେଲେ ।
ସେ ଶରଘାତେ ତିନିପୁରଯାକ ପୋଡ଼ି
ଯାଆନ୍ତେଟି ଅସୁରେ ମଲେ ତଳେ ପଡ଼ି ।
ସେକାଳେ ଶିବଙ୍କର ସ୍ୱରୂପକୁ କେହି
ଚାହିଁ ନ ପାରିଲେ ଜାଣ ହେ କହୁଥାଇଁ ।
ପାର୍ବତୀ କୋଳେ ଦିନେ ଉମାଦେବୀସାଇଁ
କରୁଥିଲେ କ୍ରୀଡ଼ା ବାଳକରୂପ ବହି ।
ତାହା ଦେଖିଣ ଇନ୍ଦ୍ର ବଜ୍ର ଧରି କରେ
ମାରିବି ବାଳକକୁ ଭାବିଲେ ମନରେ ।
ସେ ଶଙ୍କର ପ୍ରଭାବେ ଇନ୍ଦ୍ରଙ୍କର କର
କରି ନ ପାରିଲା ସଞ୍ଚାର ମନେକର ।
ଇନ୍ଦ୍ରଙ୍କ ଭୁଜସ୍ତମ୍ଭ ଦେଖି ଦେବେ ଦୁଃଖୀ
ହୋଇଗଲେ ଯହିଁ ଥିଲେ ସେ ଆଠଆଖି ।
ବ୍ରହ୍ମାଙ୍କର ପାଦରେ ପଶିଲେ ଶରଣ
ବୋଇଲେ କହିବୁ ଯା ପିତାମହ ଶୁଣ ।
ଉମାଙ୍କ କୋଳରେ ବାଳକଟିଏ ଯାଇ
କ୍ରୀଡ଼ା କରୁଥିଲା ଦେଖିଲୁଁ ଆମ୍ଭେ ଥାଇ ।
ସେ ବାଳକ କିଏ ସେ ଅଟେ ପିତାମହ
କହି ଆମ୍ଭ ହୃଦରୁ ଛଡ଼ାଅ ସନ୍ଦେହ ।
ଅନୁଦ୍ଧରେ ଦେଖତ ଜିଣିଲା ଆମ୍ଭଙ୍କୁ
ଜାଣି ତ ପାରୁନାହୁଁ ଆମ୍ଭେ ହେ ତାହାଙ୍କୁ ।
ଦେବଙ୍କର ବଚନେ ବୁଝି ଆଠଆଖି
କହିଲେ ବ୍ରହ୍ମା ତାଙ୍କୁ ହସି ହୋଇ ସୁଖୀ ।
ଏ ଚଉଦଭୁବନ ପ୍ରଭୁ ଯେ ବୋଲାନ୍ତି
ବାଳରୂପେ ତାଙ୍କୁ ଦେଖିଲେ ଦେବପତି ।
ଉମାଙ୍କ ପ୍ରେମ ବଢ଼ାଇବାକୁ ବାଳକ-
ରୂପ ଧରିଥିଲେଟି ଯା ଚାପ ପିନାକ ।
ଏବେ ଆସ ତାହାଙ୍କୁ ଶରଣ ପଶିବା
ବଚନରେ କହି ପ୍ରସନ୍ନ କରାଇବା ।
ତୁମ୍ଭମାନଙ୍କରେ ତ ଅଗୋଚର ହର
ଏବେ ଚାଲ ମୋ ବୋଲ ଘେନି ସବୁ ସୁର ।
ବ୍ରହ୍ମାଙ୍କର ସମ୍ମତେ ବାହାରିଲେ ଦେବେ
ଦେଖିଲେ ସେ ପିଲା-ଶିବଙ୍କୁ ଆସି ଭାବେ ।
ବ୍ରହ୍ମାଆଦି ଦେବେ ସେ ପିଲା ଶିବଙ୍କର
ପୟର ଯୁଗଳରେ ଲୋଟାଇଲେ ଶିର ।
ବ୍ରହ୍ମା ସେହିକାଳେ ଯୋଡ଼ିଣ ବେନିକର
ବୋଇଲେ ଶୁଣ ଆହେ ଜଗତଈଶ୍ୱର ।
ଯଜ୍ଞ ତ୍ରିଭୁବନ କରତା ମହାଦେବ
ପରମପଦଧାମ ପରାୟଣ ଭବ ।
ନ ଜାଣି ଇନ୍ଦ୍ର ଅପରାଧ କରିଛନ୍ତି
କହୁଛୁଁ ଏହା କ୍ଷମାକର ଉମାପତି ।
ବ୍ରହ୍ମାଙ୍କର ବଚନେ ତୃପ୍ତମତି ହୋଇ
ରହନ୍ତେ ଶିବ, ଦେବେ ଜଣାଇଲେ ଯାଇ ।
ଦେବେ ଜଣାଅନ୍ତେ ଶଚୀପତିଙ୍କ ଭୁଜ
ପୂର୍ବ ପରି ହେଲା ହେ ଜାଣ ବୀରରାଜ ।
ଶିବ ସର୍ବ ମୃତ୍ୟୁ ଅନ୍ତକ ଯମ କାଳ
ଦିବସ ପକ୍ଷ ମାସ ରଜନୀ ଅନଳ ।
ସନ୍ଧ୍ୟା ସମ୍ବତ୍ସର ସର୍ବଜ୍ଞ ପବନ
ବିଦ୍ୟୁତଭବ ମହାଦେବ ସନାତନ ।
ପର୍ଜନ୍ୟ ଇନ୍ଦ୍ର ଚନ୍ଦ୍ର ବରୁଣ ଈଶାନ
ସଂସାର ଆତ୍ମା ଧାତା ବିଧାତା ତପନ ।
ସବୁ ଦେବମୟ ହେବାରୁ ଏକରୂପ
ହେଲେ ହେଲେ ବୋଲାନ୍ତି ଶିବ ବହୁରୂପ ।
ଘୋର ଶିବ ଦୁଇ ମୂରତି ତାହାଙ୍କର
କାଳ ଅନୁରୂପରେ କରନ୍ତି ବେଭାର ।
ବିଷ୍ଣୁ ଅଗ୍ନି ସୂର୍ଯ୍ୟ ମୂରତି ଘୋର ମୂର୍ତ୍ତି
ବୋଲିକରି ଜାଣ ବିଚିତ୍ରବୀର୍ଯ୍ୟନାତି ।
ଜଳ ଜ୍ୟୋତି ଚନ୍ଦ୍ର ମୂରତି ଘୋର ମୂର୍ତ୍ତି
ସବୁକାଳରେ ହୋଇ ଥାଆନ୍ତି ସେ ଶାନ୍ତି ।
ବେଦଅଙ୍ଗ ଉପନିଷଦ ଯେ ପୁରାଣ
ଆଧ୍ୟାତ୍ମ୍ୟବିନଷ୍ଟୟ ହର ରୂପ ଜାଣ ।

ଶିବଙ୍କର ଗୁଣ ସହସ୍ର ବରଷରେ
ସାରି ନ ପାରିବି ମୁଁ କହୁଛି ସ୍ୱଚ୍ଛରେ ।
ସବୁ ପାପଯୁକ୍ତ ଲୋକଙ୍କୁ ମୁକତି ତ
କରିପାରନ୍ତିଟି ପାର୍ବତୀ ଦେବୀ-କାନ୍ତ ।
ଆୟୁ କାମ ସମ୍ପଦ ଆରୋଗ୍ୟ ଐଶ୍ୱର୍ଯ୍ୟ
ଦେବା ଲୋକ ଜାଣଟି ରୁଦ୍ର ଦେବରାଜ ।
କାଳରେ ଏମାନଙ୍କ ସଂହାରକରତା
ଅଟନ୍ତି ସେ ଜାଣ ହେ ଅଭିମନ୍ୟୁ-ପିତା ।
ଇନ୍ଦ୍ରାଦି ଦେବତାଙ୍କୁ ଅଇଶ୍ୱର୍ଯ୍ୟ ଦେଇ
ବୁଲୁଥାନ୍ତି ଶ୍ମଶାନେ ରୁଦ୍ର ସୁଖ ପାଇ ।
ଈଶ୍ୱର ମହେଶ୍ୱର ପୂର୍ବଜନ୍ମପୁରୁଷ
ଶିବ ବୋଲି ଜାଣ ହେ ଅର୍ଜ୍ଜୁନ ବୀରେଶ ।
ତାଙ୍କର ରୂପ ବିଶ୍ୱଯାକଟି ବ୍ୟାପିଛି
ନ କର ଏଥି ମିଥ୍ୟା କିଛି କୁନ୍ତୀବତ୍ସି ।
ଶିବଙ୍କର ବଦନ ସମୁଦ୍ରେ ବଡ଼ବା
ହୋଇ ଜଳ ପିଉଛି ଆଉ କି କହିବା ।
ସବୁକାଳେ ଶ୍ମଶାନେ ରୁଦ୍ରଙ୍କର ଘର
ଜାଣି ପୂଜା ତାଙ୍କୁ କରନ୍ତି ତହିଁ ନର ।
ପ୍ରଦୀପ୍ତ ଘୋରରୂପେ ଶ୍ମଶାନ ପୂଜାକୁ
ଘେନନ୍ତିଟି ଶଙ୍କର ବହିଣ ପ୍ରିୟକୁ ।
ବହୁତ ନାମ ରୁଦ୍ରଙ୍କ ଏ ମହୀଦେଶେ
ରହିଛି ନ ସରିବ କହିଲେ ସେ ଭାଷେ ।
ଶତରୁଦ୍ରୀୟଙ୍କୁ କହୁ ତ ଅଛି ଦେବ
ଶୁଣିଣ ତାହା ଲୋକେ ପାଆନ୍ତି ପ୍ରମୋଦ ।
ଦେବତା ମନୁଷ୍ୟରେ ଯେତେ କର୍ମ ଅଛି
ତହିଁରେ ପ୍ରଭୁ ରୁଦ୍ର ଜାଣ କୁନ୍ତୀବତ୍ସି ।
ମୁନିମାନେ ବୋଲନ୍ତି ଦେବେ ଶିବ ଜ୍ୟେଷ୍ଠ
ହୋଇବାରୁ ସବୁରି ଉପରେ ବରିଷ୍ଠ ।
ଶିବଙ୍କର ମୁଖରୁ ଅଗ୍ନି ଜାତ ହୋଇ
ତୋଷୁଛନ୍ତି ଶିବଙ୍କୁ ଯାଗେ ଘିଅ ଖାଇ ।
ପଶୁଙ୍କୁ ପାଳନା କରନ୍ତି ରୁଦ୍ର ନିତି
ଏଣୁ ବୋଲାଅନ୍ତି ଜଗତେ ପଶୁପତି ।
ଦେବତା ଋଷି ଯକ୍ଷ ଗନ୍ଧର୍ବ କିନ୍ନର
ପୂଜୁଅଛନ୍ତି ଲିଙ୍ଗ ଦେବ ହରଙ୍କର ।
ଧୂମ୍ରରୂପ ହେବାରୁ ବୋଲାନ୍ତି ଧୂର୍ଜଟୀ
ଜଟା ଥିବା ନ୍ୟାୟରୁ ନାମ ତାଙ୍କ ଜଟୀ ।
ସବୁ ଦେବତାଙ୍କର ହୋଇବାରୁ ତାତ
ବିଶ୍ୱରୂପ ନାମଟି ହୋଇଛି ବିଖ୍ୟାତ ।
ଆପ ଦେବୀ ପୃଥିବୀ ଯେ ଏ ତିନି ଦେବୀଙ୍କ
ପ୍ରିୟ ହେବାରୁ ତାଙ୍କ ନାମଟି ତ୍ର୍ୟମ୍ବକ ।
ସ୍ଥାବର ଜଙ୍ଗମରେ ହେବାରୁ ପ୍ରକାଶ
ବହୁରୂପ ବୋଲାନ୍ତି ଉମାଦେବୀଈଶ ।
ଲୋକଙ୍କ ସଂହାରଣ କରିବାରୁ ସର୍ବ
ବୋଲାଇ ବୋଲାଅନ୍ତି ପୁଣି ସର୍ବଦେବ ।
ଲୋକଙ୍କର ମଙ୍ଗଳ କରିବାରୁ ବାଞ୍ଛା
ବୋଲାଅନ୍ତି ଶିବ କୁମାର ଯାଥ ବତ୍ସା ।
ଲୋକଙ୍କୁ ପୂଜା କରାଇବାରୁ ଲିଙ୍ଗକୁ
ମହେଶ୍ୱର ବୋଲିଣ ବହିଲେ ନାମକୁ ।
ସହସ୍ରାକ୍ଷ ଅୟୁତାକ୍ଷ ହୋଇଣ ମହୀ-
ପାଳିବାରୁ ମହାଦେବ ଯେ ବୋଲି କହି ।
ଲିଙ୍ଗରେ ରହିବାରୁ ସ୍ଥାଣୁ ବୋଲାଅନ୍ତି
ଉମାଦେବୀଙ୍କ ଯେ ଅଟନ୍ତି ପ୍ରାଣପତି ।
ସୂର୍ଯ୍ୟଚନ୍ଦ୍ର କିରଣ ହୋଇବାରୁ କେଶ
କହିଟି ତାଙ୍କୁ ହେ ଅର୍ଜ୍ଜୁନ ବ୍ୟୋମକେଶ ।
ବୃଷ ଶବ୍ଦ ଧରମ କପି ଶବ୍ଦ ଶ୍ରେଷ୍ଠ
ତେଣୁ ବୃଷାକପି ବୋଲାନ୍ତି ଶୀତିକଣ୍ଠ ।
ବ୍ରହ୍ମା ଇନ୍ଦ୍ର ବରୁଣ କୁବେର ଯମର
ନିଗ୍ରହ କରିବାରୁ ବୋଲାଅନ୍ତି ହର ।
ଥାଆନ୍ତି ତ ତିନିନେତ୍ରକୁ ସେହି ବହି
ଏଣୁ ତ୍ର୍ୟକ୍ଷ ବୋଲିଣ ତାହାଙ୍କୁଟି କହି ।
ଭୂତ ଭବତ୍ ଭବିଷ୍ୟ ହେତୁ ଭବନାମ
ବହିଟି ଛନ୍ତି ଶିବ ଦେବଙ୍କ ଉତ୍ତମ ।
ସକଳ ପ୍ରାଣୀଙ୍କର ଦେହର ପବନ
ହୋଇ ରହିଅଛନ୍ତି ଶିବ ମନେ ଘେନ ।
ଶିବଙ୍କର ବିଗ୍ରହ ଶିବଙ୍କର ଲିଙ୍ଗ
ଯେ ପୂଜିଛି ପବିତ୍ର ଅଟେ ତାର ଅଙ୍ଗ ।
ସୌମ୍ୟ ଅଧେ ଆଗ୍ନେୟ ଅଧେ ଶିବଙ୍କର
ଦେହ ବୋଲିକରି ଅର୍ଜ୍ଜୁନ ମନେକର ।
ସୌମ୍ୟ ମୂର୍ତ୍ତିଙ୍କରେ ଯେ ବ୍ରହ୍ମଚର୍ଯ୍ୟ କରି
ରହିଅଛନ୍ତି ପିନାକଚାପଧାରୀ ।
ଆଗ୍ନେୟ ମୂର୍ତ୍ତିଙ୍କରେ କରନ୍ତି ସଂହାର
କାଳ ବେଳ ଜାଣି କରିଟି ଶୂଳଧାର ।
ଶୋଣିତ ମାଂସ ମଜ୍ଜା ପୋଡ଼ିବାରୁ ରୁଦ୍ର
ବୋଲାଅନ୍ତି, କରନ୍ତି ଯେଣୁ ସେ ଅଭଦ୍ର ।
ଜୟଦ୍ରଥ ମାରିବା ପାଇଁ ତ ପ୍ରତିଜ୍ଞା
କରିଲ, ତାହା ନୋହିବାକୁ ହେ ଅବଜ୍ଞା ।
ସେ ଶିବ ତୁମ୍ଭଠାରେ ଦୟାକରି ଶୂଳ
ଧରି ଆଗେ ଯୁଝୁଥିଲେ ହେ କୁନ୍ତୀବାଳ ।
ତାଙ୍କ ଅସ୍ତ୍ରବଳେ ନିବାତକବଚାଦି
ମାରିକରି ତୁମ୍ଭେ ହୋଇଲ ନିର୍ବିବାଦୀ ।
ଶତରୁଦ୍ରୀୟଟି କହିଲି ମୁଁ ତୁମ୍ଭଙ୍କୁ
ଆୟୁଷ କୀର୍ତ୍ତିକର ଆଣ ଏ ମନକୁ ।
ସବୁ ଅର୍ଥ ସାଧନ ବିଘ୍ନବିନାଶନ
ଅଭୟଦାତା ଶତରୁଦ୍ରୀୟ ଅର୍ଜ୍ଜୁନ ।
ଏ ସ୍ତୋତ୍ର ଯେଉଁ ଲୋକ ଶୁଣେ ଏକମନେ
ବସଇ ସେ ଯାଇଣ କଇଳାସ-ସ୍ଥାନେ ।
ଯେଉଁ ଲୋକ ଶତରୁଦ୍ରୀୟକୁ ଶୁଣଇ
ନୋହିଲେ ବା ଏକାନ୍ତେ ବସିଣ ପଢ଼ଇ ।
ସେ ଲୋକରଟି ସର୍ବ ମନୋରଥ ସାର୍ଥ
କରନ୍ତି କୃପା କରି ଉମାଦେବୀ-କାନ୍ତ ।
ଯୁଦ୍ଧେ ପରାଜୟ ତୁମ୍ଭର ହେବ ନାହିଁ
ଅଛନ୍ତି ତ ଜଗବନ୍ଧୁ ସାହା ହୋଇ ।

ଏରୂପେ ଅର୍ଜ୍ଜୁନଙ୍କୁ କହି ବେଦବ୍ୟାସ
ଅଦୃଶ୍ୟ ହୋଇକରି ଗଲେ ନିଜ ବାସ ।
ଭରଦ୍ୱାଜ-ତନୟ-ଯୁଝି ଦିନ ପାଞ୍ଚ
ପାଞ୍ଚାଳେ ସଂହାରି ଛାଡ଼ିଲେ ରାୟେ ମଞ୍ଚ ।
ବ୍ରହ୍ମଲୋକ ତାଙ୍କୁ ଆଦର କରି ବ୍ରହ୍ମା
ରଖାଇଦେଲେ ସେ ତ ମହତକରମା ।

●

### ପର୍ବମାହାତ୍ମ୍ୟ

ପଢ଼ିଲେ ବେଦ ଲୋକ ଯେଉଁ ଫଳ ପାଏ
ଶୁଣିଲେ ଦ୍ରୋଣପର୍ବ ସେ ଫଳଟି ହୋଏ ।
କୃଷ୍ଣସିଂହ ପାଣ୍ଡବମାନଙ୍କର ଜୟ
ଯେ ଜାଣଇ, ଦୁରିତ ହୁଏ ତାର କ୍ଷୟ ।
ବ୍ରାହ୍ମଣ ଏ ପର୍ବ ଶୁଣିଲେ ଯାଗଫଳ
କରି ଅନ୍ତଃକାଳେ ଲଭଇ ସ୍ୱର୍ଗ ଆଳ ।
କ୍ଷତ୍ରିୟ ଯେବେ ଏହି ପର୍ବକୁ ଶୁଣଇ
ନିଃସନ୍ଦେହ ହୋଇଣ ଯୁଦ୍ଧରେ ଜିଣଇ ।
ବୈଶ୍ୟ ଶୂଦ୍ର ଶୁଣିଲେ ଇଷ୍ଟଫଳ ସିଦ୍ଧି
ହୁଅଇ, ବୋଲିଛନ୍ତି ବ୍ୟାସ ତପୋନିଧି ।
ଏଠାରେ ଋଷି କୁଳମଣି ବେଦବ୍ୟାସ
କଲେ ଦ୍ରୋଣ ପର୍ବ ଗ୍ରନ୍ଥକୁ ରାୟେ ଶେଷ ।
ପନ୍ଦର ଦିନ ଯୁଦ୍ଧ ହେଲା ସମାପତି
ମରନ୍ତେ ଯୁଦ୍ଧେ ଭରଦ୍ୱାଜଙ୍କ ସନ୍ତତି ।
କୃଷ୍ଣ ଅର୍ଜ୍ଜୁନଙ୍କ ଏଥିରେ ପରାକ୍ରମ
ବର୍ଣ୍ଣିଅଛନ୍ତି ବ୍ୟାସ ଋଷିଙ୍କ ଉତ୍ତମ ।

●

### ଗ୍ରନ୍ଥକାରଙ୍କର ଆତ୍ମକଥା

ଏ ଦ୍ରୋଣପର୍ବ ଗୀତ ଏକଚିତ୍ତ ହୋଇ
ଯେ ଶୁଣଇଁ, ସେ ପାପ-ସମୁଦ୍ରୁଁ ତରଇ ।
ଏହା ଜାଣି ଜନେ ହୋଇଣ ଏକଚିତ୍ତ
ଶୁଣୁଥିବ ବସି ଏ ଦ୍ରୋଣପର୍ବ ଗୀତ ।
ମୁଁ କରିଅଛି ବୋଲି ନ ଘେନିମ ଦୋଷ
ସବୁ ଗ୍ରନ୍ଥମାନଙ୍କେ ଭାରତ ବିଶେଷ ।
ଭରତ ବଂଶ ଗୁଣ ଗାନ ଯେ କରଇ
ପାତକ ତାର ଦେହେ ରହି ନ ପାରଇ ।
ଭାରତରେ ଯେ ନର ନାରାୟଣ ଦୁଇ
ପ୍ରଧାନ ବୋଲି ବେଦବ୍ୟାସ ଛନ୍ତି କହି ।
ତାଙ୍କର ଚରିତେ ହୋଇଛି ଏ ମଣ୍ଡିତ
ନାଶ କରି ନ ପାରନ୍ତି କି ଏ ଦୁରିତ ।
ମୋହଠାରେ ବାଛିଲେ ନାହିଁ କଥାଟିଏ-
ଗୁଣ ହୋଇ, କହୁଛି ପଢ଼ି ସବୁ ପାଏ ।
ଅପାର ଏ ସଂସାର ସିନ୍ଧୁ ପାର ପାଇଁ
ଭାରତକୁ ଭେଳାଟି କରିଅଛି ମୁହିଁ ।
ନର ନାରାୟଣଙ୍କ ଯେବେ ଦୟା ଥିବ
ତେବେ ବା ମୋହର ସଂସାର-କଷ୍ଟ ଯିବ ।
ମୁଁ ତ ଦୁରାଚାରୀ ପାତକୀ କୃତଘନ
କରି ନାହିଁ ହରିଙ୍କ ପାଦରେ ଭଜନ ।
କାମିନୀ-ପ୍ରେମ-ଲତା-ରତି ଫଳ ଭୋଗ
କରିବାରେ ମୁଁ ବଢ଼ାଇଲି ଅନୁରାଗ ।
ଅସାଧୁମାନଙ୍କ ସଙ୍ଗରେ ସଙ୍ଗୀ ହୋଇ
ଗୀତ ବାଦ୍ୟ ନୃତ୍ୟେ ସାରିଲି ଦିନ ମୁହିଁ ।
ଥାଉ ହରିଙ୍କ ନାମ ଉଚାରିବା ତୁଣ୍ଡେ
ଭାବି ନାହିଁ ଦିନେ ମୁଁ ମୋ ହୃଦୟ ଖଣ୍ଡେ ।
ଭାରତଙ୍କ ଗୁଣ କୀର୍ତ୍ତନ କରିବାର
ମୋ ହୃଦରେ କିରୂପେ କରନ୍ତେ ସେ ଘର ।
କଲି ମୁହିଁ ମହାଭାରତ ଗୀତ ବନ୍ଧେ
ଯାହାଟି ବିଚାରିଲେ ଲେଖାଯିବି ମନ୍ଦେ ।
ସୋରିଷକୁ ମେରୁ କରିବା ସମରଥ
ଜାଣ ତ ହେ ସମସ୍ତେ ପ୍ରଭୁ ଜଗନ୍ନାଥ ।
କାକ କୋଳେ ପିକ ବଢ଼ିବା ପରି ଗୀତ-
ରୂପେ ହେଲେ ଭାରତ ମୋ ମୁଖୁଁ ନିର୍ଗତ ।
ପୁରୁଷୋତ୍ତମ ସିଂହ ନୃପ ପଣନାତି
ରାମଚନ୍ଦ୍ର ସିଂହ ରାଜାଙ୍କର ମୁହିଁ ନାତି ।
ଜୟସିଂହ ରାଜା ମୋହର ଜ୍ୟେଷ୍ଠ ତାତ
କରିଥିଲେ ପୂର୍ବୁଁ ସେ ଦ୍ରୋଣପର୍ବ ଗୀତ ।
ଏହା ଜାଣି ଯେ ଆଦିପର୍ବୁଁ ହରି ବଂଶ-
ଯାଏ ଗୀତ କରିଣ କଲି ମୁହିଁ ଶେଷ ।
ଦ୍ରୋଣ ପର୍ବ ଗୀତକୁ ନ ବର୍ଣ୍ଣିଲି ଗୀତେ
ବୋଲି ଅଛନ୍ତି ଜ୍ୟେଷ୍ଠପିତା ଭାବି ଚିତ୍ତେ ।
ଲକ୍ଷେ ଗ୍ରନ୍ଥ ପୂର୍ଣ୍ଣ ନୋହିଲା ବୋଲିକରି
ମୋ ମନେ କରି ପ୍ରିୟ ଜନଙ୍କୁ ପଚାରି ।
ସବୁରି ସମ୍ମତେ ଭାରତଗୀତ ପ୍ରାନ୍ତେ
ଦ୍ରୋଣ ପର୍ବ ଗୀତ ମୁଁ ବର୍ଣ୍ଣିଲିଟି ଗୀତେ ।
ଏ ସରିକି ଶକାବ୍ଦ ସତରଶ ଦଶ-
ବରଷ ହୋଇଛି ଉତ୍ତମ ହୋଇ ଶେଷ ।
ପୌଷ ଶୁକ୍ଳ ଦ୍ୱିତୀୟ ଚନ୍ଦ୍ରମା ବାସରେ
ସରିଲା ଏହି ଗୀତ ବ୍ୟାସଙ୍କ ତୋଷରେ ।
ଆହେ ଗୋପିକା ମନ ମୋହନ କାରକ
ଅସୁର-କୁଳ ବଳୋନ୍ମୂଳନ-କାରକ ।
ଶରଣାଗତ ଜନ ନିବହ-ତାରକ
ଚତୁର୍ଦ୍ଦଶ-ଭୁବନ-ପ୍ରାଣୀ ପ୍ରତାରକ ।
କଳାକର-ଜନକ ତନୁଜା-ଦାରକ
ଯୋଗୀଜନ-ଯୋଗ ମଣ୍ଡଳ-ବିହାରକ ।
ବଲ୍ଲଭ -ନିତମ୍ୱନୀ-ହୃଦୟ ହାରକ
କାଳିନ୍ଦୀହ୍ରଦ-ମଧ-କାଳୀୟ ଦଳନ ।
କରମକାରୀ ଲୋକ-କୃତ-ସଂସାରକ
ବିଷଦାୟୀ-ପୁତନା-ରାକ୍ଷସୀ-ମାରକ ।
ପ୍ରଜ୍ୱଳିତ-ଦାବ-ଅନଳ-ନିଃସାରକ
ଭକତ-ଜନ-ବୃନ୍ଦ ନିର୍ବାଣ-କାରକ ।
କହଇ କୃଷ୍ଣସିଂହ ମୋତେ ଏ ବାରକ
ରଖ ପ୍ରଭୁ ନାଶି ହେ ପାତକ ବାରକ ।

●●●